# ପ୍ରକାଶକର ନିବେଦନ

କାନ୍ତକବିଙ୍କ ଲେଖାଗୁଡ଼ିକୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବାଲାଗି କବିଙ୍କ ସହିତ ଆମର ଚୁକ୍ତି ହେଲା ୧୯୪୯ ମସିହାରେ । ଲେଖାଗୁଡ଼ିକୁ ବିଭିନ୍ନ ବିଭାଗରେ ସଜାଇ 'ରବୀନ୍ଦ୍ର ରଚନାବଳୀ' ଭଳି ତାହାକୁ କେତେ ଖଣ୍ଡରେ ପ୍ରକାଶ କରିବାକୁ କାନ୍ତକବି ସ୍ୱୟଂ ଇଚ୍ଛା ପ୍ରକାଶ କରିଥିଲେ ଏବଂ ଏ ସଂସାର ଛାଡ଼ିବା ଆଗରୁ ଅନ୍ତତଃ ଗୋଟିଏ ଦୁଇଟି ଭାଗକୁ ପ୍ରକାଶିତ ଅବସ୍ଥାରେ ଦେଖିବାକୁ ଖୁବ୍ ଆଶା କରିଥିଲେ । ମାତ୍ର ଆମ୍ଭେମାନେ ତାଙ୍କର ସେ ଆଶା ପୂରଣ କରି ପାରିନାହୁଁ । ତାଙ୍କ ଲେଖା ଏତେ ବିସ୍ତୃତ, ପୁଣି ଏତେ ପ୍ରକାରର ଯେ ସନ୍ତୋଷଜନକ ଭାବରେ ସେଗୁଡ଼ିକର ସଂଗ୍ରହ ତାଙ୍କ ଜୀବନାବଶେଷ ମଧ୍ୟରେ ହୋଇପାରିଲା ନାହିଁ ।

ଏବେ ମଧ୍ୟ କବିଙ୍କର ସମସ୍ତ ଲେଖା ପୂର୍ଣ୍ଣଭାବରେ ସଂଗୃହୀତ ହୋଇଛି ବୋଲି ବିଶ୍ୱାସ କରି ହୁଏ ନାହିଁ । କାରଣ ସେ ଯେତେବେଳେ କଲମ ଧରିଛନ୍ତି—ଲେଖିଯାଇଛନ୍ତି ଅବାରିତ ଭାବରେ । ସେ ଲେଖାସବୁ ଗାଁ ଯାତ୍ରାବାଲା, ପୂଜାବାଲାଙ୍କଠୁଁ ଆରମ୍ଭ କରି ପାଠକଙ୍କର ସବୁ ସ୍ତରରେ ବ୍ୟାପିଯାଇଛି । ଏପରି କୌଣସି ଓଡ଼ିଆ ପତ୍ରପତ୍ରିକା ନାହିଁ ଯେଉଁଥିରେ ସ୍ୱନାମରେ ହେଉ ବା ବେନାମି ହେଉ କାନ୍ତରଚନା ସ୍ଥାନ ନ ପାଇଛି । ଆଜି ଅସଂଖ୍ୟ ସୁଲଳିତ ଓଡ଼ିଆ ସଙ୍ଗୀତ ଲୋକକଣ୍ଠରେ ଧ୍ୱନିତ, ଯାହାର କବି କିଏ ଜଣାନାହିଁ । ଅଥଚ ଅନୁସନ୍ଧାନରେ ଜଣାପଡ଼ୁଛି, ସେସବୁରୁ ଅଧିକାଂଶ କାନ୍ତ-ରଚନା ।

ଆମ୍ଭେମାନେ ଯେଉଁ ସବୁ ଲେଖା ସଂଗୃହୀତ ଅବସ୍ଥାରେ ପାଇଲୁଁ, ତାହା ଯଥାଶୀଘ୍ର ଛପାଇବାର ବ୍ୟବସ୍ଥା କଲୁଁ; ମାତ୍ର ନାନା ଅସୁବିଧା ହେତୁ ପ୍ରକାଶନରେ ଅଯଥା ବିଳମ୍ବ ଘଟିଲା ।

ମୁଦ୍ରଣ ଚାଲିଥିବା ଅବସ୍ଥାରେ ଯେଉଁ କେତେକ ଲେଖା ପାଇଲୁଁ ସେସବୁର ଉପଯୋଗୀ ବିଭାଗ ଛପା ସରିଥିବାରୁ ସେସବୁକୁ ପରିଶିଷ୍ଟରେ ସଂଯୋଜିତ କରିଛୁଁ । ଏବେ ପତ୍ର ପାଉଛୁଁ ଯେ କାନ୍ତକବିଙ୍କ ଲିଖିତ 'ଓମାର କବିତାବଳୀ' ଏବଂ ଇଂରାଜୀ ଭାଷାରେ କେତେକ ପଦ୍ୟ ଓ ଗଳ୍ପ ଲେଖା ମିଳିବ । ସେଗୁଡ଼ିକ ପରିଶିଷ୍ଟରେ ସନ୍ନିବେଶିତ କରି ଦ୍ୱିତୀୟ ଖଣ୍ଡ ସମାପ୍ତ କରିବୁଁ । ବିଳମ୍ବରେ ହେଲେ ମଧ୍ୟ କବିଙ୍କ ସ୍ୱର୍ଗତ ଆତ୍ମାର ପରିତୃପ୍ତି ପାଇଁ ଆମ୍ଭେମାନେ କିଞ୍ଚିତ୍ ସମର୍ଥ ହୋଇଥିବାରୁ ନିଜକୁ କୃତକୃତ୍ୟ ମନେକରୁଛୁଁ । ଆଶା କରୁଛୁଁ—ଦ୍ୱିତୀୟ ସଂସ୍କରଣରେ କାନ୍ତକବିଙ୍କର ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀ ସଂକଳିତ ହୋଇପାରିବ ।

ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ-୨
୧ । ୧ । ୭୪

ଶ୍ରୀ ରାମଚନ୍ଦ୍ର କର
**ପ୍ରକାଶକ**

# କାନ୍ତକବି

ଅଠରଶହ ଅଠାଅଶୀ ଡିସେମ୍ବର ୯ ତାରିଖରେ କାନ୍ତକବି **ଲକ୍ଷ୍ମୀକାନ୍ତଙ୍କର ଜନ୍ମ** କଟକ ସହରରେ । **ମାର୍ଗଶିର** ମାସ, ମାଣବସା ଗୁରୁବାର ଦିନ ଜନ୍ମ ବୋଲି ନାମ ରଖାଗଲା ଲକ୍ଷ୍ମୀକାନ୍ତ । ପିତା ଚୌଧୁରୀ ଭଗବତ-ପ୍ରସାଦ ସାମନ୍ତରାୟ **ମହାପାତ୍ର**—ଭଦ୍ରକ ସହରଠାରୁ ଦଶ ମାଇଲ ପୂର୍ବକୁ ତାଳପଦା ଗ୍ରାମର ପ୍ରସିଦ୍ଧ ସାମନ୍ତରାୟ ପରିବାରର ଜଣେ ଶ୍ରେଷ୍ଠ ପୁରୁଷ । ମାତା ରାଧାମଣି ଦାସୀ—ବୈତରଣୀ କୂଳରେ ଅବସ୍ଥିତ କଣ୍ଟାପାରି ଗ୍ରାମର ଜଣେ ବିଖ୍ୟାତ ସରକାରୀ ଅମଲା ଶ୍ରୀ ଦୁର୍ଯ୍ୟୋଧନ ଦାସଙ୍କ କନ୍ୟା । ଭଗବତବାବୁ ସେତେବେଳେ ଏକାଡେମି ସ୍କୁଲର ଶିକ୍ଷକ ଥାଇ ଆଇନ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ ।

କେତେବର୍ଷ ମଧ୍ୟରେ ଭଗବତବାବୁ ବାଲେଶ୍ୱରରେ ଓକିଲାତି କଲେ । ବାଲେଶ୍ୱର ତାଙ୍କର ଅତି ପରିଚିତ ସ୍ଥାନ । ଶୈଶବର ଶିଶୁଟିଏ ଥିଲାବେଳେ ତାଙ୍କ ମା ମରିଯିବାରୁ ସେ ବାଲେଶ୍ୱରରେ ମାମୁଁଘରେ ରହି ପ୍ରତିପାଳିତ ହୋଇଥିଲେ । ବାଲେଶ୍ୱର ସହର ସୁନହଟରେ ପ୍ରସିଦ୍ଧ ସାମନ୍ତ ବଂଶରେ ତାଙ୍କ ମାମୁଁଘର । ମାମୁଁପୁଅ ଭାଇମାନଙ୍କ ଆନୁକୂଲ୍ୟରେ ସେ ବାଲେଶ୍ୱରରେ କର୍ମଜୀବନ ଆରମ୍ଭ କଲେ । ସେତେବେଳେ ଶିଶୁ ଲକ୍ଷ୍ମୀକାନ୍ତ ନିଜ ମାତୁଳାଳୟରେ । ବୋଧହୁଏ ତାଡ଼ନା ଅଭାବରୁ ମାମୁଁଙ୍କର ଅକ୍ଷୋଳ ଭଣଜା ଶିଶୁ ଲକ୍ଷ୍ମୀକାନ୍ତଙ୍କର ବିଚକ୍ଷଣତା ତାଙ୍କୁ ଅତ୍ୟଧିକ ଚପଳତା ଓ ଚଞ୍ଚଳତା ଦିଗକୁ ଟାଣିନେଲା । ଭଗବତବାବୁ ପୁଅକୁ ସେଥିପାଇଁ ନିଜ ପାଖକୁ ଆଣିଲେ । କିଛିଦିନ ପରେ କାନ୍ତକବି ହେଲେ ବାଲେଶ୍ୱର ଜିଲାସ୍କୁଲର ଜଣେ ବୁଦ୍ଧିମାନ ଓ ବିଖ୍ୟାତ ଖେଳାଳି ଛାତ୍ର । କ୍ରିକେଟ୍, ଟେନିସ୍ ଓ ବେଡ଼ମିଣ୍ଟନ୍‌ରେ ସେ ହୋଇଉଠିଲେ ଜଣେ ନିପୁଣ ଯୁବକ । କ୍ରମେ ତାଙ୍କର ପଟୁତାରେ ଆକୃଷ୍ଟ ହୋଇ ବହୁ କ୍ରୀଡ଼ାପ୍ରବଣ ଯୁବକ ତାଙ୍କର ଅନୁଗାମୀ ହୋଇଉଠିଲେ । ଲକ୍ଷ୍ମୀକାନ୍ତ ହେଲେ ସେ ସମସ୍ତଙ୍କର ନେତା । ପିତାଙ୍କର ଚିନ୍ତାର ସୀମା ନାହିଁ । ଲକ୍ଷ୍ମୀକାନ୍ତ ପଢ଼ାରେ ଅଧିକ ମନ ନ ଦେଇ ଖେଳକସରତରେ ସମୟ ନଷ୍ଟ କରୁଛି । ଉପାୟ କ'ଣ ? ସୁନହଟର ବହୁ ଚଗଲା ପିଲା ତା'ର ସାଙ୍ଗ । ସେମାନଙ୍କ କବଳରୁ ତାକୁ ରକ୍ଷା କରିବାକୁ ହେବ ।

ଏତିକିବେଳେ ଭଦ୍ରକରେ ଅଦାଲତ ଖୋଲିଲା । ଘର ପାଖରେ ଘରର ସମ୍ପତ୍ତିବାଡ଼ି ଦେଖାଦେଖି କରିବାକୁ ସୁବିଧା ମଧ୍ୟ ହେବ, ପୁଅ ଦୁଷ୍ଟ ପିଲାଙ୍କ ହାତରୁ ରକ୍ଷା ପାଇବ ଭାବି ଭଗବତବାବୁ ବାଲେଶ୍ୱର ଛାଡ଼ି ଭଦ୍ରକ କୋର୍ଟରେ ଓକିଲାତି କଲେ । ବାଲେଶ୍ୱର ଛାଡ଼ିବାବେଳକୁ ତାଙ୍କର ମାମୁଁ ରାଜାରାମବାବୁ କହିଥିଲେ—ଲକ୍ଷ୍ମୀକାନ୍ତ ସାଧାରଣ ପିଲା ନୁହେଁ ; ଦିନେ ତା'ର ଅସାଧାରଣ ମେଧାର ପ୍ରମାଣ ନିଶ୍ଚୟ ମିଳିବ । ରାଜାରାମବାବୁ ନିଜେ ଜଣେ ସାହିତ୍ୟରସିକ ଓ ସାହିତ୍ୟିକ ଥିଲେ । ସେଇ କେବଳ ଲକ୍ଷ୍ମୀକାନ୍ତଙ୍କ ପ୍ରକୃତ ପରିଚୟ ପାଇ ପାରିଥିଲେ ଏବଂ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଇଥିଲେ । କାହାରି କାହାରି ମତରେ କାନ୍ତକବିଙ୍କର ସାହିତ୍ୟିକ ପ୍ରାଣ ଏଇ ବଂଶର ଉତ୍ତରାଧିକାର । ମାତ୍ର କାନ୍ତକବିଙ୍କର ମାତା ଶ୍ରୀମତୀ ରାଧାମଣି ନିଜେ ଜଣେ ସାହିତ୍ୟରସିକା ମଧ୍ୟ ଥିଲେ । ସେ ସମୟରେ କୌଣସି ବିଦ୍ୟାଳୟ ବା ଚଟଶାଳୀରେ ନ ପଢ଼ି ମଧ୍ୟ ସେ ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ଭାଷାରେ ପ୍ରବୀଣା ହୋଇଥିଲେ । ପ୍ରାଚୀନ ସାହିତ୍ୟ ବିଶେଷତଃ ଅଭିମନ୍ୟୁ, ଭଞ୍ଜ, ଭକ୍ତଚରଣଙ୍କର ପଦାବଳୀ ତାଙ୍କର ପ୍ରାୟ କଣ୍ଠସ୍ଥ ଥିଲା ।

କାନ୍ତକବି ଭଦ୍ରକ ହାଇସ୍କୁଲରେ ପଢ଼ିଲେ । କିନ୍ତୁ ଭଦ୍ରକର ପାଣିପାଗ ତାଙ୍କୁ ଅଧିକ ଅମନଯୋଗୀ କଲା । ଭଦ୍ରକ ଜଗନ୍ନାଥପୁର ଗ୍ରାମ ହେଲା ତାଙ୍କର ଆଡ୍‌ଡା । ସେଠି ସେ ଦଳେ ଯୁବକଙ୍କୁ ଧରି ନାଟକ ଅଭିନୟ ଆରମ୍ଭ କରିଦେଲେ । ସେଥିପାଇଁ ପିତାଙ୍କଠାରୁ ତାଙ୍କୁ ବିଶେଷ ତାଡ଼ନା ସହିବାକୁ ପଡ଼ୁଥିଲା ।

ପରିଶେଷରେ ଭଗବତବାବୁ ତାଙ୍କୁ ପଠେଇଦେଲେ କଟକ—ମାମୁଁ ରାଜାରାମଙ୍କ ପରାମର୍ଶରେ । ସେତେବେଳେ ତାଙ୍କୁ ଚଉଦ କି ପନ୍ଦର ବର୍ଷ ବୟସ । କଟକ ଯିବାପାଇଁ ଦୈବଯୋଗକୁ ଏକ **ସୁବିଧା**

ଜୁଟିଗଲା । ଭଦ୍ରକ ଖଣ୍ଡରେଇ ଗ୍ରାମର ଉମାଚରଣ ଦାସ କାନନବିହାରୀଙ୍କର ବଡ଼ ଭାଇ । ସେ ଉମାଚରଣଙ୍କୁ ବଡ଼ ଭାଇ ବୋଲି ଡାକନ୍ତି । ଉମାଚରଣ ଜଣେ ଗରିବ ମେଧାବୀ ଛାତ୍ର । ଭାଗବତବାବୁଙ୍କ ସହାୟତାରେ ସେ ଭଦ୍ରକ ପାଠ ସାରି କଟକରେ ପଢ଼ିଲେ । ତାଙ୍କର ଜିମାରେ ଭାଗବତବାବୁ ପୁଅକୁ ଛାଡ଼ିଦେଲେ । ଉମାଚରଣ ହେଲେ ତାଙ୍କର କଟକରେ ଅଭିଭାବକ । ୧୯୦୪ ରେ ପ୍ରଥମେ ଶେଖବଜାରସ୍ଥ ସାମନ୍ତ ନିବାସରେ କିଛି ଦିନ ରହିବା ପରେ ଦୁହେଁ ପାକ କଲେଜ ହଷ୍ଟେଲରେ ରହିଲେ । ସେତେବେଳେ ରେଭେନ୍‌ସା କଲେଜ ଓ କଲେଜିଏଟ୍ ସ୍କୁଲ ଏକାଠି ଥିଲା । ହଷ୍ଟେଲର ଗୋଟିଏ ଦୁଇଜଣିଆ କୋଠରୀରେ ଉଭୟେ ରହିଲେ । ଏହିଠାରେ ହିଁ ତାଙ୍କର ଲୁଚିଛପିରେ କବିତା ଲେଖା କଥା ପଦାରେ ପଡ଼ିଯାଇଥିଲା ।

ଥରେ ଉମାଚରଣ ସନ୍ଧ୍ୟାରେ ଏକ ବକ୍ତୃତା ଶୁଣିବାଲାଗି ସଙ୍ଗୀମାନଙ୍କ ସହ ପଦାକୁ ଗଲାବେଳେ ଲକ୍ଷ୍ମୀକାନ୍ତଙ୍କୁ କେତୋଟି ଅଙ୍କ କଷି ରଖିବାକୁ ଦେଇଗଲେ । ହଷ୍ଟେଲକୁ ଫେରୁ ଫେରୁ ବହୁତ ରାତି ହୋଇଗଲା । ସେତେବେଳେ ସେ ଆଉ ଲକ୍ଷ୍ମୀକାନ୍ତଙ୍କୁ କିଛି ନ ପଚାରି ଶୋଇପଡ଼ିଲେ । ପରଦିନ ସକାଳୁ ଉଠି ଅଙ୍କ ହୋଇଛି କି ନା ପଚାରିଲେ । ଲକ୍ଷ୍ମୀକାନ୍ତ କିଛି ଉତ୍ତର ନଦେବାରୁ ତାଙ୍କ ଖାତା ଟାଣିଆଣି ଖୋଲି ଦେଖନ୍ତି ତ ଅଙ୍କ ଫଙ୍କ କିଛି ଦେଖାନାହିଁ । ତା ବଦଳରେ ଦୁଇଟି କବିତା । ଗୋଟିଏ ଓଡ଼ିଆ ଓ ଅନ୍ୟଟି ବଙ୍ଗଳା । ଓଡ଼ିଆ କବିତାଟି ଗୋଟିଏ ଫୁଟ୍‌ବଲ୍ ଖେଳର ବର୍ଣ୍ଣନା ମଧୁ ରାଓଙ୍କ ଛନ୍ଦମାଳାର "ନମେ ମଧୁ ଅନ୍ତେ ଆସଇ ଜଗତେ···" ଛନ୍ଦରେ ଲେଖା ହୋଇଥାଏ । ଅନ୍ୟଟି ଗୋଟିଏ ବଙ୍ଗଳା ଗୀତ । ସ୍କୁଲର କେତେକ ବଙ୍ଗାଳି ପିଲାଙ୍କ ସହ କଳି ଲାଗିଥିଲା । ତାକୁଇ ଅବଲମ୍ବନ କରି ଏ ଗୀତଟି ଲେଖା । ଏଥିରେ ଏହି ପିଲାଗୁଡ଼ିକୁ ବିଦ୍ରୂପ କରାଯାଇଥିଲା । ଉମାଚରଣ ଅଙ୍କକଷା ବଦଳରେ ଏପରି କବିତା କଷା ହୋଇଥିବାର ଦେଖି ରାଗରେ ତାଙ୍କ କାନ ମୋଡ଼ି ଦି'ଚାରିଟା ଚାପୁଡ଼ା ଠୋ ଠା କଷିଦେଲେ । ଲକ୍ଷ୍ମୀକାନ୍ତ ସମ୍ଭାଳି ନ ପାରି କାନ୍ଦିପକାଇଲେ । ସେହି ସମୟରେ ଉତ୍କଳମଣି ଗୋପବନ୍ଧୁ ଦାଶ କଲେଜ ହଷ୍ଟେଲରେ ଆସି ରହିଥିଲେ । ଲକ୍ଷ୍ମୀକାନ୍ତଙ୍କୁ ସେ ଅତ୍ୟଧିକ ସ୍ନେହ କରୁଥିଲେ । ତାଙ୍କୁ କାନ୍ଦୁଥିବାର ଦେଖି ତା ପରଦିନ ଉମାଚରଣଙ୍କୁ କାରଣ ପଚାରିଲେ । ଉମାଚରଣ ଉତ୍କଳମଣିଙ୍କୁ ସବୁ କଥା କହି କବିତା ଦିଓଟି ଦେଖାଇଲେ । କବିତା ଦିଓଟି ପଢ଼ିବାମାତ୍ରେ ଉତ୍କଳମଣି ଉମାଚରଣଙ୍କୁ ତାଗିଦ୍ କରିଦେଇ କହିଲେ—"ଉମାଚରଣ, ଏ ପଦ୍ୟରେ ଯତିପାତ ଠିକ୍ ହୋଇଛି । ବିଶେଷ କିଛି ଦୋଷ ନାହିଁ । ଦେଖ, ତାକୁ ଏଥିପାଇଁ ମାରିବା ଉଚିତ ନୁହେଁ । କଥାରେ କହନ୍ତି—ତୁଳସୀ ଦୁଇ ପତ୍ରରୁ ବାସେ ।" ଉମାଚରଣଙ୍କ ପକ୍ଷେ କବିତା ଛାତ୍ରଜୀବନରେ ନିଷିଦ୍ଧ ଏକ ବିପଦ୍‌ଜନକ ବିଷୟବସ୍ତୁ ଥିଲା । ହଠାତ୍ ତାହା ଦୃଷ୍ଟିରେ ପଡ଼ିଲା । ସେ ଲକ୍ଷ୍ମୀକାନ୍ତଙ୍କୁ ପଚାରିଲେ—"ଆରେ, କବିତା ଲେଖି ଜାଣିଲୁ କେମିତି ?" ଉତ୍ତର ଆସିଲା—"ମୁଁ ସେମିତି ଲେଖିଦିଏଁ ।" ପୁଣି ପ୍ରଶ୍ନ ହେଲା—"ଯତିପାତ କଅଣ ?" କବିତାରେ ଠିକ୍ ଭାବରେ ଯତିପାତ କରାଇଥିଲେ ସୁଦ୍ଧା ଲକ୍ଷ୍ମୀକାନ୍ତ ତାହା ବୁଝାଇ ପାରିଲେ ନାହିଁ । ଯତିପାତ କଅଣ ସେ ଜାଣି ନଥିଲେ । ନବଜାତ ଶିଶୁ ଭୂମିଷ୍ଠ ହେବାମାତ୍ରେ ମାତୃସ୍ତନରୁ ଯେପରି କ୍ଷୀର ପାନ କରିବା ଆରମ୍ଭ କରିଦିଏ, କାନ୍ତକବି ଲକ୍ଷ୍ମୀକାନ୍ତ ଠିକ୍ ସେହିପରି କବିତା ଲେଖା ଆରମ୍ଭ କରିଦେଇଥିଲେ । କବିତାର ସବୁ ଅଙ୍ଗ ରକ୍ତରେ ବହନ କରି ସେ ଜନ୍ମଗ୍ରହଣ କରିଥିଲେ ଯେପରି !

୧୯୦୬ ରେ ଉମାଚରଣବାବୁ ପଢ଼ିବାକୁ କଲିକତା ଚାଲିଗଲେ । ଲକ୍ଷ୍ମୀକାନ୍ତଙ୍କର ସେତେବେଳକୁ ଦାୟିତ୍ୱବୋଧ ଆସିଯାଇଥିଲା । ସେ ଏକୁଟିଆ ହଷ୍ଟେଲ୍‌ରେ ରହି ପାଠ ପଢ଼ିଲେ । କିନ୍ତୁ ତାଙ୍କ ପିତା ଉମାବାବୁଙ୍କ ଅନୁପସ୍ଥିତି ଯୋଗୁଁ ତାଙ୍କୁ ଏକୁଟିଆ କଟକରେ ରଖି ପଢ଼ାଇବାକୁ ଅନିଚ୍ଛୁକ ଥିଲେ । ତେଣୁ ସେ ତାଙ୍କୁ ନିକଟବର୍ତ୍ତୀ ବାଲେଶ୍ୱର ଜିଲ୍ଲାସ୍କୁଲକୁ ନେଇଯାଇଥିଲେ । ୧୯୦୭ ରେ ଏହି ସ୍କୁଲରୁ ସେ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ପାସ୍ କଲେ । ତା'ପରେ କଟକ ରେଭେନ୍‌ସା କଲେଜରେ ପଢ଼ିଲେ ଆଇ. ଏ. । ଆଇ. ଏ. ସାରି ବି. ଏ. ପଢ଼ିବାକୁ ସେ କଲିକତା ଗଲେ । ସେଠାରେ ସେ ରିପନ୍ କଲେଜରେ ନାମ ଲେଖାଇଲେ । ସେ ସମୟରେ କଲିକତାରେ ଥିବା ଓଡ଼ିଆମାନଙ୍କ ପ୍ରତି ବଙ୍ଗାଳିମାନେ ଅତି ହୀନ ଭାବ ପୋଷଣ କରି ବଡ଼ ଦୁର୍ବ୍ୟବହାର କରୁଥିଲେ । ଏଥିଲାଗି ସେଠାରେ ବଙ୍ଗାଳି ଛାତ୍ରମାନଙ୍କ ସହ

ଲକ୍ଷ୍ମୀକାନ୍ତଙ୍କର ବାରମ୍ବାର ଝଗଡ଼ା ଲାଗୁଥିଲା । ଓଡ଼ିଆ ଜାତି ପ୍ରତି ଯେ ଅସୂୟା ପ୍ରକାଶ କରୁଥିଲା ଲକ୍ଷ୍ମୀକାନ୍ତ ତାକୁ ନାନା ବ୍ୟଙ୍ଗୋକ୍ତିରେ ମର୍ମାହତ କରିଦେଉଥିଲେ । ଫଳତଃ ତାଙ୍କ ସହିତ ଉଦ୍ଧତ ବଙ୍ଗାଳି ଯୁବକମାନଙ୍କର ସର୍ବଦା ମନୋମାଳିନ୍ୟ ଲାଗି ରହିଥିଲା ।

ଲକ୍ଷ୍ମୀକାନ୍ତ ରେଭେନ୍‌ସା କଲେଜରେ ପଢୁଥିବାବେଳେ ଯଥେଷ୍ଟ ଛାତ୍ରସଂଖ୍ୟାର ଅଭାବ ହେତୁ ପଦାର୍ଥ ବିଜ୍ଞାନ ଶ୍ରେଣୀ ଉଠିଯିବାର କଥା ଉଠିଲା । ପଦାର୍ଥ ବିଜ୍ଞାନର ଅଧ୍ୟାପକ ଦିନେ ଛାତ୍ରମାନଙ୍କୁ ଏକତ୍ର କରାଇ କହିଲେ ଯେ କଲେଜରେ ଆବଶ୍ୟକୀୟ ଛାତ୍ରସଂଖ୍ୟା ଅଭାବରୁ ପଦାର୍ଥ ବିଜ୍ଞାନ ଉଠିଯାଉଅଛି । ଯଦି କେହି ଅନୁରକ୍ତ ଛାତ୍ର ଉକ୍ତ ବିଷୟ ନେବାପାଇଁ ବାହାରିପଡ଼ନ୍ତେ ତେବେ ତାହା ଆଉ ଉଠିଯାଆନ୍ତା ନାହିଁ । ଏ କଥା ଶୁଣି ଲକ୍ଷ୍ମୀକାନ୍ତ ପ୍ରଥମେ ବାହାରିପଡ଼ିଲେ । ପ୍ରଥମ ବାର୍ଷିକ ଶ୍ରେଣୀରେ ତାଙ୍କର ଅଙ୍କ ଥିଲା । ତଥାପି ସେ ଦ୍ୱିତୀୟ ବର୍ଷରେ ପଦାର୍ଥ ବିଜ୍ଞାନ ଗ୍ରହଣ କଲେ । ପ୍ରଥମ ବାର୍ଷିକ ଶ୍ରେଣୀରେ ପଦାର୍ଥ ବିଜ୍ଞାନ ବିଷୟ ସେ କିଛି ଜାଣିନଥିଲେ । ଦୁଇ ବର୍ଷର ପାଠ ଏକାବର୍ଷକେ ସାରିଦେବା ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ଯାହା ବା ସମ୍ଭବ ହୋଇଥାନ୍ତା ତାହା ତାଙ୍କର ଟେନିସ୍, କ୍ରିକେଟ୍ ଆଦି କ୍ରୀଡ଼ାରେ ଅଧିକ ସମୟ ବ୍ୟୟ କରିବା ଫଳରେ ହେଲା ନାହିଁ । ଫଳତଃ ସେ ଆଇ. ଏ. ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଗୋଟିଏ ବର୍ଷ ଅକୃତକାର୍ଯ୍ୟ ହେଲେ । ପଦାର୍ଥ ବିଜ୍ଞାନ ବିଷୟଟିକୁ କଲେଜରୁ ଲୋପ କରାଇ ନ ଦେବାକୁ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସେ ତାଙ୍କ ମୂଲ୍ୟବାନ ଛାତ୍ରଜୀବନନ୍ର ଗୋଟିଏ ବର୍ଷ ଜାଣି ଜାଣି ନଷ୍ଟ କରିଦେଲେ । ଅବଶ୍ୟ ଦ୍ୱିତୀୟ ଥର ଅର୍ଥାତ୍ ୧୯୧୧ରେ ସେ ଆଇ. ଏ. ପାଶ୍ କରିଥିଲେ ।

ଶ୍ରୀଯୁକ୍ତ ବି. ଭି. ଗୁପ୍ତ ଏହି ସମୟରେ କଲେଜର ଅଧ୍ୟକ୍ଷ ଥିଲେ । ତାଙ୍କ ଅମଳରେ କଲେଜ ଛାତ୍ରମାନଙ୍କ ମଧ୍ୟରେ ଟିକିଏ ଦେଶାତ୍ମବୋଧ ଦେଖାଦେବାରୁ କର୍ତ୍ତୃପକ୍ଷ ତାଙ୍କୁ ପେନ୍‌ସନ୍ ଦେଇ ତାଙ୍କ ସ୍ଥାନରେ ଜଣେ ଶ୍ୱେତାଙ୍ଗ ସାହେବଙ୍କୁ ଅଧ୍ୟକ୍ଷଭାବେ ଅଣାଇଥିଲେ । ସେ ମଧ୍ୟ ଜଣେ ଛାତ୍ର-ବତ୍ସଳ, ମିଷ୍ଟଭାଷୀ ଓ ମେଳାପୀ ଅଧ୍ୟକ୍ଷ ଥିଲେ । ଛାତ୍ରମାନଙ୍କ ମଧ୍ୟରେ ଯାହାର ଯେଉଁ ବିଷୟରେ ଟିକିଏ ସ୍ୱତନ୍ତ୍ରତା ଦେଖାଯାଉଥିଲା, ତାକୁ ସେ ସେହି ନାମରେ ଡାକୁଥିଲେ । ଏହାଦ୍ୱାରା କେହି କେହି କବି, ଶିଳ୍ପକର, ଓକିଲ, ନାଟ୍ୟକାର ଆଦି ନାମ ପାଇଥିଲେ । ଲକ୍ଷ୍ମୀକାନ୍ତଙ୍କର କବିତାରେ ପ୍ରତିଭା ଥିବାର ଜାଣି ସେ ତାଙ୍କୁ "ପୋଏଟ୍ ଲରେଟ୍" ବୋଲି ଡାକୁଥିଲେ ।

୧୯୧୨ରେ ତତ୍କାଳୀନ ସମ୍ରାଟ୍ ପଞ୍ଚମ ଜର୍ଜଙ୍କର ଅଭିଷେକୋତ୍ସବ ଉପଲକ୍ଷେ ଆମୋଦ-ପ୍ରମୋଦ କରିବାକୁ ପ୍ରଚୁର ଅର୍ଥ ମିଳିଥିଲା । ଅନ୍ୟାନ୍ୟ ଆମୋଦ-ପ୍ରମୋଦ ସହି ଓଡ଼ିଆ ନାଟକଟିଏ ମଞ୍ଚସ୍ଥ କରାଇବାକୁ ସ୍ଥିର କରାଯାଇ-ଥିଲା । ଏଥିପୂର୍ବରୁ କଟକରେ ଓଡ଼ିଆ ନାଟକ କେବେହେଲେ ମଞ୍ଚସ୍ଥ କରାଯାଇ ନଥିଲା । ଓଡ଼ିଆ ଭାଷାରେ ଥିଏଟର କରିବା ସମ୍ଭବପର ନୁହେଁ ବୋଲି ସେତେବେଳେ ଲୋକଙ୍କର ଗୋଟିଏ ଭ୍ରମ ଧାରଣା ରହିଥିଲା । ଅଧିକାଂଶ ଲୋକଙ୍କ ମତରେ କଲେଜ ଛାତ୍ରମାନେ ଏକ ଦୁଃସାହସିକ ପଦକ୍ଷେପ ନେବାକୁ ଆଗଭର ହୋଇ ବାହାରିପଡ଼ିଥିଲେ । ରାମଶଙ୍କରଙ୍କ କାଞ୍ଚି-କାବେରୀ ନାଟକ ଅଭିନୀତ ହେବାର ସ୍ଥିର କରାଗଲା । ଅଭିନୟ ଓ ସଙ୍ଗୀତ-ନିର୍ଦ୍ଦେଶନାର ଭାର ଯଥାକ୍ରମେ ଗୋବିନ୍ଦଚନ୍ଦ୍ର ଶୂରଦେଓ ଓ ଲକ୍ଷ୍ମୀକାନ୍ତଙ୍କ ଉପରେ ପଡ଼ିଥିଲା । ଏଥିରେ ରାଜା ପୁରୁଷୋତ୍ତମ ଦେବ ଭୂମିକାରେ ୰ଚିନ୍ତାମଣି ଆଚାର୍ଯ୍ୟ, କାଞ୍ଚି ରାଜକେମା ପଦ୍ମାବତୀ ଭୂମିକାରେ ସଚ୍ଚିଦାନନ୍ଦ ରାୟ (ପରେ ଡି. ପି. ଆଇ.) କଞ୍ଚୁକୀ ଭୂମିକାରେ ୰ଆର୍ତ୍ତବଲ୍ଲଭ ମହାନ୍ତି ଅଭିନୟ କରିଥିଲେ । ସଙ୍ଗୀତ ରଚନା ତଥା ସ୍ୱର ସଂଯୋଜନାରେ ଲକ୍ଷ୍ମୀକାନ୍ତ ସିଦ୍ଧ ଥିବାରୁ ତାଙ୍କୁ ଏ ଅଭିନୟରେ କେତେଗୋଟି ଗୀତ ଏକକ ଭୂମିକାରେ ବୋଲିବାକୁ ପଡ଼ିଥିଲା । କେତେ-ବେଳେ ରାମତାଳି ବଜାଇ ଭିକାରୁଣୀ ବେଶରେ, କେତେବେଳେ ଏକତାରା ବଜାଇ ଭଦ୍ରା ବେଶରେ ସେ ଗୀତ ଗାଇଥିଲେ । ପ୍ରତ୍ୟେକ ଥର ଦର୍ଶକମଣ୍ଡଳୀରୁ ପୁନର୍ଗାୟନ-ଅନୁରୋଧର ବର୍ଷଣ ହେଉଥିଲା । ଏହି ଅଭିନୟରେ ଆଉ ଗୋଟିଏ କୌତୁକାବହ ଘଟଣା ଘଟିଥିଲା । ରାଜା ପୁରୁଷୋତ୍ତମ ଦେବଙ୍କ ଦରବାରରେ ଗୋଟିଏ ନର୍ତ୍ତକୀ ନୃତ୍ୟ କରିବାର ଥିଲା । ନୃତ୍ୟ କେହି ଜାଣି ନଥିବାରୁ ସେ ଅଂଶଟି ବାଦ ଦିଆଯାଇଥିଲା । କିନ୍ତୁ ଗୁପ୍ତରେ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ଓ ଲକ୍ଷ୍ମୀକାନ୍ତ ଏହା କରାଇବାକୁ ସ୍ଥିର କରିଥିଲେ । ଅଭିନୟବେଳେ ଦର୍ଶକମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେଖିଲେ ଯେ ଗୋଟିଏ ଅନନ୍ୟ-ସୁନ୍ଦରୀ ବାଳିକା ରାଜା ପୁରୁଷୋତ୍ତମ ଦେବଙ୍କ ଆଗରେ

ଆକର୍ଷକ ନୃତ୍ୟ କରୁଛନ୍ତି । କଲେଜ ଛାତ୍ରମାନେ ଯେ ଏକ ବାରାଙ୍ଗନାକୁ ପବିତ୍ର ଶିକ୍ଷାନୁଷ୍ଠାନରେ ଭର୍ତ୍ତି କରି ଏପରି ଗର୍ହିତ କାର୍ଯ୍ୟ କରିଛନ୍ତି, ଏଥିରେ କାହାରି ସନ୍ଦେହ ରହିଲା ନାହିଁ । ଅଧ୍ୟକ୍ଷ ସି’ ସାହେବଙ୍କ ପାଖରେ ଏଥିପାଇଁ ଉପଯୁକ୍ତ ଅନୁସନ୍ଧାନ ଓ ଛାତ୍ରମାନଙ୍କ ପ୍ରତି ବିହିତ ଦଣ୍ଡବିଧାନ କରିବାପାଇଁ ଦାବି ଉପସ୍ଥାପିତ କରାଗଲା । ଅନୁସନ୍ଧାନ ପରେ ଜଣାପଡ଼ିଲା ଯେ ସେହି ତଥାକଥିତ ବାରାଙ୍ଗନା ନର୍ତ୍ତକୀ ଲକ୍ଷ୍ମୀକାନ୍ତଙ୍କ ଛଡ଼ା ଅନ୍ୟ କେହି ନୁହେଁ । ସେ ଯେ କେବଳ ଜଣେ କବି ଓ ଗାୟକ ଥିଲେ ତାହା ନୁହେଁ, ନୃତ୍ୟରେ ମଧ୍ୟ ତାଙ୍କର ପଟୁତା ଥିଲା ।

କଲେଜ ଛାତ୍ରାବାସ ଜୀବନରେ ଲକ୍ଷ୍ମୀକାନ୍ତ ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଥିଲେ । ଉପର ତଥା ତଳ ଶ୍ରେଣୀର ଛାତ୍ରମାନଙ୍କ ସହିତ ଅନାୟାସରେ ସେ ସମ୍ପୂର୍ଣ୍ଣରୂପେ ମିଶି ପାରୁଥିଲେ । ସେ ଅନ୍ୟମାନଙ୍କୁ ଯେପରି ବ୍ୟଙ୍ଗ କରୁଥିଲେ, ଅନ୍ୟମାନଙ୍କର ବ୍ୟଙ୍ଗ ବିଦ୍ରୂପକୁ ସେହିପରି ହସି ହସି ହଜମ କରିପାରୁଥିଲେ । ରଙ୍ଗରସର ଗ୍ରହଣ ତଥା ବିତରଣରେ ସେ ଅତ୍ୟନ୍ତ ପଟୁ ଥିଲେ । ଅରସିକ କେତେକ ଛାତ୍ର ବେଳେ ବେଳେ ତାଙ୍କ ବ୍ୟଙ୍ଗରେ କ୍ଷୁବ୍ଧ ହେଉଥିଲେ ; କିନ୍ତୁ କେହି କେବେ ଲକ୍ଷ୍ମୀକାନ୍ତଙ୍କୁ ଅନ୍ୟମାନଙ୍କ ବ୍ୟଙ୍ଗ ବିଦ୍ରୂପ ଦ୍ୱାରା କ୍ଷୁବ୍ଧ ହେବାର ଦେଖିନାହିଁ । ତାଙ୍କ ଭିତରେ କ୍ରୋଧ ପାଇଁ ଟିକିଏ ହେଲେ ସ୍ଥାନ ନ ଥିଲା । ହାସ୍ୟରସର ସେ ଏକ ଅସରନ୍ତି ଉତ୍ସ ଥିଲେ । ତାଙ୍କ ଛାତ୍ରବନ୍ଧୁମାନଙ୍କ ମଧ୍ୟରେ କୃଷ୍ଣପ୍ରସାଦ ବସୁ, ଗୋକୁଳାନନ୍ଦ ନାୟକ, ବାଞ୍ଛାନିଧି ମହାନ୍ତି, ଉଦୟନାଥ ଗଡ଼ନାୟକ, ବାଙ୍କନିଧି ପଟ୍ଟନାୟକ, ଚିନ୍ତାମଣି ଆଚାର୍ଯ୍ୟ ଆଦି ପ୍ରଧାନ ଥିଲେ ।

ଥରେ ଲକ୍ଷ୍ମୀକାନ୍ତ ନିତ୍ୟକର୍ମ ସାରିବାକୁ ବାହାରକୁ ଗଲେ । ତାଙ୍କ ଟେବୁଲ ଉପରେ ଜଳଖିଆ ଡବା ଥୁଆ ହୋଇଥିଲା । କୃଷ୍ଣପ୍ରସାଦ ବସୁ ଓ ଅନ୍ୟ କେତେଜଣ ଲକ୍ଷ୍ମୀକାନ୍ତଙ୍କୁ ଏହି ଅବସରରେ ଥଣ୍ଡିଆ କରିବାକୁ ମନସ୍ଥ କଲେ । ଛାତ୍ରାବାସ ନୂଆ ଧାଉଡ଼ି ଘରର ଭଣ୍ଡାରଘରୁ ଗୋଟିଏ ମଲା ମୂଷା ବାହାର କରାଯାଇଥିଲା । ସମସ୍ତେ ପ୍ରସ୍ତାବ କଲେ, ଏ ମଲା ମୂଷାକୁ ଲକ୍ଷ୍ମୀକାନ୍ତଙ୍କ ପକେଟ ଭିତରେ ରଖିଦେବେ । କିନ୍ତୁ କୃଷ୍ଣପ୍ରସାଦ ବସୁଙ୍କ ମୁଣ୍ଡରେ ଆଉ ଗୋଟିଏ ଉପାୟ ଖେଳିଗଲା । ସେ ଜଳଖିଆ ଡବାରୁ ସମସ୍ତ ଜଳଖିଆ ଗର୍ଦ୍ଦିସ୍ଥ କରିଦେଇ ସେ ମଲା ମୂଷାଟିକୁ ତା’ରି ଭିତରେ ଥୋଇଦେଲେ । ନିତ୍ୟକର୍ମ ସାରି ଲକ୍ଷ୍ମୀକାନ୍ତ ମୁହଁ ହାତ ଧୋଇଲେ ଓ ଖାଇବା ଲାଗି ଡବା ଖୋଲିଲେ । ଅଦୂରରେ ସମସ୍ତେ ତାଙ୍କ ପ୍ରତିକ୍ରିୟା ଲକ୍ଷ୍ୟ କରିବାକୁ ଛପି ରହିଥାନ୍ତି । ଉଣା ଅଧିକେ ସମସ୍ତେ ତାଙ୍କର ବିରକ୍ତି ଓ କ୍ରୋଧର ଆଶଙ୍କା କରୁଥିଲେ । କିନ୍ତୁ ହଠାତ୍ ଲକ୍ଷ୍ମୀକାନ୍ତଙ୍କର ଠୋ ଠୋ ହସ ଓ ପ୍ରାଣଖୋଲା ଆନନ୍ଦ ଦେଖି ସମସ୍ତେ ହତବାକ୍ ହୋଇଗଲେ । ରସିକ ଲକ୍ଷ୍ମୀକାନ୍ତ କୁତ୍ସିତ ରହସ୍ୟକୁ ମଧ୍ୟ ଅବଲୀଳାକ୍ରମେ ଗ୍ରହଣ କରିଗଲେ ।

ଲକ୍ଷ୍ମୀକାନ୍ତଙ୍କ ବିବାହିତ ଜୀବନର ଆରମ୍ଭ ଅତି ବୈଚିତ୍ର୍ୟମୟ ଓ ରୋମାଞ୍ଚକର । ବାଲେଶ୍ୱର ସହର ସୁନହାଟର ଜମିଦାର ପ୍ରସିଦ୍ଧ ସାମନ୍ତ ପରିବାରର ଲାଲମୋହନ ଦାସ ଭାଗବତବାବୁଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ବନ୍ଧୁ ଥିଲେ । କାର୍ଯ୍ୟାନ୍ତରରେ ଭାଗବତବାବୁ ବାଲେଶ୍ୱର ଗଲେ ବେଳେ ବେଳେ ଲାଲମୋହନବାବୁଙ୍କ ଘରେ ରହୁଥିଲେ । ଲାଲ-ମୋହନବାବୁଙ୍କ ଝିଅ ଲବଙ୍ଗଲତା ସେତେବେଳେ ଏକ ଶିଶୁ ବାଳିକା । ଅତ୍ୟନ୍ତ ସ୍ନେହରେ ଭାଗବତବାବୁ ତାଙ୍କୁ କାଖେଇ କୁଣ୍ଢେଇ ଆଦର କରନ୍ତି । ପ୍ରତ୍ୟେକ ଥର ବାଲେଶ୍ୱର ଗଲାବେଳେ ସେ ବାଳିକା ଲବଙ୍ଗଲତାଙ୍କ ପାଇଁ ଖେଳନା, ଖଜା, ମିଠେଇ ଓ ନାନା ମନୋହାରୀ ଜିନିସ ସାଙ୍ଗରେ ଧରି ଆସୁଥିଲେ । ତାଙ୍କୁ ଅତି ଆଦରରେ କୋଳ କରି ନିଜର ବୋହୂ କରିବେ ବୋଲି କହୁଥାନ୍ତି । ଯୁବକ ଲକ୍ଷ୍ମୀକାନ୍ତ ମଧ୍ୟ ପିତାଙ୍କ ସହ ବେଳେବେଳେ ଲାଲ-ମୋହନବାବୁଙ୍କ ଘରକୁ ଯାଉଥିଲେ । ଲବଙ୍ଗଲତାଙ୍କ ପ୍ରତି ତାଙ୍କର ସହଜ ସ୍ୱାଭାବିକ ଆକର୍ଷଣ ଥିଲା । ପୁଷ୍ପ ନିକଟରେ ଭ୍ରମର ଗୁଞ୍ଜନ କଲାପରି ସେ ତାଙ୍କୁ ଗୀତ ଶୁଣାଉଥିଲେ । ବେଳେବେଳେ ଚପଳତାଧିକ୍ୟବଶତଃ ନାଚୁଥିଲେ ମଧ୍ୟ । ବାଳିକା ଲବଙ୍ଗଲତା ହସରେ ସେତେବେଳେ ଗଡ଼ିଯାଉଥିଲେ । କ୍ରମେ ବାଳିକା ଲବଙ୍ଗଲତା କୈଶୋରରେ ପଦାର୍ପଣ କଲେ । ଲକ୍ଷ୍ମୀକାନ୍ତଙ୍କ ସହ ତାଙ୍କର ବିବାହ ପ୍ରସ୍ତାବ ଥିବାର ଜାଣି ସେ ଟିକିଏ ଲଜ୍ଜା ଓ ସଙ୍କୋଚ ପ୍ରକାଶ କଲେ । ସେତେବେଳେ ଯୁବକଯୁବତୀମାନଙ୍କର ବିବାହ ପୂର୍ବରୁ ଅବାଧ ମିଳାମିଶା କଳ୍ପନାତୀତ ଥିଲା । ଲବଙ୍ଗଲତାଙ୍କ ନିକଟରେ ଲକ୍ଷ୍ମୀକାନ୍ତଙ୍କର ଆଉ ଗୀତ ଗାଇବା ବା ନାଚିବା ସମ୍ଭବ ହେଲାନାହିଁ । ସଂଯମ ଉଭୟଙ୍କୁ ପଛରୁ ଟାଣି ରଖିଲା । ଅବ୍ୟକ୍ତ ବେଦନାରେ ଲକ୍ଷ୍ମୀକାନ୍ତ ଦଗ୍ଧ ହେବାକୁ ଲାଗିଲେ । କଲେଜ ଛାତ୍ରା-ବାସରେ ସମସ୍ତେ ଏହାର ପ୍ରତିକ୍ରିୟା ଲକ୍ଷ୍ୟ କଲେ । କବିତା କାଗଜ, ବହି, ଟେବୁଲ ଓ ଅନ୍ୟାନ୍ୟ ଆସବାବପତ୍ରରେ

ଲବଙ୍ଗଲତାଙ୍କର ନାମୋଲ୍ଲେଖ ଛାତ୍ରବନ୍ଧୁମାନଙ୍କର କୌତୂହଳ ସୃଷ୍ଟି କଲା ! ଏଣେ କନ୍ୟା ବିବାହ-ଯୋଗ୍ୟା ହେବାରୁ ଲାଲମୋହନବାବୁ ଭଗବତବାବୁଙ୍କୁ ବିବାହକାର୍ଯ୍ୟ ସାରିଦେବାକୁ ଅନୁରୋଧ କଲେ । ପୁତ୍ର ଲକ୍ଷ୍ମୀକାନ୍ତଙ୍କର ଏହାଦ୍ୱାରା ପଢ଼ାପଢ଼ିରେ ବ୍ୟାଘାତ ଆସିବାର ଆଶଙ୍କା କରି ସେ ସମୟ ଗଡ଼ାଇବାକୁ ଲାଗିଲେ ! କିନ୍ତୁ ଲାଲ-ମୋହନବାବୁ ଆଉ ଅଧିକ କାଳ ଅପେକ୍ଷା କରିପାରିବେ ନାହିଁ ବୋଲି ଜଣାଇ ଅନ୍ୟତ୍ର ବର ଅନୁସନ୍ଧାନ କରିବା ପାଇଁ ଭଗବତବାବୁଙ୍କୁ ଅନୁମତି ମାଗିଲେ । ଏ ଖବର ଲକ୍ଷ୍ମୀକାନ୍ତଙ୍କୁ ଆଉ ଅଛପା ରହିଲା ନାହିଁ । ହୃଦୟରେ ସେ ଦାରୁଣ ବ୍ୟଥା ଅନୁଭବ କଲେ । ସେହି ସମୟରେ ତାଙ୍କର କବିପ୍ରତିଭାର ସ୍ଫୁରଣ ଅତି ବିସ୍ମୟଜନକ ଭାବରେ ବୃଦ୍ଧି ପାଇଲା ।

'ମୁକୁର' ସମ୍ପାଦକ ବ୍ରଜସୁନ୍ଦର ଦାସ ଅତ୍ୟନ୍ତ ଛାତ୍ରବତ୍ସଳ ଥିବାରୁ କଲେଜ ପିଲାଏ ବରାବର ତାଙ୍କ ନିକଟକୁ ଯିବାଆସିବା କରୁଥିଲେ । ସମ୍ପାଦକ ଭାବରେ ବ୍ରଜସୁନ୍ଦରବାବୁ କଲେଜ ଛାତ୍ରଙ୍କୁ ଲେଖାଲେଖି କରିବାକୁ ଉତ୍ସାହିତ କରୁଥିଲେ । ଲକ୍ଷ୍ମୀକାନ୍ତଙ୍କର କବିତା କ୍ରମେ ତାଙ୍କର ଦୃଷ୍ଟି ଆକର୍ଷଣ କଲା ଏବଂ ଅତି ଆଗ୍ରହରେ ସେ ସେଗୁଡ଼ିକୁ ମୁକୁରରେ ସ୍ଥାନ ଦେଲେ । ପ୍ରତିଭା ସ୍ଥଳବିଶେଷରେ ଆବଦ୍ଧ ହୋଇ ରହିପାରେ ନାହିଁ । ପୁଷ୍ପର ସୌରଭ ପରି ଏହା ପରିବ୍ୟାପ୍ତିଶୀଳ । ମୁକୁରର ଲେଖାସବୁ ପଢ଼ି 'ଉତ୍କଳସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ଲକ୍ଷ୍ମୀକାନ୍ତଙ୍କ ପ୍ରତି ଆକୃଷ୍ଟ ହେଲେ ଓ ତାଙ୍କୁ ଉତ୍କଳସାହିତ୍ୟ ପାଇଁ ଧାରାବାହିକ ଭାବରେ ଲେଖା ଦେବାକୁ ଅନୁରୋଧ କଲେ । ଏ ଦୁଇଟି ପତ୍ରିକାରେ ବିରହୀ ଛାତ୍ର ଲକ୍ଷ୍ମୀକାନ୍ତ ଲେଖାଲେଖି କରି ଭଗ୍ନୋନ୍ମୁଖ ହୃଦୟରୁ କିଞ୍ଚିତ୍ ବ୍ୟଥା ଲାଘବ କରିବାରେ ଲାଗିଲେ । ମୁକୁରରେ ପ୍ରକାଶିତ ଏକ କବିତା ଓ ଉତ୍କଳ ସାହିତ୍ୟରେ ପ୍ରକାଶିତ 'ପ୍ରତିଦାନ' ଗଳ୍ପ ବ୍ୟାସକବି ଫକୀରମୋହନ ସେନାପତିଙ୍କର ଦୃଷ୍ଟି ଆକର୍ଷଣ କଲା । ୧୯୧୦ରେ ସେ କଟକ ଆସି ଶେଖବଜାରସ୍ଥ ସାମନ୍ତ ନିବାସରେ ଅବସ୍ଥାନ କରୁଥିଲେ । ଲକ୍ଷ୍ମୀକାନ୍ତ ହରେକୃଷ୍ଣ ସାମନ୍ତ ଓ ଅନ୍ୟାନ୍ୟ କେତେଜଣ ବନ୍ଧୁଙ୍କ ସହ କଲେଜ ହଷ୍ଟେଲରୁ ତାଙ୍କ ସହିତ ଦେଖା କରିବାକୁ ଗଲେ । ଲକ୍ଷ୍ମୀକାନ୍ତଙ୍କୁ ସେ ଆଗରୁ ଜାଣିଥିଲେ; ମାତ୍ର ମୁକୁର ଓ ଉତ୍କଳସାହିତ୍ୟର ଲେଖା ତାଙ୍କ ପ୍ରତି ତାଙ୍କର ସ୍ନେହକୁ ଦ୍ୱିଗୁଣିତ କରିଦେଇଥିଲା । ଦେଖିବାମାତ୍ରେ ସେ ତାଙ୍କୁ ସ୍ନେହାତିଶଯ୍ୟରେ କୁଣ୍ଢାଇ ପକାଇ କପାଳରେ ଦାଢ଼ି ଘଷି ପକାଇଲେ ଓ ଆବେଗର ସହିତ କହିଲେ—"ଲେଖିଯା, ଲେଖିଯା; ସୁନା ରହିଯିବ, ଖାଦ ପାଉଁଶ ହୋଇଯିବ କାଳାଗ୍ନିରେ ।" ବିଶେଷରେ ଆଶୀର୍ବାଦ କରିଥିଲେ—"ଫୁଲଚନ୍ଦନ ପଡ଼ୁ ତୋ ଲେଖନୀରେ—ଆଶୀର୍ବାଦ କରୁଛି ।" ମୁକୁର ଓ ଉତ୍କଳସାହିତ୍ୟରେ ବାହାରିଥିବା ଲେଖା କଥା ଉଠାଇ ସେ ପୁଣି କହିଲେ—"ତୁ ଯାହା ଲେଖିଛୁ, କଳ୍ପନା ଦ୍ୱାରା ହୋଇ ନ ପାରେ । ଯାହାର ପ୍ରାଣରେ ବାସ୍ତବ ଅନୁଭୂତି ଘଟିଛି ସେହି କେବଳ ଏଭଳି ଲେଖା ଲେଖିପାରେ ।" ଲକ୍ଷ୍ମୀକାନ୍ତ ଲଜ୍ଜାରେ ମୁଖ ଅବନତ କଲେ । ସଙ୍ଗୀ ହରେକୃଷ୍ଣ ସାମନ୍ତ ସାହସ ସଞ୍ଚୟ କରି କହିଲେ—"ଏ ସବୁ ଲେଖା ପଛରେ ବାସ୍ତବ ଘଟଣା ଅଛି ।"

ବ୍ୟାସକବି ତାହା ଜାଣିବାକୁ ଜିଗର କରିବାରୁ ହରେକୃଷ୍ଣବାବୁ ସମସ୍ତ ଘଟଣା ବର୍ଣ୍ଣନା କରି କହିଲେ ଯେ ଲକ୍ଷ୍ମୀକାନ୍ତଙ୍କର ପଢ଼ାପଢ଼ିରେ ବ୍ୟାଘାତ ହେବ ବୋଲି ଭାବି ଭଗବତବାବୁ ତାଙ୍କର ଲବଙ୍ଗଲତାଙ୍କ ସଙ୍ଗେ ବିବାହ ପ୍ରସ୍ତାବକୁ ଭାଙ୍ଗି ଦେଉଛନ୍ତି । ଏହା ଲକ୍ଷ୍ମୀକାନ୍ତଙ୍କ ହୃଦୟରେ ଦାରୁଣ ଆଘାତ ଦେଇଛି ।

ଏସବୁ ଶୁଣି ବ୍ୟାସକବି ବ୍ୟଥିତ ହେବା ସଙ୍ଗେ ସଙ୍ଗେ ବଡ଼ କୌତୂହଳ ଅନୁଭବ କରି କହିଲେ—"ଏଥର ଗଲେ ଭଗବତର କାନ ମୋଡ଼ି ସବୁ ଠିକ୍ କରିଦେବି ।"

ଭଗବତବାବୁଙ୍କ ଉପରେ ବ୍ୟାସକବି ଯେଉଁ ପ୍ରଭାବ ପକାଇଲେ ସେଥିରେ ଲକ୍ଷ୍ମୀକାନ୍ତଙ୍କ ସହିତ ଲବଙ୍ଗଲତାଙ୍କର ବିବାହ ଅତି ଶୀଘ୍ର ସମ୍ପନ୍ନ ହୋଇଗଲା । ବିରହୀ କବି ଲକ୍ଷ୍ମୀକାନ୍ତଙ୍କର ହୃଦୟ ଶାନ୍ତଶୀତଳ ହେଲା । ପ୍ରେମିକ ଲକ୍ଷ୍ମୀକାନ୍ତଙ୍କର ଲେଖନୀ ଆହୁରି ଚଞ୍ଚଳ ହୋଇଉଠିଲା । ସାହିତ୍ୟିକ, ସାହିତ୍ୟପ୍ରେମୀ, ସମ୍ପାଦକ ଓ ପାଠକମାନେ ଅତି ଆଦରରେ ଓ ଆପଣାର କରିବାପାଇଁ "ଲକ୍ଷ୍ମୀକାନ୍ତ କବି" ପରିବର୍ତ୍ତେ "କାନ୍ତକବି" ନାମରେ ତାଙ୍କୁ ଅଭିହିତ କଲେ । ମାତ୍ର ସେତେବେଳେ ସେହି କଲେଜ ଜୀବନରେ ହିଁ ତାହା ଲୋପ ପାଇଗଲା । ୧୯୩୪ ମସିହାରେ କାନ୍ତକବି ସମ୍ବର୍ଦ୍ଧନା କରି ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଏହି ନାମର ପୁନରୁଦ୍ଧାର କରିଥିଲେ ।

ଛାତ୍ରଜୀବନ ତାଙ୍କର ସମାପ୍ତ ହୋଇ ନଥାଏ । ରେଭେନ୍‌ସା କଲେଜର ତୃତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କଲାବେଳେ ୧୯୧୨ ରେ ତାଙ୍କର ଗୋଟିଏ ପୁତ୍ରସନ୍ତାନ ଜାତ ହେଲା । ମାତ୍ର ସେ ଯେପରି ନିର୍ଲିପ୍ତ । ସେ ସମୟରେ ସାହିତ୍ୟ ପରିବେଷଣ ପାଇଁ ଦୁଇଟି ଶିବିର ଥିଲା । ଗୋଟିଏ ଶିବିରର ସେନାପତି ଥିଲେ 'ଉତ୍କଳ-ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ଓ ଅନ୍ୟଟିର ସେନାପତି ଥିଲେ 'ମୁକୁର'ର ସମ୍ପାଦକ ବ୍ରଜସୁନ୍ଦର ଦାସ । 'ମୁକୁର', 'ଉତ୍କଳ ସାହିତ୍ୟ'ର ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା କରୁଥିଲା । କାନ୍ତକବିଙ୍କୁ କେନ୍ଦ୍ର କରି ଉଭୟ ପତ୍ରିକା ମଧ୍ୟରେ ଟିକିଏ ଭିଡ଼ା ଓଟରା ଲାଗିଯାଇଥିଲା । ମୁକୁରରେ ପ୍ରକାଶ ପାଉଥିବା କାନ୍ତକବିଙ୍କର ଲେଖାରେ ମୁଗ୍ଧ ହୋଇ ବିଶ୍ୱନାଥ କର ତାଙ୍କୁ ସମସ୍ତ ଲେଖା 'ଉତ୍କଳ ସାହିତ୍ୟ'କୁ ପଠାଇବାକୁ ବାରମ୍ବାର ଅନୁରୋଧ କରିଥିଲେ । ଏଣେ ବ୍ରଜସୁନ୍ଦର ବାବୁ ତାଙ୍କୁ ଏପରି ସ୍ନେହଡୋରିରେ ବାନ୍ଧି ଦେଇଥାନ୍ତି ଯେ ତାହା ଛିନ୍ନ କରିବା ତାଙ୍କ ପକ୍ଷେ ଦୁଃସାଧ୍ୟ ଥିଲା । ଫଳତଃ କାନ୍ତକବି ଧାରାବାହିକ ଭାବରେ ଉଭୟ ପତ୍ରିକାକୁ ଲେଖା ଦେଲେ । ଏଥିରେ ତାଙ୍କର ଲେଖକ-ଜୀବନ ପରିପୁଷ୍ଟ ହୋଇଉଠିଥିଲା ।

କାନ୍ତକବିଙ୍କର ଛାତ୍ରଜୀବନ କେବଳ ଯେ କବିଧର୍ମୀ ଥିଲା ତାହା ନୁହେଁ ; ସେ ଜଣେ ସମାଜସେବୀ ମଧ୍ୟ ଥିଲେ । କଲେଜ ଅଧ୍ୟାପକ ହେମଚନ୍ଦ୍ର ସରକାରଙ୍କ ଉଦ୍ୟମରେ କେତେଜଣ ଛାତ୍ରଙ୍କୁ ନେଇ ଗୋଟିଏ ସମାଜସେବୀ ଦଳ ଗଢ଼ାଯାଇଥିଲା । କାନ୍ତକବି ଏ ଦଳର କାର୍ଯ୍ୟକଳାପରେ ସର୍ବଦା ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ । ବିପଦ ଆପଦରେ ପଡ଼ିଥିବା ବ୍ୟକ୍ତିମାନଙ୍କୁ ସାହାଯ୍ୟ, ଦୁଃସ୍ଥ ଓ ନିଃସହାୟ ରୋଗୀମାନଙ୍କର ସେବା ଏହି ଦଳର ମୁଖ୍ୟ କାର୍ଯ୍ୟ ଥିଲା । କାନ୍ତକବି ଏସବୁ କାର୍ଯ୍ୟରେ ସର୍ବାଧିକ ପଟୁତା ଲାଭ କରିଥିଲେ । ଥରେ କଲେଜର ଜଣେ ଛାତ୍ର ଶଚୀନ୍ଦ୍ରନାଥ ଦାସଙ୍କୁ ହଇଜା ହେଲା । ସେସମୟରେ କଟକରେ ହଇଜା ଦେଖାଦେବା ମାତ୍ରେ ଆତଙ୍କ ଖେଳିଯାଉଥିଲା । ସନ୍ଧ୍ୟାବେଳୁ ତାଟି କବାଟ ପଡ଼ିଯାଉଥିଲା । ଚିକିତ୍ସା ଓ ସେବାର ସୁବ୍ୟବସ୍ଥା ନ ଥିବାରୁ ହଇଜାରୋଗୀମାନେ ପ୍ରାୟ ମୃତ୍ୟୁମୁଖରେ ପଡୁଥିଲେ । ଶଚୀନ୍ଦ୍ରଙ୍କୁ ହଇଜା ହେବାମାତ୍ରେ କାନ୍ତକବିଙ୍କ ନେତୃତ୍ୱରେ ଏହି ଦଳ ତାଙ୍କୁ ଗୃନ୍ଦମାଚଡ଼କସ୍ଥ ଏକ ଭଡ଼ାଘରକୁ ନେଇଯାଇଥିଲେ । ଶଚୀନ୍ଦ୍ରଙ୍କ ପିତାଙ୍କ ଅପେକ୍ଷା କାନ୍ତକବି ତାଙ୍କ ଚିକିତ୍ସା ଓ ସେବାଶୁଶ୍ରୂଷାରେ ଅଧିକ ତତ୍ପର ହୋଇଉଠିଥିଲେ । ତାଙ୍କର ଆନ୍ତରିକ ସେବାଶୁଶ୍ରୂଷା ଯୋଗୁଁ ଶଚୀନ୍ଦ୍ର ମୃତ୍ୟୁମୁଖରୁ ରକ୍ଷା ପାଇଗଲେ । ଅଧ୍ୟାପକ ହେମଚନ୍ଦ୍ର ସରକାର ଏଥିଲାଗି କାନ୍ତକବିଙ୍କର ଉଚ୍ଚ ପ୍ରଶଂସା କରିଥିଲେ । ସମାଜସେବୀ ହିସାବରେ କାନ୍ତକବିଙ୍କର ଦାନ ବେଶ୍ ଉଲ୍ଲେଖ-ଯୋଗ୍ୟ । ଆଉ ଶଚୀନ୍ଦ୍ର ? ତତ୍କାଳୀନ ଏହି ଉଦୀୟମାନ ଛାତ୍ର ଓ କବି ଭବିଷ୍ୟତରେ କାନ୍ତକବିଙ୍କର ଭଗିନୀପତି ହେଲେ—ସାନ ଭଉଣୀ କବିତା କୁମୁଦିନୀଙ୍କୁ ବିବାହହୋଇ ।

କାନ୍ତକବିଙ୍କର ଛାତ୍ରଜୀବନ ଶେଷ ହେଲା ୧୯୧୩ ରେ । ଏହି ବର୍ଷ ସେ କଲିକତା ରିପନ୍ କଲେଜ ଛାଡ଼ି ରେଭେନ୍‌ସା କଲେଜରୁ ବି. ଏ. ପାଶ୍ କଲେ । ଆନନ୍ଦରେ କଲେଜ ଛାତ୍ରାବାସ ଛାଡ଼ି ଗୃହକୁ ପ୍ରତ୍ୟାଗମନ କଲାବେଳେ ଛାତ୍ରାବାସ ସଙ୍ଗୀମାନଙ୍କର ଆଖି ଦୁଃଖରେ ଛଳଛଳ ହୋଇ ଉଠିଥିଲା । ବି. ଏ. ପାଶ୍ କରିବା ଖବର ପାଇବାମାତ୍ରେ ସେ ପୁରୀ ଗଲେ । ସେତେବେଳେ ତାଙ୍କ ଗୃହଶିକ୍ଷକ ଉମାଚରଣ ଦାସ ସେଠାରେ ଓକିଲି କରୁଥିଲେ । କାନ୍ତକବି ତାଙ୍କର ପାଖରେ ଯାଇ ପହଞ୍ଚିଲେ । ଉମାବାବୁ ତାଙ୍କୁ ଦେଖିବାମାତ୍ରେ ଆନନ୍ଦିତ ହୋଇ ପଚାରିଲେ—"କିରେ, କବିତା ଲେଖୁଛୁ ?"

କାନ୍ତକବି ହସିହସି କହିଲେ—"ନା ଭାଇ, ତୁମକୁ କହିବି ନାହିଁ—କାନ ମୋଡ଼ିଦେବ !"

ଉମାବାବୁ ପୂର୍ବ କଥା ମନେପକାଇ ଠୋ ଠୋ କରି ହସି କହିଲେ—"ସତରେ ଲେଖୁନୁ ?"

କାନ୍ତକବି—"କେବେ କେବେ ଲେଖେଁ ।"

ଉମାବାବୁ—"ମୋତେ ଦେଖା ।"

କାନ୍ତକବି—"ମୁଁ କଅଣ ସାଙ୍ଗରେ ଆଣିଛି ? ମୁଁ ସେସବୁ ସାଇତି ରଖିନି । ଯୋଉଠି ସେଠି ପଡ଼ିଯାଏ । ଏଇଠି ଗୋଟାଏ ଲେଖି ଦେଖାଇବି ।"

ଉମାବାବୁଙ୍କ ବସା କୁଣ୍ଡେଇବେଣ୍ଟ ସାହିରେ ଥିଲା । ପୁଷ୍ୟାଶ୍ୱଟିଏ ଥାଇ ତାଙ୍କର ରୋଷେଇବାସ କରିଦିଏ । ଦିନେ ଉମାବାବୁ ଓ କାନ୍ତକବି ବଡ଼ ଦେଉଳକୁ ଗଲେ । ଜଗନ୍ନାଥଙ୍କ ଦର୍ଶନ ସାରି ବସାକୁ ଫେରି ଦେଖନ୍ତି ତ ଏକ ତୁମୁଳ କାଣ୍ଡ ଘଟିଯାଇଛି । ପୁଷ୍ୟାଶ୍ୱ ବିଚରା ରକ୍ତାକ୍ତ ଅବସ୍ଥାରେ ପଡ଼ି ରଡ଼ି ଛାଡ଼ୁଛି । କଥା କ'ଣ ନା—ସେ ଗୃହଜ, ପରିବାପତ୍ର ଧରି ରୋଷେଇ ଘରକୁ ବାହାରିଛି, ଠିକ୍ ଏହି ସମୟରେ ତିନିଟା ପାଣ୍ଡମାଙ୍କଡ଼ ତାକୁ ଆକ୍ରମଣ କରି ଖଣ୍ଡିଆମଣ୍ଡିଆ କରିପକାଇଛନ୍ତି ଓ ଗୃହଜ ପରିବା ସବୁ ଉଦରସାତ୍ କରି ପଳାୟନ କରିଛନ୍ତି । ପୁଷ୍ୟାଶ୍ୱଟିର ଆଘାତ ଲାଗି ଯେତେ ଦୁଃଖ ନଥିଲା ତାଠୁଁ ବେଶି ଦୁଃଖ ଥିଲା ପଇସା ବଦଳାଇବାକୁ ପଡ଼ିବ ବୋଲି । କାରଣ ପାଣ୍ଡମାଙ୍କଡ଼ମାନେ ତା'ର ଦି'ତିନି ଖିଅ ପଇସା ଛିଣ୍ଡେଇଦେବାକୁ ଛାଡ଼ି ନଥିଲେ । ଉଭୟେ ତାକୁ ମାଷ୍ଟ୍ରମ କରି ତୁନି କରାଇଲେ । କ୍ଷତ ସ୍ଥାନରେ ଆଇଡିନ୍ ଲଗାଇ ପଟି ଭିଡ଼ିଦେଲେ । କାନ୍ତକବିଙ୍କୁ କବିତା ଲେଖିବାକୁ ଭଲ ଉପାଦାନଟାଏ ମିଳିଗଲା । ସେ ଉପରବେଳା ଏଇ ଘଟଣାଟିକୁ କେନ୍ଦ୍ର କରି ଏକ ହାସ୍ୟରସାତ୍ମକ କବିତା ଲେଖିଲେ । ସନ୍ଧ୍ୟାବେଳେ ଉମାବାବୁ ଅଫିସରୁ ଆସିବାମାତ୍ରେ କାନ୍ତକବି କବିତାଟିକୁ ନେଇ ଦେଖାଇଲେ । ସତେ ଯେମିତି କିଏ ହସର ଏକ ଇଞ୍ଜେକ୍ସନ୍ ଦେଇଦେଲା । ଉମାବାବୁ କବିତାଟି ପଢ଼ି ହସି ହସି ବେଦମ୍ ହୋଇଗଲେ । ଉପଦେଶ ଦେଇ କହିଲେ—"ଯାଃ, ଚଗଲାମି ନ କରି, କବିତାଫବିତାରେ ବେଶି ସମୟ ନଷ୍ଟ ନ କରି ବି. ଏଲ୍.ଟା ପାସ୍ କରିପକା ।" କିଛିଦିନ ପରେ ଉମାବାବୁଙ୍କ ପାଖରୁ ବିଦାୟ ନେଇ କାନ୍ତକବି ଘରକୁ ଫେରିଲେ । ବିଦାୟବାର୍ତ୍ତାସ୍ୱରୂପ ଉମାବାବୁ କହିଥିଲେ—"ମନଦେଇ ବି. ଏଲ୍. ପଢ଼ିବୁ, ଆଉ ସବୁ ଛୁଟିରେ ମୋ ପାଖକୁ ଆସୁଥିବୁ ।" ମାତ୍ର ଆଉ କେଉଁ ଛୁଟିରେ ଆସିବାର ଭାଗ୍ୟ ତାଙ୍କର ଘଟିଲା ନାହିଁ ।

ଘରକୁ ଫେରିବା ପରେ ତାଙ୍କର ଜଞ୍ଜାଳ ଓ ଦୁଃଖମୟ ଜୀବନ ଆରମ୍ଭ ହେଲା । ଏହା ତାଙ୍କ ପ୍ରତି ଭଗବାନଙ୍କର କୋପଦୃଷ୍ଟି କି ସୁଦୃଷ୍ଟି ଥିଲା ତାହା ସେହି ଏକା ଜାଣନ୍ତି । କିଛିଦିନ ପରେ ତାଙ୍କୁ ଭୀଷଣ ଜ୍ୱର ହେଲା । ଚିକିତ୍ସାରେ ଜରର ଉପଶମ ହେଲା ସତ; କିନ୍ତୁ ଶରୀରରେ ମହାବ୍ୟାଧିର ଉପସର୍ଗ ଦେଖାଦେଲା । ଉଚ୍ଚଶିକ୍ଷିତ ଜ୍ୟେଷ୍ଠ ପୁତ୍ରର ଅବସ୍ଥା ଦେଖି ଭାଗବତବାବୁ ବିବ୍ରତ ହୋଇପଡ଼ିଲେ । ତାଙ୍କ ମନ ଭାଙ୍ଗିପଡ଼ିଲା । ଆତୁର ହୋଇପଡ଼ି ସେ ସବୁପ୍ରକାର ଚିକିତ୍ସାର ବନ୍ଦୋବସ୍ତ କଲେ । ହାକିମି, ଆୟୁର୍ବେଦୀୟ, ତାନ୍ତ୍ରିକ, ତୁଟୁକା-ତୁଟୁକି ଇତ୍ୟାଦି ଯିଏ ଯାହା ବତେଇଲା ତାହାର ବ୍ୟବସ୍ଥା ହେଲା । ଜଣେ ବାବାଜୀ ନାନା ପ୍ରୌଢ଼ି ଦେଖାଇ ଚିକିତ୍ସା ଆରମ୍ଭ କଲା । ସେ ଶଙ୍ଖଔଷଧ ପ୍ରୟୋଗ କରିବା ଫଳରେ ବିଷମୟ ଫଳ ଫଳିଲା । ସ୍ୱାସ୍ଥ୍ୟ ସମ୍ପୂର୍ଣ୍ଣରୂପେ ଭାଙ୍ଗିପଡ଼ିଲା । ସେତେବେଳେ ସମଗ୍ର ଭାରତବର୍ଷରେ ସର୍ବଶ୍ରେଷ୍ଠ କୁଷ୍ଠବିତ୍ (ଲେପ୍ରୋଲଜିଷ୍ଟ) ଭାବରେ ସାର ଲିଓନାର୍ଡ଼ ରୋଜର୍ସ କଲିକତା ଟ୍ରପିକାଲ୍ ସ୍କୁଲର ଡିରେକ୍ଟରରୂପେ କାର୍ଯ୍ୟ କରୁଥାନ୍ତି । ତାଙ୍କର ଖ୍ୟାତି ସାରା ଭାରତବର୍ଷରେ ବ୍ୟାପିଯାଇଥାଏ । ଶେଷରେ ଭାଗବତବାବୁ କାନ୍ତକବିଙ୍କୁ ତାଙ୍କର ଚିକିତ୍ସାରେ ରଖାଇବାକୁ କଲିକତା ନେଇଗଲେ । ଲିଲୁଆଠାରେ ( ଆଜିକାଲି ଯେଉଁଠି ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହାଇଜିନ୍ ନିର୍ମିତ ହୋଇଛି ) ଗୋଟିଏ ବସାଘର ଭଡ଼ା ନିଆଗଲା । ଏବର ଉତ୍କୃଷ୍ଟ ଚିକିତ୍ସା-ପଦ୍ଧତି ସେ ସମୟରେ ବାହାରି ନଥିଲା । ଚିକିତ୍ସା ଦୀର୍ଘକାଳବ୍ୟାପୀ ଓ ବ୍ୟୟବହୁଳ ଥିଲା । ଏଣୁ କାନ୍ତକବି ସେଇଠାରେ ରୋଜର୍ସଙ୍କର ଚିକିତ୍ସାଧୀନ ହୋଇ ରହିଲେ ।

ପୂର୍ବ ବନ୍ଧୁ ଡାକ୍ତର ବନବିହାରୀ ପଟ୍ଟନାୟକ ସେତେବେଳେ କଲିକତା ମେଡିକାଲ କଲେଜରେ ଓ କୃଷ୍ଣପ୍ରସାଦ ବସୁ ସେଣ୍ଟ ଜେଭିଅର କଲେଜରେ ଅଧ୍ୟୟନ କରୁଥିଲେ । କାନ୍ତକବିଙ୍କର ଏ ଦୁର୍ଦ୍ଦିନରେ ସେଇ ଦୁଇଜଣ ତାଙ୍କ ପାଖକୁ ସର୍ବଦା ଆସି ତାଙ୍କ ଦୁଃଖକୁ କିୟତ୍ ପରିମାଣରେ ଲାଘବ କରିପାରୁଥିଲେ । ଅନ୍ୟ ଦୁଇ ତିନିଜଣ ଓଡ଼ିଆ ଛାତ୍ର ମଧ୍ୟ ସେଠାରେ ଜୁଟିଥିଲେ । କେବଳ ଯେ ଗଳ୍ପ ଆଲୋଚନାରେ ସମୟ କଟୁଥିଲା ତା'ନୁହେଁ, କୀର୍ତ୍ତନ ଗୀତରେ ସ୍ଥାନଟି ବେଶ୍ ଗୁଞ୍ଜରିତ ହୋଇ ଉଠୁଥିଲା । ପୂର୍ବରୁ କାନ୍ତକବି କୁଳଗୁରୁ ବାବାଜୀ ରାମଦାସଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ବାବାଜୀ ରାମଦାସ ଜଣେ ବିଖ୍ୟାତ କୀର୍ତ୍ତନଗାୟକ ଥିଲେ । କାନ୍ତକବି ସହଜେ ସଙ୍ଗୀତପ୍ରିୟ ଥିଲେ । ଗୁରୁଙ୍କ ସଂସ୍ପର୍ଶରେ ଆସି ସେ କୀର୍ତ୍ତନଆଡ଼କୁ ଢଳି ପଡ଼ିଥିଲେ । କ୍ରମେ କୀର୍ତ୍ତନ

ଗାୟନରେ ସେ ମଧ୍ୟ ଦକ୍ଷତା ହାସଲ କରି ନେଇଥିଲେ । "ଶ୍ୟାମ ତୁଳସୀ ମଞ୍ଜରୀ, ବଦନେ ଦେବ ମୋହରି" ଓ "କେବେ ତୃଷିତ ଏ ମରୁ ଗୁଞ୍ଜିଯିବା ଯାଇବ ତୋମାର ରସାଲ ନନ୍ଦନେ"—ଗୀତ ଦୁଇଟି କାନ୍ତକବିଙ୍କର ଅତି ପ୍ରିୟ ଗୀତ ଥିଲା । ହୃଦୟ ଭାରାକ୍ରାନ୍ତ ହୋଇଗଲାବେଳେ କେବେ କେବେ କୃଷ୍ଣପ୍ରସାଦ ବସୁ ଏହି ସଙ୍ଗୀତ ବୋଲିଦେଲେ ତାଙ୍କର ବ୍ୟଥିତ ହୃଦୟ ଶାନ୍ତ ହୋଇ ଯାଉଥିଲା । ଲାଲୁଆର ବସାଘରେ ପ୍ରାୟ ଏହି କୀର୍ତ୍ତନ ଦୁଇଟି କେତେବେଳେ କାନ୍ତକବି ଆଉ କେତେବେଳେ କୃଷ୍ଣପ୍ରସାଦ ବସୁଙ୍କ ଦ୍ୱାରା ଗୀତ ହେଉଥିଲା ।

ଦିନେ କାନ୍ତକବି କୀର୍ତ୍ତନ ବୋଲିସାରିଲା ପରେ ଡାକ୍ତର ବନ୍ଧୁବାବୁ ପଚାରିଲେ, "ଆପଣଙ୍କର ଏ କୀର୍ତ୍ତନଆଡ଼କୁ ଏତେ ମନ ଗଲା କିପରି ?" ସେ କିନ୍ତୁ ହସିଦେଇ ପୁନର୍ବାର କୀର୍ତ୍ତନ ଆରମ୍ଭ କରିଦେଲେ । ବନ୍ଧୁବାବୁ ଭାବିଲେ ଯେ କଥାଟା ସେଇଠାରେ ବୋଧହୁଏ ସରିଗଲା । କାନ୍ତକବି କିନ୍ତୁ ତାହାକୁ ପାଶୋରି ନ ଥିଲେ । ତାହା ପରଦିନ ଯେତେବେଳେ କୀର୍ତ୍ତନ ଆସର ସରିଲା, ସମସ୍ତେ ଜଣ ଜଣ ହୋଇ ଘରକୁ ଫେରିଲେ । ବନ୍ଧୁବାବୁ ଗିରିବାବୁ ଲେନ୍‌ରେ ଥିବା ଅକ୍‌ସଫୋର୍ଡ ମିଶନ ହଷ୍ଟେଲ୍‌ରେ ରହୁଥାଆନ୍ତି । କାନ୍ତକବି ଓ ବନ୍ଧୁବାବୁଙ୍କ ବସା ମଧ୍ୟରେ ମେଡିକାଲ୍ କଲେଜଟି ଥିଲା । ଆନାଟମି ଡିପାର୍ଟମେଣ୍ଟ କଡ଼ ଦେଇ ଗୋଟିଏ ଗଳି ଦୁଇ ସ୍ଥାନକୁ ସଂଯୁକ୍ତ କରିଥିଲା । ବନ୍ଧୁବାବୁ ଯିବାକୁ ଉଠିଲାରୁ କାନ୍ତକବି କହିଲେ, "ଚାଲ, ମୁଁ ତୁମକୁ ବାଟେଇ ଦେଇ ଆସିବି ।" ଏହା କହି ସେ ତାଙ୍କ ବହିଥାକରୁ ଖଣ୍ଡିଏ ବହି ଉଠାଇ ତାଙ୍କ ସଙ୍ଗରେ ଗଲେ । ସେହି ଗଳିରେ ଗଲାବେଳେ ସେ ବନ୍ଧୁବାବୁଙ୍କୁ କହିଲେ, "ତୁମର ମନେ ଅଛି ନା, ତୁମେ ମୋତେ ଗୋଟିଏ କଥା କାଲି ପଚାରିଥିଲ ? ନିଅ, ଏ ବହିଖଣ୍ଡିକ ତୁମପାଇଁ ଆଣିଛି, ପଢ଼ିବ; ତା'ର ଉତ୍ତର ସେଇଥିରେ ପାଇବ ।" ବନ୍ଧୁବାବୁ ବସାରେ ପହଞ୍ଚି ଦେଖିଲେ, ସେ ବହିଟି ହେଉଛି ଥିଓଲଜିକାଲ୍ ଟ୍ରାଇନ୍‌ଙ୍କ କୃତ 'ଇନ୍ ଟ୍ୟୁନ୍ ଉଇଥ୍ ଦ ଇନ୍‌ଫିନାଇଟ୍' ।

ଧର୍ମ ବିଷୟରେ କାନ୍ତକବିଙ୍କର କୌଣସି ଅନ୍ଧବିଶ୍ୱାସ ନଥିଲା । ସେ ନିଷ୍ଠାପର ବୈଷ୍ଣବ ହେଲେହେଁ ଗୁରୁପଦାଙ୍କ ଅନୁସରଣ କରି ସର୍ବ ଧର୍ମର ସାରାଂଶ ସଂଗ୍ରହ କରୁଥିଲେ । ମାତ୍ର ନିଜ ଧର୍ମ ପ୍ରତି ତାଙ୍କର ନିଷ୍ଠା ଅତୁଳନୀୟ । ବ୍ୟାଧିଗ୍ରସ୍ତ ଅବସ୍ଥାରେ ଶଯ୍ୟାଶାୟୀ ଥିବାବେଳେ ଥରେ ଜଣେ ହଠଯୋଗୀ ଆସି ତାଙ୍କୁ ବୈଷ୍ଣବଧର୍ମ ତ୍ୟାଗ କରିବାକୁ ପ୍ରବର୍ତ୍ତାଇଲେ । ସେ ଯୋଗୀ ସେତେବେଳକୁ ନିଜ ସିଦ୍ଧି ସୋଗେ ପ୍ରସିଦ୍ଧି ଲାଭ କରିଥିଲେ ଏବଂ ନାନା ଅଲୌକିକ କ୍ରିୟା ଦ୍ୱାରା ବହୁ ଲୋକଙ୍କୁ ମୁଗ୍ଧ କରି ନିଜର ଶିଷ୍ୟତ୍ୱ ସ୍ୱୀକାର କରାଇଥିଲେ । ବୈଷ୍ଣବ ଧର୍ମ ଛାଡ଼ି ତାଙ୍କ ପଦାଙ୍କ ଆଶ୍ରୟ କଲେ ଲକ୍ଷ୍ମୀକାନ୍ତ ରୋଗମୁକ୍ତ ହେବେ ବୋଲି ସାଧୁ ପ୍ରତିଶ୍ରୁତି ଦେଲେ । କାନ୍ତକବିଙ୍କ ଜଞ୍ଜାଳମୟ ଜୀବନରେ ଏଭଳି ଧର୍ମସଙ୍କଟ କ୍ୱଚିତ୍ ଦେଖାଦେଇଛି । ବହୁ ଚିନ୍ତା ଓ ଆଲୋଚନା ପରେ କାନ୍ତକବି ସ୍ଥିର କଲେ—"ସ୍ୱଧର୍ମେ ନିଧନଂ ଶ୍ରେୟଃ, ପର ଧର୍ମୋ ଭୟାବହଃ" ।

ରୋଗୀଙ୍କ ଚିକିତ୍ସାରେ ରୋଗର ଉପଶମ ହୋଇଥିଲା ସତ; କିନ୍ତୁ ସେସମୟର ଚିକିତ୍ସା ପଦ୍ଧତିରେ ଅଙ୍ଗବିକୃତି ନିବାରଣର ପନ୍ଥା ଆବିଷ୍କୃତ ହୋଇ ନଥିବାରୁ ସେ ବିକଳାଙ୍ଗ ହୋଇଗଲେ । ରୋଗ ସମ୍ପୂର୍ଣ୍ଣରୂପେ ଦୂର ହୋଇଥିଲେହେଁ, ଅଙ୍ଗବିକୃତି ଯୋଗୁଁ ରୋଗ ଦୂର ହୋଇନାହିଁ ବୋଲି ଲୋକେ ଏବଂ ସ୍ୱୟଂ କାନ୍ତକବି ମଧ୍ୟ ଭ୍ରମ ଧାରଣା ମନରେ ପୋଷଣ କରିଥିଲେ । ଅବଶେଷରେ ନିରୁତ୍ସାହିତ ହୋଇ ସେ ଘରକୁ ଫେରି ଆସିଥିଲେ ।

ଛାତ୍ରଜୀବନରୁ ଅଭିନୟ, ସଙ୍ଗୀତ ଓ ନୃତ୍ୟରେ ତାଙ୍କର ବଡ଼ ଅଭିନିବେଶ ଥିଲା । ସ୍କୁଲରେ ପାଠ ପଢ଼ିଲାବେଳେ ଭଦ୍ରକରେ ଜଗନ୍ନାଥପୁରରେ ଗୋଟିଏ ନାଟକରେ ସେ ଇନ୍ଦ୍ର ହୋଇ ବାହାରିଥିଲେ । ଦର୍ଶକ-ମାନେ ଏପରି ମୁଗ୍ଧ ହେଲେ ଯେ ଚତୁର୍ଦ୍ଦିଗରେ ଭାଗବତଙ୍କ ପୁଅର ପ୍ରଶଂସା ଜନମୁଖରେ ଖେଳିଗଲା । କଥା ଭାଗବତବାବୁଙ୍କ କାନକୁ ଆସିଲା । କାନ୍ତକବି ପଢ଼ାରେ ମନ ନ ଦେଇ ସମୟ ନଷ୍ଟ କରୁଥିବାରୁ କଠିନ ଦଣ୍ଡ ପାଇଲେ । ଶରୀରପୀଡ଼ାରେ କାନ୍ତକବି କାନ୍ଦୁଥିଲାବେଳେ ତାଙ୍କ ସାନ ଭଉଣୀ ୬ ଜାହ୍ନବୀ ଦେବୀ ପଚାରିଲେ— "ଭାଇ, ତୁ ଏଡ଼େ ସୁନ୍ଦର କଥା କିମିତି କହୁ ?" କାନ୍ତକବି ଉତ୍ତର ଦେଲେ—"ମୁଁ କ'ଣ କହେଁ !" "ଆଉ ?" ଭଉଣୀ ପଚାରିଲା । ତା'ର ଉତ୍ତର ଆସିଲା—"ସେଦିନ ଜଗନ୍ନାଥପୁର ନାଟକରେ ଯିଏ ପାର୍ଟ କରୁଥିଲା, ସେ କ'ଣ ତୋ ଭାଇ ? ନା—ସେ ହେଉଛି ସାକ୍ଷାତ୍ ଇନ୍ଦ୍ର ।" ଭଉଣୀ ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲା—

"ଇନ୍ଦ୍ର କେଉଁଠୁ ଆସିଲେ ମର୍ତ୍ତ୍ୟକୁ ?" ଭାଇ ଉତ୍ତର ଦେଲେ—"ଆରେ, ସେତେବେଳେ କଣ ମୁଁ 'ମୁଁ' ହୋଇ ଥାଏଁ ! —ସେତେବେଳେ ମୋର ମନେ ହୁଏ—ମୁଁ ନିଜେ ଇନ୍ଦ୍ର—କଥା କହୁଛି ।"

କଲିକତାରୁ ଫେରିଆସି ବହୁଦିନ କାନ୍ତକବି ତାଳପଦାରେ ରହି ନିଜର ପୈତୃକ ସମ୍ପତ୍ତି ଓ କୁଳ-ଦେବତା ଗୋପୀନାଥଙ୍କ ସେବାର ତତ୍ତ୍ୱାବଧାନ କଲେ । ସେତେବେଳେ ଭାଗବତବାବୁ ନାନା ସାଧାରଣ କାର୍ଯ୍ୟରେ ଲିପ୍ତ ରହିଥିବାରୁ ସମ୍ପତ୍ତି ଦେଖାଶୁଣା କରିବାକୁ ସମୟ ପାଉ ନ ଥିଲେ । ଭଦ୍ରକର ପ୍ରତ୍ୟେକ ଜନମଙ୍ଗଳ କାର୍ଯ୍ୟ ସହିତ ସେ ଥିଲେ ସମ୍ପୃକ୍ତ । ଭଦ୍ରକରେ ମୁନ୍‌ସଫ କୋର୍ଟର ପ୍ରତିଷ୍ଠା, ବାର୍ ଆସୋସିଏସନ ସଂସ୍ଥାପନା, ଭଦ୍ରକରେ କୋ-ଅପରେଟିଭ ବ୍ୟାଙ୍କ ପ୍ରତିଷ୍ଠା, ଉତ୍କଳ ସମ୍ମିଳନୀର ବିଶିଷ୍ଟ ସଭ୍ୟ ହିସାବରେ ସମ୍ମିଳନୀର ପ୍ରସ୍ତାବ ଅନୁଯାୟୀ ସର୍ବପ୍ରଥମ ହସ୍ତଶିଳ୍ପ କାରଖାନାର ପ୍ରତିଷ୍ଠା ଇତ୍ୟାଦି ବିଷୟରେ ସେ ଥିଲେ ଅଗ୍ରଣୀ । ପରିଶେଷରେ ସେ ବିହାର ଓଡ଼ିଶା ଲେଜିସ୍‌ଲେଟିଭ କାଉନ୍‌ସିଲକୁ ଚାରି ଥର ସଭ୍ୟ ହୋଇ ଗଲେ ଏବଂ ଦୁଇଥର କାଉନ୍‌ସିଲର ଡେପୁଟି ସ୍ପିକର ମଧ୍ୟ ହୋଇଥିଲେ । ଏଥିପୂର୍ବରୁ କୌଣସି ଓଡ଼ିଆ ଏ ସମ୍ମାନର ଅଧିକାରୀ ହୋଇ ନ ଥିଲେ । ବଙ୍ଗଳାରେ ମଧ୍ୟ ତାଙ୍କର ସୁଖ୍ୟାତି ଥିଲା । କଲିକତା ମେଡିକାଲ କଲେଜ ମ୍ୟାନେଜିଂ କମିଟିର ସଭ୍ୟରୂପେ ବଙ୍ଗ ସରକାର ତାଙ୍କୁ ନିଯୁକ୍ତ ଦେଇଥିଲେ । ବାଲେଶ୍ୱର ଜିଲାବୋର୍ଡ଼ର ସେ ପ୍ରଥମ ଭାଇସ୍ ଚେୟାରମ୍ୟାନ ( ସେତେବେଳେ ଜିଲା ମାଜିଷ୍ଟ୍ରେଟମାନେ ଚେୟାରମ୍ୟାନ ହେଉଥିଲେ ) ଏବଂ ଭଦ୍ରକ ଇଉନିୟନ ବୋର୍ଡ଼ର ସେ ପ୍ରଥମ ସଭାପତି ।

ଏହିସବୁ କାରଣରୁ ସେ ଜ୍ୟେଷ୍ଠପୁତ୍ର ଲକ୍ଷ୍ମୀକାନ୍ତଙ୍କୁ ଗୋପୀନାଥଙ୍କ ସେବା ଓ ଗୋପୀନାଥଙ୍କ ନାମରେ ଥିବା ପୈତୃକ ସମ୍ପତ୍ତିର ଭାର ଦେଲେ । ଏହି ଦେବୋତ୍ତର ସମ୍ପତ୍ତି ଜ୍ୟେଷ୍ଠାଧିକାର ସୂତ୍ରରେ ନ୍ୟସ୍ତ ହୋଇଥାଏ । ତେଣୁ ଅନ୍ୟାନ୍ୟ ଭାଇମାନେ ଈର୍ଷାନ୍ୱିତ ହୋଇ ନାନା ହୀନ ଚକ୍ରାନ୍ତ କରିବାରୁ କେବେ କ୍ଷାନ୍ତ ହେବାର ଦେଖାଯାଉ ନାହିଁ । ତାଳପଦାକୁ ଆସିବା ଫଳରେ କାନ୍ତକବିଙ୍କ ଜୀବନ ଆହୁରି ଜଞ୍ଜାଳମୟ ଓ ଦୁର୍ବହ ହୋଇପଡ଼ିଲା । ବ୍ୟାଧିଗ୍ରସ୍ତ ହେବା ହେତୁ ତାଙ୍କର ଜୀବିତ ସନ୍ତାନ ଦୁଇଟିଙ୍କୁ ତାଙ୍କଠାରୁ ଅନ୍ତର କରାଯାଇଥିଲା । ସାନ୍ତ୍ୱନା ଦେବାପାଇଁ ଏକମାତ୍ର ବ୍ୟକ୍ତି ସେବାକାରିଣୀ, ଜୀବନର ଅବିଚ୍ଛେଦ୍ୟ ସଙ୍ଗିନୀ ପତ୍ନୀ ଲବଙ୍ଗଲତା ।

ଏହି ଜଞ୍ଜାଳରୁ ନିଜକୁ ସାମୟିକ ମୁକ୍ତ ଦେବା ନିମନ୍ତେ ଏକମାତ୍ର ଅବ୍ୟର୍ଥ ଔଷଧ ସଙ୍ଗୀତ । ସଙ୍ଗୀତ ହିଁ କିଛିକ୍ଷଣ ପାଇଁ ତାଙ୍କୁ ସମସ୍ତ ଜଞ୍ଜାଳରୁ ମୁକ୍ତ ଦେଇ ଅଲୌକିକ ଆନନ୍ଦଧାମକୁ ନେଇପାରୁ-ଥିଲା । ଏହି ସଙ୍ଗୀତ ସାଧନାକୁ ଲୌକିକ ରୂପ ଦେବାପାଇଁ ସେ ଆରମ୍ଭ କଲେ "ଗୋପୀନାଥ ସଙ୍ଗୀତ ସମାଜ"—୧୯୨୧ ମସିହାରେ—କୁଳଦେବତା ଗୋପୀନାଥଙ୍କ ନାମ ଅନୁଯାୟୀ । ଏହି ସମାଜ ପ୍ରଥମେ ଅପେରା ଓ ପରେ ଥିଏଟରରେ ପରିଣତ ହେଲା । ତାଙ୍କ ପାଖକୁ ୧୯୨୩ରେ ଆସି ଯୋଗ ଦେଲେ ସ୍ୱରସାଧକ ৺ ମନମୋହନ ସାବତ । ସର୍ବପ୍ରଥମ ନାଟକ ରଚନା ହେଲା—ଶରତ୍‌ରାସ । କବି ବୈଷ୍ଣବ—ଭକ୍ତିରସର ଆଶ୍ରୟୀ । ତେଣୁ ପ୍ରଥମେ ରାସଲୀଳାରେ ଅଭିନିବେଶ ଆରମ୍ଭ ହେଲା । ପରେ ପରେ ବସନ୍ତ ବିଳାସ, ବରୁଣ ବିଜୟ, କାଳୀୟ ଦଳନ ଓ ବ୍ରଜବର୍ଜନ । ସେ ସମୟରେ ମୋହନ ଗୋସ୍ୱାମୀ ଓ ଶୂରଦେଓଙ୍କ ରାସଦଳ ଖ୍ୟାତି ଲଭ କରିଥିଲେ । କାନ୍ତକବି ସେସବୁ ଦେଖିବାର ସୁଯୋଗ ପାଇ ନଥିଲେ । ସମସ୍ତଙ୍କର ଅଭିନୟ ସଙ୍ଗୀତାଶ୍ରୟୀ । ମାତ୍ର ମୋହନ ଗୋସ୍ୱାମୀ ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ଲିଖିତ ଗୀତିନାଟ୍ୟକୁ ଅବଲମ୍ବନ କରିଥିଲେହେଁ ଏବଂ ଶୂରଦେଓ ସ୍ୱଲିଖିତ ବିଷୟବସ୍ତୁକୁ ମଞ୍ଚସ୍ଥ କରିଥିଲେହେଁ ଉଭୟେ ସମ୍ପୂର୍ଣ୍ଣ ପରମ୍ପରାଶ୍ରୟୀ ଓଡ଼ିଶୀ ସଙ୍ଗୀତକୁ ମୁଖ୍ୟ କରି ଗୋପାଳକୃଷ୍ଣ, ବନମାଳୀ, ଅଭିମନ୍ୟୁ ଓ ଭକ୍ତଚରଣଙ୍କ ସାହିତ୍ୟର ପ୍ରଚାରହିଁ ସମଧିକ ଭାବରେ କରୁଥିଲେ । ମାତ୍ର କାନ୍ତକବିଙ୍କ ନାଟକରେ ଏମାନଙ୍କର ସ୍ଥାନ ନିର୍ଦ୍ଦିଷ୍ଟ ଥିଲା । ସେ ନିଜ ରଚନାରେ ଶାସ୍ତ୍ରୀୟ ସଙ୍ଗୀତର ଧାରା ପ୍ରବର୍ତ୍ତନ କଲେ । ଏହି ସମୟରେ ଆଉ ଜଣେ ପ୍ରତିଭାଶାଳୀ ରାସଲୀଳା ଅଭିନୟ ପ୍ରବର୍ତ୍ତକ ଥିଲେ ଶ୍ରୀ କାଳୀଚରଣ ପଟ୍ଟନାୟକ । କାଳୀଚରଣ ମଧ୍ୟ ସ୍ୱଲିଖିତ ନାଟକ ମଞ୍ଚସ୍ଥ କରାଉଥିଲେ । ଶୂରଦେଓଙ୍କ ଥିଏଟର ଦେଖିବାର ସୁଯୋଗ କାନ୍ତକବି ଇଚ୍ଛା କରିଥିଲେହେଁ ସମ୍ଭବତଃ ପାଇ ନଥିଲେ । ମାତ୍ର ନିଜ ଦଳ ଗଠନ କରିବାପରେ ମୋହନ ଗୋସ୍ୱାମୀ ଓ କାଳୀଚରଣଙ୍କ ନାଟକ ଭଦ୍ରକରେ ମଞ୍ଚସ୍ଥ ହେଉଥିଲା-

ବେଳେ କାନ୍ତକବି ଉଭୟଙ୍କ ସମ୍ପର୍କରେ ଆସିଲେ ଓ ଉଭୟଙ୍କର ପୃଷ୍ଠପୋଷକ ଥିଲେ । ନିଜ ଘରେ ସେମାନଙ୍କୁ ରହିବାର ସୁଯୋଗ ଦେଉଥିଲେ । ମୋହନ ଗୋସ୍ୱାମୀ ପ୍ରଭୁ ନିତ୍ୟାନନ୍ଦଙ୍କ ବଂଶଧର ହୋଇଥିବାରୁ ତାଙ୍କୁ ସେ ବିଶେଷ ଭକ୍ତି କରୁଥିଲେ । ଆଉ କାଳୀବାବୁ ? ସେ ତାଙ୍କ ହୃଦୟର ନିକଟରୁ ନିକଟତର ହୋଇଯାଇଥିଲେ । କାଳୀବାବୁଙ୍କ ମୁହଁରେ "ଭାଇ" ଶବ୍ଦର ଏକମାତ୍ର ଅର୍ଥ ଥିଲା—କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ।

କାନ୍ତକବିଙ୍କର ତେଣେ ରାସଦଳ; ପୁଣି ସହଜ ସଙ୍ଗୀତ ପରିବର୍ତ୍ତେ ଶାସ୍ତ୍ରାନୁମୋଦିତ ସଙ୍ଗୀତ । ଏଣେ ନିକଟବର୍ତ୍ତୀ ଯାଜପୁରରୁ ବାହାରିଲେ ନିଜର ପ୍ରତିଭା ପ୍ରଦର୍ଶନ କରି ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ବସୁ । ତାଙ୍କ ନାଟକଗୁଡ଼ିକ ଐତିହାସିକ ଓ ପୌରାଣିକ ଥିବାରୁ ଅଧିକ ଲୋକପ୍ରିୟ ହୋଇଥିଲା । ଦୁଇ ଦଳ ଭିତରେ ସାମାନ୍ୟ ପ୍ରତିଯୋଗିତାର ଭାବ ଥିଲେହେଁ ଉଭୟେ ଅତି ଆତ୍ମୀୟ ଥିଲେ । ଭଦ୍ରକରେ କୃଷ୍ଣବାବୁଙ୍କ ଅପେରା ବା ନାଟକ ହେଲାବେଳେ କାନ୍ତକବିଙ୍କ ସାହାଯ୍ୟ ସହାନୁଭୂତି ଓ ପ୍ରେରଣା ଥିଲା ତାଙ୍କର ସବୁଠାରୁ ଅଧିକ ଉତ୍ସାହର ଆଧାର ।

ସେଣ୍ଟ୍ ଜେଭିଅର୍ କଲେଜରେ ପଢ଼ିଲାବେଳେ କୃଷ୍ଣପ୍ରସାଦ ବସୁଙ୍କ ଉପରେ ବିଦେଶୀ ସରକାରଙ୍କ ପୁଲିସ୍ ବନ୍ଦେମାତରମିଆ ମୋହର ମାରିଦେବାରୁ ଉଚ୍ଚଶିକ୍ଷା ପାଇଥିଲେହେଁ, ଚାକିରିବାକିରି ପାଇବା ତାଙ୍କ ପକ୍ଷେ ସମ୍ଭବ ହେଲାନାହିଁ । ଫଳରେ ସେ ଭଦ୍ରକ ଆସି ଯାତ୍ରାଦଳ ଗଢ଼ିଲେ । କୃଷ୍ଣପ୍ରସାଦ ବସୁ ଖୋଲା ପଡ଼ିଆରେ ଅଭିନୟ କରାଉଥିଲେ । ଉଭୟ ଦଳ ଓ ଉଭୟ ଦଳପତିଙ୍କ ସମ୍ପର୍କ ଗୋଟିଏ ରୁଚିକର ଘଟଣାରୁ ବୁଝାପଡ଼ିବ । ବସୁଙ୍କ ଦଳରେ ଉଦିଆନ୍ନା ନାମକ ଜଣେ ନାମଜାଦା ହେଟରେସା ଅଭିନେତା ଥିଲେ । କାନ୍ତକବି ଦଳର ଅଧ୍ୟକ୍ଷ ମନମୋହନଙ୍କୁ ଥଟଲ କରି ସେ ସମୟେ ସମୟେ ଅଭିନୟ କରୁଥିଲେ । ମନମୋହନଙ୍କର ରସ ଗ୍ରହଣ କରିବାର ଶକ୍ତି ନଥିଲା । ତେଣୁ ସେ ଭୀଷଣ ରାଗିଯାଉଥିଲେ । କିନ୍ତୁ ରସାଳ-ହୃଦୟ କାନ୍ତକବି ଏଥିରୁ ବେଶ୍ ଆମୋଦ ପାଉଥିଲେ । ଏପରି ଚାଲିବାକୁ ବରଂ ସେ ପରୋକ୍ଷରେ ଉତ୍ସାହ ଦେଉଥିଲେ । ମନମୋହନ କାନ୍ତକବିଙ୍କର ଏ ବିଷୟରେ ଉଦାସୀନତା ମୋଟେ ସହ୍ୟ କରିପାରୁ ନଥିଲେ । ବେଳେ କେବେ ସେ ଘୋର ପ୍ରତିବାଦ କରିବାକୁ ଛାଡ଼ୁ ନ ଥିଲେ । ମଉଜ ଦେଖିବା ଲାଗି କାନ୍ତକବି ଉଭୟ ମନମୋହନ ଓ ଉଦିଆନ୍ନାଙ୍କୁ ଡିହାଇ ଦେଉଥିଲେ । ଉଦିଆନ୍ନା ଏପରି ବେଳଆ ଥାଆନ୍ତି ଯେ ମନମୋହନଙ୍କ ପାଖରେ ମୁହୂର୍ତ୍ତକ ପାଇଁ ବସିଲାମାତ୍ରେ ଢୋଳେଇଲା ପରି ହୋଇ ଭୁସ୍କରି ତାଙ୍କ ଉପରେ ପଡ଼ନ୍ତି । ଫଳରେ ଟିଙ୍ଗ୍ଶୁଳିଆ ମନମୋହନ ଗର୍ଜ୍ଜି ଉଠନ୍ତି । ଉଭୟେ କାନ୍ତକବିଙ୍କ ପାଖରେ ଫେରାଦ ହୁଅନ୍ତି । ଏଇଟା ପ୍ରାୟ ନିତ୍ୟନୈମିତ୍ତିକ ଘଟଣା ଥିଲା କହିଲେ ଚଳେ ।

କ୍ରମେ ଲୋକମତ ରାସଲୀଳାରୁ ପୌରାଣିକ ଓ ଐତିହାସିକ ନାଟକ ଦିଗକୁ ଫେରିଲା । କାଳୀବାବୁ ରାସ ଛାଡ଼ିଲେ । ଶୂରଦେଓ ଚାଲିଗଲେ ସଂସାର ଛାଡ଼ି । ମୋହନ ଗୋସ୍ୱାମୀ 'ସୀତା ବିବାହ' ସିନେମା ଆଡ଼କୁ ମନ ଦେଲେ । କୃଷ୍ଣବାବୁଙ୍କ ଲୋକପ୍ରିୟତା ଦେଖି କାନ୍ତକବି ଐତିହାସିକ ଓ ପୌରାଣିକ ନାଟକ ଦିଗକୁ ମନ ଦେଲେ । ସେ ଦିଗରେ ପ୍ରଥମ ଉଦ୍ୟମ ତାଙ୍କର 'ଚନ୍ଦ୍ରହାସ', ଦ୍ୱିତୀୟ 'କଳାପାହାଡ଼' । କଳାପାହାଡ଼ ପାଣ୍ଡୁଲିପି ଅବସ୍ଥାରେ କେଉଁଠିକି ଅପସାରିତ ହୋଇଗଲା ତା'ର ପତ୍ତା ନାହିଁ । ଅନୁତପ୍ତ କାନ୍ତକବି ତା'ପରେ ହାତ ଦେଲେ "କର୍ଣ୍ଣ" ନାଟକରେ । ତାହା ମଞ୍ଚସ୍ଥ କରିବା ପୂର୍ବରୁ ମାତ୍ର ୫ ବର୍ଷ ଜୀବନକାଳ ପରେ ଗୋପୀନାଥ ସଙ୍ଗୀତ ସମାଜର ପରିସମାପ୍ତି ହେଲା । କାନ୍ତକବି ପୁଣି ପାରିବାରିକ ଜଞ୍ଜାଳରେ ପଡ଼ି ବ୍ୟତିବ୍ୟସ୍ତ ହେବାକୁ ଲାଗିଲେ ।

ତାଳପଦାର କଳୁଷିତ ହାଉଆରୁ ଉଦ୍ଧାର କରି କାନ୍ତକବିଙ୍କ ପ୍ରାଣରେ ଆନନ୍ଦ ଦେବାପାଇଁ ଏବଂ ତାଙ୍କ କବିପ୍ରତିଭାର ବିକାଶ ନିମନ୍ତେ ପିତା ଚୌଧୁରୀ ଭଗବତପ୍ରସାଦ ଭଦ୍ରକରେ ଗୋଟିଏ ହାଣ୍ଡ-ପ୍ରେସ୍ ସ୍ଥାପନା କଲେ । କାନ୍ତକବି ହେଲେ ତା'ର ତତ୍ତ୍ୱାବଧାରକ । ବିଚିତ୍ର ସଂଯୋଗ ଏହି ଯେ, ଯେଉଁ ହାତ ଛାପାଖାନାଟି କଟକରୁ କିଣା ହୋଇ ଆସିଲା ତାହା ଏକଦା ଫକୀରମୋହନ, ସାମନ୍ତ ରାଜନାରାୟଣ ଦାସ, ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଓ ରାଜା ବୈକୁଣ୍ଠନାଥ ଦେ'ଙ୍କ ପିତା ରାଜା ଶ୍ୟାମାନନ୍ଦ ଦେ ପ୍ରଭୃତିଙ୍କ ପୃଷ୍ଠପୋଷକତାରେ ବାଲେଶ୍ୱରକୁ ଆସିଥିବା ପ୍ରଥମ ମୁଦ୍ରାଯନ୍ତ୍ର । ଏହି ଯନ୍ତ୍ରର ନିର୍ମାଣକାଳ ୧୮୩୫ । ୧୯୨୯ରେ ଏହା ଭଦ୍ରକରେ ଗୋପୀନାଥ ପ୍ରେସ ନାମରେ ପୁନଃପ୍ରତିଷ୍ଠା ଲାଭକଲା । ପ୍ରେସ ସ୍ଥାପନା ବିଷୟରେ କାନ୍ତକବିଙ୍କର ମାତୁଳ

୰ରାଧାଶ୍ୟାମ ଦାସ ବହୁପୂର୍ବରୁ ପରାମର୍ଶ ଦେଇଥିଲେ । ତାଙ୍କର ଅକାଳମୃତ୍ୟୁ ଫଳରେ ସେ ପରାମର୍ଶ କଳ୍ପନାରେ ହିଁ ରହିଯାଇଥିଲା । କାନ୍ତକବିଙ୍କର ସାନ ଭାଇ ୰ସୀତାକାନ୍ତ ମହାପାତ୍ର ଓ ୰କମଳାକାନ୍ତ ମହାପାତ୍ର ହିଁ ଅଗ୍ରଜଙ୍କର ପ୍ରତିଭା ବିକାଶ ନିମନ୍ତେ ଅତି ଉତ୍ସାହିତ ହୋଇ ଏ ଦିଗରେ ଯଥେଷ୍ଟ ସାହାଯ୍ୟ କଲେ । ମାତ୍ର ପ୍ରତ୍ୟକ୍ଷ ପରିଚାଳକ ହେଲେ କାନ୍ତକବି ।

ପ୍ରେସ୍ କରିବା ମାତ୍ରେ ଗୋଟିଏ ସାହିତ୍ୟ ପତ୍ରିକା ପ୍ରକାଶର କଳ୍ପନା ହେଲା । ଭଦ୍ରକରେ ଛାପାଖାନା ନ ଥିବାରୁ ଏବଂ ଛାପିବାର ସ୍ପୃହା ଲୋକମନରେ ଜାଗ୍ରତ ହୋଇ ନ ଥିବାରୁ ପ୍ରେସ୍ କ୍ଷତିରେ ଯାଉଥିଲା । ତେଣୁ ପତ୍ରିକା ପ୍ରକାଶର କଳ୍ପନା ମୂଳରୁ ମରିଯାଇଥିଲା । ପରେ ଭଗିନୀ କୋକିଳା ଦେବୀଙ୍କ କଳ୍ପନାନୁଯାୟୀ ଗୋଟିଏ କ୍ଷୁଦ୍ର ଗଳ୍ପ ସନ୍ନିବିଷ୍ଟ ପତ୍ରିକା ପ୍ରକାଶ କରିବା ପାଇଁ ମସୁଧା ହେଲା । କୋକିଳା ଦେବୀ ଚାଲିଗଲେ । ଭାଇ କମଳାକାନ୍ତ ମଧ୍ୟ ୨୪ ବର୍ଷ ବୟସରେ ଚାଲିଗଲେ । ପିତାଙ୍କର ଦେହାନ୍ତ ହେଲା ୧୯୩୬ ମସିହାରେ ।

ସବୁ ବିପତ୍ତି ସତ୍ତ୍ୱେ ଉଗରର ସୂତ୍ରପାତ ହେଲା ୧୯୩୭ ରେ । ମାତ୍ର ଦୁଃଖର କଥା, ଏଥିପାଇଁ ଯେ ତାଙ୍କୁ ସବୁଠାରୁ ବେଶୀ ଉତ୍ସାହ ଦେଇଥିଲେ ତାଙ୍କର ଆଉ ଜଣେ ସାନଭାଇ କାଉନ୍ସିଲ୍ ଅଫ୍ ଷ୍ଟେଟ୍‌ର ସଭ୍ୟ ଶ୍ରୀ ସୀତାକାନ୍ତ ମଧ୍ୟ ବିଧବା ପତ୍ନୀ ଓ ତିନୋଟି ଝିଅଙ୍କ ଭାର ତାଙ୍କ ଉପରେ ଦେଇ ସ୍ୱର୍ଗାରୋହଣ କଲେ । ସେ ଦୁଃସମ୍ବାଦ ଶୁଣି ମାତା ରାଧାମଣିଙ୍କର ହୃତ୍‌ପିଣ୍ଡ ବନ୍ଦ ହୋଇଗଲା । ସାଙ୍ଗକୁ କେବଳ କନିଷ୍ଠ ଭ୍ରାତା ଶ୍ରୀକାନ୍ତ । ସେ ମଧ୍ୟ ଆଇନ ବ୍ୟବସାୟ ସୂତ୍ରରେ ଦୂରରେ ରହିଲେ । ଉଗର ଚଳାଇବା କଷ୍ଟସାଧ୍ୟ ହେଲା ।

କାନ୍ତକବିଙ୍କର ଜୀବନର ଗୋଟିଏ ବଡ଼ ଦିଗ ତାଙ୍କର ବ୍ୟାଧିଯୋଗୁଁ ଛାୟାଚ୍ଛନ୍ନ ହୋଇ ରହିଥିଲେହେଁ ତା'ର ଜ୍ୟୋତି ପ୍ରଭୃତ ଆଲୋକବିକିରଣ କରିଯାଇଛି । ପରେ ଉତ୍କଳସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ ଗୋଟିଏ ନୂତନ ଜାତୀୟ ସଙ୍ଗୀତ ପଠିତ ହେଲା—"ବନ୍ଦେ ଉତ୍କଳ ଜନନୀ" । ଏହାହିଁ ଓଡ଼ିଆ ଜାତିର ସ୍ୱୀକୃତ ଜାତୀୟ ଗୀତିକା । ଏ ସଙ୍ଗୀତର ଲେଖକ ଯୁବକ ଲକ୍ଷ୍ମୀକାନ୍ତଙ୍କ ମଧ୍ୟରେ ଯେଉଁ ଜାତୀୟତାର ଜ୍ୱାଳାମୁଖୀ ଲୁକ୍କାୟିତ ଥିଲା, ତାର ଉନ୍ମେଷ ହୋଇଥିଲା ଉତ୍କଳସମ୍ମିଳନୀରେ । ପରବର୍ତ୍ତୀ କାଳରେ ତାଙ୍କର ଜାତୀୟ ସଙ୍ଗୀତାବଳୀ ଯୋଗୁଁ କେହି କେହି ତାଙ୍କୁ ଜାତୀୟ କବି ଆଖ୍ୟା ମଧ୍ୟ ଦେଇଥିଲେ ।

୧୯୨୧ ଅସହଯୋଗ ଆନ୍ଦୋଳନ ପରେ ଯେତେବେଳେ ଉତ୍କଳ ସାହିତ୍ୟରେ ଛଦ୍ମ ନାମରେ "ଅସହଯୋଗୀର ଆତ୍ମକଥା" ପ୍ରକାଶ ପାଇଲା ସେତେବେଳେ କେହି କେହି ତାର ଲେଖକକୁ ପ୍ରତିକ୍ରିୟାଶୀଳ ବୋଲି କହିଲେ । ମାତ୍ର କାନ୍ତକବିଙ୍କ ଦୃଷ୍ଟି ଥିଲା ସମାଲୋଚନା ଦ୍ୱାରା ଆବର୍ଜନାର ଦୂରୀକରଣ । ଅସହଯୋଗୀର ଆତ୍ମକଥା ଯେଉଁମାନେ ପଢ଼ିଛନ୍ତି ଆଜି ସ୍ୱାଧୀନତା ପରେ ସମାଜର ଅବସ୍ଥା ଦେଖି ସମସ୍ତେ ସ୍ୱୀକାର କରିବେ ଯେ କାନ୍ତକବି ଥିଲେ—କ୍ରାନ୍ତଦର୍ଶୀ ଦୂରଦ୍ରଷ୍ଟା କବି । ପୁଣି ଯେତେବେଳେ ବ୍ରିଟିଶ ସରକାରଙ୍କ ବାହୁଚ୍ଛାୟା ତଳେ କେତେକ ଜମିଦାର ଦଳ ଗଢ଼ି ଜାତୀୟ ଆନ୍ଦୋଳନର ବିରୋଧ କଲେ ସେତେବେଳେ କାନ୍ତକବି ଏପରି ନିର୍ମମ ଭାବରେ ସେମାନଙ୍କର ସମାଲୋଚନା କଲେ ଯେ ସେତେବେଳେ ସେଇ ସମାଲୋଚନାର ବାହକ "ପଞ୍ଚାମୃତ" ପ୍ରହସନର ପ୍ରକାଶ କରୁଥିବା ପଞ୍ଚାମୃତ ଚତୁର୍ଦ୍ଦିଗରେ ବିଶେଷ ଆଗ୍ରହ ଓ ଆନନ୍ଦ ଖେଳାଇ ଦେଇଥିଲା । ଏହି ସମାଲୋଚନା ଫଳରେ ଜମିଦାର ଦଳ ଲୁପ୍ତପ୍ରାୟ ହୋଇଗଲା । ଏହି ସମାଲୋଚନାରେ ସେ ନିଜର ନିତାନ୍ତ ଆତ୍ମୀୟମାନଙ୍କ ପ୍ରତି ମଧ୍ୟ ସଦୟ ନ ହୋଇ ନିର୍ମମତା ଦେଖାଇଛନ୍ତି । କାନ୍ତକବିଙ୍କର ନିରପେକ୍ଷତା ଓ ନିର୍ଭୀକତା ତେଣୁ ସାହିତ୍ୟ କ୍ଷେତ୍ରରେ ଅତୁଳନୀୟ ।

ତାଙ୍କରି ପ୍ରେରଣାରେ ପ୍ରେରିତ ହୋଇ ତାଙ୍କର ଜ୍ୟେଷ୍ଠପୁତ୍ର ନିତ୍ୟାନନ୍ଦ ୧୯୩୦ ମସିହାରେ ଲବଣ ଆନ୍ଦୋଳନରେ ଯୋଗ ଦେଲେ । ଏହା ଫଳରେ ସମଗ୍ର ପରିବାରରେ ଏକ ବିରାଟ ପରିବର୍ତ୍ତନ ଦେଖାଗଲା । ପିତା ଭାଗବତପ୍ରସାଦ ସରକାରୀ ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ କରି ବିହାର ଓଡ଼ିଶା କାଉନ୍ସିଲ ସଭ୍ୟପଦରୁ ଇସ୍ତଫା ଦେଲେ । ପରେ ପରେ ସାନ ଭାଇ କମଳାକାନ୍ତ ଓ ସାନ ଭଉଣୀ ଲେଖିକା କୋକିଳା ଦେବୀ ମଧ୍ୟ କାରା-ବରଣ କଲେ । ସେତେବେଳେ ପରିବାରର ଏକମାତ୍ର ଉପାର୍ଜନକ୍ଷମ ବ୍ୟକ୍ତି ଅନ୍ୟତମ ଅନୁଜ ସୀତାକାନ୍ତ କଣ୍ଟ୍ରାକ୍ଟର ଓ ଅଫିମ ଦୋକାନ ଭେଣ୍ଡର ଥିଲେ । ସରକାରୀ ବିମୁଖତାବଶତଃ ସେସବୁ ବନ୍ଦ ହୋଇଗଲା । ତେଣେ

ବାଲେଶ୍ୱରରେ ମଧ୍ଯ ତାଙ୍କର ସାନ ଭଉଣୀ ଶ୍ରୀମତୀ ଜାହ୍ନବୀ ଦେବୀ ଓ ଭଣଜା ଶ୍ରୀ ଗୌରଗୋପାଳ ଦାସ କାରା-ବରଣ କଲେ । ଜାହ୍ନବୀଙ୍କ ସ୍ୱାମୀ ଶ୍ରୀ ମୁକୁନ୍ଦପ୍ରସାଦ ଦାସ ଜଣେ ବିଶିଷ୍ଟ କଂଗ୍ରେସ ନେତା । ପରବର୍ତ୍ତୀ କାଳରେ ସେ ଓଡ଼ିଶା ବିଧାନ ସଭାର ସଭାପତି ହୋଇଥିଲେ । ଶ୍ରୀମତୀ କୋକିଳା ଦେବୀ ହରିଜନ ଆନ୍ଦୋଳନର ଅଗ୍ରଣୀ ହୋଇ ତାଳପଦା ଗ୍ରାମରେ ହରିଜନ ସ୍କୁଲ କରି ସେଇଠାରେ ଶିକ୍ଷା ଦେବାକୁ ଆରମ୍ଭ କଲେ । ୧୯୪୨ ରେ ପୁଣି ତାଙ୍କର ଦୁଇ ପୁଅ ନିତ୍ୟାନନ୍ଦ ଓ ଗୌରଚନ୍ଦ୍ର କାରାବରଣ କଲେ । ଫଳରେ ପ୍ରେସ୍ ଓ ଉଗରର ସମ୍ପୂର୍ଣ୍ଣ ଦାୟିତ୍ୱ କାନ୍ତକବିଙ୍କ ଉପରେ ପଡ଼ିଲା । ସେତିକିବେଳେ ତାଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କର ଶାଳକ ଶ୍ରୀ ରାଧାମୋହନ ଦାସ ଉଗରର ସହିତ ସଂପୃକ୍ତ ହେଲେ ।

ଏହି ସମୟରେ ସେ ଅଧିକାଂଶ ଦିନ ଭଦ୍ରକରେ ରହୁଥିଲେ ଏବଂ ମଝିରେ ମଝିରେ ତାଳପଦା ଯାଉଥିଲେ । ଭଦ୍ରକରେ ଥିବାବେଳେ ତାଙ୍କର ବାସସ୍ଥାନ ଭାଗବତ ଭବନ ଅନେକ ସମୟରେ ସାହିତ୍ୟିକ ଓ ସାହିତ୍ୟ ପ୍ରେମିକ କଳାକାରମାନଙ୍କ ଦ୍ୱାରା ମୁଖରିତ ହେଉଥିଲା । ପ୍ରତି ସନ୍ଧ୍ୟାରେ ସାହିତ୍ୟିକ ଆସର ଜମୁଥିଲା । ସେଥିରେ ନିତ୍ୟନୈମିତ୍ତିକ ଭାବରେ ଯୋଗ ଦେଉଥିଲେ ଭଦ୍ରକ ହାଇସ୍କୁଲ ହେଡ୍‌ମାଷ୍ଟର ଶ୍ରୀ ଗୋକୁଳାନନ୍ଦ ନାୟକ ଏବଂ ଉତ୍କଳର ଜଣେ ନାଟ୍ୟକାର ଓ ପଟୁ ଅଭିନେତା ଶ୍ରୀ ସତୀନ୍ଦ୍ରକୁମାର ମୁଖାର୍ଜୀ । ଏହି ଆସରରେ ସାହିତ୍ୟ ଛଡ଼ା, ଦର୍ଶନ, ରାଜନୀତି, ସମାଜ ବିଜ୍ଞାନ, ମନସ୍ତତ୍ତ୍ୱ ଓ ଅର୍ଥନୀତି ପ୍ରଭୃତି ନାନା ବିଷୟରେ ଆଲୋଚନା କରାଯାଉଥିଲା । ଏହି ଆସରର ନାମକରଣ କରାଯାଇଥିଲା ସଭ୍ୟମାନଙ୍କ ଦ୍ୱାରା—ଗୁଡ୍‌ନାଇଟ୍ କ୍ଲବ୍ । କ୍ଲବ୍‌ର ପ୍ରତ୍ୟେକ ସଭ୍ୟ ବିଦାୟ କାଳରେ ଦିନରାତି ନିର୍ବିଶେଷରେ ଗୁଡ୍‌ନାଇଟ୍ କହିବାକୁ ବାଧ ହେଉଥିଲା । ଏହାହିଁ କେବଳ ସଭ୍ୟ-ଗୃହୀରୂପେ ସ୍ୱୀକୃତ ହେଉଥିଲା ।

କାନ୍ତକବି ପରିବାର ସହିତ ଘନିଷ୍ଠ ସମ୍ପର୍କ ରଖିଥିବା ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ହକିମ୍ ମହମ୍ମଦ ଫାରୁକ୍ । ଭଦ୍ରକର ଗୋଟିଏ ପ୍ରସିଦ୍ଧ ମୁସଲମାନ ଜମିଦାର ବଂଶରେ ତାଙ୍କର ଜନ୍ମ । କାନ୍ତକବିଙ୍କର ସୂର୍ଯ୍ୟମୈତ୍ରୀ ସମ୍ପର୍କରେ ସେ ମାମୁଁ । ଏହି ସର୍ବଦା ପ୍ରସନ୍ନମୁଖ ବ୍ୟକ୍ତିଙ୍କର ନିଷ୍କପଟ ସ୍ନେହ ତାଙ୍କୁ ସମ୍ଭବତଃ "କଣାମାମୁଁ" ଲେଖିବାର ପ୍ରବୃତ୍ତି ଦେଇଥିଲା ।

ତାଙ୍କ ସାହିତ୍ୟିକ ଜୀବନକୁ ଉତ୍ସାହିତ କରିବା ଦିଗରେ ଥିଲେ ତାଙ୍କର ଅନ୍ୟତମ ଭଗିନୀପତି ପାଟନାର ଓକିଲ ଶ୍ରୀ ଗଜେନ୍ଦ୍ରପ୍ରସାଦ ଦାସ । ଭଗିନୀ ବାଣୀ ଓ କଲ୍ୟାଣୀଙ୍କ କଣ୍ଠରେ ଜୀବନ-ସଙ୍ଗୀତର ସ୍ୱର ଦେଇ ସେ ପ୍ରଭୂତ ଆନନ୍ଦ ପାଉଥିଲେ ।

କାନ୍ତକବିଙ୍କ ସାହିତ୍ୟିକ ଜୀବନକୁ ନଷ୍ଟଭ୍ରଷ୍ଟ କରିବାରେ ତାଳପଦାସ୍ଥ ପୈତୃକ ଦେବୋତ୍ତର ସମ୍ପତ୍ତି ବିଶେଷଭାବରେ ଦାୟୀ । ସେଠାର ଭାଇଆରମାନେ ନାନା ମାମଲାମୋକଦ୍ଦମାରେ କାନ୍ତକବିଙ୍କୁ ଜଡ଼ିତ କରି ଅସ୍ତବ୍ୟସ୍ତ କରୁଥିଲେ । କାନ୍ତକବିଙ୍କର ଶାରୀରିକ ଅକ୍ଷମତାର ସୁଯୋଗ ନେଇ ସେମାନେ କାନ୍ତକବିଙ୍କ ଜୀବନ ଉପରେ ମଧ୍ଯ ହସ୍ତକ୍ଷେପ କରିବାକୁ ଯତ୍ନ କରିଥିଲେ । ମାତ୍ର ତାଙ୍କୁ ରକ୍ଷା କରିଥିଲେ ସେଇ ଭାଇମାନଙ୍କ ମଧ୍ୟରେ ଗଣେଶପ୍ରସାଦ ମହାପାତ୍ର ଓ ତାଳପଦାର ହରିଜନମାନେ ।

ଏହିସବୁ ଜଟିଳ ପରିସ୍ଥିତି ହେତୁ ସେ ବାଧ ହୋଇ ୧୯୩୮ ରେ ପ୍ରେସର ଭାର ପୁତ୍ର ନିତ୍ୟାନନ୍ଦ ହାତରେ ଦେଇ ଭଦ୍ରକ ଛାଡ଼ି ତାଳପଦାରେ ଅଧିକ ସମୟ କଟାଇଲେ । ଏହି ସମୟରେ ତାଙ୍କର ଜୀବନ ଅତି ଦୁର୍ବିସହ ହୋଇ ପଡ଼ିଥିଲା । ଏ ଘୋର ଦୁଃଖ ଓ ବିପଦ ମଧ୍ୟରେ କେବଳ ଉଗରର ଆତ୍ମପ୍ରକାଶ କାନ୍ତକବିଙ୍କୁ ବଞ୍ଚାଇ ରଖିପାରିଥିଲା । ସାହାରାର ମରୁବାଲି ମଧ୍ୟରେ ଏହା ଗୋଟିକ ମାତ୍ର ତାଙ୍କ ପାଇଁ ମରୁଦ୍ୟାନ ପରି କାର୍ଯ୍ୟ କରିଥିଲା । ନିଜେ ଚିତ୍ରଗଠନକାରୀ ଥିଲେହେଁ ପୁତ୍ର ନିତ୍ୟାନନ୍ଦଙ୍କ ଉପରେ ସମ୍ପାଦକର ଦାୟିତ୍ୱ ନ୍ୟସ୍ତ କରିଥିଲେ । ପତ୍ନୀ ଲବଙ୍ଗଲତାଙ୍କର ଅଲୌକିକ ସେବା ଓ ଉଗରର ପ୍ରକାଶନ କେବଳ ତାଙ୍କୁ ବଞ୍ଚାଇ ରଖି ପାରିଥିଲା ।

ସାହିତ୍ୟର ପ୍ରତ୍ୟେକ କ୍ଷେତ୍ରରେ ସେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଛନ୍ତି । ଓଡ଼ିଆ ବ୍ୟଙ୍ଗ କବିତାର ପ୍ରକୃତରେ କହିବାକୁ ଗଲେ ସେ ହେଉଛନ୍ତି ଜନକ । ତାଙ୍କ ଆଗରୁ ଫକୀରମୋହନ ଅବଶ୍ୟ ଏଥିରେ ହାତ ଦେଇଥିଲେ । କିନ୍ତୁ ତାହା ଉଲ୍ଲେଖଯୋଗ୍ୟ ନୁହେଁ ।

ତାଙ୍କର ଏହି ସାହିତ୍ୟିକ ଯଶର ଅର୍ଚ୍ଚନା କରିବାକୁ **ଉତ୍କଳ ସାହିତ୍ୟ ସମାଜ ତାଙ୍କୁ ତାଙ୍କର** ଜନ୍ମଭୂମି କଟକକୁ ନିମନ୍ତ୍ରଣ କରି ଆଣାଇଥିଲେ । ସମାଜର ତତ୍କାଳୀନ କର୍ମକର୍ତ୍ତ୍ରୀ ସରଳା ଦେବୀ ତାଙ୍କୁ ଶ୍ରୀରାମଚନ୍ଦ୍ର ଭବନରେ ରଖାଇ ତାଙ୍କର ତତ୍ତ୍ୱାବଧାନ କରିଥିଲେ । ଏହି ଭବନରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ତାଙ୍କୁ ଅଭିନନ୍ଦନ ଦିଆଯାଇଥିଲା । ସେହି ସମୟରେ ସେ ତାଙ୍କର କଲେଜ ବନ୍ଧୁ ଚିନ୍ତାମଣି ଆଚାର୍ଯ୍ୟଙ୍କ ଆମନ୍ତ୍ରଣକ୍ରମେ ରଘୁନାଥଜୀଉ ମନ୍ଦିର ନିକଟସ୍ଥ ତାଙ୍କ ବାସଭବନକୁ ଯାଇଥିଲେ । ସେଠାରେ ଭାଗବତ ତତ୍ତ୍ୱର ଖୁବ୍ ଆଲୋଚନା ହୋଇଥିଲା । ଆଚାର୍ଯ୍ୟଙ୍କ ଦ୍ୱାରା ଅନୂଦିତ ହେଉଥିବା ଶ୍ରୀମଦ୍‌ଭାଗବତ ଦେଖି ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଓ ପୁସ୍ତକର ପରିଶିଷ୍ଟରେ ଗୋପୀଗୀତା ସନ୍ନିବେଶ କରିବାକୁ ପରାମର୍ଶ ଦେଇଥିଲେ । କଟକରେ ଶ୍ରୀରାମଚନ୍ଦ୍ର ଭବନରେ ରହଣୀ ସମୟଟକ ସେ ବେଶ୍ ଉପଭୋଗ କରିଥିଲେ ।

୧୯୫୧ ଫେବୃୟାରୀ ମାସରେ ବାଲେଶ୍ୱରଠାରେ ନିଖିଳ ଉତ୍କଳ ଜମିଦାର ସମ୍ମିଳନୀ ବସିଲା । ଏଥିପାଇଁ ସେ ନିମନ୍ତ୍ରଣ ପାଇ ବାଲେଶ୍ୱର ଗଲେ ଓ ସାମନ୍ତ ରାଧାପ୍ରସନ୍ନ ଦାସଙ୍କ ଘରେ ଅବସ୍ଥାନ କରୁଥିଲେ । ଏହି ମାସ ୨୪ ତାରିଖରେ ବାଲେଶ୍ୱରର ଫକୀରମୋହନ ସାହିତ୍ୟ ପରିଷଦ ତାଙ୍କୁ ଏକ ଉତ୍ସବରେ ମାନପତ୍ର ପ୍ରଦାନ କରିଥିଲେ । ଏହି ସଭାରେ ତାଙ୍କଦ୍ୱାରା ପ୍ରଦତ୍ତ ଭାଷଣ ସମସ୍ତଙ୍କୁ ଅଭିଭୂତ କରିପକାଇଥିଲା । କିଛି ଦିନ ପରେ ଉକ୍ତ ସାହିତ୍ୟ ସଂସଦ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିବା ସଙ୍ଗୀତ ସମ୍ମିଳନୀରେ ସେ ଆମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ଶାରୀରିକ ଅସୁସ୍ଥତା ସତ୍ତ୍ୱେ ୩ ଦିନ ଧରି ଏହି ସଙ୍ଗୀତ ସମ୍ମିଳନୀରେ ଉପସ୍ଥିତ ଥାଇ ସେ ନିବିଷ୍ଟ ଚିତ୍ତରେ ସମସ୍ତ କାର୍ଯ୍ୟକ୍ରମ ଲକ୍ଷ୍ୟ କରିଥିଲେ । ସେ ଯେ କିପରି ସଙ୍ଗୀତ-ପ୍ରାଣ ଥିଲେ ତାହା ଏହି ଘଟଣାରୁ ବୁଝାପଡ଼ିଥିଲା । ସଙ୍ଗୀତର ମଧୁ ଝଙ୍କାର ତାଙ୍କର ସମସ୍ତ ଶାରୀରିକ ତଥା ମାନସିକ କ୍ଳେଶ ଓ ବେଦନା ସମ୍ପୂର୍ଣ୍ଣରୂପେ ଦୂର କରିଦେଉଥିଲା ।

କ୍ରମେ ଭଦ୍ରକ ଗୋପୀନାଥ ପ୍ରେସ୍‌ରେ 'ଡଗର' ପତ୍ରିକା ଛପା ହେବାରେ ବହୁ ବାଧାବିଘ୍ନ ଦେଖାଦେଲା । ଏହା କାନ୍ତକବି ତଥା ନିତ୍ୟାନନ୍ଦବାବୁଙ୍କର ହୃଦୟରେ ଦାରୁଣ ବ୍ୟଥା ଜନ୍ମାଇଥିଲା । ନିତ୍ୟାନନ୍ଦବାବୁ ବାଧ ହୋଇ କଟକଠାରେ ଡଗର ଛପାହେବାଲାଗି ଡଗର ପ୍ରେସ୍ ନାମରେ ଏକ ସ୍ୱତନ୍ତ୍ର ପ୍ରେସ୍ ସ୍ଥାପନ କରିଥିଲେ ଏବଂ ସେହି-ଦିନଠାରୁ ଅର୍ଥାତ୍ ୧୯୪୮ରେ ଡଗର କଟକଠାରୁ ପ୍ରକାଶ ପାଇଲା । ଅନେକଦିନଯାଏ କାନ୍ତକବି ଡଗରଠାରୁ ବିଚ୍ଛିନ୍ନ ହୋଇ ରହିଲେ । ଯାହାକୁ ନିଜର ବୁକୁ ଚିରି ଗଢ଼ିଥିଲେ ତାହାଠାରୁ ବେଶି ସମୟ ବିଚ୍ଛିନ୍ନ ହୋଇ ରହିବା ଫଳରେ ସେ ମର୍ମାନ୍ତିକ ଯନ୍ତ୍ରଣା ଅନୁଭବ କଲେ । ତାଙ୍କ ପ୍ରାଣ ବେଦନାର୍ଦ୍ର ହୋଇପଡ଼ିଲା । ଅବଶେଷରେ ସେ ସସ୍ତ୍ରୀକ କଟକ ପିଠାପୁରସ୍ଥ ଡଗର କାର୍ଯ୍ୟାଳୟକୁ ଆସି ପ୍ରାୟ ୩ ମାସ କାଳ ଅବସ୍ଥାନ କଲେ । କଟକ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ପୀଠସ୍ଥଳ ହୋଇଥିବାରୁ ଏଇ କେତୋଟି ଦିନ ସେ ଅତି ଆନନ୍ଦରେ କଟାଇ-ଥିଲେ । କାରଣ ଗ୍ରାମରେ ଦୂର ଆତ୍ମୀୟମାନେ ତାଙ୍କୁ ନାନା ମାଲିମକଦ୍ଦମାରେ ସର୍ବଦା ହିଟହାଟା କରିବାରୁ ସେ ସେଠାରୁ ନିଷ୍କୃତି ପାଇବା ଲାଗି ଉତ୍କଣ୍ଠିତ ହୋଇପଡ଼ିଥିଲେ । ଏଥିଲାଗି କଟକରେ ଡଗର କାର୍ଯ୍ୟାଳୟ ତାଙ୍କୁ ବିଶେଷ ପ୍ରୀତିପ୍ରଦ ହୋଇଥିଲା ।

ଭଦ୍ରକରେ ଥିଲାବେଳେ ସେ ତାଙ୍କର ପ୍ରସିଦ୍ଧ ଉପନ୍ୟାସ 'କଣାମାମୁଁ'ର ମୂଳଦୁଆ ପକାଇଥିଲେ । ନାନା ଜଞ୍ଜାଳ ଓ ପ୍ରତିକୂଳ ପରିସ୍ଥିତି, ରଚନାର ଅଗ୍ରଗତିରେ ଘୋର ପ୍ରତିବନ୍ଧକ ସୃଷ୍ଟି କରିଥିଲା ଓ ରଚନା ପୂରାପୂରି ବନ୍ଦ ହୋଇଯାଇଥିଲା । କଟକର ପରିବେଶ ଅନୁକୂଳ ପରିସ୍ଥିତି ସୃଷ୍ଟି କଲା । ତାଙ୍କ ପ୍ରତି ଅନୁରକ୍ତ କେତେକ ସାହିତ୍ୟିକଙ୍କର ଏକାନ୍ତ ଅନୁରୋଧ ଏଡ଼ାଇ ନପାରି ସେ ପୁନର୍ବାର 'କଣାମାମୁଁ' ରଚନାରେ ଲାଗିପଡ଼ିଲେ । 'କଣାମାମୁଁ'ର ମୁଣ୍ଡିମରି ଦେଖିବାକୁ ବହୁ ସାହିତ୍ୟିକ ଅତ୍ୟନ୍ତ ବ୍ୟଗ୍ରତା ପ୍ରକାଶ କରିବାରୁ କାନ୍ତକବି ତତ୍ପର ହୋଇ ରଚନା ଶେଷ କରିଦେଲେ । କଣାମାମୁଁଙ୍କ ଅନ୍ତର୍ଦ୍ଧାନରେ ପୁସ୍ତକଟି ଶେଷ ହୋଇଛି । ଏହା ସମ୍ପୂର୍ଣ୍ଣ କି ଅସମ୍ପୂର୍ଣ୍ଣ ତାହା ବହୁ ସମାଲୋଚକଙ୍କ ବିଚାରବସ୍ତୁ ହୋଇଛି । ସେତେବେଳେ କିନ୍ତୁ ସ୍ୱୟଂ କାନ୍ତକବି କହିଥିଲେ ଯେ ଆଉ ଟିକିଏ ବର୍ଦ୍ଧିତ କରି ନିମ୍ନଲିଖିତ ବିଷୟବସ୍ତୁ ସଂଯୋଗ କଲେ ବହିଟି ବୋଧହୁଏ ଅଧିକ ଉପାଦେୟ ହେବ । କଣାମାମୁଁଙ୍କ ଅନ୍ତର୍ଦ୍ଧାନ ପରେ ବହୁବର୍ଷ ବିତି ଯାଇଥିବ—ଉପନ୍ୟାସର ନାୟକ ନାୟିକାମାନେ ବୟସ୍କ

ହୋଇ ଯାଇଥିବେ—ହଠାତ୍ ଦିନେ କଣାମାମୁଁଙ୍କର ଆବିର୍ଭାବ ହେବ । ସେତେବେଳକୁ ଭାରତବର୍ଷରେ ସ୍ୱାଧୀନତାର ପ୍ରାକ୍‌କାଳ ହୋଇଥିବ । ସମସ୍ତେ ତାଙ୍କୁ ବେଢ଼ିଯାଇ ସେ କେଉଁଠି ଥିଲେ ଓ କଅଣ କରୁଥିଲେ ବୋଲି ପଚାରିବେ । କଣାମାମୁଁ ସମସ୍ତଙ୍କୁ ନିଜର କାର୍ଯ୍ୟକଳାପସ୍ୱରୂପ ସ୍ୱାଧୀନତା ସଂଗ୍ରାମ ତଥା ସୁଭାଷ ବୋଷଙ୍କ ଭାରତୀୟ ଜାତୀୟ ସେନାଙ୍କର ଅଭିଯାନର ଏକ ଚିତ୍ର ଦେବେ । ଭାରତର ସ୍ୱାଧୀନତା ଲୋପ ପାଇ ବ୍ରିଟିଶ୍ ଶାସନର ଚରମ ପ୍ରତିଷ୍ଠା-ଠାରେ ହିଁ ଫକୀରମୋହନଙ୍କ ଲେଖନୀ ବନ୍ଦ ହୋଇଛି । ଏହିଠାରୁ ସ୍ୱାଧୀନତା ସଂଗ୍ରାମ ଓ ଭାରତର ସ୍ୱାଧୀନତା ପ୍ରାପ୍ତିର ଚିତ୍ର ଦେଇ କାନ୍ତକବି ଫକୀରମୋହନଙ୍କ ଯୁଗ ସଙ୍ଗେ ଅତ୍ୟାଧୁନିକ ଯୁଗର ଏକ ସଂଯୋଗ ସୂତ୍ର ସ୍ଥାପନର ପରିକଳ୍ପନା କରିଥିଲେ । ଅନୁକୂଳ ବାତାବରଣ ପାଇଥିଲେ ସେ ଏହି ବିଷୟକୁ ମୂଳ ଗ୍ରନ୍ଥରେ ଯୋଗ କରି-ଥାଆନ୍ତେ । ପାଣ୍ଡୁଲିପିର ଗୋଟିଏ ପୃଷ୍ଠା ମଧ୍ୟ ଡଗର ପ୍ରେସ୍‌ର ତତ୍କାଳୀନ କେତେକ ଅସାବଧାନ କର୍ମଚାରୀଙ୍କ ଯୋଗୁଁ ନଷ୍ଟ ହୋଇଯାଇଥିଲା । ଅବଶ୍ୟ ଏହି ଶେଷ ପୃଷ୍ଠାରେ ଖୁବ୍ ଅଳ୍ପ ବିଷୟବସ୍ତୁ ଥିଲା ।

ଏହି ସମୟର ରହଣୀକାଳରେ କାନ୍ତକବି କଟକରେ ବହୁ ସଭାରେ ଅଭିନନ୍ଦିତ ହୋଇଥିଲେ । ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ ଏବଂ ଅବ୍‌ଜରଭର୍ ସମ୍ପାଦକ ଶ୍ରୀ ମଧୁସୂଦନ ମହାନ୍ତିଙ୍କ ଦ୍ୱାରା କାନ୍ତକବି ଯଥାକ୍ରମେ ଉତ୍କଳ ସାହିତ୍ୟ ସମାଜର ଗୃହ ଶ୍ରୀରାମଚନ୍ଦ୍ର ଭବନ ଓ ଶ୍ରୀଯୁକ୍ତ ମହାନ୍ତିଙ୍କର ସ୍ୱଗୃହରେ ସମ୍ବର୍ଦ୍ଧିତ ହୋଇଥିଲେ । ଉଭୟଠାରେ ତାଙ୍କୁ ମାନପତ୍ର ଦିଆଯାଇଥିଲା ।

କାନ୍ତକବିଙ୍କର କୋଣାର୍କ ମନ୍ଦିର ଦେଖିବାକୁ ପ୍ରବଳ ଆଗ୍ରହ ଥିଲା । ତାଙ୍କର ଏହି ଇଚ୍ଛା ଜାଣି-ପାରି କଟକ ମ୍ୟୁନିସିପାଲିଟିର ତତ୍କାଳୀନ ଏକ୍‌ଜିକ୍ୟୁଟିଭ୍ ଅଫିସର ବିଭୂତିବାବୁ ଗୋଟିଏ ଜିପ୍ ଠିକ୍ କରି ସଦଳ-ବଳେ କାନ୍ତକବିଙ୍କୁ କୋଣାର୍କ ନେଇଯାଇଥିଲେ । କୋଣାର୍କ ମାର୍ଗରେ ସେ ଭୁବନେଶ୍ୱରଠାରେ ଅଟକି ଯାଇଥିଲେ । ମିଉଜିଅମ୍‌ରେ ତାଙ୍କୁ ଅଭିନନ୍ଦନ ଦିଆଯାଇଥିଲା । କୋଣାର୍କ ଗଲାବେଳେ ତାଙ୍କ ସଙ୍ଗେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସୁମିତ୍ରା ଦେବୀ ଓ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଯାଇଥିଲେ । କୋଣାର୍କରୁ ଫେରି କାନ୍ତକବି ଆଉ କିଛିଦିନ ଡଗର କାର୍ଯ୍ୟାଳୟରେ ଅବସ୍ଥାନ କଲେ । ପ୍ରାୟ ୩ ମାସବ୍ୟାପୀ ଏହି ରହଣୀଟି ତାଙ୍କର ଅତ୍ୟନ୍ତ ଆନନ୍ଦଦାୟକ ହୋଇଥିଲା । ଏହାହିଁ ତାଙ୍କ ଜୀବନଦୀପର ଶେଷ ଜ୍ୱଳନସ୍ୱରୂପ ଥିଲା । ଗ୍ରାମରେ ତାଙ୍କର ଅନୁପସ୍ଥିତି ଯୋଗୁଁ ଶତ୍ରୁମାନେ ନାନା ଗଣ୍ଡଗୋଳ ଆରମ୍ଭ କଲେ । ବ୍ୟଥିତ ହୃଦୟରେ କବି ବାଧ୍ୟ ହୋଇ ଡଗର କାର୍ଯ୍ୟାଳୟ ପରିତ୍ୟାଗ କଲେ । ଜଞ୍ଜାଳମୟ ପରିସ୍ଥିତିରେ ପୁନଃପ୍ରବେଶ ଯୋଗୁଁ ତାଙ୍କର ମନ ଭାଙ୍ଗିପଡ଼ିଲା । ଭଗ୍ନ ଶରୀରକୁ ମନର ବଳହିଁ ଏତେଦିନଯାଏ ଟେକି ରଖିଥିଲା । ମନ ଭାଙ୍ଗିଯିବା ଫଳରେ ଶରୀର କ୍ରମେ ଅବସନ୍ନ ହୋଇପଡ଼ିଲା । ଯେଉଁ ଶେଷ ମୁହୂର୍ତ୍ତକୁ ସେ ଆକୁଳରେ ଆବାହନ କରି ଆସୁଥିଲେ ଶେଷରେ ସେହି ମୁହୂର୍ତ୍ତ ଉପସ୍ଥିତ ହେଲା । ୧୯୫୩ ଫେବୃଆରୀ ୨୪ ତାରିଖ ଠିକ୍ ରାତି ୧ ଘଣ୍ଟା ୪୦ ମିନିଟରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ଭଦ୍ରକ ଭବନରୁ ତାଙ୍କର ନଶ୍ୱର ଶରୀରକୁ ବିରାଟ ଶୋଭାଯାତ୍ରାରେ ଚାଳପଦା ନିଆଯାଇ ଅନ୍ତିମ କୃତ୍ୟ ସମାପନ କରାଯାଇଥିଲା ।

ଫକୀରମୋହନଙ୍କ ପରେ କାନ୍ତକବିହିଁ ଯଥାର୍ଥ ହାସ୍ୟରସସ୍ରଷ୍ଟାରୂପେ ଦେଖା ଦେଇଥିଲେ । ଯାହାକୁ ସେ ସତ୍ୟ ବୋଲି ଅନୁଭବ କରୁଥିଲେ ତାହା ସେ ଅତି ନିର୍ଭୀକ ଭାବରେ ପ୍ରକାଶ କରୁଥିଲେ । ତାଙ୍କର ଶାଣିତ ଲେଖନୀ ଭାଇ, ବନ୍ଧୁ, ବିରାଦର, ଶତ୍ରୁ, ମିତ୍ର ନିର୍ବିଶେଷରେ ସମସ୍ତଙ୍କୁ ବ୍ୟଙ୍ଗବିଦ୍ରୂପ କରୁଥିଲା । ଆତ୍ମସମାଲୋଚନା ତାଙ୍କର ଗୋଟିଏ ବିଶେଷ ଗୁଣ ଥିଲା । ଯେଉଁ ଜମିଦାରଗୋଷ୍ଠୀଭିତରେ ସେ ନିଜେ ଥିଲେ ସେହି ଗୋଷ୍ଠୀକୁ ସେ ବ୍ୟଙ୍ଗବିଦ୍ରୂପ କରି ସବୁ ଜମିଦାରଙ୍କର ଚକ୍ଷୁଶୂଳ ହୋଇଉଠିଥିଲେ । ଲେଖନୀ ଚାଳନା କଲାବେଳେ ତାଙ୍କ ଆଖିରେ ସମସ୍ତେ ସମାନ । ଜୀବନରେ ସମସ୍ତ ପ୍ରଲୋଭନକୁ ସେ ଅତି ନିଷ୍ଠୁର ଭାବରେ ଏଡ଼ାଇ ଦେଇଥିଲେ । ସମାଜର ସମସ୍ତ ପ୍ରକାର ଦୁର୍ନୀତିକୁ ସେ ଯେପରି ଭାବରେ ପଦାରେ ପକାଇ ଦେଉଥିଲେ ସେଥିରୁ କ୍ଷାନ୍ତ ହେବାକୁ ବହୁ ପ୍ରଲୋଭନ ତାଙ୍କୁ ଦେଖାଇ ଦିଆଯାଇଥିଲା । ଏହି ପ୍ରଲୋଭନରେ ପଡିଥିଲେ ହୁଏତ ତାଙ୍କୁ ନାନା ଆର୍ଥିକ ସଙ୍କଟରୁ ମୁକ୍ତି ମିଳିଥାଆନ୍ତା ଓ ତାଙ୍କର ପ୍ରିୟ ଡଗରର ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟ ଦୂର ହୋଇଯାଇ-ଥାଆନ୍ତା । ଏ ସବୁ ଜାଣିବା ସତ୍ତ୍ୱେ ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ ।

ଥଟ୍ଟା କରିବା ତାଙ୍କର ଏକ ସ୍ୱାଭାବିକ ଗୁଣ ଥିଲା । ଏ ଥଟ୍ଟା କିନ୍ତୁ ଥିଲା ନିର୍ମଳ, ନିର୍ଦ୍ଦୋଷ ଓ ଅସୂୟାରହିତ । ଥଟ୍ଟାରେ ଅନ୍ୟକୁ ହସେଇ ନିଜେଇ ହୃଦୟରେ ଟିକିଏ ଉଷ୍ମତା ଲାଭ କରିବା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ । ଏଥିଲାଗି ତାଙ୍କ ସଂସ୍ପର୍ଶରେ ଆସୁଥିବା ଲୋକେ ହସି ହସି ବେଦମ୍ ହୋଇଯାଉଥିଲେ । ଜଣେ ଜଣେ ନୀରସ ରୂଢ଼ ବ୍ୟକ୍ତି ଏ ଥଟ୍ଟାରେ ମଧ୍ୟ କ୍ଷୁଣ୍ଣ ହେଉଥିଲେ । ବାଲୁକାମୟ ହୃଦୟରେ ରସଗ୍ରହଣ କରିବାର ଶକ୍ତି ସେମାନଙ୍କର ନ ଥିଲା । ଅବଶ୍ୟ ଏପରି ବ୍ୟକ୍ତିଙ୍କ ସଂଖ୍ୟା ଅତି ନଗଣ୍ୟ ଥିଲା । ଏପରି ଘଟଣା ଘଟିଲେ କାନ୍ତକବି ମର୍ମାନ୍ତିକ ଯନ୍ତ୍ରଣା ଅନୁଭବ କରୁଥିଲେ । କାହାକୁ ବାକ୍ୟ ବା ଲେଖାରେ ଆଘାତ କରିବା ତାଙ୍କ ଧର୍ମର ବହିର୍ଭୂତ ଥିଲା । ଥଟ୍ଟା କଲାବେଳେ ସେ ପାତ୍ରାପାତ୍ର ବିଚାର କରୁ ନଥିଲେ । ନିଜର ସ୍ତ୍ରୀ, ପୁତ୍ର, ଭ୍ରାତା, ଭଗିନୀ ଓ ପୁତ୍ରବଧୂଙ୍କୁ ସେ ସର୍ବସମକ୍ଷରେ ଅତି ଲଜୁରା ଥଟ୍ଟା କରିଦେଉଥିଲେ । ସ୍ମିତହାସ୍ୟଯୁକ୍ତ ଅଧୋବଦନରେ ସେ ସ୍ଥାନ ପରିତ୍ୟାଗ ରି ସମସ୍ତେ ଆତ୍ମରକ୍ଷା କରୁଥିଲେ । ନିଜ ଜୀବନରେ ସେ ଆନନ୍ଦର ସତ୍ତା ଅନୁଭବ କରି ନ ଥିଲେ । ହାହାକାରରେ ତାଙ୍କର ଅନ୍ତର ସର୍ବଦା ତଳ ତଳ ହୋଇ ଦଗ୍ଧ ହେଉଥିଲା । ତେଣୁ ଅନ୍ୟକୁ ହସେଇ, ହସର ପରିବେଶ ସୃଷ୍ଟି କରି କ୍ଷଣକ ପାଇଁ ସେହି ପରିବେଶ ମଧ୍ୟରେ ସେ ନିଜକୁ ହଜାଇ ଦେଉଥିଲେ । ସେହି ସମୟତକ ତାଙ୍କର ସନ୍ତପ୍ତ ହୃଦୟ ଚନ୍ଦନପ୍ରଲେପ ହେଲାପରି ସେ ଅନୁଭବ କରୁଥିଲେ । ଏଇ ଥଟ୍ଟାହିଁ ଥିଲା ତାଙ୍କର ରକ୍ଷାକବଚ ।

କାନ୍ତକବି ଥିଲେ ବୈଷ୍ଣବ । 'ତୃଣାଦପି ସୁନୀଚ' ବୋଲି ସେ ନିଜକୁ ମନେକରୁଥିଲେ । ବରିଷ୍ଠ କବି ଓ ସାହିତ୍ୟିକର ଯଶ ଲାଭ କରିଥିଲେହେଁ ତାହା ତାଙ୍କୁ ପ୍ରକୃତରେ ମିଳିଛି କି ନା ତାହା ସେ ଜାଣି ନଥିଲେ । 'କଣାମାମୁଁ' ରଚନାବେଳେ ଜଣେ ତରୁଣ ସାହିତ୍ୟିକ ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିବାରୁ ସେ କହିଥିଲେ— "ପ୍ରକୃତରେ ତୁମକୁ ଏହା ଭଲ ଲାଗୁଛି ନା ଖାଲି ମୋତେ କଲମ ଚଷେଇବାକୁ ଏମିତି ହେଉଛ ?" କେତେ ବଡ଼ ସାହିତ୍ୟସୌଧ ସେ ଗଢ଼ିଦେଇପାରିଛନ୍ତି ତାହା ସେ ନିଜେ ଜାଣିନଥିଲେ । ବୈଷ୍ଣବର ଅନ୍ୟତମ ଗୁଣ 'ତରୋରିବ ସହିଷ୍ଣୁତା' ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିରାଜିତ ଥିଲା । ଶତ୍ରୁମାନଙ୍କର କୁଟିଳ ଚକ୍ରାନ୍ତ, ନାନାଦିଗରୁ ଆକ୍ରମଣ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟାଇ ପାରି ନ ଥିଲା । ସେ ଇଚ୍ଛା କରିଥିଲେ ସେମାନଙ୍କର ପ୍ରଭୂତ କ୍ଷତି ସାଧନ କରାଇ ପାରିଥାଆନ୍ତେ । କିନ୍ତୁ ସେ ତାହା ମନରେ କଦାପି କଳ୍ପନା କରିନାହାନ୍ତି । ବରଂ ଉଦାର ହୃଦୟରେ ସମସ୍ତଙ୍କୁ କ୍ଷମା ଦେଇଛନ୍ତି ।

ତାଙ୍କର ସାହିତ୍ୟିକ ଜୀବନ ବହୁମୁଖୀ । କରୁଣ ଓ ହାସ୍ୟ ରସରେ ସେ ଅପୂର୍ବ ସାଫଲ୍ୟ ଲାଭ କରିଥିଲେ । ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ନାଟକ, ଏକାଙ୍କିକା, ଅନୁବାଦ, କବିତା ଆଦି ପ୍ରତ୍ୟେକ ବିଭାଗରେ ଲେଖନୀ ଚାଳନା କରି ସେ ଯଶସ୍ୱୀ ହୋଇଛନ୍ତି ।

ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରି ନ ଥିଲେହେଁ ସେ ରାଜନୀତିରୁ ଆବର୍ଜନା ଦୂର କରିବାଲାଗି ସ୍ୱୀୟ ଲେଖନୀ ଚାଳନା କରିଥିଲେ । ଛଦ୍ମ ନାମରେ ସେ ପଞ୍ଚାମୃତ, ଅସହଯୋଗୀର ଆତ୍ମକଥା ଆଦି ଲେଖି ବିପଥଗାମୀମାନଙ୍କୁ ଚେତାବନୀ ଦେଉଥିଲେ । 'ନଉଓଡ଼ିଶା'ରେ ବହୁଦିନ ଧରି ସେ ଅଗ୍ରଲେଖା ଲେଖୁଥିଲେ ।

ସମାଜସଂସ୍କାରକ ଭାବରେ ତାଙ୍କର ଅବଦାନ ଯଥେଷ୍ଟ ଥିଲା । ହାସ୍ୟରସ ମାଧ୍ୟମରେ ସେ ସମାଜ ସଂସ୍କାରର ନିର୍ଦ୍ଦେଶ ଦେଉଥିଲେ ।

ସଙ୍ଗୀତହିଁ ତାଙ୍କର ପ୍ରାଣ ଥିଲା । ମଧୁର ସଙ୍ଗୀତର ମୂର୍ଚ୍ଛନା ତାଙ୍କର ଦଗ୍ଧ ହୃଦୟକୁ ଶାନ୍ତ ଶୀତଳ କରୁଥିଲା । ଶେଷ ନିଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ସେ କାନ ଡେରି ପ୍ରିୟତମ ଶିଷ୍ୟ ଜଗବନ୍ଧୁଙ୍କର କଣ୍ଠନିଃସୃତ ସଙ୍ଗୀତକୁ ଶୁଣିଥିଲେ । ସଙ୍ଗୀତରେ ହିଁ ତାଙ୍କର ଜୀବନ ଲୀନ ହୋଇଯାଇଥିଲା ।

ଅନାବିଳ ଦେଶପ୍ରେମରେ ତାଙ୍କଠାରୁ ଅଧିକ କେହି ଉଦ୍‌ବୁଦ୍ଧ ହୋଇ ନ ଥିବେ । ନିଜ ଦେଶର ମାଟି ଗୋଡ଼ି ପବନର ଅର୍ଚ୍ଚନା କରିବାରେ ସେ ବିଶେଷ ଦକ୍ଷତା ଦେଖାଇଅଛନ୍ତି । ତାଙ୍କର 'ଦୁନ୍ଦୁଭି' ଜାତୀୟ ସାହିତ୍ୟରୂପେ ସର୍ବତ୍ର ଆଦୃତ ।

ଉଚ୍ଚ ପାଶ୍ଚାତ୍ୟ ଶିକ୍ଷା ଲାଭ କରିଥିଲେହେଁ ପାଶ୍ଚାତ୍ୟ ପ୍ରଭାବ ତାଙ୍କ ଲେଖାକୁ ଆଚ୍ଛନ୍ନ କରିପାରି ନ ଥିଲା । ସବୁ ରଚନାରେ ସେ ନିଜର ମୌଳିକତା ଅତି ଆଶ୍ଚର୍ଯ୍ୟଜନକଭାବେ ଫୁଟାଇବାରେ ସମର୍ଥ ହୋଇପାରିଛନ୍ତି । ୧୯୦୩ରୁ ୧୯୫୩ ପର୍ଯ୍ୟନ୍ତ ଅର୍ଦ୍ଧଶତାବ୍ଦୀକାଳ ସେ ଯେଉଁ ସାଧନା କରି ସାହିତ୍ୟ ସୃଷ୍ଟି କରିଯାଇଛନ୍ତି ଏହି ଗ୍ରନ୍ଥ ତାହାର ଅଂଶବିଶେଷ । ଏହି ଗ୍ରନ୍ଥ ପ୍ରକାଶ ପରେ ତାଙ୍କର ସାହିତ୍ୟର ଯଥାର୍ଥ ସମୀକ୍ଷା ଆରମ୍ଭ ହେବ । ଏହି କ୍ଷୁଦ୍ର ପ୍ରବନ୍ଧରେ ତାଙ୍କ କର୍ମମୟ ଜୀବନର ସମସ୍ତ ଅଂଶ ଉପରେ ପୂର୍ଣ୍ଣ ଆଲୋକପାତ କରିବା ଅସମ୍ଭବ । ଭବିଷ୍ୟତରେ ଏକ ପୂର୍ଣ୍ଣାଙ୍ଗ ଜୀବନୀ ପ୍ରକାଶ କରିବାର ପରିକଳ୍ପନା ରଖାଯାଇଛି ।



# ସୂଚୀ

## ରସ ସାହିତ୍ୟ



### ଲୀଳକା

## ନାଟ୍ୟ ସାହିତ୍ୟ



## ପ୍ରବନ୍ଧ ସାହିତ୍ୟ

# କାବ୍ୟ ସାହିତ୍ୟ

## କଲ୍ଲୋଳ



## ବିବିଧ କବିତା





# ଅସହଯୋଗୀର ଆତ୍ମକଥା

ମୁଁ ଥିଲି ତମ ଆମ ଭଳିଆ ଖାଲି ମଣିଷ ; କର୍ମଗୁଣରେ ହୋଇପଡ଼ିଲି ନନ୍‌କୋଅପରେଟର୍ । ଯେପରି ଗୋଟିପୋକ ଦେହରେ ଡେଣା ବାହାରିଲେ ସେ ପ୍ରଜାପତି ହୋଇଯାଏ, ସେହିପରି ମୁଁ ଖଦଡ଼ ପକ୍ଷ ଲଗାଇ ପୂରା ଦସ୍ତୁର ଭଲଣ୍ଟିଅର୍ ହୋଇଗଲି । ଅସହଣି ଲୋକେ ଠାପରା କରିବେ 'ମିମ୍ପୁଡ଼ି ଦେହରେ ଡେଣା ହେଲା' ବୋଲି । କିନ୍ତୁ ଆମର ଡେଣା ହେବାଟା evolution ନୁହେଁ— revolution; ଠିକ୍ କରି କହିବାକୁ ଗଲେ metamorphosis । ଏ metamorphosis ଟା କିପରି ହେଲା ଜାଣନ୍ତି ? 'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ।'

ସେତେବେଳେ ପଢ଼ୁଥାଏଁ ସେକେଣ୍ଡ କ୍ଳାସ୍‌ରେ ; ଦେଶରେ ଗାନ୍ଧିଗୋଳ ଲାଗିଲା । ସମସ୍ତେ କହିଲେ କି, ସ୍କୁଲ ଉଠିଯିବ, ସରକାର ଉଠିଯିବ, ରେଲ ଉଠିଯିବ, ଟେଲିଗ୍ରାଫ୍, ମଟର, ଘଡ଼ି, ସାଇକଲ—ସବୁ ଉଠିଯିବ; ଲୋକେ ଚାହାଳୀ, ଟୋଲ୍‌ରେ ପାଠ ପଢ଼ିବେ, ପଞ୍ଚୁ ଦଲ୍‌ରେ ବାଟ ଚାଲିବେ, ଜଳଯନ୍ତ୍ରରେ ସମୟ ଜାଣିବେ, ସ୍ୱାଭାବିକ ଜୀବନଯାପନ କରି ଲଙ୍ଗଳା ହୋଇ ରହିବେ । ଫଳକଥା—ସତ୍ୟଯୁଗ ଫେରିଆସିବ, ଅତଏବ ବେଳ ଥାଉଁ ଆପଣା ଆପଣାର କିନାରା କଟକଣା କରିନିଅ । ଏ କଥାରେ ବୋକା ଲୋକେ wait and see ମନ୍ତ୍ର ଧରି ଜଳକାଙ୍କ ଭଳି ଚାହିଁ ରହିଲେ; ଆଉ ଆମ ଭଳିଆ ଚାଲାଖ ପିଲାଏ ନିଜ ନିଜର ରାହା ଉଣ୍ଡିନେଲେ । ମୁଁ ଠିକ୍ ବୁଝି ନେଇଥିଲି ଯେ "ଜୋର ଯା'ର ମୁଲକ ତା'ର" ଦିନ ଆସୁଛି ।

ମନଟା ବଡ଼ ଖୁସି ଥାଏ କି, ଆଉ ଯାହା ହେଉ ପଛକେ, ନଗଦ ଲାଭ ଉପରେ କ୍ଳାସ୍‌ଉଠା ପରୀକ୍ଷାରୁ ଖଲାସ । କେବଳ ଦୁଃଖ ମୋ ସାଇକେଲ୍‌ଟା ସକାଶେ । ମନ ଭିତରେ ଠାକୁରଙ୍କୁ ଡାକୁଥାଏ କି, ରେଳଟା ଉଠିଯାଉ ପଛକେ ଏକା ରେଳବାଇ ହୋଟେଲଟି ଚିରଞ୍ଜୀବୀ ହୋଇଥାଉ ।

ମୋର ଭାରି ଅହନ୍ତା ଥିଲା ଆମ ଆସିଷ୍ଟାଣ୍ଟ୍ ହେଡ୍‌ମାଷ୍ଟର ଅନାଦିବାବୁ ଉପରେ । ସେ ମୋତେ ମୂଳରୁ ଦେଖିପାରେ ନାହିଁ । ମୁଁ • ଯେପରି ତା'ର ଦି' ଆଖିର ବିଷ । ତା ଠିଆ ଠିଆ କଳା ନିଶ-ଯୋଡ଼ାକ ଆଉ ତା' ତଳେ ଅଧା ନାଲି ଅଧା ଧଳା ଫାଙ୍କ ଫାଙ୍କ ଦାନ୍ତ ପାଟିଆକ ଯେନ ଆମ ଭଳିଆ ନିରୀହ ପିଲାଙ୍କର ସେଇଟା ଥିଲା ଗୋଟାଏ ମୂର୍ତ୍ତିମାନ୍ ଯମ । ଟିକିଏ ହସେ ନାହିଁ, ଟିକିଏ ମିଶେ ନାହିଁ, ମୁହଁଟା କରିଥାଏ ସବୁବେଳେ ଦରଗଡ଼ା ହାଣ୍ଡିଟା ପରି । ଯେପରି ତା' ବାପ ଗୋସବାପ ଚୌଦ ପୁରୁଷରେ ଶହେ ଷାଠିଏ ବୁଜୁଳା କଏ ଖାଇଛି ! ମୁଁ ମନେ ମନେ ଠିକ୍ କରିନେଲି କି ସରକାରଟା ଉଠିଗଲେ ସେ ଅନାଦିଆ ମାଷ୍ଟରଟାକୁ, ଆଉ ମୋ ନାଁରେ ସେଦିନ ଗୁହାରି ଗୁଜୁରିଥିଲା ଯେଉଁ ନବା, ତାକୁ ଆଚ୍ଛା କରି ଶିଖେଇ ଦେବି ଦିନେ । ଦେଖିନେବି, ମୋତେ ବାପୁଡ଼ା କିମିତି ରଷ୍ଟିକେଟ୍ କରିବାକୁ ବସିଥିଲା । ଗାନ୍ଧିଙ୍କ ମୁଖରେ ଫୁଲ ଚନ୍ଦନ ପଡ଼ୁ, ଏ କାମଟା କିମିତି ସଫଳ ହୋଇଯାଉ । ତେବେ ଆମ ପରି ଟୋକାଏ ମନପ୍ରାଣ ଖରଚ କରି ଲାଗି ନ ପଡ଼ିଲେ ସେ ଏକୁଟିଆ ବା କରିବେ କ'ଣ ?

ଏହିପରି ସାତ ପାଞ୍ଚ ଭାବି ଚିନ୍ତି ଆମେ କେତେଜଣ ଢଗୁର-ସାର ହୋଇ ଦିନେ ଅନାଦିବାବୁ ଯେତେବେଳେ କ୍ଳାସରେ ପଢ଼ାଉଥାଏ ସେତିକିବେଳେ ହଠାତ୍ "ଜୟ ଗାନ୍ଧିମହାରାଜ୍‌କୀ ଜୟ" ବୋଲି ବୋବାଳି ଉଠିଲୁଁ । ଅନାଦିର ତ ଅକଲ ଗୁଡୁମ୍ । ତା'ର ସେ କଳା ମଚ ମଚ ଗମ୍ଭୀର ମୁହଁଟାରେ କିଏ ଯେପରି ଗଇଣ୍ଠା ପାଉଁଶ ଲେପି ଦେଇଗଲା । ସେ ତା'ର ନାଲ୍ ନାଲ୍ ଆଖିଯୋଡ଼ାକ ତଳକୁ କରି··· । ମୁଁ ତ ଗଡ଼ ଜିତିଲା ପରି ବହି-ଗୁଡ଼ାକ କଗୁଡ଼ ଦେଇ କ୍ଳାସରୁ ବାହାରି ଆସିଲି; ମୋ ପଛେ ପଛେ ଆହୁରି ଜଣକେତେ ବି ବାହାରି ଆସିଲେ । ଅନାଦିବାବୁଙ୍କୁ ଏପରି ଭେଲେକା ମାରି ଯାଇଥିଲା ଯେ, ତା'ର ସେ ତେଜ—ଫୁର୍ତ୍ତି ତ କୁଆଡ଼େ ଗଲା ; ସେ ବର୍ତ୍ତମାନ କ'ଣ କରିବ କିଛି ବୁଝି ନ ପାରି ଆଖି ବୁଜିଦେଇ ତଳକୁ ମୁହଁ ପୋତି କାଠ ହୋଇ ବସିଗଲା । ସେତେବେଳେ ତା' ଗାଲ ବା ପିଠି କୁଣ୍ଡାଇ ହେଉଥିଲା କି ନାହିଁ କେଜାଣି । ସ୍ୱରାଜ୍ୟର ପ୍ରଥମ ପରୀକ୍ଷାରେ ପାସ୍ କରି ଆପଣା ମନରେ ଗଦାଏ ବଳ ଆସିଲା ମୋର । ଧନ୍ୟ ଗାନ୍ଧିଙ୍କ ମହିମା !

ଆମ ଗୋଳ ଶୁଣି ଇସ୍କୁଲର ଅପର କ୍ଳାସ୍‌ମାନଙ୍କରୁ ଆହୁରି ଅନେକ ପିଲାଏ ବାହାରି ଆସିଲେ । ଫାଟକ ପାଖରେ ସମସ୍ତେ ଗୋଟାଏ ଧାଡ଼ି କରି ଛିଡ଼ା ହେଲୁଁ, ଆଉ 'ବନ୍ଦେ ମାତରମ୍' କହି ମାର୍ଚ୍ଚ କରି ଚାଲିଲୁଁ । ଆଗଭର ହୋଇ lead କରୁଥାଏଁ ମୁଁ । ଏକା କଣେଇ କଣେଇ ଚାହୁଁଥାଏଁ ଟିକିଏ ସ୍କୁଲଆଡ଼କୁ । ବାରନ୍ଦାରେ ହେଡ୍‌ମାଷ୍ଟର ଛିଡ଼ା ହୋଇ ମୁରୁକି ମୁରୁକି ହସୁଥାନ୍ତି । ସେଦିନ ଆମେ ସହରଯାକ procession କରି ବୁଲିଲୁଁ । ଅନେକ ପିଲା ଆସି ଆମ ସାଙ୍ଗରେ ମିଶିଲେ । ବଜାରି ଟୋକା ବି କେତେ ମିଶିଲେ; ଦେଖାହାରୀ କେତେ ବି ମିଶିଲେ । ଏହିପରି ଆମ ଶୋଭାଯାତ୍ରା

ଚଳ ମସ୍ତ ଲମ୍ବ ହୋଇଗଲା । ସନ୍ଧ୍ୟା ସରକ ସମସ୍ତେ ଯାଇଁ ପହଞ୍ଚିଲୁଁ ଆଶ୍ରମରେ । ଆଶ୍ରମର ବଡ଼ବଡ଼ ଦାଢ଼ିଆ ମୁନି ଓ ବ୍ରହ୍ମଚାରୀମାନେ ଆମକୁ welcome—ନା ନା, ଏଇଟା ବିଦେଶୀ ଶବ୍ଦ ପରା—ଆମକୁ ସବୁ ପାଛୋଟି ବା ସତ୍କାର କଲେ । ଆମ Honourରେ ସେଠେଇଁ ଗୋଟାଏ meeting ହେଲା ( କ୍ଷମା କରିବେ, ଏପରି ଗୋଟାଏ ଗୋଟାଏ ଶବ୍ଦ ଆମ ସ୍ୱରାଜ୍ୟ ସେରସ୍ତାରେ ଚଳେ) । ସେଠାରେ ଆମେ ସମସ୍ତେ ଗୋଟି ଗୋଟି କରି vow ଗ୍ରହଣ କରି ଆମର ଧନ, ମନ, ପ୍ରାଣ, ମାନ ସବୁ ଦେଶସେବାରେ ଉତ୍ସର୍ଗ କଲୁଁ ଓ ଦେଶପଣ୍ଡା ବା ପୂଜାରୀମାନଙ୍କ ହସ୍ତରେ ଆତ୍ମ-ସମର୍ପଣ କଲୁଁ ।

ଏହି ହେଲା ଆମର ଦୀକ୍ଷାଗ୍ରହଣ । ଏହି ଉତ୍ସବ ମଜଲିସ୍‌ରେ ବହୁତ ବହୁତ ଗଳାବାଜି ହେଲା । ନବୀନ ସନ୍ନ୍ୟାସୀ ଆମ୍ଭେମାନେ ଧାଡ଼ି ଧରି ଛିଡ଼ାହୋଇ ଜାତୀୟ ସଙ୍ଗୀତ ଗାଇଲୁଁ । ଓଃ, ସେଦିନ ମନରେ କି ଆନନ୍ଦ, ପ୍ରାଣରେ କି ଫୁର୍ତ୍ତି, ଅନ୍ତରେ କି ଆବେଗପୂର୍ଣ୍ଣ ସ୍ପନ୍ଦନ ! ସେଦିନ ଯେ କି ସ୍ୱାଧୀନତା, କି ମୁକ୍ତିର ଝଙ୍କା ଅନୁଭବ କରୁଥାଏଁ, ସେ କଥା କ'ଣ କହିବି ! ଏ ସଯତାନୀ ଶାସନ ଧୂଳିସାତ୍ କରିବାକୁ ହେବ । ଏ ସଯତାନୀ ଶିକ୍ଷାପ୍ରଣାଳୀ ଭାଙ୍ଗି ଚୂର୍ମାର୍ କରିଦେବାକୁ ହେବ । ଧ୍ୱଂସ, ଧ୍ୱଂସ । ଆଗେ ଧ୍ୱଂସ ନ ହେଲେ ସୃଷ୍ଟି ଆସିବ କାହୁଁ ? ବିନାଶ ନ ହେଲେ ଗଠନ ଆସିବ କାହୁଁ ? ମିଥ୍ୟା ଓ ଜୁଆଚୋରିର ଭିତ୍ତି ଉପରେ ପ୍ରତିଷ୍ଠିତ ଏ ଭଣ୍ଡ ସରକାର ସହିତ ସମସ୍ତ ସମ୍ପର୍କ ତ୍ୟାଗ କରି, ପ୍ରାୟଶ୍ଚିତ୍ତ ଦ୍ୱାରା ଅଙ୍ଗଶୋଧନ କରି ନୂତନ ସତ୍ୟରାଜ୍ୟ ପ୍ରବର୍ତ୍ତନ କରିବାକୁ ହେବ । କରିବ କିଏ? ନା—ଆମେ ! 'ଆମେ' ବୋଇଲେ 'ମୁଁ' । କାରଣ ମୁଁ ହେଲି ଏ କାର୍ଯ୍ୟରେ pioneer—ଅର୍ଥ, ଆଗୁଆ । ସେଦିନ ଆଉ ବସାକୁ ଯିବା ହେଲା ନାହିଁ । ତହିଁ ଆରଦିନ ଦୋଳାଚଳ ଚିତ୍ତବୃତ୍ତି ହୋଇ ଧୀରେ ଧୀରେ ବସାଆଡ଼କୁ ଗଲି । ବସାରେ ନନା ଥିଲେ । ସାନ ଭାଇଟିଏ ଥିଲା । ନନା ଆଗରୁ ସବୁ ଶୁଣି ସାରିଥିଲେ ଆମର କୀର୍ତ୍ତିକଳାପ । ମୋ ଉପରେ ନଜର ପଡ଼ିଲାକ୍ଷଣି ତ ଦାନ୍ତ କାମୁଡ଼ି ଭୀମମୂର୍ତ୍ତି ହୋଇ ଆସିଲେ । ଏକଦମ୍ କଡ଼ା ହୁକୁମ ହେଲା କି, "ଯାକୁ ଏଠୁ ବାହାର କରିଦିଅ; ମୁଁ ଆଉ ଯା ମୁହଁ ଚାହିଁବି ନାହିଁ ।" ମୁଁ ବି ସେଇୟା ଖୋଜୁଥିଲି, ସାଙ୍ଗେ ସାଙ୍ଗେ ବାହାରି ଚାଲିଆସିଲି । ଏ ସୁବିଧା ଛାଡ଼େ କିଏ ? ବାଟେ ବାଟେ ଆସି ଆଶ୍ରମରେ ଦାଖଲ । ସେଠି ତ ସେତେବେଳେ ଅବାରିତ ଦ୍ୱାର । ଯେ ଆସିବ 'ସ୍ୱାଗତମ୍' । ଚୋର ଗୁଣ୍ଡାଙ୍କର ତ ଅଭାବ ନାହିଁ । ତହିଁ ଉପରେ ଯେ ନେଇଆଣି ଥୋଇ ପାରିଲା ତା'ର ଚର୍ବ୍ୟଚୋଷ୍ୟାଦି ବା ପଚାରେ କିଏ !

ମୋର ପିନ୍ଧା ଥିଲା ବିଲାତି ଧୋତି ଓ ପଞ୍ଜାବୀ—ତାକୁ ସବୁ ଅଗ୍ନିରେ ଉଛୁଣାଇ ଦେବାକୁ ପଡ଼ିଲା । ତତ୍‌କ୍ଷଣାତ୍ ନୂଆ ଭେକ ଧାରଣ କଲୁଁ । କେବଳ ଲଣ୍ଡା ହେବାକୁ ପଡ଼ିନାହିଁ । ଆମର ବାରିଷ୍ଟରୀ ଗୁଣ୍ଡ୍ ଟୋପର ବାଳଟା ରହିଗଲା । ହଁ, ଦୀକ୍ଷା ନେବାଟା ସିନା ସରିଥିଲା; ଗୁରୁ ଉପଦେଶ ତ ହୋଇ ନ ଥିଲା । ନତ୍ୟାଗ୍ରହର ପଦ୍ଧତିଗୁଡ଼ିକ ନ ଜାଣିଲେ ଚଳିବ କପରି ? ଦେଖିଲି ଯେ, ସେଠି ଗୁରୁ ଅନେକ । ସମସ୍ତେ ସମସ୍ତଙ୍କର ଗୁରୁ ଓ ସମସ୍ତେ ସମସ୍ତଙ୍କର ଚେଲା । ଅର୍ଥାତ୍ 'କେହି କାହାର ଗୁରୁ ନୁହେଁ କି କେହି କାହାରି ଚେଲା ନୁହେଁ !' ଏ ପରା ହେଲା ସାମ୍ୟ, ମୈତ୍ରୀ, ସ୍ୱାଧୀନତାର ପୀଠ ! ସବୁ ଭାଇ-ଭଗିନୀ । ଭାଗ୍ୟକୁ ବାପା ଏଠି member ନ ଥିଲେ । ଯାହାହେଉ, ବଡ଼ ବଡ଼ କେତେଜଣ ବସି ଆମକୁ ଅନେକ ରକମ ବୁଝାଇଲେ । ଏ କାର୍ଯ୍ୟରେ କପରି ଦମ୍ଭ, କପରି ସତ୍ ସାହସ, କପରି ଏକାଗ୍ରତା, କପରି ସ୍ୱାର୍ଥତ୍ୟାଗ ପ୍ରଭୃତି ଦରକାର, ତାହା ସବୁ ଅନେକ ପ୍ରକାର ବଖାଣି କହିଲେ । ଆମେ କାକୁସ୍ଥ ହୋଇ ସବୁ ଶୁଣିଗଲୁଁ । ମନଟା ଏକା ଭ୍ରମୁଥାଏ କୁଆଡ଼େ ବୋଲି କୁଆଡ଼େ । କାରଣ, ସବୁ କଥା ଆମେ ବୁଝିପାରୁ ନଥାଉଁ । ସାରକଥା ଏତିକି ବୁଝିଲୁଁ ଯେ ଆମକୁ 'ଅସହଯୋଗ' କରିବାକୁ ହେବ ଓ ସତ୍ୟାଗ୍ରହ କରିବାକୁ ହେବ । ଏ ଅସହଯୋଗଟା କପରି ନା, ସ୍କୁଲକୁ ପାଠପଢ଼ା ଛାଡ଼ିବୁଁ, ଆଉ ବାବା ଓ ନନାଙ୍କ କଥା ମାନିବୁଁ ନାହିଁ । ସଯତାନୀ ମତର ପୃଷ୍ଠପୋଷକ ଯେ, ତା'ର ଅନୁବର୍ତ୍ତନ କରିବାହିଁ ମହାପାପ; କାରଣ ତାହା ଆମ ଭିତରେ ଯେଉଁ ବିବେକରୂପୀ ପରମାତ୍ମାପୁରୁଷ ଅଛନ୍ତି ତାଙ୍କ ସହିତ ବିଦ୍ରୋହାଚରଣ । ଆଉ ସତ୍ୟାଗ୍ରହଟା କ'ଣ ନା ଯିଶୁଙ୍କ ପରି ଏ ଗାଲରେ ଚାପୁଡ଼ା ଖାଇ ସେ ଗାଲ ଦେଖାଇ ଦେବାକୁ ହେବ—କିମ୍ବା ନିତ୍ୟାନନ୍ଦଙ୍କ ଭଳି 'ମାର୍ ଖେୟେଚ୍ଛୁ ପ୍ରେମ୍ ଦିଲାଇବା' । ଏହିପରି କେତେ କ'ଣ ଉପଦେଶାମୃତ ପାନ କରୁ କରୁ ତଦ୍‌ଗତ ହୋଇ ଶୋଇପଡ଼ିଲି ।

ଆଶ୍ରମରେ ମୋର ରହଣି ହୋଇଗଲା । ବଡ଼ ଆନନ୍ଦରେ ଦିନ କଟୁଥାଏ ପହିଲୁ ପହିଲୁ । ଚାରିଆଡ଼େ 'ବାହାବା, ବାହାବା'—ଚାରିଆଡ଼େ 'ଆଦର ଗଉରବ' । ଖବରକାଗଜମାନଙ୍କରେ ଆମ ନାଁ'ରେ ଡବ ଡବ ବାଜିଲା । ତହିଁ ମଧ୍ୟରେ ମୋ ନାଁ'ଟା ପ୍ରଧାନ । ଓଃ, କି ଜ୍ୱଳନ୍ତ ତ୍ୟାଗ, କି ଜୀବନ୍ତ ଦେଶଭକ୍ତ ! ଆମ କୀର୍ତ୍ତିକଳାପ ସମସ୍ତ ଛାତ୍ରଙ୍କର ideal (ଆଦର୍ଶ) । ଏହିପରି ପ୍ରଶଂସା ଶୁଣୁ ଶୁଣୁ ଛାତି କୁଣ୍ଢେମୋଟ ହୋଇଗଲା, ମନମୋହନର ପେଟ ଫାମ୍ପି ଫାଟିଯିବାକୁ ବସିଲା । ମୁଁ କେଜାଣି ଗୋଟାଏ କ'ଣ ! ମୋ'ର ଦେହରେ ପୁଣି ଏତେଗୁଡ଼ାଏ ଗୁଣ ଥିଲା ! ଆଗରୁ ଏଥିରୁ ଟିକିଏ ଜଣା ପଡ଼ିଥିଲେ କି ଅନାଦିବାବୁ ମୋତେ ଏତେସବୁ କରିଥାନ୍ତା ! ଏହିକ୍ଷଣି ସେ କେଉଁଠି, ଆଉ ମୁଁ କେଉଁଠି ? ସେ କରୁଛି—ଗୋଲାମଗିରି ଆଉ

# ଅସହଯୋଗୀର ଆତ୍ମକଥା

ମୁଁ ? ମୁଁ ଜନନୀ ଜନ୍ମଭୂମିର ଉଦ୍ଧାର ନିମନ୍ତେ ଦେଶରେ ସ୍ୱାଧୀନତାର ବିଜୟ ବୈଜୟନ୍ତୀ ଉଡ଼ାଇଛି; ଭାରତମାତାର ଦୁର୍ଦ୍ଦଶା ମୋଚନ କରିବା ପାଇଁ ଦୁନ୍ଦୁଭିନାଦରେ ଜଗତ କମ୍ପାଉଛି; ସମଗ୍ର ଦେଶଟାକୁ ପରାଧୀନତା-ସମୁଦ୍ର ପାର କରାଇବା ସକାଶେ କର୍ଣ୍ଣଧାର ରୂପରେ ବୋଇତ ଘେନି ଛିଡ଼ା ହୋଇଛି । ଆଉ ସେ ନିବାଟା କଥା ? ଛି—ମୁଁ ଗୋଟାଏ ଆଉ ସେ ଗୋଟାଏ !

ଆଶ୍ରମରେ ଆମେ ଥାଉଁ ଭଲଣ୍ଟିଅର ଅନେକ ଗୁଡ଼ାଏ । ଆମର ଆଶ୍ରମର ନାମ ହେଲା workers ବା କର୍ମୀ; ଲୋକେ କିଏ କେତେ-ପ୍ରକାର କହନ୍ତି । କର୍ମୀଙ୍କର ପ୍ରଧାନତଃ ଦୁଇଟା ବିଭାଗ । ପ୍ରଥମ ଦଳର କାର୍ଯ୍ୟ ସ୍ୱରାଜ ଭିକ୍ଷା ; ଆଉ ଦ୍ୱିତୀୟ ଦଳର କାର୍ଯ୍ୟ ଖଦି ପ୍ରଚାର ଓ ଲୋକଶିକ୍ଷା । ପ୍ରଥମ ଦଳ ଯେ ପ୍ରଚାର କାର୍ଯ୍ୟ ବା propaganda କାମ ନ କରିବେ, ଏହା ନୁହେଁ; ତଥାପି ଭିକ୍ଷା ସଂଗ୍ରହ ତାଙ୍କର ପ୍ରଧାନ କାର୍ଯ୍ୟ । ସେହିପରି ଦ୍ୱିତୀୟ ଦଳ ପ୍ରଚାର propaganda ବା picketing ଯାହା କରନ୍ତୁ ପଛକେ କିଛି ହାତ ପଇଠ ହେବାର ଦେଖିଲେ ଛାଡ଼ିବେ ନାହିଁ । ଏଣେ ସମସ୍ତେ ଆମେ ସତ୍ୟାଗ୍ରହୀ ବା passive resisters ଅର୍ଥାତ୍ ବିଧା ବସିଲେ ପିଠି ଦେଖାଇବାବାଲା ।

ପ୍ରଥମ ଦଳର କଥାଟା ଆଗେ କହିବି । ଏହି ଭିକ୍ଷୁକ ଦଳଙ୍କ କାନ୍ଧରେ ଗୋଟାଏ ଲେଖାଏଁ ଝୁଲି । 'ଭିକ୍ଷାଂ ଦେହି, ଭିକ୍ଷାଂ ଦେହି' ବୋଲି କହି ଭିକ୍ଷା ମାଗିବା ଆମର ଧର୍ମବିରୁଦ୍ଧ—ଆମେ ଆତ୍ମଶକ୍ତି ଉପରେ ନିର୍ଭର କରୁଁ । ଏ କଥା ନିଜେ ମହାତ୍ମାଜୀ କହିଛନ୍ତି । ସେଥିପାଇଁ ସରକାରଙ୍କୁ ଆମେ କିଛି ମାଗୁଁ ନାହିଁ । କିନ୍ତୁ ଆପଣାର ଭାଇ ଭଉଣୀଙ୍କ ପାଖରେ ଲାଜ ସରମ କ'ଣ ? ଚକୁଳିଆପଣ୍ଡା ଦେଖିଥିବେ—ସେ 'ଦେ' ପଦ କହେ ନାହିଁ ; କିନ୍ତୁ ରଡ଼ିମାନ ଛାଡ଼ି ଦୁଆର ଦୁଆର ଥାଳି ପତାଇ ବୁଲୁଥାଏ । ତା' ଭିତରେ ଯେ ଦେଲା ତ ଭଲ; ଯେ ନ ଦେଲା ତାକୁ କିଛି ନ ମାଗି ଗୀତରେ ଗୁଡ଼ାଏ ଗାଳିଗୁଲଜ କରି ଚାଲିଯାଏ । ଆମେ ସେହିପରି ଝୁଲିଟି ଦେଖାଇ ଛିଡ଼ା ହେଉଁ । ଆମ ଗାନ୍ଧିଟୋପି ଓ ଖଦଡ଼ ପୋଷାକ ଦେଖି ଲୋକେ ବୁଝନ୍ତି । ଯେ ନ ବୁଝି ପଚାରେ, ତାକୁ "ସ୍ୱରାଜ ଭିକ୍ଷା" ବୋଲି ଜଣାଇଦେଉଁ । ସମସ୍ତେ ମୁଠାଏ ମୁଠାଏ ପକାଇ ଦିଅନ୍ତି । ବଜାରରେ ଦୋକାନୀମାନେ କିଏ ଚାଉଳ, କିଏ ଡାଲି, କିଏ ପନିପରିବା, କିଏ ପିଆଜ, ଲଙ୍କାମରିଚ ଦିଅନ୍ତି । କେହି କେହି ପଇସା ପକାନ୍ତି । ଏ ହେଲା ସାଧାରଣ ଭିକ୍ଷା ବା ମୁଷ୍ଟିଭିକ୍ଷା । ଏହାଛଡ଼ା ଆମର ଆହୁରି ରକମେ ଭିକ୍ଷା ଅଛି । ସେଇଟା ଅସାଧାରଣ ବା special ଭିକ୍ଷା; ଅର୍ଥାତ୍ କୌଣସି ଗୋଟାଏ ବିଶିଷ୍ଟ କାରଣ ଘେନି । ନିତ ଭିକ୍ଷା ହେଲା ପେଟ ପୋଷିବା ସକାଶେ । ଆଉ ବିଶିଷ୍ଟ ଭିକ୍ଷାଟା ଅନ୍ୟାନ୍ୟ ବିଶିଷ୍ଟ ଖରଚ ନିମନ୍ତେ । ଗୋଟାଏ କୌଣସି ବିଶିଷ୍ଟ ଘଟଣା ବା କାର୍ଯ୍ୟ ଉପଲକ୍ଷରେ ବା ବିଶିଷ୍ଟ ବ୍ୟକ୍ତିର ନାମ ଜୋରରେ ଏ ଭିକ୍ଷା ହୁଏ, ଯଥା—ତିଳକଙ୍କ ଜନ୍ମଦିନ—ଦିଅ ଚାନ୍ଦା, ଆଜି ଗାନ୍ଧି ଦିବସ—ଦିଅ ଚାନ୍ଦା, ଆଜି ଅମୁକ ଜେଲ ଗଲେ—ଦିଅ ଚାନ୍ଦା, ଆଜି ଅମୁକ ଜୀ ଆସିଛନ୍ତି—ଦିଅ ଚାନ୍ଦା । ଏହିପରି କେତେ କହିବି ? ଏହାଛଡ଼ା ଆମର ନିଜର ବା ସ୍ଥାନୀୟ କାମ କେତେଗୁଡ଼ିଏ ମଧ୍ୟ ଥାଏ । ସେଗୁଡ଼ାକ ଯଥା—ଆଜି ଅମୁକ ସ୍ଥାନରେ ସମ୍ମିଳନୀ ହେବ, ତମୁକ ପଡ଼ିଆରୁ ପଟୁଆର ବାହାରିବ, ତମୁକ ସ୍ଥାନରେ ଜାତୀୟ ବିଦ୍ୟାଳୟ ବସିବ, ସମୁକ ଜାଗାରେ ଅରଟ କିଣା ଓ ଖଦଡ଼ ପ୍ରଚାର ହେବ—ଇତ୍ୟାଦି । ଏସବୁ କାମରେ ମାତବ୍ବର ଲୋକେ ବାହାରନ୍ତି, ଯଥା—ମୁଁ । କାରଣ ଭିଖ ମାଗିବାରେ ଯେଉଁ art ବା କାଏଦା ଅଛି ଏ କ୍ଷେତ୍ରରେ ସେଇଟା ବେଶୀ ଲୋଡ଼ା ପଡ଼େ । ଆମେ ପରୀକ୍ଷା କରି ଦେଖିଛୁଁ, ଯେଉଁମାନେ ଏଇ ମାଗନ୍ତା ବିଦ୍ୟାଟା ଭଲରୂପେ ହାସଲ କରିଅଛନ୍ତି, ସେମାନେ ଗଲେ ଅଧିକ ଆୟ କରନ୍ତି । ମାଗିବାର ସାଧାରଣ ନିୟମ ହେଉଛି କାକୁତିମିନତି କରିବା ଓ ଦରକାର ପଡ଼ିଲେ ଗୋଡ଼ତଳେ ପଡ଼ିଯିବା । ଏଥିରେ ଭଲ ପଇସା ମିଳେ । କୌଣସି କୌଣସି ସ୍ଥାନରେ ଫସଲେ ମିଳିଯାଏ ମଧ୍ୟ । ଏ ସମସ୍ତର ହିସାବପତ୍ର ଠିକ୍‌ମତ ଥାଏ । କିନ୍ତୁ ଥାଏ ନାହିଁ ଗୋଟାଏ କଥା—Check । ଆଉ କହିବାକୁ ଗଲେ check କରିବାର ବା ଉପାୟ କ'ଣ ? ଅନେକ ସରକାରୀ ବ୍ୟକ୍ତି ବା ଜମିଦାର ଶ୍ରେଣୀର ଲୋକେ ଅଛନ୍ତି, ଯେଉଁମାନେ ପୁଲିସକୁ ଭୟ କରନ୍ତି; ସେମାନେ ଚାନ୍ଦା ଦେଲାବେଳେ ନାମ ଲେଖିବାକୁ ମଙ୍ଗନ୍ତି ନାହିଁ । ଏପରି କି 'ଜଣେ ଦାତା', 'କୌଣସି ବନ୍ଧୁ' ବୋଲି ଲେଖିବାକୁ ସୁଦ୍ଧା ନାସ୍ତି କରନ୍ତି । ଅତଏବ ତାହା ଲେଖିବା ବା ନ ଲେଖିବା ଆମ ପେନସିଲର ଖୁସି ଉପରେ ନିର୍ଭର କରେ ।

ଗାନ୍ଧିଙ୍କ ନାଁ'ଟା ଏକା ଏପରି ମନ୍ତ୍ରଶକ୍ତିବତ୍ କାର୍ଯ୍ୟ କରୁଥାଏ ଯେ ଗାନ୍ଧିଲୋକ ଆସିଛନ୍ତି ବୋଇଲେ ଅଦିଆ ବ୍ୟକ୍ତି ସୁଦ୍ଧା ପକେଟ ଅଣ୍ଡାଳି ପକାଏ । ଏହାଛଡ଼ା ଉଚ୍ଚରମସ୍ତିଷ୍କ ନେତାମାନେ ସାଧାରଣ ଲୋକଙ୍କ ମନରେ ଗାନ୍ଧିଭକ୍ତିଟା ଉଦ୍ରେକ ଓ ପୁଷ୍ଟ କରିବାପାଇଁ କେତେଗୁଡ଼ାଏ ଅଜଗୁବି ଗଳ୍ପ ଉଦ୍ଭାବନ କରିଥିଲେ । ସେଗୁଡ଼ିକ ନୂଆ ନୂଆ ରଙ୍ଗ ଦେଇ ତିଆରି କରିବା ଓ ପ୍ରଚାରର ସୁବିଧା କରିବା ମୋର ଥିଲା ଗୋଟାଏ କାମ । ସେପରି ଶତ ଶତ ଗଳ୍ପ ଅଛି, ସମସ୍ତେ କିଛି କିଛି ଶୁଣିଥିବେ, ଅତଏବ କହିବାର ଦରକାର ନାହିଁ । ତଥାପି ଗୋଟାଏ ଯୋଡ଼ାଏ ଉଦାହରଣ ଦିଏଁ । ଜଣେ କିଏ ଗାନ୍ଧିଙ୍କୁ ଟାପରା କରିଥିଲା ଯେ ତା ପୁଅକୁ ସାପ କାମୁଡ଼ିଲା । ଯେତେ ଝଡ଼ାଫୁଙ୍କାରେ

ଗଲାନାହିଁ । ମାତ୍ର 'ଗାନ୍ଧି' 'ଗାନ୍ଧି' ବୋଲି ତିନି ଥର ଫୁଙ୍କିଦେଲାରୁ ପିଲାଟି ଉଠି ବସିଲା ।

ଆଉ ଜଣେ କେଉଁଠି ହରତାଳ ଦିନରେ ହଳ କରୁଥିଲା ବୋଲି ତା'ର ବଳଦ'ଟା ହଠାତ୍ ପଡ଼ି ଅଚେତ ହୋଇଗଲା । ସେ ଗାନ୍ଧିଙ୍କୁ ମୁଣ୍ଡିଆ ମାରି ପାଞ୍ଚ ସକାଶେ କିଛି ଜରିମାନା ମନାସିବାରୁ ବଳଦଟା ପୁଣି ଛିଡ଼ା ହେଲା ।

ଆଉ କାହାର ଘର ପୋଡ଼ିଗଲା । ଆଉ କିଏ ମହାଦେବଙ୍କଠେଇଁ ଗୁହାରି ପଡ଼ିଥିଲା ଯେ ତାକୁ ହୁକୁମ ହେଲା କି, "ତୁ ଗାନ୍ଧିଙ୍କଠେଇଁ ଅମୁକେଇ ଅପରାଧ କରିଛୁ ; ଆଶ୍ରମରେ କିଛି ଦେଲେ ବେମାରିରୁ ଭଲ ହେବୁ"—ଇତ୍ୟାଦି ଇତ୍ୟାଦି ।

ଦୁହିଁ ଦୁହିଁ ଗାନ୍ଧି ଠାକୁର, ଗାନ୍ଧି ଠାକୁରାଣୀ, ଗାନ୍ଧି ସିଦ୍ଧି, ଗାନ୍ଧି ହୁକୁମ, ଗାନ୍ଧି ମେଳା ପ୍ରଭୃତି କେତେ କ'ଣ ସୃଷ୍ଟି ହୋଇଗଲା । ପ୍ରତ୍ୟକ୍ଷରେ ଆମେ ସବୁ ଏଥିରେ ନ ଥାଉଁ ; କିନ୍ତୁ ଭିତରେ ଭିତରେ ଆମେ ହେଲୁଁ ମୂଳ ।

ଆମ ଦେଶର ଲୋକେ ମାଳିକା, ଗରୁଡ଼ ପୁରାଣ, କାଳସୀ ପ୍ରଭୃତିରେ ବଡ଼ ବିଶ୍ୱାସ କରନ୍ତି । ଆମେ ସେଥିପାଇଁ ସେ ସବୁ କଥା ସାଙ୍ଗରେ ଗାନ୍ଧି କଥାମାନ ଏପରି ଖଞ୍ଜି ଖାଞ୍ଜିରେ ଖାପ ଖୁଆଇ ଯୋଖିଦେଲୁଁ ଯେ କଥାକୁ କଥା ଖାସା ଲେଖି ହୋଇଗଲା— ବିଶେଷତଃ ସ୍ତ୍ରୀ ଲୋକଙ୍କଠେଇଁ । ବାସ୍ତବିକ ସ୍ତ୍ରୀ ଜାତିଟା ଏଡେ ବୋକା ଯେ ତାଙ୍କୁ ବାଗେଇ ନେବା ଭାରି ସହଜ । ଖାଲି ତାଙ୍କ sentimentକୁ ଠିକ୍ appeal କରିଦେଲେ ହେଲା । ଗାନ୍ଧିଙ୍କୁ ଅମାନ୍ୟ କଲେ ତାଙ୍କ ପୁଅ ପତିଙ୍କର ଅମଙ୍ଗଳ ହେବ, ଏ ତ ଅଛି ଏକ ଭୟ । ସେଥିରେ ଆମ ଭଳିଆ ପିଲାଙ୍କୁ ଦେଖିଲେ ତାଙ୍କର sympathy ଜିନିଷଟା ବହିକି ପଡ଼େ । ଏହା ଜାଣିଶୁଣି ଆମେ ସୁନ୍ଦର ସୁନ୍ଦର ପିଲା ଯୋଡ଼ିଏ ତିନୋଟି ସାଙ୍ଗରେ ରଖିଥାଉଁ । ସେ ପିଲାଏ ଏପରି ଶିକ୍ଷିତ ଯେ କଅଁ ଳେଇ କଅଁ ଳେଇ 'ମା', 'ମାଉସୀ' ବୋଲି ଡାକିଲେଇ ପଡ଼ନ୍ତି । ଏଥିରେ ଆଉ କି ସମ୍ଭାଳ ହେବା କଥା ! "ଆହା, କାହାର ଦୁଧଖିଆ ପିଲାଗୁଡ଼ିକ କେତେ କଷ୍ଟ ପାଉଛନ୍ତି ଗୋ !" ଏହି ଫଳରେ ଘରଆଡ଼େ ଭିତରକୁ ପଶି ପଇସା କଉଡ଼ି, ଗହଣା ଗାଣ୍ଠି ଅନେକ ରକମ ମାରି ଆଣନ୍ତି । ଏଥିରୁ ଆଶ୍ରମ ପାଣ୍ଠିକୁ ଯିବା ନ ଯିବାଟା ଆମର ମଧୁର ଇଚ୍ଛା ଉପରେ ନିର୍ଭର କରେ । ତେବେ ଆମେ ସାଧାରଣତଃ ଆଠପଣରୁ ବେଶି ନିଜ ସକାଶେ ରଖୁଁ ନାହିଁ । ବାସ୍ତବିକ ନ୍ୟାଯ୍ୟ ଭାବରେ ଧରିବାକୁ ଗଲେ ଏ ସବୁ ଆମ କସରତ ବା ବାହାଦୁରୀର ଫଳ । ଆଶ୍ରମର ହକ୍ ଭାଗଭାଗ ଅଧିକ । ଏଥିପାଇଁ ଆମ ବିପକ୍ଷ ଲୋକେ କେତେ ରକମର କଟୁ କଟାକ୍ଷ କରିଥାଆନ୍ତି; ମାତ୍ର ତାଙ୍କର ବୁଝିବା ଉଚିତ ଯେ ଏହିପରି ନ୍ୟାଯ୍ୟ ସଂସାରର ସବୁ କଥାରେ ହୋଇଥାଏ । ଆମେ ଜାଣୁଁ, ଦୁଷ୍ଟ ଲୋକେ ଦୋଷ ଦିଅନ୍ତି । ଏଇଟା ତ ଆମର କିଛି ଲୁଚାଛପା କାରବାର ନୁହେଁ । ଆମେ ଯେ ନିଜର ଘରଦ୍ୱାର, ସୁଖଶାନ୍ତି, ଆପଣାର ବାପ ମା ଭାଇ କୁଟୁମ୍ବଙ୍କୁ ଛାଡ଼ି ନିଜର ଭବିଷ୍ୟତକୁ ନ ଚାହିଁ ଏଥିରେ ପଡ଼ି ରହିଛୁଁ— ଆମେ ପୁଣି ଚଳିବୁଁ କିପରି ? ଆମେ ଏଥିରୁ ଏକ ପଇସା ଘରକୁ ଦେଉଁନାହିଁ ବା ସଞ୍ଚୟ କରୁଁ ନାହିଁ । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାସ୍ଥ୍ୟ ସକାଶେ ଯାହା କିଛି ଖରଚ ତାକୁ ଯୋଗାଇବ କିଏ ? ଆମର ସ୍ୱାସ୍ଥ୍ୟ, ଶାନ୍ତି ବା ଜୀବନର ଅନିଷ୍ଟ ହେଲେ କ୍ଷତି କାହାର ? ସମଗ୍ର ଦେଶର, ସମଗ୍ର ଜାତିର ନୁହେଁ କି ? କହିବାକୁ ଗଲେ ଏ କଥା ସମସ୍ତେ ଜାଣନ୍ତି, ସମସ୍ତେ ମଧ୍ୟ କରନ୍ତି—ବଡ଼ ବଡ଼ଙ୍କଠାରୁ ଆରମ୍ଭ କରି ସାନ ପର୍ଯ୍ୟନ୍ତ । ସିଧା କଥାରେ ଏ ଗୋଟାଏ open secret—ସବୁ ଜାଣି ଶୁଣି ଆଖି ବୁଜିଦେବାକୁ ହୁଏ ମାତ୍ର ।

ଆମେ କର୍ମୀମାନେ ସମୟସମୟରେ ଗୋଟାଏ ପ୍ରକାର କର୍ମରେ ବାହାରୁଁ—ତା ନା ପିକେଟିଂ (picketing) । ପିକେଟିଂ ବୋଇଲେ କ'ଣ ଜାଣନ୍ତି ? ବିଦେଶୀ ଦରବ କିଣିବାରୁ ଲୋକଙ୍କୁ ନିବର୍ତ୍ତାଇବା ଓ ନିଶା ପଦାର୍ଥ ଚାହିଁ ବନ୍ଦ କରିବା । ଏହାର କର୍ମସ୍ଥାନ ବଜାର ଓ ବଡ଼ ବଡ଼ ରାସ୍ତାଛକ । ପିକେଟିଂଟା ବେଜାୟ ଲାଭଜନକ କାର୍ଯ୍ୟ । ଦୁଃଖର କଥା, ଏଇଟା ବେଶି ଦିନ ଚଳିଲା ନାହିଁ—ଆଉ ସେହି ହେତୁରୁ କି ଅନେକେ ମନମରା ହୋଇ ଦଳରୁ ଛାଡ଼ି ପଳାଇଲେ । ମୋହପରି ଦାନ୍ତ-ନେକୁଟିଆପାକ ମିନା ପେଟରେ ଓଦା କନା ଦେଇ ପଡ଼ି ରହିଲେ । ହଁ, କ'ଣ କହୁଥିଲି କି, ଏହି ପିକେଟିଂ କରିବାକୁ ହୁଏ ପୂରା ଦଳବଳ ସେନ । ଆମ ଭିତରେ picketingର ନା ଦେଇଥାଉଁ pocketing । ପହିଲ୍ ଦୋକାନୀମାନଙ୍କ ପାଖରେ ପହଞ୍ଚିଯାଇ ବୁଝାଇବାକୁ ହୁଏ ଯେ "ଭାଇ, ତୁମେ ଆଉ ଅପବିତ୍ର ବିଦେଶୀ ଜିନିଷ ବିକ ନାହିଁ ।" ସେମାନେ ସାଧାରଣତଃ ଗୋଟାଏ ଉତ୍ତର ଦିଅନ୍ତି—"ବାବୁ, ଆମେ ତ ଖରିଦ କରିସାରିଛୁଁ । ଏବେ ଏଗୁଡ଼ାକ କରିବୁଁ କ'ଣ ? ଏ ତ ହେଲା ଆମର ଜୀବିକା । ଯାହାକୁ ଛାଡ଼ିଦେଲେ ନିଜ ପେଟ ପୋଷାହେବ କିପରି ? ଏଣେ କୁଟୁମ୍ବ ଗଡ଼ି ମରିବେ ଯେ !" ଏଭଳି ଉତ୍ତରକୁ ତ ପ୍ରତ୍ୟୁତ୍ତର ନାହିଁ ଜାଣି ସୁଦ୍ଧା ଅନେକ ରକମର ଯୁକ୍ତି ଦେଖାଇବାକୁ ହୁଏ । ସେପରି ଯୁକ୍ତିତର୍କ ଆମର ମୁଖସ୍ଥକରା ବୋଲି । ଆମେ ଗାନ୍ଧିଙ୍କ ଚୁଟି, ଆମର ଜୋର ଜବରଦସ୍ତି କରିବା ମନା ; ସୁତରାଂ ଯେତେ କଅଁଳ କଥାରେ ପାରୁଁ, କହୁଁ । ନୋହିଲାବେଳକୁ ତାଙ୍କ ଦୋକାନ ଆଗରେ ଛିଡ଼ା ହୋଇ ଗହକି ଫେରାଇବାକୁ ବାଧ୍ୟ ହେଉଁ । ଏ କାମଟା ଏକା ଭାରି ଶକ୍ତ । ଅନେକ ସମୟରେ ଜଣେ ଜଣେ ଅମାନିଆ ଲୋକଙ୍କ ପାଲରେ ପଡ଼ି ବଡ଼ ହରକତ ହେବାକୁ ପଡ଼ୁଛି । କେହି କେହି ଆମ କଥା ମାନି ହେଉ ବା ଡରରେ ହେଉ, ଫେରିଯାନ୍ତି ସତ, ମାତ୍ର କେହି

କେହି ମୁହଁ ମୋଡ଼ନ୍ତି, ବିଦ୍ରୂପ କରନ୍ତି ; ଏପରି କି ବେଳେ ବେଳେ ଆମ ନିର୍ଦ୍ଦୋଷ ବାପ-ଗୋସେଇବାପଙ୍କଠାରୁ ଆରମ୍ଭ କରି ମା ଭଉଣୀଙ୍କ ସଙ୍ଗରେ ଘନିଷ୍ଠ ସମ୍ପର୍କ ଲଗାଇ ଦେଇ ଆମର ସମ୍ବର୍ଦ୍ଧନା କରନ୍ତି । ବଡ଼ ଅପ୍ରୀତିକର କାର୍ଯ୍ୟ ଏକା ! କିନ୍ତୁ କ'ଣ କରିବୁଁ—ଆମର ଧର୍ମ ହେଉଛି ନିର୍ଯ୍ୟାତନା ଓ ଅତ୍ୟାଚାରର ଅକାତରରେ ସହିବା ! ସବୁ ସହୁଁ । ସହି ସହି ଆମର ଚମଡ଼ା ଏତେ ମୋଟା ହୋଇଗଲାଣି ଯେ ଏସବୁ ଏବେ ଆଉ କିଛି ବାଧେ ନାହିଁ । ମିଜାଜଟା ମଧ୍ୟ ସେହିପରି ଲୁଚ୍ଚା ହୋଇଗଲାଣି । ଆଗକାଳ କଥା ହୋଇଥିଲେ ଏପରି ଲୋକଙ୍କୁ ଉତ୍ତମ ମଧ୍ୟମ ଚଢ଼ାଇ ଦିଅନ୍ତୁ । ମାତ୍ର ଏବେ ଏହି ବେହିଆଗିରି ଧର୍ମ ଓ ଅଲଜୁକା ବାନା ଗ୍ରହଣ କରି ସେସବୁ ଛାଡ଼ ସାରିଲୁଣି । ଓଲଟା ଆହୁରି ତାଙ୍କ ହାତ ଧରିବାକୁ ହୁଏ, ଖୋସାମତ ବିରାମତ କରିବାକୁ ହୁଏ—କାହାକୁ 'ଭାଇ' କାହାକୁ 'ଦାଦା' କାହାକୁ 'ବାପା' ବୋଲି ସମ୍ବୋଧନ କରି ଲମ୍ବ ଖମ୍ବ ଗୋଡ଼ତଳେ ପଡ଼ିଯିବାକୁ ହୁଏ । ଏଥିରେ ତରଳିବ ନାହିଁ କିଏସେ ? ମନୁଷ୍ୟର ଯେତେଗୁଡ଼ିଏ କୋମଳବୃତ୍ତି ଅଛି, ତହିଁ ମୂଳରେ ଆଘାତ କରିବାର ବିଦ୍ୟାଟା ବା ସୂତ୍ରଟା ଆମକୁ ଯେପରି ମାଲୁମ୍, ତାହା ଆଉ କାହାରିକୁ ନୁହେଁ ।

ପିକେଟିଂର ଅସଲ ଲାଭଟା କ'ଣ ତାହା କହିବି । ଯେଉଁ ଦୋକାନୀ ନିତାନ୍ତ ଦେଖେ ଯେ, ଆମେ ତାହାରି ସଙ୍ଗରେ ବଡ଼ ବେଶି ଲାଗିଛୁଁ, ଆଉ ତା ଦୋକାନରୁ ଗରାକ ଭଙ୍ଗାଇ ଦେଉଛୁଁ, ସେ ଖୁସି ହୋଇ ପାଞ୍ଚ ଦଶ ସ୍ୱରାଜ ମୁଦ୍ରା ଆମ ହାତରେ ଗୁଞ୍ଜିଦିଏ । ଅନେକ ସ୍ଥାନରୁ ଟଙ୍କା ପରିବର୍ତ୍ତରେ ପଦାର୍ଥ ମଧ୍ୟ ମିଳେ । ତହିଁ ମଧ୍ୟରେ ଲଜେଞ୍ଜ, ଜେଲି, ବିସ୍କୁଟ ପ୍ରଭୃତି ଖାଇବା ମାଲ ପ୍ରଧାନ । ତେବେ ସମୟ ସମୟରେ ଦରକାର ମୁତାବକ ଅନ୍ୟାନ୍ୟ ଜିନିସ ମଧ୍ୟ ହାତ-ପଇଠ ହୋଇଥାଏ, ଯଥା—ଆଇଣି, ବ୍ରୁରୁଷ, ଏସେନ୍ସ, ଚିଠିକାଗଜ, କଲମ୍, ସିଗାରେଟ ପ୍ରଭୃତି । ଏ କାରବାର ଗରାକମାନଙ୍କ ଆଗରେ ହୁଏ ନାହିଁ । କାରଣ, ସେଥିରେ ମୁମ୍ବନଟା ପ୍ରକାଶ ହୋଇ ପଡ଼ିବାର କଥା । ଯଦି ଦେଖିଲୁଁ, କେହି କୌଣସି ବିଲାତି ଦ୍ରବ୍ୟ ଖରିଦ କରି ସାରିଛି, ତାକୁ ସେ ଦ୍ରବ୍ୟ ଫୋପାଡ଼ ଦେବାକୁ ଲଗାଉଁ । ସେ ନ ମାନିଲେ ଏଣେ ଜଣେ ଦୁଇଜଣ ଗୋଡ଼ହାତ ଧରାଧରି କରୁଥାନ୍ତି, ଆଉ ଜଣେ ଇତି ମଧ୍ୟରେ ଛଡ଼ାଇ ନେଇ ଫୋପାଡ଼ିଦିଏ । ଲୁଗାପଟା ହୋଇଥିଲେ ନିଆସିଲି ଲଗାଇଦେଉଁ । ତାହା ମଧ୍ୟରେ ଯଦି ହାତ-ସଫେଇ କରି କେହି କିଛି ମାରିନେଇ ପାରିଲା ତ ଆଚ୍ଛା । ଫୋପାଡ଼ ଦେଇଥିବା ପଦାର୍ଥ ଅବଶ୍ୟ ପଛରେ ଆମରି ହାତରେ ପଡ଼େ । ଏଥି-ସକାଶେ କହିଲି କି ପିକେଟିଂରେ ବଡ଼ ଲାଭ ।

ଆମର ଦାଉ ବେଶି ଅବକାରୀ ଦୋକାନ ଉପରେ । କେବଳ ବୁଢ଼ା ବୁଢ଼ା ଲୋକଙ୍କୁ ଅଫିମ କିଣିବାକୁ ଛାଡ଼ । ଆଉ ସମସ୍ତଙ୍କୁ ଆଗେ ଟିକିଏ ନେହୁରା ବାଉରା, ପରେ ଜବରଦସ୍ତି । କୌଣସି କୌଣସି ଦୋକାନୀଙ୍କ ସାଙ୍ଗରେ ଭିତରିଆ ବନ୍ଦୋବସ୍ତ ଥାଏ । ସେଠି ଦେଖି ଶୁଣି କାମ କରିଯାଏ । ଜଣେ ଦୋକାନୀ ଆମ ଆଶ୍ରମର ଯେତେ ଭାଙ୍ଗ ଖରଚ ତାହା ସବୁ ଯୋଗାଏ । ମିଛ କାହିଁକି କହିବି, ମଦଟା ଆଶ୍ରମ ଭିତରକୁ ଆସେନାହିଁ । କେବଳ ସାଙ୍ଗଦୋସ୍ତ କେହି ଅକସ୍ମାତ୍ ସେ ଆଡ଼କୁ ଗଲେ ସାମାନ୍ୟ ଖାଇଖୋରାକଟା ପୋଲାରେ ମିଳେ—ଏତିକି । ଆମ ଭିତରେ କାହାରି କାହାରି ଏ ବଦ ଅଭ୍ୟାସଟା ଥିଲା । ସେମାନେ ମନକୁ ପ୍ରବୋଧ ଦିଅନ୍ତି କି ଅନ୍ୟମାନେ ଯେତେବେଳେ ଭାଙ୍ଗ ଖାଉଛନ୍ତି, ଆମେ ଏବେ ଦିନେ ଅଧେ ଟିକିଏ—ଅବଶ୍ୟ ଅତି ଗୋପନରେ । କେହି ଧରା ପଡ଼ିଗଲେ ମଧ୍ୟ ଅଳ୍ପ ବହୁତ ଉପଦେଶାତ୍ମକ ମିଠା ଗାଳି ମାତ୍ର ହୁଏ, ନୋହିଲେ pass over । ନେତାମାନଙ୍କର ସେହିପରି ସର୍ବସହଣି ଭାବ (tolerant spirit) ନ ଥିଲେ ଦଳ ରଖିବା ଯେ ମୁସ୍କିଲ ହୋଇପଡ଼ନ୍ତା । Discipline ଦେଖୁ ଦେଖୁ ଏଣେ ଯେ ସର୍ବନାଶ ! ବାଛି ବସିଲେ ତ କମଳଯାକ ବାଳ ! ଏଥିପାଇଁ ଏପରି ସବୁ ସାମାନ୍ୟ technical ବା bonafide ତ୍ରୁଟିକୁ ନେତାମାନେ ଆଖି ବୁଜି ଦିଅନ୍ତି ।

ଏହିପରି ଆନନ୍ଦରେ, ମଉଜରେ କିଛିଦିନ କଟିଗଲା । ସମସ୍ତେ ଚାହିଁ ବସିଥାନ୍ତି କେବେ ସ୍ୱରାଜ ହେବ । ଦିନେ ଖବର ଆସିଲା କି ଗାନ୍ଧି ହୁକୁମ ଦେଇଛନ୍ତି, ଅମୁକ ଦିନ ହେବ । ଆହୁରି ତେଜରେ କାମ ଲାଗିଲା । ଦେଖିଲୁଁ, ଆମ ପ୍ରତି ଲୋକଙ୍କର ଆଦର ସମ୍ମାନ ବଢ଼ିଲା । କାରଣ, ସ୍ୱରାଜ ହେଲାକ୍ଷଣି ଆମ ଅବସ୍ଥା ଯେ କ'ଣ ହେବ, ତାହା ଏମାନେ ବେଶ୍ ଅନୁମାନ କରି ପାରୁଥିଲେ । ଆମ ଦଳ ଭିତରେ ବି ନାନା କଳ୍ପନା ଜଳ୍ପନା ଚାଲିଲା । ପାଞ୍ଚଜଣ ଏକାଠେଇଁ ହେଲାକ୍ଷଣି କେତେ ପ୍ରକାର କଥା ପଡ଼ିଯାଏ । ତାହାଛଡ଼ା ସମସ୍ତଙ୍କର ଭିତରିଆ ମଧ୍ୟ କେତେ ପ୍ରକାର ମତଲବ ଥାଏ । ସେ କଥା କେହି କାହାରିକି କହେନାହିଁ । ବାସ୍ତବିକ ପ୍ରତ୍ୟେକ ମନୁଷ୍ୟର ଏପରି କେତେଗୁଡ଼ିଏ ଗୋପନୀୟ କଥା ବା ଚିନ୍ତା ଅଛି, ଯାହା ସେ କାହାରି ଆଗରେ ପ୍ରକାଶ କରେନାହିଁ—ସେ ଯେତେ ଆପଣାର ହେଉ ପଛକେ । ମୋର ବି ସେପରି କେତେଗୁଡ଼ାଏ ଥିଲା, ତାହା ପ୍ରକାଶ କରିବାର ନୁହେଁ—ଅତଏବ ନୀରବ ରହିଲି ।

ଆମେ ଅନେକଗୁଡ଼ିଏ କର୍ମୀ ଆଶ୍ରମର ଗୋଟାଏ ଘରେ ଗଡ଼ଉଙ୍କ ଭଳି ଶୋଉଁ । ଦିନେ ମୋତେ ଛାଇନିଦ ଲାଗିଛି, ହଠାତ୍ ମୋ ନାଁଟା କାନରେ ପଡ଼ିବାରୁ ନିଦ ଭାଙ୍ଗିଗଲା ; କାନ ପାରିଲି । ଦିଇଟି ସାନ ପିଲା କଥାବାର୍ତ୍ତା ହେଉଥାନ୍ତି । ଜଣେ ପଚାରିଲା, "ଆଚ୍ଛା, ସ୍ୱରାଜ ହୋଇଗଲେ କ'ଣ ଆମ ଆଶ୍ରମ ଏଇଠେଇଁ ରହିବ ?" ଦ୍ୱିତୀୟ ପିଲା

କହିଲା, "ଓଲଟା ନା କ'ଣ ମ ! ଆଜିମ ପରି ଉଠିଯିବ କମିଶନର ଅଫିସକୁ ।"

୧ମ—କମିଶନର ଅଫିସ ପୁଣି କୁଆଡ଼େ ଯିବ ?

୨ୟ—ଆମେ ପରା ଚଳାଇବା !

୧ମ—କମିଶନର କିଏ ହେବ କି ?

୨ୟ—ବୁଝିନାହୁଁ ପରି ? ମହାତ୍ମା ହୁକୁମ ଦେଇଛନ୍ତି ଆପଣେ ହେବେ ବୋଲି ।

୧ମ—ଆଉ କଲଟର ?

୨ୟ—କଟକରେ······ବାବୁ, ପୁରୀରେ······ବାବୁ, ଆଉ ବାଲେଶ୍ୱରରେ···ବାବୁ ।

୧ମ—ଆଚ୍ଛା, ଆମ···ବାବୁ (ଅର୍ଥାତ୍ ମୋହର ନାମ) କ'ଣ କିଛି ହେବେ ନାହିଁ ?

୨ୟ—ସେହି କଥା ତ ଶୁଣିଲୁ । ମହାପାତ୍ର ସାହେବଙ୍କ କାମରେ ଏ ରହିବେ କି···ବାବୁ ରହିବେ, ସେ ବିଷୟ ସ୍ଥିର ହୋଇନାହିଁ । କେହି କେହି ପୁଣି କହୁଛନ୍ତି···ବାବୁଙ୍କ ନାଁ ।

୧ମ—ଆଉ କାହା କଥା କ'ଣ ହେଉଛି ?

୨ୟ—ସେ କଥା ସବୁ କ'ଣ ଏତିକି ବେଳୁ ଠିକ୍ ହୋଇଗଲାଣି ? ଆପଣେ ଯାହା କରିବେ ନା ! ତେବେ ଯାଜପୁର, କେନ୍ଦ୍ରାପଡ଼ା, ଭଦ୍ରଖ ସବ୍‌ଡିଭିଜନ ଅଫିସର କଥାଟା ହୋଇଯାଇଛି ଏକରକମ । ଖାଲି ଖୋର୍ଦ୍ଧା କଥାରେ ଗୋଳମାଳ ଅଛି ।

୧ମ—କାହିଁକି ?

୨ୟ—କ'ଣ କି, ···ବାବୁଙ୍କ କଥା ହେଲାବେଳକୁ କେହି ଆପତ୍ତି କରୁଛନ୍ତି କି, ସେ ଦୋମଚିଆ । ଏଣେ ସେ ନିଜେ ବି···ବାବୁ କଲଟରଙ୍କ ଅଧୀନରେ ରହିବାକୁ ନାରାଜ ।

୧ମ—···ବାବୁ କ'ଣ ଫାଙ୍କ ପଡ଼ିବେ ?

୨ୟ—କିଏ କହିଲା ? ସେ ପରା କଟକର ସିଭିଲ ସର୍ଜନ ।

୧ମ—ଆଉ ବାଲେଶ୍ୱରର ?

୨ୟ—···ବାବୁ ।

୧ମ—ପୁରୀର ?

୨ୟ—···ସାହେବ ହେବେ, କି···ବାବୁ ହେବେ, ଠିକ୍ ନାହିଁ ।

ବିଶେଷ ଯାହାଙ୍କ ନାମ କହିଲି ସେ ବର୍ତ୍ତମାନ ସ୍ୱର୍ଗରେ । ଆଉରି ଜଣେ କଲେଜରେ ପ୍ରିନ୍‌ସପାଲ ହବାର କଥା ଥିଲା—ସେ ମଧ୍ୟ ସ୍ୱର୍ଗରେ । ସ୍କୁଲ ଇନ୍‌ସ୍‌ପେକ୍ଟର ହେବେ···ବାବୁ, ଜଜ୍···ବାବୁ, ବାଳିକା ସ୍କୁଲ ଇନ୍‌ସ୍‌ପେକ୍‌ଟ୍ରେସ୍···ଇତ୍ୟାଦି ଇତ୍ୟାଦି । କେତେ ଲୋକଙ୍କ ନାଁ ଯେ ପଡ଼ିଗଲା, ସେ ସବୁ ମୋ ମନେ ନାହିଁ । ସେଦିନ ଜାଣିଲି କି ଓଡ଼ିଶା ଶାସନ-ଚକ (wheel)ର ପ୍ରତ୍ୟେକ ଅର (spoke) ଗଢ଼ା ହୋଇ ସାରିଲାଣି । ସେଦିନ ରାତିରେ କେତେ ଯେ କ'ଣ ସ୍ୱପ୍ନ ଦେଖିଲି—ସେଗୁଡ଼ାକ ଲାଜ କଥା, କହିବି ନାହିଁ । ଯଦି ସ୍ୱରାଜ ହୋଇଥାନ୍ତା, ତେବେ କହନ୍ତି କାହିଁକି, ଏକାବେଳକେ କାମରେ ଦେଖାଇ ଦେଇଥାନ୍ତି । ଏକା ଆମର କର୍ମ ଭଣା ନୁହେଁ, ଉତ୍କଳଜନନୀଙ୍କର କର୍ମ ଭଣା । ଭାରତ-ମାତାଙ୍କର କର୍ମ ଭଣା !

ଆମ ଅସହଯୋଗୀଙ୍କର ତିନୋଟି ପ୍ରଧାନ ମନ୍ତ୍ର—୧—ଖଦଡ଼, ତହିଁ ମଧ୍ୟରେ ଅରଟ; ୨—ହିନ୍ଦୁ ମୁସଲମାନ ମିଳନ; ୩—ଅସ୍ପୃଶ୍ୟତା ନିବାରଣ । ଏହି ତିନୋଟି ହେଲା ସ୍ୱରାଜ ପାଇବାର ସର୍ତ୍ତ ଅର୍ଥାତ୍ condition । ହିନ୍ଦୁ ମୁସଲମାନ ଭାରତମାତାଙ୍କର ଦୁଇ ପୁଅ—ଭାଇ, ଭାଇ । ଏ ଦୁହେଁ ନ ମିଶିଲେ ସ୍ୱରାଜ ହେବ ନାହିଁ । ଆମର ଆଗ କାମ ହେଲା ହିନ୍ଦୁ ମୁସଲମାନ ମିଳନଟା । ଆମେ ଯେଣୁ ସବୁ କଥାରେ ଆଗୁଆ ଅର୍ଥାତ୍ pioneer, ଆମେ ହିଁ ତ ପୁଣି ଆଦର୍ଶ ଦେଖାଇବୁଁ, ତା' ପରେ ଲୋକେ ଅନୁସରଣ, ଅନୁକରଣ କରିପାରିବେ । ଆତ୍ମା ମେଳଟା ଖିଆଣପିଆଣରେ ଯେପରି ହୁଏ, ଆଉ କେଉଁଥିରେ ହୁଏ ନାହିଁ । ଏହି ଉଦ୍ଦେଶ୍ୟରେ ଆମେ ଆଗ ହୋଇ ପଠାଣଙ୍କ ସାଙ୍ଗରେ ଖାଇବା ଆରମ୍ଭ କରିଦେଲୁଁ । ଆମନ୍ତ୍ରଣ ନିମନ୍ତ୍ରଣରେ ପଠାଣ ଘର ହାଣ୍ଡି ବାରଣ କରିହେଲା ନାହିଁ—ଏକାବେଳକେ ନିର୍ବିକାର । ଅସଲ କଥା, ଏ ବିଷୟରେ ମୋର ଦ୍ୱିଧା ନ ଥିଲା । କାରଣ ଦାଢ଼ିଆ ପଣ୍ଡାଙ୍କ ହାତରୁ ଖାଇବାଟା ଆଗରୁ ମୋର ଅଭ୍ୟାସ ଥିଲା—ହୋଟେଲ କୃପାରୁ । ସେହିଟା କେବଳ ଏହିକ୍ଷଣି ବେଶ୍ ପ୍ରକାଶ୍ୟ ଭାବରେ ଓ ଗୋଟାଏ ମହତ୍ତ୍ୱର ଦାବି ଦେଇ ଚଳିଲା ମାତ୍ର । ପଠାଣ ଘର ନିରାମିଷ ତିଅଣଗୁଡ଼ାକ ଏକା ଆମ ପାଟିକୁ ଭଲ ଲାଗେ ନାହିଁ । ମୁଁ ତାହା ଥରେ ଅଧେ ଚାଖିଛି ସତ, କିନ୍ତୁ ବଡ଼ ବାଧବାଧକତାରେ । କହିବାକୁ ଗଲେ ପଠାଣ ଘରେ ଖାଇବାର ଉଦ୍ଦେଶ୍ୟ ତ ନୁହେଁ କାଞ୍ଜି ଖାଇବା ! ଜାତି ଯଦି ଦେଲି ତ ପେଟ ପୂରାଇନିଅ । ପଠାଣ ହାତରୁ ଯଦି ଖାଇଲ ତ ପଲଉ, କୋର୍ମା, କବାବ୍, କୋପ୍ତା ଖାଅ । ଶାଗ, ମହୁର ଖାଇଲେ ଆଉ କ'ଣ ହେଲା ? ବାସ୍ତବିକ ମାଂସଟା ସେମାନେ ଯେପରି ରାନ୍ଧି-ଜାଣନ୍ତି, ଓଡ଼ିଆ ଲୋକେ ଚୌଦ ଜନ୍ମରେ ପାରିବେ ନାହିଁ । ଯଦି କେବେ ବା ପାରନ୍ତି, ତେବେ ସ୍ୱରାଜ ହୋଇସାରିଲେ ପାରିବେ । ଏହି ବାଟରେ ଆମେ ଅଧାଅଧି ସରକ ସ୍ୱରାଜ ମାରିନେଇଗଲୁଁ ଏକା ।

ଏହି ଉପରଠେଲା ମିଳନର କି ବିଷମୟ ଫଳ ପରେ ଫଳିଲା, ତାହା ଏବେ ଆଉ କାହାରିକୁ ବୁଝାଇଦେବାକୁ ହେବ ନାହିଁ । ଡେଙ୍ଗୁରା ବଜାଇ 'ମିଳନ' 'ମିଳନ' କହି ହୋଇ ଅସଲ ଅମେଳଟାକୁ

ଆମେ ଏପରି ଚେତେଇ ଦେଲୁଁ ଯେ, ଆଜି ତାହା ଫାଟିପାଇ ବୋଧହୁଏ, ଯାହା କେବେ ନ ଥିଲା ସେହି ଅମେଳଟାକୁ ଚିରଦିନ ସକାଶେ ଛଆରି କରି ଦେଇଗଲା । ମୁଁ ଠିକ୍ ବୁଝିଛି, ଯଦି ଏହି ଅସହଯୋଗ ଆନ୍ଦୋଳନଟା ଏପରି ଭାବରେ ହୋଇ ନ ଥାନ୍ତା, ଆଜି ଭାରତବର୍ଷ ଏହି ହିନ୍ଦୁ ମୁସଲମାନ ବିରୋଧର ରକ୍ତାରକ୍ତ କାଣ୍ଡ ଦେଖିପାରି ନ ଥାନ୍ତା । ଯାହାହେଉ ବର୍ତ୍ତମାନ ମନକୁ ପ୍ରବୋଧ ଦେବାକୁ ହେବ ଯେ, 'ଭାଇ ଠାରୁ ବଳ ଭଗାରି ନାହିଁ ।'

ହଁ, ଆମର ଆଉ ଗୋଟାଏ କାମ ଥିଲା ଅସ୍ପୃଶ୍ୟତା ନିବାରଣ । ଏଇଟା ବି example ରେ ଦେଖାଇ ଦେଲୁ । ପାଣ, ବାଉରି, ବା ହାଡ଼ିଘରେ କେବେ ପତର ପକାଇ ନାହିଁ ମୁଁ । ତାଂକ ଘରେ କୋଳିଆ ବା ମଲା ଗୋରୁ ମାଉଁସ ଖାଇବାର ଲୋଭ ନ ଥିଲା । କେବଳ କାନ୍ଧରେ ହାତ ପକାଇ ବୁଲିଛି, ଅର୍ଥାତ୍ ହାତ ଦ୍ୱାରା ସ୍ପର୍ଶ କରିଛି, ଆଉ ଦୋକାନ୍ତିରେ ପଡ଼ ଅଡ଼େଅଧେ ମାନ ଖଜୁର ରସ ଚାଖିଛି, ଅର୍ଥାତ୍ ନ ଖାଇ କେବଳ ମୁଖ ଦ୍ୱାରା ସ୍ପର୍ଶ କରିଛି ।

ଏହି ସମୟରେ ଗୋଟାଏ circular ଆସିଲା କି, Law court ମାନ bycott କରାଯାଉ, ଆଉ ଗ୍ରାମେ ଗ୍ରାମେ ପଞ୍ଚାୟତ ବସାଇ ଗ୍ରାମ୍ୟ ସ୍ୱାୟତ୍ତ ଶାସନର ଭିତ୍ତି ସ୍ଥାପନ କରାଯାଉ । ଗୋଟାଏ ନୂଆ ଫନ୍ଦି ପାଇ ବାହାରି ପଡ଼ିଲୁଁ ତତ୍‌କ୍ଷଣାତ୍ । କଚେରିକୁ ଯାଇ ପକ୍ଷ ଓ ଓକିଲ ମୁକ୍ତାରଂକ ସାଂଗରେ ଲାଗିଲୁଁ । ତାଂକ ଭିତରୁ କେହି କେହି ମଧ୍ୟ ଆମ କଥାରେ ଟଳିଲେ — କିନ୍ତୁ ଯେଉଁମାନେ ଟଳିଲେ, ସେମାନେ ହୁଏତ ଅତି ବୋକା, କିମ୍ବା ଅତି ଗରିବ । ଏବେ ଅବଶ୍ୟ ସେ ସମସ୍ତେ ଅନୁତାପ କରି ଝଂକ୍‌ମାରି ଗୁହ ଖାଇଲେଣି । ଅଧିକାଂଶ ହସି ଉଡ଼ାଇଲେ । ପକ୍ଷମାନଙ୍କ ମଧ୍ୟରୁ ଅନେକଙ୍କୁ ଫେରାଇଲୁଁ—କିଏ ମାନିଲା, କିଏ ବା ଫାଙ୍କି ଦେଇଗଲା । ବେଶି ଚୋଟ ପଡ଼ିଥିଲା ଆମ ଖଜଣା ନାଲିସର ପକ୍ଷଙ୍କ ଉପରେ । ଯେଉଁ-ମାନଙ୍କର ବେଶି ଜଗର ମକଦ୍ଦମା ଥାଏ, ସେ'ତ ଫେରିବାର କଥା ନୁହେଁ । ତେବେ ଯେଉଁମାନଙ୍କୁ ଫେରାଇଥିଲୁଁ, ତାଙ୍କୁ କେତେ ଆଶା ଦେଇଥିଲୁଁ କି, ଆମେ ଯାଇ ଆପୋଷିରେ ମେଣ୍ଟାଇ ଦେବୁଁ । ଯାହା ମେଣ୍ଟାଇଲୁଁ, ତାହା ତ ଗଙ୍ଗାଙ୍କୁ ମାଲୁମ, ତହିଁ ଉପରେ ସେ ସବୁ ଲୋକଙ୍କଠାରୁ ଯେତେ ବୋଲଣା, ଅପମାନିଆଁ କଥା ଶୁଣିଲୁଁଣି, ତାହା ଏ ଅସହଯୋଗିଆ ଛାଡ଼, ଆଉ ମୋଟା ଚମଡ଼ାଲା ପିଠି ବୋଲି ସହିଛି ସିନା ।

ଆମେ ଯେ ଚେଷ୍ଟା କରି ନ ଥିଲୁଁ, ତାହା ନୁହେଁ—ତେବେ ଏଭଳି ଦେଶରେ ଆଉ ଏ ଓଡ଼ିଆ ଜାତି ଭଳି ଜାତିଠାରେ କିଛି ବଡ଼ କାମ କରି ହେବ ନାହିଁ । ଏହି ଦେଖିଲ, ଗାଁକୁ ଗାଁ ବୁଲି କେତେ କଂଗ୍ରେସ ମେମ୍ବର କରାଇଲୁଁ । ଚାରିଅଣା ପଇସା ଦେଲେ କେତେ ବଡ଼ ଅଧିଟାଏ ମିଳିଯିବ ଓ ସ୍ୱରାଜ ରାଜ୍ୟରେ କେତେ କାମଟାଏ ହେବ ବୋଲି କହି ଶହ ଶହ ରସିଦ କାଟି ଦେଇ ପଇସା ଆଦାୟ କଲୁଁ, ସେମାନଙ୍କ ମଧ୍ୟରୁ ମୁଖିଆ ଲୋକ ବାଛି ବାଛି ପ୍ରତି ଗ୍ରାମରେ ପଞ୍ଚାୟତସଭାମାନ ଗଢ଼ି ଆସିଲୁଁ । ସେଥିରେ ଜଣେ ଲେଖାଏଁ ପ୍ରେସିଡେଣ୍ଟ ଆଉ ଜଣେ ଲେଖାଏଁ ସେକ୍ରେଟେରୀ । ଆମେ ହୋଇଗଲୁଁ King makers, ଯେଣୁ ଗାନ୍ଧୀଙ୍କ ଲୋକ ଆମେ, ଆମରି ହାତରେ ସବୁ । ସରକାର ଆଉ କିଏ ? ଏହି ପଞ୍ଚାୟତ ହାତରେ କ୍ଷମତା ଦିଆଗଲା କି, ଏମାନେ ଗ୍ରାମର ଭଲ ମନ୍ଦ ବୁଝିବେ, ହାରି ଫେରାଦ ଭାଙ୍ଗିବେ, ସବୁ କଥା ନିଶାପ କରିବେ । ଦଣ୍ଡମୁଣ୍ଡର ମାଲିକ କରାଗଲା ଏହିମାନଙ୍କୁ, ଏହାଙ୍କ ଉପରେ କିନ୍ତୁ check କିଛି ରହିଲା ନାହିଁ । ଫଳରେ ଏମାନେ ହୋଇଗଲେ ସର୍ବେସର୍ବା ଅର୍ଥାତ୍ village autocrates ଏପରି ଅବସ୍ଥାର ପରିଣାମ ଯାହା ହେବାର ତାହା ହେଲା । ରାଜ୍ୟଯାକର କଳି ସୃଷ୍ଟି ହୋଇ ପଡ଼ିଲା, ବାଦ ବିବାଦର ସଂଖ୍ୟା ବଢ଼ିଲା, ରସପଡ଼ି ବୁଣା ହୋଇଗଲା, ଏହିପରି ଯେ କେତେ କ'ଣ ହେଲା, ତାହାର ଠିକଣା ରହିଲା ନାହିଁ । କେହି କାହାରିକୁ ମାନିଲେ ନାହିଁ—ଜମିଦାରକୁ ପ୍ରଜା ମାନିଲା ନାହିଁ, ବ୍ରାହ୍ମଣକୁ ପାଣ ମାନିଲା ନାହିଁ, ବଡ଼କୁ ସାନ ମାନିଲା ନାହିଁ, ଏପରିକି ବାପକୁ ପୁଅ ବି ମାନିଲା ନାହିଁ । ଶେଷରେ ଦୁଇଦିନ ନ ଯାଉଁଣୁ ସବୁ ଧୂଳିସାତ୍ ହୋଇଗଲା । ସରକାର ବଡ଼ ଚାଲାଖ । ଏହାର ଫଳ ସେ ଆଗରୁ ବୁଝି ପାରି ସେତେବେଳେ ଚୁପ୍ ହୋଇ ଢାଳେଇ ପଡ଼ିଲେ । ଆମେ ଯେତେବେଳେ ଥେଇ ଥେଇ କରି ନାଚୁଥିଲୁଁ, ସେ କଣେଇ କଣେଇ ଚାହିଁ ମୁରୁକିହସା ମାରୁଥାନ୍ତି । ଆମର ଏତେ ଯତ୍ନରେ, ଏତେ ପରିଶ୍ରମରେ ଗଢ଼ା ଏହି ପଞ୍ଚାୟତ-ପଞ୍ଜରର ଶେଷ ଦଶା ଦେଖି ମନରେ ବଡ଼ କଷ୍ଟ ହୁଏ ଏକା । ଏ ଗୁଡ଼ାକ ଅନ୍ତତଃ ପକ୍ଷରେ ଜୀଇ ରହିଥିଲେ ଆମ ନିଜର ଅବସ୍ଥା ଏତେ ଶୋଚନୀୟ ହୋଇ ନଥାନ୍ତା । ଆମର ଦସ୍ତୁରଟା ହେଉ ବା ନ ହେଉ ଅଭାବରେ ମୁଠାଏ ଖାଇବାର ସଂସ୍ଥାନଟା ତ ହେଲେ ରହିଥାନ୍ତା ! ଯାହାହେଉ ଏଥିରେ ଆମର ବା ହାତ କ'ଣ ? ଦେଶବାସୀଙ୍କର ନୈତିକ ବଳ ଯେତକ, ଫଳରେ ବର୍ଷକ ସକାଶେ ସରକାରର କୋଟଫିସ୍ ଆୟଟା ଯେତକ କମି ପଡ଼ିଥିଲା, ତହିଁ ଆର ବର୍ଷକୁ ଚକ୍ର ବୃଦ୍ଧି ସୁଧ ସହିତ ତାହା ଆଦାୟ ହୋଇଗଲା ।

ଗାନ୍ଧୀଙ୍କର କଡ଼ା କଡ଼ା ତାଗିଦ ଥିଲା କି, ସ୍ୱରାଜ୍ୟ ନ ହେଲା ଯାକେ ଜନନୀମାନେ ଗର୍ଭଧାରଣ କରିବେ ନାହିଁ, କି ଜନକମାନେ ସନ୍ତାନ ଉତ୍ପାଦନ କରି ଏହି ଗୋଲାମ ଦେଶର ଗୋଲାମ ସଂଖ୍ୟା ବୃଦ୍ଧି କରିବେ ନାହିଁ । ଯେଉଁ ତେଜ ବା ଶକ୍ତି ଏ ଦିଗରେ ଅପବ୍ୟୟ ହୁଅନ୍ତା, ତାହା ସବୁ ସ୍ୱରାଜ୍ୟ ସୃଷ୍ଟିରେ ନିୟୋଜିତ

ହେବ । Genative ଆଉ Creative ପ୍ରକ୍ରିୟା ଏକାବେଳକେ ଥୁକୁଲ୍ ! ଗାନ୍ଧୀଜୀଙ୍କର ହୁକୁମ ! ଆଉ କେହି ମାନନ୍ତୁ ବା ନ ମାନନ୍ତୁ ଅନ୍ତତଃ ଅକ୍ଷରେ ଅକ୍ଷରେ ଆମେ ଆଶ୍ରମବାସୀ କର୍ମଯୋଗୀ ବ୍ରହ୍ମଚର୍ଯ୍ୟ-ବ୍ରତକ ମାନିବାକୁ ବାଧ୍ୟ । ଏଣେ କିନ୍ତୁ ସ୍ୱୟଂ ମହାତ୍ମା ବାରମ୍ବାର କହିଛନ୍ତି କି, ପ୍ରତ୍ୟେକ କାର୍ଯ୍ୟରେ ପ୍ରତ୍ୟେକ ନିଜ ନିଜର ବିଚାର ବୁଦ୍ଧି ବା Conscience ପ୍ରୟୋଗ କରିବେ । ସୁତରାଂ ଆମ୍ଭେମାନେ ଆପଣା ବିବେକ ଅନୁସାରେ ସମସ୍ୟାର ଏହିପରି ମୀମାଂସା କରିନେଲୁଁ ଯେ, ପ୍ରଜନନ ବନ୍ଦ ହେଲେ ଲୋକସଂଖ୍ୟା ବୃଦ୍ଧି ପାଇବ ନାହିଁ, ଅତଏବ ଏପରି ଦିନ ଦିନେ ଆସିବ, ଯେବେ ଜାତିଟା ଏକାବେଳକେ ଲୋପ ପାଇଯିବ । ଅତଏବ ଗାନ୍ଧୀ କେବେ ପୂରା ପ୍ରଜନନର ( in toto ) ବିରୋଧୀ ନୁହନ୍ତି । ( ସେତ ନିଜେ ଜଣେ ପ୍ରଜନକ । ) କେବଳ ସ୍ୱରାଜ୍ୟ ହେବାଯାକେ ପ୍ରଜନନ ରହିତ କରିବା ( adjournment ) ତାଙ୍କର ମତଲବ । ବେଶ୍, ଯେଉଁ ସ୍ଥାନରେ 'ସ୍ୱରାଜ୍ୟ' ହୋଇଗଲାଣି, ସେଠି ଆଉ ବନ୍ଦ ରଖିବା ଦରକାର କଣ ?

ଏହାଛଡ଼ା ଆଉ କେତେ ଜଣ ଟୀକାକାର ଆଉ କେତେ ପ୍ରକାର ଅର୍ଥ କଲେ । ଯାହା ହେଉ, ସେ ସବୁ ଯୁକ୍ତିର ମୌଳିକତାକୁ ( Originality ) ପ୍ରଶଂସା ନ କରି ରହି ପାରୁନାହିଁ । ମୁଁ ଏତକ କହେଁ ଯେ, ଆମେ ଯେତେବେଳେ 'ଅସହଯୋଗୀ', ଆମକୁ ଅନେକ ବିଷୟରେ ସାତଖୁଣ ମାଫ୍ ।

ଆମ୍ଭମାନଙ୍କର ଉଦ୍ୟମ ଉତ୍ସାହ ଦେଖି ଆଉ ଲୋକେ ସବୁ ଚମକିଗଲେ । ଦେଶରେ ଯାହା ଯେଉଁଠି ହେଲା, ସବୁରି ଭିତରେ ଆମେ । କାନିକାର ଯେଉଁ ଭୟାବହ କାଣ୍ଡକାରଖାନା ହୋଇଗଲା, ତାହା ମଧ୍ୟ ଆମରି କୀର୍ତ୍ତି । ଆମ ଦଳର କେତେଟା ଅକାଣ୍ଡିଆ ଲୋକଙ୍କ ବୁଦ୍ଧିରେ ପଡ଼ି ଯେ ବିଚରା ଗୁଡ଼ିକ ଯେତେ ହଇରାଣ ହରକତ ହୋଇଗଲେ, ତାହା ଭାବିଲେ ଦୁଃଖ ହୁଏ । ସେମାନେ ମନେକରିଥିଲେ, ସମସ୍ତେ ଜଣେ ଜଣେ ଗାନ୍ଧୀ ହୋଇଯିବେ । କିନ୍ତୁ ଫଳରେ ହୋଇଗଲା ଓଲଟା । କାନିକାର ଭିତରିଆ କଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ୁଛି—ଆଉ ବଖାଣିବାର ପ୍ରୟୋଜନ ନାହିଁ । ଦିନେହେଲେ ସବୁ ପାଶୋରି ଯିବେ, କିନ୍ତୁ ଯେଉଁମାନଙ୍କ ପିଠିରେ ବା ମନରେ ଦାଗ ରହିଗଲା, ସେମାନେ କିପରି ଭୁଲିବେ ? ଯାହା ହେଉ ଆମ ମନରେ ଶାନ୍ତି ଏତକ ଯେ, ଆମେ ପାଇଛୁଁ ଯେତେ, ଦେଇଛୁଁ ତା'ର ତିନିଗୁଣ । ଯେଉଁ ଅଗ୍ନି ବୀଜ ପୋତି ଆସିଛୁଁ, ଯେତେ ଗଙ୍ଗା ଭାଙ୍ଗିଲେ ମଧ୍ୟ ପୁଣି ଚୂଳିଁ ଫୋଡ଼ି ଥରକୁଥର ବାହାରୁଥିବ ଓ ରଜା ପ୍ରଜା ଉଭୟଙ୍କୁ ଅନନ୍ତ ଅଶାନ୍ତିରେ ଟଣା-ଓଟରା କରୁଥିବ ।

ଏ ମାସ ସେ ମାସ ବୋଲି ଏହା ଭିତରେ ସ୍ୱରାଜ ହେବାର ଅନେକ ତାରିଖ ହୋଇଗଲାଣି । ଗୃହେଁ ଗୃହେଁ ଆଖିପାଣି ଆଖିରେ ମଲା, ଯାହାହେଉ ଦିନେ ଶେଷ ମିଆଦ ତାରିଖଟା ଆସିଲା । ଦିନ ଯେତେ ନିକଟ ହେଉଥାଏ, ମନ ତେତେ ଚଞ୍ଚଳ ହେଉଥାଏ— ଘଡ଼ିଟା ଦାଉଁ ଦାଉଁ ପଡ଼ୁଥାଏ । ସତେକି ଆମର କଣ ଗୋଟାଏ କଏସେ ଲୁଆଡ଼ୁ ଆସି ପହଞ୍ଚିବ । ପିଲାଏ ଫୁସୁରୁ ଫାସର ହେଉଥାଆନ୍ତି କି, "ସ୍ୱରାଜର ଜଣେ ଜଣେ ଚେଲା ଆସିଲାବେଳକୁ ତ ଏତେ ଢୋଲ ଝମକ ବାଜେ, ଏଥର ସ୍ୱୟଂ ଗୁରୁ ମହାରାଜ 'ସ୍ୱରାଜ' ଯେତେବେଳେ ଆସୁଛନ୍ତି କେଜାଣି କେତେ କଣ ହେବ ।" ଏହି ଦିନ ସକାଳେ ପିଲାମାନେ ଯୋଡ଼ାରେ ସିଂହାଇ ଖଦଡ଼ ଲଗା ସବୁ ସଫା କରିବାକୁ ଲାଗିଲେ । ଦିନ ସାରା କେବଳ ସେମାନଙ୍କର ଏହି ସ୍ୱରାଜ କଥା । "ନିଜେ ସ୍ୱରାଜ ଯେତେବେଳେ ଆସିବେ, ସେ କ'ଣ ଆଉ ପଦ୍ରିଦଳରେ ଚାଲି ଆସିବେ ? ସମସ୍ତେ ତ ରେଲରେ ବା ମଟରରେ ଆସନ୍ତି; ଏ ଆସିବେ ବ୍ୟୋମଯାନରେ । ଆମେ ତାଙ୍କୁ କାନ୍ଧରେ ବସାଇ ଆଶ୍ରମକୁ ଘେନି ଆସିବା ।" କିଏ କହିଲା, "ନାହିଁ, ନାହିଁ । ସେ ଗୁପ୍ତ ଭାବରେ ଆସିବେ; ଏକାବେଳକେ ସହସ୍ର ରୂପ ଧରି ସବୁ ଆଶ୍ରମରେ ପହଞ୍ଚିଯିବେ ।" କିଏ ଅତି ବୁଦ୍ଧିଆ ହୋଇ କହିଲା ଯେ, "ସେ ଆସିବେ ରେଜେଷ୍ଟ୍ରି ପାର୍ଶଲରେ ।" ପିଲାଙ୍କ କଥା ଶୁଣି ହସ ମାଡ଼ୁଥାଏ । କିନ୍ତୁ ସେମାନଙ୍କ ଆଗ୍ରହ ଦେଖି ଖୁସି ମଧ୍ୟ ଲାଗୁଥାଏ । ମୁଁ ଠିକ୍ ବୁଝୁଥାଏ କି, ସ୍ୱରାଜ ଆସିବ; ଅର୍ଥାତ୍ ସକାଳୁଁ ଉଠିଲାବେଳକୁ ବ୍ରିଟିଶ୍ ସରକାର ପଦୋଲବଦଲେ ଗଣ୍ଠିଲି ବାନ୍ଧି ଖସିବ, ଆଉ ଆମେ ଯାଇ ଗାଦି ମାଡ଼ି ବସିବା । ଏଇଟାତ ହେବାର କଥା ହେବ, ଏଥିପାଇଁ ବା ଚିନ୍ତା କ'ଣ ? ଏକା ମନଟା ବେଶି ମୋର କାଲୁବାଲୁ ହେବାରେ ଲାଗିଥାଏ କି 'ମୁଁ ଯେତେବେଳେ କ'ଣ କରିବି । କେତେ କ'ଣ ଭାବିଯାଏଁ, ଆକାଶ ପାତାଳ ଭାବି ଭାବି ମୁଣ୍ଡ ଗୋଳେଇ ହୋଇଯାଏଁ; ଶେଷକୁ ଥିର ହୋଇ ଶୋଇପଡ଼େଁ । ଶୋଇଲେ କଣ ନିଦ୍ରାର ଅଛି ! ସ୍ୱପ୍ନରେ ସେହିକଥା । କେତେବେଳେ ଦେଖେଁ; ମୁଁ ସିଂହାସନରେ ବସି ରଜା ହୋଇଛି, କେତେବେଳେ ଦେଖେଁ ଯେଉଁମାନଙ୍କ ଉପରେ ରାଗ ଥିଲା, ତାଙ୍କୁ ଧରି ଗୋଟି ଗୋଟି କରି ଫାଶି ଦେଉଛି; କେତେବେଳେ ପ୍ରମୋଦ ଉଦ୍ୟାନରେ ଅପ୍ସରାମାନଙ୍କୁ ନେଇ ବିହାର କରୁଛି, କେତେବେଳେ ବ୍ୟୋମଯାନରେ ଚଢ଼ି ବୁଲୁଛି; ଆଉ ଥରେ ଥରେ ଦେଖେଁ କି, ଭଲଣ୍ଟିଅର ସୈନ୍ୟମାନଙ୍କୁ ଘେନି ଯୁଦ୍ଧ କ୍ଷେତ୍ରରେ ଇଂରାଜଙ୍କ ସାଙ୍ଗରେ ଭୟାନକ ଲଢ଼ାଇ ଲାଗିଛି, ରକ୍ତର ନଦୀ ବହିଯାଉଛି, ହାଣ ଖାଉଛୁଁ ଆମ ପକ୍ଷ; କାରଣ ଆମେ ମାଡ଼ ଖାଇବୁଁ, ମାଡ଼ ମାରିବୁଁ ନାହିଁ, ଯେ ହେତୁ ଆମେ Passive resisters, ଅହିଂସାବାଦୀ,

ଶତ୍ରୁ ଆଡ଼କୁ ପିଠି ଦେଖାଇ ଯୁଦ୍ଧ କରୁଛୁଁ, ମୁହଁରେ କହୁଛୁଁ—କେତେ ମାରିବ ମାର, କେତେ ହାଣିବ ହାଣ, ଯେତେ ଅତ୍ୟାଚାର କରିବ ତୁମେ, ତେତେ ସହ୍ୟ କରିବୁଁ ଆମେ, କିନ୍ତୁ ଘୁଞ୍ଚିବୁ ନାହିଁ ପହଞ୍ଚେ, ଏଇଥିରେ ଦେଖାଇବୁଁ ଆମର ବୀରତ୍ୱ, ସହିଷ୍ଣୁତା—ସହି ସହି, ଖାଇ ଖାଇ, ଆମେ ହୋଇଯିବୁ ବଡ଼, ଆଉ ମାରି ମାରି, ପିଟି ପିଟି ତୁମେ ହୋଇଯିବ ସାନ, ଦୁର୍ବଳ, ହୀନ । ସେତେବେଳେ ତୁମେ ଯିବ ହଟି, ଆମେ ଯିବୁ ଜିତ । ଏହିପରି ସ୍ୱପ୍ନ ଦେଖୁଁ ଦେଖୁଁ ଗୋଟାଏ କମାଣ ଫୁଟିଲା— 'ତୋ'—ଆଉ ମୁଁ 'ବାପଲୋ' ବୋଲି ବିଛଣାରୁ ଡେଇଁ ଚାରିହାତ ଦୂରରେ । ଧନ୍ୟରେ କଳ୍ପନା ! ଆମ ଦେଶୀ କବିମାନେ କଳ୍ପନାଟାକୁ ତୁଳନା କରିଛନ୍ତି 'ସ୍ରୋତ' ସାଙ୍ଗରେ; କିନ୍ତୁ କଳ୍ପନାଟା ଯେପରି ଉପରକୁ ଉଠିପାରେ, ତଳକୁ ଖସିପାରେ, ସ୍ରୋତଟାତ ତାହା ପାରେନାହିଁ । ଇଂରାଜମାନେ ଯେ କଳ୍ପନାକୁ ଉଡ଼ପବନ ଘୋଡ଼ା ସାଙ୍ଗରେ ତୁଳନା କରିଛନ୍ତି, ସେହି ଉପମାଟା ଠିକ୍ !

କେତେ ମନେ କରିଥିଲି, ଆଗରୁ ଖୁବ୍ ଜାଗତ ଥିବି, କିନ୍ତୁ କ'ଣ କହିବି ଅସଲ ତାରିଖ ବା ଦିନ ଏପରି ଗୋଟିଏ ଆଶଙ୍କା, ଏପରି ଗୋଟିଏ ଉଦ୍‌ବେଗ ଆସିଲି nervousnessରେ ଦେହଟା ଇମିତ ଝିମି ଝିମି, ମନଟା ଇମିତ ଛନ ଛନ ହେଲା ଯେ, ମୁଁ ଆଉ ବିଛଣା ଛାଡ଼ି ଉଠି ପାରିଲିନାହିଁ । ଖାଲି କାନ ଯୋଡ଼ାକ ଡେରି ରହିଥାଏଁ—କେତେବେଳେ କି ଖବର ଆସୁଛି ।

ହାୟ, ହାୟ, କହିଛି କୁଆଡ଼େ ହେଲନାହିଁ ! ଦିନ ୧୦ଟା ସରିକି ସେକେଣ୍ଟାରୀ ଆସି ଡାକଦେଲେ—"ଆଜି ନିଦ ଭାଙ୍ଗିବ ନାହିଁକି ?" ଏ ହତାଶ୍ୱାସ ନୈରାଶ୍ୟ ଭିତରେ ବି ଗୋଟାଏ ପ୍ରକାର ସ୍ଫୂର୍ତ୍ତି ଥିଲା । ଶୁଣାଗଲା, ତାରିଖଟାରେ ପୁଣି ସାନ ମହଲତ ପଡ଼ିଛି । "ଯେତିକି ପାଣିକି ପଶିଲାବେଳକୁ ପଦ୍ମ ଘୁଞ୍ଚି ଘୁଞ୍ଚି ଯାଉଥାଏ !"

ଫଳରେ ଦେଖାଗଲା ଲୋକଙ୍କର ଆସ୍ଥା, ବିଶ୍ୱାସ ଏହାପରେ ଟିକିଏ କାହିଁକି ଆଚ୍ଛା କରି କମିଗଲା । ଆମ କାମ ସବୁ ପୁରୁଣା ହୋଇ ମାଦା ପଡ଼ିଗଲା । ଏଣିକି ନୂଆ କିଛି କରିବାକୁ ହେବ, ନୋହିଲେ ଟେକ ରହିବ ନାହିଁ । ସେହିଠୁଁ ଗୋଟାଏ ଉପାୟ ବାହାରିଲା 'ଜେଲଖାନା' । ମହାତ୍ମା କହିଛନ୍ତି ଜେଲଖାନାଟା ପବିତ୍ର ସ୍ଥାନ । ଲକ୍ଷ ଲକ୍ଷ ଦେଶବାସୀ ଜେଲଖାନା ଗଲେ ସ୍ୱରାଜ ମିଳିବ । ଚୋରି, କୁଆଚୋରି, ଜାଲ, ଗୁଣ୍ଡାଗିରି ଯାହା ଇଚ୍ଛା ତାହା କରି ପଛକେ, ସ୍ୱଦେଶ ନାମରେ ଜେଲଯାଅ । ଚାରିଆଡ଼େ ମହା ଗଣ୍ଡଗୋଳ ଲାଗିଗଲା—ଜେଲ, ଜେଲ, ଜେଲ, ଯେ ଥରେ ଜେଲ ଯାଇପାରିଲା ସେ ଏକା ଦିନକେ ହୋଇଗଲା ଗୋଟାଏ ବଡ଼ ମଣିଷ । ନେତାମାନେ ନାନା ଚେଷ୍ଟା ଯତ୍ନ କରି ଜେଲ ଯିବାର ଆୟୋଜନ କଲେ । ଗଲାଷଣି ନା' ବାଜିଗଲା । ମୁଁ ଏହା ଦେଖି ଯେତେ ଉପାୟ କଲି ମୋ ଭାଗ୍ୟରେ ଏ ସୌଭାଗ୍ୟ ଏକା ଘଟିଲା ନାହିଁ । ଦେଖିଲି ମୋର ଭବିଷ୍ୟତଟା ବଡ଼ ଅନ୍ଧକାର । ଜେଲ ନଗଲେ Prospects କିଛି ନାହିଁ । କେତେ ଚୂନା ଚେପରା, ଯାହାଙ୍କର କେବେ ନାଁ'ଗନ୍ଧ ନଥିଲା, ସେ ଆଜି ଗୋଟାଏ ଗୋଟାଏ martyr, ଆଉ ମୁଁ ଏତେ କରି··· ! ଶୋକରେ, ନୈରାଶ୍ୟରେ, ରାଗରେ ମୋର ଆତ୍ମହତ୍ୟା କରିବାର ଇଚ୍ଛା ହେଲା ।

ଆଶ୍ରମରୁ ଏକାକୀ ବାହାରି ବଜାରଆଡ଼କୁ ଚାଲିଗଲି । କେତେବେଳେ କେଉଁଠି କ'ଣ କଲି, କ'ଣ ଖାଇଲି, ତାହା ଠାକୁରଙ୍କୁ ମାଲୁମ; କିନ୍ତୁ ସକାଳୁ ଚେତା ହେଲାବେଳକୁ, ମୁଁ ଥାଇ ଥାନା ଗାରଦରେ । ଯଥାସମୟରେ କଚେରୀରେ ହାଜର କରାଗଲି । ମୋ ଉପରେ charge ଯେ, ମୁଁ ଆଗଦିନ ରାତରେ ମତୁଆଲା ହୋଇ ରାସ୍ତାରେ—ଇତ୍ୟାଦି । ଛି, ଛି, ପୁଲିସ କରି ନ ପାରେ କ'ଣ ? ମୋ ପରି ଲୋକ ନାଁ'ରେ—ହରି, ସବୁ କର୍ମ କଥା ! ହାକିମ ପଚାରିଲେ, "ତୁମେ ଦୋଷୀ କି ନିର୍ଦ୍ଦୋଷୀ ?" ମୁଁ ଉତ୍ତର ଦେଲି, "ନିର୍ଦ୍ଦୋଷ" (not guilty) । ହାକିମ କହିଲେ—"ପ୍ରମାଣ ଦିଅ ।" ମୁଁ ନିର୍ବାକ । ପୁଲିସ୍ କେସ୍‌ରେ ପଡ଼ି ଜବାବ ଦେବା, ସଫେଇ ଦେବା ବା ଲଢ଼ିବା ଆମର ଧର୍ମ ନୁହେଁ, କାରଣ ଆମେ ସତ୍ୟାଗ୍ରହୀ ( non-co-operator ) ନିର୍ଯ୍ୟାତନ ଦଣ୍ଡ ସହିବା ଆମର ନୀତି । ଏହି ହେଲା ଆମର Path of victory—ଜୟମାର୍ଗ । ହାକିମଙ୍କର ହୁକୁମ ହେଲା—"ଜେଲ ଛ' ମାସ ।" ବାସ୍, ଆଉ କଥା ନାହିଁ; ଏକଦମ୍ କାମଫତେ । ମୋର arrest ହେବା ଖବରଟା ସେତେବେଳକୁ ଚାରିଆଡ଼େ ବାଜି ଗଲାଣି । "ଜୟ ଗାନ୍ଧୀ ମହାରାଜଙ୍କ ଜୟ" କହି ସେତେବେଳେ ମୁଁ ପବିତ୍ର ସ୍ଥାନକୁ ଚାଲିଲି, ମୋ ପଛେ ପଛେ ଶହ ଶହ ଲୋକ ଜୟଧ୍ୱନି କଲେ । ବିନା ଚେଷ୍ଟାରେ ମୋର କାମ ହାସଲ ହୋଇଗଲା । ଖବର କାଗଜମାନଙ୍କରେ ବାହାରି ଗଲାକି, "ଅମୁକ ଜଣେ ମାତବର ଦେଶ ନେତାଙ୍କୁ ପୁଲିସ କୌଣସି ଉପାୟରେ ପକାଇ ନ ପାରି ଶେଷରେ ଅତି ଜଘନ୍ୟ ଦୋଷାରୋପ କରି ଚାଲାଣ ଦେଇଥିଲେ, କିନ୍ତୁ ତାଙ୍କର ନୈତିକ ସାହସ (moral courage) ଏତେ ଟାଣୁଆ ଯେ, ସେ ସେଥିରେ ସୁଦ୍ଧା ସ୍ୱଧର୍ମ ତ୍ୟାଗ କରି ପକ୍ଷ ସମର୍ଥନ କଲେନାହିଁ, କିମ୍ବା ପୁଲିସର ପ୍ରଲୋଭନରେ ନ ଭୁଲି ନିର୍ଭୟରେ, ଅକାତରରେ, ସସ୍ମିତ ବଦନରେ ଜେଲ ଦଣ୍ଡ ବରଣ କରି ନେଲେ । ଇତ୍ୟାଦି ।"

'ଜେଲ କାହାଣୀ' ଗୁଡ଼ାକ କାହିଁକି ତୁଚ୍ଛଟାରେ ବଢ଼ିବ ? ଅନେକ ଅନେକ ରକମ ତ ଲେଖି ସାରିଲେଣି । ମୁଁ ଅଧିକା ଆଉ କ'ଣ କହିବି ? ଛଅଟି ମାସ କୌଣସିମତେ ଅହାର ନିଦ୍ରା ଇତ୍ୟାଦି

ଇତ୍ୟାଦିରେ ବନ୍ଧାଇ ଦେଇ ଖଲାସ ହେଲି । ସେ ଦିନ ମଞ୍ଚର ଶୋଭା ହୋଇଥିଲି ମୋହରିପାଇଁ । ପଞ୍ଚଆରେ ଗୋଟାଏ ସମ୍ବର୍ଦ୍ଧନା ସଭା ହେଲା । ବକ୍ତୃତା, ଫୁଲମାଳ, ବସନ, ଚନ୍ଦନ, ଆଲିଙ୍ଗନ ଆଦି ଯାହା ହୁଏ, ତାହା ସମସ୍ତ ମାମୁଲି ମୁତାବକ ହୋଇଗଲା । ସଭା ଶେଷରେ ନନା ଆସି ମୋତେ ଅନେକ ପ୍ରକାର ବୁଝାଇଲେ । କହିଲେ, "ଯାହା ହେବାର ହେଲାଣି, ଏବେ ଘର ପୁଅ ଘରକୁ ଫେରି ଚାଲ ।" ହେଲାଣି କ'ଣ । ହେବାର ଯେ ଆହୁରି ଅନେକ ବାକି । ମଙ୍ଗଳ କାର୍ଯ୍ୟରେ ଅନେକ ବାଧା ପଡ଼େ, ମୁଁ ଆଗରୁ ଜାଣିଥିଲି । ମୋର ଶୁଭ ଗ୍ରହ ପଡ଼ି ଆସିଲା ବେଳକୁ ମୁଁ ଏ ସୁବିଧା ଛାଡ଼ିଦେବି କିପରି ? ଯାହାପାଇଁ ଏତେ ସବୁ ହେଲାଣି, ଆଜି ଏତେବେଳେ ତାକୁ ଛାଡ଼ି କରି ଯିବାକୁ ମନ ବଳିଲା ନାହିଁ । ମୁଁ କ'ଣ ଏଡ଼େ ବେକୁବ ଯେ ଗୋରବରୋଷର ତପ ଏକା ଦିନକର ଶୁଖୁଆ ପୋଡ଼ାରେ ସାରିବି ? ସେଦିନ ଆଶା ଓ ଉତ୍ଫୁଲ୍ଲତାରେ ହୃଦୟ ଏତେ ଭରପୂର ଯେ, ନନାଙ୍କ କଥାରେ ଖାଲି ହସ ମାଡ଼ିଲା । ରକମ ଦେଖି ନନା ମଧ୍ୟ ଆପଣା ମହତ ସମ୍ଭାଳି ଖସିଲେ । ମୁଁ ମୋର ଇହକାଳର ଦେବତା ପୀଠ ଓ ପରକାଳର ସମାଧି କ୍ଷେତ୍ର । ବର୍ତ୍ତମାନର ବୈତରଣୀ ଓ ଭବିଷ୍ୟତର କଲ୍ପବଟ ସେହି ଆଶ୍ରମ ଅଭିମୁଖରେ ଧୀରେ ଧୀରେ ଗମନ କଲି ।

ହାୟ, ହାୟ, ଏହି କେତେଟା ଦିନରେ ଆଶ୍ରମଟା କ'ଣ ହୋଇଗଲାଣି ! ମୁଁ ଛାଡ଼ିଗଲା ଦିନୁଁ, ବ୍ରଜଶିସ୍ତ କିଏ ଚୋରି କରି ନେଲା ! ଦେଖିଲି, ମୋହରିପରି ଗୋଟାକେତେ ଜଣେ ଝଗଡ଼ୁଆ ପଡ଼ି ରହିଛନ୍ତି । କାମଦାମ କିଛି ନାହିଁ । ଅଗଣାରେ ବୁଢ଼ିଆଣୀ ବସା ଲାଗିଲାଣି । ନିଖୁରୁ ପଞ୍ଜୁରି ଗୁଡ଼ିକ ମୁଠାଏ ମୁଠାଏ ମାଟି ପେଟରେ ଜାଳା ହୋଇ ରହିଛନ୍ତି ମାତ୍ର । ବଡ଼ ଦୁଃଖ ହେଲା — ଭାବିଲି, ଏଠାକାର atmosphere ଆଉ tone ବଦଳାଇବାକୁ ହେବ । ନୂଆ spirit ଆଣି ନ ଦେଲେ ସବୁ ସରିଲା ଆସି !

ଏହା ଭାବି କାମରେ ଲାଗିବାକୁ ବସିଲି । କିନ୍ତୁ କରେ କ'ଣ ? କେଉଁ ଦିଗରେ କିଛି ଆକାର ନାହିଁ । ଏହାର ଭିତରେ ସବୁ ମାଟି ହୋଇ ସାରିଲାଣି । ଏତେ ପରିଶ୍ରମରେ ତିଆରି କ୍ଷେତ ବାଲୁଙ୍ଗାରେ ପୂରିଗଲାଣି । ନା ଅଛନ୍ତି ସେ ରାମ, ନା ଅଛି ସେ ଅଯୋଧ୍ୟା । ଲୋକେ ତ ଆଦୌ ପଚାରିବାକୁ ନାହାନ୍ତି । କେଉଁଠି ଦେଖିଲେ କିଏ ଟାପରା କରୁଛି, କିଏ ଝାଡୁଲି ମାରୁଛି, କିଏ ବା ଅପସରି ଯାଉଛି । ପଦେ କଥା କହିବାକୁ ସାହସ ହେଲା ନାହିଁ । ପିକେଟିଂ କରିବା ଦୂରେ ଥାଉ, ଚାନ୍ଦା ଆଦାୟ କରିବା ଚୁଲିକି ଯାଉ, ମୁଠାଏ ଭିକ ମିଳିବା ବି ବର୍ଜିତ । ଏଣେ ସଭା କରିବା ପାଇଁ ନୋଟିସ ଦେଲେ ଲୋକେ ଆସନ୍ତି ନାହିଁ, ତେଣେ ବଜାର ଛକରେ ବକ୍ତୃତା ଦେଲେ ପୁଲିସ ତଡ଼ନ୍ତି । ହାୟ, ହାୟ, କି ହଇରାଣରେ ପଡ଼ିଲି । ନନାଙ୍କ କଥା ମାନି ଘରକୁ ଫେରି ଯାଇଥିଲେ କେଡ଼େ ସୁଖରେ ଥା'ନ୍ତି । କର୍ମ ଅବଳକୁ ବା ବଳ କାହାର ? ଥରେ ମନ ହେଲା, ଯାଉଛି ନନାଙ୍କ ଠେଇଁକି ବାଭନ ଦେବି କି, "ଆମ ବଇଷ୍ଣବ ହେବା ନୋହିଲା; ଧାନ ମୁଠି ମୁଠି ଖୁଦ ଗୋଟି ଗୋଟି ବାଛୁଁ ବାଛୁଁ ଦିନ ସରିଲା ।" ପୁଣି ଭାବିଲି, କେଉଁ ମୁହଁରେ— । କରମରେ ଯାହା ଥାଉ ଏଇଠି ପଡ଼ି ରହିଥାଏଁ । 'ପୁରୁଷ କରମ ଗତର ତଳେ ।' 'ଦିନ ଲେଉଟିଲେ ତ ଯୁଗ ଲେଉଟୁଛି ।' କଥାରେ ଅଛି—'ମହୀ କ୍ଷଣ-କ୍ଷଣକେ ଆନ ।' ମାଟି କାମୁଡ଼ି ପଡ଼ି ରହିଥିଲେ କେଜାଣି ବା କରମ ଲେଉଟି ଯାଇପାରେ । ଝକମାରିଲି—ଏ କୁ'ବୁଦ୍ଧି ମୋର କାହିଁ ଆସିଲା । ଗାନ୍ଧୀପୁଅ କି ମତଲବରେ ମୋ ଭଳିଆ ସରଳ ମଫ ଭଲଲୋକ ପିଲାଙ୍କୁ ଏ ଫାନ୍ଦରେ ପକାଇ ଦେଲେ, ତାହା କିଏ କହିବ ! ଅଗ ଗଛ ଉପରକୁ ଚଢ଼ାଇ ଦେଇ ପଛକୁ ନିଶୁଣିଟା କାଢ଼ିନେଲେ ଧିନା ! ଆମ ଅବସ୍ଥା ଚୋରର ଚଣ୍ଡାଳଠାରୁ ବଳିଲା । କହିସାରୁଛି ଯେ, ଲୋକେ ଚାନ୍ଦା ଦେବା ବନ୍ଦ କରିଥିଲେ; ଏପରିକି, କଂଗ୍ରେସ ସଭ୍ୟ ହେବା ପାଇଁ ଯେଉଁ ପଇସା ଚାରିଅଣା, ସେତକ ସୁଦ୍ଧା ଦେବାକୁ ମଙ୍ଗିଲେ ନାହିଁ । ଆମକୁ ଏକା ପୋଷିବା ପାଇଁ ଗାନ୍ଧୀ ମହାରାଜ ଯେଉଁ କୋଟିଏ ଟଙ୍କା ଉଠାଇଥିଲେ, ତାହାତ କଡ଼ାକେ ଗଣ୍ଡାକେ ବେକଠୋକ ! ଖଦଡ଼ ବିଭାଗ ବୋଲି ଥାନେ ଥାନେ ଖଣ୍ଡିଏ ଖଣ୍ଡିଏ ଯେଉଁ ଦୋକାନ ଥିଲା, ସେଥିରେ ସୂତା, କନା ସହିତେ ନଦାରଦ । କିଏ ଜାଣିଥିଲା, ସ୍ୱରାଜ ହେଉଁ ହେଉଁ ପୁଣି ଏ ଅବସ୍ଥା ହେବ । ଆଉ ଉପାୟ କିଛି ନାହିଁ ପେଟଜ୍ୱାଳାରେ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା ।

ପିଲାଦିନରେ ବାପୁଲିଆପଣ କରି ଗୋଟାଏ ଯେଉଁ ଇଲମ ହାସଲ ହୋଇଥିଲା, ତାହା ଏତେବେଳେ କାମରେ ଲାଗିଲା । ସେଇଟା ଗୀତଗାଇ ଜାଣିବା । ଭାବିଲି, ଏ ଶିକ୍ଷାଟା ବୃଥା ଯିବ କାହିଁକି ? ଏହା ଭାବି ଗୋଟାଏ ସଙ୍କୀର୍ତ୍ତନ ଆଖଡ଼ା ଆରମ୍ଭ କଲି । ଆଉ କିଛି ବାକେ ଗୀତ ଗାଇବା ଆମ ଧର୍ମରେ ମନା, ସୁତରାଂ କେବଳ ଜାତୀୟ ସଂଗୀତ ଶିଖାହେଲା । କିଛି କିଛି ବାହାରର ଗୀତ ମିଶିଲା ସତ, ମାତ୍ର ଆମର ଖାସ ଗୀତ ହେଲା ପ୍ରଧାନ । ଏଠାରେ ଏତକ କହିଥାଏ ଯେ, ମୁଁ ସାନ ବଡ଼ କବି ଜଣେ—କବି । ଲୋକେ କହନ୍ତୁ ବା ନ କହନ୍ତୁ, ମୋ ମନେ ମନେ ମୁଁ କିଛି ଜଣା କବିଟାଏ ନୁହେଁ । ଆପଣା ନାଁରେ ଢେଙ୍ଗୁରା ଦେବା ଭଲ ନୁହେଁ, ଗୁଣ ଥିଲେ ଦିନେହେଲେ ଆପେ ଫୁଟି ବାହାରିବ । ମୋ ଗୀତର ଗୋଟାଏ ଯୋଡ଼ାଏ ନମୁନା ଏଠାରେ ଦିଏଁ :—

(୧) ଅସିନ୍ଧୁରେ ଗାନ୍ଧୀ ଅବତାର ।
ପତିତ ତାରଣ; ଜଗତ କାରଣ, ଅରଟ ଧାରଣ, ଦାରିଦ୍ର୍ୟ ବାରଣ
ଦୟାର ଆଧାର । X X
(୨) ଭାରତ ଜନନୀ, ଆଜ କଳଙ୍କିନୀ-ଦେଶରେ
ଜଗତବାସୀ । X X
(୩) ଉଠ ଉଠ ଜାଗ ଜାଗ ମଠ ମଠ ଲାଗ ଲାଗ
ଆଗ ଆଗ ବାନ୍ଧ ପାଗ, ଦେଇ ଦାଗ, ମାଗ ମାଗ,
ନ ଭାଗ ଆଉ ଏଣିକି । X X

ଏହିପରି ସରସ, ସାର୍ଥକ, ଶବ୍ଦ ଗୁରୁତ୍ୱ ପୂର୍ଣ୍ଣ କେତେ ଗୀତ ଅଛି । ଏହା ସବୁ ଜାତୀୟ ସାହିତ୍ୟର ଅଳଙ୍କାର ସ୍ୱରୂପ ଓ ଏପରି ଦିନ ଦିନେ ଆସିବ, ଯେବେ ଇତିହାସରେ ଏ ସବୁ ସ୍ଥାନ ପାଇବ । ଏହି ଗୀତମାନ ଗାଇ, ମୃଦଙ୍ଗ, ଝାଞ୍ଜ ବଜାଇ ବାହାରିଲୁଁ ସ୍ୱରାଜ ଭିକ୍ଷାରେ । ସହରରେ କିଛି ସୁବିଧା ନ ହେବାର ଦେଖିପାରି ମଫସଲ ଆଡ଼କୁ ଆଖି ଫେରାଇଲୁଁ । ବାସ୍ତବିକ ମଫସଲରେ ପ୍ରସାର ବେଶ୍ ଖୋଲିଲା । ଅନ୍ତତଃ ଗ୍ରାସାଚ୍ଛାଦନଟାରେ ସୁଦ୍ଧା ଆମେ ଆପଣାର ଧର୍ମ ଛାଡ଼ି ନାହୁଁ । 'ଗୀତା' ରେ ଅଛି ପରା—"ସ୍ୱଧର୍ମେ ନିଧନଂ ଶ୍ରେୟଃ ।" ଗାଁକୁ ଗାଁ ଏହିପରି ବାଉଳା ହୋଇ ବୁଲୁଥାଉଁ, ଆଉ ଆମର ମୁଖପତ୍ର ଖବର କାଗଜ ଖଣ୍ଡିକ ବିକୁଥାଉଁ । ଏହିପରି ଦିନାକେତେ କଟିଗଲା ସତ, ମାତ୍ର ପରକୁ ବଡ଼ ଚିନ୍ତା ଲଗିଲା । ଦଳରୁ ଗୋଟିଏ ଗୋଟିଏ ଖସିବାକୁ ଲାଗିଲେ । କିଏ ଗୁମାସ୍ତା ଚାକିରି ଖଣ୍ଡିଏ ପାଇ ରହିଗଲା, କିଏ ଦୋକାନ କରିବାକୁ ବାହାରିଲା, କିଏ ପାଠ ପଢ଼ାଇଲା, କିଏ ବା କିଛି ନ ପାଇ ଓଡ଼ିଆଙ୍କ ଶେଷ ଭରସା କଲିକତା ସହରରେ ଗଲିଲା । ସୁବିଧା ବୁଝି ଯେ ଯାହାର ବାଟ ଅନୁସରିଲେ; ମୁଁ ନିତାନ୍ତ ଏକୁଟିଆ ହୋଇ ପଡ଼ିଲି । ଆଉ ଅଉ ସ୍ଥାନର ଆମ ଜାତିଆଙ୍କ କଥା ଅଳ୍ପ ବହୁତ ଜଣାଥାଏ, ସୁତରାଂ ସେଆଡ଼କୁ ମନ ବଳାଇଲି ନାହିଁ ।

ଅସହଯୋଗର ଝମଝମିଆ ଦିନରେ କେତେକ ସ୍ଥାନରେ ଆମର ଜାତୀୟ ବିଦ୍ୟାଳୟମାନ ଖୋଲା ହୋଇଥିଲା । ସେ ସବୁ ଏତେବେଳକୁ ଲୋପପାଇ ଗଲାଣି, କେବଳ '—ପୁରର' ସ୍କୁଲ ଜୀଇ ରହିଛି ବୋଲି ଖବର କାଗଜରୁ ଜାଣୁଥିଲି । ମୋହରିପରି କେହି ନିଳଠା ସେଠି ଥିବେ ଭାବି ଦିନେ ଗଲିଲି । ଅବଶ୍ୟ ରେଲରେ ଯିବାକୁ ହୁଏ । ହାତରେ ଟିକଟର ପଇସା ନଥିଲା, କ'ଣ କରିବି ! ମୋ ଭେକଟା ଟିକିଏ ଆଖିଦୁରଣା କରି ବାଗେଇ ନେଲି; ଆଉ ଖଣ୍ଡିଏ ଗ୍ଲେଟ ଟିଣ ବାକ୍ସ ହାତରେ ଧରି ଗୋଶାଳା ଗୃହା ଆଦାୟ କରିବା ବାହାନାରେ ଗାଡ଼ିରେ ଉଠି ପଡ଼ିଲି । କେହି କିଛି କହିଲେ ତ ନାହିଁ, ଅଧିକନ୍ତୁ ଧରିବା ଲୋକ ଯେ, ତାହାର ପାଖରେ ଅଗତ୍ୟା ପହଞ୍ଚି ଯାଇ ବାକ୍ସ ଦେଖାଇ ଭିକ୍ଷା ମାଗି ଦିଏଁ । ଏପରି କାମରେ ଟିକିଏ smart ଆଉ forward ହେବା ଦରକାର । ଈଶ୍ୱରଙ୍କ ଇଚ୍ଛାରୁ ଏ ବିଦ୍ୟାରେ ମୋତେ ବଳି କେହି ନଥିଲା । ଏହିପରି କରି ସମସ୍ତ ଘାଟିମୁଣ୍ଡ ଯାକ ନିର୍ବିଘ୍ନରେ ପାରି ହୋଇଗଲି । ତହିଁ ଉପରେ ଆହୁରି ଫାଉ ମିଳିଗଲା ଦଶଅଣା ଯାକେ ପଇସା । ଏଇଟା ଗୋଶାଳା ପଇସା ବୋଲି ତୁଳସୀ ପତ୍ର ପକାଇ ରଖି ଦେଇଥାଏଁ । ପାନ ବିଡ଼ି ପର୍ଯ୍ୟନ୍ତ ହାତରୁ ତିନି ପଇସା ଖରଚ କରି ଖାଇଥିଲି । କେବଳ ଅତି ଶୋଷ ଲାଗିବାରୁ ଏବଂ ମୋ ନିଜ ତହବିଲ ନଅଣ୍ଟ ହେବାରୁ ଏଥିରୁ ଧାର ନେଇ ଗ୍ଲାସେ ବରଫ ଲିମିନେଡ଼ ଖାଇଥିଲି ମାତ୍ର । ସେ ସ୍ଥାନରେ ପହଞ୍ଚି ଦେଖେଁ ଯେ, ଦୂରରୁ ଯାହା ଶୁଣିଥିଲି ଓ ଖବରକାଗଜରେ ଯାହା ପଢ଼ିଥିଲି, ତାହା କଡ଼ାଏ ସୁଦ୍ଧା ନୁହେଁ । ସ୍କୁଲର ଭଗ୍ନାବଶେଷ ଘରଟି ମାତ୍ର ଥିଲା । ତହିଁରେ ମଶିଣା ଦୁଇଖଣ୍ଡ, କଲସି ଗୋଟାଏ, ଖଣ୍ଡିଏ କିରାସିନ ପଟାର ସେଲଫ୍ ଉପରେ ବହି କେତେଖଣ୍ଡିଏ, ଏତିକି ମାତ୍ର ଉପକରଣ । ମାଷ୍ଟର ଜଣେ—ଛାତ୍ର ନାସ୍ତି । ମାଷ୍ଟରଟି ମୋର ଜଣେ ପରିଚିତ ବ୍ୟକ୍ତି । ଆଦର ଅଭ୍ୟର୍ଥନା ଓ କଥିତ ସୁଖ ଦୁଃଖ ଉତ୍ତାରୁ ମୁଁ ପଚାରିଲି, "ସବୁ ଜାତୀୟ ବିଦ୍ୟାଳୟ ଗୁଡ଼ାକ ଭାଙ୍ଗି ଯାଇ କେବଳ ଏଇଟି ଜୀବନ୍ତ ଅଛି ବୋଲି ଲୋକେ ଜାଣନ୍ତି ଏକା ।" ବନ୍ଧୁବର ଉତ୍ତର ଦେଲେ କି, "ଲୋକେ ଜାଣିବାଟା ଆମ ହାତର କଥା; ଏଠିକି ଆସି କ'ଣ ହେଉଛି ନ ହେଉଛି, ତାହା ଆଖିରେ କିଏ ଦେଖେ ? ଯାହା ଜାଣିବେ ସମ୍ବାଦପତ୍ରରୁ ସିନା ! ସବୁ କାଗଜରେ ଏଠା ଜାତୀୟ ବିଦ୍ୟାଳୟ କଥା ମୁଁ ପଦେ ପଦେ ଲେଖୁଥାଏଁ ବସି । ସେହି ହେତୁରୁ ଏଇଟି କେବଳ 'ଜୀବନ୍ତ' ଅଛି । ମୁଁ ତାଙ୍କୁ ପଚାରିଲି, "ଅଚ୍ଛା, ତୁମର ଖରଚପତ୍ର କିପରି ଚଳେ ?" ସେ କହିଲେ, "ଏହି ଗ୍ରାମରେ ମୋର ପିଉସା ଘର ।" ଦୁଇ ଓଳିର ଗ୍ରାସଟା ଉପୁରି ଚଳିଯାଏ । ଅଉ ଖରଚ କଣ ? ଏଠାରେ ଯେଉଁ ଖଦଡ଼ ଭଣ୍ଡାରଟି ଅଛି ବା ଥିଲା, ସେଥିରେ ଯେଉଁ ଲୁଗା ଦୁଇ ଚାରିଖଣ୍ଡ ଅବଶିଷ୍ଟ ଅଛି, ତଦ୍ୱାରା ଆଚ୍ଛାଦନଟା ଚଳେ । କେବଳ ଅଭାବ ପଡ଼େ ଜଳଖିଆଟା । ଆଉ ଆଖପାଖିଆ ମାଙ୍କ ମୋହ-ବତଙ୍କ ପାନ ବିଡ଼ି । ଏ ସବୁ ଚଳାଇ ଦିଏ ଏହି ଗ୍ରାମର ଜଣେ ଦୋକାନୀ । ଯେତେବେଳେ ଯାହା ଦରକାର ହୁଏ, ଏ ଜଣକ କାଳି ଯୋଗାଏ ।" ମୁଁ ପଚାରିଲି, "ଏ ପୁଣି ସୁଝିଟ ହୁଏ କେଉଁ ଆୟରୁ ?" ବନ୍ଧୁ ପ୍ରବର ଠୋ' ଠୋ' କରି ହସିଉଠିଲେ । ମୋ ପିଠିରେ ଗୁପୁଡ଼ାଏ ମାରି ଦେଇ ପୁଣି କହିଲେ, "ପାଗଳ ! ପାଗଳ !! ତୁମକୁ ବି ସୁଦ୍ଧା ବୁଝାଇ କହିବାକୁ ହେବ ନା ଏ କଥାଟା ?" ମୁଁ ମଧ୍ୟ ହସି ଦେଇ କହିଲି, "ବୁଝୁଛି ଯେ କିଛି କିଛି—ହେଲେ ଭାଇଦାଟା ଠିକ୍

ଧରି ପାରୁନାହିଁ । ବନ୍ଧୁବର ସେଠୁଁ ଗମ୍ଭୀର ହୋଇ ବୁଝାଇ ଦେଲେ ଗୋଟି ଗୋଟି କରି—କି ହେତୁରୁ ସେ ମଲା ଇସ୍କୁଲଟାକୁ ଛାଡ଼ିଛନ୍ତି, କି ଉଦ୍ଦେଶ୍ୟରେ ନିୟମିତରୂପେ ଖବର-କାଗଜରେ ଲେଖନ୍ତି, କି ପ୍ରକାରେ କେହି କେହି ଦେଶ ହିତୈଷୀ ଦାତା ସ୍ୱତଃପ୍ରବୃତ୍ତ ହୋଇ ମନିଅର୍ଡ଼ର ଦ୍ୱାରା ସାମୟିକ ସାହାଯ୍ୟ ପଠାନ୍ତି ଇତ୍ୟାଦି । ମୁଁ ଏଥର ବୁଝିଲି ଯେ ଗାନ୍ଧିଜୀ ଯେଉଁ ଦୀପଟା ଥରେ ଦେଶରେ ଜାଳି ଦେଇଛନ୍ତି, ତାହା ଏକାବେଳକେ ଲିଭି ନାହିଁ; କେବଳ ତେଲାଭାବରୁ ଟିକିଏ ନିସ୍ତେଜ ହୋଇ ଯାଇଛି ମାତ୍ର । ଏ ଅଭିଶପ୍ତ ଦେଶରେ ଏପରି ପ୍ରାଣବାନ୍ ବ୍ୟକ୍ତି ଅଜ ସୁଦ୍ଧା ଅଛନ୍ତି, ଯେଉଁମାନେ ଆମପରି ଦେଶ-ବୈରାଗୀଙ୍କ ପାଇଁ Feel (ଅନୁଭବ) କରୁଛନ୍ତି । ତେବେ ଧନ୍ୟ ଏ ଦେଶ, ଧନ୍ୟ ଗାନ୍ଧୀ, ଧନ୍ୟ ଭାରତ ଜନନୀ, ଆଉ ମହାଧନ୍ୟ ସର୍ବତ୍ୟାଗୀ—ଆମେ ! ଏ ଦେଶର, ଏ ଜାତିର ଭବିଷ୍ୟତ ଯେ କେବେ ଅନ୍ଧକାରମୟ ନୁହେଁ, ଏ କଥା ମୁଁ ହଲପ୍ ଧରି ଉର୍ଦ୍ଧ୍ୱମୁଖରେ ସହସ୍ରବାର କହିପାରେ ।

ଦୁଇ ଚାରିଦିନ କାଳ ବନ୍ଧୁଙ୍କ ସେବା ଗ୍ରହଣ କରି ଏବଂ ତାଙ୍କ ଅବସ୍ଥା ଉତ୍ତମ ରୂପେ ହୃଦୟଙ୍ଗମ କରି ପୁଣି ସ୍ୱସ୍ଥାନକୁ ଫେରି ଆସିଲି । ବନ୍ଧୁବରଙ୍କ ଉଦାହରଣ ମୋ ଅନ୍ତରରେ ଯଥେଷ୍ଟ ବଳ ସଞ୍ଚାର କରିଦେଲା । କି ନିଷ୍ଠା – କି ବିଶ୍ୱାସ—କି ଐକାନ୍ତିକ ନିର୍ଭରଶୀଳତା ତାଙ୍କର ! ସେ ବାସ୍ତବିକ ଜଣେ ଯୋଗୀ ପୁରୁଷ । ମୁଣ୍ଡ ମାଡ଼ି ସ୍ୱଧର୍ମରେ ପଡ଼ି ରହିଥିଲେ ନିଶ୍ଚୟ ଦିନେ ସୁନା ଫଳିବ । ସ୍ଥିର କରି ଫେରିଲି ଯେ, 'ଯାହା ହେବାର ହେଉ ଏଣିକି' ପଛକେ ମୁଁ ମୋର ଧର୍ମ ( କି ଅସହଯୋଗିତା ) ଆଉ ସ୍ଥାନ ( କି ଆଶ୍ରମ ) ଏ ଦୁହିଁଙ୍କୁ କଦାଚ ଛାଡ଼ିବି ନାହିଁ । କାରଣ, "ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ" ଆଉ "ସ୍ଥାନଭ୍ରଷ୍ଟା ନ ଶୋଭନ୍ତେ ଦନ୍ତାଃ କେଶା ନଖା ନରାଃ ।"

ଆଶ୍ରମରେ ଆସି ଦେଖିଲି ଯେ; ଯେଉଁ ଶେଷ ସଙ୍ଗୀ ପିଲାଟିକୁ ଛାଡ଼ି ଦେଇ ଯାଇଥିଲି ସେ ଚମ୍ପଟ ଦେଇଛି । ବେଶି କିଛି ନେଇ ପାରି ନାହିଁ । କାରଣ ବେଶି କିଛି ନେବା ଭଳି ନ ଥିଲା । ତେବେ, ଲୁଗାପଟା, ଖାତାପତ୍ର ଇତ୍ୟାଦି ଯାହାକିଛି ଶେଷ ସମ୍ବଳ ଥିଲା, ତାକୁ ସବୁ ପରିଷ୍କାର କରି ଦେଇଛି । ଦେଖି ମନରେ ହର୍ଷ-ବିଷାଦ ଉଭୟ ଜାତ ହେଲା । ଅଲୁମିନିୟମ ବାଟି ଯୋଡ଼ାକ ମଧ୍ୟରୁ କଣା ବାଟିଟାକୁ ରଖି ବାକି ସବୁ ଅନୁଗ୍ରହ କରିଛି । ପଦାର୍ଥ ପାଇଁ ଦୁଃଖ ହେଲା ନାହିଁ, କିନ୍ତୁ ଟୋକାଟା ଯେପରି ଭାବରେ ଗଲା, ସେଥିରେ ସେ ଯେ ଚିର ବିଦାୟ ନେଇ ଯାଇଛି, ଏହି କଥା ଭାବି ବଡ଼ କଷ୍ଟ ହେଲା । ଯାହାହେଉ ପିଲାଟି ରୂପରେ ଗୁଣରେ ବଡ଼ ଭଲ ଥିଲା, ଆଉ ମୋର ବିଶେଷ ଅନୁଗତ ଥିଲା । ମନକୁ ପ୍ରବୋଧ ଦେଲି କି—"ସଂସର୍ଗଜା ଦୋଷଗୁଣା ଭବନ୍ତି ।"

ଆଶ୍ରମରେ ବର୍ତ୍ତମାନ ମୁଁ ଏକୁଟିଆ । ଏଡ଼େ ବଡ଼ ଆଶ୍ରମ, ଯେଉଁଠି ବାର ଦୁ'ଶେ ଚବିଶ ପୂନେଇ, ତେର ଦୁ'ଶେ ଛବିଶ ପାର୍ବଣ ଲାଗି ରହିଥିଲା, ଅଧ ରାତିରେ ବାଇଦ ବାଜି ଦୁଷ୍ଟମନଙ୍କ ଛାତିକି କାତି ମାରୁଥିଲା, ସେଠି ଏକା ମୁଁ ରହିଲି 'ଶେଷ ବନ୍ଦୀ ଭାରତୀ" ଗାଇବା ପାଇଁ ! ହାୟ କର୍ମ ! ମୁଠାଏ ସିଝାଇଦେବାକୁ କେହି ନାହିଁ । ଦିନଟା ସାରା ଉପାସ ରହି ଯେତକ ଦମ୍ଭ, ଉତ୍ସାହ ସବୁ ପେଟ ଭିତରେ ଗମିଗଲା । ତହିଁ ଆରଦିନ ସକାଳୁ ଉଠି ଡାକଘରକୁ ଯାଇ ଯେତେ ଖବର କାଗଜ ପାଇଲି, ସବୁ ରୁଣ୍ଡାଇ ସେଥିରୁ ବାଛି ବାଛି ଦୁଇ ଚାରିଖଣ୍ଡ ଚାକିରୀର ଦରଖାସ୍ତ ଛାଡ଼ିଦେଲି । କର୍ମରେ ଥିଲେ ଯଦି ଲାଗିଯାଏ । ଏ ଜୀବନ ଆଉ ସୁଖ ଲାଗୁନାହିଁ । ବାରଦ୍ୱାର ବୁଲା ଅନିଶ୍ଚୟତା ବଡ଼ ଦୁଃଖମୟ । ଯାହା ଦୁଇ ଚାରି ପଇସା ମିଳିବ, ଆପଣା ଗତର ଖଟାଇ ଅର୍ଜନ କରି ଖାଇବାରେ ସୁଖ ବି ଅଛି, ଶାନ୍ତି ବି ଅଛି । ଏଣେ ବିଦ୍ୟା ତ ଯେତେଦୂର । ଯାହାହେଉ ସତ ମିଛ କହି Qualification ଗୁଡ଼ାକ ବଢ଼ାଇଦେଇ ଲେଖିଲି । ଆଗେ କେଉଁଠି ହେଲେ ଲାଗିଯାଉ, ତେଣିକି ଧରପକଡ଼ ହେଲେ ଦେଖାଯିବ । ଏପରି କେତେ ଜାଗାରେ ଚଳି ଚାଲିଯାଉଛି । ଆଉ ଗୁଣରେ ମୁଁ ବି କିଛି କମ ନୁହେଁ !

ଚାହିଁ ଚାହିଁ ଆଖିରୁ ପାଣି ମଲା । କୁଆଡ଼ୁ କିଛି ଉତ୍ତର ଆସିଲା ନାହିଁ । କାମଟା କଲି ଗୋପନରେ । କାରଣ ଆମେ ହେଲୁ ଖ୍ୟାତନାମା ଅସହଯୋଗୀ, ଏକଥା ଜଣାପଡ଼ିଗଲେ ସାତପାଞ୍ଚରେ ମୁହଁ ଦେଖାଇପାରିବି ନାହିଁ । ଏହି ଲାଜରେ ସୁପାରିସ କରିବା ଲାଗି କାହାରିକି ଅନୁରୋଧଟାଏ ବି କରିଦେଲି ନାହିଁ । ଏଥିରେ ଯାହା ହେବାର ତେତିକି ହେଲା । ଯେ ମାଗି ଖାଇଲାଣି, ଈଶ୍ୱର ତାକୁ ଲାଗିଖାଇବାକୁ ଦେବେ କାହିଁକି ? ଶେଷରେ ଚାକିରୀ ଆଶାରେ ଜଳାଞ୍ଜଳି ଦେଇ କପାଳ ଠୁଙ୍କି ରହିଲି । ମନ ହେଉଥାଏ, ଯଦି ଏଇଠି ମୋର ଜୀଅନ୍ତା କବର ହୋଇଯାଆନ୍ତା, ତେବେ ରକ୍ଷା ପାଇଯାଆନ୍ତି । କାତର ହୋଇ ଠାକୁରଙ୍କୁ ଡାକିଲି । ଆପଣା ବାହାଦୁରିରେ ଯେତେଦିନ ଚଳି ଯାଉଥାଏ, ଠାକୁରଙ୍କୁ କେହି ପଚାରେନାହିଁ । କିନ୍ତୁ ଅଚଳ ବେଳକୁ ନିରୁପାୟ ହୋଇ ଲୋକ ଯାଇ ଠାକୁରଙ୍କୁ ଆଶ୍ରା କରେ । ମୁଁ ବି ଡାକିଲି । "ମୋ କର୍ମ ଜୋର", "ମୋ କିସମତ ଜୋର" ଇତ୍ୟାଦି ସବୁ କୁଆଡ଼େ ଗଲା । ହେଲା କଣ ନା, କୋହଲାବେଳକୁ ଯାହା ହୁଏ; ଅର୍ଥାତ୍ ଠାକୁରଙ୍କର ସବୁ ଦୋଷ । "ତ୍ୱୟା ହୃଷିକେଶଂ ହୃଦି ସ୍ଥିତେନ" ଇତ୍ୟାଦି । ଯାହାହେଉ

ଠାକୁରେ ଏକା ଗମ୍ଭୀର ଡାକ ଶୁଣିଲେ । ସେଥିପାଇଁ ତାଙ୍କୁ ଶତସହସ୍ର ଧନ୍ୟବାଦ । ଡାକ ନ ଶୁଣି ସେ ଯାଆନ୍ତେ କୁଆଡ଼େ ? ମୋହରିପରି ହଜାର ହଜାର ହତାଶ ପ୍ରାଣର କାତର କ୍ରନ୍ଦନ ହିନସ୍ତିତ ଯାଇ ତାଙ୍କ କାନପାଖରେ ଝଡ଼ ଉତ୍ପାଦନ କଲା—ସୁତରାଂ ସେ ଯୋଗନିଦ୍ରା ଛାଡ଼ି ଚେଇଁଲେ । ସେତ ଆଉ ଆପେ ଆସିବା ପାବ ନୁହନ୍ତି । ସେ ଯେଉଁ କାମ କରନ୍ତି, ଜଣକୁ "ନିମିତ୍ତ ମାତ୍ର" କରି ଥାଆନ୍ତି । ବଡ଼ ବଡ଼ କାମ ପଡ଼ିଲେ ନିଜେ ଚକ୍ର ଧରନ୍ତି ସିନା !

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍‌ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଏ ପଦ ମୁଁ ଗୀତାରୁ ଶିଖିଛି । ଗୀତାଟା ଏକା ବଡ଼ ଭଲ ବହି, ଯେ ଯାହା ଲୋଡ଼ିବ ତାକୁ support କରିବା ଭଳି ପାଠ ତହିଁରେ ଅଛି । ସେଥିପାଇଁ ମହାତ୍ମାଜୀ ସମସ୍ତଙ୍କୁ ଗୀତା ପଢ଼ିବାକୁ କହନ୍ତି । ମୁଁ ଗାନ୍ଧୀଙ୍କୁ ଛାଡ଼ିପାରେଁ, ଅରଟକୁ ଛାଡ଼ିପାରେଁ, କିନ୍ତୁ ଗୀତାଟା ଛାଡ଼ିପାରିବି ନାହିଁ । ସେହି ବିଶ୍ୱାସରେ ପଡ଼ି ରହିଥାଏଁ ।

ଶାସ୍ତ୍ରରେ ଅଛି, "ବିନାଶ୍ରୟା ନ ବର୍ତ୍ତନ୍ତେ କବିତା ବନିତା ଲତା" ଆମେ ବି ସେହି ଭଳିଆ । ଆମର ନିଜତ୍ୱ ବୋଲିଲେ କିଛି ନାହିଁ । ଗୋପାଙ୍ଗନାଙ୍କ ପରି ଆମେ ଆମର ସବୁ 'ସମର୍ପଣ' କରିଦେଇଛୁଁ । ଆମ କାର୍ଯ୍ୟରେ, ଚିନ୍ତାରେ ବା ଦେହରେ ଆମର ଅଧିକାର ନଦାରଦ । ସେ ଆଡ଼ରୁ ଯାହା ହୁକୁମ ପଡ଼ିବ, ମେଣ୍ଢାପଲ ପରି ଆମେ ଲାଗିବୁଁ । ଯାହା ଆମର ବଡ଼ବଡ଼ିଆ କହିବେ, ତହିଁ ଆରହିନ ମଟିମଟିଆମାନେ ତାର ପାଳି ଧରିବେ, ଆଉ ଆମେ ସାନସାନିଆଯାକ ଗ୍ରାମୋଫନ ଭଳି ସେହି କଥା ଚତୁର୍ଦ୍ଦିଗରେ ଗାଇବୁଲିବୁଁ । ଅବଶ୍ୟ ଗାନ୍ଧୀଜୀଙ୍କର ଉପଦେଶ କି—"ତୁମେ ସବୁ ସ୍ୱାଧୀନ ଚିନ୍ତା କର, ବିବେକକୁ ବି ପଚାରି କାମ କର", କିନ୍ତୁ ଏଣେ ଉପରୁ ଏପରି ହୁକୁମମାନ ଆସେ, ଯହିଁରେ ଆମ ସ୍ୱାଧୀନ ଚିନ୍ତା ବା ବିବେକର ଗଳାମରୁଡ଼ି ହୋଇଯାଏ । (partyର unityଟା ବଡ଼) କଥା ମାନି ହୁକୁମ ମାନି ଓ ପରର ମସ୍ତିଷ୍କ ଉପରେ ନିର୍ଭର ରଖି ରଖି ଆମର ଇମିତି Slave temperament ହୋଇଗଲାଣି ଯେ, ଆମେ ଏଇକ୍ଷଣି କୌଣସି ଗୋଟାଏ ଆଶ୍ରୟ ନ ପାଇଲେ ବଞ୍ଚିପାରିବୁ ନାହିଁ । ଆମ ଦଳର ଯେଉଁ ମତ, ସେଇଟା ହେଲା ବେଦ । ଯେ ପଛକେ ହିନକେ ଦଶଥର ବଦଳୁ । କାରଣ, ଆମ ମୁଣ୍ଡିଆଳ କହନ୍ତି କି, ଘଡ଼ିକି ଘଡ଼ି ସେହି ମତ ବଦଳାଇବାଟା ହେଉଛି ବଡ଼ପଣିଆ, ବିଶେଷତଃ ରାଜନୈତିକ କ୍ଷେତ୍ରରେ । (consistency is the hobgoblin of little mind) ବୁଦ୍ଧା ଯାହା ବଲିବଲେଇଲେ, ତାହା ବେଦ । ଆଉ କେହି ଯଦି କିଛି କହିଲା, ତାହାର ଭଲମନ୍ଦ ବୁଝିବାକୁ ଆମର ଶକ୍ତି ତ ନାହିଁ, ଏପରିକି; ସେ କଥା ଅମଲ କରିବା ପାଇଁ ଟିକିଏ ଆମ କାନ ଯୋଡ଼ାକ ନାରାଜ । ସରକାରୀ ନୌକରମାନଙ୍କୁ ଆମେ ଟାପରା କରୁଁ ସିନା କିନ୍ତୁ ଆମର ଧାରୁଣା ନପଟ ଗୋଲାମି ପାଲଟି ଗଲାଣି—ନିଜତ୍ୱ (self) ବୋଲି ଗୋଟାଏ କିଛି ଆମର ଥିଲା କି ନଥିଲା, ତାହା ହଜାଇ ସାରିଲୁଣି ଆମେ ।

ଏତିକିବେଳେ ଖବର ମିଳିଲା କି, ଆମ ମହାତ୍ମାଜୀ ଜେଲ୍ ଗଲେ—ଏକାଠି ଛଅ ବରଷ । କାହା ନାଁ' ଵକ ଖାଇବୁଁ—କାହା ନାଁ' ଧରି ପାରିବୁଁ ? ଆମର ଆଉ ଭରସା କଣ, ଉପାୟ କଣ ? ମେରୁଦଣ୍ଡ ଭାଙ୍ଗିପଡ଼ିଲା । ମୁହଁ ସିନା ଦାନ୍ତ ନିକୁଟି ପଡ଼ିରହିଥିଲା, କିନ୍ତୁ ଆଉଯାକ ଧାଙ୍ଗଭାଇ ଆମର ସବୁ ଖୋସନିବାସ୍ ନନ୍ କୋ-ଅପରେଟରେ । ସେମାନେ ମାଛ ଧରି ଖାଇବାକୁ ମଙ୍ଗବୁତ, କିନ୍ତୁ ଦେହରେ ପଙ୍କ ଲଗାଇବାକୁ ନାରାଜ । ଖଦଡ଼ଟା ପିନ୍ଧିଥାନ୍ତି, ସହାନୁଭୂତିଟାଏ ଦେଖାନ୍ତି ଏବଂ ସ୍ଥାନ ବିଶେଷରେ ଦରକାର ପଡ଼ିଲେ ଆପଣାକୁ ଅସହଯୋଗୀ ପରିଚୟ ଦିଅନ୍ତି । ଏଗୁଡ଼ିକ କାଉ । ଦୁଇକୂଳ ବଜାୟ ରଖି ଗୁରିଆଡ଼େ ଉଡ଼ ଉଡ଼ ବୁଲନ୍ତି । ମୁଁ ଠିକ୍ ଜାଣେ ଯେ ମଡ଼ ପଡ଼ିଲା ମାତ୍ରକେ ଏହିମାନେହିଁ ପଲ ପଲ ହୋଇ ଆଗକରି ମାଡ଼ିବସିବେ ।

ଏହିପରିକା ଅନେକଙ୍କ ଧାଙ୍ଗରେ ବାଟରେ ଘାଟରେ ଦେଖାସାକ୍ଷାତ ହୁଏ, କେହି କେହି ଆଶ୍ରମରେ ମଧ୍ୟ ପାଦଧୂଳି ପକାନ୍ତି । ଦେଖାହେଲାକ୍ଷଣି ଦେଶର ହାଲଚାଲ ପଡ଼େ, ରାଜନୀତି, ସମାଜନୀତି, କୂଟନୀତି ସବୁ ଚର୍ଚ୍ଚା ହୁଏ—ଖାଲି ହୁଏନାହିଁ ମୋ ପେଟ କଥାଟା 'ମୁଁ ଯେ ପବନ ଖାଇ ପଡ଼ିଛି, ଏକଥା କେହି ବୁଝି ମଧ୍ୟ ବୁଝନ୍ତି ନାହିଁ । ଦେଖେଇ ଶିଖେଇ କହିଲେ ମଧ୍ୟ ଏମାନେ ନୁଖୁରା ସମ୍ବେଦନା ପ୍ରକାଶ କରନ୍ତି, ଆଉ ମୋର ତ୍ୟାଗ ଓ ଧୈର୍ଯ୍ୟକୁ ସାବାସି ଦେଇ ମନଟାକୁ ଏପରି ସିକା ଉପରକୁ ଟେକିଦିଅନ୍ତି ଯେ, ସେହି ବାହାଦୁରିରେହିଁ ପେଟଟା ଭରପୂର ହୋଇଉଠେ ।

ଆମ କେତେଜଣଙ୍କର ଅବସ୍ଥା ବଡ଼ ସଙ୍କଟାପନ୍ନ ହୋଇପଡ଼ିଲା ହିନକୁହିନ । ନନ୍ କୋଅପରେଟର କଥାଟାର ଅପଭ୍ରଂଶ ହୋଇଗଲା 'ଅକର୍ମା' । ବାସ୍ତବିକ ଆମଠାରୁ ବଳି ନିଷ୍କର୍ମା ଆଉ କିଏ ? ଜାତୀୟ ଗଭର୍ଣ୍ଣମେଣ୍ଟ ହୋଇଥିଲେ ଆମର unemployment ସମସ୍ୟାର ପୂରଣ ନିମନ୍ତେ relief measure ପଠାନ୍ତେଣି । ଏ ବିଦେଶୀ ଗଭର୍ଣ୍ଣମେଣ୍ଟ କଣ ବୁଝିବ ? କିନ୍ତୁ ଆମର ପରିତ୍ରାଣ ପାଇଁ ସ୍ୱୟଂ ନାରାୟଣ ଆସି ନର ରୂପରେ ଅବତୀର୍ଣ୍ଣ ହେଲେ ଏତିକିବେଳେ । ସେ ବଙ୍ଗ ଦେଶର ନେତା ଦେଶବନ୍ଧୁ ଚିତ୍ତରଞ୍ଜନ । ସେ ବାହାରି ନଥିଲେ ଆମ ଦଶା କଣ ହୋଇଥାନ୍ତା କିଏ ଜାଣେ ! ହାୟ ! ସେ

ମହାତ୍ମା ସ୍ୱର୍ଗକୁ ଚାଲିଗଲେ ଅକାଳରେ, କିନ୍ତୁ ତାଙ୍କ ଜୀବନର ସର୍ବପ୍ରଧାନ କାର୍ଯ୍ୟଟି ସେ ସାରିଯାଇଛନ୍ତି । ତାହା ଏହି ଅନାଥ ଗୁଣ୍ଡକଙ୍କର ଗୋଟାଏ ଗତି କରିଦେବା । ଏଥିପାଇଁ ଆମର ସହସ୍ର ସହସ୍ର ଧନ୍ୟବାଦ ସେ ସଙ୍ଗରେ ନେଇଯାଇଛନ୍ତି ଓ ଯାବତ୍ ଚନ୍ଦ୍ରାର୍କେ ଆମର ତଳ ସପ୍ତପୁରୁଷ ତାଙ୍କଠାରେ ଋଣୀ ଥିବେ ।

ଦୈନିକ ସୂତାକାଟିବାଟା ଆମର ଗୋଟାଏ ପ୍ରଧାନ ଦାୟିତ୍ୱ । ଏଥିପାଇଁ ପ୍ରତ୍ୟେକ ଆମେ ଗୋଟାଏ ଗୋଟାଏ ଅରଟ ରଖିବାକୁ ବାଧ୍ୟ । ଏହି ଅରଟ ଚକ ଯେତେ ଘୂରିବ, ସ୍ୱରାଜ ଉଦ୍ଧାର ସେତେ ନିକଟରେ ହୋଇଯିବ । ଏହିପରି କୁଆଡ଼େ ତନ୍ତ୍ରବତ ଦେଶରେ ଅଛି ଯେ, ଚରକାରେ ମନ୍ତ୍ରଲେଖି ତାକୁ ବୁଲାଇବାକୁ ହୁଏ; ସେଉଟା ଯେତେ ବୁଲିବ, ଆତ୍ମାଟା ସେତିକି ମୁକ୍ତ ହୋଇଯିବ । ଯାହା ହେଉ କିନ୍ତୁ ଏ ଅରଟଟା ମନୁଷ୍ୟର ଯେତେ ସ୍ୱାଧୀନତା (liberty) ଓ ସ୍ୱେଚ୍ଛାଚାରରେ (free will) ବାଧା ଦେଉଛି । ତାହା ଭୁକ୍ତଭୋଗୀ ମାନବକେ ଜାଣନ୍ତି । ଏ ଅଡ଼ୁଆଟା ନଥିଲେ ଆମେ ଏହି ଦେଶର ଆହୁରି କେତେ ଭଲ କାମ କରି କାଳଟାକୁ ଆହୁରି ପଚାଶ ବର୍ଷ ଆଗକୁ ପେଲିନେଇ ଯାଇପାରିଥାନ୍ତୁ । ଏହି ଅରଟ ଆମ ଛାତି ଉପରେ ଗୋଟାଏ ଓଥରଭଳିଆ ମାଡ଼ିବସି ରହି ଆମକୁ କିଛି କରିବାକୁ ଦେଲାନାହିଁ । ସୂତାକଟାଟା ମାଇକିନିଆ, ଅଳପୁଆ ଆଉ ବୋକାମିର କାମ । ଆମଭଳିଆ ଚଲାଖ ଚତୁର, ବୁଦ୍ଧିମାନ୍ କର୍ମକ୍ଷମ brain workerଙ୍କୁ କଣ ଦିନବାଗି ବସି କେଁ କଟର କରିବା ଶୋଭାପାଏ ? ଆମ ସମୟର ମୂଲ୍ୟ (value) କେତେ, ଆମ ପରିଶ୍ରମର କିମ୍ମତ (worth) କଣ ! ଶତ୍ରୁରଞ୍ଜନ ସଫା ଖୋଲି କହିଲେ କି, "ନାହିଁ, ଅରଟ କଟାଟାରେ ବାଧ୍ୟ ବାଧ୍ୟକତା (Compulsion) ନାହିଁ, ଯାହାର ଇଚ୍ଛା ସେ ପଛକେ କାଟୁଥାଉ ।" ତାଙ୍କ ମୁହଁରେ ଫୁଲ ଚନ୍ଦନ ବରଷୁ । ସେ ପହିଲୁ ଗାନ୍ଧୀଙ୍କ କଥା କାଟିଲେ । ସେହିପରି ପୁଅ ନ ହୋଇଥିଲେ ଯିବ କିଏ କରନ୍ତା ! ସେ ଦେଖିଲେ କି, volunteer କର୍ମୀମାନଙ୍କୁ କାମ ନ ଦେଲେ ସେମାନେ ଯେ ବେକାର ହୋଇଗଲେ । ସୁତରାଂ ସେ ହେଲେ—କର୍ମୀ । ତାଙ୍କ ମତରେ 'ଅସହଯୋଗ'ର ମାନେ ନୁହେଁ ସବୁବେଳେ ବାହାରେ ରହିବା—ସେ କହିଲେ କି, ଯେତେବେଳେ ଦରକାର, ଅସହଯୋଗ କର; ପୁଣି ବେଳକାଳ ବୁଝି ସହଯୋଗ ବି କର । ମେଲି ହୁକୁମ ତାଙ୍କର ଆସିଲା, "ପଶ କାଉନ୍‌ସିଲରେ, ପଶ ମ୍ୟୁନିସିପାଲଟିରେ, ପଶ ଜିଲ୍ଲାବୋର୍ଡରେ —ଯେଉଁଠି ଯେଉଁ ସୁବିଧା ପାଅ କିଛି ଛାଡ଼ନାହିଁ । ସବୁ ଅସହଯୋଗୀ ଦଳରେ ଛାଇ ପକାଅ । ମାନମାରି ରହିଲେ ଆଉ ଚଳିବନାହିଁ, ନିଶୁଆ ତେଲିପରି ଚାଲି ପେଲ ।" ମେଘ ବରଷିଲେ ଧାନ ବିଲରେ ଯେପରି ଛତୁପରି ବାଢ଼ଙ୍ଗା ଉଠେ, କୁଆଡ଼େ ବରଷଯାକ ଶୋଇଥିଲେ ଭାଇମାନେ, ଆଷାଢ଼ ମାସ ପଡ଼ୁ ଗହିଡ଼ାରେ ବେଙ୍ଗପହଣା ପରି ଆଶ୍ରମରେ ପୁଣି ଆସି ସାଲୁ ସାଲୁ ହୋଇଗଲେ । ଲାଗିଲା ଉଦ୍ୟମ ଚାରିଆଡ଼େ ଭୋଟ—ଭୋଟ ଭୋଟ । ଏହି ଭୋଟଗୋଳ ପୁଣି ଆଶ୍ରମରେ ନୂତନ ପ୍ରାଣ ସଞ୍ଚାର କରିଦେଲା । ଚିଠିପତ୍ର, ଯିବା ଆସିବା, ଦୌଡ଼ାଦୌଡ଼ି ହୈ ହୈ—ଟୈ ଟୈ କାଣ୍ଡ ଲାଗିଲା । ଏଥର ଆଉ ଚାନ୍ଦା ଆଦାୟ ନାହିଁ—କାରଣ ପ୍ରାର୍ଥୀମାନେ ଖରଚ ଯୋଗାଉଥିଲେ—ଉଦ୍ଦେଶ୍ୟ କେବଳ ଲୋକ ଶିକ୍ଷା । ଲୋକଶିକ୍ଷା ବୋଇଲେ କେବଳ ଅପର ପକ୍ଷର କୁତ୍ସାରଟନା ଆଉ ନିର୍ବାହ ଭୋଟଦାତାଙ୍କୁ ଭୁଲାଇବା । ଗାନ୍ଧିଙ୍କୁ ଛାଡ଼ିଥିଲୁ ସତ୍ୟ, ମାତ୍ର ତାଙ୍କ ନାଁ'ଟାକୁ ଛାଡ଼ିଲୁ ନାହିଁ ଏତେବେଳେ; କାରଣ ତାଙ୍କ ନାଁ'ଟା ଛଡ଼ା ଲୋକେ ରାଜନୀତି ଆଉ କିଛି ବୁଝନ୍ତି ନାହିଁ । ଗାନ୍ଧିଙ୍କ ଆଜ୍ଞାପତ୍ର ଆସିଛି, ଅମୁକ ରଙ୍ଗର ବାକ୍‌ସରେ ଭୋଟ ଦେବ । ବାସ୍—ଏତିକରେ ଯଥେଷ୍ଟ । ଭୋଟପ୍ରାର୍ଥୀ candidateଙ୍କ ନାମ କେହି ଜାଣନ୍ତି ନାହିଁ । ଅଥଚ ତାଙ୍କ ବାକ୍‌ସରେ ଦଳଦଳ ଲୋକେ ଭୋଟ ଦେଇଗଲେ କେବଳ ଗାନ୍ଧି ବାକ୍‌ସ ବୋଲି । ଆମର ସବୁଠାରେ ଜୟ ହେଲା । ଯେଉଁଠି ଯେଉଁଠି ଚେଷ୍ଟା କରା ହୋଇଥିଲା, ସେଠି ଆମ ଲୋକ ବାଡ଼ଲାଟ ସଭା, ଛୋଟଲାଟ ସଭାକୁ ଗଲେ, ସବୁ ଜାଗାର ମ୍ୟୁନିସିପାଲଟିରେ ଆମ ଲୋକେ ପଶିଲେ, ସମସ୍ତ ଜିଲ୍ଲାବୋର୍ଡ ଆମ ଦଖଲରେ ଆସିଲା । ବୁଲା, ଭଟକା, ମାଗିଖିଆ, ଅନାମିକା କେତେରକମର ଲୋକେ ଆସି ଖଦଡ଼ ବାନା ବଳରେ ବଡ଼ ବଡ଼ ନାଁ' ମାରିନେଲେ । କିନ୍ତୁ ମୋ କର୍ମ ଏପରି ଫଟା ଯେ, ମୋ ନାଁ'ଟା କୁଆଡ଼େ ପତରରେ ପଡ଼ିଲା ନାହିଁ । ମୁଁ ସିନା ଏତେଦିନ ଘାଟି ଜଗି ବସିଥିଲାକୁ ଆଜି ତୁମେ ଆସି ପଶିଲ; ଦଳ ଛଡ଼ାଇଲା କିଏ, ଆଉ କଉ ଖାଇଲା ପୁଣି କିଏ ! ମୋ ଭାଗ ତୁଚ୍ଛଟାରେ ଆଶ୍ରମ ଜଗିବା । ଏହି ଅଗାମୁଣ୍ଡାଙ୍କ ଭିତରୁ କେତେ ସବୁ ଚେୟାରମେନ୍, ଭାଇସ୍ ଚେୟାରମେନ୍, କେତେ ପ୍ରକାର କଣ ହୋଇଗଲେ, ମୋତେ ସମସ୍ତେ କହିଲେ କି, ତୁମେ ଏଥିରେ ପଶିଲେ ଆଶ୍ରମ ଖରାପ ହୋଇଯିବ, ସ୍ୱରାଜ ଦଳ କାର୍ଯ୍ୟ ଖରାପ ହୋଇଯିବ । ମୁଁ ଅତି ସହଜଆ ସ୍ୱଭାବର ଲୋକ ବୋଲି ମୋତେ ଭଣ୍ଡାଇ ଦେଇ ସବୁ ମାଲମାନ fishes and loaves ମାରି ନେଇଗଲେ, ମୁଁ କଲକା ହୋଇ ଚାହିଁ ରହିଲି । ମୁଁ ଖାଲି ମେମ୍ବର ପଦଟିଏ ପାଇ ଖୋସ୍ !

ଏ କାମ ବା ପଦଯାକ ସବୁ ଅନାହାରୀ । କିନ୍ତୁ ଜୀବ ଥିଲେ ତ ପେଟ ଅଛି । ଯେ ସିନା ଆହାର ଭୁଞ୍ଜୁଛି, ତା ଶକ୍ଷରେ ଅନାହାରୀ—ଯେ ନିପଟ ନିରାହାର ଥିଲା, ତାର କ'ଣ ? କାଉନ୍‌ସିଲ୍‌କୁ ଯେଉଁମାନେ ଗଲେ, ସେ ପରକ୍ଷଣରେ ଅମ ସମ୍ପର୍କ ଛାଡ଼

ଦେଲେ. ମ୍ୟୁନିସିପାଲ୍‌ଟିମାନଙ୍କରେ ଆମ ଦଳୀଆଙ୍କର ଯେତେ ବଳ ହେଲ ନାହିଁ, କିନ୍ତୁ ପୂରା ମାଲିକ ହୋଇଗଲୁଁ ଆମେ ଜିଲ୍ଲାବୋର୍ଡମାନଙ୍କରେ । ଜିଲ୍ଲାଯାକର ସଡ଼କ, ଫେରି, ପୋଲ, ଡାକବଙ୍ଗଳା, ପୋଖରୀ ଖୋଳା, ଡାକ୍ତରଖାନା, ଇସ୍କୁଲ, କାଞ୍ଜିଆହତା, ସବୁ ଆମ ହାତରେ ରହିଲା । ଜିଲ୍ଲାଯାକର ମାଷ୍ଟର, ଡାକ୍ତର, ଓଭରସିଅର, ସବୁ ଆମର ଚାକର । ଆଉ ସେକେଟାରୀ, କାଣ୍ଟ୍ରାକ୍ଟର ପ୍ରଭୃତି ଆମର ତାବେଦାର । ନଷ୍ଟ ପସାର ଉଠିଲି, ମାନ ଖାତିର ପୁଣି ବଢ଼ିଲା । ଏତେଗୁଡ଼ାଏ କ୍ଷମତା, ଏତେଗୁଡ଼ାଏ ପଇସା ଆମ ହାତରେ ରହିଲାଠାରୁଁ କେତେ କେତେ ଲୋକ ଆମର ଅନୁସରଣ କଲେ । ମୁଠାଏ ମୁଠାଏ ଖାଇବାପାଇଁ ଆମେ ଯେଉଁ ବ୍ୟସ୍ତ ଥିଲୁଁ ଆଗେ, ଏବେ ମଫସଲରେ ଛ ତଅଣ, ନ ଭଜାର କୁଣିଆ । ଆପଣା ବାହାଦୁରିରେ ଯେ ଯାହା କରିପାରିଲା, ସେ ତାର ନିଜର, ଅତଏବ ବଡ଼ ବଡ଼ଙ୍କ କଥା ମୁଁ କହିପାରିବି ନାହିଁ । ଆପଣା ଅଙ୍ଗେ ଯେତେକ ନିଭେଇଛି, ସେତିକ କହୁଛି । ମୋ ଭଳିଆ ଲୋକଙ୍କର ପ୍ରଧାନ ଓ ଧରାବନ୍ଧା ଆୟ, ଗସ୍ତ ଖର୍ଚ୍ଚ । ଯେ ଯାହାର ଇଲାକା ମଧ୍ୟରେ ଯେତେ ଗସ୍ତ (tour) କରିପାରିବ, ତାର ସେତିକ ଲାଭ । ଆଉ ଯେଉଁ ଭେଟିଟାଏ ଘୁଷିଟାଏ ଅକସ୍ମାତ୍ ପଡ଼େ, ତା କଥା ଛାଡ଼ । ଆମକୁ ଏକା ଚାନ୍ଦା ଆଦାୟ କରିବାର ଗୋଟାଏ ନୂଆ ବାଟ ମିଳିଗଲା । ଏଥର ଆଉ ଗରିବ ସାଧାରଣଙ୍କଠାରୁ ଚାଉଳ ସେରେ କିବା ପଇସା ଚାରିଅଣା ଆମ ନଜରରେ ପଡ଼େନାହିଁ । ଆମେ ଏଣିକି ଧରୁଁ ବଡ଼ବଡ଼ଙ୍କୁ—ଯେଉଁଠି ହାତ ପକାଇଲେ ମୁଠା ପୂରିବ । ଚୁନା ଗ୍ରେପରଙ୍କୁ ପଚାରେ କିଏ ! ଆଗେ ଧାକୁଲି ବାକୁଲି କରି ମାଗୁଁ —ଯେ ଆମ ଗରଜ ମେଣ୍ଟାଇଲା, ସେ ସୁନାପୁଅ; ଆଉ ଯେ ଫାଙ୍କିଲା, ଲାଗିଲୁଁ ଆମେ ତା' ପଛରେ । ଯେପରି ହେଉ ତାକୁ ବିପଦରେ ପକାଇ ଦେଲୁଁ । ଆମର ଏଇକ୍ଷଣି ଅନେକ କ୍ଷମତା, ଖବରକାଗଜମାନ ଆମ ହାତରେ, ହାକମମାନେ ଆମକୁ ଡରନ୍ତି — ଆହୁରି କେତେ ରକମ କ'ଣ ଅଛି, ସେଗୁଡ଼ିକ ପ୍ରକାଶ କରିବାର ନୁହେଁ ।

ଜଗଦୀଶ୍ୱରଙ୍କ ରାଜ୍ୟରେ କିଛି ତ ସ୍ଥିର ନୁହେ—ତାହାଙ୍କ ରାଜନୀତି ରାଜ୍ୟରେ ସବୁ ଆହୁରି ଅସ୍ଥିର । ଏ କଥାର ପ୍ରମାଣ ନିତି ଦେଖା ପଡ଼ୁଛି, ଆଉ ଉଦାହରଣ ଦେବା ପ୍ରୟୋଜନ ନାହିଁ । ସ୍ୱୟଂ ଗାନ୍ଧିଙ୍କ କଥାତ ଆଖି ଆଗରେ । କାହିଁକି କେଜାଣି, ଆମର ଭାଗ୍ୟଚକ୍ର ପୁଣି ଥରେ ଘୁରିଲାପରି ଜଣାଗଲା । ଦୁଃଖର ସମୟ ଥରେ ଆମେ ଭୋଗିଛୁଁ - ଏଥର ପୁଣି କାଳେ କ'ଣ ହେବ ବୋଲି ଆଗରୁଁ ସାବଧାନ ହେବାକୁ ପଡ଼ିଲା । ଆମେ ଲୋକଙ୍କୁ ଅନେକ ଆଶା ଭରସା ଦେଇଥିଲୁଁ । ଭାବିଥିଲୁଁ, ତିନି ବରଷ ଅଛି, ଏହା ଭିତରେ କେଉଁଠିକା ପାଣି କେଉଁଠିକି ଯାଉଛି ଦେଖାଯାଉ । କଥାରେ ଅଛି—'ଢୋକେ ପି, ଦଣ୍ଡେ ଜୀ' ।' କିନ୍ତୁ ଓଡ଼ିଆ ଲୋକଗୁଡ଼ାକ ଓଲୁ ହେଲେ ମଧ୍ୟ ମଣିଷ ତ । ମଣିଷକୁ ସବୁଦିନେ କି ଭଣ୍ଡି ରଖିହୁଏ ? ବେଶ୍ ଦେଖିପାରିଲୁଁ, ଆମ ପ୍ରତି ଲୋକଙ୍କ ମନରେ ଅବିଶ୍ୱାସ, ଅନାସ୍ଥା ଆସ୍ତାକରି ପାଚିଲା ଉଠିଲିଣି । ଆଗନ୍ତା ଜିଲ୍ଲାବୋର୍ଡ ନିର୍ବାଚନରେ ଆମର ବେଶି ରକମ ଅସୁବିଧା ହେଲାପରି ଦିଶୁ ନାହିଁ । ଆଗରୁଁ ସାବଧାନ ହେବା ଦରକାର ସେଥିସକାଶେ । ତାହାଙ୍କ କାଉନ୍‌ସିଲ ବର୍ଜ୍ଜନ ବେଳବି ନିକଟ ହୋଇଗଲା । ଉଠିପଡ଼ି ନ ଲାଗିଲେ ତ ଆଉ ଚଳିବ ନାହିଁ । ପୁରୁଣା କଥାରେ ଆଉ ଲୋକେ ଭୁଲି ନାହାନ୍ତି; କିଛି ରକମ ନୂଆ ଉପାୟ ଅନୁସରିବାକୁ ହେବ । ଏହିସବୁ କଥା ଭାବି ଘନ ଘନ ସମ୍ମିଳନୀମାନ କରିବାକୁ ଲାଗିଲୁଁ । ଜିଲ୍ଲା ସମ୍ମିଳନୀ, ସବ୍‌ଡିଭିଜନ ସମ୍ମିଳନୀ, ଥାନା ସମ୍ମିଳନୀ, ଏହିପରି ଯେତେ ହୋଇପାରେ, ସେତେ ମଙ୍ଗଳ । ସେହି ସମସ୍ତ ଉପାୟରେ ଗୋଟାଏ ଚମକ ଲଗାଇଦେଇ ଲୋକଙ୍କ ଆଖିରେ ଧୂଆଁବାଣ ମାରିଦେବାକୁ ହେବ । ଅତଏବ ସେହି କାମ ଆମର ଲାଗିଲା । ଫଳ କ'ଣ ହେବ ବୋଲେ କର୍ମକ୍ଷେତ୍ରରେ ଜଣାପଡ଼ିବ । ମାତ୍ର ବର୍ତ୍ତମାନତ ଖୁବ୍ ଆଶାଜନକ । ତଥାପି ଅନ୍ତ ଧୁଡ଼ୁଧୁଡ଼ୁ ଯେ ନ ହଉଛି, ତାହା ନୁହେଁ । କାରଣ ଯଦି ଫଳ ନ ହୁଏ, ତେବେ ଆମର ଛୁଡ଼ାହେବାର ସ୍ଥାନ କେଉଁଠି ରହିବ ? ଏତକ ଛଡ଼ା ସମାଜରେ ଆମର ସ୍ଥାନ କେଉଁଠି ଅଛି ? ଯାହାଙ୍କର କିଛି ଅଛି, ସେମାନେତ ଖସିଯିବେ; ଆଉ ଆମେ ମୋଫତଖୋରଗୁଡ଼ାକ ଯିବୁଁ କୁଆଡ଼େ ? ଆମର ବିପକ୍ଷଦଳ କ୍ରମେ ବଢ଼ୁଛି ଓ ବଳ ସଂଗ୍ରହ କରୁଛି ।

ଭାଗ୍ୟକୁ ତାଙ୍କ ହାତରେ କୌଣସି ଖବରକାଗଜ ନାହିଁ । କିବା ସେପରି କିଛି କାର୍ଯ୍ୟକାରୀ ଦଳଗତ ଚେଷ୍ଟା ନାହିଁ । ନୋହିଲେ ଆମକୁ କେଉଁଦିନଠୁ ଫତୁର ବନାଇ ଦେଇ ସାରନ୍ତେଣି ।

ଆମ ଗାନ୍ଧୀବାଲାଙ୍କର Programme ଥିଲା ପ୍ରଧାନତଃ ତିନୋଟି । ୧—ଖଦଡ଼ ପ୍ରଚାର; ୨ — ଅସ୍ପୃଶ୍ୟତା ନିବାରଣ; ୩—ହିନ୍ଦୁ-ମୁସଲମାନ ମିଳନ । ଗାନ୍ଧୀଜୀ କହିଥିଲେ କି, ଏହି ତିନୋଟି ହୋଇଗଲେ, ତତ୍‌କ୍ଷଣାତ୍ ସ୍ୱରାଜ ମିଳିବ । ହିନ୍ଦୁ-ମୁସଲମାନଙ୍କ ଭିତରେ ଯେପରି ବହୁକାଳରୁ ଅମେଳ ଥିଲା, ସେହିପରି ବହୁକାଳରୁ ମେଳ ବି ଥିଲା । ବିଶେଷତଃ ଆମ ଓଡ଼ିଶାରେ ଅମେଳ ବୋଲି ଗୋଟାଏ ଜିନିଷ କେବେ ସେପରି ନ ଥିଲା । କିନ୍ତୁ ଆମେତ ଗାନ୍ଧୀଙ୍କ କଥା ଅମାନ୍ୟ କରିନପାରୁଁ । ଆମେ କଥାରେ, ବାର୍ତ୍ତାରେ, ଖବରକାଗଜରେ, ସଭାସମିତିରେ ସବୁଆଡ଼େ କହିହେଲୁଁ ଏହି ମିଳନ କଥା । ଯେଉଁ ଅଶିକ୍ଷିତ ଜନସାଧାରଣଙ୍କ ମନରେ ଏହି ଅମେଳର ଧାରଣା ମାତ୍ର ନ ଥିଲା, ତାଙ୍କୁ ସବୁବେଳେ 'ମିଳ, ମିଳ' ବୋଲି କହି କହି ଆହୁରି ଅମେଳଭାବଟା ବଢ଼ିଲା ଆମରି ଦ୍ୱାରା ।

ଅମେ କଳୁ ଉପରେ ଦେଖିବାକୁ ଖୁବ୍ ମେଳ କରାଇଦେଲୁ । ସେ ମେଳଟା କପଟ ହେଲା-ନା, ଦୁହିଁଙ୍କୁ ଆଗେ ଅଲଗା କରାଇଦେଇ ଉପରେ ଗୋଟାଏ କନା ଢାଙ୍କୁଣି ଦେଲୁ । "ତୁମର କିଛି ମେଳ ନାହିଁ, ତୁମକୁ ମିଳେଇଦେଉଛୁ" କହିବାଦ୍ୱାରା ପ୍ରକୃତରେ ତାଙ୍କ ଭିତରେ ଭିତରେ ଏତେ ଅମେଳ ଅସିଯିବ ବୋଲି ନା ଜାଣିଥିଲେ ଗାନ୍ଧି, ନା ଅମେ । କିନ୍ତୁ ବୋଧହୁଏ, ଗାନ୍ଧି ଜାଣିଥିଲେ । କାରଣ, ତାଙ୍କ Programme ଭିତରେ ରାଜନୈତିକ କ୍ଷମତାଟା ରଖିନଥିଲେ । ଅମ ସ୍ୱରାଜ ଦଳବାଲା ସେଇଟା ଗାନ୍ଧିଙ୍କର ଭୁଲ ବୋଲି ସେଥିରେ ଯୋଖିଲୁ, ଏଣେ ମୂଳରୁ ଘୁଣ ଖାଇଗଲା । ଏବେ ଯେତେ କଳିଗୋଳ ଲାଗିଛି, ସବୁତ Political power ସକାଶେ ବା ଗାଦି ସକାଶେ । ଗାନ୍ଧି ଏସବୁ ସେଥିପାଇଁ ତ ଛାଡ଼ିଥିଲେ । ସ୍ୱରାଜବାଲା ଯଦି ଏ ବାଟରେ ମନ ବଳାଇ ନଥାନ୍ତେ, ତେବେ ଅଜି ଏତେ ନିର୍ଦ୍ଦୋଷ ପ୍ରାଣୀ ହାଣ ଖାଇଥାନ୍ତେ କାହିଁକି ? ଯଦି ସ୍ୱରାଜବାଲା ଏକଥାଟା କଲେ ତେବେ ଗାନ୍ଧିଙ୍କ କଥା ଏକାବେଳେକେ କାଟି ଦେଇଥାଆନ୍ତେ ଭଲା ? ଏଣେ ତାହା କଲାବେଳକୁ ନିଜର ଥିଲା କଣ କି ? ଛିଡ଼ା ହୋଇଥାନ୍ତେ କେଉଁଠି ?

ଯାହା ହେଉ, ଫଳ ଯାହା ହେବାର ତାହା ତ ହେଲା । କିନ୍ତୁ ଅମକୁ ବର୍ଷା ସାଙ୍ଗେ ସାଙ୍ଗେ ଛତା ଧରିବାକୁ ପଡ଼ିଲା ଏକା । ଅମେ ସବୁ କରିପାରୁଁ । ଯେତେବେଳେ ଯୁଆଡ଼କୁ ସୁବିଧା ଦେଖିବୁ, ବୋଉଫାଙ୍କି ପରି ସେହି ଆଡ଼କୁ ଅଉଜି ଯିବୁ । ଦେଖିଲୁ, ଅଉ Bengal pactରେ କାମ ହେବ ନାହିଁ, ମୁସଲମାନଙ୍କୁ ମୁହଁ ଦେବା ବା ଖୋସାମଦ କରିବାରେ ଲୋକେ ଚିଡ଼ିବେ । ଅଉ ମଧ୍ୟ ଦେଖି ପାରିଲୁ ଯେ, ଏହି ହିନ୍ଦୁ-ମୁସଲମାନ କଳି ଫଳରେ ସ୍ୱରାଜ-ଦଳ କୁଆଡ଼େ ଉଭେଇ ଯିବ ବାନେ । ଦେଖି ଦେଖି ଆଗରୁଁ ବାଟ କାଟିବାକୁ ବସିଲୁ । ତଥାପି ଏ ଉଙ୍ଗାରୁ ଗୋଡ଼ କାଢ଼ିନାହୁଁ ଏଯାକେ । ଯେଉଁଆଡ଼େ ସୁବିଧା ଦେଖିବୁ, ସେହିଆଡ଼କୁ ଗଳିଯିବୁ, ଏହି ମତଲବ । ସ୍ୱରାଜ କାମ ବି ହେଉଛି, ଅଉ ହିନ୍ଦୁ ସଙ୍ଗଠନ ବି ଚାଲିଛି । ଭିତରେ ବୁଝିବାକୁ ଗଲେ ଦୁଇମତ । ମୂଳରେ ପୃଥକ୍ ଉପରେ ଉପରେ ଅବଶ୍ୟ କଥାଦ୍ୱାରା ପାର୍ଥକ୍ୟ ନାହିଁ ବୋଲି କୁହାଯାଇ ପାରେ ଯୁକ୍ତି ଛଳରେ । "ଅରେ ଗୃହ, ଅପଣା ବଞ୍ଚା"-ନୀତି ଅମର ସ୍ୱରାଜଦଳ ରହିଲା ତ ଭଲ, ନୋହିଲେ ହିନ୍ଦୁ ସଭାଟା ଯଦି ବଳବାନ୍ ହୋଇଉଠେ, ଅମେ ସେଠିକି ଖସିଯିବୁ । ଯିମିତି ହେଲେ ଅମର ଦେଶସେବା, ଜାତିସେବା ଓ ଅତ୍ମସେବା କରିବା ଦରକାର । ନିଜର ମାନ, ଇଜ୍ଜତ, କ୍ଷମତା, ପଇସା ଯେଉଁ ଉପାୟରେ ବଜାୟ ରହିବ, ତାହା ତ କରିବାକୁ ପଡ଼ିବ । ଏଥିରେ ଅଉ ଗୋଟାଏ ମସ୍ତ ସୁବିଧା ଅଛି । ଜିଲ୍ଲାବୋର୍ଡ଼ ଓ କାଉନସିଲ ଭୋଟ ବେଳ ଅସିଲାଣି । ଭୋଟରଗୁଡ଼ାକ ମେଣ୍ଢା ପଲ ପରି କିଛି ବୁଝନ୍ତି ନାହିଁ, ତାଙ୍କ ମଧ୍ୟରେ ଠିକ୍ ଏ ଫୁର୍ତ୍ତି ଦେଖାଇ ପ୍ରଭାବଟି ଜମାଇ ପାରିଲେ, ଅମେ ଯେଉଁଆଡ଼କୁ ମଙ୍ଗାଇବୁ, ଅଖି ବୁଜି ତାହା ସେ କରିଯିବେ ।

କାଉନ୍‌ସିଲ୍ ସକାଶେ ଅମ ସ୍ୱରାଜ ପକ୍ଷରୁ Candidate ବଛା ହେବା ବେଳରେ ବଡ଼ ହରକତରେ ପଡ଼ିବାକୁ ହେଲା । ଜଣକ ନାଁ କହିଲେ ଅଉ ଜଣକ ମୁହଁ କରେ ପେଣ୍ଡ ପରି । କ'ଣ କରାଯିବ ! ଏଇଥିପାଇଁ ଅନେକ ଥର କଟାକଟି ହେଲା ଓ ବରାବର ଲାଗିଛି ଓ ଲାଗିଥିବ ଶେଷଯାକେ । କେହି ତ କାହାକୁ ଊଣା ନୁହନ୍ତି, ଯେ ଯାହା ହାତରେ ଚଉଦ ପା । ଏଥିସକାଶେ ବୋଧେ ଅଡୁଆ । 'ନେତା' ମାନେ ସବୁ 'ଦେବତା'ଙ୍କ ମନ ରଖିବାକୁ ଯାଇ ବଡ଼ ବିପଦରେ ପଡ଼ିଛନ୍ତି । ଫଳ ଏପରି ହେଲାଣି ଯେ, କେହି କାହାରିକୁ ମାନିବାକୁ ନାହିଁ । ପରସ୍ପର ଭିତରେ ନିନ୍ଦା, କୁତ୍ସା, ଥଟା, ତାମସା ଚାଲିଲାଣି । କଟକିଆ ବାଲେଶ୍ୱରିଆଂକ ଶିରୀ ଦେଖି ନାହାନ୍ତି, ପୁରିଆ କଟିକିଆଂକ ଶିରୀ ଦେଖୁ ନାହାନ୍ତି । ତାହାଛଡ଼ା ବାଲେଶ୍ୱରରେ ବା କଟକରେ ବା ପୁରୀରେ ସମସ୍ତେ ଅପେ ଆପେ ନେତା ବୋଲି ଆପଣାକୁ ମଣୁଛନ୍ତି । ଏହି ହେଲା ଘର ଭିତରର କଥା, କିନ୍ତୁ ବାହାରକୁ ଏ ସବୁ ଜଣାଇବାକୁ ଦିଆଯାଉ ନାହିଁ । ବାହାରେ ଅନେକ ଶତ୍ରୁ ଓ ବଳଅର ଶତ୍ରୁ ମଧ୍ୟ । ବାହାରବାଲାଙ୍କୁ ଜିଣିବା ସକାଶେ ଗୋଟିଏ ଫନ୍ଦି ହୋଇଛି । ରାଜନୀତିର ଖେଳ ବଡ଼ ବିଷମ । ଦେଖିନେଲୁ ଆଗେ ବାହାର ଲୋକଙ୍କ ମଧ୍ୟରୁ ଯେଉଁମାନେ ଅମ ସାଙ୍ଗରେ ଲଢ଼ିବେ, ସେହିମାନଙ୍କୁ ବାଛି ବାଛି ଇମିତି ଘୁରୁଘୁରିଆ ପେଞ୍ଚରେ ପକାଇବାକୁ କରି ଦେଉଛୁ ଯେ, ସେ ଅଉ ଲଢ଼ିବାକୁ ବାହାରିବେ ନାହିଁ କିମ୍ବା କେହି ଅପଣାର କରି ବାହାରିଲା-ବେଳକୁ ଘାଉଲା ହୋଇ, ଦୁର୍ବଳ ହୋଇ ବାହାରିଥିବେ । ଏହି ଉଦ୍ଦେଶ୍ୟରେ ଜଣକୁ ଜଣ ଶିଖେଇ ବୁଝେଇ, ଅଶା-ଅଶ୍ୱାସନା ଦେଇ ଅମ ଭିତରକୁ ଟାଣି ନେଉଛୁ, ଅଉ ବାଗରେ ପଡ଼ିଗଲେ ତେଣିକି ଇମିତି ଘାଏ ମାରୁଛୁ ଯେ, ତାଙ୍କ ଗୋଡ଼ ହାତ ଭାଙ୍ଗି ଯାଉଛି ! ସେ ଅପ୍ରତିଭ, ଅପଦସ୍ଥ, ଅପମାନିତ ହୋଇ, ହତାଶାରେ ମେରୁଦଣ୍ଡଭଂଗା ହୋଇ discredited, demoralised ରହିଯିବେ ଯେପରି । ଯେତେ ପାଠ ଯେ ପଢ଼ିଥାଆନ୍ତୁ, ଯେତେ ଅଭିଜ୍ଞତା ଲାଭ କରିଥାନ୍ତୁ, ଯେତେ ବୟସ୍ଥ ହୋଇଥାନ୍ତୁ, ରାଜନୀତିରେ କୁଟାସ୍ତ୍ର ଚଳାଇବାରେ ଅମ ସମକକ୍ଷ ଯେ କେହି ନୁହେଁ, ଏ କଥା ଅମେ ଗର୍ବ କରି କହିପାରୁଁ । ଓଡ଼ିଶାର ଖବରକାଗଜ ଯାକ ଅମର ହାତରେ । ଅମ ବିପକ୍ଷରେ କେହି କିଛି ଲେଖିଲେ ତାହା ଛପା ହେବ କେଉଁଠି ? ଏହିପରି ଅନେକ କୌଶଳରେ ଦେଶଟାକୁ

ଅମେ ହାତ ପେଣ୍ଟରେ ରଖିଛୁଁ । ଲୋକଙ୍କୁ ଶିଖେଇବା, ବୁଝାଇବାରେ ଆମେ ଧୁରନ୍ଧର । ଆମ ବିପକ୍ଷରେ ଯେ ଛିଡ଼ା ହେବ, ତାକୁ ଲୋକଙ୍କ ଆଗରେ ସାନ କରିଦେବା ଆମ ପକ୍ଷରେ ଅତି ସହଜ । ଆମର ଖୁବ୍ ଆଶା ଅଛି, ଏହି ଓଡ଼ିଆ ଜାତି, ଯାହାଙ୍କୁ ଅମେ ଖୁବ୍ ଚିହ୍ନିଛୁଁ, ଏମାନେ ବାସ୍ତବିକ୍ ମେଣ୍ଢା ଭଳି । ଆମେ ଯେଉଁ ବାଟରେ ଚଳାଇବୁଁ, ସେହି ବାଟରେ ଗୁଡ଼ୁଳିଯିବେ । ଛଳେ, ବଳେ, କୌଶଳେ ଭୋଟଗୁଡ଼ାକ ଥରେ ମାରିନେଇ ପାରିଲେ ଆମର ପାଉଟି ସରିଲା । ଆଉ ସେ କିଏ, ଅମେ ବା କିଏ ?

କଥା କହିବାକୁ ବସିଲେ ତ ସରେ ନାହିଁ, ବିଶେଷତଃ ଆମର—କାରଣ, ଅମେ ହେଲୁଁ ଅସହଯୋଗୀ । କାମ କରିବାରେ ସିନା ଆମର ଅସହଯୋଗ, ମାତ୍ର କଥା କହିବାରେ ଆମଠୁଁ ବଳି ପଡ଼ୁ କିଏ ? କଥା କହିବାଟା ଆମର ହେଲା ବେଉସା—କଥା ବିକିବା ଜୀବିକା । "କୁଣ୍ଡାଇ ଜାଣିଲେ ମଥା ସୁନ୍ଦର, ସୁଆଁରି ଜାଣିଲେ କଥା ସୁନ୍ଦର"—ଏ ଦର୍ଶନଟି ଯାକରେ ଆମେ ସିଦ୍ଧିଲାଭ କରିଛୁଁ । ମଣିଷର ମନ ଭୁଲାଇବା ଯେତେବେଳେ ଆମର ପ୍ରଧାନ ଲକ୍ଷ୍ୟ, ଆମେ କଥା କହିବାର ବାଗଟା ଭଲ କରି ଅଭ୍ୟାସ କରୁଁ । ଯେ ଯେତେ ଭଲ କଥା କହିପାରେ, ସେ ସେତିକି ବଡ଼ ଅସହଯୋଗୀ । ଏହି ବିଦ୍ୟାଟା ଗୋଟାଏ କଳା ହିସାବରେ ଆମକୁ ଶିକ୍ଷା କରିବାକୁ ପଡ଼େ । ଅବଶ୍ୟ ଜଣେ ଜଣେ ଅଛନ୍ତି, ଯେଉଁମାନଙ୍କର ଏ କଳାଟା ଜନ୍ମଗତ (instinctive) । ସେମାନେ କଥା କହୁଁ କହୁଁ ଘଡ଼ି ଘଡ଼ିକେ କାନ୍ଦି ପାରନ୍ତି, ହସି ପାରନ୍ତି, ବୋବାଳି ପାରନ୍ତି, ହାତ, ମୁହଁ, ନାକ, ଦାଢ଼ି ଅତି ସୂକ୍ଷ୍ମ ଭାବରେ ଅବଲମ୍ବି କରି ଲୋକ ଭୁଲାଇ ପାରନ୍ତି । ବାସ୍ତବିକ ଏଇଟା ଗୋଟାଏ ସୁକୁମାର କଳା (fine art) । ଏଥିରେ ଯେମାନେ ବେଶି ପାରଦର୍ଶୀ ସେମାନେ ନେତା (leader) । ଭିତରେ ସାର ପେଞ୍ଚ (complexity), ଆଉ ଉପରକୁ ସାରଲ୍ୟ (simplicity) ନ ଥିଲେ ପୁଣି ନେତା କିପରି ? ଏହି ପଦାର୍ଥର ଭଲ ନାମ diplomacy— ଯେଉଁଟା କି 'ନେତା' ହେବାର ପ୍ରଧାନ ଗୁଣ । ଅତି ବୋକା, ସିଧାସରଳ ଲୋକ, ଯାହାକୁ ଦେଖିବେ—ପିଲା ଭଳିଆ ସରଳ ତରଳ, ତାଙ୍କୁ ହିଁ ଜାଣିବେ 'ନେତା' ଏହିପରି ଜଣେ ନେତା ହେବା ପାଇଁ ମୋର ଭାରି ମନ (ambition) । ସେଥିସକାଶେ ଏହି ଭାବଟା ମୁଁ ଅନେକ ଦିନରୁ ସାଧନ (culture) କରୁଛି । ଦିନେ ଯେ ଗୋଟିଏ leader ହେବି, ଏଥିରେ ମୋର ସନ୍ଦେହ ନାହିଁ; କିନ୍ତୁ ସେତେଦିନ ଯାଏ ବଞ୍ଚି ରହିଲେ ହୁଏ—ଆଉ ଏ କାରବାରଟା ବଞ୍ଚାଇ ରଖି ପାରିଲେ ହୁଏ ।

ଅସହଯୋଗ ଆନ୍ଦୋଳନ ସରି ଯାଇପାରେ, ହିନ୍ଦୁ ମୁସଲମାନ ବିଭୀଷିକା ଥଣ୍ଡା ହୋଇପାରେ, କିନ୍ତୁ ମହାତ୍ମାଜୀ ଯେଉଁ ବନ୍ଧନ ପୋତି ଦେଇଛନ୍ତି, ତାହା ତ ଆଉ ମରିବ ନାହିଁ—ଗୋଟାଏ କିଛି ରକମର 'ହୁଜୁଗ୍' ଚିର କାଳ ନିଶ୍ଚୟ ରହିବ । ଏମିତି ନ ହେଲେ ସରଗରମ କରି ରଖିବାକୁ ହେବ । ନୋହିଲେ ଆମର ଆଉ ପ୍ରୟୋଜନ କଣ ? Unemployment ସମସ୍ୟା କଢ଼ିଗଲେ ଯେ ପୁଣି ମହା ବିପଦ !

ଆମର ଗୋଟାଏ ଦଳ—ଗୋଟାଏ ମସ୍ତ ଦଳ, ଦେଶବ୍ୟାପୀ ଦଳ । ବ୍ୟକ୍ତିଗତ ଭାବରେ ଆମର ଅସ୍ତିତ୍ୱ ନାହିଁ, ସବୁ ଦଳଗତ—ନିଜର ବୋଲିଲେ ଆମର କିଛି ନାହିଁ । ଆମେ ଯାହା କରୁଁ, ସବୁ ଦଳ ପାଇଁ ଏବଂ ଦଳ ଯାହା କରେ, ସବୁ ଆମ ପାଇଁ । ଆମେ ଦଳର ଏବଂ ଦଳ ଆମର । ଅଧିକ ପରିଷ୍କାର କରି କହିବାକୁ ଗଲେ—ଅମେ ହିଁ ଦଳ, ଆଉ ଦଳ ହିଁ ଆମେ । ଦଳ ଓ ଆମେ indentical । ଆମର ମନ ପ୍ରାଣ, ଧନ, ଐଶ୍ୱର୍ଯ୍ୟ ସମସ୍ତ ଦଳର—ଏପରି କି ଆମର ସ୍ତ୍ରୀ, ପୁଅ, ପରିବାର ସୁଦ୍ଧା ।

ଦଳ ତ ଅନେକ ପ୍ରକାର—ବୋରଝାଣ୍ଟି, ଚିଙ୍ଗୁଡ଼ିଆ, ବିଲତି ପ୍ରଭୃତି । ଆମେ ବି ବହୁ ପ୍ରକାର । ଯେତେବେଳେ ଯେଉଁ ପ୍ରକାର ଦରକାର ହୁଏ, ସେତେବେଳେ ସେହି ପ୍ରକାର । ଯେବେ ଦେଖୁଁ ହାଉଆଟା ଯେଉଁ ଆଡ଼କୁ ବୋହୁଛି, ଆମେ ସେଇ ଆଡ଼କୁ ଆଉଜି ଯାଉଁ । ଏ ସମ୍ବନ୍ଧରେ ଆମେ ବୋରଝାଣ୍ଟି । ଗାନ୍ଧୀଙ୍କ ପ୍ରତାପ ଯେତେବେଳେ ପ୍ରବଳ, ଆମେ ପୁରା ନନ୍‌କୋଅପରେଟର୍; ପୁଣି ଯେତେବେଳେ ଚିତ୍ତରଞ୍ଜନଙ୍କ ଦାଉ ବଢ଼ିଲା, ଆମେ ହୋଇପଡ଼ିଲୁ ସ୍ୱରାଜୀ । ଯେତେବେଳେ ଦେଖିଲୁଁ କି, ମାଲବ୍ୟ ବା ଲାଲାଜୀ ମାଡ଼ି ମାଡ଼ି ଆସୁଛନ୍ତି, ଆମେ ଉଠି ଉଠି ହୋଇ ଆସିଲୁଁ ସ୍ୱାଧୀନ (independent) । ଅବଶ୍ୟ ଠିକ ରହିଥିଲୁଁ ଗୌହାଟି କଂଗ୍ରେସଟାର ଫଇସଲକୁ । କିନ୍ତୁ ସେଥିରେ ପ୍ରତିଦାନୀ ଦଳ (Responsivist) ଦବି ଯିବାରୁ ଅମେ ଝାଡ଼ିଝୁଡ଼ି ହୋଇ ରହିଗଲୁଁ ଯାହାକୁ ତାହା । ଧୂଳି ମାଟି କିଛି ଆମ ଦେହରେ ଲାଗେ ନାହିଁ—ସବୁବେଳେ ସାଫ ସୁତୁରା, ଝାଡ଼ି ଦେଲେ ।

ଏହା ଛଡ଼ା ଆମେ ମଧ୍ୟ ଚିଙ୍ଗୁଡ଼ିଆ ଦଳ । ଚିଙ୍ଗୁଡ଼ିଆ ଦଳ ପାଣି ଭିତରେ ବୁଡ଼ି ରହିଥାଏ । ଆମେ ସେହିପରି ବୁଡ଼ି ବୁଡ଼ି ପୋଖରୀଟାକ ଯାକ ମାଛ ଖାଉଁ । କାହା ବାପର ଗୁରୁ—ଆମ ଭିତର କଥା ବୁଝିବ ! ଆଉ ଏ ଦେଶର ଲୋକେ ତ । ସେମାନଙ୍କୁ ଆମେ ଯେପରି ନଚେଇବୁଁ, ସେମାନେ ସେହିପରି ନାଚିବେ । ବୁଝିବାକୁ ଅବସର କାହିଁ ବା କ୍ଷମତା କାହାର ? ଆମେ ଉପରେ ଥାଇ ହିନ୍ଦୁ ମୁସଲମାନ ପ୍ୟାକ୍ଟ (Hindu-Muslim pact) କରୁଥାଉଁ, ପୁଣି

ଭିତରେ ଶୁଦ୍ଧି ସଂଗଠନଠାରୁ ଆରମ୍ଭ କରି ଦଙ୍ଗା, ହାଙ୍ଗାମ, ଫୌଜଦାରି ସବୁ ଚଳାଉ । ଉପରେ ଗଭର୍ଣ୍ଣମେଣ୍ଟଙ୍କ ସାଙ୍ଗରେ ଘୋର ବିବାଦ କରୁଁ, ପୁଣି ଭିତରେ ବଡ଼ ବଡ଼ ଗଭର୍ଣ୍ଣମେଣ୍ଟ କର୍ମଚାରୀଙ୍କ ସାଙ୍ଗରେ ପରାମର୍ଶ କରି ତାଙ୍କରି ମତରେ କାମ କରୁଁ । ଉପର ଦୋରୁଖି ଯେତେବେଳେ ଆମର ନିଖୁଣ, ଭିତରେ ଦେଖିବା ସହଜ ନୁହେଁ; ଆଉ କଥା କହିବାରେ ଯେତେବେଳେ ଆମେ ନିପୁଣ, ଲୋକଙ୍କୁ ଭୁଲାଇ ରଖିବା ଆମ ପକ୍ଷରେ କଠିନ କଣ ? "ମିଠା କଥାରେ ସତୀ ଭୁଲେ ।"

ତାହା ପରେ, ଆମେ ପୁଣି, 'ବଳିଆ ଦଳ' । ବଳିଆ ଦଳ ଯେଉଁ ଥାନରେ ହୁଏ, ତାର ଆଉ କିଛି ରଖେ ନାହିଁ—ନିଜେ ଦଳକେ ଗୃହଖଣ୍ଡେ ଲେଖାଏଁ ବଢ଼େ ତା ପାଖରେ ଆଉ କାହାରିକୁ ବଢ଼ାଇ ଦିଏ ନାହିଁ । ଆମେ ସେହିପରି ଆପେ ବଢ଼ିବାରେ ଲାଗିଛୁଁ ଓ ଆଉ କେହି ବଢ଼ିବାକୁ ଗଲେ ତାକୁ ଚପାଇ ଦେଉଛୁଁ । ଦେଶର ଯେ ଏଣେ କଣ ହେଉଛି, ତାହା କାହାରିକୁ ଖବର ଅଛି କି ? ସେ ବେଳ ଆସି ନାହିଁ । ଭିତରେ ଭିତରେ ଘୁଣ ଖାଇ ପୋଲ ଫିଟି ଯାଉଛି, ଯେତେବେଳେ ବିଲ୍‌କୁଲ୍ ଭାଙ୍ଗି ପଡ଼ିବ, ସେତେବେଳେ ସମସ୍ତେ ଆଁ କରି ଦେଖିବେ, ଆଉ କହିବେ—"ହା !"

ହଁ, ମୋର କାହାଣୀ ଛାଡ଼ିଗଲା । ତୃତୀୟ ଥରର କାଉନ୍‌ସିଲ ନିର୍ବାଚନ ସମୟ ଗୃହଁ ଗୃହଁ ନିକଟ ହୋଇ ଆସିଲା । ମଣ୍ଟ୍ ଫୋର୍ଡ଼ ପ୍ରଥାରେ ନୂଆ, କାଉନ୍‌ସିଲ ହେଲା ଏଥରକୁ ଲଗାଇ ତିନିଥର । ପ୍ରଥମଥର ନିର୍ବାଚନ ବେଳକୁ ଆମ ଦଳ ସୃଷ୍ଟି ହୋଇ ନ ଥିଲା । ବାନ୍ତ୍ରିକ ପାଣି ମଇଳା ନ ହେଲେ ତ ଦଳ ଜନ୍ମେ ନାହିଁ । ଦ୍ୱିତୀୟ ଥର ବେଳକୁ ଆମର ଚେର କଣ୍ଟି ନ ଥିଲା । ଅର୍ଥାତ୍ ଆମେ ସେତେବେଳେ ପୂରା ଦସ୍ତୁର ଗାନ୍ଧିବାଲା ଥିଲୁଁ । ଆଉ କାଉନ୍‌ସିଲ, ଫାଉନ୍‌ସିଲକୁ ଏକଦମ୍ ଘୃଣାଚକ୍ଷୁରେ ଦେଖି ସରକାର ହାଓଆ ସ୍ପର୍ଶ କରିବାକୁ ରାଜି ନ ଥିଲୁଁ । ଆମ ଲେଖାରେ ଅସ୍ପୃଶ୍ୟତାଟା ହାଡ଼ି ବାଉରିଙ୍କ ଉପରୁ ଯାଇ ସରକାର ଉପରେ ପଡ଼ିଥିଲା । ତଥାପି କୌଣସି କୌଣସି ସ୍ଥଳରେ ଆମେ ପରୀକ୍ଷା ସୂତ୍ରରେ ଗୋଟାଏ ଯୋଡ଼ାଏ ଧୂଆଁ-ବାଣ ଛାଡ଼ି ଦେଇଥିଲୁଁ । ହାୟ, ହାୟ ! ସେତେବେଳେ ଯଦି ଆମେ ଟିକିଏ ଆଗବୁଦ୍ଧିଆ ହୋଇପାରି ଥାନ୍ତୁ, କିମ୍ବା ନିଜ ବଳଉପରେ ସେପରି ବିଶ୍ୱାସ (Confidence) କରିପାରି ଥାଆନ୍ତୁ, ତେବେ ଓଡ଼ିଶାରୁ କଣ ଜଣେ ହେଲେ ଅଦଳିଆ ଲୋକ କାଉନ୍‌ସିଲକୁ ଯାଇ ପାରିଥାଆନ୍ତେ ! ଆମର ସେ ବହୁତ ଅଦୂରଦର୍ଶିତାର ଫଳ ।

ନିର୍ଜୀବ ଗତ କଥାକୁ ଆଉ ଶୋଚନା ନାହିଁ । ଏବେ ଜ୍ୱଳନ୍ତ — ଜୀବନ୍ତ ବର୍ତ୍ତମାନ ଓ ଧୂମାୟିତ ଭବିଷ୍ୟତ ଘେନି ଆମର କାମ । ଗତଥର ଆମରି ପାଖ ବଙ୍ଗଦେଶରେ କେତେ ରଙ୍ଗନାଟ ହୋଇଗଲା, ଆମେ ଖାଲି ଦାନ୍ତ କାମୁଡ଼ି ହୋଇ ରହିଲୁଁ । ବିହାର କାଉନ୍‌ସିଲରେ ଆମ ଦଳ ଏତେ ଓଜଣା ପଡ଼ିଗଲେ ଯେ, ତାଙ୍କୁ କେହି ଆଖି ଛ'ପଟରେ ପକାଇଲେ ନାହିଁ । ସେଥିପାଇଁ ଏଥର ଆମ ଦଳପତି ହୁଙ୍କାରିଲେ କି— "ବାଳକେ ମୋର ବୋଲ କର, ବେଳହୁଁ ଗୋବିନ୍ଦ ସୁମର ।" ଆମେ ଯେତକ ଉତ୍ତମ ଶିଷ୍ୟଯାକ—ବେଳହୁଁ ମାତିଗଲୁଁ, ଗ୍ରାମେ ଗ୍ରାମେ, ନଗରେ ନଗରେ, ପଲ୍ଲୀ ପଲ୍ଲୀ କରି ଯେ ଯେଉଁଠି ଆମ ଜାତିଆ ଥିଲେ, ସବୁଆଡ଼େ ଗଣ୍ଡି ଫେରିଗଲା । 'ସାଜ ସାଜ' ରଣବାଦ୍ୟ ବାଜି ଉଠିଲା । ପୁଣି ସଭା ସମିତି, ଚାନ୍ଦା ଚାନ୍ଦା, ଶିଖାବୁଝା, ସ୍ୱନାମୀ, ବେନାମୀ, ଛପାକାଗଜ ବଣ୍ଟା, ଖବର କାଗଜରେ ଚିତ୍କାର, ସବୁ ପୂରାଦମ୍ ଲାଗିଗଲା । ଏଥର ଆମର ଚେଷ୍ଟା ଚାଲିଲା କି, ଯେପରି ବେ-ଦଳ ଲୋକେ ଅନ୍ତତଃ ଓଡ଼ିଶାରୁ କେହି ନଯାନ୍ତୁ । ଗାନ୍ଧି ସିନା ନିଜ ବେକୁବ ବୁଦ୍ଧି କରି କାଉନ୍‌ସିଲଟାକୁ 'ଛି' କରି ଦେଇଥିଲେ, ଆମେ ଯେ ଥରେ ତାର ସୁଆଦ ପାଇଲୁଣି – ଆଉ ସହଜରେ ଛାଡ଼ୁଛୁଁ ! ବାଘ ଥରେ ମଣିଷ ରକତ ଖାଇଲେ, ଜୀବନମୂରଛା ହୋଇ ସେହି ମଣିଷ ଶିକାର ଖୋଜିବୁଲେ । ଜିଲ୍ଲାବୋର୍ଡର କ୍ଷମତା ମଜା ଥରେ ଚାଖିଲା ଦିନରୁ ଆଉ ଅଲଗା ହୋଇ ରହିବା କଥା ଆମର ସରିଲାଣି । ଏଣିକି ଅଧିକ ଅଧିକ କ୍ଷମତା ପାଇବା ପାଇଁ ଜୀବନ ପ୍ରମାଣେ ଲାଗି ପଡ଼ିଛୁଁ । ଲୋକେ ପୁଣି କହିବେ ! ସେଥିପାଇଁ ତାଙ୍କୁ ବୁଝାଇବାକୁ ହେଉଛି ଯେ—"ଆରେ, ତମେ ବୁଝିଛ କଣ ? ବାହାରେ ଥାଇ ସରକାରର ଜବରଦସ୍ତ କଳକୁ ଭାଙ୍ଗିବା ସହଜ ନୁହେଁ; ସେଥିପାଇଁ ଗାନ୍ଧି ଫେଲ ହୋଇଗଲେ । ଆମେ ଏବେ ସେହି ଇସ୍ପାତ କଳ ଭିତରେ ପଶି ଏମିତି ମୋଡ଼ା ମୋଡ଼ିବୁଁ ଯେ, ଅଳ୍ପ ସମୟରେ ଓ ଅଳ୍ପ ଆୟାସରେ ସେ କଳଟା ଭାଙ୍ଗି ଚୁରମାର ହୋଇଯିବ । ଆଉ ପୁଣି ସଇତାନ ସରକାରର ସାଧ୍ୟ ରହିବ ନାହିଁ ତାକୁ ଆମ ହାତରୁ ରକ୍ଷା କରିବାକୁ ।"

ଆମର ଯେତେବେଳେ ଏହିପରି ଉଦ୍ୟମମାନ ଚାଲିଛି, ଶୁଣିଲୁଁ କି, କେହି କେହି ବେ-ଦଳିଆ ଲୋକେ ନିଜ ବଳରେ କାଉନ୍‌ସିଲ ଯିବାକୁ ମନ କଲେଣି । ସେଯାକେ, କାନ୍ଦୁ କାହାର-ନାମ ବାହାର ନଥାଏ । ଆମେ ଏଠି କଂସର ନୀତି ଅବଲମ୍ବନ କଲୁଁ । ଦ୍ୱାପରଯୁଗ ହେଲେ କଣ ହେବ, କଂସାସୁର ଏକା ବାନ୍ତ୍ରିକ ଗୋଟାଏ Politician ଥିଲା । ଆମେ ଧାଇଁଲୁଁ କି, "ମୂଳୁଁ ମାଇଲେ ଯିବ ଶଳ ।" ଭବିଷ୍ୟତରେ କିଏ ତାର ଶତ୍ରୁ ହେବ ବୋଲି କଂସ ଯେପରି ରାଜ୍ୟଯାକ ଶେଯପିଲାଙ୍କ ତଣ୍ଟି ଚିପିବା ଆରମ୍ଭ କରି ଦେଇଥିଲା, ଆମେ ସେହିପରି ଓଡ଼ିଶାଟାଯାକ ଯେତକ ସମ୍ଭାବ୍ୟ ପ୍ରାର୍ଥୀଙ୍କୁ (Probable cardidates) ନାନା ଉପାୟରେ ବାଟ ବନ୍ଦ କରିବାରେ ଲାଗିଲୁଁ । ସମସ୍ତଙ୍କ ପ୍ରତି ଏକ ନୀତି ପ୍ରୟୋଗ ତ ଚଳିଲା

ନାହିଁ—ଯେଉଁ ସ୍ଥାନକୁ ଯେଉଁ ଅସ୍ତ୍ର ଖାଟିବ ଠିକ ସେହି ଅସ୍ତ୍ର ଛାଡ଼ିଲୁ । କାହାକୁ ବଦନାମ କରାଇ ଦେବାପାଇଁ ତା ନାମରେ କୁତ୍ସିତ ପତ୍ର ପ୍ରକାଶ କରାଗଲା—ଏଇଟା ହେଲା ଧୂଆଁବାଣ । କାହାକୁ ତାର ବନ୍ଧୁ ବାନ୍ଧବଙ୍କଦ୍ୱାରା ନିବର୍ତ୍ତାଇବାର ଯତ୍ନ ହେଲା । କାହାକୁ ଅନ୍ୟ ପ୍ରକାର ଲୋଭ ଦେଖାଗଲା । କାହାର ହାତ ଗୋଡ଼ ଧରି ଖୋସାମଦ୍ କରିବାକୁ ପଡ଼ିଲା । ଇତ୍ୟାଦି ଇତ୍ୟାଦି ଅନେକ ପ୍ରକାର କୌଶଳ । ସେଗୁଡ଼ାକ ସବୁ ବଖାଣିବାର ସ୍ଥାନ ନାହିଁ । ଆଉ ମଧ୍ୟ ସେ official secret ଗୁଡ଼ାକ ଖୋଲିଦେଲେ ଦଳ ପ୍ରତି ବିଶ୍ୱାସଘାତକ ନ ହେବି, ଅନ୍ତତଃ ନିଜ ଦଳ ପ୍ରତି । ପରର ଘର ବୁଡ଼ାଇବା ତ ଆମର ବେଉସା, ସେଥିକି ଦୋଷ ନାହିଁ । ରାଜନୀତି ଆଇନରେ ସେଇଟା ଛାଡ଼ । ସେତିକି liberty ନ ଥିଲେ ରାଜନୈତିକେ ହାତଗୋଡ଼ ବନ୍ଧାହୋଇ ପଡ଼ିଥାନ୍ତେ । ଆମେ ସବୁ କହିବୁଁ, କିନ୍ତୁ ବୀଜ ମନ୍ତ୍ରଟି କହିବୁ ନାହିଁ ।

ହଁ, କହୁଥିଲି କ'ଣ କି—ଏତେ ପ୍ରକାର କୌଶଳ କରି ବି ଯେଉଁ ଲୋକ ବାଗରେ ନ ଆସିବାର ଦେଖାଗଲା, କିମ୍ବା ଯେ ଏପରି ସ୍ଥାନରେ ରହିଲା ଯେ, ତାହା ପାଖକୁ ଆମର ଶସ୍ତ୍ରର କାନ୍ତି ପହଞ୍ଚି ନ ପାରିଲା, ସେପରି ଲୋକଙ୍କୁ ଆମ ଦଳ ଭିତରକୁ ଟାଣି ନେବାର ଚେଷ୍ଟା କରାହେଲା । ସେପରି ଲୋକ ଯେ ନିହାତି ଟାଣୁଆ, ଏଥିରେ ସନ୍ଦେହ ନାହିଁ । ତାହା ବୋଲି ଆମର କେବେ ଉଦ୍ଦେଶ୍ୟ ନୁହେଁ ଯେ, ତାଙ୍କୁ ଦଳରେ ପୂରାଇ ଦଳର ପୁଷ୍ଟି ସାଧନ କରିବା । ବୁଝିଲେ ନାହିଁ କି, ଆମେ ହେଲୁଁ ବଳୁଆ ଦଳ । ଆମ ଭିତରକୁ ଗୋଟିଏ ଓଲାଳ କୁକୁର ପୂରାଇବା ଆମେ କେବେ ଇଚ୍ଛା କରୁ ନା—କିମ୍ବା ସେଥିରେ ଆମର ମଙ୍ଗଳ ନାହିଁ । ସେଥିପାଇଁ କାଳେ କେତେବେଳେ ଗୋଟାଏ କିଏ ସେହିପରି ଆସିଯିବ ବୋଲି ଆମ ଦଳର ମୁହଁ ସର୍ବ ସାଧାରଣଙ୍କୁ "ପ୍ରବେଶ ନିଷେଧ" । ଯାହା କରୁଁ ଆମେ ଆମେ—ଯାହା ହେବ ଆମ ଭିତରେ । ବାହାରର କେହି ଯେପରି ଏଥିରେ ଟିପ ନ ଛୁଏଁ । ତେବେ ଏ ଲୋକଙ୍କୁ ଦଳ ଭିତରକୁ ପୂରାଇବା ଉଦ୍ଦେଶ୍ୟ ଅଛି । ତେବେ କ'ଣ କି—କେବଳ କାର୍ଯ୍ୟ ଶେଷଯାଏ ହାତ ଆଉଁସା କରି ରଖିଥିବୁଁ, ଆଉ ନାନାପ୍ରକାର ଆଶାଭରସା ଦେଇ ତାଙ୍କୁ ନିଜର କିଛି ଉଦ୍ୟମ ଓ ଯତ୍ନରୁ ବିରତ କରାଇ ରଖିବୁଁ; ବଖତ ଠଉରାଇ ଧକ୍କା ଦେଇ ପୁଣି ବାହାର କରିଦେବୁଁ । ସେତେବେଳକୁ ନା ଥିବ ସମୟ, ନା ଥିବ ସୁବିଧା—ହାତ ଗୋଡ଼ ଭାଙ୍ଗି ଚୁପଚାପ୍ ବିବ୍ରତ ହୋଇ ସେ ରହିବେ, ଏହି ଉଦ୍ଦେଶ୍ୟ । ଏପରି କେତେ ଲୋକଙ୍କ ସାଙ୍ଗରେ କରାଗଲା । କେତେକ ସରଳ-ବିଶ୍ୱାସୀ ଲୋକେ ବି ଆମ ଫାନ୍ଦରେ ପଡ଼ିଗଲେ । ଜଣେ ଅଧେ ଯେ ଉଚ୍ଛୁର ନ ଗଲେ, ତାହା ନୁହେଁ । ସେ ତାଙ୍କର କର୍ମ ଜୋର ।

ଏହିପରି ଚୁପଚାପ୍ ଶତ୍ରୁନାଶ କରି ଏକ ପ୍ରକାର ନିଶ୍ଚିନ୍ତ ଥାଉଁ । ମାତ୍ର ଶେଷରେ ଦେଖିଲାବେଳକୁ ପ୍ରତ୍ୟେକ ସ୍ଥାନରୁ କେହି ହେଲେ ଜଣେ ଆମ ବିରୁଦ୍ଧରେ ଛିଡ଼ା ହେଲେଣି । ସେତେବେଳେ ଆଉ କରିବୁଁ କ'ଣ, କମର କଷିଦେଇ ଲଢ଼ିବାକୁ ପଡ଼ିଲା । ପ୍ରତିଦ୍ୱନ୍ଦ୍ୱ-ଗୁଡ଼ିକ କେହି କାହାରିକୁ କମ୍ ନୁହନ୍ତି; କିନ୍ତୁ ବିଧି ଯେତେବେଳେ ଆମକୁ ଅନୁକୂଳ, କିଏ ଆମର କ'ଣ କରିବ ! ଜିଲ୍ଲାବୋର୍ଡ଼ଗୁଡ଼ାକ ହାତରେ ଥିଲା ବୋଲି ଆମର କମରରେ ବହୁତ ବଳ । ସେତିକି ଯୋଗୁଁ ଆମ ଦଳରେ ଅନେକ କର୍ମୀ, ଅନେକ ମର୍ମୀ, ଅନେକ ଧର୍ମୀ । ସେତିକି ଯଦି ଯାଏ, ତେବେ ଆମ ଦଶା ଯେ କ'ଣ ହେବ ତାର ଠିକଣା ନାହିଁ—ଏହି ପଙ୍ଗପାଳ ଗୁଡ଼ାକ ସବୁ ଛାଡ଼ି ପଳେଇବେ, ଏକଥା ଆମେ ଠିକ୍ ଜାଣିଛୁଁ ଏବଂ ସେଇଥିଲାଗି ଯାହା ହେଉ ପଛକେ ଜୀବନ-ଝଗଡ଼ା କରି ଜିଲ୍ଲା ବୋର୍ଡ଼କୁ ହାତଛଡ଼ା କରିବୁ ନାହିଁ । ମୁଁ ଦେଖୁଛି, ଅକ୍ରୁଣୀ ବୁଢ଼ୀର ଯେପରି ଥିଲା 'ଆଖୁଷବାଳ' କେରାଏ, ଏହି ଜିଲ୍ଲାବୋଡ଼ ଆମର ସେହିପରି । ଏ କେରାକ ଉପୁଡ଼ି ଗଲେ ଆମର ଅସ୍ତିତ୍ୱ ରହିବା ସନ୍ଦେହଜନକ ।

ଏବେ ଆମ ଦଳରୁ କିଏ କିପରି ଛିଡ଼ା ହେଲେ, ସେଥିରୁ ପଦେ ଅଧେ କହେଁ । ଆମ ଭିତରେ ଯେଉଁମାନେ ମୁଖିଆ, ମୁଖିଆ, ସେହି ମାନଙ୍କର ତ ଯିବାର କଥା । କିନ୍ତୁ ସେ ଯେବେ ମୁହଁରେ ସେ କଥା କହି ଦେଉଛନ୍ତି ତେବେ ତ ତାଙ୍କର ମୁଖିଆ ହେବାର ସରିଲା । ସେଥିପାଇଁ ଦେଖିଲା ବେଳକୁ କାଉନ୍‌ସିଲ୍ ଯିବାପାଇଁ କେହି ମଙ୍ଗନ୍ତି ନାହିଁ । ସମସ୍ତେ ଏକ ବାକ୍ୟରେ କହିଲେ କି—"ମୁଁ ଗଲେ ଏଣେ ଦେଶରେ 'କର୍ମ' ବିଗିଡ଼ି ଯିବ ।" ଭିତରେ ଭିତରେ ଏଣେ ତାଙ୍କର ଅନୁସରଣୀଆ କେତେ ଜଣଙ୍କୁ ଲଗାଇ ଦେଇଥାନ୍ତି ଯେ, ସେମାନେ ଜିଦ୍ କରି କହନ୍ତି କି, "ଆପଣ ନ ଗଲେ ତ ଚଳିବ ନାହିଁ ।" ଶେଷରେ ସେହି 'ଆପଣ ମାନେ' ଅତି କଷ୍ଟରେ ସ୍ୱାର୍ଥତ୍ୟାଗ (Self sacrifice) କରି "ବନ୍ଧୁବର୍ଗ ମାନଙ୍କର ଓ ଦେଶବାସୀଙ୍କର ଏକାନ୍ତ ଅନୁରୋଧରେ ବାଧ୍ୟ ହୋଇ" ଯିବାକୁ ମଙ୍ଗିଲେ । ମାତ୍ର ମଙ୍ଗିବା ସବୁଠାରୁ ମଙ୍ଗିଲେ ଅନେକ—ଯେତେ ସ୍ଥାନ ଅଛି ତାର ଦୁଇଗୁଣ କି ଚାରିଗୁଣ । ଯାହାଙ୍କର ଇଚ୍ଛା ଥିଲା ଅଥଚ କେହି ତାଙ୍କ ପାଇଁ ନ କହିଲେ, ସେମାନେ ମନ ଉଣା ବି କଲେ । ଏପରି ଅବସ୍ଥାରେ କରାଯାଏ କ'ଣ ! ସଭା ବସିଲା । Provincial Congress Committee ର ଘନ ଘନ ଗୁପ୍ତ ଅଧିବେଶନମାନ ଚାଲିଲା । ସେଠି କଳି ଗୋଳର ଶେଷ ନାହିଁ । ଅନେକ କୁସ୍ତା କୁସ୍ତି ପରେ ସ୍ଥିର ହେଲା କି, "ବଡ଼ ଆପଣେ ଯାହା ବଳବଳଇବେ ତାହା ବେଦ ବୋଲି ମାନିବାକୁ ହେବ ।"

ଆମେ ବିନା ଅସହଯୋଗୀ ହେଉଛୁଁ, ତାହା ବୋଲି ଆମର ଜାତୀୟ ଗୁଣଟା ତ ଛାଡ଼ି ପାରୁନାହୁଁ । ଆମ ଭିତରେ ଓଡ଼ିଆ-ବଙ୍ଗାଳି, ପୁରୀଆ ବାଲେଶ୍ୱରିଆ, ବ୍ରାହ୍ମଣ କରଣ ପ୍ରଭୃତି ଯେଉଁ ସବୁ ବାରଣ ବା Partition wall ଅଛି, ତାହାସବୁ ଉଠାଇ ଦେବା ତ ସହଜ ନୁହେଁ । ଅସହଯୋଗଟା ତ ଚିରଦିନ ରହିବ ନାହିଁ ବା ନଥିଲା, କିନ୍ତୁ ଆମର ଆପଣା ଭିତରେ କାମଡ଼ା କାମଡ଼ିଟା ଯେ ବଂଶ ପରମ୍ପରାଗତ ଏହାକୁ ଛାଡ଼ିଲେ କ'ଣ ଧେନ ରହିବ ? ଆପଣଙ୍କର dictate ରେ ନାନାପ୍ରକାର ଠିକାଦାରିପଣି ବାହାରିଲା, ପୁଣି ସଭା ସମିତି ବସିଲା । ଶେଷରେ ପୁରୀଟା ସତ୍ୟବାଦୀଆଙ୍କୁ ଛାଡ଼ି ଦିଆହେଲା । ଆଉ ଏଣୁ ତେଣୁ ଗୋଟିଏ ଯୋଡ଼େ ବ୍ରାହ୍ମଣ ଦଳକୁ ମଧ୍ୟ ଦିଆହେଲା । ଏହାପରେ ଅପୋଷିରେ ନିବୃତ୍ତି ହୋଇଗଲା । ଏଥିରେ କର୍ମ ଫାଟିଲା ଏକା ଜଣଙ୍କର । ସେ ଦୁର୍ଭାଗ୍ୟବଶତଃ ପୁରୀଆ, ମାତ୍ର ଅବ୍ରାହ୍ମଣ । ଏହି ଯୋଗୁଁ ତାଙ୍କର ବାଇଶବର୍ଷର ତପ ଶୁଖୁଆ ପୋଡ଼ାରେ ଗଲା । ଏବେ ସୁଦ୍ଧା ସେ ଶିଖିଲେ କି ନାହିଁ କେଜାଣି ।

ଜଣେ ଉଚ୍ଚପଦସ୍ଥ ସରକାରୀ ଲୋକଙ୍କୁ ଆମେ ହାତରେ ରଖିଛୁଁ । ତାଙ୍କରି ଜରିଆରେ ଗୋଟାଏ ଜିଲ୍ଲାରେ ଅନେକ କାମ ହୋଇଛି । କେତେ ଲୋକଙ୍କୁ କେତେ ପ୍ରକାର ଆକାଶ କୁସୁମ ଆଶା ଦିଆ ହୋଇଛି । ଆଉ ଅଧିକାଂଶ ଲୋକଙ୍କୁ ଭୟ ଦେଖା ହୋଇଛି ।

ଆମେ ସବୁଠାରୁ ଦୁର୍ବଳ ଥିଲୁଁ ଜମିଦାର Constituency ରେ । ସେଠିକି ଆଉ କେହି ଲଢ଼ିବାକୁ ଆଗେଇଲେ ନାହିଁ । ଆମେ ଦେଖିଲୁଁ, ଆମ ପ୍ରତିଦ୍ୱନ୍ଦ୍ୱୀଙ୍କୁ ନିର୍ବାଧରେ ଛାଡ଼ିଦେଲେ ସେ ଯେପରି ଧନୀ ଓ ଧୂର୍ତ୍ତ, ଅନ୍ୟଆଡ଼େ ଆମର ଅନିଷ୍ଟ କରିବେ । ତାଙ୍କୁ ଯେ କୌଣସି ପ୍ରକାରରେ ଲଗାଇରଖିବା ଉଚିତ । ଯାହାକୁ କହିଲୁଁ, ଏତେ ବଡ଼ ବଳୀଆର ଲୋକ ସାଙ୍ଗରେ ପଞ୍ଝ ଦେବାକୁ କେହି ରାଜି ହେଲେ ନାହିଁ । ଶେଷରେ ପାଇଲୁଁ ଗୋଟାଏ 'ଗୋ-ବରୁଗ୍ରା' ଜମିଦାର ପିଲା । ତାକୁ ଠେକାଠେକି କରି ସ୍ୱର୍ଗକୁ ଚଢ଼ାଇ ଦେଲୁଁ । ସେ ବି ଯୋଗାଡ଼ ଯନ୍ତ କରି ଆମ ହାତରେ ନେଇଁଆ ଗେଞ୍ଜିଦେଲେ । ଆମର ଦୁଇପ୍ରକାର ଲାଭ । ଆମେ ଜାଣୁ ତାଙ୍କର ଦଶା କ'ଣ ହେବ । ତଥାପି ଆମର ସ୍ୱାର୍ଥ ସିଦ୍ଧି ପାଇଁ ତାଙ୍କର ମୁଣ୍ଡ କଟା ହେଲା, ଆମର ସେଥିରେ କ'ଣ ? ଏ ତ ରାଜନୀତି । ସାଧାରଣ ଅଶିକ୍ଷିତ ଲୋକେ ବିନା ଆମ କଥାରେ ଭୁଲନ୍ତି । ଜମିଦାରଗୁଡ଼ାକ ବଡ଼ ଅମାନିଆ ଜନ୍ତୁ । କେତେପ୍ରକାର ପ୍ରଲୋଭନ, ଖୁଞ୍ଚା, ଗାଲୁ, ଭୟ ପ୍ରଦର୍ଶନ ପ୍ରଭୃତିରେ କେତେଗୁଡ଼ାଏ ଭୋଟ ପାଇଲୁଁ ସତ୍ୟ, କିନ୍ତୁ ଯାହା ହେବାର ତାହା ହେଲା—ଆମ ଜମିଦାର ପିଲାଟି ଫେଲ୍ ହୋଇଗଲେ । ଆଉ ଗଲେ ଯେ, ସେ ଆମର ପ୍ରଧାନ ବିପକ୍ଷ । ସେ କିନ୍ତୁ ଯେତିକି ଧୂର୍ତ୍ତ, ସେତିକି ବୋକା, ସେ ଜାଣି ପାରୁନାହାନ୍ତି ଯେ, ଆମଲାଗି ତାଙ୍କ ରାଜ୍ୟଠାରୁ ଆରମ୍ଭ କରି ଅନ୍ୟାନ୍ୟ ସ୍ଥାନରେ ସୁଦ୍ଧା କେତେ ଅନିଷ୍ଟ ଘଟୁଛି । ଆମେ ବି ଏଣେ ପସରା ମେଲାଇ ବସିଛୁଁ । ଏପରି ବଦାନ୍ୟସୀବ ତାଙ୍କର ଯେ, ଏଣେ ପଛକେ ଲକ୍ଷ ଲକ୍ଷ ଖରଚ କରିବେ ମାତ୍ର ଅତି ସହଜରେ ଯାହା ହୋଇ ପାରିବ, ତାହା କରିବାକୁ ନାରାଜ । ଆମକୁ ହାତ କରିବା କିଛି ବେଶୀ କଥା ନୁହେ । ଆମ୍ଭେମାନେ ଯୋଗୀ-ବୈରାଗୀ ଲୋକ, ସାମାନ୍ୟରେ ସନ୍ତୁଷ୍ଟ ହୋଇ ପାରନ୍ତୁ, ମାତ୍ର ତାଙ୍କର ଜିଦ୍ ଅଲଗା ପ୍ରକାର । ହେଉ, ଥାଆନ୍ତୁ ସେ ତାଙ୍କର ଜିଦ୍ ଧେନ । ଯେତେବେଳେ ହେଜିବେ, ବଳେ ଆମ ବାଗକୁ ଆସିବେ ।

ଆଉ ଗୋଟାଏ ସ୍ଥାନରେ ଆମର ପ୍ରତିଦ୍ୱନ୍ଦ୍ୱୀ ଥିଲେ ଜଣେ ବଡ଼ଲୋକ—ସେ ଗଲା ଦୁଇଥର ଯାକ କାଉନ୍‌ସିଲ୍‌କୁ ଗଲେଣି । ତାଙ୍କୁ ହଟାଇବା ସହଜ ନୁହେଁ ଜାଣି ଗୋଟାଏ ଉପାୟ ଧରିଲୁଁ । ଅନ୍ୟ ଜଣେ ବଡ଼ଲୋକଙ୍କୁ କୌଶଳ କ୍ରମେ ତାଙ୍କ ବନ୍ଧୁ ବାନ୍ଧବଙ୍କୁ ଫୁସୁଲାଇ ସେହି ସ୍ଥାନରେ ଛିଡ଼ା କରାଇ ଦେଲୁଁ । ଆମପକ୍ଷ ଭୋଟ ଯାକ ତ ଆମର ରହିଲା, ମାତ୍ର ଆମ ବିପକ୍ଷର ଯେତେ ଭୋଟ, ସବୁ ବାଣ୍ଟି ହୋଇଯିବାରୁ ଶେଷରେ ଆମେ ଜିତିଗଲୁଁ । ଏ କୌଶଳ କରି ନ ଥିଲେ ତାଙ୍କୁ ଜିଣିବା ସହଜ ହୋଇ ନ ଥାନ୍ତା । ବାକି ସ୍ଥାନ-ମାନଙ୍କରେ ଆମକୁ ବେଗ ପାଇବାକୁ ହୋଇଛି ସତ୍ୟ, ମାତ୍ର ଆମର ବଳ ଖୁବ୍ ଥିଲା । ଆମ ଆଣ୍ଟ ଆଗରେ ନେତା ନେତା ମାହାର୍ଦ୍ଦ କମ୍ପା ଝଙ୍କା ଝଙ୍କା ଚିଲକା ମାଛ କିଛି ଖଟିଲା ନାହିଁ—ସାମାନ୍ୟ କୁହାବୋଲା ଧରାଧରିକୁ ବା ପଗୃରେ କିଏ !

ଏତେ କରି କରି ମଧ୍ୟ—ଆଶାତୀତ ଫଳ ପାଇଲେ ମଧ୍ୟ ଓଡ଼ିଶାରେ କମ୍ବା ମୋଟ ବିହାର-ଓଡ଼ିଶାରେ ଆମର ସଂଖ୍ୟାଧିକ୍ୟ (Mejority) ହେଲା ନାହିଁ । ତେବେ ଗୋଟାଏ ଆଶା ଏତିକି ଯେ, ପ୍ରତି ସଭାରେ ଆମର ସଂଖ୍ୟାଧିକ୍ୟ ହେବ । କାରଣ ଅପରପକ୍ଷୀୟ ଲୋକେ ତ ଆମଭଳି କର୍ମୀ ଜୀବନ ପାଇ ନାହାନ୍ତି, ଅର୍ଥାତ୍ କାଉନ୍‌ସିଲ୍ ଜୀବିକା କରି ନାହାନ୍ତି ଯେ, ସମସ୍ତେ ପ୍ରତିଥର ସଭାରେ ଉପସ୍ଥିତ ହେବେ । ଏଣେ ଆମ ଦଳଯାକ ଜୀବନ ଝଗଡ଼ି ଗୋଟି ଗୋଟି କରି ସବୁ :ପହଞ୍ଚିବୁଁ । ଏଥିରୁ ଆମ ସଂଖ୍ୟା ବେଶି ହୋଇ ନ ଯିବ ତ କ'ଣ ?

ବାକି ଗୋଟାଏ ମେମ୍ବର ସରକାର ତରଫରୁ ନିଯୁକ୍ତ ହେବାର କଥା । ସେ ଜଣକୁ କେହି ଜଣେ ହେଲେ ଆମେ ଖାତିର ମଧ୍ୟରେ ଆଣି ନ ଥିଲୁଁ । ଏଥର କିନ୍ତୁ ସରକାର ଆମକୁ ଚଟା କାଟିଦେଲେ । ଖାଲିକି ତ ଆମ ପଛରେ ପୋଲିସ, ଡିଟେକ୍‌ଟିଭ୍ ଲଗାଇ ଅଛନ୍ତି । କାଉନ୍‌ସିଲ୍‌ରେ ସୁଦ୍ଧା ଡିଟେକ୍‌ଟିଭ୍ ରଖିଲେଣି ।

ଓଡ଼ିଶା ପାକରେ ଯେଉଁ ଲୋକକୁ ଆମର ଡର ବେଶି, ଅର୍ଥାତ୍ ଛକା-ପଞ୍ଝା ଖେଳରେ ଆମଠୁଁ ବଳି ଯାହାଙ୍କର କଲମ, ଏହିପରି ଜଣେ ବ୍ୟକ୍ତିଙ୍କୁ ବାଛି ପଠାଇଛନ୍ତି । ଓଡ଼ିଶାଟା ପାକରେ ଆଉ କେହି କ'ଣ ମିଳିଲେ ନାହିଁ ? ତାହାଙ୍କ ପୁଣି ଆଉ ଜଣକ ଆସିଛନ୍ତି । ସୁନାରେ ସୁହାଗା ଯୋଗ ହୋଇଛି । କପାଳରେ କ'ଣ ଅଛି କେଜାଣି !

କଥାରେ କହନ୍ତି, 'ସବୁ ଚୁଲି ମୁହଁ ପଶ୍ଚିମକୁ ।' ପ୍ରକୃତିର ନିୟମ uniformity—କଥାଟା ସତ ଏକା; ସବୁ କୁକୁରଙ୍କ ଲାଙ୍ଗୁଡ଼ ବଙ୍କା । କହିବାକୁ ଗଲେ ଯେଉଁ କୁକୁରଙ୍କ ଲାଙ୍ଗୁଡ଼ ବଙ୍କା ନୁହେଁ, ସେଇଟା କୁକୁର ନୁହେଁ; ସେ ଗଧ ହୋଇପାରେ, ଗୋରୁ ହୋଇପାରେ, ଯାହା ଇଚ୍ଛା ତାହା ହୋଇପାରେ, କିନ୍ତୁ କୁକୁର ସେ କଦାପି ହୋଇ ନ ପାରେ । ସେହିପରି ଖଦଡ଼ ଯେ ନ ପିନ୍ଧନ୍ତି, ସେ ଆଉ ଯାହାହେଉ ପଛକେ ଦେଶହିତୈଷୀ ନୁହେଁ, ସେ ପୀର ହୋଇ-ପାରେ, ପୟଗମ୍ବର ହୋଇପାରେ, କିନ୍ତୁ "ଜନନୀ ଜନ୍ମଭୂମିଶ୍ଚ" ବୋଲି ଯେଉଁ ଦେଶ ତା'ର ସେ ହିତୈଷୀ, ତାହା ସେ କେବେ ନୁହେଁ । ଯେ ଖଦଡ଼ ପିନ୍ଧିଲା, ସେ ହେଲା ଦେଶହିତୈଷୀ । ଯେ ମୁଠାଏ ନିଶ ରଖିଲା, ସେ ହେଲା 'ନିଶୁଆ ତେଲି' । ଅତଏବ ତାର ଅବାରିତ ଦ୍ୱାର । ସେ ଚୋର ହେଉ, ଲାଞ୍ଚଖୋର ହେଉ, ଗାଲ-କଟା ହେଉ ବା ଜେଲ ଆସାମୀ ହେଉ, ଖଦଡ଼ ପାଗ୍‌ଟା ହାତରେ ଥିଲେ ତାର ସାତଖୁଣ ମାଫ୍ । ଏଥିପାଇଁ ଆମର ଖାସ୍ ତାକିଦ୍ ଯେ, ଖଦଡ଼ ପିନ୍ଧିଥିବ ସବୁବେଳେ—ଅନ୍ତତଃ ପ୍ରକାଶ୍ୟ ସ୍ଥାନମାନଙ୍କରେ । ଖଦଡ଼ ହେଲା ଆମ ଦଳର ଚିହ୍ନ (badge) । ଏହି badge ଦେଖିଲେ ଆମେ ଆପଣା ଆପଣା ଗୁପ୍ତ କଥାବାର୍ତ୍ତା ହୋଇ ପାରିବୁଁ । ଏପରି ଗୋଟାଏ କଣ୍ଠକଣା ନ ଥିଲେ ଆମର party secrets ଗୁଡ଼ାକ ପଦାରେ ପଡ଼ିଯାଆନ୍ତା । 'ବାରକାଠ ତେର ଗୋଲି, ବଇଷମ ହେଲେ ସବୁ ଗଲି ।'

ଆମେ ଯେତେବେଳେ ଖାଣ୍ଟି ଗାନ୍ଧିବାଲା ନନ୍ କୋଅପରେଟର ଥିଲୁଁ, ସେତେବେଳେ ଲୋକେ ଆମକୁ କେତେ ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଦେଖାଉଥିଲେ । ଏବେ କାହିଁକି ବେଜାୟ ଶତ୍ରୁ ଆମର ବଢ଼ିଲେଣି । ସେତେବେଳେ ଯେଉଁଠିକି ଗଲେ ଆମର କୋଟି ଆଦର ହେଉଥିଲା, ସବୁରି ସୁନାପୁଅ ହୋଇଥିଲୁଁ । ଏବେ ଯାହା ଯେଉଁଠି ମିଳୁଛି, ସବୁ ଭୟରେ । ଆମ ଭିତରର ଇଲ୍ଲତ ଓ ଗଲ୍‌ଜ ଯାହା ଥିଲା, ଏବେ ସବୁ ପଦାରେ ପଡ଼ି ଦାଣ୍ଡରେ ଗଡ଼ିଲାଣି । ନୈତିକବଳ ନାମରେ ଯେଉଁ ପ୍ରଭାବ ବିସ୍ତାର କରିଥିଲୁଁ; ପ୍ରକୃତ ନୈତିକତା ନ ଥାଇ ତାହା ଆଉ କେତେ କାଳ ରହନ୍ତା ? ଏହିକ୍ଷଣି ଆମର ଯାହା ବଳ, ତାହା କେବଳ ବାହ୍ୟ କ୍ଷମତା ଉପରେ ।

ସେହି କ୍ଷମତା ବର୍ତ୍ତମାନ ଆମର ଜିଲ୍ଲା-ବୋର୍ଡ଼ମୟ । ଜିଲାବୋର୍ଡ଼ ଗୁଡ଼ାକ ହାତ କରି ନ ଥିଲେ, ଏତେବେଳକୁ ଆମର ସତ୍ତ୍ୱ ବି ନ ଥାନ୍ତା । ଜିଲ୍ଲାବୋର୍ଡ଼ ନାମରେ ଦଳଟିକୁ ଜିଆଇ ରଖିଛୁଁ ବୋଲି ସିନା ଆଉ ପାଞ୍ଚଟା କାମରେ ହାତ ପକାଇ ପାରୁଛୁଁ । ଏହି ଜିଲ୍ଲାବୋର୍ଡ଼ ହାତରେ ଥିଲାକୁ ସିନା ପାଞ୍ଚ ଯାଗାରେ ଟିକିଏ ଖାତର—ମହାର ଅଛି । ବର୍ତ୍ତମାନ ଆମ ଅସ୍ତିତ୍ୱର ଏକମାତ୍ର ସମ୍ବଳ, ଏକମାତ୍ର ନିର୍ଭର, ଏକମାତ୍ର ଭରସା ଏହି ଜିଲ୍ଲାବୋର୍ଡ଼ । କି ଶୁଭ ମୁହୂର୍ତ୍ତରେ ସରକାର ଜିଲାବୋର୍ଡରେ ନିର୍ବାଚନ ପ୍ରଥା ପ୍ରବର୍ତ୍ତନ କରାଇଥିଲେ କେଜାଣି, ସେଥିପାଇଁ ସରକାରଙ୍କୁ ଶତ ଶତ ଧନ୍ୟବାଦ । କିଏ କହୁଥିଲେ ପରା ଯେ, ଏଇଟା ସରକାରଙ୍କର ଗୋଟାଏ ଗୁଳିଖିଆ । କଣ କି, ଗୁଡ଼ାଏ ଆମଭଳିଆ ଅକର୍ମାଙ୍କୁ କିଛି ରକମ ଗୋଟାଏ ଗୋଟାଏ ଦାନାହୁଆ କରାଇଲେ ଦେଶରୁ ଅଶାନ୍ତି, ଗୋଳମାଳ ଢେର କମିଯିବ, ଆଉ unemployment ବା ବେକାର ସମସ୍ୟା କମିଯିବ ! ସେ ଯାହାହେଉ ଆମେ ଏଥିପାଇଁ ଦୟାମୟ ଓ ସମଜଦାର ସରକାରଙ୍କଠାରେ ଋଣୀ । ତାହୁଁ ଅଧିକ ଋଣୀ ଏହି ଆଇନର ପ୍ରଣେତା ଆମ ଦେଶର କୁଳବୃଦ୍ଧ ମଧୁସୂଦନଙ୍କଠାରେ । ତାଙ୍କଠେଇଁ ଆମେ ଯେ ଋଣୀ, ଏ କଥା କହିବା ଦରକାର ନାହିଁ, କାରଣ କାର୍ଯ୍ୟକଳାପରୁ ଲୋକେ ଏବଂ ସ୍ୱୟଂ ଦାସେ ଆମର କୃତଜ୍ଞତା ଜାଣି ପାରିଥିବେ । ଆମ ଦଳର ସ୍ୱଭାବ ଏହି ଯେ, ଆମର ଯେ ଯେତିକି ଉପକାର କରେ, ଆମେ ତାହାର ସେତିକି ଅନିଷ୍ଟ କରୁଁ । ନ ପାରିଲେ ପଛରୁ ଧୂଳାଏ କାମୁଡ଼ ପକାଉଁ ଅର୍ଥାତ୍ ଆମେ ଯାହାର ଯେତିକି ବେଶି ଅନିଷ୍ଟ କରିବାରେ ଲାଗିଥିବୁଁ, ଯାହାର ଯେତିକି ନିନ୍ଦା, କୁତ୍ସା ରଚନା କରୁଥିବୁଁ, ଭଦ୍ରତା ଓ ଶିଷ୍ଟତାର ସୀମା ଲଙ୍ଘନ କରି ଗାଳି ଦେଉଥିବୁଁ, ଜାଣିବେ ଯେ, ସେହି ବ୍ୟକ୍ତି ଆମର ସେତିକି ଉପକାର ପୂର୍ବରୁ କରିଛି । ଏହି ହେଲା ଆମର କୃତଜ୍ଞତାର test,

ଆମେ ଏଥର ଯେ କାଉନସିଲକୁ ଗଲୁଁ, ମନେ କରିଥିଲୁଁ ଯେ, ସେଠାରେ ଆମ ଦଳର କ୍ଷମତା ବେଶି ହୋଇଯିବ । ଆମକୁ ସରକାର ଡରିବେ, ଆଉ ଜିଲାର ସାନ ସାନ ହାକିମ ଗୁଡ଼ାର ବା କି କଥା ! ସେ କଥା ତ ହୋଇ ପାରିଲା ନାହିଁ । ତାହାଁକି ଆମ ଦେଶ ଲୋକଙ୍କର mentality ବଡ଼ slavish; ଯେତେବେଳେ ଗାନ୍ଧିଙ୍କର ବୋଲବାଲା ଥିଲା, 'ଗାନ୍ଧି ମହାରାଜା' ବୋଲି ଲୋକେ ଗୋଟାଏ ଧାରଣା କରିଥିଲେ, ଅଳ୍ପଦିନ ଭିତରେ ସ୍ୱରାଜ୍ୟ ଅର୍ଥାତ୍ ଆମ ଦଳର ରାଜ୍ୟ ହୋଇଯିବ ବୋଲି ବିଶ୍ୱାସ କରି ଲୋକେ ରହିଥିଲେ; ଆମପ୍ରତି ଲୋକଙ୍କର ସେତେବେଳେ ଭାରି ଭୟ ଭକ୍ତି ଥିଲା । ଭାବିବେ ନାହିଁ, କେବେହେଲେ ଓଡ଼ିଆପୁଏ ଆମକୁ ଦେଶସେବକ ବୋଲି ଅତି ପ୍ରେମ ବା ଅତି ଶ୍ରଦ୍ଧାରେ ଏତେ

ଭଲ ପାଉଥିଲେ । ସେଇଟା ଖାଲି କ୍ଷମତା ବା Power ଉପରେ । ଏବେ ସେ କଥାତ ବାଘ ଖାଇଲାଣି । ଯେତିକ ଖାତିର ଅଛି, ତାହା କେବଳ ଜିଲ୍ଲାବୋର୍ଡ଼ କ୍ଷମତା ହାତରେ ଅଛି ବୋଲି । ଏବେ ପୁଣି ତାହା ରହିବ କି ନାହିଁ କିଏ ଜାଣେ ! ସେଥିପାଇଁ ଆଗରୁ ବାଟ କଟା ଗଲା । ଆମେ ଲାଟ୍ ସଭାକୁ ଯାଇଥିଲୁଁ, ସ୍ୱୟଂ ଲାଟସାହେବ ଆମକୁ ଅମୁକ କଥାକୁ ତମୁକ କଥା କହିଲେ । ଅମୁକ ମନ୍ତ୍ରୀଙ୍କ ଘରେ ସେଦିନ ଚା ଖାଇବାକୁ ଯାଇଥିଲୁଁ । ତାଙ୍କ ସଙ୍ଗରେ ଅମୁକ ଅମୁକ କଥାବାର୍ତ୍ତା ହେଲା, ଇତ୍ୟାଦି ଇତ୍ୟାଦି ପ୍ରକାର କଥା ଲୋକଙ୍କ ଆଗରେ କହିବୁଲିବା ଓ ସେ ସୂତ୍ରଧାରେ ପାଞ୍ଚଟା କଥାରେ ଆଶା ଦେଖାଇବା ବା ଧମକାଇବା ହେଲା ଆମର ମୂଳ ଉଦ୍ଦେଶ୍ୟ । ଦଳ ବଞ୍ଚାଇ ରଖିବାକୁ ହେଲେ, ପଡିଆସ୍ ବଜାୟ ରଖିବାକୁ ଗଲେ, ଏହି ପାଞ୍ଚରକମ ଭଡ଼ଙ୍ଗ ରଖିଥିବା ଦରକାର । କିନ୍ତୁ ପ୍ରକୃତରେ ଲାଟ ସଭାରେ ଆମକୁ କେହି ଭଲ ପାଆନ୍ତି ନାହିଁ; ସରକାର ତରଫ ଲୋକେ ତ ଘୃଣା ଚକ୍ଷୁରେ ଦେଖନ୍ତି । ସେଦିନ ଆମ ଦଳର ଜଣେ ନେତାଙ୍କୁ କିଏ ପଚାରିଲେ, "କି ହୋ, ଆମ ମେମ୍ବର କ'ଣ ନ କରୁଥିଲେ, ଆଉ ତୁମେ ଏବେ ଯାଇ କ'ଣ କଲ ?"

ସେ ତାଙ୍କୁ ଉତ୍ତର ଦେଲେ କି, "ଆମେ କଣ ଯାଇଛୁଁ କିଛି କରିବୁ ବୋଲି ? ସେଠି କିଛି କରିବାର ଜୁ ଆମର ବା ଆଉ କାହାର ନାହିଁ । କେବଳ ଆମେ ଯାଇଛୁଁ ଅଧିକା କିଛି ନ ହେଉ ପଛକେ, ଯାହା ଅଛି ସେତିକି କମିତ ରହିଥାଉ । ଆମର କାମ ଜଗିବା ।"

"ବେଶ୍, ଏତିକି ଜଗିବା କାମଟା କ'ଣ ଆଗ ଲୋକ କରିପାରୁ ନଥିଲେ ? ସେମାନେ ତ ବରଂ କହି ବୋଲି, କଳି କରି କିଛି କିଛି ଅଧିକା କରୁଥିଲେ ।"

ଏହି କଥା କହି ସେ ଚାଲିଗଲେ । ଆମ ନେତାଟି ଭଲ ଲୋକ ବୋଲି କିଛି କହିଲେ ନାହିଁ । ମୁଁ ହୋଇଥିଲେ ଚାପୁଡ଼ାଏ ମାରି ତାଙ୍କୁ ବୁଝାଇ ଦେଇଥାନ୍ତି ।

ଆମର କାଉନସିଲ ଭୋଟରେ ଜିତାଟା ଏଥର ଆସନ୍ତା ଜିଲ୍ଲାବୋର୍ଡ଼ ଭୋଟ ବେଳକୁ କାମରେ ଲାଗିବ । Canvassing କାମରେ ବେଶି ପରିଶ୍ରମ ପଡ଼ିବ ନାହିଁ; କାରଣ କଡ଼ାଣ, ଦୋହଡ଼ ସରିଛି—ଖାଲି ପଟେ ମହି ଦେବାକୁ ହେବ । ତାପରେ ଆମ ସୈନ୍ୟ ସାମନ୍ତମାନେ ବାର ବାର Experience ଦ୍ୱାରା ବେଶି ଧୁରନ୍ଧର ହୋଇଗଲେଣି । ପୁଣି ବର୍ତ୍ତମାନ ବୋର୍ଡ଼ଟା ଆମ ହାତରେ ଥିବାରୁ, ଲୋକଙ୍କୁ 'ହାତୀ ନେ, ଘୋଡ଼ା ନେ' high promis ଦେଖାଇ ଭୁଲାଇବା ଆମ ପକ୍ଷରେ ସହଜ । ସ୍କୁଲ ମାଷ୍ଟର ପ୍ରଭୃତି କେହି କେହି ଲୋଭରେ ହେଉ ବା କେହି ଡରରେ ହେଉ ଆମର ସାହାଯ୍ୟ କରିବେ । ଏତେ ଥାଉଁ ଥାଉଁ ଯଦି ଆମେ ନ ଜିତିବା ତ ଆଉ ଜିତିବ କିଏ ? କେବଳ ଦୁଃଖ ଏତିକି ଯେ, ଯେଉଁ ଦେବପ୍ରତିମ ହାକିମ ଜଣେ ଆମକୁ ପୂର୍ବାପର ଅନେକ ସାହାଯ୍ୟ କରି ଆସୁଥିଲେ, ସେ ନାହାନ୍ତି । ତାଙ୍କର ହଠାତ୍ ବାହାରି ଯିବାଟା ଆମର ମୁଣ୍ଡରେ ଅକାଳ ଚଡ଼କ ପଡ଼ିଲା ପରି । ଆଉ ଆମ Cause ର ଏତେ ହାନି ଘଟିଲା ଯେ, ଦେଶର ଉନ୍ନତି ଅନ୍ତୁରି ଦଶ ବର୍ଷ ପଛେଇ ଗଲା । ସେଥିପାଇଁ ସଭା ସମିତିମାନ କରି ଘୋର ଆନ୍ଦୋଳନ ଉପସ୍ଥିତ କରିବା ଉଚିତ । ତାହାହେଲେ ସରକାର ବି ବୁଝିବେ, ଆଉ ଲୋକେ ବି ଜାଣିବେ । ଏଣେ ଆମର ତା ସଙ୍ଗେ ସଙ୍ଗେ ନୂଆ ନିର୍ବାଚନ ପାଇଁ Propaganda work ଚାଲିବ । ଆଉ ସେ ଖବର ପାଇ ଆମର ସେହି ନିର୍ଯାତିତ ବନ୍ଧୁ ମନରେ କେତେକଟା ଆଶ୍ୱାସନା ପାଇବେ । ମୁଁ ଯେ ଏକଥା କହିଲି, ତାହା ଶୁଣୁଛି କିଏ ? ଆମ ସମସ୍ତଙ୍କର ଇଚ୍ଛା ସେଇଆ; କିନ୍ତୁ ବିଲେଇ ବେକରେ ଘଣ୍ଟି ବାନ୍ଧି ଆପଣାକୁ ବିପନ୍ନ କରୁଛି କିଏ ସେ ? ବୋଇଲା—'ଆରେ ଚଢା, ଆପଣା ବଞ୍ଚା ।' ସେହି ହାକିମଙ୍କ ବଦଳି ସଙ୍ଗେ ସଙ୍ଗେ ଆମ ଭିତରୁ ଅଧେ ଲୋକଙ୍କ କାରବାର ବ୍ୟବହାର ବଦଳିବାର ଦେଖାଗଲାଣି । କେହି କେହି ଖଦଡ଼କୁ ଅଠପହରି କରି, ହେଟ, କୋଟ୍ ଆସ୍ତେ ଆସ୍ତେ ଚଳାଇବାର ବନ୍ଦୋବସ୍ତ କଲେଣି । କାରଣ ଶୁଣାଯାଉଛି କି, ନୂଆ ହାକିମ ଯେ ଆସିଛନ୍ତି, ତାଙ୍କର କୁଆଡ଼େ ଭାରି ଖଦଡ଼ ବିଦ୍ୱେଷ ! ପାଠକେ ହସିବେ ନାହିଁ । ଆମ ଦଳର ରୀତି ଏହିପରି । ଯେତେବେଳେ ଯୁଆଡ଼ୁ ପାଣି ବରଷେ, ଆମେ ସେହି ଆଡ଼କୁ ଛତା ଦେଖାଉଁ ପରା ! ଆମେ ଆପଣାର କାମ ହାସଲ କରିବାପାଇଁ ଲୋକଙ୍କ ସାଙ୍ଗରେ ଦୋସ୍ତି କରିଥାଉଁ, ମାତ୍ର ତାହାର ବିପଦ ଦେଖିଲାକ୍ଷଣି ଆମେ ତାହା ମୁହଁକୁ ନ ଚାହିଁ ପଛଘୁଞ୍ଚା ମାରୁଁ । ନିଜର ଜାତି ବା ଦେଶର ଅପେକ୍ଷା ନ ରଖି, ଆପଣାର ଦାନାକୁ ବିପନ୍ନ କରି ଯେ ଆମର ଆଖିବୁଜା ଉପକାର କରିଗଲା, ଏବେ ସେହି ଲୋକର ବିପଦ ବେଳେ ଆମେ ଏପରି ଭାବ ଦେଖାଇଲୁଣି ଯେ, କାହାର ବାପର ସାଧ ନାହିଁ କହିବ, ତାଙ୍କ ସହିତ ଆମର କେବେହେଁ କିଛି ସମ୍ପର୍କ ଥିଲା ବୋଲି । କେବଳ ଚକ୍ଷୁଲଜ୍ଜାକୁ ଟିକିଏ ଟିକିଏ ଆମ୍ଭେ ଉଁ କାମୁଛୁ ହେଉଛୁଁ, ଏତିକି; ପୁଣି ତାହା ମଧ୍ୟ ଗୋପନରେ । ଯାହା ହେବାର ତ ହୋଇଗଲା, କେବଳ ଦୁଃଖ ରହିଗଲା ଏତିକି ଯେ, ସେ ବିଚାରି ଧନ ପ୍ରାଣରେ ମାରିଗଲେ, ଆଉ ତାଙ୍କ ବୁଦ୍ଧିରେ ପଡ଼ିଥିଲେ ଯେ କେତେଜଣ ତାଙ୍କର ଭଳିଆ କର୍ମଚାରୀ, ସେମାନେ ମଧ୍ୟ ଚେଁଖେ ପାଇଲେ ! ସେ ମହାଶୟ ଆମର ଅନେକ ଉପକାର କରି ଯାଇଛନ୍ତି । ସତ୍ୟ, ମାତ୍ର ସ୍ଥାୟୀ ଭାବରେ ଆମର କିଛି ସଂସ୍ଥା ନ କରି ଯିବାକୁ ଯେଉଁ ଶେଷ ଉଦ୍ୟମଟା ଭିଡ଼ିଥିଲେ, ତାହା ଈଶ୍ୱରଙ୍କ ଇଚ୍ଛାରୁ ପଣ୍ଡ ହୋଇଗଲା । ପରିତାପ ! ପରିତାପ ! ଏଇଟା କୃତକାର୍ଯ୍ୟ ହୋଇଥିଲେ

ସ୍ୱରାଜ ଇତିହାସରେ ତାଙ୍କ ନାମ ଅମର ହୋଇ ରହିଥାଆନ୍ତା, ଆଉ ଆମର ବାଳବାଳିକାମାନେ ନିତିସନ୍ଧ୍ୟା ତାଙ୍କର କଲ୍ୟାଣ କାମନା କରୁଥାନ୍ତେ । ଏହି ସେଦିନ ଗୋଟାଏ ଜିଲ୍ଲାରେ ଆମ ଦଳର ଲୋକମାନେ ଏହିପରି ଗୋଟାଏ ବେପାରରେ ଯେତେ ଲାଭ କରିଛନ୍ତି, ତାହାଦେଖି ଆମ ପାଟିରୁ ଲାଳ ଗଡ଼ୁଛି । ଏହା କେବଳ ବୁଦ୍ଧିର ଖେଳ । ଆମେ ଯଦି ସେତିକି ବୁଦ୍ଧି ଖେଳାଇପାରନ୍ତୁ, ତେବେ ଆମର କି ଦୁଃଖ ରହନ୍ତା ନାହିଁ । ଏ ବେପାରରେ ଉଭୟ ପ୍ରକାର ଲାଭ—ଧନ ଓ ମାନ । ଖୋଲିକରି କହେଁ ଯେ ଗୋଟାଏ ଜିଲାରେ ବନ୍ୟାଯୋଗୁଁ ଫସଲ ନଷ୍ଟ ହୋଇଗଲା । ସେଥିଯୋଗୁଁ ଚଳିତ ବର୍ଷ ଭାରି ଖାଦ୍ୟାଭାବ ହେଲା, ଲୋକେ ବଡ଼ କଷ୍ଟ ପାଇଲେ । ଏହି ସୁବିଧା ଦେଖି ଆମର ବେକାର ଦେଶହିତୈଷିମାନଙ୍କୁ ଗୋଟାଏ ନୂତନ ଉଦ୍ୟମର ପନ୍ଥା ମିଳିଗଲା । ସମ୍ବାଦ ଉପରେ ସମ୍ବାଦ, ପତ୍ର ଉପରେ ପତ୍ର, ପ୍ରବନ୍ଧ, ଟେଲିଗ୍ରାମ ପ୍ରଭୃତି ପଠାଇବା ରୂପ ସାମାନ୍ୟ ଖରଚ କରି ସମଗ୍ର ଭାରତବ୍ୟାପୀ ଗୋଟାଏ ମସ୍ତ ଆନ୍ଦୋଳନରୂପ ବେପାର ଲଗାଇ ଦିଆଗଲା । ଚାରିଆଡ଼େ ହା-ହୁତାଶ ପଡ଼ିଗଲା କି, "ଘୋର ଦୁର୍ଭିକ୍ଷ—ଅମୁକ ଜାଗାରେ ସହସ୍ର ସହସ୍ର ଲୋକ ଘାସ ପତର ଖାଇଯାଉଛନ୍ତି—ଶତ ଶତ କଙ୍କାଳସାର ହୋଇ ମରୁଛନ୍ତି ।" ଏଥିରେ ଗାନ୍ଧି କାନ୍ଦିଲେ, ଲଜପତ ଚିଲ୍ଲାର କଲେ, ଏଣ୍ଡ୍ରୁଜ୍ ଚାଲିମାରିଲେ । ସୁତରାଂ ପଇସାର ଅଭାବ ରହିଲାନାହିଁ । ନଈସୁଅ ପରି ସାରା ଦେଶରୁ ଏପରି କି, ବିଦେଶରୁ ମଧ୍ୟ ଟଙ୍କା ବୋହିଆସିଲା । ସରକାର ଯେତେ ନାହିଁକଲେ ବୁଝିବା ବାଧ୍ୟ ହୋଇ କିଛି କିଛି ସ୍ୱୀକାର କଲେ । ଯାହାହେଉ ଫଳରେ ଆମର କେତେଜଣ ନେତାଙ୍କ ନାମ ଚାରିଆଡ଼େ ବାଜିଗଲା, ଆଉ ଅଳ୍ପ ଦିନରେ—ସମସ୍ତଙ୍କର କୋଠାବାଡ଼ି ହେଉ ବା ନହେଉ—ହାତଟା ଚିକଣ ଧରିଗଲା ।

ଏହି ଜ୍ୱଳନ୍ତ ଦୃଷ୍ଟାନ୍ତ କାଲିକାର; ଆମ ଆଖି ଆଗରେ ନାଚୁଛି । ସେଥିପାଇଁ ଆମେ ବି ସେହିପରି ଗୋଟାଏ କିଛି କରିବାର ସୁବିଧା ଅନେକ ଦିନରୁ ଖୋଜୁଥିଲୁଁ । ଏତେ ଦିନେ ମିଳିଗଲା । ଆମର ବେଶି ସୁବିଧା ଯେ, ସରକାରଙ୍କ ବଡ଼ ହାକିମ ଆମ ହାତରେ । ଏପରି ସୁବିଧା କି ଛାଡ଼ିବାର କଥା । ହଠାତ୍ ଦିନେ ରାତି ପାହିଲାବେଳକୁ ଦେଶସାରା ଖବରକାଗଜରେ ଦୁର୍ଭିକ୍ଷ ସମ୍ବାଦ ଘୋଷଣା କରିହୋଇଗଲା । ଏହିପରି ଦିନାକେତେ ଲେଖାଲେଖି ଚାଲିଲା; ମାତ୍ର କପାଳ ଗୁଣକୁ ନାଗରୀ କଣା । ଏଥର ଗାନ୍ଧି କିଛି କହିଲେ ନାହିଁ, ଲଜପତ୍ ମାଲବ୍ୟ ଟଙ୍କା ଦେଲେନାହିଁ, ଏଣ୍ଡ୍ରୁଜ ବା ସମ୍ପର୍କନ୍ତୁ ଦଳ କିମ୍ବା ଭାରତ ସେବାସମିତି ଆସିଲେ ନାହିଁ । ତାହାବୋଲି ଆମେ ହଟିଯିବାର ପାତ୍ର ନୋହୁଁ । ଆମ ନିଜ ହାତରେ ଯେଉଁ ଖବରକାଗଜ ଅଛି, ସେଥିରେ ଖୁବ୍ ବଡ଼ ବଡ଼ ଅକ୍ଷର କରି ଲେଖିବାକୁ ଛାଡ଼ିଲୁ ନାହିଁ । ଲୋକେ ଘାସ ଖାଉଛନ୍ତି, କଙ୍କାଳ ସାର ହେଲେଣି, ମରିଗଲେଣି, ଇତ୍ୟାଦି ଯେତେ ଲେଖିଲେ ମଧ୍ୟ ଇଷପ୍ କଥାବଳୀର ସେହି 'ବାଘ ଓ ମେଷପାଳକ' କଥାପରି ଦେଶଲୋକେ ବା ଖବରକାଗଜବାଲାମାନେ କେହି ଶୁଣିଲେ ନାହିଁ । ଆମେ ବି ସହଜରେ ଛାଡ଼ିଲୁ ନାହିଁ । ହାକିମମାନଙ୍କୁ ମତାଇ ଗଭର୍ଣ୍ମେଣ୍ଟ ଉପରେ ଆନ୍ଦୋଳନ ଲଗାଇଲୁଁ । ସେଥିରେ କେତେକ କାର୍ଯ୍ୟ ହୋଇଗଲା, କିନ୍ତୁ ଆମର ଉଦ୍ଦେଶ୍ୟ ତ ସଫଳ ହେଲାନାହିଁ । ଫଳରେ ଆମର ଫନ୍ଦିସବୁ ଚାରିଆଖିଆ ସରକାରଙ୍କୁ ଅଛପା ରହିଲାନାହିଁ । ତହିଁକି ଆମ ଦେଶର କେତେକ ଅସହଣି ଲୋକେ ଆମ ବିରୁଦ୍ଧରେ ଫୋଡ଼ିଲେ । ଆମେତ ଚାରିଦାଉଡ଼ି କଥା, ନାଗା ବାଗା, ଆମର୍ କିଏ କଣ କରିବ ? କେବଳ କେତେଗୁଡ଼ିଏ ସରକାରୀ ଲୋକ ବଦନାମ ହୋଇଗଲେ, ଆଉ ଆମର ପ୍ରଧାନ ଭରସା, ବଳ, ମୁରବି (friend, philosopher and guide) ରୂପ ଜଣେ ନିର୍ଦୋଷ ପ୍ରାଣୀ ଆପଣାର ଜୀବିକା ହରାଇ ବରଫ ସେବନ କରିବାକୁ ବାହାରିଲେ । ଏହା ଏପରି ଆକସ୍ମିକ ଭାବରେ ହୋଇଗଲା ଯେ, ଭାବିବାକୁ ମଧ୍ୟ ସମୟ ମିଳିଲା ନାହିଁ । ସତେ ଯେପରି ଗୋଟାଏ electric shock ଲାଗିଗଲା । ଏବେ ଆମର 'ହା—ହତୋଽସ୍ମି' କରିବା ଛଡ଼ା ଆଉ କିଛି ନାହିଁ । ଖାଲି ଜଣକ ମୁହଁକୁ ଜଣେ ଚାହିଁ କହୁଛି—

"ହେଲା କିସ ?"

ଆର ଜଣକ ଉତ୍ତର ଦେଉଛି—

"ହେବ କିସ ?" ❋

---

❋ ୧୯୨୧ ମସିହାରେ ଯେଉଁ ଅସହଯୋଗ ଆନ୍ଦୋଳନ ହୋଇଥିଲା, ସେହି ଜାତୀୟ ସଂଗ୍ରାମ ସେତେବେଳେ ଯେଉଁସବୁ ତ୍ରୁଟି ଯୋଗୁଁ ସଫଳତା ଲାଭ କରି ପାରିଲା ନାହିଁ—ସେ ସବୁକୁ ବିଦ୍ରୂପ କରି କାନ୍ତକବି 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ଭାବେ ଏହି ଲଘୁ କାବ୍ୟର ପରିବେଷଣ କରିଥିଲେ ।

# ପଞ୍ଚାମୃତ

## (ହାସ୍ୟରସାତ୍ମକ ରାଜନୈତିକ ନାଟିକା)

**ନଟ ପରିଚୟ—**

| | | |
|---|---|---|
| ୧। ମହାରାଜ ଠାକେନ୍ଦ୍ରଜିତ୍ | | ୧ଜନକ ନଗରର ରାଜାଧିରାଜ |
| ୨। ବପୁବନ୍ତ ରାଓ | | ତସ୍ୟ ସେନାପତି ୨(ବଙ୍କେଶ) |
| ୩। ଭେପେଶ୍ୱର | | ୩କଣ୍ଟକପୁରର ସାମନ୍ତ ନରପତି |
| ୪। ଖଳବୁଦ୍ଧି | | ୪ନାଗରିକ |
| ୫। ସ୍ୱର୍ଣ୍ଣଦନ୍ତ | | ୫ନଗର କଟୁଆଲ |
| ୬। ଷଣ୍ଢେଶ୍ୱର | ... | ୬ବିଦ୍ୟା ଓ କୋଷାଧ୍ୟକ୍ଷ |
| ୭। ଖମ୍ବରାଜ | | ୭ଇରାବତୀପୁର ସାମନ୍ତ ନରପତି |
| ୮। ଲମ୍ବରାଜ | | ୮ଇରାବତୀ ରାଜଭ୍ରାତା |
| ୯। ମିଷ୍ଟର ମାଖୁନ୍ତ | | ୯ଫିରିଙ୍ଗି ରାଜକର୍ମଚାରୀ |
| ୧୦। ଦୁଲଦୁଲ ମିଆଁ | ... | ୧୦ରାଜକର୍ମଚାରୀ |
| ୧୧। କନ୍ଦର୍ପସେନ | | ୧୧ରାଜକର୍ମଚାରୀ |
| ୧୨। ଚକ୍ରସେନ | | ୧୨ରାଜକୀୟ ଖାସ୍ କର୍ମଚାରୀ |
| ୧୩। ଚନ୍ଦ୍ର ପଟ୍ଟଗଣ | | ୧୩ସୈନିକ |

---

୧। ସମ୍ଭବତଃ ତତ୍କାଳୀନ କନିକାରାଜାଙ୍କର 'ଠାକ' ବା ଚନ୍ଦାମୁଣ୍ଡକୁ ଲକ୍ଷ୍ୟକରି।

୨। ଭଦ୍ରକ ସହରର ବଙ୍କ ନାମକ ଗ୍ରାମର ମୁଖ୍ୟ—ସମ୍ଭବତଃ ତତ୍କାଳୀନ କନିକାରାଜାଙ୍କର ଉଚ୍ଚପଦସ୍ଥ ଦୀର୍ଘକାୟ କର୍ମଚାରୀ କାନ୍ତକବିଙ୍କର ଭଗ୍ନୀପତି।

୩। କଣ୍ଟାପାଡ଼ା ନାମକ ଭଦ୍ରକ ସବ୍‌ଡିଭିଜନର ଗୋଟିଏ ଗ୍ରାମ—ସମ୍ଭବତଃ ସେଠା ଜମିଦାରଙ୍କୁ ସାମନ୍ତ ଆଖ୍ୟା ଦିଆଯାଇଛି କବିଙ୍କର ମାତୁଳଗୃହ।

୪। ଭଦ୍ରକ ନଗରର ଜଣେ ବିଶିଷ୍ଟ ରାଜନୀତିଜ୍ଞ—ଅନୁମାନ କରାଯାଏ—କାନ୍ତକବିଙ୍କର ନିଜ ଭ୍ରାତା।

୫। ବାଲେଶ୍ୱର ନଗରର ତତ୍କାଳୀନ ଚେୟାରମ୍ୟାନ—ତାଙ୍କ ଦାନ୍ତରେ ସୁନା ମଣ୍ଡାଣ ହୋଇଥିଲା।

୬। ଭଦ୍ରକ ହାଇସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ। କବିଙ୍କର ଜଣେ ଶ୍ରେଷ୍ଠ ବାଲ୍ୟବନ୍ଧୁଙ୍କର ନାମକୁ ବିକୃତାର୍ଥ କରି ଷଣ୍ଢେଶ୍ୱର ରଖାଯାଇଛି।

୭। ଭଦ୍ରକ ସବ୍‌ଡିଭିଜନରେ ଥିବା ଇରମ ଗ୍ରାମର ବଡ଼ ଜମିଦାର—ସୁସ୍ଥ ସବଳ ପୁରୁଷ।

୮। ତାଙ୍କର ସାନଭାଇ ଖୁବ୍ ଡେଙ୍ଗା।

୯। ବାଲେଶ୍ୱର ଜିଲ୍ଲାର ତତ୍କାଳୀନ ଓଡ଼ିଆ ମାତ୍ର ସାହେବୀ କାଇଦାଷ୍ଟିତ କଲେକ୍ଟର ଯାହାଙ୍କର ନିଶ ଦାଢ଼ୀ ପ୍ରବଳ ନଥିଲା।

୧୦। ଭଦ୍ରକର ସବ୍‌ଡିଭିଜନାଲ ଅଫିସର—ପ୍ରତାପୀ। ଏ ତାଙ୍କ ପ୍ରକୃତ ନାମ ସହିତ ସାମଞ୍ଜସ୍ୟ ଅଛି—ଏ ନାମର।

୧୧। ଭଦ୍ରକର ସେକେଣ୍ଡ ଅଫିସର—କାନ୍ତକବିଙ୍କର କଲେଜ ସମସାମୟିକ ତାଙ୍କ ପ୍ରକୃତ ନାମର ନାମାନ୍ତର।

୧୨। ଭଦ୍ରକ ଖାସମହାଲର ଅଫିସର—ସେତେବେଳେ ନିସନ୍ତାନ ଥିଲେ।

୧୩। ବାଲେଶ୍ୱର ସହରର…'ଚନ୍ଦ୍ର ପଟ୍ଟନାୟକ' ଭ୍ରାତୃଗଣ।

# ପ୍ରଥମ ଅଙ୍କ

## ୧ମ ଦୃଶ୍ୟ

(୧ଭରଦ୍ୱାଜପୁରରେ ବପୁବନ୍ତ ରାଓ ଓ ଭୋପେଶ୍ୱର ବସି କଥୋପକଥନ ହେଉଅଛନ୍ତି ।)

ଭୋପେଶ୍ୱର—ଆସିଛନ୍ତି ମହାରାଜ ତ୍ୟଜି ଶୈଳବାସ୨
ଏହି ଗ୍ରୀଷ୍ମକାଳେ
ପ୍ରଜାଙ୍କର ଉପହାର ହେତୁ,
ଆହା ! ସହି କେତେ ପର୍ଯ୍ୟଟନ ବ୍ୟଥା
ସେହି କୋମଳ ଶରୀରେ
ଏହି ଭରଦ୍ୱାଜ ପୁରେ ।
କହ ସଖେ, ହୋଇଛି କି ଆୟୋଜନ
ରାଜୋଚିତ ସମ୍ବର୍ଦ୍ଧନା ପାଇଁ
ଅବା କେଉଁ ରାଜଭକ୍ତ ପ୍ରଜାଗଣ
କରିଛନ୍ତି ଶ୍ରଦ୍ଧା ସମର୍ପଣ ।
ବପୁବନ୍ତ ରାଓ—ତୁମ୍ଭେ ତ ରହିଲ ଯାଇଁ ସୁରାଙ୍ଗନାସନେ
ସୁମଧୁର ସ୍ରୋତସ୍ୱତୀ ସମୀର ସେବନେ
ଏକାକୀ ପକାଇ ମୋତେ ବନ୍ଧନ ଜଞ୍ଜାଳେ ।
ସୁସ୍ଥ ଦେହ ହୋଇଥିଲେ ହୁଅନ୍ତାନି ମାଟି
ଦିନରାତି ଖଟି ଖଟି ଖଟି,
ହଗିବାକୁ ମୁତିବାକୁ ନାହିଁ ଫୁରୁସତ
ଭୋଜନେ ଶୟନେ କାହିଁ ସୁଖ
ଦେଖିବାକୁ ୩'ଦର୍ପଣ'ରେ ମୁଖ
ଏଣେ କିନ୍ତୁ ପଟାପଟ ବସୁଛି ଗୁରୁକ ।
ଭୋପ—ତୁମ୍ଭେ ତ କହିଲ ଖାଲି ଆପଣାର କଥା
ବଖାଣିଲ ବ୍ୟଥା
ନାହିଁ ମୁଣ୍ଡ ମଥା
ମୋ କଥାରେ ନ ଦେଲ ଉତ୍ତର ।
ବପୁ—କି ଦେବ ଉତ୍ତର ଆଜ ଅଛି କେଉଁ ସଜ
ସରିଲାଣି ସକଳ ମଉଜ ।
ଏହିଥର ସୁବ୍ୟବସ୍ଥା ନ ହୋଇଲେ କିଛି
ନିଶ୍ଚୟ କହୁଛି—
ତୁମ୍ଭର ଆମ୍ଭର ଏକା ଗଣା ହେଲା ଦିନ ।
ଶୁଣ ସଖେ ! ହୋଇଅଛି ବିପୁଳ ସମ୍ଭାର ।
ଚନ୍ଦ୍ରସେନ ଆଦି କରି ବନ୍ଧୁ ବନ୍ଧୁ ସୁର
ସ୍ୱଦେଶୀ ବିଦେଶୀ ଖାନା ପ୍ରସ୍ତୁତ—ତତ୍ପର ।
ରାଜଦ୍ରୋହେ ପ୍ରଜାଗଣ ସ୍ୱେଚ୍ଛାରେ ନ ଦେଲେ ଶ୍ରଦ୍ଧା ।
ଯେବା ଦେଲେ, କେହି ଅବା ହେଲେ ସ୍ୱାର୍ଥ ଆଶେ
ଅବା କେହି ଭୟେ ଭୟେ ସର୍ପର ନିଶ୍ୱାସେ ।
ବାକୀ ଯାହା ନ ଅଣ୍ଟିବ,
ରାଜକୋଷୁ ହୋଇବ ଉଠାଣ ।
(ଖଳବୁଦ୍ଧି ପ୍ରବେଶ ହେଲେ)
ଆସ ଭାଇ ଖଳବୁଦ୍ଧି !
ଆମ୍ଭେମାନେ ପଡ଼ିଛୁଁ ବିପଦେ;
ତୁମ୍ଭେ ପ୍ରତ୍ୟୁତ୍ପନ୍ନମତି ଏହିକାଳେ ଲୋଡ଼ା !
ଖଳବୁଦ୍ଧି—ଆମ୍ଭର କୌଶଳେ ତୁମ୍ଭେ ଜିଣିଲ ଅବାଡ଼ ।
ଖଟି ଖଟି ଦିନ ରାତି
ମରାଇଲ ଜାତି ।
ହାଣ୍ଡି ପୁଅ ଶୁଣ୍ଢୀ ନାତି
ବସିଲେ ଆସନେ ।
୪ବୋଲଣ ରାଜ୍ୟରେ ତୁମ୍ଭେ ହେଲ ଅଧୀଶ୍ୱର;
ଆମ୍ଭ ଭାଗ୍ୟେ ହେଲା କିନ୍ତୁ କଦଳୀଟି ସାର ।
ତୁମ୍ଭ କଳ, ତୁମ୍ଭ ଛଳ, ତୁମ୍ଭର କୌଶଳ
ଆମ୍ଭ ପକ୍ଷେ ହେଲା ହଳାହଳ;
ପୁଣି କପାଁ ଲୋଡ଼ୁଛ ଆମ୍ଭକୁ ?
ବପୁ—ଯା' ହେବାର ହୋଇଗଲା
ଏବେ ଆସ ଭଲା !
ନ କର ନିରାଶ,
ଛାଡ଼ କଟୁ ଭାଷ !
ଖଳ—ଶୁଣ ଆମ୍ଭ ବୋଲ,
ତୁମ୍ଭ ଦଳ ହେଲେଣି ନିର୍ମୂଳ ।
ପୁନର୍ବାର ସକଳଙ୍କୁ ଡାକ ରାଜଗୃହେ;
ଭୁଞ୍ଜାଅ କାଳିଆ, କୁର୍ମା, ଦଧି ଓ ପାୟସ,
ରାଜାଙ୍କର ଶ୍ରୀମୁଖରୁ ଶୁଣାଅ ସାବାସ,
ଥୋଇଦିଅ ବଡ଼ ବଡ଼ ଆଶା ।

---

୧ । ଭଦ୍ରକ । ୨ । କନିକାର ରାଜା ବିହାର ଓଡ଼ିଶାର ଏକଜକଟିଭ କାଉନ୍‌ସିଲରେ ଥିବାବେଳେ ଖରାଦିନେ ରାଞ୍ଚିରେ ବାସ କରୁଥିଲେ ।

୩ । କନିକା ଦଳର ମୁଖପତ୍ରର ନାମ ଥିଲା "ଦର୍ପଣ ।"

୪ । ବାଲେଶ୍ୱର ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ।

ମଧୁର ସମ୍ଭାଷା
ମେଣ୍ଟାଇ ପିପାସା;
ପିଠି ପାଇ ଯାଉ ଥରେ ଶ୍ରୀକର ଆଉଁସା ।
ଭୋପ - ଧନ୍ୟ ଧନ୍ୟ ଖଳବୁଦ୍ଧି ଧନ୍ୟ ତୋ କୌଶଳ,
କ୍ଷୀଣ ଦେହେ ଧନ୍ୟ ବୁଦ୍ଧି ବଳ !
ବୁଝିଲି ୧ଅଫିମ ଅଟେ ଜଗତେ ଅତୁଳ ।
(ମହାରାଜା ଝାଟେନ୍ଦ୍ରଜିତ ପ୍ରବେଷ୍ଟ ହେଲେ)
ଝାଟେନ୍ଦ୍ର—ସକଳେ ତ ମିଳିଅଛ କି ବ୍ୟୂହର ଏବେ—
ସବୁ ତ ମଙ୍ଗଳ ?
ଭୋପ—ମହାରାଜ !
ଆମ୍ଭଙ୍କୁ ରଖାଇ ଦେଇ ୨ବାଲୀଶ ନଗରେ,
ଧରି ଦେଇ ଭାଲୁର ଲାଙ୍ଗୁଳ
ନିଜେ ଆଶ୍ରା କଲ ଶୈଳ କୋଳ ।
ଏବେ ଭାଙ୍ଗିଲାଣି ଦଳ;
କି କରିବ କହନ୍ତୁ ଉପାୟ ।
ରାଜା—ବଜ୍ରଭାରି ମସ୍ତକେ ଆମ୍ଭର,
ଏହି କାର୍ଯ୍ୟ ଚିନ୍ତିବାକୁ ନାହିଁ ତ ସମୟ ।
ତୁମ୍ଭେ ଯାହା କରିବ ପ୍ରସ୍ତାବ,
ତାହା କରିବାକୁ ଅମ୍ଭେ ସର୍ବଦା ପ୍ରସ୍ତୁତ ।
ଭୋପ—ଛତ୍ରଭଙ୍ଗ ଏବେ ଆମ୍ଭ ଦଳ,
ଆମ୍ଭ ପକ୍ଷ ସବୁରେ ଦୁର୍ବଳ ?
ଛାଡ଼ିଲ ବନରୁ ଛାମୁଁ
ନେତାଭାବେ ସ୍ୱାମୀହୀନା ଅବଳାଙ୍କ ପରି
ରହିଅଛୁ ବିବାସ ଶର୍ବରୀ,
ଖାଇ ଖାଇ ବିପକ୍ଷଙ୍କ ଗୋଇଠା ପ୍ରହାର ।
ଛାମୁ ଥରେ କରିଣ ଆହ୍ୱାନ,
ସର୍ବ ହୃଦୟରେ କରି ନବ ଜୀବଦାନ,
ଇନ୍‌ଜେକ୍‌ସନ କରନ୍ତୁ ଅର୍ପଣ ।
ଦୁଲ ଦୁଲ, ମାଖୁନ୍ଦା ଆଦି କର୍ମଗୁରୁଗଣ
କରନ୍ତୁ ଆଦେଶ ସର୍ବେ, କରନ୍ତୁ ପ୍ରେରଣ,
ନ ରହିବ ସତ୍ତା ଯେହ୍ନେ ବିପକ୍ଷ ପକ୍ଷର
ଆଗନ୍ତୁକ ନିର୍ବାଚନ କାଳେ ।
ମହାରାଜ—ଅତ୍ୟୁତ୍ତମ ପରାମର୍ଶ !
ଯାଅ ତେବେ ବନ୍ଧୁବୃନ୍ଦ କନକନଗରୀ,
ମହାଭୋଜୀ କର ଅୟୋଜନ,
ତାର ବାର୍ତ୍ତା କରିଣ ପ୍ରେରଣ
ଚନ୍ଦ୍ର ପଞ୍ଚଗଣେ ତଥା ସ୍ୱର୍ଣ୍ଣଦନ୍ତ ଆଦି—
ଆସନ୍ତୁ ସରବେ ।
ଭରଦ୍ୱାଜ ପୁରେ ଯେତେ ନାୟକ ମଣ୍ଡଳୀ
ସରବେ ମିଳିବେ ତହିଁ ମଠର ବାହନେ ।
ସୁରପୁରୁଁ ଅଣାଇବ ଦେବରାଜେ ଡାକି
ଅନ୍ୟ ଯେଉଁ ବନ୍ଦୋବସ୍ତ କରିବ ସର୍ବଥା ।

## ୨ୟ ଦୃଶ୍ୟ

(କନକନଗର ରାଜପ୍ରାସାଦର ନିର୍ଜ୍ଜନ ପ୍ରକୋଷ୍ଠରେ
ଝାଟେନ୍ଦ୍ରଜିତ୍ ଏକାକୀ ବସି ଚିନ୍ତା କରୁଅଛନ୍ତି)
ଝାଟେନ୍ଦ୍ର—ପେଶିଅଛୁ ତାର ବାର୍ତ୍ତା ଅବା ଡାକ ଲିପି
ସର୍ବ ସ୍ଥାନେ, ଅତି କୌଶଳରେ ।
ମିଳିବେ ଏ ସ୍ଥଳେ ଆଜି ବୀରେନ୍ଦ୍ର ମଣ୍ଡଳୀ ।
ହତୋତ୍ସାହ ବୀରବୃନ୍ଦେ
କରିବାକୁ ହେବ କିଛି ଆଶ୍ୱାସନା ଦାନ ।
ହୋଇବ ନିର୍ଣ୍ଣୟ ଏଥି ସମରର ନୀତି,
କି କୌଶଳେ ଜଣିବାକୁ ହୋଇବ ଅସ୍ଥିତ ।
(ଜନୈକ ରାଜକର୍ମଗୁରୁ ପ୍ରବେଶ କରି)
ଝାଟେନ୍ଦ୍ର—କି—ଯାଇଥିଲ ବୁଝିବାକୁ ଭିତରର କଥା ?
କହ କି ଖବର ।
ମୋ' ପ୍ରଜାଏ ପରମାଦ ଗଣନ୍ତି କି ନାହିଁ ?
ନୂତନ କ୍ଷମତା ମୋର ଦେଖି ?
ରାଜକର୍ମଗୁରୁ—ବିଦ୍ରୋହୀ ପରଜାବୃନ୍ଦ ୩ପଞ୍ଚମୁଖ ଯୋଡ଼ି
ରଚିଛନ୍ତି ୪ଚକ୍ରବ୍ୟୂହ, ଦୁର୍ଭେଦ୍ୟ, ଅଗମ୍ୟ,
ହତମାନ କରୁଛନ୍ତି ରାଜ ଆଦେଶକୁ;
ଯେଉଁ କୁଠାରକୁ ସେହି କରନ୍ତି ଧାରଣ
ବୁଦ୍ଧି ବଣା ହେଉଅଛି ଯିବାକୁ ତା' ଆଗେ ।
ଝାଟେନ୍ଦ୍ର—ଅତି ଭ୍ରାନ୍ତ, ଅତି ଭ୍ରାନ୍ତ !
ଦୂରେ ରହି କରିଛି ମୁଁ ଶକଟ ସଞ୍ଚୟ,
ଶୈଳାଗ୍ରେ ବସିଣ ତହୁଁ ଚଳାଇବ କଳ,
କନ୍ଦର୍ପ, ଦୁଲ ଦୁଲ ଆଦି ଯେତେ ମୋର ବଳ
ନାଚିବେ ନିର୍ଭୟେ ଏଥି ସେହି ଅନୁସାରେ ।

---

୧ । ଖଳବୁଦ୍ଧି ଅଫିମ ଚେଣ୍ଡର ଥିଲେ ।
୨ । ବାଲେଶ୍ୱର ।
୩ । କବିକାନ୍ତର୍ଗତ ପଞ୍ଚମୁଖୀରୁ ଲକ୍ଷ୍ୟକର
୪ । ରାଜାଙ୍କ ବିରୁଦ୍ଧ ପ୍ରଜାଦଳର ନେତାଙ୍କ ନାମ ଚକ୍ରଧର ।

ନୁହେଁ ମୁଁ ଫୁଲଶ ବନ୍ଧୁ !
ଯାଅ ଏବେ ଚଳି ।
(ସାଙ୍ଗକର୍ମଗୃସ୍ତ ପ୍ରସ୍ଥାନ କଲା ଓ ଅନ୍ୟ ଜଣେ କର୍ମଗୃସ୍ତ ପ୍ରବେଷ୍ଟ ହେଲେ)

ଭୃତ୍ୟ—ପ୍ରଭୁଙ୍କ ଅଦେଶେ ଅଜ
ସମସ୍ତ ପ୍ରକାର ଖାନା ହେଉଛି ପ୍ରସ୍ତୁତ ।
ଲଣ୍ଡା-ପଣ୍ଡା ଭକ୍ଷ୍ୟ ପ୍ରକାର ।

ଝାଡେନ୍ଦ୍ର—ନାହିଁ ଦରକାର
ରନ୍ଧନର ଭକ୍ଷ୍ୟ ପ୍ରକାରେ ।
ଲଣ୍ଡାଖାନା ଯୋଗ୍ୟ କେହି ନ ଆସିବେ ବ୍ୟକ୍ତି;
ଯେତେକ ଅତିଥି
ସକଳେ ମୋ ଅନୁଗ୍ରହ ପ୍ରାର୍ଥୀ ।
ତେବେ କିଛି ଯଥାଯୋଗ୍ୟ କରିବ ପ୍ରସ୍ତୁତ ।
ଯାଅ ତ୍ୱରା—
(ଭୃତ୍ୟ ପ୍ରସ୍ଥାନ କଲେ ଓ ବପୁବନ୍ତ ଗଳଦ୍‌ଘର୍ମ ହୋଇ ପ୍ରବେଷ୍ଟ ହେଲେ)
(ହସି) ଅସିଲକି ବପୁବନ୍ତ,
ଅସ ବନ୍ଧୁ ! ବସ ଏ ଅସନୋପରି ।
ବପୁବନ୍ତ ଦଣ୍ଡବତ ହୋଇ ଗୋଟିଏ ବେଣ୍ଟ ଉଡ୍ (bent wood) ଚେୟାରରେ ବସି ପଡ଼ିଲାକ୍ଷଣି ତାହା ଖଣ୍ଡ ଖଣ୍ଡ ହୋଇଗଲା ଓ ବପୁବନ୍ତ ଶବ୍ଦମାତ୍ର ହୋଇ ପପାତ ଧରଣୀ ତଳେ) ।

ଝାଡେନ୍ଦ୍ର—ନିତାନ୍ତ ଅସାବଧାନ ଅଟ ବପୁବନ୍ତ
ଆପଣା ଓଜନ ତୁମ୍ଭେ ନ ପାରୁଛ କଳି ।
ମୁଣ୍ଡ ବଳି ବସିଅଛ ଉଚ୍ଚ ଅସନରେ
ସେହିଭଳି ଚଳିବାକୁ ହେବ ଦୁନିଆରେ ।
(ବପୁବନ୍ତ ଝାଡ଼ଝୁଡ଼ି ଛିଡ଼ା ହୋଇ ରହିଲେ)

ପୁନରାୟ ଝାଡେନ୍ଦ୍ର—କହ ବନ୍ଧୁ ବପୁବନ୍ତ,
ତୁମ୍ଭଙ୍କୁ ମଝିରେ ଏକ କରିଛି ପ୍ରଦାନ;
ତେବେ କାହିଁ ଗଳଦ୍‌ଘର୍ମ ହେଉଅଛ ଖାଲି ?
ନବଘନେ ବହେ ଶ୍ୱାସ
ଉଡ଼ିଲାଣି ବାସ,
ହେଉଅଛି ବାଷ
ନିର୍ଗମଇ ଗ୍ୟାସ,
ଦେଖି ଲାଗେ ତ୍ରାସ !
ଅସ ଅସ,
ବସ ହେ ବନ୍ଧୁକେଶ
ଭାଷ ହେ ସନ୍ଦେଶ,
ଚଉଳ ଗଲ କି ଖରା ତାପରେ ତରଳ ?
(ବପୁବନ୍ତ ଚେକୋମାଡ଼ି ବସି ଚଷମା ପୋଛୁ ପୋଛୁ କହିଲେ—)

ବପୁ—ପ୍ରଭୋ, କର କ୍ଷମା ଏ ଦାସଙ୍କୁ;
ଅତିଶୟ ପରିଶ୍ରମ ହୋଇଅଛି ମୋର,
ନାହିଁ ନିଦ୍ରା ନାହିଁଟି ଅହାର,
ଘୁରି ଘୁରି ଦ୍ୱାରେ ଦ୍ୱାରେ ହୋଇଲିଣି ସାରା ।
ବାଲୀଶନଗରଠାରୁ ଉଦ୍ରଦ୍ୱାର ଯାକେ
ପ୍ରତି ଘର ଘରେ ବୁଲି କଲି ଅରାଧନା ।

ଝାଡେନ୍ଦ୍ର—କହ ତେବେ ବନ୍ଧୁ,
କେଉଁ କେଉଁ ଧୁରନ୍ଧର ଅସୁଛନ୍ତି ବହି
ଶ୍ରାଦ୍ଧ କରିବାକୁ ମୋର ଖ୍ୟାତିମାଛ—ଦହି ?

ବପୁବନ୍ତ—୧କଣ୍ଟକପୁରର ନାଥ ଆସିବେ ପ୍ରଥମେ,
ତପ୍ତ ବୈତରଣୀ ସ୍ରୋତେ ଯେହୁ କର୍ଣ୍ଣଧାର,
ଜ୍ଞାନ ଗର୍ବେ ବାବଦୂକ ଅଟନ୍ତି ଯେ ପୁଣି,
ରାଜକାର୍ଯ୍ୟ ତମ୍ଭ ମଧ୍ୟେ ଅଟନ୍ତି ଅଗ୍ରଣୀ,
ସ୍ତବମାନ ତାଙ୍କ ଜ୍ଞାନ ଜଳେ ତୈଳ ପରି
ମାତ୍ର ବନ୍ଧୁ ପ୍ରସାରକ;
ସର୍ବକ୍ଷେତ୍ରେ ଚୁମ୍ବକ ଚୁମ୍ବକ ।
ଧର୍ମ ଜ୍ଞାନେ, ସାଧନରେ ଅଟନ୍ତି ମହକ;
ଅବର ସେ ଯତ୍ତ ଜଣେ,
ଯେଣୁ ପ୍ରତି ବର୍ଷେ କରୁଛନ୍ତି ପ୍ରଜା ବୃଦ୍ଧି ।
ସ୍ତଜ୍ୟର ଦକ୍ଷିଣ ଭାଗେ ରହୁଛନ୍ତି ଜଗି
ଦଗ ବାର ରୂପେ,
ବାଉନସିଲ୍ ଥୋପ ହଲାଇ ଅଗରେ
ରଖିବାକୁ ହେବ ତାଙ୍କୁ କରି କରଗତ ।

ଝାଡେନ୍ଦ୍ର—(ହସି)
ପିଠିରେ ଦୁଇଟା ଗୋଟେ କହିଁଲ ଗୁପୁଚା
ଚରଦନ ରଖିଦେବ କରି ତାଙ୍କୁ ଦାସ ।

୧ । କଣ୍ଟାପାର (କଣ୍ଟକପୁର) ଗ୍ରାମ ବୈତରଣୀ କୂଳରେ ।

ବପୁ—ଅଛୁର ଅସନ୍ତି ପ୍ରଭେ ଚନ୍ଦ୍ରପଛଗଣ
ନାରାୟଣୀ ସେନା ସମ ମହା ବଳବାନ,
ବଂଶପାକ ଛନ୍ତି ରାଜ କାର୍ଯ୍ୟ ସାଧନରେ ।
ଝାକେନ୍ଦ୍ର—ଅଚ୍ଛା – ସମ୍ଭାଷେଦେବ ପଦଟିଏ ତାଙ୍କର ମଞ୍ଜୁର ।
ବପୁ—[1]ଶ୍ରୀଧର [2]ଗଣେଶ ଆଦି କେତେକ ବୈଦିକ
ଆସିବେ ଟ୍ରେଲଣ ଦେଇ ଅଛନ୍ତି ଜବାବ ।
ଝାକେନ୍ଦ୍ର—ଯଥେଷ୍ଟ ମର୍ଯ୍ୟାଦା ତାଙ୍କୁ ହୋଇଛି ତ ହିଆ,
ତେବେ, କହ ଯାଦବଙ୍କୁ
ଦେଇଦେବ ଏଣୁ ତେଣୁ କେଶ୍ ଗୋଟେ ଗୋଟେ
ବପୁ—ଇରବତୀ ପଣ୍ଡଗଣ ଆସିବେ ଅଛୁର୍
[3]ପନ୍ତ କୂଳବାସୀ,
[4]ଅଶେଷ ମହୁଷୀ-ନାଥ ଅଟନ୍ତି ସେମାନେ ।
ଝାକେନ୍ଦ୍ର—[5]ଓଃ ଭେଡ଼େଶ ବୃନ୍ଦ !
ବସାଇବା ତାଙ୍କୁ ନେଇ ଆଗମ କେଦାରେ ।
ବପୁ—(ମୁଣ୍ଡ କୁଣ୍ଡାଇ କୁଣ୍ଡାଇ)
ଆଉ ଆସୁଛନ୍ତି ପ୍ରିୟ,
[6]ଜମେଦାର ନିଜେ
ଅତି ବେଗ ହୋଇ,
ଆପଣା ବାସ୍ତୀୟ ଯାନେ;
ଖଣ୍ଡ ମଣ୍ଡଳ ଈଶ୍ୱର ଅଟନ୍ତି ସେ ସ୍ଥାନେ—
ଝାକେନ୍ଦ୍ର—ରହ, ରହ, ଚିହ୍ନେ ମୁହିଁ ତାଙ୍କୁ;
ସେ ପରା ଅଟନ୍ତି କଏ ତୁମ୍ବୁର—
ଯାଙ୍କ ଯଶୋଗାନେ ତୁମ୍ଭେ ସହସ୍ର ବଦନ ?
ବର୍ଷ ଲଭି ପୁରସ୍କାର ପାଉଛନ୍ତି ସେ ତ;
ଦୁଲ ଦୁଲ, କନ୍ଦର୍ପର
ଅନୁଗ୍ରହ ପାଇ;
ସଙ୍କେପାକ ବଶ୍ୱାମିତ୍ର
କିନ୍ତୁ, ସେ ଯେ ହଂସ ମଧ୍ୟେ ବକ !
ବପୁ—ଯେ ଆଜ୍ଞା,
ଝାକେନ୍ଦ୍ର—ଅସ୍ତୁ, ବପ୍ତ୍ର,
[7]'ସାଗର' ଯାଇଛି ଶୁଖି;
ଅଛି [8]'ଦିବାକର', ଏକେଶ୍ୱର,
କହ ତା' ବାରତା ।
ବପୁ—କି କହିବ ତାଙ୍କ କଥା ?
ଗୃହାର ହିସାବ ଯେନି ହୋଇ ସନ୍ଧିହାନ,
କରିଛନ୍ତି ଅଭିମାନ ସେହୁ ।
ହୋଇ ବେଜୁଁ ସାବଧାନ,
କାର୍ଯ୍ୟ କାଳେ କେବେ ଦେଉ ନାହାନ୍ତି ଅମଳ ।
ଝାକେନ୍ଦ୍ର—(ରାଗି)
ଏହା ସବୁ ଅଟେ ସେହି ଷଣ୍ଡେଶ୍ୱର କାଣ୍ଡ,
ଗର୍ବିତ ପ୍ରଚଣ୍ଡ;
ଅମୃତର ଭାଣ୍ଡ ।
ନ ଜାଣି ମୁଁ ଦେଲି ତାଙ୍କ ହାତେ,
ସବୁ ହେଲା ଲଣ୍ଡଭଣ୍ଡ;
ହିସାବରେ ନାହିଁ ମଥା ମୁଣ୍ଡ—
ସବୁ କଲା ପଣ୍ଡ;
କାହିଁ ସେହି ଷଣ୍ଡ, ଭଣ୍ଡ, ଗଣ୍ଡ ?
ଖଣ୍ଡ ଖଣ୍ଡ କରିବ ତାହାକୁ ।
(ଅସି ନିଷ୍କାସନ)
ବପୁ—(ଥର ଥର)
କାର୍ଯ୍ୟ ଅନୁଯୋଗେ ସେ ତ ନ ପାରିବେ ଆସି,
ଝାକେନ୍ଦ୍ର—ଲଭଣ [9]ହାକିମଗିରି ପାଶୋରିଛି ସବୁ,
[10]ମିଆଁଙ୍କର ପିଆଁ ଧାରି;
ଅତି ଅହଙ୍କାରୀ;
ପଦେ ପଦେ ଭୁଲୁଛି କର୍ତ୍ତବ୍ୟ ?
ଆଉ କେ ଆସିଛି କହ—
ବପୁ—ଆଉ ଆସିଛନ୍ତି, ନାଥ, ଖଲବୁଦ୍ଧି,
ଭରଦ୍ୱାଜ ପୁରେ ଯେହୁ ମଣ୍ଡଳ ଈଶ୍ୱର,
ଯାହାଙ୍କର ତୀକ୍ଷ୍ଣ ବୁଦ୍ଧି ବଳେ;
ହାରିଲେ ଅରାତି,
ପାଇ 'ମହାତାପ'[11]

---

୧ । ଓ ୨—ଲକ୍ଷ୍ମୀଧର ଓ ଗଣେଶ ନାମକ ଆଇନଜୀବୀ—ଜନୈକ ଦଳସ୍ଥ ଭଦ୍ରବ୍ୟକ୍ତି ।
୩ । ସମୁଦ୍ର ପର୍ଯ୍ୟନ୍ତର ଇରମ (ଇରବତୀ) ଅବସ୍ଥିତ ।
୪ । ମଇଁଷି ମଧ୍ୟ ଏ ଅଞ୍ଚଳରେ ପ୍ରଚୁର ।
୫ । ଏ ଅଞ୍ଚଳକୁ ଭେଡ଼ା (ପ୍ରଗନାର ନାମ) କୁହାଯାଏ ।
୬ । ଓଗଫ 'ତମ୍ପି'—ଜ ନ୍ତକବଙ୍କ ପିତୃବ୍ୟ
୭ । କଲିକତାର ବିଖ୍ୟାତ ବ୍ୟବସାୟୀ ରତ୍ନାକର ।
୮ । ଉଦ୍ଧୃତ—ଭାସ୍କର ନାମଧେୟ ଭଦ୍ରବ୍ୟକ୍ତି ।
୯ । ଅନରାରୀ ମାଜିଷ୍ଟ୍ରେଟ୍ ।
୧୦ । ଭଦ୍ରକ ସବଡ଼ିଭିଜନାଲ ଅଫିସର ମୁସଲମାନ ।
୧୧ । ହରେକୃଷ୍ଣ ମହତାବଙ୍କୁ ଲକ୍ଷ କର । ତାଙ୍କୁ ନିର୍ବାଚନ ମକଦ୍ଦମାରେ ସେ ହରାଇଥିଲେ ।

ଯାହାଙ୍କ କୌଶଳେ ପୁଣି,
ସୃଷ୍ଟି ଏହି ମହାଡମ୍ବର ।
ଝାଟକେନ୍ଦ୍ର—ଜାଣେ ତାଙ୍କୁ ।
କ୍ଷୀଣ ଦେହେ ଧରେ ସେହି ଅପାର କୌଶଳ
କାପଟ୍ୟର ଅଟେ ଦନ୍ତସ୍ଥଳ ।
ଆପଣା ଦୁର୍ବୁଦ୍ଧି ବଶେ,
କଳା ନାଗେ ନ ଛୁଇଁବ କେବେ ।
ଥିବ ସାବଧାନେ ।
ବପୁ—୧'ଦନ୍ତବକ୍ର' ବୋଲି ଜଣେ ଅଛନ୍ତି ସଙ୍ଗରେ ।
ଝାଟକେନ୍ଦ୍ର—କହିଦିଅ ସୁପକାରେ
ଚର୍ଚ୍ଚିବ ତାହାଙ୍କୁ,
କରି ପେଟ ଭରା—
ବପୁ—ହୋଇଲାଣି ସଭାର ସମୟ,
ଆଗତ ବୀରେନ୍ଦ୍ରଗଣ ।
ଝାଟକେନ୍ଦ୍ର—ଚାଲ ତେବେ—
ସମସ୍ତଙ୍କୁ ଆପ୍ୟାୟିତ କରିବା ସତ୍ୱର ।
ବଶୀକରଣ ବିଦ୍ୟାରେ ଅଟେଁ ସିଦ୍ଧକର ।

## ତୃତୀୟ ଦୃଶ୍ୟ

( କନକ ନଗରର ରାଜଭବନରେ ସଭାକକ୍ଷ ସୁସଜ୍ଜିତ ହୋଇଅଛି; ଗାଲିଚା ଓ ଫରାଶ ଉପରେ ଆଗନ୍ତୁକ ବୀରବୃନ୍ଦ ବଡ଼ ବଡ଼ ତକିଆ ଠେସି ବସିଛନ୍ତି; ମହାରାଜାଙ୍କ ପାଇଁ ବନାରସୀ ଆସନ ରହିଅଛି । ବୟ (boy) ଗଣ ପାନ ସିଗାରେଟ ପ୍ରଭୃତି ଯୋଗାଉ ଅଛନ୍ତି; ବିଜୁଳି ପଙ୍ଖା ଘୁରୁଅଛି । ଓ ତଦ୍ୱାରା ସଞ୍ଚାଳିତ ପବନରେ ଲେଭେଣ୍ଡାର ଓ ଫରାସୀ ଏସେନ୍‌ସର ସୁଗନ୍ଧ, ସିଗାରେଟ ଧୂଆଁ ସହିତ ମିଶି ଏକ ଅଭିନବ ଫ୍ଲେଭାର ସୃଷ୍ଟି କରୁଅଛି । )

ଖମ୍ବରାଜ—ଭାଇ ଲମ୍ବରାଜ,
ରାଜ୍ୟ ସୁଖ ଏହି ସିନା ।
କନକ ରାଜାଙ୍କ ଏହି ବିପୁଳ ସମ୍ପଦ,
ଏ ବିରାଟ ସାଜସଜ୍ଜା
ମନେ ଜଗାଉଛି କେତେ ଆଶା ନବ ନବ ।
ଇଚ୍ଛାହୁଏ, ଅର୍ଥ ଓ ସାମର୍ଥ୍ୟ ଥିଲେ
ଏହିକ୍ଷଣି ଯାଇ,
ହଲ ଏଣ୍ଡ ଏଣ୍ଡେରସନେ ଦିଅନ୍ତି ଅର୍ଡ଼ର ।
ଇରାବତୀ ନଗରକୁ କରି ପରିଣତ
ଦ୍ୱିତୀୟ କନକପୁରେ,
ମେଣ୍ଟାଅନ୍ତି ଜୀବନ ପିପାସା ।
ଲମ୍ବରାଜ—ଏଥିପାଇଁ କି ଭାବନା, ନନା !
ତବ ଅନୁମତି ହେଲେ,
ଏଥର ଫାଇନାଲ୍ ବିଲ୍ ପାଇଲା ମାତ୍ରକେ
ଚାଲିଯିବ ଉଇକ୍ ଏଣ୍ଡ ଟିକେଟ କରି
ଆର୍ମି-ନେଭି, ହ୍ୱାଇଟ ଓ୍ୱେ, ହଲ୍ ଏଣ୍ଡର୍ସନେ,
ସମସ୍ତ ସିଲେକ୍ଟ କରି ଆଣିବ ଜିନିଷ;
ବଦଳିଯିବ ଇରାବତୀ କନକ ନଗରୁଁ ।
ଖମ୍ବ—ଅଚ୍ଛା ଭାଇ,
ବଡ଼ ହୁଏ ସାଧ,
ଆମ୍ଭର ପ୍ରାସାଦେ ଫିଟ୍ ହୋଇ ପାରନ୍ତା କି
କୃତ୍ରିମ ବିଜୁଳି ଶକ୍ତି, ଅଳ୍ପ ରକମର ।
ଅନ୍ତତଃ କୋଡ଼ିଏ ବତୀ, ପାଞ୍ଚଗୋଟି ଫ୍ୟାନ୍ ।
ଲମ୍ବ—ଏହା ତ ସାମାନ୍ୟ କଥା,
ଇଲେକ୍ଟ୍ରିକ ପ୍ଲାଣ୍ଟମାନ
ଅଳ୍ପ ମୂଲ୍ୟବାନ,
ହୋଇଲାଣି ଆଜିକାଲି ।
ଭାବିଅଛି ମୁହିଁ,
ଏଥର ଆଣିବ ଗୋଟେ ରେଡ଼ିଓର ସେଟ୍ ।
ଯହିଁ ବସି ପ୍ରତି ସନ୍ଧ୍ୟାକାଳେ,
ପଙ୍ଖାର ପବନ ତଳେ
ସୁଦୂର ସଙ୍ଗୀତ ଶୁଣି କରିବା ମଉଜ ।
ଖମ୍ବ—(ଉଲ୍ଲାସରେ)
ନିଶ୍ଚୟ ଆଣିବୁ କହ, କହ, ମୋହ ରାଣ
ଭାଇ ମୋର,—
ଭୋପ—(ବାଧା ଦେଇ)
କପାଁ ଏତେ ହେଉଛ ଅନନ୍ଦ,
ଇରାବତୀ ଈଶ ?
ଖମ୍ବ—ଏଥର ଆଣିବ ଲମ୍ବ, ପହିଲ ବେଳକୁ
ଉଆର୍‌ଲେସ୍ ସେଟ୍ ଆଉ
ଇଲେକ୍ଟ୍ରିକ ପ୍ଲାଣ୍ଟ୍ ।

---
୧ । ଭାନ୍ତକବଙ୍କର ଅନ୍ୟ ଏକ ଭ୍ରାତା ତାଙ୍କର ଦାନ୍ତ ବେହେଢ଼ା

ଭୋପ—ଛି-ଛି – ସେଗୁଡ଼ାକ, ଅତି 'ବାଜେ' !
ବିଜ୍ଞାନର ଠକାମି ସେ ସଭ୍ୟତାର ଫାଙ୍କି
ବୃଥା ଅର୍ଥ ନ କର ବିନାଶ,
ମନ ଦେଇ ଶୁଣିପ୍ରଭୁ ।
କଲ ହେବେ, କର ସେବା ନିସର୍ଗ ପଦାର୍ଥ,
ମୋହପର ।
ନୋହିଲେ ମୁଁ ବହୁଦିନୁଁ କରିଥାନ୍ତି ସବୁ ।
ତହୁଁ ବଳି, କେତେ କଥା
ଆମ୍ଭର ଜଣ୍ଟିକପୁରେ କିଛି ନାହି ଊଣା,
ମେଣ୍ଟେଲ ଟେଲିପାଥି ହେତୁ ।
ରେଡ଼ିଓର ନାହିଁ ପ୍ରୟୋଜନ,
କିମ୍ବା ଇନ୍‌ଭେନ୍‌ସନ,
ଅପେ ଅପେ ତଡ଼ିତର ଶକ୍ତି
ଜଡ଼ିତ ଯହିଁରେ, ପ୍ରୀତି, ଭକ୍ତି, ଯୁକ୍ତି, ମୁକ୍ତି ।
ମନସାଧେ ଆସୁଅଛି ଠେଲି,
ଦକ୍ଷିଣା ପବନ ଯହିଁ,
କେଉଁ କାର୍ଯ୍ୟ ଇଲେକ୍‌ଟ୍ରିକ ଫେନେ ?
ଆଣିବ ତ ଆଣିପାର, ଯଦି ହୁଏ ଇଚ୍ଛା,
ଏକମାତ୍ର ଏରୋପ୍ଲେନ,
ଯାହା ଅଟେ ଭାରତୀୟ ଇନ୍‌ଭେନ୍‌ସନ,
ପୁଷ୍ପକର ରୂପାନ୍ତର ମାତ୍ର,
ଲେଖାଅଛି ଇତିହାସେ ।
ଖମ୍ବ—କି ରୂପେ କରିବା ତାହା,
ମୂଲ୍ୟ କେତେ ତାର ?
ଭୋପ—ଆମ୍ଭ ରାଜ୍ୟ, ତୁମ୍ଭ ରାଜ୍ୟ ଦୁହେଁ,
ଏକରୂପେ ଅବସ୍ଥିତ,
ଶତ୍ରୁର ଦୁର୍ଗମ୍ୟ
ବିଶେଷତଃ ବର୍ଷାକାଳେ
ଯମ କରେ ଭୟ !
ଏରୋପ୍ଲେନ ଛଡ଼ା ଆଉ ନାହିଁ ତ ଉପାୟ ।
ନିକଟେ କିଣିବେ ଫୋର୍ଡ଼ ଶସ୍ତା ଏରୋପ୍ଲେନ,
କହିବ ତ, ଦୁଇଟି ମେସିନ ପାଇଁ,
ଅର୍ଡ଼ର କରିବା ବୁକ୍, ହୋଇ ଅଗଭର ।
ସିପିଂ, କ୍ୟାରେଜ, ଫ୍ରେଟ୍ ନ ଲାଗିବ ଯାର,
ଅମ୍ଭେକୁଁ ଉଡ଼ି ଉଡ଼ି ଆସିବ ସତ୍ୱର ।
'କାବାଳି' ନାମକ ଜଣେ ଭାରତୀ ସାରଥି,
ହେବେ ଇଞ୍ଜିନିୟର ପାଇଲଟ;
ତୁମ୍ଭେ ଦେବ ପେ, ମୁହିଁ ପୁରାଇବ ପେଟ ।
( ଏହି ସମୟରେ କାବାଳୀ ବାଜଲି ଓ ନିକମ ଅଦ୍ଭ ମନ୍ତ୍ରିମାଙ୍କ ବିଜେ ଘୋଷଣା କଲେ । ସକଳେ ଆସନ ଛାଡ଼ି ଛିଡ଼ା ହୁଅନ୍ତେ, ମହାରାଜ ଝାକେନ୍ଦ୍ରଜିତ ବପୁବନ୍ତ ସମଭିବ୍ୟାହାରରେ ସଭାଗୃହେ ଉପନୀତ ହେଲେ । ସକଳେ ନତମସ୍ତକ ହୋଇ ନମସ୍କାର କଲାପରି ମହାରାଜା ପ୍ରତ୍ୟେକଙ୍କ ନିକଟକୁ ଯାଇ ଅଳ୍ପ ନଇଁପଡ଼ି ଓ ଈଷତ୍ ହସି ଦକ୍ଷିଣ ହସ୍ତରେ କରମର୍ଦ୍ଦନ କଲେ ଓ କୌଣସି କୌଣସି ଭାଗ୍ୟବାନଙ୍କ ପିଠିରେ ଯୁଗପତ ବାମହସ୍ତ ସଞ୍ଚାଳନ କଲେ । ତଦନନ୍ତର ଆସନ ଗ୍ରହଣ କରି ସମସ୍ତଙ୍କୁ ବସିବାକୁ ଅନୁମତି ଦେଲେ । ତତ୍ପରେ ନର୍ତ୍ତକୀଗଣ ପ୍ରବିଷ୍ଟ ହୋଇ ନୃତ୍ୟସହ ଗୀତାରମ୍ଭ କଲେ । )

(ଗୀତ)

ଅଜି ଆସିଛୁଁ, ଅଜି ଆସିଛୁଁ ବନ୍ଧୁ ହେ,
ଘେନ ଏହି ପ୍ରେମ ଉପହାର ।
ଖରା ସହି, ବାଆ ଖାଇ, ଆସିଛୁଁ ତୁମ୍ଭର ପାଇଁ,
ବହୁ ଦୂରୁଁ ଚଢ଼ି ମଟରକାର ।
ତୁମସନେ ହସି ହସି—କହିବୁଁ ପଦଏ କଥା,
ତୁମର ଚରଣତଳେ ଲୋଟାଇବୁଁ ବୋଲି ମଥା,
ତୁମ ଘର ଦହି, ଫିଶ୍
ତୁମ ଇଂଲିଶ୍-ଡିଶ୍,
ଗୁଟି ଗୁଟି କରିଦେବୁଁ ପାର ॥
ତୁମ ପାର୍ମ-ସୁ' ତାଳେ, ସ୍ଥାନଟିଏ ଦେବ ତଳେ,
କରୁଛୁଁ ଏତିକି ଅବଦାର ॥
( ଗୀତାନ୍ତେ ନର୍ତ୍ତକୀଗଣ, ମହାରାଜ ଓ ବୀରମାନଙ୍କ ଗଳାରେ ପୁଷ୍ପମାଳ ପ୍ରଦାନ କରି ପ୍ରସ୍ଥାନ କଲେ )
କେନ୍ଦ୍ର—ଆଗତ ବୀରେନ୍ଦ୍ର ବୃନ୍ଦ,
ଆସିଛ ସକଳେ ଆଜି କନକ ନଗରେ,
ଦରିଦ୍ର କୁଟୀରେ,
କର ସର୍ବେ ସାର,
କେମନ୍ତେ ହୋଇବ ରକ୍ଷା ସ୍ୱାର୍ଥ ଓ ସମ୍ମାନ ।
ସ୍ୱର୍ଣ୍ଣଦନ୍ତ—ନବରାଜ୍ୟ ପାୟୀ ଛାମୁ,
ରହିଛ ପ୍ରବାସେ,
ଭୁଲେଛ ଏ ଦାସେ,
ସିଂହ ଯଥା ଯାୟ ବନାନ୍ତରେ ।

ଏ ଧାରେ ଅଶ୍ୱତ ବୃନ୍ଦ,
ଭେଦିଲ ବାଲୀଶ ଦୁର୍ଗ,
କତ ଛଲ କରେ ।
ଆଣ୍ଡିଛେ ନା ପେଟରେ
ହଇଅଛି ଛତ୍ରଭଙ୍ଗ ମୋର
ଠାକେନ୍ଦ୍ର — ମାରବେ ମୁଁ ବସିଅଛି,
ଅଛି ସମାହୃତ,
ଦିବାରାତ୍ର ଶୟନେ ସ୍ୱପନେ ।
ସ୍ୱର୍ଣ୍ଣଦନ୍ତ — କିନ୍ତୁ ଯେ ଏ ଧାରେ
ପତିହୀନା ସତୀ ପ୍ରାୟ,
କିବା ଏଁଡ଼େ କପି ଶୂନ୍ୟ,
କପିମା ଯୂଥେର ମତ
ଲଣ୍ଡଭଣ୍ଡ ହୟା ଗେନୁଁ ଶତ୍ରୁର ଦାପଟେ ।
ଠାକେନ୍ଦ୍ର—କୌଶଳେ ନିର୍ମାଣି ଦୁର୍ଗ ବାଲୀଶ ନଗରେ,
ରକ୍ଷାଭାର ଦେଇଗଲି ବପୁବନ୍ତ ହସ୍ତେ,
ହୋଇଲି ନିଶ୍ଚିନ୍ତ;
ସମ୍ଭାଳି ନ ପାରି ସେହି ହେଲେ
ହେତ୍ତ ନେତ୍ତ ! କି କରିବ ମୁହିଁ ଏବେ ?
ଭୋପ—ବିତର୍କରେ ନାହିଁ କିଛି ଲଭ,
ଉପାୟ କରନ୍ତୁ ସାର ।
ଠାକେନ୍ଦ୍ର—ତୁମ୍ଭେ ନେଇ ଦର୍ପଣର ଭାର,
ଅଯତନେ ଦେଉଛ ବିଗାଡ଼ି ।
ଦ୍ୱିମୁଖ ନ ଦେଖି ତଥା,
ଏକ ମୁଖେ କହିବଟି କଥା ।
ପରସ୍ପର ପରିଚ୍ଛନ୍ନ ରଖିବ ସର୍ବଥା,
ଭୋପ—ବହୁ ବ୍ୟକ୍ତି କରନ୍ତି ସାହାଯ୍ୟ,
ମାତ୍ର ନିଜ ଯନ୍ତ୍ର ବିନୁ
ନାନା ବିଘ୍ନ ଘଟୁଅଛି ସଦା ।
ଠାକେନ୍ଦ୍ର—ଗଚ୍ଛିତ ଅର୍ଥରୁ ନେଇ
ପଞ୍ଚଦଶ ଶତ ମୁଦ୍ରା,
ନିର୍ମାଣିବ ଯନ୍ତ୍ର ।
ମୋ ସ୍ଥାନ ଅଟଇ ସଙ୍ଗିନ,
ପ୍ରକାଶ୍ୟେ ସାହାଯ୍ୟ କରି ନ ପାରିବ କିଛି ।

ତେବେ ମୁଁ ଦେଉଛି ଘଣ୍ଟ
ଆମ୍ଭ ଯୁବଗଣଙ୍କେ;
ତାଙ୍କୁ ନେତା କରି କାର୍ଯ୍ୟ ନେବଟି ଚଳାଇ
ଗିଳାଇ ଗିଳାଇ ଦେଉଥିବ ଉପଦେଶ ମୁହିଁ
ବଳାଇବ ନାହିଁ ଆଉ ।
ଆଜି ତ ଏତିକି,
ଆଉ ଯାହା ଗୋପନୀୟ କଥା,
କହିଯିବ ବପୁବନ୍ତ ପାଶେ ।
ଶେଷରେ କରୁଛି ମୁହିଁ ଏହି ଅନୁରୋଧ,
ଆପଣା ଆପଣା ମଧ୍ୟେ ନ କରିବ ଭେଦ ।
ଶୁଣୁଛି କିଛିତ ଭେଦ ହୋଇଅଛି ଏବେ ।
ବପୁ—ସେଥିପାଇଁ ଦାୟୀ,
ରାଜ କର୍ମଚାରୀଗଣ;
ଆମ୍ଭ ଦୋଷ ନାହିଁ କିଛି ପ୍ରଭୋ ।
ଠାକେନ୍ଦ୍ର—ମାତ୍ର ତୁମ୍ଭେ ଠ୍ୟାକ୍‌ନିକେଲ ସମ୍ଭାଳି ନ ପାରି,
କରିଅଛ ସବୁ;
ତୁମ୍ଭ ଲାଗି ବାବୁ
୧'ଦିବାକର' ହେଲେ ଅସ୍ତମିତ,
୨ଶୁଖିଲା 'ସାଗର',
୩'ସୌମିତ୍ରୀ' ପଡ଼ିଲେ ଗଡ଼ ଶକ୍ତି ଶେଲ ଖାଇ
ଗୃହୁଁ ଗୃହୁଁ ବନ୍ଧୁଜନ କେତେ
ଶତ୍ରୁପକ୍ଷେ ହେଲେ ଉପନୀତ ।
ବହିଲା ବହୁତ,
ଅଶ୍ୱତର ଦାଉ ।
ବପୁ—ଅଳ୍ପବୁଦ୍ଧି ଦାସ ମୁହିଁ,
କ୍ଷମାକର ମୋତେ;
ଜ୍ଞାନ ମାନ ସବୁ ତୁମ୍ଭ ହାତେ;
ରଖନ୍ତୁ, ମାରନ୍ତୁ ପ୍ରଭୁ ଯାହା ତବ ଖୁସି ।
ତେବେ ଯଦି ହୋଇଛି ମୁଁ ଦୋଷୀ,
ସେନାପତି ପଦୁଁ କାଢ଼ି,
ଶ୍ରୀଘ୍ର ମୁ କରଣ ପଦେ କରନ୍ତୁ ବାହାଲ ।
ସ୍ୱର୍ଣ୍ଣ—ନା-ନା—ତୁମି ବଡ଼ ଭାଲ;
ଯେନ ଏକଟି ଗୋବରେର ତାଲ ।
ଥାକ ଏଇଖାନେ ।

୧ । କନିକା ପକ୍ଷର ଜଣେ ରଥୀ, ସମ୍ଭବତଃ କଲିକତାର ବିଖ୍ୟାତ ବ୍ୟବସାୟୀ 'ଭୂସ୍ୱାଁ ଶ ଭାସ୍କର ଚନ୍ଦ୍ର' ।
୨ । କନିକା ପକ୍ଷର ଅନ୍ୟତମ କଲିକତା ବ୍ୟବସାୟୀ ସମ୍ଭବତଃ 'ଶ୍ରୀ ରତ୍ନାକର ଦାସ' ।
୩ । ସମ୍ଭବତଃ 'ଲକ୍ଷଣ' ନାମକ ଜଣେ କନିକା ଦଳୀୟ ବ୍ୟକ୍ତି ନିର୍ବାଚନରେ ହାରିଥିଲେ—ତାଙ୍କୁ ଲକ୍ଷ କର ।

ବପୁ—ଅର ପଡ ଗୁଁତାର ସହନେ !
ଝାଡେନ୍ଦ୍ର—ନାହିଁ, ନାହିଁ, ହୁଅନାହିଁ ହତୋତ୍ସାହ,
ଅରାତିର ସାମାନ୍ୟ ପ୍ରହାର,
ନ ଭେଦିବ ବୋଲି ତୁମ୍ଭ ବରାହ ଚରମେ,
ତୁମ୍ଭଙ୍କୁ ରଖିଛୁ ତଥା ।
କାଶରୁ ଅକାଳ ଚଡ଼କ
ପଡ଼ିବ ଅରାତି ମୁଣ୍ଡେ ଉଭି ।
ମୁହିଁ ମଧ ଚଳାଇବ କାଇଁଶିକା ଶର;
ଏଣେ ଛତ୍ର ଧୁରନ୍ଧରଗଣ;
ଏକାକୀ ସେ ଦୁଲ ଦୁଲ, ଅଳମ୍ବୁଷ ସମ
ମେଘ ଉହାଡ଼ରେ ରହି କରଇ ଲଢ଼ାଇ ।
ପଞ୍ଚବାଣ ହୋଇଅଛୁ କନ୍ଦର୍ପ କରରେ;
ନିଶ୍ଚୟ ଅରାତି ଦର୍ପ ହେବ ଚୂର୍ଣ୍ଣୀଭୂତ ।
ଦିଶିଲଣି ପୂର୍ବର ଲକ୍ଷଣ,
ସେନାପତିଗଣ,
ଗୋଟି ଗୋଟି ପଡ଼ୁଛନ୍ତି ଖସି,
ଯେସନେ ପାଚିଲା ତାଳ ଖସଇ ଆଷାଢ଼େ;
ଆଜଠାରୁ କୁମାର ଆମ୍ଭର
ଯୌବରାଜ୍ୟେ ହେଲେ ଅଭିଷିକ୍ତ
ନେତାରୂପେ ମାନିବ ତାହାଙ୍କୁ ।
ଚିନ୍ତା ନାହିଁ କିଛି;
ଅଳ୍ପଥରେ ଅଣ୍ଟାଭିଡ଼ି ଛୁଡ଼ା ହୁଅ ଭଲେ,
ଦେଖିବ ବାକିଶ ରାଜ୍ୟ ହୋଇଯିବ ସଫା ।
ହୋଇବ ଆମ୍ଭର,
ଅବିଚ୍ଛିନ୍ନ ବିଳାସର ଚିର ଲୀଳାସ୍ଥଳ ।
ଏବେ ଉଠ ସଭାଭଙ୍ଗ କରି,
ଥଣ୍ଡା ହୋଇଯିବ ତେଣେ ପୋଲାଓ, କୋର୍ମା, କାରି ।
(ସକଳେ କରତାଳି ପ୍ରଦାନ କରି ଗାତ୍ରୋତ୍‌ଥାନ କଲେ ।
ବପୁବନ୍ତ ସମସ୍ତଙ୍କୁ ଗୋଟି ଗୋଟି ସମ୍ଭାଷଣ କରି
ଅନ୍ତିକକୁ ଆହ୍ୱାନ କଲେ )
ବପୁ—ଭାଇ ଭୋପେଶ୍ୱର,
ଫିଙ୍ଗିଦିଅ ସିଗାରେଟ,
ଟିକେ ମୁଖ କର ପ୍ରକ୍ଷାଳନ,
ବିଶାଳ ଗର୍ଭରେ ବାୟୁ ଦେବନି କୁହାଟ;
ଛଟ ଛଟ ହୋଇବନି ନାଡ଼ୀ ।
ଭୋପ—ସର୍ବସାଧାରଣ ସନେ ଅମ୍ଭେ କି ସମାନ ?
ଡାକୁଛ ଆମ୍ଭକୁ ! ନାହିଁ ଟିକିଏ ହିସାବ !
ହାତୀ ମୁଖେ ଚୁମ୍ବ ଦିଏ ହାତୀ ।
ଯିବ ଆମ୍ଭ ଜାତି,
ସାଥୀରେ ବସିଲେ ତେର ଗୋଲି ବାର ଜାତି;
ପତିତ ଆସନ କର ନିଭୃତ ଏକାନ୍ତେ ।
ବପୁ—କାହିଁ ଗଲେ ଇରାବତୀ ଈଶ ?
ଭୋପ—ଆଖିରୁ ଚଷମା ଖୋଲି ଚାହିଁ ଭଲକରି,
ଆରାମ କେଦାରର ପରେ ଅଛନ୍ତି ପହୁଡ଼ି,
ଟେକି ଦେଇ ଦୁଇ ଜଙ୍ଘ ବସ୍ତ୍ର ବେସବୁର,
ମହିଷ ନିନ୍ଦିତ ସ୍ୱରେ ଘୁଙ୍ଗୁଡ଼ି ଗର୍ଜ୍ଜନ,
ନାସିକାର ଧ୍ୱନି କିବା ଘଡ଼ଘଡ଼ ହୋଇ,
ଯଥା କୁମ୍ଭକର୍ଣ୍ଣ ।
(ବପୁବନ୍ତ ଚଷମା ବାହାର କରି ଭଲ କରି ଦେଖିଲେ ଓ
ଶୋଇଥିବା ଖମ୍ବରାଜଙ୍କ ନିକଟକୁ ଗମନ କରି ତାଙ୍କ
ଅଙ୍ଗରେ ହସ୍ତ ସଞ୍ଚାଳନ କଲେ )
ବପୁ—ଉଠ ଉଠ ଇରାବତୀ ପତି,
ଉଠ ହେ ଝଟତି
ଅତି ନିଦ୍ରା ନୁହଇ ଉଚିତ;
କାଳେ ତୁମ୍ଭ ଲଣା ଭାଣ୍ଡ ଯିବଟି ନିଗଡ଼ି ।
(ଖମ୍ବରାଜ ସାଁ—ସାଁ ହୋଇ ସମଟି ଉଠିଲେ )
ଖମ୍ବ—ଭାସ୍କର ପୂଜକ ଆମ୍ଭେ, ନୈଷ୍ଠିକ ବ୍ରାହ୍ମଣ,
ବେଦ ପାଠେ ମନ,
ଆଜ ପୌରବାରେ କେବେ ନ ଛୁଇଁ ଆମିଷ ।
ବପୁ—(ହସି)
ସୁପକ୍ୱ ମୃଗ ମାଂସ ହୋଇଛି ପ୍ରସ୍ତୁତ,
ନାହିଁ ବାଧା ଦ୍ୱିଜର ଭକ୍ଷଣେ ।
ଯେବଣ କନକ ମୃଗ ପଛରେ ଗୋଡ଼ାଇ
ହରାଇଲେ ଶ୍ରୀରାମ ଜାନକୀ,
ସେହି ମାଂସ ଏହା,
କନକ ପୁରର ପେତ୍ନୁ ଅପୂର୍ବ ସମ୍ପଦ ।
ମାରି ନୁହେ ମାୟା—
ତ୍ରେତାଯୁଗ ମୃଗ ପରି ।
ନିରାଟ, କଠିନ ସତ୍ୟ ବଂଶ ଶତାବ୍ଦୀର ।
ଭୋପ—ଓ ହୋ ! ସତେ, ପଡ଼ିଗଲା ମନେ,
ଆଜପରା ଏକାଦଶୀ !
ପରମ ବୈଷ୍ଣବ ପକ୍ଷେ ଅଲଟି ନିଷେଧ ।

ସେନାପତେ, ଆମ୍ଭ ପାଇଁ କର ଯାଇ
ସ୍ୱତନ୍ତ୍ର ବ୍ୟବସ୍ଥା ।
ଯହିଁ ବସ୍ତା ବସ୍ତା
ଥୋଇବ କମଳା, ଲିଚୁ, ଆମ୍ବ ଓ କଦଳୀ,
ଯାହା କରି ଶେଷ
ପାରଣା କରିବୁଁ ଥୋଡ଼ା ଦହି ଓ ସନ୍ଦେଶ ।
ଆସ ଭାଇ ଲମ୍ଭ, ଖମ୍ଭ,
ଆମ୍ଭେ ତିନିଜଣ,
ବନ୍ଧୁଙ୍କର ମନରକ୍ଷା ପାଇଁ,
ଅଳ୍ପ କିଛି କରିବା ସାବାଡ଼ ।
( ସକଳେ ପ୍ରସ୍ଥାନ କଲେ )

( ୪ର୍ଥ ଦୃଶ୍ୟ )

( ବିଶ୍ରାମଗାରରେ ରାଜସଭାଧୀଶ ଠାକେନ୍ଦ୍ରଜିତ ବସିଅଛନ୍ତି ଓ ବପୁବନ୍ତ ସ୍ମୁରେ କରଯୋଡ଼ ଦଣ୍ଡାୟମାନ ହୋଇ ଅଛନ୍ତି )

ଠାକେନ୍ଦ୍ର—ସରିଲାଣି ଖାନା ପିନା,
ଏବେ ହେଉ ଦବାସୃର ପାଳି
ବପୁ—ଯେତେକ ବୀରେନ୍ଦ୍ରବୃନ୍ଦ ସର୍ବେ
ସର୍ବେ ଶ୍ରୀସ୍ମୁଙ୍କ କରୁଣା ଭିଖାରି,
ସେହି ଆଶା କରି,
ମିଳିଛନ୍ତି ଦଳେ ସର୍ବେ ।
ଆପଣା ଆପଣା କଥା ସ୍ମୁଙ୍କ ଆଗରେ
ନ କହିଲେ କିଛି,
ନ ଶୁଣିଲେ ସ୍ମୁଙ୍କ ବଦନୁଁ,
ପଦେ ଅଧେ ଆଶ୍ୱସନା ବାଣୀ,
ହୋଇବେ ନିରାଶ;
ମୋତେ ପୁଣି ମଣିବେ ସେ
ଭେପ, ଅପଢଆ,
ଠାକେନ୍ଦ୍ର—(ହର୍ଷ) ଆଚ୍ଛା ହେଉ,
ଆସନ୍ତୁ ସେ ଜଣ ଜଣ କରି;
(ବପୁବନ୍ତ ବୈଦ୍ୟୁତିକ ଘଣ୍ଟା ଚିପିଲେ । ଭେପେଶ୍ୱର ପ୍ରବିଷ୍ଟ ହେଲେ )
ଠାକେନ୍ଦ୍ର—ଆସ ଆସ, କଣ୍ଟକର ନାଥ,
ଭେପ—ରହିନୁଛି ଦବାସୃ ଦାସ;
[1]ଅଳ୍ପକାଳେ ଅମ୍ବରତ ପୂରିଯିବ କାଳ,
କି ଯେନି ବାନ୍ଧିବ ତଦନ୍ତରେ
ସ୍ମୁଙ୍କ ଆଦେଶ ବଳେ,
ନୁଅନ୍ତା ଯଦ୍ୟପି ଖଣ୍ଡେ [2]ଅନାଡ଼-ହାକମି
କୁଳମାନ ରହନ୍ତା ବଜାୟ;
ଠାକେନ୍ଦ୍ର—ତୁମ୍ଭ କଥା ଭୁଲିବାକି ସତେ !
ଅଗ୍ଗ—ନମସ୍କାର
( ଭେପେନ୍ଦ୍ର ବାହାରି ଗଲେ, ଘଣ୍ଟା ବାଜିଲା ଓ ଧୂର୍ତ୍ତଦନ୍ତ ପ୍ରବିଷ୍ଟ ହେଲେ । )
ଧୂର୍ତ୍ତ—ଆପନାର ଅନୁଗ୍ରହେ ପାଇଅଛି ଆମି
ଯେ ସମ୍ମାନ, ଜଗତେ ଦୁର୍ଲ୍ଲଭ ।
ଆର କିଛୁ ଚାଇନା ଗୋ,
କେବଳ ସେ ଦୟାଟିକ ଥାକେ ଯେନ ସଦା
ବିଶେଷତଃ ନବବର୍ଷ ଆରମ୍ଭେର କାଲେ ।
ଠାକେନ୍ଦ୍ର—ମନେତେ ଥାକିବେ ।
ଅଗ୍ଗ—ନମସ୍କାର
(ଧୂର୍ତ୍ତ ବାହାରିଗଲେ ଓ ଚନ୍ଦ୍ରପଞ୍ଚଗଣ ପ୍ରବିଷ୍ଟ ହେଲେ)
ପ୍ରଧାନଚନ୍ଦ୍ରପଞ୍ଚ—ସ୍ମୁଙ୍କୁ ଭରସା କରି ଅଛିନ୍ତି ଦଉଡ଼ି,
ଦେହମୁଣ୍ଡ ଗଲାଣି ଛଉଡ଼ି,
ନ ମାଗୁଛି ପଇସା କଉଡ଼ି,
ସ୍ମୁ ମୋର ଅନ୍ଧାର ଲଉଡ଼ି
ନ ଦେବେ ଘଉଡ଼ି
ଯେଉଁଠେ ଫତେ ହେଲେ କାମ୍ ।
ସ୍ମୁଙ୍କ ଶ୍ରୀକରୁ କିଛି ମିଳନ୍ତା ଇନାମ୍
ନବବର୍ଷେ—
ଠାକେନ୍ଦ୍ର—ଆପଣାର କର୍ମବିନା ଲଭେ ପୁରସ୍କାର
କର୍ମ କର—
ଇନ୍ଦ୍ରପଞ୍ଚ—ପିଲାଏ ଏକା ଲାଗିଲେ ସ୍ମୁଙ୍କୁ !
ଠାକେନ୍ଦ୍ର—ଉତ୍ସାହୀ ଯୁବକ ବୃନ୍ଦ,
ସ୍ୱାର୍ଥତ୍ୟାଗୀ, ପୁଣି ରାଜଭକ୍ତ ।
ଅଗ୍ଗ—ରହିବ ମୋ ମନେ ।
(ଘଣ୍ଟା ବାଜିଲା ଓ ଇନ୍ଦ୍ରପଞ୍ଚଗଣ ବାହାରି ଯାଇ ଷଣ୍ଢେଶ୍ୱର ପ୍ରବିଷ୍ଟ ହେଲେ )
ଠାକେନ୍ଦ୍ର—କିଏ ଷଣ୍ଢେଶ୍ୱର,

---

୧ । କଲବୋର୍ଡ଼ ଭାଇସ୍ ଚେୟାରମ୍ୟାନ ପଦ ।
୨ । ଅନାଡ଼ ହାକମ—ଅନରାରୀ ମାଜିଷ୍ଟ୍ରେଟ ।

ତୁମ୍ଭଙ୍କୁ ତ ନଥିଲି ମୁଁ ଦେଖି,
ବପୁବନ୍ତ କହୁଥିଲେ, ନ ଆସିବ ବୋଲି ।
ଷଣ୍ଢ—ବହୁ କାର୍ଯ୍ୟ ଛାଡ଼ି
ଉଠି ପଡ଼ି, ଖାଇଣ ହୁଙ୍କୁଡ଼ି,
ଦଉଡ଼ି ଆସିଛି ମୁହିଁ ଗୁରୁଙ୍କ ଆଦେଶେ ।
ଝାଙ୍କେନ୍ଦ୍ର—ତୁମ୍ଭ କଥା ପଡ଼ିଥିଲା ଆଜି;
ଗୋଟାଏ ଦାୟିତ୍ୱ, ଷଣ୍ଢ,
ମୁଣ୍ଡାଇ ମୁଣ୍ଡରେ,
ବହୁ କାର୍ଯ୍ୟ କରିଅଛ ପଣ୍ଡ,
ପ୍ରକାଶ ନ କରି ଦାଣ୍ଡେ
ରାଜକୀୟ ଫଣ୍ଡର ହିସାବ
ଷଣ୍ଢ—ସେ ଦୋଷଟି ନୁହଇ ମୋହର,
ଆନ ଗଣ ନ ଦେଲେ ହିସାବ,
ମୋତେ ମିଛେ ପକାଇଲେ ତଣ୍ଡେ ।
ଝାଙ୍କେନ୍ଦ୍ର—ଯାହାହେଉ, ତୁମ୍ଭ ଦୋଷ ଧରିବେ ସମସ୍ତେ;
ଜଣେ ମୁହିଁ ତୁମ୍ଭେ ସତ୍ୟବନ୍ତ,
ମାତ୍ର ଅଛୁ ବଡ଼ ମୋହବଶ,
ସେଥିଯୋଗୁଁ ପାଉଅଛୁ ଦଣ୍ଡ ।
ଷଣ୍ଢ - ମସ୍ତକରେ ହେଲା ବଜ୍ରଘାତ,
ନାହିଁ ଗୁରୁ
ମାରିବାକୁ ଦଣ୍ଡେ ଫୁରୁସତ
ତହିଁକି କରନ୍ତି ବ୍ୟସ୍ତ ବିଦ୍ରୋହୀ ମଣ୍ଡଳୀ
ଛାତ୍ରବୃନ୍ଦେ ଶିକ୍ଷା ଦେଇ ରାଜାର ବିଦ୍ୱେଷ ।
ଝାଙ୍କେନ୍ଦ୍ର—ଦୃଢ଼ ହସ୍ତେ କର ହେ ଶାସନ,
ମୋହ ତ୍ୟଜ୍ୟ, ନ ପାରିବ ଦେଖି,
ବାଳକଙ୍କ କୋମଳ ଅଙ୍ଗରେ
ଅସଭ୍ୟ ବର୍ବର ପରି ଅଖାପାଲି ପିନ୍ଧା ।
ପିଲାଙ୍କ ନାଶିକା ରନ୍ଧ୍ରେ,
ନ ପଶିବ ଯେତନ୍ତେ,
ରାଜମାତ ତୀବ୍ର ଗନ୍ଧୀ-ଗନ୍ଧ ।
ଅଚ୍ଛା, ଅସ ଏବେ—
( ଘଣ୍ଟା ବାଦନ, ଷଣ୍ଢେଶ୍ୱର ପ୍ରସ୍ଥାନ ଓ ଖମ୍ବରାଜ ଲମ୍ବରାଜ
ଦ୍ୱୟ ପ୍ରବେଶ କଲେ । )
ଝାଙ୍କେନ୍ଦ୍ର—ଆସନ୍ତୁ, ଆସନ୍ତୁ—
ଅସୁବିଧା ହୋଇଛି କି କିଛି ?
ଖମ୍ବ—ରାଜ ଦରବାରେ ପୁଣି ଅସୁବିଧା କିସ ?
ଧନ୍ୟ ଅଟେ ଗୁରୁଙ୍କର ଅତିଥି ବାତ୍ସଲ୍ୟ ।

ଲମ୍ବ—ମନ୍ତ୍ରୀମାନଙ୍କ ଭଳି ଥାଉଁ ବଡ଼ଆ ମୁରବି,
ଆମ୍ଭେ ହେଲୁ ହରକତ !
ନ ପଡ଼ିଲା ଗୁରୁଙ୍କ ନଜର ।
ଝାଙ୍କେନ୍ଦ୍ର—କହ କେଉଁ କଥା—
ଲମ୍ବ—'ନାହକରେ' ହେଉଅଛି ଦକ ଦକ ବୁକୁ;
ଏ ଜାତିର ଯେବେ ପ୍ରଭୁ ହୋଇବ ଅନିଷ୍ଟ;
ମରିଯିବ ଦାନା;
ଗୁରୁଙ୍କ ଆଦେଶ କଲେ ହେଉ ପ୍ରତ୍ୟାହାର,
ସେ କଦମ୍ବ ମୂଳଆର ମଥୁରା ଗମନ,
କିବା ଚିର ନିର୍ବାସନ । ଏତିକି ପ୍ରାର୍ଥନା ।
ଝାଙ୍କେନ୍ଦ୍ର—ଓଃ, ଏହି କଥା !
ଆଚ୍ଛା, ହେବ ପ୍ରତିକାର ତାର;
ଏବେ ଆସ, ନେଇନ ନମସ୍କାର ।
(ଘଣ୍ଟି ବାଜିଲା ଓ ଏମାନେ ବିଦାୟ ହେଲେ)
ଉମେଦାର—ମହାରାଜ, ଆସିଅଛି ବହୁ ଆଶା କରି,
ତବପୁରେ କୃପାର ଭିଖାରି,
କରୁଛି ପ୍ରଚୁର କାର୍ଯ୍ୟ ବୁଲି ଗୃହଅତେ,
ଶତ୍ରୁଙ୍କର ନିନ୍ଦା, ଆଉ ତବ ଯଶୋଗାନ ।
ରାଜକାର୍ଯ୍ୟ ପାଇଁ
କରିଛି ମୁଁ ମହାତ୍ୟାଗ,
ରଣକ୍ଷେତ୍ରେ ନନ୍ଦନ ହରାଇ;
ତେଣୁ ମୁହିଁ ସମସ୍ତଙ୍କ ପଛରେ ଗୋଡ଼ାଇ
ଲଭିଛି ଇନାମ କିଛି ।
ମାତ୍ର ମୋର ଏତିକି ପ୍ରାର୍ଥନା,
ରାଜ ଅନୁଗ୍ରହେ, ଚିର ହେଉ ମୋର ଦାନା
ଯାହା ବିନା,
ମଣିଷ ପଣରେ ଗଣା ନ ପାରିବ ହୋଇ ।
ଝାଙ୍କେନ୍ଦ୍ର—ଲମ୍ବୋଦରେ ଭଜ,
କନ୍ଦର୍ପ ମନ୍ଦିରେ ପଶି କରିଛ ପ୍ରବେଶ ?
ପୁଣ ଦୁଲଦୁଲଙ୍କର ଲଭିଛ ସାବାସ,
ବପୁବନ୍ତ ରହିଛନ୍ତି ପାଶ,
ଆଉ ଚିନ୍ତା କିସ ?
( ଘଣ୍ଟା ବାଜିଲା ଓ ଖଳବୁଦ୍ଧି ଓ ଦନ୍ତବକ୍ର ପ୍ରବିଷ୍ଟ
ହେଲେ । )
ଝାଙ୍କେନ୍ଦ୍ର—କିଏ, ଖଳବୁଦ୍ଧି,
କାହିଁ ଥିଲ ଏତେ ବେଳଯାଏ ?
ଏ ପୁଣି ସଙ୍ଗରେ କିଏ ?

ଖଳ—ଏଇଟି ଅଟନ୍ତି ମୋର ଭାଇ
ଯାହା ପାଇଁ ଆସିଛି ମୁଁ ଧାଇଁ;
ଅର୍ଥନୀତି ଅଛନ୍ତି ଶିଖିବାଇ,
କର୍ମ ଖଣ୍ଡେ ମିଳିବ କି ନାହିଁ,
ଶୀଘ୍ରମୁ ଦିଅନ୍ତୁ କହି ।
ଅଫିମୀ ହୁଅଇ ଯଥା ଅଫିମ ନ ଖାଇ
ଏ ବିଚାରି ହତାଶାରେ ମାରିଲଣି ହାଇ;
ମନେ ଭୟ ହୁଏ ତାହା ପାଇଁ,
କେଜାଣି ବା ଗଙ୍ଗା ଗର୍ଭେ ଝାସ ଦେବା ଯାଇଁ ।
ଠାକେନ୍ଦ୍ର—ଖଳବୁଦ୍ଧି, ହୋଇଲକି ବାଇ !
ଯାହା ହେବ କରିବେ ତା ସାଇଁ,
ନୁହ କୁଇଁ କାଇଁ,
ଦେଖୁଛି ମୁଁ ଠୋକା ବଡ଼ ଗୁଇଁ,
ଆଚ୍ଛା ହେଉ, ରହିଲି ମୁଁ ଦାୟୀ,
ଆସନ୍ତା ବରଷ କିଛି କରିବା ତା' ପାଇଁ ।
ଖଳ—ସତ ହେଲା, ଯାଉଛି ମୁଁ ଭୁଲିଯିବେ ନାହିଁ
ଠାକେନ୍ଦ୍ର—ଆଚ୍ଛା ହେଉ, ଏବେ ପାର ଯାଇ ।
(ଘଣ୍ଟା ବାଜିଲା, ଏମାନେ ପ୍ରସ୍ଥାନ କଲେ ଓ ଧନପତି ସର୍ତ୍ତ
ପ୍ରବିଷ୍ଟ ହେଲେ)
ବପୁ—ଆପଣଙ୍କ ଦର୍ଶନ ଲାଗି ଅଣାଇଛି ମୁହିଁ,
କନିଷ୍ଠ ଭାଇଟି ମୋର ।
ଠାକେନ୍ଦ୍ର—ଜଣାହୁଏ ହୋଇଥିବ ପ୍ରାଜ୍ଞ
ଆକାର ସଦୃଶ୍ୟ;
ଶରୀରଟି ହୃଷ୍ଟ ତୁମ୍ଭ ଭଳି ।
ବପୁ—ବହୁ ବିଦ୍ୟା କରନ୍ତି ଅର୍ଜନ,
ଫୁଟବଲ, ମେଜିକ ଆଦି,
ସର୍ବଶାସ୍ତ୍ରେ ଅଛି ନିପୁଣତା ।
କେବଳ ଆପଣଙ୍କ କୃପା ହେଲେ ସାର୍ଥକତା,
ହୋଇବ ତାହାର ।
ବିକଶିବ ସୁପ୍ତ ଗୁଣରାଶି,
ରବିକରେ ପଙ୍କଜିନୀ ଯଥା,
ଠାକେନ୍ଦ୍ର—ତେବେ ଏ ଥାଆନ୍ତୁ ଆଜି
ଆଜି ବଡ଼ କ୍ଳାନ୍ତ;
ପରେ ଏହାଙ୍କର କଥା କରିବା ବିଚାର ।
ଏବେ ଯାଅ ଦୂରାଗତ ବୀରମାନଙ୍କର ।
କରାଇବ ବିଦାୟ ବରତ,
ଯାନ ବାହାନାଦି ସେଣି ଜଳାନ୍ତିକ ଯାଏ ।
ବାଜୁ ଏବେ ବ୍ୟାଣ୍ଡ ଦଳେ
ବିଦାୟ ବାଜଣା ।
( ପଟ ପତନ ଓ ଐକ୍ୟତାନ ବାଦନ )

● ●

# ଦ୍ୱିତୀୟ ଅଙ୍କ

## ( ପ୍ରଥମ ଦୃଶ୍ୟ )

(ବାଳୀଶ ଦୁର୍ଗର ମନ୍ତ୍ରଣା କକ୍ଷରେ ମିଃ ଚମ୍ପଟି ଓ ଦୁଲ ଦୁଲ
ମିଆଁ ସାହେବ ଉପବିଷ୍ଟ ହୋଇ କଥୋପକଥନ
ହେଉ ଅଛନ୍ତି । )
ମିଃ ଚମ୍ପଟି—କି କହିଲ ମିଆଁ ପୁଣି କହ ଖୋଲିକରି;
ତୁମ୍ଭକଥା ଦ୍ୱୈଅର୍ଥ ବୋଧକ,
ଆମ୍ଭେ ବାବା ସାଦାସିଧା ଲୋକ,
ଏତେ ମାରପେଞ୍ଚ ମଧ୍ୟେ ନ ପାରିବୁଁ ପଶି ।
ଦୁଲଦୁଲ—(ହସି) ଆମ୍ଭର କଥାରେ ଅଛି
ସ୍ଥିତି ସ୍ଥାପକତା ଗୁଣ,
ଶାସକର ଯାହା ମୂଳନୀତି,
ରବର ବ୍ଲାଡ଼ାର ପରି,
ଯଥା ଅମ୍ଭ ପେଟ; ପର୍ମହଂସ ।
ଯେଉଁଆଡ଼େ ଭିଡ଼ିନେଲେ ଯିବ ଖାପ ଖାଇ ।
ମିଃ ଚମ୍ପଟି—ମାବ ମୁଁ ଯେ ହୋଇଗଲି ବଣା;
ଦେଖିଛି ବହୁତ ଲୋକ, ତଥା ବହୁ ଦେଶ,
ତୁମ୍ଭ ପରି ଝାନୁ ଜଣେ ଦେଖିନାହିଁ କାହିଁ ।
ଦୁଲଦୁଲ—ନାବାଳକ ଅଟ ଯେତେ ହେଲେ,
ବୟସ୍କ ବୟସ୍କା ସଙ୍ଗେ ଦୋସ୍ତି କଲେ ତୁମ୍ଭେ,
ଖୋଲିବ ଅକ୍‌କଲ ।
ମିଃ ଚମ୍ପଟି—ତୁମ୍ଭେ ମୋର ଗୁରୁ ତୁଲ୍ୟ
ଦିଅ କିଛି ରାଜକୀୟ ଉପଦେଶ,
ରାମଚନ୍ଦ୍ରେ ଯେପରି ଶବଣ,

ଅବା ଭୀଷ୍ମ ଯଥା ଯୁଧିଷ୍ଠିରେ,
ଦୈତ୍ୟଗୁରୁ ଶୁକ୍ର ଯଥା, ଅଥବା ଚାଣକ୍ୟ ।
ବୁଲବୁଲ—ଆଧୁନିକ ରାଜନୀତି
ପୂର୍ବ ରାଜନୀତିଠାରୁ ଅନେକ ତଫାତ୍ ।
ନଗୃଲ୍‌ବା ବହୁବଦନ ଏକରାସ୍ତା ଧରି,
ବଦଳାଉଥିବ ନୀତି ସଦା,
ନ ପାରିବେ ବୁଝି ଯେପରି ଚଲାକିଆ ଜନେ
ତୁମ୍ଭ ଚାଲ୍ ।
ମତ୍ ନ କରିବ କେବେ, ହଠାତ୍ ହଠାତ୍ ।
ନାକେଦମ କରୁଥିବ ଦେଖାଇ ଅଧିକ
ପିଲଚକ ଅଶ୍ବଚକ କରି ।
ସତ୍ୟକଥା ନ କହିବ ସ୍ୱପ୍ନେ,
କହିବ ମିଥ୍ୟାକୁ ଦେଇ ସତ୍ୟ ଆବରଣ,
ମଧୁରେ, ମଧୁରେ, ଯେପରି ଅତି ଆପଣାର,
ଦେଖାଇ ଫିଲ୍ଂ ।
ଚରଣ ଚୁଟିଆ ରୀତି ଆଚରିବ ସଦା,
ମେଲେରିଆ ମଶା ଯଥା;
ମୁଖରେ ରଖିବ ସୁଧା, ଅନ୍ତରରେ ଛୁରୀ ।
ଦେଉଥିବ ମୁଠେଖ ଆଶ୍ୱାସନା,
ରହିଥିବ ଭଣ୍ଡି ଭଣ୍ଡି,
ହୋଇଲେ ସମୟ,
ଛାଡ଼ିଦେବ ତଳେ ତଳେ ଗୋପନେ ଝର୍ପିଡ଼ୋ
ଏକାଥରେ କରି କିସ୍ତିମାତ୍ ।
ମିଃ ଚମ୍ପଟି—ଆହା, ତୁମ୍ଭ କଥା ଅଟେ ଅମୃତ ସମାନ,
କାଶୀରାମ ଦାସ କହେ ମହାଭାରତରେ
ଯଥା, ଶୁଣ ପୁଣ୍ୟବାନ ।
ତହିଁକି ତୁମ୍ଭର ଟୋନ ଆହା କିବା ମିଠା,
ଯଥା ବାସି ମଣ୍ଡାପିଠା,
କିବା ଯଥା ମଣ୍ଡୁବସା ପିଠା ।
ମିହିଁସ୍ୱର ଚହିଁ ଚହିଁ ହୋଇ,
ଛୁଇଁପରି ପଶୁଛି ମରମେ
କାନର ଭିତର ଦେଇ !
ସଟିମରି ତୋତି ଯଥା, କିବା ହରବୋଲା;
ଦୁଲ ଦୁଲ ନାମକୁ ତବ ଦେଲା କେଉଁ ବୋକା
ଆଜଠାରୁ ତୁମ୍ଭନାମ ମୁଁ ଦେଲି ‘ବୁଲ୍ ବୁଲ୍’ ।

କୋଇ ହ୍ୟାୟ କୋଇ ହ୍ୟାୟ !
( ଦ୍ୱାରୀ ପ୍ରବେଶ ହୋଇ ସଲାମ କଲେ )
ଦ୍ୱାରୀ—ହଜୁର !
ଚମ୍ପଟି—ସହରେ ଓ ମଫସଲେ ଦିଅ ଧୁଣ୍ଡୁରା,
ଆଜଠାରୁ ମିଆଁଙ୍କର ହେଲା
‘ବୁଲ୍ ବୁଲ୍’ ନାମ ।
ଏହିନାମେ ଘୋଷିବ ଜଗତ,
ନଦୀ, ଜଳ, ପାହାଡ଼, ପର୍ବତ,
ହେବ ଆକାଶ, ସାଗରେ ପ୍ରତିଧ୍ୱନି,
ଦର୍ପଣରେ ପୁଣି ପ୍ରତିବିମ୍ବ ।
ଯାଅ ଦ୍ୱାରୀ ବପୁବନ୍ତେ ଦିଅଓ ସଲାମ୍ ।
( ଦ୍ୱାରୀ ପ୍ରସ୍ଥାନ କଲା )
ଚମ୍ପଟି—ଧନ୍ୟ ତୁମ୍ଭ ମଣି ବୁଲ୍ ବୁଲ୍,
କେମନ୍ତେ ରହିଛି ଏତେବୁଦ୍ଧି
ସେହି କ୍ଷୁଦ୍ର ମୁଣ୍ଡଟି ଭିତରେ ?
ହୁଅନ୍ତା ଯଦି ସେ,
ତାଜମହଲ ଗମ୍ବୁଜର ପରି,
ଅବା ତୁମ୍ଭ ଉଦରର ପରି,
ତେବେ ଅବା ହୁଅନ୍ତା ଉଚିତ,
କହ ଏତେ କଥା—ବୁଲ୍ ବୁଲ ।
ଦୁଲ୍ ଦୁଲ୍—ମୁଁ କଅଁା କହିବ ଆଉ ?
ଶୁଣିବତ ଏହିକ୍ଷଣି
ସବୁକଥା ବପୁବନ୍ତଠାରୁ
ଡାଇରେକ୍ଟ ଭାବରେ
( ବପୁବନ୍ତ ପ୍ରବେଶ ହୋଇ ଯୋଡ଼ ସଲାମ କଲେ )।
ଚମ୍ପଟି—ବାବା ବପୁବନ୍ତ ।
ମହାରାଜ ଦେଇଛନ୍ତି କେବଣ ଉଦନ୍ତ ?
ବପୁ—(ବସି) କହିଛନ୍ତି ମହାରାଜ
ନିର୍ଭୟେ ଚଳାଇବାକୁ ନିଷ୍ପେଷଣ ନୀତି ।
ନାହିଁ କିଛି ଭୀତି,
ମହାରାଜ ଅଛନ୍ତି ଉପରେ,
ଶୈଳାବାସେ ୧ପାଟଳ ନଗରେ ।
ବାଲୀଶେ ଆମ୍ଭର ସ୍ଥାନ ହେଉଛି ଅତଏବ,
କାବୁଲରେ ବାଁଛା ସବୁ ଭଲ,
ନାହିଁ କିଛି ଇଷ୍ଟ;

୧ । ପାଟନା

ତାହା କି ହୋଇବ ଶୀଘ୍ର ନିର୍ବାଚନ ଶେଷରେ
କାଳ ପୂର୍ଣ୍ଣ ଆମ୍ଭମାନଙ୍କର
ଏହା ପୂର୍ବରୁ ବିପକ୍ଷ ଦଳର
ଯେତେ ଚମୂପତି ।
ଗୋଟି ଗୋଟି କରିଯାଉ ନାଶ
ଯେହ୍ନେ ତାଙ୍କ ନ ରହିବ ଆଶ,
ନ ଥିବ ସାହସ,
ଲଢ଼ିବାକୁ ଆମ୍ଭ ସନେ
ନ ରହିବ ଲେଶ ।
ଦୁଲଦୁଲ—ମୁହିଁ ଜାଣେ କି କୌଶଳେ,
ଥିଲବେଳେ ଭରଦ୍ୱାଜ ପୁରେ,
ଲେଖନୀ ଅସ୍ତ୍ରରେ ହାଣି,
କରିଥିଲି ତାଙ୍କୁ ଛାରଖାର ।
ତାର ପୁରସ୍କାର,
ମିଳିଥିଲା ଶାସନର ଭାର
ଅଳ୍ପକାଳପାଇଁ ଏହି ବାଲୀଶ ନଗରେ ।୧
ସେହିକାଳ ମଧ୍ୟେ,
କରିଅଛି ବହୁ କାର୍ଯ୍ୟ ମୁହିଁ ।
ବହୁ ଗଣ୍ଡ ଗୋଳ,
ଶତ୍ରୁଗଣ ସ୍ଥାନପରି ଉଠାଇଲେ ଶୋଳ
ଅରଣ୍ୟ ରୋଦନ ପରି;
ଭୁକି ଭୁକି ରହିଗଲେ ମଉନେ ।
ଆମ୍ଭ ପକ୍ଷ ସମସ୍ତିଙ୍କୁ,
ନାନାରୂପେ ଦେଇଅଛି ଆଧାର,
ସଂହତିର ମୂଳମନ୍ତ୍ର ଯାହା ।
ରହିଥିଲେ ଆଉ କିଛି କାଳ,
ଏକାବେଳେ କରିଥାନ୍ତି ସଫା ।
ଚମ୍ପତି—ଗଲଣି ତ ଗଲା କଥା,
ଏବେ, ଛାଡ଼ିଣ ବକ୍ତୃତା,
କହ ସାରକଥା,
ଅନୁନାସ ସ୍ୱରେ ।
ଦୁଲଦୁଲ—ତୁମ୍ଭେ ଆକ୍ରମଣ କର ହୋଇଣ ତତ୍ପର,
ଶତ୍ରୁର ଆଜ୍ଞାରେ, ନିଜ ପୁର ତାର—
ପ୍ରଧାନ ମନ୍ତ୍ରୀର !
ମୋ ଉପରେ ରହୁ ଭାର,
କୌଶଳରେ ବିଦ୍ରୋହୀ କରିବର,
ବିନା ରଣେ ବନ୍ଦୀକରି କରି ଦେବ ପାର ।
ବପୁବନ୍ତ, ଦେଖ ତୁମ୍ଭେ କାଗଜ ପତ୍ରର,
କିରାଣୀଙ୍କୁ ଡାକି,
ଅନ୍ୟ କାହା କାହା ପରେ ହେବ ଆକ୍ରମଣ ।
୨'ପ୍ରଜାତନ୍ତ୍ର' କର ଛାର ଖାର,
ସ୍ୱର୍ଣ୍ଣଦନ୍ତ ପରାମର୍ଶେ ।
ଚମ୍ପତି—ଅଛି ମୋର ନିଜର ଅହନ୍ତା!,
ପୁଣି ହେଲା ରାଜାଦେଶ,
ଏକା ମୁହିଁ ବଳବନ୍ତ,
ଜିଣିବାକୁ ଶତ୍ରୁ ଗନ୍ତାଘର ।
କରି ଛାରଖାର,
ଅରାତିର ଗଣ୍ଡି,
ତାର ପୁର ଲୁଟି,
ଦେଖାଇବି ମୋର ଏକଲାଟି
ଖାସ୍ କରିବେ ଯାଉଅଛି ମୁହିଁ,
କରିବି ମଣୋହି,
ହୋଇଲଣି ଲଗ୍ନର ସମୟ ।

(ପ୍ରସ୍ଥାନ କଲେ)

ଦୁଲଦୁଲ—(ବପୁବନ୍ତ ଠାକୁ ଘୁଞ୍ଚିଆସି ଫୁସ୍ ଫୁସ୍ ସ୍ୱରେ କହିଲେ ।)
ତୁମ୍ଭର ମୁଁ କରି ଅଛି ବହୁ ଉପକାର,
ଅବର ତୁମ୍ଭର ଆତ୍ମୀୟ ସ୍ୱଜନଙ୍କର;
ଏହା ପୁରସ୍କାର,
ଦେବ ନାହିଁ କିଛି ?
ବପୁବନ୍ତ—କି କହନ୍ତୁ ଖୋଲି,
ମୁହିଁ ଆଜ୍ଞାବହ ଦାସ ।
ଦୁଲ—ଦେଖିଲ ତ ମାଖୁନ୍ନୋଟା ଅଟଇ ଯେ ହୁଣ୍ଡା, ଶିଶୁ ଅପଗଣ୍ଡ,
ବାଲୀଶ ଶାସନ ଦଣ୍ଡ ଧାରଣେ ଅଯୋଗ୍ୟ ।
ମହାରାଜାଙ୍କର ତୁମ୍ଭେ ଅଟ ପ୍ରିୟ ପାତ୍ର
ସୁପାରିଶ କରିବ ଏତକ
ବାଲୀଶ ଶାସନ ଭାର ଦିଅନ୍ତୁ ମୋପରେ ।

ମୁରବିର କରି ।

ଦେଖିବ ଅଚିରେ;
ଦୁଷମନଙ୍କର ଜଡ଼ କରିବି ନିକାସ୍ ।
ଚିହ୍ନିଛ ତ ମୋତେ !
ଆଉ କିବା କହିବି ଅଧିକ ।

୧ । ଅସ୍ଥାୟୀ ଚିଲ୍ଲମାଜିଷ୍ଟ୍ରେଟ ପଦରେ ।

୨ । କଂଗ୍ରେସଦଳର ସାପ୍ତାହିକ ସଂବାଦପତ୍ର ।

ବପୁ—ମହାଶୟ ଅଟନ୍ତି ମୋ ଉପକାରୀ ଜନ ।
କହିବ ନିଶ୍ଚୟ ମୁହିଁ କରି ପ୍ରାଣପଣ ।

ଦୁଲଦୁଲ—ଭୋପେଶ୍ୱର ନାହାନ୍ତି କି ଏଥି ?

ବପୁବନ୍ତ—ଯାଇଛନ୍ତି ଦାକ୍ଷିଣାତ୍ୟ ଗସ୍ତେ;
ରଥଦେଖା, କେଲିବିକା କରିବେ ଉଭୟ ।

ଦୁଲ୍‌ଦୁଲ୍—ତଥାପି ସେ କରିଛନ୍ତି ତ୍ୟାଗ, ମହାତ୍ୟାଗ,
ବିଦେଶେ ଏକାକୀ ରହି ବ୍ରହ୍ମଚର୍ଯ୍ୟ ବ୍ରତେ,
ମାସରେ ସପ୍ତାହ କରି
ଯାଆନ୍ତେଣି ଘରି ।
ଏତେ ଯିବା ଆସିବାକୁ ନଥାନ୍ତା 'ଟିଏଟି' ।

ବପୁ—ଅଜାକାର ଲେଭେଲରେ ଅଛି ଆସିବାର,
ପଡ଼ିବ ଆମ୍ଭର ପାଳି ତହୁଁ ।

ଦୁଲ୍‌ଦୁଲ୍—ଯଦି ସେ ଆସନ୍ତି ତେବେ କହିବ ତାହାଙ୍କୁ,
ସନ୍ଧ୍ୟାକାଳେ ଆସିବେ ମୋ ଠାକୁ ।
ଭରଦ୍ୱାଜ ପୁରର ଖବର
ଶୁଣାଯିବ ତାହାଙ୍କ ମୁଖରୁ,
ବଡ଼ ଚିତ୍ତ ଆକର୍ଷକ ଯାହା
କଳ୍ପନା ମଧୁରେ ମିଶା ଗାଳ୍ପର ଚଟଣି,
ଯୁକ୍ତିଅସ ଚିଠିଠାରୁ ବଳି,
ଶାସ୍ତ୍ର ଚର୍ଚ୍ଚା, ଶତ୍ରୁ ନିନ୍ଦା, କବି କାବ୍ୟ ଛନ୍ଦେ,
ସହସ୍ର ବଦନେ, ପୁଣି ବାତ୍ସ୍ୟାୟନପି ଢଙ୍ଗେ ।

ବପୁ—ଏବେ ଘେନୁଛି ବିଦାୟ,

ଦୁଲ—ହଉ, ଆସ, ରହିବଟି ମନେ ?

(ବପୁ ଈଷତ୍ ହସି ଓ ମସ୍ତକ ଅବନତ କରି ବିଦାୟ ହେଲେ)

ଦୁଲ୍‌ଦୁଲ୍—(ସ୍ୱଗତ)
ସର୍ବେ ମିଳିଛନ୍ତି ଆସି ସ୍ୱାର୍ଥାନ୍ୱେଷୀ ଦଳ,
ଏମାନଙ୍କୁ ରଖି ହାତେ,
ଯନ୍ତ୍ର ରୂପେ କରି ବ୍ୟବହାର,
ଅସ୍ପୃଶ୍ୟଙ୍କୁ କରିବି ନିର୍ମୂଳ;
ତାହାପରେ ଯୁଙ୍କ ଦଶା ହେବ ଯାହା;
କି କହିବ ହାଃ—ହାଃ—ହାଃ ।

(ପ୍ରସ୍ଥାନ)

୨ୟ ଦୃଶ୍ୟ

(ବାଲୀଶ ଦୁର୍ଗଦ୍ୱାର ଗୁପ୍ତ କକ୍ଷରେ ଭୋପେଶ୍ୱର ଓ ସ୍ୱର୍ଣ୍ଣଦନ୍ତ କଥୋପକଥନ ହେଉ ଅଛନ୍ତି)

ଭୋପେଶ୍ୱର—ଶତ୍ରୁପକ୍ଷ କରୁଛନ୍ତି ମହା ଆୟୋଜନ;
ସ୍ଥାନେ ସ୍ଥାନେ କରି ଜନସଭା,
ଉତ୍ତେଜିତ କରୁଛନ୍ତି ପ୍ରଜାସାଧାରଣେ,
ଆମ୍ଭରି ବିରୁଦ୍ଧେ, କରି କୁମନ୍ତ୍ରଣା ଦାନ,
ଆମ୍ଭ ପକ୍ଷେ ନ ହେଲି ତ ପ୍ରତି-ଆନ୍ଦୋଳନ
ଆଜି ଯାଏ ।

ସ୍ୱର୍ଣ୍ଣ—ଆନ୍ଦୋଳନ କିବା ପ୍ରୟୋଜନ ?
ସାମାନ୍ୟ ବାୟସ ପ୍ରାୟ ପ୍ରଜା
ଫୁତ୍କାର ମାତ୍ରକେ ଯିବେ ଉଡ଼ି,
କି ଭୟ ତାହାଙ୍କୁ ? କି ବଳ ତାଙ୍କର ?

ଭୋପ—(ଲମ୍ଫ ପ୍ରଦାନ କରି)
ଠିକ୍ ଠିକ୍ ଏତେଦିନେ ପାଇଲି ମୁଁ ଯୋଡ଼ି,
ମୋର ମତ ସମର୍ଥକ ଜଣେ;
ଭୀରୁ, କାପୁରୁଷ ଅଟେ ସେହି ବପୁବନ୍ତ
ସର୍ବଦା କରୁଛି ଚିନ୍ତା,
କି ଉପାୟେ ବଶୀଭୂତ କରିବ ପ୍ରଜାଙ୍କୁ
କୁରୂପା ଯୋଷିତ ଯେସନେ ଆପଣା ପତିର,
କରେ ଯତ୍ନ ଘେନିବାକୁ ମନ ।

ସ୍ୱର୍ଣ୍ଣ—ଦୁର୍ବଳ ଲୋଡ଼ଇ ଯିନା ପର ସହାୟତା,
ହେତୁ କରେ ମଥା ପର ଆଗେ;
କିନ୍ତୁ ଯା'ର ସାହା ଭଗବାନ,
ଅର୍ଥାତ୍ ଭଗବାନରୂପୀ କନକ-ଈଶ୍ୱର,
କାଳ ଓ ବିକାଳ ରୂପୀ ଆନ ଦୁଇଜଣ
ଚମ୍ପଟି ଓ ଦୁଲ୍‌ଦୁଲ୍ ମହାସୁର ଦ୍ୱୟ
କି ଭୟ ତାହାର ପୁଣି ?

ଭୋପ—ଜାଣି ନାହିଁ ପରି ତୁମ୍ଭେ ?
କାହୁଁ ବା ଜାଣିବ ?
ତୁମ୍ଭେ ତ ପଢ଼ିଛ ଖାଲି ମନୁ; ଯାଜ୍ଞ ବଲ୍କ୍ୟ,
ଯଦି ଜାଣିଥନ୍ତ କିଛି ପୁରାଣର କଥା,
ଆଉ ଇତିହାସ, ଧର୍ମ ଶାସ୍ତ୍ର;
ଆର୍ଯ୍ୟ ପୁଣି ଯାବନିକ,
ତେବେ ତୁମ୍ଭେ ନ କହନ୍ତ ଏହା ।

ଣ ଆମ୍ଭ ମୁଖୁଁ—
ଯେତୁ ଅଛେ ଅଥାରଟି ।
ଏହି ଦୁହେଁ ଥିଲେ ପୂର୍ବେ ଶୁମ୍ଭ ଓ ନିଶୁମ୍ଭ;
ଚଣ୍ଡୀସନେ କଲେ ମହାରଣ ।
ପୁଣି ହେଲେ ହିରଣ୍ୟାକ୍ଷ ହିରଣ୍ୟ କଶିପୁ;
ତହୁଁ ହେଲେ ରାବଣ ଓ ଦୁଷ୍ଟ କୁମ୍ଭକର୍ଣ୍ଣ ।
ତଦନ୍ତର କଂସ, ଶିଶୁପାଳ ।
ଏବେ କଳିକାଳେ ଧରିଛନ୍ତି ଏହି ରୂପ,
ଅଭିଶାପ ଗ୍ରସ୍ତ ଦେବଦୂତ,
ଜୟ ଓ ବିଜୟ ।
ଏହି ଗୂଢ଼ ତତ୍ତ୍ୱ ମୁହିଁ ଆବିଷ୍କାର କରି,
ପଠାଇଛି ରଏଲ ସୋସାଇଟିକୁ,
ଯେଉଁ ଗବେଷଣା ବଳେ,
ଏହି ବର୍ଷ ନୋବେଲ୍ ପ୍ରାଇଜ୍,
ଆସିବ ମୋ ଠାକୁ ବୋଲି କହେ ରୟଟର ।
ସ୍ୱର୍ଣ୍ଣ—ତୁମ୍ଭର ଅଗାଧ ବିଦ୍ୟା, କାହୁଁ ବା ପାଇବୁଁ,
ଆମ୍ଭେ ସବୁ ସାମାନ୍ୟ ମାନବ ।
ଥରେ ଯେହୁ ଦେଖିଥିବ
ସ୍ୱରାଜର ରୂପ 'ଦର୍ପଣ'ରେ,
ଜାଣିଛି ସେ ବିଦ୍ୟାର ଦଉଡ଼ ତବ,
କି ଭୀଷଣ ଗୌରବରେ
ସର୍ବ-ଶାସ୍ତ୍ର-ଗର୍ଭ-ଧୂଳି ଖନ୍ତା ଧାରି ତବ,
ଶୂନ୍ୟ ଶର ମାରୁଛନ୍ତି ଉର୍ଦ୍ଧ୍ୱର ଉର୍ଦ୍ଧ୍ୱର ।
ଧନ୍ୟ ସେହି ମୌଳିକତା,
ଧନ୍ୟ ଗବେଷଣା,
ଧନ୍ୟ ଭାଷା, ଧନ୍ୟ ବୁଝାମଣା,
ଏନସାଇକ୍ଲୋପିଡ଼ିଆ ଅଟେ ସକଳ ବିଦ୍ୟାର,
ଏଭଳି ଥିସିସ କେବେଁ ଲେଖି ନାହିଁ କେହି,[1]
ଏରିଷ୍ଟଟଲ, ପ୍ଲେଟୋ କିବା ସେକ୍ରେଟିସ, ମିଲ
ଅବା ମିସ୍ ମେୟୋ ମହାସୂସୀ ।
ଜର୍ମାନୀକୁ ଦେଇଣ ପଠାଇ,
ପୃଥିବୀର ସର୍ବଭାଷେ କରି ଅନୁବାଦ
ସର୍ବଦେଶେ କରିବା ପ୍ରଚାର;
ହିଟେଲର ଚିଆଂସୋଲିନ ମୁସେଲିନି କେମେଲ
ଯହିଁରୁ ଲଭି ଇନସ୍ପିରେସନ,
ଆପଣା ଆପଣା ଦେଶେ ଦେବେ କନଷ୍ଟିଷା,
ଜଗତର ସର୍ବଶ୍ରେଷ୍ଠ ହିତକାରୀ ବୋଲି
ଇତିହାସେ ରହିଯିବ ନାମ,
ସ୍ଥାୟୀ ପ୍ରତିବିମ୍ବ ରହିଯିବଟି 'ଦର୍ପଣେ' ।
ଭୋପ—କିଏବା ବୁଝିବ ପୁଣି ଗୁଣର ମରମ ।
ନ ହୋଇଲେ ସମଜ୍‌ଦାର୍ !
ନ ବୁଝିଲା ବପୁବନ୍ତ ବୁଝାଇଲି ଯେତେ,'
ଗଣ୍ଡି ଟି ଯେପରି ତାର ବୁଦ୍ଧି ସେହିପରି;
ତହିଁକି ହୃଦୟ ତାର ରମଣୀ-ସୁଲଭ
ନାହିଁ ଲବ ବୀରର ସାହସ;
ଖାଲି ଅତିକାୟ ବୋଲି
ଲଭିଅଛି ସେନାପତି ପଦ ।
ସେ ପୁଣି ଲଗିଛି ଦେଖ ଛଳ ଓ କୌଶଳେ,
ଯାହା ଅଟେ ବୀରର ଦୂଷଣ ।
ମୋତେ ଯଦି ଦିଅନ୍ତେ ଆଦେଶ ସ୍ୱାମୁଁ,
ଦୃଢ଼ କରେ ସପାଇପ୍ ଗ୍ରୁବୁକ ଲଗାଇ
ଏକାଦିନେ କରନ୍ତି ଯବଦ
ବଡ଼ବଡ଼ିଆଙ୍କୁ ।
ବାକି ସବୁ ଆଖିର ପ୍ରତାପେ
କୁଆଡ଼େ ଯାଆନ୍ତେ ଉଡ଼ି,
ଶୁଣି ରଡ଼ି ଶୃଗାଳର ପଲ
ଲୁଚନ୍ତେ ବିଲରେ କିବା କିଆବୁଦା ତଳେ,
ଲଙ୍କାକୁ ଉପାଡ଼ି ଯଥା ବୀର ହନୁମାନ
ସାଗରେ ପକାଇବାକୁ କରିଥିଲ ମନ—
ସେହିଭଳି ଚକ୍ରବ୍ୟୂହ ଉପାଡ଼ି ସତ୍ୱରେ,
[2]ମତେଇରେ ଦିଅନ୍ତି ଭସାଇ ।
ସ୍ୱର୍ଣ୍ଣଦନ୍ତ—ଜଣାଯାଏ ପୂର୍ବେ ତୁମ୍ଭେ ଥିଲ ନେପୋଲିଅନ;
ଏ ଯୁଗରେ ହେବ ଭାରତର ମୁସୋଲିନ
ପ୍ରବର୍ତ୍ତାଇ ନବ ନୀତି,
ପଲିଟିକ୍ସ କ୍ଷେତ୍ରେ
ଫାସିଷ୍ଟ ନୀତିର ଭାଇ ଭୋପିଷ୍ଟ ମତବାଦ ।
(ବପୁବନ୍ତ ପ୍ରବିଷ୍ଟ ହେଲେ)
ଭୋପ—କି ହେ ତୁମ୍ଭେ କାହିଁ ଥିଲ ଏତେବେଳଯାଏ ?
ବପୁ—ଥିଲି ମୁହିଁ ଦୁଲ୍ ଦୁଲ୍ ପାଶେ,
କହିଛନ୍ତି ସେ ମୋତେ ବିଶ୍ୱାସେ,
ତାଙ୍କ ନିଜାବାସେ,
ମୁଲାକାତ କରି ଯାଇ ଗୋଟିଏ ନିଶ୍ୱାସେ ।

୧ । ଜନତା ଦଳର ମୁଖପତ୍ର (ସାପ୍ତାହିକ) ।

୨ । ଜନତା ନିକଟସ୍ଥ ନଦୀ ।

ଭୋପ—ଆଜ ମୁହିଁ କ୍ଳାନ୍ତ ଅତିଶୟ,
ମନ ନାହିଁ ଥୟ !
ହେଉଛି ସଂଶୟ
ଏଭଳି ଜବରର ଡାକ ପଡ଼ିଲା କି ହେତୁ ?
ଯାହାହେଉ ପଡ଼ିବ ଯିବାକୁ
ହେଲା କରି ନ ପାରିବ ତାଙ୍କର ଆଦେଶ ।
ଭାଇ ସ୍ୱର୍ଣ୍ଣଦନ୍ତ,
ତୁମ୍ଭେ ଦୁହେଁ ହୁଅ ଗପସପ,
ମୋତେ କରି ମାଫ,
ଇଚ୍ଛା ଦରଶନେ ଏବେ ଚଳିଲି ତୁରିତେ ।
(ବେଶ ପରିଧାନ କରି ନିଷ୍କ୍ରାନ୍ତ ହେଲେ)
ବପୁ—କେତେକାଳୁଁ ଆସିଲେଣି ଏଥି ?
୧ସ୍ୱର୍ଣ୍ଣ—ଏଇ—ଏଇ– ଅଳ୍ପକ୍ଷଣ
(ଭୋପବନ୍ତ ପୁଣି ଫେରି ଆସିଲେ);
ଭୋପ—ହୋଇଅଛି ଅତି ଅନ୍ଧକାର
ହେଉଁଠାରେ ସବୁଛି ବେଟେରି;
ତେବେ ତେବେ······
ସ୍ୱର୍ଣ୍ଣ—ସେଥିପାଇଁ ଚିନ୍ତା କିସ ?
ମୁହିଁ ମଧ୍ୟ ଯିବି ସେହି ବାଟେ;
ତୁମ୍ଭଙ୍କୁ ବସାଇ ନେଇ ମୋ ମଟର ଯାନେ,
ଛାଡ଼ି ଦେଇ ଯିବି ସେହି ସ୍ଥାନେ ।
ଭୋପ—ତା—ତା – ତା—
ତୁମକୁ ତ ହେବ ନାହିଁ କିଛି ଅସୁବିଧା ?
ବପୁ—ଛାଡ଼ ସେ ଭଦ୍ରତା;
ମତଲପ ପଡ଼ିଲାଣି ଜଣା;
(ବପୁ ଓ ସ୍ୱର୍ଣ୍ଣଦନ୍ତ ହସିଲେ)
ଭୋପ—ତୁମ୍ଭରି ପରି ମୁଁ ନୁହେ ମୁହଁ-ମୁଲଜିଆ,
ମୁହଁରେ ମଧୁର କଥା ପେଟରେ ଅଳିଆ,
ଓଳିଆ ଭଦରଙ୍କର ଦର ସେହିପରି ।
ବପୁ—ତୁମ୍ଭେ କିନ୍ତୁ, ଅଳପେ କଳିଆ;
ସ୍ପୋର୍ଟିଭ୍ ସ୍ପିରିଟ୍‌ରେ ଏହି କଥାଟା ନ ବୁଝି,
ବ୍ୟଙ୍ଗ ରସ ନ ପାରି ସମଜି
ତୁଚ୍ଛାଟାରେ ବଗି ବାଳ ଛିଣ୍ଡାଇ ମରୁଛ ।
ଭୋପ—ଅଚ୍ଛା ହେଲା ହେଲା,
ତମ କଥା ଜଣାଗଲା
ତମଭଳି ଥିକ୍ ସ୍କିନ୍ ଅଛି କେଉଁ ଜନ ?

ଆମେ ବାବୁ ସିଧା ସରପଟ
ମନେ ଯାହା ଭାବୁଁ କହି ଦେଉ ପଟାପଟ୍
ତୁମ୍ଭ ପରି ତୁଷ ଧୂଆଁ ନ ଜାଳୁଁ ଅନ୍ତରେ ।
ସ୍ୱର୍ଣ୍ଣ—ମିଛେ କାହିଁ କର କଳି
ସାମାନ୍ୟରୁ ହେବ ପରବତ ।
ବପୁ—ଆମର ଏଭଳି କଳି ହେଲାଣି ଅଭ୍ୟାସ
ଦୁଇ ପ୍ରାଣୀ ପରି ଏକ କକ୍ଷେ କରି ବାସ
ଅଜା ଯୁଦ୍ଧ ଭଳି ।
ସ୍ୱର୍ଣ୍ଣ—ଥାଉ ଏବେ ସେତିକିରେ
ଅଥୟ ହେଲାଣି ତେଣେ ମଟର ସାରଥି
ବଜାଇ ହରନ୍ ରୂପୀ ପାଞ୍ଚଜନ୍ୟ ଶଙ୍ଖ ।
(ଭୋପଙ୍କର ହସ୍ତ ଧାରଣ କରି ଉଭୟେ ନିଷ୍କ୍ରାନ୍ତ ହେଲେ ଓ ବପୁବନ୍ତ ଖଟିଆ ଉପରେ ହସ୍ତପଦ ଧାରଣ କରି ଚିତ୍‌ପଟାଙ୍ଗ ଦେଲେ ।)

### ତୃତୀୟ ଦୃଶ୍ୟ

(ଆପଣା ବାସଭବନରେ ଦୁଲ ଦୁଲ ମିଆଁ ଏକାକୀ ବସି ଚିନ୍ତା କରୁଅଛନ୍ତି)

ଦୁଲଦୁଲ—ସ୍ୱ ବୁଦ୍ଧିରେ
ଫନ୍ଦିକରି ଜିଣିଲି ଦୁନିଆ,
ଅମାନିଆ ଲୋକଯାକ
ପ୍ରତାପେ ମୋହର,
ଥରି ହରି ହୋଇଲେ ଘୁନିଆ ।
ମୋଠାରୁ କଥାର ପେଞ୍ଚ ନ ଜାଣଇ କେହି,
କଥା କହି କରେଁ ହକ୍ ମତ୍,
ଅହମ୍ମକ ଲୋକଗୁଡ଼ା ହୋଇ ସକସକ,
ମିଆଁରେ ପଟଙ୍ଗ ପରି ମିଆଁଙ୍କର ଜାଲେ
ପଡ଼ିଣ ହୁଅନ୍ତି ଛଟପଟ ।
ଦେଖିବାକୁ ଲାଗେ ବଡ଼ ତୋଫା ।
ସପ୍ତ ସ୍ୱରଯାକ ଗୁନ୍ଥି ରଖିଛି କଣ୍ଠରେ,
ଯେଉଁ ସ୍ଥାନେ ଯାହା ହୁଏ ଲୋଡ଼ା,
ସ୍ଥଳ, କାଳ, ପାତ୍ର ଦେଖି,
କାଢ଼ିଦିଏଁ ତହୁଁ ଥୋଡ଼ା ଥୋଡ଼ା,
ଏ ବହାର ଯୋଡ଼ା
ଦୁନିଆରେ ନାହିଁ କି ନ ଥିବ;

୧ । ସ୍ୱର୍ଣ୍ଣଦନ୍ତ ହେଉବଙ୍ଗାଳୀ ।

ଏକମାତ୍ର ଥିଲା ଜଣେ,
ସାଜାହାନ ପୁତ୍ର ଔରଙ୍ଗଜେବ;
ଯାହା ସମଝିଲ,
କେହି ଯେବେ ଥାଏ,
ତେବେ ସିଏ ଦୁଲ ଦୁଲ !
ବାକି ସବୁ ଫୁଲ୍ ।
(ଭୋପେଶ୍ୱର ପ୍ରବିଷ୍ଟ ହେଲେ)
ଦୁଲ୍ ଦୁଲ୍—ଆଁ ସ୍ୱଁ ଆଁ ସ୍ୱଁ ଭୋଁପେଁଶ୍ୱଁର,
ତୁଁମଁର ଆଁସିଁବା ପାଁଇଁ
ବଁସିଁଥିଁଲିଁ ଗୁଁହିଁ ଏଁତେଁକ୍ଷଁଣଁ ।
ଭୋପ—ହଜୁର ଆଦେଶ ପାଇ,
ନ ଖାଇ ନ ପିଇ,
ତୁରନ୍ତ ଆସୁଛି ଧାଇଁ ମୁଲାକାତ ପାଇଁ ।
ଦୁଲ୍ ଦୁଲ୍— ଆଜ ତୁମ୍ଭେ ଆସିଅଛ ଯହିଁ,
ତହିଁରୁ ପଚାରୁଛି
କି ଖବର ଭରଦ୍ୱାଜ ପୁରେ ।
ଭୋପ—ପ୍ରଥମ ଖବର ଅଟେ ଉଦ୍ୟାନ ମିଳନ,
ରାଜ ସମ୍ବର୍ଦ୍ଧନା ତଥା ପ୍ରଜା ସମ୍ଭାଷଣ,
ଭରଦ୍ୱାଜ ପୁରେ ଏହି ପୀରତି ଭୋଜନ ।
ଦ୍ୱିତୀୟରେ, କନକ ନଗରେ
ସଭା—ଆଉ ତାହା ସଙ୍ଗେ ଗୃହ୍
କାଲିଆ, କୋର୍ମା, ଦହି ପାୟସ ଏଣ୍ଡ ହୁଆଠ ନଚ୍
ପୋଲାଉଠାରୁ ଚଟନି ଯାକେ ବାଦସାହି ଥାହ୍ ।
ଦୁଲ୍ ଦୁଲ୍—ମୁହିଁ ତ ଆସିଲି ଛାଡ଼ି ଭରଦ୍ୱାଜପୁର
କିନ୍ତୁ ତାର ମାୟା ମୋତେ ନ ପାରୁଛି ଛାଡ଼ି;
ଯହିଁ ରହି ପାଚିଗଲା ଦାଢ଼ୀ;
ଗଲା ନାଡ଼ୀ ଛିଡ଼ି,
ଅନାଡ଼ିଙ୍କ ହାତେ ପଡ଼ି ଗଲାଣି ବିଗାଡ଼ି;
ସେହି ପ୍ରିୟା ମୋର ଅମୃତ ସୋପାନ ।
ମୁଁ ଯେବେ ଥାଆନ୍ତି ତଥା ଆଜ,
ଦେଇଥାନ୍ତି ସାଜ ଭରଦ୍ୱାଜେ
ନନ୍ଦନକାନନ ସମ,
କେତେ ଟୋକାଟି କମ କରି ।
[1]ଧଡ଼ାର ଆତସବାଜି, ପାଜିଙ୍କ ଆଖିରେ
ଦେଇଥାନ୍ତା ଚମକ ଲଗାଇ ।

ଅଣିଥାନ୍ତି ଅସମାନ ଫାଡ଼ି,
ଚୁନ୍ଦକୁ ନିଗାଡ଼ି,
ସେରି ସେରି ଟଙ୍କ !
ଯାହା ହେଉ, କହ ଭୋପ, କରଣ ବର୍ଣ୍ଣନା
କେମନ୍ତେ ହୋଇଲା ସମ୍ବର୍ଦ୍ଧନା ।
ଭୋପ – ଆଣିଥିଲେ ଅନେକ ପଦାର୍ଥ,
ଦେଇ ବହୁ ଅର୍ଥ;
ନିଃସ୍ୱାର୍ଥରେ ସୁର-ରାଣୀ ଅସି,
ଯାବନିକ ଖାନା ସନେ ଶୁଦ୍ଧ ଅମଣିହା
ମିଶିଥିଲା ଯଥା—
ସୁରସନେ ମହାର୍ଦ୍ଧର ଗୃହେ ।
ଦୁଲ୍ ଦୁଲ୍—କେମନ୍ତେ ହୋଇଲା ସଭା,
କେଉଁ ସ୍ଥାନେ କେଉଁ ଭାବେ ?
ଭୋପ—ଯେଉଁ ସ୍ଥାନେ ଷଣ୍ଢେଶ୍ୱର ମନ୍ତ୍ରୀ,
ଯନ୍ତ୍ରୀ ଯହିଁ ଶ୍ରୀ [2]ମଧୁ ମହନ୍ତ,
ଯେଉଁ ସ୍ଥଳ ଅଟେ କାରଖାନା,
କରାମା ଓ ଦାସ ଗଢ଼ିବାର
ପୁଣି ଯାହା ଭେଦବାକୁ ସତତ ଉତ୍ସୁକ
ଅରାତି ମଣ୍ଡଳି, ଦେଇ ରାଜଦ୍ରୋହ ଶିକ୍ଷା;
ସେ ମନ୍ଦିର ହୋଇ ସୁସଜ୍ଜିତ
ଇନ୍ଦ୍ରସଭା ପରି
କମଣ୍ଡିତା ହୋଇଥିଲା ରାଜ ସମାଗମେ ।
ବାଜିଲା ବିବିଧ ବାଦ୍ୟ ଗାଇଲେ ଗୁରଣ,
ସ୍ତାବକଙ୍କ କଳ କଣ୍ଠେ ଫାଟିଗଲା ଛାତ
ଅମିର ଓମରା ବୃନ୍ଦ ସ୍ୱାଗତ ରାବରେ ।
ଶ୍ରୀରାମୁଙ୍କ ଯଶ କୀର୍ତ୍ତି କାବ୍ୟ ରସ ସୁଧା
ଧାର ଧାର ହୋଇଗଲା ଭାସି ରାଣି ରାଣି ।
ଯହିଁରେ ଉତ୍ତର ସ୍ଥିତ ପରିଖା ଉଚ୍ଛୁଳି;
କାଳନ୍ଦୀ ସ୍ରୋତରେ ପଡ଼ି ହିଲ୍ଲୋଳେ ହିଲ୍ଲୋଳେ
ବୁଡ଼ାଇଲା ବହୁ ଦେଶ ପୂର୍ବ ଅଭିମୁଖେ,
ପ୍ରଳୟ ପୟୋଧି ଛନ୍ଦେ ଗାଇଲେ ଆନନ୍ଦେ
ଜୟଦେବ ରାମୁଙ୍କ ବନ୍ଦନା
କରି ଅଙ୍ଗଭଙ୍ଗି ଠୀକା ସଙ୍ଗେ ।
ମାତ୍ର ଶୁଣି ଚମ୍ପଟିର ବାଣୀ,
କନ୍ଦର୍ପ ଧରିଲେ ଠାଣି ଦର୍ପଭରେ ପଛୁଁ ।
ପ୍ରତିହତ ହୋଇଣ ସହସା

[1] । ରେଷଣୀ ପାଇଁ ପ୍ରସିଦ୍ଧ ଢାଉଗର ବଣ ।

[2] । ମାଧବାନନ୍ଦ ମହାପାତ୍ର—ଜନୈକ ଓକିଲ ଓ ସ୍ଥାନୀୟ ସଦାବର୍ତ୍ତ ମହନ୍ତ ।

ଯେ ସ୍ତବ ସଙ୍ଗୀତ ଧାର ଝରିଲ ଝଲଟି;
ଝରେ ଯଥା ଶ୍ରାବଣର ଘନ;
ପିଇଲେ ଶ୍ରୋତକ କୁଳ ଆଁ କରି ଯାହା ।
ଦୁଲଦୁଲ—ହାଃ – ହାଃ—ବାହା ବାହା ବାହା !
(ଉଲ୍ଲସିତ ହୋଇ ହେଦାସ୍ୱରେ ତନ୍ଦଧର ନିତମ୍ବ କମ୍ପିଉ
ହେଲେ ।)
ତଦନ୍ତରେ କିସ ହେଲ ?
ଭୋପ – ତଦନ୍ତର ସଭା ହେଲା ସାଙ୍ଗ,
ସଭାସଦେ ହୋଇ ଚଙ୍ଗ ଚଙ୍ଗ
ଧାଇଁଲେ ଠାକୁରର ଆଗେ ଗନ୍ତାଘର ପାଶେ ।
ମାନ ହା ଧଇବ !
ଚଳସିଆ ଲୋକ ପାକ;
ବାହିଲେଣି ଚଡା ଅଗଚ୍ଛୁରି !
ହୋଇ ଅସ୍ତ-ହସ୍ତ;
ଲୁଟିଲେ ସକଳେ ଯାଇ ଭଣ୍ଡାରର ମାଲ୍ ।
ଚୂନା ଚୂନା ମିଠାଇକୁ ଗୋଠାଇଲ କିଏ,
କିଏ ପୋଷ୍ଟ ପୋଷ୍ଟ କଲା ସନ୍ଦେଶର ଡାଲି
କିଏ ଝଗେ ହାଙ୍କି 'ଶାଲ ଶାଳ'
ଶଶବ୍ୟସ୍ତେ ଭାଙ୍ଗି ଦେଲା ଡାଲି;
ପୂରାଇଲ ଉଦର ପଟେଟ
ଚିଣା ଚିଣା ମାଲ୍ ଓ ମଶାଲ;
କିଏ ଅର୍ଦ୍ଧ ନିଃଶେଷିତ ଠୋଲ;
ଧରି ଦୁଇ ହାତେ
ଆନନ୍ଦରେ ମାରି ଦେଲା ଠେଲ ।
ଏହିରୂପେ ଠେଲ ଠେଲି ପେଲ ପେଲି ପାଲ
ଗଲ ଲାଗି ;
ଦୁଲ ଦୁଲ—ତାର ପର୍, ତାର ପର୍
କହ, ଶୁଣି କଥା
କୁଳାଟିଆ ବୋଇତାଲୁ ଯଥା
ନୟନର ତୃପ୍ତି କର, ରସନା ରଞ୍ଜକ ।
ଭୋପ – ଅପୂର୍ବ ଶୁଣନ୍ତୁ, ପୁଣି କଥା ମନଦେଇ ।
ସତ୍ୟ ନାରାୟଣ ପୂଜା ହୋଇଲା ଯେ କାହିଁ ।
ପ୍ରଭୁଙ୍କ ନିଜସ୍ୱ ନାନା ପୋଖରୀ ବହାରି
ଅନ୍ୟ ଅବତାର ଭଜା ହୋଇଲା ସିରଣି,
ପଞ୍ଚାମୃତ ହେଲା ପୁଣି

ସ୍ଫଟିକ ଭାଣ୍ଡ-ନିବଦ୍ଧ ସୁର ସୁଧାରସ
ଗାଇଲେ ଗାୟକ ବୃନ୍ଦ ତାନା-ନାନା-ନାନା ।
ଦୁଲଦୁଲ – ତେଣିକି, ତେଣିକି ହୁଁ—
ଭୋପ—ଅସୁରେ ନେଲାରୁ ହରି ସକଳ ଅମୃତ,
ଦେବତାଏ ହୋଇ ଆଚମ୍ଭିତ;
ଇତସ୍ତତ ଦଉଡ଼ି ଦଉଡ଼ି;
ହାଣ୍ଡି ପରି ମୁହଁ କଲେ ବ୍ୟର୍ଥ ମନୋରଥେ ।
ଦୁଲଦୁଲ—ଆହା, ଆହା, ଆହା !
ଭୋପ—ତଦନ୍ତରେ ଭଣ୍ଡାରର ଶେଷ,
ମୁନିଙ୍କ ଇଙ୍ଗିତେ,
ଯାହାଥିଲା ଯହିଁ
ଚପରାଶିମାନେ ଆସି ନେଇଗଲେ ବହି ।
ଦୁଲଦୁଲ—ଠିକ୍ ଠିକ୍,
ଯାଆନ୍ତାକି ମାରି ତାଙ୍କ ରାଜଭୋଗଟିକ ?
ଭୋପ – ଅସଲ କଥାହିଁ ଏବା ଛାଡ଼ିଗଲି ପ୍ରଭୋ;
ମହୋତ୍ସବର ବର୍ଣ୍ଣନା ।
ଦୁଲଦୁଲ – କହ, କହ, ମହୋତ୍ସବ କଥା,
ଏ ଭଳି ଚନ୍ଦ୍ରତାମୃତ ରହିବ ଅପୂର୍ଣ୍ଣ ।
ଭୋପ – ଗୌରାଙ୍ଗ କରନ୍ତେ ସାଙ୍ଗ ଅମୃତ ମଣୋହି,
ବଡ଼ ବଡ଼ ଭକ୍ତଗଣ ରହିଥିଲେ ଯହିଁ,
ସେହି ଆସନେ ବାସନେ ବସିଗଲେ ଯାଇଁ
ଭକ୍ତିଭରେ ପ୍ରସାଦ ସେବନେ ।
ତାଙ୍କମନ ଜାଣି ଯେତେ ଲଣ୍ଡା ସୁପକାରେ
ପରମ ବୈଷ୍ଣବ
ପ୍ରସାଦୀ ସୁବର୍ଣ୍ଣଥାଳୀ ଥୋଇ ଦେଲେ ଆଗେ ।
ମହାନନ୍ଦେ ଭକ୍ତଗଣ ମିଳି,
କଣ୍ଠା ଓ ଗୃହଚ ଯୋଗେ ସବୁଗଲେ ଗିଳି,
ହୋଇ ମହା ପରିତୃପ୍ତ
ଏକେତ ଅମୃତ ଦୁଜେ ଅଧର ଅମୃତ
ତହିଁ ମିଶା;
ଡବଲ ଅମୃତ ହୋଇ ହେଲା ମହାସ୍ୱାଦ ।
ଦୁଲଦୁଲ—ଯାହା ହେଉ ସର୍ବେ ହେଲେ ତୃପ୍ତ !
ଭୋପ—ଆସିଥିଲେ ବହୁଦୂରୁଁ
ବିଶ୍ୱକର୍ମା ପରିକର ହେଳି,
ପ୍ରଭୁଙ୍କ ଦର୍ଶନ ଆସେ ଉପହାର ଘେନି;
ମାନ ଚର୍ଚ୍ଚେ ଭକ୍ତଗଣ

ଲାଗିବାରୁ ଆପଣା ଚର୍ଚ୍ଚାରେ
ଏ ଦୁହେଁ ସାରନ୍ତି ଦିନ ରହିଣ ଉପାସେ
ଫେରିଗଲେ ପେଟପରେ ଓଦା କନା ଦେଇ ।
ଦୁହେଁ ରହିଲେ ଉପାସ
ଆପେ ଆପଣାର ପାଇଁ ନ ହୋଇ ଉଦ୍‌ଯୋଗୀ
ଯେ ନ କରେ ଆପଣା ସାହାଯ୍ୟ
ତାହାକୁ ସାହାଯ୍ୟ କେବେ ନ କରନ୍ତି ଖୋଦା ।
ଭୋଜନ ବିଷୟେ ଲଜ୍ଜା ଅଟେ ବେହକୁବ
ମନା ଅଛି ଚାଣକ୍ୟ ନୀତିରେ ।
ଭୋପ — ତାହା ସତ୍ୟ ତୁମ୍ଭପରି ସମଜ୍‌ଦାର୍ କିଏ ?
ଗୁହିଁ ଗୁହିଁ ବୁଝିନେଲି ଅସଲ ମରମ ।
ହୋଇଲା ଭୋଜନ ଶେଷେ, ଖାସ୍ ସ୍ୱଦେଶୀ
ଉଠିଲା ଜଳଦସ୍ପର୍ଶୀ ଆକାଶୀ ରକେଟ୍
ଖସିଲା ବିବିଧ ବର୍ଣ୍ଣେ ଅଗ୍ନିମାନ ତାରା
ଅରିଭଙ୍କ ପତନର କରୁଣ ସୂଚନା;
ଘୂରିଲା ଘର୍ଘର ହୋଇ ରଙ୍ଗିନ୍ ଚରକୀ
ସୁଦର୍ଶନ ଚକ୍ର ଯଥା
ଅବା ଯଥା ଅରଟର ଚକ;
ବାହାରିଲା ଅଗ୍ନି ଝକ ଝକ
ନାନାବର୍ଣ୍ଣେ କେଡ଼େ ଝକ ଜକ
ଶିଶୁଙ୍କୁ ଦିଅଇ ମହାଦକ ।
( ଖାନସମାନ ପ୍ରବିଷ୍ଟ ହୋଇ ଭୋଜନକୁ ଯିବାପାଇଁ କହିଲା, ତହୁଁ ମିଆଁ ଗାତ୍ରୋତ୍‌ଥାନ କଲେ )
ଦୂଲଦୂଲ — ଆଜିରାତି ହେଲାଣି ବହୁତ;
ପୁଣି ଆସିବ ନିଶ୍ଚୟ ଅଛି ବହୁତ କଥା ।
ଭୋପ — ତେବେ ଆସୁଅଛି; ନମସ୍କାର ।
ଦୂଲଦୂଲ — ଅରେ କିଏ ଅଛୁ;
ଗୋଟାଏ ଆଣତ ଲଣ୍ଠନ ।

(ପଟପତନ)

# ବିଶିଷ୍ଟ ଗର୍ଭାଙ୍କ

(ନଟମାନଙ୍କ ପ୍ରତି ହୁଣ୍ଡ୍ —)
( ଏହି ଗର୍ଭାଙ୍କଟି ଦୃଶ୍ୟ ନୁହେ, ଶ୍ରାବ୍ୟ । ଏହାର ସ୍ଥାନ ଅନ୍ତରାଳେ ଅର୍ଥାତ — ଗ୍ରୀନ୍ ରୁମ୍ ମଧ୍ୟରେ )
(ନାଟକର ପରିଚାଳକ ବା ମେନେଜର ବସି ଅଛନ୍ତି ଓ ଐକ୍ୟତାନ ବାଦନ, ପଟ ପରିବର୍ତ୍ତନର ବ୍ୟବସ୍ଥା କରୁଅଛନ୍ତି । ଏପରି ସମୟରେ ଜଣେ ପ୍ରୌଢ଼ କ୍ଷୀଣକାୟ ଭଦ୍ରବ୍ୟକ୍ତି ସେଠାରେ ଉପସ୍ଥିତ ହେଲେ । )

ଭଦ୍ରବ୍ୟକ୍ତି — ଅଟକ ଚାଳକ ତୁମ୍ଭେ,
ପଞ୍ଚାମୃତ ନାଟକର ?
ଦେଖି ନାହିଁ ପଞ୍ଚାମୃତେ
ଅସଲ ରସଟି
କି ଭଲ ହେଉଛି ଜଣା !
ଚାରିଆଡ଼େ ହେଉଛି ଘୋଷଣା,
ରଚକର ଚାଳକର ଦୋଷ,
କରି ରୋଷ,
ମହା ମହା ସାହିତ୍ୟିକ ଯୂଥ,
ଦର୍ଶକ, ପାଠକ ବୃନ୍ଦ ପୁଣି ।
କଲେଣି ଯେ ମହା ଆନ୍ଦୋଳନ,
ପ୍ରକମ୍ପିତ ହେଲାଣି ଦର୍ପଣ,
ଅର୍ପଣ କରିବ ବୋଲି ଶେମ୍ ଶେମ୍ Shame

ମେନେଜର — ନ ପାରିଲି ବୁଝି କିଛି
ହେଲା କେଉଁ ତ୍ରୁଟି;
କହିଦେଲେ ସଂଶୋଧନ କରନ୍ତି ଏକ୍ଷଣି ।
ଏ କାର୍ଯ୍ୟରେ ନାହିଁ ଅଭିଜ୍ଞତା,
ଅନ୍ଧା ଅନ୍ଧା ଲାଗୁଅଛି ତେଣୁ,
ତୁମ୍ଭ ପରି ପ୍ରବୀଣର ଯାହା ଉପଦେଶ
ସାଦରେ କଦର କରି କରିବୁ ଗ୍ରହଣ ।

ଆଗନ୍ତୁକ — ପ୍ରଥମରୁ ଶୁଣିଥିଲେ
ଆମ୍ଭ ପରାମର୍ଶ,
କେବେହେ ନଥାନ୍ତି ଲଭି ଏତେ ଲୋକହସ
ନିବାଧରେ ବାନ୍ଧିଥାନ୍ତି ଶାଢ଼ୀ
ଉଲ୍ଲାସରେ ନାଟ୍ୟକାର ପଣେ,
ଇନ୍ଦ୍ରଧନୁ ବରଣର ଶିରୋପ ଉଡ଼ାଇ ।

ଘନ ଘନ ୧'ଶଙ୍ଖ' ବଜାଇ
କଳକଣ୍ଠେ ହୁଳ ହୁଳି ଦେଇ
ଉତ୍କଳ ନାଗରୀ କୁଳ ବରନ୍ତେ ଅକୁଳେ
ମେନେଜର—ବକ୍ତବ୍ୟ କରନ୍ତୁ ଶେଷ
ଗଲା ବାଜି ଘଣ୍ଟା ।
ଆଗନ୍ତୁକ—ନାଟକ ଯେ କରୁ ଅଛ ବାବୁ
ବଖାଣୁଛ ପଞ୍ଚାମୃତ ବୋଲି,
ମାତ୍ର ଖାଇବାକୁ ଖାଲି ଶୁଖିଲା ଠଣ୍ ଠଣ୍ ।
ଅଣ୍ଡିର ପଲରେ କେବେ ପାବକ ହୋଇ,
ଶ୍ରେଷ୍ଠରସ, ଆଦିରସ ପୁଷ୍ଟି,
ନାଚ ବିନା, ନଟୀ ବିନା,
ଯାହା ଅଟେ ଅମୃତର ସାର;
ଛଣା ପଣା ପୀୟୂଷ ଭଣ୍ଡାର ?
ମେନେଜର—ଓହୋ ! ସତ୍ୟକଥା ଏକା,
ଏ କଥାକୁ ନାହିଁ ଅମ୍ଭ ଭୁଲ୍,
ପ୍ଲେ ଆସି ବସିଲାଣି ହେବାକୁ ଆଖର,
କି କରିବୁ ଏବେ ? ଆହା !
ଆଗନ୍ତୁକ—ଏଥିପାଇଁ ଚିନ୍ତା କର କେବେ ?
ଏବେ ବି ସମୟ ଅଛି
ସୁଧାରିବେ ଭୁଲ୍ ।
ଚାମ୍ପେନ୍ ଫିମେଲ ପାର୍ଟ ଦିଅନ୍ତୁ ଛାଡ଼ି ।
ମେନେଜର—ଏତେ ବେଳେ ସମ୍ଭବେ କି ତା ହା?
କାର ଅଛି ଉପସ୍ଥିତ ବୁଦ୍ଧି ?
ହଠାତ୍ କରିବ ଷ୍ଟେଜେ ଏକ୍‌ସଟେମ୍ପୋର ପାର୍ଟ
ଅମ୍ଭ ଷ୍ଟାଫ ଲୋକଯାକ ସବେ ଷ୍ଟକ୍‌ପାର୍ଟ;
ଲମ୍ବପାଟପଟାବୃତ ପୁରୁଷର ବେଶେ ।
ଆଗନ୍ତୁକ—ଆଚ୍ଛା ତେବେ;
ତୁମ୍ଭପାଇଁ ଦେଶ ପାଇଁ ସାହିତ୍ୟର ପାଇଁ,
କରୁଛି ମୁଁ ଭଲେଣ୍ଟିଅର ଆପଣା ସାର୍ଭିସ ।
ମେନେଜର—ଧନ୍ୟ ତବ ଦେଶ ହିତୈଷଣା;
ଧନ୍ୟ ପର ଉପକାର ତବ
ନ ପାରିବି ଜନ୍ମେ ଜନ୍ମେ ।
ଆଗନ୍ତୁକ—ନାହିଁ ପ୍ରଶଂସାର ବେଳ;
କହିଁ ଦିଅ ଯିବି କେଉଁ ବେଶେ ?

ମେନେଜର—ଆମ୍ଭେ କରିଥିଲୁ ଖାଲି ନଟରେ ନାଟକ
ନଟୀ ଦେବା ପାଇଁ ତୁମ୍ଭେ ଦେଉଅଛ ମତ
ଦୁହିଁଙ୍କର ମଧ୍ୟେ ତେବେ ହୋଇ ଯାଉ ରଫା
ତୁମ୍ଭ କଥା ରହୁ ପୁଣି ରହୁ ଆମ୍ଭ କଥା ।
ଯାଅ ତୁମ୍ଭେ ଅର୍ଦ୍ଧ ନଟ, ଅର୍ଦ୍ଧ ନଟୀ ବେଶେ
ପାଲର ଗାୟକଭଳି ପିନ୍ଧଣ ଘାଗରା,
ଚରଣରେ ବାନ୍ଧିବ ଘୁଙ୍ଗୁର,
ହସ୍ତରେ କଙ୍କଣ ତାଗା ଶିରେ ପରଚୁଲ,
କର୍ଣ୍ଣରେ କୁଣ୍ଡଳ,
ତହିଁ ପରେ ଜରିର ପଗଡ଼ି;
ଯହିଁ ଝୁଲୁଥିବ ଲଞ୍ଜ ପଛଆଡ଼େ ।
ବେକରେ ଲମ୍ବିତ ବୁଟାଦାର କଣ୍ଠହାର;
ଦକ୍ଷିଣ କରରେ ଧରି ମନ୍ଦିରା ହଲାଏ,
ବାମହସ୍ତେ ବୁଲାଇ ଚଅଁର,
ଘୁରି ଘୁରି ନଇଁ ନଇଁ ନାଚିବ ଷ୍ଟେଜରେ ।
ମୁଖରେ ଗାଇବ ଗୀତ,
ଗୋଟି କଣ୍ଠ କରି ।
ପୁଣି ସେହି ପଶୁ ମୂତ୍ର ମଲ ଓ ସିଙ୍ଗାଣି
ତହିଁରେ ମିଶାଇ ତାର ଲାଳ ଓ ମେଣ୍ଡିଆ
ବନାଇବ ପାଲର ସିରଣି;
ସତ୍ୟପୀର ହେବେ ଦିଲ୍‌ଖୁସ୍ ।
ବାଜିବ ଭିତର ପଟୁ ଝାଞ୍ଜ ଓ ମୃଦଙ୍ଗ ।
ଆଗନ୍ତୁକ—ଆଚ୍ଛା ! ଆଚ୍ଛା !
ବଜା ଘଣ୍ଟା—
ଆଣିଦିଅ ବେଶ;
ଡ୍ରେସିଂ ମାଷ୍ଟର ନିକେ ଦିଅନ୍ତୁ ପିନ୍ଧାଇ
( ଡ୍ରେସିଂ ମାଷ୍ଟର ଆସି ବେଶ କରିବାକୁ ଲାଗିଲେ )
ଡ୍ରେସିଂ ମାଷ୍ଟର—ମେନେଜର ! ମେନେଜର !
ଆଚ୍ଛା ବିପଦରେ ମୋତେ ଦେଉଛ ପକାଇ
କି କରିବି ଭଲା ।
ମେନେଜର—ହେଲା କି ଅଡୁଆ ପୁଣି ?
ଡ୍ରେସିଂ ମାଷ୍ଟର—କାହୁଁ ଆଣିଦେଲ ଜାନୁଆର
ସଜାଇବା ପାଇଁ ନଟୀ
ମାତ୍ର ଏଯେ ମୁହଁଯାକ ଛୁଞ୍ଚ ବାଲ୍ ବାଲ୍
ଫିମେଲ୍ ସାଜିବ କେଉଁ ରୂପେ ?

୧ । 'ଦର୍ପଣ'ରେ 'ପଞ୍ଚାମୃତ' ଉତ୍ତରଦାତା ଶ୍ରୀ ଦଇତାରି ଶଙ୍ଖ ଅଙ୍କୁ ଲକ୍ଷ୍ୟ କରି ।

ମେନେଜର (ବ୍ୟସ୍ତ ହୋଇ)
ଆରେ ଆରେ; ଅଣ ଝୁର
ସେଫଟି ରେଜର ।
ଡ୍ରେସିଂ ମାଷ୍ଟର—ଝର କରିବାର ଏବେ
ଅଛି କି ସମୟ ?
ସେକେଣ୍ଡ ବେଲ୍ ଯେ ଗଲା ହୋଇ
ମେନେଜର – ତେବେ ଏକ କାମ କର;
ଏତ ଆଉ ନୁହନ୍ତି ଫିମେଲ ପୁରି;
ଅର୍ଦ୍ଧ ନଟ ଅର୍ଦ୍ଧ ନଟୀ
ସିର୍ଫ କମିକ ପାର୍ଟଧାରି
ବହଲାଅ କରିଦିଅ ପେଣ୍ଟ୍
ତହିଁ ପରେ ଯୋଖିଦିଅ
ବଟରଫ୍ଲାଇ ମିଶ ଏକହିଲ;
ଆର୍ଟିସ୍ଟିକ ବାହାଦୁରି ହୋଇବ ଏଥିରେ
ପାର୍ଟ ଅନୁଯାୟୀ ହେବ ବେଶ
ମୁଢ଼ି ସଙ୍ଗେ ଯଥା ପାମ୍ପଡ଼ ଭଜା ।
ଡ୍ରେସିଂମାଷ୍ଟର – ବାହାବା ବାହାବା ! ଭାଇ ନୋହିଲେ କି —

## ଚତୁର୍ଥ ଦୃଶ୍ୟ

(ରଙ୍ଗମଞ୍ଚରେ ଅସ୍ଥାନ ଥାପନା ହୋଇଛି ଓ ମୟୂରପୁଚ୍ଛ ନିର୍ମିତ ଗଦା ପୋତା ହୋଇଛି । ପାଖରେ ଚଅଁର ଥୁଆ ହୋଇଛି । ପ୍ରଥମରେ ପାଲି ପାଲିଆମାନେ ଆସି ଝାଞ୍ଜ ମୃଦଙ୍ଗ ବାଡ଼େଇ ନାଚିଲେ ଓ ନିମ୍ନଲିଖିତ ଗୀତ ଗାଇଲେ । ଏହି ଗୀତର ଘୋଷାଟି ପାଲି ବୋଲାହେଲା ବେଳେ ପାଳି ଧରି ହେବ । )

(ପାଳି ଗୀତ)

ମୁଖଡ଼ା କିଆ ଦେଖୋ 'ଦରପନ' ମେ (ଘୋଷା)
ମେରି ମେରି କରତେ ରହୋ ଭାଇ
ପହନୋ ମଲ୍ ମଲ୍ ଖାସା
ନା ଘର ତେରି ନା ଘର ମେରି
ଜଙ୍ଗଲ୍ ହୋଗା ବାସା ।
ତୁମ୍ ଭି ଯାଏଗା; ହାମ୍ ଭି ଯାଏଗା
କୋହି ନେହି ରହେଗା ଶିର୍;
ଏସା ଦିନ୍ ଭି ଗୁଜର୍ ଯାଏଗା
ବୋଲେ ମାନିକ୍ ପୀର୍ ।

(ଏହି ଗୀତ ପରେ ଗାଅଣ ପ୍ରବିଷ୍ଟ ହୋଇ ଚଅଁର ଭିର୍ଙ୍ଗିଲେ ଓ ଶଙ୍ଖ ବଜାଇଲେ, ତତ୍ପରେ ପାଲି ଗାଇଲେ)
ଏହି ପାଲର ପ୍ରତି ପଦର ଶେଷରେ ପାଳି—
"କ୍ୟା ଦେଖୋ ଦରପନ ମେ"

ଗାଅଣ—

ଶୁଣ ଶୁଣ ସଭାଜନେ ଦେଇ ମନ କର୍ଣ୍ଣ (ମୁଖଡ଼ା)
ନୂଆ ଏକ ପାଲି ମୁଁ ଯେ କରିବି ଗାୟନ ।
ପଞ୍ଚାମୃତ ଖାଇ ମୋତେ ହୋଇଥିଲା ବାଇ,
ସିରଣି ଖାଇଣ ତାହା ଗଲାଣି ପଳାଇ ।
ଦୁଧ କଦଳୀରେ ଯାର ମୋଡ଼ ହେବ ପେଟ,
ଏଥିରୁ ଚଉଲେ ଖାଇ ଛାଡ଼ଯିବ ଝଟ ।
ଗୋରୁ ମଳମୂତ୍ର ପୁଣି ଲାଳ ଯେ ସିଙ୍ଘାଣି;
ପେଟରେ ପଡ଼ିଲେ ପାପ ଛାଡ଼ ଯିବ ପୁଣି ।
ତୁମକୁ ତ କେହି କିଛି କହିବାକୁ ନାହିଁ,
ଅପଣା ବାଳ ଛିଣ୍ଡାଇ (ତେବେ) ମର କାହିଁ ପାଇଁ ?
ପର ପାଇଁ ଖୋଳୁଅଛ ଗାତ କି କାରଣ,
ସେ ଗାତରେ ପକାଇବେ (ବାବା) ସତ୍ୟନାରାୟଣ ।
ଅରସିକ ହୋଇ ତୁମ୍ଭେ ରସ ନ ବୁଝିଲ
ଅମ୍ଭୁତ କାମ୍ଭୁତ ହୋଇ କି ସୁଖ ଭୁଞ୍ଜିଲ ?
ଯାକୁ ତାକୁ ଧରି କିଆଁ ଜଳୁଛ କୋପରେ
ଦୁଧ କେଲା ଯେ ବାଣ୍ଟିଲା (ସେ) ବଢ଼ୁଛି ଗୋପରେ ।
କେତେ ଦିନ ପାଇଁ କେତେ କଲଣି କରଣୀ
ତେବେ ଚିତ୍ରଗୁପ୍ତ ତୁମ ଦିନ ଦେଲା ଗଣି ।
ଏକଥା ସମଜି ଭାଇ ହୋଇ ଯାଅ ଥଣ୍ଡା;
ତୁଚ୍ଛାଟାରେ ପିଟି ହୋଇ ଦେହ କଲ ଗୁଣ୍ଡା ।
ମିଛରେ କାମ୍ପାଇ ଆଉ ଦେଖାଅ ପହିଜ
ଅମୃତ ପିଇଣ ଅସ ମାରିବା ମଉଜ ।
ଅଫା, ଅଫା, ଅଫା, ଅଫା, ଅଫା, ଅଫା, ଅଫା,
ଆଉ ଗୀତ ଆସୁନାହିଁ ରଷାକର ବାପା ।
ପାଳି—କ୍ୟା ଦେଖୋ ଦରପନ ମେ—
(ଗାଅଣ ରହିଗଲାରୁ ସମସ୍ତେ କରତାଳି ଦେଲେ । ଗାଅଣ ତରବର ହୋଇ ଶଙ୍ଖ ବଜାଇଲେ । ମେନେଜର "ଡ୍ରପ୍ ପକାଅ ଡ୍ରପ୍ ପକାଅ" ବୋଲି ହୁରି ପକାଇଲେ ଓ ଡ୍ରପ୍ ପଡ଼ିଗଲା । ମୃଦଙ୍ଗ ଝାଞ୍ଜରେ ଐକ୍ୟତାନ ବା କନସାର୍ଟ ବାଜିଲା ।

# ନବ ରାମାୟଣ

## ପ୍ରଧାନ ଚରିତ୍ର

| | | |
|---|---|---|
| ଲଙ୍କେଶ | ... | କନକ ଲଙ୍କାର ଅଧିପତି |
| ମେଘନାଦ | | ତସ୍ୟ ପୁତ୍ର ( Heir apparant ) |
| ଅତିକାୟ | ... | ,, ( ପାଳିତ ) |
| ଶ୍ରୀରାମ | | ସୂର୍ଯ୍ୟବଂଶର ମହାତାପୀ ରାଜପୁତ୍ର |
| ବିଭୀଷଣ | ... | ତସ୍ୟ ଅନୁଚର ( ଭାବୀ ଭୂପେଶ ) |
| ସୁଗ୍ରୀବ | | ଭଦ୍ର ଯବନ ସଖା |
| ଇନ୍ଦ୍ର | ... | ଐରାବତ ( ଗଜ ) ପତି |

# ନବ ରାମାୟଣ

୨

(ବେଙ୍ଗଳା ରେଣ)

ଉତ୍କଳ ଭାରତି ମାଗୋ, ଝଙ୍କଡ଼ ବାସିନି,
ପୂଜିବାକୁ ତୋର ପଦ ବଳାଇଛି ମନ·
ମଡାର୍ଣ୍ଣ ଫେସନେ; ମାନ ପୂଜା ଆୟୋଜନ
କରୁଁ କରୁଁ ପାଇଲିଣି ବହୁ ତକଲିଫ୍ ।
ମୁଣ୍ଡର ଗୋବରତକ ହେଲାଣି ବରଫ ।
ତଥାପି ନ ପାଇ ଖିଅ ମନ ମୁତାବକ,
ମାଗୁଛି ଶରଣ ମାଗୋ; ତୋର ଦୟାବଳେ
ଲୁହା ମୋ କଲମ ମୁନ ଓଗାଳୁ ନିରତେ
ନିପଟ, ନିଟୋଲ, ଛଟା ବ୍ୟଙ୍ଗ ରସାବଳୀ;
ଯାହା ଗିଳି ଶତ ଶତ ରସିକ ଉତ୍କଳୀ
ଦଣ୍ଡେ ହେଲେ ପେଟକ୍ୱାଲା, ପିଠିକ୍ୱାଲା ଭୁଲି
ହାସ୍ୟ-ଲାସ୍ୟ-ରସାମୋଦେ ଉଠନ୍ତୁ ଉଲ୍ଲସି ।
ରସିକ ଗ୍ରାହକେ ରସ କରନ୍ତୁ ଗ୍ରହଣ,
"ସ୍ପୋର୍ଟସ ମେନ' ସ୍ପିରିଟରେ, ଗ୍ରହନ୍ତୁ କୌତୁକ
ଅରସିକ; ଅବା ଥିବେ ଯେ ବଦ-ରସିକ,
ହଅନ୍ତୁ ସେ ଆଖିବୁଜ-କାଳେ କେତେ ବେଳେ
ଛେଚି, ମୁଡ, ବାନ୍ତି କରି, ହେବେ ହଇରାଣ ।

ଶାରଳେ ଗୋ ! ଅନ୍ଧାରରେ ଦେଖାଇଦେ' ବାଟ
ଅଧମ ସନ୍ତାନେ ତୋର, ଜ୍ୱାଳି ଟର୍ଚ୍ଚ ବତୀ,
ଫୋକସ୍ କରିଦେ' ତହିଁ, ଲାଗିଅଛି ଯହିଁ
ବାନର-ଅସୁର ରଣ ଲଙ୍କା କଟକରେ ।
କପିର କଳ୍ପନା ଯାହା ନ ପାରିବ ଭେଦି
X-Ray ତୋର ତାହା ଦେଉ ପ୍ରକଟାଇ ।
ଅଭୟେ ଗୋ, ମାଡୁଅଛି ଡର ଭୟଙ୍କର,
ତେଣୁ ଏ ବିନତି ମାଗୋ କର ଧରି ମୋର
ଘେନିଯାଅ ସେହି ସ୍ଥଳେ, ଯହିଁ ଲଙ୍କ-ପତି
କୁବଳୟ ଗିରି ବକ୍ଷ ବିଚରଣ ଦକ୍ଷ,
ମଦମତ୍ତ ପନ୍ତାବାସୀ ଦନ୍ତାବଳ ସରି
କରନ୍ତି ୧କନକପୁରେ ନିଶଙ୍କ ବସତି ।
ପୁଣି ଯାହା ମେଘନାଦ ପ୍ରାଚୀର ବେଷ୍ଟିତ,
ସଶସ୍ତ୍ର ସଙ୍ଗିନ୍‌ଧାରୀ ପ୍ରହରୀ ରକ୍ଷିତ ।
ଚାଲିଅଛି ନୀତି-ଚକ୍ର ଯହିଁ ଦିବାନିଶି;
ଆବର କୌଶଳ ଜାଲ ରହିଛି ଆବୁରି;
ସାମ, ଦାନ, ଦଣ୍ଡ, ଭେଦ, ଗୁପ୍ତ ଜଗୁଆଳି
ପାଳିକରି ଜଗିଛନ୍ତି ଗୁପ୍ତ ଦରଜାରେ;
Policy ଓ diplomacy ଦୁଇ ସହୋଦର
ମନ୍ତ୍ରୀ ରୂପେ ହେଉଛନ୍ତି ନ'ର ପର ସଦା ।
କେଉଁ ବଳେ ଛାର କପି କରିବ ସାହସ
ପଶିବାକୁ ତହିଁ, ଯହିଁ ମାଛି ନବଗଣ୍ଡ !
ତ୍ରେତା ଯୁଗ କଥା ମୋର ନାହିଁ ତ ପାଶୋରି
ଚୋରିଇ ପଶିଲି ଯେବେ କନକ ଲଙ୍କାରେ
ନାଗ ପାଶେ ବାନ୍ଧି ମୋତେ ଇନ୍ଦ୍ରଜିତ ବୀର
ଲାଙ୍ଗୁଡ଼ରେ ଦେଲେ ନିଆଁ ଲଗାଇ ସବେଗେ;
ଆଜଯାଏ ଦାଗ ତାର ଯାଇ ନାହିଁ ଲିଭି ।
କେଜାଣି କି ଅଛି ପୁଣି କପିର କପାଳେ !
ଆଳୁ ଖୋଳୁଁ ଖୋଳୁଁ ପୁଣି ଯେବେ ମହାଦେବ
ନ ବାହାରି, ଅଗକରି ବାହାରିବେ ସାପ,
ତୋ ନାମ ଗାରୁଡ଼ ମନ୍ତ୍ର ମାନବ ଭରସା !

## ମୂଳଆ କାଣ୍ଡ

ଲଙ୍କା କଟକର ଏକ କନକ କୋଠରୀ,
ହାଲ ଫେସନରେ ଯାହା ହୋଇଛି ସଜ୍ଜିତ,
ଚର୍ଚ୍ଚିତ କାନ୍ଥରେ ଝୁଲେ ଛବି କେତେ ଖଣ୍ଡ,
ମୁଣ୍ଡପରେ ଘୁରୁଅଛି ବିଜୁଳିର ଫ୍ୟାନ,
ତାହା ତଳେ ବସିଛନ୍ତି କୁଶନ ଆସନେ
ଲଙ୍କେଶ ବଙ୍କିତ-ଗାତ୍ର, ଆତଙ୍କ-ମୂରତି ।
ଏକେ ଶୀତ କାଳ, ଦୁଜେ ପଙ୍ଖାର ପବନ
ଥଣ୍ଡାକରି ପାରୁ ନାହିଁ ଲଣ୍ଡା ମୁଣ୍ଡ heat
ଧୂ-ଧୂ ହୋଇ ଜଳେ ଚିନ୍ତା ହୁତାଶନ
ଅଲକ୍ଷ୍ୟେ, ଉଦ୍‌ଭିଦ-ଶୂନ୍ୟ ମରୁସ୍ଥଳେ ଯଥା;
ଘନ ଘନ ବାମ ହସ୍ତ ବୁଲି ତଥି ପରେ
କେତେକେ ପାରିବ କହ ନିବାରି ସେ ତାପ !
ଘଡ଼ ଘଡ଼ ଗୋଟା ପରେ ଗୋଟା ଯାଏ ଉଡ଼ି,
ସୁବାସିତ, ସାଉଁଳିଆ, ସୁକାୟ ସିଗାର;
ଧୂମ ଯାର କୁଣ୍ଡଳିତ ହୋଇ ମୁଣ୍ଡ ପରେ
ଅଙ୍ଗଲଗ୍ନ ଚିନ୍ତାପରି ଉଡୁଛି ବଳୟ
ଶୂନ୍ୟେ ଶୂନ୍ୟେ—ବିକ୍ଷୁଭିତ, ନାହିଁ ଅଳକୁଳ !

୧ । କନକା (ସମ୍ଭବତଃ)

ସାମନା ଟେବୁଲ ପରେ ପଡ଼ିଛି ବିକ୍ଷିପ୍ତ
ମୁଡ଼ାଏ ଲଫାପା-ମୁକ୍ତ ଚିଠି, ଟେଲିଗ୍ରାମ୍ !
ତହିଁ ମଧ୍ୟେ ନୋଟ ବହି ହୋଇ ଅଛି ମେଲା
ଉଡ଼ୁଅଛି ପୃଷ୍ଠା ଯାର ହୋଇ ଫର୍ ଫର୍ ।
ତହିଁରେ ହୋଇଛି ଲେଖା ନାନା ଅଙ୍କାବଳି
ଲାଲ୍ ପେନ୍‌ସିଲ ଦାଗ ହସେ ଝଟ ଝଟ ।
ଥରେ ଥରେ ବାମ କରେ ନେଇ ତା ଉଠାଇ
ନିବିଷ୍ଟ ନୟନେ ଦେଖୁଛନ୍ତି ଲକ୍ଷପତି,
ଆମ୍ବିଲ ଗୁଞ୍ଜିଲା ଭଲ କରି ଓଷ୍ଠ ବେନି;
ପୁଣି ତାହା ଦେଉଛନ୍ତି ସକୋରେ ଫୋପାଡ଼ି
ପୁଣି ଯାଉଛନ୍ତି ରହି ବଂଶ ଚକ୍ଷୁ ବୁଜି
କାମୁଡ଼ି ପେନ୍‌ସିଲ ମୂଳ,—ପୁନଶ୍ଚ ଚାହିଁକି
ଝର ଲେଖନୀକୁ ଖୋଲି ଯାଉଛନ୍ତି ରାଖି
Inspiration ଚମୁଟାରେ ଟେକିଁ ଉଠେ ଯଥା
କଳ୍ପନା ଦରିଆ ମଧ୍ୟେ ହାଲ୍‌ଛଡ଼ା କବି ।
ଭାବନା ସମୁଦ୍ରେ କୂଳ କିନାରି ନ ପାଇ
ଓଲଟ ଲହଡ଼ି ଗୁପେ କେଞ୍ଚା ଖାଇ ଖାଇ
ମୁଣ୍ଡ ସାଇଁ ସାଇଁ ଅଉ କାନ ଝାଇଁ ଝାଇଁ
ମେଞ୍ଚା ମେଞ୍ଚା ପେଟ, ପୁଣି ଉଠୁଥିଲା ହାଇ
ଯେତେବେଳେ ବଙ୍କାମୁଖ ଲଙ୍କାପତିଙ୍କର;
ବାଜିଲା ଟେଲିଫୋ ଘଣ୍ଟା,—ଚମକି ଲଙ୍କେଶ
ଦ୍ରୁତପଦେ ଯନ୍ତ୍ରଲଗ୍ନ କରି କର୍ଣ୍ଣ-ମୁଖ
ଶୁଣିଲେ ନୀରବେ—ପୁଣି ଚିରଭ୍ୟାସ ବଶେ
ଅଦୃଶ୍ୟ କଥକ ପ୍ରତି କରିଣ ସଲାମ
ବୋଇଲେ yes sir, no sir—pardon, very well.
ଥୋଇ ଯନ୍ତ୍ର ପୁନି ଆସି ବସିଣ ସ୍ୱଠାବେ
ଅର୍ଡ଼ର କରିଲେ 'ଜଲଦି ଲଓ ଗରମ ଚା' ।
ପୁଣି ଆସିଗଲା କ୍ଷଣେ ଚିନ୍ତାଯୁକ୍ତ ଅବସ୍ଥା;
ଧୂମୋଦ୍‌ଗାରୀ ଟି'କପ୍ କାନ୍ଦି କାନ୍ଦି ଏଣେ
ନ ଲଭି ଅଧର ସ୍ପର୍ଶ ପ୍ରିୟତମଙ୍କର
ଅଭିମାନେ ଢଳ ଢଳ ହୋଇଲା ଶୀତଳ ।

ସ୍ୱପ୍ନାବେଶୁଁ ଉଠି ରଜା ଛାଡ଼ିଲେ ହୁଙ୍କାର
"ବରଫ ବରଫ" ବୋଲି; ଆଜ୍ଞା ପିଛୁଡ଼ାକେ
ଦୁର୍ଦ୍ଦମ୍ୟ ଲଭିବ ଧାଇଁ ହୁକୁମ-ପଦାତି
ଯୋଗାଇଲେ ବରଫିତ ଜଳ ତତକ୍ଷଣେ ।

ଯୋଡ଼ିଏ ଚମୁକ ମାତ୍ର ଦେଇ ଲେଉଟାଇ
ନୋଟବହି ଆଡ଼େ ପୁଣି ରହିଲେ ଘଡ଼ିଏ ।
ବବୁର୍ଚ୍ଚି କହିଲା ଆସି, ସଲାମ ପକାଇ
'ହଜୁର ତୈୟାର୍ ଖାନା'—ସଙ୍କୋଚ ସଙ୍କୋଚ;
କେ ଭୃତ୍ୟେ ଚାହିଁ ତାକୁ ଭାଷିଲେ ଲଙ୍କେଶ
"ବଅର୍, ବଅର୍, ସୋଡ଼ା—ଜଲଦି କରୋ ଫୁଲ୍ !"
ହୁଡ଼ହୁଡ଼ି ନିମେଷ ମାତ୍ରେ ଧାଇଁଲେ ସକଳେ;
ଘରପୋଡ଼ି ରଡ଼ି ଶୁଣି ମାନବ ଯେସନ ।
ଉପନୀତ ସ୍ଫଟିକ ପାତ୍ର ଆସିଲା ତକ୍ଷଣେ;
ଓଷ୍ଠାଗ୍ରାହେ ଲଗାଇ ମୁଖ ଚୋଷିଲେ ନିଃଶେଷେ
ଦାନବେନ୍ଦ୍ର, ଚକ୍ଷୁ ବୁଜି ସେହି ସୁଧା ଧାରା;
ଛାଡ଼ି ଆଶ୍ୱମର 'ଆହା' ଉକ୍ତି ସ୍ୱାଦାବେଶେ ।
ଲାଗିଲା ଚୁରୁଟ ପୁଣି, ଦେଖିଲେ ସାଗ୍ରହେ
ବାମକରେ ବଳୟିତ କଙ୍କଣ ଘଟିକା ।
'୯ଃ' ଶବ୍ଦ ଉଚ୍ଚାରିଣ ଦେଲେ ଘଣ୍ଟା ଟିପି ।
ବାଜିଲା ଡିନାର୍ ବେଲ୍, ଧାଇଁଲେ ସସନ୍ତ୍ରେ
ଖାନସମା, ବବୁର୍ଚ୍ଚି ଆଦି ଯେତେ ଆଜ୍ଞାବହ ।

ଏକାଳେ ଶୁଭିଲା ଦୂରେ ମଟରର ହର୍ଣ୍ଣ୍
ଚକିତେ ଉଦ୍ୟାନ ସ୍ଥିତ ଋତୁ ପୁଷ୍ପାବଳି
ଉଜ୍ଜ୍ୱଳ ଆଲୋକ ପାତେ ଉଠିଲେ ଚହକି ।
ଚାହିଁ ଦେଇ ବାରେ ମାତ୍ର ବାତାୟନ ପଥେ
କୂଟ-ନୀତି ଶାସ୍ତ୍ର,-କଳା-ପଣ୍ଡିତ-ହତୋଟି,
ଅଦିର ଅସୁରୀ-ମାୟା-ବେଦ-ବିଶାରଦ
ରକ୍ଷନାଥ ଚକ୍ଷୁ ବୁଜି ବସିଲେ ତୁଲାଇ,
ଠୁଲାଇ ଗାମ୍ଭୀର୍ଯ୍ୟ ଯାକ ବଦନ ମଣ୍ଡଳେ ।
ଧୈର୍ଯ୍ୟର ମୂରତି ଅହା—ଯେସନ୍ତେ ମହୋଦଧି
ଶୀତକାଳେ କ୍ଷଣେ କ୍ଷଣେ ବିରଳ ବତାସେ
ରହିଯାଏ ତେଉଶୂନ୍ୟ ନିସ୍ତାମ, ନିରୋଳ ।

ଶୁଭିଲା ବାରଣ୍ଡା ପ୍ରାନ୍ତେ ଧୀର ଯୋତା ନାଦ,
ପାଦ ଟିପି ଟିପି ଜଣେ ସୁସ୍ଥୂଳ ଯୁବକ
ସଭୟେ ପଶିଲେ ଗୃହେ—ଆସିଣ ନିକଟେ
ହେଲେ ଛିଡ଼ା କିଛିକ୍ଷଣ - ମାତ୍ର ରକ୍ଷପତି
ନ ଚାହିଁଲେ ଚକ୍ଷୁ ମେଲି ତଥାପି ସେ ଆଡ଼େ;

ଯତେକ ଯେପରି ଶତ୍ରୁ ଉଦ୍‌ବେଗ ବିହୀନ,
ତୋଡ୍ୟାଶୂନ୍ୟ ହବେ ଯଥା ପଦ୍ମ ପୁଷ୍କରିଣୀ ।
ଯଣେ ରହି ଯୁବାବର ସମ୍ଭ୍ରମ ବିଧାନେ
ମୁଦା କାଗଜିଏ କାଣି ଦେଲେ ଗୁପି ଗୁପି ।
ଚକ୍ଷୁ ମେଲି ଉଲଟିଣ rod ଟିଏ ମାରି
ବୋଇଲେ ମୁଲାଏମ୍ କଣ୍ଠେ "ବତ୍ସ ମେଘନାଦ
ଅସିଲଣି କେତେବେଳୁ—ସୁସ୍ଥ ତ ଶରୀର ?"
ମେଘ—କୁଶଳ ଶରୀର ପିତଃ
ମାବ, ମାବ ମାବ
ରାବଣ—ବୁଝିଲି, ବୁଝିଲି ଏବେ,
ନାହିଁ ପ୍ରୟୋଜନ,
ଶୁଣିବାକୁ ବେଶି କଥା—
ଯେଉଁ ବୀର ଜଣିଥିଲା ଅମର ଭଟକେ,
ଛଳେ ବଳେ କୌଶଳେ ମୋହର
ସେହି, ସେହି, ଆଜି ଛାର ବଣି କପି ସନେ
ଚିତ୍‌ପଟାଙ୍ଗ ହୋଇଗଲା – ଦୈବ ଦୁର୍ବିପାକେ ।
Diplomacy, duplicity, hypocricy ଆଉ,
ଧର୍ମବଳ, ବୁଦ୍ଧିବଳ, ମନ, ଅର୍ଥବଳ
ସବୁ ହେଲା ବ୍ୟର୍ଥ,
ଘଟାଇଲେ ବଳକୁଳ ଅନର୍ଥ
ସ୍ୱାର୍ଥାନ୍ୱେଷୀ, ମହାଧୂର୍ତ୍ତ ତୀର୍ଥକାକ ଦଳ ।
ମେଘ—ଦୁନିଆରୁ ଉଠିଗଲା କୁର୍ବାନ୍ ଇମାନ୍,
ବଡ଼ ସାନ, ସମସ୍ତେ ସମାନ୍,
ବଦ୍‌ନିୟତ, ବେଇଜ୍ଜତ, ବେକୁଫ, ବେଇମାନ୍ !
ରାବଣ—ଦେଖ ବତ୍ସ, ନ ହୁଅ ଅଧୟ୍ୟ,
ସବୁର୍ ଗଛରେ ମେଓ୍ୱା ଫଳେ ସୁନିଶ୍ଚୟ,
କର ନାହିଁ ଭୟ—ରଣେ ଜୟ ପରାଜୟ,
ବାଲ୍ମୀକି ଲଡ଼ୁର ଭଳି—
ଖେଳିଯାଅ ଖେଳ ମନଇଚ୍ଛା—
Sportsମେନ spirit ରେ,
ଜାଣିରଖ ଦୁନିଆଟା କ୍ରୀଡ଼ାଭୂମି ଯଥା ।
ମେଘ—ମାବ ପିତଃ  ମନେ ହୁଏ [1]ଦେଇ ଗୁଳି ଟିପି
ଗଣ୍ଡା ଗଣ୍ଡା ବେଇମାନେ ଦଅନ୍ତି ମୁଁ କାଣ୍ଡି,
ସବୁ ହୋଇଯାନ୍ତା ଥଣ୍ଡା ଏକା ମିନିଟରେ ।
ହୁଣ୍ଡାମିର ଶାସ୍ତି ଉପଯୁକ୍ତ,
ହୋଇଲା ଯେପରି ଥରେ ଷଡ଼ମୁଖ ରଣେ ।

ରାବଣ—ଏ ନୁହେଁ ସମୟ ତାର—
ଉଠେ ଯେତେବେଳେ ହାଓ୍ୱା ଛମୁଲ ତୁଫାନେ
ନୁଇଁଦେବ ମଥା ତୁମ୍ଭେ ପହିଲୁ ପହିଲୁ—
ମାତ୍ର କଟିଗଲେ ତାର ପ୍ରଥମ ଧକମ
ନିଜ ମଧ୍ୟେ ଧୂମାଧୂମି ଲଟାପଟା ବେଳେ
ପଛଆଡ଼ୁ ଦେବ କଷି କୁକୁର ବାଡ଼ଅ—
ପଳାଇବେ ଫେରୁ କୁଳ ହୋଇ ଛନ୍ନଛତର ।
ଏହିକ୍ଷଣି ଯାଅ ତୁମ୍ଭେ ବିଶ୍ରାମ କାରଣେ,
ଖାଇ ଦେଇ ଏକ ତୋଜ ଶ୍ରମ-ସଂହାରଣୀ,
ଅସମ ଦାୟିନୀ ଅଉ ସୁନିଦ୍ରା କାରଣୀ ।
କାଲି ପ୍ରାତେ ସମସ୍ତିଙ୍କୁ ଡକାଇ ଗହଣେ
କରିବା ବିଗ୍ରହ ସବୁ ପଗ୍ରହ ଉଗ୍ରହ ।

ତହୁଁ ମେଘନାଦ ବୀର ଚଳିଲେ ସ୍ୱପ୍ନରେ;
ସ୍ୱସ୍ଥାନେ ରହିଲେ ବସି ଲଙ୍କା ଅଧୀଶ୍ୱର,
ସାରି ରାତି ଉଜାଗରେ ସନ୍ତ୍ରସ୍ତ ସନ୍ତ୍ରସ୍ତ
ଅଙ୍କେ ଭିବନାରୁପୀ ମହା ପାଗ୍ରିବାରେ ।
ନୌକର ଗୁଙ୍କର ଅବା ବସି ବାରନ୍ଦାରେ
ଅଣ୍ଟୁ ମଧ୍ୟେ ମୁଣ୍ଡ ଜାକି ପଡ଼ିଲେ ଘୁମାଇ ।
କେବଳ ରହିଲା ଜାଣି ରକ୍ଷେନ୍ଦ୍ର ଗହଣେ
ପ୍ରେୟସୀ ବିଜୁଳି ଶକ୍ତ ବତୀ, ପଙ୍ଖ ରୂପେ ।
ନିଶାନ୍ତେ ଶୁଭିଲା ଡାକ 'କୋଇ ହ୍ୟାୟ, କୋଇ ହ୍ୟାୟ'
ଧଡ଼ପଡ଼େ ଉଠି ସର୍ବ ପ୍ରହମଣ୍ଡଳୀ
ଧାଇଁଲେ କଟ୍ରିଡ଼ ପଡ଼ି ଗୋଟାପରେ ଗୋଟା ।
ବୋଇଲେ ଜଲ୍‌ଦି ନେବେ ଘଡ଼କୁ ଅନାଇ
ରକ୍ଷପତି, ଚକ୍ଷୁ ମେଲି "ଓର କୋଇ ଅୟା" ?
"ହଜୁର, ନ ଅୟା" ବୋଲି ପ୍ରଥମ ପ୍ରହରୀ
ମାରିଲା ସଲାମ, ପଦ ଦୁଇ ପଛେ ଘୁଞ୍ଚି ।
ରାବଣ—କାହେ ନହିଁ, ବୁଡ଼ବକ୍ ବେକୁବ୍—ଶୁଅର
ଜଲ୍‌ଦି କରୋ, ଜଲ୍‌ଦି କରୋ, ବୁଲାଓ ବୁଲାଓ—
ପ୍ରହରୀ—କାହାଁସେ ବୁଲାଓଁ, ଫର୍ମାଇୟେ କାହାଁ ଯାଓଁୟେ
ରାବଣ – ଯାଓ ଜହାନ୍ନମ, ଗଧ୍‌ଧା, ଶୁଅର, ଘାସ୍ତେଲ ।
ପଳାଇଲେ ରକ୍ଷୀବୃନ୍ଦ ପଛଘୁଞ୍ଚା ମାରି ।
ଏକାକୀ ରହିଲେ ପୁଣି ରକ୍ଷକୁଳ ନାଥ
ରକ୍ତ-ଚକ୍ଷୁ, ବକ୍ଷ-ସ୍ଫୀତ କ୍ରୁଦ୍ଧ-ବ୍ୟାଘ୍ରବତ ।

---

୧ । ଉଠନ୍ତ କଲ୍ଲାବୋଡ଼'ର ଚେୟାରମ୍ୟାନ ହେବା ଭଳି ଲକ୍ଷକର ।

୨ । 'ଛମୁଖା'ରେ ଯୁଦ୍ଧକାଣ୍ଡକୁ ଲକ୍ଷକର ।

ଘନ ଘନ ନିଃଶ୍ୱାସରେ କମ୍ପିଲା କୋଠରୀ
ଝାଞ୍ଜି ପିଟିହୁଏ ଯଥା ଗ୍ରୀଷ୍ମ ଦ୍ୱିପ୍ରହରେ ।
କାନ୍ଥରେ ଉଠିଲେ ଥରି ଝୁଙ୍ଗା ତସ୍‌ବୀର,
ଲଙ୍‌ଘା ତରବାର ବୃଦ୍ଧ ଉଠିଲେ ଝଙ୍କଣି,
ପଙ୍ଖା ଗତି ହେଲା ବନ୍ଦ, ମନ୍ଦ ଦୀପାବଳୀ
ଖେଳିଲା ବିଜୁଳିସନେ ଯେସନ ବିଜୁଳି
Positive, Negative ଲାଗି ଝଟାପଟା
ତହୁଁ ଟାଣି ଆଣି ମେଜ୍ଞ ଟେଲିଗ୍ରାମ୍ ଫର୍ମ୍
ଘର୍ମ ପୋଛି କପାଳରୁ, ଲେଖିଲେ ସିବଣ,
ଉପରେ urgent ଲେଖି ଦେଲେ ପଠାଇ
ଅତିଶୀଘ୍ର ଅଙ୍କାକାରୀ ଦ୍ୱାରୀ ମାରଫତେ ।
ଏଅନ୍ତେ ହୋଇଣ ଥଣ୍ଡା କମ୍ପିତ ମାତର
ତନ୍ଦ୍ରାବେଶେ ରସକଷ ପଡ଼ିଲେ ଢୁଲାଇ
ପାହାନ୍ତାରେ ଯେବେ କାଉ କଲା କାଆ—କାଆ ।

ଏଥୁଅନ୍ତେ ଭାଇମାନେ ଶୁଣ ମନ ଦେଇ,
ଛଙ୍କା ସୁଧା ରସ ଭାଣ୍ଡ ଦେବି ଏବେ ଫେଇ ।
ହସିବେ ରସିବେ ରସଗ୍ରାହୀ ଥିଲେ କେହି,
ଅରସିକେ ନାକଟେକି ହୋଇ ଥୋଇ ଥୋଇ
ମୂଳଆ କାଣ୍ଡର କଥା ଅଗ୍ରର ସମାନ
ଅଗ୍ରର ଗୁଣିବ ଧୀରେ, ଧୀରେ ଭାଗ୍ୟବାନ ।

## ଦୋମୂନା କାଣ୍ଡ

ବାଜୁଛି ବିବିଧ ବାଦ୍ୟ ମଙ୍ଗଳ ମଧୁରୀ
ପଡ଼େ ଶଙ୍ଖ ହୁଳାହୁଳି—ଉଠୁଛି ଉଚ୍ଛୁଳି
ଅଭିନବ band ବାଦ୍ୟେ ଦିଗଦିଗନ୍ତର ।
ଆନନ୍ଦେ ଅଧୀର ହୋଇ ଲକ୍ଷ କପିଗଣ
ଗାଉଛନ୍ତି, ନାଚନ୍ତି ସର୍ବେ ବିଜୟ ଉଲ୍ଲାସେ ।
କେ ବଜାଏ କରସିନ କାନସ୍ତରୀ ଟିଣ
ଦୁଇଖଣ୍ଡ ଚୁପ କାଠି ଘେନି,
କେ ପୁଣି ନଡ଼ିଆ ପତ୍ରେ କରେଛି ମହୁରୀ
ଅମୃତଭଣ୍ଡାର ନଳେ ନିର୍ମାଣିଛି ତୁରୀ ।
ଜୟ ଶବ୍ଦ ଓଂକାଳନ୍ତି ବାନର ବାହିନୀ
ଅନନ୍ତା ଛାଡ଼ନ୍ତି ରଡ଼ 'ଖେଁ ଖେଁ' ଧ୍ୱନି କରି
ପାତିଗଣ ଚି-ହିଁ ଶବ୍ଦେ କମ୍ପାନ୍ତି ଗଗନ ।

ଚରଣ ଗୁପନ୍ତି ଧରେ ବୀର ହନୁମନ୍ତ
ରଣ କ୍ଲାନ୍ତ, ପରିଶ୍ରାନ୍ତ ଅତି
କଲେ ହନ୍ତସନ୍ତ ଯେହୁ
ବାର୍ଦ୍ଧିକ୍ୟ ଅଷୟ କୁମରେ ।
ବସି ବସି ବେଳେ ବେଳେ ଲାଗିଆସେ ଆଖି
ଥାଇ ଥାକି ମାରି ଦେଉନ୍ତି ହାଇ
କହିଲେ ଲକ୍ଷଣ ବୀର, 'ସାବଧାନ ହନୁ,
ମାଡ଼ିଲାଣି ନିଦ ଯେବେ ଯାଅ ପଡ଼ି ଶୋଇ ।
ଆରପଟେ ପେଟ କାଢ଼ି ବୀର ଜାମ୍ବବାନ
କରୁଛନ୍ତି ଅନ୍ତରାଳେ ଦନ୍ତ କଟ କଟ ।
ମଟ ମଟ ଯୁଗଳ ନୟନ,
ପାର୍ଶ୍ୱେ ବସି ଉଠ ଉଠ ହେଉଛନ୍ତି ଥୋକେ
ବାବଦୁକ ଭାଲୁ ଦଳ ।
ଏମନ୍ତ ସମୟେ ହନୁ ପଡ଼ିଲେ ଢୁଳାଇ
ରାମଙ୍କ ଚରଣୋପରି ।
କି କଲୁ କି କଲୁ ବୋଲି ତକ୍ଷଣେ ଲକ୍ଷଣ
ଥୋଇଲେ ପଟାସ କରି ଗୋଟାଏ ଗୁପୁଡ଼ା
ହନୁମନ୍ତ ଗଣ୍ଡସ୍ଥଳେ ।
ଚକିଲେ ଗୃହାନ୍ତେ ହନୁ ଚମକ ତରାସେ
ଶୁଭିଲା ଭଲ୍ଲୁକ ଦଳେ ହାସ୍ୟ କୋଳାହଳ ।
ଅସହ୍ୟ ଏ ଟିଟିକାରୀ !
ଘୁର ଭାଲୁ ଦଳ ।
ଦେଲେ ହସ ।
କି ଅପୂର୍ବ !
ଧାଇଁଲେ ଲାଙ୍ଗୁଳ ଟେକି ସରୋଷେ ମାରୁତି,
ଉଠାଇ ହେନ୍ତାଳ ଠେଙ୍ଗା,
ମଇଁଷି ଘଉଡ଼ା ଲାଗି ଯାହା ପ୍ରୟୋଜନ ।
ନିମିଷେ ଜାମ୍ବେବ ଉଠି ହୋଇଯାଇ ଛିଡ଼ା
ଦାଢ଼ିକୁ ହଲାଇ ବେଗେ କରବାଡ଼ ଧରି
ସବେଗେ ଆସିଲେ ମାଡ଼ି; ଦେଖାଇ ଭୃକୁଟି !
ଗାଲ ଫୁଲାଇ ହନୁ ଗର୍ଜିଲା ପହିଲୁ
ତାହାପରେ ଠେଙ୍ଗା ଠୁଙ୍କା ଠୁଙ୍କ;
କପିକୁଳ ଗଲେ କ୍ଷେପି, ତେଣେ ଭାଲୁଗଣ
ଝଟାପଟା ଘମାଘୋଟ ଲାଗିଲା ବିଷମ
ତଡ଼ାତଡ଼ି ହୁଡ଼ାହୁଡ଼ି, ଭିଡ଼ାଭିଡ଼ି ପୁଣି
ମଡ଼ାମଡ଼ି କୋଡ଼ାକୋଡ଼ି ଗଡ଼ାଗଡ଼ି ରଣ ।

ନାଚନ୍ତି ଜାମ୍ବେବ ଭାଲୁ ହୋଇ ଦାଲ୍ ଦାଲ୍
ସହ ସେନା ବୃନ୍ଦ;
ହୁମ୍ପା କୁଦା ମାରି ବାନର ମଣ୍ଡଳୀ
ବାଲ୍ ବାଲ୍ ବାଳ ତାଙ୍କ ପକାନ୍ତି ଓଟାରି ।
ଶେଷେ ହନୁ ପକଡ଼ଣ ଜାମ୍ବେବଙ୍କ ଦାଢ଼ୀ
ସଦମ୍ଭେ କଗୃଡ଼ ଦେଇ
ବସିଲେଟି ମାଡ଼ ।
ଲଙ୍ଗୁଡ଼ ପୁରାଇ ଦେଇ ବେକରେ ତାଙ୍କର
ଦେଲେ ଭିଡ଼ ଦାନ୍ତକୁ କାମୁଡ଼ ।
ଛାଡ଼ ଛାଡ଼ ଗଲା ପ୍ରାଣ, ହାଡ଼ ଗଲା ଭାଙ୍ଗି
ଏମନ୍ତେ ଛାଡ଼ିଲେ ରଢ଼ ବୁଢ଼ା ଜାମ୍ବବାନ ।
ତକ୍ଷଣେ ଲକ୍ଷ୍ମଣ ବୀର ହୋଇ ତରବର
ଗୁଣରେ ଯୋଖିଲେ ଶର
ଏକା କାଣ୍ଡେ ଦୁଇ ପକ୍ଷୀ ବିନାଶିବା ଆଶେ ।
ଏତେ କଥା ବେମାଲୁମ ରଘୁକୁଳ ନାଥେ
ଯେଣୁ ସେହୁ ମାରିବାକୁ ବକାବକ ଥକା
ଉତ୍ତାନ ଶୟନ ପାତ
ଛାଡ଼ୁଥିଲେ ନିବେଳ ଘୁଙ୍ଗୁଡ଼ ।
କମାରର ଭାତି ପରି ନାଚୁଥିଲା ଛାତି ।
ସୁଗ୍ରୀବ ଓ ବିଭୀଷଣ ବସି ଏକାନ୍ତରେ
ସଂଗ୍ରାମର ହାଲଚାଲ କରୁଥିଲେ ତର୍କ ।
ଅନର୍ଗଳ ଯାଉଥିଲେ ବକି ବିଭୀଷଣ
ଆପଣାର ବାହାଦୁରୀ, ପୁଣି ମୀତ ଜ୍ଞାନ
ଦାନ୍ତକୁ କାମୁଡ଼ ପୁଣି ହାତକୁ କଗୃଡ଼ ।
Politics ଅନ୍ତର୍ଗତ ଯେତେ 'ବାଦ' ବିଦ୍ୟା
ଶୁଣୁଥିଲେ ଧୀର ହୋଇ ତାଟକେ ସୁଗ୍ରୀବ,
କାଲି ଆଗେ ଶୁଣାଇଲା ପରି ବୁଢ଼ା ମୂଳା
ବୁଲାଇ ବୁଲାଇ କରି ଛାଗ ଦାଢ଼ି ପରେ ।
ଗୋଳ ଶୁଣି ସଚକିତେ ଉଠନ୍ତେ ସୁଗ୍ରୀବ
ବୋଇଲେ ରାବଣାନୁଜ,
ବସ, ବସ, ଶୁଣିଯାଅ ନିତ୍‌ସେଙ୍କ ଯୁକ୍ତି
Karl Marx ମତକୁ ସେ କାଟିଛୁ କେମନ୍ତେ ।
ମାତ୍ର ସେହି କମ୍ବିଡ଼ିଆ ନିବାସୀ
Darwin ଙ୍କ ବଂଶଧର ଅତି ଗୋ-ବଚରା
ବର୍ବରର ଅଣ୍ଡୁବର କୁନ୍ଥା ମଗଜରେ
ଏ ସବୁ ism କାହୁଁ ମାରିବ ବା ଗଜା ?

ନ ମାନି ସେ କଥା ସେଠୁ ଉଠିଲେ ତକ୍ଷଣେ
ଧାଇଁ ଧାଇଁ ଦେଖନ୍ତି ତ ବୀର ହନୁମାନ
କଗୃଡ଼ ଜାମ୍ବବେ ତଳେ ବସିଅଛି ମାଡ଼ି
ଉପାଡ଼ନ୍ତି ଦାଢ଼ି ପୁଣି ଅନ୍ୟ କପିବୃନ୍ଦେ ।
ସସବ୍ୟସ୍ତେ ସୁଗ୍ରୀ ବୀର ଛାଡ଼ିଲେ ହୁଙ୍କାର
"କି କର କି କର ହନୁ—ହା—ହାଁ—ରହ,
ଆପଣା ମଧ୍ୟରେ କାହିଁ ଲଗାଇଛ କଳି !
ଦେଖୁନାହିଁ, ଶତ୍ରୁସେନା ସମ୍ମୁଖେ ତୁମ୍ଭର
ଗୃହ ବିବାଦରେ କରୁଅଛ ବଳକ୍ଷୟ !"
ବୋଇଲେ ମାରୁତ, ଶୁଣ ଅହେ କପିରାଜ,
ଏହି ବୁଢ଼ା ଭାଲୁ ସବୁ ଅନିଷ୍ଟର 'ଗୋଡ଼ା',
ଭିତରେ ଭିତରେ ଥାଇ ଗଢ଼ିଅଛି ଦଳ
ଭଲ୍ଲୁକଙ୍କୁ ଧରି; ପୁଣି କପି କେତେଜଣ
ନେଲାଣି ଫଟାଇ
ରଟାଇ ଦୁର୍ନାମେ;
ହଲାଇ ହଲାଇ ଥୋପ ମାଛି ଓ ରୁଟିର
ପ୍ରଭୁଙ୍କର ବଦନାମ କରୁଛି ପ୍ରଚୁର
ମାତ୍ର ନିଜେ ବଢ଼ାଉଛି ଚର୍ବି ଆପଣାର,
ଅଲକ୍ଷିତେ ପକାଇ ଭୋଜନ
ପୋଛିପାଛି ଦେଇ ହାତ ଏକଦମ୍ ସାଫ୍ ।
ଏହା ତଣ୍ଡି ଚିପି ଆଜ ମାରିବି ନିଶ୍ଚୟ—
ଏହା ମୋର ଜାଣ ଦୃଢ଼ବ୍ରତ !
ପଡ଼ୁ ପଛେ ଅଭିଶାପ, ନାହିଁ ପାପ ଏଥେ ।
ତରାଟି ନୟନ ତହୁଁ ବୋଇଲେ ସୁଗ୍ରୀବ—
"ଆରେ ଓଲୁ ! ବୁଝୁନାହୁଁ ହିତ ଆପଣାର,
ଏ ସବୁ ଗୋଳରେ ଅଛି କସ ପ୍ରୟୋଜନ ?
ରାବଣ ମାରିବା ଅଉ ସୀତା ଉଦ୍ଧାରିବା
Contract ଆମର ଏହି ଦୁଇ କାମ ପାଇଁ
ତହୁଁ ବଳି ନୁହଇ ଉଚିତ ।
କାହିଁ ଘଷୁଅଛ ପିଠି ଶିମୁଳି ଗଛରେ ?
ମୂଲ ଦେବ କିଏ ?"
ଏତେ କହି ଦୁଇଜଣେ ଦେଇ ସେ ଛଡ଼ାଇ
ଦୁହିଙ୍କୁ ଓଟାରି ଆଣି କଲେ ମେଣ୍ଟ ମାଣ୍ଡ ।
ତହୁଁ ହନୁମନ୍ତ କହି **excuse please, regret**
ଜାମ୍ବେବେ ମାଗିଲେ କ୍ଷମା ।

କାମ୍ବେବ ମୁରକି ହସି ବଢ଼ାଇଲେ ହାତ
ହନୁ ହାତେ ହାତ ଦେଇ କଲେ shake hand ।
ତହୁଁ ସର୍ବେ ଉଠିପଡ଼ି ହେଲେ କୋଲାକୋଲି
ମିଶାମିଶି, ହସାହସି, ଦାଢ଼ୀ ଘଷାଘଷି ।
ଚୂନ ଧୂଆଁପତ୍ର ଆଉ ବଢ଼ ଖିଲପାନ
ହଅ କାଅ ହୋଇଗଲା ମେଳ ଉଚ୍ଛୁଳୁପେ ।
ଏକାଳେ ଉଠିଲେ ସ୍ୱମ ଆଖି ମଳି ମଳି
ମନେ ମନେ ଖୁସ୍ ମାତ୍ର ଉପରେ ଅଫ୍‌ସୋସ୍ ।
ଶ୍ରୀ ସନ୍ତୁ କଥା ରାମ ଭାଷିଲେ ଗମ୍ଭୀରେ,
"ନେତୃବୃନ୍ଦ, ହୋଇଛ କି ଅନ୍ଧ ?
ଦ୍ୱନ୍ଦ୍ୱ ଆଜ କରିଲ୍ କିପାଇଁ,
ଅତି ମନ୍ଦ—ନିନ୍ଦାର ବିଷୟ
ସଂହତିର ବନ୍ଧନ ତୁଟାଇ,
ଲଗାଇଛ ଏଭଳି ଦ୍ୱନ୍ଦର,'
ଆପଣା ଅନ୍ଦରେ !
ଜାଣି ନାହିଁ ବାହାରିଛି ଜହର ଗୁଟିକ
linary action ଅଟେ ଯାର ନାମ ?
ସେହି ଖଣ୍ଡା ପ୍ରୟୋଗରେ ଦେବ ଥଣ୍ଡା କରି
ମେଣ୍ଟା ଭଳି ଗଣ୍ଡା ଗଣ୍ଡା ଦୁଣ୍ଡା ପଣ୍ଡା ଗଣେ ।
ଛାଡ଼ ଏହି ଷଣ୍ଢର ସ୍ୱଭାବ,
ଭଲ କଥା ଭାବ,
Team spirit ରେ ସର୍ବେ କାର୍ଯ୍ୟ କର ଯାଇ ।

ଏ ଅନ୍ତେ ପୋଖରୀପାଣି ଗଲେ ରଘୁମଣି
ଲେଉଟା ଧରି ସଙ୍ଗେ ଗଲେ ବୀର ହନୁମାନ ।
ଆଖେର୍ ଦୋମୁନା କାଣ୍ଡ—ଏବେ ମାର ଦମ୍
ମିଠା କଡ଼ା ଝାଲ ବଡ଼ା ଗରମା ଗରମ ।
ଦୋମୁନା କାଣ୍ଡର ଗୁଣ ବଡ଼ ଅଦ୍ଭୁତ,
ଘାଉଲ ନ କରି ଖାଲି ହଏ କୁତୁକୁତୁ ।
ରସିକ ଗ୍ରାହକେ ରସ ଶିଖ ବାଣ୍ଟୁ ବାଣ୍ଟୁ,
ନର୍ଦ୍ଦମାରେ ହୁଅ ଘାଣ୍ଟି ହୋଇଥିଲେ ମାଣ୍ଟୁ ।
କରି ଛାଣ୍ଡ ମେଣ୍ଟା ମୁଣ୍ଡ, କର ନାହିଁ ରୋଷ,
ହନୁମନ୍ତ କପି ବୋଲି ଧର ନାହିଁ ଦୋଷ ।

## ଚେଣିବା କାଣ୍ଡ

ବସିଛି ସମର-ସଭା, ମନ୍ତ୍ରଣା ଆଗାରେ,
ଉପସ୍ଥିତ ଏକେ ଏକେ ଚମୂପତି ଗଣ ।
ସ୍ୱକୀୟ ବାହିନୀ ଛାଡ଼ି ଆସିଛନ୍ତି ଧାଇଁ,
ଅଜେଣ୍ଟ ମେସେଜ ପାଇ ଶୀଘ୍ର ଗହଣେ ।
ଅତିକାୟ, ବକ ଦନ୍ତ, ଦୀର୍ଘ ଶୃଙ୍ଗ ଅଦ୍ଧ
ଯେତେ ରକ୍ଷ ବୀର ବୃନ୍ଦ, ସୁଦକ୍ଷ ସମରେ
ଆବର ଅଛନ୍ତି କେତେ ସାମନ୍ତ ନୃପତି,
ସ୍ୱାର୍ଥ ଆଶେ ଯେଉଁମାନେ ଭିଡ଼ୁଛନ୍ତି ଅଣ୍ଟା.
ଖଣ୍ଡେ ଖଣ୍ଡେ ଜାୟଗୀର ପାଇବେ ଇନାମ୍ ।
ଗୁପ୍ତଚର ବିଭାଗର ବଡ଼ ଅଫିସର
ଦୁର୍ବର ସାରଣ ମନ୍ତ୍ରୀ ବସି ଏକ ଧାରେ
ଘାଣ୍ଟି ଯାଉଛନ୍ତି ଧୀରେ ଫାଇଲ୍ ଗଦା ଗଦା
ଚଳାନ୍ତି ମେସିନ୍ ଭଳି ଅବିରାମ ଭାବେ ।
ପର୍ମିତ ବ୍ଲାଡ଼ାର ପରି ଉଦର ତାଙ୍କର
କରଇ ଟେବୁଲ୍ କାମ୍, ତିନି ଫୁଟ ଲମ୍ବା ।
ତାଙ୍କ ନନା ଶୁକ ମନ୍ତ୍ରୀ, ପ୍ରଧାନ ସଚିବ
ବସିଛନ୍ତି ମୁଣ୍ଡ ମାଣ୍ଡି, ମୁଖ କରି ହାଣ୍ଡି ।
ରଣଭୂମି ମାନଚିତ୍ର, ସକଳ front ର
ମେଲ ହୋଇଅଛି ଆଗେ, ଟେବୁଲ ଉପରେ,
ନାଲି ନେଳୀ ଟିକ୍ ମାର୍କା, କ୍ରସ୍ ମାର୍କା ହଅ ।
ତହିଁରେ ବୁଲାଇ ଚକ୍ଷୁ, ବୀର ବଂଶ-ନେତ୍ର
ପାଂଶୁଳ ବଦନେ, ପୁଣି ଓଷ୍ଠେ ଓଷ୍ଠ ଚୁପି
ସୁଗମ୍ଭୀରେ ପଚାରନ୍ତି ସମର ବାରତା ।
ଦିଶୁଛନ୍ତି ଲଙ୍କାପତି ଅତି ଶାନ୍ତ ମୂର୍ତ୍ତି
ତୁଫାନ ଆଗରୁ ଯଥା ଦିଶଇ ଆକାଶ;
କିଅବା ଅନଳୋଦ୍‌ଗାର ଅନତି ପୂର୍ବରୁ
ଦିଶେ ଯଥା ଅଗ୍ନିଗର୍ଭ ଭିସୁଭିୟସ୍ ଗିରି ।
ଛାମୁଙ୍କର ଗତି ବିଧି ଜ୍ଞାନରେ ନିପୁଣ
ରକ୍ଷ ସେନାପତି ବୃନ୍ଦ ଗଣନ୍ତି ପ୍ରମାଦ,
ମାନ ଅଥ ଭୟେ, ଅବା ଜାନ୍, ମାନ ଭୟେ,
ସକଳେ ଅଛନ୍ତି ଥାକି କର୍ମ୍ମକୁ ଆଦରି
ହୋଇବା ଆସାମୀ ଯଥା କାଠଗଡ଼ା ମଧ୍ୟେ ।
କାହାର ଫୁଟିବ ପେଟ, କାହାର ମୁଣ୍ଡିଆ,
କାର ନାକ, କାନ, କାର ଚୁଟି ହେବ କଟା,
ଯିବ କାର ଜମିଜମା, କାହାର ମହିନା,
କାର ପଦ, କାର ମଦ, କାର ଦାନା କଣା ।
ଚୁହୁଁ ଚୁହୁଁ ରକ୍ଷେଶଙ୍କ ବକ୍ଷ ଗଲା ଫୁଲି
କର୍ମ-କାର ଭାତିବତ୍ ହୋଇ ଠେଲି ଠେଲି

କଅବା ଇଞ୍ଜିନ ଗର୍ଭେ ଲାଗିଲା ଉତ୍ପାତ
ବୟ୍ଲର ଫାଟି କିବା ହେବ ଶବ୍ଦମାତ୍ର !
କ୍ରମେ ହୋଇଗଲା ବଂଶ ଚକ୍ଷୁ ରକ୍ତ ବର୍ଣ୍ଣ,
ଉଗାଳି ଅନଳ ଶିଖା ଗରମ ଗରମ୍
ମଶାଣି ପଦାରେ ଯଥା ଉଠଇ ଉଜ୍ଜ୍ୱଳି
ଝିପିଝିପି ବର୍ଷାକୁଳ ଅନ୍ଧାର ନିଶାରେ
ଡାଆଣୀ ଆଲୁଅବଳୀ ଜ୍ୱଳି ଦପ୍ ଦପ୍,
କମ୍ପିଲେ ବୀରେନ୍ଦ୍ର କୁଳ ରକ୍ଷ ସେନାପତି ।
ଏକକୁ ଆରେକ ଚାହିଁ, କେହୁ ଅବା ଥରେ
ବରଡ଼ା ପତର ଭଳି ଖର ତୁଫାନରେ ।
କୁଅରେ, କଣ୍ଠରେ ଅବା କେହୁ ମାରେ ହାତ,
କେହୁବା ସମ୍ବରି ବେଗ ବସେ ପୋତି ମାଥ,
କେ ଭାବେ 'ଯଃ ପଳାୟତି ସ ଏବ ଜୀବତି';
ମାତ୍ର ଉଠିବାକୁ ଗଲେ ପାଦ ନ ଗଚ୍ଛତି !

ଏକ କୋଣେ ଶାରଣ ମନ୍ତ୍ରୀ ବସି ସ୍ୱ ଠାବରେ
ହୋଇଲେ ମୂର୍ଚ୍ଛିତ । "ହାୟ ହାୟ ଏ କି ହେଲା !"
ବୋଲିଣ ଧାଇଁଲେ ସର୍ବେ-ଠେକା ଠେକି କରି
ବସାନ୍ତେ, ଦେଖିଲେ ତାଙ୍କ ଦୁଇ କଲ ବହି
ଶୁଭ୍ର ଫେନ ରାଶି ରାଶି ଆସୁଅଛି ଭାସି ।
ଏଣେ ଲଙ୍କା ପଥ ସବୁ ବିଲ୍‌କୁଲ୍ ଖରାପ ।
ଚାରି ଜଣ ରକ୍ଷୀ ଆସି ଉଠାଇଲେ ଲାସ୍,
ଟ୍ରକ୍‌ରେ ଲଦନ କରି ପେଟଟିକୁ ଖାସ୍ ।
ଏହା ଦେଖି ରାବଣଙ୍କ ଅକ୍‌କଲ୍ ଗୁଡୁମ୍
ଛାଡ଼ିଗଲା ସବୁ ରାଗ, ଗୋସ୍‌ସା ଆଦି ଯେତେ,
ଆଖିରୁ ନିଭିଲା ନାଲି, ନାକରୁ ହୁତାଶ ।
ହାହୁ ହାହୁ ବୋଲି ସର୍ବେ ଛାଡ଼ିଲେ ନିଶ୍ୱାସ ।
ଧନ୍ୟ ସେ ଶାରଣ, ଅଜ ଆତ୍ମ ବଳି ଦେଇ
ରକ୍ଷା କରିଦେଲେ ଯାହା ଏତେ ବନ୍ଧୁବୃନ୍ଦେ ।
ପରାର୍ଥରେ ଆତ୍ମତ୍ୟାଗ ଅନନ୍ତ ସ୍ୱରଗ
ଆବର ଅକ୍ଷୟ କୀର୍ତ୍ତି ଲଭିଲେ ଶାରଣ ।
ତହୁଁ ଦଶାନନ ଧୀରେ ବୋଲନ୍ତି ବଚନ
ଚାହିଁ ଅତିକାୟ ବୀରେ ପ୍ରଶାନ୍ତ ମୂରତି
ଦୁରନ୍ତ ତୁଫାନ ଅନ୍ତେ ଯେସନ ଧରଣୀ—
ରାବଣ – କହ ପୁତ୍ର କି ଖବର, କି କି ହେଲା ପୁଣି ?
କେମନ୍ତେ ଗଲବା ହଟି, ତଡ଼ାଇଲେ ପଛି
ବାନର ଭଲ୍ଲୁକଗଣ, କାଟି ଦେଇ ଶତା ?

ଅତି—କି କହିବ ପ୍ରଭୋ
ହେଲା ଭୀଷଣ ସମର,
ଧରା ଥରହର,
ରାବି ହବା ନାହିଁ ତର,
ଧମାଧମ ଚାଲିଲା ମଟର,
ବିବେଦନ, ବକ୍ତୃତା ପୋଷ୍ଟର
କାନ୍ଥ ନରହିଲା ବାକି ସଡ଼କ ପ୍ରାନ୍ତର;
ଅଜଳନ୍ତା ଜଳବତ ଚାଲିଲା ଖରଚ ।
ମିଛ, ସତ, ଚୁଗୁଲି ଯେ ଖତ
ଦୁଇ ପକ୍ଷେ ଶସ୍ତ୍ର ରୂପେ ହେଲେ ଲଢ଼ାଲଢ଼ି ।
ମାତ୍ର ପ୍ରଭୋ, ଆମେ ଗାଈ ଦଇବ ଦଉଡ଼,
ଯେଣିକି ଭିଡ଼ଇ ତେଣେ ପଡ଼ଇ ଯିବାକୁ ।
ରାବଣ—ପୁଣି ସେ ଦଇବ କଥା !
କାହିଁ ଥିଲା କହ ପୌରୁଷ ତୁମ୍ଭର
ଯାହା ବଢ଼ାଇବା ଲାଗି ଖୁଆଇ ପିଆଇ
ବଢ଼ାଇ, ହସାଇ, ପୋଷିଥିଲି—ଏତେ କାଳ !
ଏହୁ ତାର ଫଳ ।
ଲଙ୍କା ନାହିଁ ଶେଷ କାଳେ ହେଲା ନପୁଂସକ ?
ଓଃ—ନାହିଁ ତ ତୁମ୍ଭର ଦୋଷ,
ଭାଗ୍ୟ ଦୋଷ ମୋର
ଜନ୍ମ ଶନି ହୋଇଅଛି ରଣେ ପରାଜୟ
ଅଚ୍ଛା, ବତ୍ସ—କହରେ ବୃତାନ୍ତ
ଅକ୍ଷୟ କୁମାର ମୋର ପଡ଼ିଲା କେମନ୍ତେ ।
ଅତି—ରାମର ଗହଣେ ଯେଉଁ ଅଛି ଲଙ୍କା ପୋଡ଼ା
ପଶୁ ଜାତି, ମୂଢ଼ମତି, ମାଡ଼ରେ ଷାଉଡ଼
ବିଶାଳ ମର୍କଟ ସେନା, କରନ୍ତି ଉଅରି;
ସେହି ସେନା ଘେନି,
କଲା ଭୀଷଣ ରଣ କୁମାର ସହିତେ ।
ଆତ୍ମ ବାଦ୍ୟ ତୁରୀ ଭେରୀ, ନାମ ସଂକୀର୍ତ୍ତନ
ସବୁ କଲା ପଣ୍ଡ, ସେହି କପି ଅପୋଗଣ୍ଡ,
ଲଣ୍ଡଭଣ୍ଡ କଲା ହୁଣ୍ଡା ରକ୍ଷ ଷଣ୍ଢଗଣେ ।
ହନୁର ପ୍ରଭାବ ଆପେ ଜାଣନ୍ତି ଆପଣେ;
କନକ ପ୍ରାଚୀର ବେଢ଼ା ସ୍ୱର୍ଣ୍ଣ ଲଙ୍କାପୁର
ଉତ୍ତରେ ଅଛଇ ଯାର ପଞ୍ଚମୁଖ ଦ୍ୱାର,
ପଶି ତହିଁ ହନେ ସେହି ମର୍କଟ ଅର୍ଭକ
ସର୍ବନାଶ ଭିଆଇଲା ପୋଡ଼ି ଗର୍ବ ତାର ।

ଘର ଖାର କରିଦେଲା ଘର ସେ ବଟର ।
ଶ୍ରୀମୁଖରୁ ଅଜ୍ଞ ଯେବେ ହୋଇଥାନ୍ତା ତବ
ଖଣ୍ଡ ଖଣ୍ଡ କରି ତାକୁ ଦେଇଥାନ୍ତି ଫିଙ୍ଗି
ଉତ୍ତାଳ ତରଙ୍ଗ କୁଳ ଅଥଳ ଜଳକୁ;
ପଡ଼ିଥାନ୍ତା କାଳଅର ବାଳଅ ପାଟିରେ ।
ମାବ ଘମୁ ଦୟାବହି ଦେଲେ ଜୀବଦାନ ।
ନିମକ୍ ହାରାମ୍ ସେହି ପକ୍କା ବେଇମାନ୍
ଚରଣ ଚୁଟିଅ, ପଟି ଦଅ ଚାଁ ଖିଅ !
ରାବଣ—କି କହିଲ୍, କି କହିଲ୍ ଗଞ୍ଜଲା ଅଷୟ୍ !
ଅଉ ବା ରହିଲା କଏ ?
କାହାକୁ ଭରସା କରି ବାନ୍ଧିବି ସାହସ ?
ହାୟ୍, ହାୟ୍, କି କୁକ୍ଷଣେ ଢଶିଲ ଏ ବୁଦ୍ଧି !
ଏହା କହି ଲଙ୍କାଈଶ ବୁଜିଲେ ନୟନ
ଆଉଜି ପଛକୁ କ୍ଷଣେ ପଡ଼ିଲେ ଚିକାଇ ।
କ୍ଷଣ ଅନ୍ତେ ପୁଣି ମାରି ହାଇ
ଅତକାୟେ ଚାହିଁ ପୁନଃ ବୋଇଲେ ବଚନ ।
ରାବଣ—ଏଠାରେQuestion ନୁହେଁ ଜୀବନ, ମରଣ,
ବ୍ୟବସାୟ ଯାର ରଣ,
କ୍ରୀଡ଼ା ଭୂମି ସମର ପ୍ରାଙ୍ଗଣ,
ଖାତିର କରେକି ସେହୁ ଜୀବନ, ମରଣେ ?
Military ଜାତି ଅମେ,
ମରିବାଟା ଅଟେ ଖେଳଘର ।
ଅଉ ପୁଣ ?
ଇଚ୍ଛା ମାତ୍ରେ ହୋଇବେ ପଇଦା
ଯେତେ ଇଚ୍ଛା ତେତେ ।
ଦୁଃଖ କରି ଫାଇଦା ବା କିସ ?
ଅତ—କିନ୍ତୁର କିନ୍ତୁର ପ୍ରଭୋ—
ରାବଣ—ଚୁପ୍ କର—ଶୁଣ ମୋର କଥା—
ଜାଣିଛଟି, ବିସ୍ତାର ନଅଟା ଜୀବନ ?
ଅତ—ସେହିପରି ଅଛି ଏକ ଇଂରାଜୀ ପ୍ରବାଦ—
ରାବଣ—Well,
ସେହିପରି ଜାଣିରଖ ଅଠର ଜୀବନ
ମାନବର, ଯେହୁ ଧରେ Politics ପେଷା;
ହତାଶ ହେବାର ନୁହେ ଥରେ ହେଲେ ଫେଲ୍ ।
ପାସ୍, ଫେଲ ଗୁଳି ଅଛି ଚକ୍ରନେମୀ ବତ ।
ରବାର୍ଟ ବୃସର କଥା ପଢ଼ିଛ ପୁସ୍ତକେ ?

ଜାଣିରଖ, ଅଜିକାର ଫେଲ୍ଓର ଯାହା
ସ୍ତମ୍ଭ ଅଟେ କାଲିକାର ବଡ଼ ସକ୍ସେସର ।
ଫେଲ୍ଓର ରୂପୀ ମହା ଧ୍ୱଂସ ସ୍ତୁପ ପରେ
ଛିଡ଼ାହୁଏ ସକ୍ସେସର ଦୃଢ଼ ଇମାରତ ।
ଅଷୟ୍, ଅନନ୍ତ,
ତାଜ୍‌ମହଲ ବତ
ଦୁନିଆକୁ କରେ ଚମତ୍କୃତ ।
ପଢ଼ିଛଟି ଗୀତା ତୁମ୍ଭେ
Annie Besantର ?
ଦେଶ୍‌ବନ୍ଧୁ କହନ୍ତି—ବାଃ ଲେଖିଅଛି ଖାସା
ଅଶାର message ତାହା Christ ଙ୍କରତ ।
Very hopeful-Original ବିଲ୍‌କୁଲ
Fighters hand book ପୁଣି Politics
Diplomacy ଖେଳ - ବଡ଼ ପକ୍କା ସେ ଓସ୍ତାଦ୍
'ହ୍ୱାନୁ' ଅଛୁ ଖୁବ୍—Statesmanlike.
Give the devilit's due
ସେଥିପାଇଁ ଦେଖୁନାହିଁ—Old boy Gandhi
କାନରେ ରଖିଛି ବାନ୍ଧି, ସେହି ବହି ଖଣ୍ଡି;
ଫାନ୍ଦୁ ଅଛି କେତେ ଫନ୍ଦା ନୂତନ ନୂତନ
ଅକଲ କରିଣ ଗ୍ରାମ୍ Stwd Builderର ।
ଅତ—(ସ୍ୱଗତ) ସତ୍ୟ କହିଛନ୍ତି ପ୍ରଭୁ ।
'ହାବୁ ଡୁବୁ' ଖାଉଛନ୍ତି ଜ୍ଞାନର ସାଗରେ ।
ଦଗବିଜୟ କରି, ଜାଣିଛନ୍ତି ନାନାକଥା
ନାନା ଶାସ୍ତ୍ର, ନାନା ଶସ୍ତ୍ର ହୋଇଛି ହାସଲ
ମେଟଭିଲ ପଲସିରେ ଦୀକ୍ଷିତ ସର୍ବଥା ।
ରାବଣ—ହେଉଛ କି ଅନ୍ୟମନା ?
Absent mindedness—ଅତ ବଡ଼ ଦୋଷ ।
ଖୋଲି ଦେଖ ଭାଷାକୋଷ, ହୋଇବ ସନ୍ତୋଷ;
Inferiority Complexର ଅଗ୍ରଜେ ଏହା—
ଛାଡ଼ଦିଅ ଅବଶୋସ୍
କର ଦିଲ୍‌ଖୋସ !
ନୋହିଲେ ଲସ୍‌ରୁ ଗୋଟି ହୋଇଯିବ ଜ୍ଞଣା—
ପଢ଼ିଛ ତ Zoology ରବି ଚେଗୋରର ?
ଅତ—ଅଗାଧ ! ଅଗାଧ !
ରାବଣ—Elephant psychology ଖୋଲି ଦେଖ ଯାଇ—
ତହିଁରେ ପାଇବ ତଥ୍ୟ ଏହି maladyର ।

Fall action କର brainର ଉପରେ ।
× × Well—ହିଁ—
ତୁମ୍ଭ Cammandରେ ଥିଲେ ଯେତେ ସେନାପତି
ଗୋଟି ଗୋଟି ହେଲେ କୂପ କାତ୍ର ;
ନ ପାରି ନିର୍ଘାତ୍ର ।
କ୍ୟା ତାଜ୍ଜବ କ ବାତ୍ର ।
କପି ମାତ୍ର କରିଦେଲେ କଚ୍ଛାରର ଦଳ !
ଭଡ଼ାଟିଆଯାକ ମିଳି କଲେ ଗଣ୍ଡଗୋଳ ।
ଅତି—ଦୋଷ ନୁହେ ମୋର ପ୍ରଭୋ,
Final Selection ଥିଲା ଖୋଦ ହାତେ ।
ମୁହିଁ ଯଦି ରହିଥାନ୍ତି ଜଗି ବେଳାଭୂମି,
ଶତ୍ରୁକି ପାରନ୍ତା ପଶି !
ଅଚହ୍ନା ଅଜଣା ପୁଣି ବାଳକ ଅକ୍ଷୟ
କରିଦେଲା—
ରାବଣ—Shut up—Shut up
ଜାଣିଛକି କାହା ଆଗେ କହୁ ଅଛ କଥା—
ପୁଣି କାହା ନାମେ ?
ଦୋଷାରୋପ ଖାଣ୍ଟି bread ପରେ
ବ୍ୟବଧାନ ଅଛୁଟି ମାଲୁମ୍ !
ଅତି—Beg your Pardon ରାମ
ଅତର୍କିତ ମୁହୂର୍ତ୍ତରେ ହୁଡ଼ି ଗଲା କହି—
ରାବଣ—ସଦା ତୋତେ ଦେଖେଁ ଅତର୍କିତ,
Trainingର ଫଳ ସବୁ ବ୍ୟର୍ଥ,
ତୁଷ ଗଲାଆଗୁ ଯଦି ପିଟିଥାନ୍ତି ଏତେ,
ସେ ଆଜ ହୋଇଥା ଗଜା ଫଳଥାନ୍ତା ଧାନ ।

× × × ×

ଅଛ -.ଶୁଣେଁ, କହ ଏବେ ଆପଣାର କଥା—
କାହିଁଳା ସେ ରଣ ସ୍ଥଳେ—ଖାସ୍ ଦୁର୍ଗେ ତୋର !
କେମନ୍ତେ ପରାସ୍ତ ହେଲା କପି ସେନା ହାତେ !
ଅତି—କି ବର୍ଣ୍ଣିବି କଥା ନାଥ !
ପଢ଼ିଥିବେ ଖବର କାଗଜେ
କେମନ୍ତ ଭୀଷଣ ରଣ ହେଲା ମୋର ରାଜ୍ୟେ ।
ଦେଖି ମୋର ଚକ୍ଷୁ ବିକଟାଳ,
ପୁଣି ଲକ୍ଷ ପ୍ରବଣାଳ,
ଇନ୍ଦ୍ରଜାଲ ତା ତହୁଁ କରାଳ,
ପଳାଇଲେ ଫେରୁକୁଳ ଅସମ୍ଭାଳ ହୋଇ
ଧୂବନ୍ତୀର୍ଣ୍ଣ ରଣଭୂମେ ବସାଇଲି ଥାନା
ଗୃହଗୋହା ଗୃହପାଶେ—
ରଖାଇଲି ଜଙ୍କବର ପ୍ରହରୀ ।
ଆପେ ସଦା ତଦାରଖ କରୁଥିଲି ଯାଇ
ଆପଣା ବାସ୍ତୁମୂ ରଥେ—
ମାଛି ପଶିବାର ଆଉ ନ ରହିଲା ବାଟ ।
ହାଟ ମାଠ ବସିଗଲା ମାଉ;
First in the field ହୋଇ ଜଗି ଦେଲି ବାଟ ।
ଅବସ୍ଥା ଦେଖିଣ ଶତ୍ରୁ ହୋଇଲେ ଅକୁଳ
moral ଭାଙ୍ଗିଲା ଜାଣି ବଳଲ ନିତାନ୍ତ
ତହୁଁ ସେହି ମାନବ ଦୁର୍ମତି,
ଧଡ଼ବାଜ୍ ଅତି,
ରାଜପୁତ୍ର ହୋଇ ଯତି ସାଜି ଅଛି ଯେହୁ,
ବୋଲଉଛି ମହାତାପୀ ସ୍ୱାବକ ମଣ୍ଡଳେ ।
ମାତ୍ର ଧରି ଜାଣେ ନାହିଁ ଧନୁ
ଧରିଲେ ମାଙ୍କଡ଼ ପରି ହଅଇ ଯେ ଭାଙ୍ଗି;
(ଯଥା ଭାଙ୍ଗି ଦେଇଥିଲା ମିଥିଲା ନଗରେ)
ଆସି ଆପେ ଛିଡ଼ା ହେଲା ରଣ ଭୂମି ପରେ ।
ମାତ୍ର ମୁଁ ଦେଖିଲି ତାକୁ ନିପଟ coward—
ନ ଧରିଲା ନିଜେ ଅସ୍ତ୍ର,
ହସିଆର, ବଦ୍ୟାମା କାଳେ ପଡ଼ିଯିବ ଜଣା;
ଯେମନ୍ତ କରିଲା କୃଷ୍ଣ ଆର ଧଡ଼ବାଜ୍,
କୁରୁକ୍ଷେତ୍ର ରଣ କାଳେ; ଖଟାଇ policy ।
ରାବଣ—ତାର୍ ପର୍—ତାର ପର ?
ଶବ୍ଦଭେଦୀ ଗୁଳି ତାକୁ ଦେଲି ନାହିଁ ମାରି
ଦେଲି ନାହିଁ ଫୁଟାଇ ତା ପେଟ,
ପଞ୍ଚୁବଟୀ ଖାଇ ଯାହା ବଢ଼ୁ ଅଛି ଗୁଣ୍ଡେ !
ଅତି—କ୍ରମେ କ୍ରମେ କହୁଅଛି ସବୁ—
ପଛଆଡ଼େ ରହି ଧୂର୍ତ୍ତି,
ଆଗେ କରାଇଲା ଛିଡ଼ା ବୀର ବିଭୀଷଣେ,
ଘରବୁଡ଼ା, ଗେ ବିଛଡ଼ା, ବୁଢ଼ାମାଙ୍କଡ଼ାକୁ
ରାବଣ—କହନା ତା କଥା ମୋତେ—
ସେହି ମୁଖ ପୋଡ଼ା,
ଗୋଡ଼ାଗୋଡ଼ି କରୁଥିଲା ଯେତେ,
ପିଠିରେ ଗୁମୁଚ୍ଛା ତାର ମାରିଥିଲି କେତେ ।

ମନେକୁଏ ଯାଉଲେ ଅଗ୍ରତେ
କାନ ମୋଡ଼ା ଦେଇ ତାଙ୍କୁ ଦଅନ୍ତ ବସାଇ
ପିଠିରେ ଘୋଡ଼ା କୋରଡ଼ା କରି ସପାସପ୍ ।
ମୁଥା ମାରି ଦ୍ୟନ୍ତ ଭାଙ୍ଗି ଷ୍ଟ୍ରଣ୍ଡି ଦନ୍ତ ତାର,
ସମର ସଲ୍ୟୁଟ ମାରବାର ହକ୍ ପୁରସ୍କାର ।
ଅବିଶ୍ୱାସୀ hypocrite, Selfish, Devil !
କହୁଁ କହୁଁ ସ୍ୱବଣର ବାକ୍ୟ ହେଲା ଶେଷ,
ବୋଧାବୋଧ ଗଲା ହୁଡ଼ି;
"ପ୍ରତିଶୋଧ, ପ୍ରତିଶୋଧ" ବୋଲି ଦେଲା ରଡ଼ି;
ଘଡ଼ଘଡ଼ ଘୋଷିଲା ହୁଙ୍କାର ।
କ୍ରୋଧ ସବୁ ହୋଇ ମୂର୍ତ୍ତିମାନ
ଆଖିବାଟେ, ପାଟିବାଟେ ପଡ଼ଲେ ବାହାରି
ହୁ-ହୁ କରି,
କି ଅବା ଆଗ୍ନେୟଗିରି ଉଠିଲା ଗହିଙ୍କି ।
ଦଶ ମୁଖେ ଦନ୍ତପନ୍ତି ହେଲେ କଡ଼ମଡ଼,
ବିଂଶଲୋଚନରେ ନିଆଁ ଜଳେ ରଡ଼ରଡ଼,
ନାସାରନ୍ଧ୍ର ଭଡ଼ଭଡ଼, ତଣ୍ଡି ଘଡ଼ଘଡ଼,
ଛିଡ଼ ପରି ହେଲେ ଠିଆ କେଶ ବଡ଼ ବଡ଼,
ଚଡ଼କ କି ପଡ଼ିବ ଅକାଳେ !
ଦେଖି ଅତକାଯ଼ଙ୍କର ଧଡ଼ପଡ଼ ଛାତି
ଲୁଗାପଟା ସଡ଼ସଡ଼ ହୀଲେ ।
ସ୍ୱବଣ—କହ କହ କି କଲା ସେ ନିମକ ହାସ୍ତମ୍
ଝୀଡ଼ାଖିଆ ମାନବ ଗୋଲମ୍
ରକ୍ଷକୁଳ କାଦ୍ଦମାର ପଙ୍କ,
କାଉର ବଂଶର ପୁଣି ଲଙ୍କାର କଳଙ୍କ,
ଚେତାକଟା ଚରଣ ଚୁଟିଆ !
ଅତ—ପ୍ରଭୁଙ୍କର ନୀତମାର୍ଗ ଚଲାଇଲି ଆଗେ,
ପକାଇ ବଳଣୀ ଖଡ଼ା,
ଏଥିପାଇଁ ଯେ ବଦ୍ୟାଟା କରଛୁ ହାସଲ
ଇଭ୍ରମାଲ୍ କରି କରି ବହୁବର୍ଷ ବ୍ୟାପି ।
ଧରିଅଛୁ କେତେ ବେଢ଼ି, ଭାଲୁର, ବାଳିଆ
ହଲାଇ ହଲାଇ ଥୋପ ମନ ଭୁଲଣିଆ ।
ମାତ୍ର ଏଠି ହେଲା ସବୁ ବୃଥା—
ଘୋଡ଼ାଇ ରଖିଲା ଘଣ୍ଟ ସ୍ୱମ ମହାତପୀ
ଜାଣିଲା ଅସୁରୀ ମାୟା କଣ୍ଟୁମାୟା ବଳେ ।
ଅନ୍ଧ ସନ୍ଧ ବୁଲି ବୁଲି ଝାଡ଼ଲେ ଲେକ୍‌ଚର୍

ଯାଚଲା ବାନ୍ଧିବା ଲଡ଼୍‌ଡୁ ଧାମା ଧାମା କରି,
ମାହାର୍ଦ୍ଦର ଭଗ୍ନମତ କରି ଦେଇ ଚୁନା,
ଶିଖାଇଲା ଜଣେ ଜଣେ ଧପ୍‌ପାବାଜୀ ନୀତ,
ବଦ୍‌କାସୃତି, ବେଇମାନି, ଚେତ୍ରଚରି ଇତ୍ୟାଦ
ଚବିବ୍ୟାଦ ମୁଖଟାକୁ କରିଦେଲା ବନ୍ଦ ।
ଶେଷେ, ଅସ୍ତ୍ର ଜାଡଭାଇ ଦୂନ୍ ସରଦାରେ,
ଅସ୍ତ୍ରଆର ଜଲା ଯାଇ ଉଭକୋଟ ପ୍ରଦାନେ ।
ଦଳ ଦଳ ହୂନ୍ ଆସି କଲେ ମହାରଣ
ପଣ ପଣ ଦାଳିବୃନ୍ଦ ଯୁବା,
ମାଛି ଭଳି ଭଣ ଭଣ ହେଲେ ଗୃହଅଢ଼େ ।
ଯେଣିକି ଗୃହିଁଲେ ସେଣ୍ଡ ପଙ୍ଗପାଳ ପର୍ଯ୍ଯ
ଭଲାଣ୍ଟିଅର ଗଦା ଗଦା
କଲକଲ ଧଲଧଲ ହେଉଛନ୍ତି ସଦା ।
କିବା ସେ ଭୀଷଣ ହକ୍କା !
ମନେ ହେଲା ଦେବଙ୍କଙ୍କ ସମୁଦ୍ର ମନ୍ଥନ,
ଅବା ଯଥା ସ୍ୱଜପୁରେ ବ୍ରାହ୍ମଣ ଭୋଜନ
ଦହି, ଚୂଡ଼ା, ଗୁଡ଼, ଲଙ୍କା, ତେନ୍ତୁଳି ଚକଟା !
ଅଣ୍ଡା, ବଗ୍ରି, ଘୁଞ୍ଚ ଘୁଞ୍ଚ କେତେ ଭେଲେଣ୍ଟର
ଡେଲ୍‌ଗ୍ରିଣି ମଳା ଯଥା ଅବା ଜନ୍ଦା ମନ୍ଦା,
ଆଗନ୍ତୁକ ଜୟନାଦେ କମ୍ପାଇଲେ ଦିଗ,
ଚୁନା କରି ଦେଇ ରକ୍ଷ ସେନାର moral,
ସ୍ୱବଣ—War ର tactic ଏଟା
ଜଣା କି ନଥିଲା ତୋତେ, ଗୋବର ଗଣେଶ ?
ଅତି—Honesty, honesty ପ୍ରଭୁ ।
Honesty, ମୋ ନୀତି ଜୀବନର ।
ରଣସ୍ଥଳେ Gallantryର କାରେ ମୁଁ ପସନ୍ଦ ।
ସ୍ୱବଣ—ଏକବେବାରେ ତାହା ମୂର୍ଖ, ନିଛକ୍ ବେକୁବ୍ !
ଜାଣୁ ନା ସେ ନୀତବାକ୍ୟ ପିଲାଙ୍କୁ ମାଲୁମ ?
All is fair in love and war !
କହ କହ ତହୁଁ ହେଲା କିସ —
ଅତ—ଏକା ହୋଇଥାନ୍ତେ ଯଦ ସ୍ୱାର ବଭୀଷଣ
ଭାବଥିଲି ଲଦ ପଢ଼ ଦେଇଥାନ୍ତି ଗୃପି
ଏକାଥରେ ପଢ଼ଥାନ୍ତେ ହାପି ।
ମାତ୍ର—
ସ୍ୱବଣ—Comment ନକରି ଏବେ କହ ଖାସ୍ fact.
ଆପଣା tact ର ଗୁଣ ବଖାଣି ବଖାଣି

ପାଣର ବଢ଼ାଣି ଯଥା ପାଲ୍ଲଣୀ ଆଗରେ ।

ଅତ—ଅଙ୍ଗଦ ନାମରେ ଏକ ଥିଲା ବନ୍ଧା ହନୁ,
ଗର୍ବିଷ୍ଠ ତାହାର ଅଛି କରି ରାମ କାର୍ଯ୍ୟ,
ତେଣୁ ଆଶା ବଳବତୀ ପୋଷିଥିଲା ମନ
ଲଭିବାକୁ ଉପଯୁକ୍ତ ପୁରସ୍କାର ତାର
ନଗଦା ନଗଦ୍ ।
ମାତ୍ର ତା'ର ଦାବିଟାକୁ କରିଦେଲେ ରଦ୍,
ଯେଣୁ ଖୋଦ ରାମ ଗୁଣମଣି,
ବିଭୀଷଣେ କରିଦେଲେ ସେନାପତି ପଦେ ।
ପଣ କରି ନିରାଶ ଅଙ୍ଗଦ
ଜାମ୍ବବାନ ପଦେ ଯାଇ ପଶିଲା ଶରଣ ।
ଦେଖିଲି ମୁଁ ଏ ସୁଯୋଗ ନୁହେ ଛାଡ଼ିବାର
ପକାଇଲି ଥାପ ।

ରାବଣ—କି ହେଲା କି ହେଲା ତହୁଁ—
କହ ତ୍ୱରା କରି—

ଅତ—ପାତ ଜାତ ବାନରର ବଂଶ ଯେ ଅଙ୍ଗଦ
ଥିଲା ତାର ମନ୍ତ୍ରିତ୍ୱର ଚେଷ୍ଟା,
ଆସିଣ ପଡ଼ିଲା ଆପେ ରଦନ କେଲାଇ ।
ମନେ ଥିଲା ଅସନ୍ତୋଷ, ପୁଣି ଅବଶୋଷ
ହେଲା ଖୋସ ହୋଇଗଲା ଶୁଣି ମୋ offer
ବିଦ୍ରୋହ କରିଣ ସେହୁ ମାରିଲା ସଫର ।
ପୁଣି ତାହା Sympathyରେ ଏକ କଳା ହନୁ
ବଳବାନ ତନୁ,
ଦୃଷ୍ଟ ବିଭୀଷଣ ପ୍ରତି ତୁଷ୍ଟ ନୁହେ ମତ
ରଣଭୂମି ତ୍ୟାଗିଗଲେ ସାଙ୍ଗୋପାଙ୍ଗ ଘେନି,
କୈତବ ବାହାନା ଧରି ଶ୍ୱଶୁର ଆଳୟ ।

ରାବଣ—ନିଃସହାୟ ହୋଇଗଲା କେବେ ବିଭୀଷଣ ?

ଅତ—ମନେକଲି ନିଃସହାୟ ହୋଇଗଲା ବୋଲି;
ସେଥିପାଇଁ କରିଥିଲି ଏତେକ କୌଶଳ,
ମାତ୍ର ରାମ ଚତୁର ଶେଖର
ଖାତର କରିଲା ନାହିଁ ତିଳ ପରିମାଣେ ।
ଏକେଶ୍ୱର ହୋଇ ଛିଡ଼ା କରିଲା ସମର
ଏକାକୀ ବଡଣ ପଲା ଯେସନ ମାଧିଅ ।
ଇଙ୍ଗିତ ମାତ୍ରକେ ଖେପି ଆସିଲେ ଚୌଦିଗୁଁ
ଅଗଣନ କପିପଲ୍ଲ ହୋଇ କଲ କଲ ।

ରାବଣ—ବଳଠାରୁ ଗଣେ ବଡ଼ ଛଳ ଓ କୌଶଳ,
ସମରରେ ଭେଦନୀତି ଅତି ପ୍ରୟୋଜନ,
ବିପକ୍ଷର ମେରୁଦଣ୍ଡ ଭାଙ୍ଗିଦିଏ ଯାହା ।
କହ ବତ୍ସ, ସେହି ଦୁଷ୍ଟ ଗର୍ଭିଲା ନନ୍ଦନ
କାଳିଆ ଅନନ୍ତା ବାଗେ ପଡ଼ିଲା କେମନ୍ତେ ?
ଶୁଣିଥିଲି ଅଟେ ସେହି Staunch ନୀତିବାଦୀ ।
Dogmatic ଅତି, ପୁଣି ଗୋଆଁର-ଗୋବିନ୍ଦ ?

ଅତ—ସତ୍ୟ ପ୍ରଭୋ—ସେ ଅତି ରହସ୍ୟ—
ଦୁରୁମାଙ୍କୁ ବାଗେଇବା ଅଟଇ ସହଜ,
ବାଧାଦେଲେ ଦୁରନ୍ତ ସେ ଅତୀବ ଭୀଷଣ,
ମାତ୍ର ତାଙ୍କ 'ଗୋଁଡ଼ାମି'କୁ କରିଦେଲେ fan
ଦପ୍‌କରି ଉଠେ ଜ୍ୱଳି fanaticism;
ସେହି ନୀତି ଧରି ମୁହିଁ ମାରିଲି Success ,

ରାବ—କି କଲୁ କି କଲୁ ପୁଣି କହ ଖୋଲି କରି
ଲଗାଇଲୁ କି ସୁଦେ ଏ ଖାଞ୍ଚ ?

ଅତ—ପ୍ରଥମେ କରିଲି ତାକୁ ଛଳ ବେଶଧରି,
ରାମାନୁଜୀ ମତବାଦୀ 'ଗୌଡ଼ୀ' ବୈଷ୍ଣବ ।
ସେନାପତି ପଦେ ଯେଣୁ ହୋଇଲେ ବରଣ
ବୀର ବିଭୀଷଣ,
ଅସୁର ବଂଶଜ, ପୁଣି burgeois ଜାତି;
ମନ ତାର ହୋଇଅଛି ଉଣା —
ଯେଣୁ ସେହି-ନୀତିବାଦୀ, ବ୍ୟକ୍ତିବାଦୀ ନୁହେ,
ଅନୀତି ଦେଖିଣ ଖେପିଥିଲା ମନେ ମନେ,
ଛିଡ଼ାଇଲି ନାନାରୂପ କୌଶଳ ବଚନେ—
Person ଓ principle ଯୋଡ଼ି ଦୁଇ ପାଶେ ।
ବାନ୍ଧିନେଲା ସେ ଏକ ନିଶ୍ୱାସେ
ଜାୟାର ମାୟାକୁ ଛାଡ଼ି ଅର୍ଦ୍ଧାଙ୍ଗୀ ଛାୟା,
ଖେପି ସେ ଉଠିଲେ ଧରି ବସି ଏକା ଜିଦ୍
ବକରିଦ୍ କାଳେ ମାତି ଗଲା କି ସହୀଦ୍ !

ରାବ—ସାବ୍‌ବାସ ସାବ୍‌ବାସ ବେଟା, ପରବାୟୁ ଲେଦୁ !
ପରାଜୟ ଦୁଃଖ ମୋର ଭୁଲିଗଲି ଆଜ
ନୂତନ policy ଜାଲ୍ ମନ୍ତ୍ରକେ ମୋହର
ବୁଣୁଅଛି ବୁଢ଼ିଆଣୀ ଅତି ମନୋହର ।

ଏହାକହି ଦଶଶିର ବଂଶ ନେବ ବୃଜ
କୁଞ୍ଚିତ କରିଣ ଭୁରୁ ହେଲେ ଧ୍ୟାନ ମଗ୍ନ ।

ପୁଣି ଭଗ୍ନ କର ଧ୍ୟାନ, ଉଠିଣ ଚହଲି
ପଗୁରିଲେ ଶଙ୍ଖବ୍ୟାଗ୍ରେ ନୟନ ଚରାଇ
ରାବ—କେମନ୍ତେ ଏଡ଼ାଇ ଦେଲେ ଜନ୍ଦର ଗୁବୁକ ?
ଅଙ୍ଗ—Manage ହୋଇଲା by hook and crook
ରାବ—କାମହା କରିଛ ଯେଣୁ ଏତେ ଦୂରଖୁର୍
ଉପାଧି ତୁମ୍ଭଙ୍କୁ ଦେଲି—"ଯୁମା-ବାହାଦୁର।"

ବାଜିଲା Calling Bell, ଶୁକ ମନ୍ତ୍ରୀବର
ଧାଇଁଲେ ସେ ଡାକ ଶୁଣି ଲଥର ପଥର।
ପ୍ରଭୁଙ୍କ ଅଗ୍ରତେ ଛିଡ଼ା ହେଲେ ଯୋଡ଼କର।
ପାକୁଆ ପାଟିରୁ ପିକ କହେ ସର ସର।
ରାବ—ତୁମ୍ଭ ଜିମା ଥିଲା ମନ୍ତ୍ରି ନଗର ରକ୍ଷଣ,
କରିଲ କେମନ୍ତ ରଣ, ହେ ବୃଦ୍ଧ ପ୍ରବୀଣ,
ଜିଣିଲ କାହାକୁ ଅବା ଲଙ୍ଗୁଡ଼ ସମ୍ବର
ଦିଗମ୍ବରୀ ହୋଇ ଫେର ଆସିଛ ଘରକୁ ?
ଶୁକ—ଲଡ଼ଲଡ଼ ପ୍ରାଣପଣେ,—
କାନୁ, କାନୁ, କାନୁ—
ରାବ—କାନୁ ନୁହେ ସେ,—କମ୍ଭୁତ କିମାକାର ଜନ୍ତୁ !
ପେଷିଲି ତୁମ୍ଭଙ୍କୁ ଜାଣି ଅତି ବୁଦ୍ଧିମନ୍ତ,
ବ୍ରିଟିଶ ଶାସନ-ନୀତି-ଭେଦଅ ପୁରୁଖା,
ମାତ୍ର ଜଣାଗଲା ତୁମ୍ଭେ ଗଡ଼ଆଖାନାର
ଲଞ୍ଜିଆସ୍ୱ, ଚତୁଷ୍ପଦ ମସ୍ତ ଜାନୁଆର !
ଜାଣୁଛି ମୋ ହବ ଏଟା Calculation ଦୋଷ—
ସେଥିପାଇଁ ହୁଏ ଅବଶୋଷ;
ମାତ୍ର ସୁଧାରିବା ପାଇଁ ହେଲାଣି too late.
ରଣଭୂମି ନୁହେ ରଙ୍ଗଭୂମି,
ନୁହେଟି ଦାନ୍ତ କାମୁଡ଼ା, ଘରପୋଡ଼ା କଥା,
ଅଖଡ଼ା, ପଟେଖାଳ ମାଡ଼, ନାଟର ମଜଲ।
ଯାଅ ଯାଅ କଚେରୀରେ ତକିଅ ଆଉଜି,
ପିକଦାନି, ପାନବଟା ଥୋଇ ସାମନାରେ,
ବସି ବସି କରୁଥିବ—ଫାଇଲ୍ କ୍ଲିଅର୍।

ମୁନିବ ବଦନୁଁ ଏହି କଟୁବାକ୍ୟ ଶୁଣି
ଶୁକଙ୍କର ବୁକୁ ହେଲା ଧଡ଼ାସ୍ ଧଡ଼ାସ୍,
ଲମ୍ବା ଥମାନେ ଖର ବହିଲା ପ୍ରଶ୍ୱାସ—
ମନେହେଲା ଏହିକ୍ଷଣି ରିଜାଇନ୍ ଦେଇ
ପେନ୍‌ସନ୍ ମାଗି ଛାଡ଼ି ଯିବେ ଗୃହ ଗ୍ରାମେ।

ମାତ୍ର ମନେ ପଡ଼ିଗଲା ଏକାଉଣ୍ଟ୍ ସୁଟ୍—
ନିଆଁରେ ପଡ଼ିଲା ପାଣି—ରହିଲେ ମଉନେ,
ପୁଣି ନିଶାଚରପତି ଖୋଲନ୍ତେ ବଦନ,
ତେଣୁ ଜଣେ ଖୋଜା ଆସି ପକାଇ ସଲାମ
ବୋଇଲା—"ମହିମା ତେଣେ ବିଷମ ବିପଦ"।
ରାବଣ—କି ବିପଦ କହ ଖୋଜା, ପଶିଲେ କି କପି
ପୁଣି ସ୍ୱର୍ଣ୍ଣ ଲଙ୍କାପୁରେ—କହ ଶଙ୍କା ଛାଡ଼ି !
ଖୋଜା—କପି ନୁହେ ରକ୍ଷନାଥ, କପିଙ୍କର ଭୂତ।
କୁମାର ବିନାଶିଛନ୍ତି ଯେଉଁ କପିଗଣେ,
ସେହିମାନେ ଭୂତହୋଇ ବସିଛନ୍ତି ମାଡ଼ି।
ବକୁଛନ୍ତି ମେଘନାଦ ଅବଲ ତାବଲ—
ଆଖିଯୋଡ଼ା ଜଳୁଅଛି—ଯହିଁରେ ନିଆଁ ବଲ୍
ଉଠିଲ ବେଗରେ ହୁମ୍‌ଆ ମାରି ଦଲ୍ ଦଲ୍
ଧାଉଁଛନ୍ତି ମାରିବାକୁ ମହଲ ଭିତରେ,
ଶ୍ରୀଗୁରୁଙ୍କୁ ନାନାରୂପେ ଦେଉଛନ୍ତି ଗାଳି,
ବିବାକ ପାଗଲ ପ୍ରଭୋ, ବିବାକ ପାଗଲ୍।
ରାବଣ—ଲଗିଅଛି କପିଭୂତ—ବେକୁବ୍ ବୁଡ଼୍‌ବକ୍।
Nervous strain ଟା ପଡ଼ିଅଛି ଅତି ମାତ୍ରା
Morphia ର injection ଦିଅ ଯାଇ ଗୋଟେ
ଯାଅ ବେଗ କରି—

ପଳାଇଲା ଖୋଜା ବେଗେ, ତହୁଁ ରକ୍ଷପତି,
ଚିନ୍ତିତ ହୋଇଣ ଧରି ପ୍ରଶାନ୍ତ ମୂରତି
ଡାକିଲେ ପୁନଶ୍ଚ ମନ୍ତ୍ରୀ ସେନାପତି ଗଣେ।
ଅମାତ୍ୟମାନେ ସର୍ବେ ଆସି ହେଲେ ଉପନୀତ
ବୋଇଲେ ରାବଣ ଧୀରେ ସ୍ଥିର କରି ଚିତ୍ତ।
ରାବ—ଦେବଗୁରୁ ବୃହସ୍ପତି, ପୁଣି ଶୁକ୍ରାଚାର୍ଯ୍ୟ
ଡକାଇ ଦୁହିଁଙ୍କ ବୁଝ କୁମାର ଜାତକ।
ପଠାଅ ବୃଷଭ ଏକ କୈଳାସ ପର୍ବତେ
ଭୂତନାଥ ମହାଦେବ ଆସନ୍ତୁ ଝଟତି,
ଜଡ଼ିବୁଟି ଜାଣନ୍ତି ସେ ଝଡ଼ା ଫୁଙ୍କା ଆଦି।
ଅଶ୍ୱିନୀକୁମାର ଆଉ ବୈଦ୍ୟ ଧନ୍ୱନ୍ତରୀ
ତାଙ୍କୁ ବି ପଠାଅ call—ନେବେ ନାହିଁ fees.
ବରୁଣଙ୍କୁ କହ ଶିରେ ଦେବେ ଜଳପଟି
ପଠାଅ motor launch ତାଙ୍କ ପାଇଁ ତ୍ୱରା,
ବାୟୁଦେବ ଆସି ପଙ୍ଖା ଟାଣନ୍ତୁ ଚଞ୍ଚଳ
Aeroplane ଦିଅ ବେଗେ ସେଠାକୁ ପଠାଇ।

Ultra-violet rays ଯନ୍ତ୍ର ହେବ ଲୋଡ଼ା,
Car ଟା ପଠାଇ ଆଣ ସୂର୍ଯ୍ୟ ଦେବତାଙ୍କୁ ।
ଯାଅ ଶୀଘ୍ର, କରିଦିଅ ଏ ସବୁ ବରାତ୍ ।
ଧାଇଁଲେ ସଂସଦ୍ରେ ମନ୍ତ୍ରିବୃନ୍ଦ ଦସ୍ତ ଟେକି
ଅନ୍ଦର ମହଲ୍ ଆଡ଼େ ଚଳିଲେ ରାବଣ ।
ତେଣିରା କାଣ୍ଡଟି ଅଟେ ତାଜା ଚନାଚୁର
ମିଠା ଉଠେ ଖାଉଥିଲେ କରିଣ ସବୁର୍ ।
ଯେତେ ଚୋବାଇଲେ ତେତେ ଉଠଇ ଲଜ୍ଜତ,
ନେକ୍‌ନାମି ଫଇଲାଏ ବଢ଼ଇ ଇଜ୍ଜତ ।
ଝାଉ ଝାଉ ଦେଲେ ଖାଇ ଭାଙ୍ଗିଯାଏ ଦାନ୍ତ
ଝାଡା, ବାନ୍ତି ହୋଇ ପୁଣି ଛୁଡ଼ିଯାଏ ଅନ୍ତ ।
କେ ଲେଟିବ ମଜା, କାର ପେଟ ହେବ ଖୁଁ
ଲୋଡ଼ାହେବ ପୁଣି ତହୁଁ ଇନ୍‌ଜେକସନ୍ ଛୁଁ ।
ତେଣିରା କାଣ୍ଡଟି ପଢ଼େ ଶୁଣେ ପୁଣ୍ୟବନ୍ତ
ସନ୍ତ ପନ୍ତ ହୋଇ କହେ କପି ହନୁମନ୍ତ ।

## ଚୌପଟ କାଣ୍ଡ

ଝଙ୍କଡ଼ବାସିନୀ ମାଗୋ ଦେବୀ ବୀଣାପାଣି,
ଓଡ଼ିଆ କବିର hobby କଣ୍ଡୁ ନିବାରିଣୀ,
ଶାରଳେ, ସୁଦୟା କର ଅଧମ ସନ୍ତାନେ,
ଟପୁ କୁଟୁଁ କୁଟୁଁ ରସ ପଡ଼ୁ ମୋ ନିଗିଡ଼ି,
ଭସଭସ ହୋଇ, ଯାହା ସୁଧୀଜନ ଶ୍ରେଷ୍ଠି
ଖୁସିରେ ଚଲ୍ଲାଇ ଉଠି ଗଜଉଡ଼ବ ଦାନ୍ତ,
କପି ହନୁମନ୍ତ ଯଥା କରେ ଖିଚ ଖିଚ
ଟୋକାଏ ଫିଙ୍ଗିଲେ ଟେକା କୌତୁକ କାରଣେ ।

ଜନନୀ ଗୋ ଏହି ଭିକ୍ଷା ପଦ୍ମରେ ତୋହର
ବୀଣା ଛାଡ଼ି ଲାଉତୁମ୍ବା ବଜାଅ ଏଥର—
ଗୁବୁ ଗୁବୁ ଗୁବୁ—
ଆବର ଡମ୍ବରୁ ବାଦ୍ୟ ଡବ ଡବ ଡବ;
ତାହା ଶୁଣି ଲଙ୍କ ଟେକି ନାଚନ୍ତୁ ସକଳେ,
ତୋ ମୋହନ ମନ୍ତ୍ର ବଳେ, କାଲ୍ କାଲ୍ କାଲ୍,
ଯେଣୁ ମାଗୋ ମାଡ଼ୁଅଛି ଡର;
ମୂଢ଼ କବି ପଦାମ୍ବୁଜେ ମାଗୁଛି ଏ ବର
ମୋ ଝର କଲମ ମୁନ ଗୁଣ୍ଡ ଚର ଚର ।

ଚାଲ ମାଗୋ ସେହି ସ୍ଥଳେ, ଯହିଁ ରଘୁବୀର
ଶିବିର ମଧ୍ୟରେ ବସି ପ୍ରେସିଡେଣ୍ଟ ରୂପେ,
ବକ୍ତୃତା ଝାଡ଼ନ୍ତି ଋଷି-କପି ସଭ୍ୟଗଣେ ।
ଅସଭ୍ୟ ହେଲେହେଁ, ଯହିଁ ସଭାରେ ଆସୀନ,
ସଭ୍ୟ ନ ବୋଲିଣ ତାଙ୍କୁ କି ବୋଲିବା ଆନ ?

ରାମ—ଭ୍ରାତା ଓ ଭଗିନୀ ଗଣ !
ଶୁଣ ମୋ ବଚନ,
ମାୟାବୀ ଅଟଇ ଅତି ରାବଣ ଦୁର୍ମ୍ମତି
ଧପ୍ପାବାଜ୍, କୁଟନୀତିଧାରୀ ଲଙ୍କପତି,
ଲକ୍ଷ୍ୟ କର ଗତି ଅନୁକ୍ଷଣ,
ଭୁଲେଇ ଦେବେଟି କାଳେ ମୁଣ୍ଡେ ଦେଇ ଥୋପି ।
ବିଜୟରେ ହୁଅ ନାହିଁ ଭୋଳ,
କର ନାହିଁ ଶତ୍ରୁ ଉପରୋଳ,
ଗଣ୍ଡଗୋଳ ଛାଡ଼ ନିଜ ମଧ୍ୟେ,
ଚାଲ ସାବଧାନେ ହାତେ ମାପିଣ ଗୃଖଗଣ୍ଡେ ।

ବିଭୀଷଣ—ଚିନ୍ତା ନାହିଁ ରଘୁପତି,
ସବୁ ଗତିବିଧି ତାର, ସମସ୍ତ କୌଶଳ
ଛଳ, ବଳ, କଳ, ଖଳ, ଦଳ,
ଜଳ ଜଳ ହୋଇ ସବୁ ଦିଶିଯାଏ ମୋତେ ।
ଦେଖିଛନ୍ତି ତ ଅତିକାୟ ମାଦଳ ବପୁକୁ
ସଡ଼କ ରୋଲାର ଭଳି roller ମୁଁ ଦେଇଛି ଗଡ଼ାଇ,
ଛଡ଼ାଇ ଦେଇଛି ତାର ଯେତେ ଜାରିଜୁରି,
ଫୁରି ଫୁରି, କୌଶଳ ଚାତୁରି,
ବୁଦ୍ଧି ନାହିଁ ତିଳେ ମାତ୍ର, ବହିଅଛି ଖାଲି
ଷଣ୍ଢ ମାର୍କା ଗଣ୍ଡା ତୁଲେ ଭୁଣ୍ଡା ଗଣ୍ଡିଟାକୁ ।
ଥଣ୍ଡା ହୋଇଗଲା ଏବେ;
ଆଉ ନ ଆସିବ ହୁଣ୍ଡା ହେଣ୍ଡା ମାରିବାକୁ
ମୁଣ୍ଡ ଟେକି—ଫିଟାଇବ ତୁଣ୍ଡ,
ଗଣ୍ଡ ମୂର୍ଖ କୁଣ୍ଡା ଖାଇ ପଢ଼ିଥିଲା ପାଠ ।
ମୋହରି ସାହସେ ଅଡ଼୍ଡା ମାରିଥିଲା ନାମ,
କାନ ଧରି ଦେଇଅଛି କେତେ,
ଅକ୍‌କଲ ସଲାମି ତାକୁ
ଆସିଥିଲା ଗୁରୁ ସଙ୍ଗେ ମାରିବାକୁ ଗୁଲ୍ !
ଆପେ ଆପେ ହୋଇଲା ବେହାଲ ।
ନାକାଲ୍, ନାମୁସ୍ ହୋଇ ଜିନ୍ଦ୍‌ଗି ତମାମ ।

ଏକାକେ ଭୁଲାଉଥିଲା କୁମାର ଅଙ୍ଗଦ;
ପଳେଇଗଲେ ସେ ପୁଣି ମୁଣ୍ଡକୁ ହଲେଇ
ଦାନ୍ତକୁ କେଲେଇ ସେହି ଭାଷିଲା ତହାଡ଼େ—
ଅଙ୍ଗଦ—ହଃ, ଜଣାଅଛି ବଡ଼ପଣ ବିଭୀଷଣଙ୍କର,
ରାମ ସହାୟତା ବିନା ମିଳିଥାନ୍ତା ଛୁଞ୍ଚା
ବାଟକଣୀ, ପଟକଣୀ ତାଙ୍କ କପାଳରେ ।
ମୋଟ ଦେଖି ଛୁଞ୍ଚେ ରାମ କଲେ partiality !
ଉଠିଲା ଚୌଦିଗେ ରଡ଼ି 'କଏ କଏ' ? ବୋଲି ।
ଏଡ଼େ ବଡ଼ କଥା କହେ କାହାର ସାହସ ?
ଏମନ୍ତେ ହୋଇଲା ସୃଷ୍ଟି pandemonium
ହୋ ହୋ, ଘୋ-ଘୋ, ଚୁପ-ଚୁପ ଧ୍ୱନି ।
ହାଙ୍କିଲେ ଥୋକାଏ ଗର୍ଜି 'order order' !
କେ ଶୁଣୁଛି କାହା କଥା—ସକଳେ ମୁଣ୍ଡେଇ୍ !
ଭାଲୁଗଣ ଗଲେ ମିଳି ଅଙ୍ଗଦ ପକ୍ଷରେ,
କପିଗଣ ରହିଗଲେ ହୋଇ neutral,
ଯେଣୁ ସେ ଅଟନ୍ତି ପାତ୍ର, ମୁଣିଷ ଅର୍ଭକ ।
ଫଁ-ଫଁ ହେଉଥାନ୍ତି ବୀର ବିଭୀଷଣ,
ବାଳକୁ ଛିଣ୍ଡାଇ ଅଉ ଦାନ୍ତକୁ କାମୁଡ଼ି,
ମାତ୍ର ଏକେଶ୍ୱର ଯୋଗୁଁ ନ କଲେ ସାହସ,
କାଡ଼ି ମଚଡ଼ି ଚୁପିବାକୁ ଅଙ୍ଗଦର ମୁଣ୍ଡ ।
ତହୁଁ ସୁଗ୍ରୀବର ଠିଆ ହୋଇ କର ଯୋଡ଼େ
କହିଲେ "ସମସ୍ତେ ଏବେ ହୁଅ ହେ ସୁସ୍ଥିର;
ଟୋକା ଟାକରାଟା କିଛି ଭାଷିଦେଲା ପଦେ,
ଯେଣୁ କବି-ବାଧିଅଛି ତାକୁ ବଡ଼ ହୃଦେ ।"
ଉଠି ହନୁମନ୍ତ ବୀର ନିଶକୁ ଫୁଲାଇ,
କହୁଥିଲା ଲାଙ୍ଗୁଡ଼କୁ ପଟାସ, ପଟାସ ।
ହନୁ—ରାମ ଆଜ୍ଞା ନାହିଁ—ନୋହିଲେ ଦେଖନ୍ତ
ଲାଙ୍ଗୁଡ଼ରେ ବାନ୍ଧି ତୁମ ଗୋଟା ଦଳଯାକ
କାହା ପୁଣ୍ଡି ଦେଇ ଫାଡ଼ି ଉପାଡ଼ି କା ଦାଢ଼ି
ଝୋବରି ବନ୍ଦରେ ନେଇ ଦଅନ୍ତି କଚୁଡ଼ି;
ଅସହ୍ୟ ଏ ରାମ ନିନ୍ଦା—
ରଘୁକୁଳ ତିଳକ ଯେ ରାଜୀବଲୋଚନ
ତାଙ୍କ ନାମେ ଆରୋପିଲ partiality ଦୋଷ ।
ଶୁଣ ସର୍ବେ ସଭାଜନେ ପ୍ରତିଜ୍ଞା ମୋହର,
ଯେଉଁ ଦନ୍ତେ କହିଅଛି ରାମନିନ୍ଦା ବୋଲି
ସେହି ଦନ୍ତ ଉପାଡ଼ିଣ—

ରାମ—ସ୍ଥିରହୁଅ ବତ୍ସ ହନୁମାନ୍
କ୍ଷମା, କ୍ଷମା-କ୍ଷମା ଅଟେ ଧର୍ମ ବୀରେନ୍ଦ୍ରର
politics ରଣକ୍ଷେତ୍ରେ ଗଲେ ପଶିବାକୁ
କେତେ ମାଡ଼ ଗାଳି ନିନ୍ଦା ସହିବାକୁ ପଡ଼େ—
ଏଥିଁ ବିଚଳିତ ହେବା ନୁହଇ ଉଚିତ
ପେଟ କଥା ପେଟେ ରଖି ମାରୁଥିବ ପେଞ୍ଚ ।
ମୁହଁରେ କହିବ ସଦା ମଧୁ ମଧୁ ବୋଲି ।
ସୁଦକ୍ଷର ଏହା ଅଟେ ରାଜନୀତି ରୁଲ୍ ।
ନଯାଅ ନଯାଅ ଭୁଲି ନିଜ Good breed,
ନିଜ ଜାତି creed ଠାରୁଁ ନ କର divorce,
କେଡ଼େ ସିଧା course ଅଟେ non-violence ନୀତି
ଭୀତିଶୂନ୍ୟ, ପ୍ରୀତି ପୂର୍ଣ୍ଣ- ଅକାଟ୍ୟ ଯା force,
ପୁଣି source ଆତ୍ମ-ଉନ୍ନତିର ।

ପ୍ରଭୁଙ୍କ ଆଦେଶେ ତହୁଁ ବୀର ହନୁମନ୍ତ,
ଦନ୍ତ ଚୁପି ଧୀର ହୋଇ ବସିଲେ ମଉନେ;
ନିଆଁରେ ଯେସନ ପଡ଼ିଗଲା ଥଣ୍ଡା ପାଣି !
ମାତ୍ର ତାଙ୍କ ଗୋସ୍ୱାଟାର ଉତ୍ତପ୍ତ ପବନ,
ବାଧା ନ ମାନିଣ ଖରେ ଚୁଲେ ସୁ-ସୁ,
ଅଧୋ ମାର୍ଗେ-ଯେମନ୍ତ କ ମଟର ପଛରୁ
ଅକସ୍ମାତ ଗଲେ ରୋକି ଚଳନ୍ତା ମଟର ।
ଏଣେ ଲମ୍ବ ଲାଙ୍ଗୁଡ଼ଟି ରୁଦ୍ଧ energyରେ
Pendulum ଭଳି ହେଉଥାଏ ଲଟ ପଟ ।
ସକଳେ ହୋଇଲେ ଚୁପ୍—ଖାଲି ଫୁସ୍ ଫାସ୍
ଟିକ୍ ଅଢ଼ୁଆଳୁ ଭାସି ଆସୁଥିଲା ଖାଲି
ବାନରୀ ବଛାଙ୍କ ମୃଦୁ ଚେଁ-ଚୁ ଧ୍ୱନି
ଜନନୀମାନଙ୍କ କୋଳେ ପିଉଁ ପିଉଁ ଦୁଧ ।
ବୃଦ୍ଧ ଜାମ୍ବୁବାନ ତହୁଁ କହିଲେ ହୁଙ୍କାରି
ମୁରବୀଆନା ଟୋନ୍ କରି ଦାଢ଼ିକୁ ହଲାଇ,

ଜାମ୍ବୁ—ଯେତେ ଗୋଳ, ସବୁ ଏଇ ମାଇପି ଜାତିର,
ପିଲା ଖେଳାଇବା ଜାଗା ନୁହେ ସଭାସ୍ଥଳ,
ହାଣ୍ଡି ଧୁଆ, ଚୁଲିହିଦିଆ କାମରେ ଅଭ୍ୟସ୍ତା
ମିଳିଟାରି କାଉନସିଲେ କି କରିବେ ନାରୀ ?

ଏତିକିରେ ପର୍ଦ୍ଦାମାନ ହେଲା ଟଂ ଫାଙ୍କ୍—
ଯେମନ୍ତେ ବାଜନ୍ତେ ଘଣ୍ଟା ଭୃଶ୍ୟାନ୍ତର କାଳେ

ରଙ୍ଗମଞ୍ଚେ ପର୍ଦ୍ଦା ଖୋଲେ ଡ୍ରପ୍ ସିନ୍ ।
ଦର୍ଶକ ମାନଙ୍କେ ଦୃଷ୍ଟି ପଡ଼ିଲେ ବାହାର,
ଜ୍ୱଳନ୍ତ ଆଗ୍ନେୟ ଗିରି ସମତୁଲ୍ୟ କିବା—
କିଷ୍କିନ୍ଧ୍ୟା ସାମ୍ରାଜ୍ଞୀ, ସତୀ ଶିରୋମଣି ତାରା,
ଆସିଥିଲେ ଯେହୁ ତାଙ୍କ ପତିଙ୍କ ଗହଣେ,
Ambulence Corps ସନେ consort ରୂପରେ
ରଣକ୍ଷେତ୍ରେ କରିବାକୁ ଆତୁରଙ୍କ ସେବା ।

ସଭାସ୍ଥ ସକଳେ କ୍ଷଣେ ପଡ଼ିଲେ ଚହ୍ଲିଙ୍କି;
ଦାନବଦଳନୀ ଅବା ବହ୍ନିମୟୀ ତାରା
ଆବିର୍ଭୂତା ହେଲେ ଆସି ପ୍ରଳୟ ତାଣ୍ଡବେ !
ରାଇଲେ ସରୋଷ ରାଜ୍ଞୀ, ସୁତୀବ୍ର ଝଙ୍କାରେ
ମାଲଗାଡ଼ି ରବେ ଯଥା ସଣ୍ଟିଂ (shunting) ସମୟେ ।

*ତାରା—କି କହିଲ ! କି-କହିଲ ଅରେ ବୁଢ଼ା ଭାଲୁ !
ଗୃହୁଁ ଗୃହୁଁ କରିଗଲ ନାରୀଜାତି ନିନ୍ଦା !
ଜାଣୁନା କି ନାରୀଜାତି; ନୁହେ ଆଉ dumb,
ନୁହନ୍ତି ଅବଳା, ପୁଣି ନର-ମୁଖାପେକ୍ଷୀ,
ନିଜ ସ୍ୱାର୍ଥ ଜଗିବାକୁ ତୈଆର ସକଳେ,
ନେବାକୁ ସଦମ୍ଭେ ଝିଙ୍କି ନିଜ birth right,
ନାରୀର ପ୍ରେଷ୍ଟିଜ ଆଉ ନାରୀଙ୍କର claim,
ଗୃହ କୋଣ ନିବାସିନୀ, ଚୂଲ୍ଲୀ ବିଳାସିନୀ,
'ରମଣୀ' 'କାମିନୀ' ଆଉ ନାହାନ୍ତି ମହିଳା;
'ପିକଭାଷୀ' 'ଗଜଗତି', 'କେଳି-କଉତୁକୀ',
'ସୁବଦନୀ', 'ଚନ୍ଦ୍ରମୁଖୀ', 'ଛଇଳା', 'ଲଳନା',
ଇତ୍ୟାଦି ନୁହନ୍ତି ସେହୁ—ଏବେଟି ହେଲେଣି
'ଉଗ୍ରଚଣ୍ଡୀ', 'ଖଣ୍ଡାହସ୍ତା', 'ଚାମୁଣ୍ଡା' 'କରାଳୀ' ।
ଉଠାଅ ଉଠାଅ ବେଗେ ରେ ମୂର୍ଖ ପ-ଣ୍ଡି-ତ ।
ତୁମ୍ଭ ଭାଷା ଗୋଲ-କୋଷୁଁ ଏହି ଶବ୍ଦଗୁଡ଼ା,
କିମ୍ବା ଏହି ଶବ୍ଦ ଅର୍ଥ ଆରୋପ ପୁରୁଷେ,
ପ୍ରକୃତରେ ମାଦୀ ଭାବ ଧରିଲେଣି ଯେହୁ,
କଅଁଳ ରବୀନ୍ଦ୍ର ଗୁଁଠେ ମହମ ପିତୁଳା ।
ଜାଣିଛଟି birth controlର ଆନ୍ଦୋଳନ,
Test tube baby କଥା ?

ଏହା ପରେ ହେବ ବିଲ୍ କୁଲ୍ ଜନ୍ମରୋଧ,
marriage ଶବ୍ଦଟା ଲିଭିଯିବ କୋଷଭାଣ୍ଡୁ ।
ତା' ପରେ ବନ୍ଧନ ବିନେ, ଯେହି ଜୀବଗୁଡ଼ା
ପୁରୁଷ ବୋଲନ୍ତି ଯେହୁ,
ସେମାନେ କରିବେ ଜନ୍ମ ଆପଣାର ପିଲା ।
ଲାଳିବେ ପାଳିବେ ପୁଣି ଖୁଆଇବେ ଦୁଧ,
ଅତଶୀଘ୍ର ଆସୁଅଛି ଏହି ଦିନ କାଳ,
ସ୍ୱାଧୀନତା ସଙ୍ଗେ ସଙ୍ଗେ ମିଳିଯିବ ଫଳ ।

ନିବାତ ନିଷ୍କମ୍ପ ହୋଇ ଶୁଣୁଥିଲେ ସର୍ବେ,
ଓଜସ୍ୱିନୀ ବକ୍ତୃମାଟି ଫନ୍ଦସ୍ତ ହୃଦୟେ,
Loud Speakerର ଯୋଗେ ଗର୍ଜୁଥିଲ ଯାହା
ଗଗନ ପବନ ବନ ଦିଗନ୍ତ ଉଚ୍ଛୁଳି ।
Microphone ଉଠୁଥିଲ ଥରି,
ତୀବ୍ରନାଦ ବେଗଟାକୁ ସମ୍ବରି ସମ୍ବରି,
ହାଲିଆ ବେଗୃସା,
ରବରର ବେଲୁନ ପରି ଯିବ କି ଦେ ଫାଟି ।

ଜଣେ ଏକା ହେଉଥିଲେ ଖାଲି ଧଡ଼ପଡ଼,
କରୁଥିଲେ ଦନ୍ତ କଡ଼ମଡ଼,
ଚକ୍ଷୁ ରଡ଼ ରଡ,
ମଡ଼ ମଡ଼ ଘୂରାଇବେ ତାଙ୍କ ମୁଣ୍ଡ ଗୋଟି,
ଫଡ଼ ଫଡ଼ ଉଡ଼ୁଥିଲ ଦାଢ଼ି ଆଉ ଚୁଟି ।
ତାରାଙ୍କ ଭାଷଣ ଅନ୍ତେ ପଡ଼ିଲ cheer
Hear Hear ବୋଲି କମ୍ପିଥିଲ ସଭା,
କାହା ଚକ୍ଷୁ ବାହି ଝରି ପଡ଼ିଲ tear,
Fearରେ ବିଲ ହେଲ କାହାର Gear—
ତଦନ୍ତେ ଲଙ୍ଗୁଡ଼ ଧରି ଛିଡ଼ା ହେଲେ ବୃଦ୍ଧ
ଚତୁର୍ଦ୍ଦିଗ ଚାହିଁ ଦେଲେ ଚକ୍ଷୁ ମଟକାଇ,
Oratory ଛନ୍ଦେ,
Magnatise କରିବାକୁ ସଭାସଦବୃନ୍ଦେ ।

†ଜାମ୍ବୁବାନ—ମାନନୀୟ ସଭାପତି ଓ ଭାଯ୍-ମାନେ,
ଉପସ୍ଥିତା ଭଗିନୀମଣ୍ଡଳୀ,

* ଅନୁମାନ କରାଯାଉଥିବା 'ତାରା' କବିଙ୍କର ବନ୍ଧୁପତ୍ନୀ ଅମୀୟା
ଶ୍ରୀମତୀ ସରଳା ଦେବୀ ଓ ସୁପ୍ରୀମ ଡେପୁଟି ଶ୍ରୀ ଭଗିରଥି ମହାପାତ୍ର

† ପଂଣ୍ଡିତ ନୀଳକଣ୍ଠ ଦାସଙ୍କୁ ଲକ୍ଷ କରାଯାଇ ଲେଖା ଯାଇଥିବା ।

ମାନ୍ୟବର ବକ୍ସୀ ଯାହା ଗାଇଲେ ଏକ୍ଷଣି,
ଚେଙ୍ଗିସ୍ଖାଁ, ତୈମୁରଖାଁ, ଭାଙ୍ଗସ୍ଖାଁ କଥା;
ମନେହୁଏ ଦୁର୍ଗାବତୀ, ଝାନ୍ସିର ରାଣୀ,
ଅଥବା ପଦ୍ମିନୀ କଦା ଅସିଲେ ଲେଉଟି;
ଏଥି ଯାଏ ଜଣା
ହୋଇନାହିଁ ଅର୍ଯ୍ୟାବର୍ତ୍ତ ବୀରାଙ୍ଗନା ଶୂନ୍ୟ;
ମାତ୍ର ସଭାଙ୍କର ଏହି ଅବାଧ ପ୍ରଗତି;
ଅତିରିକ୍ତ ଉଚ୍ଛୃଙ୍ଖଳ ସଂହତି,
ମନା ଅଛି ନୀତି-ଶାସ୍ତ୍ର ମନୁ ସଂହିତାରେ—
'ନବ ଭାରତ'ର ଏହି ସଭ୍ୟା ନାରୀଙ୍କର
କର୍ତ୍ତବ୍ୟ କି କେବେ ଏହି ଅଭବ୍ୟ ଅନୀତି ?
କେ ନ ଜାଣେ, ସର୍ବବାଦୀସମ୍ମତ ବଚନ,
କବିତା, ବନିତା, ଲତା ନୁହନ୍ତି ସ୍ୱାଧୀନ ?
ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ, ଯାହା ହେତୁ ଦେଖ
ନିଜେ ଅମ୍ଭ ଜଗନ୍ନାଥ ହୋଇଲେ ଖଣ୍ଡିଆ ।
ସ୍ତ୍ରୀଷୁ ରାଜକୁଳେଷୁ ଚ ନାହିଁ ବିଶ୍ୱାସ ।
ପୁରୁଷ ସେବାର ଅର୍ଥେ ଜନ୍ମିଛନ୍ତି ନାରୀ,
ଆଉ race ସଂରକ୍ଷଣ ହେତୁ;
ଏହାଛଡ଼ା ଅନ୍ୟ କର୍ମେ ନାହିଁ ଅଧିକାର ।
ଏ ପାଇଁ ପୁରୁଷ-ବ୍ୟାଘ୍ର, ଜର୍ମାନ ହିଟଲର୍
ନର-ଧୁରନ୍ଧର,
ଏକାବେଳେ ତଡ଼ିଦେଲେ ତାଙ୍କୁ ହାଣ୍ଡିଶାଳେ ।
ସଭ୍ୟ ନବ-ଭାରତର କନ୍ଦରେ କନ୍ଦରେ,
ଅନ୍ଦରେ, ବନ୍ଦରେ,
ରୂପ, ରସ, ଶବଦ ଗନ୍ଧରେ
ବଜାଉଛି ଏହି ସ୍ୱର ବୈଦିକ ଛନ୍ଦରେ ।
ଲୋକ-ମତ ବିଗର୍ହିତ ଏହି activity,
ଇଚ୍ଛାହୁଏ ଚୁଟି କାଟି, ପିଠି ପିଠି ପିଠି
ବିଷପାନ୍ଡ୍ରା ସ୍ତ୍ରୀଙ୍କୁ କରି cityରୁ ନିକାଲ ।

ଏତିକି କହନ୍ତେ ବୃଦ୍ଧ ଋକ୍ଷ ଜାମ୍ବବାନ
ଚତୁର୍ଦ୍ଦିଗେ ଉଠିଲା ତୁଫାନ;
Order Order ପୁଣି withdraw withdraw
ହୁଙ୍କାରି ସୁଗ୍ରୀବ ବୀର ମାର ମାର ନାଦେ
ଲମ୍ଫ ମାରି ଏକାବେଳେ ପଡ଼ି ବଡ଼ ଅଗେ
ଥଇଲେ ବାଡ଼ିକି ତାର ବେଗେ ବାମ କରେ,
ଦକ୍ଷିଣରେ ବାନ୍ଧ ମେଣ୍ଢା ଦେଲେ କଷି ଘରେ
କ୍ରୋଧଭରେ ଠାସ୍ କରି ବ୍ରହ୍ମ ଗୁପୁଡ଼ାଏ ।
ଇତିମଧ୍ୟେ ସୁଗ୍ରୀ ଦାରା ରୁଦ୍ରମୂର୍ତ୍ତି ତାରା
ମିଳି ଭ୍ରଷ୍ଟରା ସେହି ଠାବେ,
ଜାମ୍ବୁବାନ ପୃଷ୍ଠଦେଶେ ଗଲେଛି ବରଷି
ଅଜସ୍ର ଚପୁଲ୍ ଧାରା ପଠାସ୍ ପଠାସ୍ ।
ସ୍ତମ୍ଭିତ ଦର୍ଶକବୃନ୍ଦ ନସ୍ଫୁରଇ ବାଣୀ ।
ତହୁଁ ରାମ ପତିତପାବନ,
ଶ୍ୟାମଳ ମୂରତି ଶାନ୍ତ, ଜାନକୀ-ଜୀବନ
ଆଜାନୁ ଲମ୍ବିତ ଭୁଜ କମଳ-ନୟନ;
ଛାଡ଼ି ନିଜାସନ, 'ଶାନ୍ତ', 'ଶାନ୍ତ' ବଚନେ ଉଚ୍ଚାରି;
ବଳିଆର ଦୁଇ ବାହୁ ଦେଲେ ଟେକି କ୍ଷଣେ ।
ମାତ୍ର ସହୁଁ ନ ହୋଇଲା ଗୋଳମାଳ ବନ୍ଦ,
ସଂଗୀନ ଅବସ୍ଥା ଦେଖି,
Declare କଲେ ସଭା ହେଲା ବୋଲି ଭଂଗ ।
ଯୋଦ୍ଧୃବୃନ୍ଦ ଶସ୍ତ୍ରହୀନ ଯେଣୁ,
ଅହିଂସ ସମର ବ୍ରତେ ସରବେ ଦୀକ୍ଷିତ,
ବାଲୁକା କର୍ଦ୍ଦମ (mud) ନେଇ ହେଲେ ଫିଙ୍ଗାଫିଙ୍ଗି
ଭାଲୁଗଣ ପକାଇଲେ, ଛେପ ଥୂ— ଥୂ— ।
ଏକ କରି କପିବୃନ୍ଦ ଛାଟିଲେ କରରେ
ଏମନ୍ତେ ଲାଗନ୍ତେ ଶାନ୍ତି ରଣ କଣ୍ଟକଷଣ,
ସପ୍ତତାଳ ଭେଦୀ ରାମ କୋଦଣ୍ଡ ଧାରଣ ।
ପ୍ରଚଣ୍ଡ ମୂରତି ଧରି ଭଷିଲେ ଗମ୍ଭୀରେ—

ରାମ—ଧର୍ମ୍ମଯୁଦ୍ଧେ ଆସି ସବେ ସାଧୁଛ ଅଧର୍ମ୍ମ,
ବୁଝି ନାହିଁ ସତ୍ୟାଗ୍ରହ ମର୍ମ୍ମ;
ମିଛୁଆସ ଗର୍ମ୍ମିରେ ଖାଲି କରୁଛ ଅକର୍ମ୍ମ;
ଏଭଳି ପତଳା ଚର୍ମ୍ମ ନୁହଇ ଉଚିତ,
ଅତି ଅସଂଗତ, ରାଜନୀତି ବିଗର୍ହିତ-
କହୁଛି—ନିୟମ ଭଂଗ କଲେ ଏଥର
Disciplinary action ନିଆଯିବ ବରାବର—
ଜାଣିଛ ତ inherent power ମୋହର
ରଣକ୍ଷେତ୍ରେ ଚଳୁଅଛି martial ଆଇନ,
ହୁସିଆର, ହୁସିଆର ଭାଇ ଖବରଦାର,
ହୁକୁମ ଅମାନ୍ୟ ଯଦି ହୋଇଲେ ଏବାର,
କାନ ଧରି ଗୁଡୁକ ଦେଇ କରିବି ବାହାର ।

ରାବଣାର ବଜ୍ର ଖୁନ୍ଦା ଖାଇ ସର୍ଭ୍ୟବୃନ୍ଦ,
ଲାଂଗୁଳ ଗୋଠାଇ ଗଲେ ଖସି ଏକେ ଏକେ,
ସଭାସ୍ଥଳ ହୋଇଗଲା ଏକଦମ୍ ସାଫ୍,
ହାଁପ ଛାଡ଼ି କପି ହନୁମାନ ଦେଲା ଲଫ୍ ।

## ପେଞ୍ଚୁଆ କାଣ୍ଡ

ଶାରଳେ ଗୋ ଦୟାମୟୀ ଏକି ବିଡ଼ମ୍ବନା !
ଗୋଳେଇ ଯାଉଛନ୍ତି କାହିଁ ତରଳ କଳ୍ପନା ।
Pegasus ପକ୍ଷୀରାଜ ଶୂନ୍ୟମାର୍ଗ ଛାଡ଼ି,
ଅଧା ବାଟେ ଡେଣା ବୁଜି ପଡ଼ୁଛନ୍ତି କଚାଡ଼ି ?
ତଣ୍ଟିରେ ଯାଉଛନ୍ତି ରୁନ୍ଧି ଥେଲା ଥୋଲା କଫ
କଲମର କାଳି ଜମି ହେଉଛନ୍ତି ବରଫ ।
ତୋ ପଦ ସେବକ ଯେବେ ହୋଇ ହଠାହଠା,
ମରି ବାଟେ ଖଟା ଖାଇ ହେବ ଚୁଟି କଟା,
କି ଅବା କାହାଁକି ତୋର ଆଶ୍ରା ନେବ ଆଉ,
ଦୁନିଆରେ ରହିବ କି କବିତାର ଭାଉ ?
ନାକରେ ପୂରାଇ କାଠି ଥରେ ମାତ୍ର ଛିଙ୍କି,
ଚୋପାଏ କଳୁଣା ଏଣେ ଦେବୁ ଯେବେ ଫିଙ୍ଗି,
କବିର ଛୁଆର ବୀଣା ଉଠିବଟି ଚେଇଁ,
ଶିବିରେ ନାଚିବେ ବୀରେ ଥେଇ ଥେଇ ଥେଇ ।

ଏମନ୍ତେ ଭାଙ୍ଗିଣ ସଭା ବୀରବାର ବୃନ୍ଦ,
ଯେଝା ଛାଉଣିରେ ଯାଇ ଶୋଇଲେ ଯେଝାଏ;
କେବଳ ପଂଝାଏ ଚେଇଁ ହୋଇ ଫୁସୁ ଫାସ,
ଭୁସ୍ ଭାସ୍ ଗଲେ ଗଳି ଜମ୍ବୁଙ୍କ ଶିବିରେ ।
ଆପଣା ଖଟିଆ ପରେ ତହୁଁ ଜାମ୍ବୁବାନ୍
ଅନ୍ତର ବେଦନା ତଳ
ଚୁନ-ପାନ ସଙ୍ଗେ କରୁଁ କରୁଁ ରୋମନ୍ଥନ
ମେନ୍ଥଲ (menthol) ଲଗାଉ ଥିଲେ ଥୋଡ଼ି ଚଉପାଶେ ।

କାବା ହୋଇ ଭକ୍ତଗଣ ତରସେ ତରଟି
'ଇଷି ଇଷି' ଭାଷେ କେହୁ ବୋଲେ 'ଉହୁ' 'ଆହା'
କେ ଯାଇ ଆଉଁସେ କେଶ, କେ ଚାପେ ଚରଣ ।
(ଶିଶୁ କାହାଣୀରେ ଯଥା କଲେ ମଖାମଖୀ)
ମାଲିସି କରଇ କେହୁ ଗରମ୍ ମାଲ୍ସା ।
ଜଣେ ବୋଲେ 'ହୁଅନ୍ତା କି ଏକ୍‌ସ ନମ୍ବର ଓ୍ୟାନ୍'
ଅନ ବୋଲେ 'ଛି-ଛି-ସେ ଯେ ବିଦେଶୀ ସୟତାନ୍ ।'
"ହାରାମ୍ ହାରାମ୍" ବୋଲି ତହୁଁ ଜାମ୍ବୁବାନ୍,
କର୍ଣ୍ଣେ ହସ୍ତ ଦେଇ କଲେ ତିନିବାର ସଲାମ୍ ।
ପୁଣି କେହୁ ବୋଲେ ତେବେ ଅଫିମ ବଳଟେ
Internally, externally ହୁଅନ୍ତା apply.
'ତୋବା, ତୋବା' ବୋଲି ଜଷ ଖାଇଣ ଢୁକୁଢ଼
ଘଷିଲେ ସରୋଷେ ଚକ୍ଷୁ ଭାଙ୍ଗ ଉମା ଉମା,
"କଏ ସେ ? କହିଲା—ପୁଣି ଧରିଲା ମୋ ଅଗେ,
ଅ-ଖାଦ୍ୟ ଅ-କଥ୍ୟ ନାମ—ଉଚ୍ଚାରିଲେ ଯାହା,
ଲାଗଇ ବିଷମ ପାପ ପ୍ରାୟଶ୍ଚିତ ଯାର
ଏକ ବଂଶ ଧନ ବ୍ୟାପୀ ଅନଶନ ବ୍ରତ ।"
ସକଳେ କହିଲେ ଉଠି shame shame shame.
ତହୁଁ ଜଣେ କହେ ଅଣାଯାଉ 'ପଞ୍ଚଲୁଣା'
ଆନ କହେ 'ହୁଲିଂ କାମ' ତହିଁରୁ ପୁରୁଣା,
'ଠୋ—ଠୋ' ଉଠିଲା ହାସ୍ୟରୋଳ ଘନ ଘନ,
ହୁଲ୍‌କାଇ ବିରୁଦ୍ଧ ଗଗନ;
ଦମକା ପବନ
କଷ ଦେଶେ ସନ ସନ ଉଠିଲା ଚହଲ ।
'ଶାନ୍ତ, ଶାନ୍ତ' ବୋଲି ତହୁଁ ଭାଷନ୍ତେ ଜାମ୍ବୁବ,
ନିଝୁମ, ନୀରବ ହୋଇ ରହିଲେ ସରବେ ।
କେହୁ ବୋଲେ ହୁଅନ୍ତା କି ପାଚକ ଢେଲାଏ,
ମର୍ଫିଆ ଜନନୀ ପୁଣି ଶାନ୍ତି-ସଂହାରିଣୀ,
ସୁନିଦ୍ରା-କାରିଣୀ ଆଉ ବ୍ୟଥା-ନିବାରିଣୀ,
ଅବର ପୋଖରୀ ପାଣି ସରଳ-ସାରିଣୀ ।
ଅନ ବୋଲେ ନାହିଁ ନାହିଁ—ଅତି ଥଣ୍ଡା ଚିଜ,
ଗରମା ଗରମ କିଛି ଲୋଡ଼ା ଏହି କାଳେ ।
ଠିକ୍ଏ Pick me up—
ଚୁପ୍ କର୍ ଅଣ ଯାଇ ଟି' ଏକ କପ୍,
ଅଉ ଚପ୍, ମାମ୍‌ଲେଟ୍ ଖଣ୍ଡ ଦୁଇ ଟିର
ଜାମ୍ବୁ—ନାହିଁ ନାହିଁ ବୃଥାଠାରେ ଦରକାର ନାହିଁ,
କର୍ଣ୍ଣମୂଳ କରେ ଝାଇଁ ଝାଇଁ,
ଦନ୍ତେ ବ୍ୟଥା ହେତୁ ତାହା ପାରିବ କି ଖାଇ ?
ଏ ଅନ୍ତେ ସୁଷେଣ ବୈଦ୍ୟ, ଧନ୍ୱନ୍ତରୀ ସୁତ,
(କପି ହେଲେ ମଧ୍ୟ ଯେହୁ ବୈଦ୍ୟରାଜ ରୂପେ,
Field surgeon ଉଭଟିରେ ଅସିଥିଲେ ତହିଁ ।)
ନାଡ଼ି ଧରି ଆଖି ବୁଜି ଭାଷନ୍ତି ସଧୀରେ—

ସୁଷେଣ—Injury ଟା କିଛି ନୁହେଁ,superficial,
mental strain ଓ ତହିଁ ସଙ୍ଗେ ଅଛି worry;
ଏକ୍‌କେବାରେ system ଟା ବଡ଼ run down—
ଟନିକ ଗୋଟାଏ ଲୋଡ଼ା—strong ରକମର ।
ଏହା କହି ବୈଦ୍ୟରାଜ ହୁଅନ୍ତେ ମଉନ,
ସକଳେ ଆଁ ପାଟି ହୋଇ ଚାହିଁଲେ ସେ ବଦନେ ।
ତହୁଁ ସଗମ୍ଭୀରେ ବୈଦ୍ୟ ବୋଇଲେ ଏସନ—
ସୁଷେଣ—Okasa ର course ଟାଏ—ମାତ୍ର ସେ ବିଦେଶୀ,
ତା' ଠାରୁ ହୁଅନ୍ତା ଭଲ 'ମୃତ-ସଞ୍ଜୀବନୀ'—
'ଶକ୍ତି'ର ନିର୍ମ୍ମିତ ଯାହା, ତୋଫା ଶକ୍ତିମୟୀ—
ସ୍ୱଦେଶୀ labour ଆଉ ଦେଶୀ capital
ଦେଶୀ ମାଲ୍ ମସଲାରୁ ହୋଇଛି brewed
ଆୟୁର୍ବେଦୀ method ରେ ଖାଣ୍ଟି indigenous
ପୁଣି ବଡ଼ ବଡ଼ ଦେଶୀ ନେତା ପ୍ରଶଂସିତ ।
ବିଲକୁଲ, ନିପଟ ତାହା ନିଛକ ଖଦଡ଼ ।
ଜାମ୍ବୁ—ସତ୍ୟ ବୈଦ୍ୟରାଜ, ମାତ୍ର ଯେତେ ହେଲେ 'ସୁରା'
ସୁଷେଣ—ସେଇଥିପାଇଁ ତ ଏହା ଏଡ଼େ ମୂଲ୍ୟବାନ୍,
ଗୁରୁବୃନ୍ଦେ ଦିଅଇ ଆରାମ,
ବହୁଅଛି ତେଣୁ 'ସୁରା' ନାମ,
ଧର୍ମ୍ମ, ଅର୍ଥ, କାମ, ସୁଧା ଧାମ,
ତ୍ରିବର୍ଗ ଦାୟିନୀ ଦେଶ ସର୍ବ ବିଜୟିନୀ ।
ଜାମ୍ବୁ—'ସୁରା' କିବା 'ସୁଧା' ତାହା କହ ସ୍ପଷ୍ଟ କରି ।
ସୁଷେଣ—ନୁହେ ତ ପଣ୍ଡିତ ମୁହିଁ, କରିଅଛି ପାସ
ପାଣିଗାରେ ନାହିଁ ମୋର ଗସ୍ଥାରକୁ ତ୍ରାସ,
କରିଛି ନିକାଶ ଖାସ୍ କୋଷ ଗୋଟା କେତେ,
ତେବେ ଫର୍ମୋକୋପିଆରୁ ବୁଝିଛି ଯାହାକି,
ଏହି ପର୍ଯ୍ୟାୟରେ ଭୁକ୍ତ 'ସୁରା' ଆଉ 'ସୁଧା';
ଜାମ୍ବୁ—Prescription ଦିଅ ଲେଖି – ଯାଅ ତ୍ୱରା କହି;
ସୁଷେଣ ଆଉ ଏକ କଥା,
ସଞ୍ଜୀବନୀ ଗୁଣ ଏକା ନୁହେଁ ଚିରସ୍ଥାୟୀ,
କିନ୍ତୁ—ସଦା ଫଳ-ଦାୟୀ,
ଆପଣଙ୍କୁ ଲୋଡ଼ା monkey-gland treatment—
ବାନର-ଗ୍ରନ୍ଥି-ଚିକିତ୍ସା ନବ ଆବିଷ୍କୃତ ।
ସୁଶ୍ରୁତର ଅବତାର ଭୋର୍ନଫ ନିର୍ମିତ ।
ମୃତକୁ ଅମର କରେ, ବୃଦ୍ଧକୁ ଯୁବକ,
ବନ୍ଧ୍ୟାକୁ ପ୍ରସୂତୀ, ନପୁଂସକେ ପାରବତ ।
କଜ୍ଜ୍ୱଳ, ଭ୍ରମର, କାକ, ପିକ, ଘୁଅକାଳୀ,
ଅଲକାବା, ଜାପାନିଜ୍ ବ୍ଲାକଠାରୁ କଳା,
ପକ୍ୱକେଶ କରିଦିଏ କୃଷ୍ଣ ।
ନୂତନ ଉଠଇ ଦନ୍ତ ବଳବନ୍ତ ହୋଇ,
ସ୍ନାୟୁ ପେଶୀ କରେ ଦୃଢ଼ୀଭୂତ ।
ବାୟୁର ନିକାଶ ସନେ ଆୟୁର ବିକାଶ,
ଅଣିଦିଏ ନବ କଳ୍ପ, ନୂତନ ଯୌବନ,
ପ୍ରବେଦନା, ଉନ୍ମାଦନା ଉତ୍ତେଜନା ପୁଣି,
ବେଷଣ, ପେଷଣ ସଙ୍ଗେ ଶୋଷଣ, ପୋଷଣ
ଶାସନ, ପ୍ରାଶନ ଆଦି ନର୍ତ୍ତନ, କୀର୍ତ୍ତନ,
ମନ୍ଥନ, ଗଞ୍ଜନ ପୁଣି କର୍ଷଣ ଧର୍ଷଣ ।
ଜାମ୍ବୁ—ଓଃ—ଏତେ କଥା ! କହ କହ ବନ୍ଧୁବର
ଉପାୟ ତାହାର,
ନିରନ୍ତର ଅଧୀର ଅନ୍ତର,
କେତେ ନବ ଆଶା ପ୍ରାଣେ ଉଠୁଛି ଉପୁର ।
ସୁଷେଣ—ରକ୍ଷପତ,
ନ ହୁଅ ଚିନ୍ତିତ ମତ—ଏ ଅତି ସହଜ ।
ରଣ ଯେବେ ବନ୍ଧୁ କପି ହୋନ୍ତି ହତାହତ,
ଅବିରତ ଡାଲି ଆଗେ ବଳୀ ଘାଗ ବରି;
ତାଙ୍କ gland ମାନ କିଛି କରନ୍ତୁ ଯୋଗାଡ଼;
ଅବା କେହି ଆପେ ଆପେ ଭଲେନ୍‌ଟେରି କରି,
mother land ପାଇଁ ଦେବେ gland ଆପଣାର;
ନୋହିଲେ ଯେ ଖାଉଥିବେ ତୁମ୍ଭ ଦତ୍ତ rice,
କିମ୍ବା ନେଇ ନଗଦ two pice,
ସେ ଭଲ ଇମାନ୍‌ଦାର ନଥିବେ କି କେହି—
ବିକିଚନ୍ତି ପଦେ ତବ ଆପଣା ବିବେକ ?
ଏ ଅନ୍ତେ ଭଲ୍ଲୁକରାଜ ଚାହାନ୍ତେ ଚୌଦିଗେ,
ଗବେଲ, ସିଂଘାଣ୍ଡି, ଭାଲୁ, ଓରାଙ୍ଗ୍ ଓଟାଙ୍ଗ୍,
ଏ ଆଦି ଯେତେକ କପି ଥିଲେ ଆଖ ପାଖେ,
ଏକେ ଏକେ ଚୁଲାଇଲେ ସେଆଡ଼େ ନିତମ୍ବ ।
(ଯେଣୁ ସର୍ବେ ଅସିଛନ୍ତି ହୋଇବାକୁ 'ନେତା'
'ଦେତା' ପାଳି ପଡ଼ନ୍ତେ ବା ଆଉ ଥାଏ କିଏ !)
ତହୁଁ ଜାମ୍ବୁବନ୍ତଙ୍କର ଚଢ଼ିଲା ଗରମ,
ହୋଇ ଧମ୍ ଧମ୍
ବେଦମ ଗୁଲିଲା ଦମ, ଝାଳ ଗମାଦମ୍,
'ବମ୍' 'ବମ୍' ମହା ନାଦେ ଛାଡ଼ିଲେ ହୁଙ୍କାର ।

ବଡ଼ ବଡ଼ ବୀରବୃନ୍ଦେ ଲଗିଲା ତରାସ,
ଖଦଡ଼ ଫରାସ ହେଲା ଓଦା ସଡ଼ ସଡ଼,
କାର ଛାତି ଧଡ଼ପଡ଼ ତର୍ଣ୍ଣି ଘଡ଼ ଘଡ଼
କାହୁଁ ଶୁଭେ ଶବ୍ଦ ପଡ଼ ପଡ଼ ।
କୋପେ ଜମ୍ବୁବାନ ଚକ୍ଷୁ ଜ୍ୱଳେ ଦାଉ ଦାଉ,
ବଦନ ଓ ମସ୍ତକରେ ରୁକ୍ଷ କେଶାବଳି,
ବର୍ତ୍ତୁଳୀ ଭଳି ହୋଇଗଲେ ଛୁଡ଼ା,
ଝିଙ୍କଡ଼ ହୁଅଇ ଯଥା ପକାଇଲେ ଢେଙ୍କା,
ଶକୁନ୍ତଳା ଅଭିଶାପ କାଳେ କି ଦୁର୍ବାଷା !
ଜମ୍ବୁ—"ନିମକ-ହାରାମ ଯାକ ଜୁଟିଛନ୍ତି ସବୁ
*ସମରର କୋଷ ଗୋଟା ଥିଲାକୁ ମୋ ହାତେ,
ପୁଣି ତାହା ଗୁଳନର ଯଥେଚ୍ଛା କ୍ଷମତା,
ତୁମ୍ଭଙ୍କୁ ମମତା କରି ଦେଇଥିଲି ବାଣ୍ଟି,
ପରାର୍ଥେ, ଆପଣା ସ୍ୱାର୍ଥେ ଦେଇ ଜଳାଞ୍ଜଳି ।
ଅରେ ଆରେ ଅକୃତଜ୍ଞ traitor—···
ଅତ ରାଗେ ଜମ୍ବୁ ମୁଖେ ନ ସ୍ଫୁରଇ ବାଣୀ,
ଖାଲି ଥିଲା ବିକଟ ଗୁହାଣୀ
ଆଉ ବନ୍ଧୁ ଥିଲା ପାଞ୍ଜୁ ଦୁଇ କାଳ ଦେଇ ।
ଥୋଡ଼ମୁଣ୍ଡି ବାହୁ ଯାହା ପଡ଼ୁଥିଲା ଗଡ଼,
କାକର ଗଡ଼ଇ ଯଥା ଛଣ ବଦାଣ୍ଡରୁ,
ଥପ ଥପ ସହସ୍ର ଧାରରେ ।
ଏମନ୍ତ ସମୟେ ତହୁଁ ହେଲେ ଉପନୀତ
†'ଗୃଧ୍ରବର' ନାମେ ମହାବୀର,
ଖେଚର ସୁଧୀର
(ଘୁଷୁର ଚେହେରା, ମାତ୍ର ପ୍ରାଣଟା ଢବର !)
ଜଟାୟୁ ପକ୍ଷୀର ସେହୁ ଦୂର ବଂଶଧର ।
ପଶୁମେଳେ ଲଳିତ ପାଳିତ,
ତେଣୁ ଅର୍ଦ୍ଧ ପଶୁ ପୁଣି ଅର୍ଦ୍ଧ ପକ୍ଷୀ ରୂପ,
ପୃଷ୍ଠେ ଝୁଲେ ବଡ଼ାଏ ମୁଖୋସ (mask)
ନିପୁଣ ସୁବିଧାବାଦୀ (opportunist),
ପକ୍କା କାରସାଦ ଜଣା ବାଦୀ ଗାଆଣର ।
ଯେତେବେଳେ ଯେଉଁ ଭାବ ଲୋଡ଼ା,
ସେହୁ ମୁଖା ପିନ୍ଧି ତହୁଁ ହୁଅନ୍ତି ବାହାର—
ଏହୁ ଗୁଣେ ସବୁ କ୍ଷେତ୍ରେ ନିର୍ବାଧ ପ୍ରବେଶ;
ସର୍ବଭୁକ୍, ସର୍ବଂସହା ବେଶ,

ଏଟିକେଟ୍ କତାବ୍ ଦୁରସ୍ତ,
କୁଣ୍ଠିତତା ମାତ୍ର ନାହିଁ ଲେଶ,
ଶୁଭ୍ର ଭାଷ, ଶୁଭ୍ର ହାସ, ପୁଣି ଶୁଭ୍ର କେଶ,
ସର୍ବଘଟେ ବିରାଜିତ ନିରାକାରମୟ
ସତ୍ତ୍ୱ, ଶତ୍ରୁ, ଆନନ୍ଦରୂପୀ, ବାଇଗଣ ପରିବା ।
ବୃଧିବରେ ଦେଖି ସର୍ବେ ଦେଲେ ବାଟ ଛାଡ଼;
ଜମ୍ବୁ ମଧ୍ୟ ସ୍ୱଭାବକୁ ସମ୍ବରଣ ବେଗେ,
'ଆସ ଆସ' ବୋଲି ଭାଷି ହସିଲେ ମଧୁରେ ।
ଗୃଧ୍ର—ଓଃ ସୁଷେଣ ଯେ !
ତୁମ୍ଭେ ଏଠି ବୈଦ୍ୟରାଜ ?
ସୁଷେଣ—ଉଷରାଜ ହୋଇଛନ୍ତି ଟିକିଏ-ହେଁ-ହେଁ—
ଗୃଧ୍ର—(କାକ ଚଞ୍ଚୁ ହସ ହସି)
ବୁଝିଲି ବୁଝିଲି ଏବେ—ଆଉ କହିବାର,
ବିପଦ ନ ହେଲେ କିଏ ଡାକେ କି ତୁମ୍ଭଙ୍କୁ !
ସୁଷେଣ—(ଦାନ୍ତ ନିକୁଟା ହସ ହସି)
ସତ୍ୟ ଏବା-କହୁଥିଲି, ଉଜ୍ଜୁଳ ରାଜନେ ଗ୍ରନ୍ଥି
ଚିକିତ୍ସାର କଥା—
ଗୃଧ୍ର—ବେଶ୍ ବେଶ୍-ତାର୍ ପର୍ ?
ସୁଷେଣ—ରାଜା ହେ ଅଛନ୍ତି—କିନ୍ତୁ—
ଗୃଧ୍ର—ଶୁଭ କର୍ମେ 'କିନ୍ତୁ' 'ଫିନ୍ତୁ' ନାହିଁ—
ବିଜ୍ଞାନର ତୋଫା ଆବିଷ୍କାର,
ନାହିଁ ନାହିଁ ତୁଳନା ଏହାର,
ପୁରସ୍କାର ଟାବ୍ ପ୍ରତଭାର ।
ନିଜେ ମୁହିଁ ତାହାର ପ୍ରମାଣ;
ଯେଉଁ ପ୍ରାଣୀ ଗ୍ରନ୍ଥି ଆଣି କରିବ ରୋପଣ,
ତାର ଗୁଣ ନବ ତେଜେ ହେବ ବିକଶିତ,
ଯୋଡ଼-କଲମର ଗଛ ହୁଅଇ ଯେମନ୍ତ ।
ବିହଙ୍ଗମ ପକ୍ଷୀ ଦେହେ ମୋର,
ରୋପିଅଛି ବଲ୍‌ଆର ଗ୍ରନ୍ଥି;
ପଶୁ ପକ୍ଷୀ ଦୁଇ ତନୁ Cross breed ବଳେ
ରାସାୟନିକ ସମ୍ମିଶ୍ରଣ ଫଳେ,
ପଶୁ-ପକ୍ଷୀ ଭେଦ ବର୍ଣ୍ଣ ଗୁଣ କର୍ମ ଘେନି
ଅଭିନବ 'ମିଶ୍ର' ବର୍ଣ୍ଣ ଶଙ୍କର ଉଦ୍ଭବ
ବିହଙ୍ଗର ନଭଶ୍ଚାରୀ ଢଙ୍ଗ ଆଶା ସଙ୍ଗେ
ମିଶିଯାଇ ବଲ୍‌ଆର ଗୁରୁତ୍ୱ, ସତ୍ତ୍ୱ;

* ନିର୍ବାଚନ ପର୍ବ ।

† ଗୋଦାବରୀଶ ମିଶ୍ରଙ୍କୁ ଲକ୍ଷ୍ୟ କରିଥିବାର ସମ୍ଭାବନା ।

ଗଲାଣି ଉଡ଼ିଣ
ନବ ଶକ୍ତିଶାଳୀ ଜୀବ, ବାଦୁଡ଼ି ଯା ନାମ ।
ଜାମ୍ବୁବାନ—(ଗମ୍ଭୀରେ ଡରାଣି) ହାଁଃ-ତେବେ କି କରିବା ଆମେ ।
ଦେଖୁଛନ୍ତି ତୁମ୍ଭ ଠି ଅଛି 'ସତ୍ତ୍ୱ', 'ରଜ' ଦୁଇ;
ତୁମର ଗୋଟିଏ gland ଦିଅନ୍ତି କି ଭାଇ,
ଆମ୍ଭ ଦେହେ ଥୋଇ,
ତ୍ରିଗୁଣ ମିଶ୍ରିତ ଜନ୍ତୁ ହୁଅନ୍ତି ପଇବା,
ଏକାଧାରେ ମହା ବୀର୍ଯ୍ୟଶାଳୀ ।
ଗୃଧ୍ର—(ମୁରକି ହସି) ଭୁଲ, ଭୁଲ—ନିରାଟ ବୋକାମି !
ଏକାଧାରେ ମିଳିଲେ ତ୍ରିଗୁଣ,
Newtralised ହୋଇଯିବ ସବୁ,
ଆସିଯିବ ନିସ୍ତ୍ରୈଗୁଣ୍ୟ ଭାବ,
ନିର୍ବାତ, ନିଷ୍କମ୍ପ ପୁଣି ନିର୍ଗୁଣ ଅବସ୍ଥା,
ନିର୍ବିକଳ୍ପ ନିରାଲମ୍ବ, ନିର୍ଦ୍ଧୂମ ସମାଧି !
ଜାମ୍ବୁ—(ଜିଭ କାଢ଼ି) ଓ ହୋଃ-ତେବେ କି କହୁଛ ତୁମ୍ଭେ ?
କି କହୁଛ ତୁମ୍ଭେ ବୈଦ୍ୟରାଜ ?
ସୁଷେଣ—(ଆଖି ବୁଜି, ମୁଣ୍ଡ ଝୁଙ୍ଗାଇ)
ଯାହା ସେ କହିଲେ-ହୁଁ-ହେଲେ ହେଇଁ ପାରେ—
ଗୃଧ୍ର—(ଠୋ ଠୋ ହସି) କରୁନ ବିଶ୍ୱାସ ପରା କଥାଟାକୁ ମୋର
ଲୋଡ଼ୁଅଛ expert opinion !
ମାତ୍ର ଏ ବିଷୟେ ବୈଦ୍ୟ କାହୁଁବା କହିବେ,
Anatomy, medicine ବିଦ୍ୟା ନୁହେ ଏହା
ଖାଣ୍ଟି ମନସ୍ତତ୍ତ୍ୱ କଥା,—Freud ପ୍ରଦର୍ଶିତ
Experimental ମିଶା Sex-psychology—
ଜାମ୍ବୁ—(ଦରହସି) ଟିକେ ସେ ବିଦ୍ୟାରେ ତୁମ୍ଭେ ନିପୁଣ ପ୍ରବୀଣ,
କହ, କହ—କୌତୂହଳ ହେଉଛି ନିତାନ୍ତ ··
ଗୃଧ୍ର—(ଗମ୍ଭୀର ବଦନେ)
ଏକ feathera bird ଆମେ ଦୁହେଁ ଯାକ,
ମନ ହୋଇବାରୁ ଫାଙ୍କ ଫାଙ୍କ,
ରହୁଅଛୁଁ ଅଙ୍କ ବାଙ୍କ ହୋଇ,
ଦୁହିଁଙ୍କର ଗତି ମାର୍ଗେ ପଡ଼ୁଅଛି ବାଧା,
ପାଉଛନ୍ତି ବାଇସି ସୁବିଧା;
ଦୁଇଶକ୍ତି ମିଶିଯାଇ ହୁଅନ୍ତା କି ଏକା,
ଶତ୍ରୁଙ୍କର ପଶନ୍ତା ଛନକା,
ଚାହିଁବା ଲାଗନ୍ତା ଆନ ଲୋକେ,
କେ ପାରନ୍ତା ରୋକି ଏହି ମହାଶକ୍ତି ବେଗ !

ଜାମ୍ବୁ (ଗମ୍ଭୀରେ ଦାଢ଼ୀ ଆଉଁସି)
ଅତି ସତ୍ୟ, ନିଗୂଢ଼ ବଚନ
ସାଉଣ୍ଡ ସଜେସ୍‌ସନ, (Suggestion)
ବିବେଚନ କରିବା ଏହାର ।
ଗୃଧ୍ର—(ଉତ୍ସାହିତ ହୋଇ)
Common interest ଆଉ Common profit
ପୁଣି ଆତ୍ମରକ୍ଷା, ଯାହା ଜାତୀୟ instinct
ସୁଷେଣ—Mutual adjustment ହୋଇଯାନ୍ତା ସବୁ,
Common formula ଗୋଟେ କରିଲେ ବାହାର,
ସବର୍ଣ୍ଣ-ଅବର୍ଣ୍ଣ ମଧ୍ୟେ ଯଥା ଯାଏ ହୋଇ,
ଅବା ପ୍ରଜା ଜମିଦାର, ହିନ୍ଦୁ ମୁସଲମାନେ ।
ଜାମ୍ବୁ—(ହସି) ଯାହାକୁ ପକାଇ ଦେବ formula ଫେରରେ,
ବିଜ୍ଞାନର ବଳେ ସବୁ ଲଭିବେ ସମତ୍ୱ;
ଅସବର୍ଣ୍ଣ ବିବାହ ଯେମନ୍ତ
କିବା ଯଥା ବିସମ୍ବାଦୀ ଇଲେକ୍‌ଟ୍ରି କରେଣ୍ଟ ।

ଏକାଳେ ବାଜିଲା ବାଦ୍ୟ, ରାମଙ୍କ ଶିବିରେ
ବିଜୟ ଦୁନ୍ଦୁଭି ନାଦ ପଡ଼ିଲା ଉଚ୍ଛୁଳି ।
'ଜୟ ଜୟ ଧ୍ୱନି ସଙ୍ଗେ 'ବନ୍ଦେ'-ମହାନାଦ ।
ପଡ଼ିଲେ ଚହଳି ସର୍ବେ, କି ହେଲା କି ହେଲା !
ଅକାଳେ ଶୁଭିଲା କାହିଁ ଆଶ୍ଚର୍ଯ୍ୟ ଶବଦ !
ସଙ୍ଗେ ସଙ୍ଗେ ନିନାଦିଲା ଆବାହନ ତୂରୀ,
'ଉଠ ଉଠ ସଜ ହୁଅ ବେଗେ ଯୋଦ୍ଧା ଗଣ',
ବୋଲି ତୀବ୍ରେ ହୁଙ୍କାରିଲା ସଙ୍କେତ ବିଗଲ୍ ।
ଅହିଂସା ଆୟୁଧମାନ ଧରି ବୀରବୃନ୍ଦ
ନିମେଷେ ହୋଇଲେ ରୁଣ୍ଡ ପତାକା ସନ୍ନିଧେ ।
ଲାଗିଲା ବିରାଟ ସଭା—ସଭାପତି ରାମ,
ରୋଷ୍ଟ୍ରମ୍ ଉପରେ ଚଢ଼ି ଭାଷିଲେ 'ମାଇକେ ।'

ରାମ—ରାଜକାର୍ଯ୍ୟ ବୀରବୃନ୍ଦ, ଶୁଣ ସୁସମ୍ବାଦ,
ବିନା ଯୁଦ୍ଧେ ଜୟଲାଭ ହୋଇଛି ଆମ୍ଭର ।
ଅହିଂସ ରଣର ଗୁହା ପଡ଼ିଲା ଶକତି,
ଷୋଳପଣ ଲାଭ ଛଡ଼ା ନାହିଁ କ୍ଷତି ଯହିଁ;
ସସୈନ୍ୟେ, ସପରିବାରେ ଦୁଷ୍ଟ ବିଂଶବାହୁ,
ଲଙ୍କା ତ୍ୟଜି ନିରାଶ ହୃଦୟେ,
ପରାଜୟ ଭୟେ,

ନିଜର comfort ଛାଡ଼ି ମାରିଗଲ ଚମ୍ପଟ
ଲୁଚିବାକୁ କେଉଁ ଦୂର ନିରୋଳା କୁଟୀରେ ।
ନିର୍ବିବାଦେ ସ୍ୱର୍ଣ୍ଣ ଲଙ୍କା ହୋଇଗଲ ଆୟତ୍ତ ।
ମାତ୍ର, ବନ୍ଧୁଗଣ, ଶୁଣ ଦୁଃଖର କାହାଣୀ —
ଯେଉଁ 'ସୀତା' ପାଇଁ ଆମ୍ଭ ଏତେ ଅଭିଯାନ,
ମିଳୁନାହାନ୍ତି ସେ କାହିଁ - ବିଲକୁଲ ଗୁମ୍ ।
ଗୁପ୍ତଚର ଗଣ ଖୋଜି ହେଲେଣି ବିଫଳ;
ଭାଗ୍ୟ ବିଡ଼ମ୍ବନା—ଯଥା ଆକାଶ କଇଁଆ !
ମନେହୁଏ, ଗୁପ୍ତ ସ୍ଥାନେ ରଖିଛନ୍ତି ଲୁଚାଇ
ଇନ୍ଦ୍ରର ନନ୍ଦନ ବନ, ଅମରା କଟକେ ।

ରାମଙ୍କ ଭାଷଣ ଶୁଣି ସର୍ବେ କ୍ରୋଧାନ୍ୱିତ,
'ମାର ମାର' ମହାଧ୍ୱନି ପଡ଼ିଲା ଉଚ୍ଛୁଳି,
ଋକ୍ଷ କପି ବାହିନୀଠା ଉଠିଲା ଚହଲି ।
ତହୁଁ ରାମ ଢଳ ଢଳ ଭାଷିଲେ ଗମ୍ଭୀରେ···

ରାମ—ସେଥିପାଇଁ କହୁଅଛି ସର୍ବ ଆଗରେ ମିଳି
ଚାଲ ଆକ୍ରମିବା ଯାଇ ଅମରା କଟକ
ଇନ୍ଦ୍ର, ଅଗ୍ନି, ଯମ ଏହି ତିନି ବୀର ଯେ ଠାବେ
ଆଧିପତ୍ୟ କରି ସୁଖେ ଲୋଟୁଛନ୍ତି ମଜା ।

ଉଠିଲା ତୁମୁଳ ନାଦ-'ଲଙ୍କା-ଲଙ୍କା-ଲଙ୍କା' ?

ରାମ—ହଁ-ଲଙ୍କା କଥା ଏବେ କରିବା ବିଚାର ।
ଲଙ୍କା ଆଧିପତ୍ୟ ଅଛି ଅଙ୍ଗଦର claim,
ମାତ୍ର ଯେ ଶତ୍ରୁର ଦଳେ ମିଶି ଭଡ଼ୁଆ,
କଳୁଷିତ କରୁଛନ୍ତି ନିଜ Good name,
ତେଣୁ ଡିସିପ୍ଲିନାରି ଏକ୍‌ସନ୍ ବଳରେ
ଡିସ୍‌କ୍ୱାଲିଫାଇ ହେଲା ପାଞ୍ଚ ବର୍ଷ ପାଇଁ,
ଏ ମଧ୍ୟେ କରଇ ଯଦି good behaviour
ତାହାର claimଟା ହେବ reconsideration.
ଏଷଣି ଯେ ଜଣାଶୁଣା, ଚୋରା ସୁକୌଶଳୀ,
ପୁଣି Strong hand ଆଉ ବହୁ Strong ଭାଷୀ,
ହେବା ବିଭୀଷଣ ହସ୍ତେ ଅର୍ପିଲି ଶାସନ ।
ଲଙ୍କାକୁ ଶାସିବ ସେନା ଲଙ୍କାର ଅସୁର !
ବାଲିଆ ପଲଟରେ ଯଥା ଶେଷ ହଇ ବିଲୁଆ !

ଏବେ ବୀରବୃନ୍ଦ ସର୍ବେ ସଜହୁଅ ବେଗେ,
ଇନ୍ଦ୍ର ବିରୁଦ୍ଧରେ କରିବାକୁ ଅଭିଯାନ,

ଏହିକାଳେ ଦୂତ ଏକ ହୋଇଲା ପ୍ରବେଶ,
ହସ୍ତରେ ଚିଠାଉ ଘେନି ସଭାର ମଧ୍ୟରେ ।
ଦୂତ—ଆସିଅଛି ଦୂତ ମୁହିଁ ଇନ୍ଦ୍ରଙ୍କ ପାଖରୁ,
ତୁମ୍ଭ ଅଭିଯାନ କଥା ଶୁଣିଲ ମାତ୍ରକେ,
ଦେବରାଜ ଚଢ଼ି ତୁରି ଐରାବତ ଗଜେ,
ବୈକୁଣ୍ଠରେ ଉପନୀତ ହୋଇ କ୍ଷଣମାତ୍ରେ
ବିଷ୍ଣୁଙ୍କ ପାଖରେ କଲେ ଇସ୍ତଫା ଦାଖଲ ।
ଅଗ୍ନି, ଯମ, ଦୁଇଜଣ ତାଙ୍କ ପଛେ ପଛେ,
ଅପଣା ଅପଣା ଗୃହେ କଲେ ପଳାୟନ ।
ହନୁମାନ—ଓଃ, ଶିଖିଗଲେ ଆମ୍ଭଠାରୁ ଅହିଂସା ସମର !
ସତ୍ୟାଗ୍ରହୀ ଗଲେଣି ପାଲଟି ।
ଦୂତ—ଆଣିଅଛି ନିମନ୍ତ୍ରଣ ପତ୍ର,
ଆନନ୍ଦେ ଅପଣା ସ୍ୱର୍ଗ ଦେଉଛନ୍ତି ଟେକି
ଅମରା କଟକ ଭାର ତବ ହସ୍ତେ ଇନ୍ଦ୍ର ।
ରାମ—ମାତ୍ର ଆମ୍ଭେ ରାଜପୁତ୍ର—ହେଲେହେଁ—ତଥାପି
ସତ୍ୟବଦ୍ଧ ବନବାସେ ଚଉଦ ବରଷ,
ଖଡ଼ମ ବଲ୍କଲ ପିନ୍ଧି କଟାଇବୁଁ କାଳ,
ମୁଣ୍ଡବାଳେ ଜଟା କରି ବରଅଠା ମାରି ।
ପଞ୍ଚବଟୀ ତଣ୍ଡୁଳରେ କାଟିବୁ ଜୀବନ,
ହଳଦୀ ପାଣିରେ ସଂଧ୍ୟା ଭୁଞ୍ଜିଣ ପରବା ।
ରାଜ୍ୟଭାର ନେବାକୁ ତ ବ୍ରତେ ଅଛି ମନା ।
ଦୂତ—ଯୋଗ୍ୟ ବ୍ୟକ୍ତି ଦେଖି ତେବେ କରନ୍ତୁ କାଏମ୍ ।
ରାମ—ଆପେ King ହେବାଠାରୁ ଅଛଇ ମହତ୍ତ୍ୱ
ହେବାରେ King maker କୃଷ୍ଣଙ୍କ ସଦୃଶ,
Candidate କିଏ କିଏ କର proposal !
ପ୍ରଥମ ପ୍ରସ୍ତାବକ—ହୁଅନ୍ତୁ ଶୃଙ୍ଖଳ, ବକ୍ତା, ପୁଣି ବର୍ଷିଆନ୍
ଋକ୍ଷପତି ଜାମ୍ବବାନ ଅମରା ଅଧୀଶ ।✱
ଦ୍ୱିତୀୟ ପ୍ରସ୍ତାବକ—ବୃଦ୍ଧ ଦକ୍ଷ ଅଟନ୍ତି ଯେ ନୀତି ବିଶାରଦ,
ହୁଅନ୍ତୁ ମୁଖିଆ କପି ଅମରାଧିପତି ।†
ତୃତୀୟ ପ୍ରସ୍ତାବକ—ଉପରକୁ ସାଦାସିଧା ଭିତରେ କୁଟିଳ,
ପାଶ୍ଚାତ୍ୟ ସଭ୍ୟତା ରାଜ-ନୀତି ବିଶାରଦ,
ହୁଅନ୍ତୁ ସୁଯଶା *ଗୃଧ୍ରବର ଅମରେଶ ।

✱ ପଣ୍ଡିତ ନୀଳକଣ୍ଠଙ୍କ ସେଣ୍ଟେଭୋକଲ ବ ଦାଢ଼ୀ ଥିଲା ।
† ଭୂତପୂର୍ବ ସ୍ପିକର ଶ୍ରୀ ମୁକୁନ୍ଦ ପ୍ରସାଦ ଦାସଙ୍କୁ ଲକ୍ଷ୍ୟ କର ।
* ଗୃଧ୍ରବର ସହିତ ପଣ୍ଡିତ ଗୋଦାବରୀଶଙ୍କ ନାମର ମେଳ ଅଛି

ଇତ୍ୟାଦି ପ୍ରସ୍ତାବ ବହୁ ପଢ଼ିଲ ଏମନ୍ତେ,
ନୋଟବୁକ୍ ମଧ୍ୟେ ଟିପି ନେଲେ ରଘୁବର ।

ଏ ଅନ୍ତେ ଗୁଳିଲ କଳ ଧମାମ୍ ଧମାମ୍
ଏ ମୁଣ୍ଡରୁ ସେ ମୁଣ୍ଡ ତମାମ୍,
ଲକ୍ଷ ଲକ୍ଷ ବୁଦ୍ଧିଆଣୀ ବୁଣିଗଲେ ଲତା,
କୋଟି କୋଟି ଅରଟରେ କଟାହେଲ ସୂତା,
ମାତ୍ର ଶେଷେ ନ ମେଣ୍ଟିଲ ଜଟିଳ ସମସ୍ୟା ।
ଦଳ ଦଳ ହୋଇ ଗଲେ ଯେତେ କାମକାମୀ,
'ପ୍ରଜହାତି' ଶ୍ଳୋକ ବୋଲି ଯେତେ ତ୍ୟାଗୀ ବୃନ୍ଦ,
ସର୍ବେ ଚଳାଇଲେ ଛକ ଅହିଂସ-ଛୁରିକା ।
କେତେବେଳେ ଛୁରାମାଡ଼ ବସିବ କା ବୁକେ;
ଗୁପ୍ତ Mutiny ଅବା ଉଠିଲ କି କୁଳେ !
ବେହାଲ ହାଲତ ଦେଖି ଅଯୋଧ୍ୟା ନରେଶ
କୋଦଣ୍ଡେ ଯୋଡ଼ିଲେ ଏକ ଉଡ଼ନ୍-ଛୁ ଶର
ପ୍ରଭାବେ ଯାହାର ସର୍ବେ ହୋଇଲେ କାହିଲ
ବାଉଳ ହୁଅନ୍ତି ଯଥା ଲଗିଲେ ଖବିଷ ।

ଏହି ଅବସରେ ତହିଁ ହେଲେ ଉପଗତ,
ଠୁଣ୍ଟକଅ କପି ଏକ ସିମ୍ପାଞ୍ଜି ଜାତୀୟ,
ନିରାଲମ୍ବ, ଅନାସଙ୍ଗ, ରସିକ-ପ୍ରବର,
Diplomacyବାଦୀ ଯେହୁ ଗୀତାର ସାଧକ,
କର୍ମକ୍ଷେତ୍ରେ କୁଶଳୀ, ଯୋଗୀ, ଧର୍ମେ ଜଣି ବକ,
ନାମରେ *ଚୈତନ ଦାସ ସତ୍ସଙ୍ଗୀ ବାବାଜୀ,
ଯେଅବେ କରଣୀ ପୂର୍ବ ଖାଅରେ ଘୂରୁଣୀ ।
ତାଙ୍କୁ ଦେଖି ରାମଚନ୍ଦ୍ର ଡାକିଣ ପାଖକୁ,
ଜଣାଇଲେ ଆପଣାର ଅପଦ ବିଷମ ।
କର୍ଣ୍ଣଫୁଙ୍କା ବ୍ରତରେ ସେ ନିପୁଣ ବୈଷ୍ଣବ
ଧୀରେ ଧୀରେ କର୍ଣ୍ଣ ପାଶେ ଭାଷିଲେ ଏମନ୍ତ —
ବାବାଜୀ— ସ୍ୱରାଜ୍ୟ ଏକ ହସ୍ତେ କରିଲେ ଅର୍ପଣ,
ଅନ ଜନ ହୋଇବ ବିଦ୍ରୋହୀ,
ଦେଖୁଛ ଯେମନ୍ତ,
ଅସଂଖ୍ୟ ପ୍ରାଣୀଙ୍କ ମଧ୍ୟେ ଇଚ୍ଛନ୍ତି ପ୍ରତ୍ୟେକେ
ହୋଇବାକୁ ଅମର ଅଧୀଶ,
ପରସ୍ପରେ ଭୀଷଣ ବିଦ୍ୱେଷ ।

ଏ ସ୍ଥଳେ, ନୂତନ ବ୍ୟକ୍ତି କରି ଆମଦାନି
ତାହାର ମୁଣ୍ଡରେ ଏକା ବାନ୍ଧଦେବା ଶାଢ଼ୀ ।
ରାମ—କିଏ ସେ ସେଭଳି ବ୍ୟକ୍ତି କେହି ଥିଲେ ଜଣା
ମୋତେ ବଡ଼ ଲାଗିଲାଣି ବଣା,
ହଣା ପଡ଼ିବାର ଦେଖି ଅରଣା ଯେପରିକ ।
ବାବାଜୀ—ସୁରପୁର ଶାସନଟି ନୁହେଁ ଖେଳ କଥା,
ଖଟାଇବା ଦରକାର ମଥା,
ସହିବାକୁ ବଥା ହେବ କେତେ !
କ୍ଷତ୍ରିୟର ତେଜ ଥିବ, ବ୍ରାହ୍ମଣ ସହଣି,
ଆଉ ଥିବ ବଣିଆର କହଣି,
ଏଭଳି ପୁରୁଖା ଲୋକ ହେଉଅଛି ଲୋଡ଼ା ।
ମନେହୁଏ ଯୋଗ୍ୟ ଏକା ଏଥିକୁ ନିହାତ,
ମୁନିବର ବିଶ୍ୱାମିତ୍ର—ଯେହୁ ମିଶ୍ର ବର୍ଣ୍ଣ,
ରାମ—କାହିଁ ଥିବେ ମୁନିବର ? ଦିଅନ୍ତୁ ପରାମର୍ଶ,—
ବାବାଜୀ—ଦକ୍ଷିଣ ସାଗର ତୀରେ କରନ୍ତି ତପସ୍ୟା,
ମାତ୍ର ଯେଣୁ ଯତ,
ଯୋଗବଳେ ଉଡ଼ଣ ଝଟତ,
ସ୍ମରଣ ମାତ୍ରକେ ଆସି ମିଳିବେ କଟକରେ !
ଟେଲିପ୍ୟାଥି ଯୋଗେ ରାମ କରନ୍ତେ ସ୍ମରଣ
କ୍ଷଣମାତ୍ରେ ତପୋଧନ ମିଳିଲେ ସେଠାରେ,
ପବନ ପୃଷ୍ଠରେ ପରି ଆସିଲେ ପହିଁରି ।
†ବିଶ୍ୱାମିତ୍ର—କି ହେତୁ ତଲବ,
ଜରୁରି ପାଇଁଟି କିସ ଥିବାର କି ପ୍ରଭୋ !
ରାମ—ତପୋଧନ,
ସ୍ୱର୍ଗ ସିଂହାସନ ଏବେ ପଡ଼ିଅଛି ଶୂନ୍ୟ,
କରିଛନ୍ତି ପଳାୟନ ବାସବ ସଗଣେ ।
କରୁଛି ଆଦେଶ,
ତୁମ୍ଭେ ବସି ଇନ୍ଦ୍ରପଦେ ପାଳିବ ପ୍ରପଞ୍ଚ,
ନବସୃଷ୍ଟି ଭିଆଣରେ, ନବ ବିଧାନରେ
ପ୍ରଜା ସଂରକ୍ଷଣ କର ସିପୁରେଶ ରୂପେ ।
ଦୁଷ୍ଟର ଦଳନ ଆଉ ଶିଷ୍ଟର ପାଳନ,
ଆଶ୍ରିତ ଲାଳନ, ଆତ୍ମ-ଦୋଷ-ପ୍ରକ୍ଷାଳନ;
ମଧ୍ୟେ ମଧ୍ୟେ କରୁଥିବ ଯେଞ୍ଜ ସଞ୍ଚାଳନ ।
ବିକ୍ଷିପ୍ତ ରକ୍ଷିତ-ସ୍ୱାର୍ଥ ଯହିଁ ଛନ୍ତି ଯେତେ,
ଠୁଳାଇ ଏକତ୍ର ସବୁ କର କେନ୍ଦ୍ରୀଭୂତ ।

* ଶ୍ରୀ ଭଗିରଥି ମହାପାତ୍ର ବୋଲି ସନ୍ଦେହ ହୁଏ ।

† ଅନୁମିତ ହୁଏ ଶ୍ରୀଯୁକ୍ତ ବିଶ୍ୱନାଥ ଦାସଙ୍କୁ ଲକ୍ଷ୍ୟ କରାଯାଇଛି ।

ଅଟେଗ କର କୃଷିର ଉନ୍ନତ,
ଜନୁନା° ଜୀବନଂ ଯାହା-ଆଳୁ ଓ କଦଳୀ,
କଞ୍ଚା କଞ୍ଚା ଲଙ୍କା ଓ ତେନ୍ତୁଳି,
ମାର ଲୁଣ ତହିଁ ଢାଳ ଲେମ୍ବୁର ଫରଶ ।
ଯାଅ ଶୀଘ୍ର ଘେନି ଏହି ନିଯୁକ୍ତ ପତ୍ରିକା ।
ବିଶ୍ୱାମିତ୍ର—ମାତ୍ର ମୁଁ ଏକାକୀ ଏତେ ପାରିବି କି ପ୍ରଭୁ,
ଏକେ ବୃଦ୍ଧ, ଦୁଜେ ଦନ୍ତହୀନ ?
ବାବାଜୀ—ସହକର୍ମୀ ଦୁଇଜଣ ନିଅନ୍ତୁ ଗହଣେ,
ଜଣେ କ୍ଷୁଦ୍ର କପି, ଋଷ ଆନ ଜଣେ
'ବଡ଼' ହେଲେ ଚଢ଼ାଇବେ ଶତା,
ଆପଣା ମଧ୍ୟରେ ପୁଣି ଲଗାଇବେ କଳି ।
ରାମ—ଆପେ ବାଛିନିଅ ଆପଣାର କ୍ୟାବିନେଟ୍,
ଯାହାଙ୍କ ସହିତେ ମିଳି ଯାଇପାରେ ମିଣ୍ଟା
ବିଶ୍ୱାମିତ୍ର—ଏତେ କଣ୍ଡିସନ୍ ମଧ୍ୟେ କେମନ୍ତେ ବାଛିବି,
ପୁଣି ନୂଆ ଭୂଆ,
ଅଜ୍ଞାତକୁ ହୁଏ ଯଥା ବଣିଜ ଅଡ଼ୁଆ !
ରାମ—ସତ କହୁଛନ୍ତି ମୁନି,—ନିଅଯାଉ ଭୋଟ !
ବାବାଜୀ—ଭୋଟ କଲେ କଥାଟା ଯେ ହୋଇଯିବ ଘୋଟ ।
ଲଗିଯିବ ପୁଣି ଘମାଘୋଟ,
ନିର୍ବାଚିତ ବାନ୍ଧି ଏକ ଜୋଟ,
ଗ୍ରୁପ୍ ଲଗାଇବା ପାଇଁ ପାଇବେ ସୁବିଧା—
ମୋଟା ମୋଟ ସିଲେକ୍‌ସନ୍ କରିବା ତରକେ,
ଆପତ୍ତିର ପଥ ରୋଧ ହୋଇବ ଥରକେ ।
ରାମ—(ଶନ୍ତ୍ରାନ୍ୱିତ ହୋଇ)
କହ ତେବେ, ସେ କଳାରେ କୁଶଳ କଳାପୀ !
ବାବାଜୀ—ପାଣ୍ଡ ଦଳେ ଅଛି ଜଣେ ସେବକ ସୁଧୀର,
ଚେହେରା କୋମଳ, ମାତ୍ର ଅସଲ ଠାଣୁଆ ।
ନମ୍ବର ୱାନ୍ ସୁଠାମ ବାଣୁଆ,
ନାମ 'କେନା ରାମ' ।
ଭାଷ ମୁଲ୍‌ଏମ ଯଥା ତାଙ୍କ ଲେଡ଼କେନ ।
ପୁଣି ଝାଡ଼ଖଣ୍ଡେ ଅଛି ନିରକ୍ଷୁଣା ଭାଲୁ,
କର୍ମଠ, ସରଳ, ଏକା ଗାଲୁ ନୁହେଁ ସେହି,
ନାମ ତାର 'ବେଗୁରାମ'—ତୋଫା କାଲଜାମ '
ଏ ଦୁହେଁ ହୋଇବେ ବେନି ହସ୍ତ ମୁନିଙ୍କର,
କପିଋଷ ଉଭ ଦଳେ ଭାଙ୍ଗିବ ବିବାଦ;
ଉଭୟର ପ୍ରତିନିଧି ରହିଯିବେ ଯେଣୁ ।

ଗାନ ଦାହ ନ ରହିବ କା'ର;
ଥିଲେ ମଧ୍ୟ କହିବାକୁ ନଥିବଟି ପଥ,
ଭିତରେ କୁହୁଳୁ ପଛେ ତୁଷାନଳବତ ।
ରାମ—ସାବ୍‌ବାସ ସାବ୍‌ବାସ ଭାଇ, ତୁମ୍ଭ ଭଙ୍ଗିବାଜ,
ନୋହିଲେ କି ବୋଲଉଛ ତୁଚ୍ଛାରେ ବାବାଜୀ

ରାମ ଆଜ୍ଞା ପାଇ ଖରେ ଚଳିଲି ଡଗର ।
ସଂବାଦ ପାଇଣ ତଥା ମିଳନ୍ତେ ସତ୍ୱରେ
କେନାରାମ, ବେଗୁରାମ, ଦୁହେଁ;
ମୁନିଙ୍କ ପଯ୍ୟରେ ତାଙ୍କୁ କରି ସମର୍ପଣ,
ବୋଇଲେ ଏସନ ରାମ, ରଘୁକୁଳ ପତି ।
ରାମ—ହେ ମୁନେ, ଶୁଣିବା ହେଉ, ଏହି ଦୁଇଜଣ,
ବାମ ବାମେତର ହସ୍ତ ହୋଇବେ ତୁମ୍ଭର,
ଅମର ଶାସନେ ଉପଯୁକ୍ତ ସହକାରୀ,
ପଧାନ ଅଧୀନେ ଯେହ୍ନେ ବେହେରା, ଘୁଣ୍ଟିଆ,
ମାଠିଆ ବହନକାରୀ ତୁମ୍ଭ ପଛେ ପଛେ ।
ମାତ୍ର ଏହୁ ନୁହନ୍ତି ବେଠିଆ,
ଅସଲ ଗଣ୍ଡିଆ, —ଠିଆ ହେବେ କଡ଼ ଭିଡ଼
ତେଣୁ କିଛି କିଛି ଭତ୍ତା ଦେବାର ଉଚିତ,
ଯେଣୁ ଆଜଠାରୁ ହେବେ ତ୍ୟାଗ-ବ୍ରତ-ଧାରୀ ।
ବିଶ୍ୱାମିତ୍ର—ମୋର ଫଳାହାର ପାଇଁ କରନ୍ତୁ ବ୍ୟବସ୍ଥା
ଖସ୍ତା ହେଲେ ମଧ୍ୟ ଯେହ୍ନେ ନ ହେବ ଅବସ୍ଥା ।
ବାବାଜୀ—ତୁମ୍ଭେ ତ ତପସ୍ୱୀ, ପୁଣି ଦନ୍ତହୀନ ବୃଦ୍ଧ,
ଶୁଦ୍ଧ, ପୂତ ଅନାହାରୀ ମୁନି,
ଅଉ, ରୁଦ୍ଧ ଇନ୍ଦ୍ରିୟର କ୍ରିୟା;
କି ଲୋଡ଼ା ତୁମ୍ଭର ପୁଣି ଉଦର ଭରଣେ ?
ଆଦର୍ଶ ଦେଖାଅ ମୁନି ପବନ ଆହାରେ ।
ଅଉ ଯଦି କେବେ ହେଲେ ହୁଏ ପ୍ରୟୋଜନ
ନନ୍ଦନ କାନନେ ଯାଇ କରିବ ରୋପଣ
ତେନ୍ତୁଳି କଲମ ଗୁରା ନେଇ ଗୋଟା କେତେ;
ତାହା ସଙ୍ଗେ ବାରମାସୀ କିଛି ସୂର୍ଯ୍ୟ-ମୁଖୀ
ତୁରନ୍ତ ଅର୍ଡର ଦେଇ ଫାରମ ରଖିବେ ।

ଏକାଳେ ପ୍ରବେଶି ତହିଁ ବୃଦ୍ଧ ଜାମ୍ବୁବାନ
ଭାଷିଲେ ଫୁଲାଇ ଦାଢ଼ୀ କୋପ-ମୂର୍ତ୍ତିମାନ ।
ଜାମ୍ବୁ—ଅନ୍ୟାୟ ଅନ୍ୟାୟ ଏହା, ଘୋର ଅବିଚାର ।
ଖଟିବାର ବୁଢ଼ା କାଳେ ଏହି ପୁରସ୍କାର !

ପକ୍ଷପାତ,– ତୁଚ୍ଛା Partiality ଚଢ଼ାଇଲେ ପଛି,
ହଟି ହଟି କପି ଦଳ ପଛାପଛି କର
ରାମ—(ସହାସ୍ୟେ) ତ୍ୟଜ କୋପ ବୀରବର
ନିକଟ ତହଲ କର କଟ୍ଟୁ ବର୍ବର,
ସବୁ ଦଳ-ସ୍ୱାର୍ଥପାଇଁ କରିଣ ଦ୍ୱିଧାବ ।
ବାବାଜୀ—ଗାତ୍ର ଦାହ ହେଉ ଅଛୁ ପଶ୍ଚ,
ମନ ଥିଲ ହୋଇଥାନ୍ତେ ନିଜେ ସୁରପତି,
ଜମ୍ବୁ—ସବୁଥିରେ ଆରୋପିବା ଅଯଥା motive
ଅଦଭ ତୁମ୍ଭର ସଦା—
ଅମର ତେଣିକ ଥାଉ, ହେଲେ ଜାହାନ୍ନମ୍
ତହୁଁ ରାଜପଣ୍ଡାଙ୍କୁ ମଣେ ମୁଁ ହାରାମ୍ ।
ରାମ—ସାବାସ ସାବାସ ବଚ୍ଛା, ସଚ୍ଚା ଜମାନ୍‌ଦାର !
ବାବାଜୀ—ଏପରେ ନିଯୁକ୍ତ ହେଉ ନ୍ୟାୟପତି ଜଣେ,
ଧର୍ମୋପଦେଶଙ୍କ ରୂପେ, ଅନାହାଟ ପଦ,
ରାମ—ଭଦ୍ର ତେବେ କରିବା କାହାକୁ,
ବୃଦ୍ଧରେ ଅନନ୍ତ ଯେ ପୁରୁଣା ସେ କାମେ
ପୁଣି ଟେଇ ଜାତି ହୋଇ ନ୍ୟସ ପତଙ୍କର ।
ଜମ୍ବୁ– ସ୍ୱଜାତି ପର ହିଂସୁକ ଅଛଇ ଶାସ୍ତ୍ରରେ
ପୁଣିଟେ ଅଛଇ ବୃଧ ବେଟେଗୋଟେ ଜାତି;
ରାମ—ଅଉ ତେବେ ଯୋଗ୍ୟତର ନାହିଁ ଆନ କେହୁ,
ବାବାଜୀ—ଅଛୁ, ଅଛୁ,—ମହାପ୍ରଭୁ ସେହୁ ଯେ ଅନନ୍ତ—
ମୁଖଶ୍ରୀ ଯାହାର ନାମ ହୋଇଅଛୁ ଖେଧ,
ଯେହୁ କପି ଅଟନ୍ତି ପୁଣି ବୟସରେ ବୃଦ୍ଧସ,
ତହିଁ ପୁଣି ସାଣ-ଦାନ୍ତ ମୁଖ ।
ରାମ-ଭକ୍ତ କପି ଥାଇ ହେଉଅଛୁ ଏବେ,
ଧପା ଖାଇ ଜମ୍ବୁ ଶରଣିଆ ।
ଧର୍ମ ସଭାପତି ଯଦି ହୁଅନ୍ତେ ମୁଖଶ୍ରୀ,
ଅଟଳି ରହନ୍ତା ନାହି ଜମ୍ବୁବାନଙ୍କର ।
ରାମ—(ଅଖିମାରି)
ତଥାସ୍ତୁ—ହେଲ ତ ସନ୍ତୁଷ୍ଟ ଏବେ ?
ଜମ୍ବୁ—(କାଶି) ମାନ– ପ୍ରଭୋ !...
ରାମ—ପରୋକ୍ଷେ ମାତ୍ର ଯାତ୍ରା ଶୁଣିବାକୁ ନାହିଁ ଅବସର,
ଘାତ ଜଳେ ଶୁଣି ବାରବାର,
Final order ଏହୁ ମଣିବ ଅବାଟ
good bye, ଏବେ ! ଧର ନିଜ ବାଟ ।

ଏମନ୍ତ ବପ୍ଲାଇ ଶୁଣି ମେ଼ୁ ଜରଜର
ତରଙ୍ଗରେ ମିଳଣ ଶିବିରେ,
ଜମ୍ବୁର ସ୍ୱଦଳ ହଣ୍ଡି ଡକାଇ ତୁରିତେ,
ନବ ହୁତାଗାରେ ବସି ଗର୍ଜିଲେ ଏମନ୍ତେ

ଜମ୍ବୁବାନ—ଶୁଣ ବନ୍ଧୁଗଣ,
ଲଙ୍କା ଓ ଅମରା ଜୟ ହୋଇଲା ଆମ୍ଭର,
ଆମ୍ଭ ବାହୁବଳେ, ଅବା ଆମ୍ଭର କୌଶଳେ,
ମଝିରେ ମାରିଲେ ଲାଭ ମହାପାତ୍ରେ ବସି,
ଜଳଙ୍କା ପରାଏ ଆମ୍ଭେ ରହିଲୁ ଅନାଇ ।
ଅସହ୍ୟ ଏ ବ୍ୟବହାର ଅସହ୍ୟ, ଅସହ୍ୟ !

କହୁଁ କହୁଁ ବାକ୍ୟରୋଧ ହୋଇଲା ତାଙ୍କର,
ଆଫା ଆଫା ମାରି ସମା ନସ୍ଫୁରଇ କଥା ।
କେବଳ ଅନ୍ତର ଜଷ୍ମା ପଡ଼ଇ ଜଚ୍ଛୁଳ,
ଦର୍ପନ ଇନ୍ଦ୍ରିୟ ବାହି ଅଗ୍ନି କଣା ରୂପେ,
ବାକିଥା କେଶାଗ୍ର ଦେଇ ବେଢ଼ ଚଉ ନାଦେ
ଛୁଟିଇ ଦଶନ୍ତ ଅଢ଼େ ଇଲେକ୍ଟ୍ରି ପ୍ରବାହେ ।
'ହୋଷିଆର' ଅଟ୍ଟହାରେ ଦାଢ଼ି ଗୋଟି ଗୋଟି
ହୋଇଗଲ ଠିଆ ।
କରବାଡ଼ ହେଲ ମୁଷ୍ଟିବ୍ୟୁତ,
ଲକ୍ଷଗଣ କାତର ଫସ୍ତ୍ର ।
ଏମନ୍ତ ସମୟେ ବୀର ଭାଲୁ ସେନା ଏକ
ସୁର୍ଯ୍ୟସମ ତେଜୀୟାନ୍,
ଦନ୍ତେ ଧରି ତେନ୍ତୁଳ ଓ ଲଙ୍କା
ଦକ୍ଷିଣୋପକୂଳୁ ଆସି ଭେଟିଲେ ସେ ଠାବେ ।
ତାଙ୍କ ତେଜ ଦେଖି ସବେ ଦେଲେ ବାଟ ଛାଡ଼ି,
ତହୁଁ ସେ ଚାମୁଣ୍ଡ ଦାନ୍ତ, ଚରଣ କଚାଡ଼ି,
ମିହିସ୍ୱରେ ଝନଝନାଇ କହିଲେ ଏସନ—
"ବୀର ଭାଲୁ ଜାତି ଏହା ସହୁ ନାହିଁ କେବେ
ସହିବ ନାହିଁଟି ପୁଣି ଏହୁ ଅତ୍ୟାଚାର ।
ଯେତେ ଦିନ ଥିବ ରକ୍ତ ଆମ୍ଭ ଧମନୀରେ,
ଯେତେ ଶତ୍ରୁଦଳ
ଗୋଟି ଗୋଟି ଉପାଡ଼ଣ କରିବୁଁ ନିର୍ମୂଳ ।
ଏହୁ ମୋର ପଣ,
ମନ୍ଦର ରେଷଣ କବା ଶତ୍ରୁର ପୋଷଣ !"

ଋକ୍ଷପତି ହୋଇ ତହୁଁ ବରଫ ଶୀତଳ
ଦାନ୍ତ ନିକାଶିଣ ହସି କହିଲେ ସଧୀରେ
"କିଏ ରେ ତୁ ବୀର ଶିଶୁ, କାହୁଁ ବା ଅଇଲୁ
ଜାତିର ସଙ୍କଟକାଳେ, ପତାଇଲୁ ମଥା,
କହ ଆଶ୍ୱାସନା କଥା, ଅତଙ୍କ ସମୟେ ।
ସେ ବୋଇଲେ —
*"ହନମଣି ନାମ ମୋର, ଜନ୍ମ ଭଲ୍ଲୁ କୁଳେ
ତୁମ୍ଭର ଚରଣ ଦାସ, ମର୍କଟ ବିଦ୍ୱେଷୀ ।"
ଜାମ୍ବୁ—ସାବାସ୍ ସାବାସ୍ ବଛା,—ଅଦ୍ଭୁତ ହିମ୍ମତ,
ତୁମ୍ଭ ଭଳି ବୀର ଜଣେ ଲୋଡ଼ୁଥିଲି ଏକା ।
ରାମଙ୍କ ମର୍କଟ ଦଳ ଜବ୍ଦ କରିବାକୁ,
ତୁମ୍ଭ ନାମ ହଅଗଲା ଏଣୁ "ବଗୃସାକୁ" ।

ତହୁଁ ନବ ବଗୃସାକୁ କରନ୍ତେ ସଲାମ,
ଜୟଧ୍ୱନି ପଡ଼ିଗଲା ଭଲ୍ଲୁକ ମହଲେ,
ଋକ୍ଷପତି ସ୍ୱ-ଦେହୁ ଉପାଡ଼ି କେଶଟି
ଶରୋପା ରୂପରେ ତାହା ବାନ୍ଧି ଦେଲେ ନେଇ
ବଗୃଇସାକାର ମୁଣ୍ଡେ, କୁଣ୍ଢାଇ ସପ୍ରେମେ ।
ଜାମ୍ବୁବାନ— ଶୁଣ ବତ୍ସ,
ଆଜିଠାରୁ ହେଲୁ ତୁହି ଥାଟ ସେନାପତି
ଦକ୍ଷିଣ ଦେଶର—ଯଦି ଦେଖେଁ କରାମତି,
ଉଚ୍ଚତର ପଦ ପୁଣି କରିବି ନିର୍ମାଣ ।
ମିଲିଟାରି ଡିପାର୍ଟମେଣ୍ଟ ରହିଲା ତୋ ହାତେ,
ପୁଣିଟି ରହିଲା ଅମ୍ଭ ପ୍ରୋପାଗଣ୍ଡା ଫାଇଲ,
ଲୋକମତ ଗଠନରେ ହେବୁ ହୁସିଆର
ଡକ୍ଟର ଗୋବେଲସ୍ ଯଥା ଜର୍ମାନି ରାଜ୍ୟର,
ବଗୃସାକୁ— ପ୍ରଭୋ ମୁହିଁ ସେ କର୍ମରେ ଅକ୍ଷମ ନିତାନ୍ତ,
ଆନ ଜନେ—
ଜାମ୍ବୁ—ଓଃ-ଚନ୍ଦ୍ରା ନାହିଁ ବତ୍ସ,—ବତ୍ସ ।
'ଚନ୍ଦ୍ରାମଣି' ହୋଇବେ ସହାୟ,
କର୍ଣ୍ଣଧାର ରୂପେ ଏହି ସ୍ୱାର୍ଥଶୂନ୍ୟ କର୍ମେ
ଦେଶ ଆଉ ଜାତି ପାଇଁ
ସ୍ୱାର୍ଥଗନ୍ଧ ଲେଶ ମାତ୍ର ନାହିଁ,
ଅନାସକ୍ତ, ମୁକ୍ତସଙ୍ଗ, ନିର୍ବିକାର ଭାବେ
କେବଳ ନିମିତ୍ତ ମାତ୍ର ହୋଇ
ଶିଖଣ୍ଡୀ ସଦୃଶ ଆଗେ ହୋଇଗଲେ ଛିଡ଼ା,
ନ ଦେଇ ତୁମକୁ ପୀଡ଼ା,
ପଛଆଡ଼ୁ ଭଡ଼ା କାମ କରିଯିବୁଁ ଆମେ ।
ବଡ଼ା ବଡ଼ା, ସିଡ଼ା ସିଡ଼ା—ଯାଇଛା, ଦେଖିବ !
ଏଣିକି ବଗୃର ହେଉ ଅମ୍ଭ କର୍ମ ପନ୍ଥା ।
Party programme ର ଏବେ ହେଉ ମୁସାବିଦା ।
ଲେଖ, ଲେଖ, କିଏ ଅଛୁ short hand ଧାରେ ।
Steno ଗଣ ତହୁଁ ଧରି ପେନସିଲ କାଗଜ
ହଜୁର୍ଣ୍ଣ ହୋଇଣ ଗୃହୁଁ ରହିଲେ ତଳକୁ ।
ଜାମ୍ବୁବାନ—ପ୍ରଥମ ଉଦ୍ଦେଶ୍ୟ—ସେ-ସେ-
ଏଇ ଧର ଆଗେ—
ରାମର ପେଷଣ ଆଉ ମର୍କଟ ନାଶନ,
ତଦନ୍ତେ Power ଆଉ ପ୍ରେଷ୍ଟିଜ ରକ୍ଷଣ,
ତାହା ପଛେ ଭକ୍ଷଣଟା ଧରାବନ୍ଧା କଥା,
ଜାତି ଓ ଦେଶର ସେବା ଗୌଣ ଲକ୍ଷ୍ୟ ତାର
ଅର୍ଥାତ୍ କର୍ମର ନେତ୍ର—ଧୂଆ ମାତ୍ର ସାର
ଏହୁ ଆଳ, ଏହୁ ଥାଳ ଏହୁ ଭେକ ଧରି
ଆପଣା ଚରମ ଲକ୍ଷ୍ୟ କରିବା ସାଧନ
ରଣରେ ଅନୀତି ନାହିଁ ଜାଣିଛ ସରବେ,
ନୀତି ଅନୀତିର ଭେଦ ଦୁର୍ବଳର ଫାନ୍ଦ,
ଛଳ, ବଳ ଅଥବା କୌଶଳ,
ସବୁଠାରୁ ଛକା ପଞ୍ଝା କଳ ।
Diplomacy ଖେଳ,
ଶେଷରେ ଦଳ ମର୍ଦ୍ଦିଲେ—ଧର୍ମାଧର୍ମ,
(ଜାମ୍ବୁବ ବଚନେ,
ଜୟନାଦ କମ୍ପିଗଲା କରତାଳି ସନେ
ଗଗନେ, ପବନେ ଆଉ ଭବନେ ଭବନେ ।)
ଅତ୍ୟୁଗ୍ର ମର୍କଟ ଯେତେ ଅଛନ୍ତି ସେ ଦଳେ,
କରି ପଟାପଟି,
ଦେଖାଇ ହସ୍ତୀକା ଲଢ଼୍ ଅଣ ତାଙ୍କୁ ଘୁଞ୍ଚି,
ରାମର ସ୍ୱଦଳ ଯାଉ ଫାଟି.
ଏମନ୍ତେ ହମାକ ତାର ଭାଙ୍ଗି ପଡ଼ିଲରୁ
ଅବ ଦଳେ କରିଣ ନିଃସାର
ଚଢ଼ାଇବା ଦେଶିକି ପାହାର,
ବାହାର ହୋଇବ ମଜା ତେବେ ଘୁଏଁ ଘୁଏଁ

* ଦକାହର—ହନମଣି ହୋଇପାରେ ।

ବାଏଁ ବାଏଁ ଉଡ଼ିଯିବ ଯେତେ ଫର୍ ଫାର୍ ।
ଉତ୍ତରାଞ୍ଚଳଟା ସାରା ରହିଲା ମୋ ହାତେ,
ହୋଇଲାଣି କାମ ଥୋଡ଼ା ଥୋଡ଼ା,
ବାକିଅଛି କିଛି ମାତ୍ର ଲୋଡ଼ା,
ଫୁଟିକି ମାତ୍ରକେ ସବୁ ଆସିବେ ଫଟକ,
ଦାକ୍ଷିଣାତ୍ୟ ପାଇଁ ଥିଲା ବଡ଼ ଦୁର୍ଭାବନା,
ମାତ୍ର ଆମ୍ଭ କଂଗ୍ରେସକୁ ବନ୍ଦନ ନିରେଖି,
ସେହି ଚିନ୍ତା ହୋଇଅଛି ଦୂର;
ସ୍ୱତମତ ଶୂର ଜଣେ ମିଳିଛି ପାଖକୁ,
ଦୂର କରିବାକୁ କ୍ଷମ ତେନ୍ଦୁଳି କାନନ ।
କରିଛି ମୁଁ ବଶୀଭୂତ ଦେଖା ସାମୁଲାଇ,
ଛେନା, ପଣା ଦେଇ,
କାର୍ଯ୍ୟ ମୋର ହୋଇଲେ ସଫଳ,
ମନାସିଛି ଝାଡ଼େଶ୍ୱରେ ପକାଇବି ଦାଢି ।
ଭଦ୍ରକାଳୀ ପାଇଁ ଅଛି ଯୋଡ଼ କଳା ବୋଦା,
ବିରଜାଙ୍କଠାରେ ହୋମ ଭେଜିଟେବୁଲ ଘୃତ,
ବଳଦେବଙ୍କର ଲାଗି ସେରେ ରସାବଳି,
ଜଗନ୍ନାଥ ପାଇଁ ମୋର ନାହିଁଟି ଭାବନା,
ଯେଣୁ ସେ ଘରକା ଠାକୁର ବ୍ୟୁଲ୍, ବରାବର୍ ।
ଶୁଣ ବତ୍ସ ମନ ଦେଇ,
ଇନ୍ଦ୍ରାଦି ଦେବତାବୃନ୍ଦ ସ୍ୱର୍ଗୁଁ ତଡ଼ା ଖାଇ,
ଲୁଚିଛନ୍ତି ଦକ୍ଷିଣ ଦେଶରେ ।
ଚଳାଅ ତାଙ୍କର ସଙ୍ଗେ negotiation,
ଅଶାନ୍ତିରେ ଥିବ ଦୁଃଖ ମନ,
ମାତ୍ର ରହିଥିବ ନିଶ୍ଚେ ଅନ୍ତରେ ଅନ୍ତରେ,
ଇନ୍ଦ୍ର ନାମ ଜଙ୍ଘାସାଝା ହୋଇ ବଳବତୀ;
ଯାଇ ତାଙ୍କ କତି,
ଘଟାଘଟ, ସଟାସଟ, କରିବ କୌଶଳେ,
ପଥଟା clear କରି ଯାଗ ଯୋଗେ ଆଗେ,
ତେଣିକି ଯେ ବାଗ ଥିବ ତାହା ମୋତେ ଲାଗେ ।
ସେନା ଫଗ୍ରହର କର୍ମ ବେଗେ ବେଗେ କରି
ତାର ବା ବେତାର ଯୋଗେ ଜଣାଅ ମୋ ଠାବେ ।
ବଗୁଲ ସବାଉ—ପ୍ରଭୋ, ତୁମ୍ଭ ବଳେ ସିନା ମୁହିଁ ବଳୀୟାନ,
କି ଅଛି ମୋହର ଜ୍ଞାନ,
କିବା ଧନ, ବିଦ୍ୟା, ବୁଦ୍ଧି, ମାନ
ଶିଖଣ୍ଡି ଯେସନ ଭୀଷ୍ମାର୍ଜୁନ ରଣ କାଳେ,
ତୁମ୍ଭେ ମାତ୍ର ଆସ ଯାଇ Whirl-wind tour
ପହିଲି ପୁରଟା, ଅର୍ଣ୍ଣି ଆସ ଡାକଲାରେ,
ତେଣିକି ମାତ୍ରକୁଁ ଅମେ ତା ଧନ୍ଦତା ଗୁଁଟି
ଜାମ୍ବୁବାନ—ବାହବା, ବାହବା—ଅଛ ପକ୍କା ଉସ୍ତାଦ୍ ।
ଶଙ୍ଖ ହୁଳାହୁଳି ନାଦ ପଡ଼ିଲା ଉଚ୍ଛୁଳି,
ନାଚେଲେ ଭଲ୍ଲୁକବୃନ୍ଦ ଦାଲୁ ଦାଲୁ ହୋଇ;
ତେଣେ କପିଗଣ ଶୁଣି ଗଣିଲେ ପ୍ରମାଦ ।
ଏଣେ ଗୃଧ୍ରବର ଆସି ପ୍ରବେଶି ସେଠାରେ
ଜାମ୍ବୁଙ୍କ ସହିତେ ପ୍ରେମେ କଲେ ହାଣ୍ଡ ସେକ୍ ।
ଜାମ୍ବୁ—କାହିଁ ଥିଲ ଏତେକ୍ଷଣ କହ ବନ୍ଧୁବର
ଏ ସମୟେ,
ଭାବାବେଗେ ନ ସ୍ଫୁରିଲା ବାଣୀ
ମୁଣ୍ଡକୁ ଝୁଙ୍କାଇ ହେଲେ ଏଣ୍ଡୁଅ ସଦୃଶ
Santa oruz ଦାଢ଼ୀ ତାଙ୍କ
ଦୋଲାୟିତ ହେଲେ ପେଣ୍ଡୁଲମ୍ ବତ
ଗୃଧ୍ର—ଯାଇଥିଲି ସଫରେ ବାହାର
ଜଙ୍ଗଲକୁ ବାଣ ମାରି ମାରି
ଯହିଁ ଲକ୍ଷି ଯାଇପାରେ କେବଣ ଶିକାର ।
ଜାମ୍ବୁ—(ସହର୍ଷେ) ହେଲକି, ହେଲକି କିଛି—କେଣୁ—
କହ ତ୍ୱରି, ଲାଗୁଛି ଉଚ୍ଛୁଳି ।
ଗୃଧ୍ର—(ଥୋମଣି ଗୋଳାଇ) ଗୋଟା କେତେ ମିଳିଛି ଶିକାର,
ମାତ୍ର ଯେଣୁ ସର୍ବେ ଦୁସିଅର,
ଆପଣାର ସ୍ୱାର୍ଥ ଚେନି,
ପକାଇଛି ଗୃଧ୍ର ଆଉ ଥୋପ;
କେ ପଶ୍ଚାତେ ଲଣ୍ଡିଅ କେରାଣ୍ଡି
ବାଳିଆ ରାଘବ ହେଲେ—
ଜାମ୍ବୁ—(ଭ୍ରୂଣ୍ଡାଇ ପକାଇ)
ଅରେ ଯା—କହମ—କେତେ ...
ତହୁଁ ଗୃଧ୍ର ଜାମ୍ବୁଙ୍କର କାନେ ମୁଖ ଦେଇ,
ଫୁସ୍ ଫୁସ୍ କରି ଦୁଇ ପଦ ଦେଲେ କହି ।
ଅସମ୍ଭାଳ ହୋଇ ଜାମ୍ବୁ ମାରିଲେ ଚିଲ୍ଲାଏ,
Back ward ହାଇ ଜମ୍ପ୍ ଦୁଇହାତ ଟେକି,
ତା ଦେଖି ଗଡ଼ଣ ସର୍ବେ କଲି କଲା ରଭ,
ବଲ୍ ଡାନ୍ସ ପଦ୍ଧତରେ କୋଡ଼ଦେଲେ ନାଚ
କି ଅବା କୀର୍ତ୍ତନେ ଯଥା ଉଦ୍ଦଣ୍ଡ ତାଣ୍ଡବ,
ମିଳନ ଆନନ୍ଦେ ସର୍ବେ ହୋଇଣ ଉତଲା,

ନାନାରଙ୍ଗେ ଦେଖାଇଲେ ନୃତ୍ୟ ଶିଳ୍ପ କଳା,
କେ ନାଚେ ଓରିଏନ୍‌ଟେଲ, କ୍ଲାସିକାଲ କେହି,
ବ୍ରତାଗୃହୀ ଫୋକ ଡାନ୍‌ସ, କେହୁ ମନ ପୁରି,
ଝାଡ଼ଖଣ୍ଡୀ ଝୁମରକେ ଗୁଜରାଠୀ ଗରବା,
କଥାକାଲୀ, ଛଉନାଚ, ଗୋଟି ପୁଅ କେହୁ,
ସର୍ବେ ଦିଗମ୍ବରୀ nude dance କଲା ଛନ୍ଦେ ।
ଥୋକାଏ ହୋଇଣ ଥକା ବସିଣ ଏକାଠି,
ଗୋବର ପାଣିଆ ମାଲ ଚଲାଇଲେ ବାଟି
ହରିବାକୁ କାୟ-ମନ କ୍ଲେଶ,
ପଚ୍‌ ପଚିଆ ମାଲ ତନୁ ହୋଇଲା ପ୍ରବେଶ,
ଅମାଳୁ, କାକରା, ଲଡ଼ୁ ଚକଟା କାନିକା—
ଓ୍ୟାଟର୍ଲୁ ସମର ପୂର୍ବ ରଜନୀ ଯେମନ୍ତ ।
ସରିଲା ପେଞ୍ଚୁଆ କାଣ୍ଡ—ଯଥା ଗୃହୁ ପାଣି,
ମିର୍ଳାଇଲା ଛୁଙ୍କିଦିଆ ଲାଳବୁହା ବାଣୀ,
କପିବର ଏବେ ଠିକେ ମାରନ୍ତୁ ଆରାମ,
ବଡ଼ ଥକା—ବାପ୍‌ରେ ବାପ୍‌—ହା-ରାମ ହା-ରାମ ।
ଷଟିଆ କାଣ୍ଡକୁ ଏବେ ରହିଥାଅ ଟାକି,
ଟାଉ ଟାଉ ହୁଅ ନାହିଁ—ଖାଅ ଗୁଖି ଗୁଖି ।

ଇତି ଶ୍ରୀ ନବରାମାୟଣେ ମାୟାପୁରାଣେ ପେଞ୍ଚୁଆ କାଣ୍ଡ ସମାପ୍ତ ।

## ଷଠିଆ କାଣ୍ଡ

କହ ମା ଶାରଳେ, ରଙ୍ଗ ଅଧର ସଙ୍ଗିନୀ,
କା ରଙ୍ଗ ଲଗିଲା ତହୁଁ ଋକ୍ଷ-କପି ଦଳେ,
ଶଠେ ଶାଠ୍ୟ ସମାଚରି, ବଗୃର ଉଗୃର,
ଦୁଇ ଦଳ ଦୁଇ ଫାଙ୍କ ହୋଇ ଜବର୍‌ଦସ୍ତେ
କୁସ୍ତା କୁସ୍ତି, ଧସ୍ତାଧସ୍ତି ଆଚରିଲେ ଯେବେ ।
ରାମ ଭକ୍ତ ବିଭୀଷଣ ଲଙ୍କା ଅଧୀଶ୍ୱର,
ଗୃଧ୍ରବର କୌଶଳରେ ଉଠିଲେ ବଗଡ଼,
ମନେ ମନେ ସତ୍ୟ, ମାତ୍ର ନୁହେଁ ପ୍ରକାଶ୍ୟରେ
ଯେଣୁ ରାମ ଧୂରନ୍ଧର ସପ୍ତତାଳ ଭେଦୀ,
କପୀନ୍ଦ୍ର ବାଳିକୁ ଯେହ୍ନୁ ବନ୍ଧଣ ଉହାଡ଼ୁ,
ଏକା କାଣ୍ଡେ କରିଦେଲେ flat (ଫ୍ଲାଟ୍‌)

ଇଚ୍ଛା ମାତ୍ରେ ଲଙ୍କା ସିଂହାସନୁ,
ଦେବେଟି ଖସାଇ କାଲେ କରିଣ ଧମାସ୍‌ ।
*ରଙ୍ଗନାଥ ମହାପ୍ରଭୁ ନିପୁଣ †ସମାଜୀ,
ଉଠିଲେଣି ତେଣେ ଗଳଗ୍ରାଜି ।
ସହ ନନ୍ଦୀ, ଭୃଙ୍ଗୀ ଧରି ତ୍ରିଶୂଳ ପିନାକ ।
ମାଳବାସୀ ବୀରଗଣ ସହ ଦିନମଣି,
ଜାମ୍ବୁବାନ ବଳେ ଆସି ମିଶାଇଲେ ବଳ ।
ଏମନ୍ତେ ଜମୁର ଦଳ ହୋଇ ବଳୀୟାନ,
ପ୍ରକାଶ୍ୟ ସମରେ ଖରେ ହେଲେ ଆଗୁସାର,
ଧରି କରେ ଅହିଂସାର ନାନା ହତିଆର,
ମାର, ମାର, ଧର ଧର ଉଗୃର ବଦନେ ।
ବସିଲା ସମର ସଭା,
ଉଭା ହୋଇ ଜାମ୍ବୁବାନ ଦାଢ଼ିକୁ ଆଉଁସି,
ଭାଷିଲେ ଏମନ୍ତ—
ବୀରବୃନ୍ଦ,
ଧଉ ବାଜି କରି ରାମ ଦେଲା ସବୁ ସାରି,
କାଲ, କୁଆଟୁଟ୍, ଟୈରି, ଧପ୍‌ପା ଗାଲ୍ପ ମାରି
ବିଦେଶୀ ଉତ୍ତରବାସୀ ସୁଗ୍ରୀବ ସହାୟେ
ଆମ୍ଭ ଦେଶେ ଆସି ପୋତିଲାଣି କୋଳଗଛ ।
ଅପଣା ଜନଙ୍କୁ ଦେଇ ସ୍ୱର୍ଗ ରାଜ୍ୟ ଭାର;
ଯେଉଁ ସ୍ୱର୍ଗ ଜିଣିବାକୁ ଆମେ ଦେଲେ ରକ୍ତ !
ଅସହ୍ୟ ଅସହ୍ୟ ଏହା, ପୁଣି ଦୁର୍ବିସହ,
ବୃଦ୍ଧ ପ୍ରାଣେ ବ୍ରହ୍ମରକ୍ତ ଉଠେ ଡଗମଗି,
ମନେ ହୁଏ ତଣ୍ଟି ତାର ଚିପି ଏହିକ୍ଷଣେ
ଗୃଧ୍ର ଶ୍ୱାନ ଶୃଗାଳଙ୍କୁ ଦିଅନ୍ତି ଭୁଞ୍ଜାଇ ।
କିନ୍ତୁ ସେହି *ସୁଗ୍ରୀବଟା ! ଅଉ ସେ ବାବାଜୀ,
ଜଣେ ଅଗ୍ନି ସମ ତେଜ, ହଳିଆ କୃଷକ,
ଧରିଅଛି ଅସ୍ତ୍ରରୂପେ ହାତୁଡ଼ି ଓ ଦାଆ;
ଆଉ ଜଣେ କରଣିଆ ପେଞ୍ଚରେ ପ୍ରବୀଣ,
ନଗର ରକ୍ଷକ ଗାଦି ମାଡ଼ିଲାଣି ବସି ।
ଏ ସବୁର ମୂଳ ଅଟେ ସେହି ଷଣ୍ଢ ଟୋକା,
ଗଡ଼ାଇ ପାରିଲେ ତାକୁ ସବୁ ଯିବ ଫାଟି;
ସ୍ୱର୍ଗ ରାଜ୍ୟ ହୋଇଯିବ ଆମ୍ଭର ଅୟତ୍ତ,
ସୋମରସ ପାନେ ସର୍ବେ ମାରିବା ମଉଜ ।

---

* ରଙ୍ଗନାଥ—ରାଧାନାଥ ।
† ସମାଜୀ—ସମାଜ ସହିତ ସାମଞ୍ଜସ୍ୟ ଅଛି ।
* ନବକୃଷ୍ଣ ଚୌଧୁରୀ ବୋଲି ଅନୁମାନ କରାଯାଉଅଛି

ଖାଲି ତୁମ୍ଭ ପାଇଁ ସିନା ଏତେ ମୋ ଭାବନା
ଅଉ ଦେଶ ପାଇଁ—ମୋର ପ୍ରିୟ ଦେଶ ପାଇଁ,
ଉତ୍ତରାଧିକାରେ ଯହିଁ ହକ ଦାବି ମୋର,
ନେତୃତ୍ୱରେ ଅଖଣ୍ଡ ମୋ ସ୍ୱତ୍ୱ.
ପର ଆସି ମାଡ଼ ବସି ନେବ ତାହା କାଢ଼ି,
କେମନ୍ତେ ପାରିବି ଛାଡ଼ି ?
'ଦାସ' ନାମ ଧରି ପୁଣି ଥାଉଁ ଥାଉଁ ଦାଢ଼ି ।
(ଘନ କରତାଳି)

ଏଥୁ ଅନ୍ତେ ଭାଇମାନେ ଶୁଣ ମନ ଦେଇ,
ଝାଡ଼ ହେଲେ ଗୃଧ୍ରବର କାନକୁ କୁଣ୍ଡାଇ ।

ଗୃଧ୍ର—ଶୁଣ ସଭାସଦ ବୃନ୍ଦ, ଏ ମେଳ ଅମର.
ଅଚ୍ଛେଦ୍ୟ, ଅକାମ୍ୟ ପୁଣି ଅପାଠ୍ୟ ଅଟଇ,
ଯେଣୁ ଆମ୍ଭେ ତ୍ରି-ଶକ୍ତି ତ ଅଛେଁ ମିଳି ଏଥି,
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଅବତାର ତିନି,
ଦାଢ଼ୀ, ନଖ, ଚୁଟିଙ୍କର ଅପୂର୍ବ ମିଳନ ।
ବ୍ରହ୍ମାଙ୍କର, ଅଗ୍ନି ଅଉ ତପ୍ତ କମଣ୍ଡଳୁ,
ତାହା ସଙ୍ଗେ ବିଷ୍ଣୁ ଚକ୍ର ବକ୍ର ଗତି ପାର,
ଶେଷେ ଶୂଳପାଣିଙ୍କର ତ୍ରିଶୂଳ ପିନାକ
ତ୍ରିଶକ୍ତି ମିଳନେ ଉପୁଜନ୍ତି ଯେଉଁ ତେଜ,
ଧନମଣି କରଣରେ ହୋଇ ଦୀପ୍ତିମାନ,
କାହା ସାଧ ରେ ଧରିବାକୁ ପ୍ରଭାବ ତାହାର ?
ଚନ୍ଦ୍ର ଖେଅ ଆଗେ ସ୍ଥିର କରଣିଆ ପେଞ୍ଚ ?
କାହିଁ ଲାଗେ ? ସର୍ଚ୍ଚ ଲାଇଟ୍ ଆଗେ କି ବଳିତା ।
ଏରୋପ୍ଲେନ ଆଗେ ଯଥା ରବର ବେଲୁନ !
କମାଣ ଆଗରେ କିବା ବରଡ଼ା ପଟକା !
ଉଠ ଉଠ ବୀରପଣ, ଦେଖ ଗୃହ୍ମୁଁ ଗୃହ୍ମୁଁ,
ସବୁ ଗ୍ରାସିଗଲେ ଶତ୍ରୁ ତୁମ୍ଭ ମୁଖ ଗ୍ରାସ,
ଦେଖି ପ୍ରାଣେ ଲାଗୁଅଛି ତ୍ରାସ,
ଦିଅ ତାଙ୍କୁ ତ୍ରାସ,
ଶକ୍ତି ଘାତ କରି ହ୍ରାସ କର ତାଙ୍କ ତେଜ,
ଆମ୍ଭ ସେନାପତି ଏହି ବୀର ଧନମଣି,
ତାଙ୍କୁହିଁ ପୁରତେ ଥୋଇ ଲଢ଼ ଏବେ ସୁଖେ ।
ଅଯୋଧ୍ୟାର ସିଂହାସନୁ ପକାଅ ଖସାଇ,
ଦୁଷ୍ଟ ସେ କ୍ଷତ୍ରିୟ ସୁତ ମହାପାପୀ ଭଣ୍ଡେ ।
ଲୋକମତ ଗଢ଼ିବାକୁ ମାରି ନିଅଁ ଝୁଣ୍ଟା ।

ଏଥୁଅନ୍ତେ ଭୁଅଁକରି ଉଠିଲା ଭ୍ରମର
ଝାଡ଼ଝୁଡ଼ ଲାଗାପଟା, ଠେକୁଣ ଆଦିନ୍ ।
ଦୁଇକାନ୍ଧୁ ପାନବୋଲ ବନ୍ଧେ ଦୁଇଧାର,
ବୀରତ୍ୱର ରାଗମୟ ଗାର !
ଶୋଭାର ଭଣ୍ଡାର,
ଅଧର ଶିଖରେ କିବା ଅରୁଣ ପ୍ରକାଶ ।
ସମ୍ମୋହିତ ହେଲେ ସର୍ବେ ସେ ଶୋଭା ଦର୍ଶନେ,
ଅପାର କମଳ କଳି ହେଲା ପ୍ରସ୍ଫୁଟିତ,
ବକ, କୁମ୍ଭାଟୁଆ ଗଣ ଉଠିଲେ ଝଙ୍କାର ।

ଧନମଣି—ଶୁଣ ଶୁଣ ସଭାସଦ ବୃନ୍ଦ,
ପ୍ରଖର ତେଜକୁ ମୋର କେ ପାରିବ ସହି ।
ରହି ରହି ଯେବେ ଛାଡ଼ ଦେବ ଧୂଆଁ-ବାଣ !
ଆମ୍ଭ ଦଳପତିଙ୍କର କେଶାଗ୍ର ସହାୟେ
ଜିଣିପାରେ ତ୍ରିଭୁବନ ଘଡ଼ିକ ଭିତରେ
ପୌର ସେନା ଘେନି ଏବେ କରୁଛନ୍ତି ପ୍ରୟାଣ
ଏକାକୀ ମୁଁ ରଣକ୍ଷେତ୍ରେ
କଲି ଏହି ପଣ,
ସମର ପତନ ଅବା ଶରୀର ଖତମ୍ ।

ତହୁଁ ସର୍ବେ ଦେଲେ କରତାଳି,
ତୂରୀ ଭେରୀ ବାଜିଲା କାହାଳୀ
ନାହାଳ ଭଲ୍ଲୁକ ସେନା ଚଳିଲେ ଆହବେ

ତେଣେ ବସିଥିଲା ସଭା ରାମଙ୍କ ଶିବିରେ,
ସୁଗ୍ରୀବ, ବାବାଜୀ ଦୁହେଁ ବସି ମନ୍ତ୍ରଣାରେ
ଦୁଇକର୍ଣ୍ଣେ ଖେପୁଥିଲେ ମନ୍ତ୍ର ଘନ ଘନ ।
ବାବାଜୀ—ସମ୍ମୁଖ ସମର ନୁହେ କଦାପି ଉଚିତ,
ଅଲକ୍ଷ୍ୟରେ ଥାଇ ଏବେ ମାର ଶବ୍ଦ ଭେଦୀ
ଫିଙ୍ଗୁଥା ବାହାର ହେଉ ରାମ ପଞ୍ଝା ସହ
ଧନମଣିଟାକୁ କର ବିଲକୁଲ କେନସଲ ।
ଦେଖାଯିବ କେତେ ବୁଦ୍ଧି ଧରେ ଗୃଧ୍ରରେ ।
ପାଠ ବହି ଲେଖିବାର ବିଦ୍ୟା ନୁହେ ଏହା,
ଖାଣ୍ଟି ପଲିଟିକ୍ସ ଏ ଯେ—ଡିପ୍ଲୋମେସି ଖେଳ ।

ଗୃହ୍ମୁଁ ଗୃହ୍ମୁଁ ରୁଷ ସେନା ବିଦେଶ ଗହଣେ
ରଘୁବର ଶିବିରକୁ ଆସିଗଲେ ଘେରି,

ହଲିଲ ପ୍ରାସାଦ ଛାତୁ ତହୁଁ ସୁଗ୍ରୀବ ବୀର
କରୁଥିଲେ ବଡ଼ ବଡ଼ ହାଣ୍ଡି ଦମାଦମ୍
ଠୋ ଠୋ ଶବ୍ଦରେ ବିଚିତ୍ର ବିଧ୍ୱସ୍ତ
ପଳାଇଲେ ଛତ୍ରଭଙ୍ଗ ହୋଇ ରକ୍ଷ ସେନା;
ଏକାଳେ ଛାଡ଼ିଲେ ରାମ ଶର ଶବ୍ଦଭେଦୀ
ସମ୍ମୋହନ ବାଣ ଏକ ଟାଣ କରି ହାତ;
ତାହା ଫଳେ ସର୍ବ ସେନା ମନ୍ତ୍ର-ମୁଗ୍ଧ ହୋଇ
'ହା-ରାମ' 'ହା-ରାମ' ବୋଲି ଉଠିଲେ ହୁଙ୍କାରି ।
ରକ୍ଷଗଣ ଆରମ୍ଭିଲେ ଅହିଂସା ସମର,
ନିଷ୍କ୍ରିୟ ଯେ ଅବାଧ୍ୟତା, ଅସାଧ୍ୟ, ଅକାର୍ଯ୍ୟ ।
ଛେପ ଥୁକାଥୁକି ଆଉ କାଦ ଫିଙ୍ଗାଫିଙ୍ଗି,
ଲାଗିଲା ନିରସ୍ତ୍ର ଯୁଦ୍ଧ, ସ୍ୱଚ୍ଛ ସତ୍ୟାଗ୍ରହ ।
ଉଡ଼ାଉଡ଼ି ହୁଡ଼ାହୁଡ଼ି ଗଡ଼ାଗଡ଼ି ଆଦି
ଭିଡ଼ାଭିଡ଼ି, ଜଡ଼ାଜଡ଼ି, ପୁଣି ଛଡ଼ାଛଡ଼ି,
ଏହିମତେ ଲଢ଼ାଲଢ଼ି ଲାଗିଗଲା ଯହୁଁ
ସନ୍ତ୍ରାସେ ଉଠିଲା କମ୍ପି ମେଦିନୀ ମଣ୍ଡଳ,
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ହୋଇ ଏକାକାର ।
ଏକ ଛାଡ଼େ ଅନେକ ଲକ୍ଷ୍ୟ ବିରୁଡ଼ିଆ ବାଣ,
ସେ ପୁଣି କଡ଼ବୀ ବାଣେ କାଟଇ ତା କ୍ଷଣେ;
ତେଣୁ ଆସେ ଅଗ୍ନ୍ୟୁଦ୍‌ଗାରୀ ବାଣ ଝିଣିଝିଣା ।
ଏ ଦେନୁ ହୁରୁଡ଼ା ବାଣ ଚଳେ ଛୁଙ୍କି ଛୁଙ୍କି
ମହୁରିଆ ବାଣ ଏକ ମାରନ୍ତେ ଉହୁଙ୍କି,
ଆନ ତା ଉଡ଼ାଇ ଦିଏ ଉଡ଼ାନ୍-ଚୁ ଫୁଙ୍କି;
ଏଣୁ ଯାଏ ଯଦି ଦମ୍ଭେ ପିମ୍ପୁଡ଼ିଆ ବାଣ,
ମାଛିଆ ସେ ଆଡ଼ୁ କ୍ଷେପି କରେ ହଇରାଣ;
ଏହି ମତେ ବାଣେ ବାଣ ଚାଲିଲା ସମର,
ଯୋଦ୍ଧାଗଣ ଭିଡ଼ିଣ କମର,
ରଣ-କ୍ଷେତ୍ରେ ଗଲେ ନାଚି ଝମର ଝମର ।
ଏକାଳେ ଛାଡ଼ିଲେ ରାମ ଚୁଟୁମାର ଶର,
ତହିଁ ସଙ୍ଗେ ବାବାଜୀଙ୍କ ହେଙ୍ଗୁ ଶୁଙ୍ଘା ବାଣ;
ଏହି ଦୁଇ ବାଣେ ଗଲା ଲାଗି ଛୁନ୍ ଛାଟ,
ପଡ଼ିଗଲେ କେତେ ବୀର ହୋଇ ଚିତ୍ ମାତ୍ ।
ବହିଲା ପ୍ରଳୟ ଝଞ୍ଜା ଧରା ଧମ ଧମ,
ସ୍ଥାବର ଜଙ୍ଗମ ସବୁ ଗଣିଲେ ପ୍ରମାଦ,
ଛାଡ଼ ସାହି ସାହି ନାଦ,
ଖସିଗଲା ପାଦ ।
ବଧି କି ସାଧିଲା ବାଦ ଅକାଳେ ଅଘୋରେ !
ଏହା ଦେଖି ତତକ୍ଷଣେ ଦେବର୍ଷି ନାରଦ
ପ୍ରଫୁଲ୍ଲ ଅନ୍ତରେ ଘୋଷି ଘୋଷି ବୀଣା ଧ୍ୱନି,
ଉପନୀତ ହୋଇ ତେଣୁ ବୋଲନ୍ତି ବଚନ ।

ନାରଦ—ଶୁଣ ଶୁଣ ଅହେ ଯୋଦ୍ଧୃ ବୃନ୍ଦ,
ଆପଣାର ମନ୍ଦ ବୁଦ୍ଧେ ନ ପାରୁଛ ଜାଣି
ମରୁଅଛ ହୋଇ ହଣାହଣି;
ସେଥିକି ନେବା ଯେ ଠାଣି, ପର ଏକଲାଗେ ।
ରହ ରହ ନିଜ ମଧ୍ୟେ କର ଭାଗ ବାଣ୍ଟ,
ମେଣ୍ଟ ହୋଇ ଖାଅ ସର୍ବେ ଖୁଣ୍ଟ କରି ଠାଣ ।

କପିଗଣ—ଆମ୍ଭେ ଯେଣୁ ରାମଙ୍କ ଭକତ,
ଭକତ ଗୃହରୁ ଏବା ଜାମ୍ବୁବାନଙ୍କର ।
ତାହା ସନେ ଯୁଧିରେ ନାକାନ୍ତୁ ଚେନାଏ,
ସେହି ଅବିଶ୍ୱାସୀ ଶତ୍ରୁ, ଘୋର ଦଗାଦାର ।

ଋକ୍ଷଗଣ—ଆମ୍ଭେ ଗୃହୁଁ ମାଂସ ସୁଗ୍ରୀବର ।
ତାହା ସଙ୍ଗେ ହାପୁଲଏ ବାନର ଜଦରୁ,
ବଢ଼ାଇଛି ଚର୍ବି ଯହିଁ ଖାଇ ଫଳ ମୂଳ ।

*ନାରଦ—ବୁଝିଲି, ବୁଝିଲି, ଏବେ—ପଡ଼ିଗଲା ଜଣା,
ଅଳ୍ପା ମୁହିଁ କରିଦେବି ତାର କଟକଣା,
ନୁହ ବଣା, ଝଣା ଝଣି ଛାଡ଼ ଏଇ ଥର,
କରି ବୃନ୍ଦାବନେ ଲୀଳା କରନ୍ତି କହ୍ନାଇ,
†ଗୋପାଙ୍ଗନା ବନ୍ଧୁ, ରସସିନ୍ଧୁ, ବ୍ରଜଇନ୍ଦୁ,
ତାଳ ଓ ଖଜୁରି ରସ ପାନେ ଉନମତ୍ତ,
ପୁଣି ମଧୁକର ମଧୁ ଆସ୍ୱାଦ ବିଭୋର
ଅଯୋଧ୍ୟାର ସିଂହାସନେ ବସାଇଲେ ତାକୁ,
ସବୁ ଲଗ୍ନ ଘଟ ମେଣ୍ଟି ଯିବ ଏବା ଦିନେ ।
ତଥାସ୍ତୁ ତଥାସ୍ତୁ ବୋଲି ବୋଲନ୍ତେ ସକଳେ,
ନାରଦ ସ୍ମରିଲେ କ୍ଷଣେ ବ୍ରଜ ବିହାରୀଙ୍କି,
ତହୁଁ ସେଠାବରେ ଆସି ହେଲେ ଉପନୀତ ।
ବାଜିଲା ବିବିଧ ବାଦ୍ୟ, ଗାଇଲେ ଗନ୍ଧର୍ବ,
ନାଚିଲେ ଅପ୍‌ସରାଗଣ, ଓରିଏଣ୍ଟାଲ ଛନ୍ଦେ,
ବ୍ରଜ ଇନ୍ଦୁଙ୍କର ଅଜ ହେବ ଅଭିଷେକ ।
ପଞ୍ଚ ତୀର୍ଥବାରି ଆଉ ଖଦଡ଼ର ପାଗ
ଥୁଆ ହେଲା ଆସି ଶୂନ୍ୟ ସିଂହାସନ ପାଖେ ।

* ଏ ଲେଖାବେଳକୁ ଆଗ୍ରୀପ ହରିହର ରଚନ୍ତିନ ହୋଇସାରିଥିଲେ ।
† ଗୋପବନ୍ଧୁ ଚୌଧୁରୀ ଗ୍ରାମସଂଗଠନରେ ନିଜକୁ ନିୟୋଜିତ କରିଥିଲେ ।

ଏମନ୍ତ କାଳରେ ଶୂନ୍ୟ ପଡ଼ିଲାଟି ଖସି
ଅଦୃଶ୍ୟ ହୁରୁଡ଼ା ବାଣ, ନ ପଡ଼ିଲା ଜଣା,
ମାଛ ନାଳ କନା ଦେଖି ଷଣ୍ଢ ହୁଏ ଯଥା,
ହୁରୁଡ଼ ନାଗର ଝଙ୍କ ମାରିଲେ ଚମ୍ପଟ,
ଅସମ୍ଭାଳ ଲୁଗାପଟା, ପିଠିଲା ଖୋସଣି;
ଏହି ଅବସରେ ମୁରୀ ଝାଳିଲେ କଳସି
ମହାତାପୀ ସ୍ୱାମ ଶିରେ, ବାନ୍ଧ ଦେଇ ପାଗ,
ଟେକା ଟେକି କରି ଦେଲେ ଥୋଇ ସିଂହାସନେ ।
ବକୁଳର ଗଛ ପ୍ରାୟେ ହୋଇ ଗଲା ସନ୍ଧି,
ଦର୍ଶିଗଣ କରତାଳି ଦେଲେ ଜୟଧ୍ୱନି,
ଭାଇଏ ଜଳକା ପ୍ରାୟେ ହେଲେ ଅବାଚକା,
'କି' ହେଲା 'କି ହେଲା' ବୋଲି ମାରିଲେ ଭେଲକା ।
ମର୍କଟ ବିଜୟ ଦେଖି କ୍ଷିପ୍ତ ଦଳପତି,
ସନ୍ତ୍ର ବ୍ୟସ୍ତ ହୋଇ କ୍ଷିପ୍ର ମତି,
ଅସ୍ତ୍ର ଶସ୍ତ୍ର କଲେ ଛିଡ଼, ବିରକ୍ତ ଅଶେଷେ ।
ଯାଇ ନିଜ ବାସେ
ଚିତ୍ମାତ୍ ପଡ଼ିଲେ ଗାଢ଼ ଗାଢ଼ ଦୀର୍ଘଶ୍ୱାସେ ।
ଏ ଦୁରି ହାଲତ୍ ତାଙ୍କ ଦେଖି ସେନା ବୃନ୍ଦ,
ଚୌପାଶେ ଘେରିଲେ ଘେନି ସମ ବେଦନାରେ ।
କେହୁ ଦିଏ *ପ୍ରବୋଧନ, କେହୁ *ପ୍ରବୋଧନ,
କେହୁ ଅବା ଆଖି ମଳି କରଇ ରୋଦନ,
ମଧୁର ଶୋଧନେ କେହୁ ହରେ ମନୋବ୍ୟଥା,
ମାନ କମ୍ପୁ ରକ୍ତଙ୍କର ନ ସ୍ଫୁରଇ କଥା,
ଭଇଁ ଭଇଁ ସଦା କରେ ମଥା
ଖେଞ୍ଚାଖାଇ ହୁଏ ଯଥା ମହୁମାଛି ବସା !
କେ ଘଷେ ତାଳୁରେ ଆଣି କାଷ୍ଟର ଅଏଲ,
କ୍ୱାଟର ବଏଲ ଅଣ୍ଟା କେହୁ ଦିଏ ମୁଖେ
ଲଏଲ ଉକାତ କେହୁ ମୁଁହେଁ ଇଉକୋଲନ,
କେ ଅବା ବ୍ୟଜନ କରେ ସୁନ୍ଦର କାନିରେ,
କେ ଧାଏ ବଜାରଆଡ଼େ ବରଫ ସନ୍ଧାନେ ।
ଘୋରଡ଼ ପଡ଼ିଛି ଏଣେ ଭଲ୍ଲୁକ ଶିବିରେ,
ଲାଗିଛି ଉତ୍ସବ ତେଣେ ଆନ ଛାଉଣିରେ,
କାର ସର୍ବନାଶ ପୁଣି କାର ପୌଷ ମାସ ।
କପିଙ୍କ ଶିବିରେ ଉଠେ ଆନନ୍ଦ କଲ୍ଲୋଳ,
କଡ଼ା କଡ଼ ଗଡ଼ା ଗଡ଼ କରି ଭଡ଼ା ଭଡ଼,

ରସଗୋଲା ଲେମନେଡ଼ ଅଛି ଛଡ଼ା ଛଡ଼ ।
ଡେ'ଙ୍କ ହୋଟେଲରେ ପୁଣି ପଡ଼ିଛି ଅର୍ଡର
ପଲାଉ କୋର୍ମା ଚପ୍ କଟ୍ଲେଟ୍ ଆଦର;
ସାଦା ସିଧା ଢଙ୍ଗ୍ ପାଇଁ,
ଯେଣୁ ସର୍ବେ ବ୍ରହ୍ମଚାରୀ ଅନାସକ୍ତ ବ୍ରତେ,
ରସନା ଲାଳସା ତ୍ୟାଗୀ, ପୁଣି 'ପ୍ରଜାହିତ', ।
ଗୁପ୍ତ ବାର୍ତ୍ତାବହ ଗଣ ଉଭୟ ପକ୍ଷରୁ,
ଲାଗିଛନ୍ତି ଛୁଟା ଛୁଟି ପୁଣି କାନାକାନି,
ଦୁଇ ଶିବିରର ଯେତେ ଭିତରି ଖବର
ଦୁଇ ଆଡ଼େ ହେଉଛି ପ୍ରକଟ,
କେ ହୁଅଇ ଛଟପଟ କେ' ବା ଉଠଉଠ,
କେ କରଇ ଆଖି କଟମଟ,
କେହୁ ଲଟ ପଟ ହୁଏ, ଘଟ ଘଟ କେହୁ,

ଏମନ୍ତ କାଳରେ ଆସି ହେଲେ ଉପନୀତ
ବୃଧିବର, ମଙ୍ଗେଶ୍ୱର, ଜଙ୍ଗେଶ୍ୱର ତିନି
ସଙ୍ଗେ ଘେନି ତେଲ ଓ ଚପାଟି,
ଜାମ୍ବୁବ ଶିବିରେ ।
ତାଙ୍କ ଦେଖି ଯେତେ ଋକ୍ଷ ବୀରେ
ଅକୂଳ ଅଥଳ ନୀରେ ପାଇଲେ କି କୂଳ !
ହୃଦପଦ୍ମ ଆସିଗଲା ବଳ,
ଚକ୍ଷୁ ଉଜ୍ଜ୍ୱଳ
କଳକଳା ନାଦ ସର୍ବେ ଉଠିଲେ ଚଳ୍ଛଳି ।
ବିକଳ ଜାମ୍ବୁବ କରି ଚକ୍ଷୁ ଛଳ ଛଳ,
ବୋଇଲେ ଗଦ୍ଗଦ୍ କଣ୍ଠେ ଛାଡ଼ି ଦୀର୍ଘ ହାଁପ

ଜାମ୍ବବାନ – ମାଙ୍କଡ଼ର ଭାଇମାନେ, ଆଜି ଏହି ଶେଷ,
ପାଇଅଛି ମହାତାପ,—ସରିଗଲା ସବୁ,
ଶବ୍ଦ କରୁଛନ୍ତି ଲାଫ୍ ଦେଖି ମୋତେ କାବୁ
ହାପ୍ ପଥେ

ଯାଉ ନାଉ, ସବୁ ଯାଉ, ଯାଉ ମହାପାପ
କରୁଅଛି ସାଫ୍
ଆଜ ମୁଁ ସଂସାର ତ୍ୟାଗୀ, ବୈରାଗୀ, ବୈରାଗୀ ।
ଆଉ କାହାଲାଗି—
ଭିକ୍ଷା ମାଗି ପେଟେ ଏବେ କରିବ ପାରଣ,

*ସଂସ୍କୃତ ମାଳାଙ୍ଗଠନ୍ତର ବହୁଳ ବ୍ୟବହୃତ ଶବ୍ଦ

ଅବା ଲେଖି, ଗୀତା ବ୍ୟାକରଣ ।
ପଲ୍‌ଟିକ୍‌ସେ ମିକ୍‌ସ କରି ହେଲ ଅକାରଣ ।
ଶରୀର ଧାରଣ ପାଇଁ ଲୋଡ଼ା ସିନା ଏହା ?
କିନ୍ତୁ ତାହା ମହିବାଠେ ଖାଇଲଣି ଭୂଆ ।
ଗୃଧ୍ରବର—(ଓଠ ଗୋଡାଇ)
କି କହିଲ ରକ୍ଷ ପତି,
ତୁମ୍ଭ ମୁଖେ ଏହି ବାକ୍ୟ ପାଇଲା କି ଶୋଭା !
କାହା ବଳେ ଆମ୍ଭେ ହେବୁଁ ଉଭା ?
ଶୁଭାଶୁଭ ସ୍ୱଜନର ଦେଲ କି ପାଶୋରି ?
ସମ୍ମୁଖେ ଗର୍ଜୁଛି ଯେଉଁ ମହା ପାରାବାର,
ଥଳକୂଳ ଜଣା ନାହିଁ ଯାର,
କାହାର ଲଙ୍ଘି ଧରି ପାର ହେବୁ ତାହା ?
ଛାଡ଼ିଦେବ ହାଲ, ଯେବେ ହୋଇ କର୍ଣ୍ଣଧାର,
ମହରକୁଁ ଯାଇ ଆମ୍ଭେ ପଡ଼ିବୁଁ କାନ୍ତାରେ !
ଧୈର୍ଯ୍ୟଧର,
ଏ କାତର ଦୁର୍ବଳ ଦେଖାଇ,
ନିବାର ନିବାର;
ହୋଇଲଣି ଯାହାତ ହେବାର,
ଶବଙ୍କୁ ତ ଜଣାଶୁଣା ପଡ଼ିଛି ପ'ବାର
ଭୂତ କି ସବାର,
ହେଲଣି ଏବାର ତୁମ୍ଭ ଶିରରେ ଜବବର ?
● ଲଙ୍କେଶ୍ୱର—ଗୃଧ୍ରବର ପ୍ରସ୍ତାବେ ମୁଁ କରୁଛି ଦ୍ୱିତୀୟ;
ବକ୍ଷିପ୍ତ ବ୍ରାହ୍ମଣ୍ୟ ତେଜ କରି କେନ୍ଦ୍ରୀଭୂତ
ମନ୍ତ୍ରପୂତ ବ୍ରହ୍ମ ଶକ୍ତି କରି ଏକ ଠୁଳ,
ପଶୁ ଷାଣ ବଳ ଆମ୍ଭେ କରିବା ନିର୍ମୂଳ ।
ଆର୍ଯ୍ୟ ସମାଜର ନେତା ଆମେ ବ୍ରହ୍ମ ଜାତ,
ଯୁଗେ ଯୁଗେ 'ସମାଜ' ଗୃହଳକ,
'ଲୋକମତ' ନିୟାମକ, ଆଶା ସଞ୍ଚାରକ;
ସେ ନେତୃତ୍ୱ କେ କରିବ ହାନି,
ଖଇନି ଓ ନାଶଦାନି ଥିବ ଯେବେ ସାଥେ,
ନିଆଁ ଖୁଣ୍ଟା ହାତେ
କୋରବାନି କରି କର କ୍ଷତ୍ରିୟ ହଲାଲ ।
ଜାମ୍ବୁବାନ—(ଆଖିମଳି)
ଉଁ-ଉଁ ! ତୁମ୍ଭେ ! ତୁମେ ହେ !
ତୁମେ କି କହୁଛ କଥା ! ଓଫ୍—ଓଫ୍ !
ଗୃଧ୍ରବର—(ମୁମୁରାଇ)
ସ୍ୱଜାତି ଓ ସ୍ୱଦେଶର ଦେଖି ମୁଖବତ,
ଛାଡ଼ି ମାୟା, ମୋହବତ,
ଆସିଛନ୍ତି ସ୍ୱ ପଣର ରଖିବେ ଇଜ୍ଜତ ।
†ମଟେଶ୍ୱର—(ଉଗ୍ରତେଜା)
ନୁହେଁ ଏକ ବୃଦ୍ଧ ଷଣ୍ଢ,
ହାମେ ବି କ୍ଷତ୍ରିୟ ଅଛୁଁ ଭିଡ଼ି ଦନ୍ତେ କାଛ
ସ୍ୱଜାତି ନାଶନେ ଅଛୁଁ କରି ପ୍ରାଣପଣ ।
ଏକା ପ୍ରିନ୍‌ସିପଲ ଅର୍ଥେ ସ୍ୱାର୍ଥ ଦେଇ ଛାଡ଼ି,
କରୁଛି ଧରୁଛି, ଡାକୁ, ପକାଇଣ ଫାଡ଼ି,
କୋଥଳ ଉଦର ତାର ପୁଣି ଦାନ୍ତ ଝାଡ଼ି,
ଦିଅନ୍ତି ଚରଣେ ମାଡ଼ ଗାଡ଼ିଆ ଭିତରେ ।
ଫୁଲ୍ଲାରେ ଯାଆନ୍ତା ଉଡ଼ି ଜୁଡ଼ି ବସା ପଣ ।
ଖାଲି ତବ ଦାଢ଼ି ଯେବେ ହୁଅନ୍ତା ସହାୟ,
ଘଉଡ଼ାଇ ଦ୍ୟନ୍ତି ସବୁ ଏକା ବାଉ କରେ ।
ଏମନ୍ତେ ଜାମ୍ବେବ ବୀର ଉଠିଲେ ଚେଙ୍ଗାଇ,
ଶୁଙ୍ଘାଇ ଦିଅନ୍ତେ ଯଥା ମୃତ-ସଞ୍ଜୀବନୀ ।
ଜାମ୍ବୁବାନ—(ଗର୍ଜନ କରି)
ବୀର ବୃନ୍ଦ, ବାନ୍ଧ ହତିଆର,
ରଣମଧ୍ୟେ ଛାଡ଼ିଲେ ହୁଙ୍କାର
ଏଇଥର ଏସ୍‌ପାର ଉସ୍ ପାର
ଶତ୍ରୁତାର କର ରେ ନିକାଶ ।
ଅଉ ନାହିଁ କଥା,
ନାହିଁ ମୁଣ୍ଡ ବଥା,
ହତା ପାର ଷଣ୍ଢୀବାଳେ କର ଘଉଡ଼ାଇ,
ପଶୁରାମ କଲେ ଯଥା ତ୍ରେତୟା ଯୁଗରେ ।
ଡଗମଗି ଉଠିଲଣି ବ୍ରହ୍ମ ତେଜ ମୋର
ଗୁମ୍ଫରାଜ ଚମ୍ପଉଲ ଉଠିଲେଣି କମ୍ପି,
ଉଠିଲେଣି ଝେମ୍ପୋରେର ହୃଦୟ ଦୌର୍ବଲ୍ୟ,
ଶବ୍ଦେ ଡରି ଉଠିଲଣି ପରି,
କଏ କାହିଁ ଅଛ ଆରେ ସମ୍ଭାଳ, ସମ୍ଭାଳ'
ନେତାଙ୍କ ହୁକୁମ ଦେଖି ସର୍ବେ ଗଲେ ଖେପି,
ଭଲ୍ଲୁକ-ବାହିନୀ ତହୁଁ କରି Quick march

---

✻ ସମାଜର ସଂପାଦକ ସେତେବେଳେ ସମ୍ଭବତଃ ଲିଙ୍ଗରାଜ ମିଶ୍ର ଥିଲେ

† ଶୁଣାଯାଉଥିଲା ଶ୍ରୀ ଯଦୁମଣି ମଙ୍ଗରାଜ କ୍ଷତ୍ରିୟ ଖଣ୍ଡାୟତ ରୂପେ ନିଜକୁ ପରିଚିତ୍ ଦେଉଥିଲେ ।

● ସମ୍ଭବତଃ ଶ୍ରୀ ରମାଚରଣ ପଟ୍ଟନାୟକ ।

ଦକ୍ଷିଣାଭିମୁଖେ ବେଗେ ଚଳିଲେ ହୁଙ୍କାର ।
ବ୍ରହ୍ମଦେଶେ ସବେ ଯାଇ ହେଲେ ଉପନୀତ ।
ଦୁର୍ଗପତି ଥିଲେ ତହିଁ *ଉମାପଦ ବୋଲି,
ସେ ଆସି ରୋଧନ୍ତେ ପଥ,
ଲାଗିଗଲା ଭୀଷଣ ସମର ।
ମାତ୍ର ଟେକି ନପାରି ଟେକି ଭୀଷଣ ଚଢ଼ାଉ,
ସେନାପତି ଦୀନମଣିଙ୍କର ।
ଦୁର୍ଗଛାଡ଼ି ପଳାଇଲେ ସମର୍ପି ଶତ୍ରୁ ହାତେ ।
ଏ ଅନ୍ତେ ଶ୍ରୀପୁର ଧାମ ହୋଇଲା ବିଜୟ ।
ଏଥିଅନ୍ତେ ମଙ୍ଗେଶ୍ୱର କେନ୍ଦ୍ରପୁରେ ଯାଇ
ଆକ୍ରମଣ କଲେ ପୁଣି ଭୀଷଣ ଉଦ୍ୟମେ ।
ରାମଦଳୀ କପିଗଣ ଗଣିଲେ ପ୍ରମାଦ,
ଶେଷେ ବଧି ସାଧିଲା କି ବାଦ,
ନ ପୂରିଲା ସାଧ, ପାଦ ଗଲାକି ଖସଡ଼ି !
ଏହି କାଳେ *ନବ-ଦେବ ହୋଇଣ ସହତ,
ପେଷିଲେ ବ୍ରହ୍ମାଙ୍କ ପାଶେ ଦରଖାସ୍ତ ଏକ,
ନଚେତ୍ ବିଶ୍ୱାମିତ୍ର ଶାସନ ବିରୁଦ୍ଧେ ।
ଏମନ୍ତେ ଲାଗିଲା ଯହୁଁ ମହା ଗଣ୍ଡଗୋଳ,
ଉଭୟ ବ୍ରହ୍ମଙ୍କ ପାଶେ ହୋଇଲେ ଫେରାଦ ।
କୃପାଳୁ ବୋଲିଣ ଏକ ଶ୍ରୀଛାମୁ କରଣ
ଉଚ୍ଚ ଦାଲି ରଦ୍ କରି ପେଷିଲେ ଆଦେଶ,
ମାତ୍ର ନିଆଁ ନ ଲିଭିଣ ଜଳିଣ ଦ୍ୱିଗୁଣେ,
ଗୁରୁପଡ଼େ ଅସନ୍ତୋଷ, ଠାଣ ଭଡ଼ା ଭିଡ଼,
(ମାତ୍ର ଓ ଖେଷ୍ଟିର ଲୋଭ ନୁହେଁ ତ ସାମାନ୍ୟ)
ଲାଗିଗଲା,ଲାଗିଗଲା ଯହୁଁ,
ମନେହେଲା ଏ କାଳରେ ଦେବାସୁର ଗଣ
ସମ୍ମିଳିତ ହୋଇ ଅବା ନେବେ କି ଛଡ଼ାଇ
ଦୁଷ୍ଟ କପିଙ୍କର ଦାନା, ଏକା ହାନକରେ !
ସେଥିଁ ବାନା ଧରି କଷ୍ଟେ ହୋଇଲା ହାସଲ,
କେତେ ପେଞ୍ଚ କେତେ ଖେଞ୍ଚ କେତେ ଲାଞ୍ଚ ଦେଇ
କେତେ ଗାଳି ମାରି, କରି କେତେ ଯେ ଗୁହାରି ।

ସେପଟେ ଉତ୍କଳରେ ତହୁଁ ଗୋପପୁର ବୃନ୍ଦ
ବୃନ୍ଦାବନ ଧାମ ଛାଡ଼ି ଗୋପ ଗୋପୀ ଧେନୁ
ଆସିଲେ ବାହାରି ଧର୍ମ ସଂସ୍ଥାପନ ପାଇଁ
ଯଥା ସେ କରନ୍ତି ସଦା ଯୁଗ ଯୁଗ ଧରି ।
ଲାଗିଲା ବିରାଟ ଯଜ୍ଞ †ଡେଲଙ୍ଗ କାନ୍ତାରେ
ହବି ହେଲା ଯହୁଁ ସୂତ୍ର, ଇନ୍ଧନ ଚରଖା
ମେଳାରେ ଆସିଲା ପୁଣି ନାନା ଦ୍ରବ୍ୟମାନ,
ଧାଡ଼ି ଧାଡ଼ି ବୋହିଗଲା ନର ନାରୀ ସ୍ରୋତ ।
ସେ ଯଜ୍ଞରେ ହୋତା ହେଲେ ନିଜେ ଯଜ୍ଞେଶ୍ୱର ।
ଆହ୍ୱାନରେ ପଦ୍ମଯୋନି ହୋଇ ଆବିର୍ଭୂତ,
ସୁରଗଣ ଗହଣେ ତହିଁ ବୁଝିଲେ ମାମଲା ।
ଦେଖିଣ ବିଷମ ଖଞ୍ଜି ରୁଷପତି ତହୁଁ
ଝଟିତ ବୁଣିଲେ ଖସା, ଲୋକହସା ଭୟେ ।
ଆରମ୍ଭିଲେ ତପ ଯାଇ ହିମଗିରି ଶିଖେ,
ଗୃଧ୍ରବର ଆହା ଖାଲି ରହିଲେଟି ଜଗି ।
ଦୁଇପକ୍ଷ କଥାଶୁଣି ବିନିଯାଇ ବ୍ରହ୍ମା,
ଅଭିଶାପ ଦେବା ପାଇଁ ହୁଅନ୍ତେ ତତ୍ପର,
ରାମ ରଘୁବର,
ତରବରେ ନିଜ ପଦ କରିଲେ ଇସ୍ତଫା ।
ସହର୍ଷେ କହିଲେ *ବ୍ରହ୍ମା "ଆଚ୍ଛା ତେବେ ଏବେ
ଅଯୋଧ୍ୟାର ଅଧୀଶ୍ୱର ହେଉ ଗୋପ ସଖା ।
ରୁଷକୁଳ କୂଳ ପାଇ ହୋଇଲେ ଆନନ୍ଦ,
କପିଗଣ ହୋଇ ବ୍ୟସ୍ତ ରାମଙ୍କ କରମେ
ଅଭିମାନ ଭରେ ମୁଣ୍ଡ ତଳେ ହେଲେ ପୋତି,
ମାତ୍ର ରାମ ଗୁଣମଣି ଜାନକୀଙ୍କ ପତି,
ଆଶ୍ୱାସନା ଦେଇ ତାଙ୍କୁ କଲେ ଆଲିଙ୍ଗନ ।

ରାମ—ଏ ବି ଗୋଟାଏ ଚାଲ୍ — ବୁଝି ନାହିଁ ଭାଇ,
ତୁମ୍ଭେ ତ ବଣୁଆ ଜାତି ନଜାଣି ପଲିସି,
ଏ ଭଳି ତ୍ୟାଗରେ ମିଳେ ଲାଭ ବହୁ ଗୁଣ ।
ଶୁଣ ଶୁଣ, ବୋଲ ମୋର, wait and see
ବ୍ରିଟିଶ୍‌ର ନୀତି ଯାହା ସବୁ ସେ ସରସ ।
ଥୋପରେ କେବଳି ଗୁନ୍ଥି ଧରିବା ବାଳିଆ ।
ରାମଙ୍କର ସ୍ୱାର୍ଥ ତ୍ୟାଗ ଦେଖି ପଦ୍ମଯୋନି,
ଅତି ଉଚ୍ଚ ଆସନରେ ଦେଲେ ତାଙ୍କୁ ଥୋଇ,
Ѱସପ୍ତର୍ଷି ମଣ୍ଡଳେ; ଯହିଁ ଜ୍ୟୋତିଷ୍କ ରୂପରେ

* ଦେବତା ଶ୍ରୀ ନବକୃଷ୍ଣ ଚୌଧୁରୀ ।
† ଡେଲଙ୍ଗ ଠାରେ ବସିଥିବା ଗାନ୍ଧିସେବାସଂଘ ମେଳାକୁ ଲକ୍ଷ୍ୟ କର ।
* ମହାତ୍ମାଗାନ୍ଧୀଙ୍କୁ ଲକ୍ଷ୍ୟ କର ।
Ѱ କଂଗ୍ରେସ କାର୍ଯ୍ୟକାରୀ କମିଟି ।

ସଭିଙ୍କ ମନ୍ତ୍ରକୋପର ରହିଲେ ରାଘବ ।
ଦୁଇପକ୍ଷ ମଣିଲେ କି ହେଲା ଆମ୍ଭ ଜୟ.
ଘିଅ ଓ ଖେଚଡ଼ି ଖାଇ ଯଥା ମନେ ମନେ,
ସନ୍ତୋଷ ହୁଅନ୍ତି ଆପେ ଚେହ୍ନିଆମଣ୍ଡଳ ।
ଦେଖିବାକୁ କଳାଗୋଳ ହୋଇଗଲି ଥିଲା
ଭିତରେ ଭିତରେ ମାଦ ଗୁଳିଲି କୁହୁଳି,
ଭୁଷଗଦା ମଧ୍ୟେ ଲୁଚି ରହେ ଯଥା ନିଆଁ ।
ଏହି ନିଆଁ ଧପ୍‌କର ଜଳି କେଉଁ ଦିନ
ପୋଡ଼ିବ କେବଳ ଲଙ୍କା, କରି ଛାରଖାର,
ଅବା ଦମ୍‌କଳ ଯୋଗେ ଢିବ ସବୁ ଲିଭି ।

ସେହି ନାଟ ଦେଖିବାକୁ ରହ ଦମ୍ ଧରି
ଏତିକି ଏ ଧାନ କପି କରୁଛନ୍ତି ବୁଦ୍ଧାର ।
ଷଠିଆ କାଣ୍ଡଟି ଅଟେ ବଡ଼ ସୁଆଦିଆ,
କୁଲପି ବରଫ ସନେ ଯଥା କପେ ଗୁହ୍ମା,
କଳି କଳି ଗୁଖି ଗୁଖି ଖାଇବ ଏହାକୁ,
ଚୁମୁକ ଲଗାଇ ପାଟି କରି ଗୁକ୍କୁ ଗୁକୁ ।
ତେବେ ତ ପାଇବ ମିଠା, ମଜା ଯିବ ବଢ଼ି,
ଠାଉ ହାଉ ହେଲେ ପୁଣି ଦାନ୍ତ ଯିବ ଝଡ଼ି ।
ଷଠିଆ କାଣ୍ଡର କଥା ରସାଳ ସମାନ
ହନୁମନ୍ତ କହେ ଶୁଣ ରସିକ ସୁଜାଣ ।



# ଭବିଷ୍ୟ ଭାରତ

(ବହୁଯାନ ବରଚତ)

## ମୁଖବନ୍ଧ

ନମସ୍ତେ, ନମସ୍ତେ ଦେବି, ହଂସ୍ତା ସରସ୍ୱତି !
ତୁଷ୍ଟା ହୋଇ ଭକ୍ତ ମୁଣ୍ଡେ ଦିଅ ଧୃଷ୍ଟମତି ।
ଲେଖିବ ବଳିଛି ମନ ଭବିଷ୍ୟ ଭାରତ
କିଛି କିଛି କରି ମୁହିଁ କରି କସରତ ।

ନୁହେଁ ଖଡ଼ିପାଠ, ନୁହେଁ ଜ୍ୟୋତିଷ ଗଣନା
ନୁହେଁ ଯୋଗବିଦ୍ୟା, ନୁହେଁ ଅଲୀକ କଳ୍ପନା ।
ନୁହେଁ ସାମୁଦ୍ରିକ, ନୁହେଁ କଲମ କୌଶଳ
ଖାଣ୍ଟି ସତକଥା, ଯାହା ଦିଶେ ଜଳ ଜଳ ।
ଅବିକଳ ଯିବ ଲେଖି, ପାଉ ବା ନପାଉ
ପାଠକେ ବୁଝନ୍ତୁ ଅବା ନ ବୁଝନ୍ତୁ ଭାଉ ।
ରସିକେ ପିଇବେ ସୁଧା ଧାର ଅନର୍ଗଳ
ଅରସିକେ ଓକାଳିବେ କରି ଭଲ ଭଲ ।

ନବାତ ପରଷ ଦିଅ ଝାଲ ଗୁଲୁ ପାଣି ।
ଗରମା ଗରମ ଏହୁ ନରମ ତୋରାଣି ।
ହାଉ ହାଉ ହାମ୍ ଭବ ଯେବେ ସଡ଼ ସଡ଼,
ଦାନ୍ତ ଯିବ ଭାଙ୍ଗି, ତଣ୍ଟି ହେବ ଘଡ଼ ଘଡ଼ ।
ପାକୁଳି ପାକୁଳି ଗୁଖ ଆଁ—କରି ପାଟି,
ଧୀରେ ଧୀରେ ଗୁେଷି ଗୁେଷି ଅବା ଗୃଣ୍ଠି ଗୃଣ୍ଠି ।

ନୁହେଁ ଏ କବିତା, ନୁହେଁ ଗଳ୍ପ ଉପନ୍ୟାସ,
ବକ୍ତୃତା, ଯୋଜନା ନୁହେ ମୃଗନାଭି ଗୃଷ ।
ନାଟ୍ୟନୁହେଁ କାବ୍ୟ ନୁହେଁ, ନୁହେଁ ନାଟ୍ୟ-କାବ୍ୟ
ନବ୍ୟ ସଭ୍ୟତାରେ ଏହା ନାମ "କାଟ୍ୟ-ନାବ୍ୟ" ।

ଗଦ୍ୟ ନୁହେଁ ପଦ୍ୟ ନୁହେଁ ପୁଂ କିବା ସ୍ତ୍ରୀ
ଅନବଦ୍ୟ ପଦ୍ୟ ସିଦ୍ଧ ଘାଣ୍ଟିଆ ଖେଚଡ଼ି ।



## ଏକନମ୍ବର ପର୍ବ

କୈଳାସ ଶିଖରୋପରି ରମ୍ୟ ଉପବନେ
ହର-ଗୌରୀ ବସି ଏକାସନେ
ବିଳାସ ବିଭୋର ।
ଗୃହ ଦିଗୁ ଆସେ ବହୁ ହେନାର ସୁବାସ
ଦଳ୍ ମହୁଆଲ ।
ତା ସାଙ୍ଗେ ପ୍ୟାରିସ୍ ସେଣ୍ଟ, ଧତୁରା ଏକ୍‌ସଟ୍ରାକ୍ଟ
ହୁମାନ ଗନ୍ଧରେ ମିଶି କରେ ଉଚ୍ଚାଟନ ।
ଉହାଡ଼େ ବଜାନ୍ତି ଶିବଙ୍କର ଭୂତଦଳ
ସ୍ପେଶାଲ ଅରକେଷ୍ଟ୍ରା, ଖାସ ହବାଇର ଯନ୍ତ୍ର,
ଡମ୍ବରୁ, ବିଷାଣ, ଶିଙ୍ଗା,
ବାଜେ ସମତାଳେ, ମୃଦୁ ମଧୁର କମ୍ପନେ ।
ଦ୍ୱାରପାଳ ରୂପେ ନନ୍ଦୀ ଧରିଣ ତ୍ରିଶୂଳ
ରହିଛନ୍ତି ଲଗି ଗେଟ୍ ପାଶେ
ଅର୍ଦ୍ଦଳୀ ଓ 'ବୟ୍' କାର୍ଯ୍ୟ କରୁଛନ୍ତି ଭୃଙ୍ଗୀ ।
ଗରମା ଗରମ କାଫି, ଭାଙ୍ଗ ସରବତ,
ଆଣ୍ଠି ମାନେ ଦିଅନ୍ତି ଭୁଣ୍ଡାଇ ।
ଶିବଙ୍କ ମିଜାଜ୍ ଅତି ଖୁସ୍;
କେହୁସ୍ ନ ହେଲେ ମଧ, ଦିଲ ଭର୍‌ପୁର୍ ।
ଦରିଆ ପ୍ରକାର ପୂର୍ଣ୍ଣ ଉଦାର, ଉଦାସ ।
ଘଡ଼ ଘଡ଼ ଟାଣୁଛନ୍ତି ହେଭେନା ଚୁରୁଟ୍
ଗଞ୍ଜା ଭରି, ଅତି ଉଦା, ସ୍ପେଶାଲ ଅର୍ଡର
ଝାଡ଼ ଝକମକ କରି ଅଗ୍ନି ଆବିର୍ଭାବ ।
( ମେଶିସ ଅସ୍ପୃଶ୍ୟ ଯେଣୁ, ଅପବିତ୍ର ବୋଲି ।)
ମନୋହର ଆଲୋକରେ ମଣ୍ଡିତ ସେ ସ୍ଥଳୀ
ହରଙ୍କ ମସ୍ତକ ସ୍ଥିତ ଚନ୍ଦ୍ରରୁ ନିଃସୃତ ।
ଜ୍ୱଳେ ଯାହା ଇଲେକ୍‌ଟ୍ରିକ ବଲ୍‌ବ ସମତୁଲ,
ମାସ ତହୁଁ ବଳି ଅତି ମୁଲାଏମ ଜ୍ୟୋତି;
ଗାଉଛନ୍ତି ହରଗଣବୃନ୍ଦ ସ୍ୱଚ୍ଛନ୍ଦ ଭାବରେ
ପରସ୍ପର ଛନ୍ଦାଛନ୍ଦ ବିହାରନିରତ ।
ମୁଣ୍ଡ ଗୁଞ୍ଜାଗୁଞ୍ଜି ପୁଣି ଲମ୍ଫ ଭଡ଼ଭଡ଼,

ଚଟାଚଟି, ଲେଟାଲେଟି, କଡ଼ ପଟାପଟି,
ସଭା ଅନ୍ତେ ନେତୃବୃନ୍ଦ ଯଥା କେମ୍ପ ମଧ୍ୟେ,
ଗଙ୍ଗା ଦେବୀ ରହି ରହି ଶିବ ଶିରୋପର
ଦେଖି ସ୍ୱଚକ୍ଷୁରେ ସ୍ୱୀୟ ସପତ୍ନୀ ସମ୍ପଦ,
ହିଂସାରେ, ଲଜ୍ଜାରେ, ପୁଣି ଅଭିମାନ ଭରେ
ଗଡ଼ାନ୍ତି ଲୋତକ ଧାର ଅଖି ମଳି ମଳି,
ଇଂରେଜ-ମୁସ୍‌ଲିମ ପ୍ରୀତି ଦେଖି ହିନ୍ଦୁ ଯଥା ।
ଏମନ୍ତ କାଳରେ ଶୁଭେ ମହା ଗଣ୍ଡଗୋଳ
ହୋ, ହୋ, ହୈ, ହୈ, କଲକଲା ରବ,
ଦକ୍ଷିଣ ଦିଗରୁ ଯଥା କଂଗ୍ରେସ ମଣ୍ଡପେ,
କିବା ନାଟ୍ୟ ଅନ୍ତେ, ଅବା ହୋଲି ଯାତ୍ରାକାଳେ,
ଅବା ଶୁଖୁଆର ହାଟେ, ଅସିଲେ ବରଷା,
ଅଥବା ବଜାର ମଧ୍ୟେ ହେଲେ ଘରପୋଡ଼ି ।
ଚମକି ପାର୍ବତୀ ତହୁଁ ପଚାରନ୍ତି ଶିବେ,
"କହ ନାଥ, ଏମନ୍ତ କି ଶୁଭେ ଅଚମ୍ବିତ,
ସମୁଦ୍ର ଆସଇ ମାଡ଼ି କି ଅବା ଭାରତେ ?"
ଭାଙ୍ଗ ନିଶା ମସଗୁଲ ମିଜାଜେ କପାଳୀ
ବୋଲନ୍ତି ଆରକ୍ତ ନେତ୍ର କରି ଢୁଳୁ ଢୁଳୁ,

ଶ୍ରୀ ଶିବୋବାଚ

ଚିନ୍ତା ନହୁଅ ପ୍ରିୟେ ଶୁଣି ଏହି ରଡ଼ି,
ନିଶ୍ଚିନ୍ତେ ଶଟସ୍ଥା ହୋଇ କର ଗୋ ଶୟନ ।

ପାର୍ବତୀ ଉବାଚ

ତୁମ୍ଭେ ତ ରହିଛ ନାଥ ଯୋଗ ନିଦ୍ରାଗତ
ନିଶାମୋଦେ ବହିଯାଏ କାଳ ବେମାଲୁମ୍;
ମନେହୁଏ ଆସିଗଲା ପ୍ରଳୟର ବେଳ,
ତେଣୁ ଶବ୍ଦ ହେଉଅଛି ଉଦ୍‌ବେଳ,
ହେତୁ ହେତୁ କାମ ରହି ଅଛି ପଡ଼ି—

ଶ୍ରୀ ଶିବୋବାଚ

ନାହିଁ ମ, ଭୁଲ୍ଲାରେ କିଆଁ ହେଉଛ ଏମିତ,
ଆସିନାହିଁ ପ୍ରଳୟର ବେଳ;
ଏ ଭୁଲ୍ଲା ପିଲଙ୍କ ଖେଳ, ଅମେଳ ସୂଚନା ।
ମନେ ହୁଏ ରେଳର ଶବଦ,
ଅବା ହେବ ପ୍ରଜା ପଦେଦ,
ହିନ୍ଦୁ ମୁସଲମାନ ଭେଦ,
କଂଗ୍ରେସର ଦଳାଦଳି ନାଦ,
ବ୍ୟବସ୍ଥା ସଭାରେ କିମ୍ବା ବାଦ ବିସମ୍ବାଦ,
ଅବା ହୋଇ ପାରେ ହେଲେ ସ୍ଥାନ ଧର୍ମଘଟ ।

ଏକାଳେ ଶୁଭିଲା ଦ୍ୱାରେ ଗୁଡ଼ୁମ୍ ଗୁଡ଼ୁମ୍,
ଭେଁ—ଭୁଁ, ହୁସ୍ ହୁସ୍, ଧଡ଼ାସ୍ ଧଡ଼ାସ୍;
ଚମକି ପାର୍ବତୀ ଦେବୀ ପାଇ ମହାତ୍ରାସ,
ପତିଙ୍କୁ କୁଣ୍ଢାଇ ଧରି ଲାଗିଲେଟି ଥରି,
ଶିବଙ୍କର ନିଶା ଗଲା ଭାଙ୍ଗି,
ନନ୍ଦୀ, ଭୃଙ୍ଗୀ ବୋଲି ବେଗେ ଛାଡ଼ିଲେ କୁହାଟ ।
କରଯୋଡ଼େ ବେନିବୀର ଆସନ୍ତେ ନିକଟେ
ରାଗିଲେ ଏମନ୍ତ ତାଙ୍କୁ—

ଶିବ ଉବାଚ

ବଜାଅ, ବଜାଅ ଘଣ୍ଟା, ବଜାଅ କାହାଳୀ,
ସେନା ଦେଶେ କର ଖରେ ବିଗଲ ଡାକରା,
ଯାଜନ୍ତୁ ମୋ ଭୂତ ସୈନ୍ୟ, ଦୈନ୍ୟ ପରିହରି
ଭୂତ, ପ୍ରେତ, ଖପିସ ଯେ ବ୍ରହ୍ମ ଦୈତ୍ୟ ଆଦି
ସାଜନ୍ତୁ ସକଳେ, ଧରି ନିଜ ନିଜ ଅସ୍ତ୍ର ।
ଚିରକୁଣୀ, ପିତାଶୁଣୀ, ପେତନୀ ଡାହାଣୀ

ପାର୍ବତୀ —

ଯାହା ହେଉ ଜାଣିବାକୁ ହେଉଅଛି ମନ,
ଘେନ ନାଥ ଘେନ ମୋ ବଚନ,
ବାହୁଅ ବଳଦେ ଆଣ ଶୀଘ୍ର ସଜ କରି,
ଦୁହେଁ ତହିଁ କରିଣ ସବାରି
ଦେଖିବା ଆକାଶେ ଥାଇ ଭାରତ ନାଟକ ।

ଶିବ —

ଯାଅ ଭୃଙ୍ଗି, ସଜ କରି ଆଣ ଆମ୍ଭ ଷଣ୍ଢ—
ଆଉ ଶୁଣ,—
ଗୋବର ପାଣିଆ ଭାଂଗ, ପୁରା ଏକ ଗ୍ଲାସ,
ପାର୍ବତୀଙ୍କ ପାଇଁ ଖାଣ୍ଟି 'କାରଣ' ଏକ କପ୍,
ଯାହା ଖାଇ କରିବୁ ପ୍ରୟାଣ,
ବାଟରେ ହୋଇବ ନିଶ୍ଚେ ପୁଣି ପ୍ରୟୋଜନ ।
ସେ ପାଇଁ ଠେଲାଏ ବାଟି ରଖିଥିବ ପାଶେ,
ଆଉ ବୋତଲରେ ଭରି କାରଣ-ଅମୃତ ।

ଭୃଙ୍ଗୀ —

ପ୍ରଭୋ, ହେଉଅଛି ଭୟ କହିବାକୁ ମୋତେ,
ଆଜ୍ଞା ହେଲେ କହନ୍ତି କିଅଁତ ।

ଶିବ—

ନିର୍ଭୟରେ କହ ବେଗ କରି,
ତୁମ୍ଭେ ଯେଣୁ ଅଟ ଆମ୍ଭ ପ୍ରିୟ ଧମା-ଧାରୀ,
ତୁଆଙ୍କର ମେମ୍ବରଗଣ ପଟେଲର ଯଥା ।

ଭୃଙ୍ଗୀ—

ବାୟୁଆ ବଳଦ ଆମ୍ଭ ଅଛଇ କୋଥଳ,
ଖାଇ ଖାଇ ନର୍ ପଣିଆ ମାଲ,
ଗାଲ୍ ପରେ ବାଢ଼ି ଅଛି ଗାଲ,
ପେଟ ପରେ ପେଟ ଯଥା ହିମାଳୟ ଶୃଙ୍ଗ,
ହବା ନିଷି ଶୋଇ ଶୋଇ ପାକୁଳି ପାକୁଳି,
ବ୍ରହ୍ମଗୃହୀ ମଠାଧୀଶ ମହନ୍ତଙ୍କ ଭଳି ।
ଏଭଳି ଷଣ୍ଢର ରୂପ ଦେଖିବା ମାତର
ଲୋଭାଇବେ ଭାରତର ସର୍ବ ଜାତ ଦଳ —
ପ୍ରଥମରେ ମାରୁଅଛି ଗୋଶାଳା-ରକ୍ଷକ ।
ସବୁଠୁଁ ବିପଦ କିନ୍ତୁ ଅଛି ନିକଟରେ;
ସିମଳା ଶଇଳ ପରେ ଅଛି ଏକ ଗୋରୀ,
†ଶ୍ୱେତକାୟ ଲର୍ଡ଼ ଆଖ୍ୟାଧାରୀ,
ଶ୍ୱେତ ଦ୍ୱୀପ ରାଜାର ସେ ଅଟେ ପ୍ରତିନିଧି,
ଷଣ୍ଢରେ ସଉକୀ ଅତି;
ସେ ଯଦି ଦେଖିବ ଆମ୍ଭ ଷଣ୍ଢର ମୂରତି,
ନିଦ୍ରାହାର ତେଜି ନିଶ୍ଚେ ଧରିବ ଏହାଙ୍କୁ,
ତା ପାଲରୁ ଉଧୁରିବା ନୁହଇ ସହଜ ।

ଶିବ —

ସେପରି ହୋଇଲେ ଆମ୍ଭେ ଆସିବା ପଳାଇ,
କୈଳାସ କନ୍ଦରେ ଆସି ପଡ଼ିବାଟି ଶୋଇ ।

ଭୃଙ୍ଗୀ—

ପଳାଇଲେ ମଧ୍ୟ ରକ୍ଷା ନାହିଁ ।
ଅଗଣିତ ସେନା ଆଣି କରିବ ଘେରାଉ,
ବ୍ଲକେଡ଼୍ କରିଣ ପୁତ କୈଳାସ ପର୍ବତ
ଆହାର ଅଭାବେ ଆମ୍ଭେ ହୋଇ ହରକତ,
ସମ୍ବିହତ, ଅର୍ପିବୁଁ ବଳଦ ।

ଶିବ—

ଦୁର୍ଭେଦ୍ୟ ଏ ଗିରିଶୃଙ୍ଗେ ଆସିବେ କେମିତି ?
ଗଡ଼ାଇ ବରଫ ଖଣ୍ଡ ଧ୍ୱଂସିବେ ତାହାଙ୍କୁ
ଅମ୍ଭର ଏ ଭୂତ ସେନା ।

ଭୃଙ୍ଗୀ —

ପୁରୁଣା କାଳିଆ ସେହି ସମର କୌଶଳ
ଏବେ ହୋଇଲାଣି ରଦ୍ଦି—
ବଢ଼ିଲାଣି ନୂଆ ନୂଆ ବୁଦ୍ଧି
ଏରୋପ୍ଲେନ୍ ଯୋଗେ ଏବେ ଉଡ଼ିଣ ଆକାଶେ,
ଉପରୁ କରିବ ବୋମା କରି ଭୁସ୍ ଭାସ୍,
ପର୍ବତକୁ ଚୂର୍ଣ୍ଣ କରି କରିବେ ନିକାଶ୍ ।
ଅଥବା ମଷ୍ଟାର୍ଡ ଗ୍ୟାସ୍ ଦେବେ ଛାଡ଼ି ହେଲେ ।

ଶିବ—

ଓହୋଃ—ବଡ଼ ଆଚମ୍ବିତ,
ଏମନ୍ତ ବାରତା ଜଣା ନଥିଲା ତ କେବେ ।

ଭୃଙ୍ଗୀ—

ନୁହଇ ଏତିକି ପ୍ରଭୋ,
ଭାରତରେ ନୂଆ ଏକ ଚଳୁଛି କାନୁନ୍
'ପ୍ରୋହିବିସନ' ନାମ ତାର, ନିଶା ନିବାରଣୀ ।
ଶତ ଶତ ରହିଛନ୍ତି ପେଡ଼୍ ଭଲେଣ୍ଟିଅର,
ତଥାର ସର୍ବଦା ଧରି ଅହିଂସାର ଅସ୍ତ୍ର ।
ବର୍ଡ଼ାର ଗୁରିଣ ବାସ୍ତି—ଧରିଣ ଅର୍ଡ଼ାର,
ଦେଖିଲା ମାତ୍ରକେ ସେହି ଆସିବେଟି ଧାଇଁ,
ସାର୍ଚ୍ଚ କରି ଗଣ୍ଠରୀ ଗଣ୍ଠରୀ,
ଆରେଷ୍ଟ୍ କରିଣ ନେବେ ପାଇ ଗ୍ରେଭି ମାଲ ।

ଶିବ—

ଅର୍ଣ୍ଣିତଳେ ରଖିବା ଲୁଚାଇ—

ଭୃଙ୍ଗୀ—

ତଥାପି ସେ ରକ୍ଷା ନାହିଁ !
ବାଘାମ୍ବର ବୋଲି ସେହି କରି ଦିଗମ୍ବର
ତଲାସ କରିବେ ସବୁ ଉଲ୍ଲାସେ ଆମ୍ଭଙ୍କୁ ।
ଚୀନରେ ଇଂରେଜ ଗଣେ ଯାପ ରଖୀ ଯଥା ।

ଶିବ—

ଛାଡ଼ ତେବେ—ଦୂର କର ସେହି ମନୋବାଞ୍ଛା
ପ୍ରିୟେ ! ହେବ ନାହିଁ ସିବାକଥା ମର୍ତ୍ତ୍ୟେ—
ଏ କାଳରେ ଜେଲ୍ ମଧ୍ୟେ ନ ପାରିବ ରହି,
ନ ପାରିବ ଘଣା ଟାଣି,—ଅବା ସୂତା କାଟି ।

ପାର୍ବତୀ —

କ କରିବା ଅବା ନାଥ ! ବଡ଼ କୌତୁହଳ

† ଲର୍ଡ଼ ଇର୍‌ଉଇନ୍ ଗୋ ପ୍ରଜନକ ଷଣ୍ଢ ବିତରଣ କରିବାର ବ୍ୟବସ୍ଥା କରିଥିଲେ ।

ଜଳୁଛଇ ଚିତ୍ତେ, ମନ ନ ବୁଝଇ ଶୋକ,
ନୂଆ ଟିକେ ଦର୍ଶନରେ ଯଥା ଟୋକା ଟୋକା ।
(ଫଁକ ଫଁକ ହୋଇ ରୁମାଲରେ ଆଖି ପୋଛୁଲେ)

ଶିବ—

ନ ହୁଅ ବକ୍ରତା ଡିଅର (dear) କରନା ଫିଅର (fear)
ବୃଥାଟାରେ ମୁଞ୍ଚନା ଟିଅର (tear)
ନିଶ୍ଚୟ କରିବା ତାର ଉପାୟ ବିଧାନ ।
ନନ୍ଦ, ନନ୍ଦ—ଆସ ହିୟର କରି (here)

(ନନ୍ଦୀ ପ୍ରବେଶ ହେଲେ)

ନନ୍ଦୀ—

କି ଆଜ୍ଞା ହେଉଛନ୍ତି ପ୍ରଭୋ !

ଶିବ—

ଯାଅ ତୁମ୍ଭେ ହିୟର କରି ଚଢ଼ି ମନୋପ୍ଲେନେ,
ମର୍ତ୍ତ୍ୟପୁରେ, ଭାରତ ମଣ୍ଡଳେ,
ସେଠାରେ ଲାଗିଛି ଯେଉଁ ତାଣ୍ଡବ ବ୍ୟାପାର,
ଗୋଟି ଗୋଟି ହୋଇ ଉଆକଫ୍
ରିପୋର୍ଟ କରିବ ନିତ ଘଣ୍ଟା ଘଣ୍ଟା କରି ।
ରେଡିଓ ପ୍ରେରକ ଯନ୍ତ୍ର ନେବଟି ସଂଗରେ,
ତତ୍ସ୍ଥାନ ବାରତା ସବୁ କରିବ ପ୍ରେରଣ,
ଶୁଣିବୁଁ ଏଠାରେ ଅମ୍ଭେ ଗ୍ରାହକ ଯନ୍ତ୍ରରେ;
ଆଉ ସଙ୍ଗେ ନେଇଥିବ କୋଡ଼ାକ୍ କେମେରା,
ଉଠାଇ ଆଣିବ ଫିଲ୍ମ; ଅବା କାହିଁ ଫଟୋ,
କୈଳାସ ହେରଲଡ୍ ବୋର୍ଡ ହୋଇବ ପ୍ରକାଶ,
ପୁଣି ଆମ୍ଭ ଷ୍ଟୁଡିଓରେ ହେବ ଟକି ରିଲ ।
ପଢ଼ିବେ, ଶୁଣିବେ ପୁଣି ଦେଖିବେ ନୟନେ,
କୈଳାସର ଭୂତ ବୃନ୍ଦ ଆନନ୍ଦେ ବିଭୋର ।

ନନ୍ଦୀ—

ପ୍ରଭୋ, ଆଜକାଲି ବଡ଼ ବିପଦ ସମୟ,
ଗୁରୁଆଡ଼େ ପଡ଼ିଅଛି ହୁର
ଲାଗି ତ ଗଲାଣି ତେଣେ ପୃଥିବୀ ସମର ।
ସର୍ବେଛନ୍ତି ଜାଗତଅର,
ଧରି ହାତ ହତଅର ନିଜର ନିଜର;
ଦେଖିଲ ମଣିକେ ଆମ୍ଭ ଏରୋପ୍ଲେନ ଗୋଟି,
ମଣିବେ ଅଟଇ ଏହା ଶତ୍ରୁପକ୍ଷ ବୋଲି
ତତକ୍ଷଣେ ଦେବେଟି ଟିପି ଏଣ୍ଟିଏଅର କାମ୍ପନ୍,
ପଡ଼ିବ ଭୂତଳେ ପିନା ହୋଇ ଶଲ ମାଉ;
ପ୍ରିୟକ ଜାନ୍ଟି ମୋର ଯିବ ଅକାରଣେ ।

ଶିବ—

ସତ୍ୟ କଥା—ଅଚ୍ଛା, ତେବେ କର ଏକ କଥା,
ଗୋଟିଏ ଆକାଶ ଯାନ ଅଛି ନାରଦର,
ଅଦୃଶ୍ୟ ଅଟଇ, ମନ ପବନେ ଚାଳିତ,
ପେଟ୍ରୋଲ ଖରଚ ନାହିଁ, ବଡ଼ ମଜବୁତ୍,
ଢେଙ୍କୀ ନାମ ତାର ଅତି ସିମ୍ପଲ୍ ମେସିନ୍,
ଆମ୍ଭନାମ କହି ତାହା ମାଗି ଆଣ ବେଗେ ।

ନନ୍ଦୀ—

ମାନ ପ୍ରଭୁ, ଚାଲେ ତାହା ସାଉଣ୍ଡ ବଳରେ,
ନାରଦ ବଜାନ୍ତି ବୀଣା, ସେହି Sound wave
କମ୍ପନ ଆଣଇ ସୂକ୍ଷ୍ମ ଢେଙ୍କୀର ଅନ୍ତର,
ସେହି ଆବେଗରେ ତାହା ହୁଏ ସଂଚାଳିତ ।
ଅମ୍ଭେ ତ ବଣୁଆ ଜାତି, ଭୃଙ୍ଗୀ, ମଦୁଆ,
ସଙ୍ଗୀତର ତାନ ମାନ ନ ଜାଣିଛୁଁ କିଛି,
ପାରିବୁଁ କେମନ୍ତେ ସେହି ଯନ୍ତ୍ର ଚଳାଇ ?

ଶିବ—

ନାରଦ ଚାଲନ୍ତୁ ସାଥେ, ଡ୍ରାଇଭର ହୋଇ ।

ନନ୍ଦୀ—

ନାରଦଙ୍କ ଢେଙ୍କୀ ଅଟେ ସିଂଗଲ ସିଟାର (Single Seater)
ଦୁଇ ଜଣ ବସିବାକୁ ନାହିଁ ସ୍ଥାନ ତହିଁ ।

ଶିବ—

ତେବେ ତୁମ୍ଭେ ଯାଅ ପଦବ୍ରଜେ,
ଟ୍ରେନ ଓ ବାସ୍‌ରେ ଚଢ଼ି ବୁଲିବ ଭାରତ ।

ନନ୍ଦୀ—

ଟିକଟ କାଟିବାପାଇଁ କଉଡ଼ି ଯେ ଲୋଡ଼ା,

ଶିବ—

ବିନା ଟିକଟରେ ମାରି ଆସ ଥୋଡ଼ା ଥୋଡ଼ା,

ନନ୍ଦୀ

ହେଲାଣି ଟିକଟ ପାଇଁ ବହୁ କଟକଣା
ଭାରତରେ ଏବେ;
ବସୁଛି ଧକମ୍ ଧକା, ଅରେଷ୍ଟ ଓ ଜେଲ,
ବିନା ଟିକଟରେ କେହି ପଡ଼ିଗଲେ ଧରା;
ଶେଷରେ କୋରଟ ହେବ ଦରଦ୍ୱାର ଅନ୍ଧ ।

ଶିବ

ସେଥିକୁ କି ଭୟ ଆମ୍ଭ ! ଅମ୍ଭେ ତ ବାବାଜୀ

## ଭବିଷ୍ୟ ଭାରତ

ମାତ୍ରକୁ ତ ନାହିଁ ଭୟ
ପୁଣି ଗଲେ ଜେଲ,
ସେଠାକାର ଅଭିଜ୍ଞତା ମିଳିଯିବ ଭଲେ,
ନୋହିଲେ କାଟିବା ତହିଁ ହଙ୍ଗର ଷ୍ଟ୍ରାଇକ୍
ଯାଅ ତ୍ୱରା କରନା ବିଳମ୍ବ,
ଏହି ମୁହୂର୍ତ୍ତରେ କର ଅନୁକୂଳ ।
ନନ୍ଦୀ ତହୁଁ ହୋଇ ଲମ୍ବ ଲମ୍ବ,
ଈଶ୍ୱର ପାର୍ବତୀ ପାଦେ ପଡ଼ିଲେ ଝଟିତି ।
ଗୃହା ଏକ କପ୍ ପିଇ ଭାଙ୍ଗ ଏକ ଗ୍ଲାସ ।
ଟ୍ରଙ୍କରେ ପୂରାଇ ସବୁ ଅସବାବ ପତ୍ର,
କୈଳାସ ଶିଖରୁ ଧୀରେ ଆସିଲେ ଓହ୍ଲାଇ,
ଭାରତର ସମତଳ ଭୂମି ପର୍ଯ୍ୟଟନେ ।
ମୁଖିଆ ମୁଖିଆ ତହୁଁ ଭୂତ କେତେଜଣ,
ଅଗେଇ ଦେବାକୁ ତାଙ୍କୁ ଚଳିଲେ ଗହଣେ ।
ଖଣ୍ଡେ ବାଟ ଆସି ତହୁଁ ନନ୍ଦୀ ମହାବଳୀ,
ବିଦାୟ କରିଲେ ତାଙ୍କୁ, ମେଞ୍ଚାଏ ମେଞ୍ଚାଏ
ହାତେ ଦେଇ ଗଞ୍ଜାଇ କଲିକା ।
ପୂରତେ ଦିଶିଲ ଯହୁଁ ସିମଲା ପର୍ବତ
ପୁଣି ତହିଁ ଥିବା ତୁଙ୍ଗ ପ୍ରାସାଦର ଚୂଡ଼ା;
ଯହିଁ ଉଡ଼େ ଫର ଫର ଇଉନିଅନ ଜ୍ୟାକ୍,
ସେହିଦିଗେ ଲକ୍ଷ୍ୟ ରଖି ନନ୍ଦୀ ବୀରବର
ଚଳିଲେ ବୁଙ୍ଗୁଳି କାନ୍ଧେ ଝିମାଇ ଝିମାଇ ।

ସିମଲା ସହରେ ନନ୍ଦୀ ହୋଇ ଉପନୀତ,
ପ୍ରଥମରେ ଗଲେ ହଡ଼ବଡ଼
ଦେଖି ବାଟ, ଘାଟ, ଆଉ ଲାଟ କୋଠା ବାଡ଼;
କିନ୍ତୁ ଯେଣୁ ଚତୁର ସେ ଅତି,
ନିଜ ମତି ନେଇଣ ସମ୍ଭାଳି,
ଖୋଜିଗଲେ ବସା ଆପଣାର ।
ମାତ୍ର ସର୍ବେ ଦେଖି ତାଙ୍କ ସିମ୍ପାଞ୍ଜି ଚେହେରା,
ଠେକା ମାରି ଦେଲେ ଘଉଡ଼ାଇ,
ଅବା କେହୁ କରିଲେ କୌତୁକ ।
ଶେଷେ ଜଣେ ଗୋରା ଧନୀ, ଆମେରିକା ବାସୀ,
ହୋଇ କୁତୂହଳୀ ତାଙ୍କୁ କଲା ଆମନ୍ତ୍ରଣ,
ବନ୍ଧୁରୂପେ ରଖିବାକୁ ସଙ୍ଗେ ହୋଟେଲରେ ।
ପାଞ୍ଚି ମନେ ମନେ, ଏହି ଅଜବ ଜନ୍ତୁକୁ
ନେଇଯାଇ ରଖାଇବ ଚିଡ଼ିଆ ଖାନାରେ,
ଅଥବା ସର୍କସେ ରଖି ଦେଖାଇ ତାମସା,
କୌତୁକୀ ଜନଙ୍କଠାରୁ ଲୁଣ୍ଠିବ ପଇସା ।
ଯାହା ହେଉ ବସା ପାଇ ନନ୍ଦୀ ହେଲେ ଖୋସ୍ ।
ତହୁଁ ଖୋସ୍ ହେଲେ ଖାଇ ବିଲାଏତି ଖାନା,
ଗୃହା, ଲଞ୍ଚ୍, ଟିଫିନ୍, ଡିନାର୍ ।
ଭଲ ଭଲ ଡିସ୍—କାରି, କୋରମା, କବାବ,
କଟଲିସ, କାଲିଆ, ଚପ୍, ପଲାଉ, ପରିଜ୍,
ମଟନ, ବେକନ, ହାମ, ଫିସ, ନାନାଜାତି,
ତହିଁ ସଙ୍ଗେ ଚକୋଲେଟ, ବଟ୍ଟାର ଇତ୍ୟାଦି,
କେତେ ନୂଆ ଡ୍ରାଇ ଫୁଡ୍, ଜାମ୍ ଆଦି କରି ।
ସନ୍ଧ୍ୟାକାଳେ ବଲ୍ ନାଚ, ଥିଏଟର ସିନେମା,
ଟେନିସ୍, କ୍ରିକେଟ୍, ପୁଣି ବିଲିଆର୍ଡ଼ କ୍ଲବେ,
ହରିନେଲ ଚିତ୍ତ ତାଙ୍କ ଗଲେ ସେ ପାଶୋରି,
ଭାରତ ଭ୍ରମଣ ହେତୁ—ଆପଣା ମିସନ୍,
ଖାଇ ପିଇ ରହି ଶୋଇ ମହା ମଉଜରେ ।
ଏଣେ କିଛି ନ ପାଇ ଖବର,
ଈଶ୍ୱର ପାର୍ବତୀ ଦୁହେଁ ହୋଇଲେ ଚିନ୍ତିତ ।
କାହିଁ ଗଲେ ନନ୍ଦୀ, ପଡ଼ିଗଲା କି ବିପଦେ,
ଅବା କାହିଁ ପଡ଼ିଲା ବେମାରି !
ଗଣେଶଙ୍କୁ ଡାକି ଶିବ ବୋଇଲେ ତତ୍‌କ୍ଷଣେ,
"ଶୁଣ ବାବୁ, ତୁମ୍ଭ ଭାଇ ନନ୍ଦୀ ବୀରବରେ
ପେଶିଥିଲୁଁ ଭାରତକୁ ଜାଣିବା ସକାଶେ,
ସେଠାକାର ହାଲଚାଲ—ପାର୍ବତୀ ଆଦେଶେ,
ମାତ୍ର ସେ ରହିଲା କାହିଁ, ନ ଦେଲା ସନ୍ଦେଶ,
ଲେଶମାତ୍ର ଖବର ଅନ୍ତର,
ତେଣୁ ନିରନ୍ତର,
ମାତା ତୁମ୍ଭ ହୁଅନ୍ତି କାତର ।
ଲେଖି ନ ଜାଣନ୍ତି ନନ୍ଦୀ, ବିଦ୍ୟାରେ ଦିଗ୍‌ଗଜ
ତେଣୁ ଅବା ଲେଖି ପାରୁ ନାହାନ୍ତି ରିପୋର୍ଟ୍ ।
ଯାଅ ତୁମ୍ଭେ ଏଇକ୍ଷଣି, ଅତି ତ୍ୱରା କରି,
ବୀରବର ନନ୍ଦୀଙ୍କର କରିଣ ତଲାସ,
ଟେଲିଗ୍ରାମ ଦ୍ୱାରା ତାହା ଜଣାଇବ ଖାସ୍ ।"
ଗଣନାଥ ଶୁଣି ତହୁଁ ପୋଥି ପତ୍ର ଖେଦା,
କ୍ଷିପ୍ରଗତି ମୂଷିକ ବାହନେ,
ଚଳିଲେ ତୁରନ୍ତ ନନ୍ଦୀ, ଭାଇ ଅନ୍ୱେଷଣେ ।

ମାନ ସରୋବରରେ ସାରି ସ୍ନାନ ପରକାର,
ନାସ୍ତା ବଢ଼ାଇଲେ ଗଣ୍ଡା ଗୁର ଲଡ୍ଡୁ ଖାଇ ।
ଶୁଣି ପିଇ ଭାଙ୍ଗ ଏକ ଗ୍ଲାସ୍—
ମିଷ୍ଟାସ୍ ସରଫ୍ କରି ହୋଇଲେ ବାହାର ।
ପ୍ରବେଶନ୍ତେ ଗଜାନନ କାଶ୍ମୀର ପ୍ରଦେଶେ
ସେଠା ଶୋଭା ସମ୍ପଦରେ ହେଲେ ବିମୋହିତ,
ଉପତ୍ୟକାମାନ ତହିଁ ଫଳ ପୁଷ୍ପେ ଭରା,
ପ୍ରକୃତି ରାଣୀର ସେ କି ବିଳାସ ବାଟିକା ।
ପୁଣି ବାମାବୃନ୍ଦ ଯହିଁ ସୁରନାରୀ, ଜଣା,
ସଜ୍ଜ ଗୋଲାପକୁ ବଳି ଅଙ୍ଗର ଝଲକ,
ହରିଣ ନୟନା ପୁଣି ମରାଳ ଗମନା
ଗୃହୁ ଶିକୁରର ଶୋଭା ମନ ଭୁଲାଣିଆ;
ଦେଖି ତାଙ୍କ ହାବ ଭାବ, ଅଙ୍ଗର ଲାବଣ୍ୟ,
ଗଣେଶଙ୍କ ବ୍ରହ୍ମଚର୍ଯ୍ୟେ ଉଠିଲି ଝଟିକା
ଚିର କୌମାର୍ଯ୍ୟରେ ସେହୁ ଦେଇ ଜଳାଞ୍ଜଳି,
ଗଲେ ଗଳି ଅଧ ରସାର୍ଣ୍ଣବେ,
ପାଠିକରି ପାକୁ ପାକୁ, ଖାଇ ହାବୁ ଡୁବୁ,
ପ୍ରେମ ସ୍ରୋତେ ଗଲା ଭାସି ଜ୍ଞାନ, ଧୈର୍ଯ୍ୟାବଳି
ଅଳି ଯଥା ନିରେଖିଲେ ସଦ୍ୟ ପଦ୍ମ କଳି ।
ଭୁଲି ଶିବଙ୍କର ଆଜ୍ଞା, ଭୁଲି ଅପଣାକୁ,
ଗଲେ ରହି ସେହିଠାବେ ନାକେଇ ନାକେଇ ।
ମାସ ହସ୍ତୀ ମୁଣ୍ଡଧାରୀ, ପେଟା ପ୍ରେମିକର,
ଲଭ୍ (love)ରେ ପଡ଼ିବ କେଉଁ
ଫୁଲିସ ଗାର୍ଲ (foolish girl) !
ଧାଇଁ ଧାଇଁ ହୋଇଲେ ହାଲିଆ,
ଖାଇଲେ କେଉଁଠି ଧକ୍କା କେଉଁଠି ତଣ୍ଟିଆ,
କାହିଁ ଅପମାନ, କାହିଁ ଶୋଧନ ଶକତ ।
ଏବେ ଗଣନାଥ ଜ୍ଞାନୀ, ପଣ୍ଡିତ ସୁବୋଧ,
ଦିବ୍ୟଜ୍ଞାନ ଅଙ୍କୁରିଲା ଦିନେ,
ଯେଉଁ ଦିନ ପୁଲିସ ଗୋଏନ୍ଦା,
ସର୍କାରୀ ୱାରଣ୍ଟ୍ ବଳେ କରିଦେଲ ଅରେଷ୍ଟ (arrest).
ଥାନାର ହାଜତେ ଥାଇ କଲେ ଅନୁତାପ,
ଭାବି ଭାବି ଆପଣାର ପାପ,
ହେଲେ ବହୁ ଉତଳ ବାଉଳ;
ନାକ ଘଷି କାନ ମୋଡ଼ି ହୋଇ,
ଗାଲକୁ ଗୁପୁଡ଼ା ମାରି ହେଲେ ଅପେ ଅପେ ।

ଏହିକାଳେ ଗଣେଶଙ୍କ ବାହନ ମୂଷିକ,
କର ଯୋଡ଼େ ଆସି ତହିଁ ହେଲା ଉପନୀତ;
ବୋଇଲା ହେ ପ୍ରଭୁ କିମ୍ପା ହେଉଛ ବିକଳ,
ଥାଉଁ ଥାଉଁ ଦୀନ ଭୃତ୍ୟ ତବ !
ପଥର ପାରଇ କାଟି ଯେଉଁ ଦନ୍ତ ମୋର ।
କି ଛାର ଏ ସିମେଣ୍ଟ ଘଟାଉ;
ଏହିକ୍ଷଣି କରିବ ସୁଡ଼ଙ୍ଗ,
ଯାହା ମଧ୍ୟ ଦେଇ,
ସଶରୀରେ ଗଳି ଗଳି ପଳାନ୍ତୁ ଏଠାରୁଁ ।
ଏତେ କହି ମୂଷା ତହୁଁ କାଟିଲା ସୁଡ଼ଙ୍ଗ,
ନିମେଷ ମାତ୍ରକେ; ଯେଣୁ ଗଣେଶଙ୍କ ମୂଷା ।
ନୁହେ ତ ସାମାନ୍ୟ ସେହୁ ! ଅତି ବଳବନ୍ତ,
ଦନ୍ତପନ୍ତି କରତର ଦାଢ଼ ।
ଗଣେଶ ପ୍ରବେଶ କରି ସୁଡ଼ଙ୍ଗ ମଧ୍ୟରେ,
ପଦାକୁ ବାହାରି ପଡ଼ି ମାରିଲେ ଝପଟ !
ମୂଷା କିନ୍ତୁ ପଛେ ଗଲା ରହି,
ଅତି ଶ୍ରମ ହେତୁ ଯହୁଁ ପଡ଼ିଥିଲା ଥକି ।
ଜୀବନ ବିକଳେ ବେଗେ ଧାମନ୍ତି ଗଣେଶ;
କୋଥଳି ବପୁକୁ ଢେନା ହୋଇ ଥଳ ଥଳ,
ଦୁଇ ହାତେ ପେଟାକୁ ଟେକି ଧରି ଧରି,
ଯେଣୁ ତାହା ଦୋଲୁ ଦୋଲୁ ନାଚି ନାଚି ନାଚି,
ଦ୍ରୁତ ପଦ କ୍ଷେପେ କରୁଥାଏ ଗତିରୋଧ ।
ଏକେତ ଠେଙ୍ଗର ହୁଇଁ କଙ୍କର ବହୁଳ,
କାହିଁ ଖାଲ କାହିଁ ଢିପ କାହିଁ ଆଙ୍କବାଙ୍କ,
ତହିଁ କି ଅନ୍ଧାର ରାତି, ବଣବୁଦା ମୟ;
ତୃତୀୟେ ଛନକା, କାଳେ ଧରିବ ପୁଲିସ;
ଧଇଁ ସଇଁ ହୋଇ, ଲୁଗାପଟା ଅସମ୍ଭାଳେ,
ଧାବନ୍ତି ଗଣାଧିପତି ଉଠି ପଡ଼ି ପଡ଼ି,
କାହିଁ ଅବା ଝୁଣ୍ଟି ହୋଇ ପଡ଼ନ୍ତି କଚାଡ଼ି,
କାହିଁ ଗଡ଼ାଣିଆ ସ୍ଥାନେ ଯାଉଛନ୍ତି ଗଡ଼ି;
ସେ ଏକ ଅଦ୍ଭୁତ ଦୃଶ୍ୟ—ଅତି ଦୟନୀୟ,
ଖଣ୍ଡିଆ ମଣ୍ଡିଆ ଅଙ୍ଗୁ ବହେ ରକ୍ତ ଝର,
କିନ୍ତୁ ନାହିଁ ବିରାମ ତାଙ୍କର,
ତ୍ରାଣଭୟେ ହୋଇ ଖର ଖର,
ଅମଡ଼ା ଅବାଟେ ଧାଇଁ ଯାନ୍ତି ଅଥାନିଆ ।
ପ୍ରଭୁଭକ୍ତ ମୂଷିକଟି ଗୋଡ଼ାଉଛି ପଛେ .

କିନ୍ତୁ କାହିଁ ଅବସର,
ଭାବିବାକୁ ବାହନର କଥା !
ଏମନ୍ତେ ପାଇଲ ଶୀଘ୍ର ଏକ ନଦୀକୂଳେ,
ଜାଣିଲେ ସେ ସ୍ଥାନ ଅଟେ କାଶ୍ମୀର ବାହାର,
ଅତଏବ ନାହିଁ ଭୟ ପୁଲିସ ହାତକୁ,
ଯେ ହେତୁ ବ୍ରିଟିଶ୍ ସୀମା ଅଟଇ ସେ ଠାବ ।
ନଦୀ ଜଳେ ଧୋଇ ଧାଇ ଅଙ୍ଗ ଆପଣାର,
ଥୋଡ଼ ପାହାଡ଼ରେ ପିଇ ପେଟେ ନଈ ପାଣି,
ବସନ୍ତେ ଆଶ୍ୱସ୍ତ ହୋଇ ବୃକ୍ଷ ଛାୟା ତଳେ,
ମିଳିଲ ମୂଷିକବର ଆସି ପଛେ ପଛେ ।
ପଶ୍ଚିମ ଗଗନ ପ୍ରାନ୍ତେ ଅସ୍ତ ହେଲେ ରବି,
ଛବିଳ ହସିଲ ଦିଗ ହୋଇ ସିନ୍ଦୂରିତ;
ବହିଲ ମରୁତ ମନ୍ଦ ମଧୁର ଶୀତଳ,
ନିବାରିଲ ଅଙ୍ଗ କ୍ଳାନ୍ତି ବେନି ପ୍ରାଣୀଙ୍କର ।
କ୍ରମେ ଘୋଟି ଆସିଲା ଅନ୍ଧାର,
ବାହାର ହୋଇଲେ ଦେବ ସିମଳାଭିମୁଖେ,
ଚଢ଼ି ସୁଖେ ନିଜ ବାହାନରେ,
କରିବାକୁ ନନ୍ଦୀର ସନ୍ଧାନ ।
ସିମଲା ନଗର ପ୍ରାନ୍ତେ ହୋଇ ଉପନୀତ,
ପ୍ରଭୁ ବିଘ୍ନରାଜ ହେଲେ ଆନନ୍ଦେ ବିଭୋଳ,
ଦେଖି ନଗ୍ରୀର ଶୋଭା ଜନ-ମନୋହର ।
ମାତ୍ର ଭାବି କାଶ୍ମୀର ହାଲତ,
ଭରସି ପାରିଲେ ନାହିଁ ପଶିବାକୁ ତହିଁ ;
ଘେନି ତାଙ୍କ ଗଜମୁଖା ଗୋଟି ।
ବୋଇଲେ ଗଣେଶ ତାଙ୍କ ବାହନକୁ ଡାକି,
"ଶୁଣ ବେଟା, ବଚନ ଆମ୍ଭର,
ସବୁଠାବେ ଅବାରିତ ସୂକ୍ଷ୍ମ ଗତି ତବ,
ଗବନ ଅଦୃଶ;
ନଗରର ଘରେ ଘରେ ଅଛି ସନ୍ଧି ବୁଲି,
ନନ୍ଦୀର ତଲ୍ଲାସ କର, ଧନ୍ଦ ଚାରିଆଡ଼େ;
ଫନ୍ଦରେ ପଡ଼ିଲେ କିବା ଅଛି କାହିଁ ବନ୍ଦୀ,
କିବା ଛନ୍ଦ ହୋଇଥିବ କାହାର କୁହକେ ।
କରିଣ ସନ୍ଧାନ ମୋତେ କହିବ ତୁରନ୍ତ ।"

ମୂଷା

ପ୍ରଭୋ ! ଆଜ୍ଞା ତବ ଶିରୋଧାର୍ଯ୍ୟ ମୋର,
ସଦା ସେବାକାରୀ ଦାସ;
ତବ କୃପା ବଳେ,
ହେଲେ ତରି ପାରେ ମୁହିଁ ନିମେଷେ ମାତରେ,
ମାଛି ହେବ ନବଖଣ୍ଡ ଯହିଁ ପ୍ରବେଶିଲେ,
କିନ୍ତୁ ତ ଅଭେଦ୍ୟ ନୁହେଁ ଏ ଦୀନ ମୂଷିକେ ।
ଏତେ କହି ମୂଷାବର ଚଳିଲା ଉଲ୍ଲାସେ,
ସିମଲା ସହରେ ନନ୍ଦୀବର ଅନ୍ୱେଷଣେ ।
ଗଣେଶ ରହିଲେ ଲଘୁ ପାହାଡ଼ ଗୁମ୍ଫାରେ ।
ହାତବନ୍ଧା ଘଣ୍ଟିକୁ ଅନାଇ ଅନାଇ,
ବିଶ୍ୱାସୀ ଇନ୍ଦୁରବରେ ଫେରିବାକୁ ଠିକ ।
ଚାହିଁ ଚାହିଁ ବିଘ୍ନରାଜେ ଲାଗିଗଲା ଆଖି,
ଯେଣୁ ହୋଇଥିଲେ ଥକା, ପୁଣି ଉପବାସ ।
ଧୀରେ ଧୀରେ ମାଡ଼ିଗଲା ଘମାଘୋଟ ନିଦ,
କାନ୍ଥକୁ ଆଉଜି ପଡ଼ି ଠେକା ଦେଲେ ଶୁଣ୍ଢ,
ଥୋଡ଼ ପାହାଡ଼ର ରନ୍ଧ୍ରେ ଗୁଞ୍ଜିଲା ଘାଡୁଡ଼ି ।
ଘଡ ଘଡ଼, ସଡ଼ ସଡ଼, ଭଡ଼ ଭଡ଼ କରି,
ଜୀମୂତ ଗର୍ଜ୍ଜନ କିବା, ଭୂମିକମ୍ପ ଧ୍ୱନି;
ସେ ନାଦର ପ୍ରତିଧ୍ୱନି ଉଠିଲା ବାହାରେ;
ଗୁମ୍ଫା ଗାବେ ବାଜି, ତାହା ଶତଗୁଣ ହୋଇ,
ଭଜିଲେ ଉଛାଠ ସର୍ବ ନଗର ନିବାସୀ,
କେ କହେ ପଡ଼ୁଛି ବୋମା, କେ କହେ କମାଣ,
କେ କହେ ମେଘର ଡାକ, କିଏ ଭୂମିକମ୍ପ,
ସର୍ବେ ତ୍ରସ୍ତ, ହେସ୍ତ ନେସ୍ତ ବ୍ୟତିବ୍ୟସ୍ତ ହୋଇ,
ଧାଇଁଲେ ଭୂଗର୍ଭ ଗଡ଼ିଶି, ପିନ୍ଧି ଗ୍ୟାସ-ମୁଖା ।
ଶେଷେ କେତେ ଜଣ ତେଜୀ ଗୋରା ପଲଟଣ,
ଶବ୍ଦକୁ ଅନୁସରି ଚଳନ୍ତି ତୁରିତେ;
ମିଳିଲେ ଗହ୍ୱର ପାଶେ, ଯହିଁ ଗଣନାଥ,
ଅଘୋର ନିଦ୍ରାରେ ପଡ଼ି ଛାଡ଼ନ୍ତି ଘାଡୁଡ଼ି ।
ଅଦ୍ଭୁତ ସେ ରୂପ ଦେଖି ସର୍ବେ ସଚକିତ,
କିନ୍ତୁ ପାଖ ପଶିବାକୁ କାହାରି ସାହସ
ନ କୁଳାନ୍ତେ, ଜଣେ କେହି ଗୋରା ସୂକ୍ଷ୍ମ-ବୁଦ୍ଧି
ଆଣିଲା ତୁରିତେ ଯାଇ ଲମ୍ବ ଲମ୍ବ ରଜ୍ଜୁ;
ସେ ରଜ୍ଜୁରେ ଫାଶ କରି ପକାଇ ଦୂରରୁ
ଗଣେଶଙ୍କ ହସ୍ତ ପଦ କରିଲେ ବନ୍ଧନ ।
ତହୁଁ ଗୁମ୍ଫା ବାହୁଁ ଥାଇ ଆଣିଲେ ଘୋଷାଡ଼ି;
ଭାଙ୍ଗିଲା ଅଘୋର ନିଦ୍ରା ବିଘ୍ନରାଜଙ୍କର,
'ଶିବ ଶିବ' କହି ସେତୁ ଛାଡ଼ିଲେ ଅଳସ ।

ମାଡ ହସ୍ତପଦ ବନ୍ଧା, ବନ୍ଧା ପୁଣି ଶୁଣ୍ଡ,
ରହିଲେ ବେକାବୁ ହୋଇ କାଷ୍ଠ ଖଣ୍ଡ ପରି ।
ସର୍ବେ ମିଳି ଦଉଡ଼ିକୁ ଟାଣି ମହାବଳେ
ଗଣେଶେ ବୋହାର କରି ଅଣନ୍ତେ ପଦାକୁ,
ସହସ୍ର ସହସ୍ର ଲୋକ ଜମିଲେ ସେଠାବେ ।
ଦେଖିବାକୁ ଏହ୍ପ ଏକ ତାଜବ ଜାନୁଆର ।
ଅଣିଲ ମଟର ଲରି, ଦୁଇଜନ ବାହ୍ମି
ତହିଁରେ ଲଦନ କରି ସେ ବିଶାଳ ବପୁ,
ଚଳିଲେ ସରବେ ଲାଟ ଭବନଅଡ଼କୁ,
ରଖାଇଲେ ନେଇ ଘୋଡ଼ାଶାଳେ ଦେଇ ତାଲ ।
ମୂଷିକ ଯେ ଯାଇଥିଲେ ନନ୍ଦୀ ଅନ୍ୱେଷଣେ,
ତାହାଙ୍କ ସନ୍ଦେଶ ନେଇ ଫେରନ୍ତେ ଗୁମ୍ଫାକୁ,
ଦେଖିଲେ ପଡ଼ିଛି ସେହି ଗୁମ୍ଫା ଶୂନ୍ୟ ହୋଇ ।
ତାହା ଦେଖି ମୂଷିକର ଉଡ଼ିଗଲା ସାହା
କି କରିବ ବୋଲି ତାକୁ ନ ଦିଶିଲା ବୁଦ୍ଧି ।
'ହାୟ ପ୍ରଭୁ' ବୋଲି ବହୁ କରିଲେ ରୋଦନ
ହେଲା ରାତି; ଭୁକିଲେ କୋଲିଆ,
ଅନ୍ଧକାରେ ଚତୁର୍ଦ୍ଦିଗ ହୋଇଲା ଆବୃତ;
ବହିଲା ଶୀତଳ ବାୟୁ, ପଡ଼ିଲା ତୁଷାର,
ମୂଷା ଦେହ ଥର ଥର ମାରିଲା କାଲୁଆ ।
ତହୁଁ ଗୁମ୍ଫା ମଧ୍ୟେ ପଶି ମୂଷିକ ପ୍ରବର,
ସୁମରଣା କଲା ମୂଷା ଶିବଙ୍କର ନାମ ।
ନାମ ଜପୁଁ ଜପୁଁ ତାକୁ ମାଡ଼ିଗଲା ନିଦ;
ଦେଖିଲା ସ୍ୱପନେ ତହୁଁ, ଆସି ମହାଦେବ
କହୁଛନ୍ତି ନାଲି ଆଖି କରି ଉମା ଉମା
"ରେ ମୂଷିକ, ପଶୁଜାତ, ନିର୍ବୋଧ ବେକୁବ୍,
ଏତକ ମୁଣ୍ଡରେ ବୁଦ୍ଧି ଅଯୁ ନାହିଁ ତୋର,
ଏଥିପାଇଁ ହେଉଛୁ କାତର,
ଯାଅ ହୋଇ ଖର,
ହେଲା ବର,
ଚୂର କର ଯାଇ ଶୀଘ୍ର ଦୁହିଁଙ୍କ ବନ୍ଧନ ।
କାଟ ଲୁହା ବାଡ଼ ନେଇ ତୀକ୍ଷଣ ଦନ୍ତ ମୂନ ।
ଯେଉଁ ଦନ୍ତେ ପାରୁ କାଟି ପାହାଡ଼ ପର୍ବତ,
ଲୁହା କାଟିବାକୁ ତୁକ ହେଲୁ ଅଶକତ ।"
ତଡ଼ାବଡ଼ ମୂଷିକର ଭାଙ୍ଗିଗଲା ନିଦ;
ହୋଇ ପ୍ରେମେ ଗଦ ଗଦ,

ଚଳିଲା ମୂଷିକ କରି ସାହସେ ନିର୍ଭର ।
ପଲକ ମାତ୍ରକେ ଯାଇ ହୋଇ ତରବର
ନନ୍ଦୀ ଗଣେଶଙ୍କ କଲା ବନ୍ଧନ ମୋଚନ ।
ଦୁହିଁଙ୍କୁ ବସାଇ ପୃଷ୍ଠେ ମାରିଲା ଚମ୍ପଟ ।
ପ୍ରଭାତ ପୂର୍ବରୁ ସର୍ବେ ହେଲେ ଉପନୀତ
ସମତଳ କ୍ଷେତ୍ରେ ଯାଇ ପଞ୍ଚନଦ ଦେଶେ ।
ବୋଇଲେ ଗଣେଶ ତହୁଁ ମୂଷିକକୁ ଚାହିଁ ।
"ତୋହଲାଗି ପ୍ରାଣ ଆମ୍ଭେ ପାଇଲୁ ହ'ଭାଇ
ନହୁବା ଚିଡ଼ିଆଖାନା ଲୌହ ପିଞ୍ଜରାରେ
ରହିଥାନ୍ତୁ ଚିରକାଳ ଯାଇ ।
କହରେ ମୂଷିକ ମୋର,
ପାରିବୁକି ଆମ୍ଭ ଦୁହେଁ ପିଠିରେ ବସାଇ
ସମଗ୍ର ଭାରତ ଭୂମି ଗସ୍ତରେ ବୁଲାଇ ?"
ମୂଷିକ ବୋଇଲା ପ୍ରଭୁ ତୁମ୍ଭ ଆଜ୍ଞା ହେଲେ,
ମୁହୂର୍ତ୍ତି ମାତ୍ରକେ ବୁଲି ଆସିପାରେ ମୁହିଁ
ସାରା ପୃଥ୍ୱୀ, କିବା ଛାର ଏ ଭାରତ ଭୂମି ।"
ନନ୍ଦୀ—
ହେଉଛନ୍ତି ଆମ୍ଭର କାର୍ଯ୍ୟ ବୁଲି ଭୂଭାରତ
ତନ୍ନ ତନ୍ନ କରି ଦେଖି ସକଳ ବିଷୟ
ରିପୋର୍ଟ କରିବା ଯାଇ ଶିବଙ୍କ ଛାମୁରେ ।
ତେଣୁ ତୁମ୍ଭେ ରହ ଏକ ସ୍ଥାନେ,
ଯାଉଅଛୁଁ ଆମ୍ଭେ ଦୁହେଁ ଦେଶ ପର୍ଯ୍ୟଟନେ ।
ରହନ୍ତି ଗଣେଶ ଦେବ ଲୁଚି ବନ ମଧ୍ୟେ
ଚଳିଲେ ନନ୍ଦୀ ଓ ମୂଷା ଧରି ଛଦ୍ମବେଶ,
ପଦବ୍ରଜେ ନିରୀକ୍ଷଣ କରି କରି ଦେଶ ।
ରାତିକାଳେ ତିନିଜଣ ମିଳି ଏକଠାବେ
କରନ୍ତି ଭୋଜନ ଆଉ ଗଞ୍ଜିକା ସେବନ ।
ଯାହା ଯାହା ଦେଖିଥାନ୍ତି ନନ୍ଦୀ ବାରବର
ମୁହିଁରେ ଯାଆନ୍ତି ଗାଇ ନିଶାର ଗମତେ,
ଲେଖନ୍ତି ରିପୋର୍ଟ ନିତ୍ୟ ଦେବ ଗଣପତି ।
ପ୍ରତିଦିନ ସେ ରିପୋର୍ଟ ଥୋଇ ଲଫାପାରେ
ନିକଟସ୍ଥ ଡାକଘରେ କରୁଥାନ୍ତି ପୋଷ୍ଟ ।
ଶିବଙ୍କ ଠିକଣା ଲେଖି ଲଫାପା ଉପରେ
ପୁଣି ତହିଁ ଅଣାକିଆ ଟିକଟ ଲଗାଇ ।
ଏମନ୍ତେ ରିପୋର୍ଟ ଗୁଡ଼ା ଯାଇ ଡାକଯୋଗେ
କୈଳାସ ଶିଖରେ ନିତି ହୁଏ ଉପନୀତ,

ଅହାସ୍କନ୍ଦେ ମହାଦେବ ପଢ଼ନ୍ତି ରିପୋର୍ଟ୍
ଶୁଣନ୍ତି ଶ୍ରବଣ ଡେରି ଦେବୀ ମହେଶ୍ୱରୀ ।

## ପ୍ରଥମ ରିପୋର୍ଟ

ଦେବ ଦେବ ମହାଦେବ-ଦେବୀ ଶ୍ରୀ ଯୁଗ୍ମଙ୍କୁ
ପେଷିଲୁ ରିପୋର୍ଟ୍ ନନ୍ଦୀ ଦାସ ଅନୁଦାସ ।
ଅମ୍ଭେତ ନ ଜାଣୁ ଲେଖି ଯେଣୁ ନିରକ୍ଷର
ଗଣେଶ ଲେଖନ୍ତି ତେଣୁ ଅମ୍ଭ କଥା ଶୁଣି ।
ଭାରତେ ଲାଗିଛି ଏକ ମହା ଆନ୍ଦୋଳନ,
ଅପାଠୁଆ ବୁଢ଼ାଯାକ ପଢ଼ୁଛନ୍ତି ପାଠ,
ନୈଶ ବିଦ୍ୟାଳୟେ; ପୁଣି ବିନା ବେତନରେ;
ଆଜ୍ଞା ହେଲେ ଅମ୍ଭେ ତହିଁ ଲେଖାନ୍ତୁ ସ୍ୱନାମ,
ଅଳ୍ପଦିନେ ହୋଇ ଯାଇ ଜବ୍ବର ସାକ୍ଷର ।
ବଡ଼ ବଡ଼ ପଣ୍ଡିତଙ୍କ କାଟି ଦ୍ୟନ୍ତୁ କାନ ।
ସ୍ୱହସ୍ତେ ରିପୋର୍ଟ ଲେଖି ଜଣାନ୍ତୁ ଯୁଗ୍ମଙ୍କୁ,
ଅବା ଅମ୍ଭ କୈଳାସର ଦୈନିକ ପତ୍ରର
ସ୍ଥାୟୀ ପ୍ରତିନିଧି ହୋଇ ରହନ୍ତୁ ଭାରତେ ।
କାଗଜର ମୂଲ୍ୟ ବଢ଼ ଯାଇଅଛି ବଢ଼ି,
ତେଣୁ ଅମ୍ଭେ ସଂକ୍ଷେପରେ ଲେଖିବୁଁ ରିପୋର୍ଟ
ନ ଘେନିବେ ଦୋଷ ଏଥିପାଇଁ;
ଅମ୍ଭେ ନୋହୁ ଦାୟୀ,
ୟୁରୋପ ଦେଶରେ ଭାରି ଲାଗିଛି ଲଢ଼ାଇ ।
ତାଳପତ୍ରେ ଲେଖିବାକୁ ଗଣେଶ ନାରାଜ,
ବଡ଼ ପରିଶ୍ରମ ତାହା ବିନ୍ଧୁଅଛି ହାତ ।
ଆବର ଲୁହାର ଦାମ ଯାଇଅଛି ବଢ଼ି,
ବଜାରରେ ମିଳୁନାହିଁ ଲୁହାର ଲେଖନୀ ।
ଭାବୁଛୁଁ କିଣିବୁ ବୋଲି ଫାଉଣ୍ଟେନ ପେନ ।
ଗୋଟିଏ ଏଭରସାପ ଅଥବା ପାର୍କର ।
ଡାକଦ୍ୱାରା କିନ୍ତୁ ହେଲେ ପଠାଇଲେ ଟଙ୍କା
କାଗଜ, କଲମ, କାଳି ପକାଇବୁ କିଣି;
ଡେରି ହେଲେ, ଦାମ ଯିବ ଚଢ଼ି,
ତେଣୁ ତଡ଼ାବଡ଼ି,
ଟେଲି ଗ୍ରାଫିକ ମନିଅର୍ଡର କରିଦେବ ତୁରା ।
ଆବର ଦେଖୁଛୁ ଏଠି ବଡ଼ ଦରକାର
ଘଡ଼ି ଦୁଇ ଗୋଟା ।
ସମୟର ମୂଲ୍ୟ ଏଠି ଚଢ଼ା,
ମିନିଟ ସେକେଣ୍ଡ ଧରି ଗୁଣୁଛନ୍ତି ବାଟ
ଏଠାର ମାନବଗଣ, ହାତେ ବାନ୍ଧି ଘଡ଼ି,
ହରଘଡ଼ି,
ହସନ୍ତି, ମୁତନ୍ତି, ପୁଣି ବସନ୍ତି, ଶୁଅନ୍ତି ।
ଭାବୁଛୁ ଆଣିବୁ କିଣି
Installment system ରେ
ପଠାଇବୁଁ ଟଙ୍କା ।
ଯିବା ବେଳେ ଘେନିଯିବୁ ଏହାକୁ ସଙ୍ଗରେ,
ଯୋଗ ସାଧନରେ ଏହା ହୋଇବ ସହାୟ,
ପୁଣି ତବ ନୃତ୍ୟକାଳେ ଦେଉଥିବ ତାଳ ।
ଏତିକରେ ଆଜ ପ୍ରଭୁ ନେଉଅଛି ବିଦାୟ;
ବିଳମ୍ବ ହୋଇଲା ବୋଲି ନ ଧରିବେ ଦୋଷ
ନ ବହିବେ ରୋଷ ଦାସ ପରେ,
ଇତି ଶେଷ ପ୍ରଥମ ରିପୋର୍ଟ ।

ନନ୍ଦୀ—

## ଦ୍ୱିତୀୟ ରିପୋର୍ଟ

ପିତାମାତା ଶ୍ରୀଚରଣେ ନନ୍ଦୀର ଭକତି;
କୋଟି ଦଣ୍ଡବତ ସହ ତ୍ରିକାଳ ସନ୍ଧ୍ୟାରେ ।
ପ୍ରଥମ ରିପୋର୍ଟ୍ ମୋର ପାଇଥିବେ ପ୍ରଭୁ,
ମାତ୍ର ଆସି ନ ଥିବାରୁ ଗାଡ଼ିଖର୍ଚ୍ଚା ଟଙ୍କା,
ହଇରାଣ ବଡ଼ ଦୁହେଁ ହେଉଛୁଁ ଏଠାରେ ।
ମୂଷିକଟି ଅଛି ବୋଲି ଖାଉଅଛୁ ଦାନା,
ନୋହିଲେ ଉପାସେ ଅମ୍ଭେ ଯାଆନ୍ତୁଣି ମରି ।
ବଜାର ସଉଦା ଦର ବଢ଼େ ଦିନୁ ଦିନୁ,
ଖରଚ ଗଲାଣି ହୋଇ ଯାହାଥିଲା ପାଖେ;
ବିଦେଶୀ ବୋଲିଣ କେହି ନ ଦିଅନ୍ତି ଧାର,
ମଷାର କଲ୍ୟାଣେ ଅମ୍ଭେ ପାଇଛୁଁ ଉଦ୍ଧାର ।
ଗଣେଶର ପେଟ କଥା ଜାଣନ୍ତି ଆପଣ,
ଭରଣେ ନୋହିଲେ ଚୂଡ଼ା ନ ପୂରଇ ତାହା
ଦରପେଟା ହୋଇ ସେହୁ କାଟୁଛନ୍ତି କାଳ ।
ଏ ପତ୍ର ପାଇଣ ତୁରା ପଠାଇବେ ଟଙ୍କା;
ଅନ୍ତତଃ ରେଲ ଖର୍ଚ୍ଚା ପାଇଗଲେ ଅମ୍ଭେ
ସିମଲା—କାଲକା ଟ୍ରେନେ କାଟିବୁଁ ଟିକଟ ।

ବ୍ରିଟିଶ ବୋଲଣ ଏକ ଶ୍ୱେତକାୟ ଜାତି,
ସସାଗରା ଭାରତରେ କରନ୍ତି ସଙ୍ଗତି,
ଦିଲ୍ଲୀ ନଗରରେ ଅଛି ତାଙ୍କ ରାଜଧାନୀ,
ସେ ଠାରେ ଅଛନ୍ତି ଏକ ରାଜ ପ୍ରତିନିଧି
ଷଣ୍ଢରେ ସରକାରୀ ବାଡ଼, ତୁମ୍ଭର ସମାନ ।
ରଖିଛନ୍ତି ବଡ଼ ବଡ଼ ଷଣ୍ଢ,
ଯାହା ଦେଖି ଆମ୍ଭ ମନ ହୁଏ କାଲ୍ ବାଲ୍;
ଆମ୍ଭର ଷଣ୍ଢମାନ ହୋଇଲଣି ବୁଢ଼ା,
ଭାବୁଛୁ ତାହାକୁ ଶୀଘ୍ର ଗୋଶାଳାରେ ଦେଇ
ଗଜାଷଣ୍ଢ ଏକଗୋଟା ନେବା ବଦଳାଇ ।
ବାହବ ଯେପରି ସେହି ଷଣ୍ଢ ପାଣି କେତେ,
ଆଉ ମଧ୍ୟ ଏଠା ଷଣ୍ଢ ଅଟେ ପ୍ରଜନକ;
ଆମ୍ଭ ବୁଢ଼ା ଷଣ୍ଢପରି ନୁହେଁ ବ୍ରହ୍ମଗୃହୀ ।
ଆଣ୍ଡା ହେଲେ ଭଲ ଦେଖି ଗାଭୀ ଏକଗୋଟା
ସଙ୍ଗେ ନେଲେ କରିବାଟି ଆମ୍ଭେ Cross breed ।

ଭାରତେ ନାହାନ୍ତି ଆଉ ପୂର୍ବ ଆର୍ଯ୍ୟ ଜାତି,
ସମସ୍ତେ ବୋଲନ୍ତି 'ହିନ୍ଦୁ' ଆଉ 'ମୁସଲମାନ';
ଆଉ ଏକ ନୂଆ ଜାତି ହୋଇଛି ପଇଦା
ନାମ ତାର ଅଟେ 'ହରିଜନ' ।
ମୋତେ ଲଗେ ଅଟେ ଏହା ହରିଙ୍କର ଫନ୍ଦ,
ନିଜ ଭକ୍ତ ଗାନ୍ଧୀନାମେ ବ୍ୟକ୍ତିକୁ ପଠାଇ
ନିଜ ନାମେ ଦଳ ଏକ ଗଢ଼ିଛନ୍ତି ସେହି ।
ଯେପରି ଦେଖୁଛୁ ମୁହିଁ ଅଳପ କାଳରେ,
ସମଗ୍ର ଭାରତ ପାଲଟିବ "ହରିଜନ",
ଲୁପ୍ତ ହେବ ହର ପୂଜା, ହରଙ୍କ ପ୍ରଭାବ,
ହରଙ୍କ ପ୍ରତିଷ୍ଠା ଆଉ 'ହର ହର' ଧ୍ୱନି
ଭାରତ ମଣ୍ଡଳୁ, ଏକାବେଳେ ।
ଏଥିଁ ବଳି ଦୁଃଖ ଆଉ ହୋଇପାରେ କିସ !
କୈଳାସର ହେଲା ସର୍ବନାଶ,
ବିଷପରି ଲାଗୁଛି ଆମ୍ଭଙ୍କୁ,
ଅଙ୍ଗ ଉଠେ ଜଳି ଦାଉ ଦାଉ,
ଏତେ ଅପମାନ ଗାନେ ସହ୍ୟ ନୁହେଁ ଆଉ ।
ବିଷ୍ଣୁଗଣେ, ଶିବଗଣେ ଚିର ଆଗ ଅରି,
ବିଷ୍ଣୁ କେବେ ଶିବଙ୍କର ନ ଦେଖନ୍ତି ଶିରି,
ତେଣୁ ହରିନାମ ଏଥିଁ ପୋଛିବା ନିମନ୍ତେ,
ହରିଙ୍କର ଏ କୌଶଳ ପଡ଼ୁଅଛି ଜଣା;
ଏଣୁ କଣ୍ଟକଣା ।
ତୁରନ୍ତ ନ କଲେ ଆମ୍ଭେ ହୋଇବୁଁ ଅରଣା ।
ହଣା ପଞ୍ଚ ଏଇଲଗେ କରିବା ଉଚିତ,
Propaganda ଭୟଙ୍କର,
Massର ମଧ୍ୟରେ;
ସଭାକରି ଝାଡ଼ିବା ବକ୍ତୃତା,
ଖବର କାଗଜେ ଲେଖି ବିରାଟ ପ୍ରବନ୍ଧ,
ରେଡ଼ିଓ, ପୋଷ୍ଟର ଆଉ Pamphlet ଆଦି
ହରିବ ପ୍ରଭାବ କରିଦେବା କୁପକାତ୍,
ଚାରି ଆଡ଼େ ହେବ ଖାଲି 'ହର ହର' ଧ୍ୱନି ।
ତା ପରେ ହରଙ୍କ ଏହି 'ଗାନ୍ଧୀଦଳ' ପରି ।
ଗଢ଼ିବା ଏଠାରେ ଦଳ ନନ୍ଦୀଦଳ ନାମ;
ତାଙ୍କର ଯେପରି ଅଛି 'କଙ୍ଗରସ' ସଭା,
ଆମ୍ଭର ହୋଇବ ସଭା, ନାମେ 'ବ୍ୟଙ୍ଗରସ' ।
'ହରିଜନ' ନାମ ଦେଇ କରିବା ଉଦ୍ଧାର
ଦଳିତ, ମଥିତ, ସର୍ବ ଅଛୁତ ମାନବ ।
ଏ କଥା କରିବା ପାଇଁ ବହୁ ଟଙ୍କା ଲୋଡ଼ା,
କର ତଡ଼ା ବଢ଼ି,
Bribe ଆଉ Subsidy ର ହେବ 'ଛଡ଼ା ଛଡ଼ି'
ଏକକେବାରେ ତାହା ହୁଡ଼ା ହୁଡ଼ି,
ଜଡ଼ାଜଡ଼ି, ଗଡ଼ାଗଡ଼ି ଅବା କେତେବେଳେ ।
ସତ୍ୟାଗ୍ରହ କରି ସେହି ହୋଇଛନ୍ତି ବଡ଼,
ସତ୍ୟର ବିଗ୍ରହ ଆମ୍ଭେ କରିବା ଏଥର ।
ନୂତନ କଳ୍ପନା ଆଉ ନୂତନ ଯୋଜନା,
ପୁରା ଦମ୍ ନୂଆ ଆଇଡ଼ିଆ (idea)
'ଗାନ୍ଧିବାଦ' ଧ୍ୱଂସ କରି ନବ 'ନନ୍ଦୀବାଦ' ।
ଗାନ୍ଧିବାଦ ହୋଇଲଣି ଏବେ ବିସମ୍ବାଦ,
ଚାଖିବାକୁ ଲାଗୁଛି ବିସ୍ୱାଦ;
ଗାନ୍ଧିବାଦ ଜରାଜୀର୍ଣ୍ଣ ହେଲାଣି ଦୁର୍ବଳ,
ଆପେ ଟଳମଳ
କ୍ରମେ ହେଉଛି ଅଚଳ,
ଏହି ବେଳେ ଦେଲେ ତହିଁ ଭୀଷଣ ଆଘାତ,
ଧୂଳିସାତ୍ ହୋଇଯିବ ଭାରତ ମଣ୍ଡଳ,
ଉଠିବ ନନ୍ଦୀବାଦର ତୁମୁଳ ତୁଫାନ,
ସର୍ବେ ନନ୍ଦୀବାଦୀ ମାତି ବ୍ୟଙ୍ଗରସ ଦଳେ,
ପାଦକୁ ଆକାଶେ ଟେକି ଚାଲିବେ ମୁଣ୍ଡରେ;

ଖେଳିଯିବ ନବ ଉନ୍ମାଦନା,
ସରବେ ଉଠିବେ ଗର୍ଜ୍ଜି କରି ମହାନାଦ,
'ନନ୍ଦୀବାଦ, ଜିନ୍ଦାବାଦ, ଜିନ୍ଦାବାଦ' ବୋଲି,
ଦ୍ୱିତୀୟ ରିପୋର୍ଟ ଅଙ୍କ ହୋଇଗଲା ଶେଷ ।
ତୃତୀୟେ କରିବି ପେଶ୍ ନୂଆ ଏକ କେସ୍ ।

—ନନ୍ଦୀ

## ତୃତୀୟ ରିପୋର୍ଟ

ପିତାମାତା ଶ୍ରୀ ଶମ୍ଭୁଙ୍କୁ ନନ୍ଦୀର ଓଳଗି,
ଗଣେଶର ତଥୈବଚ, ଏକାଳ ସନ୍ଧ୍ୟାରେ ।
ଦ୍ୱାପରର ଇନ୍ଦ୍ରପ୍ରସ୍ଥ ବୋଲାଇ ଯାହାକୁ
ଦେହଲି ସହର ତହିଁ ହୋଇଅଛି ଗଢ଼ା,
ପୂର୍ବେ ତହିଁ କରୁଥିଲେ କାଳେ ରାଜପଣ,
ବାଦଶାହ ନାମେ ଏକ ଦାଢ଼ିଆ ମାନବ ।
ତାଙ୍କୁ ଦେଇ ତଡ଼ି
ଶ୍ୱେତକାୟ, ଏକ ଜାତି ମାଙ୍କୁନିଆ ଜୀବ
ରାଜୁତି କରନ୍ତି ଏଥି ପ୍ରବଳ ପ୍ରତାପେ ।
କହୁଛନ୍ତି ଭାଷା ଏକ ଅବୋଧ୍ୟ ଅଶ୍ରାବ୍ୟ,
ଯଥା ଆମ୍ଭ ଭୂତଙ୍କର ଚେଁ-ମେଁ ବୋଲି ।
ଆମ୍ଭେ ତ ନ ପାରୁଁ କଳି, କିନ୍ତୁ ଆମ୍ଭ ଭାଇ
ଗଣେଶ, ଯାହାଙ୍କ ନାମ ପଣ୍ଡିତରେ ଲେଖା,
ସିଏ ମଧ୍ୟ ହୋଇଲେଣି ନାସ୍ତା-ନାବୁଦ୍ ।
ଦରାଣ୍ଡି ଦରାଣ୍ଡି କୋଷ, ଅମର, ମେଦିନୀ ।
କେବଳ ପାରୁଛୁ ବୁଝି କାମଚଳା କରି,
ଦେଖି ନବକୋଷ ଏକ, ନାମ ପାଲ-କୋଷ ।
ମାଗିଅଣା ତଅଣରେ ନ ଚଳଇ କାମ;
ତେଣୁ ଖଣ୍ଡେ ପାଲକୋଷ ହେବ କିଣିବାକୁ,
ଯାହା ହାତେ ଧରି,
ସମଗ୍ର ଭାରତ ଆମ୍ଭେ କରିବୁଁ ସଫର ।
ଟେଲିଫୋନ୍ ନାମେ ଏକ ଅଛି ଯନ୍ତ୍ର କଳ
ଭୂତ ସଙ୍ଗେ କଥାବାର୍ତ୍ତା ହେଉଛନ୍ତି ସର୍ବେ
ତ ଜବ ବ୍ୟାପର—ଅତି ଚମତ୍କାର ।
ତାର ସଙ୍ଗେ ଦେବାକୁ ତୁଳନା !
ଆମ୍ଭ କୈଳାସରେ କିଛି ନାହିଁ ଉଦା ମାଲ୍ ।
ଆଉ ଏକ ନୂଆ ଶକ୍ତ ଦେଖିଲୁଁ ଏଠାରେ,
ରେଡ଼ିଓ ତାହାର ନାମ—ପେଡ଼ିର ଆକାର

ଗ୍ରାମୋଫୋନ ବଡ଼ ଭାଇ, ମାନ ଶକ୍ତ ପରେ ।
ଏହା ମଧ୍ୟେ ଅଛି କିଛି ଭୌତିକ ଶକ୍ତି,
ନାଚେ, ଗାଏ, କଥା କହେ ଟିପିବା ମାତରେ
ଇଚ୍ଛା ଅଛି, ଗଲାବେଳେ ଏଥିରୁ ଯୋଡ଼ିଏ
ନେବା ସଙ୍ଗେ ପିତାମାତା ଉଭୟଙ୍କପାଇଁ ।
ଗଞ୍ଜାଇ ନିଶାରେ ଭାଇ ହୋଇବ ଗମ୍ଭୀର ।
ସିନେମା ନାମକ ପୁଣି ଆନ ଏକ କଳ,
ଇଲେକ୍‌ଟ୍ରି ଖେଳ ।
ଛବିଗୁଡ଼ା କହେ କଥା, ନାଚେ, ଗାଏ ଗୀତ,
ଏହା ଦେଖି ଆମ୍ଭେ ବଡ଼ ହୋଇଅଛୁଁ ଖୁସି,
କିନ୍ତୁ ଅବସ୍ୱସ୍ ।
ଏହା ଦେଖିବାକୁ ଲାଗେ ଟିକଟ ପଇସା ।
ଇଚ୍ଛା ହୁଏ ଆପଣଙ୍କୁ ଘେନି ଆସି ଥରେ,
ଗୁଂରଣା ଖରଚ କରି ନିଅନ୍ତି ଦେଖାଇ ।
ଅଛନ୍ତି ତହିଁରେ କେତେ ସ୍ୱର୍ଗ ଅପସରୀ,
ଗନ୍ଧର୍ବ, କିନ୍ନରୀ,
ନାହିଁ, ନାହିଁ, ତାଙ୍କ ବାପା, ପଣ ଗୋସବାପା
ଛଇ ଛଟକରେ ଅବା ସୁନ୍ଦର ପଣରେ,
ଅତୁଳ୍ୟ, ଅମୂଲ୍ୟ ପୁଣି ଅବୋଲ୍ୟ ସେ ଠାଣି
ତନୁ, ମନ ଏକାବେଳେ ହୋଇ ଟଣାଟଣି,
ହଣାହଣି ଲଗିଯାନ୍ତି ସକଳ ଇନ୍ଦ୍ରିୟ ।
ଟୋକା ଟୋକୀ ହେଉଥାନ୍ତି ବୋଲି ଟେକା ଟେକି
ଠେକା ଠେକି କେବେ, କେବେ କେବେ ଠୁଙ୍କା ଠୁଙ୍କି,
ନାମ ତାର ହୋଇଅଛି 'ଟକି' ।
ଦେଖିଲା ମାତ୍ରକେ ଥରେ ମରିଯାଏ ଟକ,
ତେଣୁ ଅବା ହୋଇଥିବ 'ଟକି' ନାମ ତାର
ନ ଦେଖିଲା ଲୋକ ଯାଚି କରେ ଟାକୁ ଟାକୁ,
ଏମନ୍ତ କମିଆ ଧରେ ଏହି ଟକି ଖେଳ ।
ଗଣେଶଙ୍କୁ ଲାଗିଲାଣି ଟକି ଦେଖା ନିଶା,
ହମେଶା ଦେଖନ୍ତି ଟକି ବଡ଼ୋର ନୟନେ,
ଛାଡ଼ିଲେଣି କୈଳାସର ଆଶା,
ଭଡ଼ା କରି ବସା,
ଭାରତେ ରହିବେ ବୋଲି ପାଞ୍ଚିଲେଣି ମନେ
ସିନେମା ଷ୍ଟାରଙ୍କ ପ୍ରେମେ ହୋଇ ଗଦଗଦ,
ଚିର କୌମାର୍ଯ୍ୟର ପଦ,
ରଦ୍ଦ କରିଦେବେ ବୋଲି କଲେଣି ଠିକଣା ।

ଅଡ଼ୁଅ ଏତକ ମାତ୍ର, ଦେବ ଗଡ଼େପତ
—ଦୋ ପାଞ୍ଚରେ ପଡ଼
ପଡ଼ିଛନ୍ତି ନଡ଼ିବଡ଼ି କିନ୍ତୁ,
ତାହାକୁ ବରଦେବ ହୋଇ ପାରୁ ନାହିଁ ଟିକ୍ ।
କାନନ, ସବିତା, ଲୀଳା, ଗହର, ସାଧନା,
ଏକକୁ ହରାଇ ଏକେ, ମାଧୁର୍ଯ୍ୟ ବୈଭବେ ।
ପଡ଼ିଛନ୍ତି ଧାଇଁଯାଇଣି,
Lottery କରିଣ ବାଛି ନେବେ ସେ ଜଣକୁ,
ଅବା ହିନ୍ଦୁ ବିଧାନରେ କରି Polygamy
ଗଣ୍ଡା ଦୁଇ ଷ୍ଟାର୍ ସଙ୍ଗେ ଚଳିବ Flirting—
ଆମ୍ଭ ପାଇଁ ଭୟ ନାହିଁ ପ୍ରଭୁ,
ଯେଣୁ ଅଟେ଼ୁ ଅହୁ ଯୋଗୀ, ଖାଣ୍ଟି ବ୍ରହ୍ମଚାରୀ,
ପୁଣି ତବ ଶିଷ୍ୟ ଆଜ୍ଞାକାରୀ ।
ଅଉ ମଧ୍ୟ, ଆମ୍ଭର ଏ ସିମାଞ୍ଜି ଚେହେରା
ଦେଖି ଅବା କେଉଁ ଷ୍ଟାର୍ କରିବ ପସନ୍ଦ ?
ଦିଲ୍ଲୀରେ ଦେଖିଛୁ ଏକ ବସ୍ତୁ ଅଭିନବ,
ତା ନାମ "ଦିଲ୍ଲୀକା ଲଡ଼ୁ" । ଅତି ମନୋରମ,
ଯେ ଖାଏ ପସ୍ତାଏ ହେତୁ, ନହି ଖାଏ ଯେହୁ
ସେ ବି ପସ୍ତାଏ ପ୍ରଭୁ, ଅସମ୍ଭବ ବାତ୍ ।
ତୁମ୍ଭ ପାଇଁ ଗଲଦେଲେ ନେବା ଦୁଇ ଲଡ଼ୁ ।
ଭାଙ୍ଗ ସଙ୍ଗେ ମାରିବାକୁ ହେବ ଆଛା ଗୁଟେ,
ମନୋଅର୍ଡରକୁ ଗୁହାଁ ରହିଛୁ ସତ୍ୱର,
ଟିକେ ଦେରିବାକୁ ହୋଇଲାଣି ତରବର,
ତେଣୁ ଏତକରେ ଆଜ ନେଉଛୁ ବିଦାୟ,
ତୁମ୍ଭ ଆଶୀର୍ବାଦ ଖାଲି ଆମ୍ଭର ସହାୟ ।

## ଚତୁର୍ଥ ରିପୋର୍ଟ

ହେ ପ୍ରଭୁ ଜାଣିବା ହେଉ ଆମ୍ଭର ରିପୋର୍ଟ
ପଡ଼ୁଛି ଏଠାରେ ଶୀତ ଭାରି ଘମା ଘୋଟ ।
ତୁରନ୍ତ ଦେଶରେ କାହିଁ ହେଲା ଭୂମିକମ୍ପ,
ଶୀତଟା ଏଠାକୁ ଏବେ ମାରିଅଛି ଲମ୍ଫ ।
ଗେରୁଆ ଲୁଗାରେ ଆଉ ନହୁଏ ସମାଇ,
ପେଣ୍ଟ, କୋଟ, ଯୋଡା ମୋଜା, ଲୋଡ଼ା ସେଥିପାଇଁ;
ସ୍ୱେଟର ଓ ଓଭରକୋଟ ଅତି ଦରକାର,
ଯୋଡ଼ାଏ ହୋଇଲେ ଶୀତ କରିଦେବୁ ପାର ।
ସେଥିପାଇଁ କିଛି ହେଲେ ଟଙ୍କା ପ୍ରୟୋଜନ,
ନୋହିଲେ ନ ଚଳେ, ଆଜ କାଲିକା ଫେସନ ।
କହିବ ଦିଲ୍ଲୀର ହାଲ, ଶୁଣିବା ହୋଇବେ,
ମନ କର୍ଣ୍ଣ ଦେଇ, ଟାଣି ଗଞ୍ଜେଇର ଦମ୍ ।
କରି ବମ୍ ବମ୍, ନାଚ ଝମା ଝମ୍ ।
ଦିଲ୍ଲୀକା ସହର ଦେଖି ହେଲି ବଡ଼ ଖୁସ୍,
ବାଦଶାହୀ କାରଖାନା – ଲଗିଛି ଜୁଲୁସ୍,
ଯୁଧିଷ୍ଠିରଙ୍କ ଇନ୍ଦ୍ରପ୍ରସ୍ଥେ, ଦେଇଅଛି ଦଳି,
ଦିଲ୍ଲୀର ପ୍ରାସାଦାବଳି, ନ ହୁଅଇ କଳି,
ଭଲି ଭଲି ପିଚ୍ ଦିଆ ଦାଣ୍ଡ;
ଚଳୁଛି ମଟର ହୋଇ ଘର୍ ଘର୍ ଘର୍ ।
ଲୋକମାନେ ହୋଇ ତରବର
ମାର ମାର, ଧରଧର କରୁଛନ୍ତି ସଦା ।
ବଡ଼ଲାଟଙ୍କର କୋଠା ଅତି ଚମତ୍କାର;
ମାନିଯିବ ହାର୍
ଇନ୍ଦ୍ରର ଅମରାବତୀ;
କି ଛାର କୁବେର ପୁର, କୈଳାସ ଭୁବନ !
ଭାବିଅଛି ଏ କୋଠିର ପ୍ଲାନ ନେଇ ଆଙ୍କି,
ଆମ୍ଭ ପୁର ଗଢ଼ାଇବା ସେହି ମଡ଼େଲରେ ।
ବିଶ୍ୱକର୍ମା ହୋଇଲେଣି ଅତି back date,
ଜନୈକ ବିଲାତ ପାସ୍ ନୂଆ architect
ନେଇଯିବ ସଙ୍ଗେ ମୋର ଆଜ୍ଞା ହେବ ଯେବେ ।
ଇଂରେଜଙ୍କର ରାଜଧାନୀ ହୋଇଅଛି ଦିଲ୍ଲୀ,
ପୁଷ୍ପ ମଧ୍ୟେ ମଲ୍ଲୀ ଯଥା, ନଗରେ ତେସନ ।
ଆସେମ୍ବି ବସଇ ଏଠି, ଷ୍ଟେଟ୍ କାଉନସିଲ୍,
ଜନସଭା, ରାଜ୍ୟସଭା, ବିଧିସଭା ଆଦି,
ଏଠାରେ ହୋଇଣ ଜୁଣ୍ଡ ଥୋକାଏ ମାନବ,
ଭୋଟ ବଳେ, କଳଗୋଳ ଲଗୁଥାନ୍ତି ସଦା;
ଅପଣା ଅପଣା ମଧ୍ୟେ ମୁଣ୍ଡେ ପିଟାପିଟି,
ଆଉ କାହିଁ ଛଟାଛଟି, ପୁଣି ପଟାପଟି,
ରଙ୍ଗମଞ୍ଚେ ନାଟୁଆ ଯେବଣ,
ଅବା ଗାର୍ଥ ପଦା ପଟେ ମାଙ୍କଡ଼ର ପଲ୍ଲ ।
ଦେଖିଣ ଲୋଟନ୍ତି ମଜା ଶ୍ୱେତକାୟ ବୃନ୍ଦ,
ନାକେ କାଠି ଦେଇ ହସି ମାରୁଥାନ୍ତି ତାଳି,
ମେଣ୍ଢାଙ୍କ ଲଢ଼େଇ ଦେଖି ଯେଭଳି ହାଟୁଆ ।
ଭାରତବାସୀଙ୍କ ମଧ୍ୟେ ଅଛି ବହୁ ଦଳ,

ପ୍ରତି ଜଣେ ପ୍ରତି ଘରେ, ଦଳ ଆନ ଆନ ।
କିଏ କେବେ କେଉଁଦଳ ଚିହ୍ନିବା ଦୁଷ୍କର ।
ପ୍ରଥମେ କଂଗ୍ରେସ ଦଳ, ଗାନ୍ଧି ରଜା ଯାର,
ଯାଙ୍କ ରାଜଧାନୀ ଅଟେ ଓ୍ୱାର୍ଦ୍ଧା ନଗର ।
ସେଠାବର ହୋଇଣ ରୁଣ୍ଡ କଂଗ୍ରେସ ଦଳିଆ,
ଦଳିଆ କୁକୁର ଭଳି ହୋଇ ଘାଉଁ ଘାଉଁ,
ଦେଶର ମାଲିକ ରୂପେ ମଣି ଆପଣାକୁ
ଦେଖାନ୍ତି ଫୌରବ ନାନା, ଝାଡ଼ ବୋଲ୍ ଗୁଲ୍—
ମନେ ମନେ ଧରି ହାତେ ଭାରତର ହାଲ୍ ।
ଏହାଙ୍କ ଧରମ ସାର ଅଟେ ସୂତାକଟା;
ଏହି ସୂତ୍ର ଧରି କାଲେ ହୋଇଯିବେ ପାର୍
ପର ଅଧୀନତା ରୂପ ମହା ପାରାବାର ।
ପୁଣି ଏହି ସୂତା ଦ୍ୱାରା ବୁଣୁଥାନ୍ତି ଜାଲ,
ଯେହି ଜାଲେ ଧରିବାକୁ ବାଳିଆ, ଶେଉଳ;
କେବଣ୍ଟି, ଦଣ୍ଡିଆ ଧରି ଚିପିବାକୁ ତଣ୍ଟି,
ଜାଲରେ ପକାଇ ଗଣ୍ଠି ଭିଡୁଥାନ୍ତି ଫାଶ ।
ତାଙ୍କ ବେନି ପାଶେ ସଦା ଝୁଲେ ବେନି ଅସ୍ତ୍ର ।
ସତ୍ୟ ଓ ଅହିଂସା ନାମ ଅଟଇ ତାହାର,
ଏ ଅସ୍ତ୍ର କାଟଣ ଅଟେ ଅତି ଚମତ୍କାର,
ବୋମା ଓ କମାଣଠାରୁ ବେଶି ବଳିଆର ।
ଏହି ଅସ୍ତ୍ର କରିପାରେ ରିପୁର ବିଜୟ,
ନମାରି ଶତ୍ରୁକୁ, ତାର ହୃଦୟକୁ ଜିଣି ।
ସିଧାବାଟେ ଏହି ଅସ୍ତ୍ର ନ ହୁଏ ଚାଳିତ,
ଉଲଟା ବାଗରେ ଏହା କରି ସଞ୍ଚାଳନ,
ଆପଣା ମଧ୍ୟରେ ସର୍ବେ ହୋଇ ଭିଡ଼ାଭିଡ଼,
ପରଖନ୍ତି ଅସ୍ତ୍ରର ପ୍ରତାପ,
ତେଣେ ହସୁଥାନ୍ତି ବସି ବସି 'ମାଆ ବାପ' ।
ଜନାବ ଜିନ୍ନାଙ୍କ ଅଟେ ଆନ ଏକ ଦଳ,
କଂଗ୍ରେସ ସହିତେ ହୋନ୍ତି ଭିଡ଼େ ଲଢ଼ାଲଢ଼ି;
ପୁଣି କେବେ ଜଡ଼ାଜଡ଼ି, ଅବା ଗଡ଼ାଗଡ଼ି,
ଉପରେ ଉପରେ—
ଫଡ଼ାଫଡ଼ି ଭିତରେ ଭିତରେ,
ବୃହତ୍ତ ଦୋ ଫାଙ୍କ କରି ସାରା ହିନ୍ଦୁସ୍ଥାନ୍ ।
ଭାରତକୁ ଚିରି ଦେଇ, କରି ଦୁଇଫାଳ
ଫାଳକର ଗାନ୍ଧିସ୍ଥାନ, ରଖାଯାଇ ନାମ,
ଆନର ହୁଅନ୍ତା ନାମ ଯେବେ ଜିନ୍ନା ସ୍ଥାନ,
ଦୁହିଁଙ୍କ ଅଡ଼ୁଆ ଛିଣ୍ଡି ଯାଆନ୍ତା ତୁରନ୍ତ ।
କେତେ ଦଳ, ଅନ୍ତର୍ଦଳ, ତଦନ୍ତର ଦଳ,
ସୂକ୍ଷ୍ମ ଦଳ, ସ୍ଥୂଳ ଦଳ, ବୁରଝାଣ୍ଡି ଦଳ,
ମହୃଷିଆ ଦଳ, ପୁଣି ଦଳ ଚିଙ୍ଗୁଡ଼ିଆ
ଇତ୍ୟାଦି ଅନନ୍ତ ଦଳ ଅଛନ୍ତି ଏଠାବେ;
କେତେ ବୁଡ଼ି ରହିଛନ୍ତି, ଭାସୁଛନ୍ତି କେବା ।
ଏ ଅନ୍ତେ ତାଙ୍କର କଥା ଲେଖିବି ବଖାଣି,
ଆଜି ଏତିକରେ ଦାସ ମାଗୁଛି ମେଲଣି ।

## ପଞ୍ଚମ ରିପୋର୍ଟ

ପ୍ରଭୋ, ତବ ପୟରକୁ କୋଟି ଦଣ୍ଡବତ,
ଏଠି ହେଉଅଛୁ ଆମେ ଭାରି ହରକତ;
ପଠାଇଲେ ନାହିଁ ଟଙ୍କା, ଶଙ୍କା ହୁଏ ମନେ
ଭୋଜନ ବିହୁନେ ଯିବା ସମନ ସଦନେ;
କି ଅବା ଖଦଡ଼ ପିନ୍ଧି, ହୋଇ ସତ୍ୟାଗ୍ରହୀ,
କଂଗ୍ରେସ ଦଳରେ ମିଶି 'ଜୟ ଗାନ୍ଧି' କହି
ବୁଲିଣ ମାଗିବୁଁ ଚାନ୍ଦା ଚାରିଅଣା କରି,
କମିଶନ ନେଇ କାଟି, ଦେବୁ ପେଟେ ଭରି ।
ଏହା ଛଡ଼ା ଅନ୍ୟ ପନ୍ଥା ନ ଦିଶଇ ଆଉ,
ଯୁଦ୍ଧ ଲାଗି ଚଢ଼ିଲାଣି ଚାଉଳର ଭାଉ ।
ଭାରତର 'ଦଳ' କଥା କହିବି ବଖାଣି,
କି ନାମ ତାହାର ପୁଣି କେବଣ ସ୍ୱରୂପ,
ଭିତରେ କି ଗୁଣ କାର, ବାହାରେ କି ବୋଲି
ଇତ୍ୟାଦି ଅନେକ କଥା ଯାହାକି ମାଲୁମ ।
ଦିଲ୍ଲୀରୁ ସଠାଙ୍ଗ ଆମ୍ଭେ ଆସିଛୁ ଓ୍ୱାର୍ଦ୍ଧା,
ହୋଇଅଛି ଯାହା ଏବେ ନୂଆ ରାଜଧାନୀ;
ସର୍ବଦଳ ସମ୍ମେଳନ ହେବ,
ପୁଣି ନୂଆ ନୂଆ ଦଳ ଆବିର୍ଭାବ ହୁଇଁ ।
ଏଠାରେ ବସନ୍ତି ଗାନ୍ଧି, ଧ୍ୟାନ ଜ୍ଞାନ ବେଶେ
ଶଙ୍କର ସଦୃଶ,
ବାଘାମ୍ବର ସ୍ଥଳେ ଏକ ଖଦ୍ୟାମ୍ବର-ଧାରୀ;
କୈଳାସ ରାଜ୍ୟର ଯଥା ଈଶ୍ୱର ଆପଣ,
ସେହିପରି ଭାରତର ଏ ଭାଗ୍ୟ ବିଧାତା;
ଗାନ୍ଧି-ଭକ୍ତବୃନ୍ଦ ସଦା କହନ୍ତି ଏଭଳି
ପୂଜା, ଆରାଧନା, ସ୍ତୁତି ସବୁ ଯେହିପରି,

ଶୈବଗଣ ସେବୁଥାନ୍ତି ତୁମ୍ଭଙ୍କୁ ଯେ ରୂପେ;
ତୁମ୍ଭର ଉଦର ଭଳି ନୁହଇ ଉଦର,
କ୍ଷୀଣ କାୟ, ଗେଞ୍ଜ ପେଟା, ଲଣ୍ଡିଆ ମସ୍ତକ,
ଦନ୍ତହୀନ, ଦଣ୍ଡଯୁକ୍ତ ନାକରେ ଚଷମା ।
ତୁମ୍ଭେ ହୋଇବାରୁ ବୁଢ଼ା ହେଲଣି ଗୁଲଶା,
ତେଣୁ ହୋଇପାରେ ଲୋଡ଼ା ଚଷମା ଗୋଟିଏ;
ଭାବୁଅଛୁ ଛ'ପଇସା ମୂଲ୍ୟ ଦେଇ ଏକ
ନୀଲମ ଦୋକାନୀଠାରୁ କିଣିବା ଚଷମା;
ଯେଉଁଥିବ ତୁମ୍ଭପାଇଁ ଏଙ୍ଗେ ଯିବ ନେଲେ ।
ଆଖିରେ ଲଗାଇ ତାକୁ ଖବରକାଗଜ,
ପଢ଼ିବ ଏଣିକି ପ୍ରାତେ ଗୁହା ଖାଉଁ ଖାଉଁ ।
କହିବି ଦଳଙ୍କ କଥା, କର ଅବଧାନ
ପ୍ରଥମେ କଂଗ୍ରେସ ଦଳ ସବୁଠୁ ଜବର,
ବଢ଼ଇ ଛାଡ଼ଇ ଯଥା ଇଣ୍ଡିଆ ରବର ।
ସ୍ଥିତି ସ୍ଥାପକତା ଗୁଣେ ଏହାଠାରୁ ବଳି,
ଅନ୍ୟ ଦଳ କେହି ନାହିଁ ଭାରତ ମଣ୍ଡଳେ ।
ଶତ୍ରୁଙ୍କୁ ଦେଖିଲେ ପ୍ରାଣ ଯାଆନ୍ତି ଖସଡ଼ି,
ନାହାଣ୍ଡିଆ ବଖତରେ ହୁଅନ୍ତି କେଞ୍ଚାଏ
କେବେ ବା ଧରନ୍ତି ଚୁଟି କେବେ ବା ଚରଣ,
ସ୍ୱ ଯାବ କତାପ ଧରି କରୁଥାନ୍ତି ରଣ ।
ଗାନ୍ଧି ମହାବଳ ଏହାଙ୍କର ସେନାପତି,
ନିର୍ମିଛନ୍ତି ଅସ୍ତ୍ର ଏକ ଯା'ନାମ 'ଅହିଂସା'
'ସତ୍ୟ' ମନ୍ତ୍ରେ ପୂତ କରି ଛାଡ଼ିଦେଲେ ତାକୁ
ଶତ୍ରୁର ବୁକୁରେ ବିଦ୍ଧ କରିଦିଏ କାବୁ ।
ବଣିଆ ଶାଳରେ, ନାନା ମସଲା ମିଶାଇ,
ତିଆରି ହୋଇଛି ଏହା, ଗାନ୍ଧିଙ୍କ ସ୍ୱହସ୍ତେ ।
ହିଟଲର ମିତ୍ର ଅସ୍ତ୍ରଠାରୁ ବଳିଆର
ନ ମାରି ଶତ୍ରୁଙ୍କୁ ଖାଲି କରିଦିଏ ମୋହ,
ଦସ୍ୟୁରେ ତରଳି ତାର ଉଠଇ ଯେ କୋହ ।
ତେଣୁ ସେ ସ୍ୱୀକାର କରେ ନିଜ ପରାଜୟ,
ବାହୁ ତୋଳି ନାଚି ନାଚି ବୋଲେ 'ଗାନ୍ଧି ଜୟ' ।
ଖଦଡ଼ ବସନ ଅଟେ ଏହି ଦଳ ଭେକ,
ଭିକ୍ଷଣ ମାଗନ୍ତି ଭିକ ଘରେ ଘରେ ଯାଇ,
ସାମାନ୍ୟ ସିକିକିଟିଏ ଦିଅ ବୋଲି କହି ।
କିଛିଦିନ ଅଗ୍ରେ ପାଇ ଲୋକଙ୍କର ଭୋଟ,
ଏହି ଦଳ ପିନ୍ଧିଥିଲେ ସ୍ୱରାଜ୍ୟର ମୁକୁଟ,
କିନ୍ତୁ ହିଂସା ପୂର୍ଣ୍ଣ କଥା ଶୁଣି ମାନବାନେ,
ବୀରଗଣ ଗାଦି ଛାଡ଼ି ଗଲେ ମାନେ ମାନେ ।
ବହୁତ କୋସିସ୍ ପୁଣି କରୁଛନ୍ତି ଏବେ,
ପୁଣି ଅସି ସରକାର ନେବାପାଇଁ ହାତେ;
ନାକ କାନ ମୋଡ଼ି ହୋଇ ବୁଝିଲେଣି ମନେ
କେବେହେ ମୁହଁଖିଆ ବୁଦ୍ଧି କରିଲେ ନ ଜାଣି ।
ସେ ନିମନ୍ତେ ଗାନ୍ଧିଜୀଉ ହୋଇଛନ୍ତି ସଙ୍ଗ,
ବଡ଼ଲାଟ ଭବନରେ ଦେବେ ପଦରଙ୍କ ।
ଏ ଦଳର ଉପଦଳ, ପ୍ରଦଳ ଇତ୍ୟାଦି
ବହୁଶାଖା ପରଶାଖା ରହିଛନ୍ତି ଢେର ।
ସବେଁ ଲହ ଲହ ଜିହ୍ୱା 'ଚୁଟି-ମାଛ' ପାଇଁ,
କିନ୍ତୁ ମୂଳ କେତେଜଣ ନ ଛାଡ଼ନ୍ତି ବାଟ ।
ହୋଇଣ ଡାହାଣା ଦଳ ଅଛନ୍ତି ଅବୋଧ,
ସବୁ ଚୁଟି-ମାଛେ ଦେଇ ଉଦରକୁ ଭରି ।
ଏଥିରୁ ଉପୁଜି ଅଛି ବାଇଁଆ ଯେ ଦଳ,
ତାହାର ପ୍ର-ଦଳ ପୁଣି ଅଛନ୍ତି ଅନେକ ।
ସାମ୍ୟବାଦୀ ଦଳ, ଆଉ କିଷାନର ଦଳ,
ମଜୁରିଆ ଦଳ ପୁଣ ଫରୱାର୍ଡ୍ ଦଳ,
ରାୟ ଦଳ, ହାୟ ଦଳ, ଦାୟଦଳ ଆଦି
ସବୁଦଳ ନାମ ଯଦି ଲେଖିବଇଁ ମୁହିଁ
ଅନନ୍ତ ଭାରତ ପୋଥି ହିବ ସିନା ହୋଇ,
ତେଣୁ ଅଜ ଡିଙ୍କରେ ମାଗୁଛି ମେଲାଣି,
ଗୁହା ଖାଇବାର ବେଳ ହୋଇ ଯେ ଗଲାଣି ।

—ନନ୍ଦୀ

## ଷଷ୍ଠ ରିପୋର୍ଟ

ଦଣ୍ଡବତ ପ୍ରଣିପାତ ପିତାଙ୍କ ଚରଣେ,
ଗଣନାଥ ନନ୍ଦୀ ତୁହେଁ କରୁ ଜଣେ ଜଣେ ।
ପାଇଅଛୁଁ ତୁମ୍ଭଠାରୁ ରେଜେଷ୍ଟ୍ରୀ ଖାମ୍ ।
ଲଫାପା ଅନ୍ଦର କିନ୍ତୁ ଶୂନ୍ୟ ତମାମ୍ ।
ମନେ ହୁଏ ତହିଁ ମଧ୍ୟେ ଅସିଥିଲା ନୋଟ,
ବାଟରେ ହୋଇଛି ନଷ୍ଟ ସବୁଯାକ ଭୋଟ ।
ଅମ୍ଭ ପକ୍ଷ ପାଇ ତୁମ୍ଭେ କରିବ ଦରଖାସ୍ତ
ଇଣ୍ଡିଆର ଡିରେକ୍ଟର ଜେନେରାଲଠାକୁ ।
କିନ୍ତୁ ତହିଁ ଫଳ ନାହିଁ କିଛି;

## ଭବିଷ୍ୟ ଭାରତ

ଯେ ହେତୁ ସେ ହୋଇନାହିଁ ଇନ୍‌ସିଓର ଲଫାପା ।
ତେଣୁ ଅଜାଠାରୁ ଯେବେ ପଠାଇବେ ଟଙ୍କା,
ମନିଅର୍ଡର ଦ୍ୱାରା କିମ୍ବା କରି ଇନ୍‌ସିଓର,
ପଠାଇବେ ତାହା;
ନୋହିଲେ ଉଠିବ ସାହା ଆମ ସଭିଙ୍କର ।
ଭାମୁଡ଼ିଲେ ବାହା ପଛେ ନାହିଁ କିଛି ଫଳ ।
କଂଗ୍ରେସ ଦଳର ବାଦେ ଆନ ଏକ ଦଳ,
ନାମ ତାର ମୁସ୍‌ଲିମ୍ ଲିଗ୍ ।
ସେ ଦଳର ବାଦଶାହ ଅଟନ୍ତି ଯେ ଜିନା—
ନାଚନ୍ତି ଧିନାକ ଧିନା ମାରି ବାହୁ ସ୍ଫୋଟ ।
ସେନାପତି ସିକନ୍ଦର, ଫଜଲୁଲ ହକ,
ଭାରତର ଦୁଇ ଘାଟି ବସିଛନ୍ତି ଜଗି,
ଏଆଡ଼େ ପଞ୍ଜାବ ଆଉ ସେ ପଟେ ବେଙ୍ଗଲ
ମୁସଲିମ ଭାଇରେ ନିଏ ଗଢ଼ିତେଛେ ଦଳ,
ଭାରତକୁ କରି ଖାନ୍ ଖାନ୍
ଗଢତେ ଚଲେଛେ ହିନ୍ଦୁସ୍ଥାନ୍, ପାକିସ୍ଥାନ୍ ।
ଏହାଙ୍କର ନାଟ ଦେଖି ବୀର ସାଭରକର,
ହୋଇଛନ୍ତି ଅତି ଆଗଭର
ତରବର ସଂଗଠନେ ହିନ୍ଦୁଜାତି ଦଳ
'ମହାସଭା' ନାମେ ।
ତୁମୁଳ ସଂଗ୍ରାମେ, ସାଜ ସଜନ୍ତି ତଲ୍ୱାର,
ରେ-ରେ ନାଦେ କରି ମାର, ମାର;
ଗଲ ଗଲ ହିନ୍ଦୁଜାତି, ବୁଡ଼ିଲ ଏବାର ।
ତେଣେ ବୀର ଅମ୍ବେଦକାର,
ହରିଜନେ ଧରି,
ହର ଘଡ଼ି ଲଗିପଡ଼ି ଛାଡ଼ୁଛନ୍ତି ରଡ଼ି
ହେଇ ଆମେ ଦେଲୁ ଛାଡ଼ି ହିନ୍ଦୁର ଧରମ;
ହୁମ୍ ହୁମ୍ ହେଉଛନ୍ତି ସଦା,
ନ ମାନନ୍ତି ଅଦା ପଦା ଛଲେ,
ଚଢ଼ା ଚଢ଼ି କରନ୍ତି ସର୍ବଦା ।
ସାମ୍ୟବାଦୀ ନାମେ ପୁଣି ଦଳ ଏକ ଆନ,
ତୁଣ୍ଡ ବାଇଦରେ ଖରେ ବହାନ୍ତି ତୁଫାନ ।
ଉଚ୍ଚ ନୀଚ ଭେଦାଭେଦ କରିଦେବେ ସାଫ;
ଏ ନିମନ୍ତେ ମାରୁଛନ୍ତି ବଡ଼ ବଡ଼ ଲଫ୍,
ହାଫ୍ ଛାଡ଼ି ସମଗ୍ର ଭାରତେ ।
ଏପରେ କିଷାନ ଦଳ ବଳରାମ ଗୋଷ୍ଠୀ,
ମଣୁଛନ୍ତି ପକାଇବେ ଲଙ୍ଗଳରେ ତାଡ଼ି ।
ସମସ୍ତ ଦେଶଟା, ଅବା ଉଡ଼ାଇବେ ଫାଡ଼ି
ଜମିଦାରମାନଙ୍କର ଯେତେ ଘରବାଡ଼ି ।
ମଜୁରିଆ ଦଳ ପୁଣି, ସର୍ବହରା ନାମ,
କରୁଛନ୍ତି ବେଶ ଉଦ୍ୟମ ।
ଶୋଷକ ଧନିକ ଗଣେ ପୋଛିଦେବେ କୁଳ
ଧର୍ମଘଟ ସ୍ଥାପନ କରି ଘରେ ଘରେ ।
କି ଭଳିଆ ଘଟ ତାହା ଦେଖି ନାହିଁ ନେତ୍ରେ,
ମାଟିର ଘଟକି ତାହା ପିତଳ ନିର୍ମିତ ।
ମାତ୍ର ସେ ଘଟଟି ଅଟେ ଜବର ଟାଣୁଆ,
ଖାସ୍ ବିଲାତି ମାର୍କା, made in England
ପ୍ରଜା-ପରିଷଦ ନାମେ ଅଉ ଏକ ଦଳ
ଖଳ ଖଳ ହେଉଛନ୍ତି ଟେଙ୍ଗମାଛ ପରି,
ପକାଇଲେ ଧରି,
ଖସିଡ଼ି ପଳାନ୍ତି ହାତୁ ଶୁନଚରୁ ମାରି ।
ଶୁଣିଲି ଏ ଦଳ ସବୁ ଜନମେ ଜଙ୍ଗଲେ,
ପାହାଡ଼ ପତଡ଼ା ପରେ ବାଲି ଛତୁ ପରି
ସବାଙ୍କୁ ଦେଇଣ ତଡ଼ି କରି ହରବରି,
ସ୍ଥାପିବେ କଂଗ୍ରେସ ରାଜ ଟଙ୍କର ଜୁଇଁରେ ।

ଖୁଦାଇ ଖିଦ୍‌ମଦ୍‌ଗାର, ଅଉ ଖାକସାର୍,
ଶକ୍ତି ଦଳ, ସେବା ଦଳ, ମହାବୀର ଦଳ,
ଇତ୍ୟାଦି ଅନେକ ଦଳ ହୋନ୍ତି ବଲ ବଲ,
ଦେହରେ ଲଗିଲେ ଗାଜ ହୁଏ ଗଲ ଗଲ—
ବାଇଗଣ, ବିଛୁଆତି ଅବା ବଣ ଓଲ ।
ଏମନ୍ତେ ସବୁ ନାହିଁ ଖୋଜିଲେ କଥା;
ଲେଖି ଲେଖି ହାତ ପୁଣି ହୋଇଲଣି ବଥା ।
ତେଣୁ ଆଜ ମାଗୁଛି ବିଦାୟ !
ଭୋକରେ ଅଉଟେ ପେଟ, ପ୍ରାନ୍ ଯାୟ୍ ଯାୟ୍ ।

ଶ୍ରୀଚରଣ-ପଙ୍କଜ-ମଧୁକର
—ନନ୍ଦୀ

## ସପ୍ତମ ରିପୋର୍ଟ

ଅଦାବ୍, ଅଦାବ୍ ବାପା ଅନ୍ଧ ଦୁହିଁଙ୍କର,
ହିନ୍ଦୁସ୍ଥାନୀ କାଏଦା ଏ ସଭ୍ୟ ଜଗତର ।

କୁହାର ପ୍ରଣାମ ଆଉ ଦଣ୍ଡବତ ଆଦି
ଏ ଯୁଗେ ଗଲଣି ଉଠି, ଅସଭ୍ୟତା ବୋଲି,
ନୂଆ କଲଚର ଆଉ ମଡ଼ାର୍ଣ୍ଣ ସମାଜେ ।
ତେଣୁ ନ ଧରିବେ ଦୋଷ, ନ ବହିବେ ରୋଷ,
ନ କରିବେ ଭଲେ ମାନି ମନେ ଅବଶୋଷ ।
ହେଲଣି ଅଧବାଟିଆ ସତ୍ୟଯୁଗ କାଳେ
କହୁଛନ୍ତି ଏଠା ଲୋକେ,—ତେଣୁ ଲାଗେ ଗୋଳ
କୋଳାହଳ ଚାରିଆଡ଼େ 'ସତ୍ୟ—ସତ୍ୟ' ବୋଲି ।
ସତ୍ୟନାମେ ଉଡ଼ାଇ ପତାକା ।
ଗାନ୍ଧିଆ ଅଗ୍ରୁଆ ଦଳ ହୋନ୍ତି ଭଡ଼ା ଭଡ଼ି ।
ଚଢ଼ା ଚଢ଼ି ହୋଇବାକୁ ପରସ୍ପର ଶିରେ
ଲାଗିଛନ୍ତି ହୁଡ଼ା ହୁଡ଼ି ସଦା ।
ପହିଲୁ ଚାଲିଲା ଖାଲି ତୀକ୍ଷ୍ଣ ବାକ୍ୟ ବାଣ,
ତଦପରେ ଟେଖା-ଟେଖା ଚାଲେ ଖର ଶାଣ;
ରାଜେନ୍ଦ୍ର, ଶରତ୍ ମଧ୍ୟେ—ଦୁଇ ସେନାପତି ।
ଏ ଅନ୍ତେ ଲେଖନୀ ମୂନ ଚାଲିଲା ଜବର ।
ଚାଲେ ଯଥା ତନ୍ତୀଘର ମାକୁ
ଏ ପାଖ ସେପାଖ ସଟା ସଟ୍, ଖଟା ଖଟ୍ ।
ଫଟା ଫଟ୍ ଲାଗିଲା ସମର ।
ଘୋର ହୁହୁଙ୍କାର,
ତାଣ୍ଡବେ ଭାରତେ ଯେତେ ରଥୀ ମହାରଥୀ;
କୁରୁକ୍ଷେତ୍ର ଆଜି ଯଥା କୌରବ ପାଣ୍ଡବ,
ଏକଙ୍କୁ ଅନେକ ଦେଇ ଖଣ୍ଡ ଧମକାଣୀ ।
ହୁଣ୍ଡା ଗୁଣ୍ଡା ସଙ୍ଗୀ ଏବେ ପାଲଟିଛନ୍ତି ବଙ୍ଗ,
ଅହିଂସାର ଅବତାର ଗାନ୍ଧି ମହାତ୍ମା,
ବଙ୍ଗ ବଜେ ଭରିବାର କାଳେ
'ଯାଅ ଫେରି ଯାଅ ଫେରି' ପଡ଼ିଗଲା ହୁରି,
'ଗାନ୍ଧିବାଦ ଧ୍ୱଂସ ହେଉ' ପଡ଼ିଲା ଚିତ୍କାର ।
କିଏ ଦେଖାଇଲା କୃଷ୍ଣ ପତାକା ହଲାଇ,
କିଏ ଦେଲା ମୁଣ୍ଡ ପରେ ଅନଳ ଲଗାଇ,
ଆଉ କେଉଁ ବୀର ନେଇ ଟେକା ହତିଆର,
ଅହିଂସା ସମରେ ହେଲେ ଜଖମା ଜଖମ ।
ସତ୍ୟ ଅହିଂସାର ଶିକ୍ଷା ହୋଇଲା ଚରମ,
ଗରମା ଗରମ ମାଲ ବଢ଼େ ମଜାଦାର୍ ।
ଆପଣା ଆପଣା ମଧ୍ୟେ କଲେ ଲଢ଼ାଲଢ଼ି,
ଏହାଙ୍କର ହୋଇଯିବ ହେନ୍ତା ଦୁରନ୍ତ ।
ତଦନ୍ତେ ହୋଇବେ କ୍ଷମ ଶତ୍ରୁ ସହ ରଣେ ।
ଏହି ହେତୁ ହେଉଛନ୍ତି ଆଂଡ଼ା ତାଲିମ୍
ଭାରତୀୟଗଣ ସେନା ସ୍ୱାଧୀନତା କାମୀ
ଏହାଙ୍କ ବିକ୍ରମ ଦେଖି ଶତ୍ରୁଙ୍କୁ ତରାସ,
ପେଣ୍ଟୁଲୁନ୍ କଣା କରି ରହିଲେଣି ଝାକି,
ଅଛି ଖାଲି ବାକି ।
କରିବେ ଲଙ୍ଗୁଡ଼ ଜାକି ପୋଖରୀ ପ୍ରୟାଣ ।
ଲାଗିଅଛି ରାମଗଡ଼େ ମହା ଆୟୋଜନ,
ଭୂମୁଳା, ବିରାଟ, ପୁଣି ପ୍ରଗାଢ଼ ସେ କାଣ୍ଡ;
ବସିବ କଂଗ୍ରେସ ସଂଘ, ରଙ୍ଗମଞ୍ଚ ପରେ
ଭାରତର ଭାଗ୍ୟ ପଟା ଦେବେ ଲେଉଟାଇ
ନିର୍ବାଣ ମୁକତି ଆଣି ଦେବେ ହିନ୍ଦୁସ୍ଥାନେ—
ଖାଣ୍ଟି ଗାନ୍ଧିଦଳ ଲୋକେ ସତ୍ୟର ସେବକ ।
ପୁଣି ତଥି ଖଣ୍ଡେଦୂରେ ଭିଡ଼ିଛନ୍ତି ଅଣ୍ଟା,
ନିର୍ଗାନ୍ଧିଆ ତଡ଼ାଖିଆ ଗଡ଼ାଖିଆ ଯାକ
ପ୍ରଚଣ୍ଡ ବିକ୍ରମେ କରି କିଷାନ ସଂଗ୍ରହ ।
ଆସିବେ କିଷାଣ ଜନ ବିଷାଣ ବଜାଇ
ଉଡ଼ାଇଣ ମହାଦର୍ପେ ବିଦ୍ରୋହ ନିଶାଣ;
ପ୍ରଥମେ ଚାଲିବ ଖାଲି ଚଢ଼ାଉ-ଉତ୍ତର,
କ୍ରମେ ତାହା ନିଦ୍ରାକାରେ ହୋଇ ପରିଣତ,
ଠେକା ଫିଙ୍ଗା ଫିଙ୍ଗି; ସଙ୍ଗେ ଶିଙ୍ଘ ପଡ଼ାପଡ଼ି;
ପଞ୍ଝା କଷାକଷି ପୁଣି ମୁଥା ଭୁଷାଭୁଷି ।
ନିରସ୍ତ୍ର ଯେହେତୁ ସର୍ବେ ଅହିଂସା ସୈନିକ,
ବିନା ଅସ୍ତ୍ରେ ଲାଗିବ ସମର,
ଚାଲିବ କେବଳ ଛତା ଜୋତା ଚକ୍ର ଆଦି
ଘୁମୁଣ୍ଡିଆ ନିଆଁ ଲାଗି ଜଳିବ ଅଧିକ;
ଚାଲିଆ ବାଉଁଶ ହୋଇ ଉପୁଡ଼ା ଉପୁଡ଼ି
ଲାଗିବ ଅହିଂସା ଯୁଦ୍ଧ—ସତ୍ୟ ଧର୍ମ ରଣ,
(ପ୍ରଭାସରେ ଶରବଣ ଉପାଡ଼ି ଯେସନ,
ଯଦୁବଂଶ ଖେଳଥିଲେ) ବେନିଫିଟ୍ ମ୍ୟାଚ ।
ଏ କିଷାନ୍ ଜମାଏତ୍ ଝଣ୍ଡାବତ୍ ବେଶେ,
ପହୁଞ୍ଚି ପଶିବେ ଯାଇ କଂଗ୍ରେସ ପେଣ୍ଡେଲେ,
ଲାଗିଯିବ ହାତାହାତି ଭଲଣ୍ଟିଅର ମଧ୍ୟେ;
ତହୁଁ ଏହୁ ଜନସ୍ରୋତ ବସିବେଟି ମାଡ଼ି,
କଂଗ୍ରେସ ରେଷ୍ଟ୍ରମ ଆଉ କଂଗ୍ରେସ ଡଆସ୍,
ଧକ୍କାମାରି ଦେଇ କାଢ଼ି ଗାନ୍ଧିଆବୃନ୍ଦଙ୍କୁ

## ଭବିଷ୍ୟ ଭାରତ

ଦଖଲ କରିବେ ସଭି ମନ୍ତ୍ରୀପଦକୁ ବେଗେ,
'ବାମ ଅଧିକାର' ବୋଲି, ବାମରି କଂଗ୍ରେସ,
ଏ କାଳରେ ଶାନ୍ତିରକ୍ଷା ଫଉଜ ମଣ୍ଡଳ
ଦୂରେ ହୋଇ ଛିଡ଼ା—ହସୁଥିବେ ଗୁପି ଗୁପି
ଭାରତ ମୁକ୍ତିର ଦେଖି ଏହି ପରିଣତି ।
ଏ ବିପୁଳ ଯଜ୍ଞ ପାଇଁ ଲାଗିଛନ୍ତି ଉଦ୍ୟମ,
ଧମାଧମ୍ ଗୁଲେ ଆୟୋଜନ ;
ସମିଧ ଓ ହବି ଆଦି ହେଲାଣି ପ୍ରସ୍ତୁତ,
ଟାକାକର ରଥ କ୍ଷଣେ ଦେଖିବ ନୟନେ
ସଂହାର ମୂରତି ଧରି ନାଚିବେ କାଫର,
କରାଳ ବଦନା ଶ୍ୟାମା ସାଜି ଉଲଙ୍ଗିନୀ,
ମହା ପ୍ରଳୟର ହେବ ପ୍ରଥମ ସୂଚନା ।
ବଦ ଯୁ ମାଗୁଛି ପ୍ରଭୋ ଅଛୁ ବଡ଼ (busy) ବଜ
ରିପୋର୍ଟ ଲେଖିବା ପାଠ ନୁହଇଟି easy (ଈଜି)

ଶ୍ରୀଚରଣ-ପଙ୍କଜ-ମଧୁକର
-- ନନ୍ଦୀ



# ଛାଞ୍ଚୁଣୀ ବନାମ କୋରଡ଼ା*

—ଏକ—

ମାନ୍ୟବର 'ଡଗର' ସମ୍ପାଦକ ମହୋଦୟଙ୍କ

ସମୀପେଷୁ—

ମହାଶୟ,

ଡଗରରେ ଯେଉଁ ଛାଞ୍ଚୁଣୀ କୋରଡ଼ା ସ୍ତମ୍ଭ ବାହାରୁଥିଲା ତହିଁରେ ମୋର ଗୋଟିଏ ମନ କଥା ଲେଖିବି ଲେଖିବି ବୋଲି ଭାବୁ ଭାବୁ ଛାଞ୍ଚୁଣୀ କୋରଡ଼ା ବନ୍ଦ ହୋଇଗଲା । ମୋ ମନକଥା ମନେ ମନେ ରହିଗଲା କିନ୍ତୁ ସେ କଥାଟା ମୋ ମନଭିତରେ ଏତେ ଖାଣ୍ଡି ଚକଟି ହେଉଛି ଯେ ମୁଁ ତାହା ନ ଲେଖି ରହି ପାରୁନାହିଁ । ଆପଣ ଦୟାକରି ଯଦି ପ୍ରକାଶ କରନ୍ତି ତେବେ ବଡ଼ ଉପକୃତା ହେବି ।

ମୁଁ ଜଣେ ବର୍ଷୀୟସୀ ଭଦ୍ର ମହିଳା । ମୋର ସ୍ୱାମୀ ଦେଶର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି । ଆମ ଦୁହିଁଙ୍କ ଭିତରେ ପ୍ରେମ କହନ୍ତୁ ସ୍ନେହମାନ୍ୟ କହନ୍ତୁ, ସେ ଯୁଗ କଟିଗଲାଣି । ତଥାପି ଦୁହିଁଙ୍କ ସମ୍ବନ୍ଧରେ ମୂଳରୁ ଗୋଟାଏ କିମ୍ଭୂତ କିମାକାର ଅଡ଼ୁଆ ରହିଯାଇଛି । ସେ ଅଡ଼ୁଆଟା ଏ ବୁଢ଼ା ବୟସରେ ତାଳପତ୍ର ମେଲି ଗୋଟାଏ ଦାରୁ ରୂପେ ଛିଡ଼ା ହେଲାଣି ।

କଥାଟା ଖୋଲି କହିଦିଏ । ମୋର ସ୍ୱାମୀ ଜଣେ ଆତ୍ମ ନିର୍ଭରଶୀଳ ଭାଗ୍ୟବାନ ବ୍ୟକ୍ତି ବୋଲି ଜଣା । ସେଥିପାଇଁ ତାଙ୍କର ଦମ୍ଭ ଅଛି, ଅହଙ୍କାର ଅଛି ଆଉ ଗର୍ବ ମଧ୍ୟ ଅଛି । ମୁଁ ଯେ ସେଥିପାଇଁ ଗର୍ବିତା ନୁହେଁ ତାହା କହୁନାହିଁ କାରଣ ମୁଁ ତାଙ୍କର ସ୍ତ୍ରୀ, ଅର୍ଦ୍ଧାଙ୍ଗିନୀ ଓ ସହଧର୍ମିଣୀ । ମାତ୍ର ଦୁନିଆ ଉପରେ ସେ ତାଙ୍କର ସ୍ୱୋପାର୍ଜିତ ପ୍ରଭୁତ୍ୱକୁ ଚଳାଇବେ ବୋଲି ଘର ଭିତରେ—ଯେଉଁଠି ମୋର ଦାମ୍ପତ୍ୟ ଗୃହିଣୀର ନିର୍ବାଧ ରାଜତ୍ୱ, ସେଠି ଯେ ସେ ତାଙ୍କର ପ୍ରଭୁତ୍ୱ ଚଳାନ୍ତି ଓ ନିରଙ୍କୁଶ କ୍ଷମତା ବ୍ୟବହାର କରିବାକୁ ଚାହାନ୍ତି; ମୁଁ ସେତିକି ସହ୍ୟକରି ପାରେନାହିଁ । ମନ ମୋର ବିଦ୍ରୋହୀ ହୋଇଉଠେ—ବିକ୍ଷୁବ୍ଧ ହୋଇଉଠେ । ମନେହୁଏ ସେ ତାଙ୍କ କ୍ଷମତାର ଅପ ବ୍ୟବହାର କରୁଛନ୍ତି । ଅନଧିକାର ଚର୍ଚ୍ଚା କରୁଛନ୍ତି । ମୁଁ ତାର ପ୍ରତିରୋଧ କରିବାକୁ ବସେ—ଅବଶ୍ୟ ମନେ ମନେ । ସେ ତାହା ବୁଝି ପାରନ୍ତି କି ନାହିଁ ତାହା ମୁଁ ଜାଣେନା—ଅବଶ୍ୟ ଅହଙ୍କାର ନ ହେଉ ଅଭିମାନ । ମନେହୁଏ, ସେ ଯେପରି ଜାଣିଶୁଣି ମୋର ନ୍ୟାଯ୍ୟ ଅଧିକାରରୁ ମୋତେ ବଞ୍ଚିତ କରୁଛନ୍ତି । ମୋର ନାରୀତ୍ୱର, ସ୍ତ୍ରୀତ୍ୱର, ଗୃହିଣୀତ୍ୱର କ୍ଷମତାରୁ ମୋତେ ତଡ଼ିବାକୁ ବସିଛନ୍ତି । ସାମାନ୍ୟ ଦାସୀପରି ଅନୁଗ୍ରହାକାଙ୍କ୍ଷିଣୀ, ପୋଇଲି ପରି ଆଶ୍ରୟହୀନା ଭିକାରୁଣୀ ପରି ବ୍ୟବହାର କରୁଛନ୍ତି । ଯେଉଁ ଦାସୀ କିମ୍ବା ମର୍ଯ୍ୟାଦା ବୁଝିଛି, ଯେଉଁ ନାରୀ ପିଲାଦିନରୁ ଆଭିଜାତ୍ୟର ବାତାବରଣରେ ବଢ଼ି ଆସିଛି, ଯେଉଁ ନାରୀ ଆଧୁନିକ ଭାବ-ଧାରାର ସଂସ୍ପର୍ଶରେ ଆସିଛି, ତାକୁ ଏପରି ଭାବରେ ଦଳିତ ଲାଞ୍ଛିତ କରିବାରେ ତାଙ୍କର ପ୍ରଭୁତ୍ୱର ଗୌରବ ଅଛି କି ? ସେ ପ୍ରଭୁ ହୋଇ ପାରନ୍ତି କିନ୍ତୁ ବାହାରେ ମାତ୍ର; ସେ ଭିତରେ ମଧ୍ୟ ପ୍ରଭୁ ହେବାକୁ ଦାବୀ କରନ୍ତି ମୋର ହୃଦୟକୁ ପିଷ୍ଟ କରି, ଚୂର୍ଣ୍ଣ କରି, ଦଳିତ କରି । ଏହିପରି ହେଉଁ ହେଉଁ ଆମ୍ଭ ଦୁହିଁଙ୍କ ଭିତରେ ଶୂନ୍ୟତା କ୍ରମେ ପ୍ରସାରିତ ହୋଇ ଉଠୁଛି । ବର୍ତ୍ତମାନ ଏପରି ଅବସ୍ଥାରେ ପହଞ୍ଚିଲାଣି ଯେ ଗାର୍ହସ୍ଥ୍ୟ ବିଷୟରେ ମଧ୍ୟ କେହି କାହାର ପରାମର୍ଶ ଲୋଡ଼ୁନାହାନ୍ତି । କେହି କାହାର ସେବା ବା ସାହଚର୍ଯ୍ୟ ଖୋଜୁନାହାନ୍ତି । ମୁଁ ମନେ କରୁଛି ମୁଁ ଗୋଟାଏ ତାଙ୍କ ସଂସାରର ଅଲୋଡ଼ା ସାମଗ୍ରୀ ହୋଇ ପଡ଼ିଲିଣି । ସେ ମଧ୍ୟ ମୋ ପକ୍ଷରେ ଅଲୋଡ଼ା ହୋଇ ଉଠିଲେଣି । ସଂସାରର ସୁଖଶାନ୍ତି ନଷ୍ଟ ହୋଇ ଗଲାଣି । ଏଥିରେ ମୋର ଦୋଷ କେଉଁଠି ତାହା ମୁଁ ଖୋଜି ପାଉନାହିଁ । ସବୁବେଳେ କବିବରଙ୍କର ଗୋଟାଏ ପଦ ମନେ ପଡ଼ୁଛି —

"ଶାସିବାକୁ ଶିଖି ନାହିଁ ପରମନ
ସେ କି କେବେ ପ୍ରଭୁ ପଣକୁ ଭାଜନ ।"

ଏ ବିଷୟରେ ଆପଣ ବା ଆଉ କେହି ଯଦି ସୁପରାମର୍ଶ ଦେଇ ପାରନ୍ତି ତେବେ ମୋର ତ ଦିନ କାଳ ସରିଲାଣି କାହାର ହେଲେ କିଛି ଉପକାର ହୋଇପାରେ ବୋଲି ମୋର ଆଶା ।

ଆପଣଙ୍କର ଜଣେ
"ହତଭାଗିନୀ ଭଉଣୀ"

---

* ଡଗରରେ ଧାରାବାହିକ ଭାବରେ 'ଛାଞ୍ଚୁଣୀ ବନାମ କୋରଡ଼ା' ଶିରୋନାମ ରେ ବହୁକ ଲେଖକ ଓ ଲେଖିକାଙ୍କଠାରୁ କେତେଗୁଡ଼ିଏ ପତ୍ର ପ୍ରକାଶ ପାଉଥିଲା । ପ୍ରଥମରେ ଅବଶ୍ୟ ଶ୍ରୀମତୀ ଛଦ୍ମନାମରେ କାନ୍ତକବି ଏହି ପର୍ଯ୍ୟାୟ ଆରମ୍ଭ କରିଥିଲେ । ଶେଷଆଡ଼କୁ ଏ ପର୍ଯ୍ୟାୟ ଆଉ ନୂତନ ଲେଖକ ସ୍ପର୍ଶ ନ କରିବାରୁ କାନ୍ତକବି କୋମଳମନ ଛଦ୍ମନାମରେ ଧାରାବାହିକ ଯେତୋଟି ଲେଖିଥିଲେ ଏ ପୁସ୍ତକ ଖଣ୍ଡରେ ସେ ସବୁର ସମାବେଶ ।

ମାନନୀୟ 'ଡଗର' ସମ୍ପାଦକ ମହାଶୟ,

ଗତ ସଂଖ୍ୟା 'ଡଗର'ର ଛୁଞ୍ଚୁଣୀ × କୋରଡ଼ା ବିଭାଗରେ ଜଣେ 'ଭଉଣୀ'ଙ୍କର ପତ୍ରଟି ପଢ଼ି ମୋ ମନରେ କେତେଗୁଡ଼ିଏ କଥା ଉଦୟ ହୋଇଛି । ସେ କଥାଗୁଡ଼ିକ ଆପଣଙ୍କୁ ନ ଲେଖି (କାରଣ ଆପଣ ପୁରୁଷ) ସେହି ଭଉଣୀଙ୍କୁ ସମ୍ବୋଧନ କରି ଚିଠି ଖଣ୍ଡିଏ ଦେଲି । ଆପଣ ତାହା ପ୍ରକାଶ କଲେ ଆନନ୍ଦିତା ହେବି ।

ଇତି

ଆପଣଙ୍କର

ଅଜଣେ ଭଉଣୀ

ପ୍ରିୟ ଭଉଣୀ—

'ଡଗର'ରେ ତୁମ ଚିଠି ଖଣ୍ଡି ପଢ଼ିଲି । ତୁମେ ଯେ ହୋଇଥାଅ, ନାରୀ ହିସାବରେ ମୋର ହୃଦୟ ତୁମ ପାଇଁ କାନ୍ଦି ଉଠୁଛି । ସମବେଦନାରେ ଟିକି ଟିକି ହୋଇ ଝଡ଼ି ପଡ଼ିଲା ପରି ଲାଗୁଛି । କୋହରେ ଛାତି ଫାଟି ଯାଉଛି । ଇଚ୍ଛା ହେଉଛି, ଯଦି ମୁଁ ତୁମର 'ତାଙ୍କୁ' ଥରେ ଆଗରେ ପାଆନ୍ତି ତେବେ ଚପଲ ନ ହେଉ ମୁନ୍ଦି ଛୁଞ୍ଚୁଣୀରେ ବେଶ ଝାଡ଼ି ଦେଇ ତାଙ୍କ ପୁରୁଷତ୍ୱର ଦମାକ ଭାଙ୍ଗି ଦିଅନ୍ତି । ତୁମେ ବୋଧହୁଏ ଏହି କଥାଟି କରି ପାରି ନାହିଁ । ତୁମେ ବୋଧହୁଏ ବହୁତ ବେଶୀ ଅଭିମାନିନୀ କିନ୍ତୁ ମୋ କଥା ମାନିଯାଅ । ଏ କ୍ଷେତ୍ରରେ ଅଭିମାନ କିଛି କାମ କରେ ନାହିଁ । ମଣିଷଟାକୁ ଅକ୍ତିଆର କରିପାରି, ଇଳାକା କରିପାରି, ପୋଷା ମନେଇ ପାରି, ଗୋଲାମ କରେଇ ପାରି ତେବେ ଯାଇ ଅଭିମାନ କରିବାକୁ ହେବ । ସେ ଅଭିମାନ ଫଳ ଫଳେ ଗଦା ଗଦା, ଆଉ ତୁମପରି ନୁଆଁଣିଆ ଅଭିମାନ ମରୁଭୂମିରେ କୂଅ ଖୋଳିଲା ପରି । ସେଥିରେ ନିଜ ଅଭିମାନ-ନିଆଁରେ ନିଜେ ପୋଡ଼ିହୋଇ ମରିବ । ଆଉ କାହାରି କିଛି ହେବ ନାହିଁ । ଲକ୍ଷ୍ମଣୀ ହୋଇଥିଲେ ସିନା ତରଳନ୍ତା—ନିରାଟ ପଥରଟା ତରଳିବ ନାହିଁ ତ, କେବଳ ତାତି ଉଠିବ । ଏଣୁ ମୋର ସାନକଥା ଶୁଣ ଭଉଣୀ, ଅଭିମାନ ଛାଡ଼ ଆତ୍ମ-ମର୍ଯ୍ୟାଦାର ମିଥ୍ୟା ଗୌରବ ଛାଡ଼ ନିଜକୁ ନିଜେ ଜୋର୍ କରି ବସ । ଇଂରେଜୀରେ ଯାହାକୁ କହନ୍ତି assert କର । ଦେଖିବ ଏହାର ଫଳ କିପରି ? ତୁଚ୍ଛାଟାରେ କାହିଁକି ଜଳି ମରୁଛ । ତୁମ ପାଇଁ ଅମୃତ ଭଣ୍ଡାର ଥୁଆ ହୋଇଛି । ଚାବି ତୁମରି ହାତରେ ।

ମୋ କଥା ଶୁଣିବ—ଆମର 'ସେ' ବି ବିବାହର କିଛିଦିନ ପରେ ଏଇପରି ହେଇ ହେଇକା ଆସୁଥିଲେ । ମୁଁ ଯଦି ସେଟା ସେତେବେଳେ ବୁଝିପାରି ନ ଥାନ୍ତି ତେବେ ହୁଏତ ଆଜି ତୁମରି ପରି ପୋଡ଼ିଜଳି ହୋଇ ମରୁଥାନ୍ତି । କିନ୍ତୁ ଠାକୁରଙ୍କ ଦୟାରୁ ମୁଁ ବୁଝିପାରିଲି । ବୁଝିପାରି ଦିନେ କୌଶଳରେ ଏପରି ଏକ 'ଦାବନ' ଦେଲି ଯେ ସେହି ଦିନୁ ସେ ସାୟସ୍ତା ହୋଇଗଲେ । ସେହି ଦିନୁ ସେ ଅତି ଭଲ ପିଲାଟିଏ (Good boy) । ତେବେ ଏତିକି ଯେ ଆମ ଦୁହିଁଙ୍କର କ୍ଷେତ୍ର ଆମେ ଭାଗକରି ନେଇଛୁ ।

କେତେଗୁଡ଼ାଏ ଥାନରେ ତାଙ୍କର ପ୍ରଭୁତ୍ୱ ମୁଁ ମାନି ନିଏଁ ଓ କେତେ ଥାନରେ ମୋ ପ୍ରଭୁତ୍ୱ ସେ ମାନି ନିଅନ୍ତି । ଏଇ ଭାଗଟା (Partition) ବିଷୟରେ କୋଉଠି ଗୋଳମାଳ ଉପସ୍ଥିତ ହେଲେ ଅବଶ୍ୟ ଟିକିଏ ଅଡ଼ୁଆରେ ପଡ଼ିବାକୁ ହୁଏ । ତେବେ ସେଟା ମେଣ୍ଟି ମାଣ୍ଟି ଯାଏ । ସେଇପରି ଟିକିଏ ଟିକିଏ ନ ହେଲେ ଘରଟା (Home) ବଡ଼ ଖାଲି ଲାଗେ, ବଡ଼ ନିଘଞ୍ଚିଆ, ନୀରସ ମାଲୁମ ହୁଏ । ଦାମ୍ପତ୍ୟ ଜୀବନରେ ଏଇପରି ଟିକିଏ ଟିକିଏ ଚମକ । ଚମକଟି ଜୀବନର ସରସତା ପାଇଁ ଦରକାର ପରି । ଯାହାହେଉ ଏତେକଥା କହିବାରେ ଲୋଡ଼ା ନାହିଁ । ମୋର ଅନୁରୋଧ, କେତେଗୁଡ଼ାଏ କଥାରେ ତମେ ତାଙ୍କର ମନ ନେବାକୁ ବସ । ବାକିକଥା ତା ତମେ ନିଜେ ବିଚାର କରିନେବ । ଦେଖିବ ସେ ଆପେ ଆଉ କେତେଗୁଡ଼ିଏ କଥାରେ ତମ ଗୋଡ଼ତଳକୁ ଆସିବେ । ଉଭୟଙ୍କର ଉଭୟ ପ୍ରତି ହଜିଯାଇଥିବା ସ୍ନେହ ଶ୍ରଦ୍ଧା ଓ ସମ୍ମାନ ଫେରି ଆସିବ । ଶେଷ ଜୀବନ ଅମୃତମୟ ହୋଇଯିବ । ଇତି ।

'ତୁମର ଜଣେ ସାନ ଭଉଣୀ'



—ତିନି—

ପ୍ରିୟ ଭଉଣୀ,

ଗତ ସଂଖ୍ୟା ଛୁଞ୍ଚୁଣୀ କୋରଡ଼ାରେ ଯେଉଁ ଆଶ୍ୱାସନାବାଣୀ ତୁମର ଭଉଣୀଟିକୁ ଦେଇଥିଲ, ପଢ଼ି ଆନନ୍ଦିତ ହେଲି । କିନ୍ତୁ ଭଉଣୀଟି ଯେ ତୁମର ଶାନ୍ତଶୀଳା ଏବଂ ନମ୍ରଶୀଳା ତା ତମକୁ ଜଣା । ବିନା କାରଣରେ ଅକସ୍ମାତ ଆକ୍ରମଣ କରିବା ଅସମ୍ଭବ । ଅବଶ୍ୟ ତୁମ ଭଉଣୀଟିର କିଛି ନା କିଛି ଦୋଷାଦୋଷ ଥାଇପାରେ । ସ୍ୱାମୀ

ସ୍ତ୍ରୀର ସର୍ବସ୍ୱ, ଏବଂ ହୃଦୟର ଦେବତା । ଦେବତା ଯଦି ସ୍ୱଗି ଭୋଗ ନ ଖାଏ, ତେବେ ଭକ୍ତ କଣ ଦେବତାକୁ ମାଡ଼ ଲଗାଏ ? ଏହାର କଣ ମାନେ ଏହୁ ? ତୁମେ ଯେ ଭଉଣୀ ଲେଖିଛ, ମୁଁ ହୋଇଥିଲେ ଖଣ୍ଡିଆ ଚପଲ ହେଉ, ଖଣ୍ଡିଆ ଛାଞ୍ଚୁଣୀ ହେଉ, ଝାଡ଼ି ଦେଇଥାନ୍ତି; କିନ୍ତୁ ବୋଧେ ଭଉଣୀ 'ପୁରୁଷ ମୁଅଙ୍କ ରାଣୀ ହୋଇ ଗାରଡ଼ ପକ୍ଷୀ ଡାଆଣୀ ଉଡ଼ାଇବା' ଗୀତଟି ଶୁଣି ନାହଁ । ଅଛି ପୁରୁଷ ପୁଅର । ଜାଣ ତ, ପୁରୁଷ ପୁଅର ଦୁନିଆରେ କେତେଦୂର ପ୍ରଭାବ, କେତେ ଦୂରରେ ତାର ସ୍ଥାନ ? ଲେଖିଛ, ଆଗେ ତାଙ୍କୁ ବଶବର୍ତ୍ତୀ କର, ଅଧୀନ କରି ରଖି ପାରିଲେ ଅଭିମାନ କରିବ । କିନ୍ତୁ ପୁରୁଷ ପୁଅକୁ ବଶବର୍ତ୍ତୀ ତ କରି ସାରିଛ ! ସେ ଆଜି ନୁହେଁ, ପ୍ରାୟ ଯୁଗ ଯୁଗ ଧରି । ହେଲେ, ପୁରୁଷକୁ ଯେ ଅଧୀନ କରିବ ଏଟା ଅସମ୍ଭବ । ବୋଧେ ଏତେଗୁଡ଼ାଏ ବିଷୟ ଶୁଣି ଭଉଣୀ ରାଗି ଯିବନି, କିନ୍ତୁ ଆଶା କରେ ଭଉଣୀ ରାଗ ନ କରି କ୍ଷମା ଦେବ । ଯଦି ଚିରଦିନ ପାଇଁ ଦାମ୍ପତ୍ୟ ଜୀବନରେ ସୁଖଭୋଗ କରିବାକୁ ଅଭିଳାଷ ଥାଏ, ତେବେ ସ୍ୱାମୀ ସେବା କର । ସ୍ୱାମୀର ଅଧୀନା ହୁଅ । ଚିରଦିନ ପାଇଁ ନାରୀ ଜାତିର ସ୍ଥାନ ଦୁନିଆର ଶ୍ରେଷ୍ଠ ହେବ ଏବଂ ଯୁଗେ ଯୁଗେ ନାରୀର କୀର୍ତ୍ତି ପୂଜା ପାଇବ ।

ଭାବିନି ଭଉଣୀ, ସୀତା, ସାବିତ୍ରୀ, ଦମୟନ୍ତୀ ଚିରଦିନ ପାଇଁ କି କୀର୍ତ୍ତି-ବୈଜୟନ୍ତୀ ଉଡ଼ାଇ ଅମର ହୋଇଗଲେ । ଏହି ସ୍ୱାମୀ ସେବାରୁ । ସ୍ୱାମୀ ହିଁ ସ୍ତ୍ରୀର ପ୍ରଭୁ । ସ୍ୱାମୀ ହିଁ ସ୍ତ୍ରୀର ସର୍ବସ୍ୱ । ଇତି ।

ତୁମର ଜଣେ ଭାଇ

ପ୍ରିୟ ସମ୍ପାଦକ,

ଗତ ସଂଖ୍ୟା ଉଗରରେ ଜଣେ ଭଉଣୀଙ୍କର ବୀରବାଣୀ ଶୁଣି ମୋର ପୁରୁଷ ରକ୍ତ କାହିଁକି କେଜାଣି ଗରମ ହୋଇ ଉଠୁଛି । ତେଣୁ ଦୁଇ ପଦ ନ କହି ରହି ପାରୁନି ।

ଭଉଣୀ ଆମର ଛାଞ୍ଚୁଣୀ ଅସ୍ତ୍ର ଧରି ପୁରୁଷ ସଂହାର ପାଇଁ ରଣ ମଦରେ ମାତି ଉଠିଛନ୍ତି । ଏଥିକୁ ପୁରୁଷ ପକ୍ଷରୁ ଆଚ୍ଛାକରି କୋରଡ଼ା ନ ବସିଲେ ଥଣ୍ଡା ହେବେ ନାହିଁ ବୋଲି ମୁଁ ମନେକରେ ।

ଭଉଣୀ, ମନେରଖନ୍ତୁ ଯେ ପୁରୁଷଙ୍କର ସେବା କରିବା, ଖିଦମତ କରିବା, ହୁକୁମ ମାନିବା ପାଇଁ ତାଙ୍କର ଜନ୍ମ ଓ ଜୀବନ ଧାରଣ । ତାହା ନ କରି ପୁରୁଷଙ୍କ ଉପରେ ପ୍ରଭୁତ୍ୱ କରିବାକୁ ମନ କରିବା ଯେପରି ଧୃଷ୍ଟତା ସେଇପରି ଅସମ୍ଭବ ଓ ଅସ୍ୱାଭାବିକ ।

ନାରୀଙ୍କର ଗୋଟାଏ ଦାବୀ (right) ପୁଣି କଣ ? ରାନ୍ଧିବା, ବାଢ଼ିବା, ଗୋଡ଼ ଘଷିବା, ପିଲା ସମ୍ଭାଳିବା ତାଙ୍କ କାମ । ମୋଟ ଉପରେ ପୁରୁଷର ମନ ନେବା ଓ ତାର ସୁଖ ସ୍ୱାଚ୍ଛନ୍ଦ୍ୟ ଦେଖିବାପାଇଁ ତାଙ୍କୁ ଆଣା ହୋଇଛି । ଅବଶ୍ୟ ପୁରୁଷମାନେ ତାଙ୍କୁ ଅର୍ଥାତ୍ —ଦୁର୍ବଳମାନଙ୍କୁ ସ୍ନେହ ଓ ସଦୟ ଦୃଷ୍ଟିରେ ଦେଖିବା ଉଚିତ । ତାହା ବୋଲି ସେମାନେ ଯଦି କିଛି ଅଧିକାର ଦାବୀ କରନ୍ତି ଓ ପୁରୁଷଙ୍କ ମୁଣ୍ଡରେ ଚଢ଼ିବାକୁ ଯାଆନ୍ତି ତେବେ କେବଳ ଘୋଡ଼ା କୋରଡ଼ା ।

ନାରୀଙ୍କର ସ୍ୱଭାବ, ସେମାନଙ୍କୁ କଡ଼ା ଆଖି ଉପରେ ଯେତେ ରଖିଥିବ, ସେତେ ସେ ଠିକ ଥିବେ । ଟିକିଏ ମୁହଁ ଦେଲେ ମୁଣ୍ଡରେ ଚଢ଼ିବେ । ଏ ଯୁଗରେ ନାରୀମାନେ ଯେ ସ୍ୱାଧୀନତା ବା ସମାନ ଅଧିକାର ଦାବୀ କରୁଛନ୍ତି, ସେ ପୁରୁଷଙ୍କ ଦୋଷରୁ । ପୁରୁଷଗୁଡ଼ାକ ଅତି ନରମା ବା ମାଇଚିଆ ହୋଇଯିବାରୁ । ଠିକ୍ ପୁରୁଷତ୍ୱ ଦେଖାଇଲେ ନାରୀ ଜବଦ ହୋଇଯିବେ ଓ ଠିକ୍ ବାଟରେ ଚାଲିବେ ।

ଖାଣ୍ଟି କଥା କହିବାକୁ ଗଲେ ପ୍ରଥମ ଲେଖିକା ଭଉଣୀ ଯେ ତାଙ୍କ ସ୍ୱାମୀଙ୍କ ନାମରେ ଏତେ ଅନୁଯୋଗ କରିଛନ୍ତି ତାର କାରଣ ତାଙ୍କ ସ୍ୱାମୀ ମାଇଚିଆ । ସେ ଯଦି ମୂଳରୁ କୋରଡ଼ା ଚଳାଇ ସାୟସ୍ତା କରି ରଖିଥାଆନ୍ତେ, ଆଜି ଭଉଣୀ ଆମର ଏଭଳିଆ କଥା କହିବାକୁ ସାହସ କରନ୍ତେ ନାହିଁ, କିମ୍ବା ଏଭଳି ଦାବୀ କରିବାଟା ତାଙ୍କ ମନରେ ବି ଆସି ନ ଥାନ୍ତା ।

ସ୍ୱାମୀ ତାଙ୍କର ବୋଧହୁଏ ମୂଳରୁ ଭୁଲ କରିଛନ୍ତି । ମୂଳରୁ ତାଙ୍କୁ ଅଙ୍ଗୁଳି ଦେଖାଇ ଦେଇଛନ୍ତି । ମୂଳରୁ ରସି ଢିଲା କରିଛନ୍ତି । ମୂଳରୁ ସ୍ୱାଧୀନତାର ବାଟ ଦେଖାଇଛନ୍ତି । ସେଥିପାଇଁ ଭଉଣୀଙ୍କର ମିଜାଜ୍‌ଟା ଏପରି ହୋଇ ଯାଇଛି ।

ଏତେବେଳେ ଅବଶ୍ୟ କେବଳ କୋରଡ଼ା ଦେଇ ସୁଧାରିବା ସହଜ ନୁହେଁ । ହାତ ବାଗ କହୁଣୀକୁ ଗଲାଣି । ତେବେ ବାଟ ଅଛି ଏବେ ବି । ଅତି ମନ ମଗଜିଆ ବିଗଡ଼ା ଘୋଡ଼ାକୁ ସାୟସ୍ତା କରିବାକୁ ଗଲେ କେବଳ ପାହାର ଦେଲେ ଚଳେ ନାହିଁ । ତାକୁ ଅଉଁସା ଅଉଁସି କରି ଫୁଟୁକି ମାରି ପହିଲେ ଥଣ୍ଡା କରିବାକୁ ପଡ଼େ । ସେଇପରି ଭଉଣୀଙ୍କ ସ୍ୱାମୀଙ୍କୁ ଏଇ ପରାମର୍ଶ ଦେଉଁ କି, ସେ ତାଙ୍କ ପ୍ରଥମ ଭୁଲର ପ୍ରାୟଶ୍ଚିତ୍ତ ସ୍ୱରୂପ ଓଲଟି ଟିକିଏ ଭଉଣୀଙ୍କ ମନ ଘେନନ୍ତୁ । ତାଙ୍କୁ ସାକୁଲି ବାକୁଲି, ଅଉଁସା ବେଉସା କରି ବାଗକୁ ଆଣନ୍ତୁ । ବାଗ ମାନିଗଲେ ଥରେ, ତା ପରେ— । ତେଣିକି ପୁରୁଖୁରୁରେ ଚାଲିବ ସବୁ । କଣ୍ଢା ଲଗାମକୁ ଏକା ହାତରେ ରଖି-ଥିବେଟି ।

ମୋ ମତରେ ଏ ସମସ୍ୟାର ଏଇ ହେଉଛି ଅସଲ ସମାଧାନ ବା ଔଷଧ ।

ଆପଣଙ୍କ

ଭଉଣୀଙ୍କ ଭାଇ

ଭଉଣୀ,

ତୁମ୍ଭ ବିଷୟରେ ଜଣେ ସଂଜ୍ଞା ଭଉଣୀ ଓ ଦୁଇଜଣ ବିପକ୍ଷ ଭାଇ ଓ ଭାଇର ପୁଅ କେତେ କହିଲେଣି । ପ୍ରଥମ ଲେଖିକା ତୁମ୍ଭ ଦୁଃଖରେ ସମ ଦୁଃଖିତା ହୋଇ ଗୃହିଣୀରେ ଝାଡ଼ୁ, ଚପଲର ସଦ୍‌ବ୍ୟବହାର କରିଛନ୍ତି, ଯା'କି ଲୋକ ଅତି ଦୁଃଖରେ କରିଥାଏ । ପର ଲେଖକ ଦୁଇଜଣ ସେହି ଲେଖିକାଙ୍କ ଲେଖା ଉପରେ ଗରମ ହୋଇ, ସ୍ତ୍ରୀର କାମ ଚୁଅ ଖେଳାଇବା ଆଦି ଦର୍ଶାଇଛନ୍ତି ।

ସଂସାରରେ ତୁମ୍ଭ ସ୍ୱାମୀଙ୍କ ଭଳିଆ ବହୁତ ଏକଜିଦିଆ ଲୋକ ଦେଖାଯାନ୍ତି । କିନ୍ତୁ ସେହି ଏକଜିଦିଆ ଦୁଇପ୍ରକାରର— ଗୋଟିଏ କ୍ଷଣ ସ୍ଥାୟୀ, ଅନ୍ୟଟି ଚିରସ୍ଥାୟୀ । ଯେ କ୍ଷଣସ୍ଥାୟୀ ଏକଜିଦିଆ ସେ ବହୁତ ଭାବି ତା ଜିଦ୍‌କୁ ଦବାଇ ଦିଏ ଓ ତାର ସମାଧାନ କରି ବସେ । ତୁମେ ଭଉଣୀ ସମ୍ଭବତଃ ସେହିପରି । ଆଉ ଜଣେ ଶତ ଅପମାନ, କଷ୍ଟ ପାଇଲେ ମଧ୍ୟ, ତାଙ୍କର ସର୍ବସ୍ୱ ଚାଲିଗଲେ ମଧ୍ୟ ତାଙ୍କ ଜିଦ୍ ଛାଡ଼ନ୍ତି ନାହିଁ । ତୁମ ସ୍ୱାମୀ ସେହି ଜାତୀୟ ।

କଥାରେ ଅଛି, ଦୁଇହାତ ନ ଲଗିଲେ ତାଳି ବାଜେ ନାହିଁ । ତୁମ୍ଭେ କୌଣସି ବିଷୟ (ଘରର ସ୍ୱାଧୀନତା) ପାଇଁ ଜିଦ୍ ଧରିଛ ସେ ମଧ୍ୟ ଧରିଛନ୍ତି । କ୍ରମଶଃ ସେହି ଜିଦ୍ ବଢ଼ିଛି ଯଦ୍ଦ୍ୱାରା ତୁମ ଜିଦ୍ କିଛି ପାହାଚ ତଳେ ଅଛି ।

ତୁମେ ଭଉଣୀ, ଲେଖିଛ—ତୁମ୍ଭେ ତୁମ୍ଭର ମର୍ଯ୍ୟାଦା ବୁଝିଛ, ପିଲାଦିନରୁ ଅଭିଜାତ୍ୟର ବାତାବରଣରେ ବଢ଼ିଅଛି ଓ ଆଧୁନିକ ଭାବଧାରାର ସଂସ୍ପର୍ଶରେ ଅଛି । ତେବେ ତୁମ୍ଭର ଉଚିତ ଥିଲା ବିବାହ କରିବା ସମୟରେ ସେହି ଧରଣର, ସେହି ଭାବର ଓ ସେହି ଢଙ୍ଗର ଆଧୁନିକ ରୁଚିସମ୍ପନ୍ନ ଜଣେ ଲୋକକୁ ବିବାହ କରିବା । ତୁମ୍ଭେ ବିବାହ କରିଛ ତୁମ ମତର ସଂପୂର୍ଣ୍ଣ ବିପରୀତ ମତର ଲୋକକୁ । ସେ ଯେତେବେଳେ ଅମୃଣାଙ୍କରଶୀଳ, ସେତେବେଳେ ତୁମ ଉପରେ ନିଜର ନୀତି ସହଜରେ ଚଳାଉଛନ୍ତି – ସେ ଭାଗ୍ୟବାନ ହେଲେ ମଧ୍ୟ. ଆଧୁନିକ ଶିକ୍ଷାରେ ଉଚ୍ଚଶିକ୍ଷିତ ହୋଇ ମଧ୍ୟ ତୁମ୍ଭର ମର୍ଯ୍ୟାଦା ବୁଝିଲେ ନାହିଁ । ସେ ଯେତେବେଳେ ଭାଗ୍ୟବାନ ସେତେବେଳେ ଅନ୍ତରର ତୁମଙ୍କୁ ନ ପଚାରି ଚାଲିଛନ୍ତି । ତୁମ୍ଭେ ପରାସ୍ତ ହୋଇ ଶିକ୍ଷିତା ବୋଲି ତାର ସମାଧାନ ମନେ ମନେ ବହୁତ ଥର କରିବାର ଚେଷ୍ଟା କରିଥିବ, ବହୁତ ଭାବିଥିବ ଓ ଏବେ ମଧ୍ୟ ଏହି ଅପରର ପରାମର୍ଶ ଓ ସମାଧାନ । ତୁମ୍ଭେ ମୂଳରୁ ଜାଣି ପାରିନାହଁ ତୁମ୍ଭର ପ୍ରତି ନିନ୍ଦାବାଦ ଶନୈଃ ଶନୈଃ ତୁମ୍ଭ ସ୍ୱାମୀଙ୍କଠାରୁ ତୁମ୍ଭ ପ୍ରତି ଯେ ସ୍ନେହ ମମତା ଥିଲା ତାହା ହ୍ରାସ କରୁଛି । ଏବେ ତାହା ଶୂନ୍ୟ । ତେଣୁ ତୁମେ ତାଙ୍କର ଅଲୋଡ଼ା ପଦାର୍ଥ । କଥାରେ ଅଛି 'ଲିହା ବି ନ ଛାଡ଼େ, କମାର ବି ନ ଛାଡ଼େ' । ତୁମ୍ଭ ଦୁଇଜଣଙ୍କର ସେହି ଅବସ୍ଥା ମୂଳରୁ, ଏବେ ମଧ୍ୟ ସେଇୟା ।

ତୁମ୍ଭେ କବିବରଙ୍କର ଗୋଟିଏ ପଦ ଉଚ୍ଚାରଣ କରିଛ "ଚାକିରୀକୁ ଶିଖିନାହିଁ ପର ମନ, ସେ କି କେବେ ପ୍ରଭୁ ପଣକୁ ଭଜନ ।" ତୁମ୍ଭ କଥାଟି ସତ ହେଲେ ଏହା ବି ଅସତ୍ୟ ନୁହେଁ । ଗୋଟିଏ କଥା ଅଛି First obey then Command. ତୁମ୍ଭର ଉଚିତ ଥିଲା ତୁମ୍ଭର ସ୍ୱାମୀଙ୍କୁ ଜିଦ୍‌ଖୋର ଦେଖି ତାଙ୍କର କଥାକୁ ଅନ୍ଧଙ୍କ ଭଳିଆ ଭଲ ହେଉ ବା ଖରାପ ହେଉ କରି ଯାଇଥାନ୍ତ ମନେ ମନେ ନିନ୍ଦା ବା ପ୍ରତିବାଦ ନକରି । ଦେଖିଥାନ୍ତ ଅଳ୍ପଦିନ ପରେ ଚୁମ୍ବକ ଟାଣିଲାପରି କପରି ସେ ତୁମଆଡ଼କୁ ଟାଣିହୋଇ ଆସିଥାନ୍ତେ ଓ ମନ୍ତ୍ର କଲା ଭଳିଆ ତାଙ୍କର ସମସ୍ତ ରାଗ, କ୍ଷମତା ମନ୍ତ୍ରଚାଳିତ ସର୍ପ ଭଳିଆ ଦୂରରେ ଫିଙ୍ଗି ତୁମ ଇଚ୍ଛା ଅନୁସାରେ ନାଚିଥାନ୍ତେ । ଏଇ ତାର ପ୍ରକୃତ ଗାରଡ଼ି । ତୁମ୍ଭେ ମଧ୍ୟ ଶହେବାର ପରାସ୍ତ ହୋଇ ପୁଣି ମନରେ ଧାରଣା କରିଛ, "ଆଚ୍ଛା, ଦେଖି ମୋର ସାହାଯ୍ୟ ନ ନେଇ ସେ କପରି ଚଳନ୍ତି । ସେ ଆପେ ଆସିବେ ଖୋସାମତ କରି, ମୁଁ ଯଦି ବୁଦ୍ଧିମାନ ତାଙ୍କର ବଶ୍ୟତା ସ୍ୱୀକାର କରେ ମୁଁ ସ୍ୱାଧୀନ ଚିନ୍ତାଶୀଳ ହୋଇ ଶିକ୍ଷିତା ହୋଇ, ଯେ ଶୁଣିବ ସେ କଣ କହିବ ? ମୋର କଣ ମାନ ନାହିଁ ? ମୁଁ ସ୍ତ୍ରୀ ହୋଇ କଣ ତାଙ୍କର କିଛି କରିପାରେ ନାହିଁ ?" ଇତ୍ୟାଦି ସେ ଧାରଣା ତୁମକୁ ସମାଧାନ ଦିଗକୁ ନେଇ ପାରିନାହିଁ, ପାରିବ ନାହିଁ ।

ଛାଡ଼ ସେ କଥା ଭଉଣୀ । ପଛ କଥାଗୁଡ଼ିକ ଭୁଲି ଯାଅ । ତୁମ୍ଭର ତ ଏହା ଶେଷ ଜୀବନ । ଆଉ ଏ ଶେଷ ଜୀବନରେ ନୀରସତା ଆଣୁଛ କାହିଁକି ? ଅନ୍ତରେ ଅନ୍ତରେ ସେହିକଥା ଭାବି ଜଳିପୋଡ଼ି ହେଉଛ କାହିଁକି ? ବୁଦ୍ଧିମାନ ବୁଢ଼ା ସମୟ ଅଛି । ତୁମ୍ଭର ସ୍ୱାମୀଙ୍କ ଭଲପାଇବାକୁ ଶିଖ ଓ ସେବା କର । ଦେଖିବ ସେ ତମର ଗୋଟାପଣ ହେବେ । ଇତି ।

ତୁମ୍ଭର
ଦାମୋଦର ଦାଶ

ପ୍ରିୟା ଉର୍ବଶୀ,

ତୁମେ ଖାସା ପାଲଟିଏ ଲଗାଇ ଦେଇଛ । ଉପର ସମ୍ପାଦକଙ୍କର କାଗଜ, କଲମ, ଛାପାଖାନା ଅଛି । ସେଇସବୁଗୁଡ଼ାକ ତ ସରୁନାହିଁ, ତାଙ୍କ ଦୁଆର ଏକାବେଳକେ ସନ୍ଧାଣ ମେଲା । ଆଉ ଏ ଓଡ଼ିଶା ମୂଲକରେ ମାଗଣାଖିଆ ଓ ଉପରପଢ଼ା ତ କମ ନାହାନ୍ତି । ଅତଏବ ପତି ଦେବତାଠାରୁ ସ୍ୱାଧୀନା ସ୍ତ୍ରୀ ଜାତି ପର୍ଯ୍ୟନ୍ତ ଅନେକ ଅନେକ କଥା ପଡ଼ି ଗଡ଼ିଗଲାଣି । ପାଗଲ, ତୁମେ ଉର୍ବଶୀ, ପାଗଲି ! ଏ ଘୁଆଘଟି ଲଗେଇ ଦେଇ ମୁହଁରେ ଲୁଗା ଛୁଞ୍ଚି ଖୁଁ ଖୁଁ ହୋଇ ହସିବାରେ କି ଲାଭଟା କହନି ଦେଖି ? ଯେଉଁମାନେ ତୁମକୁ ଉପଦେଶ ଦବାକୁ ହମହମ ହୋଇ ବାହାରିପଡ଼ିଲେ, ସେଇମାନଙ୍କୁ ମୁଁ ପଚାରେଁ, କେଉଁଠି ଦେଖିଛ, ନାରୀ ତାର ନାମଟି ହାସଲ କରେଇ ନବାରେ, ତୁଚ୍ଛା ମରଦମାନଙ୍କୁ ନାକରେ ଦଉଡ଼ି ଦେଇ ଘୋଷାରିବାରେ ପଛେଇ ଯାଇଚି, କି କାହାରି କଥାକୁ ଅପେକ୍ଷା କରିଚି ? ନାରୀ ଜାତି ମା ପେଟରୁ ଆଉ କିଛି ନେଇ ଆସୁ ବା ନ ଆସୁ, କିନ୍ତୁ ମର୍ଦ୍ଦଙ୍କ ଗୁମାନ, ଢମାକ ଭାଙ୍ଗିବାରେ ମହାସ୍ତ୍ର ଖଣ୍ଡିକ ଠିକ୍ ନେଇ ଆସିଥାଏ ।

ନା ଉର୍ବଶୀ, ମୁଁ ତୁମର ଏ ଗଧଟୋପି ପିନ୍ଧା ଦୁଆରୀ ହବାକୁ ରାଜି ନୁହେଁ । ସତରେ ଯେବେ ତୁମର ସ୍ୱାମୀ ତୁମ ଉପରେ ଗୁମାନ କରିଥାଆନ୍ତି, ତା'ହେଲେ ମୋର କେବଳ ତାଙ୍କରି ପାଇଁ ଦୁଃଖ ଯେ ବିଚରାର କର୍ମ ଫାଟିଛି । କେବଳ ଯେଉଁମାନେ ପଣ୍ଡିତେଇ କରି ବାହାରିଛନ୍ତି, ସେଇମାନଙ୍କୁ ମୋର ପଦେ ଅଧେ କହିବାର ଅଛି । ଏ ବିଶ୍ୱବାସୀଙ୍କୁ ବିବାହ ପ୍ରସଙ୍ଗରେ ମାତ୍ର ତିନି ପ୍ରଧାନ ଶ୍ରେଣୀରେ ଭାଗ କରାଯାଇ ପାରେ—୧-ଯେଉଁମାନେ ଭାବନ୍ତି ଯେ ସ୍ତ୍ରୀ ଅର୍ଦ୍ଧାଙ୍ଗିନୀ, ପୁରୁଷର ସହଧର୍ମିଣୀ, ୨-ଯେଉଁମାନେ ଭାବନ୍ତି ଯେ ବିବାହ ଗୋଟାଏ ସାମାଜିକ ଚୁକ୍ତି, ୩-ଯେଉଁମାନେ ଭାବନ୍ତି ଯେ ବିବାହ ଅବାଧ ବିଳାସର ଗୋଟାଏ ଉପାୟ । ଆମ ଶାସ୍ତ୍ର ଓ ଇଂରେଜି ଶାସ୍ତ୍ର ମଧ୍ୟ କହେ ଯେ ସ୍ତ୍ରୀ ପୁରୁଷର ଅର୍ଦ୍ଧାଙ୍ଗିନୀ, ସହଧର୍ମିଣୀ । ଏ ମତ ଯେବେ ମାନି ନିଆଯାଏ, ତା ହେଲେ ମୁଁ ମୋର ଅଧେ ଦେହକୁ ଆଦର କରି, ଆଉ ଅଧକୁ ହତାଦର କରି ନ ପାରେଁ । ଯଦି କେହି ପୁରୁଷ ଏପରି ହତାଦର କରେ, ତା ହେଲେ ବୁଝିବାକୁ ହବ ଯେ ସେ ଏ ଶ୍ରେଣୀର ନୁହନ୍ତି । ଅତଏବ ଏ ଶ୍ରେଣୀର ମତରେ ସ୍ତ୍ରୀର ଯାହା କରିବା ଉଚିତ ତାହା ପାଇବାର ହକଦାର ସେ ହୋଇପାରିବେ ନାହିଁ । ଯଦି ବିବାହ ଗୋଟାଏ ଚୁକ୍ତି ହୁଏ, ତା'ହେଲେ ଚୁକ୍ତି ଉଭୟପକ୍ଷଙ୍କୁ । ଜଣେ କହିବ ମୁଁ ତୁମକୁ ସମ୍ମାନ କରିବ, ଆଦର କରିବ, ସ୍ନେହ କରିବ; ଆଉ ଜଣେ ଚୁକ୍ତି କରିବ ଯେ ମୁଁ ତୁମକୁ ଦେବତା ବୋଲି ମାନିବ ତୁମର ପିଲା ବୋହିବ, ତୁମ ଘରର ଗୋଲାମି କରିବ । ପୁରୁଷ ଯେବେ ତାର ଚୁକ୍ତି ରକ୍ଷା ନ କରେ, ତା ହେଲେ ସ୍ତ୍ରୀକୁ ତାର ଚୁକ୍ତି ରକ୍ଷା କରିବାକୁ କହିବା ଅନ୍ୟାୟ, ଅଯୌକ୍ତିକ । ଯଦି ତୃତୀୟ ଶ୍ରେଣୀର କଥା ହୁଏ, ତେବେ ଆଉ କଣ, ବିଳାସର ଦଲ ବୟସ ଥିବାତକ ସେ ସବୁ ହୋଇ ଯାଉଚି । ଏବେ ସେ ଯେବେ ଏଣେ ହୁଅନ୍ତି, ଅନେ ତେଣେ । ପୁରୁଷ ଗୋଟିଏ ପାଇଲେ ବି ସ୍ତ୍ରୀ ତାକୁ ଦୁହେଁ ଓ ସହି ନେଇ ନିଜର କର୍ତ୍ତବ୍ୟ କରିଯିବେ—ଏପରି କଥା ଯେଉଁଠାରେ ପ୍ରବର୍ତ୍ତେ, ସେଉଁଠାରେ ପୁରୁଷର ସ୍ନେହ ସ୍ତ୍ରୀ ପ୍ରତି ସମାନ ଭାବରେ ରହିଚି, କେବଳ କ୍ଷଣିକର ଭ୍ରମରେ ସେ ଭାଗି ଯାଇଚି । କିନ୍ତୁ ଯେଉଁଠାରେ ବିରାଗ ପୂର୍ଣ୍ଣମାତ୍ରାରେ ଆସିଚି, ସେଠାରେ ସଂସ୍ରଗର କଦଳରେ ସଂସ୍ରଗ ଦବା ମାଙ୍କଡ଼ ବେକରେ ମୋତି ହାର ଦବା ଭଳି ।

ନା, ଉର୍ବଶୀ, ଏ ସବୁ ପାତିବ୍ରତ୍ୟ ମଧ୍ୟରେ ମୁଁ ନାହିଁ । ଏ ମଧ୍ୟ ପାତିବ୍ରତ୍ୟ ନୁହେଁ, ଏ ନିଚ୍ଛକ ଗୋଲାମି । ସ୍ୱାମୀ-ସ୍ତ୍ରୀର ଜୀବନରେ ବେଳେ ବେଳେ କଳିଗୋଳ, ରୁଷାରୁଷି ଯେ ନ ହେବ ତା କହୁନି, ସେ ହବ । ସେତକ ନ ହେଲେ ବି ଦାମ୍ପତ୍ୟ ଜୀବନ ବଡ଼ ଏକବାଗିଆ ହୋଇଯିବ । କିନ୍ତୁ ଅସଲରେ ଏ ଗୋଟାଏ ଉପନିଆ ବେପାର । ସ୍ୱାମୀର ଦୋଷ ସ୍ତ୍ରୀ ସହିନବ, ସ୍ତ୍ରୀର ଦୋଷ ସ୍ୱାମୀ ସହିନବ । ତେବେ ଯାଇ ହେବ ଘର । ରକ୍ତ ମାଂସର ମଣିଷ ସେମାନେ । ଭୁଲ ଭଟକା ଦ'ପଟରେ ହବା ସ୍ୱାଭାବିକ । କିନ୍ତୁ ଯେଉଁଠି ଏ ସହିବା ଭାବଟିକ୍ ରହିଲାନି, ସେଠି ଦାମ୍ପତ୍ୟ ଜୀବନର ମହାଘାତ ଘଟିଗଲାଣି । ମୁର୍ଦ୍ଦାରଟାକୁ ଭିଡ଼ି ଧରିବାରେ କି ସୁଖ ଆଉ ମିଳିବ ? ଯାହା ଯାଇଚି, ତା ଯିବାକୁ ଦିଅ ନାହିଁ ପଣ୍ଡିତେଇ । ସ୍ୱାମୀ ଯେବେ ସ୍ତ୍ରୀର ମର୍ଯ୍ୟାଦା ରଖିଲେନି, ସ୍ତ୍ରୀ ତାହାହେଲେ ସ୍ୱାମୀର ମର୍ଯ୍ୟାଦା ରଖିବ କିଆଁ ? ଏତ ଗଲା ମୋଟ କଥା ।

ଦାମ୍ପତ୍ୟ କଥା କହିବ ? ମଣିଷ ଯେତେବେଳେ କୌଣସି କଥାରେ ନିଶ୍ଚିତ ହୋଇଯାଏ, ସେତେବେଳେ ତା ପ୍ରତି ତାର ଅବଜ୍ଞା ଆସିଯାଏ । ପୁରୁଷ ଯେତେବେଳେ ବୁଝେ ଯେ ମୁଁ ଯେତେ ଯାହା କଲେ ବି ସ୍ତ୍ରୀର ସମ୍ମାନ ଓ ମର୍ଯ୍ୟାଦା ପାଇ ପାରିବ ସେତେବେଳେ ସେ ସ୍ତ୍ରୀକୁ ହତାଦର କରିବାକୁ ଆରମ୍ଭ କରେ । ସେ ଯେତେବେଳେ ବୁଝେ ଯେ, ଏ କାମ କଲେ ସ୍ତ୍ରୀର ମନରେ କଷ୍ଟ ହେବ, ସେତେବେଳେ ସେ ସେଇକାମ ଦୁଇଗୁଣେଇ କରି କରେ । ଏପରି ମନରେ ତାକୁ ଚେତେଇଦିଅ । ଉଚିତ ଯେ, ସ୍ତ୍ରୀ ଠାରୁ ସମ୍ମାନ ଓ ମର୍ଯ୍ୟାଦା ପାଇବ । ତାର ଏକଚାଟିଆ ହକ ନୁହେଁ । ଦେଲେ ପାଇବ, ନ ଦେଲେ ମିଳିବନି । ତାହେଲେ ଦେଖିବ ସେ କେଲେ କେଲେ ମୋହିହୋଇ ଆସିବ । ସେ ଯେତେବେଳେ ବୁଝିବ ଯେ ସେ

ଯାହା ଇଚ୍ଛା ତାହା କରୁ, ସ୍ତ୍ରୀର ମନରେ ତା ଲାଗି କିଛି ଦୁଃଖ ବା କଷ୍ଟ ନାହିଁ, ତାର ଅବମାନନା, ତାର ଅବଜ୍ଞା, ତାର ନିର୍ଦ୍ଦୟତା ସ୍ତ୍ରୀକୁ ଛୁଇଁ ପାରୁନି, ଯେତେବେଳେ ସେ ତାର ଆତ୍ମସମ୍ମାନରେ, ତାର ପୌରୁଷ ଅଭିମାନରେ ଏପରି ଧକ୍କା ଖାଇବ ଯେ ସେ ବଳେ ସ୍ତ୍ରୀର ମନ ଦଖଲ କରିବାକୁ ଚେଷ୍ଟା କରିବ । ଏଇ ହେଉଛି ପ୍ରକୃଷ୍ଟ ପନ୍ଥା । ଯା' ଲାଗି କଳକୌଶଳ ଦରକାର ନାହିଁ । ମାଡ଼ ଫଉଜଦାରୀ ଦରକାର ନାହିଁ । ଚୁପ୍ ଚୁପ୍‌ରେ ଏ କାମ ହୋଇଯିବ । ଖାଲି ଭାବ ଭଙ୍ଗୀର ପରିବର୍ତ୍ତନରେ । ଏକଥା ଯେ ଜାଣେ, ସେ ଯେ କୌଣସି ସ୍ତ୍ରୀ ପାଖରେ ବର୍ଷେ ଦି'ବର୍ଷ ଶିକ୍ଷାନବିଶର କାମ କରୁ, ଠିକ୍ ବୁଝିପାରିବ । ଏ ହେଉଛି ସ୍ତ୍ରୀ ଜାତିର ଗୁପ୍ତ ଅସ୍ତ୍ର, ସହଜାତ କବଚ କୁଣ୍ଡଳ । ତୁମେ ଏକଥା ଜାଣ ଭଉଣୀ ! ତୁମର ଏ ଗୁପ୍ତ ବାଣଟି ପଦାରେ ପକାଇ ଦେଲି ବୋଲି, ମୋ ଉପରେ ରାଗିବନି । ଆଉ ରାଗରେ ବି ଏତେ ଦୂରକୁ ତୁମର ଗୁଞ୍ଜୁଣୀ ବା କୋରଡ଼ା ପାଇବନି ତ । ଡର କଅଣ ?

ତୁମର
ବଳଦେବ ଶର୍ମା



# ଡିମ୍ବକ୍ରେସି ସଭା

[ ଉତ୍କଳ କଂଗ୍ରେସ ଦଳର ଏକ ତଡ଼ାବଡ଼ ମିଟିଂ ଡାକରା ହୋଇଛି । କଳିଗୋଳ ଓ ଗୋଷ୍ଠୀ ଖୋଲାଖୋଲି ବନ୍ଦ କରିବା ପାଇଁ ସ୍ୱୟଂ ଗୋପବନ୍ଧୁ ଚୌଧୁରୀଏ ଗାନ୍ଧିଜୀଙ୍କଦ୍ୱାରା ଲାଗିବା ପାଇଁ ପ୍ରେରିତ ହୋଇଛନ୍ତି । ଦେଶର ବିପଦ ବେଳରେ ସମସ୍ତେ ଏକମନ ଏକପ୍ରାଣ, ଧୀରବୁଦ୍ଧି କୁଶଳ ଶରୀର ହୋଇଥିବାରୁ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ଆଲୁଅ ସମସ୍ତଙ୍କ ମୁଖ, ଦାଢ଼ି ଓ ଚଷମାରେ ଚହଟି ଉଠୁଛି । ସ୍ୱରାଜ ମନ୍ଦିରର ବାରଣ୍ଡାରେ ସକଳେ ଉପବିଷ୍ଟ ହୋଇ ଦେଶୀ ପଟଭୋଡ଼ ସହଯୋଗେ ଭାରତୀୟ ଗୃ-ପାନାନ୍ତେ··· ]

### ଉଦ୍‌ବୋଧନ

ଅଗ୍ରୁଯୈ—ଓଁ ନମୋ ଭଗବତେ ବାପୁଦେବାୟ—
ଆଜ ଏ ଦୁର୍ଦ୍ଦିନେ, ଆସ ହେ ଉତ୍କଳବାସୀ
ଅହିଂସା ସାହସେ ଧରି ମାତି ଯାଅ ରଣେ,
ପାତଦିଅ ଗୁଡ ଧାଡକାରେ ।
ଧ୍ୱଂସ ହେଉ ଅତ୍ୟାଗୃହୀ ପାଜି ନାଜୀବାଦ ।
ଗଣତନ୍ତ୍ର ବାଦ ଆଜ ହୋଇଛି ବିପନ୍ନ
ମୁକ୍ତିର ସନ୍ତାନଗଣ ଉଠ ଭିଡ଼ି ଅଣ୍ଟା
ଉପାଡ଼ି ପକାଅ କଣ୍ଟା, କୁଣ୍ଠା କର ତ୍ୟାଗ,
ଆଗ ହୋଇ ରକ୍ଷୀ ଦଳେ ଯୋଗ ଦିଅ ଆସି ।
ବ୍ରିଟିଶ ପତାକା ତଳେ ଠୁଣ୍ଡ୍ରହୋଇ ସର୍ବେ ।
ଛାଡ଼ି ଭେଦଭାବ ଆଉ ଗୃହ-କଳି-ଗୋଳ ।
ଯତୋ ଧର୍ମ ସ୍ତତୋ ଜୟ—କହୁଛନ୍ତି ଗୀତାରେ

(କରତାଳି)

[ ଅଗ୍ରୁଯୈ ଦାଢ଼ି ସାଉଁଳାଇ ବସିଲେ, ପଣ୍ଡିତେ ତାଙ୍କ ଦାନ୍ତ ଉକୁଟାଇ ଆରମ୍ଭିଲେ ]

ପଣ୍ଡିତେ—ଆଜକାର ପ୍ରୋଗ୍ରେସିଭ ଢଙ୍ଗ ଗ୍ରଲ୍ କବିତାରେ,
ବ୍ଳାଙ୍କ ଭର୍ଷ ପଦ୍ୟ ଅଟେ ବୀରଙ୍କର ଭାଷା,
ଯୁଦ୍ଧବେଳେ ବଡ଼ ପ୍ରୟୋଜନ;
ଆଣେ ପ୍ରଣୋଦନା ପୁଣି ଆଣେ ଉନ୍ମାଦନା,
ସଙ୍କଟ କାଳରେ ଯାର ଶକ୍ତି ବିଲକ୍ଷଣ,
ତୁହିଁ ଛନ୍ଦ ଏକା ଯାହା ଥିଏଟର ଆକ୍‌ଟର ।
ଆରେରେ ଉତ୍କଳୀ ବୃନ୍ଦ, ଛାଡ଼ି ଭେଦାଭେଦ,
ବ୍ରାହ୍ମଣ କ୍ଷତ୍ରିୟ ସର୍ବେ ହେବା ଏକମେଳ;
ବ୍ରାହ୍ମଣ ବୀରତ୍ୱ ଆଉ କ୍ଷତ୍ରିୟ ଧୀରତ୍ୱ
ତହିଁ ସଙ୍ଗେ ମିଶିଗଲେ କରଣ କୌଶଳ,
ଉପୁଜିବ ମହାଶକ୍ତି, ଯାର ତୀବ୍ର ଗତି
ରୋଧିବାକୁ କିଏ କ୍ଷମ ଏ ମହୀମଣ୍ଡଳେ ।
ପଣ୍ଡିତ ଦଳର ସଙ୍ଗେ ମିଳି ମୂର୍ଖ ଦଳ,
ନଷ୍ଟ ଗୌରବକୁ ଏବେ କର ହେ ଉଦ୍ଧାର ।
ଆପଣା ମଧ୍ୟରେ ସବୁ ଭୁଲ ବାଦାବାଦ,
ସାମ୍ୟବାଦ, ଗାନ୍ଧିବାଦ, ଗଣବାଦ ଆଦି,
ଏକାଗ୍ରେ 'ସୁବିଧା ବାଦ' ଧର ସର୍ବେ ଆଜି;
ନାଜିବାଦ ଧ୍ୱଂସ ପାଇଁ ହୁଅ ତତପର ।

ଚୌଧୁରୀ—ଅହା ଶାନ୍ତି, ଶାନ୍ତି, ଶାନ୍ତି ।

ନାରୀନେତ୍ରୀ – ନାରୀଙ୍କର ତରଫରୁ ପ୍ରତିନିଧି ରୂପେ,
ଆମ୍ଭେ କହୁଅଛୁଁ, ଯାହା ଶୁଣ ମନ ଦେଇ ।
ଏହି ଯୁଦ୍ଧେ ଶ୍ୱେତ ଦ୍ୱୀପ ଜିଣିଲେ ତ୍ୱରିତ,
ଭାରତର ଶୁଭଦିନ ଆସିବ ନିଶ୍ଚୟ ।
ଭାରତ ପାଇବ ହେଲେ ତାର ସ୍ୱାଧୀନତା;
ସେତେବେଳେ କିନ୍ତୁ କେହି ନ ଭୁଲ ନାରୀଙ୍କୁ,
ନାରୀ ସ୍ୱାଧୀନତା ଯେମନ୍ତେ ହେବଟି ନିଶ୍ଚୟ ।
ଚେତାଇ ଦେଉଛୁଁ ଆମ୍ଭେ ଆଗରୁ ସେ ପାଇଁ,
ନୋହିଲେ କରିବୁଁ ଆମ୍ଭେ ନାରୀ ସତ୍ୟାଗ୍ରହ,
ନିବାର କହୁଛୁଁ ଆମ୍ଭେ ତୀବ୍ର ଦଣ୍ଡ କଥ ।

(କରତାଳି)

ମହାପାତ୍ରେ – ମାନନୀୟା ଭଗ୍ନୀ ଅମ୍ଭ କହିଲେ ଯେ କଥା,
ତହିଁରେ ସମ୍ମତ ଅଟେ କାୟ ମନୋବାକ୍ୟେ;
ଅସଲ କଥାଟା କିନ୍ତୁ ପଡ଼ୁନାହିଁ ହେଲେ ।
କଙ୍କ୍ରିଟ୍ ପ୍ରପୋଜେଲ ଶୁଣୁନାହିଁ କେହି,
ଯାଉଅଛି ବେଳ ବୋହି, ବାଜେ କାର୍ଯ୍ୟେ କଂପ୍ଲେ ।
ଅମ୍ଭ ମଧ୍ୟେ ସବୁଠାରୁ ଜାଣନ୍ତା ମାନବ
ପ୍ରାକ୍‌ଟିକେଲ ପ୍ରସ୍ତାବ କିଛି ଭାଷନ୍ତୁ ଏଠାବେ ।

( 'ସାଧୁ', 'ସାଧୁ' ରବ)

ମହତାପ – ସଭାପତି ମହାଶୟ, ପୁଣି ସଭ୍ୟ ବୃନ୍ଦେ,
ସମସ୍ତର ଗତି ତୁମ୍ଭେ ବୁଝୁନାହିଁ କେହି
ଅନ୍ଧକୂପେ ରହି କୂପ ମଣ୍ଡୂକର ପରି ।

ସାମାନ୍ୟ କାରଣେ ଆଜ ଛାଡ଼ ମନ୍ତ୍ରୀ ପଦ
ହୋଇଅଛୁ ଯେଉଁ ଝେସ୍ୟାକ୍ରିଫି,
କର ତାକୁ ସାଙ୍ଗ ଏବେ;
'ହିମାଳୟ୍ୱୀ ଭୁଲ' ଟାକୁ କର ସଂଶୋଧନ,
'ଅନ୍ତରର ଧ୍ୱନି' ଆଉ 'ନୂତନ ଆଲୋକେ' ।
ଏ ବେଳେ ଦେଲେଣି ଛାଡ଼ ଏ ଜୀବନେ କେବେ,
ଧୁରନ୍ଧା ଆସିବା ପୁଣି କାଠିକର ପାଠ ।
ଧୁରନ୍ଧା ଆସଇ ନାହିଁ ଦୋହର ଦେହେର ।
ଛାଡ଼ଦେଲେ ତାକୁ ଥରେ, ନାଏ ପ୍ରତିଶୋଧ;
ତେଣୁ କହେଁ ଭାଇମାନେ, ସବେ ହୋଇ ମେଳ,
ସବୁଠି ପଢ଼ନ୍ତୁ ବୋଧା ଯେଣୁ ଏକ କାଳେ,
ଗୁଳିଚିବ ଶ୍ରୀଛାମୁଙ୍କ ଭେଟକୁ ବାହନ ।
କହିବା ସକଳ ଦଳ ହୋଇ ଏକମୁଖ,
ଶାସନର ଡୋର ପୁଣି ଦିଅନ୍ତୁ ଆମ୍ଭଙ୍କୁ;
ଏହା ହେଲେ ପୂର୍ଣ୍ଣମାତ୍ରା ସହାୟତା ଦେଇ
ବ୍ରିଟିଶ ଶକ୍ତିର ଜୟ କରାଇବା ହେବେ ।
ଭାରତବାସୀଙ୍କ ବଳ ବୁଝିବେ ହିଟଲର,
ଭାଙ୍ଗିଯିବ ଭୁଲ ଆଉ ଦମ୍ଭ ତାହାଙ୍କର ।
(ଏହାଙ୍କ ଉତ୍ତରୁ ମିଆଁଜୀ ନୂର୍ ହଲାଇ ଉଠି ଭାଷିଲେ)

ମିଆଁଜୀ—ଜନାବ ମହୋତା ଅଭି କଲେ ଯେ ପସ୍ତାଉ,
ହମେ ତାହା ଦିଲ୍‌ସେ କରୁଛୁଁ ଦୁଜୀୟ,
ଦୋନୋ ଭାଇ ହିନ୍ଦୁ ମୁସଲମାନ୍,
ଘରମେ ଘରମେ ହାମେ ଲଗିବୁ ଝଗଡ଼ା,
ଝଗଡ଼ା ଝଗଡ଼ା ହେବୁ ଭାଗବଣ୍ଟା ଘେନି;
ଲେକିନ ମୁଲକେ ଯେବେ ପଡ଼େ ମୁସିବତ୍
ହାମର ବାଦସା ଯେବେ ହେବେ ହଇରାନ୍,
ଜରୁର ସେଦିନ ହାମେ ମିଲାଇବା ହାତ ।
ଜଣେ ମୁସଲମାନ ମନ୍ତ୍ରୀ ନିଅହେବେ ଏକା
ଏତିକି ମାତର ଭାଇ ଅରଜ ହାମର ।

ଘୋଷ ଚୌଧୁରୀ—ଭୋଟ ନିଆହେଉ ଏହି ପ୍ରସ୍ତାବ ସମ୍ବନ୍ଧେ,
ସାମ୍ୟବାଦୀ ତରଫରୁ ଆମର ପ୍ରୋଟେଷ୍ଟ ।

ଘୋଷ ପଣ୍ଡିତେ—ଆମ୍ଭେ ଶୁଣିଅଛୁ ଏକ ପଏଣ୍ଟ ଅଫ ଅଡ଼ର ।

(ଦୁଇପକ୍ଷରୁ ହୋ-ହୋ ଆରମ୍ଭ ହୋଇଗଲା ଓ ଅନେକେ ଆସନ ଛାଡ଼ ପଡ଼ିଲେ । ବ୍ୟଙ୍ଗଗଜେ ଅତ୍ରିନ ଟେକି ଠେଙ୍ଗା ଧରି ଉଠିଲେ । )

ଚୌଧୁରୀ—ଦୁଇହାତ ଟେକି 'ଶାନ୍ତ, ଶାନ୍ତ, ଶାନ୍ତ' କହିବାରୁ
ମହିଳା ଓ ମହିଳାଗଣ ନିବୃତ୍ତ ହେଲେ ।

ବ୍ୟଙ୍ଗଗଜେ—ସଭାପତେ, ତସ୍ୟ ଭ୍ରାତା ଭଗିନୀ ମଣ୍ଡଳ,
ପ୍ରସ୍ତାବ କରୁଅଛି ମୁହିଁ ନିଜସ୍ୱ ବଚନେ,
ତ୍ୟଜନ୍ତୁ କଂଗ୍ରେସ ଏବେ ଅହିଂସାର ନୀତି ।
ଯେତେଦିନ ସେ ନୀତିର ଥିଲା ପ୍ରୟୋଜନ,
ତେତେଦିନ ଚଳିଗଲା ଯେନ ତେନ ଭାବେ,
ଆଖିର ଅଞ୍ଜନ ଦେଇ ବିଶ୍ୱବାସୀଙ୍କର;
ଏବେ ପୂର୍ବ ପ୍ରତ୍ୟକ୍ଷ ଦ ଧରିଥାଉ ଅସ୍ତ୍ର,
ପଶୁବଳ ସଙ୍ଗେ ହେଉ ଲଢ଼ା ପଶୁ ବଳ;
ରାଜ ଶତ୍ରୁ, ରାଜ୍ୟ ଶତ୍ରୁ, ସଭ୍ୟତାର ଶତ୍ରୁ,
ପୁଣି ମହାଶତ୍ରୁ ଏହି ମାନବ ଜାତିର,
ସମ୍ମୁଖେ ହୁଙ୍କାରେ ଯେଣୁ;
ଠକାଠକି ମାମଲାରେ ନ ସିଝିବ ଶାଗ,
ଅସ୍ତ୍ରଶସ୍ତ୍ର ଧର ହାତେ ସିଧା ସରପଟ,
ଦେଶରକ୍ଷୀ ଦଳେ ଗୁଲ ଲେଖାଇବା ନାମ;
ଅନ୍ତତଃ ଠେଙ୍ଗାଟାମାନ ଧର ଏହିପରି ।
(କାନ୍ଧରେ ଠେଙ୍ଗା ପକାଇଲେ)

ଲେଖାଯାଉ ଏହିକଥା ହାଇ କମାଣ୍ଡକୁ ।
ଯଦି ତାହା ନ ମାନନ୍ତି ଦିଅନ୍ତୁ ସେ କାଟି,
ବେଙ୍ଗଲ ଭଳିଆ ଆମେ ହୋଇବା ସ୍ୱତନ୍ତ୍ର ।
ଅଟୋମାଟିକ ଯୁଗ ଏହା,
ମୁକ୍ତିର ହାତିଆ ଖେଳେ ସବୁରି ପରାଣେ,
ଆବାଳ ନେତା ବୃଦ୍ଧ ମହାର୍ଣ୍ଣ ସମାଜେ ।

ଘୋଷପତି—ସ୍ଥିର, ସ୍ଥିର, ବିଦ୍ରୋହ ! ବିଦ୍ରୋହ

ବ୍ୟଙ୍ଗଗଜେ - ହେଲେ ହେଉ ପଛେ ତାହା,
ନ ମାନିବୁଁ ଆମ୍ଭେ ଆଉ ନ ସହିବୁଁ ଛେବେ,
ବୃଦ୍ଧଙ୍କ ଧରମ ହାହା, କହି ମିଠା କଥା,
ନ ପଢ଼ିବୁ ଭାଗବତ ବୋଲି ଶରଖାଲ;
ଉଦ୍ଦାମ ଯୌବନ ତେଜ ଚପା ପଡ଼ ପଡ଼
ଯାଉଛି ମଉଳି, ଆମେ ଧର କଣ୍ଠି-ଝୁଲି
ବସିଥେ କୃଷ୍ଣ ନ ଭଜିବୁଁ ଆଉ ଏ ମୁହୂର୍ତ୍ତେ ।

ମହାତୋପ—ସଙ୍କଟ ବେଳରେ ଗୁଲେ ସଙ୍କଟ ଆଇନ,
ବାଦ ବିତଣ୍ଡାରେ ତୁଚ୍ଛା ହୁଏ କାଳକ୍ଷେପ,
ଇମର୍ଜେନ୍‌ସି କ୍ଷମତାରେ ସଭାପତି ଆଜ,

କରନ୍ତୁ ଦୁକ୍ରମ ଜାରି,
ଯେତେ ନର ନାରୀ,
ରଖି ନିଜ ଫୁଲ ଫାର ନତ ମସ୍ତକରେ,
ମାନିଗଲୁ ଯେହୁ ଅଙ୍କ, ନୋହିଲେ ଭୁରନ୍ତ,
ଦୁରନ୍ତ ଉପିପ୍ଲ ନାରୀ ଅକ୍ଷୟ ହେଉ ଦେଶନା ।

ସଭାପତି ଠିକ୍ କଥା, ଠିକ୍ କଥା—ତେବେ ଏଇ କଥା—
ସବୁଦଳ ସମନ୍ୱୟେ ବାଣ୍ଟିନେବୁଁ ଅନ୍ନେ,
ସବୁ ସ୍ୱାର୍ଥରକ୍ଷା କରି ନବ ମନ୍ତ୍ରୀଗଣେ;
କରି ଜଣେ ଜଣେ ପ୍ରତି ଦଳ-ପ୍ରତିନିଧି ।
ପଣ୍ଡିତ ଦଳରୁ ଜଣେ ମୂର୍ଖଦଳରୁ ଜଣେ,
ସାମ୍ୟବାଦୀ ଜଣେ ପୁଣି ମୁସଲମାନ ଜଣେ,
ସବୁଶେଷେ ନାରୀ ଜଣେ ହୋଇବେ ମନ୍ତ୍ରିଣୀ ।
ସଭାପତି ହେବେ ଜଣେ ନିର୍ବୋଳ ଗାନ୍ଧିଆ,
ଏହିରୂପେ ଏହି ପଞ୍ଚ ପାଣ୍ଡବ ଭଳିଆ
ଶାସିବେ, କାଶିବେ, ମୁଖି ଭାଷିବେ, ହାସିବେ ।
ଉପରେ ଉପରେ ଅଟୁ ଥିବୁଁ ହସ୍ତ ରୂପେ,
ତାହାହେଲେ ଧର୍ମ ରକ୍ଷଣ ବଳମ୍ବ ନଷ୍ଟମ୍ ।
ତାଳଗୁଡ, ମଧୁକୃଷ୍ଣ; ଉଅଦ୍ଧା ପ୍ରଣାଳୀ
ଏଇ ତନ୍ତ୍ର କାମ କନ୍ତୁ ଚଳାଇ ପହିଲୁ ।
ସୁନାକଣ୍ଠ, ହରିଜନ, ନମାନି କାରଣ
ପଛେ ପଛେ ଚଳାଇବ ନ କରଣ ହେଲା ।
ଏ ମନ୍ତ୍ରିମଣ୍ଡଳ କେହି ନୋହିବ ପ୍ରଧାନ,
ଏକକୁ ଅନେକ ଜଣେ ଜଣେ ବଳୀୟାନ,
ଥିବ ସାବଧାନ,
ଡେମୋକ୍ରେସି ନୀତିର ଏ ଅଟଳ ବିଧାନ ।

( ଏତଦନ୍ତେ 'ଜୟ ମହାତ୍ମା ଗାନ୍ଧିଙ୍କର ଜୟ' ନାଦରେ ସଭା ଭଙ୍ଗହେଲା । କେବଳ ଜଣେ ପଛପଟେ 'ଇନ୍‌କ୍ଲାବ ଜିନ୍ଦାବାଦ୍' କରି ଦେଲେ । )

## ଦ୍ୱିତୀୟ ଦୃଶ୍ୟ

[ଭେଣ୍ଡସ୍ଥାନର ନବାବ ତାଙ୍କ ଖାସ କାମରାରେ ପାଞ୍ଚହାତ ଲମ୍ବ ଅଲ୍‌ବଲା ନଳ ଧରି ଭୁଡ଼ୁରୁ ଭୁଡ଼ୁରୁ କରୁଛନ୍ତି ଓ ବାମହସ୍ତରେ ଅଞ୍ଚୁଳି କେଶ ମଧ୍ୟରେ ଚାଳନ କରୁ କରୁ ଅର୍ଦ୍ଧ ମୁଦ୍ରିତ ଚକ୍ଷୁରେ କାଉଚ ଉପରେ ଅର୍ଦ୍ଧ ଶାୟିତ ଅବସ୍ଥାରେ ବସିଛନ୍ତି । ପାର୍ଶ୍ୱବର୍ତ୍ତୀ କୁଶନ ଚେୟାରରେ ବସିଛନ୍ତି ପ୍ରଧାନ ଘୁମୁକରଣ । ବିଜୁଳି ପଙ୍ଖା ଘୁରି ଘୁରି ଟେବୁଲ ଉପରେ ଥିବା ଫଲଦାନର ସଦ୍ୟ ଗୋଲପ ସୌରଭ ମୃଦୁ ମୃଦୁ ବିସ୍ତାରଣ କରୁଛି । ଘରଟି ନିସ୍ତବ୍ଧ । ବାହାରେ ଅକାଶ ମେଘୁଆ]

ନବାବ୍- ତାର୍ ପର୍ ? ·····
ଘୁମୁ—ସେମାନେ ତ ଏକ ଅଭିଲାଷର—ବେଳେ ଜଣାଯିବ ।
ନବାବ—ସମସ୍ୟାଟା କନ୍ତୁ ଉକ୍ଷମ ଦେଖୁଛି ?
ଘୁମୁ—ଦେଖିବ ଜନାବ—କନ୍ତୁ ଏ ବେଳରେ—
ନବାବ—ଅର୍ଥାତ୍; ଯୁଦ୍ଧ ବେଳରେ ତ ? ସେ ତ ଖୁବ୍ ଭଲ; ସବୁ ତାଙ୍କର ମୁଣ୍ଡରେ ଯିବ । କ୍ଷତି କଣ ?
ଘୁମୁ-ଅସମ୍ଭବ ନୁହେଁ, ହଇରଣ । ଏବାଦେଲେ ଓଲଟ ପାଲଟ । ଛେକ ଛେକ ଭଙ୍ଗା ଯୋଡ଼ାରେ ଯାହା ହୁଏ । ତା ପରେ କର୍ମଗୁରୁମାନଙ୍କ ମତରେ ।
ନବାବ—କନ୍ତୁ ମୋର ଯେପରି ମନେ ହୁଏ, ଅଜ୍ଞ ନ ହେଲେ ବ, ଅନ୍ତର୍ଦ୍ଦୃଷ୍ଟି ଅମକୁ ତାହା ଯେ କୌଣସି ମତେ କରିବାକୁହିଁ ହବ ତେଣେ ଜାହାପନା ବାଦଶାହଙ୍କ—
ଘୁମୁ—ଯେତେବେଳେ ବାଧ୍ୟହୋଇ କରାଯିବ । ଅଉ ମଧ୍ୟ ଦୋଷ ଅମ ମୁଣ୍ଡରେ ନୁହେଁ । ଯେ ସମଗ୍ର ସାମ୍ରାଜ୍ୟ ନୀତିରେ ଷାଷ୍ୟ ଦେଇ ଚଳିବା କଥା ।
ନବାବ—କନ୍ତୁ ଉପରକୁ ଅମର ନୀତି ଯାହା, ଯେଥିରେ ଏପରି ଗୋଟାଏ ପ୍ରସ୍ତାବକୁ ଚାହାଁରିବେ କାହିଁବାକୁ···
ଘୁମୁ—ଅଛି ଜନାବ ଅଛି, ଉପାୟ ତାର ଅଛି । ସରଳ, ସିଧା କଥାରେ ବରଫ କାଟି ହୁଏ ନାହିଁ । ଡେଓ,ଡିପ୍ଲୋମେସି—ଅମ ଜାତୀୟ ଗୁଣ···

(ଅର୍ଦ୍ଦଳି ପ୍ରବେଶ କରି ସଲାମ କଲା ଓ ଦୁଇ ଖଣ୍ଡ କାର୍ଡ ଦେଲା ।)

ଘୁମୁ—ସ୍ୱଜା ଜଲବୋଟ ଓ ପଣ୍ଡିତ ଗଦାଧାରୀ ।
ନବାବ—ଜଲବୋଟ ଓ ଗର୍ଦନ ଭାରୀ ? ଅଚ୍ଛା ବୁଲାଓ ଭିତର ।
(ଅର୍ଦ୍ଦଳି ଚୁଲିଗଲା)
ନବାବ—ସେମାନେ ତ ଏକଦମ୍ ଠିକ୍ ଉତ୍ତର ମାଗିବେ । କଣ କହିବା ?
ଘୁମୁ—ଥାକ୍ ଗୁକ୍ । wait and see—ଅମର ସାମ୍ରାଜ୍ୟ ନୀତି ।
ନବାବ—କନ୍ତୁ—
ଘୁମୁ—ଚିନ୍ତା କରନ୍ତୁ ନା ଜନାବ; ଏ ଦାୟ ଉପରେ ନିର୍ଭର ରଖନ୍ତୁ ।

(ଜଲବୋଟ ଓ ଗଦାଧାରୀ ପ୍ରବିଷ୍ଟ ହୋଇ କୁର୍ଣ୍ଣିଶ କଲେ । ଘୁମୁକରଣ ଅସନ ତ୍ୟାଗ କରି କରପାତ୍ରେ ଦୁହିଁଙ୍କୁ ଅସନରେ ବସାଇଲେ)

ନବାବ—(ହଁ ଷକ୍ତ ହସି) ଆଜି ପାଗଟା ବେଶ୍ ମୁଲାଏମ୍, ନା ?

ରାଜା—ଜିଙ୍କ, ପୁଣି ବୋଧହୁଏ ଝଡ଼ ଆସିବ ।

ନବାବ—ଯାହା ହବାର ତ ହୋଇ ଯାଇଛି । ଆଉ ଅଧିକା କିଛି
କରିବାର ଆଶଙ୍କା ନାହିଁ । ତାରପର ସରକାର ହଜୁରଙ୍କେ
କାଗଜଅର ଅଛନ୍ତି; କଣ କହୁଛନ୍ତି ପଣ୍ଡିତ ଗର୍ଦ୍ଦନଭଙ୍ଗ ?

ପଂଡ଼ିତ—ହଜୁର ଯାହା କହୁଛନ୍ତି ତାହା କେବଳ ସତ୍ୟ ନୁହେଁ, ନିପଟ,
ନିଛକ, ନିଟୋଳ ସତ୍ୟ । ଗାନ୍ଧୀଜୀଙ୍କ ସତ୍ୟପରି ଖାଣ୍ଟି,
ଅନାବିଳ, ଅମିଶା ସତ୍ୟ ।

ଛମ୍ପୁ—ପଂଡ଼ିତଜୀ ନିଜେ ଯେପରି ନିଚୋଳ ଅଭେଜାଲ ଗାନ୍ଧି ଭକ୍ତ ।

(ସମସ୍ତେ ହସି ଉଠିଲେ)

ପଂଡ଼ିତ—(ମୁହଁଟା କୋକାବଲି କରି) ହଜୁରଙ୍କ ସହିତ କିଛି ନିବେଦନ
ଅରଜ ଅଛି, ଯଦି ଫରମାଏସ୍ ହୁଏ—

ନବାବ—ନିର୍ବିଘ୍ନରେ, ନିର୍ଦ୍ଦ୍ୱନ୍ଦରେ, ନିଶ୍ଚିନ୍ତରେ କହି ପାରନ୍ତି,
ଅପଣମାନଙ୍କ କଥା କାନରେ ଶୁଣିବାପାଇଁ ତ ଆମେ ଅଛୁଁ ।

ପଂଡ଼ିତ—କହୁ, କହୁ, (ଛମ୍ପୁକରଣଙ୍କୁ ଆଡ଼ରେ ଚାହିଁଲେ)

ନବାବ—ଓଃ, ସେ ! ନିର୍ଭୟରେ କହନ୍ତୁ ।

ପଂଡ଼ିତେ—(ଜଳଦୋଠକୁ ଚାହିଁ) ଅପଣ ଅରମ୍ଭ କରନ୍ତୁ ।

ଛମ୍ପୁ—ବେଶ, ଅହି-ନକୁଳର ସମିଶ୍ରଣ ।

ରାଜା—ସତ୍ୟ,

ସମିଶ୍ରଣ ଅହି ନକୁଳର;
ହୋଇନାହିଁ ଭୂ-ଭାରତେ ଯାହା,
ଆଜି ସେହି ନୂଆ କଥା କରି ଭେଡ଼ସ୍ଥାନ,
ରଖିବ ନିଜର ନାମ,
ସ୍ୱର୍ଣ୍ଣାକ୍ଷରେ ଯୁଗ ଇତିହାସେ ।
ଯେତେବେଳେ ସ୍ୱଦେଶକୁ ପଡ଼ଇ ବିପତ୍ତି,
କ୍ଷୁଦ୍ର ସ୍ୱାର୍ଥ, କ୍ଷୁଦ୍ର ମତବାଦ,
ଅଗାଧ ସମୁଦ୍ର ପଡ଼ି ବୁଡ଼ିଯାଏ ହେଲେ ।
ବିରୋଧାବିରୋଧ, ଶୋଧାଶୋଧ, ଭେଦାଭେଦ ଆଦି,
ଚିରନ୍ତନୀ ବୈରଭାବ ପକାଇ ପାଦେ,
କରେ କର, ବକ୍ଷ ବକ୍ଷ ମିଳାଇଣ ଆମ୍ଭେ;
ଅଟିଅଛୁଁ କରିବାକୁ ସ୍ୱଦେଶର କାମ,
ଜନତାଙ୍କ ଆଜ୍ଞା ମାନି ପ୍ରତୀକ୍ଷା ଆତୁର ।

ନବାବ—ସାଧୁ ସାଧୁ !

ଶାସନର ମୂଲ୍ୟ ମାନି ବୁଝିଛ ତୁମ୍ଭେ ହିଁ,
(ପଂଡ଼ିତଙ୍କୁ ଚାହିଁ)
ଭାଷନ୍ତୁ ଗର୍ଦ୍ଦନଭଙ୍ଗ ପଂଡ଼ିତେ ଏଥର ।

ପଂଡ଼ିତେ—(ଦୁଇ ଅଧର କମ୍ପରେ ଚାହିଁ)
ଦେଶକୁ ବିପତ୍ତି ଆଜି ପଡ଼ିଅଛି ଯେଣୁ ।
ଶତ୍ରୁ ଅସି ଦ୍ୱାରେ ଉପନୀତ,
ଏ ବେଳରେ ଛାଡ଼ି ଆମ୍ଭେ ଘରୋଇ ବିବାଦ;
ସ୍ୱଦେଶ ରକ୍ଷାରପାଇଁ ହୋଇଛୁଁ ତତ୍ପର;
ଆପଣା ଆପଣା ମଧ୍ୟେ ଭୁଲିଣ ବିବାଦ,
ପେଲାପେଲି ଛାଡ଼ି ହେଉଅଛୁଁ ଗେହ୍ଲା ଗେହ୍ଲି,
ଦଳାଦଳି ପିନ୍ଧି ଦେଇ ହୋଇ ଗୋଳାଗୋଳି ।
ଆସିଅଛୁ ଛମ୍ପୁଙ୍କ ଅଗ୍ରତେ,
କରିବାକୁ ଦେଶ ସେବା, ପୁଣି ରାଜ ସେବା,
ରାଜାର ଇଜ୍ଜତ ରକ୍ଷ, ପୁଣି ଦେଶ ରକ୍ଷା,
କୁଳ, ମାନ, ଲଜ୍ଜା, ଭୟେ ଦେଇ ଜଳାଞ୍ଜଳି,
ଭସି ଫ୍ଲିନେର ଆକ୍ସନ୍ ପଦେ ଦେଇ ଦଳି,
ନିର୍ଭୀକ ବୀରର ଭଳି,
ଚଳି ପଡ଼ିଅଛୁ ଆମ୍ଭେ ବେଳକାଳ କଳି ।
ପ୍ରଜା ପ୍ରତିନିଧି ଆମ୍ଭେ, ଲୋକ ପ୍ରତିନିଧି,
ରାଜ ପ୍ରତିନିଧି ସନେ ଦେଇ ହାତ ଛନ୍ଦି ।
କେବଳ ଛମ୍ପୁଙ୍କ ଆଜ୍ଞା···

ଛମ୍ପୁ—ତୁମ୍ଭେତ ଅହିଂସାବାଦୀ, ଛାତିପତା ଦଳ,
ଏଟିତ ଚାଲିଛି ଏବେ କଣ୍ଟକଣ୍ଟି ବଳ ।

ପଂଡ଼ିତ—ଭ୍ରମ, ଭ୍ରମ, ମହାଭ୍ରମ ଏହା,
ଆମର ବାଦଶା ଯେଣୁ ଆମ୍ଭ ମାଆ ବାପ,
ତାଙ୍କ ସଙ୍ଗେ କଳିଟା ଯେ, 'ଅଳି' ତାର ନାମ;
ସେଠି ପିନା ଚଳିପାରେ ଅହିଂସା ସମର,
ନିଷ୍କ୍ରିୟ ବିରୋଧ, ଯଥା ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟେ ।
ମାତ୍ର ଆତତାୟୀ ଶତ୍ରୁ ସମ୍ମୁଖେ ଆତୁର,
ଛାଡ଼ଇ ହୁଙ୍କାର ଯେଣୁ ପଶୁବଳେ ବଳୀ,
ନୃଶଂସ ଆସୁରୀ ମାୟା ବିକାଶି ଜଗତେ,
ଛାର ଖାର କରେ ଧନ, ଜୀବନ, ଇଜ୍ଜତ ।
ଏକାଳେ ପିମ୍ପୁଡ଼ି ଜନ୍ତା ଯେତେ ଦେଶ ବାସୀ,
ସଶସ୍ତ୍ର ବିକ୍ରମେ ଯାଇ କରନ୍ତୁ ନିରୋଧ,
ଅସଭ୍ୟର ଦମ୍ଭ ଭାଙ୍ଗି ତୀବ୍ର ପ୍ରତିଶୋଧ ।

ଛମ୍ପୁ—ବାହାବା ପଂଡ଼ିତ ଜ୍ୟାଦା ବାହାବା ବାହାବା
ଧନ୍ୟ ଭେଡ଼ସ୍ଥାନ ଧରି ତୁମ୍ଭକୁ କୋଳରେ,
ଧନ୍ୟ ତୁମ୍ଭ ତେଜ, ବୀର୍ଯ୍ୟ, କଳାକ, ହିମ୍ମତ୍ ।
ବ୍ରାହ୍ମଣ ହୋଇ ଯା ତୁମ୍ଭେ ହେଲି କ୍ଷତ୍ରିୟେ ।

ପରଶୁରାମର ଅବା ହେବ ବଂଶଧର ।
ଅବା ହେବ ଦ୍ରୋଣ ପୁତ୍ର, ଅଶ୍ୱତ୍ଥାମା ବୀର !

ପଂଡ଼ିତ—(ଖୁସି ହୋଇ)
ଭିତରେ ଭିତରେ ମୋର ବୀରତ୍ୱ ହୃଦୟ,
ସଦାବେଳେ ରଣ ମନୋବୃତ୍ତି,
ପଲିଟିକ୍ସ କ୍ଷେତ୍ରେ ମାତ୍ର ଅହିଂସା ପଲିସି ।

ଘମ୍ପୁ—ମନେହୁଏ ଯାଇଥିବ ସ୍କଟଲାଣ୍ଡ ଦେଶେ,
ହାଇଲାଣ୍ଡାର ମନୋଭାବ ପ୍ରକଟଇ ତୁମ୍ଭେ ।

ନବାବ—ଅଚ୍ଛା ଆପଣ ଆଜ ଯେ ପ୍ରଜା ପ୍ରତିନିଧି ହୋଇ କଥା କହିବାକୁ ଆସିଛନ୍ତି । ସମଗ୍ର ଦଳପତିମାନେ ଆପଣଙ୍କ ପଛରେ ଅଛନ୍ତି ତ ?

ପଂଡ଼ିତ—ଏ ଭେଜ ରାଜ୍ୟରେ ତାହା ତ ସମ୍ଭବ ନୁହେଁ ପ୍ରଭୁ । କେବଳ ଦଶ ଜଣ ମାତ୍ର ଆମ୍ଭ ବୋଲରେ ଉଠିଛନ୍ତି । ଏହି ଦଶ ହେଲେ ମଧ୍ୟ ରାଜଦଳ ସହିତ ମିଶି ଆମ୍ଭେ ଯେ ସଂଖ୍ୟା ଗରିଷ୍ଠ ହେଉଛୁଁ ।

( ଘମ୍ପୁ କରଣ ଓ ନବାବ ଆଙ୍ଗୁଳି ରେଖା ଗଣିବାକୁ ଲାଗିଲେ । )

ନବାବ—ତା, ଠିକ୍··· ତେବେ କେତେଜଣ ଉଜୀର ହେବେ ?

ପଂଡ଼ିତ—ଯେତେ ଦଳ ଆସିବେ ତେତେ ଜଣ ।

ନବାବ—ମାନେ ?

ପଂଡ଼ିତ—ଛଅରୁ ଆଠ ଯାକେ ।

ନବାବ—ଦରମା ଯେ ଅତି ବେଶି ହେଇ ଯିବ ।

ପଂଡ଼ିତ— ସେ ଦାୟିତ୍ୱ ଆମ ମୁଣ୍ଡରେ । ଆମେ ତ ବଜେଟ୍ ଠିକ୍ କରିନେବୁଁ ।

ନବାବ—ଜଣ ପିଛା ମାସକୁ କେତେ ମହିନା ଦବାର ଭାବିଛ ?

ପଂଡ଼ିତ—ମାସକୁ ସର୍ବମୋଟ ୧୦୦୦ ଟଙ୍କା ଲେଖା ହେଲେ ଏ ଗରିବ ଦେଶ ପକ୍ଷରେ ଯଥେଷ୍ଟ ହେବ ବୋଲି ମନେ କରୁଛୁଁ ।

ନବାବ—କିନ୍ତୁ ଏହା ଆଗରୁ ତମର ଦଳ ଯେ ଟ୬୦୦ ଲେଖାଁ ନେଉଥିଲେ ।

ପଂଡ଼ିତ—ସେମାନେ ଅନ୍ୟ ବାଟରେ ବହୁତ ଟାଣି ନେଇ ଯାଉଥିଲେ ଯେ, ଯେପରିକି ଘରଭଡ଼ା, ମଟର ଭଡ଼ା, ଟି.ଏ. ଇତ୍ୟାଦି···

ଘମ୍ପୁ—ଯେଉଁମାନେ ମାସକୁ ଟ୬୫୯ ରେ ବେଶ ଚଳୁଥିଲେ, ସେହି ବୁଦ୍ଧି, ସେଇ ଅକ୍କଲ । ସେଇ ଦକ୍ଷତା, ସେଇ ସମସ୍ତ ନେଇ ବର୍ତ୍ତମାନ ବା ନ ଚଳିବେ କାହିଁକି ?

ପଂଡ଼ିତ—ଚଳି ଯାଇ ପାରନ୍ତେ, ମାତ୍ର ଭଲ ଘର, ଭଲ ମଟର ପ୍ରଭୃତି ନ ରଖିଲେ ପ୍ରେଷ୍ଟିଜ୍ ରହିବ ନାହିଁ । ତାପରେ ଅଛି, ନିତି କୁଣିଆ, ଗ୍ରୁ-ପାର୍ଟି ଇତ୍ୟାଦି ।

ଘମ୍ପୁ - ତେବେ ସେଇ ଟ୬୫୯ଙ୍କା ନିଅନ୍ତୁ । ଆଉ ଯେ ସବୁ ପାଇଁ ଭତ୍ତମାନ ଓ ରାସ୍ତାଖର୍ଚ୍ଚ ଟାଣନ୍ତୁ । ଯେ ଯେତେ ଟାଣି ପାରିବ ଇଚ୍ଛା – ସେଥିରେ ସୀମା ନାହିଁ । ଉପରେ କିନ୍ତୁ ଦେଖିବାକୁ ଟ୬୫୯ । ଏହା କରି ପାରିଲେ ଆଗବାଲାଙ୍କୁ ଟିଡା କାଟିଦେବା ।

ରାଜା—ଖୁବ୍ ଭଲ ପ୍ରସ୍ତାବ, ତେବେ ମୋର ବନ୍ଧୁମାନେ ରାଜି ହେଲେ ହୁଏ !

ପଂଡ଼ିତ—ମୁଁ ହେଉଛି ।

ଘମ୍ପୁ—ଦେଖନ୍ତୁ ହାତରେ କ୍ଷମତା ଥିଲେ, ଅନେକରକମର ମୁନାଫା ଅଛି । ଯଥା · ବାରିକ ମିସ୍ତ୍ରୀ ଇଲାକା, କୃଷିବିଭାଗର ବାହାନ, ଚେକସହ୍ ବୁକ୍ ପ୍ରଭୃତି···ବୁଝିଲେ ତ ?

(ମୁରିକି ହସିଲେ)

ନବାବ—ଅଚ୍ଛା, ରାଜାସାହେବ, ଆପଣ ତ ପ୍ରଧାନ ଉଜୀର ହେବେ ? ପ୍ରଧାନ ଉଜୀରଙ୍କ ଦରମାଟା ଟିକିଏ ଅଧିକା ହେବା ଦରକାର, ଅନ୍ତତଃ ସମ୍ମାନ ପାଇଁ ।

ରାଜା—ପଂଡ଼ିତେ ହେବେ ବୋଲି ଠିକ୍ ହୋଇଛି ।

ନବାବ—(ଆଶ୍ଚର୍ଯ୍ୟ ହୋଇ) ଆଁ ! ଆପଣଙ୍କ ପିଠିଧାରୀତ ଅଧିକ ! ଆପଣ ହବାର କଥା ।

ରାଜା—କିନ୍ତୁ ଯାହାଙ୍କ ପାଇଁ ଏତେ କଥା ହେଇ ପାରୁଛି ତାଙ୍କୁ ବଡ଼ଭାଗ (weightage) ଦବା ଉଚିତ୍ । ତାଛଡ଼ା ପ୍ରଧାନ ଉଜୀରଙ୍କ ହାତରେ ଅର୍ଥ ( Finance ) ବିଭାଗ ଦବାର କଥା । ସେ ବିଜ୍ଞାନରେ ତାଙ୍କର ପ୍ରବୀଣତା ଅଛି, ଆଗରୁ ଇନସୁରେନ୍ସ ବେଙ୍କ ପ୍ରଭୃତି ସେ ହାତେଇ (handle) ଛନ୍ତି ।

ନବାବ—ଓଃ, ବୁଝିଲି । ପଂଡ଼ିତଙ୍କ ଦଳ କେତେ ମୁଣ୍ଡ ଆସୁଛନ୍ତି ?

ପଂଡ଼ିତ—ଦଶଜଣ ଏ ଯାକେ ଜବାବ ଦେଇଛନ୍ତି । ମାତ୍ର ଆମେ ବୁଝିଛୁ କ୍ଷମତା ହାତରେ ପାଇଲେ ଡବଲ କରି ପାରିବା ।

ଘମ୍ପୁ – ସେମାନଙ୍କ ନାମ ତାଲିକା ଦେବେ କି ?

ପଂଡ଼ିତ—ଗାଡ଼ୀ ବନ୍ଧା ପୂର୍ବରୁ ସେମାନେ ନାମ ପ୍ରକାଶ କରିବାକୁ ନାରାଜ ।

ଘମ୍ପୁ—ଅର୍ଥାତ୍ ସେମାନେ ଭୀରୁ ଓ ସତ୍‌ସାହସ ହୀନ ।

ପଂଡ଼ିତ—ନାହିଁ, ଏକୂଳ ସେକୂଳ ଉଭୟ କୂଳ ହରାଇବା ଭୟରେ ।

ଘନଶ୍ୟାମ—ଏପରି ସ୍ୱଭାବ ଯାହାଙ୍କର ତାଙ୍କ ଉପରେ ଶ୍ରଦ୍ଧା ବା ବିଶ୍ୱାସ ସ୍ଥାପନ କିପରି କରିପାରି ପାରେ ? ମୁଁ ଯାହା ବୁଝିଛି ସଦାଶିବ ବାବୁଙ୍କ ବ୍ୟକ୍ତି ଅଚଳ ଏକା ।

ସଂଜ୍ଞିତ—ବର୍ତ୍ତମାନ ସେଇସେ ଧରନେଇ ଜବାବ ଦେଲେ ସେମାନେ ଅସିଟିବେ ।'

ଘନଶ୍ୟାମ—କିନ୍ତୁ ନବାବ ସରକାର ଏପରି ଅନିଷ୍ଟସ୍ପୃହା ଉପରେ ଆଉ ଏପରି ଗୋଡ଼ାଖିଆ ଲୋକଙ୍କ ଉପରେ ନିର୍ଭରକରି ନପାରନ୍ତି । ଅପଣଙ୍କ ବଂଶର ଓଲଟ ରବି ମାହିବା ଲୋକଙ୍କ ଦସ୍ତଖତ ସ୍ୱୀକାରପତ୍ର ଦାଖ ଦେଲ କରବୋର କାରଣରହ ଦାଖଲ ନ କଲେ ଆମେ ଏପରି ଉଡ଼ା କଥାରେ ଏତେ ଗୁରୁତ୍ୱପୂର୍ଣ୍ଣ ଚିନ୍ତନ କରିବାକୁ ଅକ୍ଷମ ।

ନବାବ—ଠିକ୍, ଘନଶ୍ୟାମ ଯାହା କହିଲେ ତାହା ଆମ୍ଭର ବି ମତ ।

ସଂଜ୍ଞିତ—କିନ୍ତୁ ସେତେବେଳେ କେନ୍ଦ୍ରସରକାରର ମନୋଭାବ···

ଘନଶ୍ୟାମ—ସେଟା ବୁଝିବା ଆମର କାମ, (lock out) ତମର ନୁହେଁ ।

ନବାବ—ଆମ୍ଭେ ବଡ଼ ଦୁଃଖିତ ଯେ ଅପଣମାନଙ୍କ ତୁଚ୍ଛା କଥା ଉପରେ ପ୍ରତ୍ୟୟ କରି ଆଜି କିଛି ଜବାବ ଦେଇ ପାରିଲୁ ନାହିଁ । ଯଦି ଅପଣମାନେ ଶ୍ରମିକ ଶତବାଲଙ୍କ ପ୍ରତ୍ୟକ୍ଷ ଜବାବ ଅଣିଦେବେ, ତେବେ ସେ ଭିତ୍ତିରେ ଆମେ କର୍ତ୍ତବ୍ୟ ସ୍ଥିର କରିବୁଁ । ଅପଣମାନଙ୍କ ଅପାଚିତ ସଦିଚ୍ଛା ନିମନ୍ତେ ପ୍ରଚୁର ଧନ୍ୟବାଦ୍ । ବିଦାୟ ।

[ ନବାବ ଗାତ୍ରୋତ୍‌ଥାନ କରନ୍ତେ, ସକଳେ ଛିଡ଼ା ହେଲେ ଏବଂ କର କିମ୍ପନାନ୍ତେ ମୁଖ ଭାବକରି ନିଷ୍କ୍ରାନ୍ତ ]

## ତୃତୀୟ ଦୃଶ୍ୟ

( ବାଗବଜାରର ଏକ ସୁସଜ୍ଜିତ ଦୋତାଲା କକ୍ଷ । ଭନରେ ଅଫିସ ଓ ସନିରେ ବୈଠକଖାନା ଉଭୟରୂପେ ବ୍ୟବହୃତ ହେଉଥିବାର ସବୁ ଲକ୍ଷଣ ଓ ଚିହ୍ନ ବିଦ୍ୟମାନ । ଘରର ଏକ କଣରେ ଲମ୍ବ ତକ୍ତାପୋଷ ଉପରେ କାର୍ପେଟ ବିଛଣା । ମଝିରେ ରାଇଟିଂ ଟେବୁଲ । ଟେବୁଲ ଚାରିପଟେ କେତେଖଣ୍ଡ ବୋହାଓଆ ଚେୟାର ଓ ଗୋଟିଏ ଘୁରୁଣି ଚୌକି । ତା ପାଖଲୁ ବହିରଖା ସେଲଫ୍ । ଏକ କାନ୍ଥ ପାଖରେ ଡ୍ରେସିଂ ଟେବୁଲ, ଦ୍ୱାରର ଦୁଇ କଡ଼ରେ ଦୁଇଟା କାଚ ଅଲମାରି । ସାମନା କାନ୍ଥ ମଝିରେ ଗୋଟାଏ ଲୁଗାରଖା ହୁକ୍ । କାନ୍ଥ ଉପରେ କେତେଖଣ୍ଡ ଛବି - ଗାନ୍ଧି, ଜବାହାରଲାଲ ପ୍ରଭୃତି । କେବଳ ଖଣ୍ଡିଏ ଛବି ଲେଉଟିଇ ଦେଖା ହୋଇଛି—ବୋଧହୁଏ ସୁଭାଷବୋଷଙ୍କର ବାବୁ ହରଦମାନନ୍ଦ ଏକାକୀ ଖଟ ଉପରେ ବସି ବାର ବାର ଝରକା ବାଟେ ତଳକୁ ଅନାଉଛନ୍ତି ଓ ମଝିରେ ମଝିରେ ଡ୍ରେସିଂ ଟେବୁଲରେ ଲାଗିଥିବା ଆଇନାକୁ ମୁହଁ ଦେଇ ଲମ୍ବ ଲମ୍ବ ମୁଣ୍ଡ ବାଳକୁ ହାତଦ୍ୱାରା ସଜାଡ଼ି ନେଉଛନ୍ତି । ମୁହଁରେ ଉଗ୍ର କ୍ରୋଧର ଛାୟା—କାହାକୁ ଯେପରି ଅଗ୍ରହର ଅପେକ୍ଷା)

ହରଦମ—(ଡାକ ପକେଇଲେ) ନଟିଆ । ରେ ନଟିଆ··· ଅରେ ନଟିଆ !! (ଗୃହର ନଟିଆ ସେଆଡ଼ୁ ଜବାବ ଦେଲା—ଆଗିଆଁ ଆଁ ଆଁ—)

ହର—ଅରେ ଇଆଡ଼େ ଅଇଲ୍ ।

(ହାତ ଯୋଡ଼ାକ ଆଗକୁ ବଢ଼ାଇଲାପରି ନଟିଆ ଆସି ଛିଡ଼ା ହେଲା )

ହର - କଣ କରୁଥେଲୁ ମ ! କାନରେ କଣ - ବାଜୁଛି ( ଭିତରୁ ଗୋଟାଏ ବଳାସି ଶବ୍ଦ ବାହାରି ପଡ଼ିଲା )

ନଟିଆ—ଆଜ୍ଞା—ସୃ କରିବାକୁ ଇଷ୍ଟୋଭ୍ ଲଗଉଥିଲା ।

ହର—(ମୁହଁ ବିକଟି) ଯା—ଯା—ଇଷ୍ଟୋଭ୍ ଲଗଉଥିଲା, ଗୁଡ଼ ଲଗଉଥିଲା ! ··(କଅଁଳ ହୋଇ) ଆରେ ଗଲ୍, ଦେଖିଲୁ କିଏ ଅସୁଚନ୍ତି କି ନାହିଁ ।

ନଟିଆ—କାହା ଆସିବା କଥା ବାବୁ ?

ହର—ତୋ— । କହିଲି ତ ଥରେ, ପୁଣି ବକ୍‌ବକ୍ କରୁଛୁ ଯାଃ— ( ନଟିଆ ପଳାଇଗଲା । ବାବୁ ଆଇନାକୁ ମୁହଁ ନାନା ମୁଖଭଙ୍ଗୀ ସହକାରେ ନିଜର ଚେହେରାକୁ ତଜବିଜ କରିବାକୁ ଲାଗିଲେ ଓ ବାଳ ସାଉଁଲାଇ ଦେଲେ । ଏହି ସମୟରେ ତାଙ୍କର ସାନ ଝିଅ ଚିକିମା ଡାକିଲା—'ବାପା !' ହରଦାମ୍ ବାବୁ ଚହଙ୍କି ପଡ଼ିଲେ ! )

ହର—କି ! ···ଟି ଅଇଛୁଲା ଗୋଳମାଳ କର୍ ନା । ଯା— ( ଚିକିମା ମୁହଁ ଶୁଖାଇ ଫେରିଲା )

ହର—ଏ ଶୁଣ ଶୁଣ; କଣ କହୁଥେଲ୍ ?

ଚିକିମା—ସିନେମା । ବୋଉ କହିଲା ଅଜି ସିନେମା ଦେଖି ଯିବୁ । ତମେ ନେଇଯିବ ।

ହର—ଓଃ—ସେଇଥିପେଇଁ ଏତେ ଧୁଆଁଗ ପଡ଼ି ! ଯା କହିଦବୁ ମୁଁ ଯାଇ ପାରିବ ନେଇଁ ଅଜ । ମୋର ଢେର୍ କାମ ।—

ଚିକିମା—ବୋଉ କହୁଚି,ତମେ ନଗଲେ ଆମେ ଏକା ଯିବୁଁ । ଭାଇ ଯିବେ ସାଙ୍ଗରେ ।

ହର—ବୋଉ କମିତି ଯିବେ । କୁଣିଆ ଆସିବେ ଯେ ।

ଚିକିମା—ବୋଉ କହୁଛି ନ ଗଲେ ହବନି, ଏ ଖେଳଟା ସରିଯିବ । ଅଜ ଶେଷ ଦିନ ।

ହର—ହଉ, ଗଲେ ଯା, ମୋତେ ବରକ୍ତ କର ନା ।

ଠିକଣା—ବୋଉ କହୁଚି—କୋ—ଠିକଃ······

ହର—ମୁଁ ଜାଣେନା—ପଳାଃ—

( ଆଖି କାଢ଼ିଲେ )

( ନଟିଆ--ପ୍ରବେଶ କଲା )

ନଟିଆ—ସେଇ ବାବୁ ଆସିଛନ୍ତି ।

ହର=କିଏ ସ ? ଓଃ ।

ନଟିଆ—ସେଇ ଯେ ଥିଲେ, ବଡ଼—

(ତରବର କରି ଉଠି ହରଦମ ଥରେ ଆଇନାକୁ ଚାହିଁ ଦେଇ ଖାଡ଼ାଖୁଣ୍ଟ ହୋଇ କିମେଷମଧ୍ୟରେ ଚଉକୀରେ ସଜହୋଇ ବସି ପଡ଼ିଲେ । )

ହର—ଏଠି ଠିଆ ହେଇ କାହାକୁ ଚାହିଁଛୁ—ବୁଡ଼ବକ୍—ଯା—ତାକୁ ଡାକିଆ । ( ନଟିଆ ଚାଲିଗଲା—ଠିକଣା କହିଲା 'ବାବା' । )

ହର—ତୁ ଯାଇ ନାହୁଁ ଏତେ ବେଳ ଯାକେ । କହିଲି ଯା—ନାଇଁ, କେହି ଯାଇ ପାରିବ ନାହିଁ ଆଜି । ଏ ନଟିଆ ! ଦୂର୍ । ଠିକଣା, ଯା କହିଦେ ଚା—ଚା—ଜଳଦି—ଆଉ ପାନ ।

( ଠିକଣା ମୁହଁ କୁଞ୍ଚୁଣ୍ଡି ଲେଉଟି ପଡ଼ି ଚାଲିଗଲାବେଳେ ହାବୁଡ଼ ଖାଇଲା ଯାହା ସାଙ୍ଗରେ ସେ ତା ଓଠରେ ହାତ ମାରି ଦେଇ ଆଦର ମିଶା ସ୍ୱରରେ କହିଲେ, "କରେ ବୁଢ଼ୀ, କେମିତିଥିବାର ?" କହି ପାକୁଆ ପାଟିରେ ଟିକିଏ ହସି ଦେଲେ ମଧୁରିଆ ମଧୁରିଆ କରି ।)

ହର—ନମସ୍କାର କର । ଅଭଦ୍ର, କହି ଦେଇଥିଲି ପରା !

( ଠିକଣା ନମସ୍କାର କରି ପଳେଇଲା )

(ଆଗନ୍ତୁକ ହସ ହସ ହୋଇ ଭିତରକୁ ପଶି ଆସି ଗୋଟାଏ ଚେୟାରରେ ବସି ପଡ଼ିଲେ । ହରଦମ ଉଠି ପଡ଼ି କହିଲେ—)

ହରଦମ—ନମସ୍କାର । ଏଇ ଗାଡ଼ିରେ ଆଇଲେ ? ତାର କେତେବେଳେ ପାଇଲେ ?

ବନାରସୀ ଦାସ—ହେଁ ହେଁ—ତାରଟା ମିଳିବାକୁ ଉଚ୍ଛୁର ହବାର ଏକା । ପାଇ ତ ଧାଇଁଚି । ଖବର କଣ ?

ହର—(ଶୁଖିଲା ହସ ହସି ) ମନ୍ଦ ନୁହେଁ । ତେବେ ଗଦାଧାରୀ ଇଲେକ୍ଟୋ ବାହନରେ ଆଜି ନବାବଙ୍କୁ ମୁଲାକାତ କରି ସାରିଛନ୍ତି ।

ବନାରସୀ—( ଆଖି ତରାଟି ଓ ପାଟି ଅଧେ ମେଲାଇ ) ତାର ପର ?

ହର—ପୁଣି ମୁଲାକାତ ହବ ।

ବନା— କେତେଜଣ ଶୁନଚରୁ ମାରିଲେ ?

ହର—ଦଶ ବୋଲିତ କହୁଛନ୍ତି ।

ବନା—ଆଁ—ଦଶ ! ତେବେ ତ ( ମୁଣ୍ଡରେ ହାତ ଦେଇ ବସି ଗଲେ )····· ( ସ୍ୱର ଭଙ୍ଗ ଭାବେ ) କିଏ, କିଏ ?

ହର—ନାଆଁ ଜଣା ହୋଇ ନାହିଁ । ସେଇଠି ପଡ଼ିଛି ବୋଧହୁଏ ଅଡ଼ୁଆ ।

ବନା—କି ରକମ ?

ହର—ଖାଣ୍ଟି ଭାବରେ ସେଇକଥା ରଗଡ଼ି ଧରିଛନ୍ତି ନବାବ । କିନ୍ତୁ···

ବନା—( ଚଳିଯାଇ ଉଠି )ହାଁ—ହାଁ—ତେଣୁ ····· ?

ହର--ତେଣୁ, ଏମାନେ ନାଆଁ ଦେବାକୁ ପଛଉଛନ୍ତି ।

ବନା—କାରଣ ? ହେକି ଗଲେ ?

ହର—ତା ନୁହେଁ···ବୋଧହୁଏ···ଏଁ ଏଁ···(ମୁଣ୍ଡ କୁଣ୍ଡାଇ ହେଲେ ।)

ବନା—ଅଚ୍ଛା ଯଦି ହୋଇଯାଏ ତେବେ ଆମର ଦଶା କଣ ହବ ! ଅଉ ବୋଧହୁଏ······

ହର—ଖୁବ୍ ସମ୍ଭବ । ତେବେ······

ବନା—ଅଚ୍ଛା ବାବାଜୀ କୁଆଡ଼େ ଗଲେ ?

ହର—ଡକେଇଚି ତ । ବୋଧହୁଏ ଏଇକ୍ଷଣି ଆସିବେ । ମେହେନ୍ତ୍ରର ଅଡ଼ୁଆ ଲାଗିଛି କନା ! ସେଇଥି ପାଇଁ—

ବନା—ଆଉ ସ୍ୱାମୀଜୀଙ୍କୁ ତ ଡକାଇବା ଦରକାର । ଆଇନ ପଏଣ୍ଟ···

ହର—ସେ ବି ଆସିଯିବେ । ବାବାଜୀ ତାଙ୍କୁ ସାଙ୍ଗରେଧରି ଆସିବାର କଥା ।

ବନା—ଅଉ, ଅଉ······

ହର—ନାହିଁ, ଆଉ କାହାରିକୁ ଡକାଇ ବେଶି ଗଣ୍ଡଗୋଳ କରିବା ଉଚିତ ନୁହେଁ । ବାବାଜୀ ଆସନ୍ତୁ—ଯାହା କରିବେ । ··· ( ଚାହିଁ ) ହେଇ, ଆସିଲେଣି ।

( ଜୋତା ଶବ୍ଦ ଶୁଭିଲା ଦ୍ୱାରରେ । ସାଙ୍ଗେ ସାଙ୍ଗେ ବାବାଜୀ ରାଧେଶ୍ୟାମ ଓ ସ୍ୱାମୀ ଛବିଲା ନନ୍ଦ ପ୍ରବେଶ କଲେ )

( ଚାରିଜଣଯାକ ଛିଡ଼ାହୋଇ ପଡ଼ି ଗୁଡ଼୍ ଇଭିନିଂ, ନମସ୍କାର ହେଲେ, ଓଃ, ହା ଡୁ ଡୁ ପ୍ରଭୃତି ଶବ୍ଦ ଏକା ବେଳକେ ଉଦ୍‌ଗୀରଣ କରନ୍ତେ ଏପରି ଏକ ହଜ୍‌ପଜ୍‌ର ସୃଷ୍ଟି ହେଲା ଯେ କିଏ କଣ କହିଲା ତାହା ବାରି ହେଲା ନାହିଁ । ଗୋଟାଏ ଯୋଡ଼ାଏ କର ମର୍ଦ୍ଦନାନ୍ତେ ଆପର୍ କାଇଁତ ଥିଣ୍ଟା ପଡ଼ିବାର ଶୁଣି ସଭିଲେ ବେତାଳିଆ ଐକ୍ୟତାନରେ କହି ଉଠିଲେ "ବସନ୍ତୁ, ବସନ୍ତୁ ।" କିଏ ଆଗ ଆସନ ଗ୍ରହଣ କରିବ ତାହା ସ୍ଥିର ନ ହେବାରୁ କିଛି ସମୟ କଟିଗଲା । ତାହାପରେ ସ୍ୱାମୀଜୀ ବସିବାରୁ ଅନ୍ୟମାନେ ଉପବିଷ୍ଟ ହେଲେ । )

ଘମୁ—ଏପରି ସ୍ୱଭାବ ଯାହାଙ୍କର ତାଙ୍କ ଉପରେ ଆସ୍ଥା ବା ବିଶ୍ୱାସ ସ୍ଥାପନ କପରି କରିପାରି ପାରେ ? ମୁଁ ଯାହା ବୁଝିଛି ପଦାକୁ ବାହାରିବା ବ୍ୟକ୍ତି ଆପଣ ଏକା ।

ସଂହିତ—ବର୍ତ୍ତମାନ ସେଇସେ ଧରିନେଇ ଜବାବ ଦେଲେ ସେମାନେ ଅଟିଟିବେ । '

ଘମୁ—କିନ୍ତୁ କୋବ ସରକାର ଏପରି ଅନିଷ୍ଟସ୍ପୃହା ଉପରେ ଆଉ ଏପରି ଗୋଡ଼ଖସା ଲୋକଙ୍କ ଉପରେ ନିର୍ଭରକରି ନପାରନ୍ତି । ଆପଣଙ୍କ କଳର ଉଲଟ ରାଜ ମାଡ଼ିବା ଲୋକଙ୍କ ଦସ୍ତଖତ ସ୍ୱୀକାରପତ୍ର ପ୍ରକ୍ଷା ଦେଇ କରିବାରେ କାରଣପତ୍ର ଦାଖଲ ନ କଲେ ଆମେ ଏପରି ଉଡ଼ା କଥାରେ ଏତେ ଗୁରୁତ୍ୱପରିବର୍ତ୍ତନ କରିବାକୁ ଅକ୍ଷମ ।

ନବାବ—ଠିକ୍, ଘମୁକରଣ ଯାହା କହିଲେ ତାହା ଆମ୍ଭର ବି ମତ ।

ସଂହିତ—କିନ୍ତୁ ସେପଣେ କେନ୍ଦ୍ରସରକାରର ମନୋଭାବ···

ଘମୁ—ସେଇଠା ବୁଝିବା ଆମର କାମ, (lock out) ତମର ନୁହେଁ ।

ନବାବ—ଆମ୍ଭେ ବଡ଼ ଦୁଃଖିତ ଯେ ଅପଣମାନଙ୍କୁ ଛୁଞ୍ଚା କଥା ଉପରେ ପ୍ରତ୍ୟୟ କରି ଅଜ କିଛି ଜବାବ ଦେଇ ପାରିଲୁ ନାହିଁ । ଯଦି ଅପଣମାନେ ଶୁନ୍‌ଶତବାଲାଙ୍କ ପ୍ରତ୍ୟକ୍ଷ ଜବାବ ଆଣିଦେବେ, ତେବେ ସେ ଭିତ୍ତିରେ ଆମେ କର୍ତ୍ତବ୍ୟ ସ୍ଥିର କରିବୁଁ । ଅପଣମାନଙ୍କ ଅଯାଚିତ ସହାୟତା ନିମନ୍ତେ ପ୍ରଚୁର ଧନ୍ୟବାଦ୍ ।ଜଣାଉଛି ।

[ ନବାବ ଗାତ୍ରୋତ୍‌ଥାନ କରନ୍ତେ, ସକଳେ ଛିଡ଼ା ହେଲେ ଏବଂ କର କମ୍ପନାନ୍ତେ ମୁଖ ଭାରିକରି ନିଷ୍କ୍ରାନ୍ତ ]

## ତୃତୀୟ ଦୃଶ୍ୟ

( ବାଖରାବାଦର ଏକ ସୁସଜ୍ଜିତ ଦୋତାଲା କକ୍ଷ । ଘରରେ ଅଫିସ ଓ ସନ୍ଧିରେ ବୈଠକଖାନା ରୂପରେ ବ୍ୟବହୃତ ହେଉଥିବାର ସବୁ ଲକ୍ଷଣ ଓ ଉପାଦାନ ବିଦ୍ୟମାନ । ଘରର ଏକ ଭାଗରେ ଲମ୍ବ ତକ୍ତାପୋଷ ଉପରେ କାର୍ପେଟ ବିଛଣା । ମଝିରେ ରାଇଟିଂ ଟେବୁଲ । ଟେବୁଲ ଚାରିପଟେ କେତେଖଣ୍ଡ ହେଉଥିବା ଚେୟାର ଓ ଗୋଟିଏ ଘଡୁଣି ଚୌକୀ । ତା ପାଖକୁ ବହିରଖା ସେଲଫ୍ । ଏକ କାନ୍ଥ ପାଖରେ ଡ୍ରେସିଂ ଟେବୁଲ, ଦୁଆରର ଦୁଇ କଡ଼ରେ ଦୁଇଟା କାଚ ଅଲମାରି । ସାମନା କାନ୍ଥ ମଝିରେ ଗୋଟାଏ ଲୁଗାରଖା ହୁକ୍ । କାନ୍ଥ ଉପରେ କେତେଖଣ୍ଡ ଛବି - ଗାନ୍ଧି, ଜବାହାରଲାଲ ପ୍ରଭୃତି । କେବଳ ଖଣ୍ଡିଏ ଛବି ଲେଉଟେଇ ଦିଆ ହୋଇଛି—ବୋଧହୁଏ ସୁଭାଷବୋଷଙ୍କ ର ବାବୁ ହରଦମାନନ୍ଦ ଏକାକୀ ଖଟ ଉପରେ ବସି ବାର ବାର ଝରକା ବାଟେ ତଳକୁ ଅନାଉଛନ୍ତି ଓ ମଝିରେ ମଝିରେ ଡ୍ରେସିଂ ଟେବୁଲରେ ଲାଗିଥିବା ଆଇନାକୁ ଚାହିଁ ଦେଇ ଲମ୍ବ ଲମ୍ବ ମୁଣ୍ଡ ବାଳକୁ ହାତଦ୍ୱାରା ସଜାଡ଼ି ନେଉଛନ୍ତି । ମୁହଁରେ ଉଗ୍ର କ୍ୟାର ଘୃଣା—କାହାକୁ ଯେପରି ଅଗ୍ରହର ଅପେକ୍ଷା।)

ହରଦମ—(ଡାକ ପକେଇଲେ) ନଟିଆ । ରେ ନଟିଆ···ଅରେ ନଟିଆ !! (ଗୃହର ନଟିଆ ସେଆଡ଼ୁ ଜବାବ ଦେଲା—ଆଗିଆଁ ଆଁ ଆଁ—)

ହର—ଅରେ ଇଆଡ଼େ ଅଇଲୁ ।

(ହାତ ଯୋଡ଼ାକ ଅଗକୁ ବଢ଼ାଇଲାପରି ନଟିଆ ଆସି ଛିଡ଼ା ହେଲା )

ହର - କଣ କରୁଥିଲୁ ମ ! କାନରେ କଣ - ବାଜୁଛି ( ଭିତରୁ ଗୋଟାଏ ବଂଶୀର ଶବ୍ଦ ବାହାରି ପଡ଼ିଲା )

ନଟିଆ—ଅଜ୍ଞା—ଗୁ କରିବାକୁ ଇଛାହୋଇ ଲାଗଉଥିଲା ।

ହର—(ମୁହଁ ବିକଟ କରି) ଯା—ଯା—ଇଚ୍ଛାହୋଇ ଲାଗଉଥିଲା, ଗୁଡ଼ ଲାଗଉଥିଲା !··(କୁଅଁଳ ହୋଇ) ଅରେ ଗଲୁ, ଦେଖିଲୁ କିଏ ଅସୁଛନ୍ତି କି ନାହିଁ ।

ନଟିଆ—କାହା ଆସିବା କଥା ବାବୁ ?

ହର—ତୋ— । କହିଲି ତ ଅରେ, ପୁଣି ବକ୍‌ବକ୍ କରୁଛୁ ଯାଃ—( ନଟିଆ ପଳାଇଗଲା । ବାବୁ ଆଇନାକୁ ଚାହିଁ ନାନା ମୁଖଭଙ୍ଗୀ ସହକାରେ ନିଜର ଚେହେରାକୁ ତଜବଜ କରିବାକୁ ଲାଗିଲେ ଓ ବାଳ ସାଉଁଳାଇ ଦେଲେ । ଏହି ସମୟରେ ତାଙ୍କର ସାନ ଝିଅ ଠିକଣୀ ଡାକିଲା—'ବାପା !' ହରଦାମ୍ ବାବୁ ଚହଲି ପଡ଼ିଲେ ! )

ହର—କି ! ····ଟି ଅଇଛୁକା ଗୋଳମାଳ କର୍ ନା । ଯା—

( ଠିକଣୀ ମୁହଁ ଶୁଖାଇ ଫେରିଲା )

ହର—ଏ ଶୁଣ ଶୁଣ; କଣ କହୁଥିଲୁ ?

ଠିକଣୀ—ସିନେମା । ବୋଉ କହିଲା ଅଜ ସିନେମା ଦେଖି ଯିବୁ । ତମେ ନେଇଯିବ ।

ହର—ଓଃ—ସେଇଥିପାଇଁ ଏତେ ପ୍ରଅଗ ପର୍ବ ! ଯା କହିଦବୁ ମୁଁ ଯାଇ ପାରିବ ନେଇଁ ଅଜ । ମୋର ଢେର୍ କାମ ।—

ଠିକଣୀ—ବୋଉ କହୁଚ,ତମେ ନଗଲେ ଆମେ ଏକା ଯିବୁଁ । ଭାଇ ଯିବେ ସାଙ୍ଗରେ ।

ହର—ତୋବୋଉ କମିଛ ଯିବେ । କୁଣିଆ ଆସିବେ ଯେ ।

ଠିକଣୀ—ବୋଉ କହୁଛି ନ ଗଲେ ହବନି, ଏ ଖେଳଟା ସରିଯିବ । ଅଜ ଶେଷ ରାତି ।

ହର—ହଉ, ଗଲେ ଯା, ମୋତେ ବିରକ୍ତ କର ନା ।

ଠିକଣା—ବୋଉ କହିଛି—ଟଙ୍କା—ଠିକଣା······

ହର—ମୁଁ ଜାଣେନା—ପଳା—

( ଆଖି କାଢ଼ିଲେ )

( ନଟିଆ--ପ୍ରବେଶ କଲା )

ନଟିଆ—ସେଇ ବାବୁ ଆସିଛନ୍ତି ।

ହର=କିଏ ସେ ? ଓଃ ।

ନଟିଆ—ସେଇ ଯେ ଥିଲେ, ବଡ଼—

(ତରବର କରି ଉଠି ହରଦାସ ଥରେ ଆଇନାକୁ ଗୁହାଁଦେଇ ଫାଙ୍କିବୁଢ଼ ହୋଇ ନିମେଷମଧ୍ୟରେ ଚଉକୀରେ ସଜହୋଇ ବସି ପଡ଼ିଲେ । )

ହର—ଏଠି ଠିଆ ହେଇ କାହାକୁ ଗୁହୁଁଛୁ—ବୁଡ଼ବକ୍—ଯା—ତାଙ୍କୁ ଡାକିଆ । ( ନଟିଆ ଚାଲିଗଲା—ଠିକଣା କହିଲା 'ବାବା' । )

ହର—ତୁ ଯାଇ ନାହୁଁ ଏତେ ବେଳ ଯାଏ । କହିଲି ଯା—ନାଇଁ, କେହି ଯାଇ ପାରିବ ନାହିଁ ଆଜି । ଏ ନଟିଆ ! ଦୂର୍ । ଠିକଣା, ଯା କହିଦେ ଚା—ଚା—ଜଲଦି—ଆଉ ପାନ ।

( ଠିକଣା ମୁହଁ କୁଞ୍ଚୁଣ୍ଡି ଲେଉଟି ପଡ଼ି ଚାଲିଗଲାବେଳେ ହାବୁଡ଼ ଖାଇଲା ଯାହା ସାଙ୍ଗରେ ସେ ତା ଉପରେ ହାତ ମାରି ଦେଇ ଆଦର ମିଶା ସ୍ୱରରେ କହିଲେ, "କିରେ ବୁଢ଼ୀ, କେମିତିଥିବାର ?" କହି ପାକୁଆ ପାଟିରେ ଟିକିଏ ହସି ଦେଲେ ମଧୁରିଆ ମଧୁରିଆ କରି ।)

ହର—ନମସ୍କାର କର । ଅଭଦ୍ର, କହି ଦେଇଥିଲି ପରା !

( ଠିକଣା ନମସ୍କାର କରି ପଳେଇଲା )

(ଆଗନ୍ତୁକ ହସ ହସ ହୋଇ ଭିତରକୁ ପଶି ଆସି ଗୋଟାଏ ଚେୟାରରେ ବସି ପଡ଼ିଲେ । ହରଦାସ ଉଠି ପଡ଼ି କହିଲେ—)

ହରଦାସ—ନମସ୍କାର । ଏଇ ଗାଡ଼ିରେ ଆଇଲେ ? ତାର କେତେବେଳେ ପାଇଲେ ?

ବନାରସୀ ଦାସ—ହେଁ ହେଁ—ତାରଟା ମିଳିବାକୁ ଉଚ୍ଛୁର ହବାର ଏକା । ପାଇ ତ ଧାଇଁଛି । ଖବର କଣ ?

ହର—(ଶୁଖିଲା ହସ ହସି ) ମନ୍ଦ ନୁହେଁ । ତେବେ ଗଦାଧାର କାଲିବୋଟ ବାହନରେ ଆଜ ନବାବଙ୍କୁ ମୁଲାକତ କରି ସାରିଛନ୍ତି ।

ବନାରସୀ—( ଆଖି ତରାଟି ଓ ପାଟି ଅଧେ ମେଲାଇ ) ତାର ପର ?

ହର—ପୁଣି ମୁଲାକାତ ହବ ।

ବନା—କେତେଜଣ ଶୁନିଚନ୍ତି ମାରିଲେ ?

ହର—ଦଶ ବୋଲିତ କହୁଛନ୍ତି ।

ବନା—ଆଁ—ଦଶ ! ତେବେ ତ ( ମୁଣ୍ଡରେ ହାତ ଦେଇ ବସି ଗଲେ )····· ( ସ୍ୱର ଭଙ୍ଗ ଭାବେ ) କିଏ, କିଏ ?

ହର—ନାଆଁ ଦିଆ ହୋଇ ନାହିଁ । ସେଇଠି ପଡ଼ିଛି ବୋଧହୁଏ ଅଡ଼ୁଆ ।

ବନା—କି ରକମ ?

ହର—ଖାଣ୍ଟି ଭାବରେ ସେଇକଥା ରଗଡ଼ି ଧରିଛନ୍ତି ନବାବ । କିନ୍ତୁ···

ବନା—( ଉଲ୍ଲସି ଉଠି ) ହାଁ—ହାଁ—ତେଣୁ····· ?

ହର--ତେଣୁ, ଏମାନେ ନାଆଁ ଦେବାକୁ ପଛଉଛନ୍ତି ।

ବନା—କାରଣ ? କେଉଁଠି ଗଲେ ?

ହର—ତା ନୁହେଁ···ବୋଧହୁଏ···ଏଁ ଏଁ···(ମୁଣ୍ଡ କୁଣ୍ଡାଇ ହେଲେ ।)

ବନା—ଆଚ୍ଛା ଯଦି ହୋଇଯାଏ ତେବେ ଆମର ଦଶା କଣ ହବ ! ଅଉ ବୋଧହୁଏ·····

ହର—ଖୁବ୍ ସମ୍ଭବ । ତେବେ······

ବନା—ଆଚ୍ଛା ବାବାଜୀ କୁଆଡ଼େ ଗଲେ ?

ହର—ଡକେଇଛି ତ । ବୋଧହୁଏ ଏଇକ୍ଷଣି ଆସିବେ । ମେହେନ୍ତ୍ରର ଅଡ଼ୁଆ ଲାଗିଛି କିନା ! ସେଇଥି ପାଇଁ—

ବନା—ଆଉ ସ୍ୱାମୀଜୀଙ୍କୁ ତ ଡକାଇବା ଦରକାର । ଆଇନ ପଏଣ୍ଟ···

ହର—ସେ ବି ଆସିଯିବେ । ବାବାଜୀ ତାଙ୍କୁ ସାଙ୍ଗରେଧରି ଆସିବାର କଥା ।

ବନା—ଆଉ, ଆଉ······

ହର—ନାହିଁ, ଆଉ କାହାରିକୁ ଡକାଇ ବେଶି ଗଣ୍ଡଗୋଳ କରିବା ଉଚିତ ନୁହେଁ । ବାବାଜୀ ଆସନ୍ତୁ—ଯାହା କହିବେ । ···( ଗୁହିଁ ) ହେଇ, ଆସିଲେଣି ।

( ଜୋତା ଶବ୍ଦ ଶୁଭିଲା ହିଡ଼ରେ । ସାଙ୍ଗେ ସାଙ୍ଗେ ବାବାଜୀ ରାଧେଶ୍ୟାମ ଓ ସ୍ୱାମୀ ଛବିଳା ନନ୍ଦ ପ୍ରବେଶ କଲେ )

( ଗୃହିଣୀଙ୍କ ଛୁଡ଼ାହୋଇ ପଡ଼ି ଗୁଡ୍ ଇଭିନିଂ, ନମସ୍କାର, ହେଲୋ, ଓଃ, ହା ହୁ ଜୁ ପ୍ରଭୃତି ଶବ୍ଦ ଏକା ବେଳକେ ଉଦ୍ଗୀରଣ କରନ୍ତେ ଏପରି ଏକ ହଜ୍‌ପଜ୍‌ର ସୃଷ୍ଟି ହେଲ ଯେ କିଏ କଣ କହିଲା ତାହା ବାରି ହେଲା ନାହିଁ । ଗୋଟାଏ ଯୋଡ଼ାଏ କର ମର୍ଦ୍ଦନାନ୍ତେ ଆସର୍ କର୍ଷିତ ଚଉକି ପଡ଼ିବାର ଶୁଣି ସଢଲେ ବେତାଳିଆ ଐକ୍ୟତାନରେ କହି ଉଠିଲେ "ବସନ୍ତୁ, ବସନ୍ତୁ ।" କିଏ ଆଗ ଆସନ ଗ୍ରହଣ କରିବ ତାହା ସ୍ଥିର ନ ହେବାରୁ କିଛି ସମୟ କଟିଗଲା । ତାହାପରେ ସ୍ୱାମୀଜୀ ବସିବାରୁ ଅନ୍ୟମାନେ ଉପବିଷ୍ଟ ହେଲେ । )

ବନା – ବଡ଼ ସଙ୍ଗୀନ ଅବସ୍ଥା – ତାହାଙ୍କୁ ଖବରକାଗଜରେ କହନ୍ତି 'ଇଡ଼୍ ହେଡ୍' ଭେଲ ।

ସ୍ୱାମୀ—ହିଁ, ହିଁ, କ୍ରାଇସିସ୍, ପ୍ରିସିପିଟେଟିଂ କ୍ରାଇସିସ୍ । ( ହସିଲେ )

ବନା—ଡ୍ୟାମ୍‌ନିଂ କ୍ରାଇସିସ୍ ! ରାଷ୍ଟସ୍ ! ବର୍ତ୍ତମାନ ଉପାୟ କଣ, କର୍ତ୍ତବ୍ୟ କଣ ?

ସ୍ୱାମୀ—Let the Devil ...

ବନା—ନାହିଁ, ନାହିଁ ସେ କଥା କହନ୍ତୁ ନାହିଁ । ଏହାର ପ୍ରତୀକାରର ବାଟ ବତାନ୍ତୁ । କିଛି କି Constitutional-illigality ନାହିଁ ?

ସ୍ୱା—Constitution ବଡ଼ ଶକ୍ତ ଜିନିଷ—ମାନେ, ବଡ଼ ନରମ ଜିନିଷ-ଅର୍ଥାତ୍ Pliable, ଯେଣିକି ଭିଡ଼ିଲେ ତେଣିକି ବଢ଼େ । ଖୋଜିଲେ ବାହାରିବ ।

ବନା—ଖୋଜନ୍ତୁ ତେବେ, ଆଉ ଡେରି କରିବାର···

ସ୍ୱଧେ—ଆହସ୍ତେ, ଆହସ୍ତେ ଦାସଜୀ, ଆପଣ ଏଡ଼େ ବ୍ୟସ୍ତ ହେଉଛନ୍ତି କାହିଁକି ? ବସନ୍ତୁ, ବସନ୍ତୁ, ଶାନ୍ତ ।

ବନା—ଆମ ହାତରେ ଯେତେବେଳେ Power ଥିଲା, ଆମେ ସିନା 'ଶାନ୍ତା' କରି ଆପଣାଙ୍କୁ ଆଉ ଲୋକଙ୍କୁ ପ୍ରବୋଧ ଦଉଥିଲୁ । କିନ୍ତୁ ଏଇପରି ଆଉ ଶାନ୍ତା କରିବାର ଫୁରୁସତ୍ ନାହିଁ ; Action Promt ଲୋଡ଼ା ଥିବାର ଏକା ।

ସ୍ୱାମୀ—ସେ ଠିକିଏ ଅପ୍‌ସେଟ୍ ହୋଇ ପଡ଼ିଛନ୍ତି । ଆରେ ଚା ଆଣିଚୁଟି ।

ସ୍ୱଧେ – କାଫି ହେଲେ ଦାସଜୀ ଲାଇକ୍ କରନ୍ତେ ପରା ।

ବନା—ହିଁ, ତାହା ସତ, ମାତ୍ରକ କାଫି ଏଠେ ମିଳିବାର କାହିଁ ଅଛି କହେ ! ଚା ହେଲେ ସରୁ ।

ହର – ବିସ୍କୁଟ୍ ଦେବ ନା କିଛି ଜଳଖିଆ ବଜାରରୁ ମଗାଇବ ?

ବନା—ଘୋଳି ଜଳଖିଆ ଆମକୁ ରୁଚୁ ନ ଥିବାର ଏକା । କିଛି ପାକୋଡ଼ି, ଫୁଲୁରି ଓ କଲ୍‌ବ୍ରେଟ୍···

ହର – ହିଁ ହିଁ, ଭୁଲି ଯାଇଥିଲି ଆପଣଙ୍କର ଟେଷ୍ଟେ-ଅରେ ନଟିଆ··· ନଟିଆ ଅ···

(ନଟିଆ ଧାଇଁ ଆସିଲା)

କଣ କହୁଚୁ ସେଥପଡ଼େ, ହାକିମଙ୍କାଡ଼ା, ପାଜି ।

ନଟିଆ—କ ଜଣା ପଡର, ପୁଟ୍‌କେଶ ବାବୁଙ୍କର ରଖୁଥେଲି ।

ହର—ଯା କଲଦ ପକୋଡ଼ି, ଡାଲ୍‌ବ୍ରେଟ୍ ଅଉ ସବୁଯନ୍ତ୍ର ରକମ ନେଇ ଆ । ଅଉ ଚା କରିବାକୁ କହି ଦେ । ଫୁର୍ତ୍ତି ।

ନଟିଆ—କେତେଟଙ୍କର ଆଣିବ—

ହର—ଦେଖି ଆଣିବୁ ଯା—

ନଟିଆ—(ସମସ୍ତଙ୍କ ଉପରେ ଆଖି ବୁଲାଇ ନେଇ ମନେ ମନେ ଗଣି ପକାଇଲା ଓ କଅଁଳେଇ କହିଲା) ଚାରି ଅଣାର ଆଣିବ ?

ହର—(ଆଖି ତରାଟି) ଓଲ କାହାଁକା-ଯା-ଯା ଜଲ୍‌ଦି । (ନଟିଆ ପଳାଇଲା)

ବନା—ସ୍ୱାମୀଜୀ, ଗୋଟାଏ ପେଞ୍ଚରେ ପକାଇ ଏ ଅନ୍ଧ ଭୁଗୁଡ଼ ଦେଇ ହେବ ନାହିଁ ? ଉପଦେଶ ନିମନ୍ତେ ଓ୍ୟାର୍ଡ଼ା ଲେଖିବା ? ଧପ୍‌ଧାପ୍ ସିଂହ ଏ ଖବର ପାଇଲେଣି ?

ସ୍ୱଧେଶ୍ୟାମ—ଏକାବେଳେ ଯେ ଆପଣ ଏତେଗୁଡ଼ାଏ ପ୍ରଶ୍ନ କରିଦେଲେ, କେଉଁଟାର ଉତ୍ତର ଦିଆଯିବ ?

ସ୍ୱାମୀ—ଆଇନ ପେଞ୍ଚ ଖୁବ୍ ଅଛି । 'ଦଳପତି' ହିସାବରେ ନବାବ ତାଙ୍କୁ ଗ୍ରହଣ କରିବା ବେଆଇନ ।

ହର—ସରଦାରଜୀଙ୍କଠାରୁ ବର୍ତ୍ତମାନ ଟେଲିଗ୍ରାମ କରାଯାଉ ।

ସ୍ୱଧେ—ଧପ୍‌ଧାପ୍‌ସିଂ ଆମର friend philospher and guide ଅଟନ୍ତି । ତାଙ୍କୁ ଉଜର ହେବା ନିତାନ୍ତ ଉଚିତ । ମାତ ସେ ଏକ୍ଷଣି ବନ୍ୟା ପୀଡ଼ାରେ ପୀଡ଼ିତ । ଆପଣ ନିଜେ ଆଷୋନ-ଷୋଲରେ ତାଙ୍କ ଠାକୁ ଚାଲି ଯାଆନ୍ତୁ ।

ବନା—ଆଚ୍ଛା ଶହେ ପଷର ଭିତରିଆ ଖବର ବା ନୂଆ ଚାଲ୍ ଆଉ କିଛି ଜଣା ଗଲାଣି ?

ହର—ଆମ ଗୁପ୍ତଚର ସତ୍ୟବାଦୀଙ୍କଠାରୁ ସତ୍ୟ ସମାଚାର ମିଳିବ ।

ବନା—କାହାନ୍ତି ସେ ? ଆମ ଆସିବା କଥା କଣ ତାଙ୍କୁ ଜଣା ନଥିବାର ?

ହର—ଅସମ୍ଭବ, ତାଙ୍କୁ ଜଣା ନଥିବା କଥା କଣ ସଂସାରରେ ଅଛି ? ତାଙ୍କ ରଥ ଯେ ସର୍ବତ୍ର ବିଚରଣଶୀଳ ।

ସ୍ୱଧେ—କିନ୍ତୁ ତାଙ୍କ ରଥର ପହି ଠିକିଏ ଜଖମ ହୋଇ ପଡ଼ିଛି ଓ ମୋବିଲ ତେଲ ଅଭାବରୁ ଭଲ ଚାଲୁ ନାହିଁ ।

ବନା—ସତେ ? କାରଣ ?

ସ୍ୱଧେ—ଏତକ ବୁଝୁ ନାହାନ୍ତି ? ଆପଣଙ୍କ ଅଭାବ ଜନିତ କୃପା-ତୈଳ ନପାଇ । ତା'ପରେ ସ୍ୱାଙ୍କର ଦିଲ ଏକଘୋଡ଼ିଆ ରଥ । ଦକ୍ଷିଣରୁ ଆଉ ଏକ ରଥ ଆସି ଏ ନଗରରେ ବିଚରଣ କଲାଣି । ସେଥିରେ ଲାଗିଛି ଯୋଡ଼ି ଘୋଡ଼ା (double horse power' ପୁଣି ତାହା ଖୋଦାସ୍ୱ—ସ୍ନେହ (Oil) ଦ୍ୱାରା ଚାଳିତ ।

ବନା—ତେବେ ତ !

ସ୍ୱଧେ—ଆପଣ ବଡ଼ pessimistic । ଯଦି ଆମ ରଥ ଅଚଳ ହୁଏ ଆମେ ସମସ୍ତେ କାନ୍ଧ ଭିଡ଼ି ଠେଲିବୁ । ଅନ୍ତତଃ ମଇଳା ଗାଡ଼ିର ବଳଦଗୁଡ଼ାକ ତ ହାତରେ ଅଛନ୍ତି ।

ବନା—ବାହାବା—ବାହାବା—ସେଇଥିପାଇଁ ତ କଂଗ୍ରେସ ପଦ ଆପଣଙ୍କୁ ଦେଇଥିଲା ।

ସ୍ୱାମୀ—କିନ୍ତୁ ପଦ ଶତ୍ରୁ ପକ୍ଷ ଜଣନ୍ତି । ଏ କଂଗ୍ରେସ ରହିବ କି ? ସେମାନେ ଆଗକର ବଦଲା ନେବେ, ଯେପରି ହୋଇଥିଲା ବ୍ରହ୍ମପୁରରେ । ଏକ ଅର୍ଜୁନର ମୁଣ୍ଡକାଟର ପ୍ରତିଶୋଧ ସ୍ୱରୂପ ଗଦାଧାରୀ ଦଶଜଣର ମୁଣ୍ଡ କାଟିବେ ।

ବନା—Supercede କଥା କହୁଛନ୍ତି ? ମାନେ ଦୋଷ ପାଇଲେ ତ ?

ସ୍ୱାମୀ—ଦୋଷଟା ବାହାର କରିବା କେତେ ମାନେ । ଆପଣଙ୍କ ତ ମିଳିଥିଲା । ନେକ୍କେଡ଼ା ବାଘ ଓ ମେଣ୍ଢାଛୁଆ କଥା ଇସପ କାହାଣୀରେ ପଢ଼ି ନାହାନ୍ତି; Give the dog a bad name a d hang it.

ରଥେ—yes ves where there is a will there is a way.

ବନା—ଉଃ, ତେବେ ଲାଗନ୍ତୁ, ପ୍ରାଣ ପଣ କରି ଲାଗି ପଡ଼ନ୍ତୁ । ଜୀବନ ଦେଇ, ଅର୍ଥ ଦେଇ, ସାମର୍ଥ୍ୟ ଦେଇ, ସର୍ବସ୍ୱ ଦେଇ ଏଇଠି—ଏଇ ବିଷମ ଜୀବନ-ମରଣ 'ସମସ୍ୟାର' 'ସମାଧାନ' କରନ୍ତୁ । Not a moment to be lost

( ରଥେ ପ୍ରବିଷ୍ଟ ହେଲେ )

Hail Mr. Hitler ଆସନ୍ତୁ, ଆପଣଙ୍କ ଲୋଡ଼ା ଥିବାର ଏକା ।

( ରଥେ ଅପ୍ୟାୟିତ ହୋଇ ମୁଣ୍ଡ ବଙ୍କାଇ, ଓଷ୍ଠ ଲମ୍ବାଇ, ରେ କୁଞ୍ଚାଇ, ଗୋଡ଼ ହଲାଇ ଖଟ ଉପରେ ଶରୀର ରକ୍ଷା କଲେ । )

ସ୍ୱାମୀ—ଏ ନୂଆ ନାମ ଯାଙ୍କୁ କିଏ ଦେଲା ?

ବନା—( ହସି ହସି ) ଜାଣି ନାହାନ୍ତି ପରା । ଏ ମହାଶୟେ ଗାନ୍ଧୀ ଯେ ଆମ ଗେଷ୍ଟାପୋର ପାଳକ Fifth column ଚାଳକ ।

ସ୍ୱାମୀ—ଓଃ—ଆମ ଦଳବେହେରା ତ ଭାରି ରସିକ ଅଛନ୍ତି ।

ବନା—ଏବେ ଖବର କଣ କହନ୍ତୁ Mr. Chariot ନୂଆ move...

ସ୍ୱାମୀ—Rather Mr. quadruped ! ଅର୍ଥାତ୍—ଚତୁଷ୍ପଦ ବିଶିଷ୍ଟ ମହାଯାନ ।

(ସମସ୍ତେ ହୋ—ହୋ କରି ହସିଲେ ଏବଂ ରଥେ ମଧ୍ୟ ତହିଁରେ ବାହ୍ୟିକ ଅପ୍ୟାୟିତ ଭାବେ ଯୋଗଦେଲେ । )

ରଥେ—ଖୁବ୍ ଜରୁରୀ ଖବର ଅଛି ।

ବନା—ଏତେବେଳଯାଏ କହି ନାହାନ୍ତି—ଓକାଳି ପକାନ୍ତୁ ଶୀଘ୍ର । .

ରଥେ—ଗଦାଧାରୀଙ୍କ କଥାରେ ବିଶ୍ୱାସ ନ କରି ନବାବ ତାଙ୍କ ଦଳରେ ଥିବା ଦଶ ଜଣଙ୍କର ପ୍ରତ୍ୟକ୍ଷ ପ୍ରମାଣ ଚାହିଁଛନ୍ତି ।

ବନା—ତାର ମାନେ ?

ରଥେ—ଅର୍ଥାତ୍ ଦଶ ଜଣ ତଥାକଥିତ ବ୍ୟକ୍ତି ତାଙ୍କ ସାମ୍ନାରେ ହାଜର ହୋଇ ହଲପ ପ୍ରମାଣେ କହିବେ, ଆମ ପିଛା, ଛାଡ଼ି ତାଙ୍କ ପିଛା ଧରିଲେ ଏବଂ ତାର କାରଣ ମଧ୍ୟ ଜଣାଇବେ ।

ବନା—ହୁଁ—ତାର ପର ?

ରଥେ—ବର୍ତ୍ତମାନ ଖୋଜା, ଚୁଲା ଲାଗିଛି । ·

ବନା—ଆଶ୍ଚର୍ଯ୍ୟ ! ଦଶଜଣଙ୍କ ଜବାବ ନ ପାଇ ସେ କଣ···

ରଥେ—ସେଇଟା ହଉଚି ସ୍ୱାଧୀନଚିତ୍ତ ଚାଲବାଜି । ତାପରେ ଦୁରନ୍ତ ଜବାବ ପାଉନ୍ତୁ ବା ନପାଉନ୍ତୁ, ସେ ଭରସା ରଖି ଏକଥା କୁହାଯାଏ ଏ ସ୍ଥଳେ ।

ରଥେ—ଅସଲ କଥା, ସେ ବିଶ୍ୱାସ କରିଥିଲେ ଏବଂ କରିଛନ୍ତି ମଧ୍ୟ, ଯେ ଉଜିରଗିରିଟା ପାଇ ଗଲକ୍ଷଣି ଯେଉଁମାନେ ପାଦ କାଟିବାକୁ ପଛଉଛନ୍ତି ସେମାନେ ତାଙ୍କ ଲୁଟି-ମାଛର ଲୋଭରେ ତାଙ୍କ ପିଛାଧରି ନେବେ ବଲେ ।

ବନା—ଏହା କଣ ସତ୍ୟ ?

ରଥେ—ବେଦମ ସତ୍ୟ, ନିର୍ଭୁମ ସତ୍ୟ—ଏକବାରେ ସତ୍ୟ Undiluted, unadulterated ଖାଣ୍ଟି Gandhian Truth !

ବନା—ତେବେ ବର୍ତ୍ତମାନ ?

ରଥେ—ବର୍ତ୍ତମାନ ବୋଧହୁଏ ଆଗଭୁରା ବାହାରିବାକୁ ସେଇମାନେ ପଛଉଛନ୍ତି ।

ସ୍ୱାମୀ—ମିଶ୍ର ଉଜିରଗିରି ପାଇଲା ମାତ୍ରକେ ମୋର ବିଶ୍ୱାସ ଦଶ ଜଣ କୋଡ଼ିଏ ବି ଖସି ଚାଲିଯିବେ । କିନ୍ତୁ ଆଗଭୁରା ଥାନାରେ ନାଆଁ ଲେଖାଇବାକୁ ବୋଧହୁଏ ଗଣ୍ଡାଏ ବି ମିଳିବେ ନାହିଁ ।

ରଥ—ଗଦାଧାରୀ କହୁଛନ୍ତି କେତେଜଣଙ୍କ ସ୍ୱୀକୃତି ପତ୍ର ତାଙ୍କ ପକେଟରେ ରହିଛି ବୋଲି ।

ବନା—ଆଁ । ତେବେ···ତେବେ···ରଥେ—

ଏତେ କଣ ଲୀଳା ଖେଳ ସହିବ ଅନ୍ତର !
ଯେନେ ପାଇଁ ହେବ ଯାହା ତାହା
କେଜାଣି କରମେ ମୋର ଉଡ଼ିବ କି କୁଆ,
ସର୍ବସ୍ୱ ପଡ଼ିବ ଯାଇ ଚିଲିକା ଗରଭେ,
କି ଅବା ଘଡ଼ିବ ଯାଇ ମାମୁଁ ଘର ମୁହଁ,
ଦଉଡ଼ି ବଳିବ ଅବା ହାଣି ତେଲ ଘଣା,
ଉଭୟେ ଯାହାକୁ ମୁହଁ ଦେଇଛି ଉଠାଇଁ ।
ଝାଙ୍କି ବସି ଅଛି ଶତ୍ରୁ ପ୍ରତିଶୋଧ ପାଇ,

ରଣମୁଖା ଶତ୍ରୁଦଳ ଛାଡ଼ିବେ ନିଶ୍ଚୟ,
ତାଙ୍କର ଅମୋଘ ଶସ୍ତ୍ର ସ୍ୱତ୍ୱରକ୍ଷା-ବିଧି ।
କି କରିବ କାହିଁ ଯିବ କହ ହେ ଉପାୟ,
ନୋହିଲେ ଦେଖାଣ ଦାନା, ହୋଇ ବୈରାଗୀ
ପୂର୍ବଭବେ ମଠବାଡ଼ି କରିବ ଆଶ୍ରୟ ।
ଝଲାଝିଲା ଦେଇ ସବୁ ସଂସାର କରମେ,
ନିର୍ବେଦଲ ଯୁଗଳ ମନ୍ତ୍ର କରିବ ସାଧନ ।
ସ୍ୱଧେ—କଂପା ଏବେ ଉଦାସୀନ ଘର କଥା ଲାଗି,
ସମ୍ମୁଖେ ସମଗ୍ର ଦେଶ ରହିଛି ଅନାଇ
ତୁମ୍ଭର ମୁଖ ଅମୃତଙ୍କ ବାଲ ବଲ କରି,
ତୁମ୍ଭେ ଏକା 'ତ୍ରାତା', କର କରିବ ଉଦ୍ଧାର
ଭୂସ୍ୱାମୀ କବଳୁ ଦୀନ ପରଜା ମଣ୍ଡଳୀ,
ଆଜ ପୁଣି ମହାଜନେ ଖାତକ ଦାଉରୁ
ଉଥେ—ପୁଣି ଏ 'ସମାଜେ' ସଦା ତୁମ୍ଭ ଧମଧାମ
ସ୍ୱଧେ—ଅଭଦ୍ରତା, କଥା ମଝେ ଦେଉଅଛ ବାଧା—
ହେ ଉଠ ବୀର, ଉଠ ଶୂର, ଉଠ ହେ ପ୍ରବର,
ଉଠ ହେ ଗୁଣଜ୍ୟ, ଦୁଷ୍ଟ ରାଜା ନଷ୍ଟାଚାରୀ,
ଦେଖାଅ ପ୍ରତାପ ତବ କରି ନିର୍ବାସନ
ବିଶ୍ୱାସଘାତକ ବୃନ୍ଦେ ଅବଳା-ମୁଁ ଅଜା,
ତୁରନ୍ତ ଟିକଟ ଦାଖି ଚାଲ ଉଦ୍ରଗ୍ରାମେ,
ଛବି ମୁଁ ପ୍ରବରର ଭେଟି ଆଣ ଉପଦେଶ ।
ଚନା—ଆଚ୍ଛା ମୁଁ ଚଳିଛି ଏବେ; ମାତ୍ର ଇତିହାସ ମଧ୍ୟେ
ପେଣି ଗୁରୁ ସବଠାଇଁ ଆଣ ହେ ଲେଖାଇ
ଛଳେ, ବଳେ, କୌଶଳରେ ଦେଇ ଧମକାଣ
କେହି ଯଥା ଦୁଃସାହସେ ନ ତ୍ୟଜିବେ ଦଳ ।
ଅବା ପ୍ରଲୋଭନେ ପଡ଼ି ନ ଯାନ୍ତୁ ଖସଡ଼ି ।
ଛାଡ଼ ଟଙ୍କା, ଧମାଧମ, କର ଟେଲିଗ୍ରାମ,
ସକଳ ସମ୍ବାଦ ପତ୍ରେ ଦିଅ ଷ୍ଟେଟମେଣ୍ଟ,
ଆନ୍ଦୋଳନ କରି କର ସୃଷ୍ଟି ଜନମତ,
ମାନ, ଜ୍ଞାନ ଯିବାବେଳେ ଦେଖା ବିପରୀତ ।
ସ୍ୱଧେ—ସବୁ କର୍ଯ୍ୟପାଇଁ କିନ୍ତୁ ଲୋଡ଼ା ହେବ ଟଙ୍କା ।
ଚନା—ସେଥିପାଇଁ ଚିନ୍ତା କିସ,
ଲାଗେ ଟଙ୍କା, ଦେବେ ଗୌରୀସେନ !
( ସମସ୍ତେ ହରିଦମାନଙ୍କୁ ଗୁହଁଲେ )
( ଏହି ସମୟରେ ନଟିଅ ଗୁ କପ, ଗୁ ଅଣି ଥୋଇଲା )
ହର—ଅରେ ଓଲ୍ଲ, ଆଉ କପେ ଆଣ ଚଳିବ । ନନ୍‌ସେନ୍‌ସ ।

ନଟିଅ—ଅଜ୍ଞା !
ହର—ଆଉ ଟ୍ରେ ପଇସାର ଗୁଟ୍‌ ବ ।
ନଟିଅ—ଗୁ ଅଣ୍ଡା ହୋଇଯିବ ଅଣୁ ଅଣୁ—
ଯାହା ଅଛି ପାଞ୍ଚ ଭାଗ କରି ବାଣ୍ଟିଦେବ ?
ସ୍ୱାମୀ—Idea ! କ୍ଲେଭର ଗୃପ !
ନଟିଅ—ଅଜ୍ଞା ।
(ସକଳେ ଗୁ ଚୋଷଣ ଓ ପାକୁଡ଼ି ଚର୍ବଣ କରିବାକୁ ଲଗିଲେ ।)

## ଚତୁର୍ଥ ଦୃଶ୍ୟ

( ଯେ କୌଣସି ସ୍ଥାନରେ ( Some where ) ଅବସ୍ଥିତ ଏକ ବଙ୍ଗଳୋରେ ମିଶ୍ର ( mixed ) ଦଳର ବୈଠକ ହେବାର ଦିନ । ହୋଷ୍ଟ ( Host ) କଲିବୋଟ ପୁର୍ବଦସ୍ତୁର ଝତୁଅବସ୍ତ୍ରଲ ମିଜାଜ, ଟେଟେବିଲ୍ ଓ ଆବରଣରେ ବିଦ୍ୟମାନ । କାନ୍ଥ ଘଡ଼ିରେ ଟଂ ଟଂ କରି ୫ଟା ବାଜିଲା । କଲିବୋଟ ଥରେ କାନ୍ଥ ଘଡ଼ିକୁ ଗୁହିଁ ନିଜର କାନ୍ଥ ଘଡ଼ିକୁ ଗୁହିଁଦେଇ ଚହିଁକି ପଡ଼ିଲେ । କ୍ଷଣକାଳ ନିମନ୍ତେ ତାଙ୍କର ଧୀର ଗମ୍ଭୀର ମୁଖମଣ୍ଡଳରେ ବିରକ୍ତିର ଛାୟା ପ୍ରତିଭାତ ହୋଇ ଉଠିଲା । ତାଙ୍କ ତୁଣ୍ଡରୁ ବାହାରି ପଡ଼ିଲା—D—D—ତା ପରେ ନିଜକୁ ସମ୍ଭାଳି ନେଇ ଗୋଟାଏ ସିଗାର ଲଗାଇ ବାରଣ୍ଡା ଆଡ଼େ ବାହାରିବାବେଳେ ଜଣେ ପଗଡ଼ିଧାରୀ ପ୍ରୌଢ଼ ପ୍ରବିଷ୍ଟ ହେଲେ । )

କଲି—(ଅନ୍ୟଆଡ଼କୁ ଗୁହିଁ ) କେତୁଟା ବାଜିଲା ?
ପ୍ରୌଢ଼—( ଘଡ଼ିକୁ ଅନାଇ ) ପାଞ୍ଚୁଟା ଘମ୍ଭୁ । ମୁଁ ଟିକିଏ ସ୍ୱତ ରଜିଗର—ହେଁ ।
କଲି—(ହସି) ଶୋଇ ପଡ଼ିଥିଲେ ? —ତା ବେଶ୍, କିନ୍ତୁ ଅନ୍ୟମାନେ କାହାନ୍ତି ଏତେବେଳେ ପାକେ ? ଠିକ୍ ପାଞ୍ଚଟାରେ ଆସିବାର କଥା ।
ପ୍ରୌଢ଼—ତା.. ସେମାନେ...କାମଟା ସେହିପରି କିନା ! ବିଳମ୍ବେ କାର୍ଯ୍ୟସିଦ୍ଧି ପରି ଲାଗୁଥିବାର ଏଣ୍ଟା ଘମ୍ଭୁ ।
କଲି—ଆପଣ ସବୁବେଳେ ଏହିପରି optimistic ଆଉ ସର enthusiastic—ତାନ୍‌ ଦାତା ମହାଶୟେ । ଯେ ଯାହା କହିଦେଲା ଆପଣ ଉଠିଲେ ନାଚି ଏକଦମ୍ ।
ତାନଦାତା—ଅବଶ୍ୟ, ଘମ୍ଭୁ ଘଳ ବିଶେଷରେ ମାତ୍ର । ଗଦାଧାରୀ, ବାଲଅଣ୍ଡ ପ୍ରଭୃତି ମାତବର ଲୋକ ।

ଜଲ—(ବାଧାଦେଇ) ରଖନ୍ତୁ ଆପଣଙ୍କର ଗର୍ଦ୍ଦନିଆ, ଭାଲଭଣ୍ଡଙ୍କ ଭଳି tall talkers !

ତାଲଦାତା—ଆହା ! ବିଶୁଦ୍ଧ ପଣ୍ଡିତ···( ଗଙ୍ଗକୃଷ୍ଣର ବାବୁ ପ୍ରବେଶ ହେଲେ) ।

ଗଙ୍ଗ—ଗୁଡ୍ ଇଭ୍ନିଂ—ହା-ଡୁ-ଡୁ ଗଙ୍ଗକୃଷ୍ଣର ବାବୁ, ବସନ୍ତୁ ।

( ସକଳେ ଉପବେଶନ କଲେ )

ଗଙ୍ଗ—ଆଜ୍ଞ ସମସ୍ତେ ଭଲ ତ ? କେତେ ଦୂର କଣ ହେଲା ସବୁ ? I hope······

ଜଲ—None to hope—all blasted—ଏଇ ତାଳଦାତାଙ୍କ ଗୋଲରେ ପଡ଼ି ଭୁଲ୍ଣାରେ ହଟହଟା ହେବାର ଏକା । ମୋର ପ୍ରେଷ୍ଟିଜ୍, ଅନର୍··ଓଫ୍ ।

ଗଙ୍ଗ—ମୁଁ ତ ଆଗରୁ କହୁଥିଲି । ଏ ବେଗା ଗୁଡ଼ାଙ୍କ କଥାରେ ମାତ - ବିଶେଷତଃ ଏ ଭଳିଆ unnatural combination ର ମୁଁ କେବେ ପକ୍ଷପାତୀ ନୁହେଁ । ସେ ବଉଳ ବର୍ଣ୍ଣ—ଦଳଙ୍କୁ ମୁଁ ବହୁତ ଦିନରୁ ଚିହ୍ନେ ପରା ।

ଜଲ—ଠିକ୍ କହିଲେ; ମୁଁ ବି······

ଗଙ୍ଗ—Place hunters, ଧପାବାଜ୍ !

ତାଲଦାତା—ଅନ୍ୟାୟ ହେଉଛି ଗଙ୍ଗକୃଷ୍ଣର ବାବୁ—ଏତେ ଏତେ ଲୋକଙ୍କୁ ଏ ପ୍ରକାର କଠିନ କଥା ବୋଲିବାର ନାହିଁ—ଏଥିରେ ଆପଣାର ସଙ୍କୀର୍ଣ୍ଣତା ପ୍ରକାଶ ପାଉଥିବାର ଏକା ।

ଗଙ୍ଗ—( ମୁହଁ ଭଣ୍ ଭଣ୍ କରି ) ଆପଣ ପରା କରଣ !

ତାଲଦାତା—ହଇ ହଇ ! ମାନକ ତହିଁରୁ କଅଣ ହେଲା କହେ !

ଗଙ୍ଗ—ଓଃ, ଆପଣ new-comer କି ନା—ବୁଝି ନାହାନ୍ତି ।

ତାଲ—ଶୁଣିଛି ଯେ, ମାନ ବର୍ତ୍ତମାନକୁ ପରିସ୍ଥିତି—

ଗଙ୍ଗ—( ଗରମ ସହିତ ) ଦେଖନ୍ତୁ ପରିସ୍ଥିତି । ବେଗି ନାହାନ୍ତି ବୋଲି କହୁଛନ୍ତି; ଗୋଟିଏ ଗୋଟିଏ ପରଶୁରାମ ଅବତାର ! ଅଙ୍ଗାରଂ ଶତ ଧୌତେନ···

ଜଲ—( ସହାସ୍ୟେ ) ଆପଣ ତେବେ ବିଶ୍ୱାମିତ୍ର ହୋଇ ପଡ଼ନ୍ତୁ !···

ତାଲ—କିନ୍ତୁ ଏ କଥା ଥାଉ ଏପଣି । କାମର କଥା କେତେ ଦୂର ?

ଗଙ୍ଗ—ସେଇ କଥାରୁ ତ ପଡ଼ୁଛି । ସେମାନେ ଘୋର ଦଗାବାଜ, ଅବିଶ୍ୱାସୀ—ଏଇ ଦେଖନ୍ତୁ ନା, ଯେ ନିଜ ଦଳ ସାଙ୍ଗରେ······

ଜଲ—ଯଥାର୍ଥ ବେଳ ପଡ଼ିଲେ ଆମ ସହିତ ତାହା ନ କରିବେ ବା କଅଁ ! ?

ଜଲ—ତେବେ ଆମ କାମଟା ହାସଲ—ବୁଝିଲେ । Making the best of enemy's weekness—diplomacy ।

ଗଙ୍ଗ—ମାନ ଟାହା ହେଲା କାହିଁ—ସହିରେ ଆପଣ ପଡ଼ଗଲେ ଠାକ୍ରା—

ଜଲ—Absurd ବିଲ୍କୁଲ୍ Absurd, ମାନ ଗଲେ ସବୁ ଲୁପ୍ତେ ! ଅରେ କିଏ ଅଛି ?

( ବେହେରା ଧାଇଁ ଆସିଲା )

ଅରେ ଲୁଣିଶୋଷଣ ନନ୍ଦଘୋଷ କଣ କରୁଛନ୍ତି—ଡାକିଲୁ ।

( ବେହେରା ଗୁଲିଗଲା )

କଟକୀ ଗଧାମାନ୍ତ୍ର କପିଧ୍ୱଜ ସାଙ୍ଗରେ ପଟ ଖେଳାଇବା ଲଗି ଆମ ଦକ୍ଷିଣୀ ନନ୍ଦଘୋଷ ପାଣି ପିଇ ଲାଗିଥିବାର ଏକା ।

ଗଙ୍ଗ—ହଁ, ଯୋଗ୍ୟ ଲୋକ—ପୁରୁଣା କାଳିଆ ରଥ ହେଲେ ବି energyରେ ଅପୂର୍ବ fire engine.

ଜଲ—ଦରକାର ଲଢ଼ୁଆ tank ଥିବାର ।

( ନନ୍ଦଘୋଷ ପ୍ରବେଶ କଲେ )

କାମ କଣ ଖବର ନାହିଁ ଏ ଯାକେ ?

ନନ୍ଦୀ—ନିଃଶ୍ୱାସ ମାରିବାକୁ ତର ଅଛି କି ଘୋ—ଯୋଡ଼ା ଯୋଡ଼ା କାମ—ତା ଉପରେ keen competition ! Despatch କରି ଦେଇ ଆସୁଛି । ହଙ୍କାରଙ୍କ ପାଇଁ ଅଦ୍ଭୁତ ଖବର ନାହିଁ । ତେବେ ସେମାନେ ସବୁ କରୁଛନ୍ତି ।

ଜଲ—( ଘଡ଼ିକି ଚାହିଁ ) ସାଢ଼େ ପାଞ୍ଚଟା ହେଲା, କାହିଁ ଗଲେ ? ···ଦେଖନ୍ତୁ ମଟର ଆସିଲା କାହାର ।

ନନ୍ଦୀ—( ଝରକାରେ ଚାହିଁ )······ଓଃ, ଏ ଯେ ମି. ମାର୍ଟିନଙ୍କ ମଟର । ଆଉ ତାଙ୍କ ସାଙ୍ଗରେ ପଣ୍ଡିତେ ବି ଅଛନ୍ତି ।

ଜଲ—ଦାଢ଼ି ନା ନିଶ, କିଏ ?

ନନ୍ଦ—ଏଁ ! ଦାଢ଼ି ।

ନନ୍ଦ—ବାହାରକୁ ଯାଇ ତାଙ୍କୁ ଧରି ଆସିବି ?

ଜଲ—ହଃ ! —ନା—ତାଙ୍କୁ ଆପେ ଆସିବାକୁ ଦିଅ ।

( ମିଃ ମାର୍ଟିନ ଓ ପଣ୍ଡିତ ବାଳକଣ୍ଠ ପ୍ରବେଶ ହୋଇ ସମ୍ଭାଷଣାନ୍ତେ ଆସନ ଗ୍ରହଣ କଲେ )

ଜଲ—ଆପଣ ତ ଆଇଲେ, ମାତ୍ରକ ତାଙ୍କେମାନେ କାହିଁ ଗଲେ କି ?

ବାଲ—ମିଃ ମାର୍ଟିନ କହ ହେ—ତମେ ତ ଆମ Gestapoର ମାଲିକ ସବୁ ଜାଣ ।

ମାର୍ଟିନ—ପଣ୍ଡିତ ଗଦାଧାର୍ଗ ଆଉ ସାର ରଙ୍ଗଲାଲ ଦୁହେଁ ଯାଇ ମିଶିଗଲେ ଜବରବାତଙ୍କ ଠାରୁ । ତାଙ୍କର ଉପରେ ଆମର Success depend କରୁଛି କନା ! We count three in one ଯେ —

ଲାଲ—ଥାଉ, ସବୁ କଥା ମୁଁ ଜାଣେ, ମାତ୍ର କେତେ ଜଣ ବାହାରିଲେ ସବମୋଟ ?

ମାର୍ଟିନ—ହେଇ କାମରେ ତ ଲାଗିଛୁଁ ଆମ୍ଭେ—ଦେଖାଯାଉ, ସେମାନେ ଟକ୍‌ଟିକି ଯାଇଛନ୍ତି—ଏଁ – ଏଁ — ।

ତାଳ— ସେଠି chance କି ପ୍ରକାର ହେବ ?

ମାର୍ଟିନ— Chance ! ଏକରକମ certainty; କାରଣ ଗଦାଧାର୍ଗଙ୍କ ହାତରେ······ଜବରବାତଙ୍କର···

ଗଜ—ବାକେ କଥା ଏକେବାରେ-ଜବରବାତ ଦାସଙ୍କୁ ଚାହିଁ ନାହିଁ କେହୁ—most—( ଅଟକି ଗଲେ ) ପକ୍‌କା କରଣ ହୁଅ କନା ; ( ଘୋଡ଼ାଗାଡ଼ିର ଟଣ ଟଣ, ଘଡ଼ ଘଡ଼ ଓ କଚୁଆନର ଟକ୍ ଟକ୍ ଶୁଭିଲା )
Oh, here they come.

(ସମସ୍ତେ ନୀରବ ହୋଇ ଆଗନ୍ତୁକଙ୍କ ଅପେକ୍ଷାରେ ରହିଲେ । କେବଳ ନନ୍ଦଘୋଷ ଟପଟ ମାରିଲା ପରି ବୋଧହୁଏ ସଙ୍କୁଳିବା ପାଇଁ ବାହାରିଗଲେ । ଜଳବୋଟ ଟିକିଏ ବିରକ୍ତିରେ ମୁଖ ବିକୃତ କଲେ ଅଲକ୍ଷ୍ୟରେ । ତଥାପି ସମସ୍ତେ······କାଠୁଆ ନୀରବ ।

(ଘରେ ପ୍ରବେଶ କଲେ ପ୍ରଥମେ ଯେ ତାଙ୍କର ସାଦେଶିତ କାଛେଣୀ, ହିଟଲରୀ ନାଶ ଓ ଠେଙ୍ଗା ପ୍ରହରଣ କାର୍ଯ୍ୟିତ ଉତ୍ସୁତା ସଞ୍ଚାର କରିଦେଲା । ସେ ନମସ୍କାର କରି ବସନ୍ତି, ପଛେ ପଛେ ଆସିଲେ ପଣ୍ଡିତ ଗଦାଧାର ନୀରସ ମଧୁର କଅଁଳ ହସଟିଏ ଓଠରେ ଲମ୍ବାଇ । ସେ ମଧ୍ୟ ଶିଷ୍ଟତା ସମାପନାନ୍ତେ ବସିଲେ । ନନ୍ଦଘୋଷ ତାଂକ ପାଖ ଚୌକିରେ ବସି ପଡ଼ିଲେ । )

ଲାଲ—କେତେ ଦୂର— ପଣ୍ଡିତ ଜୀ ? Ready ତ ?

ଗଦା—( ଚକ୍ଷୁ କୁଞ୍ଚିତ କରି ) କାହିଁ ଆଜ୍ଞା !
( ଦୀର୍ଘ ନିଃଶ୍ୱାସ ଛାଡ଼ିଲେ )

ଲାଲ—ସବୁ ଖବର କହି ଯାଆନ୍ତୁ ଶୀଘ୍ର ଶୀଘ୍ର ।

ଗଦା—ବିଶେଷ କିଛି ନାହିଁ; ଯେଉଁମାନେ ନିଷ୍ଠା ଜବାବ ଦେଇଥିଲେ, ଏପରିକି କେତେକ ଲେଖି ମଧ୍ୟ ଦେଇଥିଲେ, ବର୍ତ୍ତମାନ ନବାବଂକ ଛାମୁରେ ଯାଇ ସେ କଥା ମୁକାବିଲ୍ କହିବାକୁ ପଛଉଛନ୍ତି ।

ଗଜ— ଆପଣଙ୍କ ଦଳଆ ଲୋକଙ୍କର ଏହିପରି ସ୍ୱଭାବ ଏକା !

ନନ୍ଦ—ନାହିଁ, ବୋଧହୁଏ ଯେଉଁମାନେ ଦଳ ଛାଡନ୍ତି ତାଙ୍କର ଏକା ।

ରଙ୍ଗଲାଲ—Shut up—ଆପଣ ଏପରି remark କରି ପାରିବେ ନାହିଁ—Withdraw
ଛତ୍ରିଯ୍ ଡରଇ ନାହିଁ ସମ୍ମୁଖ ସମରେ
ଜାନ୍ ପାଇଁ କରେ ନାହିଁ ଭୟ
ହୁଅଇ ଅଥୟ,
ମାନ ରକ୍ଷା ପାଇଁ
ଛାତିର ବୋତାମ ଖୋଲି ପାତି ଦିଏ ବୁକୁ
କରେ ନାହିଁ ଛାତି ଦୁକୁ ଦୁକୁ
କିବା ଛାର ଡିସିପ୍ଲିନ ଦାଢ଼
ପାଡ଼ିବାରୁ ମଣେ ସେହି ବିଶୁଆଳୀ ମାଡ଼
ଡେଇଁ ପାରେ ଝାଡ଼ ବାଡ଼ ଘାଡ଼ ଦେଇ ପାତି ।
ଏଇ ମୋର ଟ୍ରମ୍ପ କାର୍ଡ଼ ଥୋଇଲି ଏଠାରେ ।

( ଶେଷ ଶବ୍ଦ ସହିତ ଭୂଇଁରେ ଠେଙ୍ଗା ଠୁକାଇ ତାଳ ଛୁଣ୍ଡାଇ ଦେଲେ )

ତାଳଦାତା—( ତାଳିମାରି ) ସାବାସ୍ ସାବାସ୍ । ଯାଙ୍କ ଭଳି ଅସମାନ ହୋଇଥିଲେ ଆଉ କଥା କଣ ଥିଲା କି !

ଲାଲ—ଯାହା ହୋଇ ନାହିଁ ସେ ପାଇଁ ଶୋଚନା ବୃଥା । ବର୍ତ୍ତମାନ ଆପଣଙ୍କ ଦଳର ପ୍ରଧାନ ଭରସା ଗ୍ରୀବାଖର କଣ କରୁଛନ୍ତି ?

ଗଦା—ସେ ଆସିଥିଲେ, ପୁଣି ଯାଇଛନ୍ତି ଏହି କାର୍ଯ୍ୟରେ । ସେ ଯେପରି ଧୁରନ୍ଧର, କାମ ହାସଲ କରି ପାରିବେ ।

ଲାଲ—ଆଉ ଆପଣ ନିଜେ କଣ କଲେ ? ଯେଉଁଠିକି ଯାଇଥିଲେ ?

ଗଦା— କିଏ, ଜବରବାତଙ୍କ କଥା ?

ଲାଲ - ନିଶ୍ଚୟ ।

ଗଦା—ଏଁ – ଏଁ –ସେଟା ହାତର ପାଞ୍ଚ ବୋଲି ଧରିଯାଉ ବର୍ତ୍ତମାନ—ତେବେ ।

ଲାଲ—ତାର ମାନେ ? ସେ ବି କଣ ଫସ କଲେ ?

ଗଦା—ଠିକ୍ ଫସ୍‌କା ନୁହେଁ—ଜାଣନ୍ତି ତ ତାଙ୍କ ସହିତ ମୋର ଘନିଷ୍ଠତା— ତେବେ ଟିକିଏ ଅଡ଼ୁଆ ଅଛି । ଧପାଧପ ସିଂହଙ୍କୁ···

ଲାଲ— ଅର୍ଥାତ୍ ?

ଗଦା— ବର୍ତ୍ତମାନ ସକାଶେ ସେ ଆମକୁ କେବଳ moral support ଦେବେ । ଆଉ ଆମେ କୃତକାର୍ଯ୍ୟ ହେବା ମାତ୍ରକେ ଏକ ଲମ୍ଫରେ···

ଜଲି—ବାଜେ କଥା—ମନ ଭୁଲାଣି କଥା—ଛାଡ଼ନ୍ତୁ ତାଙ୍କୁ ।

ଗଦା—ତାହା କିପରି ହୋଇ ପାରେ । ତାଙ୍କୁ ହାତ କରିପାରିଲେ Three birds at one shot ଯେ ।

ଜଲି—ଓଃ—ଅଚ୍ଛା—ତେବେ ବାକି ···

ଗଦା—ହରିଜନ କଥା କହୁଛନ୍ତି ?

ଜଲି—କାହାରି କଥା କହୁ ନାହିଁ । ବେପାରଟି ମୋର ନୁହେଁତ—କଣ କହୁଛୁ ନନ୍ଦଘୋଷ ? ଆପଣ ଅଗା ଖଗା କରି ଦଣ୍ଡମୁଣ୍ଡ କରନ୍ତୁ ଆଗେ ।

ଗଦା—(ମୁଣ୍ଡ କୁଣ୍ଡାଇ) ହେଇ ତ ପାରୁ ନାହିଁ···ତା···ହେଲା ହେଲେ··ବା ··

ଜଲି—ଓଃ, Swindling ! ସେ ପୁଅ ନୁହେଁ ମୁଁ, ତମ ଦଳଅଙ୍କ ଢେର ଚଲାଖି ମୁଁ ଦେଖିଛି, ଭୋଗିଛି ମଧ୍ୟ । ଆଉ ନା···

ଗଦା—ତା ଯଦି ନ ହୁଏ, ତେବେ ଆଉଥରେ ନବାବଙ୍କଠାକୁ···

ଜଲି—ମାଫ କରନ୍ତୁ—ସେ ବୁଦ୍ଧିକି ନମସ୍ତେ । ଆପଣଙ୍କ କଥାରେ ନିର୍ଭର କରି ଅପଦସ୍ଥ ହେଲି ଥରେ ··ପୁଣି···

କଣ୍ଠୁ—(ଧଳା ଦାଢ଼ିରେ ହାତମାରି) ଆଉଥରେ ପରୀକ୍ଷା କରନ୍ତୁ—ଚେଷ୍ଟାରେ ଦୋଷ କଣ ? noble attempt !

ରଙ୍ଗରାଜ—ନବାବଙ୍କ ଜବାବ ପାଇଲେ ଦଶ କଣ କୋଡ଼ିଏ ଏଇ ହାତ ମୁଠା ଭିତରେ ।

ଜଲି—All right—ଏକଥା drop କରାଯାଉ । ଏପରି ବାଅଷଠା ମାରି ଆଉ ଏକବେ କାହାରିକୁ ଅବମାନିତ କରିବେ ନାହିଁ—ଯାହାଙ୍କର ମାନ ମହତ ଅଛି । ବୁଝିଲେ ?

ଗଜ—Tactics Tactics—ଉତଳା ହେଲେ କାମ ଚଳେନା । ଦେଖୁଛ ତ Mr. Martin ?

ମି: ମାର୍ଟିନ୍—Yes. I am observing.

ଗଜ—ଆଉ ଯଦି କେବେ ଆସନ୍ତି, ତାହା ପୂର୍ବରୁ ଖାଣ୍ଟି ଲୋକ ଠିକ୍ କରି ତେବେ ଆସିବେ ।

ମି: ମାର୍ଟିନ୍—କାମଟା ବିଗିଡ଼ି ଗଲା ଏଥର । ଦସ୍ତୁର ମୁତାବକ atomsphere create କରି ପାରି ଗଲନାହିଁ ଆଗରୁ;-ଆମର ବୈନିକଟା ଏହା ଆଗରୁ ବାହାରି ଯାଇଥିଲେ ··

କାଲ—Yes. propaganda—ଆଜିକାଲି politics ର ପ୍ରାଣ ।

ନନ୍ଦଘୋଷ—ଏଟା ଯେପରି ମୋ ଉପରେ ଆକ୍ଷେପ କରା ହେଉଛି ।

କାଲ—ନାହିଁ, ଆପଣ ଏକା ହାତଅ କେତେ କଣ କରିବେ ? ଖୁବ୍ କରିଛନ୍ତି । ତା ପରେ ମୋ ହାତରେ ବି ଯୋଡ଼ା ଯୋଡ଼ା ଅସ୍ତ୍ର ରହିଛି ।

କଲି—ତେବେ ବର୍ତ୍ତମାନ ଗୃହ ଅଭ୍ୟୁ—ଅହେ କିଏ ଅଛି !···ଦେଖ ନନ୍ଦଘୋଷ, ବାରଣ୍ଡାରେ ଗୃହ ଦେବାକୁ କହିଯାଇ hurry up.

(ନନ୍ଦଘୋଷ ତରବର ହୋଇ ବାହାରି ଯିବାବେଳେ ଗ୍ରୀବାଖର ବ୍ୟସ୍ତହୋଇ ପ୍ରବେଶ ହେଲେ ।)

ଜଲି—ଓଃ, ଏତେ ଡେରି କାହିଁକି ଗ୍ରୀବାଖର ବାବୁ ? ଖବର କଣ ? ଥିଲେ କୁଆଡ଼େ ?

ଗ୍ରୀବା—ଆମ୍ଭ ମୁଁ ଗୋଟିଏ ଜରୁରି mission ରେ ବାହାରି ଯାଇଥିଲି । ଏଇ ମାତ୍ର ଗାଡ଼ିରେ ପହଞ୍ଚିଲି ।

ଗଦା—ତା ପରେ ?

ଗ୍ରୀବା—ଶତ୍ରୁ ପକ୍ଷ ଯାଇ ସବୁ ବିଗାଡ଼ି ଦେଇଛନ୍ତି । ସ୍ପଷ୍ଟ ଉପରକୁ ଆସିବା ପାଇଁ ସବୁ ନାରାଜ । ମାତ୍ର sympathy ଅଛି ।

ଜଲି—Lip sympathy !

ଗଜ—ଠିକ୍ ଜବରବାବୁଙ୍କ ପରି platonic sympathy—moral support ! ହାଃ—ହାଃ—

ରଙ୍ଗ—Cowards ! traitors !

ଗଦା—ନାହିଁ, ନାହିଁ, ଜବରବାବୁ ଠିକ୍, ବୁଝିଲେ କି ନା—modest natureର ଲୋକ—ଯାହା କହନ୍ତି shy !—

ଗଜ—ଅର୍ଥାତ୍ ଅନ୍ଧାର ନାଟୁଆ, ପଦା ଗାହାଣ ! (ହାସ୍ୟ)

ଗ୍ରୀବା—କିନ୍ତୁ ଗୋଟାଏ ଜରୁରି ଖବର ଜାଣିଲେଣି ?

ଗଦା···କଣ ?

ଗ୍ରୀବା—ଆପଣ ଓ ରଙ୍ଗରାଜ ଏ ଦୁହେଁ ବରଖାସ୍ତ ହୋଇଛନ୍ତି—

ଗଦାଧାରୀଙ୍କ ଶୁକ୍ଳବଦନ ଫିକାପିଆ ପଡ଼ିଗଲା ଓ ରଙ୍ଗରାଜଙ୍କ କୃଷ୍ଣ ମୁଖାର ବିନ୍ଦୁ ଫଣ ଫଣ ହୋଇ ଉଠିଲା । କାଳଅଣ୍ଡାଙ୍କ ଶ୍ମଶ୍ରୁରାଜି ସଂଜାରୁବତ୍ ଉତ୍କର୍ଣ୍ଣ ଛିଡ଼ା ହୋଇଗଲେ ଓ ନେତ୍ର କୋଟରରୁ ବାଷ୍ପକଣା ନିର୍ଗତ ହେବାକୁ ଲାଗିଲା)

ରଙ୍ଗ—କାହାର ହିମ୍ମତ୍ ଏତେ—ମୋତେ ଦେବ ତଡ଼ି ।

ଯାଇ ନାହିଁ ମୁଣ୍ଡ ମୋର ଗଡ଼ି,
ଏବେ ବି ବାହୁରେ ମୋର ଅଛି ଶକ୍ତି ଜଡ଼ି,
ଲଢ଼ିବାର ହିମ୍ମତ ବକ୍ଷରେ ।
ଉପାଡ଼ି, କଚୁଡ଼ି, ଫାଡ଼ି, ଏକା ବାଡ଼ିକରେ,
ସମସ୍ତିଙ୍କ ନାଡ଼ି ଯେଣୁ ଜଣା ଅଛି ମୋତେ,
ଇଚ୍ଛା ମାତ୍ରେ ଦୁଇଧାଡ଼ି ଦାନ୍ତ ଦେଇ ଝାଡ଼ି;
କାଠ ଯୋଡ଼ି ଗଣ୍ଡେ ମାଡ଼ି ଦେଇ ପାରେ କ୍ଷଣେ,
ସମଗ୍ର ବିରାଡ଼ି ଦଳେ ଓଡ଼ିଶା ମୁଲକ ।

କିଏ ଅଛୁ କ୍ଷେତ୍ରୀପୁତ୍ର, ଆସ ଏବେ ଉଡ଼ି,
ମାର୍ ମାର୍ କାଟ୍ କାଟ୍ ଛାଡ଼ି ରଣ ରଡ଼ି,
ଉଡ଼ିଲାଣି କୁଅ ତୁଅ କପାଳରେ ତାଙ୍କ ।

ଗଦା—ଅମ ସବୁର ରାଜନୈତିକ ମୃତ୍ୟୁର ଉପାୟ ।

ରଙ୍ଗ—କ୍ଷତ୍ରୀର ମରଣେ ରଣେ ଥାଏ କେଉଁ ଡର !
ମରିବା ମାରିବା ଅବା ଏ ଦୁଇ ମନ୍ତ୍ର ।

ଶ୍ରୀବା—ମାଭୈ, ମାଭୈ, କିନ୍ତୁ ଅଛୁ ମୁଁ ପଛରେ,
ଭଲେଣ୍ଟିଅର ଦେଇ କରି ଅପଣା ଜୀବନ,
ବିନା ତଳରେ ଅଟେ ଡେଇଁଲି ନିଆଁକୁ.
ଅଜି କରି ଟେଲିଗ୍ରାମ ପିଙ୍ଗିଲି ଚ୍ୟାଲେଞ୍ଜ ।

ରଙ୍ଗ—Bravo ! ବଳିହାରି ଭାଇ ଏହି ବୀରପଣ ।
ତୁମ୍ଭ ପରି ଆଉ ଯେବେ ଥାଆନ୍ତେ ଦିଜଣ,
ହୁଂନ୍ତୁ କି ଅମ୍ଭେ ଏହିପରି ରଣ କଣ !

ଢାଳ—ବିଦାୟ ଦିଅନ୍ତୁ ଘୁମୁ, ଅଛି କାର୍ଯ୍ୟ ଢେର୍,
ଆସ ଗଦା, ଆସ ରଙ୍ଗ, ଆସ ହେ ମାର୍ଟିନ୍
ତୁରନ୍ତ କରିବା ଚନ୍ଦା ଦାର୍ଶନିକ ପନ୍ଦ
ହଠାତ୍ ପଡ଼ିଲ ଅସି ବଜ୍ର ଉଡ଼ନ୍ଧ,
(ସମସ୍ତେ ଉଠି ପଡ଼ିଲେ)

ଝଲି—ଗୃହାଂ ହେ···

ଢାଳ—Excuse କରନ୍ତୁ ଅଜି—ବଡ଼ ominous···
(ସକଳେ ନିଷ୍କ୍ରାନ୍ତ ହେଲେ—କେବଳ ରହିଲେ
ଗଜକୁଞ୍ଜର ଓ ତାଳଦାଦା)

ଜଲି—କମିଟିକା ମଜା ହେବାନ !

ଗଜ—ଠିକ୍ ଅପଣ ଭଟରେ ବାଡ଼ିଆ ବାଟେଇ ହୋଇ ମରନ୍ତୁ । ଅଳ ବଳଟି ପଳାସି ।

ଡାଳ—ଏମାନଙ୍କର ଧ୍ୱଂସ ଅନିବାର୍ଯ୍ୟ—ଆଜି ହେଉ ବା କାଲି ।

ଝଲି— ନବୋଦ ଯେ ଏହି ଗୋଲିଆ ଗାନ୍ଧିଅ ପ୍ରସ୍ତାବରେ ମଜିଲେ ନାହିଁ, ତାର କାରଣ ବୋଧହୁଏ ସେଇୟା – ସେ ଗୃହାନ୍ତ ଖାଣ୍ଟି—undiluted, pure ! କାହିଁ ?

ଗଜ—Certainly ଘୁମୁ । କିନ୍ତୁ ଅପଣ ଯେ ଗଦାଟାକୁ ବଡ଼ ଜବର କହୁଥିଲେ ମୋର ତହିଁରେ ମତ ନଥିଲ । କେବଳ Partyକୁ ମାନି···କିନ୍ତୁ ଅସଲ ଧଡ଼ିବାଜ ! ପୁଣି Finance ହାତରେ !

ଡାଳ—I agree—ଯଦି ହୁଏ ଘୁମୁ ହେବେ ବଡ଼ ଜବର୍ । କାରଣ ଅମ ପାଗଳା ପ୍ରକୃତ ଚୁପ୍‌ଗୁପ ।

ଗଜ—Finance ଟା କିନ୍ତୁ—ମୁଁ ସେ ବିଷୟ ଖୁବ୍ study କରିଛି । ଗୋଟାଏ debt board କରିବା । ପୁରୁଣା କରଜାଗୁଡ଼ାକ ଏକଦମ···

ଡାଳ୍—କଣ Moratorium ?

ଗଜ—ନାହିଁ ନା; Total repudiation, ତାହାହେଲେ ତାଙ୍କ ମହାଜନୀ ଅଇନର ହାତେତ ଉପରକୁ ଟେକିପିବା । ଅଉ mass କୁ capture କରି ନେବା ଏକା ଗୁଲ୍‌ରେ ।

ଝଲି—ହଁ, କିନ୍ତୁ ସେଥିରେ ଅପଣଙ୍କର interest ଅଛିବୋଲି ଶତ୍ରୁ ଦୋଷ ଦେବେ ନାହିଁ କି ? ଅପଣଙ୍କର motive ଯେ ଉଦାର ଓ ଜନହିତକର ତାହା ତ ବୁଝିବେ ନାହିଁ ଲୋକେ ।

ଗଜ—ଦିଅନ୍ତୁ ନା ଦୋଷ; ସବୁ ଦେଶରେ, ଏପରିକି ଖାସ୍ ବିଲାତରେ ବି ଏହା ହୁଏ । Madras Land Act ରେ ତ ପୁଣି Self interest ଥିଲା; ଲୋକେ ବି କହିଲେ; ମାନି ହେଲା କାହାର କଣ ? Politics is a mere gambling.

ଝଲି—ଆଚ୍ଛା, ଅଜି ଥାଉ; ଗୁଲନ୍ତୁ ଟୋପାଏ ଟୋପାଏ ଗୁ······ ଅରେ କିଏ ଅଛୁ ?

ଡାଳ—ଅଜ୍ଞା, ଘୁମୁ, ଗରିବ ଅଳିଟା ଏକା ।
( ଗୃ ବେହେରା ଦୌଡ଼ି ଆସିଲ )

ଝଲି—ଅଚ୍ଛା, ବେଳ ଯଦି ହୁଏ—
ବେହେରା ଜଲଦି ଲେ ଅଓ ଟି ।
( ଗଜଙ୍କ ପ୍ରତି ) Let us wait and see.



# ହନୁମନ୍ତ ବସ୍ତ୍ରହରଣ

( ରଙ୍ଗନାଟିକା )

### ପ୍ରଥମ ଦୃଶ୍ୟ

( କିସ୍କିନ୍ଧାର ପ୍ରଧାନ ମନ୍ତ୍ରୀ ନିଃସ୍ୱଦନ୍ତ ଖଟ ଉପରେ ଗଡ଼ଗଡ଼ାୟମାନ । ଦୁଇ ଜଣ ଅର୍ଦ୍ଦଳି ମୁଣ୍ଡରେ ବରଫ ବ୍ୟାଗ୍ ଦେଇ ଓ ପଙ୍ଖା କରି ସେବାନିରତ ।)

**ନିଃସ୍ୱଦନ୍ତ**— ନାଃ, ଆଉ ପାରିବାର ନାହିଁ ! ······

ଉଃ – ଉଃ ····· କି ଯନ୍ତ୍ରଣା ଥିବାର !

**ଅର୍ଦ୍ଦଳି**— ଡାକ୍ତର ସାହେବଙ୍କୁ ଫୋନ କରିବି ହଜୁର ?

**ନିଃସ୍ୱ**—( ବିରକ୍ତ ଭାବରେ ଦନ୍ତହୀନ ମୁହଁ ଦେଖାଇ )

ଓଲ୍ଡ, ବୁଡ଼ବୁକ୍ ତୁହି, ଗଧା ହୋଇ କାହାଁକା,
ଏ ବ୍ୟାଧିକି ଅଟେ ଶରୀରର ?
ମନୋବ୍ୟାଧି ଏ ଯେ
ଗୁଡ଼ ପକାଏ କରତ ।
କି କରିବ ଡାକ୍ତରର ବୋପା
ଯାଅ ବରଂ ସମାଜ ଅଫିସେ,
ଅବା ପ.ଅ ଜାନକୀ ଭବନେ,
ଆଣିବ ଉଦନ୍ତ ଯାହା ଆସିଥିବ ନୂଆ
ଅଥବା ସଲାମ ଦିଅ ବଲକୀ ଦାସଙ୍କୁ
ଭକ୍ତବର,—ଯନ୍ତ୍ରୀ, ମନ୍ତ୍ରୀ, ତନ୍ତ୍ରୀ ଏ ଦଳର ।

(ଅର୍ଦ୍ଦଳି ବାହାରି ଗଲା)

ଉଃ—ମୁଣ୍ଡ ହୁଏ ବନ୍, ବନ୍ ବୁକୁ ଛନ୍ ଛନ୍,
କେତେକଥା ମନ୍ ମନ୍ ପାହିଁଥିଲୁ ଆମ୍ଭେ,
ସବୁ ହୋଇଗଲା ପଣ୍ଡ ? କି ପ୍ରଚଣ୍ଡ ଘାତେ ?
ଖଣ୍ଡ ଖଣ୍ଡ ଲଣ୍ଡଭଣ୍ଡ ହୋଇଗଲା ସବୁ,
ମୁହୂର୍ତ୍ତ ମାତରେ, ଏକା ତାଙ୍କର ହୁକୁମ !
ଏ ବେଳରେ ଗଲ କାହିଁ ଶ୍ରେଷ୍ଠ ଇଷ୍ଟଦାତା,
ମହାତପା ଖାସକୁଳ ରବି,
ଅନୁଗ୍ରହେ ଯାର ଥିଲି ପାଇ ଏହି ଗାଦି;
ପୁଣି ଏହି ଅଧି, ଥିଲ ସାଧି ଓରମାନ !
ବଧି ତ ହୋଇଲ ବାଦୀ—ବାଦୀ ସେ ପଟେଲ
ବସାଇ ସ୍ଥାନ ପୁଣି କରିଲା ଫକୀର ।

ହେଲ ଯାହା ନେଲ ତାହା ଦୁଇଦିନ ଅନ୍ତେ ।
ଏ କି ବିଡ଼ମ୍ବନା !—କିରଂ ······

(ବାଲକୀ ଦାସ ବାବାଜୀ ପ୍ରବିଷ୍ଟ ହେଲେ—କପାଳେ ଦୀର୍ଘ ଚିତା, ମୁଣ୍ଡରେ ଚଇତନ ଚୁଟି, ହାତରେ ଜପାମାଳ 'ଠକ୍ ଠକ୍' ନାଦରେ ଘୂର୍ଣ୍ଣମାନ ।)

**ବାଲକୀ**— ସ୍ୱସ୍ତି ଅସ୍ତୁ, ସ୍ୱସ୍ତି ଅସ୍ତୁ !

(ଚମକି) ଏ କି, ଏ କି କଥା !
'ଚିନ୍ତା' କରି କରି ମଥା ହୋଇଅଛି ବ୍ୟଥା ।
ଗଡ଼୍ ଛିନ୍ନ ମହୀ ପରେ ଯଥା ମହୀଲତା,
ମୁଖେ ନାହିଁ କଥା,······

**ନିଃସ୍ୱ**— ଅସିଲ, ଅସିଲ ବନ୍ଧୁ, କି କଥା କହିବି,
ସବୁ ତ ସରିଲା – ଉଃ······

**ବାଲକୀ**— ଏ ତ ତୁଚ୍ଛା ମେଲେରିଆ—

Cerebral type ( ସେରିବ୍ରାଲ ଟାଇପ )
ମଶା ବିଷ, ମଶା ବିଷ, ତାହା ମଶା ବିଷ !
ସେ ପାଇଁ ନଗର-ପିତା ( City father )
ହେଲ ବନ୍ଧୁ ମୁହିଁ,
ମଶକ ବିନାଶ-ବ୍ରତ ଧରିଅଛି ସଦା ।

**ନିଃସ୍ୱ**—ଅହିଂସା—ଅହିଂସା—ଫଳ ?

**ବାଲକୀ**—ରଟିବିଅ ଅହିଂସା ତୁମର !

ମାର ପିଟ ଦଙ୍ଗା ସିନା ଅଟେ Violence,
କୌଶଳରେ ଶତ୍ରୁ ନାଶ ନୁହଇ ଅଧର୍ମ ।
କରଣିଅ ଟିକ ଏହା, କଳମର ପେଞ୍ଚ ।
ବାକ୍ୟରେ, ହାତରେ ସଦା ବରଷାଇ ମଧୁ,
ଭିତରୁ ମାରିଲେ ଖାଞ୍ଚି ଜାଣିବ କା ବାବା !
ହାମକୁ ଦେଖାଅ କେତେ ଅହିଂସାର ବୋଲି,
ତଦେଲ ଅହିଂସା ହାମେ,
ବୈଷ୍ଣବୀ ଅହିଂସାସନେ, ଗାନ୍ଧିଆ ଅହିଂସା,
ମିଶିଅଛି ଆମ୍ଭଠାରେ, ଜାଣିଛ ତ ତାହା,
ମାସ ଏହି ପଲିଟିକ୍ସ, ମାର ପେଞ୍ଚ ଖେଳ;
କୂଟିଳର ଚେଲା ଅମେ ସେହି diplomat—

ନିଃସ୍ୱ—କି କହିବା କହ ତେବେ ସୁଦକ୍ଷ କୌଶଳ ।
ଜର ଜର ପ୍ରାଣ, ପୁଣି ଥର ଥର ଗାତ୍ର,
ହାୟ ପୋଡ଼ା କପାଳରେ ଏତେ ହରବର !
ବାଲୁଙ୍କା—ଧୈର୍ଯ୍ୟଧର, ନ ହୁଅ କାତର,
କୋଥାକାର ଜଲ କୋଥା ଯାୟ ଦେଖା ଯାକ୍ !
Wait and see ମାତ୍ର ବୃଟିଶ ପଲିସି ।
ନିଃସ୍ୱ—କିନ୍ତୁ ଯେ ହସିବେ ଶତ୍ରୁ,
ହସିବ ସେ ବୋଲକଣ୍ଡ, ହସିବ Goodever,
ହସିବ ସେ ରଙ୍ଗରାଜ, ପୁଣି ଧନମଣି
ସବୁଠାରୁ ହସିଦେବ କେଳାଇଣ ଦାନ୍ତ
ପନ୍ଦ୍ରା ବାସୀ ଡୋଲ୍ ମୋହ ଦୁଷ୍ଟ ଛଲବୋଃ ।
ଏ ସବୁ ନ ମାଡ଼େ ତେତେ, ମାତ୍ର ଉଗରଅ
ଝିଟିକାର ଯେତେ ବାଧେ ନିଆଁ ଚୁଣ୍ଡା ସମ ।
ବାଲୁଙ୍କା—ନିତାନ୍ତ ପତଳା ଚମ—ବ୍ରାହ୍ମଣ କଲିଜା,
ଏ ଯେତେ ଯେ ପଡ଼େ, ସେହି ବାଘଇ ପିଠିରେ
ଗଣ୍ଡା ଛାଲ—ଧର୍ମବର ସର୍ବଂସହା ଗାତ୍ର
ଅଷଦ୍ୟ କବଚ……

( ବୁଦ୍ଧିବାନ ଓ ସଦାନନ୍ଦ ମନ୍ତ୍ରୀ ଦ୍ୱୟ ବନ୍ଦ୍ୟ ଭାବରେ ପ୍ରବେଶ ହେଲେ )

ସଦାନନ୍ଦ—ଆସିଗଲା ଆଜ୍ଞାପତି ।
ତଡ଼ାବଡ଼ ଛାଡ଼ିବାକୁ ମନ୍ତ୍ରୀପଦ, ଗାଦୀ ।
ନିଃସ୍ୱ—ଆଁ……(କାବା ହୋଇ ରହିଲେ)
ବାଲୁଙ୍କା—ସ୍ୱଧେ, ସ୍ୱଧେ—ପୁନରମୂଷିକ !
ସଦା—ବାଘଡାମ୍ବୁଲକ ହୋଇଗଲା କାରାଗାର
ନିସ୍ୱଃ—କାହାପାଇଁ ?
ସଦା—ସଭଳଙ୍କ ପାଇଁ, ମାତ୍ର ଅଗ ଆମ ପାଇଁ ।
ବାଲୁଙ୍କା—ଅଗଚଲା ଯେହୁ, ତାର ଆଗ ଯିବା କଥା ।
ବୁଦ୍ଧି—ଅଗଚଲା ! ଅଗଚଲା ! ଅମେ ଅଗଚଲା ?
ମୁଁ ନୁହଇ ଅଗଚଲା କେଉଁ ପୁରୁଷରେ ।
ଅମ୍ଭ ନାମ 'ପଛ ପେଲ' ନିପଟ ନିଖୁଣ ।
ତୁମର କୁହୁକେ ପଡ଼ି ଏଇ ଝକ୍‌ମାର !
ବାଲୁଙ୍କା—ବଗଡ଼ୁଛ କାହିଁ ଭାଇ, ନିମକର ଦାସ ।
କୁଣ୍ଡାରେ କି ଖଜାଭୋଗ ଭୋଗିଲ ଦୁ'ବର୍ଷ ?
ଯେତକ ଚଢ଼ିବ ପୁଣି ତେତକ ପଡ଼ିବ,
ଏହା ଅଟେ ପ୍ରକୃତି ନିୟମ ।

ଚକ୍ରପରି ଘୂରୁଅଛୁ କାଳନେମୀ ଚକ୍ର
ମନସ୍ତାପ କର କାହିଁ ଯାଉଅଛ ଭୂମି ।
ଧର ଧୈର୍ଯ୍ୟ ଧର,
ବନ୍ଧୁବର,
ନ ହୁଅ ବିରସ, ନୁହ ହତଶ୍ୱାସ ।
ହଠାତ୍ ଉତ୍ଥାନ ହେଲେ ହଠାତ୍ ପତନ ।
ସ୍ୱଭାବତ ରଣ ମାତ୍ର ଏହା ।
ବୁଦ୍ଧି—ରଖି ଦିଅ ଛୁଣ୍ଡା ଗଣ୍ଡ କଥା,
ବ୍ୟଥା ବାଜୁ ନାହିଁ ପରା,
ଆନନ୍ଦେ ରହୁଛ ସେଣୁ ନିର୍ବିଘ୍ନ ପଦରେ ।
ମାତ୍ର ଜାଣିଥାଅ ପୁଣି ଆସିବ ନିଶ୍ଚୟ
ତୁମ୍ଭ ଦିନ କାଳ,
ଉପର ବରଡ଼ା ଭଲ ତସୁଥାଏ ଯେହ୍ନ,
ତଳ ବଉଡ଼ାର ଦେଖି ଖସିବାର ପାଳି ।
ନିଃସ୍ୱ—ହୋଇଛୁ ନିଦେଶ,
ଅଗଚଲା ନେତା ଯେତେ ଆଗେ ଯିବେ ଜେଲ୍ ।
ସ୍ୱାର୍ଥ୍ୟଛଡ଼ା କଥା ! ଉଲଟା ଏ ନ୍ୟାୟ,
ଆଗରେ ସିପାହୀ ବିନା କରଇ ସମର,
ପଛେ ଥାଏ ହାବଲଦାର୍ ହୋଇ ସାରବର;
ଦଣିଆ ଦ୍ୱାରର ସବୁ ଦେହକ୍ ହୁକୁମ ।
ପରମ୍ପରେ କରୁଛ ନଡ଼ିଆ,
ଦେଖାନ୍ତି ସେ ପ୍ରଭୁପଣ, ଅପଣା ମାହାତ୍ମ୍ୟ ।
ବୁଦ୍ଧି—ବଡ଼ା ଠିକ୍ କଥା;
ଛଡ଼ାଇ ଏ ଗଦବର ଆପଣା ବେଉସା,
ବାନ୍ଧଦେଇ ଶିରେପରେ ଦଣିଆ ଫିରୋପା,
ଅତ୍ରେଇ ଦିନିଅ,
ଏବେ ପୁଣି ଲଗାଉଛ ନିଆଁ ।
ଖେଳଘର କଥା ଏ କି, ଅଥବା ଖିଆଲ ।
ନିଃସ୍ୱ—ବଡ଼ ନେତା, ଆଗଚଲା, ଯଦି ଯିବେ ଆଗ,
ଯାଆନ୍ତୁ ଦେଖିବା ଜେଲ, ନିଜେ ହୋଇ ଆଗ;
ମହାତ୍ମା ନୁହନ୍ତି ସେହି, ମହାତମା ସତ ।
ନାହିଁ—ଆପେ ରହି ନିରାପଦେ, ମାରବେ ମଉଜ
ଝାଡ଼ୁଥିବେ କାଗଜରେ ଲମ୍ବା ଲମ୍ବା ବୋଲ ।
ସଦା—ବୃଥା ତର୍କେ ନାହିଁ ପ୍ରୟୋଜନ,
ଅପ୍ରୋଜନ କର ବଦାସ୍ତୁର ।

ନିଃସ୍ୱ—ଛେନା ଅଯୋଗ୍ୟ ନ !
ସଙ୍ଗ୍ୟସାକ ବଡ଼ ବଡ଼ ହେଲେଣି ବସୋଧୀ,
ସବୁବାଟ ଯାଇଅଛୁ ରୋଧି ।
ଶୋଧି ଦେବେ ଥକଲେ ସେ, ପାଇଲେ ସୁବଧା ।
ମୁଣ୍ଡ ଗୁଞ୍ଜିବାର ସ୍ଥାନ ନାହିଁ ଭୂମଣ୍ଡଳେ ।
କ୍ଷମତା ଟିକକ ଗଲେ ଆଉ କେ ପଚ୍ଛରେ !
ସଦା—ମାନିବାକୁ ବାଧ୍ୟ କବା ଆମେ ?
ବାଲ୍‌କୀ—ନ ମାନଲେ ନାହିଁ ଆଉ ଭବଷ୍ୟତ ଆଶା—
ବାଲ୍‌କୀ—ହାସ୍ୟ ମୁଗ୍‌ଧ ।
ଭାବଛୁ କ ଏହା ବୋଲ Assembly Chamber
ଭାବଛ କ ମତ୍ତଗଜ party ର ମେମ୍ବର !
ନିଃସ୍ୱ—ଓହୋ, ସତେ ଏକା—
ଅଭ୍ୟାସ ଦୋଷରୁ ସେ ଟା Slip of the pen,
Printer's devil ମାତ୍ର,
Excuse please.
(ପଦ ଧର Shake hand କଲେ)
ମାତ୍ର ଟଗୋଟେ କଥା—
ମନେ କର ଯଦ—
ବାଲ୍‌କୀ—(ବାଧାଦେଇ) ପୁଣି 'ଯଦ'
ସେ ସବୁ ଶବ୍ଦ ହୋଇଅଛୁ ban,
ନିଃସ୍ୱ—ଆଃ—ଥାଅ ନା—କ ଯେ—
କହୁଥିଲ, ଯଦ ପୁଣି ସେଇ, ଲଙ୍କାପୋଡ଼ା
ମହା bully, ମାର ନିଏ ଏଇ ସୁବଧାରେ
ଆମ୍ଭ ରୋଟି ଖଣ୍ଡି ।
ପାଞ୍ଚଶତ ଟଙ୍କା ପାଇଁ ନାହିଁ ମୋ ଭାବନା,
ଶଙ୍କା ହୁଏ ଗାଦ ମାଡ଼ ବସିଲେ ଥରୁଟେ
ଧୁନ୍ଦ ଧନ୍ଦ ଖୁନ୍ଦ ଖୁନ୍ଦ କେଁଠିବ ଆମ୍ଭଙ୍କୁ ।
ମତ୍ତଗଜ—କଏ ? ରଙ୍ଗସଙ୍କ ?
ନିଃସ୍ୱ—ହଁ, ହଁ,—
ନାମ ଧରିବାକୁ ତାର ମତେ ହୁଏ ଘୃଣା ।
ବାଲ୍‌କୀ—ଘୃଣା ନୁହେଁ, ଭୟ ।
କିନ୍ତୁ ଜାଣିଥା ନିଶ୍ଚୟ,
ଖସିବା ମାତ୍ରକେ ଦଳ ଭଡ଼ ସେହିମାନେ
ଗାଦ ମାଡ଼ ବସିବାକୁ କରିବେ ପ୍ରଚେଷ୍ଟା ।
ମତ୍ତ—ବୃଥା ଶଙ୍କା—
Goodever ଓ ରଙ୍ଗସଙ୍କ ପୁଣି ଧନମଣି
ତନି ମୂଷଳରେ କେବେ ନାହିଁଟି କୁଶଳ ।
ନିଃସ୍ୱ—କାଲଇଣ୍ଡୁ ଅଛୁ ଟାକ କର
ନିତାନ୍ତ ଘନିଷ୍ଠ ବନ୍ଧୁ 'କଣ୍ଡେୟୁର' ତ.ର
ସଙ୍ଗେ ଛଇ ଭାଇ ପୁଣି ସାଧୁଜନ ଜଣେ
ଏମନ୍ତେ ଯେ ଷଡ଼ଯନ୍ତ୍ର କରିବେ ରଚନା ।
କଏ ଜାଣେ, ହୋଇ ଗଲେ ଆଉ ତନି ଜଣ
ମିଳବେ ଭିତରେ ଯାଇ 'ଡୋଲ ମୋଟ' ସନେ ।
ଏକବଂଶ ଅକ୍ଷୌହିଣୀ ତାର ନିଦା ସେନା,
ସବେ ମିଳ ହେଲେ ବଳବନ୍ତ
ଭାଙ୍ଗି ଦେବେ ମୁଥା ମାର ଆମ୍ଭ ବଷଦନ୍ତ ।
ବାଲ୍‌କୀ—ଦନ୍ତ ନାହିଁ, ଆଉ ଦନ୍ତ ଭାଙ୍ଗିବେ କପଟ ।
ନିଃସ୍ୱ—ତଳପାଟି ଦନ୍ତ ଯାକ ରହିଛୁ ବାକ ।
ମତ୍ତ—ହାଃ, ହାଃ—
ତେମନ୍ତ ଲୋକଙ୍କ ନୁହେଁ ଷବୀୟ ନନ୍ଦନ,
ନୁହେଁ ଗର ଜୁଣିଅର । ବୋକାରାମ ଗୃହେ
ତାଲମ ପାଇଛୁଁ ମୋଇ ଓସ୍ତାଦର ଛୁଟ ।
ବାଲ୍‌କୀ—ନିଶ୍ଚୟ, ନିଶ୍ଚୟ
କରିଣିଅ ଗୁଲ—
ମତ୍ତ—କରିଣିଅ !
ଗ୍ରେଜ, ଜୁଆଗ୍ରେର, ଠକ, ସେହୁ ଦଗାବାଜ—
ଏ ଆମର diplomacy, ସଙ୍କୀତ ପେଞ୍ଚ
ସାମ, ଦାନ, ଦଣ୍ଡ, ଭେଦ—ଶୁକ ନୀତ କେଞ୍ଚ ।
କଣ୍ଟେୟୁରେ କଣ୍ଟିବାକୁ ଏକା ସମରଥା
ଯାହା ମୁଣ୍ଡେ ଥିବ ଗୃହ ମଥା ।
ନଡ଼ନ ଗଡ଼ନ ଶକ୍ତ ନେଇଛୁ ଛଡ଼ାଇ
ଆଣ୍ଡି ଦେଇ ଅଛୁ କାଠି,
ପାଟିକଲେ ଗଣ୍ଡି ଦେଇ ଭାଙ୍ଗି
ସାଣ୍ଡି ଦେଇ କ୍ଷଣମାତ୍ରେ କାଣ୍ଡି ଦେବ ଚାଢ଼ି ।
ସେ ଭୟ ନାହିଁଟି ଆଉ,
ହେଉ ନାହିଁ ଘାଉ ଘାଉ
ପଠାଉ ମାର୍ଗିବାର ବାଟେ ପଢ଼ିଅଛୁ କଣ୍ଟା
ଚୁଁ—ଚୁଁ—ଡାକଦେଇ ମାତ୍ରଲେ ପୁତୁଳ
ଲାଙ୍ଗୁଡ଼ ହଲାଇ ଧାଇଁ ଆସିବ ଜଡ଼କା ।
ନିଃସ୍ୱ—ଅସାଧ୍ୟ ସାଧକ ତୁମେ ବୀର ଚୂଡ଼ାମଣି
କାର ସାଧ୍ୟ ପାରିବ ବଖାଣି
ଅଶେଷ କାହାଣୀ ତବ ଏଡ଼ଭେଞ୍ଚରର

ବାଲୁକୀ—ବରଦା କଟକେ ଯାଇ ବାର ସମ୍ବାସନେ
ଯେତୁ ପାରେ ବସି ଏକାସନେ
ସହସ୍ର ବଦନ ହେଲେ ବର୍ଣ୍ଣିବ ତା ଗୁଣ ।
ନିଃସ୍ୱ—ସବେଁ ଅମ୍ଭେ ଗଲେ ଗୁଳି
କଷ୍ଟିଛ୍ୟାର ମାଡ ଚକ ରହିବ କା ହାତେ ।
ମନ୍ତ୍ର—ଯେ ହୋଇବ ସେନାପତ, ଚଳାଇବ ସେହୁ
ନିଃସ୍ୱ—ସେନାପତ ପଦବୀଟା ଅଟେଇ ଚଳନ୍ତ,
ନୁହେଁ ସ୍ଥିର । ଗୋଟି ପରେ ଗୋଟି ଯାନ୍ତି ଚଳ
ସ୍ଥାୟୀ ମାଡ ଭାର ଯେନ ରହିଥିବ ଯେତୁ
ସେତୁ ଥିବ ରକ୍ଷ ବହାଡ଼ରେ ।
ମନ୍ତ୍ର— ସେ କର୍ମକୁ ଯୋଗ୍ୟ ଏକା ବାଲୁକୀ ବାବାଜୀ,
ନିଃସ୍ୱ - କ ବୋଲୁଛ ଅମ୍ବାସ୍ୱମ ?
ମନ୍ତ୍ର—କ ବୋଲିବେ ଆଉ !
ହୋଇଛନ୍ତି ଯେଣୁ ସେହୁ
ନାଗଙ୍କ ରକ୍ଷା—
ତାଙ୍କ ମୁଣ୍ଡେ ନଡ଼ିଆଟା ହେଉଥାଉ ଭଙ୍ଗା
ସଦା—ବାନ୍ଧଦିଅ ତେବେ ଶାଢ଼ୀ—

(ମନ୍ତ୍ରୀଗଣ ରୁମାଲ ବାହାର କରି ବାଲୁକୀଙ୍କ ମୁଣ୍ଡରେ ବାନ୍ଧିଲେ । ସକଳେ କରତାଳ ଧ୍ୱନି କଲେ । ଅର୍ଦ୍ଦଳି ଗୃ ଓ ଗଟୋଡ଼ ଆଣି ପହଞ୍ଚାଇବାରୁ ବାଲୁକୀଙ୍କ ଛଡ଼ା ସକଳେ ତହିଁର ସଦ୍‌ବ୍ୟବହାରରେ ଲାଗିଲେ ।)

ପଟପତନ

ଷୋଡ଼ଶ ଅଙ୍କ

(କମ୍ବଳ ଘୋଡ଼ି ଏକ ଦାଢ଼ିବନ୍ତ ପୁରୁଷ ଶୋଇଛନ୍ତି । ଦୁଇ କାଳ ଦେଇ ଘରଳ ବହି ଯାଉଛି । ପାନ ବୋଳରେ ତକିଆ ରଙ୍ଗିନ ଧରି ଯାଉଛି । ତେଲ ଚିକଟା ସହିତ ମିଶି ତାହା ଏକ ଅପୂର୍ବ ଶ୍ରୀ ଧାରଣ କରିଛି । ଶ୍ୱେତ ଦାଢ଼ିରେ ଗୋଲପି ଛିଟିକା ପଡ଼ିବାରୁ ଜାପାନୀ ଛିଟରେ ଚାନ କାଟି ଦେଉଛି ।)

ହଠାତ୍ କାଳଘଣ୍ଟଙ୍କର ନିଦ୍ରାଭଙ୍ଗ ହେଲା—
କାଳ—(ବ୍ୟସ୍ତ ହୋଇ)
ଶତାମୃଣି, ଶତାମୃଣି—ଧାଇଁ ଆସ ବେଗେ,
ଡାକ ଆଣ ସଭାସଦ ବର୍ଗେ ।
ଡାକିଆଣ Goodever ମିଶ୍ରଙ୍କୁ ତୁରତେ,
ମିଶ୍ର + ମିଶ୍ର କରଣ ସଂଯୋଗ
କର ଏକ ଶକତ ଘର୍ଷଣ;
ଡାକିଆଣ ରଙ୍ଗରାଜ
ସାଜ ସାଜ ଆଜ ଅମ୍ଭ ସେନା
ନିଶା ଶେଷେ ଦେଖିଛୁ ସ୍ୱପନ,
ସ୍ୱପ୍ନ ନୁହେଁ ସତ୍ୟ ଏ ଘଟଣା
ନିଷ୍ଠେମ୍ଭ କାନ୍ଦୁଛି ବସି ନିଃସ୍ୱଦନ୍ତ ଏବେ
ମନ୍ତ୍ରୀଗଣ ମନ୍ତ୍ରୀଗର୍ବ ଯାଇ ଅଛି ଭାଜ
ଦେଇଛି ଆଦେଶ ଝାଡ଼ୁ ତେଣେ ଦନ୍ତାବଳ
ଦେହିପେ ଏଠାରେ ଏବେ ଘୁଡ଼ନ୍ତି କୁହାଟ
ତତଲ ଯାଉଛି ଯେତୁ ଟାଉ ଟାଉ ଖାଉଅଛି ବସି
ଗାଡ ଅଠେଧ ଯେଇ ଏକା ହର୍ଗବାକୁ ଯାଉ ।
ବୁଦ୍ଧି ବାମ, ଭାଗ୍ୟ ଏବେ ହୋଇଲଣି ବାମ
ତହୁଁ ମୁହୁଁ ଦେଇଥିଲି ବାନ୍ଧି ଶିରେ ପାଗ,
କପର ବାଗରେ ପଟି ଦେଲଟି ଚଢ଼ାଇ,
ଅଢ଼ାଇ ଦିନରେ ଏବେ ପାଇ ପରାଭବ ।
ପ୍ରେତାନନ୍ଦ ଆଉର ତା ସଙ୍ଗେ
ଅଙ୍ଗ ଭଙ୍ଗେ ନାଚ ନାଚ ନାନାରଙ୍ଗେ
ସଙ୍ଗେ ଯେନି ପରିଷଦ ଗଣ
ଏବେ ସବୁ ସଭାଗଣ ରଥ ଯାବା ଯାଉ
ଚେଜନା କାକଗର ଭାଗ ଏକା ନୁହେଁ ତାର ।
କାନ୍ଦିଲେ ହୋଇବ କିସ କରୀ ର, ଗମନା
କାଳଘଣ୍ଟ ନ ଛାଡ଼ିବ ଏବେ
ନେବ ତାର ଜୀବ, ପ୍ରତିଶୋଧ ।
ଉଠିବ ଉଠିବ ଆଜ ବ୍ରାହ୍ମଣର ତେଜ
ଉତ୍ତେଜନା, ଉଦ୍ଦୀପନା ଆଉର ପ୍ରେରଣା
ତଥି ସଙ୍ଗେ ଉଦ୍ଦୀପିତ ମିଳିବେ ଦ୍ୟୋତନା,
ଗ୍ରେଦନା, ବୋଧନା ପୁଣି ଶୋଧନା ଆଉର ।

(ଶତାମୃଣି ପ୍ରବେଶ ହେଲେ)

ଶତା—ଅଯଥା କିପାଇଁ ଯାଅ ଗଲଗାଜି ନାଥ,
ସ୍ୱପ୍ନ ତବ ଭବା ସ୍ୱପ୍ନ ଅବା ଯୁବା ସ୍ୱପ୍ନ
ବାର୍ଦ୍ଧକ୍ୟରେ ଆସି ଏବେ କରେ ଭାବିବତ
ନାଶିଇଲା ବୁଦ୍ଧି ବୃତ୍ତି ଆଉର ସଂସ୍କୃତ
ପଦେ ପଦେ କଲ ଭ୍ରମ, ବିଭ୍ରମ ସର୍ବଦା
ଖୁଆଇଲ ଆପଣା ସଂଭ୍ରମ
ନ ପୁଛିଲ କାଳ ବେଳେ ଶତାମୃଣି ବାଣୀ
ଶୁଣ ଯାଇ ସହର ବଜାରେ

କାହାର ସୁନାମେ ଦେଶ ଯାଇଅଛି ଭରି ।
ମତ୍ତଗଜ ନୁହେଁ ଭୃତ୍ୟ ନୁହେଁ ସ୍ୱାର୍ଥାନ୍ୱେଷୀ
ଥିଲେ ଥିବ ଭିତରେ ଭିତରେ ···

## ଦ୍ୱିତୀୟ ଦୃଶ୍ୟ

( ନମାଇ ଅଫିସରେ ଦୁଇଜଣ ବ୍ୟକ୍ତି ମୁହାଁ ମୁହିଁ ବସିଥିଲେ । ଜଣେ ଯୌବନ ଓ ବାର୍ଦ୍ଧକ୍ୟର ସନ୍ଧି ସ୍ଥଳରେ ଉପନୀତ ପ୍ରାୟ, ଦେହରେ ବଗପକ୍ଷିଆ ଖଦଡ଼ ପଞ୍ଜାବୀ, ଗୌରବର୍ଣ୍ଣ ମୁଖମଣ୍ଡଳ ସେଫ୍‌ଟିରେଜରର ସ୍ପର୍ଶରେ ମସୃଣୀତ; ଆର ଜଣକ ବାର୍ଦ୍ଧକ୍ୟର ନାଟମନ୍ଦିରରେ ସଦ୍ୟ ପ୍ରବେଶ କରିଥିଲେ ହେଁ, ଦୁର୍ଣ୍ଣିବାରର ଶ୍ୱେତ ଶ୍ମଶ୍ରୁର ମୁଖମଣ୍ଡଳ ଆବୃତ କରି ଦେଲାଣି । ଅଯତ୍ନ ରକ୍ଷିତ ଶ୍ମଶ୍ରୁରାଗ୍ର ଲଟି ବାନ୍ଧି ଆସୁଛି ତୈଳାଭାବରୁ । ହେଲେହେଁ ଦନ୍ତହୀନ ଓଷ୍ଠ ଦ୍ୱୟକୁ କଥଞ୍ଚିତ ଘୋଡ଼ାଇବାରେ ସହାୟତା କରୁଛି । ଖଣ୍ଡିଏ ଅର୍ଦ୍ଧ ମଳିନ ଖଦଡ଼ ଚାଦରର ଦ୍ୱାରା ଅର୍ଦ୍ଧାଙ୍ଗ ଆବୃତ । ଦ୍ୱିତୀୟ ବ୍ୟକ୍ତି ଅନ୍ୟମନସ୍କ ଭାବରେ ଏଣେ ତେଣେ ଚାହୁଁଥିଲେ, ଆଉ ପ୍ରଥମ ବ୍ୟକ୍ତି ମତଲବପୂର୍ଣ୍ଣ ଦୃଷ୍ଟିରେ ତାଙ୍କର ଆଡ଼କୁ ଚାହିଁ ରହିଲେ । ବୋଧହୁଏ କପଟ ଭାବରେ ବା କେଉଁଠୁ କଥାଟା ଆରମ୍ଭ କରିବେ. ତାର ଖିଅ ଖୋଜ ଖୋଜ । ହଠାତ୍ ଦ୍ୱିତୀୟ ବ୍ୟକ୍ତି ମୁହଁ ଫିଙ୍ଗାଇଲେ । )

ଦ୍ୱିତୀୟ—ହଇ ହେ ଜାଣିଲ, ଆଉ ବୁଲାବୁଲା ସହିବ ନାହିଁ ଏଣିକି—ଓଃ ହାତ ଗୋଡ଼ ଯେପରି ପାଚି ଯାଇଚି ।

( ଚେୟାର ଉପରେ ଥୁଆ ହୋଇଥିବା ପଦଦ୍ୱୟରେ ହାତ ବୁଲାଇ ନେଇ ପୁଣି ଦାଢ଼ିରେ ଆଉଁସି ଦେଲେ । )

ପ୍ରଥମ—ହଁ, ଭାଇନା, ତା ଆଉ ହବ ନାଇଁ । ବୟସ ହେଇଗଲା—

ଦ୍ୱିତୀୟ—ବୁଝିଲନା, ପୁଣି ଆଜ ଯିବାକୁ ହବ ବାହାରି—
ଠକ୍କରବାବା ଆସୁଛନ୍ତି ପହରି ଦିନ । ଅନ୍ତତଃ ଦିନକ ଆଗରୁ ଯାଇ ······

ପ୍ରଥମ—କିନ୍ତୁ ଆଜ ତ ଯାଇ ପାରିବେ ନାଇଁ—

ଦ୍ୱିତୀୟ—ନ ଗଲେ ତ ଚଳିବ ନାହିଁ ।

ପ୍ରଥମ—ତେବେ···ଉଁ, ହୁଁ ସେ ହବ ନାହିଁ···ଆପଣ ପଛେ
କାଲି ଦିନ ଗାଡ଼ିରେ ଯିବେ । ଆଉ ବୁଝିଲେ ନା, ଦେହଟା ଉପରେ ଏତେ ଅତ୍ୟାଚାର···।

ଦ୍ୱିତୀୟ—ଆରେ ନାଇଁ ହେ ନାଇଁ···ସେ ଭାବନା କରନା—
ଆମେ ସବୁ ଚେଲାଘର ହାଡ଼—

ପ୍ରଥମ—ତେଲିଘର ହଡ଼ା ହୁଅନ୍ତୁ ବା ଧୋବାଘର ଗଧ ହୁଅନ୍ତୁ, ଆଜି
ଆପଣଙ୍କୁ ଛାଡ଼ି ଦେଇ ପାରିବି ନାହିଁ ଜେବେ ହେଲେ ।

ଦ୍ୱିତୀୟ—( ସରଳ ଉଚ୍ଚହାସ୍ୟ କରି ) ଗୋଟାଏ କିଛି ମତଲବ
ଅଛି ନିଶ୍ଚୟ—ନଇଲେ ଖାଲି ଖାଲିଟାରେ ଏତେ ଜିଦ୍
କରିବା ଲୋକ ତ ତୁମେ ନୁହଁ—

ପ୍ରଥମ—ଅଛି, ଅଛି ହେ ଭାଇନା,
କୋନ୍ତୁଲେ କି ଛାଡ଼ ଏହି ଫାଇଲର pile
ଛାଡ଼ ପୁଣି ଅଫିସର କାମ ଅରଜେଣ୍ଟ
ଦୈନିକ ନମାଇ ଛାଡ଼ କରନ୍ତି request !

ଦ୍ୱିତୀୟ—ଆରେ କହ ହେ କହ, ଏତେ ମୁଖବନ୍ଧ କାହିଁ ?

ପ୍ରଥମ—ନୁହେଁ ମୁଖବନ୍ଧ—ବନ୍ଧ ଯାଇଁ ଅଛି ଭାଙ୍ଗି
ଶତ ମୁଖି ଯାଉଛି ମୁକୁଳି,
ଛୁଟିଛି ପ୍ରବାହ ତର ହୋଇ ଭସ ଭସ
କହୁ କହୁ ଛକି ଯାହା ଥିଲା ହୃଦ ମଧ୍ୟେ !

ଦ୍ୱିତୀୟ—ବାଃ, ଏ ତ ଭଲା କବିତା ହଉଁ ହଉଁ କବିତା
Journalist poet ପାଲଟିଗଲ କେବେଠୁଁ ହେ ?

ପ୍ରଥମ—କବି କି ଗଛରେ ଫଳେ ?
ଭାବର ଜମାଟ ବାନ୍ଧ, ବନ୍ଧ ଗଲେ ଭାଙ୍ଗି ଛନ୍ଦୋମୟୀ
ବାଣୀ ଆପେ ଉଠେ ଗଳାଗଳି ? ସେହି ତ କବିତା
ନାହିଁ ଆଉ କିସ ?

ଦ୍ୱିତୀୟ—ଠିକ୍, ଠିକ୍—ଯଥାର୍ଥ । ତେବେ ଚାଲୁ—

ପ୍ରଥମ—ନାଇଁ ଭାଇନା, ମୁଁ ଯାହା କହିବି ତା କବିତା ନୁହେଁ—
କବିତା କଳ୍ପନା ବା କାବ୍ୟ ସ୍ୱପ୍ନ ନୁହେ—ସତ୍ୟ, ସତ୍ୟ
ନିଛକ, ନିରାଟ ନିରମିଷ ସତ୍ୟ—ଯେଉଁ ସତ୍ୟର ସନ୍ଧାନ
ଗାନ୍ଧିଜୀ ଆଜୀବନ କରୁଛନ୍ତି; ମାତ୍ର ପାଇ ନାହାନ୍ତି ।
ଦେଖନ୍ତୁ ଭାଇନା;—ସ୍ମରନ୍ତୁ ପୂର୍ବକଥା,
ପୂର୍ବ ଇତିହାସ, ଅମର ଅକ୍ଷର ।
ବକୁଳ ବନର ସେହି ଗୌରବର ଦିନ !
କି କାତରେ କାନ୍ଦି ଅଛି କୁରବା ପରାଣେ—
ଦୁର୍ଗତି ଦେଖିଣ ଆଜି ବୀର ପୁତ୍ରଙ୍କର ।
ସତ୍ୟବାଦୀ, ସତ୍ୟବାଦୀ—ମିଥ୍ୟା ଗଳ୍ପ ହୋଇ
ସବୁ ଯାଇ ପଶିଗଲା ଅସତ୍ୟ ଗରଭେ;
ଯାଇଛନ୍ତି ଗୋପବନ୍ଧୁ,
ମାତ୍ର ଦାଶ-ଆପଣଙ୍କ ଅମ୍ବା ସ୍ୱର୍ଗବାସୀ
କି କହିଲେ କୁନ୍ଥାଉଛି ଦେଖି ଅମ୍ଭ ଗତି !
ଏକତା, ଏକତା !!—ଏକତା ଅଟଇ ବଳ,

ଯାହା ଶୁଦ୍ଧ ଅମ୍ଭେ ଗଲ୍ପ ହୋଇ ଘାସ-କଣ୍ଟା;
ଥିଲେ ତାହା, ଆଜ କ ହେ ସମା ଶାମା ଅଦ
ମାଡ଼ ବସି ଥାନ୍ତେ ଏହୁ ମନ୍ତ୍ରିତ୍ୱର ଗାଦ !
ଉତ୍କଳର ଭାଗ୍ୟାକାଶ କରିବାକୁ rule
ସତ୍ୟବାଦୀ ସମରଥୀ ଏକା ଶିଲ୍‌କୁଲ,
ଯାଇଛନ୍ତି ଗୋପବନ୍ଧୁ
ତାଙ୍କ ଅନ୍ତେ ତୁମ୍ଭେ ଏକା ଅଛ ବଡ଼ ଦାବେଶ,
ଦାଢ଼ି, ଦାଢ଼ି ଅଧିକାରୀ ଭଆରସ ସୂତ୍ରେ;
ଦାଣ + ମିଶ୍ର ମିଳନର କାବେରୀ ସ୍ୱରୂପ ।
ତମକୁ ନ ବାଧେ କିଛି, ବସ ନିକାଞ୍ଚନେ
ଅରଣ୍ୟ ଓ ହରିଜନେ କହାଇଲ କାଳ,
ଅଗ୍ନି ଉପାଧି ଆଉ ତ୍ରିଷ ନାମ ବହି ।

ଦ୍ୱିତୀୟ—ହଇହେ ନାଥ,ଜାଣିଲ—ତମେ ତ ଖାଲି Journalistic ଭାଷାରେ ବକିଗଲ । ତମର diplomatic ବାକ୍ୟ ଜାଲ ଭିତରେ ଏ ମାନ୍ଧବଅ ମଗଜ ପଶି ପାରୁନାହିଁ ଯେ, ମନ କଥାଟା ଖୋଲି କହୁନା ।

ପ୍ରଥମ—Gandhian ସାରଙ୍ଗର ନାହିଁ ସ୍ଥାନ ଏବେ
Diplomacy ଯୁଗ ଏହା,
politics ଖେଳ;
ସତ୍ୟବାଦୀ ସାମ୍ରାଜ୍ୟର ଦୁଇ ମହାବାହୁ,
Goodever ଓ ବାଲକଣ୍ଠ;
ଏ ଦୁହିଁଙ୍କ ମିଳନରେ ସୃଜିବ ଅମୃତ ।
'ସଂଘ ଶକ୍ତି ଦୁର୍ଲ୍ଲଭ କଳଯେ,
ସଂଘେ ଶକ୍ତି କଳୌ,
କମିବେ ଉତ୍କଳ ଧର୍ବ, ମହାଦାମୀ Group
କ୍ଷେତ୍ରେ ଏବେ କର୍ଣ୍ଣଧାର ରୂପେ
ନିଚକ ହୋଇ ଆଗଭର
ଘଟାଅ ମିଳନ ।
ଦାଢ଼ି + ନିଶ ଏହି ଦୁଇ ମହା ମିଳନର
ଦେଖିବ ସୁଫଳ ଅଶୁ—ଚେତନା ଅତୀତ,
ଉଠିଯିବ ସତ୍ୟବାଦୀ ଗୌରବ କେତନ,

ଦ୍ୱିତୀୟ—ଓ ହୋ—ଏଇ କଥା ! ଏତେବେଳ ଯାଏ କହୁ ନ ଥିଲ କାହିଁ ! ହଁ, ହଁ ଠିକ୍ କହିଚ । ହେଁ—କୁଅଡ଼େ ଗଲ କହେ ଭୃଙ୍ଗସିଙ୍ଘ !

ପ୍ରଥମ—ଭୃଙ୍ଗସିଙ୍ଘ ! ତାଙ୍କୁ କାହିଁ !

ବଡ଼ ଦୁର୍ବଳ ସେ, ଅତି ଗୋବେଚାରା;
ଏଥିରେ ପୁଣ ଭଇ ତାଙ୍କୁ······

ଦ୍ୱିତୀୟ—ଅଚ୍ଛା, ଅଚ୍ଛା, ବୁଝିଲି । ତେବେ ତମେ ବ ଗୁଲ ।

ପ୍ରଥମ—ନାହିଁ ଆପଣ ଏକା ଯାଇ Sound କରନ୍ତୁ ଆଗ ! ତାପରେ—

ଦ୍ୱିତୀୟ—ବେଶ୍ ବେଶ୍—ଗୁଲଲି—
ଗୁ ପାଣି ଟୋପାଏ ଅଣାଅ । ଟିକିଏ ତାଜା ହେଇଁ ଯାଏଁ ।
··· ଅଚ୍ଛା ଆସ, ଗୁ ଯେଉଁଠି ମିଳିବ ଯେ ।
ଆଉ କଉଠିକି ଯିବା କହିଲ—

ପ୍ରଥମ—ସେ ଆପଣଙ୍କ Choice—

ଦ୍ୱିତୀୟ—ତା ବେଶ୍—ତେବେ ଆସେଁ—

(ଦେଉଡ଼ ବେଗ କାଖରେ ଝୁଲାଇ ପ୍ରସ୍ଥାନ କଲେ ଓ ପ୍ରଥମ ବ୍ୟକ୍ତି ତାଙ୍କୁ ବାଟେଇ ଦବାକୁ ବାହାରି ଗଲେ)

## ତୃତୀୟ ଦୃଶ୍ୟ

(ବାଲକଣ୍ଠଙ୍କ ବସାଘର । ତକ୍ତପୋଷ ଖଟିଆ ଉପରେ ସେ ଶୋଇ ବହି ପଢ଼ୁଛନ୍ତି । ପାଖରେ ଗଦା ଗଦା କାଗଜ ପତ୍ର ଖେଳାଇ ହୋଇ ପଡ଼ିଛି । ମୁଣ୍ଡ ପାଖରେ ବଡ଼ ପାନ ବଟୁଆ । ବଟୁଆର ଶବଳିତ ରଙ୍ଗ ସଦ୍ଗତ ମାଣ୍ଡିର ରଙ୍ଗ ଖାପ ଖାଇ ଯାଉଛି ।)

(ଜଣେ ଯୁବକ ପ୍ରବିଷ୍ଟ ହେଲେ)

ଯୁବକ—ଟଙ୍କା କିଛି ଦରକାର ଅଜ୍ଞା । 'ଗଡଜାତ' ଅଧାଅଧି ହେଇଁ ରହିଛି । କାଗଜ ଅଭାବରୁ······

ବାଲକଣ୍ଠ—ଏତେଇଁ ଗୋଡ଼ ଦେଲଣି ଖାଲି ଟଙ୍କା-ଟଙ୍କା । ମୁଁ କଣ ଟଙ୍କାର ଗଛ ଲଗେଇଛି !

ଯୁବକ—ଆପଣ ତ ଗୁଲିଗଲେ ସଭାକୁ —

ବାଲ—ଯିବ ନାଇଁ କଣ ତମକୁ ଜଗି ବସିଥିବ ? ନ ଗଲେ ତମେ ଖାଇବ କଣ ?

ଯୁବକ—ସେଇତ ତ କହୁଥିଲି । ଏ ଗୁଡ଼ାକରେ କଣ ଲଭ ଅଛି ? ଖାଲି ମାନ ଲଗି ସମ୍ଭାଳିବା କଥା ସିନା ।

ବାଲ—ହିଁ-ମାନ୍-ମାନ୍—prestige, credit—ସେଇଟାଇଁ ଆଗ ଲୋଡ଼ା—ସେଇଟା ଥିଲେ ସବୁ ଅଛି—ସେଇଟା ଗଲେ ସବୁ ଗଲା । It begets money.

ଯୁବକ—ପୁଣି ଚଳିବ କେମିତି ? ଆପଣଙ୍କ fad ବଜାୟ ରଖିବା ପାଇଁ ତ ପୁଣି ······

ବାଳ ହଁ, ହଁ, ମୁଁ ସବୁ ବୁଝିଛି ଯେ । ମୋର ଦଶହଜାର ଟଙ୍କାର ଛାପାଖାନା ଦେଉଥା ଚଳୁଚ - ତାର କଣ ଲଭ ନାହିଁ ? ସେଇ ଲଭରୁ ତ ଚଳବ ।

ଯୁବକ—ମୂଳ ଟଙ୍କାଟା ତ ଆପଣ କରୁଛି ନିଜ ହାତରୁ ······

ବାଳ--କଣ ! ମୁଁ ନିଜେ ଦେଇ ନାହିଁ—ମାନେ, ତୁମେ କହୁଚ ମୁଁ ପକେଟରୁ ଦେଇ ନାହିଁ । ମୁଁ ଦେଇ ନାଇଁତ କଣ ଗୌରୀସେନ ଦେଇଁଚ ! ମୋ କାରଧାନାରୁ ମୁଁ ଅଣିଚ ନା । Name, Fame, ରଖିଥିଲ ବୋଲି ଆଜ Game ହାତ ମାରିଲ ନା ! ଗଲ ତୁମେ ଆଣିବ ଅଧଲାଏ, କାଏ ହବ !

ଯୁବକ – ଯଥା କଥା କରି ଦୁଇ ମାସେ ତିନିମାସେ ଥରେ ଲେଖାଏଁ ବାହାର କରି ଗବଭ୍ରତଟା ଚଳିପାରେ—ମାନେ ସାପ୍ତାହିକଟା —ତାହା Loss—

ବାଳ--କି କହିଲ ? Loss—Loss !
ହଜାର ହଜାର ଟଙ୍କା ପକାଇଲି ତହିଁ,
ଯାହାଲାଗି ଗୁଣଆଡ଼େ ରଟେ ବଦନାମ !
ଶତ୍ରୁଙ୍କର ହୋଇଛି target,
ହାସ୍ୟ, ଅପବାଦ, ଥଟ୍ଟା ଅଛି ଶିରେ ବହି—
ଆଜ ତୁମ୍ଭେ କହୁଁଅଛ, ହେଉଅଛି Loss !
ଖାଇଛି କ, ନେଇଛି କି ପଇସାଏ ମୁହିଁ,
ସବୁ ଦେଇ ତୁମ୍ଭ ନାମ, ନିର୍ଭର ବିଶ୍ୱାସେ
ସାଗର ସୈକତେ ମୁହିଁ ଖୋଜେ Pebble,
ଯାଉ, ଯାଉ ସବୁ ନିଆଁ ଲଗି,
ବୁଲିବି ମୁଁ ଦେଶେ ଦେଶେ ଭିଖ ମାଗି ମାଗି,
ଅବା ଆପେ ହୋଇଁ ବୁଲି ବାଘ
ଉପାଡ଼ି ପକାଇ ଦାଢ଼ି, ଛିଣ୍ଡାଇ ପଇତା,
ଅକାତରେ ଛାଡ଼ି ଘର ବାଡ଼ି,
ଖଣ୍ଡ ଫୋପାଡ଼
ହାଡ଼ଘରେ ପଶିଯିବି ଯାଇ ।

( କଡ଼ା ବକ୍ତୃତା ଶୁଣି ଯୁବକ କୋଧରେ ଆରକ୍ତ ହୋଇ ଉଠେ । ବାଳକଣ୍ଠ ତାହା ଲକ୍ଷ୍ୟ କରି ହଠାତ୍ ଥଣ୍ଡା ପଡ଼ି ସ୍ୱର ବଦଳାଇ ହସିଲେ )

ବାଳ- -ଆହା—ଗଲ କି ହେ ରାଗି !—
ଅଚ୍ଛା, ଦୋଷ ନେଲି ମାଗି,—
କରିଦିଅ ବନ୍ଦ ସେଇ ସାପ୍ତାହିକଟାକୁ,
ନାହିଁ ତାର use ଆଉ—
ତ୍ୟାଗ, ତ୍ୟାଗ, ଅନାଶକ୍ତ ତ୍ୟାଗ,
ଏ ବ୍ରତରେ ଅଭ୍ୟସ୍ତ ମୁଁ ସଦା—
ସହିଲଣି ଝଞ୍ଝାଘାତ ଯେଣୁ,
ବେଦୀ ମୁହିଁ ଦେଲେ ପୋଡ଼ି ଯନ୍ତ ନାହିଁ କରୁ ।
Status ଗୋଟାଏ ମୋର ଲୋଡ଼ା ମୋହ ପାଇଁ,
ଗବଭ୍ରତେ ତାହା ହୋଇଛ ଯଥେଷ୍ଟ ।
ସେଇଟାକୁ ରଖିଥିବ ଲାଗି,
ମାଗି, ଯାଚି ଗ୍ରେଟ୍‌ କରି, କରି ବନ୍ଧୁଆର
ଯେନ କେନ ପ୍ରକାରେଣ ରଖିବ ଜୀଆଁଇ ।
ତୁମେ ଖାଅ, ତୁମେ ଚଳ, ମାରୁଥା ମଜଇ,
ନାଆଁଟା ମୋହର ଖାଲି ରହିଥାଉ ବସି ।
ବୁଝିଲଟି ଏବେ—?

ଯୁବକ—ବୁଝିଲେ କି ହେବ, ତୁମ୍ଭେ ତେଉ ·····

ବାଳ—ବୁଝିଲଟି ମଣି, ଅମେ ହୋଇଲୁଣି ବୃଦ୍ଧ
ବୃଦ୍ଧଙ୍କ କଥାକୁ କେବେ ନ କରିବ ଛଳ ।
ତା ପରେ, ସ୍ୱଭାବ ମୋର ଜାଣ ଚିରକାଳ
ଠିକ୍ଏ ହଠାତ୍-ରାଗୀ, ପିଲାଟି ମନରୁ ।
ସେଥିପାଇଁ ଲୋକେ ମୋତେ ବୋଲନ୍ତି ଦୁର୍ବାସା,
ଦାଶେ ଆପଣେ ବ ବୃଦ୍ଧା ଜାଣିଥିଲେ ନିଜେ,
କରିଛନ୍ତି କେତେ ସାବଧାନ,
ତେଉ ପଦ୍‌ପତ୍ନୀ ଏଠା ଖ୍ୟାଜନୀତ ଯେବେ ।
କିନ୍ତୁ, କି କହିବ କହ, ସ୍ୱଭାବ, ସଂସ୍କାର ।

[ ଦୁଇ ବ୍ୟକ୍ତି ପ୍ରବେଶ କଲେ । ଜଣେ ଦାଢ଼ିବନ୍ତ, ଖଦଡ଼-ଧାରୀ, ବେଦାନ୍ତୀ, ମଳିନ ବେଶ, ଋଷିତୁଲ୍ୟ ଓ ଅନ୍ୟ ଜଣକ ଚହଟ ଚକ୍‌କଣ, ନିଖୁନ୍ତ, ସୁଗୌର ପ୍ରୌଢ଼ । ତାଙ୍କୁ ଦେଖି ବାଳକଣ୍ଠ ଧଡ଼ପଡ଼ କରି ଉଠି ବସିଲେ ]

ଆଗୃହୀ—କି କରୁଛ କି ହେ କଣ୍ଠ ।

ବାଳ—ଆସନ୍ତୁ ଭାଇନା, ବଡ଼ ଅସମୟେ !

ଆଗୃହୀ—ସମୟାସମୟ ଜ୍ଞାନ କାହିଁ ଛି ଅମ୍ଭର,
ବାରବୁଲା ଲୋକ,
ନୋହୁ ମଠର ଚଢ଼ୁଆ
ତୁମ୍ଭ ଭଳି ନୋହୁଁ କୁଳପିଠା
ଲାଟ ବେଲାଟଙ୍କ ସହ କର-ମର୍ଦ୍ଦନିଆ ।

(ବାଳକଣ୍ଠଙ୍କର ନଜର ପଡ଼ିଗଲା Goodeverଙ୍କ ଉପରେ । ସେ ଅଡମଡ ହୋଇ ଉଠି ବସିଲେ ଓ ନିର୍ବାକ୍ ଭାବରେ ଦାଢ଼ି ଝୁଙ୍କିବାକୁ ଲାଗିଲେ )

ଅଗ୍ନିଦେବ—( ନିଜେ ଖଟ ଉପରେ ବସି ପଡ଼ି) ଆସ Goodever
ବସି ଯାଅ ।
କାଳି—(ହସିକି) ହଁ, ବସ ······
ଅଗ୍ନିଦେବ—ଚାଲିବ ହେଉଛ କଣ !
ଉଜ୍ଜ୍ୱଳ ନେତୃତ୍ୱାକାଶେ ତୁମ୍ଭେ ଦୁଇଜଣ
ହୋଇ ଚନ୍ଦ୍ର, ସୂର୍ଯ୍ୟ,
ରହିଗଲ ରାହୁଗ୍ରସ୍ତ ହୋଇ ।
ବାମସେନା ମଧ୍ୟେ ତୁମ୍ଭେ ଦୁଇ ମହାପ୍ରଭୁ,
ହନୁମାନ ଜାମ୍ବବାନ ସରି;
ତୁମ୍ଭେ ରହିଗଲ ଲୁଚି—ରାମା, ଶାମା, ଭୀମା,
ଲୁଟି ନେଲେ ନାମ !
ବଡ଼ ଦୁଃଖ ବଡ଼ ଦୁଃଖ—ଓହୋ ବଡ଼ ଦୁଃଖ,
ଗଲକି ପାରୋଶ ଦାଦ ଆପଣଙ୍କ hope,
ସତ୍ୟବାଦୀ କାରଖାନା କରିଦେଲ ଲୋପ !
ଆଜି ଯଦ ଦୁହେଁ ତୁମେ ଉଠନ୍ତ ହୁଙ୍କାରି
ସମସ୍ୱରେ ଛାଡ଼ ହମ୍ୱାରଡ଼ ······
କାଳି—ଥାଉ, ଥାଉ, ହେ ଭାଇନା, ଦଅ ନାହିଁ ଲଜ୍ଜା,
ମାତ୍ର Goodeverଙ୍କ ଗ୍ରଣ ଅଟେ ଅନୁକୋଟି,
କେତେ ମୁଁ କହିବ ଗୋଟି ଗୋଟି ?
ଭାବିଥିଲେ ଶପି ମୋର ତୋଟି
ବାକଣୀତ ଖେସ୍ତୁ ମୋତେ କରିବେ ନିକାଶ —
Good—ଟେସ ବ କରିଛନ୍ତି କମ ?
କହିବ ଯଦ ତ···
ଅଗ୍ନିଦେବ—ଛାଡ଼ ଛାଡ଼—କଳିର ନୁହେ ଏ ବେଳ,
ଦୁହେଁ ମିଳି ଉଦ୍ଭାଅ ମଧୀ ବନ୍ଧୁତେଜ,
ପୋଡ଼ି ଭସ୍ମ କରି ଦଅ ଛାଡ ମହାତାପ,
ପଶ୍ଚାତାପ ତଥା ।
ସବୁ forgive—forget—
(ଦୁହିଁଙ୍କ ହାତ ମିଳାଇ ଦେଲେ । ତହୁଁ ଦୁହେଁ କୁଣ୍ଢାକୁଣ୍ଢି ହେଲେ ଓ ଏହି ମଧୁର ମିଳନରେ ଏକ ଅଭିନବ ରୌଦ୍ର ରଶ୍ମିର ବିକାଶ ହୋଇଗଲ
( ଗୀତ—ମୋହନ ତୋଷେଇଁ ସ୍ୱରରେ )
ଗୃହାଁରେ ଉଭଅ ପୁଅ ଗୃହାଁ ଟେକି ବେକ
କଳା ଗୋରା ଦୁଇ ତନୁ ହୋଇଗଲ ଏକ ।
ଏକକୁ ଅନେକ ଚୁମ୍ବ କର ଛେକ ଛେକ
କେ ଟେକିଲି ଦାଢ଼ି, କଏ ନିଶ କରେ ଟେକ ।
ପ୍ରସରିଲା ମକରନ୍ଦ ହୋଇ ଭକ ଭକ
ସ୍ୱେଦ କମ୍ପ ପୁଲକାଶ୍ରୁ ବହେ ସକ ସକ ।
ଗାଢ଼େ ଭଡ଼ ହୋଇ ନ ରହିଲା ତିଳେ ଫାଙ୍କ
'ପେଚ୍ଚୋ' ଦହି କଡ଼ ସଙ୍ଗେ ଛୁଙ୍କ ଭେରଣ୍ଡା ଶାକ ।
ଦୁଇ ଅଙ୍ଗ ଲଗା ଲଗି ଯଥା ଛଅ ଜୋକ
ଥେଇ ଥେଇ ନାଚଯାନ୍ତି ଆଖ ପାଖ ଲୋକ ।

ପଞ୍ଚ ପତନ

## ଚତୁର୍ଥ ଦୃଶ୍ୟ

[ବାବାଜୀ ବାଲ୍ମୀକୀ ଦାସଙ୍କ ମଠ । ବାବାଜୀ ମହାଶୟ ଖାଇବା ହାତରେ ମାଳଟିଏ ଗଡ଼ଉଛନ୍ତି ଓ ଡେବରି ହାତରେ ଫାଇଲ ଧରି ତା ଉପରେ ଆଖି ବୁଲାଉଛନ୍ତି । ସବୁ ଇନ୍ଦ୍ରିୟ ଏକାଳୀନ ବ୍ୟବହାର କରିବାର ଶକ୍ତି ତାଙ୍କର ସାଧନା ଦ୍ୱାରା ହାସଲ ହୋଇଥିବାର ସେ Self conscious ବୋଲି ତାଙ୍କର ଧୀର, ଗମ୍ଭୀର, ପ୍ରଶାନ୍ତ ଚେହେରାରୁ ଫୁଟି ପଡ଼ୁଛି । ତାଙ୍କର ବିଶ୍ୱାସ ମନୁଷ୍ୟ ଚେଷ୍ଟାକଲେ ଐହିକ ( material) ଓ ପାରତ୍ରିକ (spiritual) ଉଭୟ କର୍ମ ମଧ୍ୟ ଭାବରେ ସାଫଲ୍ୟ ଲାଭ କରିପାରେ ଏବଂ ନିଜର ଆତ୍ମା (self) କୁ ଚୈତନ୍ୟ ମହାପ୍ରଭୁଙ୍କ ପରି ଦ୍ୱିଧା ବିଭକ୍ତ (Double Personality) କରିପାରେ ]

(ବାହାରୁ ବହୁକଣ୍ଠରେ ଡାକ ଶୁଭିଲା) "ମହାପ୍ରଭୁ, ମହାପ୍ରଭୁ, ଦୁହାର ଶୁଣିବାକୁ ଆଜ୍ଞା ହେଉ"

(ବାବାଜୀ ଧ୍ୟାନମଗ୍ନ ହୋଇ ପାର୍ଶ୍ୱସ୍ଥ କରାଣୀକୁ ପୁଚ୍ଛା କଲେ)—କିଏ ସେ ?

କରାଣୀ—ଆଜ୍ଞା, ଏଇ କମେହେନ୍ଦ୍ରର ମହାରାଣୀ ଗୁଡ଼ାକ ।

ବାବାଜୀ—ହେଇଟା କଣ ? ଗଲ ବୁଝି ଆସିଲ—ଆଚ୍ଛା ମୁଁ ଯାଉଟି
ନିଜେ······ନାହିଁ — ତାଙ୍କୁ ଏଇଟିକି ଡାକିଲ ।

କରାଣୀ—ଅଜ୍ଞା ଘର ଭିତରକୁ ମେହେନ୍ଦ୍ରର··ଠାକୁର ଅଛନ୍ତି···

ବାବାଜୀ—ଆରେ, ଅଚ୍ଛା ଲୋକ ତ !

(ବହୁଦୂର ମିଶା କରୁଣାର ମଧୁର ହସଟିଏ ହସି ମୁଣ୍ଡ ଝୁଙ୍କାଇଲେ ।)

ଜାଣେନା,—ନିପଟ ମୂର୍ଖ, ଓଲ, ବୁଡ଼ବକ୍,
କେମନ୍ତେ ବା ବୁଝାଇବି ବଡ଼ ବଡ଼ ତତ୍ତ୍ୱ
କରିଛ ମେଟ୍ରିକ୍ ପାସ୍ — ନୁହେଁ ?
ଅଚ୍ଛା, ଅଚ୍ଛା,— ଶୁଣ ତେବେ ।

କହୁଛି ସରଳେ—
ଅସ୍ପୃଶ୍ୟତା ମହାପାପ,
ପଢ଼ିଥିବ ଖବର କାଗଜେ
ଅବା ଶୁଣିଥିବ ଆମ ସଭା ସମିତିରେ ।
ସାମ୍ୟଭାବ ମହାଭାବ, ରାଧା ଭାବ ତୁଲ୍ୟ
ମୂଲ୍ୟ ତାର କେ ପାରିବ କହି ।
ପତିତ ପାବନ ଆଜ ପାତକୀ ଉଦ୍ଧାର
ଯୁଗେ ଯୁଗେ ଏହି ଲୀଳା କରେ ନିତ୍ୟାନନ୍ଦ
ସେଇ ଲୀଳା ଅନୁସରି ଗାନ୍ଧି ମହାରାଜ
କାଢ଼ିଛନ୍ତି ହରିଜନ ସେବା ।
ହରିଜନ, ହରିଜନ, ଆହା ହରିଜନ ।
କି ମଧୁର ନାମ—(ହରେକିଷ୍ଟସ୍ୱର)
ହିଏ ଚତୁର୍ବର୍ଗ,—ଧର୍ମ, ଅର୍ଥ, ମୋକ୍ଷ, କାମ ।
'ହରି' ଶବ୍ଦ ଦେଖିଲେ ମୁଁ ହୁଅଇ ପାଗଳ,
କଣ୍ଠ ହୁଏ ଗଲଗଲ, ଚକ୍ଷୁ ଢଳଢଳ,
ପେଟ କଳ କଳ, ପୁଣି ନାକ ଭଳଭଳ
ଜଳ ଜଳ ଦିଶଇ ଦୁନିଆଁ ।
ପବିତ୍ର ଏ ହରିଜନ, ନ କରିବ ଘୃଣା,
ଅତି ପ୍ରିୟ ଶବ୍ଦ ମୋର, 'ହରେକୃଷ୍ଣ' ସ୍ୱର,
ଗାଇବାରେ ପ୍ରାଣ ଭରି, ଧରି କରତାଳ,
ନାଚ ନାଚ—ପ୍ରେମ୍—ପ୍ରେମ୍—
ଆହା ମରି ମରି !

(ଚକ୍ଷୁ ମୁଦ୍ରିତ କରି ରହିଗଲେ ! ସ୍ୱେଦ, କମ୍ପ, ପୁଲକାଶ୍ରୁ ଦର ଦର ଧାରରେ ବିଗଳିତ ହେବାକୁ ଲାଗିଲା । ଇତିମଧ୍ୟରେ କରଣୀ ଯାଇ ମେହେନ୍ତରମାନଙ୍କୁ କହିବାରୁ ସେମାନେ କଳରବ ସହ ଉପସ୍ଥିତ ହେଲେ । ସେହି ଶବ୍ଦରେ ବାବାଜୀଙ୍କର ଆବେଗ ଭଗ୍ନ ହେଲା । ସେ ପୁଣି ଗଦଗଦ ହୋଇ ଭାଷିଲେ )

ବାବାଜୀ—କିଏ ରେ !—ଓଃ—
ଆସ—ଆସ ବନ୍ଧୁ ବନ୍ଧୁଗଣ,
ଫେଡ଼ି କହ ହୃଦୟ ବାରତା,
କେଉଁ କଥା ପାଇଁ ଆଜି ଆସିଛ ମୋ ଠାବେ ।
କି କରିବି କହ—
ତୁମରି ସେବାରେ ଦେଇ ଏ ଛାର ଜୀବନ,
ସାର୍ଥକ କରିବି ହେଲେ ଜନମ ସାଧନ ।
ତୁମ୍ଭର ଯେତେକ ଦୁଃଖ ନେବି ମୁଣ୍ଡ ପାତି,
ତୁମ ପାଁ ଟେକିବ ମୁଁ ହାତୀ
ତୁମ୍ଭ ବୋଝ ଟେକି ଶିରେ ହେବ ଅମୃଖାତା ।

କରଣୀ—ଅଜ୍ଞା ମେହେନ୍ତର, ମେହେନ୍ତରାଣୀଙ୍କ ବୋଝ ଅପଣ ନିଜେ ଯଦି ମୁଣ୍ଡରେ ବୋହିବେ, ତେବେ ମଇଲା ଗାଡ଼ି ଅଛି କାହିଁକି !

ବାବାଜୀ—ଦୂର୍ ଓଲୁ, ସତରେ କଣ ପାଇଖାନାର ମଇଲା ବୋଝ ଟେକିବାକୁ ମୁଁ କହିଲି । ଭାବାବେଶରେ ସେଇପରି କୁହାଯାଏନା । ବକ୍ତୃତାର Flow ଏଟା, ବୁଝିଲ । ଏ ସବୁ ଧର୍ତ୍ତବ୍ୟ ନୁହେଁ ।

କରଣୀ—ଆରେ ତୁମ ଅଟେଣ୍ଠା ଜଣ ହଜୁରଙ୍କୁ ଜଣା ।

(ଏହାଶୁଣି ସମସ୍ତେ ସମସ୍ୱରରେ ଯଥାଶକ୍ତି ବୋବାଳି ଉଠିଲେ । ପୁ—କଣ୍ଠର bass ସହ ବାମ କଣ୍ଠର treble ମିଶି ଏକ ଅପୂର୍ବ Chorus ର ସୃଷ୍ଟି ହେଲା ।)

କରଣୀ—ଆରେ ଜଣଜଣ କରି କୁହ । କଣ କହୁଛ କିଛି ବୁଝି ହଉନାହିଁ ଯେ ।

ବାବାଜୀ—ଆହା—କହନ୍ତୁ କହନ୍ତୁ—ସେଥି
ହଅନାହିଁ ବାଧା; ସ୍ୱାଭାବିକ ଭାବେ ।
Natural; spontaneous
ଭାବାବେଗ ଏହା,
ଆକୁଳ ଚିତ୍ତର ଏହା ଉଦ୍‌ବେଳ ବେଦନା ।
ଉଦଣ୍ଡ କୀର୍ତ୍ତନ ଯଥା ଆନନ୍ଦଦାୟକ ।

ଜଣେ ମେହେନ୍ତରାଣୀ—ମହାପ୍ରଭୁ, ଆମର ମୁହାର ଏତକ ଯେ କଟକ ସହରରେ ଦସ୍ତ କବାଜ କରେ, ସେଥିପାଇଁ ଏଠା ପାଇଖାନାରେ ମାଲ ଜମେ ଅଳପ । ମାଇଜି ଏବେ ପାଠେଣା ଅଢ଼ରୁ ହେଉତ ବଡ଼ ବଡ଼ ବାବୁ—ଭଦ୍ର ଘେଲଛିଆ ଲୋକ ଆସିବା ଦିନରୁ ଗାମଲ ସବୁ ଉଛୁଳି ଯାଉଚି । ଅମେ ଏ କାମକୁ ପାରିବାର ନାହୁଁ । ଆମର ମହିନା ବଢ଼ା ହେଉ ବା ଅଧିକା ନୌକର ରଖା ହେଉ ।

ବାବାଜୀ—ହୁଁ—… ଅଚ୍ଛା… କିନ୍ତୁ… ତୁମେ ଯାହା କହୁଲ ଏତ… ମାନିକ ପଷ୍ଟମରୁ ଛେଲଛିଆ ଅସିବା ସଙ୍ଗେ ସଙ୍ଗେ ଦର୍ଶଣରୁ ଗୁଚ୍ଛ ପିଆ ତ ଜଣା ଅସି ନାହାନ୍ତି । ଏଣୁ ଉଧାରକୁ ବଦଳ ହୁଡ଼ିଯାଇ ଗାୟମୋଚ—ସମାନ । ଆଉ କଣ ?

ଜଣେ ମେହେନ୍ତର—ହଜୁର ଆଉ ଗୋଟାଏ ଆପତ୍ତି ଅଛି । ଏଠେ ବେଜାୟ ମଶା ହେଉ ବହୁତ ଲୋକଙ୍କୁ ମେଲେରିଆ, ପିଲେହି ହୁଏ । ସେମାନେ ହସ୍ପାରେ ଥରେ ଅଧେ

ପାଇଖାନା ଯାଆନ୍ତି । ମାତ୍ରକ ମଣା ବଇଁଶ ହଜୁର ନିପାତ କଲ ହଜୁର୍ ମେଲେଃ ଅ ଛାଡ଼ି ଯିବା ସାଙ୍ଗେ ସାଙ୍ଗେ

ବାବାଜୀ—ଅରେ ଥାଉ, ଥାଉ—ବୁଝିଲି । ଅଚ୍ଛା, ଏ ବିଷୟଟା ଡାକ୍ତର (Health Officer) ଙ୍କୁ ତଦନ୍ତକୁ ଦିଆଗଲ । ରିପୋର୍ଟ ଆସିଲେ ବିଚାର କରାଯିବ ।

କିରାଣୀ—ହେଲଥ ଅଫିସର ସାହେବ ହୋଇ ଆସି ଗଲେଣି ।

(ଏହି ସମୟରେ ହେଲ୍‌ଥ ଅଫିସର ଡକ୍ଟର ଚ୍ଛୋପଡ଼ା ପ୍ରବେଶ କଲେ ।)

ଡା: ଚ୍ଛୋପଡ଼—ଗୁଡ୍ ମର୍ଣ୍ଣିଂ ସାର—

ବାବାଜୀ—ନମସ୍କାର, ବସନ୍ତୁ ଡାକ୍ତର ବାବୁ—ଆପଣଙ୍କୁ ବଡ଼ ଲୋଡ଼ାଥିଲି । କଥା ପଡ଼ୁ ପଡ଼ୁ ପହଞ୍ଚିଗଲେ । Good sent—

ଡା:—କଣ କହନ୍ତୁ Sir—

ବାବାଜୀ—ଏଇ ଯେ—ବୁଝିଲି—ଏଇ ଆମ ମେହେନ୍ତରମାନେ—ଅର୍ଥାତ୍, ହରିଜନ, ଜାଣିଲ—ଏମାନେ ତୁମର ଏ ସହରର ମାନବ ଅଧୋଅଙ୍ଗ ନିର୍ଗତ ଖାଦ୍ୟାବଶେଷର ପରିମାଣ ବୃଦ୍ଧି ହେବା ହେତୁ ଆପତ୍ତି କରୁଛନ୍ତି । କଣ advice ଦେବ ?

ଡା:—କଥାଟା ମିଛ ନୁହେଁ । ମୋର ବି ସେଇଟା ଗୋଟିଏ ଚିନ୍ତାର କାରଣ ହୋଇ ପଡ଼ିଛି ।

ବାବାଜୀ—ଚିନ୍ତା ! ଚିନ୍ତା ! ଆଁ—କଣ କହୁଛ ? ତମେ ବି ଚିନ୍ତା କଲଣି ? ଏଇ 'ଚିନ୍ତା' କରି କରି ତ ଆମ ମନ୍ତ୍ରୀ ସବୁ ପଟର ଫାଟି ଗଲେ । ତମର ଯଦି ଶୁଭକାମରେ ମମତା ଅଛି, ମୋ କଥା ଶୁଣ—ସେ ବୁଦ୍ଧି ଛାଡ଼ି ଦିଅ ! 'ଚିନ୍ତା' କଥାଟା ଶୁଣିଲେ ମୋର ଦେହ କଣ ହୋଇଯାଏ । ବୁଝିଲ ।

ଡା:—ଅଚ୍ଛା ହିଁ—କିନ୍ତୁ ଏ ଗୋଟାଏ ସମସ୍ୟା ଯେ ! ଯାକୁ ତ ପୂରି—

ବାବାଜୀ—ଆଉ ଥାଉ, ତମକୁ ଦେଖୁଛି ଠିକ୍ ଆମ ମନ୍ତ୍ରୀ ରୋଗ ଧରିଲଣି । 'ଚିନ୍ତା' ଆଉ 'ସମସ୍ୟା'…ପୂରଣ କରୁ କରୁ ପ୍ରଧାନ ମନ୍ତ୍ରୀ ହେଲେ ନାକେଦମ୍ । ଛାଡ଼, ଛାଡ଼ ସେସବୁ ଚୋଳି ଛାଡ଼ିଦିଅ । କଣ କରାଯିବ ଦିଥା କୁହ ।

ଡାକ୍ତର—ଆପଣ ମେହେନ୍ତରଙ୍କ ଭୋଟ୍ କମେଇବାକୁ ବ୍ୟସ୍ତ ହେଉଛନ୍ତି ସତ, ମାତ୍ର ଏଣେ ଭୋଟ୍ ଜମେଇବାର ଯେ

ଅପରଆଡ଼ୁ ବିପୁଳ ଉଦ୍ୟମ ଆୟୋଜନ
ସେଥିକୁ…

ବାବାଜୀ—(ବ୍ୟସ୍ତ ହୋଇ)—କଣ, କଣ ?
କି ଆଶ୍ଚର୍ଯ୍ୟ କଥା, କହୁଅଛ ତୁମେ !
କହ ଖୋଲି କରି—
ଉଦ୍‌ବେଗ ହେଉଛି ବଡ଼ ଶୁଣି ଏ ବାରତା ।

ଡାକ୍ତର—ଶୁଣିଥିବେ ଆପଣ ନିଶ୍ଚୟ
ଯେଣୁ ସ୍ପଷ୍ଟ—ମନ୍ତ୍ରୀ ନିଜେ ଅଟନ୍ତି—

ବାବାଜୀ—ରଖି ସ୍ତର ସୂତ୍ତ ଆଉ ଗହର ଚନ୍ଦ୍ରକା
କହିପକା ଅସଲ କଥାଟା —

ଡାକ୍ତର—ଅସଲ କଥାଟା ଏହି—
କଂଗ୍ରେସ ଦଳଛଡ଼ା ମିଶି କେତେଜଣ,
ଗଢ଼ିଲେଣି ମିଶ୍ର ଦଳ ଏକ;
ବଡ଼ ଦମ୍ଭେ ଟେକିଲେଣି ବେକ,
ନାଶିବାକୁ ତୁମ୍ଭ ଦଳ ଟେକ ।

ବାବାଜୀ—ତାହା ତ ଜାଣିଛି ମୁହିଁ;
ମାତ୍ର, ତହିଁରେ କି ଯାଏ ଆସେ !

ଡାକ୍ତର—ନିହାତ ସମ୍ପର୍କ ଅଛି, ଦେଖନ୍ତୁ ଭାବିଣ,
ଯଦି ମିଶ୍ରଦଳ ଯୋଡ଼ି ଆନ ଦଳ ସହ
ମାରି ନେବେ ମେଜରିଟି କେବେ,
ମୃତ Assembly ପୁଣି ଉଠିବଟି ଜୀଇ—
ତିନି କୋଡ଼ି ମେମ୍ବର ସହିର,
ସାଙ୍ଗୋପାଙ୍ଗ, ବେଙ୍ଗ ଚୁଡ଼ା, ପଚ୍ଛପେଲା ମିଶି
ଅଗ୍ରୁମାରି ପେଟ ବିକାଳିଆ
ଶ୍ରୀଛାମୁଙ୍କ ଚରଣ ତଳିଆ,
କଥା କଅଁଳିଆ ପୁଣି ତୁଣ୍ଡ ସାଉଁଳିଆ,
ପୁଣି କେତେ ଶୀଗଙ୍ଗାଳିଆ,
କେ ଅରଦଳିଆ କେହୁ ପଦ ମର୍ଦ୍ଦଳିଆ,
ବାଉଳିଆ, ଟାଉଳିଆ, ହାଉଳିଆ ଆଦି
ଏହାଙ୍କ ଗହଳେ ଯିବ ସହରଟା ପୂରି,
ପୋଲାଉ ଖାଇଣ ସର୍ବେ ହେବେ ମଞ୍ଚ-ଚଢ଼ିରି,
ଯେଣୁ ପରୋଟା ଟଙ୍କା ଖସି ଆସମାନୁ
ଉଦର ଲାଳଟା ବୃଦ୍ଧି କରେ ସଭଙ୍କର ।
(କିଏ ଛାଡ଼େ ଗାଲମଜା ମିଳିଗଲେ ପୋଲ୍ !):
ବିଚାର କରନ୍ତୁ ଏବେ, କେଡ଼େ କା ବିପଦ,
ବହୁଗୁଣେ ବଢ଼ିଯିବ ଭୋଟ୍ ଏହାଙ୍କର ।

ଆମରି କର୍ତ୍ତବ୍ୟ ଏହା—ଏଥେଁ କି ଉପାୟ ।
ଆଗରୁଁ planning କରି ରଖିବା ଉଚିତ
ଏହୁ Emergency ହେଲେ କରିବିକି କସ ।

ବାବାଜୀ—(ସଚନ୍ତ ଭାବେ ମୁଣ୍ଡ କୁଣ୍ଡାଇଲେ)
ସମସ୍ତେ କରନ୍ତୁ ଏବେ ଗାନ୍ଧି ପାଇଖାନା,
ପ୍ରତି ବାଡ଼ ଖୋଳ ବୁଲି କରି ତଦାରଖ,
ଆମ୍ଭ ତରଫରୁ ପୁଣି ହଅପାର aid
ମଞ୍ଜୁର କରିବ ଗ୍ରାଣ୍ଟ ଏହୁ ମିଟିଙ୍ଗରେ ।

ଡାକ୍ତର—ଅତି ଧୂପ୍ରସ୍ତାବ ଏହା—କିନ୍ତୁ—

ବାବାଜୀ—କିନ୍ତୁ ଫିନ୍ତୁ ନ ଜାଣଇଁ ମୁହିଁ,
ଆଜ୍ଞା ମାତେ ହେଉ କାମ, ସେଇ ଡିସିପ୍ଲିନ୍,
ଆଉ ଦେଖ, ଅଟେଁ ଏହା emergency ବେଳ,
Force କରି ଘରେ ଘରେ ପାଇଖାନା ଖୋଲ
ଅର୍ଥ କରି ଦେବ ମଧ୍ୟ ଲୋକଙ୍କର ଏହା,
ଖମ୍ଭଆଳ୍ପ ଛଡି ଦେଲେ ମୋଡି ସେହି ଗାତେ,
Sanitary economic ହେବ ଦୁଇ ଲାଭ ।

ଡାକ୍ତର—ଅଛଇ ଏପରି ଘର ଅନେକ ସହରେ
ବାଡ଼ ବୋଲି ନାହିଁ ଯାର ବଣ୍ଟା ମାତ୍ର ଜମି;
ସେ ସ୍ଥାନେ କେମନ୍ତେ ହେବ ଗାନ୍ଧି ପାଇଖାନା ?

ବାବାଜୀ—ଆଜ୍ଞା fool ଦେଖୁଅଛୁ ତୁମେ,
ଗାନ୍ଧି ପାଇଖାନା କେବେ ହୁଏ କି ଦୂଷିତ ?
ସଦା ଶୁଚି ସର୍ବଦା ପବିତ୍ର,
ଗନ୍ଧ ହୀନ, ରନ୍ଧ୍ର ହୀନ, ମାତ୍ର,
ତେଣୁ ମଝି ଅଗଣାରେ ଅବା ଶେଷ ଘରେ
ଘର କୋଣେ ପାଶ ଯିବ କରି ।

ଡାକ୍ତର—ସମସ୍ତେ କି ବୁଝିବେ ସେ କଥା ?
ଗାନ୍ଧିଙ୍କ ମାହାତ୍ମ୍ୟ ଅବା ଜାଣିଥିବେ ସେତୁ,

ବାବାଜୀ—ଚୁପ୍ କର ! କିଏ ନ ଜାଣିଛି
ହିମାଳୟ କୁମାରିକା ଯାଏ ।
କିମ୍ପା ଛୁ ପୃଥିବୀ ଯାର ମେଁ—ମେଁ ରବେ

ଡାକ୍ତର—ମାତ୍ର ବଢ଼ିଲାଣି ଏଣେ ଉଜାଡି ଯେ ଧୁଅ
ଆମରି ଉଜଳ ଦେଶେ, ବୀର ପ୍ରସୂ ଭୂମି !
Objection petition ପଡ଼ିବ ଅନନ୍ତ,
ହେବୁଁ ଆମେ ହନ୍ତ ସନ୍ତ, ଗରିବ ବେଗୁରି,
ବଳବନ୍ତ ଯାକ ଥିବେ ଆଇନକୁ ଧରି ।

ବାବାଜୀ—ସତ କଥା ଏହା ।

ଏଥିପାଇଁ ଗଭ୍ଣ୍ମେଣ୍ଟ ସେକ୍ସନ ଲୋଡ଼ା
ଆଜ୍ଞା କୋଷାଇବା ଏକ expert କମିଟି
ବିଗୃହ କରିବେ ସେତୁ ବାଇ—ଲ ଫେମ୍ ।
[ବାହାରୁ ଡାକ ଶୁଭିଲା—ବାବାଜୀ ମହାଶୟ ଅଛନ୍ତି !]
କିଏ ଡାକୁଛି ଦେଖ ଗୋପାଳଆ !
[ଅପେକ୍ଷା ନ କରି ଦୁଇ ଗୃହଜଣ ଖଦଡ଼ଧାରୀ ଭଦ୍ରବ୍ୟକ୍ତି ପଶି ଅସିଲେ]

ବାବାଜୀ—ଆସନ୍ତୁ, ଆସନ୍ତୁ, ଆଜି ବଡ଼ ଭାଗ୍ୟ ମୋର;
ଗୋପାଳଆ, ଆଣିବୁଟି ବଡ଼ ସତରଞ୍ଜିଟା,
ବସନ୍ତୁ, ବସନ୍ତୁ—ଆହା—ପଣ୍ଡିତ !

ପଣ୍ଡିତ—ହଁ ହେ ଏଇଁଠି ବନ୍ଧୁ ଶ । ଅପଣାର ଘର ତ
(ସକଳେ ଉପବେଶନ କଲେ)

ବାବାଜୀ—ଯାରେ ସବୁ ଯା—ଅଫିସରେ ଦେଖା କରିବ ।
(ମେମ୍ବରଗଣ ପ୍ରସ୍ଥାନ କଲେ) ଅପଣ କମିତ କି ଅଛେ
ଏତେବେଳେ ଗୁଲି ଅଇଲେ ?

ପଣ୍ଡିତ—କରି ଦେଲ ମେ.ତେ ସବୁ ମିଳି ଡିକ୍ଟେଟର,
ମାତ୍ର କାହା ପାଇଁ ମୁହିଁ କରିବ ଡିକ୍ଟେଟ୍ ?
ନିର୍ଜ୍ଜନ ବାଦଶା ଯଥା !
ନାହିଁ ମୁଣ୍ଡ ମଥା, କହିବ କାହାକୁ ?
ତୁଚ୍ଛା ଅରଣ୍ୟେ ରୋଦନ !

ବାବାଜୀ—ଅଛନ୍ତି ଅମର ଚମୂ—ଗ୍ରାମ ଗ୍ରାମ ଭରି
ଅଧୁମାରି ଖଦ ମୁଣି-ଧାରୀ
ବୋଡ଼୍ ମାନ ଅଛୁ ପୁଣି ହାତେ;
ଏ ଉତ୍ତରେ ଲାଗିଛୁ ସମର
ସିମ୍ବୋଲିକ ସତ୍ୟାଗ୍ରହ, ନୂତନ କଳ୍ପନା ।

ପଣ୍ଡିତ - ସତ୍ୟରେ ଅଗ୍ରହ—ତହୁଁ ହେଲା ସତ୍ୟାଗ୍ରହ,
ସନ୍ଧି ନା ସମାସ ବାଲବୋଧ ବ୍ୟାକରଣେ;
ବୁଝିଲା ସେ କଥା;
ମାତ୍ର ସିମ୍ବଲିକ ଅର୍ଥ ନ ପାରିଲି ବୁଝି ;
ହିନ୍ଦ ନା ସଂସ୍କୃତ ଏହା ଅଥବା ଇଂରାଜ ?

ବାବାଜୀ—ଓହୋ ! Symbolic ଅର୍ଥ ?
ଆଚ୍ଛା—ସତ୍ୟାଗ୍ରହ ହୋଇଗଲା ବ୍ୟର୍ଥ,
ତେଣୁ ନୂଆ ସୃଷ୍ଟି ଏକ ହୋଇଲା ବାହାର,
ଅର୍ଥାତ୍ କନା—ସତ୍ୟାଗ୍ରହ ସାର ।
Mass ସତ୍ୟାଗ୍ରହ ମଧ୍ୟ କାଢ଼ିଣ ନିର୍ଯ୍ୟାସ
ଲୋକ ଦେଖାଇବା ଲାଗି କରାଗଲା pass

ପଣ୍ଡିତ—ବୁଝି ମୁଁ ପାରିଲି ଏବେ ସିମ୍ବଲର ଅର୍ଥ
ହିପାରୁ ହୁଙ୍କର; ସେଣୁ ଇଂରାଜୀ ସ୍ମଲର;
ଅଟେଁ ହେଲ୍ ଜାଣ କନା ଓଡ଼ିଆ ପଣ୍ଡିତ,
ମୁଣ୍ଡି ବ୍ରାହ୍ମଣିଆ, ସିଧା ସପ ଟିଆ ନର,
କଟଣିଆ ପେଞ୍ଚ ପାଏଁ ନୋହୁ ଧୁରନ୍ଧର ।
ବାବାଜୀ—ସେଇଠି ତ ରହୁଛି ଅଡୁଆ;
ବ୍ରାହ୍ମଣିଆ ଯାକ ଅଖାଡୁଆ,
ଡାଙ୍ଗୁଆ, ହାଡୁଆ, ପୁଣି,
ନାହିଁ diplomacy ବୁଦ୍ଧି;
ତାଙ୍କ ହାତେ ହେବାରୁ ଅଡ଼ା,
ଅଳ୍ପଦଳେ ଖାଇଗଲେ ତଡ଼ା,
ଏ ଝଡ଼ା ଖାଇ ଥାନ୍ତି ଯାଇ ମାମୁଁ ଘରେ ।
କରଣଙ୍କ ହାତେ ଯଦି ଆସନ୍ତା ଲଗାମ;
ଦେଖି ଥାନ୍ତ, କାର ସାଧ୍ୟ···
ପଣ୍ଡିତ—ଥାଉ ଥାଉ ହେଲା ପରିହର;
ବାବାଜିଆ କଳା ଛଳ;
ଏ ବେଳରେ ଧୀରେ ଚଳେ ଦଅ ବୁଦ୍ଧି ବଳ;
ଗଳଦଘର୍ମ, ହେଲୁଣି ବିକଳ
ଅଖିକୁ ଲଳକା ବାଣ ଦେଉଅଛି ମାରି,
ଘାରି ହୋଇ ଯାଉଅଛି ହୃଦୟ ବଦାରି ।
ବାବାଜୀ—ଓଁ ହୋ ! ଏଡ଼େ କଥା,
କହି ପକା ତବ ହୃଦ ବ୍ୟଥା,
ଯଥା ତଥା କରି, ବେଳ ହେଲାଣି ଉଚ୍ଛୁର ।
ଅଘଟନ ହୋଇଛି ଘଟନ ।
ପଣ୍ଡିତ—ଉପସ୍ଥିତ ଘଡ଼ି ସନ୍ଧି ବେଳ,
ପଣ୍ଡିତ ପଣ୍ଡିତ ଦୁହେଁ ବାନ୍ଧଲେଣି ମେଳ;
ଲଗିଯିବ ଏବେ ନିଶ୍ଚେ ତାତାଥିଆ ଖେଳ,
ତା ସଙ୍ଗେ ଗୁଳିବ କଳ ରଙ୍ଗରାଜ ବାଡ଼,
ଯୁରାଇ ଚକ୍ରି ଫାଳ ପକାଇବ ତାଡ଼—
ଦେବ କାଣ୍ଡିକାଟି ସେହୁ ଫଟାଇଣ ପୁଣ୍ଡି
ଭାଙ୍ଗି ଦେଇ ଗୋଡ଼ ଗଣ୍ଠି.
ତଣ୍ଟି ଧରି ଲଭିବ ବାହାର ?
ଏବେ କହ ହୋଇବୁଁ କାହାର ?
ଆହାର ଗଣ୍ଡାକ ପାଇଁ ଯିବୁ କେଉଁ ଗାତେ ?
ବାବାଜୀ—ହୁଁ—କରଣିଆ ପେଞ୍ଚ ଏଠି ଲୋଡ଼ା,
କାମ ନୁହେଁ ଥୋଡ଼ା.
ଗୋଡ଼ାରୁ କରଛ ସବୁ ବେଜାୟ ଗଲ୍‌ଦ ।
ଅଚ୍ଛା, ସ୍ୱାମୀଜୀଙ୍କ ମତ ବୁଝିଛନ୍ତି କିବା ?
ପଣ୍ଡିତ—ସ୍ୱାମୀଜୀଙ୍କ 'ରମାନୁଜୀ' ମତ ।
ବାବାଜୀ—କିନ୍ତୁ Legal advice
ଆଇନ ଜ୍ଞାନରେ ସେହୁ ଅଟନ୍ତି ପୁରୁଖା,
ଅଟନ୍ତି କରଣ ପୁଣି, ପେଞ୍ଚ ରେଖା ରେଖା ।
ପଣ୍ଡିତ—ଶୁଣିଲି ସ୍ୱାମୀଜୀ ହୋଇ ଭାବ ଗଦ ଗଦ,
ସ୍ୱୀକାର ଅଛନ୍ତି କରି ଏକ ମନ୍ତ୍ରୀ ପଦ ।
ବାବାଜୀ—ତୁଚ୍ଛା କଥା—ଝୁଟା ଏ ସମ୍ବାଦ
ପଦ ମନ୍ତ୍ରୀତ୍ୱରେ ନାହିଁ ସ୍ୱାଦ, ତାଙ୍କଠାରେ
ନିଅଙ୍ଗୀ ବାବାଜୀ ସେହୁ, ଅଟେ ଆମ୍ଭ ଦର ।
ପରାର୍ଥେ ଅଛନ୍ତି ପୁଣି ଜୀବନକୁ ଧରି ।
ପଣ୍ଡିତ—ପର ଅର୍ଥେ ନିଜ ପେଟ ଭରି ?
ବାବାଜୀ—ନୁହନ୍ତି ସେ ଭଳି ସେହୁ ବାଧୁଲ୍ଲ ପ୍ରବର—
ପର ଅର୍ଥ ଖିଆ ନୁହେଁ ତାଙ୍କର ଜୀବିକା
ପର ଉପକାର ପାଇଁ ଧରନ୍ତି ଜୀବନ ।
ବସୁଧୈବ କୁଟୁମ୍ବକଂ ଅଟେ ତାଙ୍କ ନୀତ;
ଶତ୍ରୁ ମିତେ ନାହିଁ କ୍ଳେଶ ପ୍ରୀତ;
Advice ବାଣ୍ଟିବା ପ୍ରୀତି ପାଇଗଲେ Fees
ତୁରିତେ ସାକ୍ଷାତ କରି କରନ୍ତୁ Consult
ପଣ୍ଡିତ—ସାପ ନ ମରିବ କମ୍ବା ଭାଙ୍ଗିବ ବାଡ଼ି
ଏ ଭଳି ତେଲିଆ ବାକ୍ୟେ ଦଅନ୍ତି ଭୁଲାଇ ?
ବାବାଜୀ—କି କାରଣେ କରୁଛ ସନ୍ଦେହ ?
ପଣ୍ଡିତ—ମିଶ୍ର ଦଳେ ମନ୍ତ୍ରୀ ପଦେ ଥିବ ଯଦି ଲୋଭ
ବାବାଜୀ—ପାଟ ମନ୍ତ୍ରୀ ପଦ ତୁମେ କରିଦ offer
ଯେବେ ହେବ କଂଗ୍ରେସର ଆଧି ଅଳ୍ପଦଳେ;
ପଣ୍ଡିତ—ଧ୍ରୁବକୁ ଛାଡ଼ଣ ସେ କି ମଙ୍ଗିବେ ଅଧ୍ରୁବେ
ବାବାଜୀ—କ୍ଷଣସ୍ଥାୟୀ ଧ୍ରୁବ ଏ ଯେ ଅଢ଼େଇ ଦିନିଆଁ ।
ପଣ୍ଡିତ—ମାତ୍ର କେଉଁ ମୂଲ୍ୟ ଅଛି ଲବାବେ ମୋହର,
ଆଜ ବାଦେ କାଲି ମୁଁ ଯେ ପୁନରମୂଷିକ ।
ବାବାଜୀ—ପଣ୍ଡିତ କି କରେ ଚିନ୍ତା
ଅନାଗତ ଭବିଷ୍ୟତ ପାଇଁ ?
ଜୀବନ୍ତ ଏ ବର୍ତ୍ତିମାନେ ବିଶ୍ୱାସ ତାହାର ।
କିଏ ଜାଣେ କାଲି ହେବ କିସ,
ଆଜିକା ଅମୃତ କାଲି ହୋଇପାରେ ବିଷ,

ତେଣୁ ଆଜି ନାହିଁ ମୋର ଲେଟିନିଅ ମଜା,
Bluffing, bullying କରି
ଶ୍ରେଷ୍ଠ ରାଜନୀତି,
ବଚନରେ ଦରଦ୍ରତା ନ କରେ ପଣ୍ଡିତ ।
ଜାଣିଲ, ବୁଝୁଛ କସ ?

ପଣ୍ଡିତ—ବୁଝୁଛି ଯିବ କି ଗୃହ ବଶ ବୈକୁଣ୍ଠକୁ ?

ବାବାଜୀ—ଆଚ୍ଛା ବେଦେହକୁବ୍—କଏ କରଲା ଭୂମିକୁ
ଉତ୍କଳର ସେନାପତି, ସର୍ବମୟ କର୍ତ୍ତା !
ବ୍ରାହ୍ମଣର ନୁହେ ଯାହା କର୍ମ,
ଅଜାତକୁ ଯଥା ଅଟେ ବଣିକ ଅଉଆ ।
ମଠଧାରୀ ଗୋପବନ୍ଧୁ ବରଚ ଆଶ୍ରମ,
କରୁଛନ୍ତି ଯୁଗଳ ଭଜନ,
ଚେଲାଚେଲି ସେନ,
ଯାପୁଛନ୍ତି ବୈରାଗ୍ୟ ଜୀବନ ।
Politics ଅଟେ ତାଙ୍କୁ taboo
ଧନ ତାଙ୍କ ଯାଏ ସବୁ ଖବୁ
ଗଠନମୂଳକ କର୍ମେ ଭାରତ ଉଦ୍ଧାର ।
ଏ ନୁହେଁ ତାଙ୍କର କର୍ମ, ଭିନ୍ନ ଧର୍ମ ତାଙ୍କ ।

ପଣ୍ଡିତ—ଆଚ୍ଛା ମୁଁ ଯାଉଛି ତେବେ, ଦେଖେଁ— (ପ୍ରସ୍ଥାନ)

ବାବାଜୀ—ସର୍ବଦା ସନ୍ଦିଗ୍ଧ ଚିତ୍ତ ! ଅଯୋଗ୍ୟତା ସଫା,
Determination ନାହିଁ,
ନାହିଁ decision ;
ପ୍ରଶ୍ନ ପଣେ ସେ କି କେବେ ଅଟଇ ସଜ୍ଜନ,
ବ୍ରାହ୍ମଣ ଉକାଉ—ସଦା ପଛ ପ୍ରଶ୍ନ ଖଣ୍ଡି ।
(କରାନର ପ୍ରବେଶ)

କରାନ—ଶୁଣିଲ ଅଦ୍ଭୁତ ବାର୍ତ୍ତା…

ବାବାଜୀ—କି ବାର୍ତ୍ତା ?—କହ—ଶୁଣିଲ କାହିଁ ?

କରାନ—ବଜାର ଗୁଜବ ପ୍ରଭୁ, ମାତ୍ର ଅଛି ସତ୍ୟ,
କଂଗ୍ରେସ ମେମ୍ବରଗଣ ଆପଣଙ୍କୁ ଛାଡ଼ି
ମାରୁଛନ୍ତି ଶୂନ୍ୟତତ୍ତ୍ୱ ଆଶ୍ରାକରି ଦାଡ଼ି ।

ବାବାଜୀ—ସତେ ! ଆଁ,—ଆଁ—
ବିଷମ ବ୍ୟାପାର ! କି କରିବା ତେବେ !
ଡାକ ପଣ୍ଡିତଙ୍କୁ କାହିଁ ଗଲେ ସିଏ !
ଦଉଡ଼ ଦଉଡ଼ ଶୀଘ୍ର, ହେଇ ଯାଉଥିବେ—
(କରାନ ପ୍ରସ୍ଥାନ)

ଡିସିପ୍ଲିନାରୀ ଆକସନ,
ଡିସିପ୍ଲିନାରୀ ଆକସନ ;
ଏହିକ୍ଷଣି ନଆସିବ, କହ ପଣ୍ଡିତଙ୍କୁ—
Strict ଡିସିପ୍ଲିନ୍ ଛଡ଼ା ନାହିଁ ବାଟ ଆଉ
ନୋହିଲେ ଏ କଣ୍ଟିଆଳ ପଦ
ହେବ ନଷ୍ଟ—ବିଷମ ବିପଦ ।
ଦେଖ—ଦେଖ—କଏ ଅଛ କାହିଁ—
ପଣ୍ଡିତ ବାପୁଡ଼ା ଦେଖ ଆସିଲେ କି ନାହିଁ …
ଅରେ ! ଆଣ ଟେଲିଗ୍ରାମ ଫର୍ମ …
ତା ନ ହେଲେ ଟ୍ରଙ୍କ ଟେଲିଫୋନ୍ …
ଜଲ୍‌ଦି, ଜଲ୍‌ଦି…

(ଉଠିପଡ଼ି ଏପାଖ ସେପାଖ ହେବାକୁ ଲାଗିଲେ । ଏହି କାଳରେ ପୃଷ୍ଠ ପତନ ହେଲା ।)

## ( ଷଷ୍ଠ ଦୃଶ୍ୟ )

( ଗେଦ୍ୱାନ୍ତ ମୁଦ୍ଗଲପୁର ଏକ ପ୍ରକୋଷ୍ଠରେ ମନ୍ତ୍ରଣା ସଭା ଡାକରା ହୋଇଛି । ବାଲକଣ୍ଠ ଖଟିଆ ଉପରେ ଉପବିଷ୍ଟ । Mr. Goodever ଖଟର ପାଖରେ ଚେୟାର ଆଗୁଳି ବସିଛନ୍ତି । ଧନମଣି ବାଲକଣ୍ଠଙ୍କ ଖଟିଆର ଏକ ପାର୍ଶ୍ୱରେ ଆସୀନ । ସମସ୍ତେ ଚନ୍ତାମଗ୍ନ ପରି ଦିଶୁଛନ୍ତି । କାହାର ମୁହଁରେ କଥା ନାହିଁ—ଯେପରି କାହାର ଅପେକ୍ଷାରେ ଉଦ୍‌ଗ୍ରୀବ । ବାଲକଣ୍ଠ ବଦନ ବ୍ୟାଦାନ କରି ହାଇଟିଏ ମାରିଲେ ଓ ଆପେ ଆପେ ଦୁଇ ତିନୋଟି ଚୁଟ୍‌କି ମାରିଦେଲେ ହାଇ ସହିତ ତାଳ ଦୋଇ ।)

ଧନମଣି—ଦେଖିବ କି ଆଜ୍ଞା, ଟିକିଏ ବାହାରକୁ ଯାଇ ?

Good—ହଁ, ଦେଖି ଆସିଲେ ଭଲ ।

ବାଲ—ଯାଃ; — ବଳମ୍ବେ କାର୍ଯ୍ୟ ସିଦ୍ଧି, ଜାଣିଛଟିକି ! ବସ ହେ ।
ପାନ ଖାଇବ ଦିଲୁ ? ( Goodeverଙ୍କୁ ଗୁହିଁ ) ତୁମେ ତ ଏଥିରେ ପଥିକ ନୁହଁ, ସାହାବ ଲୋକ ! ହାଃ—ହାଃ—

( ବଟୁଆ ଫିଟାଇ ଦୁଇ ଫାଳ ପାନରେ ଚୂନ ଲଗାଇ ଗୋଟିଏ ଆପଣା ମୁହଁରେ ଗୁଞ୍ଜିଲେ ଓ ଆଉ ଗୋଟିକ ଧନମଣିଙ୍କୁ ଦେଲେ । )

ଧନ—ଗୁଆ ଗୁଣ୍ଡି ଦିଅନ୍ତୁ ।

ବାଲ—ଆରେ ହଁ, ହଁ—ତୁମେ କରଣିଆ ପିଲା; ପୁଣି ଭରୁଆ ନ ହେଲେ ଚଳିବ ନାହିଁ । ମାତ୍ର ଏଥିର ମଜା ବୁଝିନ—ଦେଖ,
ଗୁଞ୍ଜି ପାଟିରେ—ତା'ପରେ ଗୁଆ ଗଣ୍ଡାଏ ପକାଇ ଦିଅ—
ତା'ପରେ ଗୁଣ୍ଡି—ତା'ପରେ ମସଲା—ଜାଣିଲ । ଏ ଆମର
ବାମୁଣିଆ ଢଙ୍ଗ—ଅସଲ ପଞ୍ଚକୋଶୀ ଶାସନୀ ଖଣ୍ଡି—ହେ—

Good—କୁଆଡ଼େ ଗଲେମ ! —ଭୃଃ—

ବାଲ—ଆରେ ଏତକ patience ନାହିଁ ! ଏଥିରେ ଏତେ ବଡ଼ political strategy ଖେଳ ବସିଚ ! ଦେଖ୍‌ନା—ଏ ବ୍ରିଟିଶଙ୍କୁ—

ଦନ -- ହେଇ ଆସୁଥିବାର ଚବ !

(ଉଠି ପଡ଼ିଲେ)

ବାଲ—ବନ୍ଧ ଟୋକାଙ୍କଆ ବୁଦ୍ଧି । ବସ ହେ । ଆସନ୍ତୁ ସେ । ଧୀରତା, ଧୈର୍ଯ୍ୟ, ବୁଝିଲ । ଧୀର ପାଣି ପିନା ପଥର କାଟେ । ହାଃ, ହାଃ—ନଅ ଗୁଆ । ଏତକ ହବ ?

ଭୃତ—ଆଜ୍ଞା ( ଗୁଆ ନେଲେ )

## ( ସପ୍ତମ ଦୃଶ୍ୟ )

( ବାଲକଣ୍ଠ ଆବେଗ ପୂର୍ଣ୍ଣ ପ୍ରାଣରେ ଦରୁ-ବାହାରକୁ ଥରେ ଆସୁଛନ୍ତି ଓ ପୁଣି ଭିତରକୁ ଯାଉଛନ୍ତି । ଅତି ଔତ୍ସୁକ୍ୟ ହେତୁ ତାମ୍ବୁଳ ଚର୍ବଣର ମାତ୍ରା ବେମାଲୁମ ବଢ଼ି ଯାଉଥିବାରୁ କଣ୍ଠ ବିଲମ୍ବିତ ଶୁକ୍ଳ କେଶଗୁଚ୍ଛ ତାମ୍ବୁଳ ରାଗ ରଞ୍ଜିତ ହୋଇ ଜୁଟ୍ ଫ୍ଲାନେଲ୍ ଛିଟରେ ଶୋଭା ଧାରଣ କରୁଛି । ସମସ୍ତଙ୍କ କେଶ ଉଚ୍ଛୃଙ୍ଖଳ, ଉତ୍କର୍ଣ୍ଣ, ଉଦ୍‌ଗ୍ରୀବ, ଉନ୍ମନ ହୋଇ ଯେପରି କାହାର ଅପେକ୍ଷାରେ କାଳାତିପାତ କରୁଛନ୍ତି ଓ ଅନ୍ତରର ଉଦ୍‌ବେଗମୟ ଗତି ସହିତ ତାଳ ମାତ୍ରା ରଖି ଦକ୍ଷିଣ କରସ୍ଥିତ ଗୁଆକାତି ଖଟ୍ ଖଟା ଖଟ୍ ନାଦରେ ବାମ କରସ୍ଥିତ ଗୁବାକ ଖଣ୍ଡମାନଙ୍କୁ ଯନ୍ତ୍ରବତ୍ ଚୂର୍ଣ୍ଣ ବିଚୂର୍ଣ୍ଣ କରି ପକାଉଛି । ପୁଣି ସେ ଚୂର୍ଣ୍ଣ ପଦାର୍ଥମାନ ସ୍ୱୟଂ ବଦନ ଗହ୍ୱରରେ ନିକ୍ଷେପିତ ହେବା ନିମନ୍ତେ ବକ୍ଷିପ୍ତ ହେଉଛି । ଏମନ୍ତ ଭୃତ୍ୟଙ୍କୁ ଡାକ ପକାଇଲେ )

ବାଲ—ବେହ୍ନପୋ ସମସ୍ତେ ମଲେଣି ନା କଣ ! ଆବେ—ଆବ୍‌ବେ କଣଟି—ବେ—

( ଜଣେ ଭୃତ୍ୟ ପ୍ରବେଶ କଲା )

ଭୃତ୍ୟ—ଆଜ୍ଞା ?

ବାଲ—କୁଆଡ଼େ ମରୁଥିଲୁ ନା କଣ ?

ଭୃତ୍ୟ—ଆଜ୍ଞା ।

ବାଲ—ଓଲୁ କାହିଁକା—

ଭୃତ୍ୟ—ଆଜ୍ଞା ।

ବାଲ—ବେ, ବଳକଟେ ଗୁଣ୍ଡ ଆଣିଲୁ ବଟୁଆରୁ—ଗଲୁ—

( ଭୃତ୍ୟ ଧୂନ୍ତେ ଚାଲିଗଲା ଓ ଫେରଆସି କହିଲା— )

ଭୃତ୍ୟ—ବଟୁଆରେ ଗୁଣ୍ଡ ସରିଚ ଆଜ୍ଞା ।

ବାଲ—ଯା ବଜାରରୁ ଇଲେ—ନାହିଁ, ନାହିଁ ଥାଉ, ମେଞ୍ଚାଏ ଧୂଆଁ ପତ୍ର ଆଣିଲୁ—ଝଟ୍ ।

( ଭୃତ୍ୟ ଗଲା ଓ ଧୂଆଁ ପତ୍ର ଆଣି ଦେଲା )

ବାଲ—ବୋକାଟା କଉଁଠିକାର –ଆବେ ଚୂନ କାହିଁ—ଖାଲି ପତ୍ର ।

( ପୁଣି ଭୃତ୍ୟ ଯାଇ ଚୂନ ଆଣି ଦେଲାରୁ ବାଲକଣ୍ଠ ଉଭୟ ପଦାର୍ଥ ମିଶ୍ରିତ କରି ଗୁଣ୍ଡସ୍ଥ କଲେ । )

ବାଲ —ଏ, ଗଲୁ ମୋ ଖଟ ଉପରେ ମାଣ୍ଡିଲେ ଖଣ୍ଡେ ଟେଲିଗ୍ରାମ ତାର ଅଛି, ଆଣିବୁ ।

ଭୃତ୍ୟ—କେତେ ଲମ୍ବ ଆଜ୍ଞା ?

ବାଲ—ଟେଲିଗ୍ରାମ ତାର ଚହ୍ନିନୁ ? ଏଡ଼େ ଖଣ୍ଡ୍ୟ—

ଭୃତ୍ୟ—ଲୁହା ନା ପିତଳ ଆଜ୍ଞା ?

ବାଲ—ଦୁତ୍ତେଶକ—ଆଉ ପାରିବନି ତୋତେ—ଗର୍ଦ୍ଦଭ—ଆରେ ତାର ନୁହେଁ, ତାର ନୁହେଁ—ତାର ଖବର ! କାଗଜ, ନାଲି ନାଲି କାଗଜ । ଲେଖାଅଛି, ଇଂରାଜୀ ଲେଖା ।

ଭୃତ୍ୟ—ଆଜ୍ଞା ବୁଝିଲି ଯେ—

ବାଲ—ଆଜ୍ଞା କଦଳୀ ! ଯାଃ ।

( ଭୃତ୍ୟ ଯାଇ ଟେଲିଗ୍ରାମ ଖଣ୍ଡେ ଆଣି ଦେଲାରୁ ବାଲକଣ୍ଠ ତାକୁ ଉଲଟି ଗୃହାଣିରେ ମନେ ମନେ ପଢ଼ିଲେ । )

ବାଲ—ଏଇତ, ଠିକ୍ ଆସିବାର କଥା—ଗଲେ କୁଆଡ଼େ ?

ଭୃତ୍ୟ—କିଏ ଆଜ୍ଞା ?

ବାଲ—ତୋ ବାପା ! ଯାଃ-ଏଠୁ ।

( ଭୃତ୍ୟ ପଳାୟନ କଲା )

ବାଲ— ଏ, ଏ, ଶୁଣ୍ ଶୁଣ୍—ଆବେ ଶୁଣି ଯା ।

( ଭୃତ୍ୟ ପ୍ରବେଶ କଲା )

( ବାଲକଣ୍ଠ ତାପେଟରେ ଗୃପଡ଼ା ମାରିବାକୁ ଲାଗିଲେ )

ବାଲ —ଆରେ, ପୋଖଣ୍ଡାଟା ଚଲପ ଦେଲାଣି କାହିଁକ । ଚୂନ ପତ୍ରଟା କଉଁଠୁ ଆଣିଲୁ ମ ? ଘର କଉଁଆ—ଯା ତାଳଟା ଦେ— ପାଇଖାନାରେ ।

( ଭୃତ୍ୟ ଚାଲିଗଲା )

ବାଲ—Sheer anxiety—nervousness—ନୋହିଲେ ଏତେ ବେଳୁଟାରେ—

( ଭୃତ୍ୟ ଆସିଲା )

ଭୃତ୍ୟ—ତାଳ ଦେଲଣି ଆଜ୍ଞା, ଯାଆନ୍ତୁ ।

ବାଲ—ଦେଲୁଣି ଟିକ ? ତହିଁରେ ପାଣି ଦେଇଛୁଟି--ନା ଖାଲି ତାଳଟା ଥୋଇ ଦେଇଚୁ ? ହଁ ଶୁଣ୍ । ଜଣେ ବାବୁଙ୍କୁ ମୁଁ ଅପେକ୍ଷା

କରୁଚି ବୁଝିଲୁ ? ଆରେ ଜଣେ ବାବୁ ଇଲେ ଆସିବାର କଥା । ଘର ଜରୁର କାମ ତାଙ୍କ ସାଙ୍ଗରେ । ବୁଝିଲୁ ?

**ଭୃତ୍ୟ**—ଆଜ୍ଞା ।

**ବାଳ**—ଆଜ୍ଞା ନା ଦୋଢ଼ାଡମ୍ବ । ତୁ ପୁଣି ତାଙ୍କୁ ଜାଣିନୁ କରିଦବୁ ନାଇଁ । ଏଇଠି ଜଗି ବସିଥା କ—ସେ ଆସିଲାକ୍ଷଣି ମୋତେ ଡାକ ପକେଇବୁ ନାଇଁ—ଖାଲି ଗଳା ଖଙ୍କାର ମାରିଲେ ମୁଁ ଜାଣି ପାରିବି ସେ ଆସିଲେ ବୋଲି, ବୁଝିଲୁ ?

**ଭୃତ୍ୟ**—ଆଜ୍ଞା ।

**ବାଳ**—ନାଇଁ ନାଇଁ, ତୁ କଣ ବୋଲି କଣ କରି ବସିବୁ । ଆଚ୍ଛା, ଗୋଟାଏ କଂସା ଗିନା କ ବେଲରେ ଗୋଟାଏ ଡାଙ୍ଗ ବାଡ଼େଇ ଦବୁ ଯେ—ଯେମିତି ଘଣ୍ଟା ପିଟନ୍ତି—ମୁଁ ଜାଣି ପାରିବି ।

**ଭୃତ୍ୟ**—ଆଜ୍ଞା, ଶାରଳା ଘଣ୍ଟ ପେଟକା ।

ବାଳ—ହଁ—ହଁ—

(ବାଳକଣ୍ଠ ପ୍ରସ୍ଥାନ କଲେ ଓ ଭୃତ୍ୟ ବସି ରହିଲା । ଅଳ୍ପ କ୍ଷଣ ଭିତରେ ଜଣେ ଖଦଡ଼ ପଞ୍ଜାବୀ ପରିହିତ କ୍ଷୁଦ୍ରକାୟ ବାବୁ ପ୍ରବେଶ କଲେ । ହାତରେ ଠେଙ୍ଗା)

(ଭୃତ୍ୟ ବାବୁଙ୍କ ଠେଙ୍ଗାଟା ନେଇ ଗୋଟାଏ ପିତଳ ମାଠିଆରେ ବାଡ଼େଇବାକୁ ଲାଗିଲା । ଆଗନ୍ତୁକ ଅବାକ୍ । ତେଣୁ ବାଳକଣ୍ଠ କଚ୍ଛ ଖୋଲା ଭାବରେ ଧାଇଁ ଆସିଲେ ।)

ବାଳ—ଆସିଛ, ଆସିଛ ସତେ, ଓଃ—କି ସମ୍ବାଦ ? ବର୍ତ୍ତି କହ ମୋତେ ।

ରଙ୍ଗରାଜ—ଶ୍ରାନ୍ତ, କ୍ଲାନ୍ତ, ଅନାହାରୀ, ଅନିଦ୍ରା ନିତାନ୍ତ,
କହିବ ବଖାଣି ସବୁ ନେଲେ କିଛି rest ।

ବାଳ—ଆଚ୍ଛା, ଆଚ୍ଛା, ବେଶ୍, ବେଶ୍,
ବାହାଦୁର ତୁମେ—ସୁଦକ୍ଷ କୁଶଳୀ—
ତୁମ ହସ୍ତେ ଦେଇ ଭାର ନିଶ୍ଚିନ୍ତ ସରବେ,
ଏଥର ହୋଇବ ଜୟ—ସୁନିଶ୍ଚିତ ଏହା,
ପଡ଼ିଛି ଯୋଜନା ଯହିଁ
ଉପଯୁକ୍ତ ସେନାପତି ହସ୍ତେ !
ଆଚ୍ଛା, ବସ, ବସ । ଖାଇବକି କିଛି ?

ରଙ୍ଗ—**ନାହିଁ**, ଥାଉ, ବଡ଼ ତୃଷା - ପିଇବି କିଞ୍ଚିତ୍ ।

ବାଳ—କୁଆଡ଼େ ଗଲୁ ବେ—ତାଲରେ ଡାକେଲ ପାଣି ଆଉ ଗ୍ଲାସ୍‌ଟା ଆଣିବୁଟି ।

**ଭୃତ୍ୟ**—ଆଜ୍ଞା ତାଲଟା ତ ପାଇଖାନାରେ—ଛୁଆଁ ହେବ ଯେ—

ବାଳ—ଓହୋ ! ସତେ ତ ତାଲଟା ତ ଭ୍ରଷ୍ଟ ଆମିଛୁ ! ଆରେ ଯାଃ—
ମୁଁ ତ ଛୁଅଁ ନାହିଁ—ତରବରରେ—ପୁଣି କଥା କହି ପକାଇଲିଣି କେତେ ! ବ୍ରାହ୍ମଣ ହୋଇ—

ରଙ୍ଗ—ହଉ, ଅକାଳେ ନିୟମ ନାସ୍ତି ।
ସାହେବ ଲୋକତ ପୁଣି କାଗଜରେ—

ବାଳ—ସାହେବ କାହିଁକି, ସିମିଲା ଯେ ଯିବ ତାର ବ…ଓଃ ଯଉଁ ଶୀତ !

ରଙ୍ଗ—ସେ ଅଭ୍ୟାସଟା ଅଛି ତେବେ ?

ବାଳ—ଅଭ୍ୟାସ ନୁହେଁ—ଅକାଳ ପାଣି ଲାଗିଲେ ସବୁ ବରଫ ହୋଇଯିବ ଯେ ନୋହିଲେ …… ।

ରଙ୍ଗ—ହଉ ତେବେ ପାଣି ସାରି ଆସନ୍ତୁ । ମୁଁ ବସୁଚି ।
( ବାଳକଣ୍ଠ ଭିତରକୁ ପ୍ରସ୍ଥାନ କଲେ )

( ବାଳକଣ୍ଠ ପାଣି ସାରିବା ପାଇଁ ଅନ୍ତର୍ଦ୍ଧାନ ହୋଇ ବାହାରିଗଲେ ରଙ୍ଗରାଜ ଏକାକୀ ବସି ଅପେକ୍ଷାରେ କାନ୍ଥ ବାଡ଼କୁ ଚାହୁଁଥିଲେ ବୃକର ପ୍ରବେଶ କଲା । ରଙ୍ଗରାଜ ତାକୁ ପାଇ ଟିକିଏ ମଜା କରିବେ ବୋଲି ହୃଷ୍ଟ ହେଲେ । )

ବୃକର—ବାବୁ ବସିଚନ୍ତି ନା ଏକୁଟିଆ ?

ରଙ୍ଗ—କଣ ଆଉ କରିବା କହିଲୁ—କଣଟି ତୋ ନାଁ ।

ବୃକର—ଆଜ୍ଞା ମୋ ଅସଲ ନାଁ ମାଳା—ମାଳମଣି ରାଉତ ।

ରଙ୍ଗ—ଆଉ ଗୋଟାଏ ନାଆଁ ଅଛିନା ପୁଣି ?

ବୃକର—ଆଜ୍ଞା, ବାବୁ ଘର—ଆମ ବାବୁ—ତାଙ୍କ ମାନେ ଆମ ମାଆଜାଣୀ—ସେ କିମିତି ନାଆଁ ଧରିବେ କହନ୍ତୁ ଭଲା—

ରଙ୍ଗ—ଓହୋ ଠିକ୍ ଠିକ୍—ସେ ତେବେ କି ନାଆଁ ଦେଇଛନ୍ତି ?

ବୃକର—ସେ ମୋ ନା ଦେଇଚନ୍ତି—ଟିଲା ।

ରଙ୍ଗ—ବାବୁ ବି ସେଇ ଟିଲା ବୋଲି ଡାକନ୍ତି ?

ବୃକର—ନାଇ ଆଜ୍ଞା—ସେ ବାବୁ ଲୋକ—ସେ ଧରିବେ ନା ଅପନ୍ତରା ନାଆଁଟା ?

ରଙ୍ଗ—ସେ କଣ ବୋଲି ଡାକନ୍ତି ?

ବୃକର—ତାଙ୍କର କେତେ ନାଆଁ—ଯଦ୍ଭିତ ଯେତେବେଳେ ସେ—ତୁଣ୍ଡରେ ଯାହା ପଶିଲା ତାହା ଡାକ ଦିଅନ୍ତି ।

ରଙ୍ଗ—କେମିତିକା କହିଲୁ ଗୋଟାଏ ଦୁଇଟାଏ ?

ବୃକର—ଯେତେବେଳେ ରାଗ ହୋଇ ଯାଆନ୍ତି, ଡାକନ୍ତି 'ହେ' 'ଆବେ'—'ବେହୁଦା ନପା'—

ରଙ୍ଗ—ଆଉ ଶରଧା କଲାବେଳେ ?

**ବୃକର**—ଅଣ୍ଡିରା ପୁଅଟାକୁ କଣ ଶରଧା କରିବେ ଆଜ୍ଞା ? ତେବେ ଭଲବସରରେ ଡାକନ୍ତି 'ଶ…' ।

ରଙ୍ଗ — ବେଶ୍ ବେଶ୍ ।

ଶଙ୍କର — ପଣ୍ଡିତଆ ଢ଼ଙ୍ଗରେ ସବୁ ଶୁଝୁଅ ଆଜ୍ଞା ।

(ରଙ୍ଗରାଜ ପକେଟ ଅଣ୍ଡାଳ ଗୋଟାଏ ସିଗାରେଟ କେସ୍ ବାହାର କରି ତହିଁରୁ ଗୋଟିଏ ବଡ଼ କାଢ଼ିଲେ ଓ ବଡ଼ର ଲାଞ୍ଜରେ ଦୁଇ ଟ୍ୱିଷ୍ଟ ଟିକା ମାରି ରଙ୍ଗ ଅଧରରେ ଧାରଣ କଲେ । ପରେ ଦିଆସିଲି ବାକ୍ସ ଖୋଲିଲେ । )

ରଙ୍ଗ — ଦୁତ୍ତେରିକା — ଗୋଟାଏ ବି କାଠି ନାହିଁ । (ବାକ୍ସଟା ଫିଙ୍ଗି ଦେଇ) ଆରେ — କଣଟି ତା ନାଆଁ — ଆପଣଙ୍କ ସାର୍ଭେଣ୍ଟକୁ ଟିକଏ ଡାକବେକି ଆଜ୍ଞା —

ବାଳ — ହଁ, ହଁ — ଆବ୍‌ବେ ଗଲୁ କୁଆଡ଼େ ଏଣିକି ଆ —

ମାଳା — ଦିଆସିଲି ? ଦିଆସିଲି ତ ନାହିଁ ଆମର — ଲଡ଼େଇରେ ଦିଆସିଲିର ଦାମ୍ ବଢ଼ିବାରୁ ଆଉ କଣା ହେଉ ନାହିଁ ।

ବାଳ — ଇକନମି — ବୁଝିଲଟି ରଙ୍ଗରାଜ, ଇକନମି ନ କଲେ — ଆଉ ଏ ସବୁ ବିଷୟରେ ଆମମାନଙ୍କର ଲୋକଙ୍କୁ ଆଦର୍ଶ ଦେଖାଇବା ଉଚିତ — ଲିଡ଼ ଦେବା ଉଚିତ —

ରଙ୍ଗ — ହଁ, ଯେତେ unnecessary expenses ସବୁ curtail କରିଦେବା ଉଚିତ —

ବାଳ — ଯେପରି ବିଡ଼ି —

ରଙ୍ଗ — ଆଉ ଯେପରି ପାନ —

ବାଳ — କିନ୍ତୁ ବୁଝିଲନି — ପାନଟା କାହାରି କାହାରି ପକ୍ଷରେ ବି ବଡ଼ necessary — ତା ପରେ ପାନର ଅନେକ medical virtue ଅଛି — ତାମ୍ବୁଳ ପରା — ବିଶେଷତଃ ଆମର nationality ର ଚିହ୍ନ — ନଜମ୍ବ — ସ୍ୱାକ୍ଷୁ ଗ୍ରହଣ କଲେ ଓଡ଼ିଆମାନେ ରହିବ କଉଁଠି !

ରଙ୍ଗ — ଆଉ ବଡ଼ ?

ବାଳ — ବଡ଼ ? ଛ୍ୟାଃ — foreign — pure and simple imitation — ସିଗାରେଟର cheap edition.

ରଙ୍ଗ — କାହିଁକି, ପିକାର royal edition ନୁହେଁ କାହିଁକି ? ପିକାଟା ତ ପୁଣି ଆମର national wealth ?

ବାଳ — ଯାଃ — ତମ ସାଙ୍ଗରେ argumentରେ ପାରି ହବ ନାହିଁ । ଖା ଖଣ୍ଡେ ପାନ ଖା — ଆଣେ ବଟୁଆଟା —

(ଉଠି ଭିତରକୁ ଗଲେ)

ରଙ୍ଗ — ପାଣି ଆଣିବାକୁ କହିବେ ଆଜ୍ଞା —

ବାଳ — (ଭିତରୁ) ହଁ, ହଁ — ଦଉଚି । ଆବେ ବୁଡ଼୍‌ବକ୍ ପାଣି ଦେଇ ଆସିବୁଟି ବାବୁଙ୍କୁ —

(ମାଳା ଗିଲାସରେ ପାଣି ନେଇ ପ୍ରବେଶ କଲା)

ରଙ୍ଗ — ଆରେ ସତେ ତ ! ବାବୁ ତୋ ନାଆଁ ଧରି ଡାକୁ ନାହାନ୍ତି ତ !

ମାଳା — କହୁଥିଲି ପରା — ମୋ କଥା ପରଚେ ଯାଉ ନ ଥିଲେ ।

ରଙ୍ଗ — ଆଚ୍ଛା, ବାବୁଆଣୀ ଜାଣି ତୋ ନାଆଁ ନ ଧରିଲେ — ତାଙ୍କର ବଞ୍ଚାଇବା କଥା — ମାତ୍ର ବାବୁ କାହିଁକି ?

ମାଳା — ମାଆନ୍ତାଣୀଙ୍କ ନାଆଁ "ହେଲେ" ସେଇପରିକା ହେଇ ଥିବ !

ରଙ୍ଗ — ଆରେ ପାଣି ପିଇବି । ଗ୍ଳାସ୍ ଆଣ୍ ।

ମାଳା — ଆମର ଗ୍ଳାସରେ ପାଣି ପିଅନ୍ତି ନାହିଁ । ମାରି ହେଇଁପିବ ।

ରଙ୍ଗ — (ଗିଲାସଟା ଧରି) ଏ ଗିଲାସ ମଜା ହୋଇଥିଲା କେବେ ?

ମାଳା — ମାଜିଲେ ଧୋଇ ଯିବ ନାହିଁ ?

ରଙ୍ଗ — ବାବୁ ପାଇଖାନା ଯାଇଥିଲେ ପରା ?

ମାଳା — ଆଜ୍ଞା, ଧୋଇ ଦେଇଛି ତା ପରେ ।

ରଙ୍ଗ — ଆଚ୍ଛା ଆଉ ପାଣି ପିଇବାର ଲୋଡ଼ା ନାହିଁ — ନେ ।

(ଗିଲାସଟା ତା ହାତକୁ ବଢ଼ାଇ ଦେଲେ)

[ ବାଳକଣ୍ଠ ପ୍ରବେଶ କଲେ ବଟୁଆ ଧରି ]

ବାଳ — ପାଣି ପିଇଲଟି ?

ରଙ୍ଗ — ନାହିଁ, ଥାଉ ।

ବାଳ — ହିଃ, ତମର ସବୁ ଚ ଖାଇବା habit କିନା — ଠିକ୍ ଠିକ୍ ।

ରଙ୍ଗ — Habit ନୁହେ, ତେବେ ମିଳିଲେ ଖାଏଁ ।

ବାଳ — Habit ନୁହେଁ କମିତି ? ବାବା ବିଶ୍ୱନାଥଙ୍କ ଷଣ୍ଢ ହେଲିଥିଲ ଦିନାକେତେ ଯେତେବେଳେ, କେତେ ଚ, ପକୋଡ଼ି ଖାଇଥିବ ନିତି ନିତି, ନାହିଁ କରୁଛ ? ...... ସତେ ଚ ଖାଇବ ? ବଜାରରୁ ଅଣେଇବା ?

ରଙ୍ଗ — ନାହିଁ ଥାଉ ।

ବାଳ — ଭଲ କଥା । ଚ ଟା health ପକ୍ଷରେ ବଡ଼ ଖରାପ — ବଡ଼ irritative ଆଉ constipative — ମୁଁ ସେଥିପାଇଁ ତା ପାଖ ପଶେ ନା — କେବଳ କେହି ବଳେଇ କରି ଦେଲେ — ମୂଳାହିଜାରେ ଦୁଇ ଏକ sip — ଆଚ୍ଛା, ମୁଁ ଶୁଆ ଭଙ୍ଗୁଛି କ ତୁମେ ତମର adventure ବର୍ଣ୍ଣନା କରି ଯା —

ରଙ୍ଗ — କି ବର୍ଣ୍ଣିବ ପଣ୍ଡିତ ହେ, ବର୍ଣ୍ଣନା ଅତୀତ,
ଅଦ୍ଭୁତ, ରୋମାଞ୍ଚକର ଅଟେ ସେ କାହାଣୀ,
'ଆରବ୍ୟ ରଜନୀ' ଯଥା —
ସିନ୍ଦବାଦ ଗଳ୍ପବତ ଅଟେ ରୋମାଣ୍ଟିକ୍,
ଶୁଣିଲେ ତୁମର ଦାଢ଼ି ହୋଇ ଟାଙ୍କୁରିତ
ଝିଙ୍କ କାଠି ସମ ହେବ ଛୁଡ଼ା !

# ହନୁମନ୍ତ ବସ୍ତ୍ରହରଣ

ବାଳ —ଆହା, କହ କହ,
ଶୁଣିବାକୁ ବଳୁଛି ପିପାସା
ଯଥା ପ୍ରାର୍ଥୀଙ୍କର ହୁଏ ଭୋଟ ଗଣାବେଳେ ।

ରଙ୍ଗ—ଶୁଣ ତେବେ ମନ କର୍ଣ୍ଣ ଦେଇ
ବଖାଣି ଗାଇବ ମୋର ଦିଗ୍‌ବିଜୟ ଗାଥା
ଅପୂର୍ବ ଭାରତ ଯାହା, ହେଲେ କାଳିଦାସ
କଣ୍ଠତରେ ଯାଉଥାନ୍ତି ଅବା ତାହା ବର୍ଣ୍ଣି—

ବାଳ—ମନେ ହୁଏ ଏ ବର୍ଣ୍ଣନା ହୋଇ ଚିରନ୍ତନ
ଉଜ୍ଜ୍ୱଳ କରିବ ଆମ ଇତିହାସ ପୃଷ୍ଠା,
ଅବା କରିବ ମଣ୍ଡନ
ରାମଚନ୍ଦ୍ର ଭବନର ଲାଇବ୍ରେରୀ ସେଲ୍‌ଫ୍
ଜାଣିଯିବ ସାହିତ୍ୟାଗାରେ ଶ୍ରେଷ୍ଠତମ ରତ୍ନ—
ହାୟ, ହାୟ 'ଗବଘାତ' ପତ୍ରିକାଟା !—
ନୋହିଲେ ବାହାରନ୍ତା ଛାପି ରଙ୍ଗିନ ଅକ୍ଷରେ ।
ହୁଁ—ଏବେ ଚାଲୁ—



# ଫିଲ୍ମ୍ ଷ୍ଟାର

## ( ଏକାଙ୍କ ନାଟିକା )

( ମିନର୍ଭା ଫିଲ୍ମ୍ କମ୍ପାନୀର ଜେନେରାଲ୍ ମ୍ୟାନେଜର ମିଃ. ଡୁଙ୍ଗର ଦୋତାଲାରେ ତାଙ୍କ ଖାସ୍ କାମରାରେ ବସି ଖଣ୍ଡେ ଆମେରିକାନ୍ ସିନେମା ମାଗାଜିନ୍ ଦେଖୁଛନ୍ତି । ତଳ ତାଲାରେ ଷ୍ଟୁଡ଼ିଓ । ମିଃ ଡୁଙ୍ଗର ଜଣେ କୃତକର୍ମା ପୁରୁଷ ଓ ସିନେମା ଶିଳ୍ପ ସମ୍ବନ୍ଧରେ ଏକ୍ସପାର୍ଟ । ତାଙ୍କର ଅମଳରେ ମିନର୍ଭା କମ୍ପାନୀ ନୂଆ ନୂଆ ଧରଣର ଫିଲ୍ମ ତିଆରି କରି ଓ ନୂଆ ନୂଆ ଆର୍ଟ, ନୂଆ ଆଇଡ଼ିଆ ପୁରାଇ ସମସ୍ତଙ୍କୁ ଚମକାଇ ଦେଇଛି । ଦେଶର ବଡ଼ ବଡ଼ ଷ୍ଟାର କେତେ ଜଣ ମିନର୍ଭାର ବନ୍ଧା । ଏ ସବୁ ଡୁଙ୍ଗରଙ୍କ ଲାଗି ଏବଂ ଏ କଥା ସେ ନିଜେ ଯେତେ ବୁଝନ୍ତି, ଡିରେକ୍ଟରମାନେ ତାହା ବୁଝନ୍ତି ନାହିଁ । ସେଥିପାଇଁ ଗର୍ବ କହ, ଦମ୍ଭ କହ ବା ଆତ୍ମନିର୍ଭର କହ—ଯାହା କହ, ସେଇଟା ତାଙ୍କ ମନରେ ସର୍ବଦା ଜାଗ୍ରତ ଓ ମୁହଁରେ ପରିସ୍ଫୁଟ ।

ବୟସ ୫୦ ବା ୫୫ ଭିତରେ ହେଲେ ବି ବେଶଭୂଷା ଚାଲି-ଚଳଣିରେ ଡୁଙ୍ଗର ଟାଟକା ତରୁଣ । ସେ କହନ୍ତି, ଏ କାମରେ ପଶିଲେ ମସ୍ତିଷ୍କକୁ ସବୁବେଳେ ଯୁବକ ହୋଇ ରହିବାକୁ ପଡ଼େ—ମନ ନ ଥିଲେ ବି ଆପେ ହୋଇଯାଏ । ତା'ପରେ ସେ ଜଣେ ଖୁବ୍ ରହ-ସ୍ୟପ୍ରିୟ ଓ ସୁରସିକ ନିଜେ । ଡୁଙ୍ଗର ରସର ବେଉସା କରନ୍ତି । ତା ନ ହେଲେ ଚଳେ ନାହିଁ ।

ଘରଟି ଆଧୁନିକ ସାଜସଜ୍ଜିତ । ଇଲେକ୍ଟ୍ରିକ ବେଲ୍, ପଙ୍ଖା, ଟେଲିଫୋନ୍, ଟାଇପ୍ ମେସିନ ଇତ୍ୟାଦି ଇତ୍ୟାଦି କାହିଁରି ଅଭାବ ନାହିଁ । ଦାମିକା ଦାମିକା ଟେବୁଲ, କୁସନ୍ ଚେୟାର, କାଉଚ୍, ଫୁଲଦାନୀ ସବୁ ରହିଛି । )

ଦରୁଆନ ସଲାମ ଦେଇ କହିଲା—'ହଜୁର୍ ଜଣେ ଔରତ୍ ମୁଲାକତ୍ ମାଗୁଛନ୍ତି' ।

ଡୁଙ୍ଗର—ଫୁରୁସତ୍ ନେହିଁ ।
ଦରବାନ—ସେ କହୁଛନ୍ତି ଫୁରୁସତ୍ ନ ଥିଲେ ଅପେକ୍ଷା କରିବେ ।
ଡୁଙ୍ଗର—ବହୁତ ଆଚ୍ଛା, ଯାଓ ।

( ଦରୱାନ୍ ଚାଲିଗଲା )

[ ମାଲିକ ହେଲେ ଏପରି ଆର୍ଟ ଦେଖାଇବାକୁ ହୁଏ । ]

ଦରବାନ—( ଦ୍ୱାର ପାଖରୁ ଫେରି ) ଜି ! ହଜୁର ।
ଡୁଙ୍ଗର—କେୟସୀ ଔରତ୍ ?
ଦରବାନ—ବହୁତ ଖୁବ୍ ସୁରତ୍ ।

( ଡୁଙ୍ଗରଙ୍କ ମୁଖର କର୍କଶତା ଦୂର ହୋଇ ମିଠା ପ୍ରସନ୍ନତା ଖେଳିଗଲା । )

ଡୁଙ୍ଗର—ଉମର୍ ?
ଦରବାନ—ଚୌଦ୍ଦ ପନ୍ଦର ହଜୁର୍—ଚୌଦ୍ଦ ପନ୍ଦର ।
ଡୁଙ୍ଗର—[ ମଧୁର ହସି ହସି ] ସଲାମ୍ ଦୋ—

[ ଦରବାନ୍ ଚାଲିଗଲା । ଡୁଙ୍ଗର ଏକ ପାଖରେ ଥିବା ଡ୍ରେସିଂ ଟେବୁଲ ପାଖକୁ ଝଟ୍ ଚାଲିଯାଇ ଟାଇଟା ସଜାଡ଼ି ନେଲେ ଓ ବ୍ରୁସ୍ ପଟା ଥରେ ମୁଣ୍ଡରେ ବୁଲାଇ ନେଇ ଏ ପାଖ ସେ ପାଖ କରି ନିଜର ମୁଖଶ୍ରୀଟାକୁ ଯାଞ୍ଚ କରିନେଲେ । ତା'ପରେ ଆପଣା ଚେୟାରରେ ବସି ପଡ଼ି ପୁଣି ଗମ୍ଭୀର ହୋଇଗଲେ । ]

( ଏହି ସମୟରେ ଗୋଟିଏ କିଶୋରୀ ଅତି ସନ୍ତର୍ପଣରେ ପ୍ରବେଶ କରି ଅଭିବାଦନ କଲା । ଡୁଙ୍ଗର ଦୃଷ୍ଟି ତଉଲାଇ କଲେ—ବୟସ ପନ୍ଦର କି ଷୋହଳ—ବରଂ ପନ୍ଦର ହେବା ବେଶି ସମ୍ଭବ—ଛନଛନିଆ ଚେହେରା—ସଳଖ ନାକ—ଢଳ ଢଳ ଆଖି ...... )

ବାଳିକା—ଗୁଡ଼ ମର୍ଣ୍ଣିଂ ସାର୍ !
ଡୁଙ୍ଗର—ଗୁଡ଼ ମର୍ଣ୍ଣିଂ; ତୁମପାଇଁ ମୁଁ କ'ଣ କରିପାରେଁ ?
ବାଳିକା—ମୋ ନାମ ଲଳିତା, ନାୟିକା ପାଇଁ ମୁଁ ଆପଣଙ୍କ ସାହାଯ୍ୟ ଭିକ୍ଷା କରିବାକୁ ଆସିଛି ।
ଡୁଙ୍ଗର—ଓଃ, ଠିକ୍ ନାୟିକା । ସୁନ୍ଦରୀ ଗାର୍ଲଙ୍କ ପାଇଁ ନାୟିକା ଆବଶ୍ୟକ—ଆଚ୍ଛା ଠିକ୍ କ'ଣ ଚାହଁ ତୁମେ ?
ଲଳିତା—ମୁଁ ଏହି ଫିଲ୍ମରେ ପଶିବାକୁ ଚାହେଁ । ଆପଣ ଦୟାକଲେ—( ବାଳିକା ତଳକୁ ମୁହଁ ପୋତିଲା । )
ଡୁଙ୍ଗର—ନିଶ୍ଚୟ, ନିଶ୍ଚୟ—ଆମ ଦେଶରେ କଞ୍ଚା ମାଲ ( Raw materials )ର ଅଭାବ ନାହିଁ ତ—କେବଳ ବୁଦ୍ଧିଲ—ଟିକିଏ ଠେଲା ( Backing )—ଆଉ ଶିକ୍ଷା ( Training )—ଏତିକି ହେଲେ ଆମ ଆକ୍ଟରମାନେ ଯେ କାହିଁକି ହଲିଉଡ଼୍ର ସମକକ୍ଷ ହୋଇ ନ ପାରିବେ ତାର

କୌଣସି କାରଣ ନାହିଁ । ତେବେ ସେଥିପାଇଁ ପକ୍କା ହାତର ଗାଇଡେନ୍‌ସ ( Guidance ) ପାଇବା ଦରକାର ।

ଲଳିତା—ମୁଁ ସେଥିପାଇଁ ଆପଣଙ୍କଠାକୁ ଆସିଛି । ମୋର ଜୀବନର ଆକାଙ୍‌କ୍ଷା (ambition) ମୁଁ ଜଣେ ବଡ଼ ଷ୍ଟାର୍ ହେବି ।

ଡୁଙ୍ଗର—ଓଃ, ଷ୍ଟାର ! ସେ ତ ମୋ ହାତର କଥା ଏଇପରି କେତେ ଜଣଙ୍କୁ କରେଇ ଦେଲି ଏଇ ହାତ ( ହାତ ଦେଖାଇଲେ ) ଏଇ କାନନ, ଦେବିକା, ଲୀଳା, ପୁଷ୍ପା .........

ଲଳିତା—ତେବେ ଆପଣଙ୍କଠାରୁ ଏଇ ଉତ୍ସାହ, ଆଶ୍ୱାସନା ପାଇ ମୁଁ ଧନ୍ୟ ହେଲି । କେବେ ବା କେଉଁବେଳେ ପୁଣି ଆସିବି କହିଲେ .........

( ସଲଜ୍ଜ ଭାବରେ ଉତ୍ତର ପ୍ରତ୍ୟାଶା କରି ଲଳିତା ଛିଡ଼ା ହେଲା, ଅଥଚ ଗମନୋଦ୍ୟତା । ତାହା ଦେଖି ଡୁଙ୍ଗର ଭାବିବାକୁ ଲାଗିଲେ— "ଆରେ ଚାଲିଯିବ ନା କ'ଣ ! ଏ ସୁବିଧାଟା ପୁଣି ନ ମିଳି ବି ପାରେ ତ ! ଯଦି ପୁଣି ତାର ମନ ବଦଳିଯାଏ କିମ୍ବା କୁଆଡ଼ୁ ବାଧା ପାଏ— ନ ହେଲେ ଆଉ କୋମ୍ପାନୀକୁ ଚାଲିଯାଏ ! ତାଙ୍କର ମନେ ପଡ଼ିଗଲା କିଛିଦିନ ପୂର୍ବରୁ କମଳା ଠିକ୍ ଏହିପରି ଅବସ୍ଥାରେ ତାଙ୍କଠାକୁ ଆସିଥିଲା । ଏହିପରି ଭାବରେ ଏଇଠି ଛିଡ଼ା ହୋଇଥିଲା । ସେ ତାକୁ ଏହିପରି ଆଶା ଭରସା ଦେଇ କପଟ ହାସ କରିଥିଲେ । ମାଇକିନା ଜାତିଟା କି ବୋକା ! ବିଶେଷତଃ ୟଂ ଗାର୍ଲସ୍ । ଟିକିଏ ଲୋଭ ଦେଖାଇ ଦେଲେ ତାଙ୍କର ଆଉ ଅଦେୟ କିଛି ନ ଥାଏ । ଏହା ଭାବି ମନେ ମନେ ମିଃ. ଡୁଙ୍ଗର ଟିକିଏ ଆମୋଦ ଅନୁଭବ କଲେ । ଏଣେ ଭିତରର ସ୍ନାୟୁଗୁଡ଼ାକ ଝମ୍ ଝମ୍ କରି ଉଠିଲା । ଶିରାରେ ଶିରାରେ ରକ୍ତ ଗରମ ହୋଇ ଉଠିଲା । ସେ ଆପଣାର ଭାବକୁ ଚାପି କହିଲେ । )

ଡୁଙ୍ଗର—ବେଶ୍, ଲଳିତା, ଡିଅର ଲଳିତା, ତମେ ମୋର ପାର୍ଟନର ହେଲ ଆଜିଠାରୁ—ନାହିଁ ?

ଲଳିତା—ସେ ଆପଣଙ୍କର ଅନୁଗ୍ରହ ।

ଡୁଙ୍ଗର—( ହସି ) ଅନୁଗ୍ରହ ନୁହେ ମାଇ ଡିଅର୍, କର୍ତ୍ତବ୍ୟ—ସିର୍ଫ କର୍ତ୍ତବ୍ୟ । ଦେଶପାଇଁ, ଆର୍ଟ ପାଇଁ ମୋ ପରି ନଗଣ୍ୟ ଆର୍ଟିଷ୍ଟର ଏହା କର୍ତ୍ତବ୍ୟ ନୁହେଁ କି ?

ଲଳିତା—ତେବେ କେବେଠାରୁ ଆରମ୍ଭ କରିବେ ?

ଡୁଙ୍ଗର—କେବେଠାରୁ ! କାହିଁକି—ବିଳମ୍ବ କରିବାର ଦରକାର କଅଣ ! ଆଜିଠାରୁ ଏଇ ମୁହୂର୍ତ୍ତରୁ—( ଟିକିଏ ରହିଗଲେ ଡୁଙ୍ଗର; ଲଳିତା ଟିକିଏ ଚଞ୍ଚଳ ହୋଇ ଉଠିଲା । ) ଆଚ୍ଛା, ଲଳିତା, ତମର ଆଗରୁ କିଛି ଟ୍ରେନିଂ ନାହିଁ—କୌଣସି ପ୍ରକାରର ? )

ଲଳିତା—ନା, ସିମିତି କିଛି ନୁହେ—ତେବେ ଆମ ସ୍କୁଲ ନାଟକରେ ମୁଁ ଅନେକ ଥର ପାର୍ଟ ନେଇଛି ଓ ପ୍ରଶଂସା ପାଇଛି ।

ଡୁଙ୍ଗର—ବେଶ୍, ବେଶ୍, ସେତିକି ମୁଁ ଚାହେଁ; ଟିକିଏ ମୂଳଦୁଆ— ହଁ—ଆଚ୍ଛା—ତମେ ଚାଲି ଆସିଲ ମୋ ପାଖକୁ— ଦେଖେଁ ତମର ଚାଲିବାର ପୋଜ୍‌ଟା ( pose ) ।

( ଲଳିତା ଡୁଙ୍ଗରଙ୍କ ପାଖକୁ ଚାଲି ଆସିଲା । ଡୁଙ୍ଗର ଉଠି ପଡ଼ି ଏକ ପାଦ ଆଗେଇ ଗଲେ ଓ ହଠାତ ଲଳିତାର କପୋଳରେ ଚୁମ୍ବନ କଲେ । ଲଳିତା ସଂକୁଚିତା ହେଲା ନାହିଁ—ସହଜ ଭାବରେ ଛିଡ଼ା ହୋଇ ରହିଲା । ଡୁଙ୍ଗର ପୁଣି ଆସନରେ ବସିଲେ । )

ଡୁଙ୍ଗର—ଅଲ୍ ରାଇଟ୍ । ମୁଁ ପରୀକ୍ଷା କରୁଥିଲି ଠିକ୍ ହେଲା ତୁମେ ମୁଁ ବାଜିମାରି କହୁଛି ଏ କେତେଟା ଦିନରେ ତମକୁ ଗୋଟାଏ ନାମଜାଦା ଷ୍ଟାର ବନେଇ ଦେବି । ......

ହଁ—କଥାଟା କ'ଣ କି, ଏ ମାମଲାଟାର ଅସଲ କଥା ହଉଛି—ପ୍ରେମ କରିବା । ସେଇଟା ଟିକିଏ ଅଭ୍ୟାସ କରି ନେବାକୁ ହେବ । ଠିକ୍ ସ୍ୱାଭାବିକ ଭାବରେ କିମିତି ପ୍ରେମ କରାଯାଏ—ଏଇଟାଇ ହଉଛି ଏହାର ରହସ୍ୟ (Secret) —ବୁଝିଲ ?

( ଲଳିତା ଖାଲି ମୁଣ୍ଡ ହଲାଇଲା )

ଡୁଙ୍ଗର—ବର୍ତ୍ତମାନ ତୁମେ ଫେରି ଚାଲିଗଲ ଏଠୁ । ମୁଁ ଦେଖେଁ ପଛ ଆଡ଼ର ପୋଜ୍‌ଟା କିମିତି ରହୁଛି ।

[ ଲଳିତା ପୁଣି ଫେରିପଡ଼ି ଚାଲିଗଲା ଓ ଡୁଙ୍ଗର ବି ତା ପଛେ ପଛେ ଚାଲିଗଲେ । ଦୁଇ ପାଦ ଚାଲି ଯାଇ ପଛଆଡ଼ୁ ଲଳିତାର ବେକରେ ହାତ ଦେଇ ଭିଡ଼ି ଆଣିଲେ ଓ ଏଥର ରକ୍ତିମ ଗାଲ ଉପରେ ଗମ୍ଭୀର ଚୁମ୍ବନଟାଏ ବସାଇ ଦେଲେ । ]

ଡୁଙ୍ଗର—ଏଇ ଠିକ୍ ! — ଖୁବ୍ ସ୍ୱାଭାବିକ ( natural )— ଆର୍ଟିଷ୍ଟର ସବୁ ଲକ୍ଷଣ ଅଛି ( born artist ) ଆଚ୍ଛା, ଆଉ ଗୋଟାଏ ଟେଷ୍ଟ ( test )ରେ ଆଜିକାର ପାଠ ( lesson ) ଶେଷ ହେବ ।

[ଡୁଙ୍ଗର ଲଳିତାର ହାତ ଧରି ନିଜର ଆସନ ପାଖକୁ ଆସି ଆପେ ବସି ପଡ଼ିଲେ ଓ ଲଳିତାକୁ ଟାଣି ନେଇ କୋଳରେ ବସାଇ ଦେଲେ । ଲଳିତା ବିନା ଆପତ୍ତିରେ ବସି ପଡ଼ିଲା । ]

ଡୁଙ୍ଗର—ଏବେ ତୁମର ବାମ ହାତଟା ମୋ ଗଳାରେ ଛନ୍ଦି ଦିଅ—ଆଉ ତୁମର ମଥାଟି ଏହିପରି ଭାବରେ ମୋ ସ୍କନ୍ଧ ଉପରେ ରଖ ।

[ ଡୁଙ୍ଗର ଲଳିତାର ହାତକୁ ଓ ମଥାକୁ ବାଗେଇ ଦେଲେ ଏବଂ ନିଜ ଡାହାଣରେ ତାର ମୁହଁଟି ଧରି ତାର ଅଧରରେ ···]

[ ଟକ୍ କରି ଗୋଟାଏ କ ଶବ୍ଦ ଶୁଣି ଡୁଙ୍ଗର ଚମକି ପଡ଼ି ଦୁଆର ଆଡ଼କୁ ଚାହିଁ ଦେଲା ବେଳକୁ କମଳା ଗୋଟାଏ କେମେରା ଧରି ଛିଡ଼ା ହୋଇଛି । ସେ ଧଡ଼ ପଡ଼ ହୋଇ କହିଲେ ।]

ଡୁଙ୍ଗର—କମଳା ! ତୁମେ କି ଅଧିକାରରେ ମୋ ଖାସ୍ କାମରାକୁ ପ୍ରବେଶ କଲ ? ଜାଣ—

କମଳା—ଜାଣେ, ସବୁ ଜାଣେ ମହାଶୟ ! ଖାଲି ଜାଣେ ନୁହେଁ—ଏଇ ତାର ପ୍ରମାଣ ବି ରଖି ସାରିଛି ( କେମେରା ଟେକି ଦେଖାଇଲା । )

ଡୁଙ୍ଗର—କଣ କହୁଛ ତୁମେ—ମତଲବ କଣ ?

କମଳା—ବୁଝି ପାରୁ ନାହାନ୍ତି ମତଲବଟା ?

ଆପଣ ଖାସ୍ କାମରା ଭିତରେ ଗୋଟିଏ ବାଳିକା ସହିତ କିପରି ପ୍ରେମାଭିନୟ କରୁଥିଲେ ତାର ପ୍ରମାଣ ଏହି କେମେରାରେ ରହିଛି । ଏହାକୁ ମୁଁ ସବୁ ଦୈନିକ କାଗଜରେ ପ୍ରକାଶ କରିବି ଆଉ ମାଲିକମାନଙ୍କୁ ଦେଖାଇ ଆପଣଙ୍କର ସର୍ବନାଶ କରିବି, ଏହାଛଡ଼ା ଲଳିତାର ଇଜ୍ଜତର ଦାମ ବି ଅଛି । ଶେଷରେ ଏ ଫଟୋ ଆପଣଙ୍କର ସ୍ତ୍ରୀଙ୍କ ଠାକୁ ପଠାଇବି, ସେ ଦେଖିବେ ତାଙ୍କର ପ୍ରିୟ ବିଶ୍ୱାସୀ ବୁଢ଼ା ସ୍ୱାମୀଙ୍କର କୀର୍ତ୍ତି । ଜାଣିଲେ ଏଥର ?

[ ଡୁଙ୍ଗର ଏକାବେଳେକେ ହତଦମ୍ଭ ହୋଇ ପଡ଼ିଲେ, ପାଟିରୁ ଛେପ ଶୁଖିଗଲା ତାଙ୍କର । ବହୁତ ଚେଷ୍ଟା କରି କଥା କହିଲେ ]

ଡୁଙ୍ଗର—କମଳା, କ୍ଷମା କର ଏଇଥରକ, ମୋର ବଡ଼ ଭୁଲ ହୋଇ ଯାଇଛି । ମୁଁ ଖାଲି ଗୋଟାଏ ଟେଷ୍ଟ (Test) କରୁଥିଲି ।

କମଳା—ଆପଣଙ୍କ ଟେଷ୍ଟ ମୁଁ ବାହାର କରି ଦେଉଛି । ମନେ ଅଛି ତ ସେଦିନ ଆପଣ ଏହିପରି ଟେଷ୍ଟ କରିବା ବାହାନାରେ, ଟ୍ରେନିଂ ଦେବା ଛଳରେ ମୋତେ ଏହିପରି କରିଥିଲେ । ଗୋଟାଏ ଷ୍ଟାର ବନେଇ ଦେବା ଲୋଭ ଦେଖାଇ ଆପଣ ମୋ ଉପରେ କି ଅତ୍ୟାଚାର କରି ନାହାନ୍ତି ! ମୁଁ ସବୁ ନୀରବରେ ସହ୍ୟ କରିଛି କେବଳ ସେଇ ଗୋଟାଏ ଆଶାରେ; କିନ୍ତୁ ଏଇତ ନ' ମାସରୁ ବେଶି ହୋଇଗଲା, ଷ୍ଟାର ହେବା ଦୂରେ ଥାଉ ଜୁଳୁଜୁଳିଆ ପୋକ ହେବାର ବି ନାମ ଗନ୍ଧ ନାହିଁ । ଆପଣ ନିଆଁଖୋର, ଲମ୍ପଟ, ଧଡ଼ିବାଜ୍··

ଡୁଙ୍ଗର—( ପାଖକୁ ଯାଇ ହାତ ଧରି ପକାଇଲେ )

କମଳା, ମିସ୍ କମଳା, ସବୁ ଦୋଷ ମୋର, ମୋତେ କ୍ଷମା କର । ଏ କେଳେଙ୍କାରିରୁ ମୁକ୍ତ ଦିଅ । ମୁଁ ଜାଣେ ତୁମେ ଦୟାବତୀ, ତୁମର ହୃଦୟ ଅଛି ।

କମଳା—ହୃଦୟଟା, ଥିଲା ଏକ ସମୟରେ; କିନ୍ତୁ ସେଟା ପୋଡ଼ି ଯାଇଛି । ସେଥିପାଇଁ ଆପଣଙ୍କପରି ବଦ୍‌ମାସକୁ ଫାନ୍ଦରେ ପକେଇବା ପାଇଁ ଲଳିତାକୁ ଆଧାର (bait) କରି ପଠାଇ ଥିଲି; ଲଳିତା ମୋର ସାନ ଭଉଣୀ ।

ଡୁଙ୍ଗର—କଣ କଲେ ତୁମେ ସନ୍ତୁଷ୍ଟ ହେବ କମଳା ? ଯାହା କହିବ ମୁଁ କରିବାକୁ ପ୍ରସ୍ତୁତ ଅଛି ।

କମଳା—ମୁଁ ହିସାବ କରି ରଖିଛି ମୋତେ ଆପଣ ବାର ଥର ଓ ଲଳିତାକୁ ତିନିଥର ଚୁମ୍ବନ କରିଛନ୍ତି । ପ୍ରତି ଚୁମ୍ବନର ମୂଲ୍ୟ ଦୁଇଶ କରି ତିନି ହଜାର ଟଙ୍କା ଆପଣ ଦେଇ ଦେଲେ ଏ ନେଗେଟିଭ୍‌ଟା ମୁଁ ଏଇଠି ବାହାର କରି ଦେଇଯିବି ।

ଡୁଙ୍ଗର—( ଚମକି ପଡ଼ି ) ତି-ନି-ହ-ଜା-ର । ଏତେ ମୁଁ ପାଇବି ନାହିଁ ।

କମଳା—ନ ହେଲେ ନାହିଁ, ମୁଁ ଆପଣଙ୍କୁ ବାଧ କରୁ ନାହିଁ । ଆ, ଲଳିତା ।

ଡୁଙ୍ଗର—ଏ, ଏ କମଳା, ଟିକିଏ ରହ । ଆଉ ଟିକିଏ ବିଚାର କର—ବେଜାୟ ଅନ୍ୟାୟ କରୁଛ ।

କମଳା—ଆପଣଙ୍କ ଅନ୍ୟାୟ ତୁଳନାରେ କିଛି ନୁହେଁ ।

ଡୁଙ୍ଗର—ମୁଁ ଦୁଇ ହଜାରକୁ ରାଜି ଅଛି ।

କମଳା—ତିନିରେ ତିନିଟା ଶୂନରୁ ଏକ ଅଧଲା କମ୍ ନୁହେଁ । ଆସ ଲଳିତା ।

ଡୁଙ୍ଗର—ଆଗ ନେଗେଟିଭ ବାହାର କର ।

କମଳା—ଟଙ୍କା ପାଇଲେ କଲି ।

(ଡୁଙ୍ଗର ଦରଜା ଖୋଲି ଚେକ୍ ବହି ବାହାର କଲେ ଓ ଲେଖିବାକୁ ଲାଗିଲେ । କମଳା ଓ ଲଳିତା ପରସ୍ପରକୁ ଚାହିଁ ହୋଇ ମୁରକି ମୁରକି ହସୁ ଥାଆନ୍ତି ।)

# ମହାମିଳନ

( ଏକାଙ୍କିକା ନାଟକ )

( ଭାରତରେ ହିନ୍ଦୁ-ମୁସଲମାନ ବିରୋଧ ଦୂର କରି ଭାଇ ଭାଇ ମଧ୍ୟରେ ଚିର ମିଳନ କିପରି ହେବ, ମାନ୍ୟବର ଆଗା ଖାଁ ଓ ମହାତ୍ମା ଗାନ୍ଧୀ ଭେଟାଭେଟି ହୋଇ ଉପାୟ ନିର୍ଦ୍ଧାରଣ କରିଅଛନ୍ତି )
[ ମହାତ୍ମାଜୀ ଷାଗସନରେ ବସି ସୂତା କାଟୁଛନ୍ତି, ଆଗା ଖାଁ ପ୍ରବିଷ୍ଟ ହେଲେ ]

ଗାନ୍ଧୀ—ଆସିବାକୁ ଆଜ୍ଞା ହେଉ, ନମସ୍ତେ ।

ଆଗା—ଆଦାବ୍—ମର୍ଣ୍ଣିଂ—ଆଶାକରେଁ ବିକଶି ଓ ଚର୍ଖା ସହିତ ଆପଣ ସୁସ୍ଥ ଅଛନ୍ତି ।

ଗାନ୍ଧୀ—ଧନ୍ୟବାଦ—ହଁ ବସନ୍ତୁ ।
( ଆଗା ଖାଁ ଚେୟାରରେ ଉପବେଶନ କଲେ )

ଆଗା—ତା’ ପରେ—ମିଃ ମହାତ୍ମା ।

ଗାନ୍ଧୀ—( ହସି ) ଏକାଥରକେ ଅସଲ କଥା ପକାଇବା । କାରଣ, ମୋର ବହୁତ ଜରୁରୀ କାମ ଅଛି ।

ଆଗା—ମୋର ବି; ଆଜିରେ ଗୋଟାଏ ଘୋଡ଼ଦୌଡ଼ ମିଟିଂରେ ମୋତେ ଯୋଗ ଦେବାକୁ ପଡ଼ିବ ।

ଗାନ୍ଧୀ—ବେଶ୍, ଆପଣଙ୍କର ଓ ମୋର ସବୁ କଥା ମିଳି ଯାଉଛି । ଏଇଟା ଆମର ମିଳନର ସୂଚନା ।

ଆଗା—ଆପଣ ମହାତ୍ମା ଲୋକ—ଆପେ ମାଲୁମ ପଡ଼ି ଯାଉଥିବ ।

ଗାନ୍ଧୀ—ଆପଣ ବି ତ ଊଣା ନୁହନ୍ତି—ସ୍ୱୟଂ ଆ-ଗା-ଖାଁ ! ଆମେ ସବୁ ଆପଣଙ୍କ ପିଛୁ ଧରି ଚାଲିବୁ ନା ?

ଆଗା—ଯାହା କହନ୍ତୁ ଏଇ ମିଃ ଜିନ୍ନା ସବୁ ଗୋଳମାଳ କରି ଦେଉଛନ୍ତି—ନୋହିଲେ କେଉଁ ଦିନୁ ହିନ୍ଦୁ ମୁସଲମାନ ମିଶି ଯାଆନ୍ତେଣି ।

ଗାନ୍ଧୀ—ମୁଁ କାହାରି ଦୋଷ ଦିଏ ନାହିଁ । ବରଂ ସେ ମିଳନର ଉପକାରିତା ଓ ପ୍ରୟୋଜନୀୟତା ପ୍ରକଟ ଓ ପ୍ରମାଣିତ କରି ଦେଉଛନ୍ତି ।

ଆଗା—ସେଥିରେ କଣ ଅଛି—ମୁଁ ହେଉଛି ପ୍ରକୃତରେ ମୁସଲମ୍ ନେତା—ଯାହା କହିବି ସବୁ ମାନିବେ । ମୁସଲମ୍ ଲିଗକୁ ପଚାରେ କିଏ ?

ଗାନ୍ଧୀ—ମୋ କଥା ଯେ ହିନ୍ଦୁ ନ ମାନିବେ ତାହା ନୁହେଁ—ଯଦିଓ ମହାସଭାଟା କେତେକ ଅଡୁଆ କରିବାକୁ ଚେଷ୍ଟା କରିପାରେ ।

ଆଗା—ଯଥାର୍ଥ, ମହାତ୍ମାଙ୍କ କଥା ନ ଶୁଣି କଣ ବାଜେ ......

ଗାନ୍ଧୀ—ଖୋଦ ଇସଲାମ ପ୍ରତିନିଧିଙ୍କ କଥା ନ ଶୁଣି କଣ ......

ଆଗା—ଆମେ ତେବେ କେତେଗୁଡ଼ାଏ ପ୍ରସ୍ତାବ ଲିପିବଦ୍ଧ କରି ପ୍ରଚାର କରିବା ବିଚାର ଓ ଆଲୋଚନା ନିମନ୍ତେ ?

ଗାନ୍ଧୀ—ସେଟା କରିବା ମସ୍ତ ଭୁଲ । ଆପଣ ବିଲାତରେ ରହି ରହି ଏଠା ଲୋକଙ୍କ ସ୍ୱଭାବ ଗତି ମନୋଭାବ ଜାଣିନାହାନ୍ତି । ଭଲକଥା ଯଦି ଏମାନଙ୍କ ଆଗରେ ପକାଇ ପରାମର୍ଶ ମାଗିବେ, ତେବେ ଜାଣିଥିବେ ସେମାନେ ନାନାପ୍ରକାର ଅନ୍ଧି ସନ୍ଧି ନିକୁଟି, ବାଛି, ସବୁ ଭାଙ୍ଗି ଥୋଇବେ । ଆଉ ଯଦି କିଛି ନ ପଚାରି ନ ବିଚାରି ଆଜ୍ଞା ପତ୍ରିକା ଛାଡ଼ିବେ, ତେବେ ସେମାନେ ବେଦ, କୋରାନ୍ ପରି ତାକୁ ନିର୍ବାଧରେ ମାନିସିବେ ।

ଆଗା—ଆପଣ ଜନସାଧାରଣଙ୍କ ମନୋଭାବ ବୁଝିବାରେ ପକ୍କା ଓସ୍ତାଦ୍ ଅଛନ୍ତି ।

ଗାନ୍ଧୀ—ଏଇ କାମ ବରାବର କରି ଆସୁଛି ଯେ—

ଆଗା—ଠିକ୍ ଶୁଣିଆ ଏକା—ଆପ୍ଣ ଏ ହିକ୍‌ମତି ଗୁଡ଼ିକ ଶିଖିଲେ କେଉଁଠୁ ?

ଗାନ୍ଧୀ—ହିକ୍‌ମତି କିଛି ନୁହେଁ—ସାଧନା ।

ଆଗା—ଆସନ୍ତା ଡର୍‌ବି ଘୋଡ଼ଦୌଡ଼ (Derby Sweep) ବେଳେ ମୋତେ ଟିକିଏ ସାହାଯ୍ୟ କରିବେ କି ? ଖାଲି ଜିତା ନମ୍ବରଟା (winning number) ......

ଗାନ୍ଧୀ—ଏ ସବୁ ବାଜେ କଥା ଛାଡ଼ନ୍ତୁ । ଯଉ ଦରକାରୀ କାମ ଚାଲିଥିଲା ତାହା ଚାଲୁ ।

ଆଗା—ଆପଣ ଓ ମୁଁ ବସି ଯାହା ଫଏସଲ କରିଦେବା ସେଇଟା ତ କାଏମ ହୋଇଯିବ ।

ଗାନ୍ଧୀ—ତା ହେଉ ପଛକେ, ଆମର ତ ସବୁ ଏକମତରେ ଠିକ କରିବା ଉଚିତ ।

ଆଗା—କନ୍ତୁ ଧର୍ମ ଦୃଷ୍ଟିରେ ବଣ୍ଟା ନଯାଉ, ସେଇଟାକୁ କଣ
କରିବା ?

ଗାନ୍ଧୀ—ଧର୍ମ !—ଆରେ ବାପ୍‌ରେ ! ଧର୍ମରେ ଟିପା ଛୁଇଁବା ନାହିଁ ।
ସେଥିକରେ ହାତ ଦେଲେ ତ ସବୁ ଅସମ୍ଭାଳ ହୋଇ
ପଡ଼ିବ । ବରଂ ଧର୍ମର ଦୋହାଇ ଦେଇ କାମ ହାସଲ
କରିନେବା ସହଜ ।

ଆଗା—ତେବେ, ଆଗୃହ ବ୍ୟବହାର, ପୋଷାକ ପରିଚ୍ଛଦ ଇତ୍ୟାଦି ?

ଗାନ୍ଧୀ—ହଁ—ନାମ, ଭାଷା ଇତ୍ୟାଦି ।

ଆଗା—ଆଠପଣୀ ଭାଗ ମଧ୍ୟରେ ସବୁ କଥା ହେବ ତ ?

ଗାନ୍ଧୀ—ତା ନୁହେ କଣ ! ତେବେ ଜ୍ୟେଷ୍ଠ ଅଂଶଟା ······

ଆଗା—ନାହିଁ, ସେ କଥା ହେବ ନାହିଁ ।

ଗାନ୍ଧୀ—ଆଚ୍ଛା; ନାହିଁ ତ ନାହିଁ ।

ଆଗା—ପ୍ରତ୍ୟେକ ଭାରତୀୟ ନିଜର ନାମ ଭିତରେ ଅଧେ ହିନ୍ଦୁ ଓ
ମୁସଲମାନୀ ରଖିବେ; ଯେପରି ଆଗା ଖାଁ ଗାନ୍ଧୀ, ମୋହନ
ଗୃହ ଗଫୁର୍, କାଲମ ଆଜାଦ ପଟେଲ ।

ଗାନ୍ଧୀ—ସଇ, ଖୁବ୍ ଭଲ ପ୍ରସ୍ତାବ । ତା ପରେ ପୋଷାକ ?

ଆଗା—ପୋଷାକଟା ୟୁରୋପୀୟ ହେଲେ ଭଲ ହୁଅନ୍ତା ।

ଗାନ୍ଧୀ—ନାହିଁ, ବିଦେଶୀ ଭାବ ଆସିଯିବ, ଆଉ ଆମର ଜଳ
ହାଓୟା ଓ ଅର୍ଥ ଦିଗରୁ ଦେଖିବାକୁ ଗଲେ—

ଆଗା—ବୁଝିଲି, କିନ୍ତୁ ଆପଣଙ୍କଭଳି ଲଙ୍ଗଳା (naked fakir)
ପୋଷାକ ବଡ଼ ଅସଭ୍ୟ ।

ଗାନ୍ଧୀ—ମୁଁ କଣ କହୁଛି ? ଯାହା ହେବ ଗୋଟାଏ ଜାତୀୟ ମୁନ୍ସିଆନୀ
ରହୁ । ଯାହା ଦେଖିଲାମାତ୍ରେ ଜଣେ ଭାରତୀୟ ବୋଲି
ଜଣାଯିବ ।

ଆଗା—ଆଚ୍ଛା ଧୋତି ନା ପାଇଜାମା ?

ଗାନ୍ଧୀ—ଧୋତି ଭଲ ।

ଆଗା—ପାଇଜାମା ଭଲ ।

ଗାନ୍ଧୀ—ଉଭୟ ଥାଉ ।

ଆଗା—ବେଶ୍ ।

ଗାନ୍ଧୀ—ଜାମାଟା କଣ ? ଅଚକନ ନା ପଞ୍ଜାବୀ ?

ଆଗା—ଅଚକନ୍ ।

ଗାନ୍ଧୀ—ତାହାହେଲେ ତା ଉପରେ ଜହରଲାଲୀ ଫତୁଆ ।

ଆଗା—ହେଲେ ହେଉ ।

ଗାନ୍ଧୀ—କଣ ଦାଢ଼ୀ କଥା ?

ଆଗା—ସମସ୍ତେ ଦାଢ଼ୀ ରଖନ୍ତୁ—କ୍ଷତି କଣ ?

ଗାନ୍ଧୀ—ସମସ୍ତେ କ୍ଷୌର ହୁଅନ୍ତୁ, କ୍ଷତି କଣ ? କିମ୍ବା ତ ପୁଣି—

ଆଗା—ଶଙ୍କର ଦେଓ, ସି: ସି: ଦାସ୍, ରବି ଠାକୁର ତ ପୁଣି···
ଆଉ ମଧ୍ୟ ହିନ୍ଦୁ ଫକୀରମାନେ ଦାଢ଼ୀ ରଖନ୍ତି ତ ।

ଗାନ୍ଧୀ—ହିନ୍ଦୁ ଫକୀର ବିଲକୁଲ କ୍ଷୌର ହୁଅନ୍ତି ମଧ୍ୟ ।

ଆଗା—ତେବେ ଏଥିରେ ଅଧାଅଧି ହିଟ ହେଉ ।

ଗାନ୍ଧୀ—କଣ ମୁସଲମାନ ଦାଢ଼ୀ ଆଉ ହିନ୍ଦୁ ଜଣ ରଖିବେ ?

ଆଗା—ତାହା ହେଲେ ତ separate electorate ହୋଇଗଲା ।
unit ହେବନି—ଯେପରି ଦୁଧ ଆଉ ପାଣି ।

ଗାନ୍ଧୀ—ତେବେ ମୁଁ ପ୍ରସ୍ତାବ କରେ କି ପ୍ରତ୍ୟେକ ଭାରତୀୟ
ଡାହାଣ ଓଠରେ ନିଶ ରଖି ବାଆଁଟା କ୍ଷୌର ହୁଅନ୍ତୁ ଓ
ବାଆଁ ଗାଲରେ ଦାଢ଼ୀ ରଖି ଡାହାଣଟା ଘୁଞ୍ଚି ଦିଅନ୍ତୁ ।

ଆଗା—ବହୁତ ଆଚ୍ଛା । ଏଟା ନୋଟ କରାଯାଉ ।
( ପ୍ୟାରେଲାଲ ନୋଟ କରି ରଖିଲେ )

ଆଗା—ଗୋଟାଏ କଥା ରହିଗଲା ତ !

ଗାନ୍ଧୀ—କେଉଁ କଥା ?

ଆଗା—ପୋଷାକର ରଙ୍ଗ କଥା ।

ଗାନ୍ଧୀ—ଠିକ୍ ଠିକ୍—ସେଟା କଣ ହେବା ଉଚିତ ?

ଆଗା—ସବୁଜ ( light green ) ମୁସଲମାନର ସେ ରଙ୍ଗ
ହେବ ଆଉମଧ୍ୟ ଆପଣଙ୍କର ରାମଚନ୍ଦ୍ରଙ୍କ ରଙ୍ଗ ବି ।

ଗାନ୍ଧୀ—ନାହିଁ—ଲାଲ ବା କମଳା ରଙ୍ଗ ଭଲ ।

ଆଗା—ଏଥିରେ ମୁଁ ନାରାଜ ।

ଗାନ୍ଧୀ—ସେଥିରେ ମୁଁ ବି ନାରାଜ ।

ଆଗା—ତେବେ half half ଅଧାଅଧି ଭାଗ ହେଉ ।

ଗାନ୍ଧୀ—ପୁଣି reservation of seats ତାହା ହେଲେ ମୁଁ
ଉପବାସ କରିବ ଯେ ।

ଆଗା—ଆଚ୍ଛା, ତେବେ ମିଶାମିଶି ଭାବେ ହେଉ—ଯେପରି ଲୁଣ
ଆଉ ପାଣି ।

ଗାନ୍ଧୀ—ନା, ଯେପରି ଫୁଲ ଆଉ ଗନ୍ଧ ! ଅର୍ଥାତ୍ ଲୁଗାର ଟାଣି
ହେବ ଲାଲ ଆଉ ଭରଣି ହେବ ସବୁଜ ।

ଆଗା—ବହୁତ ଆଚ୍ଛା ! କିନ୍ତୁ ଡାହାଣ ପାଖରେ ଗୋଟାଏ ସୂର୍ଯ୍ୟ ଓ
ବାଁ ପାଖେ ଚନ୍ଦ୍ର ରହିଲେ ଭଲ ହୁଅନ୍ତା ।

ଗାନ୍ଧୀ—ଚରଖାରେ ସୂର୍ଯ୍ୟ ଚନ୍ଦ୍ର ଉଭୟ ଅଛୁ ।

ଆଗା—ଆଚ୍ଛା ହେଉ—ଏବେ ଭାଷା କଥା ।

ଗାନ୍ଧୀ—ଭାଷାରେ ତ କିଛି ଗୋଳ ନାହିଁ—ହିନ୍ଦୀ ଓ ଉର୍ଦ୍ଦୁ
କହିବାକୁ ଗଲେ ଏକ ଭାଷା । ଯାହା ଖାଲି ଅକ୍ଷରଟା
ତଫାତ୍ ।

ଆଗା—ହୁଁ-ହୁଁ—(ମୁଣ୍ଡ ଟୁଙ୍ଗାରିଲେ)

ଗାନ୍ଧୀ—କିନ୍ତୁ ଏଥିରେ ତ ମୁସଲମାନ ଶବ୍ଦ; ଯେପରି ତୁର୍କିସ୍ଥାନ, ଆଫଗାନିସ୍ଥାନ ! ହିନ୍ଦୁସ୍ଥାନରୁ ହୋଇଛି ହିନ୍ଦୁସ୍ଥାନ ।

ଆଗା—ତଥାପି 'ହିନ୍ଦୁ' ଶବ୍ଦଟା ଥିବାରୁ ମୁସଲମାନମାନଙ୍କୁ କମିତକାଣ୍ଟା ବାଧୁଛି ।

ଗାନ୍ଧୀ—ଆଚ୍ଛା, ତେବେ ହିନ୍ଦୀର 'ହି' ଓ ଉର୍ଦ୍ଦୁରୁ 'ର୍ଦ୍ଦୁ' ନେଇ, କରାଯାଉ ହିର୍ଦ୍ଦୁ, ହିନ୍ଦୁସ୍ଥାନ ବା ଇଣ୍ଡିଆର ରାଷ୍ଟ୍ରଭାଷାର ନାମ ହେବ 'ହିର୍ଦ୍ଦୁ' ।

ଆଗା—ଭଲ କଥା; କିନ୍ତୁ ଆଗେ 'ହି' ନରଖି 'ର୍ଦ୍ଦୁ' ଆଗ ରଖିଲେ ?

ଗାନ୍ଧୀ—ଉଚ୍ଚାରଣ ଅସୁବିଧା, ତାପରେ ହିନ୍ଦୀ ହେଉଛି ବଡ଼ ଭଉଣୀ ।

ଆଗା—ଆଚ୍ଛା ବେଶ୍, କିନ୍ତୁ ଅକ୍ଷର ?

ଗାନ୍ଧୀ—ଅକ୍ଷର ଉଭୟ କାଏମ; ଯେ ଇଚ୍ଛା କରିବ ଦେବ ନାଗରୀରେ ଲେଖିବ ଓ ଯେ ଚାହିଁବ ଫାରସି ଅକ୍ଷର ବ୍ୟବହାର କରିବ ।

ଆଗା—ତାହାହେଲେ ଆଉ ମିଳାମିଶା ହେଲା କେଉଁଠି ? ସ୍ୱତନ୍ତ୍ରତା ରହିଗଲା ଯେ ?

ଗାନ୍ଧୀ—ଆଉ କିଛି ଉପାୟ ନାହିଁ ତାର ।

ଆଗା—ଅଛି, ଅଛି, ରୋମାନ ଅକ୍ଷର ନିଆଯାଉ—ଯହିଁଥିରେ ଇଂରାଜୀ ଲେଖା ହେଉଛି । ଅକ୍ଷର ସଂଖ୍ୟା ଜମା ଛବିଶଟି ଶିଖିବାକୁ ସହଜ । ଯୁକ୍ତାକ୍ଷର ନାହିଁ, ମାତ୍ରା ନାହିଁ— ଛାପାଖାନାକୁ ସୁବିଧା—

ଗାନ୍ଧୀ—କିନ୍ତୁ ବିଦେଶୀ ବୋଲି ···

ଆଗା—ଛାଡ଼ନ୍ତୁ ସେ କଥା—ଯେଉଁଟା ଭଲ, ବିଦେଶୀ ହେଲେ ବି ଆମର । ଧରନ୍ତୁ ଫାଉଣ୍ଟେନ୍ ପେନ୍, ଘଡ଼ି, ମଟର···

ଗାନ୍ଧୀ—ହଉ, ହିନ୍ଦୁ ମୁସଲମାନ ମିଳନ ପାଇଁ ଏହା କରାଯାଇ-ପାରେ—ଆପତ୍ତି ନାହିଁ ।

ଆଗା—ଆପତ୍ତି ଗୋଟିଏ କଥାରେ; କ'ଣକି ଇଂରାଜୀ ଅକ୍ଷରଗୁଡ଼ାକ ବାଆଁରୁ ଡାହାଣକୁ ଲେଖାଯାଏ—ଯେପରି ଦେବନାଗରୀ । କିନ୍ତୁ ଉର୍ଦ୍ଦୁ ଲେଖାହୁଏ ଡାହାଣରୁ ବାଆଁକୁ । ଏଣିକରେ ରୋମାନ ଅକ୍ଷର ଦେବନାଗରୀର ଜାତିଭାଇ ।

ଗାନ୍ଧୀ—ସେଥିକୁ ଉପାୟ କ'ଣ ?

ଆଗା—ମୁସଲମାନ ଆପତ୍ତି କରିବେ ଯେ । ଇଂରାଜୀ ଅକ୍ଷର ହେଉ, କିନ୍ତୁ ଡାହାଣରୁ ବାଆଁକୁ ଲେଖିବା ହେଉ ।

ଗାନ୍ଧୀ—ହିନ୍ଦୁ ଆପତ୍ତି କରିବେ ତହିଁରେ । ବରଂ ଏ ସମ୍ବନ୍ଧରେ ବି ଗୋଟାଏ ମଝିମଝିଆ ପନ୍ଥା ଦେଖାଯାଉ ।

ଆଗା—ଆପଣ କହନ୍ତୁ, ମହାତ୍ମା !

ଗାନ୍ଧୀ—ଚୀନା ଅକ୍ଷର ଦେଖିଛନ୍ତି ତ ! ଉପରୁ ତଳକୁ ଲେଖାଯାଏ । ଇଂରାଜୀ ଅକ୍ଷର ହେବ, ଚୀନା ପରି ଉପରୁ ତଳକୁ ଲେଖା ହେବ—ତା'ହେଲେ ହିନ୍ଦୁ ଓ ମୁସଲମାନ କାହାର ଆପତ୍ତି ରହିବ ନାହିଁ ।

ଆଗା—ଅତି ସୁନ୍ଦର ପ୍ରସ୍ତାବ । ନୋହିଲେ କି ଆପଣ ମହାତ୍ମା ! ଏ ବୋଧହୁଏ ଆପଣଙ୍କର ଅନ୍ତରର ଡାକ ( inner voice ) !

ଗାନ୍ଧୀ—ଆଉ କଣ ରହିଲା ମହାଶୟ ?

ଆଗା—ଆଉ କିଛି ନାହିଁ । ଏତିକି ହୋଇଗଲେ ତ ଆମେ ଗୋଟାଏ ଜାତି, ଗୋଟାଏ ଦେଶ, ଗୋଟାଏ ଶାସନ ହୋଇଗଲୁଁ । ( one Country, one People, one Govermmten.t )

ଗାନ୍ଧୀ—ଗୋରୁ ହାଣିବା କଥା ?

ଆଗା—ସେ କଥା ପକାଇଲେ ଧର୍ମରେ ହାତ ଦେବାକୁ ପଡ଼ିବ ।

ଗାନ୍ଧୀ—ନାହିଁ—ଯଦି ଅଳପୋଷିରେ ହୋଇପାରେ । କୋରବାନରେ ଗୋରୁ ବଦଳରେ ଯଦି ଆଉ କିଛି···

ଆଗା—ତେବେ ଛେଳି ?

ଗାନ୍ଧୀ—ଛେଳି ଯେ ମୋର ଲହୁଲଗା ସ୍ୱଜାତି ! ଘୋଡ଼ା ହେଲେ···

ଆଗା—ଘୋଡ଼ା ତ ମୋର ଗୋତ୍ର ।

ଗାନ୍ଧୀ—ଏକାବେଳେ ଉଠାଇ ହେବ ନାହିଁ ?

ଆଗା—କାଳୀ ମନ୍ଦିରରୁ ବଳି ଉଠିପାରିବ କି ?

ଗାନ୍ଧୀ—ଅସମ୍ଭବ !

ଆଗା—ତେବେ ଏ ବି ଅସମ୍ଭବ ।

ଗାନ୍ଧୀ—ଓଟ ହେଲେ ଚଳନ୍ତା ।

ଆଗା—ବଡ଼ ଦାମିକା ଜନ୍ତୁ—ତା ଉପରେ ଦୁଷ୍ପ୍ରାପ୍ୟ । ଚେଷ୍ଟା କରାଯାଉ ।

ଗାନ୍ଧୀ—ବଡ଼ଲାଟ ମନ ଉଣା କରିବେ ।

ଆଗା—ଏ କଥାଟାରେ ଆମ ଦୁହିଁଙ୍କ ମତ ଯେତେବେଳେ ମିଳୁ ନାହିଁ—ଆଉ ଜଣେ ମଧ୍ୟସ୍ଥଙ୍କୁ ପଚରାହେଉ । ସୀମାନ୍ତ ଗାନ୍ଧୀ ଗଫୁର ଖାଁଙ୍କୁ ଡାକନ୍ତୁ ।

ଗାନ୍ଧୀ—ଆଉ ଜଣେ ହିନ୍ଦୁଙ୍କୁ ଡକାଯାଉ । ରାଜେନ୍ଦ୍ର ପ୍ରସାଦ

( ଗଫୁର ଖାଁ ରାଜେନ୍ଦ୍ର ବାବୁ ପ୍ରବେଶ )

ଗାନ୍ଧୀ—ଆପଣ କହନ୍ତୁ ଖାଁ ସାହେବ—ଏପରି ଏକ ଜନ୍ତୁର ନାମ ଯେ କି ହିନ୍ଦୁର ବଳି କାମ ଓ ମୁସଲମାନର କୋରବାନ କାମ ଚଳାଇବ ।

**ଆଗା**—ଯେଉଁଥିରେ ଧାର୍ମିକ ବାଧା ନ ଥିବ କୌଣସି ପକ୍ଷର ଓ ଶସ୍ତା ହୋଇଥିବ ।

**ଗଫୁର୍**—(ଚିନ୍ତା କରି) ଦୁମ୍ବା, ଦୁମ୍ବା !

**ଗାନ୍ଧୀ**—ମେଣ୍ଢା ! ବହୁତ ଆଚ୍ଛା, ଭଲ ।

**ଆଗା**—ଭେଡ଼ ! ବଢ଼ିଆ ଚିଜ୍ ମଟନ୍ !

**ଗାନ୍ଧୀ**—ରାଜେନ୍ଦ୍ର ବାବୁ, ଗ୍ରାମୋଦ୍ୟୋଗ ଫଣ୍ଡ ତରଫରୁ ମେଣ୍ଢା ବୃଦ୍ଧିର ବନ୍ଦୋବସ୍ତ କର ।

ଗଫୁର୍—ହଁ ଶୀଘ୍ର କର; କାରଣ ଯେପରି ଦେଖାଯାଉଛି, ଆମ ସୀମାନ୍ତ ପ୍ରଦେଶରେ ବି ମେଣ୍ଢାର ଦୁର୍ଭିକ୍ଷ ପଡ଼ିବା ସମ୍ଭାବନା ।

ଆଗା—ସତ ଏକା ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନ୍ ତିନହେଁ ମିଳି ଯେତେବେଳେ ମେଣ୍ଢା ଶ୍ରାଦ୍ଧ ଆରମ୍ଭ କରିବେ, ଯେତେ ବୃଦ୍ଧି ହେଉ ପଛେ, ଭାରତରେ ଯେ ମେଣ୍ଢା ଜାତି ଦୁଷ୍ପ୍ରାପ୍ୟ ଓ ଶେଷେ ନିର୍ମୂଳ ହୋଇଯିବ, ଏହା ନିଶ୍ଚିତ କଥା ।

ଗାନ୍ଧୀ—ସେ ଭୟ ମୋର ବି ହେଉଛି—କିନ୍ତୁ ଉପାୟ କିଛି ଖୋଜି ପାଉନାହିଁ ।

( ସମସ୍ତେ ଚିନ୍ତା କରିବାକୁ ଲାଗିଲେ )

ରାଜେନ୍ଦ୍ର—(ଚହଲି ଉଠି) ମହାତ୍ମାଜୀ—ଖୁବ୍ ଉପାୟ ଅଛି ।

ସକଳେ—କଣ, କଣ ?

ରାଜେନ୍ଦ୍ର—ମେଣ୍ଢାର ଅଭାବ ବା ଅନାଟନ ଆମର କେବେ ହେବ ନାହିଁ ।

ସକଳେ—କି ରକମ ରାଜେନ୍ଦ୍ରବାବୁ ?

ରାଜେନ୍ଦ୍ର—'ଓଡ଼ିଆ' ନାମକ ଏକ 'ଦୁପାଦିଆ' ଜନ୍ତୁ ଅଛି—ସେମାନଙ୍କର ଅନ୍ୟ ନାମ—'ମେଣ୍ଢା' । ଏ କଥାରେ ସନ୍ଦ
ମିଛ ବିଶ୍ୱକୋଷରୁ ଦେଖନ୍ତୁ, ଅବା ରବିଠାକୁର, ପି: ସି:
ରାୟଙ୍କ ଭଳି କବି ଓ ବିଜ୍ଞାନୀଙ୍କୁ ପଚାରନ୍ତୁ । ଯଦି ଗୁଜ
ଗୋଡ଼ିଆ ମେଣ୍ଢାର ଅଭାବ ପଡ଼େ, ତେବେ ଓଡ଼ିଶା ଯେତେ ଇଚ୍ଛା ସେତେ ଯୋଗାଇ ପାରିବ ।

ଗାନ୍ଧୀ—ଭଲ ପଶମ ମିଳି ପାରିବତ ?

ରାଜେନ୍ଦ୍ର—ହଁ, ଉଲ ବି ମିଳିବ । ଖୁବ୍ ଉଦା ଉଲ୍ । ତେଲଙ୍ଗଠେଣି
ଆପଣ ଆଚାର୍ଯ୍ୟ ହରିହରଙ୍କୁ ଦେଖିଥିବେ ।

ଗାନ୍ଧୀ—ହଁ, ଦେଖିଥିଲି—କିନ୍ତୁ ଉଲଟା ପରୀକ୍ଷା କରି ନାହିଁ ।

ରାଜେନ୍ଦ୍ର—ନମୁନା ଚାହାନ୍ତି ତ ? ଏଇକ୍ଷଣି ପଣ୍ଡିତ ନୀଳକଣ୍ଠଙ୍କୁ ଟେଲିଗ୍ରାମ୍ କରି ଦେଲେ ସେ ସଶରୀରେ ଆସିଯିବେ ।

ଗାନ୍ଧୀ—ଓଡ଼ିଶାରେ ପ୍ରଚୁର କ୍ଷେନ ଅଛି—କିନ୍ତୁ ସେମାନେ କିଛି କରୁ ନାହାନ୍ତି । ଓଡ଼ିଆଙ୍କର ଦାରିଦ୍ର୍ୟ ଘୁଞ୍ଚାଇବାର ଏ
ଗୋଟାଏ ପ୍ରବଳ ପନ୍ଥା ଏକା । ସରଦାରଜୀଙ୍କୁ କହିଦିଅ
ସେଠା ମନ୍ତ୍ରୀମଣ୍ଡଳକୁ ଅର୍ଡ଼ର ଦିଅନ୍ତୁ ଏଇ ସେସନରେ ଗୋଟାଏ ବିଲ୍ ଆଣିବେ କି ଓଡ଼ିଆମାନେ ବାଧ୍ୟତାମୂଳକ ଉଲ୍ କଲଚର କରିବେ ।

ସକଳେ—ହଁ, ହଁ ।



# ସମସ୍ୟା

## ( ଏକାଙ୍କିକା ନାଟକ )

### ( ପ୍ରଥମ ଦୃଶ୍ୟ )

(ଲାଟ୍, ରାଜଓ୍ୱାଡ଼ ଦୂତ, ସେନାପତି କୋଠି ଭିତର ପ୍ରକୋଷ୍ଠରେ ଚା’ ପାନରତ)

ରା-ଦୂ—କିନ୍ତୁ ଏ ପରିସ୍ଥିତି ଯେପରି ବିପଦଜନକ ସେହିପରି ଅସହ୍ୟ ।

ଲାଟ—ତା କଣ ବୁଝି ପାରୁ ନାହିଁ । ତେବେ—

ରା-ଦୂ—‘ତେବେ’, ‘କିନ୍ତୁ’ର ଆଉ ସମୟ ନାହିଁ ଯେ—ଚାହୁଁ ଚାହୁଁ ଅତି ବଢ଼ିଗଲେ । ଏହି ସମୟରେ ମିଠା କଡ଼ା କରି ଦାବନ ନହେଲେ ଆମର ପ୍ରଭୁତ୍ୱ ଓ ଗୃହବର୍ତ୍ତିକ ଦାୟିତ୍ୱ ଆଉ ରହିଲା କେଉଁଠି ? ଆମେ କଣ ଘାସ କାଟିବାକୁ ରହିଛୁଁ ।

ଲାଟ—ସେ କଥା ଠିକ୍—କିନ୍ତୁ ଆମେ ଯେ ଏଣେ ପ୍ରତିଶ୍ରୁତି ଦେଇଛୁ । ଏ ସମୟଟାରେ ଗୋଟାଏ ଗୋଳମାଳିଆ ବାତାବରଣ ସୃଷ୍ଟି କରିବା—

ରା-ଦୂ—ସୃଷ୍ଟି ତ ହୋଇଗଲାଣି । ଆଉ ବାକି ଅଛି କଣ ? ଆପଣ ଏବେ ନିଜ ରୂପ କାଢ଼ନ୍ତୁ । ବେଶୀ ନୁହେଁ, ଗମ୍ଭୀର ହୋଇ ଟିକିଏ ବସି ଗଲେଇ —

ସେନା—ଆମେତ ସବୁ ସାବାଡ଼୍ କରିଦେବୁ—କପଟ ଡରୁଆ, ଭୀରୁ, କାପୁରୁଷ ଏଇ କାଳୀ ଆଦମଙ୍କୁ ଜବତ କରିବାକୁ କେତେବେଳ ଲାଗିବ !

ରା-ଦୂ—ଜେନେରାଲ ଡାୟାର ଭଳି ।

ସେନା—ନାହିଁ, ସେ ପର୍ଯ୍ୟନ୍ତ ଯିବ ନାହିଁ । ଖାଲି ଭଡ଼ଙ୍ଗରେ ପିଲେହି ପାଣି ହୋଇଯିବେ ।

ଲାଟ—ଓଃ ହିଟଲର ଭଳି । ( ଉଚ୍ଚହାସ୍ୟ )

ରା-ଦୂ—ସତ ଏକା, ହିଟଲର ଠିକ୍ ଠିକ୍ କରୁଛି ।

ସେନା—ଏ ହଗୁରା, ଛେରୁଆ, ଦୋକାବୁଡ଼ିଆ, ଦରପନ୍ତରିଆ ମନୋବୃତ୍ତିଇ ଅନିଷ୍ଟର ମୂଳ । ଏଥିରେ କଣ ହୁଏ କି ଶ୍ରେଷ୍ଠ ଲୋକଙ୍କର ଆସ୍ପର୍ଦ୍ଧା ବଢ଼େ । ଲୁହା ଜାଣି ପାଣି ଦେବା ଉଚିତ ।

[ ଅର୍ଦ୍ଦଳି ପ୍ରବେଶ କରି କହିଲା ଯେ ମନ୍ତ୍ରୀମାନେ ଓ ପ୍ରଧାନ କରଣ ସାହେବ ମୁଲାକାତ କାମରାରେ ଅପେକ୍ଷା କରୁଛନ୍ତି ]

ଲାଟ—ଇନ୍ତଜାର କରନେ ଦୋ ।

ରା-ଦୂ—ଆପଣ କିନ୍ତୁ ସେଠି ଏଥର ଉଦାର ଭାବ ଧରିଲେ ଚଳିବ ନାହିଁ । ଆସନ ଛାଡ଼ି ବସିବେ ।

ଲାଟ—ସେଠି କଣ କରିବାକୁ ହେବ ସେ ବିଦ୍ୟା ଆମକୁ ଭଲ ଜଣା । ଆମେଇତ ତାଙ୍କୁ ଖେଳାଉଛୁଁ । (ହାସ୍ୟ)

ରା-ଦୂ—ଗୋଟାଏ ସଙ୍ଗିନ୍ ରାଜନୈତିକ ଗୋଳମାଳ ହାଲେ ଏଇଠି ଆରମ୍ଭ ହୋଇଯିବ, ଆପଣ ବୋଧହୁଏ ସେଇଟାକୁ—

ସେନା—ଡରୁଛନ୍ତି ।

ଲାଟ—( ହସି ) ରାଜନୈତିକ କାଇଦା ଧୁମ୍‌ଧାମ୍ ଫଟଫାଟ କସରତଠାରୁ ଢେର ଗମ୍ଭୀର ବନ୍ଧୁ !

ସେନା—ମୁଁ ଜାଣେ wait and see । କେଉଁଠିକା ପାଣି କେଉଁଠିକି ଯାଉଛି ବୋଲି ଅପେକ୍ଷା କରିବା । ମାତ୍ର ଅପେକ୍ଷା କରୁଁ କରୁଁ ତେଣେ ବନ୍ଧ ଯେ ଯିବ ଭୁଷୁଡ଼ି ।

ରା-ଦୂ—ଅବଶ୍ୟ, ଅବଶ୍ୟ, ସବୁଆଡ଼େ କାଇଦା ଦରକାର । ହୁଡ଼ମୁଷଳିଆ କାମତ ସବୁ ଯୋଗାରେ ଲାଗେ ନାହିଁ ।

### (ଦ୍ୱିତୀୟ ଦୃଶ୍ୟ)

[ ଆଦ୍ୟ ମନ୍ତ୍ରୀ, ମଧ୍ୟ ମନ୍ତ୍ରୀ ଓ ଅନ୍ତଃମନ୍ତ୍ରୀ ତିନହେଁ ଲାଟଙ୍କ ମୁଲାକାତ କାମରାରେ ବସି ଅଛନ୍ତି ]

ଆଦ୍ୟମନ୍ତ୍ରୀ—ବଡ଼ ବିରକ୍ତ ଲାଗିଲାଣି ।

ମଧ୍ୟମନ୍ତ୍ରୀ—କଣ କରିବା । ଅପେକ୍ଷାତ କରିବାକୁଇ ହେବ । ମୁଣ୍ଡ ଯେତେବେଳେ ଲେଖାଇଛେଁ—

[ ପ୍ରଧାନ କରଣ ସାହେବ ପ୍ରବିଷ୍ଟ ହେଲେ ]

ଆଦ୍ୟମନ୍ତ୍ରୀ—ଆସନ୍ତୁ, ଆସନ୍ତୁ—ଆପଣଙ୍କର ଏତେ ବିଳମ୍ବ ଯେ !

ପ୍ର-କ—ମୁଁ ତ ଆଉ ଆପଣମାନଙ୍କ ଭଳି ପ୍ରତିନିଧିକର୍ତ୍ତା ନୁହେଁ । ସାମାନ୍ୟ ଚାକରିଆ ଲୋକ; କାମ ବହୁତ ।

ଆଦ୍ୟମନ୍ତ୍ରୀ—ଆପଣ ବଡ଼ ଭଦ୍ର ଓ ନମ୍ର । ଏଥିପାଇଁ ଆପଣ ସମସ୍ତିଙ୍କର ପ୍ରିୟ ହୋଇ ପାରିଛନ୍ତି ।

ପ୍ର-କ—ଲାଟ ମହୋଦୟ ଏପର୍ଯ୍ୟନ୍ତ ଆସି ନାହାନ୍ତି ; ଯାହାହେଉ ରକ୍ଷା ।

ଆ-ମ—ସେଠା ହାଜିରରେ ଅଛନ୍ତି । ଏଇକ୍ଷଣ ଆସିବେ ବୋଧହୁଏ ।
ପ୍ର-କ—ମୁଁ ଡେକେ ଦେଖେଁ— [ ବାହାରି ଗଲେ ]
ଆ-ମ—ଦେଖିଲ, ନିଧି କମିଟି ଏଠି ନ ବସି ଚାଲିଗଲା ।
ମ-ମ—ଯିବ ନାହିଁ ! ଗୋରା ଚମଡ଼ା ଯେ ! ଆମ ନାଁଟା ବଡ଼ ହେଲେ କଣ ହବ—ଦେଖେ ହେଲେ ସେ ହାଇଆର ଖାଲି ।
ଆ-ମ—ତା ଠିକ୍—କିନ୍ତୁ ଆମ ପୋଜିସନ; ଆଉ ପ୍ରେଷ୍ଟିଜ—ଥିବାର କଥା !
ଅନ୍-ମ—ଅଲବତ୍ତ ! ଏତ୍ରା କଥା କେତ୍ରା ସହମା !
ଆ-ମ—ଆସ୍ତୁ । [ ଜନୈକ ନିଜ ଉଷ୍ଣୁ କାମୁଡ଼ିଲେ ]
[ଲାଟ ଓ ପଶ୍ଚାତ୍ତରେ ପ୍ର-କରଣ ପ୍ରବେଶ କଲେ]
[ସକଳେ ଉଠି ସଙ୍ଗ ଅଭିବାଦନ କଲେ]
ଲାଟ—ଗୁଡ଼ ମର୍ଣ୍ଣିଂ—ହ୍ୱିବ ଥଣ୍ଡାଟା ପଡ଼ୁଛି—ନୁହେଁ ?
ଆ-ମ—ଆଜ୍ଞା ପୁଣି କହିବାକୁ ଅଛି ! କିନ୍ତୁ ହଜୁରଙ୍କ ଦୟାରୁ—ଏଁ-ଏଁ ।
ମ-ମ—ଆମ୍ଭେମାନେ ସହିବାକୁ ଅଭ୍ୟସ୍ତ ହେଲୁଣି ।
ଆ-ମ—ହଁ ଅତ୍ୟନ୍ତ ହେଲୁଣି ।
[ଲାଟ—ହାସି ଆସନ ଗ୍ରହଣ କଲେ ଓ ଅନ୍ୟମାନେ ସ୍ୱ ସ୍ୱ ଆସନରେ ବସିଲେ]
ଲାଟ—ଆପଣମାନେ ଅନେକ ବେଳୁ ଅପେକ୍ଷା କଲେଣି, ନାହିଁ ? ମୁଁ ଟିକେ ବ୍ୟସ୍ତ ଥିଲି ; କ୍ଷମା କରିବେ ।
ଆ-ମ—ନାହିଁ, ନାହିଁ, କଷ୍ଟ କଣ—ଆପଣ, ଆପଣ ତ—
ଲାଟ—ଆସ୍ତୁ—ତାପରେ ପର ? ……ନଶା ନିବାରଣଟା କେମିତି ଚାଲିଛି ?
ଆ-ମ—ଆପଣଙ୍କ ଦୟାରୁ ଉତ୍ତମ ।
ଲାଟ—ବଜେଟ କଣ ?
ଆ-ମ—ଲଗିଛି—କିନ୍ତୁ ମୁଁ ବି ଆପଣଙ୍କ ଦୟା ଓ ସହାୟତା ଉପରେ ନିର୍ଭର କରେ ।
ଲାଟ—ବେଶ୍ ବେଶ୍—ମୋ କ୍ଷମତାରେ ଯାହାଥିବ, କରିବି । କିନ୍ତୁ ସେ ତ ଉପରର କଥା ।
ଆ-ମ—ସେ ବି ଆପଣଙ୍କର ହାତରେ । ମୁଁ ଆଶା କରେ ଆଉ କଉଁଠି ଏଭଳି ଦଲ୍ ସାଙ୍ଗ ସହଯୋଗରେ ଶାସନ ଚାଲୁ ନ ଥିବ ।
ମ-ମ—ଏ କେବଳ ଆପଣଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱ ଓ ଅଖଣ୍ଡ ଉଦାରତା ।
ଆ-ମ—କେବଳ ଏକ ଗୋଟିଏ କଥାରେ ବଡ଼ ବାଧା ହେଉଚି—ଆମର, ଆମର ……
ମ-ମ—ଇଜ୍ଜତ, ମହତକୁ …
ଲାଟ—(ହସି) ରାଜମାଡରେ ଏତେ ଇଜତ ସମାନ କାମ କରି ହୁଏନା । ଦେଖ୍ ନାହାନ୍ତି ଆମ ବ୍ରିଟିଶ ପଲସି—ଚେମ୍ବର ଲେନ୍‌ଙ୍କ ଓସ୍ତାଡ ।
ଆ-ମ—କିନ୍ତୁ ଆମ ଅବସ୍ଥା ସ୍ୱତନ୍ତ୍ର ।
ଲାଟ—ହଁ ଚମଡ଼ା ପତଳା—ନାହିଁ ! କିନ୍ତୁ ଆପଣମାନଙ୍କ ଇଜତ ଥରେ ଆମେ ରକ୍ଷା କରିଛୁ, ମନେଥିବ ।
ଆ-ମ—ହଁ ମନେ ଅଛି । ତା ନୋହିଥିଲେ ଆମେ ଆଜି ଏଠି ବସି ନ ଥାନ୍ତୁ । ସତ କହିବାକୁ ଗଲେ, ଆମର କିଛି କଥା ନ ଥିଲା ଯେ—ଏକା ଓ୍ୟାର୍ଦ୍ଧାର ମାଲିକମାନଙ୍କର—
ମ-ମ—ଠିକ୍ କଥା ।
ଲାଟ—ସେହିପରି ଆମର ବ ଦାନ୍ତିର ଗୁଣ ! ମୋର ହାତ ନାହିଁ ଚାହିଁରେ କିଛି ।
ଆ-ମ—ସେ ଯାହାହେଉ, ଆପଣ କିଛି ଉପାୟ ଗୋଟାଏ ମାଧମିକ ଉପାୟରେ ଏ ପରିସ୍ଥିତିଟା …… ନୋହିଲେ ଆମର ଇସ୍ତଫା—
ଲାଟ—ଦେଖନ୍ତୁ ଆପଣମାନେ ଅବ୍ୟାପାରେଷୁ ବ୍ୟାପାର କରିବାକୁ ଯାଇ ପିଲମି କରୁଛନ୍ତି । ଜାଣୁ ନାହାନ୍ତି, ଆମର ସନ୍ଧି ମର୍ତ୍ତିରେ ଜବାବ ରଖିବାକୁ ଆମେ ବାଧ ।
ଆ-ମ—ଆମକୁ ବି ତ ଜବାବ ଦେଇଥିବାର—
ଲାଟ—ଠିକ୍, କିନ୍ତୁ ଦୈନନ୍ଦିନ କାମରେ । ଏଇଟା ତ ଆପଣଙ୍କର ଦୈନନ୍ଦିନ କାମ ନୁହେ । ସାପ ଗାତରେ ଆଙ୍ଗୁଳି ଦେବା କିମ୍ବା ବାଘୁଆ ମହୁ ବସା ଖୁଞ୍ଚିବା ଦରକାର କଣ ? ଆପଣାର—
ଆ-ମ—ଆପଣଙ୍କ ଉପଦେଶ ବା ପରାମର୍ଶ ……
ଲାଟ—ହଁ, ମୋର ପରାମର୍ଶ ନେବେ ତ କହୁଚି । ଆପଣ ଗୋଟାଏ ସଫେଇ ଇସ୍ତାହାର ବାହାର କରି ଦିଅନ୍ତୁ । ସେଥିରେ ନିଜେ ଦୋଷଛଡ଼ା ହୋଇଯିବେ ଓ ମାନ ମଧ୍ୟ ବଞ୍ଚିଯିବ ନେଇ ପାରିବେ । ଇସ୍ତଫା ଫିସ୍ତଫା ପ୍ରଭୃତି ପିଲମିରେ ମାତନ୍ତୁ ନାହିଁ । କାନ ଓ ଚମଡ଼ା ଟିକିଏ ମୋଟା କରି ଦିଅନ୍ତୁ । ଆଉ କାଉଁରି, ସମାଜର ଉପକାର କରନ୍ତୁ—ଯେପରି ଦେଶର ଦାରିଦ୍ର୍ୟ ନଷ୍ଟ ହେବ । ଲୋକ ଦେଖାଇବା ପାଇଁ ନଶା ନିବାରଣ, ଓ୍ୟାର୍ଦ୍ଧା ଶିକ୍ଷା, ତା ପରେ ଆଳୁ, କଦଳୀ ଦେଇ ଗରିବଙ୍କ କ୍ଷୁଧା ନିବାରଣ । ଆଉ ଲଢ଼େଇ କରିବାକୁ ହେଲେ ଆମ ସାଙ୍ଗରେ ବା ଆମ ଆଶ୍ରିତଙ୍କ ସାଙ୍ଗରେ ନ ଲଢ଼ି ଆପଣା ଆପଣା ଘରେ ଲଢ଼େଇ କରିବାର ଢେର୍ ଅଛି । ଯଥା—ଜମିଦାର,

ମହାଜନ, ମହନ୍ତ—ଶେଷକୁ କଷାନ ଦଳ, ପଣ୍ଡିତ ଦଳ ଓଗେର । ମୋ କଥା ମାନି ଚଳିଲେ ଗୋଡ଼ରେ କଣ୍ଟା ବୋହିବ ନାହିଁ । —

ଆଚ୍ଛା ତେବେ ବିଦାୟ, ଗୁଡ୍‌ବାଇ ।

ସକଳେ—ଥାଙ୍କ୍‌ଇଉ ।

( ମନ୍ତ୍ରୀଗଣ ଅଭିବାଦନ କରି ପ୍ରସ୍ଥାନ କଲେ )

ଲାଟ —ଆଚ୍ଛା ଏମାନେ କଣ ସତେ ଇସ୍ତଫା ଦେବେ ?

ପ୍ର-କରଣ—ଗ୍ରମ, ଗ୍ରମ୍, ଧକ୍‌କା ଦେଲେ ବି ନୁହେଁ । ଯଉଁ ଅଉଲିଆ ଜାଲରେ ପଡ଼ିଲେଣି ।

ଲାଟ —ଏଇମାନେ ପୁଣି ସେଥର—

ପ୍ର-କ—ସେଥର କଥା ନଆସୁ, ପାଗଟା ଭିଡ଼ ନଥିଲା ଦସ୍ତୁରମତେ ।

ଲାଟ —ତଥାପି ଆମର ହୁସିଆର ରହିବା ଦରକାର । ଆଚ୍ଛା, ସେ ସମ୍ଭ୍ରାନ୍ତକୂଳଆ ?

ପ୍ର-କ— ଓଃ, ସେ ତ ଏକଦମ୍ ରଦ୍ଦି । ଏଇକ୍ଷଣି ପାରିବାରିକ ମଉଜରେ ମସ୍‌ଗୁଲ ।

ଲାଟ —ଆଉ ସିଏ ··· ?

ପ୍ର-କ—ହିଁ, ଯାହାଙ୍କ କଥା କହୁଛନ୍ତି ବୁଝିଲି । କିନ୍ତୁ ସେ ଯଉଁ ଅପମାନଟା ପାଇଛନ୍ତି, ଆଉ ମନ କରିବେ ନାହିଁ ଏଣିକି । ତା ପରେ ତାଙ୍କର ଏହିକ୍ଷଣି ପୁଅ ବାହା ଦରିରୁ ଅବେଳ୍ ମେଣ୍ଟି ନାହିଁ ।

ଲାଟ —ତେବେ ସେ ଚଲକା କୂଳର ସେଇ ମୋଟ ···

ପ୍ର-କ—ଠିକ୍ କହୁଛନ୍ତି, ସେଇ ଅସଲ ଲୋକ ଏକା । ସୁରୁଖୁରୁରେ ଗାଡ଼ି ଚଳେଇ ନେଇପାରିବ ।

ଲାଟ —ତେବେ ତାଙ୍କ ସାଙ୍ଗରେ ଭିତରି ଖବର ଅନ୍ତର ଚଳେଇବା ?

ପ୍ର-କ—ଏଇକ୍ଷଣି ନୁହେଁ, ବେଳ ଯଦି ପଡ଼େ ଏକା ଗ୍ରତକେ ହୋଇଯିବ । ମାତ୍ର ମୋର ବିଶ୍ୱାସ ସେ ବେଳ ଆସି ନ ପାରେ ।

ଲାଟ —ଓଃ ଦିନେ ହେଲେ ତ ଆସିବ ?

ପ୍ର-କ—ସେତେବେଳେ କଉଁ କଥା ଅଭାବ ରହିବ । କିନ୍ତୁ ଏମାନେ ଯେତେଦିନ ଥାଆନ୍ତି ତେତେ ମଙ୍ଗଳ । ତାଙ୍କର ଶତ୍ରୁ ସଂଖ୍ୟା ଯେତକ ବଢ଼ୁଛନ୍ତି ଆମ ମିତ୍ର ବି ତେତକ ବଢ଼ୁଛନ୍ତି ।

ଲାଟ—ଆଚ୍ଛା, ନଜରଟା ଠିକ୍ ରଖିଥିବ—ଗୁଡ୍‌ବାଇ ।

ପ୍ର-କ—ଯେ ଆଜ୍ଞା—ଗୁଡ୍‌ବାଇ ।

## ( ତୃତୀୟ ଦୃଶ୍ୟ )

[ ପ୍ରିୟ ପ୍ରକୋଷ୍ଠରେ ତିନି ମନ୍ତ୍ରୀ ଓ ଗ୍ରମ୍ ଆଗରେ ବସିଛନ୍ତି ପରାମର୍ଶ କରନ୍ତି ]

ମ-ମ—ଆପଣ ଏମିତି ତରକା ଧରିଲେ ଚଳିବ ନାହିଁ ।

ଆ-ମ—ହ—ତମେ ତ ଅସଲ ଲଣ୍ଡି ପାଗଳଆ ।

ମ-ମ—ହଠାତ୍ ଇସ୍ତଫା କଥାଟା କହି ପକାଇଲେ କାହିଁକି ?

ଆ-ମ—ବୁଝିଲ ନାହିଁ, ସେଟା ଧମକ ।

ମ-ମ—ଆଉ ସେ ବେଳ ଅଛି ଯେ ଧମକକୁ ସେ ଡରିବେ ଭାବିଚନ୍ତି !

ଆ-ମ—କଣ ହୋଇଗଲା କି ?

ମ-ମ—ଏବେ ଆମ ଗ୍ରଡ଼ିବାର ଉପାୟ ଗଲାଣି କମି, ଆଉ ତାଙ୍କର ତଡ଼ାଇବା ଭୟ ବି ଗଲାଣି କମି ।

ଆ-ମ—କିନ୍ତୁ ଆମ ଇଜ୍ଜତ !

ମ-ମ—ଇଜ୍ଜତ୍, ଇଜ୍ଜତ୍ ଆପଣଙ୍କୁ ସାଇଲା । କ୍ଷମତା ଆଉ ଇଜ୍ଜତ୍ ଏକା ସାଙ୍ଗରେ ରହିପାରେନା ।

ଆ-ମ—ସବୁ ଆପଣଙ୍କର ଭୁଲ ନୁହେଁ ? ଏ ଅବସ୍ଥାଟା ଆରମ୍ଭ କରାଇଲା କିଏ ? ମୂଳରୁ ଟାଣୁଆ ଧରିଥିଲେ ···

ମ-ମ—ମୁଁ କଣ ମନା କଲି ?

ଆ-ମ—ଠିକ୍ ମନା ନୁହେ—କିନ୍ତୁ ପ୍ରରୋଚନା, ବନ୍ଧୁମାନଙ୍କ ମନ୍ତ୍ରଣା—

ମ-ମ—ଆପଣ ତ ତାର ପ୍ରତିକାର କି କଲେମ ?

ଆ-ମ—ହିଁ କଥାଟା ଢୋଡ଼ାଇବା ପାଇଁ ୧୪୪ ଚଳାଇଲି, ପୁଲିସ୍ ପଠାଇଲି, ଇନ୍‌କୁଆରି କରାଇଲି ! —ଆଉ ବାକି ରହିଛି ଗୋଟାଏ Extra —

ମ-ମ—ଥାଉ, ଥାଉ, ସେଇଟାକୁ ଧରି ବସିଲାକୁ ଯେତେ ଗୋଳ, ସେଟା ଗ୍ରଡ଼ି ଦେଇ ତ ଆମେ ନଗୋଲ ରହିଯାଆନ୍ତୁ ।

ଆ-ମ—ଏଇକ୍ଷଣି ତ ସେ କଥା କହୁଚ ! କିନ୍ତୁ ଧରି ସାରିଛୁ ଯେତେବେଳେ ନାଗ ଚୂଡ଼ାନ୍ତ ଭଳି ହୋଇଗଲାଣି ଯେ !

ମ-ମ—ହଉ, ଆଜି ଲାଟ କଥାରୁ କଣ ବୁଝିଲେ ?

ଆ-ମ—ବୁଝିଲି ଆଜ୍ଞା ! ସେ ତ ଦମ୍ଭ ଧରି ବସିଲା ପରି ଜଣାଗଲା ।

ମ-ମ—ଆଉ କଣ ସାପ ନ ମରିବ, ବାଡ଼ି ନ ଭାଙ୍ଗିବ ସବୁଦିନେ ଚଳୁଥିବ ?

ଆ-ମ—ନା—ଆଉ ଏଠି ରହିବା ସମ୍ଭବ ନୁହେଁ । ତେଣେ ଓ୍ୱାର୍ଡି ଖୋଞ୍ଚା, ଏଣେ ଲାଟର କେଞ୍ଚା, ମଝିରେ ଯେ ରହି ଥାଆନ୍ତୁ । ସେଥିରେ ଦାଡ଼ିର ରଗଡ଼ା ଆସି ପଡ଼ିଲାଣି ।

ମ-ମ—କାହିଁକି ବ୍ୟସ୍ତ ହଉଛନ୍ତି ଆପଣ ! ସେଥିରେ ବିପଦ ହେଲେ ମୋର ହୋଇପାରେ । ଆପଣ ବହେଁ ନାଁ ଆଗରେ ପଣ୍ଡିତ ଲଗେଇ ଦେଲେ କଥା ସରିଲା । ଭାଇନା ବୋଲି ମିଶିଯିବେ ଦଣ୍ଡକେ ।

ଆ-ମ—ସହଜ ନୁହେଁ ବନ୍ଧୁ ! କାନୁ ଯଦି ସେ ସୁବିଧା ହୁଏ, ତମକୁ କଣ ଆମେ ମଝି ଜଙ୍ଗଲରେ ଛାଡ଼ ଦେଇ ଯିବୁଁ ଭାବଛ ! କିଏ ଅଛରେ ବ୍ୱାଏ ଆଣିଲୁ ।

( ଭୃତ୍ୟର ପ୍ରବେଶ ହୋଇ )

ଭୃ—ଆଜ୍ଞା, ବିସ୍କୁଟ୍ ନ ଥିବାର ।

ଆ-ମ—ଚରୁଆ ନାହିଁ, ଯା ବଜାରକୁ ଦକୋଡ଼ି ଧରି ଆଣେ ।

ମ-ମ—ଭଲ ବେଳଟା ପଡ଼ିଛି, ଏତିକିବେଳେ ଗାନ୍ଧିଆ ବୋଲି କହି ମାନେମାନେ ଖସିଗଲେ ହୁଅନ୍ତା ନାହିଁ ?

ଆ-ମ—ଯେତେବେଳେ ଚଳୁଚି ଚଳୁ । ବେଳ ପଡ଼ିଲେ ବଳେ —

ମ-ମ—ଡାହାଣିଆରୁ ବାଉଁଆ ହବା କି ବାଆଁରୁ ଡାହାଣକୁ ଯିବା କେତେ ବାଟ ଯେ !

ଆ-ମ—ଠିକ୍ ଠିକ୍—ସେଇଆ ମୁଁ କହୁଥିବାର ଏକା । ଏଇକ୍ଷଣି Wait and see ଆଖି ବୁଜିଦେଲ ।



# ଜର୍ମାନ ଭୂତ ଓ ବ୍ରିଟିଶ ଦୂତଙ୍କ ପ୍ରଶ୍ନୋତ୍ତର

( କିଛିଦିନ ପୂର୍ବେ ଜର୍ମାନର ପ୍ରସିଦ୍ଧ ଶସ୍ତ୍ର ବିଧାୟକ ଧନୀ ଆଲଫ୍ରେଡ଼ କ୍ରୁପ୍‌ଙ୍କୁ କେତେକ ପ୍ରଶ୍ନ ପଚରାଯିବା ପରେ ଏକ ଜର୍ମାନ ଭୂତ ସହିତ ଜଣେ ବ୍ରିଟିଶ ଦୂତର ସାକ୍ଷାତ ହୋଇଥିବାର ଗୁଜବ ଉଠେ । ଜର୍ମାନ ଯେ ମୃତ ଏଥିରେ ସନ୍ଦେହ କରିବାର ନାହିଁ । ତେବେ ସେ ଭୂତ ମଣିଷ ଆଖିକି ଦିଶେ କି ନା ଏହି ପ୍ରଶ୍ନୋତ୍ତରରୁ ବୁଝି ପଡ଼ିବ । ଏହା ପଢ଼ିବା ପୂର୍ବରୁ ଜେମସ୍ ଗୋଲ୍‌ଡ଼ ବର୍ଣ୍ଣିତ ଆଲଫ୍ରେଡ଼ କ୍ରୁପ୍‌ଙ୍କ ଉତ୍ତର ପଢ଼ିବା ଆଦୌ କର୍ତ୍ତବ୍ୟ । କ୍ରୁପ୍‌ଙ୍କ ପ୍ରଶ୍ନଗୁଡ଼ିକ ଅବିକଳ ରହିଛି । )

ବ୍ରିଟିଶ ଦୂତ—ତମେ ଭୂତ ?

ଭୂତ—ମୁଁ ଜୀଅନ୍ତା ନୁହେଁ ।

ଦୂତ—ତମେ ନାତ୍ସୀ ?

ଭୂତ—ମୁଁ ସାମ୍ରାଜ୍ୟବାଦୀ ପାଜି ନୁହେଁ ।

ଦୂତ—ହିଟଲର ଗୋବେଲ୍‌ସ ଆଦି କେଉଁଠି ଅଛନ୍ତି କହି ପାରିବ ?

ଭୂତ—ସେମାନେ ନର୍କରେ ଘାଣ୍ଟି ହେଉଛନ୍ତି ଓ ରୁଜଭେଲ୍‌ଟ, ଚର୍ଚ୍ଚିଲ, ଷ୍ଟାଲିନ ଆଦି ସେଇ ଦୃଶ୍ୟ ଉପରକୁ ଟେକା ଫୋପାଡ଼ୁଛନ୍ତି ।

ଦୂତ—ତମେ ନାତ୍ସୀ ନେତାଙ୍କର ବିଶିଷ୍ଟ ବନ୍ଧୁ ?

ଭୂତ—ମୁଁ ସାମ୍ରାଜ୍ୟବାଦୀ ଷ୍ଟାଲିନ୍, ଚର୍ଚ୍ଚିଲ ଓ ରୁଜଭେଲଟଙ୍କର ଅବନ୍ଧୁ ନୁହେଁ । ବ୍ୟବସାୟ ବନ୍ଧୁତା—ପ୍ରକୃତିଗତ ନୁହେଁ ।

ଦୂତ—ତମେ ତମ ଫୁହରର ( ହିଟଲରଙ୍କୁ ) କେତେ ଦିନ ତଳେ ଦେଖିଥିଲ ?

ଭୂତ—ରୁଜଭେଲ୍‌ଟଙ୍କୁ ଝରଣା କୂଳରେ ଦେଖିବାର ଅଳ୍ପକ୍ଷଣ ପରେ ।

ଦୂତ—ମିଳିତ ଆକାଶ ବାହିନୀର ବୋମା ମାଡ଼ର ଫଳ ତମେ କେବେ ବୁଝିଲ ?

ଭୂତ—ଭାରତର ନିରସ୍ତ୍ର ଜନତା ଉପରେ ବୋମା ମାଡ଼ ହେଲା ଦିନଠାରୁ ।

ଦୂତ—ତମେ ରାତିଦିନ ବୋମା ବର୍ଷାର ମଜା କେବେ ବୁଝିଲ ?

ଭୂତ—ମିଷ୍ଟର ଗାନ୍ଧି, ଆଗା ଖାଁ ପାଲେସରେ ଉପବାସ କଲାବେଳେ ।

ଦୂତ—ତମ ଶସ୍ତ୍ର କାରଖାନା ତମକୁ ଗଲା ପାଞ୍ଚ ବର୍ଷ ହେବ କେତେ ଲାଭ ଦେଉଛି ?

ଭୂତ—ଭାରତର ବଡ଼ଲାଟଙ୍କ ଦରମାଠୁଁ କମ୍ ।

ଦୂତ—ତମ କାରଖାନାର ଆୟତନ କେତେ ?

ଭୂତ—ଭାରତବର୍ଷର ଲକ୍ଷ ଭାଗରୁ ଭାଗକରୁ ବି କମ୍ ।

ଦୂତ—ତମେ ମାରଣ ଅସ୍ତ୍ର ତିଆରି କରିଥିଲ ?

ଭୂତ—ନା, ଦୁର୍ଭିକ୍ଷରେ ଲୋକଙ୍କୁ ମାରିବାର ଅସ୍ତ୍ର ଆମକୁ ଅଜଣା ଥିଲା ।

ଦୂତ—ତମର କେତେ ଲୋକ ଖଟନ୍ତି ?

ଭୂତ—ତିରିଶ କୋଟି । ( ହସିଲା )

ଦୂତ—ବିଦେଶୀ ଶ୍ରମିକ କେଉଁଠୁଁ ଆଣ ?

ଭୂତ—ଅସଭ୍ୟ ଭାରତରୁ ସରକାର ଯୋଗାନ୍ତି ।

ଦୂତ—ସେମାନେ ପଇସା ପାଆନ୍ତି ?

ଭୂତ—ସେମାନେ ଉପବାସରେ ବି ଖଟି ପାରନ୍ତି । ତେବେ ଲୋକ ଦେଖେ—

ଦୂତ—କେଉଁ ଲୋକ କେତେ ପାଆନ୍ତି ?

ଭୂତ—ଦେଶୀ ମୂଲିଆ ଓ ପରଦେଶୀ ମୂଲିଆ । ଦେଶୀ ମୂଲିଆମାନେ ସ୍ୱେଚ୍ଛାରେ ଗୋଲାମ ହୋଇଥାନ୍ତି । ତାଙ୍କୁ ଭାରତରୁ ଭାଇସରାୟଙ୍କ ଏକ୍‌ଜିକ୍ୟୁଟିଭ୍ ମେମ୍ବରଙ୍କଠାରୁ କମ୍ ମୂଲ ଦିଆଯାଏ । ପରଦେଶୀ ମୂଲିଆଙ୍କୁ ଜେଲ ଭିତରେ ଖୋରାକ ପୋଷାକ ମିଳେ ?

ଦୂତ—ଜର୍ମାନର ଯୁଦ୍ଧୋତ୍ତର ଶିଳ୍ପର ଭବିଷ୍ୟତ କଣ ?

ଭୂତ—ଇଂଲଣ୍ଡର ଷ୍ଟର୍ଲିଂ ବାଲାନ୍‌ସରେ ଝୁଲୁଛି ।

ଦୂତ—ତମର ଭବିଷ୍ୟତ ?

ଭୂତ—ମୁଁ ତ ଭୂତ—ମୋର ଭବିଷ୍ୟତ କ'ଣ ? ଭାରତର ଭବିଷ୍ୟତ ଯାହା—ଇଂଲଣ୍ଡ ଘୋଷଣା କରିଛି ତା'ଠୁଁ ଭଲ ଅବଶ୍ୟ । ତେବେ ଯେଉଁମାନେ ମୋ ପାଇଁ ଖଟିଛନ୍ତି, ତାଙ୍କ ଗୋଡ଼ ତଳ ଘୋରି ଯାଇଥିବ—ତେଣୁ ଆଜି କାଲି ଦିଏ ନ ଦିଏ ହଳେ ହଳେ ଯୋତା ନିଶ୍ଚୟ ଦେବ ।

ଦୂତ—ଯୁଦ୍ଧପରେ ତମ କାରଖାନାରେ କ'ଣ ତିଆରି କରିବ ?

ଭୂତ—ଗୋଲାମ—ଯେ ଆମ ପାଇଁ ବିଦେଶରେ ମରି ପାରିବେ—ନିଜ ପାଇଁ ମରିବା କଥା ଭୁଲି ଯିବେ ?

# ସୁଇ ସାଇଡ୍

## ( SUICIDE )

### ( ଏକାଙ୍କ ନବରଙ୍ଗିକା )

[ ବିଭୂତି, ଡାକ୍ତର ମିଶ୍ରଙ୍କ ସାନ ଶଳା । ଡା: ମିଶ୍ର ବାଲେଶ୍ୱରରେ ପ୍ରୋଢ଼ିବସନ ଡାକ୍ତର ହୋଇ ଅଫିମ ବନ୍ଦୀ କରନ୍ତି । ବିଭୂତି କଟକ କଲେଜରେ ବି· ଏ· ପଢ଼ନ୍ତି—ଖରା ଛୁଟିରେ ଭଉଣୀ ଘରକୁ ଆସିଛନ୍ତି ।

ଡା: ମିଶ୍ର ଗୋଟାଏ କ'ଲ ପାଇ ସେଦିନ ବାହାରକୁ ଚାଲିଗଲେ । ରାତିରେ ଫେରିବେ ନାହିଁ । ଘରେ ରହିଲେ ଶଳା ବିଭୂତି, ସ୍ତ୍ରୀ ସୁରମା ଆଉ ଚାକର ଘନା ।

ସଞ୍ଜପରେ ବିଭୂତି ବୈଠକଖାନାରେ ବସି ଖଣ୍ଡିଏ ଡାକ୍ତରୀ ମେଗାଜିନ୍ ଲେଉଟାଉ ଥିଲେ, ଏପରି ସମୟରେ ସୁରମା ପ୍ରବେଶ ହୋଇ କହିଲେ ।

ସୁର—ଆଜି କୁଆଡ଼େ ବୁଲି ଗଲୁ ନାହିଁ ବିଭୂତି !
ବିଭୂ—ଦେହଟା ଭଲ ଲାଗୁ ନାହିଁ ।
ସୁର—ତାଙ୍କୁ କହିଥିଲୁ ନା ?
ବିଭୂ—ହେଁ:—ଯଉଁ ଡାକ୍ତର ତ ! ଅଫିମ ବିକା କାମ ଯାର ତାଙ୍କୁ ପୁଣି ! ହେଁ—( ସୁରମା ଏଥିରେ ଟିକିଏ ଆହତା ହେଲେ ବି ହ୍ରିଖିଲ ହସଟିଏ ହସି ଦେଇ ନିଜର ରସିକତା ଦେଖାଇଲେ ।)
ସୁର—ଟିକି ଦିଖଣ୍ଡ କରି ଦିଏଁ ? ଦୁଧ ଟିକିଏ ଆଉ ରୁଟି ଖାଇ ସଅଳ ସଅଳ ଶୋଇପଡ଼ ।
ବିଭୂ—ନାଇଁ, ଖାଇବି ନାହିଁ କିଛି ।
ସୁର—ଏଁ ରାତିଟାରେ ଉପାସ ରହିବୁ ! ପୁରୁଷ ପୁଅଙ୍କୁ ପରା—
ବିଭୂ—ଯାଃ—ହାନ ନା ଆଉ କିଛି !
ସୁର—ତେବେ ଖାଲି ଦୁଧ ଟୋପାଏ ପିଇ······
ବିଭୂ—ଯାଃ—କହିଲି ତ ଖାଇବି ନାହିଁ କିଛି ।
ସୁର—ତେବେ କ'ଣ ସିମିତି ଶୋଇବୁ ?
ବିଭୂ—ଶୋଇବି ! —ଶୋଇବି ନାଇଁ ଆଜି ।
ସୁର—କାହିଁକି ମ ?
ବିଭୂ—କହିଲି ତ ଥରେ—ଖାଲି ଲାଗେଇଚ ।
ସୁର—( କଅଁଳେଇ ) କ'ଣ ରାଗିଚୁ କିରେ ବାଇସ୍କୋଟା !
ବିଭୂ—ନା—ରାଗିବି କାହିଁକି ମ ? କାହା ଉପରେ ବା ରାଗିବି ଏଠି !
ସୁର—ତେବେ ନିଶ୍ଚୟ ରାଗିଚୁ । ···ହୁଁ···କହିବୁ ନାଇଁ, କାହିଁକି ସେ କଥା—ଆମେ ତୋର କିଏ ଯେ ··ସାତ ପରଠୁଁ ବଳି ·········
ବିଭୂ—ଯାଃ, ଖାଲି ବକ୍ ବକ୍ କରୁଚ । କହିଲି ତ ମୋ ମନଟା ଠିକ୍ ନାଇଁ ।
ସୁର—କେତେବେଳେ କହିଲୁ ? ଦିହ କଥା ସିନା ·········
ବିଭୂ—ସେଇ କଥା ଏକା । ଅପା, ତତେ କେତେଥର କହିଚି ତୁ ଫଟେଇ ହନାଁ ଏତେ । ମୁଁ ଆଦୌ ରାଗି ନାହିଁ ତୋ ଉପରେ । ଯଦି ରାଗିଥାଏଁ ତ···ସେଟା···ସେଟା···ନାଁ ଥାଉ ।
ସୁର—କ'ଣ କହୁ ନାହୁଁ ମୋ ପାଖରେ ।
ବିଭୂ—ତୁ ସେଥିରୁ କ'ଣ ପାଇବୁ—ଆଉ କରି ପାରିବୁ ବା କ'ଣ ? ( ଭାଇ ଭଉଣୀ ଚୂପ୍ କରି ରହିଲେ ଘଡ଼ିଏ । ବିଭୂତି ପୁଣି ମେଗାଜିନ୍‌ର ବିଜ୍ଞାପନ ଦେଖିବାକୁ ଲାଗିଲେ । କିଛି କ୍ଷଣ ପରେ ବଦଳେଇବା ଉଦ୍ଦେଶ୍ୟରେ ବୋଧହୁଏ ସୁରମା କହିଲେ । )
ସୁର—ବାହାଘର କଥା କ'ଣ ହେଲାରେ ?
ବିଭୂ—[ ଚମକି ପଡ଼ି ] କଉ ବାହାଘର ?
ସୁର—କିଛି ଜାଣେ ନାହିଁ ସିମିତି ! ହଉ ମତେ ନେଉଛ ନା ? ଏଇ ଆର ମାସ ପରା ?
ବିଭୂ—ସପନ ଦେଖୁଛୁ ନା କ'ଣ ! ଯେତେ ସବୁ ଅଜଗୁବି ଖବର, ସବୁ ଏଇ ମାଇପିଙ୍କ ପାଖରେ ।
ସୁର—ଅଜଗୁବି କାହିଁକି ହେଲା । ବାପା ତ ଚିଠି ଦେଇଥିଲେ । ଆର ମାସରେ ଯିମିତି ହେଲେ ବାହାଘର କରେଇବେ ।
ବିଭୂ—କାହାର ?
ସୁର—ଆଉ ପୁଣି କାହାର ? କେଉଁଟା ଅଛନ୍ତି କି ?
ବିଭୂ—ତେବେ ତାଙ୍କର ନିଜର ହୋଇଥିବ ।
ସୁର—ଛିଃ—କି ଅକଥା କହୁଚୁରେ । ବାପାଙ୍କୁ ଇମିତି କଥା ଏବ-କାଳର ପାଠୁଆ ପିଲା ଛଡ଼ା ଆଉ କେହି କହନ୍ତା ନାହିଁ ।
ବିଭ—ହଁ ଠିକ୍ । ବାପା ଯେବେ ପିଲାଙ୍କ ମନ ନ ବୁଝି ······

ସୁର—ଓଃ...କ'ଣ ବୋଲ .........

ବଭୂ—ଦେଖ୍ ଅପା—ବାପମାନେ ମନେ କରନ୍ତି ପିଲାଙ୍କ ଉପରେ ତାଙ୍କର ପୂର୍ଣ୍ଣ ଅଧିକାର ଯେପରି ତାଙ୍କ କୁକୁର ଉପରେ, ବଳେଇ ଉପରେ, ଘୋଡ଼ା ଉପରେ, ମଟର ଉପରେ—ଏପରିକି ଘଡ଼ି ଉପରେ, କଲମ ଉପରେ ......

ସୁର—ଅନ୍ୟାୟ କ'ଣ ହେଲା ଭଲା ! ସେ ଜନ୍ମ ଦେଇଛନ୍ତି, ବଢ଼େଇ କୁଢ଼େଇ ମଣିଷ କରିଛନ୍ତି—ଆଉ—

ବଭୂ—ଜନ୍ମଟା ତ ରହୁଛି ସେଇଠି । ଖାଲି ଯଦି ଜନ୍ମଟା ଦେଇ ବଢ଼େଇ ଥାଆନ୍ତେ, ତେବେ ସେ ପ୍ରଭୁତ୍ୱ, କର୍ତ୍ତୃତ୍ୱ, ମାଲିକତ୍ୱ ଯାହା କହି ସବୁ ଦାବୀ କରି ପାରନ୍ତେ । କରିବା ମଧ୍ୟ ଉଚିତ୍ । କିନ୍ତୁ ଏଇ ଯେ କହିଲୁ "ମଣିଷ କରେଇଛନ୍ତି" ...ବୋଲି—ତାର ମାନେଟା କ'ଣ ଜାଣୁ ? ତାଙ୍କର ମନେ ରଖିବା ଉଚିତ ଯେ ଆମେ ମଣିଷ ହୋଇ ସାରିଛୁଁ । ଆମ ସାଙ୍ଗରେ ମଣିଷର ବ୍ୟବହାର କରିବା ତାଙ୍କର କର୍ତ୍ତବ୍ୟ ।

ସୁର—ଆଉ ଯଦି ନ କରନ୍ତି ତା ?

ବଭୂ—ତେବେ ମଣିଷ ଯେ ହୋଇଥିବ ସେ ମାନିବ କାହିଁକି ? ପଶୁଟିପରି—କିବା ନିର୍ଜୀବ ବସ୍ତୁଟି ପରି !

ସୁର—କ'ଣ କରିବ ତେବେ !

ବଭୂ—ପ୍ରତିବାଦ କରିବ—ନ ପାରିଲେ ନିଷ୍କ୍ରିୟ ପ୍ରତିରୋଧ କରିବ ।

ସୁର—କିଆଁ ମନ ମାନି ନାହିଁ ପରା ? ପାର୍ଟୀଙ୍କ ଝିଅଟି ତ ଖୁବ୍ ଭଲ । ମୁଁ ଦେଖିଛି ଯେ ।

ବଭୂ—ଦେଖିବାକୁ ଭଲ, ଶୁଣିବାକୁ ଭଲ, ଗଢ଼ିବାକୁ ଭଲ, ଏ ସବୁ କିଏ ନାହିଁ କରୁଛି ! କିନ୍ତୁ ସେଇଥିରେ କଣ ସବୁ ହଟିଗଲା ?

ସୁର—ଆଉ ପୁଣି କ'ଣ ?

ବଭୂ—ଦୁଇଦିନ ସ୍ତ୍ରୀ ନେଇ ଭୋଗ କରିବା ଆଉ ଜନସଂଖ୍ୟା ବୃଦ୍ଧି କରିବା ଯଦି ବିବାହର ଉଦ୍ଦେଶ୍ୟ ବା ଲକ୍ଷ୍ୟ ହୋଇଥାଏ, ବା ଥିଲା—ଏ କଥାଟି ଭଲ—ଖୁବ୍ ଭଲ । କିନ୍ତୁ ଯୁଗର ପ୍ରଗତି ସାଙ୍ଗରେ ମଣିଷର ଦୃଷ୍ଟିର ପରିସର ଯେ ବଢ଼ିଗଲାଣି କେତେ, ତା ଜଣା ଅଛି ତ ! ସ୍ତ୍ରୀ ତ ଏବେ ଆଉ ବିଳାସର ସାମଗ୍ରୀ, ସନ୍ତାନ ଜନୟିତ୍ରୀ, ସେବିକା ହୋଇ ରହିନାହିଁ—ତାର ଆସନ ଯେ ଉଠିଗଲାଣି ବହୁତ ଉପରକୁ । ସେ ଏବେ ଜୀବନର ସଙ୍ଗିନୀ, ସହଧର୍ମିଣୀ, ସହକର୍ମିଣୀ । ପୁରୁଷର ଶିକ୍ଷା ଓ କୃଷ୍ଟି ସହିତ ମିଶାଇ ମିଳେଇ ନ ପାରିଲେ, ସେ ସ୍ତ୍ରୀଟା କ'ଣ ନା ! ସେମିତି ବେଖାପୁ ବିବାହ ଗୋଟାଏ ବିରାଟ ବିଡ଼ମ୍ବନା, ଗୋଟାଏ ପ୍ରବଞ୍ଚନା, ଗୋଟାଏ ବିକଟ ନଷ୍ଟଲତା ।

ସୁର—ତୋ ସାଙ୍ଗରେ ତ ପାରିବି ନାହିଁ ମୁଁ । କାଲି ସିଏ ଆସନ୍ତୁ । ତୁ ଏହିକ୍ଷଣି ଆଲୁଅଟା ନିଭେଇ ଦେଇ ଚୁପ୍ ଚାପ ହୋଇ ଶୋଇ ପଡ଼ୁନୁ । ମୁଁ ଯାଏଁ, ରାତି ବି ହେଲାଣି ।

( ସୁରମା ବାହାରି ଗଲେ )

( ବଭୂତି ପୁଣି ମେଗେଜିନ ଦେଖିବାକୁ ଲାଗିଲେ । କିଛିକ୍ଷଣ ପରେ ସେଲ୍‌ଫ ଉପରୁ ବହି ଖଣ୍ଡିଏ ଟାଣି ଆଣି ଛବି ଦେଖିଲେ । ତା ପରେ ଆଉ ଖଣ୍ଡେ, ପୁଣି ଆଉ ଖଣ୍ଡେ । ମଝିରେ ମଝିରେ କାନ୍ଥ ଘଡ଼ିକୁ ଚାହୁଁ ଥାଆନ୍ତି । ଶେଷରେ ବିରକ୍ତ ହୋଇ ବହିଟାକୁ ଫୋପାଡ଼ ଦେଲେ । )

ବଭୂ—ଦୁତ୍ତେରି—ଘଡ଼ିଟା ଲେଟ୍ ଅଛି । ବେଜାୟ ଲେଟ୍—ଡ୍ୟାମ୍ ଲେଟ୍ ...... । ( କାନ ଡେରିଲେ ) ହଁ, ସବୁ ଶୂନ୍‌ଶାନ । ଏବେ ମୋ କାମ ମୁଁ କରେଁ ।

( ବଭୂତି ତାଙ୍କ ସୁଟ୍‌କେଶ ଖୋଲି କାଗଜରେ ମୋଡ଼ା ହୋଇଥିବା ଢେଲାଏ ଅଫିମ ବାହାର କଲେ । ତାକୁ ଆଲୁଅରେ ଭଲ କରି ଦେଖିଲେ । ତା ପରେ ଖଟ ଉପରେ ପଡ଼ିଗଲେ ଚିତ୍‌-ମାତ୍ ହୋଇ । )

ବଭୂ—(ଘଡ଼ିକୁ ଚାହିଁ ଆପେ ଆପେ ) ହୁଁ—ପ୍ରାୟ—ଏଗାରଟା । ଘଡ଼ିଟା ଲେଟ୍ ନାହିଁ, ପ୍ରାୟ ଠିକ୍ ଅଛି । ଡାକ୍ତରର ଘଡ଼ି କି ନା ! ଠିକ୍ ନ ଥିଲେ ଚଳିବ କେମିତି । ହୁଁ— ଠିକ୍ ଥିବ । ତାପରେ ସମୟ ପ୍ରାପ୍ତ ହୋଇଗଲା । ମିଡ୍ ନାଇଟ୍ ତ ! ମିଡ୍ ନାଇଟ୍ ଆଉ କାହାକୁ କହନ୍ତି ? ଏବେ—ବର୍ତ୍ତମାନ ଆଉ ଡେରି କରିବାର ନୁହେଁ । ( ଅଫିମ ଢେଲାଟାକୁ ହାତରେ ଧରି ଦେଖିବାକୁ ଲାଗିଲେ । ) ( ହଠାତ୍ ଚହଙ୍କି ) ଆରେ ଯାଃ—ଆଲୁଅଟା ତ ଲିଭା ହୋଇ ନାହିଁ ।

( ଉଠି ଆଲୁଅଟା କମେଇ ଦେଲେ । ପୁଣି ଖଟ ଉପରେ ଶୋଇ ପଡ଼ିଲାବେଳକୁ କାହାର ପାଦଶବ୍ଦ ଶୁଭିଲା । )

ବଭୂ—କିଏ ?

ଘିନା—ଆଜ୍ଞା, ମୁଁ ପରା !

ବଭୂ—ଆରେ ନାଆଁ ନାହିଁ ତୋର ?

ଘିନା—ମୁଁ ଘିନା ଆଜ୍ଞା ।

ବଭୂ—(ସ୍ୱଗତଃ) ଓଃ ମୋର ଭୁଲ । କବାଟଟା ବି କିଲି ନ ଥିଲି । ଏତିକିବେଳକୁ ସବୁ ଡିଷ୍ଟରବେନ୍‌ସ ! ( ପ୍ରକାଶ୍ୟେ ) ତୁ କୁଆଡ଼େ ରେ ?

ଘନା—ମୁଁ ପରା ଏଠି ଶୋଇବି, ମା କହିଲେ ।

ବଭ୍ରୁ—ମୋର କ'ଣ ନାକ ଲାଗିଛି ଯେ ମୁଁ ଡରିବି ବୋଲି ତୁ ଜଗି ଶୋଇବୁ ?

ଘନା—ନାହିଁ ଆଜ୍ଞା, କେତେବେଳେ କ'ଣ ଦରକାର ହବ କୁଆଡ଼େ ରାତି ବିକାଳେ—

ବଭ୍ରୁ—ଖାଇଥିଲେ ବା ରାତିରେ ଝାଡ଼ା ଦେଖାନ୍ତା—ଉପାସେ ତ ଅଛି, ଆଉ କ'ଣ ?

ଘନା—ବାବୁ ବାହାରକୁ ଗଲେ ମୁଁ ଏଠି ଶୁଏଁ ଆଜ୍ଞା ।

ବଭ୍ରୁ—ମୁଁ କ'ଣ ଚୋର ଯେ ତୋ ବାବୁର ଧନ ଦୌଲତ ନେଇ ପଳେଇବି । ଯାରେ ତ !

ଘନା—ଆଜ୍ଞା, ଆପଣ ଯେତେବେଳେ ରାଗୁଛନ୍ତି, ମୁଁ ଯାଉଛି ତେବେ-

ବଭ୍ରୁ—ହଁ ଯା ବାହାର—ମୁଁ କବାଟ ଦଏଁ ।

( ଘନା ବାହାର ଯିବାକୁ ଲେଉଟିଲା )

ବଭ୍ରୁ—ଏ ଘନା ଶୁଣ୍ ଶୁଣ୍ । ତୁ ଏଠି ଯୁଆଙ୍କ ଘରେ କେତେଦିନ ରହିଲୁଣି ?

ଘନା—ସେଇ ଗାନ୍ଧଗୋଳ ବରଷ ।

ବଭ୍ରୁ—ଓଃ ଏତେ ଦିନ ! ଦଶବର୍ଷ ହେବ ! ବାଃ ଖୁବ୍ ପୁରୁଣା ଲୋକ ତୁ ତେବେ !

ଘନା—ଆପଣଙ୍କ ଦୟାରୁ ।

ବଭ୍ରୁ—କେତେ ପାଉ ? ନା, ପେଟ ଖୋରାକ ? ବାବୁଟା ତୋର ଖାଲି ଦିଆ ଦିନା ।

ଘନା—ମାସକୁ ଦି ଟଙ୍କାରେ ରହିଥିଲି, ଏବେ ତିନି କରି ଦଉଚନ୍ତି ।

ବଭ୍ରୁ—ଓଃ, ଖାଲି ଦଉଛନ୍ତି ।

ଘନା—ଆଜ୍ଞା ସେ କଥା କହନ୍ତୁ ନାହିଁ । ମୋ ଜୀବନ ରଖିଛନ୍ତି ସେ ।

ବଭ୍ରୁ—କମିତି ?

ଘନା—ସେ ବହୁତ କଥା ବାବୁ । ମରି ଯାଇଥାନ୍ତି । ବାବୁ ଥିଲେ ହାସପାତାଲ ଡାକ୍ତର ସେତେବେଳେ । ଏଇଲାଗେ ସିନା ଅଫିମ ଡାକ୍ତର ହେଇଛନ୍ତି । ତାଙ୍କରି ଦୟାରୁ ବଞ୍ଚିଗଲି । ସେଇଦିନୁ ଆଜ୍ଞା ···

ବଭ୍ରୁ—ଓଃ ସେଇଥିପାଇଁ ! ତେବେ ଜଣାଗଲା ଯେ ଦରମା କଥାଟା । ସେଇ ଉପକାରଟା ଶୁଝୁଛୁ ?

ଘନା—ଆଜ୍ଞା ନାଇଁ, ଟଙ୍କା ଦବାରେ ବାବୁଙ୍କର ହେଳା ନ ଥାଏ । ଦେବତା ପୁରୁଷ ସେ । ପୁଅ ଭଳି ଦେଖନ୍ତି ।

ବଭ୍ରୁ—ପୋଲରେ ପାଇଲେ, ସମସ୍ତେ···ଆଉ ତୋ ଘରେ ଆଉ କଏ ଅଛି ପିଲା, କବିଲା ?

ଘନା—ହଁ, ଘରଯା ଆଉ ଝିଅଟିଏ । ଦି'ପେଟ ବାବୁ ।

ବଭ୍ରୁ—କେତେ ଦିନୁ ବାହା ହେଲୁଣି ?

ଘନା—ଏଇ ଯୁଆଙ୍କୁ ଲାଗେଇ ଗୃହଧାନ ହେଲା । ବାବୁତ ବାହା କରେଇଛନ୍ତି ।

ବଭ୍ରୁ—ହଁ, ବାବୁ ତ ସବୁ କରେଇଛନ୍ତି ! ଖାଲି ଯା ଝିଅଟା ତୋହର !

ଘନା—ଆଜ୍ଞା ପିତୃ ସମାନ ସେ । ପାପ କଥାଗୁଡ଼ାକ ।—

ବଭ୍ରୁ—ହଉ, ତୁ ଯା ଏବେ, ମୁଁ କବାଟ ଦଏଁ ।

( ଘନା ବାହାରି ଗଲାବେଳେ )

ବଭ୍ରୁ—ଏ, ଶୁଣ୍ ଶୁଣ୍ ଗୋଟାଏ କଥା । ( ଘନା ଫେରିଲା )

ବଭ୍ରୁ— ତୁ ଏତେଦିନ ରହିଲୁଣି ଡାକ୍ତର ସାଙ୍ଗରେ, ଢେର ଢେର ରୋଗୀ ଦେଖିଥିବୁ ?

ଘନା—ଅସୁମାରି ଆଜ୍ଞା ।

ବଭ୍ରୁ—ଅଧେ ଡାକ୍ତର ପାଲଟି ଯିବୁଣୁ, ନାଇଁ ?

ଘନା—ଆପଣଙ୍କ ଦୟାରୁ କଛୁ କଛୁ ଘା-ଘଉଡ଼, କଟାଚିରା ··· ହେଁ ···

ବଭ୍ରୁ—ବେଶ୍ । ଅଫିମଖିଆ ରୋଗୀ କେବେ ଦେଖିଛୁ ?

ଘନା—କାହିଁ କାହାଁତକ ଆଜ୍ଞା !

ବଭ୍ରୁ—ତୁ ଭଲ କରି ପାରିବୁ ?

ଘନା—ପଇଁପ ଦେଇ ବାନ୍ତି କରେଇ ଦେଲେ ହେଲା । ଆଉ ଦବେଇ ବି ଅଛି । ବାବୁ ଜାଣନ୍ତି ।

ବଭ୍ରୁ—ଅଫିମ ଖାଇଲେ ରୋଗୀ ମରିଯାଆନ୍ତି, ନାଇଁ ?

ଘନା—ହଁ ମରନ୍ତି ବଞ୍ଚନ୍ତି ବି । ସେ କରମ କଥା ।

ବଭ୍ରୁ—ମରିବା ଦେଖିଛୁ ?

ଘନା—ତା ଆଉ ଦେଖି ନାହିଁ ?

ବଭ୍ରୁ—ଖାଲି କଷ୍ଟ ହୁଏ, ନା ?

ଘନା—ହୁଏ ବି, ନ ହୁଏ ବି ।

ବଭ୍ରୁ—ସେ କି ରକମ ?

ଘନା—କେହି ଛଟି ପିଟି ହୋଇ ମରନ୍ତି, ଆଉ କେହି ବା ସିମିତି-ଭେଣ୍ଡିଆ, ସାମର୍ଥ ଲୋକ ଖାଲି ଛଟିପିଟି ହୁଅନ୍ତି, ଗର୍ଜନ କରନ୍ତି ଏକା । ( ଘନା ଯିବାକୁ ବସିଲା )

ବଭ୍ରୁ—ଆଗ୍ଗ-ଘା—

ବଭ୍ରୁ—ଏ, ଘନା !

ଘନା—ଆଜ୍ଞା ।

ବଭ୍ରୁ—ତୋ ଘରପଟି କମିତିକା ?

ଘନା—ଏଇ ସିମିତି ପାଞ୍ଚଜଣଙ୍କର ।

ବଭୁ—ଦୂର୍ ବୋକା । ସେ କଥା କହୁନାହିଁ ଯେ, ଲୋକଟା କ ରକମ, ମନ ମିଳେ ତ ଖୁବ୍ ?

ଘିନା—ଗରିବ ଲୋକଙ୍କର ସେଥିରେ କ ଲୋଡ଼ା ?

ବଭୁ—ଆରେ, ତମ ଭିତରେ ଖୁବ୍ ଲଭ୍-ମାନେ ପ୍ରେମ—ଯାହାକୁ କହନ୍ତି ଭଲ ପାଇବା ଅଛି ତ ?

ଘିନା—ଗୃହ କଳସ, ଷୋଳ ଘିପ ମାଡ଼ ହାତ ଧରିବ ଯେତେବେଳେ ତା ଆଉ—

ବଭୁ—ମୋ କଥା ତୁ ବୁଝି ପାରିଲୁ ନାହିଁ···ବାହା ତ ସମସ୍ତେ ହୁଅନ୍ତି । କିନ୍ତୁ ଯାହାକୁ କହନ୍ତି···ଯା ମୁଁ ବୁଝେଇ ପାରିବି ନାହିଁ—ସେଟା କଣ ସମ୍ପ୍ରିଙ୍କର ଥାଏ ?

ଘିନା—ନ ଥିବ କାହିଁକି ଆଜ୍ଞା । ନ ଥିଲେ ଏଇ ·ବଡ଼ଲୋକଙ୍କ ଘରେ ବା ନ ଥିବ । ଆମ ଗରିବ ଗୁରୁବାଙ୍କର—

ବଭୁ—ଆଚ୍ଛା ଇଡ଼ଅଟ୍—

ଘିନା—ଆଜ୍ଞା ହଁ ।

ବଭୁ—ହଉ ଯା ଯା ଏବେ । ଆଉ ବୁଝିଲୁ, ଏ ଘରକୁ ଆଉ ଆସିବୁ ନାହିଁ ଆଜ ରାତିରେ ।

ଘିନା—କବାଟ ଦେବ ପରା—କମିତି ଆସିବି ?

ବଭୁ—ଓଃ ସେହି କଥା ଯେ— ହଉ ଯା—

(ଘିନା ଚାଲିଗଲା, ବଭୂତି କବାଟ ଦେଇ ଖଟ ଉପରେ ଶୋଇଲେ)

ବଭୂତି—(ଘଡ଼ିକୁ ଚାହିଁ) ବାରଟା ! ଠିକ୍ ମଧ୍ୟରାତି । ସନ୍ଧ୍ୟବେଳ । (କାନପାରି) ପୃଥିବୀ ନିସ୍ତବ୍ଧ, ନିଶ୍ଚଳ—ମୋତେ ବିରକ୍ତ କରିବାକୁ, ମୋର ପୁଣ୍ୟ କର୍ମରେ ବାଧା ବିଘ୍ନ ଦେବାକୁ କେହି ନାହିଁ । ମୁଁ ଏକାକୀ । ଚାରିଆଡ଼େ ଅନ୍ଧକାର । ଆଉ ଘଡ଼ିକେ ମୁଁ ବି ଏହି ଘୋର ଅନ୍ଧକାରରେ ଲୀନ ହୋଇ-ଯିବି । ଜଗତ ଜାଣିବ, ଜଣେ ନିଜର ଓ ସମାଜର ମୁକ୍ତି ପାଇଁ, ଆଦର୍ଶ ଓ ସ୍ୱାଧୀନତା ରକ୍ଷା ପାଇଁ କପରି ଆତ୍ମଦାନ କରିଛି । ଆରେ ! ଜାଣିବ ବା କିଏ କମିତି ? ରେ ଘଡ଼ି ତୁ ଏକା ସାକ୍ଷୀ । କାନ୍ଥରେ ରହି ରହି ସବୁ ଦେଖୁଛୁ । ଏଇ ଦେଖ, ମୁଁ, ବଭୂତିର ଆତ୍ମା କପରି ମୃତ୍ୟୁରୂପ ମହା ସାଗରରେ······ଆରେ ଯାଃ, ଭୁଲିତ ଯାଇଛି ! ଚିଠି ଖଣ୍ଡ ଲେଖା ହୋଇ ନାହିଁ । ତା ଲେଖି ନ ଗଲେ, କାଲି ଡାକ୍ତର ବିଚରା ହଇରାଣରେ ପଡ଼ିବ । ପୁଲିସ ଆସି ତାକୁ ବ୍ୟତିବ୍ୟସ୍ତ କରିବ । ଯାଏଁ ।

( ବଭୂତି ଉଠି ଟେବୁଲ ପାଖକୁ ଗଲେ ଓ ଚିଠି ଲେଖି ବସିଲେ । ଲେଖି ସାରି ଚିଠିଟି ଥରେ ପଢ଼ିଲେ ଆପେ । )

ପ୍ରିୟ ଡାକ୍ତର ନନା,

ମୁଁ ଆତ୍ମହତ୍ୟା କରୁଛି, ଆପେ ଆପଣା ମନକୁ,—ଅର୍ଥାତ୍ ସ୍ୱେଚ୍ଛାରେ, ବାପମାନଙ୍କ ସ୍ୱେଚ୍ଛାଚାର ବା ଅତ୍ୟାଚାରର ପ୍ରୋଟେଷ୍ଟ ସ୍ୱରୂପ ମୋର ଏ ଆତ୍ମଦାନ । ମୋ ମୃତ୍ୟୁ ପାଇଁ ଆଉ କେହି ଦାୟୀ ନୁହେଁ । ତମ ଘରେ ମରି ତମକୁ ଯେଉଁ ହଇରାଣଟିକି କଲି ସେଥିପାଇଁ ତମେ ଓ ଅପା କ୍ଷମା ଦେବ । ଇତି ।

ତୁମ୍ଭର
ବଭୂତି

ବେଶ୍ ହୋଇଛି । ଖୁବ୍ ଶର୍ଟ ଆଉ ପ୍ରିସାଇଜ୍ । ବାଜେ ବେଶି ଗୁଡ଼ାଏ ଲେଖିବାର ଦରକାର ନାହିଁ, ଅନ୍‌ନାଚୁରାଲ ମଧ୍ୟ । ( ଚିଠି ଖଣ୍ଡି ମୋଡ଼ି ତକିଆ ତଳେ ରଖିଲେ ) ଆଚ୍ଛା, ଡାକ୍ତର ଯଦି ମୋ ମୃତ୍ୟୁ ପୂର୍ବରୁ ଆସିଯାଏ—ହୁଏତ ଚିକିତ୍ସା କରି ବଞ୍ଚେଇ ଦେଇ ପାରେ । ତାହାହେଲେ କଣ ହେବ ଡାକ୍ତର ଆସିବା ପୂର୍ବରୁ କଣ ମରି ଯାଇଥିବ ! ଅଫିମ ଖାଇଲେ କେତେବେଳ ପରେ ମୃତ୍ୟୁ ହୁଏ ? ଓଃ, ଘିନାକୁ ପଚାରି ପାରିଲି ନାହିଁ ତ······ସତେ ଘିନାବି ତ ଷ୍ଟମାକ୍ ପମ୍ପ ଲଗେଇ ଜାଣେ । ହଉ । (ଅଫିମ ଧରି ପାଟି ଆଁ କଲେ) ରେ ଅଫିମ, ତୁ ଅତି କ୍ଷୁଦ୍ର, ସାମାନ୍ୟ, ନଗଣ୍ୟ ହେଲେ ମଧ୍ୟ ତୋର ଶକ୍ତି କପରି ଅସୀମ, ଅପାର, ଅନନ୍ତ । ମୋ ପରି କେତେ ହତଭାଗାର ଶେଷ ଅସ୍ତ୍ର, ଅସହାୟର ସହାୟ, ହତାଶାର ଆଶା, ନିରାଶ୍ରୟର ଆଶ୍ରୟ । ତୋତେ ମୋର କୋଟି କୋଟି ନମ—

( ଏହି ସମୟରେ ଦାଣ୍ଡ ପାଖ ଦୁଆରେ ଠକ୍ ଠକ୍ ଶବ୍ଦ ହେଲା )

ବଭୂତି—(ଚମକି) କିଏ ? ( କାନ ପାରିଲେ )

(ପୁଣି ଠକ୍ ଠକ୍)

ବଭୂତି—କିଏ ସେ ?

ବାହାରୁ—କବାଟ ଖୋଲନ୍ତୁ ।

ବଭୂତି—ଏଠିକା ଲୋକଗୁଡ଼ାକ କି ଅଭଦ୍ର । ଗୋଟାଏ ଲୋକକୁ ସୁରୁଖୁରୁରେ ମରିବାକୁ ବି ଦେବେ ନାହିଁ । ନା, ଭଲ କାମରେ ସବୁବେଳେ ବାଧା ।

(ଉଠି ଦ୍ୱାର ଖୋଲିଲେ)

ବଭୂତି— କିଏ, କଣ ଚାହୁଁଛ ?

ସରଳା—ମୁଁ, ମୁଁ ସରଳା—ଅଫିମ ଟିକିଏ ଜଲ୍‌ଦି ଦିଅନ୍ତୁ ।

ବଭୂତି—ଏଁ—ସରଳା ! —ସ୍ତ୍ରୀ ଲୋକ ! ଏ ଅନ୍ଧାର ରାତି ଦି’ ପହରରେ ଏଠି—

ସରଳା—ସେ କଥାରେ ମୁଣ୍ଡ ବିଥେଇବା ଆପଣଙ୍କର କାମ ନୁହେଁ । ଜଲ୍‌ଦି ଦିଅନ୍ତୁ ଟିକିଏ ଅଫିମ । ଭାରି ଦରକାର ।

ବିଭୂତି—ଅଫିମ ! —ଅଫିମ ମୁଁ କେଉଁଠୁ ପାଇବି ?

ସରଳା—ବାଃ, ଆପଣ ଅଫିମ ଡାକ୍ତର—ଆପଣ ଅଫିମ କେଉଁଠୁ ପାଇବେ କହୁଛନ୍ତି !

ବିଭୂତି—ମୁଁ ଅଫିମ ଡାକ୍ତର ନୁହେଁ ଯେ !

ସରଳା—ଓଃ, ତେବେ, ତେବେ ଆପଣ କିଏ ?

ବିଭୂତି—ମୁଁ, ମୁଁ—ତାଙ୍କର······ଏଇ—ଏଇ ସେ ମୋର······ ଏଇ···ବନ୍ଧୁ ।

ସରଳା—ଓଃ—ତେବେ ତାଙ୍କୁ ଡାକି ଦିଅନ୍ତୁ Kindly.

ବିଭୂତି—ସେ ଘରେ ନାହାନ୍ତି—କଲ୍‌ରେ ଯାଇଛନ୍ତି ।

ସର—କେତେବେଳେ ଆସିବେ ?

ବିଭୂତି—ଆଜି ନୁହେଁ—ବୋଧହୁଏ କାଲିକି ।

ସରଳା—ମୁଁ ତେବେ କରିବି କ'ଣ ! ମୋର ଯେ ନିହାତି ଦରକାର ।

ବିଭୂତି—କିନ୍ତୁ ଅଫିମ ବିକିବାର ଏ ବେଳ ବି ନୁହେ । ଆଉ ପୁଣି ଆପଣଙ୍କର ଲାଇସେନ୍‌ସ ଅଛି ତ ?

ସରଳା—ନା, ସେ ସବୁ କିଛି ନାହିଁ । ବଡ଼ ବିପଦରେ ପଡ଼ି ······

ବିଭୂତି—ବିପଦ ! ଆପଣଙ୍କର ! ମୁଁ କିଛି ସାହାଯ୍ୟ କରିପାରେ ?

ସରଳା—ଖୁବ୍ କରି ପାରନ୍ତି, ଯଦି ଭରିଏ ଅଫିମ ଯୋଗାଡ଼ କରି ଦେଇ ପାରନ୍ତି ।

ବିଭୂତି—ଅଫିମ ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ—ତେବେ ସେହିପରି କୌଣସି ବିଶେଷ ଜରୁରି ପ୍ରୟୋଜନ ପାଇଁ କିଛି —

ସରଳା—ଦେଇ ପାରିବେ ? ଭଗବାନ ମଙ୍ଗଳ କରନ୍ତୁ ।

ବିଭୂତି—ପାରେଁ କିନ୍ତୁ —

ସରଳା—କିନ୍ତୁ କିନ୍ତୁ ନୁହେଁ । ମୋର ପ୍ରୟୋଜନ ଆପଣଙ୍କ ଠାରୁ ନିଶ୍ଚୟ ବେଶି । ମୋର ମା ବେମାର ପଡ଼ିଛନ୍ତି, ତାଙ୍କର ପାଇଁ —

ବିଭୂତି—The necessity is greater than mine— ଏଇ ମାତରେ ମୁଁ ଏକା ଆପଣଙ୍କ ପାଇଁ ସ୍ୱାର୍ଥତ୍ୟାଗ କରିପାରେଁ ।

ସରଳା—ତେବେ ଶୀଘ୍ର । ଡେରି କରନ୍ତୁ ନାହିଁ ।

ବିଭୂତି—ଆପଣ ଭିତରକୁ ଆସନ୍ତୁ, ମୁଁ ଦେଖେଁ ।

(ସରଳା ଘର ଭିତରକୁ ପ୍ରବେଶ କଲେ ବିଭୂତି ସଙ୍ଗରେ । ବିଭୂତି ଲଣ୍ଠନଟା ତେଜି ଦେଇ କହିଲେ) ଠିଆ ହୋଇ ରହିଲେ ଯେ—ବସନ୍ତୁ ନା ସେଇ ଚେୟାରରେ ।

ସରଳା—ବସିବାକୁ ସମୟ ନାହିଁ—ତେଣେ—

ବିଭୂତି—ମୋ ପାଖରେ କିନ୍ତୁ ଜମା ଭରିଏ ଅଛି । ମୁଁ ସେତକ ଡାକ୍ତର ପାଖରେ ବସୁଁ ବସୁଁ ଲୁଚେଇ ମାରି ଆଣିଥିଲି । ଭଣ୍ଡକଥା ଗୋଳାଟି । ତା ଆପଣଙ୍କର କିଛି କମ୍ ହେଲେ·········

ସରଳା—କମ୍ ହେଲେ ଚଳିବ ତ ? ମୁଁ କଣ ଜାଣେ !

ବିଭୂତି—ବାଃ ଆପଣ ଜାଣନ୍ତି ନାହିଁ ଆଉ କିଏ ଜାଣେ ?

ସରଳା—ନା, ନା, ବୋଧହୁଏ ଚଳିବ ନାହିଁ । ଏଫେକ୍ଟ ହବ ନାହିଁ ।

ବିଭୂତି—ଓଃ, ଆପଣ ଏଡ୍ୟୁକେଟେଡ୍ ଗାର୍ଲ ପରି ଜଣା ପାଉଛନ୍ତି ।

ସରଳା—(ସଲଜ୍ଜେ ଈଷତ୍ ହସି) ହିଁ, ମୁଁ ସ୍କୁଲରେ ପଢ଼େ—ମେଟ୍ରିକ୍ କ୍ଲାସରେ—ଆଉ ଗାର୍ଲ ଗାଇଡ଼ର କାପ୍‌ଟେନ ।

ବିଭୂତି—ଓଃ, ବେଶ୍, ବେଶ୍—ଆପଣ ଖାଲି ଏଡ୍ୟୁକେଟେଡ୍ ନୁହଁ, ସ୍ମାର୍ଟ୍, ଅପ୍-ଟୁ-ଡେଟ ମଧ୍ୟ ।

ସରଳା—(ଈଷତ୍ ଲଜ୍ଜାଭରେ) ଆପଣ ?

ବିଭୂତି—ମୁଁ କଲେଜରେ ପଢ଼େଁ—ଏଇ ବି: ଏ: କ୍ଲାସରେ ।

ସରଳା—ଓଃ ! ନମସ୍କାର ମିଷ୍ଟର୍······

ବିଭୂତି—ବିଭୂତିଭୂଷଣ ·········

ସରଳା—ହିଁ, ମିଷ୍ଟର ବିଭୂତିଭୂଷଣ ······

ବିଭୂତି—ନମସ୍କାର ମିସ୍ ·········

ସରଳା—Miss ସରଳା······ଅଫିମଟା ଦିଅନ୍ତୁ ଡେରି ହଉଚି ।

ବିଭୂତି—ହିଁ, ଦିଏଁ । ଭୁଲି ଯାଉଥିଲି ।

(ବିଭୂତି ଚକଆ ଡବ୍ବୁ ଅଫିମ ବାହାର କରି ସରଳା ହାତରେ ଦେଲେ)

ସରଳା—ଧନ୍ୟବାଦ Thank you very much. I am much obliged ନା grateful to you Bibhuti Babu.

(ସରଳା ହଠାତ୍ ଅଫିମତକ ପାଟିରେ ପକାଇଦେଲେ । ବିଭୂତି "ଇଏ କଣ କଲେ, ଇଏ କଣ କଲେ" କହି ସରଳାର ବାଧା ସତ୍ତ୍ୱେ ତାଙ୍କ ପାଟି ଭିତରେ ଆଙ୍ଗୁଳି ପୂରାଇ ଅଫିମ ବାହାର କରି ପକାଇଲେ ।)

ସରଳା—(ବ୍ୟଥିତା ପ୍ରାୟ ବସି ପଡ଼ି କ୍ରନ୍ଦନ ସ୍ୱରେ) ଆପଣ କଣ କଲେ ! ଆପଣ କାହିଁକି ଏପରି କଲେ ! ସବୁ ନଷ୍ଟ କରି ଦେଲେ ଆପଣ । ମୁଁ କଣ କରିବି ?

ବିଭୂତି—ଆପଣ କାହିଁକି ଅଫିମ ଖାଇଲେ ?

ସରଳା—ମରିବା ପାଇଁ ।

ବିଭୂତି—ଆଁ, ମରିବା ପାଇଁ ! ସେ କଣ ! କେଉଁ ଦୁଃଖରେ ? କାହିଁକି ମରିବେ ଆପଣ ?

ସରଳା—ଜାଣିଲେଣି ଯେତେବେଳେ ଆପଣ, ଆଉ ଲୁଚେଇ ଲାଭ ନାହିଁ । କହିବି, ସବୁ କହିବି ବିଭୂତି ବାବୁ । କିନ୍ତୁ ଆପଣ ବି କାହିଁକି ଅଫିମ ଭରିଏ ଷ୍ଟୋର କରି ରଖିଥିଲେ ତା କହିଲେ ଯାଇ କହିବି ।······

ବିଭୂତି—ମୁଁ—ମୁଁ ! ମୁଁ···ଏମିତି······

ସରଳା—ନା, ବିଶ୍ୱାସ କରିବି ନାହିଁ । ବୋକା ଡାକ୍ତରକୁ ଠକେଇ ଅଫିମ ଷ୍ଟୋର୍ କରି ପାରନ୍ତି, କିନ୍ତୁ ଜଣେ ମଡ଼ାର୍ଣ୍ଣ ଏଜୁ-କେଟେଡ଼ ଗାର୍ଲ ଆଗରେ ଲୁଚେଇ ପାରିବେ ନାହିଁ । ଠିକ୍ କହନ୍ତୁ, କାହିଁକି, କି ଉଦ୍ଦେଶ୍ୟରେ ଆପଣ ଅଫିମ ରଖିଥିଲେ ଟିକିଏ ଶୁଣେ ?

ବିଭୂତି—ଧରି ଯେତେବେଳେ ପକେଇଲଣି, ଆଉ ଲୁଚେଇ ଲାଭ କ'ଣ ! ମୁଁ ଏ ଅଫିମ ନିଜେ ଖାଇବି ବୋଲି ରଖିଥିଲି ।

ସରଳା—ଆପଣ ନିଜେ ଖାଇବେ । କାହିଁକି ମ ?

ବିଭୂତି—ଏଇ ଶୁଣନ୍ତୁ । ବାପା ଗୋଟାଏ anti-dated, rustic girl ସାଙ୍ଗରେ ମୋର ବିବାହ ଠିକ୍ କରିଛନ୍ତି । ତାଙ୍କର ବେଜାୟ ଜିଦ୍ ମୋତେ ବିଭା ହବାକୁ ହବ । ତାହାର ପ୍ରୋଟେଷ୍ଟ ସ୍ୱରୂପ ମୁଁ ଏଇ—

ସରଳା—ଓ—! ବେଶ୍ ବେଶ୍—ମୋର ବି ସେଇଆ । ଗୋଟାଏ ବିଗତ-ଯୌବନ, ବେରସିକ, idiot ସାଙ୍ଗରେ ମୋର ବିବାହ ଠିକ୍ ହୋଇଛି । ତାହାର ପ୍ରୋଟେଷ୍ଟ କରି ମୁଁ ଖାଉଥିଲି । କହନ୍ତୁ ଭଲା ବିଭୂତିବାବୁ, ଏ ଯୁଗରେ ଏ ଅତ୍ୟାଚାର କିଏ ସହ୍ୟ କରିବ ! ବିଶେଷତଃ education ପାଇ । ଯଉଠି heart କୁ heart ନ ମିଳିବ, ଯଉଠି ଜୀବନର ଆଦର୍ଶ ନ ମିଳିବ, ଧାରା ନ ମିଳିବ, ସେଠି ··· ଅଚ୍ଛା, ମୁରବିମାନଙ୍କର ଆମ ଶରୀର ଉପରେ ଅଧିକାର ଥାଇ ପାରେ—ତା ବୋଲି heart ଉପରେ ······

ବିଭୂତି—Surely, surely, precisely

ସରଳା—ଅଚ୍ଛା, ଆପଣ ଆପଣା ଘରେ ନ ମରି ଏଠି କାହିଁକି ମରିବା ସ୍ଥାନ ସ୍ଥିର କରିଥିଲେ ?

ବିଭୂତି—ଆପଣ ବା କାହିଁକି ଘର ଛାଡ଼ି ଡାକ୍ତର ବିଟର ଘରେ—

ସରଳା—ଆପଣ ଆଗେ କହି ସାରନ୍ତୁ କାରଣଟା ।

ବିଭୂତି—ମୋର କାରଣ ସେପରି ନୁହେଁ—ଅଫିମଟା ମିଳିଗଲା ସହଜରେ ।

ସରଳା—ମୋର କାରଣ ଡାକ୍ତର ମିଳିଯିବ ସହଜରେ ।

ବିଭୂତି—ଓଃ, ତେବେ ବଞ୍ଚିବାର ଆଶାଟା ଥିଲା ଭିତରେ ।

ସରଳା—ଠିକ୍ ତାହା ନୁହେଁ । ତେବେ ବିନା ଟଙ୍କଣାରେ ଆଉ ବିନା publicity ରେ ମରିବାଟା ନୁହେଁ କିନା, un-wept, un-sung···ବୁଝିଲେ ?

ବିଭୂତି—ମୋର ବି ଠିକ୍ ସେଇଆ, କାରଣ ଦେଖନ୍ତୁ ମୋ ମରିବାଟା ତ ମୋ ନିଜ ପାଇଁ ନୁହେଁ public cause, national interest.

ସରଳା—ହଉ, ଆପଣଙ୍କର ଅଫିମର ଦାମ୍‌ଟା ?

ବିଭୂତି—ଦାମ୍ ! ମୁଁ ତ କିଣି ନାହିଁ ।

ସରଳା—ତେବେ ମୋ ପାଇଁ ଲୋକସାନ ହେଇଚି ତ ?

ବିଭୂତି—କାହାର ଲୋକସାନ ? ହେଲେ ଡାକ୍ତରର ହୋଇପାରେ, ଏକାଉଣ୍ଟ ମିଳାଇବା ବେଳେ ।

ସରଳା—ଆପଣଙ୍କର ଦାମ୍‌ଟା ନ ନବାଟା ଯିମିତି ଉଦାରତା, ମୋର ଦାମ୍ offer ନ କରିବାଟା ଯିମିତି meanness ହୁଅନ୍ତା ନାହିଁ କି ? (ଘଡ଼ିକୁ ଚାହିଁଲେ) ଦି'ଟା ବାଜିଗଲାଣି ! ମୁଁ ଏବେ ଯାଏଁ । ଆପଣ ଅଫିମ ଦେଇ ମୋର ଯେତେ ଉପକାର କଲେ, ମୋର ମୃତ୍ୟୁରେ ବାଧା ଦେଇ ସେତିକି ଅନିଷ୍ଟ ବି କଲେ ବିଭୂତି ବାବୁ ।

ବିଭୂତି—ତମେ ବି ତ ମୋର କମ୍ ଅନିଷ୍ଟ କରିନାହଁ । ମୋର ଅଫିମଟା ବି ନଷ୍ଟ ହେଲା ଆଉ ମରିବାର ସାଧଟା ବି ମାଟି ହେଲା । ମୁଁ ବେଶି injured.

ସରଳା—ତେବେ କ୍ଷମା କରନ୍ତୁ । ମୁଁ ଯାଏଁ ।

( ଦୁଆର ପାଖକୁ ଯାଇ ବାହାରକୁ ଚାହିଁଲେ )

ବାପ୍‌ରେ କି ଅନ୍ଧାର !

ବିଭୂତି—( ବାହାରକୁ ଚାହିଁ ) ହଁ ଘୋର ଅନ୍ଧାର ।

ସରଳା—ଆପଣ ଟିକିଏ ଦୟା କରି ଛାଡ଼ି ଦେଇ ଆସିବେ ? ବେଶି ବାଟ ନୁହେଁ ।

ବିଭୂତି—ଆପତ୍ତି ନ ଥିଲା—ତେବେ ମୁଁ ଫେରିବି କାହା ସାଙ୍ଗରେ ?

ସରଳା—ଓଃ, ସତେ ତ । ମୋର ଖିଆଲ ନ ଥିଲା । କ'ଣ କରାଯିବ ପୁଣି ?

ବିଭୂତି—ଚାକରକୁ ଡାକିବି ?

ସରଳା—ସେ କଣ ଭାବିବ ? ମାନେ—ଏତେ ରାତିରେ······

ବିଭୂତି—ତାହାହେଲେ ଆପଣ ଏଇଠି ଭିତରେ ଯାଇ ଶୋଇ ପଡ଼ନ୍ତୁ । ଅପାକୁ ଡାକେଁ ?

ସରଳା—ବେଲୁବ୍ ନା କଣ ! ସବୁ ଜଣା ପଡ଼ିଯିବ ଯେ !

ବିଭୂତି—ପୁଣି ଉପାୟ ?

ସରଳା—ହିଁ, ଉପାୟ ?

ବଭୂତ – ଆପଣ ଏଇ ଘରେ ଶୁଅନ୍ତୁ ।
ସରଳା – ଆଉ ଆପଣ ?
ବଭୂତ – ମୁଁ ବ ଚେୟାରରେ ବସିବ । ଖଟ ଯେ ଗୋଟାଏ ।
ସରଳା – କଷ୍ଟ ହବ ନାହିଁ ତ ?
ବଭୂତ – ନା ବରଂ ଆନନ୍ଦ । Gallantry କନା !
ସରଳା – ଆଚ୍ଛା ତା'ହ୍ ହଉ ।
(ସରଳା ଖଟ ଉପରେ ଶୋଇଲେ । ବଭୂତ ଚେୟାରରେ ବସିଲେ । କଛୁକ୍ଷଣ ପରେ)
ସରଳା – ଆଲୁଅଟା ଭଲ ଲାଗୁ ନାହିଁ ବଭୂତ ବାବୁ ।
ବଭୂତ – ନଭେଇ ଦେବ ?
ସରଳା – ଆପଣଙ୍କର ଅସୁବଧା ହବ ନାହିଁ ତ ?
ବଭୂତ – ନା ।
ସରଳା – ଲୋକେ କଣ କହବେ ?
ବଭୂତ – ଅଛୁ କଏ ?
ସରଳା – ତେବେ ଆପଣଙ୍କର ଯାହା ଇଚ୍ଛା ।
( ବଭୂତ ଆଲୁଅଟା ଲଗାଇ ଚେୟାରରେ ବସିଲେ । କଛୁକ୍ଷଣ ଉଭୟେ ନୀରବ )
ବଭୂତ – ଶୋଇଲଣି କ ?
ସରଳା – ନା, ତେବେ ତନ୍ଦ୍ରା ପର ଲାଗୁଛି ।
ବଭୂତ – ସେଟା ଅପମର ନଶା । ପାଟିକୁ ଯାଇଥିଲ ତ ।
( ପୁଣି ନୀରବ )
ସରଳା – ଶୋଇଲଣି କ ?
ବଭୂତ – ନା ନଦ ଆସୁନାହିଁ ।
ସରଳା – ଆପଣ ତେବେ ବାହା ହେବେ ?
ବଭୂତ—ହବାକୁ ତ ପଡ଼ବ, ତେବେ ସେଠେ ନୁହେଁ ।
ସରଳା – ଆଉ କଉଠି ?
ବଭୂତ – ଦେଖିବାକୁ ହବ । କୌଣସି educated, modern, up-to-date girl –
ସରଳା – ହୁଁ (ପୁଣି ନୀରବ)
ବଭୂତ – ଆପଣ ବାହା ହେବେ ନଶ୍ଚୟ ।
ସରଳା – ତା'ତ ହବ । କନ୍ତୁ ସେଇଠି ନୁହେଁ କେବେ ।
ବଭୂତ – ଆଉ ?
ସରଳା – ଯାହା ସାଙ୍ଗରେ heart ମିଳବ । (ନୀରବ)
ବଭୂତ—ତୁମ ମା ଏଥିରେ ରାଜି ହେବେ ?
ସରଳା—କଉଥିରେ ?
ବଭୂତ—ଯଦ—ଯଦ—ମାନେ—ମାନେ ଏଇ ଆମ—
ସରଳା—ତୁମ ବାବା କଣ ରାଜି ହେବେ ?
ବଭୂତ—କରାଇବାକୁ ପଡ଼ବ ।
ସରଳା—ତେବେ ମାଙ୍କୁ କରାଇବାକୁ ପଡ଼ବ । (ନୀରବ)
ସରଳା—ଶୋଇଲଣି କ ?
ବଭୂତ—ନା ।
ସରଳା—କଷ୍ଟ ହଉଥିବ ।
ବଭୂତ—ସେମିତି ନୁହେଁ ।
ସରଳା—ତୁମେ ଶୁଅ, ମୁଁ ବସେଁ ।
ବଭୂତ—କାହିଁକ ?
ସରଳା—ମତେ ନଦ ଆସୁନାହିଁ ।
ବଭୂତ—କଣ ଗରମ ହଉଚ ।
ସରଳା—ପଙ୍ଖା ଅଛୁ ଏଠି ?
ବଭୂତ—ହଁ ଅଛୁ ।
ସରଳା—ଟିକଏ ବାଆ ଦେବ ?
ବଭୂତ—ଏତେ ଦୂରରୁ ।
ସରଳା—ହଁ ତା ସତ । ଆଉ······ (ନୀରବ)
ବଭୂତ—ଆଜ ଡର ମାଡ଼ୁଛି ?
ସରଳା—ଆଜ ଗରମ ହଉଚ ?
ବଭୂତ—ପାଖକୁ ଯିବ ?
ସରଳା – ପଙ୍ଖାଟା ଆଣିଥିବ ଏକା ହାତରେ ।
( ବଭୂତ ଉଠି ପଙ୍ଖା ଖୋଜୁ ଖୋଜୁ )
ବଭୂତ—ରାତ ବୋଧହୁଏ ଆଉ ବେଶି ନାହିଁ ।
ସରଳା—ସତେ ! ଘଡ଼ିଟା ଟିକଏ ଦେଖିବ କ ?
ବଭୂତ—ଅନ୍ଧାର ଯେ—
ସରଳା—(ବିରକ୍ତି ମିଶା ବ୍ୟସ୍ତ ସ୍ୱରରେ) ଉଁଃ······
ବଭୂତ—Excuse please······



# ଭେଟ

[ବଡ଼ଲାଟଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ମହାତ୍ମା ଗାନ୍ଧି ଓ ଜନାବ ଜିନ୍ନା ସାହେବ ଦିଲ୍ଲୀ ରାଜ ପ୍ରାସାଦର ନିର୍ଦ୍ଦିଷ୍ଟ କକ୍ଷରେ ବିଦ୍ୟମାନ। କିନ୍ତୁ ଏପରି ଭାବରେ ବସିଛନ୍ତି ଯେ ଦୁହିଁଙ୍କ ମୁହଁ ବିପରୀତ ଦିଗକୁ। ଯେପରି କେହି କାହାରିକୁ ଦେଖି ନାହାନ୍ତି। ମହାତ୍ମା ସାମନାରେ ଥିବା କାନ୍ଥ ଘଡ଼ିକୁ ଚାହିଁବାରେ ଓ ଜିନ୍ନା ସାହେବ ନିଜର ହାତ ଘଡ଼ିକୁ ବାରମ୍ବାର ଚକାଇବାରେ ଲାଗିଛନ୍ତି। କେବଳ ଘଡ଼ିର ଟିକ୍ ଟିକ୍ ଓ ପଙ୍ଖାର ସରସର ଶବ୍ଦ ଛଡ଼ା ଅନ୍ୟଥା ଘରଟି ନୀରବ। ଘଡ଼ିରେ ସାଢ଼େ ତିନିଟା ବାଜିବା ମାତ୍ରେ ଦ୍ୱାର ଦେଶରେ ସ୍ୱୟଂ ବଡ଼ଲାଟ ଆବିର୍ଭୂତ ହେଲେ।]

ବଡ଼ଲାଟ—ଗୁଡ୍ ଇଭିନିଂ...

(ଦୁହେଁଯାକ ଉଠି ପଡ଼ି ସମସ୍ୱରରେ କହିଲେ)

ଗୁଡ୍ ଇଭିନିଂ ୟୋର ଏକ୍ସେଲେନ୍ସି।

ବଡ଼—(ହସି) ଯେଉଁମାନେ କହନ୍ତି ଯେ ଆପଣ ଦୁହିଁଙ୍କର ସ୍ୱର ମିଳିପାରେ ନାହିଁ ବୋଲି, ସେମାନେ ନିଶ୍ଚେ ମିଥ୍ୟାବାଦୀ।

(ମହାତ୍ମାଜୀ ଓ ଜନାବ ସାହେବ ସମତାନରେ ପୁଣି ହସି ଉଠିଲେ)

ବଡ଼—ନିର୍ଦ୍ଦିଷ୍ଟ ସମୟର କିଛି ଆଗରୁ ଆସି ଆପଣମାନଙ୍କୁ ଅପେକ୍ଷା କରିବାକୁ ପଡ଼ିଛି—ଏଥିପାଇଁ କ୍ଷମା କରିବେ ନିଶ୍ଚୟ।

ଉଭୟେ—କିଛି ନା—କିଛି ନା—

ବଡ଼—କିନ୍ତୁ ଆପଣ ଦୁହେଁ ଖୁସି ଗଳ୍ପ କରି ସମୟଟାର ସଦ୍‌ବ୍ୟବହାର କରିଥିବେ ଖୁବ୍। (ଉଭୟେ ନୀରବ)

ବଡ଼—ଓଃ, ମୋର ଭୟ ହେଉଛି, ଆପଣମାନେ କଥାବାର୍ତ୍ତା ହୋଇ ନାହାନ୍ତି।

ମହାତ୍ମା—ଆପଣ ଠିକ୍ ଅନୁମାନ କରିଛନ୍ତି। ମାତ୍ର ଏଠାରେ ଆମକୁ ପରିଚୟ introduce କରାଇ ଦେବାକୁ ଦୁର୍ଭାଗ୍ୟକ୍ରମେ କେହି ନ ଥିଲେ।

ଜନାବ—ଆମ୍ଭେମାନେ ପରିଚିତ ବନ୍ଧୁ ହେଲେ ମଧ୍ୟ ଏଠାରେ ରାଜକୀୟ ଆଦବ୍ କାୟଦା ମାନିଚଳିବା ଉଚିତ ତ!

ବଡ଼—ଠିକ୍ ଠିକ୍—ତାହିଁକି ଦୁହେଁ ବାରିଷ୍ଟର ଯେତେବେଳେ। ଆଚ୍ଛା, ମୁଁ ତେବେ ଇନ୍‌ଟ୍ରୋଡ଼ୁସ କରାଇ ଦିଏ.....

(ଏତେବେଳକୁ ତିନିଜଣଯାକ ଧୀରେ ଧୀରେ ଆସି କକ୍ଷର ମଧ୍ୟବର୍ତ୍ତୀ ହୋଇ ସାରିଥିଲେ)

ବଡ଼—ମିଃ ଗ୍ୟାନ୍‌ଡ଼ୀ, ମିଃ ଜିନ୍‌ହା.....

(ଏତିକିରେ ଜିନ୍ନା ଓ ଗାନ୍ଧି ଉଭୟେ ସହାସ୍ୟ ବଦନରେ ପରସ୍ପର କରମର୍ଦ୍ଦନ କଲେ ଏବଂ ବଡ଼ଲାଟଙ୍କ ସହ ସ୍ୱତନ୍ତ୍ର ଭାବରେ କରକମ୍ପନ ମଧ୍ୟ କଲେ)

ବଡ଼—ଆପଣମାନେ ଅନୁଗ୍ରହ କରି ଆସନ ଗ୍ରହଣ କରନ୍ତୁ।

ଉଭୟେ—ଆପଣ ଆଗେ ବସନ୍ତୁ।

(ବଡ଼ଲାଟ ଆସନ ଗ୍ରହଣ କଲେ)

ମହାତ୍ମା—ଜନାବ, ଆପ୍ ଆଗେ ବୈଠିୟେ।

ଜିନ୍ନା—ମହାତ୍ମା, ଆପ୍ ଆଗେ ବୈଠିୟେ।

(ଏହିପରି ଦୁଇ ଚାରିଥର ଦୁହେଁ କୁହାକୁହି ହେବାରୁ ବଡ଼ଲାଟ ମଧ୍ୟସ୍ଥ ହୋଇ କହିଲେ)

ବଡ଼—ଆପ୍ ଲୋକ ଏକାସାଥ ବୈଠିୟେ—କୋଇ ନହି ଆଗେ ଔର କୋଇ ନହି ପିଛେ। ମୁଁ ମଧ୍ୟସ୍ଥତା କରୁଛି।

ଓଆନ୍—ଟୁ—ଥ୍ରୀ—

('ଥ୍ରୀ' କହିଲା ମାତ୍ରେ ଦୁହେଁ ଦୁଇ ଆସନରେ ବସି ପଡ଼ିଲେ।)

ବଡ଼—ଅଲ୍‌ରାଇଟ୍। (ବଡ଼ଲାଟ ହସିଲେ)

ଏଥର ଗରମ କମିଛି କି?

ମହାତ୍ମା—ଖୁବ୍ ଗରମ ଏଥର।

ଜିନ୍ନା—ଏଥର କିନ୍ତୁ ଗରମଟା କମ୍ ବର୍ଷାହେତୁ।

(ବଡ଼ଲାଟ ଈଷତ୍‌ହାସ୍ୟ କଲେ)

ବଡ଼—ମୁଁ ଆପଣମାନଙ୍କୁ ସରକାରୀ ଭାବରେ ଡାକି ନାହିଁ। ବନ୍ଧୁ ଭାବରେ ପ୍ରାଇଭେଟ ଗପସପ କରିବା ନିମନ୍ତେ—ବୁଝିଲେ?

ଉଭୟେ—ତାହା ଠିକ୍।

ବଡ଼—ତେବେ ଏକ ସମୟରେ ଡକାଇବାର ଉଦ୍ଦେଶ୍ୟ ଯେ ଆପଣ ଦୁହିଁଙ୍କର ଦୃଷ୍ଟିକୋଣକୁ ଏକମୁଖୀ କରିବା, ଯେପରି ଆପଣମାନେ ସବୁକଥା ଏକ ଆଖିରେ ଦେଖିବେ। ତାହାହେଲେ ଆମ୍ଭମାନଙ୍କ ଦାୟିତ୍ୱ ଅନେକଟା ହାଲୁକା ହୋଇଯିବ।

ଜିନ୍ନା—ମହାତ୍ମାଜୀ କେବଳ ପାକିସ୍ଥାନକୁ ମାନି ନେଲେଇ ହେଲା।

ମହାତ୍ମା—ପାକିସ୍ଥାନ ଭିତରେ ବେଙ୍ଗଲ ପଡ଼ି ନାହିଁ କିନ୍ତୁ।

ଜିନ୍ନା—ତା ଚଳାଇବାକୁ ହେବ ଯେପରି ହେଉ। ପଞ୍ଜାବ ମେଳଟାର ନାମ ହେବ ସିକନ୍ଦରଙ୍କ ନାମାନୁଯାୟୀ ସିକନ୍ଦସ୍ଥାନ। ଆଉ ବେଙ୍ଗଲ ନାମ ହେବ ହକ୍‌ସ୍ଥାନ। ପୁଣି ଉଭୟେ ମିଳି ହେବେ ପାକିସ୍ଥାନ।

ଗଣ୍ଡି ଢଖଣ୍ଡ ଯାହାଥିଲା ତାକୁ ବିକଲୁ, ଏବେ ମଦ ମରନ୍ତୁ ତ ଜମିବାଡ଼ ଢ଼'ଗୁଣ୍ଠ ପିଲାଙ୍କ ପାଇଁ ରହିଯାଆନ୍ତା ।

ଦାମ—ଫେର୍ ସେଇ କଥା । ମୁଁ ଥଣ୍ଡାଲୋକ, ରାଗେ ନାହିଁ ବୋଲି ଢନକୁଢନ ତୋର ମୁହଁ ବଢ଼ିଯାଉଛି । ଦେଖିବୁ ଏଲକ୍ଷଣୀ ! ଆଣିବୁଟି ରେ —

ସ୍ତ୍ରୀ—ଦେଖିଚ ତ ଢେର୍ । ଆଉ କଣ ଦେଖେଇବୁ ମ ! ଢ଼'ଟା ମାରିବୁ, ଏଇଯା ତ ! ଲୁଖୁରା ମୁହଁଟାଣ ଦେଖ ।

ଦାମ—ମାରଲେ ତୋ ବୋପା ରଖିବ ?

ସ୍ତ୍ରୀ—ମୋ ବାପ ନାଁ ଧରୁଚୁ ? ଫେର୍ ଚିହ୍ନିଥା ଖଜୁମୁହାକୁ ।

ଦାମ—ଜୁହାର ତତେ ମା ଜାଡ଼ ମଙ୍ଗଳା, ବୁଢ଼ୀ ଜାଗୁଲେଇ, ଡିହବାଶୁଳୀ । ( ଜୁହାର ହେଲା ) ଦୋଷ ହେଇଚ ।

ସ୍ତ୍ରୀ—ଆପେ ମରିବୁଚ ମର । ମୋ ଆଇଷ ଭୁଟାଉଛୁ କାହିଁକି ରେ ଅଲପେଇଷ ? ( ଚଳେଇଗଲା )

ଦାମ—ଏ, ଏ, ଶୁକୁଟା ବଉ ଶୁଣ୍ ଶୁଣ୍ । ମୋ ରାଣଟି ।

ଶୁ-ମା—ଯା, ମୁଁ ଶୁଣିପାରିବ ନାହିଁ ।

ଦାମ—ସତରେ କଣ ରାଗିଗଲୁ ନା ? ଏ——ଏ——

[ ଟିକିଏ ରୁହିଁ, ହଠାତ୍ ପେଟରେ ହାତଦେଇ "ମାଆଲୋ ମଲି" ବୋଲି ଗଡ଼ିବାକୁ ଲାଗିଲା । ଏହା ଶୁଣି ଶୁକୁଟା ମା ପ୍ରୀ ବ୍ୟସ୍ତ ହୋଇ ଧାଇଁ ଆସିଲା ]

ଶୁ-ମା—କଣକି କଣକି ! ହେଲା କ'ଣ ମ ?

ଦାମ—ଉ-ହୁ-ହୁ-ହୁ-ପେଟଟା କଣ ନାଇଁ କଣ ହେଇଁ ଯାଉଛି, ମଲିଲୋ ବାବା, ମରିଗଲିଲୋ ବଉ······

ଶୁ-ମା—କଉଁଠି—କଉଁଠି ? କଣ ହେଲା ? ( ହାତ ମାରିଲା )

ଦାମ—ଏଇ—ନାଭି ମୂଳରେ······ଏଇ ପଞ୍ଜରାକୁ ପଶିଗଲା ।

ଶୁ-ମା—ଦେଖିନ୍ତୁ ନା; ନିଶାଖୋରଆଙ୍କର କେତେ ନଟାଣ ମ; ହଉ ଦଉଟା ଭଲକରି ଏଇକ୍ଷିଣି । ( ପ୍ରସ୍ଥାନ )

ଦାମ—ହଉ, ବାଧିଗଲାକୁ ଢକଥା କହିଦେଲି ବୋଲି, ମରିବା ବେଳେ ମୁଧେ ମୁହଁକୁ ରୁହିଁଲୁ ନାହିଁ ? ହାଇରେ କପାଳ ! କଏ କୁଆଡ଼େ ଗଲା ଲୋ ବାବା, ରେ ଶୁକୁଟା, କୁଆଡ଼େ ଗଲୁରେ ଶୁକୁଟା ।

( ଶୁକୁଟା ପ୍ରବେଷ୍ଟ ହୋଇ ) "କଣ କ ଲୋ ?"

ଦାମ—ତୋ ବଉକୁ ଡାକ୍‌ରେ ଶୁକୁଟା—ମୋ ପେଟ ତ କଣ ହେଇଁ ଯାଉଚରେ ଶୁକୁଟା—

ଶୁକୁଟା—ଛଟକ ହଉଚ କେତେ ଦେଖ ଭୁଚ୍ଛାଟାରେ—

ଦାମ—ହଇରେ ତୁ ବ ସିମିତିକା ହେଲୁରେ ଶୁକୁଟା ! ତତେ କେତେ ଆଶା କରିଥିଲି ରେ ଶୁକୁଟା ······

ଶୁକୁଟା—ଟିକିଏ ସବୁର ଧରି ରହ ମ, ସେଇଆଡ଼ କହିବୁ ଘୁଅରୁ ମୋଣ୍ଡାଏ ଗିଳିବୁ ବୋଲି—ଆଣିବ ?

ଦାମ—କଣ, କଣ, ଅମଲଟା କରିଥିଲି ବୋଲି ପୁଅ ଠଉଁ ଘରଯା ଯାକେ ସମସ୍ତେ ଏଇଯା ହେଲେ ! ହଉ, ହଉ—ଆଜଠୁଁ······ନଆମ······

( ଶୁକୁଟା ବଉ ପ୍ରବେଶ )

ଶୁ-ମା—ହେଇ ନେ ନେ—ଅଫିମ ବକଟେ ସାଇରୁ ଯାଇ ମାଗି ଆଣିଲି—ନେ—ଗିଳ୍ । ଜାଅ ପଶୁ ଏବେ ।

[ ପାଟିରେ ଅଫିମ ଦେଲା ଓ ପାଣି ଢାଳିଲା ]

ଏବେ ହେଲା ତ ? ଗୁଡ଼ସିବ ଯେ ଏବେ ସବୁ ବେଗିଳ !

ଶୁକୁଟା—ମକ ମକ ହେଇ ପୁଣି ଚେଙ୍ଗେଇ ଉଠିବ ନା—

ଶୁ-ମା—ଆଉ କାହିଁକି ? —ହେଲାତ—ଏବେ ଗଡରି ଚଳୁ ।

ଦାମ—ଉଃ—ଏତେବେଳେକେ ଯାଇ ଟିକିଏ ସୁସ୍ଥ ଲାଗିଲା । ଜୀବନରେ ସାହା ପଶିଲା ଶୁକୁଟା ବଉ । ମୁଁ ତତେ ନିନ୍ଦୁଥିଲି ମିନା—ଭରି ବାଧିଲା ବୋଲି—ଏକା ତୋ ପରିକା ସତୀ, ସାବିତ୍ରୀ ଉରିଲା ଭୂମଣ୍ଡଳରେ ନାହିଁ ନ ଥିବ ।—(କଅଁଳ ସ୍ୱରେ) ଶୁକୁଟା ବଉ, ତୁ ଆର ଜନ୍ମରେ ମୋର କଏ ଥିଲୁ କହନ ?

ଶୁକୁଟା—ତୋ ଗୋସେଇଁ ମା ଥିଲା ।

ଦାମ—ଦୂର୍ ବଦ୍‌ଜାତ୍ ଟୋକା—ଏକା ଗୁପ୍ପଡ଼ାକେ ଗାଲ ଉଡ଼େଇ ଦେବ ଯେ ଚିହ୍ନିବୁ ବୋପା ବୋଲି ।

ଶୁକୁଟା—ହୁଁ—ମାଇଲୁ ମାଇଲୁ ଭଲା, ଦେଖେଁ କରାମତିଟା । ନିଶା ଛଡ଼େଇ ଦେବ ଯେ—ଜାଣିବୁ ପୁଣି ।

ଦାମ—[ ଉଠି ପଡ଼ ଗୋଡ଼ାଇ ଗଲା ଓ ଶୁକୁଟା ପଳେଇଲା ] ପାଜି, ବଗୁଲିଆ—ବଦ୍‌ଜାତ୍, ହାରାମଜାଦା—

ଶୁ-ମା—ଏଇକ୍ଷଣି ତ ମରୁଥିଲ—ସାଙ୍ଗେ ସାଙ୍ଗେ ପୁଣି ଏତେ ବଳ ଆସିଗଲା କିମିତି ?

ଦାମ—ଆଉ କଣ ? ପଡ଼ିଗଲା ପରା କଳା କୃଷ୍ଣ—ଜାଣିନ—କଳି କାଳର ଅମର ମହୌଷଧି ଯେ ।

ଶୁ-ମା—ହଉ, ଏବେ ଯା ହାଟକୁ । ସଉଦା ପତ୍ର ଆଣିବୁ—ଖବରଦାର୍, ଅଫିମ କିଣିବୁ ତ ଘରେ ପୂରେଇ ଦେବି ନାହିଁ ।

ଦାମ—ଆଉରି ପୁଣି ! ତୋରାଣ ମୋତେ । ଦେଖିବୁ ନାହିଁକି ।

ଶୁ-ମା—ହଉ ନେଇ ଯା ଏଇ ପଇସା ଚାରି ଅଣା । ପରିବା, ତେଲ, ଲୁଣ, ହଳଦୀ, ଏସବୁ ଆଣିବୁ—ଆଉ ଶୁଖୁଆ ଢ଼ ପଇସାର ଶୁକୁଟା ପାଇଁ । ଯା—ମନେ ରହିବ ଟି ?

ଦାମ—ହେଁ, ଏଇଟା ଆଉ ମନେ ରହିବ ନାହିଁ—ଗୁଣ୍ଡା ଚଳିବ କିମିତି ? ନୋହିଲେ··· (ବାହାରିଲା)

ଶୁ-ମା—ଅଫିମା, ମଦତିଙ୍କୁ ବିଶ୍ୱାସ କଣ ? କେତେବେଳେ କି ମତଲବ (ଉଚ୍ଚେ ଡାକ) କଣ କରି ଆସି ଗାଲୁ ମାରିବୁଚ କହି ଦେଉଚି ଏକା ଏଇ ଗୁଞ୍ଜୁଣୀ ମୁଠାକୁ —

ଦାମ—(ପାଉଁ ପାଉଁ) ସେଇଟା ଆଉ ନୂଆ କଥାଟେ କଣ ଯେ— ଅଫିମ ଚର ସେବି ତ ଗୋଟାଏ ଅମଳ···

(ଗୀତ)—କଳା କୃଷ୍ଣ ବିନା ବିରହ ବେଦନା
ଦେଉଥିଲି ପ୍ରାଣ ଘାରି,
ଛାତି ଧଡ଼ ପଡ଼ ନାକ ଭଡ଼ ଭଡ଼
ଆଖିରୁ ବହଇ ବାରି ।
ସହି, କଦେଲୁ ଅମୃତ ବୁଟି (ପ୍ରାଣସହି)
ପଡ଼ିଲି ମାତରି, ମନର ଭଲଆ
ସବୁ ଦୁଃଖ ଗଲା ଛୁଟି ।
ଏବେ ଆଉ ପୁଣି ମୋ ସୁନା ଗୋସି ଲୋ,
ନାହିଁ ମୋର କିଛି ଚିନ୍ତା,
ତୋ ସାଙ୍ଗରେ ସଖି ଖେମଟା ନାଚିବ
ତାକ୍ ଧିନା ଧିନ ଧିନ୍ତା । (ନାଚିଲା)

ଶୁ-ମା—ଦୂର୍‌ଦୂର୍ ମରୁନାହୁଁ, ବେହିଆଟା ।
(ପେଲି ବାହାର କରିଦେଲା)

[ ଦାମ ଗଲା ଓ ଶୁକୁଟା ଆସିଲା ]

ଶୁ—ବଉ ଲୋ, ଗଲା ନା ସେ ବୁଢ଼ା ମାଙ୍କଡ଼ା—

ଶୁ-ମା—ହେଃ—ବାପଟାକୁ ଏମିତି କହନ୍ତି ! ବୁଦ୍ଧି ଶିଖୁଚି—

ଶୁ—ହଃ—ନିଶାଖୋରଆଟାକୁ ବାପ ବୋଲି କହିବାକୁ ଲାଜ ମାଡ଼ୁଚି ଯେ—ସେଦିନ ଗାଁ ପିଲିଏ ଏଇଥିପାଇଁ ମୋତେ ଯେତେ ଅପମାନ ଦେଇଛନ୍ତି !

ଶୁ-ମା—ହଉ, ଚାଲ୍ ଚାଲ୍—ପଖାଳ ଖାଇବୁ—
[ପ୍ରସ୍ଥାନ]

## ଦ୍ୱିତୀୟ ଦୃଶ୍ୟ

( ଦାଣ୍ଡରେ ଦୁଇଟି ଶଅରୁଣୀ ଗୀତ ଗାଇ ଗାଇ ନାଚୁଥିଲେ )

କେତକୀ ଫୁଟିଲା, କୋଇଲି ରଡ଼ିଲା, ମହକି ଉଠିଲା ବନ
ଏ ଯୁବାକାଳରେ, ଏକୁଟିଆ ଛାଡ଼ି, କାହିଁ ରହିଲେ ମୋ ଧନ ।

ଗ୍ରୀଷମ ହୋଇଲା, ଝାଇଁ ପିଟି ଦେଲା ଝାଳିତ ବୋହିଲା ଅତି,
କାଳିଁଚ ବଞ୍ଚଣା, ବଞ୍ଚିବ କାଅଙ୍ଗେ କାନ୍ତ ନାହାନ୍ତି ମୋ କତି ।

ବରଷା ଆସିଲା, ବିଜୁ ଚମକିଲା, ଚହଟେ ମାଳତି ବାସ,
ଉଙ୍କିନା ହେଉଛି ଟିଉ ଗ୍ରାକ ଗ୍ରାକ, ବନ୍ଧୁ ଯୁଆଦିଆ ହସ ।

କୁଆଁର ପୁନେଇ ଜହ୍ନରେ ସଙ୍ଗାତ କୁଆଁର ପୁନେଇ ଜହ୍ନ,
ଗଙ୍ଗଶିଉଳିର ମଧୁର ବାସରେ ଉଚ୍ଚାଟ ହେଉଛି ମନ ।

ଉତ୍ତରି ପବନେ ଦେହ ଥରି ଉଠେ, ଶୀତ ଦିନ ଜାଡ଼ ଗ୍ରନ୍ତି
ମୋ ପାଶରେ ବନ୍ଧୁ ଥାଆନ୍ତେ ଯଦିଲୋ, ଛନ୍ଦି ଥାନ୍ତି ଛାତି ଛାତି ।

( ବିଶେଇ ପଧାନ ପ୍ରବେଶ ହେଲା )

ବିଶ—ମାଉସୀ ତମ ଘର ?

୧ ଶ—ଆରେ ଝିଟ ମୋ ବୋପାର ଶାଳୀ କରି ପାଇଛୁ ଯେ ମାଉସୀ ବୋଲି ଡାକୁଛୁ ?

ବିଶ—ମାଫ୍‌କର ନାନୀ ପଚାରୁଥିଲି କି କୁଆଡ଼େ ଯିବି ।

୧ ଶ—କି ଗରଜ ତୋର ସେ କଥାରେ—ଛତରା, ଭିକ ମଗାଟା ?

ବିଶ—ନାଇଁ ଲୋ ନାନୀ କଣ କି···ଏଇ ମୁଁ ଘର ଛାଡ଼ି ଚାଲି ଯାଉଛି —କୁଆଡ଼େ ଯିବି ଠିକଣା ନାହିଁ, ତମ ସାଙ୍ଗରେ ନିଅନ୍ତ ବୋଇଲେ—

୨ ଶ—ଆଲୋ, ଏଇଟା ଡାକୁ କି ଖଣ୍ଡ ପରି ଲାଗୁଛି—ଦେଖୁନୁ ଯା ରୂପଶିରୀ ।

ବିଶ—ମୋର ପେଟ ବିନ୍ଧା—ଆଉ ବୁଝିଲ, କାଶ—ଖୁଁ ଖୁଁ ଇଆ କାଶ—ସେଇଥି ପାଇଁ—ଏଇ ବକଟେ ବକଟେ ଅମର ମୌଷଧି, ବୁଝିଲ—ବେଶି ନୁହେଁ ଏଇ ଦି, ଦି, ପଇସାର । ତା—ଯେଉଁଦିନଁ କାଳ ପଡ଼ିଲାଣି, ଆମର ରୋଗୀ ବଇରାଗୀ ଭଲ ଲୋକଙ୍କର ଆଉ ଏ ରାଇଜରେ ଥାନ ନାହିଁ । ସେଇଥି ପାଇଁ ତମକୁ ପଚାରୁ ଥିଲି କି ତମ ଗଉଁଜାତକୁ ବାଟ କଉବାଟେ ବତେଇ ଦିଅନ୍ତ କି—

୧ ଶ—ଆଲୋ, ଏଇଟା ଅଫିମା, ନିଶା ଖୋରଆ—ଷ୍ଟେର କି ଡକେଇତ—ପଳେଇଆ, ପଳେଇଆ ଏଠୁ—
( ପଳେଇ ଗଲେ )

ବିଶ—ହାୟରେ କପାଳ, ଆପଣା ଦିହ ହିତ ପାଇଁ ଟିକିଏ ଅମଳ କରୁଛି ବୋଲି ଦୁନିଆ ସାରା ଛି, ଛି, କଲେ—ଏଇ ଶ୍ରେଷ୍ଠ ଲୋକ, ପୁଣି ମାଇକିନାଗୁଡ଼ାକ ବି ପାଖ ପୂରେଇ ଦଉ ନାହାନ୍ତି—ଧିକ୍ ଏ ଜୀବନକୁ ।

( ସେଆଡ଼ୁ ନନ୍ଦ ତିଆଡ଼ ପ୍ରବେଶ )

ନନ୍ଦ—କଣ ହେଇଛି କି ପଧାନେ ?

ବିଶ—ନା—ଏ ଜୀବନ ଆଉ ରଖିବି ନାଇଁ କହୁଥିଲି ।

ଗାନ୍ଧି—କିନ୍ତୁ କୂଚ ଠିକ୍ ରହିବ କିମିତି ? ମଝିରେ ମଧ୍ୟପ୍ରଦେଶ ଯେ ?

ଜିନ୍ନା—ତାର ସହଜ ଉପାୟ ଅଛି । ମଧ୍ୟପ୍ରଦେଶ ଉପରେ ଗୋଟାଏ ପୋଲ ତିଆରି କରି ପଞ୍ଜାବ ଓ ବେଙ୍ଗଲକୁ ଯୋଡ଼ି ଦେବାକୁ ହେବ ।

ଗାନ୍ଧି—ତାହାହେଲେ ଆକାଶଟା ଆପଣଙ୍କ ଅଧିକାରରେ ରହିବ । ଆଜିକାଲି ଯୁଗରେ ଆକାଶ ଯେ ସବୁଠାରୁ ବେଶୀ ଦରକାର ! ତାପରେ ସେହି ପୋଲଟିକୁ ଚୌଡ଼ା କରି ବଢ଼ାଇ ଆପଣମାନେ ସେଠି ସହର, ବଜାର, କଳ କାରଖାନା ବା ବସ୍ତି ବସାଇ ପାରନ୍ତି । ସେଥିରେ ଆମେ ରାଜି ହବୁ କାହିଁକି ?

ଜିନ୍ନା—ନ ହେଲେ ନାହିଁ; ସୁଡ଼ଙ୍ଗ ରାସ୍ତା ହୋଇପାରେ—ଅଣ୍ଡର ଗ୍ରାଉଣ୍ଡ ଟନେଲ୍ ।

ଗାନ୍ଧି—ଟିଉବ୍ ରେଲ କଲବେଳକୁ ଆମର ତଳିଁରେ ଅସୁବିଧା ହେବ । ଆଜି ଯଦି ଲଣ୍ଡନରେ ଏପରି କିଛି ଯାନ ଆବିଷ୍କାର ହୁଏ ତାହା ମାଟି ଭିତରେ ଭିତରେ ଚାଲିବ—ସେତେବେଳକୁ ଆମର ଅସୁବିଧା ।

ବଡ଼—ଦେଖନ୍ତୁ, ଆପଣମାନେ ମିଳିମିଶି ଯାଆନ୍ତୁ । ଠିକ୍ ସୁର ବାନ୍ଧି ଐକ୍ୟତାନ ବାଦନ କରନ୍ତୁ । ଦେଖିବେ ତାହାହେଲେ ଆମେ କଟରେ ଛଟରେ ଫାଡ଼ି ଅଜାଡ଼ି ଦେବୁ । ମାଗିବାକୁ ହେବ ନାହିଁ । ଆମର ଏ ବୋଝ ( burden ) ଖଲାସ କରିବାକୁ ଆମେ ବ୍ୟସ୍ତ କନା !

ଗାନ୍ଧି—ମୁଁ ତ ସେଥିପାଇଁ ପ୍ରାଣପଣେ ଲାଗିଛି—ଏପରିକି ବ୍ଲାଙ୍କ ଚେକ୍ ···

ଜିନ୍ନା—ଟ୍ରୁଥ୍—ଖାଣ୍ଟି ଅମିଶା ସତ୍ୟ ।

ବଡ଼—ଆଉ ଅହିଂସା ?

ଗାନ୍ଧି—ହଁ ଅହିଂସା ବି ।

ବଡ଼—ଜିନ୍ନା ସାହେବ ଆପଣ ବି ଏଇ ଅହିଂସାଟା ଧରି ନିଅନ୍ତୁ । ସେଟା ସବୁଠାରୁ ନିରାପଦ ( Safe ) ଦୁଇ ପକ୍ଷକୁ ।

ଜିନ୍ନା—ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ।

ଗାନ୍ଧି—ନା, ନା, ବାଡ଼ି ଭାଙ୍ଗିବ, ମାତ୍ର ସାପ ମରିବ ନାହିଁ । ତାହାର ମାନେ ଅହିଂସା ।

ବଡ଼—ଆପଣ ଉଆର୍ଦ୍ଧା ଯାଇ କେତୁଟା ଲେକ୍‌ଚର ଶୁଣି ନିଅନ୍ତୁ ମିଷ୍ଟର ଜିନ୍ନା ।

ଗାନ୍ଧି—ହରିଜନ ପଢ଼ିଲେ ବି ଚଳିବ ।

ବଡ଼—ଆଚ୍ଛା ଆଜି ତେବେ ବିଦାୟ । ( ଛିଡ଼ା ହେଲେ )

( ଜିନ୍ନା ଛିଡ଼ା ହୋଇ କରମର୍ଦ୍ଦନ କଲେ ଓ ବାହାରି ଗଲେ )

ଗାନ୍ଧି—ମୋର କିଛି କହିବାର ଅଛି ।

ବଡ଼—ଆପଣଙ୍କ ଦାବି ତ ମୁଁ ସବୁ ଆଗରୁ ଜାଣେ । ଆଉ କଣ ?

ଗାନ୍ଧି—ଗୋଟାଏ ଷଣ୍ଢ ମୋର (bull) ଦରକାର ।

ବଡ଼—ଓଃ-ଗାଈ ଷଣ୍ଢ ନା ଛେଳି ଷଣ୍ଢ ?

ଗାନ୍ଧି—ଗୋ ଷଣ୍ଢ ।

ବଡ଼—ଦେଶୀ ନା ବିଲାତି ନା ହାଇବ୍ରିଡ଼୍ ?

ଗାନ୍ଧି—ଖାଣ୍ଟି ଇଂଲିସ ଜନ୍ ବୁଲ୍ ।

ବଡ଼—ତା ବେଶ୍ । ଆପଣ ଛେଳି ଦୁଧ ଛାଡ଼ିଲେଣି କି ?

ଗାନ୍ଧି—ବୟସ ହେଇ ଦେହରୁ ହିଟ୍ କମି ଯିବାରୁ ଟିକିଏ ଥଣ୍ଡା ଆଣୁଛି ।

ବଡ଼—ମୋତେ ତେବେ ଗୋଟାଏ ଅସଲି ଅହିଂସା ମାର୍କା ଦୁଧିଆଳି ଛେଳି ଦେଇ ପାରିବେ ?

ଗାନ୍ଧି—ସ୍ୱଚ୍ଛନ୍ଦେ ।

ବଡ଼—ଥ୍ୟାଙ୍କ୍ ଇଉ ।

ଗାନ୍ଧି—ମେନି ମେନି ଥାଙ୍କସ୍ ।···ହଁ ଆପଣଙ୍କର ସେ ନୂଆ କଇଁଚଟା ଦେଖି ପାରିବି କି ?

ବଡ଼—ଆନନ୍ଦର ସହିତ । ( ଘଣ୍ଟା ବଜାଇଲେ )

( ଜଣେ ଚପରାସି ଧାଇଁ ଆସି ସଲାମ କଲା )

ମି: ଗାନ୍ଧିଙ୍କୁ ନେଇ ସେ ନୂଆ କଇଁଚଟା ଦେଖାଇ ଆଣ ।

( ହାତ ବଢ଼ାଇ ମହାତ୍ମାଙ୍କ ସହିତ କରମର୍ଦ୍ଦନ କଲେ ).

ଗୁଡ୍ ବାଇ ।

ଗାନ୍ଧି—ଗୁଡ୍ ବାଇ ।

# ଅଫିମ ଲୀଳା

## ନାଟିକା

**ନଟ ନଟୀ ପରିଚୟ —**

| | |
|---|---|
| ଦାମ ଲେଙ୍କା ··· | ଜଣେ ଅଫିମଖୋର ଗୃହସ୍ଥ |
| ଶୁକୁଟା ··· | ,, ,, ର ପୁଅ |
| ବଣେଇ ପଧାନ | ଅଫିମଖୋର ଉକୀଲ |
| ନନ୍ଦ ତଆଡ଼ | ଗ୍ରେଡ଼ ଅଫିମ ବିକ୍ରେତା |
| ବକଳ ଜେନା | ଅଫିମ ଗ୍ରେର |
| ଅନାମ ସାଆନ୍ତ | ସରପଞ୍ଚ |
| ନାକଫୋଡ଼ ମିଶ୍ର ··· | ଅଫିମ ପଣ୍ଡିତ |
| ମିଷ୍ଟର ପ୍ରେମ୍ଚନ୍ଦ | ଅଫିମଖୋର ଇଂରାଜୀ ପଢ଼ୁଆ |
| ନବନ ମହାପାତ୍ର | ଅଫିମଖୋର ଆଧୁନିକ ଯୁବକ |
| ଗୁଲ୍ଜାର ମିଆଁ | ଅଫିମଖୋର ମୌଲବୀ |

ହାକମ, ଓକିଲ, ପେସ୍କାର, ଚପରାଶି, ପୁଲିସ, ଗୋଇନ୍ଦାଗଣ, କୋର୍ଟବାବୁ, ବାଳକଗଣ ।

| | |
|---|---|
| ଶୁକୁଟା ମା ··· | ଦାମର ସ୍ତ୍ରୀ |
| ଚମ୍ପା ··· | ଜଣେ ବିଧବା |

ଶବରୁଣୀଗଣ

---

### ( ପ୍ରଥମ ଦୃଶ୍ୟ )

[ବାଳକଗଣ ତାଳମାରି ମାରି ଗୀତ ଗାଉଥିଲେ]

ତୋ ଲାଗି ଗୋପ ଦାଣ୍ଡ ମନା କାଳଆ ସୁନା,
ତୋ ଲାଗି ଗୋପଦାଣ୍ଡ ମନା ।
ତୋ ଲାଗି ଏତେ କଟକଣା କାଳଆ ସୁନା,
ତୋ ଲାଗି ଏତେ କଟକଣା । (ଘୋଷା)

କଳା ରୂପ ତୋର ମନ ମୋହନିଆ
ସୁଆଦଟି କେଡ଼େ ମିଠା,
ମଉଜ ତୋହର ପାଇଛି ଯେ ଥରେ
ଲାଗିଯାଏ ତାର ଅଠା । (କାଳଆ ସୁନା)

ପୀରତି ତୋହର ଆରତି ବଢ଼ାଏ
ସରତ ଉଠାଇ ପାଟି,
ମୂରତି ଗୃହିଁଲେ ଧୂରତି ହଜାଇ
କରତି ପକାଏ ଗୁଡି । (କାଳଆ ସୁନା)

କଳିକାଳରେ ତୁ ଅମର ଔଷଧି
ଗହନଆ ତୋର ଭାବ,
ଏଭବସାଗର ତରିବାକୁ ସିନା
ତୁ ସିଧା ସଳଖ ନାବ । (କାଳଆ ସୁନା)

[ ଦାମ ଲେଙ୍କା ଘର ମଧ୍ୟରେ ଆସି ଗୀତ ଶୁଣୁଥାଏ ଓ ମୁଣ୍ଡ ହଲଉଥାଏ । ପିଲାମାନେ ବାହାର ଗଲାରୁ କହିଲା — ]

ଦାମ—ବାହାଚା—ବଲିହାରି ! ଅସଲ ରସରସିଆ ଗୀତ ଏକା ! ତାକ ପୁଣି ଶୁଣିଲେ ହୁଅନ୍ତା । ଆରେ—ଶୁଣୁଛୁ— !

[ଶୁକୁଟା ବଡ଼ ଘରୁ ବାହାରିଆସି କହିଲା]

ଶୁ-ମା—କାହିଁକି ଡକା ପଡ଼ୁଥିଲା କ ଏତେ ?

ଦାମ—ଆରେ ତମକୁ ନୁହେ ହୋ—ଏଣେ ଏ ପିଲେ ଗାଉଥିଲେ ଯେ—ଭଲ ମଜାର ଏକା—

ଶୁ-ମା—ବେଳ ଏତେ ହେଲାଣି—ହାଟକୁ ଯିବା ମଣିଷ, ଏଠି ଗୀତ ଗାଆଣ ଶୁଣା ହଉଛି । ନଶାଖୋରିଆ ହେଲେ କଥା ସରିଲା । ପୋଡ଼ ଯାଉ ତମ ମଜା—

ଦାମ—ନାଇଁଲେ ଶୁକୁଟାବଉ, ରାଗିଲୁକ—ମୁଁ ଯିବ ଯିବ ବୋଲି ହଉଚ ଯେ—ଏକା ହାତ ଗୋଡ଼ ଚଳୁ ନାହିଁ ।

ସ୍ତ୍ରୀ—କ ଦଶା—ହାତଗୋଡ଼ରେ ନିଆଁ ଲାଗିଛି କ ?

ଦାମ—କୁହୁନାହୁଁ ପିନା ? ବଡ଼ମୁଣ୍ଡ ଖାଲି କଞ୍ଚାପାଣି ହେଇ ଯାଉଛି । (ନାକ ପୋଛିଲା) ହାଇ ଉପରେ ହାଇ ଉଠୁଚ, (ହାଇ ମାରିଲା) ଆଉ ଆଉ—ଏଇ ଦେଖୁନୁ ନାଇଁଟା ।

ସ୍ତ୍ରୀ—କଣ, ନାଇଁ ଗୁଡ଼ ଯାଉଛି ? ମରିବୁ ? ବେହିଆ, ଅଲାଜୁକ ଯେଉଁଆ ଯାଉନୁ ଡାକ୍ତରଖାନାକୁ ନଇସିନ କରି ଆସିବୁ ! ଏଇ ଅଫିମ ଗଞ୍ଜେଇ ଖାଇତ କାମଧନ୍ଦା ଗୁଡ଼ିଲୁ , ଗହଣା

ନନ୍ଦ—ହାଁ, ହାଁ—ଜୀବନଟାକୁ ଏକ ଦମ୍ ଗୁଡ଼ପଣ ଦବାକୁ ବସିଗଲ । ଏକା ଏ ଭଲଆ ଝଲଠା ଜୀବନ ଯେ ସହଜରେ ଯାଏନା—ଏତିକ ଦୁଃଖ ।

ହରି—କଏ ନନ୍ଦ ନନା କହୋ ! ଖୁବ୍ ବେଳରେ ଆସି ଗଲ ଏକା; ହାଃ, ହାଃ—ତମର କଥାତ ପାଞ୍ଚୁଥିଲ ।

ନନ୍ଦ—କାହିଁକ କହଲୁ—ନନ୍ଦଆ ନନା ଉପରେ ଏଡ଼େ ଶରଧାଟା ବଳ ପଡ଼ଲୁ କଉଁଥିରୁ କ ?

ହରି—କଣ କ, ମୁଁ ଆଜ ଏ ଗାଁଜ ଛାଡ଼ ଚାଲ ଯାଉଛୁ—

ନନ୍ଦ—କଣ ହଲକୁଲ୍ ଆର ପୁରକୁ ? ବେଳ ହେଇନାହିଁ ଯେ ତୋର ! ତୁ ଗଲେ ଭକ ମାଗି ବୁଲବ କଏ ?

ହରି—ନାହିଁ, ସେଲ କଥା ନୁହେଁ । ସତକୁସତ ମୁଁ ଯାଉଛୁ କଲକତା ଚାଲ ।

ନନ୍ଦ—ଆରେ ରହ ମ—ଗାଧୋଇ ପାଧୋଇ ଯିବୁ ।

ହରି—ନା ଆଉ ନୁହେଁ—ଯଉ ଗାଁଜରେ ଏତେ ଅବଗୁର, ପୀଡ଼ା, ସେଠି କ ଆଉ ଭଲ ଲୋକ ରହେ ! ଦେଖୁନ, ଭଲ ଭଲ କରବେ ବୋଲ କଂଗ୍ରେସକୁ ଭୋଟ ଦେଲୁଁ । ଗାନ୍ଧୀ ମହାତ୍ମା ଜୟଜୟକାର କଲୁ—ଶେଷେ ଆମର ମଠେଁ ପଶିଲ ଖୁଞ୍ଚ ।

ନନ୍ଦ—ଆରେ ଏତେ ବାଟ କାହିଁକ ଯିବୁ ମ ? ରେଲ କୁମ୍ପାନକ କଉଡ଼ ଗଣି ? ଏଇଠି ଦ ପାହୁଲ ପଛୁମକୁ ଚାଲଗଲେ ତ ଗଡ଼ଜାତ—ସେଠି ମାଲ ଯାହାକୁ ଯେତେ—

ହରି—ସତେ ତ—ସେ କଥା ତ ମୁଁ ଭାବୁଥିଲ—ତେବେ—ଆସେଁ—ଚାଲଲ·····ହଁ ଦଣ୍ଡବତ୍··· ( ଫେରପଡ଼ ) ମନେ କରୁଥିବ ନନା ··· ( ଚାଲଲା )

ନନ୍ଦ—ଆରେ ରହ ମ—ଏତେ ଧାବର ନା—ନନ୍ଦଆ ଯଉଁଠି ଥିବ ତମମାନଙ୍କର ଚିନ୍ତା କଣ ? ଦେଶ ଛାଡ଼ ଯିବ । ରାମ—ରାମ—ନାରାୟଣ—ହେଇ ଦେଖ୍ ( କରାଟ ଦେଖାଇଲ ) ଭରା ମାଲ । ଅଭାବ କଣ ? କେତେ ଲବୁ ଲେ—ହାଃ—ହାଃ—

( ଆନନ୍ଦରେ ନାଚ ଉଠିଲା । )

ହରି—ଏକା ସବୁଦିନେ—

ନନ୍ଦ—ସବୁ ଦିନେରେ ସବୁଦିନେ—ଯାବତ୍ ଚନ୍ଦ୍ରାର୍କେ । କଂଗ୍ରେସ ବୋପାର କ ସାଧ ନନ୍ଦଆର ଦେହରେ ଟିପ ଛୁଁବ ! ଆଉ, ପୁଲସ, ଗୁଇନ୍ଦା !—କେତେ ବାପୁଡ଼ାଙ୍କ ଆଖିରେ ଜଳକା ବାଣ ମାରଦେବ ନାହିଁ । ଇଏ ନନ୍ଦଆ ନା ଥଣା ।—

ହରି—ସେଇୟା ଯଦ ହେମତ ଦବ ତ ନନା ଆଉ ··· — କ୍ୟା ଚିନ୍ତା ମରଣେ ରଣେ । (ନାଚଲା)

ନନ୍ଦ—ସବୁର ଧର—ସବୁର ଧର···ପରୱା କ୍ୟା,

(ଗୀତ ଗାଇ ଗାଇ ଦାମ ଯେଆଡ଼ୁ ଆସିଲା)

ବାଇଧନରେ, ତୁ-ମୋ ଜୀବଜୀବନ ।
ହୋଇ ବଇରାଗୀ, ଭକ ମାଗି ମାଗି
ତୋ ଲାଗି ପଶିବ ଗହନ ବନ ।
ଦିନେ ଯେବେ ତୋତେ ନ ପାଇ,
ଚକପେଟେ ଭଉଇ ବାଇ,
ପୁଣି ଉଠଇ ହାଇ,
ତୋହ ପାଇଁ ମୁହିଁ ଧାଇଁ ଧାଇଁ ଧାଇଁ,
ଛନ ଛନ ମନ ହୁଏ ସଘନ ।

ନନ୍ଦ—ଓଲଗି ଦାମନନା—ଆଜ ତ ଭାର ମଉଜ !

ଦାମ—ଦିଲ୍‌ଟା ଖୁସ୍ ଅଛୁ । ଶ୍ରୀକ୍ଷେତ୍ର ଯାଉଚ ।

ନନ୍ଦ—ଶ୍ରୀକ୍ଷେତ୍ର ? ଶ୍ରୀକ୍ଷେତ୍ର ଏକଦମ୍ ? କଣ ବାବାଜୀ ହେଇ ?

ଦାମ—ନାହିଁରେ ନନ୍ଦ, ବୁଝିଲୁ ନାହିଁକ ଡାକ୍ତରଖାନା ପରା ଆଜକାଲ ପାଲଟିଛୁ ଶ୍ରୀକ୍ଷେତ୍ର । କାଳଆ ସାଆନ୍ତେ ସ୍ୱୟଂ ବଜେ କରଛନ୍ତି ସେଠି ।

ନନ୍ଦ—(ହସି) ଓହୋ, ତମ ପହଳାଟା ବୁଝି ପାର ନଥିଲ । ହଁ—ଏକା ମାହାର୍ଦ୍ଧ ପେଡ଼ ଯେ ଆମ ହାତରେ !

ଦାମ—ହେଲେ କଣ ହେବ, ତମେ ଯେତେ ହେଲେ ଦିନ ଅଧ କଥା—ଯେ ଅମଲ କରଥିବ ସେ ତମର ଭରସାରେ ରହି ଦିନ ଦିପହରେ ଆଇଷ ଥାଇ ମରବ ଯେ ।

ନନ୍ଦ—ହଉ ଯା ଲାଇସିନ କର ଆସିବ ଏକା, ଲାଇସିନର ଅର୍ଥ ଜାଣିଛ ଠିକ ?

ଦାମ—ନାଇଁ ତ—କଣ କହିଲ ?

ନନ୍ଦ—ପିଠିରେ ବଥ ଉଠିଲେ ସେ ଗୁଇ ହେଲା ବୋଲ ଯେ କହେ । ଅସଲ ଅମୃତ ବେହିଆ ତୁମେ ଦେଖିଲ—ଯାଃ—

ଦାମ—ଲାଇସିନ ନ କଲେ ଅମଲୀ ଲୋକ ଯେ ନାଗର ହୋଇ ପଡ଼ବ । ଆଉ ଲାଇସିନ କଲେ ତ ମାଲକ ହୋଇ ଅମୀର ପର······ ହେଁ—ସରକାରୀ ହୁକୁମ ···

ନନ୍ଦ—( ହସି ) ଅମୀର, ବାଦ୍‌ସା ନୁହେଁ କଣ ! ଏଇ ଥାନା କଚେରୀରେ ଯେ ନାଁ ଲେଖାନ୍ତି ସେ କଏ କହିଲ ?

ଦାମ—ହଁ, ଦାଗୀ ।

ନନ୍ଦ—ହାଁ, ସେଇୟା ନୁହକ ତମେ । ଲାଜ ନାହିଁ ମୁହଁକୁ, କଚେରି ଦରବାରରେ ଯାଇ ନାଆଁ ଲେଖାଇବ ! ଛି—ଛି—

ଇଜତ ମହତ, ମାନ, ସରମ ପୋଡ଼ ଖାଇଲ୍ଣି ସବୁ, ମହତ ଲୋକ ହୋଇ ।

ଦାମ—ତେବେ କଣ କହୁଛ କହିଲ ?

ନନ୍ଦ—ଛେନା–ସେର ସେର, ମହଣ ମହଣ ମାଲ ପବନରେ ଉଡ଼ ଗୃଲ ଆସୁଛି—ଏଥିପାଇଁ ଭାବନା କଣ ?

ଦାମ—ସତ କହୁଚ ! ଆଉ ତେବେ କଣ—ଏକା, ସୁଭଦ୍ରକଟିଏ ଶୁକୁଟା ବଉ ଦେଇଛି ଜମାରୁ ହାଟ ସଉଦା ପାଇଁ ।

ନନ୍ଦ—ହେଲ୍ ହେଲ୍ । ଜୀବନ ଥିଲେ ତ ହାଟ ବାଟ । —ହଇରେ ବଣ ତୁ କେତେ ନବୁ ?

ବଣ—ଗୃଉଳ ଦସେର ଅଛି । ଯାହା ହବ ।

ନନ୍ଦ—ହଉ ହେଲ୍ । ତମେ ତ ମୋର ଦାନା ଘର ! (ଅଫିମ ଦେଲ୍)

ନନ୍ଦ—ଗୃହୁଁଛୁ କଣ ଦେଖ୍—କମିତକା ଖାଣ୍ଟି ମାଲ ।

[ ଏହିସମୟରେ ଶୁଣ୍ଠୁର ବାଜଲ ଓ ଦୁଇଜଣ ଗୋଇନ୍ଦା ପୁଲସ ଆସି ନନ୍ଦକୁ ବାନ୍ଧି ପକାଇଲେ ]

ନନ୍ଦ—କଏ ବେ–ମୋ ଦେହରେ ହାତ ଦଉଚ ! ମନ କଲେ ଏଇକ୍ଷଣି ଗୋଟି ଗୋଟି ଥାନାରେ ବନ୍ଦେଇ ଦେବ ଜାଣିଚ ?

ଦାମ—କଂଗ୍ରେସିଆରେ କଂଗ୍ରେସିଆ । (ପଳେଇଲ୍)

ପୁଲସ୍—(କାଗଜ ବାହାର କରି) ଅବକାଶ ମାଲ ବକ ପୁଣି ଏତେ ଧମାକ,—ବତା ତୋ ନାଆଁ—ବାନ୍ଧ ତନକୁଁ ।

ନନ୍ଦ—ଓ ଆପଣ ହଜୁର୍ ପୁଲସ ଲୋକ ! ଗୋଡ଼ ତଳେ ପଡ଼ୁଚି ଆଜ ଧନକ ରକ୍ଷା । ଦରିଦ୍ର ବ୍ରାହ୍ମଣ—କଲ୍ୟାଣ—କଲ୍ୟାଣ –ଧର୍ମାବତାର ବାବୁ–

୧ପୋ—ବ୍ରାହ୍ମଣ ଦେଖଉଚ । ତୋ ପରି ଦଶୁଟା ବାହ୍ମଣ ମାଇଲେ–ଉପରୁ ହୁକୁମ ନ ଥାନ୍ତା କ–ଇଃ

ନନ୍ଦ—ପାନ ଖିଆ ଦଉଛି, ଏତକ ମା ବାପ–ଧର୍ମୀ ପୁରୁଷ–

୨ୟ ପୋ—କେତେ ଟଙ୍କା–କେତେ ଟଙ୍କା ଅଛି କାଢ଼ିଲୁ ?

ନନ୍ଦ—( କାନ୍ଦି ) ଏତକ ହଜୁର୍ । ନରୋଳ ବେଉସା କରି, ଖାଲ ପର ଉପକାର ଲଗି ବାବୁ–ମୁନାହଜାରେ ପଡ଼–ଆଜ୍ଞା •••

୧ମ ପୋ—ଧର ଏସବୁ ଗୁଡ଼ାଙ୍କୁ–ଏସବୁ ଚୋର ମାଉସୀ ।

(ବଣ ଓ ନନ୍ଦ ବନ୍ଧାହୋଇ ଗଲେ ।)

## ତୃତୀୟ ଦୃଶ୍ୟ

( ଫୌଜଦାରି କଚେରିରେ ହାକିମ ବସି ନଥି ସହି କରୁଛନ୍ତି । ପେସ୍କାର ଛୁଡ଼ା ହୋଇଛନ୍ତି । କୋର୍ଟବାବୁ, ଉକଲ ଓ ପିଆଦା ହାଜର )

ହାକମ—( ନଥି କାମ ସାରି ) ଆଜ କେସ୍ କଣ ଅଛି ?

ପେସ୍କାର—ହଜୁର୍ ପୁଲସ କେସ୍ ଅଛି ଗୋଟାଏ [ ଚପରାସି ପ୍ରତି ] ଡାକ, ବକଳ ଜେନା ମୁଦାଲ [ ଚପରାସୀ ଡାକ ମାରିଲା ]

କୋର୍ଟବାବୁ—ହଜୁର୍, ଆସାମୀ ଗିରଫଦାର ହୋଇ କୋର୍ଟରେ ଅଛି ।

ହାକମ—ଜଲ୍ଦି, ଜଲ୍ଦି, Be quick.

[ କନେଷ୍ଟବଲମାନେ ବକଳ ଜେନାକୁ ହାଜର କରାଇଲେ ]

କୋର୍ଟବାବୁ—ହଜୁର୍ ଏ ଲୋକ କାହାର କଦଳୀ ଚୋରି କରିଛି ।

ହାକମ—ମାଲ୍ ଧରା ପଡ଼ୁଛି ?

କୋର୍ଟ—ଆଜ୍ଞା ହଜୁର୍ ।

ହାକମ—ସାକ୍ଷୀ, ପ୍ରମାଣ ?

କୋର୍ଟ—ସବୁ ହାଜର ।

ହାକମ—(ଆସାମୀ ପ୍ରତି) ତୋ ନାଁ କ'ଣ ?

ବକଳ—ବକଳ ଜେନା ?

ହା—ବେଉସା ?

ବ—ମୂଲ ଲଗି ପେଟ ପୋଷେ ହଜୁର !

ହା—ତୁ ଏ କଦଳୀ ଚୋରି କରିଛୁ ?

ବ—ନେଇଥିଲ ହଜୁର ।

ହା—ନେଇଥିଲୁ ! ଆଚ୍ଛା କାହିଁକି ?

ବ—ପେଟକୁ ନ ଅଣ୍ଟିଲରୁ ।

ହା—ଆରେ, ଏ ଶସ୍ତା ଯୁଗରେ ତୋ ପେଟକୁ ଅଣ୍ଟୁନାହିଁ ?

କ—ହଜୁର୍, ନ ଅଣ୍ଟନ୍ତା କାହିଁକି—ଅଫିମ ଯେ ତେଣେ ଟାଣି ନେଇ ଯାଉଛି ସବୁ ।

ହା—ଓ ହୋ—ଏଥିରେ ପୁଣି ଅଫିମ ଅମଲ । ଲାଇସେନ୍ସ କରିଛୁ ?

ବ—ନଗଦ ପଇସା କଉଁଠୁ ପାଇବ ? ଏଣୁ ତେଣୁ କରି ନନ୍ଦ ନନାଙ୍କ ଠଉଁ—

ହା—ଓ ହୋ ! ଚୋର ବନ୍ଧି ବାଲ ଠଉଁ ଆଣୁ ପରା ! କଣ ଦଉ ତେବେ ?

ବ—ହଜୁର୍ ସେଇଥିଲଗିତ କଦଳୀ ନେଇଥିଲ । ଜୀବନ ବକଲେ ଅଫିମ ନ ପାଇଲରୁ ନାଗୁରି ହୋଇ—

ହା—ଏ ଅମଲ ଛାଡ଼ିଦେଇ ପାରିବୁ ?

ବ—ବହୁତ ଦନକା ଅମଲ—ଛାଡ଼ିବ କମିତ ? ମରିଯିବ ଯେ ।

ହା—ଆଚ୍ଛା, ତାର ଔଷଧ ଆମେ କରିଦବା ।

ବ—ହଜୁର୍ ସେଇୟା ଦଅନ୍ତୁ ।

ହା—ତୋତେ ଛ' ମାସ ମାମୁଘର ପଠାଗଲ୍ ।

ବ—ହଜୁର କଣ ଜେଲଖାନା ? [କାନ୍ଦି] ରକ୍ଷା କରନ୍ତୁ, ମରିଯିବି । ଛାଡ଼ିଦେବ ଆପେ ।

ହା—ନାହିଁ, ନାହିଁ—ସେଇଠି ଛାଡ଼ିଯିବ । ଖାଇବାର ପିନ୍ଧିବାର ଅଭାବ ନାହିଁ, ସୁଖରେ ରହିବୁ ।

ବ—ହଜୁର ଆଜ ଏ ସୁଅଖିଆ ବୃଦ୍ଧ ......

ହା—ଲେଯାଓ ଇହାଁସେ ......

( କନେଷ୍ଟବଲ ମାନେ ଧରି ନେଇ ଗଲେ )

ହା—ଦୁସ୍‌ରା କେସ୍ ହାୟ ?

ପେସ୍କାର—ଚମ୍ପା ବେଓ୍ୱା ......

( କନେଷ୍ଟବଲ ଚମ୍ପାକୁ ହାଜର କରାଇଲେ )

କୋର୍ଟବାବୁ—ହଜୁର ଏ ତରଳ ଅଫିମ ଖାଇ ଆତ୍ମହତ୍ୟା କରୁଥିଲା । ଡାକ୍ତରଖାନାରେ ଚିକିତ୍ସା କରିବାରୁ ବଞ୍ଚିଗଲା ।

ହା—[ଚମ୍ପା ପ୍ରତି] ତୁ ଅଫିମ ଖାଇ ମରୁଥିଲୁ ?

ଚମ୍ପା—ମରିବି ନାହିଁ ! ସେ ଅଲପେଇଷ ମିଛଟାରେ ବଦନାମ ଦେଲେ ଯେ......କେତେ ସହିବି !

ହା—କିଏ ସେ ଲୋକ ?

ଚମ୍ପା—ସାଇ ପଡ଼ିଶା—ଆଉ କିଏ ?

ହା—ଅଫିମ ପାଇଲୁ କଉଁଠୁ ?

ଚମ୍ପା—ମୋ ଘରର ବଟକବାରୁ ଗୋଟେଇ ରଖିଥିଲି ।

ହା—ଦେଖ, ଘରେ ଅଫିମ ଥିଲାକୁ ସିନା ଏହିପରି ମାଇକିନା ଓ ପିଲାଏ ବି ବେଳେବେଳେ ଖାଇଦେଇ ମରୁଛନ୍ତି । ଆଚ୍ଛା, ସତ କହିବାରୁ ଦୟାକରି ତୋତେ ଅଳ୍ପ ଦଣ୍ଡ ଦିଆଗଲା । ଆଇନରେ ଛାଡ଼ିଦେବାର ଅକ୍ତିଆର ମୋର ନାହିଁ । କିନ୍ତୁ ଏପରି କାମ ଆଉ କେବେ କରିବୁ ନାହିଁ । ବୁଝିଲୁ ।

ଚମ୍ପା—ହଁ, ମୁଁ ଜେଲଖାନା ଯିବି । ତାଙ୍କ ହାତରୁ ରକ୍ଷା ମିଳିବ । ଯହିଁ ହଟହଟା କଲେଣି—

ହା—ତିନମାସ ଜେଲ—ଲେ ଯାଓ

( ସିପାହିମାନେ ନେଇଗଲେ )

ହା—ଆଉ କେସ୍ ଅଛି ?

କୋର୍ଟ—ଅଛି । ହଜୁର୍ ।

[ସିପାହି ପଧାନକୁ ହାଜର କଲେ]

ହା—ଏ କଣ କରିଛି ?

କୋର୍ଟ—ଏ ଗେ୍ୱର ଅଫିମ କଣୁଥିଲା ।

ପଧାନ—ହଜୁର୍ ମୋତେ ସେଇ ନନ୍ଦିଆ ଶିଖେଇଛି । ଆଉ ସେ ବୁଦ୍ଧି କରିବି ନାହିଁ ।

ହା—ତୁ କଣ କରୁ ?

ପଧାନ—ଭିକ ମାଗେ ?

ହା—ଆଁ ଭିକ ମାଗି ପୁଣି ଅଫିମ ଅମଲ !

ପଧାନ—[ କାନ୍ଦି ] ହଜୁର୍ ଏଇଥର କ୍ଷମା କରନ୍ତୁ, ଆଉ ଖାଇବି ନାହିଁ ! ଖାଇବାକୁ ନ ପାଇ, ଦେହ ନ ଚଳିବାରୁ ପରବୁଦ୍ଧିରେ ଖାଉଥିଲି ।

ହା—ଦେଖ, ଆମ ଦେଶଟା କଣ ହେଲାଣି । ଦେହ ଦୁର୍ବଳ ଲାଗିଲେ ବା ଅସୁଖ ହେଲେ ନିଶା ଜୋରରେ ଟିକିଏ ଆରାମ ଲାଗେ ବୋଲି ଲୋକେ ନ ଜାଣି ବିଷ ଖାଇ ଯାଉଛନ୍ତି ! ଆଚ୍ଛା, ତୋର ଯଦି ସଦ୍‌ବୁଦ୍ଧି ଆସିଥାଏ ତେବେ ତୋତେ ଖଲାସ ଦିଆଗଲା । ଯା—

କୋର୍ଟ—ନନ୍ଦ ଉହାଡ଼ିକୁ ହାଜର କର ।

ହା—ଇଏ ପୁଣି କିଏ ? ସେଇ ନନ୍ଦ କି, ଯାହା ନାଁ ଏଇକ୍ଷଣି ପଡ଼ିଥିଲା ?

କୋର୍ଟ—ଆଜ୍ଞା ହଜୁର—ଇଏ ସେହି ଗେ୍ୱରା ଅଫିମ ବିକେତା —ନନ୍ଦ ।

[ ନନ୍ଦକୁ ବାନ୍ଧି ସିପାହି ଆଣିଲେ ]

ନନ୍ଦ—ହଜୁର୍ ଦେଖନ୍ତୁ, ପାନଖିଆ ପଇସା ନ ଦେଲି ବୋଲି ଏ ସିପେଇ ମୋ ପଛରୁ ଡଙ୍କ ବାଣୁଛି ।

ହା—ବଡ଼ ଜାନୁଆର୍ ଜଣା ଯାଉଛୁ ଏ । ତୋ ନା ନନ୍ଦ ?

ନନ୍ଦ—ଆଜ୍ଞା, ଶ୍ରୀ ନନ୍ଦକିଶୋର ଉହାଡ଼—ଆହା—ତ୍ରିପାଠୀ । ଦରିଦ୍ର, ନୈଷ୍ଠିକ ସତ୍‌କୁଳ ବ୍ରାହ୍ମଣ । ପୂଜା ଅର୍ଚ୍ଚନା ... ।

ହା—ଏତେ କଥା ପଚାରୁ ନାହିଁ, ତୁ ଗେ୍ୱରା ଅଫିମ ବିକି କରୁ ?

ନନ୍ଦ—ହଜୁର ଧର୍ମାବତାର, କିଏ ମଣିଷ ଚରାଇଲେ ଆପଣ ଗୋରୁ ଚରାଉଛନ୍ତି—ରାମ ରାମ—

ହା—ସିଧା କଥା କହ—ଦୋଷୀ କି ନିର୍ଦ୍ଦୋଷୀ ?

ନନ୍ଦ—ଖାଣ୍ଟି ସତ କହିଲେ ହଜୁର, ଅଧେ ଦୋଷୀ; ଅଧେ ନିର୍ଦ୍ଦୋଷ । ନରୋଇ ଭାବରେ ବିଚାର କରିବା ହେଉ ।

ହା—ସେ କି ରକମ୍ ? ବଡ଼ ଫାଜିଲ୍ ଗୁଲାଖ ଅଛୁ ।

ନନ୍ଦ—ଆଜ୍ଞା ସତ କହୁଛି—ବିଲ୍‌କୁଲ୍ ସତ । ବିକି କରେ ସତ —ଏକା ଅଫିମ ନୁହଁ ସେ ।

ହା—ଆଉ କଣ ?

ନନ୍ଦ—ଦେଖି ପରଖିବା ହେଉ ।

ହା—ମାଲ ଧରା ହୋଇଛି ?

[ କୋର୍ଟବାବୁ ମାଲ ପୁଟୁଳା ଦେଲେ ]

ହାକମ—ଏତେ ଗୁଡ଼ାଏ ଆରେ !

ନନ୍ଦ—ହଜୁର୍ ସେ ଅଫିମ ନୁହେଁ । ଶଗଡ଼ କାଣ୍ଟି, ଖଇର, ଏଇପରି ଏଇପରି କେତେ ପଦାର୍ଥ । ଶାସ୍ତ୍ରାନୁସାରେ ···

ହା—ତେବେ ଲୋକଙ୍କୁ ଭଣ୍ଡୁଛ ? ଏକେ ଗ୍ରେଇ, ସେଥିରେ ଜୁଆଗ୍ରେଇ ।

ନନ୍ଦ—ମୁଁ ଜୁଆଗ୍ରେଇ ହେଲେ ଗାନ୍ଧୀ ଜୁଆ-ଗ୍ରେଇ, ସରକାର ବି ଜୁଆ-ଗ୍ରେଇ ।

ହା—କି ରକମ୍ ?

ନନ୍ଦ—ଏଇ ଦେଖନ୍ତୁ 'ସରକାର ଆଗରୁ ଲୋକଙ୍କୁ ଅଫିମ ଛଡ଼ାଉଛନ୍ତି ନାନା ଉପାୟ କରି, ମୁଁ ବି ମୋ ଉପାୟରେ ଦେଶ ଲୋକଙ୍କୁ ଅଫିମ ଛଡ଼ାଉଛି । ଦେଶ ସେବା ତ ?

ହା—ତୋ କଥା ବୁଝି ହେଉନାହିଁ ।

ନନ୍ଦ—ମୋ ଉକିଲ ବୁଝାଇବେ ।

( ଉକିଲ ବାବୁ ଉଠିଲେ )

ଉକିଲ—ହଜୁର୍, ଏ ଲୋକ ଅତି ସତ୍, ମହତ୍ ଓ ନିଷ୍ଠାପର ଦେଶ-ସେବକ ଅଟେ । ଆଜି ଏହା ବିରୋଧରେ ଯେଉଁ ଚାର୍ଜ ହୋଇଅଛି ତାହା ଅଚଳ ହେତୁ ଆସାମୀ ବେକସୁର ଖଲାସ ପାଇବାର ହକ୍‌ଦାର ।

ପ୍ରଥମ କଥା, ଏ ଯାହା ବିକ୍ରି କରିଛି ତାହା ଅଫିମ ନ ଥିବାରୁ ଗ୍ରେଇ ଅଫିମ ବିକ୍ରି ଦଫାରେ ଦଣ୍ଡ ପାଇ ନ ପାରେ । ବିଶ୍ୱାସ୍ତରେ ଲୋକଙ୍କୁ ଠକାଇଛି ବୋଲି ଯଦି କୁହାଯାଏ, ତେବେ ଭଲ ଉଦ୍ଦେଶ୍ୟରେ ଏ କରିଛି, ଅର୍ଥାତ୍ ସେମାନଙ୍କୁ ରକ୍ଷା କରିବା ନିମନ୍ତେ କରିଛି । ସରକାର ଏତେ ପଇସା ଖରଚ କରି ଅଫିମ ଉଠାଉ-ଛନ୍ତି—ଏ ସାମାନ୍ୟ ଭାବରେ ଏକ ନୂଆ କୌଶଳରେ ଲୋକଙ୍କୁ ଅଫିମ ଛଡ଼ାଉଛି । ଏ ହେତୁ ଆସାମୀ ସରକାରର ସହାୟକ ଓ ସାହାଯ୍ୟକାରୀ । ଅତଏବ ବେକସୁର ଖଲାସର ଯୋଗ୍ୟ— ବରଂ ପୁରସ୍କାର ପାଇବାର ହକ୍‌ଦାର ଅଟେ ।

ହା—ଆପଣ ଯେଉଁ ଯୁକ୍ତି ଦେଖାଇଲେ ମୁଁ ତାହାଂ ବିବେଚନା କରିବି । ଆଜି ଏ କେସ୍ ଫଇସଲ ନ କରି ତାରିଖ କଲି । ଇତି ମଧ୍ୟରେ ଏ ମାଲ ରସାୟନିକ ପରୀକ୍ଷାକୁ ପଠାଯିବ । ଆସାମୀ ହାଜତରେ ରହୁ ।

[ ହାକିମ ଉଠିଲେ ଓ କଚେରୀ ଭାଙ୍ଗିଲା ]

## ଚତୁର୍ଥ ଦୃଶ୍ୟ

( ଶୁକୁଟା ବଉ ଗ୍ରାମ୍ୟ ଶ୍ରୀ ଧରି ଘର ଖରକୁ ଥିଲା । )

ଶୁକୁଟାବଉ—(ଆପେ ଆପେ) ସଞ୍ଜ ହେଲା ଆସି, ଦ୍ୱିପହରୁ ହାଟକୁ ଯାଇଛି ଯେ, ଏତେବେଳ ଯାଏ ଫେରୁନାହିଁ । ଅଫିମ ମଣିଷ, କଉଠି କଣ···ମନଟା କାହିଁକି ଗ୍ରଡ଼େଇ ହଉଛି ଘରେ । ତେହିଁକି ଟୋକାଟା ବି ଗଲା କୁଆଡ଼େ !···ଶୁକୁଟାରେ ଶୁକୁଟା···

[ ଦୂରରୁ ଶୁକୁଟା ଜବାବ ଦେଲା—କଲୋ ବଉ ]

ଶୁ-ବ—ଇଆଡ଼େ ଆଇଲୁ , ଚଗଲା ଟୋକା ।

( ଶୁକୁଟା ପ୍ରବେଶ କଲା )

ଶୁକୁଟା—କଣ କି ?

ଶୁ-ବ—ତୋ ବାପା ଆଇଲାଣି ? କୁଆଡ଼େ ଗଲା ?

ଶୁକୁଟା—ମୁଁ କଣ ତାକୁ ଅଣ୍ଟିରେ ପୂରେଇଛି !

ଶୁ-ବ—ନାଇଁରେ କହୁଥିଲି ଟିକିଏ ଯାଇ ···

ଶୁକୁଟା—ହ—ଯୁଗ ଯାଉନାହିଁ ମୋର । ଏଇଥିଲାଗି ଡାକୁଥିଲୁ ପରା ! ସେ କଉଁଠି ଯାଇ ଖଟିରେ ପଶିଥିବ ।

ଶୁ-ବ—ଏଡ଼େ ଅଲାଜଆଟା—ବାପକୁ ଇମିତି କହୁଚୁ ! କ'ଣ କଉଁଠି ହେଲା ଟିକିଏ ବୁଲି ଦେଖି ଆ ବାଟକୁ ଯାଇ ।

ଶୁକୁଟା—ତା ହାତରେ ପଇସା ପଡ଼ୁଛି । ତାକୁ ତ ଯୁଅ ବାହାଦର ଲାଗିଥିବ—ଅଫିମ, ଗୁହା, ଆଉ ପିଆଜି ବୁଟଭଜା···

( ପାଟିରୁ ଲାଳ ବହି ପଡ଼ିଲା )

ଶୁ-ବ—ହଉ ନେ ତୁ ବି ପଇସାଟେ ନେ···ବୁଟଭଜା ଖାଇବୁ—ମୋ ଧନଟା !

ଶୁକୁଟା—ହଉ ଦେ—ଏଇକ୍ଷଣି ଦେ । [ ହାତ ପାତିଲା ]

( କାନିରୁ ଫିଟେଇ ପଇସା ଦେଲା )

ଶୁ-ବ—ଚଞ୍ଚଳ ଯା ଗୁଲ—ଗୁହିଁ ଗୁହିଁ ଯାଉଥିବୁ, ବାଟରେ ଘାଟରେ କାଳେ କଉଁଠି ।

ଶୁକୁଟା—କଣ ମରି ପଡ଼ିଥିବ ? ତୁ ତ ତାକୁ ଅଫିମ ଦେଇଛୁ—ଆଉ କଣ !

ଶୁ-ବ—ଛି—ବାଇଆଟା । କଣକି, ମୁଁ ତାକୁ ଯାହା ଦେଇଛି ସେ ଅଫିମ ନୁହେଁ, ଭଣ୍ଡେଇ ଦେଇଚି ଅଫିମ ବୋଲି ।

ଶୁକୁଟା—କଣ ଦେଲୁ ତେବେ ?

ଶୁ-ବ—କହିବି ନାହିଁଟି—ମୂଷା ଲଣ୍ଡି । [ ଧୀରେ କହିଲା ]

ଶୁକୁଟା—ଆକ୍, ଥୁ-ଥୁ—ଇଛି ମୂଷା ଲଣ୍ଡି । ଆଉ ସିଏତ ତାକୁ ଖାଇ ଖୁବ୍ ଚେଙ୍ଗେଇ ଉଠିଲା !

ଶୁ-ବ—ସେଇଟା ଅଫିମାଙ୍କ ଦସ୍ତୁର । ଅଫିମ ନ ପାଇଲେ ମଲା ପରି ହୁଅନ୍ତି ସିନା । ଖାଇଚ ବୋଲି ଜାଣିଲେ ସବୁ ଫୂର୍ତ୍ତି ବାହାରେ । ସେଇଥି ପାଇଁ ବଢ଼ୁଥିଲା । ଦେଖିଲୁ ତ ଆଖିରେ !

ଶୁକୁଟା—ଆଚ୍ଛା ବଡ଼, ଗୋଟାଏ କଥା ପଚାରିବି । ବାପା ତ କହେ ଆଗ୍ରାର ନବାବମାନେ ଅଫିମ ନିଶା ଖାଆନ୍ତି । ସିଏ ତ ଅଫିମ ଖାଇ ଯେତକ ଗହଣାଗାଣ୍ଠି, ଜମିବାଡ଼ି ବିକି ଅମିଶ୍ରି କଲା । ମୁଁ ବଡ଼ ହେଲେ ଯେତେବେଳେ ଅଫିମ ଖାଇ ଅମିଶ୍ରି କରିବି, କଣ ବିକିବି ଆଉ ?

ଶୁ-ବ—ଛି, ତୁ ଅଫିମ ଖାଇବୁ ! ସୁନାପୁଅ ମୋର । ଠାକୁରେ ତତେ ସେ ଅଲକ୍ଷଣା ବୁଦ୍ଧି ନ ଦିଅନ୍ତୁ । ମାନ ଯିବ, ମହତ ଯିବ, ଘରକରଣା ସରିବ—ଲୋକେ ଛି ଛି କରି କରିବେ । ଦୂର୍ ଦୂର୍ ଛିନ୍ ଛିନ୍ ହେବେ ।

(ଦାମ ଧାଇଁ ଧାଇଁ ପ୍ରବେଶ କଲା ଓ ଅତି ବ୍ୟସ୍ତରେ କହିଲା, 'ମୁନ୍ଦଏ ପାଣି, ମୁନ୍ଦଏ ପାଣି, ବୁନ୍ଦା ପାଣି—ବୁନ୍ଦା ପାଣି—ମରିଗଲି ଲୋ ଶୁକୁଟା ବଡ଼ ! )

ଶୁ-ବ—କଣ କଣ ? (ବ୍ୟସ୍ତ ହୋଇ )

ଦାମ—ହେଇ ଆଇଲେ—କବାଟ କିଳି ପକା, କବାଟ କିଳିପକା । କଉଠି ଲୁଚିବି କହ ।

ଶୁ-ବ—କଥା ନାହିଁ, ବାର୍ତ୍ତା ନାହିଁ, ଇମିତି ହଉଚୁ କାହିଁକି ? ବାଟରେ ଭୂତ ଲାଗିଲା ନା କ'ଣ ? କଉଁଠି ଡରିଲୁ କି ?

ଦାମ—କଥା କହି ପାରୁନାହିଁ—ଆଗେ ଟିକିଏ ···

ଶୁକୁଟା—ତାକୁ ଯମ ଗୋଡ଼େଇଚି ଲୋ ବଡ଼ !

ଶୁ-ବ—ତେବେ ସେଇଆଡ଼େ ମଲା ନାହିଁ—ହାଡ଼ ଯୋଖାଡ଼ି ପକାଇ ଥାଆନ୍ତେ । ଏଠିକି ଆଇଲୁ କାହିଁରେ ଅଲଟପଇଷ, ଆମକୁ ହଇରାଣ କରିବା ପାଇଁ !

ଦାମ—ଚୁପ୍ କର । ତୋହରି ଜିଭକୁ ହେଇ ମଲା ଦେଖ୍ ।

ଶୁ-ବ—ପଛରେ ମରିବୁତ ମରିବୁ, ମୋ ହାତ ସଉଦା ଦେଇ ମାରି ମର୍ ।

ଦାମ—ଉଃ ବାପଲେ—ସେ ଯେଉଁ ଡିଣ୍ଟା, ଅଇଲା ଯେ ତଡ଼ି ଶିଙ୍ଗକୁ ଭିଡ଼, ଦାନ୍ତ କାମୁଡ଼, ଯିମିତି ପବନରେ ଯାଉଚି ଉଡ଼ି—ମୁଁ ତ ପଡ଼ିଲି ଗଡ଼ି, ମୋ ଅନ୍ତନାଡ଼ି ଗଲା ଛୁଡ଼ି ··· ଆଉ···ଆଉ···

ଶୁ-ବ—ଏତେ ବେଗଲା ହ ନା ଆଉ । ସବୁ ବୁଝିଛି । ସଉଦା ଡାହିଁ ଦେ । ···ନୋହିଲେ—

ଦାମ—ସଉଦା ସବୁ ଗଲା ପରି ପଡ଼, ପଡ଼ିଲା ଯେ କଗୃଡ଼—ଦେଇ ଥାଆନ୍ତା ତ ମାଡ଼ ···

ଶୁକୁଟା—ତତେ ଯୋଖାଡ଼ିଲା ନାହିଁ ଯା ହାଡ଼ୀ ।

ଶୁ-ବ—ଦିହ ତ କଉଠି ଖଣ୍ଡିଆ ହେଇନାହିଁ—ଗାମୁଛାଟା ବି ରହିଚ୍ଛି—ସଉଦା ଗଲା କୁଆଡ଼େ ?

ଦାମ – (ଗାମୁଛା ଦେଖି) ହଁ, ହଁ ଫେଟି ପଡ଼ିଚ୍ଛି ତେବେ, ଗଣ୍ଠି ଖୋଲି ଯାଇ ।

( ଶୁକୁଟା ଗାମୁଛାଟା ନେଇ ଶୁଙ୍ଘିଲା )

ଶୁକୁଟା—ବଡ଼, ଭୁଗ୍ଭୁ ମିଛ, ଏଥିରେ ସଉଦା ବନ୍ଧା ହୋଇଥିଲେ, ଶୁଖୁଆ ବାସନା ଯାଆନ୍ତା କୁଆଡ଼େ ?

ଶୁ-ବ—ହଉ, ପଇସା କଣ କଲୁ ?

ଦାମ—ସଉଦା କିଣିଥିଲି ପରି କହିଲି । ତୋ ଗୁଣ, ତୋ ମୁଣ୍ଡ ଖାଉଚି ।

ଶୁ-ବ—ତା ଅଣ୍ଟି ଦେଖିବୁଟିରେ ଶୁକୁଟା ।

( ଶୁକୁଟା ଅଣ୍ଟିରୁ ଅଫିମ କଉଟ ବାହାର କଲା )

( ଶୁକୁଟା ବଉ ଫିଟେଇ ଦେଖି କହିଲା )

ଶୁ-ବ—କରେ ସତଆଠା ଯୋକୁ କଉଠୁ ପାଇଲୁ ?

ଦାମ—ମୋ ଗୁଣ, ଜଗନ୍ନାଥ ଦାହି, ଏଇ ସାଉଣ୍ଟି, ନା ନା ମାଗି ଆଣିଚ ।

ଶୁ-ବ—ହଁ ଅଫିମ ସବୁ ବାଟରେ ଘାଟରେ ପଡ଼ିଚ ଯେ···(ଶୁଙ୍ଘିଲା) ଇଁ ହିଁ ଏ ଗୁଡ଼ାକ କଣ ଲୋ ମା—ଇଏ ତ କଳାଡ଼ିକା ମଳକୁଟି ଗୁଡ଼ାକ । ବିରିକାଳିଆ ଗନ୍ଧଉଚି ।

ଦାମ—ଆଁ—ଅଫିମ ନୁହେ ! କଣ କହିଲୁ , ଦେଖେଁ—ବେହିପୋ ନନ୍ଦିଆ ମୋତେ ଦେଲା ଚଟାକାଟି—ହଉ ତାକୁ—ଦେଖୁଚି କାଲି । ଗୁରି ଗୁରି ଗଣ୍ଡା ପଇସା ନେଇ···ହକ—ଟେକ୍‌-ଠୋକ୍ ! ଆଉ ···

ଶୁ-ବ—ତେବେ ଯେ କହୁଥିଲୁ ଏହିକ୍ଷଣି, ଅଫିମ ମାଗି ଆଣିଚୁ ବୋଲି ?

ଦାମ—ମାଗି ତ ଆଣିଚ୍ଛି—କଣ କହିଲି କି ?

ଶୁକୁଟା—ଆଉ ମିଛ କହି ଫଳ କଣ, ଜଣା ତ ପଡ଼ିଲାଣି । ବେଶ୍ ହୋଇଚ୍ଛି, ଆଚ୍ଛା ହେଇଚି ।

ଶୁ-ବ—ମୋ ପଇସା ଯେ ଗଲା । ଗୁରିଅଣା ପଇସା ।

ଦାମ—ଆଚ୍ଛା ମୁଁ ଯାଏ ଏଇକ୍ଷିଣି, ବଦମାସକୁ ···

( ବେଗେ ବାହାରି ଯାଉଁ ଯାଉଁ ଥମ କରି ରହିଗଲା )

ଶୁ-ବ—କଣ ହେଲାକ ପୁଣି ?

ଦାମ—ଏ, ତାକୁ ପୁଲସବାଲା ଧରିନେଇ ଗଲେଣି । ମୁଁ ମୁଁ—

ଶ୍ରୀ-ବ—ଓଃ, ସେଇଆ କହୁନୁ । ତତେ ବ ତ ପୁଲିସି ଗୋଡ଼େଇଛ ଯେ ଅଥାନଆ ହୋଇ ଧାଇଁଚୁ । ବାହାର୍ ବାହାର୍ ମୋ ଘରୁ । ଅଲକ୍ଷଣିଆ, ନିଶାଖୋରିଆ, ଅଲାଜୁକ, ବେହିୟା—ବାହାର୍—ଆଣିବୁଟି ଶୁକୁଟା ମୋ ପହଁରି ......

( ଦାମକୁ ବାଡ଼େଇବାକୁ ଯାଆନ୍ତେ ସେ ପଳାଇବାକୁ ଲଗିଲ । ଏହି ସମୟରେ ଗାଆଁ ପିଲାମାନେ ପ୍ରବେଶ କରି ଗୀତ ଗାଇ ଗୋଡ଼େଇବାକୁ ଲଗିଲେ ବୁଲିବୁଲି )

—ଗୀତ—

ଧର୍ ଧର୍ ଏ ନିଶାଖୋରକୁ ଧର୍, ଧର୍, ଧର୍,
ଡଣ୍ଡିଆ ଦେଇ, ଦେବା ପଠାଇ, ଯମକୁ ମାମୁଘର୍ ॥
ଭୁ—ଭୁ—ଭୁ—
ଘୁଅଖିଆର ମୁହଁରେ ଛେପ, ପକା ଥୁ—ଥୁ—
ଚୁଟି କାଟି, ଚୂନକାଳି ଦେଇ, ସାତବେଣିଆ କର୍ ॥
ମଣିଷ ନୁହେଁ, ଏ ଭୂତ,
ଯମ ମୁଣ୍ଡରେ କୁକୁର ମୂତ,
ଆଉଷ ଥାଉଁ ମରୁଥାଏ ଏ ଦିନକୁ ଅଠର ଥର୍ ॥

## ପଞ୍ଚମ ଦୃଶ୍ୟ

[ ଅନାମ ସାଆନ୍ତଙ୍କ ଘରେ ଅଫିମାମାନଙ୍କର ଖଟି ଲଗିଛି । ନାକ-ଫୋଡ଼ ବିଦ୍ୟାବାଗୀଶ, ନବୀନ ମହାପାତ୍ର, ଗୁଲଜାର୍ ମିଆଁ; ମିଷ୍ଟର୍ ପ୍ରେମଗୃନ୍ଦ ପ୍ରଭୃତି ଅଫିମାମାନେ ଘେରି ବସିଛନ୍ତି । ]

ଅନାମ—ଭାଇମାନେ, ଆଜି ଆମ ଜାତିକୁ, ଦେଶକୁ, ସମାଜକୁ ଏକ ମହା ବିପଦ ପଡ଼ିଛି । ଆମେ ଯଉଁ କଂଗ୍ରେସକୁ ବିଶ୍ୱାସ କରି ଗଳାଛୁରୀ ସଅଁପି ଦେଲୁ, ସେହି ଆମ ବିଶ୍ୱାସରେ ବିଷ ଦେଉଛି, ଆମରି ଛୁରୀରେ ଆମରି ଗଳା କାଟୁଛି । ମହାଦେବ, ଗଣେଶ, କାଳୀ, ଏ ଦେବତାମାନଙ୍କ ପୂଜା ଉପହାର ବନ୍ଦ କରି ଧର୍ମଦ୍ରୋହୀ ହେଉଛି । ଯେପରି ଦେଖାଯାଏ, ଆମ କଳାକୃଷ୍ଣ ଭକ୍ତମାନେ ଆଉ ଏ ପୃଥିବୀରେ ରହିବେ ନାହିଁ । ସବୁ ମୂଳପୋଛ ହୋଇ ଯିବେ । ଦେଶରୁ ଗୋଟାଏ ଅତି ଆନନ୍ଦଦାୟୀ ଶିଳ୍ପକଳା ଓ ଆରାମଦାୟୀ ବିଜ୍ଞାନ ନଷ୍ଟ ହୋଇଯିବ । ଆମ ଗୋଷ୍ଠୀର ରକ୍ଷା ନିମନ୍ତେ କି ଉପାୟ କରାଯିବ କି ପ୍ରତିକାର କରାଯିବ, ତାହାର ବିଚାର ପାଇଁ ଏ ସଭା ଡକରା ହୋଇଛି । ପ୍ରଥମେ ପଣ୍ଡିତ ଶ୍ରୀ ନାକଫୋଡ଼ ବିଦ୍ୟାବାଗୀଶ ଭାଷଣ ଦିଅନ୍ତୁ ।

[ ନାକଫୋଡ଼ ଛିଡ଼ାହେଲେ ]

ନାକଫୋଡ଼—ମହାମାନ୍ୟବାନ୍ ସଭା କର୍ଣ୍ଣଧାରଶ୍ଚ ଭ୍ରାତୃ ଭଗିନୀ ବୃନ୍ଦାଃ । ଅସ୍ମାକଂ ଇଷ୍ଟଦେବତା ଅହିଫେନର ଜନ୍ମ ଅତି ପୂତ ଅଟଇ । ବ୍ରହ୍ମପୁରାଣରେ ଅଛି—

ସମୁଦ୍ର ମନ୍ଥନ କାଳେ ଅମୃତରସଂ ଉଦଗତଂ
ବାସୁକୀ ବଦନାମ୍ବୁଜାତ୍ ବିଷଶ୍ଚ ଅପି ଅପଯୁତେଃ ।
ଏତଦ୍ୱୟଂ ମିଳିତଂଚ ମହା ମୂଲ୍ୟଚ ମୋଦକଂ,
ସର୍ବଦୁଃଖ ହରଂ ସୌଖ୍ୟଂ ସେବ୍ୟଜଂ ମାନବୈ କଳୌ ।

ଅର୍ଥାତ୍ କିନା, ସମୁଦ୍ର ମନ୍ଥନରୁ ଯେଉଁ ଅମୃତ ବାହାରିଲା ତାହା ଦେବଗଣ ନେଲେ ଓ ବାସୁକୀ ମୁଖରୁ ଯେଉଁ ବିଷ ବାହାରିଲା ତାହା ନୀଳକଣ୍ଠ ପାନ କଲେ—ବାକି ତଳେ ଯାହା ବିଗଳିତ ହେଲା ତାହା ମିଶି ଏକ ଅଭିନବ ବସ୍ତୁ ପ୍ରସ୍ତୁତ ହେଲା—ତାହା ଏହି ଅଫିମ । ଏହାର ଶକ୍ତି ଅଦ୍ଭୁତ ଅଟେ । କଳିର ଜରାବ୍ୟାଧି, ରୋଗ, ଶୋକ, ପାପତାପଗ୍ରସ୍ତ-ମାନଙ୍କ ପାଇଁ ବ୍ରହ୍ମା ଏହା ମର୍ତ୍ତ୍ୟକୁ ପଠାଇଲେ । ଏହାକୁ ଉଠାଇ ସରକାର ଯେଉଁ ଲୋକମଙ୍ଗଳ କରୁଛନ୍ତି, ସେଥିପାଇଁ ତୀବ୍ର, ତୀକ୍ଷ୍ଣ ଓ ପ୍ରଚଣ୍ଡ ପ୍ରତିବାଦ, ପ୍ରତିରୋଧ ପ୍ରତିକ୍ରିୟା ରୂପ ପ୍ରତିବିଧାନ ହେଉ । ( କରତାଳି )

ଅନାମ—ମିଷ୍ଟର ପ୍ରେମଗୃନ୍ଦ ଲେକଚର କରନ୍ତୁ ।

ପ୍ରେମଗୃନ୍ଦ—ମିଷ୍ଟର ପ୍ରେସିଡେଣ୍ଟ ଓ କମରେଡ୍ ଗଣ, ସରକାର ଯେ ପାଞ୍ଚଣ କରିଛନ୍, ସେ ଗୁଡ଼େ ବାଲି ପଡ଼ିଯିବ—ଯଦି ଆମରି ମାନେ କାଯ କରିତେ ପାରିବା; ସୁଧ ମୁଖର କଥାରେ ଚିଡ଼ା ଭିଜେନା । କାଯ, କାଯ, କାଯ—ଏଇ ଦେଖ, ଆମରି ଏଇ ଗୁଳିର ଦେଖା ଦେଖି ବଡ଼ ବଡ଼ ଜାତି ମାନେ ଗୁଳି, ଗୋଲା, ବୋମା କରିଛେନ୍,—ଆମରି ଧୂଆଁରୁ ଗେସ୍ ବାମ୍ପ ହୋଇଛେନ୍; ଆମରି ନଳୀର ବନ୍ଧୁକ, କମାନ କରିଛନ୍; ଏ ସବୁ ଯନ୍ତ୍ରପାତି, ସାଜ ସରଞ୍ଜାମ ସଜିଲ କରି ଆମରମାନେ ବୀରଦର୍ପେ ଯୁଦ୍ଧରେ ଅଗ୍ରସର ହୋଇତେ ପାରିଲେ—ସମସ୍ତ ଶତ୍ରୁ ଲଙ୍ଗୁଲଂ ଟେକିତ୍ୱା ପଳାୟମାନା ହେବେଇ ହେବେ—

[ କରତାଳି ]

ନବୀନ—ଭ୍ରାତୃମାନେ, କମ୍ରେଡ଼ ପ୍ରେମଗୃନ୍ଦ ଯାହା କହିଲେ ତାହା ହିଂସାର ଧର୍ମ । ଏ ଗାନ୍ଧୀ ଅମଳରେ ଆମେ ତାର ଅନୁମୋଦନ କରି ନପାରୁଁ । ମୋର ସୁଚିନ୍ତିତ ପରାମର୍ଶ ଯେ ଆମେ ସତ୍ୟପଥ ଛାଡ଼ିବା ନାହିଁ । ଆମରି ନ୍ୟାୟ ପକ୍ଷର ନିଶ୍ଚୟ ଜୟ ହେବ ।

**ସଭାପତି**—ସମାଲୋଚନା ନ କରି କାର୍ଯ୍ୟକାରୀ ପ୍ରୋଗ୍ରାମ ଦିଅନ୍ତୁ ।

**ନବୀନ**—ଆଚ୍ଛା, ଖବର କାଗଜରେ ଆନ୍ଦୋଳନ କରାଯାଉ । ଗ୍ରାମେ ଗ୍ରାମେ ଭଲେଣ୍ଟିଅର ମାନେ ବୁଲି ଲେକଚର ଦେଇ ଲୋକମତ ସୃଷ୍ଟି କରନ୍ତୁ । ପଲ୍ଲୀରେ, ପଲ୍ଲୀରେ, ନଗରେ, ନଗରେ, ମରୁରେ, ପ୍ରାନ୍ତରେ, ଜଙ୍ଗଲେ, ପର୍ବତେ, ଜଳେ, ସ୍ଥଳେ, ଅନଳେ, ଅନିଳେ, ଆକାଶେ, ପାତାଳେ ପୋଷ୍ଟର, ମାରନ୍ତୁ, ନୋଟିସ ବାଣ୍ଟନ୍ତୁ । ଆଉ ସଭା ସମିତି, ସମ୍ମିଳନୀ, ସଂଘ କରି ଘୋର ଆନ୍ଦୋଳନ ଚଳାନ୍ତୁ । ଏହି ସମୟରେ କେହି ପ୍ରାୟୋପବେଶନ ଉପାସ ଆରମ୍ଭ କରି ଦେଇ ଲମ୍ବା ଶୋଇ ପଡ଼ନ୍ତୁ । ଯଥା—ଏବମିଦଂ—

(ଲମ୍ବହୋଇ ଶୋଇଲେ)

**ଗୁଲଜାର ମିଆଁ**—ମେହେରବାନ୍ ସଭାପତି ହାମର କୁଛି କହନେକୋ ଅଛି । ଆଗର ହୁକୁମ୍ ହବତ କୁହା କରିବୁ ।

**ସକଳେ**—କୁହ କୁହ·········

**ଗୁଲଜାର**—ଏଇଯୋ ହାମ୍ ମୁଲକରେ ଭାଇ ଭାଇ ଲଢ଼ାଇ ଝଗଡ଼ା, ଦଙ୍ଗା ଫସାଦ୍, ଲଟିଛି—ଉସ୍‌ମେ ହାମର ବହୁତ ବହୁତ ନୋକସାନ୍, ବରବାଦ୍ ହଉଛି । ଏ ସବୁ ଗୋଲମାଲ ମିଟ୍‌ମାଟ୍ କରିବା ବାସ୍ତେ ସବକୋଇ କହୁଛନ୍ତି, ଲେକିନ୍ କୋଇ କୁଛି କରୁନାହିଁ । ଅବଶେଷ, ଅବଶେଷ ହାମେ ବଡ଼ିଜୋର କେଜରେ କହୁଛି କି ଅଫିମ୍ ଭିତରେ ମିଟ୍‌ମାଟ୍ ମେଲ ହେଲେ କରିବାର ତାଜ ଦୁନିଆଁମେ କୁଛି ନାଇଅଛି । ଯଦି ଇଣ୍ଡିଆ ମୁଲକକା ବାଲ୍‌ବଚ୍ଚା, ବୁଢ଼ା, ଯବାନ, ଔରତ, ହିନ୍ଦୁ, ମୁସଲମାନ, ପାର୍ଶୀ, ଶିଖ, ଖ୍ରୀଷ୍ଟିଅନ୍, ବଙ୍ଗାଳୀ, ଓଡ଼ିଆ, ତେଲଙ୍ଗା, ଖୋର୍ଠା, ମରହଟ୍ଟା, ସବକୋଇ ଅଫିମ ସେବା କରେଗେ୍ତା ସବ୍ ବେଜୋଡ଼ ଜୋଡ଼ ବନଯିବ ଓ ବେମିଲ୍ ମେଲ୍ ହୋ ଯାବେଗା । ଜାତି ଓ ଧରମ୍ ବିଚ୍ଛିର ଭେଦ ବିଲକୁଲ୍ ଉଡ଼ିଯିବ । ଏ ଅକଲ ଗାନ୍ଧୀ ମହାତ୍ମା ଓ ଜିନ୍ନା ସାହେବଠାକୁ ଟେଲିଗ୍ରାଫ ତାର ଭେଜଦବାର ଅଛି । ହାମର ଏତନା ଅର୍ଜି ଫରମାଇବାର ଥିଲା । ( କରତାଳି )

**ସଭାପତି**—ଆଚ୍ଛା, ବହୁତ ଆଚ୍ଛା, ସାବାସ, ସାବାସ, ମିଆଁ ପୁଅ ଯାହା କହିଲେ ବଢ଼ିଆ ଠିକ୍ । ତେବେ ସମସ୍ତେ ଏବେ କାମ ଆରମ୍ଭ କର ।

**(ସଙ୍ଗେ ସଙ୍ଗେ ହୁକାରେ ଅଗ୍ନି ସଂଯୋଗ ହେଲା ଓ ଜଣକୁ ଜଣ ତାହା ଟାଣିବାକୁ ଲାଗିଲେ । )**

**ଭାଙ୍ଗପୋଢ଼**—ଦେଖ ମୋ ଗୁଲରେ ଗୋଟାଏ ଜହାଜ ବୁଡ଼ାଇ ଦେଲି ।

**ସକଳେ**—ବାହବା କି ବାହାବା—

**ପ୍ରେମଚନ୍ଦ୍ର**—ଉଡ଼ାଜାହାଜଟାକୁ ଦେଲି ଖସେଇ—ଦେଖିଲ ?

**ସକଳେ**—କ୍ୟା ବାତ୍ ହୈ······

**ଗୁଲଜାର**—ହଜାର ଫୌଜ ଉଡ଼ାଦିଆ······

**ସକଳେ**—ବଲିହାରି ହୈ ମିଆଁ ସାହେବ ।

**ନବୀନ**—ମୋର ବାବା ସତ୍ୟାଗ୍ରହ, ତମ ହିଂସା ରଣରେ ମୋର ଭାଗ ନାହିଁ ଜାଣିଥା ।

**ଗୁଲଜାର**—ହେଇ, କିଏ ଆସୁଛି ନା କ'ଣ ?

**ସଭାପତି**—ଶତ୍ରୁ, ଶତ୍ରୁ—ଧୂଆଁ ଛାଡ଼ ଧୂଆଁ — ଗ୍ୟାସ୍, ଗ୍ୟାସ୍—ମାଷ୍ଟାଡ଼ ଗ୍ୟାସ୍

[ ଦାମ ଲେଙ୍କା ପ୍ରବେଷ୍ଟ ହେଲା ]

**ଦାମ**—ଆରେ ଭାଇ—ମୁଁ—ମୁଁ—ତମର ଆଶ୍ରାକୁ ଧାଇଁ ଆସିଛି ।

**ସଭାପତି**—ଓଃ, ଲେଙ୍କାପୁଅ, ହାଲ କଣ କୁହ । ସବୁ ଭଲ ତ ?

**ଦାମ**—ଭଲ ଆଉ କଣ ସାଆନ୍ତେ, ତମର ପାଖରେ ବସି ବସି ତ ଏ ଗୃହଶିଆ ନିଶା ପାଲରେ ପଡ଼ିଲି । ଏଇକ୍ଷଣି ସମାଜ୍ଞତ କିଏ ? ନିଶା ଖାଇ ଦେହରୁ ବଳ ସରିଲା, ଲହୁ ଶୁଖିଲା—ଯାର ଲାଗି ଘର ଦୁଆର ଉଜାଡ଼ିଲି, ଜମିବାଡ଼ି ସବୁ ବିକିଲି । ଏଇକ୍ଷଣି ଭିକମଗା ହେଲି ସାର । କିନ୍ତୁ ଭିକ ଗଣ୍ଡାକ ମିଳୁଚି କଉଁଠି ? ଯଉଁଠିକି ଗଲେ ନିଶାଖୋର ବୋଲି ଦୂର ଦୂର ଛିନ୍ ଛିନ୍ ହଉଛନ୍ତି, ଗୋଡ଼େଇ ମାରୁଛନ୍ତି ସମସ୍ତେ ।

**ସଭାପତି**—ହଉ ତମର ଘର ଦୁଆର ପୁଅ ଭାରିଯା ଅଛନ୍ତି ତ ? ଚିନ୍ତା କ'ଣ !

**ଦାମ**—ଆଉ ସେ କଥା ପଚାରୁଛ ! ସେଠିକି ଗଲାକ୍ଷଣି ତ ପୁଅ ଠେଙ୍ଗା ମାରି ଗୋଡ଼ାଉଛି । ଭାରିଯା ଛୁଞ୍ଚୁଣୀ ନେଇ ତିଆରି ହୋଇଛି; ସିଏ କୁଆଡ଼େ ! ଝିଅ ଘରକୁ ଗଲି ଯେ, ସେଠି ବି ସମଦୁଣୀ ବାହାଣ ଚଢ଼େଇଲା । ଏ ସଂସାରରେ ମୋର ସ୍ଥାନ ନାହିଁ—ତମେ ମୋର ଗୁରୁ ହୋଇ ଶିଖେଇଥିଲ—ଏବେ ···

( ନନ୍ଦ ତିଆଡ଼ି ବକଲ ଜେନା ଓ ବଶ ପ୍ରଧାନ ପ୍ରବେଷ୍ଟ ହେଲେ )

( ତାଙ୍କୁ ଦେଖି ସମସ୍ତେ ତରଛରେ ଧଡ଼ପଡ଼ ହୋଇ ଉଠିଲେ )

**ନନ୍ଦ**—ହାଁ,—ହାଁ—ଏତେ ଡର କାହିଁକି ? ମୁଁ ଯେ—ନନ୍ଦ ।

**ସଭାପତି**—ଓହୋ ନନ୍ଦଆ ନନା ତ । କେବେ ଅଇଲ ମ ? କମିତିକା ଅଛ ?

**ନନ୍ଦ**—ଦେଖନ୍ତୁ କମିତିକା ଅଛି ।

( ନିଜର ସୁସ୍ଥ ଦେହ ଦେଖାଇଲା )

ସଭ୍ୟ—ଆରେ ବାଃ ଖୁବ୍ ମୋଟା ହୋଇ ଯାଇଛ ତ !

ନନ୍ଦ—ହେବ ନାହିଁ ! ଏକା କଣ ମୁଁ ? ଏ ସମସ୍ତଙ୍କୁ ଦେଖନ୍ତୁ ।

( ବଣ ଓ ବକଲଙ୍କୁ ଦେଖାଇଲା )

ସଭାପତି—( ଆଶ୍ଚର୍ଯ୍ୟ ହୋଇ ) ଆରେ ସତେ ତ !

ନନ୍ଦ—ଖାଲି ମୁହଁରେ ଖୁସିଟା ହେଲେ ହବ ନାହିଁ । କେତେ ଧନ ଆଉ ଏଇ ଶ୍ରେଷ୍ଠ କାମ କରୁଥିବ ? ଚୋର ପରି ଲୁଚି ଲୁଚି, ସମସ୍ତଙ୍କ ଡର ଡର ରହୁଥିବ ? ଏଇ ନିନ୍ଦୁଣା ନିଶା ପାଲରେ ପଡ଼ିଛ ବୋଲି ସିନା !

ଗୁଲଜାର—ଏଁ, ଏକଦମ୍ ବଦଲ୍ ଗିଆ ନନ୍ଦଆ ନନା—

ବଣ—ସେ ଏକା ନୁହେ—ଆମେ ସମସ୍ତେ । ସେଦିନ ଧରା ହୋଇ ଯାଇଥିଲି ସତ, ଏକା ମୋତେ ଢେର ଅପମାନ ଦେଇ ଛାଡ଼ିଦେଲା ହାକିମ । ମୁଁ ସେଇଦିନୁ ନିୟମ କରି ଅଫିମ ଛାଡ଼ି ଦେଲି । ମୋର ଆଉ କିଛି ନାହିଁ । ଖାଇବାକୁ ପିନ୍ଧିବାକୁ ଅଭାବ ପଡ଼ୁ ନାହିଁ । ଦେହ ପା' ବି ଭଲ । ମନ ବି ତେଜ ।

ବକଲା—ମୁଁ ସେଇ ଜେଲଖାନାରେ ଅଫିମ ଛାଡ଼ିଲି । ସେଠି ଯଉଁ ନ ମିଳିଲା, ଆପେ ଗଲା ଛାଡ଼ି । ଆଉ ତ କିଛି ହଉ ନାହିଁ । ବେଶ୍ ଭଲ ଅଛି । ଚୋରି କରିବାକୁ ପଡ଼ୁ ନାହିଁ କି ଉପାସ ରହିବାକୁ ପଡ଼ୁନାହିଁ । ବାର ଦୁଆରେ ହାତ ପତେଇବାର କି ଦରକାର । ଆପଣାର ବାହା ପିଠି ଯାହା ଅର୍ଜନ କରୁଛି ସେଥିରେ ମୋର ନିତି ମଉଜରେ ଚଳୁଛି ।

ନନ୍ଦ—ଏଇ ଦାମ ଲୋକଙ୍କର କଣ ନ ଥିଲା—ଆଜି ଇଏ କଣ ହେଲାଣି । ସେଥିରେ ଯଉଁ ହୀନସ୍ତା ଅବସ୍ଥା—ପୁଣି ରୂପ ଯାହା ହୋଇଛି - ସତେ କି ମୁରଦାର ! ଏଥିରୁ କଣ ପାଉଛ ଭଲ ! ଭାଇ, ସମସ୍ତେ ଏ ଶ୍ରେଷ୍ଠ ଅମଲ ଛାଡ଼ିଦିଅ । ଆମ ଦେହର ହାଡ଼, ମାଉଁସ, ରକତ ଏ ରାକ୍ଷସ ଶୋଷି ପକାଉଛି—ଆଉ ଧନ ବି ଉଭେଇ ଯାଉଛି । ଘରର କଉଡ଼ି ଦେଇ ଆଉ ବିଷ କିଣି ଖାଆନା । ତାପରେ ପାଞ୍ଚ ଜଣଙ୍କ ଆଗରେ ଅଫିମା, ମଦଡ୍ଡି ବୋଲି ଏତେ ବେଇଜ୍ଜତ ହଉଛ କାହିଁକି ଭଲ ! ଏ ନିଶା ଆମ ଘରେ ଘରେ, ପଶି ଗାଆଁକୁ ଗାଆଁ ଉଜାଡ଼ ଦେଲାଣି । କେତେ ଗଜା ଗଜା ପିଲା, ହେଣ୍ଡା ସ୍ୱାଭ ପାଲରେ ପଡ଼ି ସଡ଼ି ଗଲେଣି । ବରଷକ ଆଇଏ ଛମାସ କଲେଣି । ସେଇଥିପାଇଁ ଆମ ସରକାର, ଯାହାଙ୍କୁ ଆମେଇ ଭୋଟ ଦେଇ ପଠେଇଛେଁ, ସେଇ ସରକାର ଆମରି ମଙ୍ଗଳ ପାଇଁ ଅଫିମ ପ୍ରଭୃତି ନିଶା ଉଠେଇ ଦଉଛନ୍ତି । ସେମାନେ ଆମରି ଲୋକ, ଆମରି ହିତ ଗୃହାନ୍ତି । ଏବେ ଆସ, ସମସ୍ତେ ଆଜି ଏଇଠି ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନିଙ୍କୁ ସାକ୍ଷୀ କରି ଆମ ନିଜ ଛାତି ଉପରେ ହାତ ରଖି ନିୟମ କରିବା କି ଆଜିଠଉ—ଏ **ଅଫିମ ରାକ୍ଷସ ଧ୍ୱଂସ ହେଉ** ।

ଗୁଲଜାର—ସଚ୍ ବାତ ହୈ, ଅସଲି ବାତ୍ ହୈ । ବୋଲ ବୋଲ ଅଫିମ ଧ୍ୱଂସ ହେଉ ।

ସକଳେ—ଅଫିମ ଧ୍ୱଂସ ହେଉ ।

ନନ୍ଦ—ନା, ତିନିବାର କୁହ ଅଫିମ ଧ୍ୱଂସ ହେଉ ।

ସକଳେ—ଅଫିମ ଧ୍ୱଂସ ହେଉ ।

ନନ୍ଦ—ଅଫିମ ଧ୍ୱଂସ ହେଉ ।

ସକଳେ—ଅଫିମ ଧ୍ୱଂସ ହେଉ ।

ନନ୍ଦ—ଅଫିମ ଧ୍ୱଂସ ହେଉ ।

ସକଳେ—ଅଫିମ ଧ୍ୱଂସ ହେଉ ।

( ପିଲାମାନେ ପ୍ରବିଷ୍ଟ ହୋଇ ଗୀତ ଗାଇଲେ ଓ ସମସ୍ତେ ପାଳି ଧରିଲେ )

( ଗୀତ )

ଛି—ଛି—ଏ ଝକ୍‌ମାରି,
କାନ ମୋଡ଼ିଲୁଁ, ନାକ ଘଷିଲୁ, ଗାଲକୁ ଚାପୁଡ଼ା ଚୋରି ।
ଅଫିମ ଖାଇ ଏଇଟା ହେଲି ଛାଡ଼ିଲି ଦାନା କନା—
କାହାରି ଘରେ ଗୋଡ଼ ଦେବାକୁ ଦୁଆର ହେଲା ମନା
ତହିଁ ଉପରେ ଜଅଲ ଖାନା,
ପଇସା ଦେଇ ଖାଇଲୁଁ ବିଷ, କଲିଜାଟାକୁ ଦେଲା ଘାରି ।
ଆଜି ବୁଦ୍ଧି ଦିଶିଛି—ଆଜି ଅକଲ ଖୋଲିଛି,
ନିୟମ କରି ଅଫିମଟାକୁ, କରିଦେଇଛୁଁ ଛି—
ଏଣିକି ଆମେ ରଜା ପରି ରହିବୁଁ କରି ହଲ୍‌ଧାରି ।

# ଶିକ୍ଷାନବିଶ ପ୍ରେମିକ

ପ୍ରହସନ

**ପାତ୍ରଗଣ**

ସୁଧାନିଧି ବାବୁ—ଜନୈକ ବ୍ୟକ୍ତି
ତରୁଣି ବାବୁ— ,, ଉକିଲ
ଗୁରୁଚରଣ—ସୁଧାନିଧି ବାବୁଙ୍କ ଘରମାଷ୍ଟର
ମଦନ—ସୁଧାନିଧି ବାବୁଙ୍କ ଶିଶୁପୁତ୍ର

**ପାତ୍ରୀଗଣ**

ମାଳତୀ—ସୁଧାନିଧି ବାବୁଙ୍କ ୧୦ ମ ବର୍ଷୀୟା ଜ୍ୟେଷ୍ଠା କନ୍ୟା
ମାଧବୀ—ସୁଧାନିଧି ବାବୁଙ୍କ ଅଷ୍ଟମ ବର୍ଷୀୟା କନିଷ୍ଠା କନ୍ୟା

---

## ଭୂମିକା

ଏହି ପ୍ରହସନର ଆଖ୍ୟାୟିକା ମୋର ଗୋଟିଏ ଗଳ୍ପରୁ ଗୃହୀତ । ଶ୍ରୀଶ୍ରୀଗୋପୀନାଥ ସଙ୍ଗୀତ ସମାଜର ଅଭିନୟ ନିମନ୍ତେ ନାଟ୍ୟାକାରରେ ଏହା ରଚିତ ହୋଇଥିଲା । ଏହାର ଅଭିନୟ ଦେଖି ଅନେକେ ସନ୍ତୁଷ୍ଟ ହୋଇ ପୁସ୍ତିକାକାରରେ ପ୍ରକାଶ କରିବାପାଇଁ ମୋତେ ଅନୁରୋଧ କରିଥିବାରୁ ବର୍ତ୍ତମାନ ପ୍ରକାଶ କରିବାକୁ ସାହସୀ ହେଲି । ପାଠକ ଓ ନାଟ୍ୟକାରବୃନ୍ଦ ସାଦରେ ଗ୍ରହଣ କଲେ କୃତାର୍ଥ ହେବି । ଇତି ।

ଲେଖକ

## [ ପ୍ରଥମ ଦୃଶ୍ୟ ]

[ ସୁଧାନିଧି ବାବୁଙ୍କ ଦାଣ୍ଡଘର ]

( ମାଷ୍ଟର ଗୁରୁଚରଣ, ମାଳତୀ, ମାଧବୀ, ମାଧି ଓ ମଦନ )

( ପିଲାମାନେ ଯେ ଯାହାର ପାଠ ପଢୁଛନ୍ତି ଓ ମାଷ୍ଟର ଥରେ ଜଣକୁ ଓ ଆଉଥରେ ଆଉ ଜଣକୁ ପାଠ କହି ଦେଉଛନ୍ତି । ମାଧିକୁ ଜ୍ୟାମିତି ବୁଝାଉଛନ୍ତି । )

ମାଧବୀ—( ହଠାତ୍ ) ମାଷ୍ଟରେ, ମାଷ୍ଟରେ, ଅପା ମୋତେ ଆଜି ଚିମୁଟି ପକାଇଲା ।

ମାଷ୍ଟର—କେତେବେଳେ ? ଆଚ୍ଛା, ବୁଝିବା । ( ପୁଣି ପଢ଼ିଲେ )

ମାଧବୀ—ମାଷ୍ଟରେ, ମଦନ ମୋତେ ବିଧାଏ ମାରି ପଳାଇଲା ।

ମାଷ୍ଟର—ଆଚ୍ଛା, ସେ ମାଡ଼ ଖାଇବ । ( ପୁଣି ପଢ଼ିଲେ )

ମାଧବୀ—ମାଷ୍ଟରେ, ମାଧଭାଇ ମୋତେ ଖତେଇ ହେଉଥିଲା ।

ମାଷ୍ଟର—ଓଃ, ବଡ଼ ବିରକ୍ତ କଲା ଏଇଟା । ମାଧବୀ, ତୋହର କଣ ସବୁ ଫେରାଦ ସମସ୍ତଙ୍କ ନାଁରେ ?

ମଦନ—ହଁ, ମାଷ୍ଟରେ, ମାଧଭାଇ ସାନ ଅପାକୁ ଚାହିଁ ଇମିତି କରୁଥିଲା । [ ଚୁମ୍ବନର ମୁଖଭଙ୍ଗୀ ]

ମାଷ୍ଟର—କିମିତି ?

ମଦନ—( ପୁଣି ମୁଖରେ ଚୁମ୍ବନର ଭଙ୍ଗୀ କରି ଦେଖାଇଲା )

ମାଧବୀ—ଆଉ ତା ହାତକୁ ଗୁଡିରେ ମାରୁଥିଲା ।

ମାଷ୍ଟର—କି ମାଧ, ଇମିତି କରୁଥିଲୁ କାହିଁକି ?

ମାଧ—ନା Sir, ମୋ ଦାନ୍ତରେ ଗୁଆ ଲାଗିଥିଲା ଯେ ମୁଁ ଇମିତି କରୁଥିଲି । [ ଭଙ୍ଗୀ କରିବା ]

ମାଷ୍ଟର—ଆଚ୍ଛା, ସେ ଆଉ କରିବ ନାହିଁ । ଯା, ପଢ଼ ।
( ପୁଣି ପଢ଼ିଲେ )

( ସୁଧାନିଧି ବାବୁଙ୍କର ପ୍ରବେଶ )

ସୁଧା—ମାଷ୍ଟରବାବୁ, ଆଜି ପଢ଼ାପଢ଼ି ସରି ନାହିଁ କି ? ପିଲାଙ୍କୁ ଛୁଟି କରିଦିଅ ଏବେ ।

ମାଷ୍ଟର—ଆଜ୍ଞା ହଁ । ଯାଅ ସବୁ । ବହିପତ୍ର ହୁସିଆରକରି ରଖ ।
( ସମସ୍ତେ ବହିପତ୍ର ଗୋଟାଇ ଗଲେ )

ସୁଧା—ମାଷ୍ଟର ବାବୁ, ମାଳତୀକୁ କିପରି ଦେଖୁଛ ?

ମାଷ୍ଟର —ମାଳତୀଟି ବଡ଼ ଶାନ୍ତ, କିନ୍ତୁ ପଢ଼ାପଢ଼ିରେ ସେପରି ଭଲ ନୁହେଁ । ଟିକିଏ ମୋଟା ବୁଦ୍ଧିଆ ।

ସୁଧା—ହେଉ, ମାଇକିନିଆ ଝିଅ—ଆଉ କେତେଦିନ ପଢ଼ିବ, ଟିକିଏ ଲେଖିପଢ଼ି ଜାଣିଲେ ହେଲା । ଆଚ୍ଛା, ମାଧବୀ ?

ମାଷ୍ଟର—ମାଧବୀଟା ବଡ଼ ଦୁଷ୍ଟ । ଭାରି ଚପଳ ସ୍ୱଭାବ । ସବୁବେଳେ ସମସ୍ତଙ୍କ ସାଙ୍ଗରେ କଳିକଜିଆ—କେବଳ ଫେରାଦ ।

ସୁଧା—ତା ମା'ଙ୍କର ସେ ଗେହ୍ଲା । ସେଥିପାଇଁ ଟିକିଏ·····ଆଉ ମଦନ ?

ମାଷ୍ଟର—ମଦନ ପିଲାଲୋକ । କିଛି ଜଣାଯାଇ ନାହିଁ । ବୋଧହୁଏ ପଢ଼ିବ ।

ସୁଧା—ଆଚ୍ଛା, କରୁଣିବାବୁଙ୍କ ପୁଅ ? ଏହି ଯେ ମାଧ, ଏ ପିଲାଟି କିପରି ?

ମାଷ୍ଟର—ମାଧତ ଅଳ୍ପଦିନ ହେଲା ଆସିଛି । ଠିକ୍ ବୁଝାଯାଇ ନାହିଁ ତେବେ ମନ୍ଦ ନୁହେଁ ।

ସୁଧା—ସ୍ୱଭାବ ଚରିତ୍ର କିପରି ଦେଖୁଛ ?

ମାଷ୍ଟର—କାହିଁ କିଛିତ ସେପରି ଦେଖି ନାହିଁ ।

ସୁଧା—ନା, ନା, କଥା କ'ଣକି, ପିଲାଟିର ଟିକିଏ ଫେସନ୍ ଫାସନ୍ ଆଡ଼କୁ ମନ । ସେଥିପାଇଁ ପଚାରୁଥିଲି ।

ମାଷ୍ଟର—( ସହାସ୍ୟେ ) ଆଜିକାଲି ଦେଖୁନାହାନ୍ତି, ଇସ୍କୁଲିଆ ପିଲାଙ୍କର ସେଇଟା ଗୋଟାଏ habit ହୋଇଗଲାଣି । ଟିକିଏ ଧୋବଧୋବଇଆ ରଙ୍ଗରଙ୍ଗଣ ନ ହେଲେ ଏଲେଗାନ୍ସ ସମାଜରେ ଚଳୁନାହିଁ ।

ସୁଧା—ଇଏ କିନ୍ତୁ ବେଜାଏ ଫିଟ୍‌ଫାଟ୍ । ଟେରିଟା ତ ଲକ୍ଷେ ଟଙ୍କା ।

ମାଷ୍ଟର—ଏ ଯୁଗରେ ସେଇଟା ଦୂଷଣୀୟ ନୁହେଁ । ସେଇଟା ପରିଚ୍ଛନ୍ନତା ମଧ୍ୟରେ ଗଣ୍ୟ । ନୋହିଲେ ଲୋକେ indecent ugly cad ବୋଲି ପାଖରେ ବସାଇ ଦେବେ ନାହିଁ ।

ସୁଧା—ଯାହାହେଉ, ସ୍ୱଭାବ ଚରିତ୍ର ଯେବେ ଭଲ, ତେବେ ମୋର କିଛି କହିବାର ନାହିଁ । ତେବେ କଣ କି Company ଦୋଷରେ ଆମ ପିଲାଏ ହୁଏ ତ ଖରାପ ହୋଇଯାଇ ପାରନ୍ତି ।

ମାଷ୍ଟର—ମୋର ତ ବିଶ୍ୱାସ, ସେ ଭୟ ମାଧଠାରେ ନାହିଁ ।

ସୁଧା—ମାଧର ବାପା ମୋର ଖୁବ୍ intimate friend, ସେ ସେଦିନ କହିଲେକି ତମଘରେ ମାଷ୍ଟର ଅଛି, ଆମ ମାଧ ଘଡ଼ିଏ ଘଡ଼ିଏ ତାଙ୍କ ଠେଇଁ ପଢ଼ୁ । ମୁଁ ଆଉ କିଛି ଆପତ୍ତି କରିପାରିଲି ନାହିଁ । ତେହିଁକି ତମର ସେଥିରେ ଯେତେବେଳେ ମତ, ମୋର ସେଥିରେ objection କଣ ?
( ଜଣେ ଭୃତ୍ୟର ପ୍ରବେଶ )

ଭୃତ୍ୟ—ବାବୁ, ପୁଝାରି ଭାତ ଦେଲାଣି ।

ସୁଧା—ହଁ, ହଁ, ରାତି ହେଲାଣି—ଆସ ମାଷ୍ଟର ବାବୁ ।
(ଉଭୟଙ୍କର ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ମାଧବର ଏକାକୀ ପ୍ରବେଶ )

ମାଧ—ଏହି ବୟସରେ ଅନେକ ନଭେଲ, ନାଟକ, ପ୍ରେମକବିତା ପଢ଼ିଲି । ନିଜେ ଗୋଟିଏ hero ହେବାର ଇଚ୍ଛା ତେର ଦିନୁ ହେଲାଣି । ଖାଲି ପଢ଼ିଲେ କଣ ହେବ ? ଆପଣା ଅଙ୍ଗେ experience କଲେ ସିନା ହେବ, ତେବେ ଯାଇ ଜଣାଯିବ love କମିତିକା ଜିନିଷ, ଆଉ ପ୍ରେମ କରିବାରେ କି ମିଠା ଅଛି । ସେପରି କିଛି ନ ଥିଲେ ବଡ଼ ବଡ଼ ପ୍ରେମିକମାନେ ପ୍ରେମପାଇଁ ସର୍ବସ୍ୱ ତ୍ୟାଗ କରନ୍ତେ କି, ଜୀବନ ବିସର୍ଜନ ଦିଅନ୍ତେ କି ? Love ପାଇଁ "Selfsacrifice" ଆହା, କି beautiful, କି Chivalrous ! ଏତେଦିନେ ଗୋଟିଏ ପାତ୍ର କପାଳକୁ ମିଳିଛି । ଠିକ୍ ideal. ଯେଉଁ ବାଳିକାସ୍କୁଲକୁ ୬।୭ ଦିନ ହେଲା ପଢ଼ିବାକୁ ଯାଉଛି, ସେଠି ଦିଓଟି ପାତ୍ର ଅଛନ୍ତି । କିନ୍ତୁ ସେ ମାଳତୀଟା କିଛି ନୁହେଁ । ବୋକା—ଆଉ ମାଧବୀ—ଇସ୍ ଠିକ୍ ପ୍ରେମ କରିବାର object ! Love ଜିନିଷଟା ଯିମିତି ସେମିତି ନୁହେଁ ଯେ, ଖଡଗଦାରେ ଫୋପାଡ଼ ଦେବାକୁ ହେବ ! ସେଥିପାଇଁ ଯୋଗ୍ୟ ପାତ୍ର, ଯୋଗ୍ୟ କ୍ଷେତ୍ର ଦରକାର । ଓଃ, ମାଧବୀଟା କି ଭୟାନକ ସୁନ୍ଦରୀ ! କି ମାରାତ୍ମକ ସୁନ୍ଦରୀ, କି deadly beautiful ! ତାର ଚଞ୍ଚଳତା ଯେପରି ପ୍ରଜାପତି ପରି lovely, ତାର ହାବଭାବ ସେହିପରି ବୁଲ୍‌ବୁଲ୍ ପରି ମନୋହର । ତାର ଅନ୍ତର ଜ୍ୟାମିତିର straight line ପରି ସରଳ । Damned sweet girl ! ମୁଁ ଏହାର ଭିତରେ ତାକୁ ଥିକିଏ ଥିକିଏ ଇସାରା ଦେଖେଇଲାଣି । ବିଚାରୀ ବୁଝି ପାରୁନାହିଁ । ମୁଁ ତାକୁ kiss କରିବା ଦେଖେଇଲି, ସେ କହିଲା ଝଗେଇ ହେଉଛି । ଆଚ୍ଛା, ଆଚ୍ଛା, 'ସବୁରକା ଝାଡ୍‌ମେ ମେଓୟା ଫଲତା ହ୍ୟାୟ୍' । ପ୍ରେମବୀଜ ଥରେ ଗଜାହେଲେ ଅସମ୍ଭାଳ ହେବ । ତେବେ ଆସ୍ତେ ଆସ୍ତେ ଅଗ୍ରସର ହେବାକୁ ହେବ । Slow and steady wins the race ଧୀର ପାଣି ପଥର କାଟେ । ଆଜି ଯାଉଛି ପ୍ରଥମ ପ୍ରେମପତ୍ର ତା' ଠାକୁ ଲେଖିବ । ପତ୍ରଟା ହେବ କବିତାରେ । ଛବିବାଲା ଖଣ୍ଡି କାଗଜ ଖଣ୍ଡେ, ଯେଉଁଥିରେ ଥିବ "ଯାଓ ପାଖି ବଲୋ ତାରେ ସେ ଯେନ ଭୁଲେନା ମୋରେ ।" ମୋରତ ଇଏ ବାଜେ ପ୍ରେମ ନୁହେଁ । ଖାଣ୍ଟିପ୍ରେମ—ନିସ୍ୱାର୍ଥ ପ୍ରେମ—ଦାର୍ଶନିକ ପ୍ରେମ; ପ୍ରେମ, ପ୍ରେମ, ବିଶ୍ୱପ୍ରେମ !

[ ଗୀତ ]

ଯେ କରେ ଅସଲ ପ୍ରେମ ତା ମଜା ସେ ଜାଣେ ସିନା ।
ଆନ କେ ବୁଝିବ ତାର ଭାବ ଯେତା ପ୍ରେମିକ ବିନା ॥

ପ୍ରେମେ ନାହିଁ ପର ଆପଣା ପ୍ରେମେ ନାହିଁ ଘୃଣା ମଣା,
ପ୍ରେମ ଜାଣେ ପାଗଳକରି ବିନା ମୂଲେ ବିକା କଣା ।୧।

ପ୍ରେମେ ନାହିଁ ହାତ ଫେରାଦ ପ୍ରେମେ ନାହିଁ ବାଧା ବିବାଦ,
ପ୍ରେମ ଭୂଇଁର ଖଜଣାନାହିଁ, ଦଖଲ କରେ ନିସ୍ତର ମିଛା ।୨।

ଗଣ୍ଡି ଗଣ୍ଡି ଆ ପ୍ରେମ ସ୍ୱଭାବ, ପ୍ରେମେ ନାହିଁ ଲାଭ ଅଲାଭ,
ଆଖି ଆଖି କଥା ବାରତା, ପ୍ରାଣେ ପ୍ରାଣେ ହୁଅଇ ଚିହ୍ନା ।୩।

ଯେ କରଇ ପ୍ରେମ ସାଧନା ନାହିଁ ତାର କିଛି ଭାବନା,
ପ୍ରେମେ ଗାଏ ପ୍ରେମେ ନାଚେ ତାକ୍ ଧିନା ଧିନ୍ ଧିନକ୍ ଧିନା ॥

## ତୃତୀୟ ଦୃଶ୍ୟ

[ ମାଷ୍ଟର ପାଠ ପଢ଼ାଇବା ପରେ ଏକାକୀ ]

ମାଷ୍ଟର—ହିଃ, ଦିନକାଳ ଆସି ହେଲା କ'ଣ ! ଜୀବନଟା ଯାକ ଚୋଷ୍ଟା ପାଠ ଘୋଷି ଘୋଷି ହାଡ଼ ମାଉଁସ ରହିଲା ପାଶ୍ 'ହେବା ଚିନ୍ତାରେ ବେଳ ପଳାଏ ଲେଖାଏଁ ଲହୁ ଶୁଖିଲା । ଶେଷରେ ତାର ପୁରସ୍କାର—ଏହି ଖଣ୍ଡିକ ମାଷ୍ଟରି ଗୁଳିର ! ସେ ପୁଣି କେତେଦିନ ! ଏହିପରି ସ୍ତ୍ରୀ ଦୁଆର ତା ଦୁଆର ନୋଚ ହୋଇ ବାକି କେତେଟା ଦିନ କଟିଯିବ । କପାଳରେ ଯାହା ଅଛି ତାହା ଭୋଗିବାକୁ ହେବ । ବୃକଶର ବଜାର ପୁଣି ଏତେ ମହଙ୍ଗା । ସେଥିରେ ପୁଣି ଦୃଷ୍ଟ ଦେଇ ଜମେଦଓ୍ୟାନ କରିବାକୁ ବା ସଙ୍ଗତି କାହିଁ ? ହାକମ ପାଦରେ ତେଲ ମର୍ଦ୍ଦନ କରିବା ନିମନ୍ତେ ଯେତିକ ତେଲ ପ୍ରୟୋଜନ ସେତିକ କିଣିବାକୁ ତ ଅଣ୍ଟାରେ କଉଡ଼ି ନାହିଁ; କରିବା କ'ଣ । ସ୍ୱାଧୀନ ବ୍ୟବସାୟ ? ରାମ, ରାମ, ସେତ ବହୁତ ପଇସାର କାମ । ଯାଃ—କିଛି କୁଆଡ଼େ ହେବ ନାହିଁ । ପେଟ ବିକଳ ହୋଇ ଏହିଠି ପଡ଼ିଥାଏଁ, ଯାହା ବରାଦରେ ଥିବ ।

( ମାଧବୀ ଓ ମଦନ କଳି ଲାଗୁ ଲାଗୁ ଖଣ୍ଡିଏ କାଗଜ ଛଡ଼ାଛଡ଼ି ହେଉ ହେଉ ଆସି ପହଞ୍ଚିଲେ । )

ମାଷ୍ଟର—ଏଇଯେ୍ୟା, ଏଇଯେ୍ୟା ଚୁପ୍‌କର ।
ଏ—ମାଧବି, ଏ—ମଦନ ! ଆଁ—କଥା ମାନୁ ନାହିଁ ?
ମୋ ସାମନାରେ ବଦମାସି ! ଷ୍ଟପ୍ ଷ୍ଟପ୍—
Disobedient rascals !
( ଉଭୟଙ୍କୁ ଧରି ଛଡ଼ାଇଦେଇ ).

କଣ, କଣ, ମାଷ୍ଟର, ମଦନ କାହିଁକି କାନ୍ଦୁଥିଲା ? ଆଜି ଦୁହିଁଙ୍କୁ କୋଡ଼ିଏ କୋଡ଼ିଏ ବେତ ମାରିବ । ଖାତିରିବ ନଦାରଦ । ଆରେ !

ମଦନ—ମାଷ୍ଟରେ, ସେ କାଗଜ ମୁଁ ନେବ, କି ସୁନ୍ଦର ଛବି ଅଛି ।

ମାଧବୀ—(କାନ୍ଦ କାନ୍ଦ) କାହିଁକି ମାଷ୍ଟ୍ରେ, ସେ କାହିଁକି ମୋ ଛବି ନେବ ? ସିଏତ ମୋର । ମୋତେ ମାଧଭାଇ ଦେଇଛି ।

ମାଷ୍ଟର—କିଏ ଦେଇଛି; ମାଧ ? ଆମ ଏଇ ମାଧ ? ଦେଖେଁ ଦେଖେଁ କିମିତିକା ଛବି । କାହାକୁ ଦେଇଛି ?

ମାଧବୀ—ମୋତେ ଦେଇଛି ମାଷ୍ଟ୍ରେ । ( ଚିଠି ପ୍ରଦାନ )

ମାଷ୍ଟର—(କିଛିକ୍ଷଣ ମାରବରେ ପଢ଼ିବା, ମୁଖ ଗମ୍ଭୀର କରି ଓ ମୁଣ୍ଡରେ ହାତଦେଇ ବସି ପଡ଼ିବା) ଓଃ, କି ଭୟାନକ ଯୁଗ ! କଣ ହେଲ ଆସି ! (କିଛିକ୍ଷଣ ରହି ଉଠିବା) ନା, ଏ ସାମାନ୍ୟ କଥା ନୁହେଁ । ଏକଥା ବାବୁଙ୍କ ପାଖରେ ପକେଇବାକୁ ହେବ । Not a trifling thing. Not at all ! Not at all ! Very serious ! ଏ— ମଦନ, ତୁ ଯା ବାପାଙ୍କୁ କହିବୁ ମାଷ୍ଟ୍ରେରେ ଡାକୁଛନ୍ତି । ଏହିକ୍ଷଣି ଏଠିକି ଟିକିଏ ଆସିବେ । ବୁଝିଲୁ, ଯା, ଜଲ୍‌ଦି ଯା । ( ମଦନର ପ୍ରସ୍ଥାନ )

ମାଧବୀ—କି, ମୋତେ ମାଧଭାଇ ଦେଇଛି । ସିନ୍ଦୁକଟାରେ ମଦନ କଳି କରୁଛି । ମାଧଭାଇକୁ ପଚାର—

ମାଷ୍ଟର—Innocent girl ! ଆହା, ସରଳା ବାଳିକା । ବୁଝିଲି, ଏଥିପାଇଁ ସେ ମାଧବୀ ସାଙ୍ଗରେ—

( ବାବୁଙ୍କର ପ୍ରବେଶ )

ସୁଧାନାଥବାବୁ—କି ମାଷ୍ଟର ବାବୁ; କଥା କଣ ? ଡାକୁଥିଲ କାହିଁକି ?

What is the matter with you ? You look much agitated !

ମାଧବୀ ପୁଣି କିଛି ଦୁଷ୍ଟାମି କରିଛି କି ? ଆଁ, ଆଁ ?

ମାଷ୍ଟର—କହିବି କଣ ? ଦେଖନ୍ତୁ, ଏ ଚିଠି ଖଣ୍ଡ ଦେଖନ୍ତୁ । ସବୁ ବୁଝିପାରିବେ ।

ବାବୁ—ଚିଠି ? କି ଚିଠି ? କାହାର ?

ମାଷ୍ଟର—ଦେଖନ୍ତୁ । ( ଚିଠି ପ୍ରଦାନ )

ବାବୁ—( କିଛିକ୍ଷଣ ମାରବରେ ପଢ଼ି ) ମୁଁ ଆଜି ପଢ଼ିପାରୁ ନାହିଁ । ତମେ ପଢ଼ ମାଷ୍ଟର, ମୁଁ ଶୁଣେ । (ଚିଠି ଦେବା)

ମାଷ୍ଟର—( ଚିଠି ଖଣ୍ଡ ପାଟିକରି ପଢ଼ିଲେ । )

ମାଧବୀ ମାଧବୀ ମାଧବୀ ଫୁଲ,
ମଞ୍ଜୁଲ ମଞ୍ଜୁଲ ମଞ୍ଜୁଲ କୂଳ ।
ଦେଖିଲି ଦିନରୁ ତୋତେ ଲୋ ସଖି,
ମୋ ମନ ତୋ'ଠାରେ ରହିଛି ଲାଗି ।
ଦିବସ ରଜନୀ ତୋ' କଥା ଭାଳି,
ଫାଟିଯାଏ ହୃଦ ନୁହେଁ ସମ୍ଭାଳି ।
ପରାଣ ମୋହର ହେଉଛି ଦହି,
କୃପାକର ବାରେ କରୁଣା ବହି ।
ତୋତେ ନ ପାଇଲେ ସଂସାର ଛାର,
ତୋହ ବିନୁ ମୋର ସବୁ ଅନ୍ଧାର ।
ତୋହ ନାମ ଜପି ତୋ ଗୁଣ ଗାଇ,
ନିଶ୍ଚୟ ମରିବ ଗରଳ ଖାଇ ।
ଏ ଦାସକୁ ସହି ଦୟା ନ କଲେ,
ପଡ଼ିବଟି ଯାଇ ମୁହିଁ ଅନଳେ ।
ଅଥବା ଗୋ ପ୍ରିୟେ ତୋହର ପାଇଁ,
ଶରୀର ଝାସିବ ସଲିଳେ ଯାଇ ।
ଅଧିକ ଦେବ ବା କି ପରିଚୟ,
ତୋ ଦୟା ନୋହିଲେ ମୃତ୍ୟୁ ନିଶ୍ଚୟ ।
ତୋ ନାମ ମାଧବୀ ମୁହିଁ ମାଧବ,
ବିଧି କରିଛନ୍ତି ଜାୟା ଓ ଧବ ।
ଏହି ପତ୍ର ପାଠେ ନ କରି ରୋଷ,
ଉତ୍ତର ପ୍ରଦାନେ କରିବେ ତୋଷ ।

ପ୍ରେମାକାଂକ୍ଷୀ
ମାଧବ

[ ଚିଠି ପଢ଼ିବା ସମୟରେ ମଧ୍ୟେ ମଧ୍ୟେ ବାବୁ ଗୋଟିଏ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହନ୍ତି 'କି ବଦମାସ୍ ! କି ପାଜି' ଇତ୍ୟାଦି ]

ବାବୁ—ଆଗୋ ମାଧବୀ, ଏଚିଠି ତୋତେ କେତେବେଳେ ମାଧ ଦେଲା ?

ମାଧବୀ—ସକାଳୁ ଦେଇଗଲା । ମୁଁ ଧରିଥିଲି, ମଦନ ଦେଖି ଛଡ଼ାଛଡ଼ି କରୁଛି । ଏ ମୋର, ବାପା ।

ବାବୁ—ଆଉ କେବେ ତତେ କିଛି ଦେଇଥିଲା ?

ମାଧବୀ—ନା ବାପା ।

ବାବୁ—କିଛି କହେ ?

ମାଧବୀ - ନାହିଁ ।

ମଦନ—ହଁ ବାପା, ମୁଁ ଦେଖିଛି ସେ ଅପା ଆଡ଼କୁ ଗୁହିଁ ଆଖି ଠାରେ ।

ବାବୁ—ଚୁପ୍ ରହ ପାଜି; ମାଷ୍ଟରବାବୁ, ମୁଁ ଦେଖୁଛି ଏ ସବୁ ତମର ଦୋଷ । your negligence.

ମାଷ୍ଟର – କାହିଁକି, ମାଧ କଣ ମୋ ହୁକୁମରେ ଆସିଛି ?

ବାବୁ—କିନ୍ତୁ ତୁମେତ ତା Character ବିଷୟରେ certify କରୁଥିଲ । ମୁଁ ମୂଳରୁ ସନ୍ଦେହ କରୁଛି । ବୟସ ଆସି ଏତେ ହେଲା, ଆମେ କଣ ମଣିଷ ଚହ୍ନି ଜାଣି ନାହୁଁ ?

ମାଷ୍ଟର—[ ସ୍ୱଗତଃ ] ବଡ଼ଲୋକଙ୍କର ତ କିଛି ଦୋଷ ନାହିଁ । ସବୁ ଗଡ଼ିଆସେ ନୂଆଁ ଣିଆକୁ ।

ବାବୁ—ଦେଖ ମାଷ୍ଟ୍ରେ; ମୁଁ ଏଥିର କିଛି ବଡ଼ step ନେବା ଉଚିତ ମନେ କରୁନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ କଥାଟା ତେତେ serious ହୋଇନାହିଁ । ତେବେ ଆମର careful ହେବା ଆବଶ୍ୟକ । ସେ ଟୋକାକୁ କହିଦିଅ ସେ ଆଉ ଏଠାକୁ ଆସିବ ନାହିଁ । ତା ବାପ ପଚାରିଲେ କହିଦେବ କି ତମର ଅସୁବିଧା ହେଲା । ବାସ୍ ଏତିକି । Let the matter go.

[ ପ୍ରସ୍ଥାନ ]

ମାଷ୍ଟର—(ସ୍ୱଗତଃ) ତମ ବନ୍ଧୁପୁତ୍ର ବୋଲି ତୁମେ ଆଣି ପୂରେଇଲ ଘରେ – ଶେଷରେ ଦୋଷ ହେଲା ମାଷ୍ଟରର ! କି ନ୍ୟାୟ ! ଦୋଷ ଦେବ କାହାର; ମୋହର କର୍ମ ଦୋଷ ।

[ ମାଧର ପ୍ରବେଶ ]

ମାଷ୍ଟର—ମାଧ, ତମେ ଏଠିକି ବର୍ତ୍ତମାନ ଆସୁଛ କି ଆଗରୁ ଆସିଥିଲ ?

ମାଧ – କେବେ Sir ?

ମାଷ୍ଟର—ଆଜି ।

ମାଧ—[ ମୁଣ୍ଡ କୁଣ୍ଡାଇ ] ମନେ ହେଉ ନାହିଁ ।

ମାଷ୍ଟର – କ'ଣ ମନେ ହେଉନାହିଁ । ଏହି ଘଡ଼ିକର କଥା । ମିଥ୍ୟା-ବାଦି, Rascal !

ମାଧ—( ସ୍ୱଗତଃ ) ପ୍ରେମିକର ମିଥ୍ୟା କହିବା ତ chivalrous ନୁହେ ! coward ହେବା ପ୍ରେମଧର୍ମର କଳଙ୍କ—moral courage ଦେଖାଇବା ଦରକାର । (ପ୍ରକାଶ୍ୟେ) ହଁ Sir, ମୁଁ ଆସିଥିଲି ।

ମାଷ୍ଟର—ଏ ଚିଠି ତୁମେ ଲେଖିଛ ?

ମାଧ – ଆଜ୍ଞା ହଁ ।

ମାଷ୍ଟର—କାହାଠାକୁ ?

ମାଧ—ଚିଠିରୁ ତ ଜାଣି ପାରୁଥିବେ ବୋଧହୁଏ ।

ମାଷ୍ଟର – ଜଣେ ଭଦ୍ରଲୋକର ଏପରି ଭାବରେ ମର୍ଯ୍ୟାଦା ନଷ୍ଟ କରିବା ଉଚିତ କି ?

ମାଧ—ମୋ ମତରେ ଉଚିତ । Love ପଦାର୍ଥଟା ତ ଖରାପ ନୁହେ; ବରଂ ସେଉଟା ଖୁବ୍ Noble, honourable !

ମାଷ୍ଟର—ତମ ସାଙ୍ଗରେ ମୁଁ ଆଉ ଯୁକ୍ତି କରିବ ନାହିଁ । ଦେଖ ମାଧ, ଏଥର ତମକୁ excuse କଲି । କିନ୍ତୁ advise ଦଉଛି, ଏପରି କାର୍ଯ୍ୟ ଆଉ କେବେ କରିବ ନାହିଁ । ଏହି ବୟସରେ ଯଦି ଏପରି ହେବ ତ ବଡ଼ିଲେ କଣ କରିବ ? ତୁମେ ଯାଅ, ମୁଁ ତୁମକୁ ଆଉ ପଢ଼ାଇ ପାରିବ ନାହିଁ । ଆଜିଠାରୁ ତୁମର ଏଠାକୁ ଆସିବା ବନ୍ଦ ।

ମାଧ—ପବିତ୍ର ପ୍ରେମପାଇଁ ଅନେକ କଠୋର ନିର୍ଯ୍ୟାତନା ସହ୍ୟ କରିବାକୁ ହୁଏ । ମୁଁ ମଧ ସେଥିପାଇଁ ପ୍ରସ୍ତୁତ ଅଛି । ବିଦାୟ ତେବେ Sir—( ପ୍ରସ୍ଥାନ )

ମାଷ୍ଟର—ମୋର ଦେହ ଆଜି ଭଲ ନାହିଁ । ଆଜି ଛୁଟି, ତମେ ଯାଅ । ଆଉ ମାଧର୍କା, ଖବରଦାର, ମାଧ ସାଙ୍ଗରେ ଯେପରି କେବେ କଥା କହିବୁ ନାହିଁ, ବୁଝିଲୁ ।

ମଦନ – ମାଷ୍ଟରେ ମୁଁ ଦେଖିଲେ ଆପଣଙ୍କ ପାଖରେ କହିଦେବ । (ମାଷ୍ଟର ନିର୍ଗତ ହେଲେ) ଅହା, ଆଜି ଛୁଟି, ଗୁଲ୍ଲି ଖେଳିବା । ମତେ ଯଦି ଛବି ଦଉଚ ମୁଁ ମାଷ୍ଟରଙ୍କ ଠେଇଁ ମାଧ କଥା ଆଉ କହିବ ନାହିଁ ।

(ମାଧଙ୍କ ଖଡ଼ାଏ ମାରି ପଳାଇଲା ଓ ମଦନ କାନ୍ଦି କାନ୍ଦି ପଛେ ପଛେ ଗଲା)

ମଦନ— ଅହା ମତେ ମାଇଲା—ଏଁ, ଏଁ—ମାଷ୍ଟରେ—ଏଁ, ଏଁ—

## ୪ର୍ଥ ଦୃଶ୍ୟ

[ ମାଧ ଏକାକୀ ]

ମାଧ—ମହତ କାର୍ଯ୍ୟ କରିବାକୁ ଗଲେ, ପଦେ ପଦେ ବାଧା ବିଘ୍ନ । କିନ୍ତୁ ବୀରର ହୃଦୟ ତ ସେଥିରେ ଦମିଯାଏ ନାହିଁ, ବରଂ ବାଧା ପାଇଲେ ସ୍ରୋତସ୍ୱିନୀ ପରି ଦ୍ୱିଗୁଣ ତେଜରେ ଦ୍ୱିଗୁଣ ଉତ୍ସାହରେ ଅଗ୍ରସର ହୁଏ । ଆଜି ମାଷ୍ଟରଟା ମୋର ପ୍ରେମ-ପଥର ଏକମାତ୍ର କଣ୍ଟକ । ଏ କଣ୍ଟକ ଉତ୍ପାଟନ କରିବାକୁ ହେବ କିମ୍ବା dam care କରି ନିଜକାର୍ଯ୍ୟ ସାଧନ କରିବାକୁ ହେବ । କଥାରେ ଅଛି "ଇକ୍ଷ୍ୱାତ ବରଂ ଭାଙ୍ଗିଯାଏ ତଥାପି ନଇଁଯାଏ ନାହିଁ । ବୀର ବରଂ ସମ୍ମୁଖ ସମରରେ ମରଣକୁ ବରଣ କରେ, ତଥାପି ପୃଷ୍ଠପ୍ରଦର୍ଶନ କରେ ନାହିଁ । ବର୍ତ୍ତମାନ ସେହି ସମୟ ଉପସ୍ଥିତ । ଆଉ ଏକ ଗୁଲ୍ – ବଡ଼ ବିଷମ ଗୁଲ୍ ! ଏହି ଗୁଲ୍‌ରେ କିସ୍ତି ମାତ୍ ! ଯେ କୌଣସି ଉପାୟରେ ମାଧଙ୍କ ଠାକୁ ଆଉ ଖଣ୍ଡିଏ ମନ୍ତ୍ର ଦେବାକୁ ହେବ । ସେଥିରେ ବ୍ରହ୍ମାସ୍ତ୍ରର ଅମୋଘ ମନ୍ତ୍ର ପ୍ରୟୋଗ ହେବ । ଏହି ସେହି ପତ୍ର । [ପତ୍ର ଦେଖାଇବା]

ଏ ପତ୍ର ପଢ଼ିଲେ ସମାନ୍ୟ ବାଳକାଟାଏ କପଟ୍ ନ ଭୁଲି ରହିବ ! ତାର ବାବା ବ ଭୁଲ୍ବା ଭୁଲିପିବ ! ଯାଏଁ—

( ଗୀତ )

ଫଳୁଛି ମୋତେ ପୀରତ ବାଇ ।
ହାଲୁ ହାଲୁ ହେଉଛି ପେଟ, ଦେହକ ଘନ୍ତ ଉଠୁଛି ହାଇ । ଘୋ ।
ପ୍ରୀତି ଲାଗି ଜଳେ ପଶିବ ପ୍ରୀତି ଲାଗି ନିଆଁ ଗ୍ରାସିବ,
ପ୍ରୀତି ଲାଗି ଜାତି ନାଶିବ, Grand Hotelରେ ଖାନା ଖାଇ ।୧।
ପ୍ରୀତି ପାଇଁ ଛାଡ଼ିବ ଘର ଆପଣାକୁ କରିବ ପର,
ଟଙ୍କା କାଢ଼ି ଟଙ୍କଣି ଧର, ପୀରତ ନାମ ବୁଲିବ ଗାଇ । ୨ ।
ପ୍ରୀତି ଧର୍ମ, ପ୍ରୀତିହିଁ ସ୍ୱର୍ଗ, ପୀରତିରେ ଚତୁର୍ବର୍ଗ,
ଯେ ନ କରେ ପୀରତି ସେବା, ତା life ରେ କିଛି value ନାହିଁ ।୩।
ଯେ କରିବ ପୀରତି ନିନ୍ଦା, କରିଦେବ ସଙ୍ଗେ ଥଣ୍ଡା,
Newspaper Editor ହୋଇ ସିଧା ସିଧା ତାକୁ ଦେବି ମୁଁ ବାନ୍ଧି ॥
ଶେଷକୁ ମୁଁ ପାଉଛି ଫନ୍ଦା, ପ୍ରୀତିନାମେ ଉଠାଇ ଚାନ୍ଦା,
ପେଟେ ଲେଖାଏଁ ଦେଇଖାଇ ଲମ୍ବଖମ୍ବ ହୋଇ ପଡ଼ିବ ଶୋଇ ।୪।

[ପ୍ରସ୍ଥାନ]

## ପଞ୍ଚମ ଦୃଶ୍ୟ

( ସୁଧାନନ୍ଦ ବାବୁଙ୍କ ଘରେ )

ମାଷ୍ଟର—ଦେଖ ତ ଭଲ ! ଏତେ ଛୋଟ ପିଲ, ଏତେ ସାହସ ! ଓଃ ! କାଳ କେମିତି ହେଲା ! ଆଜି କାଲିକା ଶିକ୍ଷାର ଫଳ ! ପୂରର ତତୁର । କେତେ ଠିକଏ ମୁହଁରେ କଥା କହୁଛି କେତେ କେତେ ! ଏଇଟା ଧରା ପଡ଼ି ନ ଥିଲେ ଶେଷରେ ମୋହର ବଦନାମ ହୋଇଥାନ୍ତା ! ନ ହୋଇଛି ବା କଣ ! ଯାହାହେଉ, ଆଜି ତାକୁ ଏଠି ପାଦ ପକାଇବାକୁ ଦେବ ନାହିଁ । ଖୁବ୍ ଜବତ ହୋଇଛି ।

[ ମଦନ ଧାଇଁ ଧାଇଁ ଆସିଲା ]

ମଦନ—ମାଷ୍ଟ୍ରେ, ମାଷ୍ଟ୍ରେ, ମାଷ୍ଟ୍ରେଇ ପୁଣି ଏହିମାନ୍ଧ ଏହି ଚିଠି ଦେଇ ଗଲେ । କହିଲେ ଅପାକୁ ଦବା ଲାଗି । ମୋତେ କହିଛି ଭଲ ପାଇଛପା ଅନି ଦେ ।

ମାଷ୍ଟର—ଅଁ,-ଅଁ ! ମଦନ ! ପୁଣି ଚିଠି ? ଦେଖେଁ ଦେଖେଁ ?

( ଚିଠି ନେଇ ମନେ ମନେ ପଢ଼ିବାକୁ ଲାଗିଲେ )

ମଦନ—ମାଷ୍ଟ୍ରେ, କହିଥିଲ କ ଆଉ କାହାରିକୁ ପଢ଼ିବାକୁ ଦବୁ ନାହିଁ । ଲୁଚେଇ କରି ସାନ ଅପାକୁ—

ମାଷ୍ଟର—ମଦନ, ଯା ତୋ ବାପାକୁ କହିବୁ, ମାଷ୍ଟର ଡାକୁଛନ୍ତି ।

[ ମଦନ ପ୍ରସ୍ଥାନ ]

ଓଃ, କି ଭୟାନକ ଜାନୁଆର୍ ! କି ମାରାତ୍ମକ ମତଲବ୍ ! ଏ ଭଳିଆ ସଇତାନ କଣ ଦୁନିଆରେ ଅଛନ୍ତି ! ମୋର ତ ଅକ୍କଲ ଗୁଡ଼ୁମ୍ ! ଆସନ୍ତୁ ବାବୁ, ଶୁଣନ୍ତୁ ତାଙ୍କ ବନ୍ଧୁପୁତ୍ରଙ୍କ ଗୁଣ !

[ ସୁଧାନନ୍ଦ ବାବୁ ପ୍ରବେଶ୍ଣ ହେଲେ ]

ସୁଧା—କି ହେ ମାଷ୍ଟର ବାବୁ, କାହିଁକି ଡାକିଲ କି ?

ମାଷ୍ଟର—କହିବ କ'ଣ, କହିବାର କଥା ନୁହେ ।

ସୁଧା—(ହସି) କହିବାର କଥା ନୁହେ ତ ଡକାଇବାର ପ୍ରୟୋଜନ କ'ଣ, ନ କହିଲେ ବା ଜାଣିବ କପରି ! ଏମିତି mysterious କଥା କଣ କି .

ମାଷ୍ଟର—ଆଜ୍ଞା, ଦେଖନ୍ତୁ—ଏହି ଚିଠିରୁ ସବୁ ଜାଣି ପାରିବେ ।

[ ଚିଠି ଦେଲେ ]

ସୁଧା—ପୁଣି କି ଚିଠି ହେ ? (ପଢ଼ିଲେ) [ ରାଗାନ୍ୱିତ ହୋଇ ] Scoundrel, scoundrel ! କପରି ଏ ଚିଠି ଦେଲ ହେ ?

ମାଷ୍ଟର—ମଦନ ହାତରେ ଦେଇ ପଠାଇଛି ।

ସୁଧା—ସଇତାନ, Venomous serpant ! ଦେଖିଲ ତୁମର negligence ସବୁ । Discipline ଜ୍ଞାନ ତମର ଆଦୌ ନାହିଁ । ପିଲାକୁ କପରି ଶାସନ କରିବାକୁ ହୁଏ, କପରି ତାଙ୍କର Character mould କରିବାକୁ ହୁଏ ସେ ସବୁ କିଛି ତୁମକୁ ମାଲୁମ ନାହିଁ । Inexperienced young man.

ମାଷ୍ଟର—ଆଜ୍ଞା, ମୋର ସବୁ ଦୋଷ, ମୁଁ ସ୍ୱୀକାର କରୁଛି । କିନ୍ତୁ କେବଳ ମୋ ଉପରେ ରାଗ ଝାଡ଼ିଦେଲେ ତ ହେବ ନାହିଁ—ଏଥିର ପ୍ରତୀକାର କ'ଣ ?

ସୁଧା—ମୁଁ ଇଚ୍ଛା କଲେ ତାକୁ ବର୍ତ୍ତମାନ ଜେଲ ଦିଅନ୍ତି କିମ୍ବା ୫୦ ବେତ Whipping ସଜା କରିଦିଅନ୍ତି । ଆଉ—ସାବଧାନ, ସେ ଟୋକା ମୋ ହତା ଭିତରେ ପୁଣି ଗୋଡ଼-ଦେଲେ ମେହେନ୍ତରର ହାତରେ ଧକ୍କା ମାରି ବାହାର କରିଦେବ ।

ମାଷ୍ଟର—ପୁଣି ଆସିଲେ ତ ତାହା କରିବି—ବର୍ତ୍ତମାନ ?

ସୁଧା—ବର୍ତ୍ତମାନ୍—ଜୋତା ! ଏ ଚିଠି ନେଇ ତମେ ଯାଅ ତା ବାପକୁ ଦେଖାଇବ । ସେ କଣ କହୁଛନ୍ତି ଦେଖେଁ—ତା ପରେ—ଯାଅ, ତମେ ଏହିକ୍ଷଣି ଯାଅ । Be quick—Immediately. [ ପ୍ରସ୍ଥାନ ]

ମାଷ୍ଟର—ମୋର ଏଥିରେ ଯେ କେଉଁ ସ୍ଥାନରେ ଦୋଷଟା ରହିଲା ମୁଁ ତ ତାହା ବୁଝି ପାରିଲିନାହିଁ । ଯାହାହେଉ, ଭଲ Certificate ଟା ଆଜ ମିଳିଲା ଏକା । ପରଘରେ ମୁଣ୍ଡ ଗଳେଇଲେ ଏହିପରି କେତେ କଣ ସହିବାକୁ ହୁଏ । ଆହା, କେତେ ଖୋସ୍ ଖବରଟାଏ ନେଇଯିବ ଜଣେ ଭଦ୍ରଲୋକ ଘରକୁ ! ଲାଜ ସରମ ବି ପୋଡ଼ ଖାଇଲି । କି unpleasant, ଛି, ଛି,—ଆଜିଠାରୁ ମୋର ଏତିକି ବାବା— [ ପ୍ରସ୍ଥାନ ]

## ଷଷ୍ଠ ଦୃଶ୍ୟ

[ ମାଧ ଏକାକୀ ]

ମାଧ—ଆଜି ଯାହା ହେବାର ଶେଷ । ସେହି Old fool ମାଷ୍ଟର ଆଜି ଦେଖିବ କାହାର ବୁଦ୍ଧିର ଜୋର୍ ବେଶୀ । ଚୁମ୍ବକ ଚିରକାଳ ଲୁହାକୁ ଆକର୍ଷଣ କରେ । ମାଷ୍ଟରଟାର କି ସାଧ ଏହି Natural Law ର ବ୍ୟତିକ୍ରମ କରିବ ! ସମାଜ-ଶାସନ କଣ ନୈସର୍ଗିକ freelove ର ଅପ୍ରତିହତ ଗତି-ରୋଧକରି ପାରିବ ? କଦାପି ନୁହେ । ମଦନ ହାତରେ ମୋର ଶେଷପତ୍ର ମାଧବୀଠାକୁ ପ୍ରେରଣ କରିଛି । ସେଥିରେ ଲେଖିଛି ସେ ତାଙ୍କ ବାରି ପଛ ପୋଖରୀ କୂଳରେ ମୋ ସଙ୍ଗରେ meet କରିବା ପାଇଁ ଅପେକ୍ଷା କରିବ । ଆହା, ପ୍ରେମମୟୀ ମୋର କି ବ୍ୟାକୁଳ ପ୍ରତୀକ୍ଷାରେ ଏକାକିନୀ କାଳ କଟାଉଥିବ । ସମୟ ଆଗତ ପ୍ରାୟ । ଯାଏ ଭଲ style ରେ dress ଟା ହେଇ ଆସେ । ଆଜି ଜଗତରେ ମୁକ୍ତ ପ୍ରଣୟର ବିଜୟ ପତାକା ଉଡ଼ିବ—ଅଥବା ଗୋଟିକୁ ନିର୍ମଳ ପ୍ରେମ ସାଧକର ଅନନ୍ତ ସମାଧି ବକ୍ଷରେ ଧାରଣ କରି ଧରଣୀ ଧନ୍ୟା ହେବ । ଏ ହୃଦୟ ସିଂହାସନରେ ତାକୁ ରାଣୀ କରି ବସାଇବି କିମ୍ବା ସେହି ଅସାଧୁ ଦେବତାର ଚରଣ ତଳରେ ହୃଦୟର ସମସ୍ତ ଆଶା ଆକାଂକ୍ଷାର ଚିତା-ଭସ୍ମ ଅର୍ଘ୍ୟ ଦାନକରି ମାନବ ଜୀବନ ସାର୍ଥକ କରିବ । ଜୟ ପ୍ରେମର ଜୟ, ଜୟ ପ୍ରେମର ଜୟ !

## ୭ମ ଦୃଶ୍ୟ

( କରୁଣି ବାବୁଙ୍କ ବୈଠକଖାନା )

( କରୁଣି ବାବୁ ଓ ମାଷ୍ଟର )

କରୁଣି—ମାଷ୍ଟର ବାବୁ, ସୁଧାନିଧି ବାବୁ ମୋର ଜଣେ ଘନିଷ୍ଠ ବନ୍ଧୁ । ପିଲାବେଳର Class mate, ଆଉ ସ୍ୱଜାତି । ଶୁଣିଲି, ଆପଣ ମାଧକୁ ବାରଣ କରିଛନ୍ତି ସେଠାକୁ ଯିବାପାଇଁ । ଏହାର କାରଣ କଣ ?

ମାଷ୍ଟର—ଯେ କୌଣସି ଭଦ୍ରଲୋକର ଘରକୁ ଯିବାପାଇଁ ସେପରି ପିଲାକୁ ବାରଣ କରିବା ଉଚିତ ।

କରୁଣି—ଆପଣଙ୍କର ଉଦ୍ଦେଶ୍ୟ କଣ ମୁଁ ବୁଝି ପାରୁନାହିଁ । ଆପଣ କଣ ମୋତେ Insult କରିବାକୁ ଆସିଛନ୍ତି ?

ମାଷ୍ଟର—ଆଜ୍ଞା ନାହିଁ; ମାଧର କୀର୍ତ୍ତି କାହାଣୀ ସମସ୍ତ ଯଦି ଶୁଣିବେ ତେବେ ଆପଣ ନିଜେ ବୋଧହୁଏ ଆପଣଙ୍କ ଘରୁ ବାହାର କରି ଦେବେ ।

କରୁଣି—କ'ଣ, କ'ଣ, ସେପରି କାରଣ କଣ ?

ମାଷ୍ଟର—ଏହି ଦେଖନ୍ତୁ— ଏଥିରୁ ସବୁ ବୁଝି ପାରିବେ ।

( ପତ୍ର ପ୍ରଦାନ କଲେ )

କରୁଣି—( କିଛିକ୍ଷଣ ପଢ଼ି ) ଆଁ, କୁଳଚନ୍ଦ୍ରମା ଗଲେ କୁଆଡ଼େ ? ମାଧ, ମାଧ !

ମାଷ୍ଟର—ରହନ୍ତୁ । ଆହୁରି ଅଛି । ଏ ପତ୍ର ଖଣ୍ଡିକ ମୁଁ ଦେଖି ମାଧକୁ Warn କରି ଦେଲି ଆଉ କହିଦେଲି କି ସୁଧାନିଧି ବାବୁଙ୍କ ଘରକୁ ଆଉ ଆସିବ ନାହିଁ । ତାହାପରେ ପୁଣି ସେ କି ଚିଠି ଲେଖିଛି ଦେଖନ୍ତୁ ।

କରୁଣି—ଏହା ପରେ ପୁଣି ଚିଠି !

ମାଷ୍ଟର—ଆଜ୍ଞା; ଭଲକରି ଦେଖନ୍ତୁ ଆପଣଙ୍କ ଗୁଣଧରଙ୍କ ଗୁଣ ।

( ପତ୍ର ପ୍ରଦାନ )

କରୁଣି—ମାଷ୍ଟରବାବୁ, ଅନୁଗ୍ରହ କରି ଆପଣ ପଢି ଯାଆନ୍ତୁ; ମୁଁ ଶୁଣୁଛି । ମୋ ମୁଣ୍ଡ ବୁଲଉଛି—

ମାଷ୍ଟର—ଶୁଣନ୍ତୁ ତେବେ—( ପତ୍ର ପାଠକଲେ )

କେତେ ଯତନରେ ହୃଦୟ ମରୁରେ ବଢ଼ାଇଲି ଆଶାଲତା,
ଫୁଲ ନ ଫୁଟୁଣୁ, କଢ଼ ନ ଧରୁଣୁ କାଟିଲା ତାହା ବିଧାତା ।
କେ କସ କରିବ ନିଷ୍ଠୁର ମାଷ୍ଟର ହୋଇଲା ଆସି ଭଗାରି,
ମୋର ପିତା ପୁଣି କିଛି ନ ବୁଝିଣ ଶୁଣିଲେ କଥା ତାହାରି ।
ଅପ୍ରେମିକ ବୁଢ଼ା ପ୍ରେମର ମାହାତ୍ମ୍ୟ ବୁଝିବେ କେଉଁରି ସନ୍ଧି,
ଆନ କି ଜାଣନ୍ତି ପ୍ରେମିକର ପ୍ରାଣ କିପରି ହୁଅଇ ଅନ୍ଧ ?
କେଦାରଗଉରୀ କଥାଭଙ୍ଗା ହେଲେ କାନ୍ଦୁକଣା କରି ଯିନା,
ଆମେ ଦୁଇଜଣ କରନ୍ତେ ବା ତାହା, କି କରିବା କାନ୍ଦୁ ବିନା ?
ତୁହି ଅବା ସଖି ସାରି ପାଳନ୍ତୁ କି ଶୁଆଟି ପାଳନ୍ତ ମୁହିଁ,
ହୋଇ ପାରନ୍ତେ ବା ତାଙ୍କର ଦ୍ୱାରରେ କଥାବାର୍ତ୍ତା କୁହାକୁହି ।
ଆମରି ଗ୍ରାମରେ ରାଜହଂସ ବେନି କାହାରି ଅବା ଥାଆନ୍ତେ,
ଯେ ଯାହା ପାଖକୁ ଚିଠିପତ୍ର ଦେଇ ଉଡ଼ଣ ଅବା ଯାଆନ୍ତେ ।

କୋକିଳଙ୍କୁ ଭଲ କରୁ ଆଶା ଥିଲା ସେ ବଡ଼ ନିଷ୍ଠୁର ପକ୍ଷୀ,
ପ୍ରିୟପ୍ରିୟାଙ୍କର ମିଳନରୁ ସିଏ ବିରହରେ ହୋନ୍ତି ସୁଖୀ ।
ମେଘଗୁଡ଼ା ଯଦି ବୋଲ ମାନୁଥାନ୍ତେ ସେ ଅବା କରନ୍ତେ କାମ,
କଳିକାଳେ ସବୁ ଓଲଟା ହେଲାଣି ବିଧି ଆମ ପ୍ରତି ବାମ ।
ପବନର ଯଦି ଜୀବନ ଥାଆନ୍ତା ସେ ଅବା ହୁଅନ୍ତା ଦୂତ,
ଏ ଯୁଗେ ଦେବତା ନିର୍ଦ୍ଦୟ ହେଲେଣି ସବୁକଥା ଅଦଭୁତ ।
ବିଚ୍ଛିନ୍ନ କରିଣ ତନୁରୁ ତନୁକୁ ହୃଦୟୁ ହୃଦୟୁ ରଖି,
ନିର୍ବୋଧ, ଅବୁଝା ମୁରବୀ ଗୁଡ଼ାକ କି ଫଳ ପାଇବେ ସଖି ?
ଯାହାତ ହେଲାଣି ସବୁ ସରିଲାଣି ଏ ଜୀବନେ ଆଶା ନାହିଁ
ଜୀବନଟା ପରାଣ କେବଳ ରଖିଛି ତୋହର ସାକ୍ଷାତ ପାଇଁ ।
ଶେଷ ଦେଖା କରି ଜାଣିବୁଟି ସଖି ମରିବ ମୁହିଁ ନିଶ୍ଚୟ,
ମରିବା ବାଗଟା କହିଦେବୁ ମୋତେ ନ କରିଣ କିଛି ଭୟ ।
ଜଳେ ପଶିବି କି ଅନଳେ ଝାସିବି ଅଥବା ଖାଇବି ବିଷ,
ଗଳା ଦାଗିବି କି କ୍ଷୁର ଲଗାଇବି କହିବୁ କରିବି କିସ ।
ଦଉଡ଼ି ଦେଲେ କି ଭଲ ହେବ ସଖି, କି ଅବା ପଶିବି ବନେ,
ରେଳ ପାଟିପରେ ମୁଣ୍ଡ ଥୋଇବି କି ପାଞ୍ଚ ରଖିଥିବୁ ମନେ ।
ବାବାଜି ହୋଇଲେ ଭଲ ହେବଟି କି ବୁଲିବି ଦେଶେ ବିଦେଶେ,
ତୋହ ନାମ ଜପି ଆର ଜନମରେ ତୋତେ ପାଇବାର ଆଶେ ।
ଏହି ଜନମଟା ବୃଥା ଚାଲିଗଲା ଏକା ଲୋ ତୋହର ପାଇଁ,
ଏହି କଥା ଜାଣି ସାକ୍ଷାତ ଦେବାକୁ ମନା ତୁ କରିବୁ ନାହିଁ ।
ବାଡ଼ ପଛଆଡ଼ ଆମ୍ବ ବଗିଚାରେ ଅଥବା ପୋଖରୀ କୂଳେ,
ମରିବା ଆଗରୁ ଶେଷଦେଖା ଥରେ ଦେଇଯିବୁ ସନ୍ଧ୍ୟାକାଳେ ।
ଅତି ଗୋପନରେ ପଢ଼ିବୁ ଏ ଚିଠି ରଖିଥିବୁ ସାବଧାନେ,
ମାଷ୍ଟର ଦୁଷ୍ଟକୁ ବିଶ୍ୱାସ ନାହିଁଟି ଯେପରି କେହି ନ ଜାଣେ ।
"ମାଧ"

କରୁଣି – ସରିଲା ଏବେ ?
ମାଷ୍ଟର – ଆଜ୍ଞା, ଏତିକି ।
କରୁଣି – ଆଚ୍ଛା ମୁଁ ତା ପ୍ରେମବାଇ ଛଡ଼େଇ ଦଉଛି ଏହିକ୍ଷଣି । ରେ ମାଧ, ମାଧ, ଆରେ ମାଧ !

[ ଭିତରୁ 'ଆଜ୍ଞା' ]

ମାଷ୍ଟର ବାବୁ ମୋର ଦୁଃଖ ହେଉଛି—ଆପଣ ଯା ଏଯାକେ ଆସିଲେ । ସେଇଠି ଟିକି ଉତ୍ତମ ମଧ୍ୟମ ଆଚ୍ଛାକରି ଚଢ଼େଇ ପାରିଲେ ନାହିଁ ?

[ ମାଧ ପ୍ରବେଶ ହେଲା ]

କରୁଣି – କିରେ ଆଜିତ ବଡ଼ ବେଶ ଭୂଷା ହୋଇ ସାରିଲୁଣି; ଇଏ କଣ ଜୀବନ-ଆହୁତି ଦେବା ସଜ ?
ମାଧ – କଣ କହୁଛନ୍ତି ମୁଁ ବୁଝି ପାରୁନାହିଁ ବାପା !
କରୁଣି – କହୁଛି କଣ କି, ତୁ ପରା ମରିବାର ଉପାୟ ଖୋଜୁଛୁ— ସେଥିପାଇଁ ଡାକିଲି କି ଭଲ ବାଟଟିଏ କହିଦେବି ।
ମାଧ—ଓହୋ ବୁଝିଲି । କିନ୍ତୁ ବାବା ଆପଣ କଥାଟାକୁ ଯେତେ lightly ନେଉଛନ୍ତି ତାହା ସେତେ light ନୁହେ । ଖୁବ୍ ଗୁରୁତର, serious.
କରୁଣି—ସତେ ! ଏତେ ବୁଦ୍ଧି ହେଲା କେଉଁ ଦିନୁରେ ତୋର ? ଦୁଧ-ଗନ୍ଧ ଛାଡ଼ିଲା କେବେ ?
ମାଧ—ବୟସ ସହିତରେ ହୃଦୟର ସମ୍ପର୍କ କଣ ? ମୋ ଅନ୍ତର ପୂର୍ଣ୍ଣ ତନ୍ମୟ ।
କରୁଣି—ଆରେ ପାଜି ଏ ଚିଠି ତୁ ଲେଖିଛୁ ?
ମାଧ—ହଁ, ଲେଖିଛି ।
କରୁଣି—କାହିଁକି ହେ କୁଳନନ୍ଦନ ?
ମାଧ—ମରିବା ପାଇଁ । This is a question of life and death.
କରୁଣି—କାରଣଟା କ'ଣ ?
ମାଧ—ସତ କହୁଛି ବାପା, ମାଧବୀକୁ ନ ପାଇଲେ ମୋ ଜୀବନରେ ସୁଖ ନାହିଁ କି ଶାନ୍ତି ନାହିଁ । ଏ ଜୀବନଟାଯାକ ଗୋଟାଏ ବିକଟ ସାହାରା ମରୁଭୂମି ହୋଇଯିବ ।
କରୁଣି—ଚୂପ୍, ଚୂପ୍ ବଦ୍‌ଜାତ, ପାଜି । ମୋ ମୁହଁ ଉପରେ ପ୍ରେମ କଥା । ନିଶା ଖାଇଛୁ ନା କ'ଣ ? ଛଡ଼େଇ ଦଉଚି ତୋ ନିଶା, ରହ । (ଏହା କହି ଗୋଡ଼ରୁ ଚଟିଯୋତା ଖୋଲି ପଟାପଟ୍ ବାଡ଼େଇବାକୁ ଲାଗିଲେ )
ମାଧ—(ପଳାଉ ପଳାଉ) ଆଉ କରିବି ନାହିଁ, ଆଉ କରିବି ନାହିଁ —ଆଉ ମରିବାକୁ ମନ କରିବି ନାହିଁ ।
କରୁଣି—( ବାଡ଼ଉ ବାଡ଼ଉ ) ମର୍, ମର୍, ପାଜି ।

( ମାଧ ପଳାଇଗଲା )

ମାଷ୍ଟର—ଥାଉ, ଥାଉ, ଖୁବ୍ ହେଲାଣି ।
କରୁଣି—ବୁଝିଲେ ମାଷ୍ଟର ବାବୁ, ପ୍ରେମବାୟୁର ଏହି ଖାଣ୍ଟି ଔଷଧ । ଦେଖିବେ ଆଜିଠାରୁ ଠିକ୍ ସଳଖ ବାଟରେ ଚାଲିବ । ମୁଁ ପ୍ରଥମେ କଥାଟା ବୁଝି ନ ପାରି ଟିକିଏ କଟୁକଥା କହିଥିଲି ଆପଣଙ୍କୁ । କିଛି ମନେ କରିବେ ନାହିଁ । କଥାଟା ପ୍ରକାଶ କରିବେ ନାହିଁ ।
ମାଷ୍ଟର—କିନ୍ତୁ ଆପଣଙ୍କ ଏହି ଅମୋଘ ଔଷଧଟାତ ପ୍ରକାଶ କରିବା ଉଚିତ । ତାହାହେଲେ ଏହିପରି ବିଗିଡ଼ି ଯାଇଥିବା ଟୋକା-ଟାକରୀଙ୍କର ବହୁତ ଉପକାର ହେବ । ମୋ ମତରେ

ଏଭଳିଆ ଖବର କାଗଜରେ advertisement ଦେବା ଭଳି ଜିନିଷ ଏକା । ଯାହା ହେଉ ଏ ଟ୍ରିକ୍‌ଟିକୁ ଆପଣଙ୍କ ଠାରୁଁ ଶିଖିଲି । ଦଣ୍ଡବତ । ( ପ୍ରସ୍ଥାନ । )

କରୁଣି—ଆଜକାଲିକା ବଜାର୍ ବହି ଗୁଡ଼ାକ ପଢ଼ି ଅଳ୍ପବୟସ୍କ ପିଲାଯାକ ସବୁ କଷି ବେଳରୁ ପାଚିଯାଇ କୋଚିଲପଡ଼ା ଧରି ଯାଉଛନ୍ତି । ତେଣୁ କି ଏ Education system ରେ କଣ ଅଛି କେଜାଣି ଶତକଡ଼ା 99 percent ଏହିପରି । ଶିକ୍ଷା ପ୍ରଣାଳୀର ଶୀଘ୍ର ପରିବର୍ତ୍ତନ ନ ହେଲେ ସମସ୍ତେ ଏହିପରି ହେବେ । ସମାଜ ଏକାବେଳକେ ଉଚ୍ଛନ୍ନ ହୋଇଯିବ ।

## [ ୮ମ ଦୃଶ୍ୟ ]

( ମାଧ ପ୍ରବେଶ କରିଲ )

ମାଧ—ଇଲେ ବାବା ! ପ୍ରେମ କରିବାରେ ପୁଣି ଏତିକି ହରକତ ! ଏହା ଜାଣିଥିଲେ କେଉଁ ଅହମକ ଏଥିରେ ହାତ ଦେଇ ଥାଆନ୍ତା ! ଟିକିଏ experiment କରୁଁ କରୁଁ ଏତିକି ! ଆଉ ହୋଇଥିଲେ କଣ ହୋଇ ଥାଆନ୍ତା କେଜାଣି ! କାବ୍ୟ ଉପନ୍ୟାସ ଲେଖକ ଗୁଡ଼ାକ ଅବିଶ୍ୱାସୀ, ଠକ—କମ୍ବା ନପଟ ଓଲୁ, ବୋକା, ବେହେକୁବ୍ । ତାଙ୍କ ସାତ ଜନ୍ମରେ ସେ କେବେ ନିଜେ ପ୍ରେମ ପାଲରେ ପଡ଼ି ନାହାନ୍ତି । କେବଳ ପର ଉପରେ ଲଦିଦେଇ ଅସଙ୍ଗତ କଥାଗୁଡ଼ାକ ଲେଖି ମୋହରି ପରି ସରଳପ୍ରାଣ ଲୋକଙ୍କୁ ମରେଇ ଦିଅନ୍ତି ଓ ମଜା ଦେଖନ୍ତି । ବାବା, ଭଲ ମଣିଷ ଏଥିରେ ଆଉ ଗୋଡ଼ ଦିଅନ୍ତି ନାହିଁ ।

ଭାବିଥିଲି, ନାଟକୀୟ ଭାଷାରେ ଦି'ପଦ ଚାରି ଲେଖିଦେଇ ଗୋଟାଏ ରସିକତା କରିନେବି । ତା ମଜାଟା ଏବେ ଖୁବ୍ ପାଇଲି ବାବା । ଜୁହାର୍ ବାବା ଜୁହାର୍ । —

( ଗୀତ )

ପ୍ରେମ ନିଶା ମୋର ଗଲା ଛୁଟି,
ଝିଙ୍କ୍ ମାଇଲି ଧୂଅ ଖାଇଲି ନାକ ଦନ୍ତି କାନ ମୋଡ଼ି ମୋଡ଼ି । ଘୋଷା ।
ପ୍ରେମକରି ଏତିକି ଦହଗଞ୍ଜ ପ୍ରେମେ ଅନୁକୋଟି ଖଞ୍ଜ
ପ୍ରେମପରୀକ୍ଷା କରିବାକୁ ଯାଇ ମରିଗଲି ମଞ୍ଜ,
(ଆଉ) ପ୍ରେମର ନାମ ଶୁଣିଲାକ୍ଷଣି ଡରି ମରୁଥିବ ହରିଧଡ଼ି । ୧ ।
ପ୍ରେମ ଦେଖିବାକୁ ଭଲ ଭିତରେ ମଇଳା ବଲ ବଲ
ପ୍ରେମର ଦାଉ ମାରିଦେଲା ମୋର୍ ପିଠିର ଗଲଗଲ,
(କେବେ) ପ୍ରେମପାଲରେ ପଡ଼ି ନାହିଁ ଭାଇ ଜୁହାର ହେଉଛି
କର ଯୋଡ଼ି । ୨ ।

( ଯବନିକା )



# ପରୀକ୍ଷାର ଫଳ

## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ

### ପୁରୁଷଗଣ

ଶ୍ୟାମଧନ···ବାଲେଶ୍ୱରବାସୀ କଲେକ୍ଟରି ଅମଲା ।

ସୁନ୍ଦରବାବୁ·····ଜନୈକ କରଣ ଭଦ୍ରଲୋକ, ନିବାସ—ସୋର ପାଟଣାପୁର ।

ବିଶ୍ୱ·······ଜନୈକ ବାଲେଶ୍ୱରବାସୀ କଲେଜଛାତ୍ର ।

ହରି ,, ,, ସଙ୍ଗୀ

ଚନ୍ଦ୍ରୁ·············ସୁନ୍ଦରବାବୁଙ୍କ ପୁତ୍ର, କଲେଜଛାତ୍ର ।

ତିନିଜଣ ସୋରବାସୀ କରଣ ବରଯାତ୍ରୀ, ଦୁଇଜଣ ପୁରୋହିତ, ଜ୍ୟୋତିଷ, ଭଣ୍ଡାରି, ଭୃତ୍ୟ, କଚେରି କର୍ମଚାରୀଦ୍ୱୟ, ଡାକପିଅନ, ବାଳକବୃନ୍ଦ ।

### ସ୍ତ୍ରୀଗଣ

ତିଳ···ଶ୍ୟାମଧନବାବୁଙ୍କ ଝିଅ ।

ତିଳବଉ···

ସାରିଆ, ଫେନାମା } ପ୍ରତିବେଶିନୀ ଦ୍ୱୟ

ବାରିକାଣୀ ।

---

## ନିବେଦନ

ଉତ୍କଳରେ ଦିନକୁ ଦିନ ନାଟକ ଦଳର ବୃଦ୍ଧି ହେଉଅଛି । କିନ୍ତୁ ରଙ୍ଗମଞ୍ଚୋପଯୋଗୀ ନାଟକର ଏକାନ୍ତ ଅଭାବ । ପ୍ରହସନ ବା ହାସ୍ୟ ରସାତ୍ମକ ନାଟ୍ୟ ନାହିଁ ବୋଇଲେ ଚଳେ । ସେ ଅଭାବ ଯୋଗୁଁ କେତେକ ବନ୍ଧୁଙ୍କ ଅନୁରୋଧରେ ମୁକୁରରେ ପ୍ରକାଶିତ 'ପରୀକ୍ଷାଫଳ' ନାମକ ଗଳ୍ପ ଅବଲମ୍ବନରେ ଏ ସାମାଜିକ ପ୍ରହସନଟି ରଚିତ ହୋଇ କଟକ ରେଭେନ୍ସା କଲେଜଛାତ୍ରମାନଙ୍କଦ୍ୱାରା ଅଭିନୀତ ହୋଇଥିଲା । ଛାତ୍ରମାନଙ୍କର ଅଭିନୟୋପଯୋଗୀ କରିବା ପାଇଁ ଏଥିରେ ଅନେକ କଥା ବାଦ ଦେବାକୁ ପଡ଼ିଅଛି । ତଦ୍ଦ୍ୱାରା ଏଥିର ଅଙ୍ଗ-ସୌଷ୍ଠବର ହାନି ହୋଇଥିବାର ସମ୍ଭବ । କିନ୍ତୁ ଏହା ଯେଉଁ ଉଦ୍ଦେଶ୍ୟରେ ରଚିତ, ତାହା ସାଧିତ ହୋଇଥିବା ଅନେକଙ୍କର ଅଭିମତ । ଏହାର ଅଭିନୟ ଦେଖି ଅନେକେ ସନ୍ତୁଷ୍ଟ ହୋଇଥିଲେ ଏବଂ ଏହାକୁ ମୁଦ୍ରିତ କରି ପ୍ରକାଶ କରିବା ପାଇଁ ଅନୁରୋଧ କରିଥିଲେ । ପ୍ରଥମ ଅଭିନୟରେ ଧରାପଡ଼ିଥିବା କେତେକ ଦୋଷ ଯଥାସାଧ୍ୟ ମାର୍ଜନା କରାହୋଇଅଛି । ବର୍ତ୍ତମାନ ଏହାକୁ ଅନେକ ସ୍ଥଳରେ ପରିବର୍ତ୍ତନ ଓ ଅନେକ ନୂତନ ଦୃଶ୍ୟ ଓ ଗୀତ ସଂଯୋଜନ କରି ନୂତନ ଆକାରରେ ପ୍ରକାଶ କରିବାକୁ ପ୍ରୟାସୀ ହେଲି । ଏତଦ୍ଦ୍ୱାରା ବିମଳ ହାସ୍ୟରସ ଉପଭୋଗ କରୁଁ କରୁଁ ଦର୍ଶକମାନଙ୍କର ଚିତ୍ତ ବିନୋଦନ ସଙ୍ଗେ ସଙ୍ଗେ କିଞ୍ଚିତ୍ ଶିକ୍ଷାଲାଭ ହେଲେ ଶ୍ରମ ସଫଳ ମଣିବି ।

ବିନୀତ

ଲେଖକ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

( ଶ୍ୟାମଦନ ବାବୁଙ୍କ କକ୍ଷ )

**ଜଳବଡ଼**—(ଘର ଝାଡୁଁ ଝାଡୁଁ)···ସମ୍, ସମ୍ । ସାରା ସଖାଳୁ ଜଡି ବାସୀପାଇଟି, ରନ୍ଧାବଢ଼ା, ଦାନାପାନିଆ, ଖିଆପିଆ ସାରୁ ସାରୁ ମୋ ହାଡ଼ ରସିଗଲାଣି । ଇମିତ କଣ୍ଟ ରୋଜଗାର ଅଛି ଯେ ଯୋଡ଼ା ଯୋଡ଼ା ଚୋଇଲ ପରବାସ୍ତା ରଖିଦେବେ ? ଏଣିକ ତ ବଳବପୁସ ହଟିଲ୍—ଆଉ କେତେ କରବ ! ଝିଅଟା ଆସି ପାରଗଲ, ତେବେ ବ ତାର ଘରକରଣା ବୁଦ୍ଧି ଟିକିଏ ହେଲନାହିଁ । ସେଇଟା ଭଲ ସାହା ହୁଅନ୍ତା ! ହଁ, ଆଉ କେତେଦିନକୁ କେତେ କଥା ! ପର ହାଣ୍ଡିରେ ତ ଗୁଡ଼ାଳ ପଡ଼େଇଛି, ହେଲେ କରଣଘର ଝିଅ, ନୋଗ-ଚଣିଆଚ କଣ୍ଟ ଶିଖିଲ ନାହିଁ । ଶାଶୁଘରେ ଖାଲି ବାପ ମାଙ୍କୁ ଶିଗ୍ଧ ଦେବେ ସିନା !

( ଜଳର ପ୍ରବେଶ )

ଆରେ ଜଳ ! ତୁ ଦିନରାତି କୁଣ୍ଢେଇ ଖେଳରେ ଥିବୁ ନା କଣ ? ଆଉ ତୋର କେବେ ବୁଦ୍ଧି ହବ ମ ?

( ଶ୍ୟାମଘନବାବୁଙ୍କର ପ୍ରବେଶ )

**ଶ୍ୟାମଘନ**—କ ହୋ ଜଳକୁ କଣ କହୁଥିଲ କ ?

**ଜଳବଡ଼**—ନା କଣ୍ଟ ନୁହେ । ତମର ଆଜ ଏତେ ଡ଼ଙ୍କର ଯେ ।

**ଶ୍ୟାମ**—ନା, ସେହି ଚନ୍ଦ୍ରକଥାରେ ସୁନ୍ଦରବାବୁଙ୍କ ସାଙ୍ଗରେ କଥାବାର୍ତ୍ତ ହେଉଥିଲା ।

**ଜଳବଡ଼**—କଣ ହେଲ କ ? ଦିନବାର କଣ ଠିକଣା କର ଆସିଲ ?

( ଜଳର ପଳାୟନ )

**ଶ୍ୟାମ**—ଟଇସା କଉଡ଼ର ଅଭାବ, ମୋର ଇଚ୍ଛା ଥିଲା ଆଷାଢ଼ ବେଳକୁ କରନ୍ତେ—ଚନ୍ଦ୍ରୁ ଏଥର ଏଫ, ଏ ପରୀକ୍ଷା ଦେଇଛି—ପରୀକ୍ଷା ଫଳଟା ସେତେବେଳକୁ ବାହାର ଯାଇ ଥାଆନ୍ତା; କିନ୍ତୁ ସୁନ୍ଦରବାବୁଙ୍କର ଇଚ୍ଛା ଜ୍ୟେଷ୍ଠ ମାସ । ମୋର କ ଯିବ ଲୁହ । ମାସର ୨୮ ଦିନକୁ ଏକରକମ୍ ଠିକଣା ହେଲ ।

**ଜଳବଡ଼**—ସେଥିରେ କଣ ଅଛି, ଦିନ କେଉଁଟା ଆଗ ପଛରେ ବା କ କଥି ମିଳନ୍ତା । ମୋ ମନ ଥିଲ ବଣ୍ଟିଟି ହୁଅନ୍ତା କ । ଗାଁ ଭିତରେ ଘର । ଝିଅଟି ଆଖି ଆଗରେ ରହନ୍ତା । ଭଲ ମନ୍ଦରେ ସାଥି ହୁଅନ୍ତା । ସେଥର ତ ସିମିତ ସବୁ କଥା ବାର୍ତ୍ତ ଠିକ୍ କରଥିଲ, ଖାଲି ଏନ୍‌ଟ୍ରାନ୍‌ସ ପରୀକ୍ଷାରେ ବଣ୍ଟ ଫେଲ୍ ହେଲ ବୋଲ ସବୁ ଭାଙ୍ଗିଦେଇ ବସିଲ । ଏଇକ୍ଷଣିତ ଶାହାଜାପୁର ଚନ୍ଦ୍ରୁକଥାରେ ଜବାବ ଦେଇ ଆସିଲ, ଏଣେ ପୁଣି ପରୀକ୍ଷାଫଳକୁ ଅନେଇଛ । ଯଦି ଆଜ କଣ୍ଟ ଭଲମନ୍ଦ ହେଲ, ପୁଣି ଭାଙ୍ଗିଦେଇ ବସିବ । ତମପର ଅଡାଡ଼ୁଆ ଏକବୁଝା ମଣିଷ, ଶ'ପଚାଶରେ ନ ଥିବେ ପରା !

**ଶ୍ୟାମ**—ଆରେ ଯା; ତେମେ ତ ମାଇପି ଲୋକ, ସେକଥା କଣ ବୁଝିବ ! ଗୋଟାଏ ଯୋଡ଼ାଏ ପାଶ୍ ନ କଲେ ଆଜକାଲ କେହି ମଣିଷ ପଣିଆରେ ଲେଖା ନୁହେଁ । ଅପାଶଙ୍କର ଟୋକାଙ୍କୁ ଆଜକାଲ ଚପରାଶି କାମ ବ ମିଳିବାକୁ ନାହିଁ ।

( ଦେହରୁ ପୋଷାକ ଉତାରବା )

**ଜଳବଡ଼**—ମୁଁ କହୁଥିଲ କଣ କ ଝିଅଟାର ତ ପିଲ ବୁଦ୍ଧି ଗଲ ନାହିଁ । ଦୂରଦେଶରେ ଯାଇ ପରଘରେ ଘର କରିବ କିମିତି ?

**ଶ୍ୟାମ**—ହିଁ—ଆଉ କଉ ଦେଶରେ ଚାହିଲେ ତୁମେ ଯାଇ ତା ଘର କର ଦେଇ ଆସିବ । ସେ ତ ପରଘର କରିବା ପାଇଁ ଜନ୍ମ ହୋଇଚନ୍ତି । ମୁଣ୍ଡ ଉପରେ ବୋଝ ପଡ଼ିଲେ ତାଙ୍କୁ ହିଁ ପୁଣି ଦେଖିବ ।

**ଜଳବଡ଼**—ହଉ, ତମକୁ ଯାହା ଭଲ ଦିଶୁଚ କର । ମାସର ୨୮ ଦିନକୁ ସାର ତ ?

**ଶ୍ୟାମ**—ମଲ, କହିଲ ତ ଥରେ, ପୁଣି କେତେଥର କହିବ ?

**ଜଳବଡ଼**—ସହର ଯାଗା । କଥା ପଦକୁ ପଇସା । ସବୁ ତ ଫେର୍ ସଜିଲ କରିବାକୁ ପଡ଼ିବ । ନା ଘରେ ବୁଜୁଳା ଅଛି ଯେ ଗଣ୍ଡାଏ ଷାଠିଏ କାଢ଼ି ଦେବ ?

**ଶ୍ୟାମ**—ହଁ, ଯେପର ହେବ ଦେଖାଯିବ । ଯିମିତ ହେଲେ ଧାର ଉଧାର କର କରିବାକୁ ତ ପଡ଼ିବ । ତମେ ଗଲ ମୁଁ ଟିକିଏ ଗୋଡ଼ ହାତ ଧୋଇବ ।

( ଉଭୟଙ୍କର ପ୍ରସ୍ଥାନ )

( ପଟ ପରିବର୍ତ୍ତନ )

## ଦ୍ୱିତୀୟ ଦୃଶ୍ୟ

(ବଣୁର ଏକାକୀ ଗମ୍ଭୀର ଭାବରେ ପାଦଚାରଣ ଓ ପଶ୍ଚାତ ଦିଗରୁ ହରର ପ୍ରବେଶ )

**ହର**—Hallo ବଣ୍ଟୁ, ତୁ ତ ଏଠି, ମୁଁ ତୁମ ଘରଠୁଁ ଖୋଜ ଆସିଲିଣି ।

**ବଣ୍ଟୁ**—ହୁଁ, ବଡ଼ ଗରମ ହେଲ । ଟିକିଏ open air କୁ ବାହାର ଆସିଲ ।

# ପରୀକ୍ଷାର ଫଳ

ହରି—ଓଃ, ଆଜି କହନା, ଯେ ଗରମ । ଏ ଖରାଦିନଗୁଡ଼ାକରେ ଯଦି Summer vacation ନ ହୋଇଥାଆନ୍ତା ମଣିଷ ମରିଯାଆନ୍ତା । ଏ ଗରମରେ କି ମଣିଷ ପାଠ ପଢେ ! ସମ୍ ସମ୍ । ଏକେ tropical country, ସେଥିରେ ପୁଣି ଆଜିକାଲି universityର ଯେଉଁ କଡ଼ା syllabus ! ଏଥିରେ ଆମ ଦେଶର young generation ଏକେବାରେ ମାଟି ହୋଇଗଲେ । Over taxation of brain ହେଇ energy ନଷ୍ଟ, vitality ନଷ୍ଟ । Summer vacation ର ନିୟମଟା ବଡ଼ ଗୋଟାଏ conscious work ଏକା ।

ବଙ୍କୁ—( ଗମ୍ଭୀର ଭାବରେ ) ହୁଁ ।

ହରି—ଆରେ ତୁ ତ ଆଜି ଭାରି ଗୋଟାଏ thinking mood ରେ ଅଛୁ ।—ଏ ଛୁଟିଟା ଖୁବ୍ ଏକା long. ପୂର୍ତ୍ତି କରିବାକୁ time, circumstance, opportunity ସବୁ ଏକଯୋଗ । ଆଜିର ଗୋଟାଏ ମଜା ଯେ ବାହା ଲଗନଟା ଠିକ୍ ଏହି ସମୟରେ ପଡ଼େ । ଆଚ୍ଛା, ଏ ପାଞ୍ଜି କାରଗୁଡ଼ାକ Summer vacation ଆଉ ଯାବନ୍ତୁ ପରୀକ୍ଷାଗୁଡ଼ାକର ଶେଷ ବେଳ ଜାଣି କଣ ବାହାଲଗ୍ନ ଧରିଥିଲେ, ନା college authorityମାନେ ପାଞ୍ଜି ଦେଖି vacation ଆଉ examination date ଠିକଣା କରିଥିଲେ ? ଯାହା ହଉ ମଣିଷ ଏ ସମୟରେ ପଢ଼ାପଢ଼ିରୁ ଖଲସ—ମିଜାଜ ବି ତୋଫା, ଖୋଲସା ।

ବଙ୍କୁ—ହୁଁ ।

ହରି—ଫେର 'ହୁଁ' । what's the matter with you ? ମୁଁ ଏତେ ଗୁଡ଼ାଏ ବକିଗଲି, ତୋର ଖାଲି ଗୋଟାଏ 'ହୁଁ' । କଥାଟା କଣ କହନ ।

ବଙ୍କୁ—କଥାଟା କଣ ଶୁଣିନାହୁଁ । ସେଇ—ଶ୍ୟାମଘନର ଝିଅ ଲଳି ସଙ୍ଗରେ ସେ ବର୍ଷ ମୋର ପ୍ରସଙ୍ଗ ଠିକ୍ ହୋଇଥିଲା । ମୁଁ ତ Entrance ଫେଲ୍ ହୋଇଗଲି । ଖାଲି ସେତିକ ପାଇଁ ଶ୍ୟାମଘନ ଏଡ଼େବଡ଼ ଜବାବଟା ଭାଙ୍ଗିଦେଲା ।

ହରି—ହେଲା କ'ଣ ?

ବଙ୍କୁ—ହେଲା ତୋ ମୁଣ୍ଡ ! ଏଥର ପୁଣି ଯାଇ ଚନ୍ଦ୍ର ସାଙ୍ଗରେ ବାହାହେବ ବୋଲି କଥା ଠିକ୍ କରିଆସିଛି । ବାହାଘର ଏହି ଜ୍ୟେଷ୍ଠମାସ ୨୮ ଦିନ ।

ହରି—ଚନ୍ଦ୍ର ? ଆମ ଚନ୍ଦ୍ରଶିଖର ? ସେ ତ Intermediate ଦେଇଛି ।

ବଙ୍କୁ—ହିଁ; ପାସ ବି କରିବ । କିନ୍ତୁ ଯଦି ମାସର ୨୭ ଦିନ ତା ଫେଲ୍ ଖବର ମିଳନ୍ତା ତେବେ—

ହରି—ସେଥିରେ ତୋର ଲୋଡ଼ା କ'ଣ ? ତୋର ତ ଆଉ ଆଶା ନାହିଁ ।

ବଙ୍କୁ—(ଚମକି) କଣ, ଆଶା ନାହିଁ ? ଆଚ୍ଛା ସେତ ଯାଇ ପରର କଥା । ଶ୍ୟାମଘନ ମୋତେ ଯାହା ଲୋକହସା କରିଛି ଆଉ ମୋ ମନରେ ଯେଉଁ କଷ୍ଟ ଦେଇଛି—ସେ ମୋ ହୃଦୟରେ ଗାର ହୋଇ ରହିଛି । By fair means or foul ତାକୁ ଥରେ ଫେଣ୍ଟରେ ପକାଇ ଘାଣ୍ଟିବି । Revenge ! revenge ! revenge !! ତେବେ ଯାଇ ମୋ ନାଁ ବଙ୍କୁ ।

ହରି—ତା'ତ ଯାଇ କଲୁ; ଝିଅଟା ?

ବଙ୍କୁ—(ଗୁନ୍ଥିରେ ହାତ ମାରି) ଆରେ ଓଃ ବନ୍ଧାକା ।

ହରି—କି ରକମ ?

ବଙ୍କୁ—Killing two birds at one shot. Revenge, gain.

ହରି—ଝିଅଟା କି ଭଳି ?

ବଙ୍କୁ—ବେଶ୍ accomplished, good-looking, up-to-date.

ହରି—ଆଚ୍ଛା, ତୋ plan ଟା କଣ କହିଲୁ ।

ବଙ୍କୁ—ମୁଁ ବର୍ତ୍ତମାନ fully କହିପାରୁ ନାହିଁ । ସମୟରେ ଶୁଣିବୁ । ତୋହର ତ ଏଥିରେ ବଡ଼ part ! ତେବେ ଏତିକି ଶୁଣିରଖ୍ ଯେ ଖାଲି—ଖଣ୍ଡିଏ ଟେଲିଗ୍ରାମରେ, କିସ୍ତିମାତ୍ ।

( ପଟପରିବର୍ତ୍ତନ )

## ତୃତୀୟ ଦୃଶ୍ୟ

( ଶ୍ୟାମଘନବାବୁଙ୍କ ଗୃହ )

( ନାନାପ୍ରକାର ବିବାହ ସାମଗ୍ରୀ ସଜ୍ଜିତ ଓ ଭଲବଉ ଏବଂ ହିନାମା କାର୍ଯ୍ୟରେ ବ୍ୟାପୃତ )

ହିନାମା—ହଁ ଗୋ ସାନ୍ତାଣି ! ଏ ବର କାଲି କେତେବେଳକୁ ପହଞ୍ଚିବ ?

ଭଲବଉ—ସେ କଥା ମୋର କିଏ ଜାଣେ ଲୋ ମା !

ହିନାମା—ମଲା ତମେ ଜାଣିବ ନାହିଁ ଆଉ ଜାଣିବ କିଏ ?

ଭଲବୋଉ—ଅ—ତାଙ୍କର ବର କାଲେ ରେଲରେ ଆସିବେ—ଟାଇନ ବେଳକୁ ପହଞ୍ଚିବେ ।

ହନାମା—ଝିଅଟା ଏକା କାନ୍ଦି କାନ୍ଦି ନାତର କାତର ହେଲାଣି—ଆଉ ହାଲ ନାହିଁ । ବିଧାତା କରିବେ ତ ଝିଅଟି ଏକା ଖୁବ୍ ସୁଖରେ ରହିବ । ଥିଲାଘର—ପଢ଼ାବର ।

ଡଲବୋଉ—ହଁ ତା କପାଳରେ ଯାହା ଥିବ ତା ଭୁଞ୍ଜିବ । ଯେତେ ହେଲେ କଅଣ ଆଖି ଦରଶନ ହବ ନାହିଁ । ମଲା ଗଲାରେ ତିନିଦିନେ ଖବର ମିଳିବ ନା !

( ଶ୍ୟାମଘନ ବାବୁଙ୍କର ପ୍ରବେଶ )

ଶ୍ୟାମଘନ—ହେଇଟି, ତମର ମାଇପିକାମ ସରିଲାଣି ନା ?

ଡଲବଉ—କେମିତି ସରିବ, କେତୁଟା ହେବ ! ରାଇଜଯାକର କୁଟୁକୁଟିଆ କାମ । କୁଆଡ଼େ କଣ କରିବ ?

ଶ୍ୟାମ—ତମର ଗୁଆଭଙ୍ଗା, ଜାଇମଙ୍ଗଳା,' ବଡ଼ପରା, ପେଡ଼ସଜଡ଼ା ଏଗୁଡ଼ାକ ସବୁ ଠିକଣା କଲ ତ ?

ଡଲବଉ—ମଲା ଝିଅ ମଙ୍ଗୁଳ ହୋଇ କୋଇଲା ବୃଉ ପାରିଲାଣି । ତମ ଦାଣ୍ଡ କାମ ସବୁ ସଜିଲା ହେଲା ?

ଶ୍ୟାମଘନ—ହଁ ବନ୍ଧୁ-ବାନ୍ଧବ, ପ୍ରିୟା-ପ୍ରୀତି, ସୂର୍ଯ୍ୟ-ମୈତ୍ର ସବୁ ଆସିଲେଣି ।

(କନ୍ୟାବେଶରେ ଡଲର ପ୍ରବେଶ ଓ ପିତାଙ୍କୁ ଧରି ବାହୁନିବା)

* ହାଁ—ବାବା ବାବା ଡାକ ମୋର ସରିଲା ହୋ । ହାଁ-ବାପା
ଜେଦ୍ଧା ପଣିଆତ ଉଭେଇ ଗଲା ହୋ ,,
ଚନ୍ଦ୍ରେ ନ ଦେଖିଲେ ମରୁଛୁ ନ ଥିଲ ହୋ ,,
ମୋ ନାମ ନ ଧରି ଘରେ ପଶୁ ନ ଥିଲ ···
ବୋହୁ ବୋହୁ ବୋଲି ଉତ୍ତଳା ହେଲ ··· ···
ମଝି ଦରିଆରେ ଭସାଇ ଦେଲ··· ······
ଅଗ୍ନିଅଗ୍ନି ବନସ୍ତରେ ମୋତେ ଧାଇଁଲ ··· ······
କଂସେଇ ଖୁଣ୍ଟରେ ମୋତେ ବାନ୍ଧିଲ ··· ··· ···
ଏତେକଥା ଯଦି ମନରେ ଥିଲା ··· ··· ··· ···
ଅନ୍ଧୁଣୀଶାଳରେ ତଣ୍ଟି ନ ଚିପି ଦେଲ ··· ··· ··· ···
ଯାହୁଁ ଯାହୁଁ ଦିନ ସରିଯାଉଛୁ ଲୋ ··· ··· ··· ···
ପିଞ୍ଜରୁ ପ୍ରାଣ ତ ଛୁଡ଼ି ଯାଉଛି ଲୋ ··· ··· ··· ···
ଗୋଟିଏର ମାୟା ଏବେ ଗୁଡ଼ିଲା ··· ··· ······
ତୋ ମନକାମନା ତ ଏବେ ପୂରିଲା ··· ··· ······

ଶ୍ୟାମଘନ—ନା ଲୋ ମା ଭୁନନ୍ଦ, ଆଉ କାନ୍ଦନା । କେତେବାଟ ଯେ ମନକଲେ ଶନିବାରକୁ ଶନିବାର ଯାଇ ତତେ ଦେଖି ଆସିବ ।······ହଉ ତତେ ଅଷ୍ଟମଙ୍ଗଳା ବାସି ବେଳକୁ ମୁଁ ନିଜେ ଯାଇ ନେଇ ଆସିବ ।

(ଡଲବୋଉ ପ୍ରତି) ହଅ, ଅନାଇ ବସିଲ ନା, ଚୁପ କର ହଅ ।

(ହନାମା'ର ଡଲକୁ ଚୁପ କରାଇବା ଓ ତାହାର ହସ୍ତଧରି ସ୍ଥାନାନ୍ତରକୁ ନେଇଯିବା )

ଶ୍ୟାମଘନ—ହଁ ବୁଝିଲ ନା, ମୁଁ ଟିକଏ କଚେରିରୁ ବୁଲିପଡ଼ି ଆସେ । ତମେ ସବୁ ବାକି ଯାହା ସଜିଲ କରୁଥିବ ।

ଡଲବଉ—ମଲା ଆଜି କଚେରିକୁ ନ ଗଲେ କ'ଣ ହୁଅନ୍ତା ?

ଶ୍ୟାମଘନ—କଅଣ କରିବା ପରର ଗୋଲାମି କରି —

(ଜନୈକ ଭୃତ୍ୟର ପ୍ରବେଶ)

କରେ କଅଣ କି ?

ଭୃତ୍ୟ—ବାବୁ ଡାକବାଲା ଏ ତାର ଖବର ଦେଇଗଲା ।

( ଟେଲିଗ୍ରାମ ଦେଇ ଭୃତ୍ୟର ପ୍ରସ୍ଥାନ )

ଶ୍ୟାମଘନ ବାବୁ—( ଟେଲିଗ୍ରାମ ଖୋଲି ବିସ୍ମିତ ଭାବରେ ଉଚ୍ଚସ୍ୱରେ ) କଣ ! Chandru...unfortunately ... got plucked ; ( ଟେଲିଗ୍ରାମ ଫିଙ୍ଗିଦେଇ ଗମ୍ଭୀର ଭାବ ଧାରଣ )

ଡଲବଉ—କହୋ କଅଣ କି ?

ଶ୍ୟାମ—ତମ ମୁଣ୍ଡ ଓ ତମ ଗଣ୍ଡି ।

ଡଲବଉ—ଭୁକ୍ତାଟାରେ ଏମିତି ହଉଚ କାହିଁକି ?

ଶ୍ୟାମଘନ—(ସରୋଷେ) ଆରେ ରଖିଦିଅ ତମ ବାହାଘର । ଆଉ ଏଗୁଡ଼ାକ କଅଣ ହେବ—ସବୁ ଚୂଲିକି ଯାଉ ।

(ବିବାହ ସରଞ୍ଜାମମାନ ଗୋଇଠା ମାରି ଗଡ଼ାଇ ଦେବା)

ଡଲବଉ—କହୋ, ତମକୁ କଅଣ ଲାଗିଲାଣି କି ! ଆଜି ଏ ଶୁଭ ଦିନଟାରେ—

ଶ୍ୟାମଘନ—ଚୁପ୍ କର । ତମ ଶୁଭ ଦିନରେ ନିଆଁ ଲାଗୁ । ବାହାଘର ଫାହାଘର ସବୁ ବନ୍ଦ—ଫେର୍ ପାଟିକରିବ ତ ମୋ କଥା ଜାଣ ? (ପ୍ରସ୍ଥାନ ଉଦ୍ୟତ)

(ପୁରୋହିତଙ୍କ ପ୍ରବେଶ)

ପୁରୋହିତ—କହୋ ବାବୁ ! କଥା କଅଣ ?

ଶ୍ୟାମ—କଥା ଆଉ କଅଣ ! ଚନ୍ଦ୍ରୁଟା ଫେଲ୍ ହୋଇଅଛି । ଆଉ ବାହାଘର କଣ ହେବ ? (ଦ୍ରୁତ ବେଗରେ ପ୍ରସ୍ଥାନ)

ପୁରୋହିତ—(ସ୍ୱଗତଃ) ଭଲ ଅବାଗୁଆ ମଣିଷ ଏଉଟା ଏକା । ସେଥର ସେମିତି ବଣୁଟା ଫେଲ୍ ହେଲା ବୋଲି ବାହାଘରଟା ବନ୍ଦକରି ଦେଲା । ଏଥର ଝିଅଟା ମଙ୍ଗୁଳା ହୋଇ ସାରିଲାଣି, ଏତେବେଳେ କୁଆଡ଼ୁ କଣ ଗୋଟାଏ ପାଇ ପୁଣି ବନ୍ଦ କରିବାକୁ ବସିଛି । ଆମର ସେଥିରେ କ'ଣ ଅଛି ?

* ହନା ମା ଚୁପ ନ କରାଇବା ପର୍ଯ୍ୟନ୍ତ ବାହୁନାର ବିରାମ ହେବ ନାହିଁ ।

ଆମ ବନ୍ଧାକଣ୍ଟା ତ ଯେବେ ନେଲେ ବନ୍ଧା ହୋଇ ରହିଛି ।
ତେବେ କଅଣ କ—ଭଲମ୍ବ ମାଳଂ । (ପ୍ରସ୍ଥାନ)

(ପଟକ୍ଷେପ)

## ଚତୁର୍ଥ ଦୃଶ୍ୟ

(ରାଜପଥ)

( ବନ୍ଧୁ ଓ ହରିର ପ୍ରବେଶ )

ବନ୍ଧୁ—ଆରେ ଶୁଣିଲୁ, ମୁଁ "ଚନ୍ଦ୍ର ଫେଲ୍ ହେଲା" ବୋଲି ଶ୍ୟାମଧନ ନାଁ'ରେ ଖଣ୍ଡେ ଟେଲିଗ୍ରାମ ଛାଡ଼ିଦେଲି । ଠିକ୍ hit କରିଛି । ଶ୍ୟାମଧନ wire ପାଇ ଏକେବାରେ ନାଲେ ନାଲ୍ । Furious ତ । ବର୍ତ୍ତମାନ ଯାଇ ଟେଲିଗ୍ରାଫ ଅଫିସରେ ଚନ୍ଦ୍ର ଘରଠାକୁ ବାହାଘର ବନ୍ଦ କରିବା ପାଇଁ wire କରି ଆସିଲାଣି ।

ହରି—ଆଚ୍ଛା ଏ plan ଟା ତୋତେ suggest କଲା କିଏ ମ ?

ବନ୍ଧୁ—ଆରେ ସେଇଟା ଗୋଟାଏ whimsical idiot ଟାଏ ! ତାର weak point ମୋତେ ଜଣା ପଡ଼ି !

ହରି—Bravo, bravo, creditable indeed ! ସାବାସ୍ ତୋ ବୁଦ୍ଧି । ତୁ B.A. ରେ Politics ନେବୁ । Diplomacy ରେ ତୋର ଗୋଟାଏ natural genius ଅଛି ଏକା ! ଆଚ୍ଛା, ସେ ଏତେ hasty step ନେଲା, ଟିକଏ ଭାବିଲା ନାହିଁ ଯେ ଚନ୍ଦ୍ରର ଫେଲ୍ ଖବରଟା କାହାର ଯୋଗ ଯାଉନାହିଁ ଯେ ପଇସା ଖରଚ କରି wire କରନ୍ତା ?

ବନ୍ଧୁ—ସେତେ ବୁଦ୍ଧି କି ତା'ର ଅଛି ! କହୁଛି ତ ଥରେ ସେଇଟା fool—ଚେହିଁକ କରାନଗିରି ଭରି କରି ତା brain ରେ ଜଳଙ୍କି ଲାଗିଲାଣି । ଖାଲି ହାତଟା ଗୋଟାଏ machine !

ହରି—ନା, ନା, hackney carrage ଘୋଡ଼ା !

ବନ୍ଧୁ—ତୋ fun ଏଇଠିଣି ରଖ୍ । Sucess ବର୍ତ୍ତମାନ half ସରିକି ଯାଇଛି । ଅସଲ half ଟା ବାକି । ବୁଝିଲୁ ? କଅଣ କରାଯିବ କହ ।

ହରି—ତୁହି suggest କର । My dear diplomat !

ବନ୍ଧୁ—ଶୁଣ୍ । ଶ୍ୟାମଧନର ଝିଅ ମଙ୍ଗୁଳି ହେଇ ସାରିଲାଣି । ଶ୍ୟାମଧନ ସିନା heat of the moment ରେ କରି ପକାଇଲା । ମଙ୍ଗୁଳିହେଲା ଝିଅ ବାହା ନ ହୋଇ ତ ରହିବ ନାହିଁ । ଏତେବେଳେ ବର ପାଇବ କାହିଁ ? କିଏ ଗୋଡ଼ ଲମ୍ବେଇ ବସିଛି ? ଆଉ ଗୋଟାଏ ଗୁଲ୍ ଗୁଲାଲେ, କହୁ ମାତ୍ର ।

ହରି—ନା, ନା, ତାକୁ ଗଜଚକ୍ରରେ ପକାଇ ଘୁରାଇବା ।

ବନ୍ଧୁ—ଉହୁଁ ! ମୋର ଇଏ premeditated plan. ନୋହିଲେ ଚନ୍ଦ୍ର ବାହାଘରଟା ମୁଁ ଚେଷ୍ଟା କରିଥିଲେ ଆଗରୁ ଭାଙ୍ଗି ଦେଇ ପାରିଥାଆନ୍ତି । ଏବେ ଏ critical positionକୁ ନେଇଆସି ତାକୁ ପେଞ୍ଚରେ ପକାଇଲି ପରା !

ହରି—ଆଚ୍ଛା, ତୋ plan ଟା କଣ ?

ବନ୍ଧୁ—ଏଣିକି ତୋ ପାଳି । ତୁ ଏତିକିବେଳେ ଯାଇ ଶ୍ୟାମଧନ-ଠାରେ ମୋ ନାଁ'ଟା propose କର । ସେତ ଘୁଅଖିଆ କାମ କରି କୂଳକିନାରା ପାଉ ନ ଥିବ । ନିଶ୍ଚୟ agree କରିଯିବ ।

ହରି—କିପରି ଭାବରେ କହିବ ?

ବନ୍ଧୁ—ସେ କଥାବି କଣ ତୋତେ ଶିଖେଇ ଦବାକୁ ହବ ? ଯାଇ ଗୋଟାଏ ଖୁବ୍ generous offer କରିବୁ । ବୁଝିଲୁ ?

ହରି—Yes, all right.

ହରିର ଗୀତ—

( ରାମପ୍ରସାଦୀ ସ୍ୱର )

ବାରେ ମୋର କଥା କର

ଏହି backward ଦେଶଟାକୁ ସବେ ମିଳି ଟେକିଧର ।
କୃଷିକର, ବାଣିଜ୍ୟକର, କର ଶିଳ୍ପଶିକ୍ଷା,
ଆଉ ଏକ band କମର କସି ନେଇ ସ୍ୱଦେଶ ରକ୍ଷା ॥
ସାହିତ୍ୟଟା ବଡ଼ subject ଚର୍ଚ୍ଚାକର ଆଗେ,
Drama, poetry, novel, history ଯାକୁ ଯା ଭଲ ଲାଗେ ॥
Young men ସବୁ ଲାଗିପଡ଼ କର social reformation,
Widow marriage ଚଳାଇ ଦେଲେ ଉଠିଯିବ whole nation ॥
ଉଠାଇ ଦିଅ early marriage, bad caste system ।
କନ୍ୟାବାଛ, ଭଲକଲାଟି ହୋଇଯାଅ ସବୁ ବୈଷ୍ଣବ ।
Education ବିସ୍ତାର କର, କର ଦେଶର ବଡ଼ କାମ ।
Self sacrificing sprit ଦେଖାଇ ମାରିନିଅ ଶସ୍ତା ନାମ ॥
ଅସଲକଥା ଛାଡ଼ିଗଲା—କର Politics ଚର୍ଚ୍ଚା,
Article ଲେଖି ନାଡ଼୍ ଘାଇ ଡାକ୍—ଧିନାଧିନ୍—ଧିନ୍ତା ॥
(ଆଉ) ସଭା କରି speech ଝାଡ଼, ତାଳି ମାର ଜନତା ॥

( ପଟକ୍ଷେପ )

---

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ପାଟଣାପୁର ସୁନ୍ଦରବାବୁଙ୍କ ଗୃହ )

( ସୁନ୍ଦରବାବୁ ଓ ଆଗନ୍ତୁକ ବରଯାତ୍ରୀମାନେ ଆସୀନ )

୧ମ ବରଯାତ୍ରୀ—ସେଆଡ଼େ ଯେ ରେଲ ଟାଇମ ହୋଇଗଲା, ଝଟ୍ ଝଟ୍ ସଜଲ କର । ବାହାରି ପଡ଼ିବା ।

୨ୟ ବରଯାତ୍ରୀ—ହଁ ହଁ, ବାଟ ବହୁତ । ଆଗରୁ ନ ଗଲେ ଗାଡ଼ି ଆସିଲବେଳକୁ ଟିକଟ ମିଳିବ ନାହିଁ ଯେ ।

ସୁନ୍ଦରବାବୁ—ମୁଁ କଣ କରିବ ! ଏ ବେହେରା, ବାରିକ, ବେଠିଆ ଗୁଡ଼ାକ ଉଚ୍ଛୁର କରୁଛନ୍ତି ।

୩ୟ ବରଯାତ୍ରୀ—ବାବୁ ଆମେ ଅଫିମା ଲୋକ । ମୋ ସବାରିରେ ଥୋଡ଼ା ମିଠା ସରଞ୍ଜାମ ବନ୍ଦୋବସ୍ତ କରିବ ।

( ଟେଲିଗ୍ରାଫ ପିଅନର ପ୍ରବେଶ )

ପିଅନ—ସୁନ୍ଦରବାବୁ କୋନ୍ ହେ ।

( ସୁନ୍ଦରବାବୁ ହାତ ବଢ଼ାଇ ଟେଲିଗ୍ରାଫ ଗ୍ରହଣକରି ଖାତା ଦସ୍ତଖତ କରିବା )

ସୁନ୍ଦରବାବୁ—ଏତେବେଳେ କି ତାରଟାଏ ଆସିଲା ?

( ଉଚ୍ଚସ୍ୱରେ ) ଚନ୍ଦ୍ରୁ, ଆରେ ଚନ୍ଦ୍ରୁ ।

( ଚନ୍ଦ୍ରୁର ପ୍ରବେଶ )

ଆରେ ଏ ଟେଲିଗ୍ରାମ ଖଣ୍ଡ କଣ ପଢିବୁଟି ।

ଚନ୍ଦ୍ରୁ—( ଟେଲିଗ୍ରାମ୍ ଗ୍ରହଣ କରି ଉଚ୍ଚସ୍ୱରେ ) Do'nt start bridegroom. marriage stopped.

ପ୍ରଥମ ବରଯାତ୍ରୀ ଆରେ ଓଡ଼ିଆରେ କହ ହୋ ।

ଚନ୍ଦ୍ରୁ—ବର ବାହାର କର ନାହିଁ । ବିଭାଘର ବନ୍ଦ ହେଲା ।

ସୁନ୍ଦରବାବୁ – କିଏ କରିଛି ?

ଚନ୍ଦ୍ରୁ—ଶ୍ୟାମଘନ ବାବୁ ।

( ସୁନ୍ଦରବାବୁଙ୍କର ମସ୍ତକରେ ହସ୍ତାର୍ପଣ )

୧ମ ବରଯାତ୍ରୀ—କି ଆଶ୍ଚର୍ଯ୍ୟ ! ଶ୍ୟାମଘନବାବୁଙ୍କ ଜାତିଯାଇ କଣ ଅକଡ଼ିଲେ ?

୨ୟ ବରଯାତ୍ରୀ – ହଁ । ସହରିଆ ମହାନ୍ତି—ଘରି ତ ଜାତିଆ !

୩ୟ ବରଯାତ୍ରୀ—ଆଜି କାଲିକା ପାଠପଢ଼ା କନିଆ—କୌଣସି ବାଗରେ ନାହିଁ କରିଥିବ ।

୨ୟ ବରଯାତ୍ରୀ—ଆମ ଚନ୍ଦ୍ରୁ କଣ ଜଡ଼ା ନା ହାଉଡ଼ା, ନା ମୂର୍ଖ ନା ଅସୁନ୍ଦର ଯେ —

୩ୟ ବରଯାତ୍ରୀ—ସେ ଯାହା ହେଉ, ଶ୍ୟାମଘନବାବୁର ଭଲ କି ଅକଲ । ଜବାବ ଦେଇ କାମ ବେଳକୁ ଏମିତିକା କଲା ! ଆମ ପୁଅ କଣ ପଳି ଯାଉଥିଲା ନା ସଡ଼ି ଯାଉଥିଲା ? ଗୋଡ଼ଧରି କରି ଜବାବ ଦେଲା—ସହରିଆଙ୍କର ସେଇ କଥା ପରି । ତାଙ୍କୁ ଆଉ ଟିକେ ବିଶ୍ୱାସ ନାହିଁ ।

୧ମ ବରଯାତ୍ରୀ—ଆରେ ଖାଲି ଗୁଡ଼ାଏ ବକ ହଉଛ କିଆଁ । ସେ ବାଆଷଠା ଫେରରେ ପଡ଼ ନାହିଁ । ଆଉ ବେଳ ଉଚ୍ଛୁର କର ନାହିଁ । ଆସିଲ କିଏ ଆସୁଛ ମୋ ସାଙ୍ଗରେ । ଆଜି ରାତାରାତି ଯାଇ କାଲି ସକାଳଆ କଚେରିରେ ଖଣ୍ଡେ ଚଣ୍ଟକତାରେ ଫୌଜଦାରୀ, ଆଉ ଖଣ୍ଡେ ଖେସାରତ୍‌ରେ ଅଦାଲତ ଦରଖାସ୍ତ କରିବା । ଦାଖସ୍ତ ଅର୍ଜୀ ଠାକରି ସାଫିକରି ଓକିଲ ପରାମର୍ଶ କରି ପହିଲା କଚେରୀରେ ଦାଖଲ କରିବାକୁ ବେଳ ହେଲେତ ହୁଏ ! ଦେଖିବା ସେ କେଡ଼େ ସହରିଆ ଆଉ ଆମେ ବି କେଡ଼େ ମଫସଲିଆ ମହାନ୍ତି ! ପାଞ୍ଚର ଦରଚଳି ସହିତେ ଯଦି କୋଇକରେ ନ ଆଣିଛି ତ ମୋ ନାଁ ନୁହେ ।

ସୁନ୍ଦରବାବୁ—ତମର କଣ ଏତିକବେଳକୁ ବାଜେ ପରାମର୍ଶ କରିବାକୁ ଥିଲା ? ଏଇକ୍ଷିଣି କାମ କମିତି ତୁଲଣା ହେଉଛି ଦେଖ । ପୁଅଟା ଯେ ମଙ୍ଗୁଳି ହୋଇ ସା[illegible]ଲଣି ।

୩ୟ ବରଯାତ୍ରୀ—ତୁମେ ସେଥିପାଇଁ ଭାବନା କରୁଛ କାହିଁକି ? ବରଘର ମୁଣ୍ଡ ଟେକ । ମହାନ୍ତି ଜାତି, ଥିଲା ଘର, ପଢ଼ାପୁଅ ଘଡ଼ିକେ ଏଇକ୍ଷଣି କାହାଣେ କନିଆ ମିଳିବେ । ଗୁହିଁଦେଲେ ନାହିଁ—କଣ କହୁଛ ?

ସକଳେ—ମଲା, ସେ କଥା ପୁଣି କହିବାକୁ ଅଛି !

( ପଟ ପରିବର୍ତ୍ତନ )

### ଦ୍ୱିତୀୟ ଦୃଶ୍ୟ

( ଶ୍ୟାମଘନବାବୁଙ୍କ ଗୃହ )

( ଶ୍ୟାମଘନବାବୁ ଓ ହରି ଆସୀନ )

ହରି—ଆଜ୍ଞା—ତା, ଆରସାହି ବେଣୁଧରବାବୁଙ୍କ ପୁଅ ବିଶୁବାବୁ ଆପଣଙ୍କର ଏ ବିପଦ କଥା ଶୁଣି ଭାରି ଅବଶୋଷ୍ କରୁଅଛନ୍ତି ।

ଶ୍ୟାମ—ହୁଁ ।

ହରି—ଆଜ୍ଞା, ବିଶୁ ସାଙ୍ଗରେ କଥା ବାର୍ତ୍ତାରେ ଯାହା ଜାଣିଲି, ସେ ବଡ଼ ପରୋପକାରୀ ଆଉ ତାର ହୃଦୟଟା ବଡ଼ ମହତ୍ । ଆପଣ ଯଦି କୋଉଠୁଁ ବର ନ ପାଆନ୍ତି ତେବେ, କେବଳ

ଆପଣଙ୍କ ଉପକାର ପାଇଁ, ସେ ନିଜେ········ଆପଣ ତାଙ୍କୁ ଯାହା କହିବେ ସେ ତାହା କରିବେ ।

ଶ୍ୟାମ—ହୁଁ—ମୋର ବାସ୍ତବିକ୍ ବଡ଼ ବିପଦ ।······ବିଶୁଟି ଏକା ବେଶ୍ ପିଲା । ତା ବାପା ଯେତେବେଳେ ଥିଲେ —

ହରି—ବିଶୁବାବୁ ଆହୁରି କହିଲେ କି ଆପଣ ତାଙ୍କର guardian । ଘର କରି ଭଲ ମନ୍ଦ କାହାର ନ ଅଛି—ଯେ ଯାହାର ବିପଦ ଆପଦରେ ପରସ୍ପର —

ଶ୍ୟାମ—ମୁଁ ଜାଣେ ପରା ବିଶୁକୁ ।

ହରି—ସେ ଆହୁରି ମଧ୍ୟ କହିଲେ କି ଆପଣଙ୍କର ବିପଦ ତାଙ୍କର ବିପଦ ନୁହେଁ, ନା ତାଙ୍କ ବିପଦ —

ଶ୍ୟାମ—ତେବେ ବିଶୁର ତ କିଛି ସନ୍ଦେହ ନ ଥିବ । ଆଚ୍ଛା ମୁଁ ନିଜେ ଯାଇ ତାକୁ ଧରିବାନ୍ଧି କରି ଆଣିବି । ଆଜି ରାତି ଭିତରେ ମଙ୍ଗଳ ଦେଇ କାଲି ବାହାଘର କରି ଦେବା ।

ହରି—ତାଙ୍କର ଏଇଟା second year, ଏଥିରେ ବାହା ହେବା ଅବଶ୍ୟ ତାଙ୍କର କ୍ଷତି । କିନ୍ତୁ ସେ ଯାହା ହେଉ ଆପଣଙ୍କୁ ଏ ବିପଦରୁ ରକ୍ଷା କରିବା ପାଇଁ ସେ self sacrifice କରିବେ, ନେବେ ପଇସା କଉଡ଼ି ·········

ଶ୍ୟାମ—ସେ କଥାରେ କିଛି ଚିନ୍ତା ନାହିଁ । ମୋର ଆଉ କିଏ ଅଛି କହ । ସବୁ ତ ତାର । ( ସ୍ୱଗତଃ ) ବିଦ୍ୟାର ଗୁଣ ପରା ! ଆଜି କାଲି କଲେଜପିଲାମାନେ ଭାରି ସ୍ୱଦେଶହିତୈଷୀ ହେଲେଣି । କେଉଁଠି ବଢ଼ିରେ ଧୋଇ ଗଲା, କେଉଁଠି କାଳ ପଡ଼ିଲା, କେଉଁଠି ଝାଡ଼ାକଇ ଲାଗିଲା, ଏଥିପାଇଁ ନିଜେ ଭିକମାଗି ପରର ଉପକାର କରୁଛନ୍ତି । ଆହା, କି altruism, କି self denial, ଶୁଣୁଥିଲି କଲେଜପିଲା-ମାନେ ମିଟିଂକରି ପ୍ରସ୍ତାବ କରିଛନ୍ତି କି କନ୍ୟା ଘରଠାରୁ ପଣ ଗ୍ରହଣ କରିବେ ନାହିଁ । ଆହା ଈଶ୍ୱର ତାଙ୍କର ମଙ୍ଗଳ କରନ୍ତୁ ।

ହରି—(ସ୍ୱଗତଃ) ସତ କହୁଥିଲା ବିଶୁ । ଠିକ୍ ବେଳ ଜାଣି dose ପଡ଼ୁଛି । ( ପ୍ରକାଶ୍ୟେ ) ଆଜ୍ଞା, ତେବେ ଏଇ କଥା ସାର ହେଲା; ମୁଁ ଯାଉଛି ଆଗରୁ ବିଶୁକୁ ଖବର ଦେବି ।

ଶ୍ୟାମ—ହଁ ଆସ । ତମଲାଗି ଏ ଦାୟରୁ ମୁକ୍ତ ପାଇଲି ।

ହରି—ନା, ନା, ସେପରି କିଛି ଭାବିବେ ନାହିଁ । ଏତ ଆମର କର୍ତ୍ତବ୍ୟ କାର୍ଯ୍ୟ—କେବଳ ନିସ୍ୱାର୍ଥ ପରୋପକାର, (ଅନ୍ତିକେ) କେବଳ ନିସ୍ୱାର୍ଥ ପରୋପକାର ! (ଶ୍ୟାମଘନ ପ୍ରତି) ତେବେ ମୁଁ ଆସେ ? ଦଣ୍ଡବତ ।

ଶ୍ୟାମ—ହଁ, ଦଣ୍ଡବତ ।

( ପଟ ପରିବର୍ତ୍ତନ )

### ତୃତୀୟ ଦୃଶ୍ୟ

( କଲେକ୍ଟର କଚେରୀର ଅଫିସ ଘର )

( ହେଡ୍ କିରାନି ଓ ଅନ୍ୟଜଣେ କିରାନି କାଗଜପତ୍ର ଘେନି କାମ କରୁଥିବା )

ହେଡ଼କିରାନି—ଶ୍ୟାମବାବୁ କାଲି ଯେଉଁ ଦଲିଲଟା ଦେଇଥିଲେ ସେଉଟା ଚଞ୍ଚଳ ନକଲ କରିଦିଅ ।

କିରାନି—ଶ୍ୟାମବାବୁ ଆଜି କୁଆଡ଼େ ଗଲେ କି ? ଏତେବେଳ ଯାଏ ତ ତାଙ୍କର ଦେଖା ନାହିଁ ।

ହେଡ଼ କି—କିହୋ ତମେ ଶୁଣିନାହଁ କି ? ତାଙ୍କର ପରା ଝିଅ ବାହାଘର !

କିରାନି – ସତ ସତ, ନା ସେଥରକାପରି—

ହେଡ଼ କି—ନା, ନା, ସୁନ୍ଦରବାବୁ ପୁଅ ସାଙ୍ଗରେ ହେଉଛି ପରା ! —ପାଟଣାପୁର ସୁନ୍ଦରବାବୁ, ସେ ଦିନ ଯେ ରାସ୍ତ ନକଲ ନେଇଗଲେ ହୋ ।

କିରାନି—ଆଚ୍ଛା ସେଗାରେ—

ହେଡ଼ କି—ଆଉ, ତମେ ନକଲଟା ଚଞ୍ଚଳ ସାରିଦିଅ ।

( ଶ୍ୟାମଘନବାବୁର ପ୍ରବେଶ )

କିହୋ ଶ୍ୟାମବାବୁ, ତମ କଥା ଏଇସାତ୍ର ପଡ଼ୁଥିଲି । ଏକା ଛୁଟିଟା grant ହେଲା ନା ? ବାହାଘର କାମ କିପରି ସଫଳ ହେଲା ?

କିରାନି—ଶିରପିଠା ପେଟେ ମିଳିବ ତ ?

ଶ୍ୟାମ – (ଗମ୍ଭୀର ଭାବେ) ଆଜିକାର ଗେଜେଟ୍ କାହିଁ । ପରୀକ୍ଷାଫଳ ବାହାରିଛି କି ?

ହେଡ଼ କି—ହଁ, ବାହାରିଛି । କାହାର ତମେ—ଓ ହୋ, ତମ ଯୋଇଁ I. A. ପରୀକ୍ଷା ଦେଇଛି ପରା ! ତା ନାମ କଣ କି ?

ଶ୍ୟାମ—ଚନ୍ଦ୍ରଶେଖର ଦାସ ।

ହେଡ଼ କି—( ଇତି ମଧ୍ୟରେ ଗେଜେଟ୍ ନେଇ ପତ୍ର ଲେଉଟାଉ ଲେଉଟାଉ) ହଁ, କଣ କହିଲେ, ଚନ୍ଦ୍ରଶେଖର ଦାସ । ବାଃ, ବେଶ୍ ଯୋଇଁଟି ପାଇଲେ, ଭଲ ଯୋଗ । ଈଶ୍ୱରଙ୍କ ଇଚ୍ଛାରୁ ପାସ୍ କରିଥିଲେ···········( ସ୍ୱର ବଦଳାଇ ) କାହିଁ, First Division ରେ ତ ନାହିଁ ।

ଶ୍ୟାମ—କୌଣସି Division ରେ ନ ଥିବ ?

ହେଡ଼ କି—ଆଚ୍ଛା ଦେଖେଁ; ( କିଛିକ୍ଷଣ ଦେଖି ଉତ୍ସାହ ଭରେ ) Yes, here it is—Das Chandrasekhar, Ravenshaw College, Katak. ଏହି ନା ? ବେଶ୍ ସୁଖର କଥା ।

ଶ୍ୟାମ—କାହିଁ ଦେଖେ ! (ହେଡ଼କଲ୍ୟାଣଠାରୁ ଗେଜେଟ୍ ନେଇ ନିଜେ ଦେଖି ପୁନର୍ବାର ଥୋଇଦେଇ ଅତ୍ୟନ୍ତ ବିମନା ହୋଇ ଧୀରେ ଧୀରେ ବୁଲୁଥିବା )

ହେଡ଼ କ—( ଶ୍ୟାମବାବୁର ପ୍ରସ୍ଥାନାନ୍ତର ) ଶ୍ୟାମବାବୁ, ହୋ ଶ୍ୟାମବାବୁ, ପଳେଇଲେ ଯେ, ରହନ୍ତୁ ରହନ୍ତୁ ।

କଲ୍ୟାଣ—ଗୋଟାଏ କମିତିକା odd ମଣିଷ ମ !

ହେଡ଼ କ—ନା, ତା ମନଟା ଚଞ୍ଚଳ ଅଛି କନା ! ଏକୁଟିଆ ଲୋକ ।

କଲ୍ୟାଣ—ମଲ, ଦେଖିଲେ ନାହିଁ, ପାଶ ଖବର ପାଇ ଖୁସି ହେବ କଣ ନା ମୁହଁଟାକୁ ସାରୁ ଖାଇଲା ଭଳି କଲ, କଛି ନକହି କମିତି ବାହାରି ଗଲା । ଗୋଟାଏ କଣ ଖିଆଲ ଘୁସିଛି !

ହେଡ଼ କ—ଲୋକଟା ଟିକିଏ whimsical ।

କଲ୍ୟାଣ—ଏମିତି whimsical ହେଲେ କ'ଣ ଚଳେ ? ଏ ନଗରେ ସମସ୍ତଙ୍କ ଗୋଡ଼ରେ ତେଲ ମର୍ଦ୍ଦନ ନ କଲେ —

ହେଡ଼କଲ୍ୟାଣ—ତମର ସେ Copy ଟା ସରଲା ନା ? ଚଞ୍ଚଳ କର ବାପ । ( କଲ୍ୟାଣର କାର୍ଯ୍ୟରେ ଲାଗିବା )

( ପଟ ପରିବର୍ତ୍ତନ )

## ଚତୁର୍ଥ ଦୃଶ୍ୟ

( ଶ୍ୟାମଘନବାବୁଙ୍କ ଗୃହ )

( ତିଳବଜ ଓ ପୁରୋହିତଙ୍କର ପ୍ରବେଶ )

ତିଳବଜ—ଆସି ସଞ୍ଜ ହେଲ,—ବାବୁ କୁଆଡ଼େ ଗଲେ ? ମଖାନ୍ତିଆ କଚେରି—ସେଠୁ ଦିନ ଏଗାରଟା ବେଳକୁ ଫେରନ୍ତି । ପୁଣି ଚଞ୍ଚଳ ଆସିବେ ବୋଲି କହି ଯାଇଥିଲେ ।

ପୁରୋହିତ—କଚେରିକୁ ଲୋକ ପଠେଇଁ ଥିଲ ?

ତିଳବଜ—ମଲ, କଚେରିରୁ କୁଆଡେ଼ ଦିନ ଆଠଟା ବେଳୁଁ ଅଇଲେଣି !

ପୁରୋ—ତାହାଙ୍କ ବସାକୁ ଯିବା ଯାଇଥିବେ, କବା କଛି ଯୋଗାଡ଼ରେ ବଜାରକୁ ଯାଇଥିବେ ।

ତିଳବଜ—ନା, ସବୁଆଡ଼େ ମଣିଷ ଖୋଜି ଆସିଲେଣି । କୁଆଡ଼େ ନାହାନ୍ତି । ମୁଁ କଣ କରିବି ! ମୋ କପାଳରେ ଏମିତି ହେଲା ! (ରୋଦନ)

ପୁରୋ—ବ୍ୟସ୍ତ ହେଉଛ କାହିଁ ? ବେଳେ ଆସିବେ । (ନାକ ପୁଡ଼ାରେ ନିଶ୍ୱାସ ବାର)—ହୁଁ, କଛି ଚିନ୍ତା ନାହିଁ, ସବୁ ମଙ୍ଗଳ ।

ତିଳବଜ—ଯାହା କହନ୍ତୁ, ମତେ ତ କମିତିକା ଲାଗୁଛି । ମୋ ମନକୁ କଛି ଆସୁନାହିଁ । ସେପରି କଛି ହୋଇ ନ ଥିଲେ—ଏତେବେଳେ କ କୁଆଡ଼େ ରହିବା କଥା !

ପୁରୋ—ହଁ ହଁ, ତା ସତ, ସେ ଟିକିଏ ଏକବାଗିଆ ରକମ ଲୋକ—

ତିଳବଜ—ଏତିକିବେଳକୁ ତାଙ୍କ ଏକବାଗିଆ ପଣ ଥିଲା ନା ? ଦେଖୁଛନ୍ତି ମଙ୍ଗଳା ବରଟାକୁ ନାହିଁ କରଦେଇ ଆଉ ଗୋଟାଏ ଭଲଲୋକ ପୁଅକୁ ଧରିଆଣି ମଙ୍ଗଳ ସାରିଲେଣି । ବରଟା ଘରେ ବସିଛି । ଯାଙ୍କର ଦେଖା ନାହିଁ । ମୁଁ ମାଇପି ଲୋକ କଣ କରେଁ !

( ବରବେଶରେ ବଶୁର ପ୍ରବେଶ )

ବଶୁ—କି ମହାପାତ୍ରେ । ମୋର ମଙ୍ଗଳା ମଙ୍ଗଳ କାମ ତ ସବୁ ଶେଷ ହେଲା । ଆଉ ଶୁଭକାର୍ଯ୍ୟରେ ଡେରି କାହିଁ ?

ପୁରୋ—ଲଗ୍ନ ଆଗେ ହେଉ ।

ବଶୁ—ବାସି ବାହା ହେବ ନାହିଁ । ଶୀଘ୍ର ଶୀଘ୍ର କାର୍ଯ୍ୟ ଆରମ୍ଭ କରନ୍ତୁ ।

ପୁରୋ—ନା, ନା, ବାସି ବାହା ନୁହେଁ । ପୁଣି ଲଗ୍ନଟା ହେବା ତ ଦରକାର । ଏହା ତ ଗୋଧୂଳି ସମୟ । ରାତି ଦୁଇପ୍ରହର ବେଳକୁ ଯାଇଁ ଲଗ୍ନ ସ୍ଥିର ହୋଇଛି ।

ବଶୁ—ଆହେ, ମୋ ସାଙ୍ଗରେ ତ ଜାତକ ମେଳ ହୋଇ ନାହିଁ କି ଲଗ୍ନ ଧରାହୋଇ ନାହିଁ । ଯାହାପାଇଁ ଲଗ୍ନ ସ୍ଥିର ହୋଇଥିଲା ସେ ତ ଗଲା । ମୋର ସେଥିରେ କ'ଣ ? ଧରାବରରେ ଲଗ୍ନ କଣ ହୋ ? କେବଳ ଶୁଭସ୍ୟ ଶୀଘ୍ରଂ ।

ପୁରୋ—ଆଚ୍ଛା ହେଉ, ବାବୁ ଆଗେ ଆସି ଯାଆନ୍ତୁ । ସେ ନ ଥିଲେ —

ବଶୁ—ଆରେ ତାଙ୍କ ଥିବା ନ ଥିବାରେ କଣ ଅଛି ? ଆପଣ ଆଗେ Preliminary—ଗମ୍, ଗମ୍, ଆଗକାମ ଗୁଡ଼ାକ ଲଗାନ୍ତୁ । ସମର୍ପଣ, ହାତଗଣ୍ଠି ବେଳକୁ ସେ ଆସିଯିବେ ଯେ ।

ପୁରୋ—ଆଚ୍ଛା, ଯାଏଁ ଦେଖେଁ—

( ପୁରୋହିତ ଓ ତିଳବଜର ପ୍ରସ୍ଥାନ )

ବଶୁ—(ସ୍ୱଗତଃ) ଯେତେ late ହେଉଛି ମୋର anxiety ସେତେ ବଢ଼ୁଛି । ଏତେ କାଣ୍ଡ କାରଖାନା ହେଲାଣି ଘରେ କେହି ଜାଣନ୍ତି ନାହିଁ । ମୋର ବୁଦ୍ଧି ବଳରେ ଏ ଖେଳଟା ଖେଳୁଛି । ଆଉ କିଛିକ୍ଷଣ ପରେ ମୋର ଜିତା । ପୂର୍ବ ଅପମାନର ପ୍ରତିଶୋଧ, ଦ୍ୱିଗୁଣ ସ୍ତ୍ରୀରତ୍ନ ଲାଭ ।···କନ୍ତୁ, ମୋତେ ବୋଧ ହେଉଛି, ଗୋଟାଏ କଛି ହେଲାଣି ।··· ନୋହିଲେ ଦାଣ୍ଡରେ ବର ବସାଇ ଶ୍ୟାମଘନ ଏତେବେଳଯାଏ କୁଆଡ଼େ ରହିଲା ! ଆମି ଗଣ୍ଡ ହେଲା, ତେବେ ବ ଆସୁନାହିଁ ।

( ହରିର ପ୍ରବେଶ )

ହରି—କହିଲା, ବର । ବଡ଼ grand ଖବରଟା ଏଥିର । ଆରେ, ଗୋଟାଏ ଖବର ଶୁଣିଛୁ, result ବାହାରିଛି । ଚନ୍ଦ୍ରଟା second division ରେ ଉତ୍ତୀର୍ଣ୍ଣ ଯାଇଛି ।

ବିଶୁ—ତେବେ ତ ବଡ଼ ······

ହରି—ଏତେବେଳେ ଆଉ କଣ ? ଆମର success ତ ପ୍ରାୟ complete. Eleventh hour ରେ ଆଉ କଣ ହେବ ?

ବିଶୁ—Really ମୋର ବଡ଼ ଭାବନା ହେଉଛି । ଶ୍ୟାମଘନ ଏ ଖବରଟା ତ ପାଇଥିବ । ତା' ପରେ ତାର ଦେଖା ନାହିଁ । କଣ ଗୋଟାଏ କଲାଣି ପରି !

ହରି—ଦୂର୍ ଦୂର୍ ଆଉ ଏତେବେଳେ କରିବ କ'ଣ ? କୁଛ୍ ପରୱା ନାହିଁ ।···( ହାସ୍ୟ )

ବିଶୁ—ହସୁଛୁ କଣ ମ ? ଛନ୍ଦୁର ମିଥ୍ୟା ଫେଲ୍ ଖବର ଉପରେ ଆମର ସମସ୍ତ plan ଟା ନିର୍ଭର କରେ । ଜାଣିଲୁ !

ହରି—ବାବା, ଏ ଗୃଣକ୍ୟର policy ଭେଦ କରିବ କାହା ବାପର ସାଧ୍ୟ ? Never mind ! Dam care !! ତୁ ଏତେବେଳେ morose ହେଉଛୁ କିଆଁ ? come, ତୋର spirits revive କରିବାପାଇଁ ଗୋଟାଏ ଟୁଟ୍‌କା ଦିଏଁ ।

ବିଶୁ—ମୋତେ ଭଲ ଲାଗୁ ନାହିଁ···ଆଚ୍ଛା ଗାଁ, ଗୋଟାଏ comic ରକମର ଗାଁ ।

ହରି— ···

( ଗୀତ )

( D. L. Roy ଙ୍କ 'ବନ୍ଧୁର୍ ବାରେର ବାରବେଲା' ସ୍ୱରରେ )

"କହିଥିଲେ ବେଦବ୍ୟାସ ଦିନେ ଏହି oracle  
College life, marriage ପାଇଁ,  
time ବଡ଼ suitable, ······ time ବଡ଼ suitable.  
(ଏହି) college life କାଳେ ମୋର ବିଭାଘର ହୋଇଲା,  
(ଆଉ) ପ୍ରେମସ୍ରୋତ, ଓତଃପ୍ରୋତ, ଅବିରତ,  
ପ୍ରାଣେ ପ୍ରାଣେ ବୋହିଲା ରେ ପ୍ରାଣେ ପ୍ରାଣେ ବୋହିଲା ।  
(Text) ବହି ଗୁଡ଼ା ପଢ଼ି ପଢ଼ି ଅର୍ଥ ନ ପାଇଲି ଟେର୍,  
ବସି ମୁଁ ଲେଖିଲି ସଦା, ଉଦା ଗଦା,  
ଲମ୍ବ ଲମ୍ବ love letter, ଲମ୍ବ ଲମ୍ବ love letter ।  
(କିନ୍ତୁ) ବର୍ଷ ଶେଷେ କରାଇଲ ବେକଣ ପରୀକ୍ଷାଟା ଦେଲି ଦେଖା,  
ଦେଖିଲି ଗେଜେଟ୍ ପରେ ବଡ଼ ଅକ୍ଷରରେ  
ଧଳା ଧଳା ମୋରନାମ ଲେଖା,  
ଧଳା ଧଳା ମୋର ନାମ ଲେଖା ।"

ବିଶୁ—ଏତିକି ନା ଆଉ ଅଛି ?

ହରି—ଆହୁରି କଣ ଖୋଜୁଛୁ ନା ? ଏତିକରେ କଣ୍ଟିଲା ନାହିଁ କି !

ବିଶୁ—ବାଃ—ବାଃ, ବେଶ୍, ବେଶ୍,········ହଁ, ଫେର୍ କଣ କହିବା କହ ।

ହରି—ଏତେ ଗୀତଟାର କିଛି effect ହେଲାନାହିଁ ପରି ! ଏତେ ବ୍ୟସ୍ତ ହଉଛୁ କାହିଁକି ? ମୁଁ ତ ଅଛି । Wait and see ।

ବିଶୁ—ତୁ ଯେତେ କହ, ମୋ ମନକୁ ଲାଗୁନାହିଁ । ବଡ଼ anxiety ହେଉଛି ।

ହରି—Anxiety ତ ହବାର କଥା । ଏତେ ବଡ଼ କାମରେ ହାତ ଦେଇ anxiety କାହାର ନ ହୁଏ ! ତେବେ କ'ଣ କି "ନ ବଚେଦମନାରୁହ୍ୟ ନରୋ ଭଦ୍ରାଣି ପଶ୍ୟତି" ।

ବିଶୁ—ଭଦ୍ରାଣି ଦୂରରେ ଥାଉ । ଉଲଟା ହେବାକୁ ବସିଲାଣି । ସେବେ—ମୁଁ ଆଉ ମୁହଁ ଦେଖାଇ ପାରିବି ନାହିଁ ।

ହରି—ତୁ ଭାରି pessimistic, ରହ ଶେଷ ଯାଏ ଦେଖାଯାଉ ।

ବିଶୁ—Watch ଅଛି ? Time ଟା ଦେଖିବୁଟି ।

ହରି—( ଘଡ଼ି ଦେଖି ) ପ୍ରାୟ ୯ ଟା ।

ବିଶୁ - ଆଁ ! ନ'ଟା ? ତେବେ ଆଉ ଆଶା ନାହିଁ ! ( ଉଠି ପଡ଼ )
ହରି, ଭାଇ, ମୋ ଭାଇ, for my sake ତୁ ଟିକିଏ ଯା, ଶୀଘ୍ର ବନ୍ଦୋବସ୍ତ କର ।

ହରି – ବନ୍ଦୋବସ୍ତ ମୁଁ କଣ କରିବ ? ସବୁତ rerdy ଖାଲି ଶ୍ୟାମଘନକୁ wait କରୁହେଉଛି ।

ବିଶୁ—ସେଇଟି ତ ବିପଦ । ସେ ନିଶ୍ଚୟ ଆମ plan ଜାଣି ପାରିଛି । ତାର ପ୍ରତିକାର ମଧ୍ୟ କଲାଣି । ନୋହିଲେ— ଦେଖ୍, ଦେଖ୍, ଭାଇ !

ହରି—ଦେଖିବି କଣ ମ ? ମୋ ହାତରେ କଣ ଅଛି ?

( ବାଦ୍ୟ ଶବ୍ଦ )

ବିଶୁ—( ଚମକି ) What is this ! କି ବାଜା ଶୁଭୁଛି ! ହରି ଦେଖ୍ ଦେଖ୍ ଭାଇ, ଯା, ଯା, be quick ।

ହରି—ଆଚ୍ଛା ମୁଁ ଦେଖି ଆସେଁ । ( ହରିର ପ୍ରସ୍ଥାନ )

( କ୍ରମେ ବାଦ୍ୟ ଶବ୍ଦ ନିକଟତର )

ବିଶୁ—(କାନ ଡେରି ) ନିଶ୍ଚୟ, ନିଶ୍ଚୟ, କିଛି ସନ୍ଦେହ ନାହିଁ । (ବ୍ୟସ୍ତଭାବରେ) ଏ ଶ୍ୟାମଘନର କାମ । ମୁଁ କଣ କରିବ !

ହରି, ହରି, କୁଆଡ଼େ ଗଲୁମ ! ନା, ଆଉ ହେବ ନାହିଁ, ଆସି ପହଞ୍ଚି ଗଲେ ! ମୁଁ ଏ ବେଶ କୁଆଡ଼େ ଥୋଇବ ! ଏହି ସମୟ, ଯାଏଁ ପଳାଏଁ ! ଓଃ କି ବିପଦ, Oh my honour ! Oh God. (ପଳାୟନ)

(ପଟପତନ)

---

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ ।

( ଶ୍ୟାମଘନର ଗୃହପ୍ରାଙ୍ଗଣ, ବିବାହ ବେଦୀ, ଚନ୍ଦ୍ରଶେଖର ବିବାହ-ବେଦୀରେ ବର ରୂପେ ଉପବିଷ୍ଟ, କନ୍ୟା ପକ୍ଷୀୟ ଓ ବର ପକ୍ଷୀୟ ପୁରୋହିତମାନେ ଯଥା ସ୍ଥାନରେ ଆସୀନ, ଜ୍ୟୋତିଷ, ଭଣ୍ଡାରି, ଅନ୍ୟାନ୍ୟ ବ୍ରାହ୍ମଣମାନେ ଆସୀନ । ଶ୍ୟାମଘନବାବୁ କନ୍ୟାକର୍ତ୍ତାରୂପେ ବର ପାର୍ଶ୍ୱରେ ଉପବିଷ୍ଟ । ସୁନ୍ଦରବାବୁ ଓ ବରଯାତ୍ରୀ କରଣ ସାମନ୍ତମାନେ ଉପସ୍ଥିତ ।

( ଶଙ୍ଖ ଓ ହୁଳହୁଳି ଏବଂ ବ୍ରାହ୍ମଣମାନେ ସମ ସ୍ୱରରେ କମ୍ପକମ୍ପିତ ମନ୍ତ୍ରପାଠ କରୁଥିବା )

"ଶ୍ରୀମତ୍ ପଙ୍କଜବିଷ୍ଟରୋ ହରିହରୌ ବାୟୁର୍ମହେନ୍ଦ୍ରୋନଳଃ ।
ଚନ୍ଦ୍ରୋ-ଭାସ୍କର ବିତ୍ତପାଳ-ବରୁଣୋ ଧର୍ମାଧିପାଳାଗ୍ରହାଃ ।
ପ୍ରଦ୍ୟୁମ୍ନୋ ନଳକୁବେର ସୁରଗଜ ଚିନ୍ତାମଣି କୌସ୍ତୁଭଂ,।
ସ୍ୱାମି ଶକ୍ତିଧରସ୍ତୁ ଲାଙ୍ଗଳଧରଃ କୁର୍ବନ୍ତୁ ତେ ମଙ୍ଗଳଂ ॥

କନ୍ୟାପକ୍ଷୀୟ ପୁରୋହିତ—ହାଁ, ଏବେ କନ୍ୟା ବେଦୀକୁ ଆସନ୍ତୁ । ହାତଗଣ୍ଠି ଲଗ୍ନ ହୋଇଗଲା ।

ଶ୍ୟାମଘନ—( ଉଠିପଡ଼ି ) ବେ ପଞ୍ଚୁଆ, ଆଲେ କାଳିଆ ମା ! ଇଲେ ଝିଅକୁ ଆଣ ଲେ ।

(କନ୍ୟା ଲୁଚି ଲୁଚି ବାରିକାଣୀ ସାଙ୍ଗରେ ଧୀରେ ଧୀରେ ଆସି ବେଦୀରେ ଯଥା ସ୍ଥାନରେ ବସିବା । କନ୍ୟା ଆସିବା ସମୟରେ "ମଙ୍ଗଳଂ ଭଗବାନ ବିଷ୍ଣୁ, ମଙ୍ଗଳଂ ଗରୁଡ଼ ଧ୍ୱଜ"—ପ୍ରଭୃତି ଓ ପୂର୍ବ ଶ୍ଳୋକ ପାଠ )

ବରପକ୍ଷୀୟ ପୁରୋହିତ—ହଇହୋ, ତମ ଗାଁରେ କଣ ଏହିପରି ହାତଗଣ୍ଠି ପଡ଼େ ନା ?

କନ୍ୟାପକ୍ଷୀୟ ପୁରୋ—ଆଉ କମିତି ? ତମ ଗାଁରେ କଣ ନାଚ କୁଦ, ଢିଆଁ ମାରି ପଡ଼େ ?

ବର ପୁରୋ—ଆରେ ନା ହୋ, ପାଠ କଣ ଏତିକରେ ସରିଗଲା ?

କନ୍ୟା ପୁରୋ—ମଲା, ଯା' ପୋଥିରେ ଅଛି ନା, ଆମେ କୁଆଡ଼ୁ ବୋଇବୁଁ :

ବର ପୁରୋ—ପୋଥି ପୋଥି କଣ କହୁଛ ମ ?, ପୋଥି କେବେ ଦେଖିଛ ? ଏଇଠି ତ ମୁଁ କର୍ମ ମୂଳରୁ ଦେଖି ଆସୁଛି ଯେ ମନ୍ତ୍ର ଗୁଡ଼ାକ ଭୁଲ, କର୍ମରତ ମଥା ମୁଣ୍ଡ ନାହିଁ । ପୋଥିରେ କ'ଣ ଏଇୟା ଅଛି ?

କନ୍ୟା ପୁରୋ—ମାହାଳିଆ ପାଟି କରୁଛ କାହିଁକି ମ ? ତମେ କଣ ଘର ପାଠୁଆ ! ମଫସଲିଆ ବୋଲି ପୁଞ୍ଜି ନାହିଁ—

ବର ପୁରୋ—ତମେ ବଜାରିଆ ବୋଲି ପୁଞ୍ଜି ନାହିଁ । ତମ ସାତ-ଜନ୍ମରେ କର୍ମାଙ୍ଗୀ ଦେଖିଛନ୍ତି ନା ?

ଶ୍ୟାମଘନ—( ହାତଯୋଡ଼ି ) ଗୋସେଇଁ ଶୁଭକାର୍ଯ୍ୟରେ ବାଧା ପଡ଼ୁଛି । ଆପଣମାନେ ଏତେବେଳେ ବୃଥା ତକରାର କରନ୍ତୁ ନାହିଁ । ଯେପରି ହେଉ କାର୍ଯ୍ୟ ଚଳାଇ ନିଅନ୍ତୁ । ଗୋହି-ଖୋଳାଖୋଳିରେ କ'ଣ ଅଛି ?

କନ୍ୟା ପୁରୋ—ନା, ନା, ସେ ଘର ପାଠୁଆ ପରା, ଦେଖାନ୍ତୁ ତାଙ୍କ ପାଠ ।—ଦେଖୁଛ, ଏଡ଼େ ଅମହତ ଲୋକ ଇଏ, କଥା କହୁଁ କହୁଁ ଜନ୍ମ ଉଠେଇ ପକଉଛନ୍ତି ! ଦେଖ ତ ଭଲା !

ବର ପୁରୋ—ମୂର୍ଖ ଗୁଡ଼ାକ ପାଠ ଗୋଳେଇ ଯିବେ, ଆମେ ଦେଖୁଥିବୁଁ ଆମ ପାଟିରେ କଣ ବେଙ୍ଗ ବନ୍ଧା ହୋଇଛି ?

ପ୍ରଥମ ବରଯାତ୍ରୀ—ତମରିତ ଗୃହଜଳ ସେରକରେ କଥା । ଭୁଷ୍ଟାରେ ଏତେ କଳି କିଆଁ ?

୨ୟ ବରଯାତ୍ରୀ—ନାହିଁ ନାହିଁ, ସିଏ ଲଗନ୍ତୁ । ବାହାଘରରେ ଏଇଟା ମାମୁଲି ।

ଶ୍ୟାମଘନ—ଆମର ଇଆଡ଼େ ଯଉ ପରିକାର ଅଛି । ସେ ଯାହା ଜାଣନ୍ତି ତା' କରିଗଲେ । ଆପଣ କ୍ଷମା କରନ୍ତୁ । କାମ ସରିଯାଉ । ଆଉ ରାତି ଯେ ନାହିଁ ।—ହଁ ଆପଣ ସମ୍ପ୍ରଦାନ ଆରମ୍ଭ କରନ୍ତୁ ।

( ପୁରୋହିତ ବର କନ୍ୟାଙ୍କର ହାତଗଣ୍ଠି ପକାଇବା ).

ପୁରୋ—"ଅଦ୍ୟ ଜ୍ୟେଷ୍ଠେ ମାସି,—ହେଁ

ଜ୍ୟୋତିଷ—( ପାଞ୍ଜି ଦେଖି ) ଶୁକ୍ଳେ ପକ୍ଷେ

ପୁରୋ—ଶୁକ୍ଳ ପକ୍ଷେ, ହେଁ—

ଜ୍ୟୋ—ସପ୍ତମ୍ୟାଂ ତିଥୌ

ପୁରୋ—ସପ୍ତମ୍ୟାଂ ତିଥୌ

ଜ୍ୟୋ—ଭୃଗୁ ବାସରେ

ପୁରୋ—ଭୃଗୁ ବାସରେ

ଜ୍ୟୋତିଷ—ଅନୁରାଧା ନାମ ନକ୍ଷତ୍ରେ

# ପରୀକ୍ଷାର ଫଳ

ପୁରୋ—ଅନୁରାଧା ନାମ ନକ୍ଷତ୍ରେ

ଜ୍ୟୋ—ମିଥୁନରାଶୌ ସ୍ଥିତେ ଶ୍ରୀ ଭାସ୍କରେ

ପୁରୋ—କଣ କହିଲ ? ଭାସ୍କରେ ?

ଜ୍ୟୋ—ମିଥୁନରାଶୌ ସ୍ଥିତେ—

ପୁରୋ—ମିଥୁନ ରାଶୌ ସ୍ଥିତେ ଶ୍ରୀ ଭାସ୍କରେ

ଜ୍ୟୋ—ବୃଶ୍ଚିରାଶୌ ସ୍ଥିତେ ଶ୍ରୀ ଚନ୍ଦ୍ରମସୌ

ପୁରୋ—ବୃଶ୍ଚିରାଶୌ ସ୍ଥିତେ ଶ୍ରୀ ଚନ୍ଦ୍ରମସୌ—

ଯଥା ସ୍ଥାନାବସ୍ଥିତେଷୁ, ପୁଣ୍ୟତିଥୌ, କାଶ୍ୟପଗୋତ୍ରସ୍ୟ, ବରଙ୍କର ନାମ ?

ବରପକ୍ଷୀୟ ପୁରୋହିତ—କାଶ୍ୟପଗୋତ୍ରସ୍ୟ କୁଆଡ଼ୁ ପାଇଲ ?

କନ୍ୟା ପୁରୋ—କି ଗୋତ୍ର ?

ବର ପୁରୋ—ଅଙ୍ଗିରସ ଗୋତ୍ରସ୍ୟ ଶ୍ରୀମାନ ଚନ୍ଦ୍ରଶେଖର ଦାସସ୍ୟ ।

କନ୍ୟା ପୁରୋ—ଅଙ୍ଗିରସ ଗୋତ୍ରସ୍ୟ ଶ୍ରୀମାନ ଚନ୍ଦ୍ରଶେଖର ଦାସସ୍ୟ । ନା, ନା, ଶ୍ରୀଶ୍ୟାମଘନ ଦାସସ୍ୟ; ଏ ଗୋସେଇଁ ସବୁ ଗୋଳମାଳଆ କରି ଦେଲେ । ଏ ପଣ୍ଡିତ ପରା ! କାଶ୍ୟପସ୍ୟ ଗୋତ୍ରସ୍ୟ ଶ୍ରୀ ଶ୍ୟାମଘନ ଦାସସ୍ୟ, ଅଙ୍ଗିରସ ଗୋତ୍ରାୟ, ଶ୍ରୀମାନ ଚନ୍ଦ୍ରଶେଖର ନାମ୍ନେ ବରାୟ, ସ୍ୱାତାୟ, ଶୁର୍ଦ୍ଧାୟ, ଅର୍ଚ୍ଚିତାୟ ତୁଭ୍ୟଂ—

( ସମସ୍ତ ବ୍ରାହ୍ମଣମାନେ କୌତୁକ ସୂତ୍ର ଧାରଣ କରି ନିମ୍ନଲିଖିତ ମନ୍ତ୍ରପାଠ କରିବା )

"ଯଥେନ୍ଦ୍ରସ୍ୟ ଇନ୍ଦ୍ରାଣୀ, ଯଥା ରାମଦେବସ୍ୟ ସୀତା, ଯଥା ରାବଣସ୍ୟ ମନ୍ଦୋଦରୀ, ଯଥା ଧୃତରାଷ୍ଟ୍ରସ୍ୟ ଗାନ୍ଧାରୀ, ଯଥା ଶାନ୍ତନୋ ଗଙ୍ଗା, ଯଥା ନଳସ୍ୟ ଦମୟନ୍ତୀ, ଯଥା ସୌଦାସସ୍ୟ ମଦୟନ୍ତୀ, ଯଥା କନକଚନ୍ଦ୍ରସ୍ୟ ଗୌରୀ, ଯଥା ଚନ୍ଦ୍ରସ୍ୟ ରୋହିଣୀ, ଯଥା ଆଦିତ୍ୟସ୍ୟ ଛାୟା, ଯଥା ବଶିଷ୍ଠସ୍ୟାରୁନ୍ଧତୀ, ଯଥା ସୁଗ୍ରୀବସ୍ୟ ତାରା, ଯଥା ଗୌତମସ୍ୟ ଅହଲ୍ୟା, ଯଥା ଉମା ପଶୁପତେଃ—ଏବଂ ତୁଭ୍ୟଂ ଇମଂ ।"

ପୁରୋ—କନ୍ୟାକର୍ତ୍ତା ଏଥର ବରକୁ ଭୂମି, ଧନ, ରତ୍ନ, ଧାନ୍ୟ, ଗୋ, ଯାନ ଇତ୍ୟାଦି ଯାହା ଅର୍ପଣ କରିବେ କରନ୍ତୁ ।

ଶ୍ୟାମଘନ—ଆମେ ଗୃହିକରିଆ ମଣିଷ ଏତେ କୁଆଡ଼ୁ ପାଇବୁଁ । ଆମର ଗୃହ ଅଛି ନା ଧାନ ଅଛି । ନିତି ଆଣୁ ନିତି ଖାଉଁ, ରବିବାର ଦିନ ଉପାସ ଶୋଉଁ ।

ପ୍ରଥମ ବରଯାତ୍ରୀ—ଏତେ କଥାରେ କଣ ଅଛି । କଣ ଦେବ କହିଦିଅ ।

ଶ୍ୟାମ—ଦେବି ଆଉ କଣ । ଛେଳିଏ ଧାନ ଆଉ ଗୋଟିଏ ଦୁଧିଆଳି ଗାଈ ।

ପ୍ରଥମ ବରଯାତ୍ରୀ—କଣ ଏତିକି ?

ଶ୍ୟାମ—ଆଉ ଗହଣାଗାଣ୍ଠି, ଶଚାର, ବାସନକୁସନ, ଲୁଗା ଦେବାକୁ ଯାହା ମୁଁ ସଙ୍କଳ୍ପ କରିଛି, ସେ ତ ବିଦାହେଲା ବେଳକୁ—

ପ୍ରଥମ ବରଯାତ୍ରୀ—ତା' ସବୁ ଆଉ ଦଅନ୍ତେ ନାହିଁ କି ! ତମ ଝୋଇଁକୁ କଣ ଦେବ କହୁନାହିଁ ।

ଶ୍ୟାମ—ଝୋଇଁକୁ ନ ଦେଇ ଆଉ କାହାକୁ ଦଉଛି କି ?

୨ୟ ବରଯାତ୍ରୀ—ଏତେ କଥାରେ କଣ ଅଛି । ଫିଟେଇ କହୁନାହିଁ । ଆଚ୍ଛା ତମେ ସୁନା ଘଣ୍ଟା, ଚେନ, ସାଇକଲ ଆଉ ମାସକୁ ଟ ୨୦ ଙ୍କା ପଢ଼ାଖରଚ । ଏତିକି ତମ ଝୋଇଁକୁ ନ ଦେଲେ ଚଳିବ ନାହିଁ ।

ଶ୍ୟାମ—ଏ ସବୁ ଦବାକୁ ମୋ ମୁଣ୍ଡ ନା ?

୨ୟ ବରଯାତ୍ରୀ—ମୁଣ୍ଡ ନ ପାଇଲତ ମୁଣ୍ଡକୁ ବଳେଇ ହାତ ବଢ଼େଇଲ କାହିଁକି ?

ଶ୍ୟାମ—ମୁଁ ଦରମା ପାଇବ କେତେ, ମାସକୁ ଟ ୨୦ ଙ୍କା ଦେବ !

୨ୟ ବରଯାତ୍ରୀ—ଦରମାଟା ନାଁ'କୁ । ପାନଖିଆ ଅଣ୍ଟାଖୋସା ବୋଲି ଅମଲାତକ ଶ' ଶ' ଗୁଟି ଆଣୁଛନ୍ତି । ଦରଖାସ୍ତ ଖଣ୍ଡିକେ ଟ ୦ ୫, ନଥି ଖଣ୍ଡିକେ ଟ ୦ ୫, କଥା ପଦେ କହିବାକୁ ଟ ୦ । ଅଣା । ଯୁାଙ୍କୁ ଫେର ଦୟାମାୟା ଅଛି ! ଚଣ୍ଡିଟୋ ଗୁଡ଼ାକ !

ଶ୍ୟାମଘନ—ଆଚ୍ଛା ମୁଁ କରଜ ଦାମ କରି ସାଇକଲଟାଏ ଦେବି ।

ପ୍ରଥମ ବରଯାତ୍ରୀ—ବାକି ଘଡ଼ିଚେନ, ପଢ଼ାଖରଚ ।

୨ୟ ବରଯାତ୍ରୀ—ଆଉ ରାସ୍ତା ଖରଚ ଟ ୫୦୦ ଙ୍କା ।

ଶ୍ୟାମଘନ—ଏ ସବୁ ମୁଁ ଦେଇ ପାରିବି ନାହିଁ ।

୨ୟ ବରଯାତ୍ରୀ—ତାହା ନୋହିଲେ ହାତଗଣ୍ଠି ଖୋଲା ହେବନାହିଁ ।

ଶ୍ୟାମଘନ—ଯାହା ଇଚ୍ଛା—

୩ୟ ବରଯାତ୍ରୀ—ରାଗି ଯାଉଛ କାହିଁକି ଶ୍ୟାମଘନବାବୁ, କଥାଟା ଫଇସଲ କର । ଆଜିକାଲିତ କଲେଜ ପଢ଼ା ବରଙ୍କର ଜରସନନ ସେଇୟା । ବଜାର ଦର ମୁତାବକ ତମକୁ କହୁଛୁଁ ନା ଅଧିକ କହିଲୁଁ ? କୁହ ।

ଶ୍ୟାମଘନ—ମୁଁ କାଲି ଦିନ୍ତ ଚୋରାଣିବେଳେ ଯୋଡ଼ିଏ ମୁଦି ଆଉ ରାସ୍ତା ଖରଚ ଶଏଟି ଟଙ୍କା ଦେବି ।

୨ୟ ବରଯାତ୍ରୀ—ବାହ୍ବା ବେଳ ! ବୋଲ୍ବଲେ ବଡ଼ ଶିକ୍ଷାର କଥା । କଲେଜ ପିଲ୍ ପରା !

ଶ୍ୟାମଘନ—ମୁଁ ଜବାବ ଦେଇପାରୁନାହିଁ । ପାଠ ହେବ ତ ଦେଖାଯିବ—ପରେ । ଏବେ ହାତଗଣ୍ଠି ଖୋଲନ୍ତୁ ।

୨ୟ ବରଯାତ୍ରୀ—ବେଶ୍ କଥାଟା ନିଷ୍ପତ୍ତି କରି କହିଦେଲେ ତ ହେଲା !

ସୁନ୍ଦରବାବୁ—ଆଜ୍ଞା ହଁ ହଁ, ପୁଅଟ ମୋର ଲୁହେଁ,—ଠାକୁର । ସେ ଯାହା କହୁ ତା ଦେବେ, ବେଶୀ ବଢ଼ାଇଲେ କଣ ହେବ । ହାତଗଣ୍ଠି ଖୋଲ ।

( ପୁରୋହିତଙ୍କର ହାତଗଣ୍ଠି ଖୋଲିବା )

( ସମସ୍ତ ବ୍ରାହ୍ମଣମାନେ ଅକ୍ଷତ ଦୁବ ଦେଇ ବରକନ୍ୟାଙ୍କୁ ନିମ୍ନଲିଖିତ ଶ୍ଳୋକ ପଢ଼ି ଆଶୀର୍ବାଦ କରିବା )

ଧେନୁର୍ବତ୍ସପ୍ରଯୁକ୍ତା ବୃଷଗଜତୁରଗାଃ ଦକ୍ଷିଣାବର୍ତ୍ତବହ୍ନି
ର୍ଦିବ୍ୟସ୍ତ୍ରୀ ପୂର୍ଣ୍ଣକୁମ୍ଭ ଦ୍ୱିଜ ନୃପଗଣିକା ପୁଷ୍ପମାଳା ପତାକା,
ସଦ୍ୟୋମାଂସଂ ଘୃତଂ ବା ଦଧିମଧୁରଜତଂ କାଞ୍ଚନଂ ଶୁକ୍ଳଧାନ୍ୟଂ
ଦୃଷ୍ଟ୍ୱା ଶ୍ରୁତ୍ୱା ପଠିତ୍ୱା ଫଳମିହ ଲଭତେ ମାନବୋ ଯିଦ୍ଧିକାମଃ ।

( ପଟ ପରିବର୍ତ୍ତନ )

## ଦ୍ୱିତୀୟ ଦୃଶ୍ୟ

( ନିର୍ଜ୍ଜନ କକ୍ଷରେ ହରି ଓ ବଶୁ ଉପବିଷ୍ଟ )

ହରି—ହିଁ, ତାଂ ପରେ ।

ବଶୁ—ତା'ପରେ ଆଉ କଣ, ବର ଆସି ପହଞ୍ଚିଲା ବେଳେ ମୁଁ ତ ଏକେବାରେ Confounded ହୋଇ ଗଲି । ପୁଣି କଣ କରିବ କିଛି ସ୍ଥିର କରି ନ ପାରି ସେ ଅବସ୍ଥାରେ ଯାହା କରିବାର ତା କଲି ।

ହରି—କିଏ ଏକେବାରେ ନିହାଂ ?

ବଶୁ—ଆଉ ପୁଣି କେଉଁଠି ! ମୁଁ କଣ ଜାଣେ ନାହିଁ ।

ହରି—ମୁଁ ଆଉ କରିବି କଣ, ବାହାଘରଆଜି ସମ୍ମୁଖରେ good boy ହୋଇ ମିଶିଲେ । ତାହାଙ୍କୁ ଯାହା କଲି, ବିଚାରା ଘଡ଼ାଇଲା । ଯାଉଛାଟା ଚାହିଁକି ଥିଲା ?

ବଶୁ—ବାହାଘର କିମିତି ହେଲା ଦେଖ ମ ।

ହରି—ବେଶ smoothly ଖିଆଣ, ପିଆଣ, ଆଦର, ବ୍ୟବହାର ଯିମିତି ordinarily ହୁଏ ।

ବଶୁ—ଆମ plot ଟା baffled ହୋଇ ଗଲେ, ଆଚ୍ଛା ମଜାଟା ହେଲା ଏଥ ।

ହରି—କିନ୍ତୁ ବଡ଼ dearly bought ମଜା । ତୋ ମନ ଜାଣୁଥିବ !

ବଶୁ—କିଛି ଗୋଳମାଳ ହେଲା ନାହିଁ ?

ହରି—ଗୋଳମାଳ । ଦୂର୍ idiot ଏତିକ ବୁଝି ନାହୁଁ ; ଶ୍ୟାମଘନ ତ ଲମ୍ବ ଖମ୍ବ ତାଙ୍କ ଗୋଡ଼ତଳେ ପଡ଼ି ତାଙ୍କ ମୁହଁ ବନ୍ଦ କରିଦେଲା । ଆଉ ସେମାନେ ଯେତେବେଳେ କନିଆକୁ accept କଲେ, ପୁଣି କଣ ସେଥିରେ ଗୋଳମାଳ କରନ୍ତେ ? --ନା କନ୍ୟାତରଫ ନିଜ ନିନ୍ଦାଟାକୁ ଡେଙ୍ଗୁରା ଦିଅନ୍ତେ ?

ବଶୁ—ଆହା, କେଡ଼େ ଫିକରଟା ଚୂରମାର ହୋଇଗଲା ! ପ୍ରତିଶୋଧ ନେବା ତେଣିକି ଥାଉ, self-interest ତେଣିକି ଥାଉ, good name ଟା ମଧ୍ୟ ଗଲା ।

ହରି—ଆରେ ସବୁବେଳେ କଣ success ହୋଇଥାଏ ? Failures are the pillars of sueeess. ପ୍ରତିଶୋଧଟା ନ ହେଲା ବା କଣ ? ଶ୍ୟାମଘନ କଣ କମ୍ ହଇରାଣ ହେଉଛି । କବାଟରେ ପଡ଼ିଥିଲା ତ—କମିତି ଖସିଗଲା କହ । ଆଉ ଶେଷରେ ଆମେ fail ହେଲେ କଣ ହେଲା ? the very effort ଟା ତ noble manly. ଯତ୍ନେକୃତେ ଯଦି ନ ସିଧ୍ୟତି କୋଽତ୍ର ଦୋଷଃ । Out of evil cometh good.

ବଶୁ—ତା ମୁଁ ମନକୁ ଢେର ପ୍ରବୋଧ ଦେଉଛି । କିନ୍ତୁ—ଏଇ ଯେ reputation ଟା ଗଲା—ଓଃ, society ରେ ମୁହଁ ଦେଖାଇବ କମିତି ?

ହରି—ହଃ, ପୁରୁଷପୁଅ ଲାଜ କଣ ? That's more weakness. ଆଜି କାଲି ଯୁଗରେ forward ହେବା ଦରକାର ।

ବଶୁ—ତୁ ଯାହା କହ ଭାଇ ଦାଣ୍ଡ ଘାଟରେ ମୁହଁଟେକି ବାଟ ଚାଲି ହେବ ନାହିଁ ।

ହରି—ଆଚ୍ଛା ମୋ advice ଟା ଶୁଣୁ । ଯେ ଯାହା କହିବ ତାକୁ bravely retort କରିବୁ । ଦେଖ୍, କିଏ କଣ କହିବ ।

ବଶୁ—ଦେଖେଁ ଟିକିଏ ବୁଲିବାକୁ ଆସେଁ ।

( ପ୍ରସ୍ଥାନ )

ହରି—All right, my brave lad, good bye (ଏକାନ୍ତେ) ଯେପରି କର୍ମ ସେହିପରି ଫଳ । କିଏ କଣ କରିବ । ଯାହା ଅର୍ଜିଛୁ ତା' ଭୋଗ କର । ମୁଁ ବାବା ଭଲେ

ଭଲେ ଖସିଗଲା । ଶ୍ୟାମସୁନ୍ଦର ଏଇକ୍ଷିଣି suit ଆଣନ୍ତାତ ଠିକଣା କରେଇ ଦଅନ୍ତା । ସେ ତା କରିବ ନାହିଁ । ଏକେ ତ ବଶୁଟାକୁ ଦେଖି ସମସ୍ତେ ଟାପରା, ଟାହୁଲି କରିବେ । ସେଥିରେ ଯଦି ସେ ଚାଙ୍ଗ ଡେଇବେ ତ ରକ୍ଷା-ନାହିଁ । Shame, Town ଯାକର common butt ତ ହେବ । ଭାରି ଦମ୍ଭକରି ତ ଯାଇଛି । ଦେଖେଁ, ତା ପଛେ ପଛେ ଯାଇ fun ଟା— (ପ୍ରସ୍ଥାନ)

(ପଟ ପରିବର୍ତ୍ତନ)

## ତୃତୀୟ ଦୃଶ୍ୟ

( ଗ୍ରାମ୍ୟ ପଥ । ଧନା ମା ଓ ସାରିଆର ପ୍ରବେଶ )

**ଧନା ମା**—ଆଗୋ ସାରିଆ, ଶୁଣିଲ ନା ଏ ବଶୁଟା ଏଡ଼େ ଭଲ ଭଲ ବୋଲ କହୁଥିଲେ – ଏଡ଼େ ବାଉଳିଆ ! ସମ ସମ ଶ୍ୟାମବାବୁଙ୍କୁ କି ହଟହଟାରେ ପକେଇଲା ଭଲା । ଯାଙ୍କୁ ଧର୍ମ କମିତ ସହିବ ମ ?

**ସାରିଆ**—ଶ୍ୟାମବାବୁର କପାଳ ଭଲ । ନୋହିଲେତ ସରିଥିଲା । ଯଜ୍ଞ ଝିଅ, ସୁନା ମୁଣ୍ଡାରେ ମୁଣ୍ଡେ ।

**ଧନା ମା**—ତା କରମ ଭଲ । ପାଟଣାପୁର ବରଟି ଆଚ୍ଛା । ଭଲ ଖୁବ୍ ସୁଖରେ ରହିବ । ଥିଲାଘର, ତଡ଼ାବର ।

**ସାରିଆ**—ଆଗୋ ଯେ ଯାହା ହାଣ୍ଡିରେ ଗୁଡ଼ଜଳ ପକେଇଛି ନା ! ତା କପାଳରେ ତ ପାଟ ଛତା ଅଛି, ସେ କାହିଁକି ଏ ଅଦାନାଟା ଘରେ ଛିଣ୍ଡା କନ୍ଥା ପିନ୍ଧନ୍ତା ? ବିଧାତା ଘଟ ସୁଦ୍ଧ ପରା । ଏ ଅଳପେଇପେ କୂଟକପଟ କରି କ'ଣ କରିବେ ।

**ଧନା ମା**—ବଶୁ ତ ବର ହେଇ ବସିଥିଲା । ପାଟଣାପୁର ବର ଆଜିଲାରୁ କ'ଣ କଲା ।

**ସାରିଆ**—କରିବ କଣ କିଆଁ ପାଉଁଶ, ଚାଲି ଗାଡ଼ । ପୋଡ଼ାମୁହାଁଙ୍କୁ ମରଣ ନାହିଁ ! ସେ ଗୋଳମାଳରେ କୁଆଡ଼େ ପଳେଇଲା । ତାକୁ ଖୋଜୁଛି କିଏ ? କାହାର ଗରଜ ନାହିଁ !

**ଧନା ମା**—ଆଚ୍ଛା ସେ ନାଜରେ ତ ମୁହଁ ଟେକି ପାରୁ ନ ଥିବ ?

**ସାରିଆ**—ବେହିଆ, ଅଲାଜୁକଙ୍କର ପୁଣି ନାଜ ! ବେହିଆ ପିଠିରେ ଗଛ ହେଲେ ସେ କହିବ ମୋତେ ଛାଇ ହେଲା ।

**ଧନା ମା**—ହେଇଲେ, ତାହାର ପର ତ କିଏ ଇଆଡ଼କୁ ଆସୁଛି, ସେହି ପରା ।

**ସାରିଆ**—ହିଁ ଲୋ, ଇଏତ ସେହି ନାଗର !

**ଧନା ମା**—ଆ, ଆମେ ଟିକିଏ ଉହାଡ଼ ହେଇଯିବା ।

(ପ୍ରସ୍ଥାନ)

(ବଶୁର ପ୍ରବେଶ)

**ବଶୁ**—ହରି ବୁଦ୍ଧିରେ ପଡ଼ି ଭଲ କାମ କଲି । ଯୁଆଡ଼େ ଗଲା ସିଆଡ଼େ ତ ମୋତେ ଟାପରା କଲେ । ଏ ବଦମାସ ବଜାରୀ ଟୋକା ଗୁଡ଼ାକ ବା ଘୁରୁଡ଼ ନାହାନ୍ତି ।

(କେତେ ଗୁଡ଼ାଏ ପିଲା "ହେଇରେ ବଶୁ", "ଧୋରେ ବଶୁ ଧୋ" "ଗଲାରେ ଶିଶୁପାଳ" ପ୍ରଭୃତି କହି ତାଳମାରି ପ୍ରବେଶ କରନ୍ତେ ବଶୁ ସେମାନଙ୍କୁ ମାରିବା ପାଇଁ ଗୋଡ଼ା-ଇବା ଓ ସେମାନେ ପଳାଇ ଅନ୍ୟ ବାଟରେ ପୁଣି ବାହାରିବା ଓ ପୁଣି ପଳାଇବା)

( ହଠାତ୍ ହରିର ପ୍ରବେଶ )

**ହରି**—କିରେ ବଶୁ କ'ଣ କଥା କଣ ?

**ବଶୁ**—କଥା କ'ଣ ! ତୋହରି ବୁଦ୍ଧିରେ ପଡ଼ି ମୁଁ ଘରୁ ବାହାରିଲି । ଦେଖୁଛୁ ନା ଏ scoundrel urchin ଗୁଡ଼ାଙ୍କର impertinence.

**ହରି**—(ହସି) ଓଃ, ଏଥିପାଇଁ ତୁ ଏଡ଼େ temper lose କରୁଛୁ କାହିଁକି ? ଆ ତୋତେ ଘରେ ଛାଡ଼ିଦେଇ ଆସେଁ ।

(ବଶୁର ହାତଧରି ହରିର ପ୍ରସ୍ଥାନ)

(ବାଳକମାନଙ୍କର ତାଳମାରି ନିମ୍ନଲିଖିତ ଗୀତ ଗାଇ ଗାଇ ପ୍ରବେଶ)

( ବାରୁଆଁ—କବାଲି )

ମନବାଇ ମନବାଇ
ପାପ ତାପମୟ ଦୁସ୍ତର ଭବନଦୀ
ପାର ତୁ ହେବୁ କିରେ ନାହିଁ । ଯୋଷା ।

କର ହରି ପଦତରୀ ଭରସା ନିରନ୍ତର,
ଧର ଧର ପ୍ରେମମୟ ନିର୍ମଳ ଅନ୍ତର;
ସ୍ମର ସଦା ହରି ହରି ତାରକ ମନ୍ତ୍ର,
ଅନାୟାସେ ହବୁ ଭବ ପାରି । ୧ ।

କୂଟ କପଟ ମତି ପରିହର ପରିହର,
ପାପେ ତାପେ ଆଉ କାହିଁକି ଜ୍ୱଳି ମର,
ଲଭିବେ ସୁନ୍ଦର ଅମୃତ ନିର୍ଝର,
ମଙ୍ଗଳ ଆଳୟେ ଯାଇ । ୨ ।

(ଯବନିକା ପତନ)



# ୧୯୩୯ ଚହଟ ଚଉତିଶା

କ କଂଗ୍ରେସ ଗୁଡ଼ିଣ ଗାଦି କଲେ କାଶୀବାସ
କାନମନ୍ତ୍ର କୁଣ୍ଡେଇଲେ ବିଶ୍ୱନାଥ ଦାସ ।
କରମକୁ ଠୁକି କେତେ ହେଲେ ବଳି ବଳି
କନକା କୁହ୍ନାଇ ହେଲେ କବାଟକୁ କଳି । ୧ ।

ଖ ‘ଖାଟରେ’ ମନ୍ତ୍ରୀ ଚଢ଼ା ହୋଇ ଶୋଇବାଇଲେ ଖଡ଼ା
ଖିନ୍ଦା ଖାଇ ଖସଡ଼ିଲେ ଆନ ବଡ଼ା ବଡ଼ା
ଖଲକୋଟ ଧାଇଁ ଧାଇଁ ହୋଇଲେ ବେଦମ୍,
ଖଦଡ଼-ପ୍ରଚାର ଦେଶେ ଚାଲେ ଧମାଧମ୍ । ୨ ।

ଗ ଗାନ୍ଧୀ ମହାତ୍ମା ଧଇଲେ କଂଗ୍ରେସ ସୁକାନ,
ଗେହ୍ଲାପୁଏ ଗୋସେଇଁଙ୍କ ଝିଙ୍କି ଦେଲେ କାନ,
ଗୋରା ଲାଟ ସଙ୍ଗେ ଭେଟ କରି ଥରି ଥରି,
ଗଣ୍ଡିଲି ଗୋଟାଇ ବାହୁଡ଼ିଲେ ନିଜ ଘରି । ୩ ।

ଘ ଘମାଘୋଟ ଲାଗିଗଲା ଲଢ଼େଇର ଧୂମ୍
ଘାଲି ପାରି ଆମେ କାନ୍ତୁ ମାରିଲୁ ଉଷୁମ୍ ।
ଘଣ୍ଟ ଘୋଡ଼ାଇ ରଖିଲେ ମାଆ ବାଶୁଲେଇ,
ଘାବୁରି ନହୋଇ ଆମେ ନାଚୁ ଥେଇ ଥେଇ । ୪ ।

ଙ ଅଫିମ, ଗଞ୍ଜେଇ, ଗୁଳି, ଅମିଶା ଯେ ନିଶା,
ଅକାଳରେ ପଡ଼ିଗଲା ତାଙ୍କୁ ଶନିଦଶା ।
ଅପାଠୁଆ ପାଠ ପଢ଼ି ହେଲେ ଅବଧାନ
ଅଢ଼େଇ ଦିନରେ କାଟି ପଣ୍ଡିତଙ୍କ କାନ । ୫ ।

ଚ ଚୁହାରି ଚୁହିଦା ଯାଏ ଦିନୁ ଦିନ ବଢ଼ି,
ଚାଉଳ ଚିନିର ଭାଉ ଚହୁଁ ବଳି ଚଢ଼ି ।
ଚହ୍ଲା ଚାରୁପାଣି ଖାଇ ବଢ଼ିଗଲା ବୁଦ୍ଧି
ଚାରିଖୁରା ଟେକ ହେଲେ ଓଡ଼ିଆଏ କୁଦି । ୬ ।

ଛ ଛୁଇ ପତାପତି ହେଲେ ବଡ଼ ବଡ଼ ନେତା
ଛୁଙ୍କି ପାଡ଼ି ଗଲେ ରହି ଯେତେ ବାଡ଼ିବତା ।
ଛୁଦ ଧର୍ମଘଟ ଦେଖି ସରକାର କାବା,
ଛେରି ମୂତି ଏକାକାର, ବୋଲ “ବାବା ବାବା” । ୭ ।

ଜ ଜମିଦାରଙ୍କର ଯାନ ହୋଇଲା ଜବଦ
ଜାରିଜୁରି ଫୁରଫାରି ହୋଇଗଲା ରଦ୍ଦ ।
‘ଜବାବ-ଜିନ୍ନାଙ୍କ ଦେଖି ଜବର ଜୁଲୁମ
ଜବାହାର ଲାଲଙ୍କର ଅକଲ ଗୁଡୁମ୍ । ୮ ।

ଝ ଝାଡ଼ଖଣ୍ଡ ମୁଲକରେ ହେଲା ଗଣ୍ଡଗୋଳ
ଝଟାପଟା ଲାଗି ସବେ ହେଲେ ଉଲଟୋଳ
ଝିଙ୍କି ଝିଙ୍କି ସଭିଙ୍କର ହୋଇଗଲା ଥଣ୍ଡା;
ଝଟ୍ ମିଳିଗଲା ପହୁଁ ଗୋଟା କେତେ ଅଣ୍ଡା । ୯ ।

ଞ ନେହେରୁ ନିମନ୍ତା ପାଇ ଚଳିଗଲେ ଚୀନ୍
ନାଚିଲେ ଭାରତବାସୀ ତାକ୍ ଧୀନା ଧୀନ୍ । ୧୦ ।

ଟ ଟିପ-ଟାପି ହୋଇଗଲା ଶସ୍ତା ଫେସନ୍,
ଟାଉ କରି ଟେକ ଗଲେ ଓଡ଼ିଆ ନେସନ୍ । ୧୧ ।

ଠ ଠକ ଟାଉଟର ଚାଲେ ଦେଶଟା ତମାମ୍,
ଠୁଲେ କେହି ନ ଧରନ୍ତି ଠିକେ ରାମ୍ ରାମ୍ । ୧୨ ।

ଡ ଡରି ନୂଆ ଆଇନକୁ ମହାଜନ ପୁଅ,
ଡୋରି ବାନ୍ଧି ଥଳିଆରେ ବୁଲାଇଲେ ମୁହଁ । ୧୩ ।

ଢ ଢୋକ ଗିଳି ରହିଗଲେ କଂଗ୍ରେସ ମୁଖିଆ
ଢାଉଁ ଢାଉଁ କଲେ କୁଳ ଢଳିଆ ଢଳିଆ । ୧୪ ।

ଣ ନାଳୁଆ ମୁହଁରେ ନେତା ହେଲେ ଭଣ ଭଣ,
ନାକ କଟା କଟି ହୋଇ ଦେଖାଇଲେ ପଣ । ୧୫ ।

ତ ତରକତାରକ କାମ ଚାଲଇ ବେଜାପ୍ତ,
ତମ ଆମ ଭକ୍ତଙ୍କର ପ୍ରାଣ ଯାଯ୍ତ ଯାଯ୍ତ ।
ତମ୍ପ ପରି ଗର୍ଜି ଯେତୁ ଝାଡ଼ିଦେଲେ ବାତ୍
ତାଙ୍କର ପ’ବାର ଆନେ ହେଲା ଖତ୍‌ମାତ୍ । ୧୬ ।

ଥ ଥାଟ ବାଟ ଦେଖାଇଲେ କିଷାନର ଦଳ,
ଥମ ଥମ ହୋଇ ଥରେ କଷିବାକୁ ବଳ ।
ଥପ କରି ଗଲେ ରହି କାହିଁକି କେଜାଣେ,
ଥୋମଣି ତାଙ୍କର ଆଉ ଦିଶୁନାହିଁ କେଣେ । ୧୭ ।

ଦ ଦରିଆ ପାରିରେ ତେଣେ ହେଲେ ଲଢ଼ାଲଢ଼ି,
ଦରବପାକର ଏଠି ଦର ଗଲା ଚଢ଼ି ।
ଦୋକାନୀ ଓ ଦାଣ୍ଡମାନେ ମାରି ନେଲେ ଦାଉଁ
ଦରିଦ୍ର କାଙ୍ଗାଳୀ ଖାଲି ହେଲେ କାଉଁ କାଉଁ । ୧୮ ।

ଧ ଧରାପରା ଓଡ଼ିଶାରେ ଲାଗେ ଧମାଧମ୍
ଧୂଆଁ ବାହାରିଲା କା’ର ଫିଟିଗଲା ଦମ୍;
ଧୂ-ଧୂ ହୋଇ ଏଣେ ଲାଗିଗଲା ନିଆଁ,
ଧେଇ ଧେଇ ନାଚ କେତୁ ମାରିଦେଲେ ଡିଆଁ । ୧୯ ।

**ନ** ନରମାନ, ଖା'ରେ, ବେନ ଜନେ ଏକା ଦଶା,
ନାକ କାନ ମୋଡ଼ି ଆନେ ମାରହେଲେ ମଶା;
ନମସ୍ତେ ନମସ୍ତେ କରି ପଟେଲଙ୍କ ପଦେ
ନଉକରୀ ଝଣ୍ଡାମାନ ରଖିଲେ ସ୍ୱପଦେ । ୨୦ ।

**ପ** ପାର୍କ ଆଉ ସିନେମାର ବଢ଼ିଲା ପ୍ରାଇସ୍,
ପ୍ରେମଲୀଳା ଫ୍ଲୁଟରେ ନୃତ୍ୟ ନାଇସ୍ ନାଇସ୍,
ପିଲା ଓ ପିଲୀଙ୍କ ତାହା ହେଲା ପ୍ରିୟଧାମ,
ପଛରେ ରହିଲା ପଢ଼ା ଆଉ ସବୁ କାମ । ୨୧ ।

**ଫ** ଫ୍ରି—ଲଭ୍' ଫ୍ରି—ଲଭ୍' ପଡ଼ିଗଲା ଡାକ
ଫରକ ଉଠିଲା ଟୋକା ଟୋକୀଙ୍କର ନାକ,
ଫରୱାର୍ଡ ମାର୍ଚ୍ଚ କରି ଚାଲିଲେ ସକଳ
ଫୁଲ୍ (fool)ହୋଇଗଲେ ରହି ଯେତେ ବୁଢ଼ାଦଳ ।୨୨।

**ବ** ବଲ୍ଲଭ ଭାଇ, ବୁଲା ଭାଇ ବେନି ଖାର ମିଳି,
ବରବାଦ କରି ଦେଲେ ବିପକ୍ଷକୁ ଦଳି;
ବଳି ବଳି ହେଲେ ଯାହା ଗାନ୍ଧି ମହାରାଜ,
ବେଦ ଧ୍ୱନି ବଳି ତାର ବାଜିଲା ଆୱାଜ ।୨୩।

**ଭ** ଭାଗୁ ବାବୁ ଭଲା ଭଲ ବସାଇଲେ କଳ,
ଭୁସି କରି ମାରିବାକୁ ମଶାଙ୍କର ଦଳ;
ଭଉଁ ଭଉଁ ହୋଇ ମଶା ନିଜ ଦଳ ଭିଡ଼ି
ଭେଟ ଦେବା ପାଇଁ ଗଲେ ୱାର୍ଦ୍ଧାକୁ ଉଡ଼ି ।୨୪।

**ମ** ମଠ-ମନ୍ଦିର ଆଇନ ହୋଇଗଲା ପାସ୍;
ମହନ୍ତ ମାତାଙ୍କଙ୍କର ଉଡ଼ିଗଲା ଆଶ୍;
ମାହାର୍ଦ୍ଧର କରାମତି ହୋଇଲା ବେକାର,
ମନ୍ତ୍ରୀମାନେ ଅହଙ୍କାରେ ଛାଡ଼ିଲେ ହୁଙ୍କାର, ।୨୫।

**ଯ** ଯାଚିଲା ମାଲକୁ ଗୁଣ୍ଡ କଂଗ୍ରେସ—ଗୋସାଇଁ,
ଯାହା ଲଗାଇଲେ ଯାଇ ଆକାଶକୁ ଛୁଇଁ । ।୨୬।

**ର** ରାଜେନ୍ଦ୍ରପ୍ରସାଦଙ୍କର ବଢ଼ିଲା ରବାବ୍,
ରାଷ୍ଟ୍ରପତି ପଦ ପାଇ ଖାଇଲେ କବାବ୍;
ରାଜକୋଟେ ଗାନ୍ଧିରାଜା କଲେ 'ରାମ୍ ରାମ୍'
ରୋଜା ରଖି ନ ମିଳିଲା କଣ୍ଡାକର ଦାମ୍ । ।୨୭।

**ଲ** ଲଙ୍କା ଜିତିବାର ଲାଗି ଲଗାଇଣ ଗୁଲ୍,
ଲମ୍ଫ ଦେଇ ଲେଉଟିଲେ, ଜବାହାର ଲାଲ୍ । ୨୮ ।

**ୱ** ୱରା, ଗୁଲଗୁଲା କରି ନି-ପାଟିଭ ଗୁଟ୍,
ବଡ଼ ବଡ଼ ନେତାମାନେ ଦେଖାଇଲେ ଥାଟ୍ । ୨୯ ।

**ଶ** ଶ୍ରୀନିବାସ ଆୟଙ୍ଗାର ହୋଇ ଶିଙ୍ଗି ଶିଙ୍ଗି
ଶତ୍ରୁଶିରେ ଶତ ବାକ୍ୟବାଣ ହେଲେ ଫିଙ୍ଗି । ।୩୦।

**ଷ** ଷଣ୍ଢ ସଂଖ୍ୟା ବଢ଼ାଇଲେ ଆମ ବଡ଼ ଲାଟ
ଲଙ୍କା ତେଜ ଧରିନେଲୁ ଆମେ ସିଧାବାଟ । ।୩୧।

**ସ** ସାବାସ୍ ସୁଭାଷ ବୋଷ ଗର୍ଜି ସିଂହ ବତ୍
ସାରା ଜମ୍ବୁଦ୍ୱୀପେ ଦେଖାଇଲେ କସରତ୍ । ।୩୨।

**ହ** 'ହା-ରାମ' ହୁଙ୍କାରେ ହିନ୍ଦୁ, 'ହା-ରାମ' ପଠାଣ
'ହକ' ଦେଖାଇଲେ ନିଜ ହକ୍‌ମତ ଟାଣ;
ହରେକୃଷ୍ଣ ନୀଳକଣ୍ଠ ହେଲେ ହଣା ହଣି,
ହରିରାଣ ହେଲେ ଥୋକେ ହୋଇ ଟଣାଟଣି । ।୩୩।

**କ୍ଷ** କ୍ଷୀର ଧାର ଭଳି ମିଠା ଏ କବିତା ସାର
କ୍ଷାର ପରି ମଣେ ଯେବେ—ଲେଖକ ନାଚାର !



# ୧୯୪୦ ମସିହା କୋଇଲି

କ-ରେ କଂଗ୍ରେସ ଦଳ ମନ୍ତ୍ରୀ ପଦ ଛାଡ଼ି,
ଶଶୁର ଘରକୁ ଯାଇ ବଢ଼ାଇଲେ ଦାଢ଼ି, ଲୋ କୋଇଲି ।

ଖ-ରେ ଯେ ଖଲକୋଟ ଜଲକୋଟ ସାର
ଖର ବଚାସେ ଗୁଲାଲେ ଉଜାଣି ପହଁର, ଲୋ କୋଇଲି ।

ଗ-ରେ ଟି ଗୋଦାବରୀ "ଷ୍ଟଣ୍" ରଢ଼ ଛାଡ଼ି
ଗୋବର ଗଡ଼ଆ ମଧ୍ୟେ ପଡ଼ିଲେ କଗୁଡ଼ି, ଲୋ କୋଇଲି ।

ଘ-ରେ ଘୋଡ଼େଇ ହୋଇ ପଂଡ଼ିତେ ଡାକୁଣୀ
ଘୁମ ଘୋରେ ମାରି ହେଲେ ଦାଢ଼ିର ଉକୁଣୀ, ଲୋ କୋଇଲି

ଙ-ରେ ଅକଲ ବନ୍ଦ ସୁଭାଷ ଦଳଆ
ଅନ୍ଧକୂପ ସତ୍ୟାଗ୍ରହେ ହୋଇଗଲେ ଠିଆ, ଲୋ କୋଇଲି ।

ଚ-ରେ ଚେମ୍ବାରଲେନ୍ ହେବାରୁ ଥକାଇ
ଚାଲ୍ଲାଇ ଚର୍ଚିଲ ଚଷ୍ଟ ଉଠିଲେ ଚେଙ୍ଗାଇ, ଲୋ କୋଇଲି ।

ଛ-ରେ ଛନକା ପଶି ଫରାସୀ ମୁଲକେ
ଛିନ ଛତ୍ର ହୋଇଗଲା ନେସର ପଲକେ, ଲୋ କୋଇଲି ।

ଜ-ରେ ଜନାବ ଜିନ୍ନା ଜବର ଜୁଲମ୍
ଜାରି କରି ପାକସ୍ଥାନେ କଲେ ଆଲୁ ଦମ୍, ଲୋ କୋଇଲି ।

ଝ-ରେ ଝଗଡ଼ ହୋଇ ମନ୍ତ୍ରୀ ପଦ ପାଇଁ
ଝୁଣ୍ଟାରେ ପଡ଼ିଲେ କେତେ ଜଣ ଝିଟ ଗୁଇଁ, ଲୋ କୋଇଲି ।

ଞ-ରେ ଅରଣା ହୋଇ ହିଟ୍‌ଲର ଷଣ୍ଢ
ଅକାରଣେ ପୋଡ଼ ପୃଥ୍ୱୀ କଲା ଲଣ୍ଡ-ଭଣ୍ଡ, ଲୋ କୋଇଲି ।

ଟ-ରେ ଟାକରା ମାରି ମୁସୋଲିନୀ ବର
ଟାଉ ଟାଉ ଗିଲୁଁ ଗିଲୁଁ ଲାଗିଲା ଚାମ୍ପିର, ଲୋ କୋଇଲି ।

ଠ-ରେ ଠାକୁର ବାଡ଼ ଗୁଲାଲେ କଂଗ୍ରେସ
ଠୁଳେ ଠ-ବର୍ଣ୍ଣ ଲ ଫଳ ପାଇଗଲା ଦେଶ, ଲୋ କୋଇଲି ।

ଡ-ରେ ଡ-ଗ୍ୟାଲା ବୀର ଇଂଲଣ୍ଡରେ ଥାଇ
ଡ୍ୟାମ୍ କେଆର୍ କରିଦେଲେ ଡ଼ିଣ୍ଡିମ ବଜାଇ, ଲୋ କୋଇଲି

ଢ-ରେ ଯେ ଢୋ-ଢା ଫୁଟାଇ କମାଣ,
ଢାଉଁ ଢାଉଁ ବୋମା ନାଦେ ଉଡ଼ିଯାଏ ପ୍ରାଣ, ଲୋ କୋଇଲି ।

ଣ-ରେ ନେହରୁ ପୁଅ ଜବାହାର ଲାଲ
ନମତା ଖାଇବା ପାଇଁ ଗଲେ ଦୁଇ ସାଲ, ଲୋ କୋଇଲି ।

ତ-ରେ ତମାମ୍ ଦେଶେ ଲାଗିଗଲା ଧୂମ୍
ତେଆ ଆଉଜାଙ୍କର ଶକ୍ତିଲା ଉଷ୍ମ, ଲୋ କୋଇଲି ।

ଥ-ରେ ଥାପୁଡ଼ା ମାରି ଦେଖାଇ ଘ୍ରୁଣ୍ଡ
ଥରିଗଲା ହିଟଲର ସାନ ଦେଶ ଚୂର୍ଣ୍ଣ, ଲୋ କୋଇଲି ।

ଦ-ରେ ଦରବ ତାଜ ବଢ଼ିଗଲା ଭାଉ
ଦଲ ଛେଞ୍ଚି ବେପାରୀଏ ମାରି ନେଲେ ଦାଉ, ଲୋ କୋଇଲି

ଧ-ରେ ଧମକ ଖାଇ କଏ ଚିତ୍‌ମାତ
ଧକେଇ କାନ୍ଦଇ କଏ ମୁଣ୍ଡେ ଦେଇ ହାତ, ଲୋ କୋଇଲି ।

ନ-ରେ ନେହୁରା ହୋଇ ପଶେ କେ ଶରଣ
ନଚ୍ଛୁଡ଼ବନ୍ଧା ବ୍ରିଟେନ ଏକା କରେ ରଣ, ଲୋ କୋଇଲି ।

ପ-ରେ ପଟେଲ ଦଳ ହୋଇଲେ ପ୍ରବଳ
ପେଞ୍ଚ ମାରି ପଲାଟିକ୍‌ସ କରିଲେ କବଳ, ଲୋ କୋଇଲି ।

ଫ-ରେ ଫଜଲହକ୍ କାଢ଼ି ଡାଲ୍ ଭାତ୍
ଫୁଙ୍କିମାରି ଉଡ଼ାଇଲେ ବଡ଼ାବନ୍ଧା ବାତ୍, ଲୋ କୋଇଲି ।

ବ-ରେ ବଙ୍ଗଳ ଜଳ ମେଣ୍ଟାଇବ ବୋଲି
ବୁଦ୍ଧିମନ୍ତ ହନୁ ଦେଲା ଛେନା ତକ ଗିଳି; ଲୋ କୋଇଲି ।

ଭ-ରେ ଭରିଲା ଦେଶେ ଘାଉପୁଣି ନ୍ୟାଯ୍ୟ
ଭେକ-ଧାରୀ ଭୋପାଙ୍କର ଭଣ୍ଡାମି ବେଜାୟୁ, ଲୋ କୋଇଲି

ମ-ରେ ମହାତ୍ମା କରି ଲଟପଟ race
ମେଣ୍ଟାଇଲେ ବଡ଼ଲାଟ ଭେଟର ଅଫ୍ୟେସ୍ ଲୋ କୋଇଲି ।

ଯ-ରେ ଯାଚରା ଦେଖି ଲାଟ ଦଲ୍ ଖୋସ
ଯାଚିଲେ ଦକ୍ଷୀକା ଲଡ଼୍ ପାଇ ଆମେ ତୋଷ, ଲୋ କୋଇଲି

ର-ରେ ରବାବ କରି ଖାକ୍‌ସାର ଦଳ
ରହିଗଲେ ମାଟିପରି କଟୁ ନେଇ ବଳ, ଲୋ କୋଇଲି ।

ଲ-ରେ ଲର୍ଡ଼ ଲିନ୍‌ଲିଥ୍ ଗୋ ହୁସିଆର୍ ଲାଟ
ଲାଗିଗଲେ ଖୋଜିବାରେ ସମାଧାର ବାଟ, ଲୋ କୋଇଲି ।

ବ-ରେ ଓ୍ୟାର୍ଧା ହେଲା ନୂଆ ରାଜଧାନୀ
ବାରଦ୍ୱାରୀ ବସି ତହିଁ ହୋଉଛି କୁମନ୍ତ୍ରଣା, ଲୋ କୋଇଲି ।

ଶ-ରେ ଶରତ ବୋଧ ହେଲେ ଅମାନିଆ
ସିକୁଲ କାଟିଣ ଦମ୍ଭେ ହୋଇଗଲେ ଠିଆ, ଲୋ କୋଇଲି ।

ଷ-ରେ ଯେ ଷଣ୍ଢ ସବୁ ଯାପାନ ହୁଙ୍କୁଡ଼ି,
ଶାର୍ଦ୍ଦୂଳ ସିଂହର ଦେଲ ନାକ କାନ ମୋଡ଼ି, ଲୋ କୋଇଲି ।

ସ-ରେ ସାହସେ ଗାନ୍ଧି ସ୍ୱୟଂ ସେନା ପତି
ସମରକୁ ପେଷି ଦେଲେ ସେର ସେର ରଥୀ, ଲୋ କୋଇଲି ।

ହ-ରେ ହୁକୁମ ଶୁଣି କେତେ ହଗି ହେଲେ
ହାତ ମାରି କପାଳେ କେ ରଣେ ଚାଲିଗଲେ, ଲୋ କୋଇଲି ।

କ୍ଷ-ରେ କ୍ଷମତା ଖ୍ୟାତି ବଢ଼ାଇବା ପାଇଁ
କ୍ଷେପିଲେ ଯେତେକ ଭାବ କିଛି କ୍ଷତି ନାହିଁ, ଲୋ କୋଇଲି ।



# ୧୯୪୨ ବର୍ଷ ଚଉତିଶା

କ  କନା ସାଙ୍ଗେ ସାଙ୍ଗେ ଦାନା ହୋଇଗଲା ପାର୍
ଖ  ଖଣ୍ଡି ବେପାରୀଙ୍କୁ ଗଲା ପଡ଼ ପୁଅବା'ର ।

ଗ  ଗୁଆ ବିନା ପାନଖିଆ ହୋଇଲେ ବେଦମ୍,
ଘ  ଘମାଘମ୍ ବୋମା ମାଡ଼ ଗୃଲେ ଧମାଧମ୍ ।

ଙ  ଙ ପରି ମୁହଁ ମୋଡ଼ ହିଟଲର ଭ୍ରମେ
ଚ  ଚର୍ଚ୍ଚିଲ ଚର୍ଚ୍ଚିଙ୍କ ସ୍ୱର ଚଢ଼ାଇ ଚରମେ ।

ଛ  ଛକ ଛକ ଉଣ୍ଡି ଜାପ ଛଞ୍ଚାଣର ଝାମ୍ପ,
ଜ  ଜବର ଧଉଡ଼ା ଖାଇ ଡାକେ ବାପ୍ ବାପ ।

ଝ  ଝଗଡ଼ ହୁଅଇ ତେବେ ବେହିଆ ସମାନ
ଞ  ଞ-ଞ, କରି ଧାଏଁ ଟେକ ନାକ କାନ ।

ଟ  ଟଙ୍କା, ରେଜା ହଜି ଗଲା ନୋଟ ହେଲା ଶସ୍ତା
ଠ  ଠକଙ୍କ ଦାଉରେ ଲୋକେ ହୋଇଲେ ହିନସ୍ତା ।

ଡ  ଡକେଇତ ଗଲେ ମାଡ଼ି ନେଲେ ଲୋଟି ଲୁଟି
ଢ  ଢୋ-ଢା ଶବଦରେ ପୁଣି ଗଲା ଫାଟି ।

ଣ  ନରମ ଗରମ ବୋଲି ହିପସ୍ ଦେଇ ବାଡ଼ି
ତ  ତରଳାଇ ନ ପାରିଲେ ଗଲେ ଦେଶ ଛାଡ଼ି ।

ଥ  ଥାପୁଡ଼ା ଥାପୁଡ଼ କାମ ହୋଇଗଲା ଖଟା,
ଦ  ଦାମବାଜ ଆମେରି ଯେ ଚଳାଇଲେ ଡଣ୍ଡା ।

ଧ  ଧରାଧରି ଧୂମ ଗଲା ଲାଗି ଦେଶସାରା,
ନ  ନେହେରୁ, ଆଜାଦ, ଗାନ୍ଧି ଆଶ୍ରା କଲେ କାରା ।

ପ  ପଣ୍ଡିତଙ୍କ ଦାଡ଼ି ଗଲା ଅଗ ଅଗ ଛାଡ଼ି
ଫ  ଫ୍ରଣ୍ଟ ଧାଆଁ ଉଜାଡ଼ରେ ହୋଇ ଭଡ଼ାଭଡ଼ି ।

ବ  ବତାସ ବରଷା କଲା ଦେଶେ ସର୍ବନାଶ
ଭ  ଭଣ୍ଡ ବେପାରୀଙ୍କ ହୋଇଗଲା ପୁଷମାସ ।

ମ  ମାମୁଁ ଘର ଗଲେ ସବୁ ନେତା ହୋଇ ମେଳ
ମୁକୁନ୍ଦ ଗଲେ ଯେ ଥାଳ ମାରି ଫାଙ୍କ ତାଳ ।

ଯ  ଯାଚିଲା ମାଲକୁ ଗୁଡ଼ ଆଡ଼ରୁଷା ଦେଇ,
ର  ରହିଲେ କଂଗ୍ରେସ ଶେଷେ ହୋଇ ହାଲିଁ ପାଲିଁ ।

ଲ  ଲଣ୍ଡ ଲେଟାରୁ ଲେଖିବାଟା ହୋଇଲା ବେବାଗ
ବ  ବୋମା ପଡ଼ଗଲା ମୁଣ୍ଡେ କାଗଜର ଆଗ ।

ଶ  ଶଗଡ଼ର ଯୁଗ ପୁଣି ଅଇଲାଟି ଫେରି
ଷ  ସୁଭାଷ ରହିଲେ ଲୁଚି ଭୁଲେ ମନ ମାରି ।

ସ  ଷଣ୍ଢ John ଙ୍କର ହେଲା ପ୍ରତାପ ପ୍ରବଳ
ହ  ହିଟଲର କଳ ବଳ ହେଲା ଟଳମଳ ।

କ୍ଷ  କ୍ଷୁର ନ ମିଳଇ—ପୁଣି ପଡ଼ିଲାଣି ଶୀତ,
କ୍ଷନ୍ତି ନାହିଁ, ଏବେ ସବୁ ହୋଇ ଯା ପଣ୍ଡିତ !



# ୧୯୪୩ ବର୍ଷ ବନ୍ଦନା

## ( ଚଉତିଶା )

**କ** ‘କଣ୍ଟ୍ରୋଲ୍’ ହୋଇଗଲା ଜାର ଘାଟ ହାଟ ବାଟ,
କେରାସିନ ବିନା ହେଲେ ଅନ୍ଧାରିଆ ନାଟ ।

**ଖ** ଖସିଲା ଇଟାଲି ହୋଇ ଅକ୍ଷ-କକ୍ଷ-ଚ୍ୟୁତ,
ଖପିସ ଲଟକେ ମୁସୋଲିନୀ ହେଲେ ଭୂତ ।

**ଗ** ଗଜପତି–ଗୋଦାବରୀ ଦୁହେଁ କରି ଲଢ଼ୁ,
ଗେଲରେଇ ଚଢ଼ାଇଲେ ବିଶ୍ୱ ବିଦ୍ୟାଳୟ ।

**ଘ** ଘଡ଼ିଯାକ ହୋଇଗଲା ଏକ ଘଣ୍ଟା fast
ଘୁମାଇଁ ଘୁମାଇଁ time ହେଲା ତେଣେ past.

**ଙ** ଅଧମ ଭାରତେ କାହୁଁ A.R.P. ଅଇଲା,
All–R–Provided ଏକାଠି ହୋଇଲା ।

**ଚ** ଚର୍ଚ୍ଚିଲ ରୁଜ୍‌ଭେଲ୍‌ଟ ଭେଟ ହୋଇଲେ ମିଶରେ,
ଚୀନର ଚିଆଙ୍ଗ ଯାଇ ମୋଡ଼ିଲେ ନିଶରେ ।

**ଛ** ଛକା ପଞ୍ଜା ମନ୍ତ୍ରୀ ହୋଇ ନେତାଗଣ,
ଛେପ ଗିଳି ଗିଳି ହେଲେ ରଣି ବଢ଼ ପଣ ।

**ଜ** ଜାପାନ ରହିଲା ଏଣେ ହୋଇ ଜାକିଜୁକି,
ଜର୍ମାନି ମରଇ, ତେଣେ ଭୁଜ୍ଜା ଭୁକ ଭୁକ ।

**ଝ** ଝୋଲ, ଝାଳ, ଟମ୍ବଲେର ବାଟି ଦୂରେ ଥୁଇ,
ଝୁଣ୍ଟି ଭଜା ଖାଇ ମନ୍ତ୍ରୀ ସାରିଲେ ଟି-ପାର୍ଟି ।

**ଞ** ନେହେରୁ ଅଜାଦ ଗାନ୍ଧି ଆଦି ବୃଦ୍ଧ ବାଳ,
ନିମିତ୍ତ ଛିଡ଼ି ମଜ୍ଜିଜ କଟାଇଲେ କାଳ ।

**ଟ** ଟଙ୍କାରେ ନଦିକ୍ ଛଟେ କାଗଜର ଦର,
ଟିପାଟିପ୍ ନେଇ କିଛି ଉଡ଼ିଗଲେ ଫରଫର ।

**ଠ** ଠିକାଦାର, ବେପାରୀଙ୍କ ପୁଅବାର ପାଳି,
ଠକି କପାଳକୁ ରହେ ଫାଜ୍ ମିଆଁ ଗୃହି ।

**ଡ** ଡାକୁଣୀ ବୁର୍ଡ଼େ ଦେଇ କରେ ସ୍ୱ-ରାଜ୍ୟ ବିସ୍ତାର
ଡାକି କହେ ଟାଙ୍କଷ୍ଟୁଁ କରାଇଛି ପାର ।

**ଢ** ଢୋକେ ପିଇ ଚନ୍ଦ୍ରେ ଗଇଚନ୍ଦ୍ର ନାସ୍ତନର,
ଢମେକି ଚର୍ବ୍ୱେ ଲାଗେ ପ୍ରଭୁଙ୍କ ଉତ୍ତର ।

**ଣ** ନାସ୍ତି ଦେଶ ନୂଆ ନାଟ ଗ୍ଲେ କଟକରେ,
ନ ଖାଇ ଭ୍ଲୁଲନ୍ତ ଲୋକ ନବ ଛଟକରେ ।

**ତ** ତେହାରନ୍ ସହରରେ ତିନାଥର ଭେଟ,
ତ୍ରୁମ୍ପ୍ତ ଶବଦ ଶୁଣି ପୂରିଯାଏ ପେଟ ।

**ଥ** ଥାପୁଡ଼ା ଖୋଇଣ ରୁଷ ହିଟଲର ତଡ଼େ,
ଥପ୍ ଧରି ନ ପାରେ ସେ ଧାଏଁ ହଡ଼ବଡ଼େ ।

**ଦ** ଦକ ଦକ ହୋଇ ଷ୍ଟେନ ହୁଏ ଧଇଁସଇଁ,
ଦୁଇ ନାବେ ଦେଇ ପା’ ତୁର୍କି ଗଲା ରହି ।

**ଧ** ଧନ୍ଦ ହୁଏ ରୁମାନିଆ, ବୁଲଗେରିଆ ଦଲ୍,
ଧରିବେ ସେ କେଉଁ କୂଳ, ଅବସ୍ଥା କାହିଲ୍ ।

**ନ** ନାହାସ ପାଶା ସାହେବ, ମିବାର ଉଜିର୍,
ନକାଲ ମୁସଲମ୍ ମେଳ ହୋଇଯିବେ ପୀର୍ ।

**ପ** ପଣ୍ଡିତେ ଭଣ୍ଡିତ ହୋଇ କୁଣ୍ଡାଇଣ ଦାଢ଼ି,
ପାନ ଛିଲେ ଖାଇ ଗଲେଶୋଇ ମୁହଁ ମାଡ଼ି ।

**ଫ** ଫସର ଫାଟି ହଟିଲା କଂଗ୍ରେସର ବଳ,
ଫୁଲ ଫୋର୍ସ ଧରି ବୁଲେ କମ୍ୟୁନିଷ୍ଟ ଦଳ ।

**ବ** ବୋଲବାଲା ବଡ଼ିଗଲା ମନ୍ତ୍ରୀ ଦଳ ଖୁସ୍,
ବାବା ବଣ୍ଣାଥ ଦେଖାଇଲେ ଲେବୋନ୍ ଚୁଷ୍ ।

**ଭ** ଭକୁଆ ଓଡ଼ିଆ ଜାତି ଭୁକ୍କା ଭ୍ରମେ ପଡ଼ି,
ଭୋକେ ଭୁକ ଭୁକ ମଲେ ଗୁଡ଼ ଘୋର ରଡ଼ି ।

**ମ** ମାରିନେଲେ ମହାପାତ୍ରେ, ହୋଇଣ ଜଳକା,
ମହତାପୀ ଦଳ ବୃନ୍ଦେ ମାଇଲେ ଭେଲକା ।

**ଯ** ଯାତଲା ଧନକୁ ଗୁଡ଼ ଗାନ୍ଧିବାଲା ଯାକେ,
ଯାତରା ଦେଖିଲେ ଜଳା-କବାଟିର ଫାଙ୍କେ ।

**ର** ରାଜଗୋପାଳ ଆବୃଷ୍ଟି ଭାଳି ଭାଳ ଭାଳ,
ରାମ ନାମ ସତ୍ୟ ବୋଲ ହୋଇଲେ ବୋବାଳ ।

**ଳ** ଲଖ୍ ଲଖ୍ ଉଡ଼େ ନୋଟ, ଟଙ୍କା କୋଟି କୋଟି,
ଲୁଣ୍ଠି ନେବା ପାଇଁ ହୁଏ ଠାକୁ ଠାକୁ ପାଟି ।

## ୧୯୪୩ ବର୍ଷ ବନ୍ଦନା

ବ　ବଙ୍ଗରେ ପଡ଼ିଲ କାଳ, ନାମିଲାଲ ଗୃଲ୍,
ବଳୁର ଓଡ଼ିଆ କୁଳ ହୋଇଲେ ନିକାଲ ।

ଶ　ଶିକା ଛୁଟିଣ୍ଟେ କାହା ଭାଗ୍ୟ କାର ନାହିଁ ଖେଦ,
ଶାଗ ଖାଇ କଏ ଜୀଏ, କଏ ପିଏ ଦୁଗ୍ଧ ।

ଷ　ଷଣ୍ଢ ପରି କଏ ବୁଲେ ଫୁଲାଇଣ ଗ୍ରୀବ,
ଶଶା ପରି କେହୁ ଲୁଚି ରହେ ବନରାଜି ।

ସ　ସାହିତ୍ୟ ସମାଜ ଆଜି ପରିଷଦ କଳା,
ସରଳା ଚଳାନ୍ତି ବାଣ, ବାଳକୃଷ୍ଣ ଗୁଳ ।

ହ　ହକ କଥା କହିବାକୁ ଥୋମଣିରେ ଚାଲ୍,
'ହୁକା ହୁଆ' ଡାକ ଏବେ ବଢ଼ାଇଲୁଁ ପାଲ୍ ।

କ୍ଷ　କ୍ଷାନ୍ତ ହେଲୁଁ ଏବେ କରୁଁ ହଜାର ସଲାମ,
କ୍ଷମିବ, ଏଥିରେ ନାହିଁ କଡ଼ାକର ଦାମ୍ ।



# ୧୯୪୭ ଚଉତିଶା

କ କଂଗ୍ରେସ କବଳ କଲା ଶାସନର କଳ
କ୍ୟାହୁଆ—କ୍ୟାହୁଆ ବୋଲି ପଡ଼ିଲା ଚହଳ ।
କ୍ରିପସ୍ କୌଶଳ କରି କଲେ କାରଧାନ
କର୍ଣ୍ଣଧାର କଂଗ୍ରେସର ହେଲେ କୃପାଲନି ।

ଖ ଖାନେ ଖାମ୍ ଖପ୍ପା ହୋଇ କାଏଦ ଆଜାମ୍
ଖେଳାଇଲେ ନିଆଁବାଣ ମୁଲକ ତମାମ୍ ।

ଗ ଗଡ଼ଜାତ ଗୁମ୍ଫଗଣ ଗଣିଲେ ପ୍ରମାଦ,
ଗରଜି ହୋଇଲେ ଗୁଡ଼ ଗମ୍ଭୀରିଆ ନାଦ ।

ଘ ଘନା ବିପତ୍ତି ଘୋଟିଲା ଘୋର ହାହାକାର,
ଘମାଘୋଟ ଲଗିଗଲା ଘରୋଇ ବିଗ୍ରହ ।

ଙ 'ଆସଫାଲି' ଦୂତପଣେ ଗଲେ ଆମେରିକା
ଆଜାଦଙ୍କ ମୁଣ୍ଡ ପରେ ଛୁଡ଼ିଲା ସେ ଶିକା ।

ଚ ଚର୍ଚ୍ଚିଲ ଚଚାଙ୍କ ଚିତ୍ତେ ଲାଗିଲା ଚମକ
ଚଣା ଚୈବାଇଣ ଚେଣେ ଗୁଡ଼ିଲେ ଧମକ ।

ଛ ଛୁଆଁ ଛୁଇଁ ଗଲା ଉଠି, ହେଲା ସବୁଘୋଟ
ଛୋଟ ହେଲେ ବଡ଼ ଆଉ ବଡ଼ ହେଲେ ଛୋଟ ।

ଜ 'ଜୟହିନ୍ଦ୍' ଶବଦରେ କମ୍ପିଲା ଜଗତ,
ଜଗନ୍ନାଥେ ରହିଗଲେ ହୋଇ ଜଡ଼ଭୂତ ।

ଝ ଝାଡ଼ଖଣ୍ଡ ମୁଲକରେ ଉଠିଲା ଯେ ଝଡ଼
ଝିଙ୍କା ଖାଇ ଦାରୁବ୍ରହ୍ମ ହେଲେ ରଡ଼ମଡ଼ ।

ଞ ନେତାଜୀ ସୁଭାଷ ଦେଲା ଲଗାଇ କୁହୁକ
ନିମିଷେ ଉଠିଲା ଜଳି ନିଆଁ ଜକ ଜକ ।

ଟ ଟୋକାଏ ଉଠିଲେ ମାତି ଧରି ନିଜ ଟାଣ,
ଟେକି ଦେଲେ ବୀର ମଦେ ମୁକ୍ତିର ନିଶାଣ ।

ଠ ଠକ ଠାଉରିଆଙ୍କର ପଟେ ପୁଅବାର
ଠୁସିଲେ ସିନ୍ଧୁକ ଠେଲି କାଳିଆ ବଜାର ।

ଡ 'ଡୁଡୁମା ଡୁଡୁମା' ଡାକ ଛୁଡ଼ିଲେ ଓଡ଼ିଆ,
ଡିଆଁ ମାରି ଛୁଟେ ଝସି ଗଲଟି ଫଡ଼ିଆ ।

ଢ ଢୋଲ ପିଟି ଆମ ରାଜା ବଜାଇ କାହାଳୀ
ଢମାଳ ଚଉପୁ ଦେଲେ ସ୍ୱାଧୀନତା ଜାଳି ।

ଣ ନେହେରୁ ବସନ୍ତେ ମାଡ଼ ଭାରତର ଗାଦି
ନାମୁଣ୍ ହୋଇଲା ଜିନ୍ନାଙ୍କ କାର୍‌ସାଦି ।

ତ 'ତୋବା—ତୋବା'—ଖସିଗଲା ପରା ହାତ ବାଗ,
ତଡ଼ବଡ଼ ଦାବି କଲେ ଆପଣାର ଭାଗ ।

ଥ ଥକିଲେଟି କମ୍ୟୁନିଷ୍ଟ ଡାକ ଦେଇ ଦେଇ,
ଥୋପରେ ପଡ଼ିବା ପାଇଁ ନ ଆସିଲେ କେହି ।

ଦ ଦୁନିଆ ଗୁଡ଼ିଲା ରକ୍ତ ଶାନ୍ତ ନାମ ଧରି
ଦଗାବାଜ, ଜୁଆଡ଼ୀର ଦେଶେ ଗଲା ଭରି ।

ଧ ଧୂରନ୍ଧର ଲୋକେ ମିଳିଗଲା ସିଧାବାଟ
ଧର୍ମ୍ମଧ୍ୱଜା ଧରି ଲଗାଇଲେ ହାଣକାଟ ।

ନ ନୂଆଖାଲି ନୂଆ ମାତି ଧରି ନେଲା ମାପି
ନମୁନା ତାହାର ଗଲା ଚାରିଆଡ଼େ ବ୍ୟାପି ।

ପ ପଯୁଦଳ ଗସ୍ତ କରି ପେଡ଼ି ପାଗ ବାନ୍ଧି
ପ୍ରଚାର କରିଲେ ପ୍ରେମ ମହାତ୍ମା ଗାନ୍ଧି ।

ଫ ଫାଟିଲା କପାଳ ଯେତେ ଆଇ. ସି. ଏସ୍.ଙ୍କର
ଫାଳ ଫାଳ ହୋଇଗଲା ଇସ୍ପାତର ଘର ।

ବ ବରଗୀ ବିଜୟୀ ଲକ୍ଷ୍ମୀ ବାକ୍ୟବାଣ ମାରି
ବିଦେଶୀ ବନ୍ଧୁଙ୍କୁ ଦେଲେ ବେଦମ୍ ବିଦାରି ।

ଭ ଭୂରିଭୂରି ପ୍ରଶଂସାରେ ଭରିଲା ଭୁବନ,
ଭଲ ଏ ଭାରତ ନାରୀ ଧନ୍ୟ, ଧନ୍ୟ, ଧନ୍ୟ ।

ମ ମହତାବ ନିଜ ରାଜମୁକୁଟକୁ ଛାଡ଼ି
ମୁଣ୍ଡରେ ମୋଡ଼ିଲେ ଭଡ଼ ମହା-ମନ୍ତ୍ରୀ ଶାଢ଼ୀ ।

ଯ ଯାଜୋଡ଼ିଆ ଆଖି ଯୋଖି କଳ କାରଖାନା
ଯାଚି ଦେଲେ ଓଡ଼ିଆଙ୍କୁ ଗଣ୍ଡେ ଗଣ୍ଡେ ଦାନା ।

ର ରାଜେନ୍ଦ୍ର ରଚନା କରି କୌଶଳ ମଣ୍ଡଳେ
ରଖିଲେ ଅକ୍ଷୟ କୀର୍ତ୍ତି ଅପୂର୍ବ କୌଶଳେ ।

ଲ ଲାଞ୍ଚ ମିଛ ଗଲା ଯହୁଁ ଚାରିଆଡ଼େ ମାଡ଼ି
ଲୁଚିଲେ ଅହିଂସା, ସତ୍ୟ ଲୋକାଳୟ ଛାଡ଼ି ।

ବ ବୀରବାବୁ ହେଲେ ଯହୁଁ ହାଇକୋର୍ଟ ଜଜ୍
ବିଦେଶରେ ବଢ଼ିଗଲା ଓଡ଼ିଆଙ୍କ ତେଜ ।

## ୧୯୪୭ ଚଉତିଶା

**ଶ** ଶଙ୍କଟ ପଡ଼ିଲା ବୋଲି ସମ୍ବଲପୁରକୁ
ଶଙ୍କର ଗ୍ରଣ୍ଡେଲ୍ ରଡ଼ ଚଡ଼ାଇ ସୁରକୁ ।

**ଷ** ଷାଠିଏ ମହଣ ଘିଅ ହୋଇବାରୁ ପୋଡ଼ା
ସମଲେଶ୍ୱରୀ ଉଠିଲେ ଚଢ଼ି କଳା ଘୋଡ଼ା ।

**ସ** ସପନେ ବୋଇଲେ, "ସୁତେ ଚିନ୍ତା ନାହିଁ କର
ସାହସେ ସଂଗ୍ରାମ କଲେ ସିଦ୍ଧିଟି ମୁକର ।"

**ହ** ହୀରାକୁଦ, ହୀରାକୁଦ ରହିଲା ଯେ ନାମ
ହଲ୍ଲା ଲଗାଇ ଛୁଟିଲେ ଯେତେ ବୃଦ୍ଧୁରାମ ।

**କ୍ଷ** କ୍ଷମା କରି ନିଜଗୁଣେ ରସିକ ପାଠକ
କ୍ଷାନ୍ତ ହେଲା ଚଉତିଶା ଲେଖି-ଏନ୍ତକ ।



# ଭୋଟ ଭିକାରୀ

ଭିକାରି ଜଣେ ଅଟେ ମୁହିଁ
ତୁମ୍ଭ ଦୁଆରେ ଆସିଛଇଁ ।
ତୁମ ନାମଟି ଭୋଟଦାତା
ଆମ୍ଭର ତେଣୁଟି ବିଧାତା ।

ଦାନ୍ତରେ ତିରଣ କାମୁଡ଼ି
ଗଳବାସରେ କର ଯୋଡ଼ି,
ମାଗୁଛି ଖାଲି ଭିକ ମୁଠେ
କାଗଜ ଖଣ୍ଡେ, ଭୋଟ୍ ଗୋଟେ ।

ତୁମ୍ଭେ ମୋ ଧରମର ଭାଇ
ଯେଉଁ ବାପାଙ୍କ ଧର୍ମ ଯୋଇଁ ।
ବନ୍ଧୁଙ୍କ ମଧ୍ୟେ ମୁହିଁ ସାର
କର ଏତକ ଉପକାର ।

ଯେବେଟି ନବଣ କଟିବ
ଏହା ନିଶ୍ଚୟେ ଜାଣିଥିବ ।
ଧାରଣା ଦେଇ ପଡ଼ି ଥିବ
ଉପାସେ ପ୍ରାଣକୁ ହାରିବ ।

ଅଥବା ଲଗାଇ ଦଉଡ଼ି
ମରିବ କିବା ମୁଣ୍ଡ କୋଡ଼ି ।
ଲାଗିବ ବ୍ରହ୍ମ ହତ୍ୟା ଦୋଷ
ଘରରେ ପଶିବ ପୋଲିସ ।

ଅପର ଦଳଙ୍କ ଭଲଆ
ଆମ୍ଭେ ହେଁ ନୋହୁଟି କଳଆ ।
ଆମ୍ଭେଟି ନୋହୁ ଗୁରୁଖାଞ୍ଜି
ମାରବୁ ସଦା ହାଁକି ହାଁକି ।

ଆମ୍ଭେ ଯେ ଟେଙ୍ଗ୍ରେଡ଼ ଦଳଆ
ନପଟ ଧୋବ ଧୋବଳଆ ।
ହୁଅବେ ତୁମ୍ଭେ ଦାତା ଶ୍ରେଷ୍ଠ
ତେଣୁ ଆମ୍ଭର ଅଟ ଇଷ୍ଟ ।

ଧାଉଁଛି ଶୁଣି ତୁମ୍ଭ ନାମ
ମହତ ଭିକ୍ଷା ଆମ୍ଭ କାମ ।
ଆମ୍ଭର ନାହିଁ ପିଠି ହାଡ଼
ମୁଖରେ କରତର ଦାଢ଼ ।

ପାଣି ଭିତରେ ବୁଡ଼ ଥାଉଁ
ପାଇଲେ ମାଛ ନେଇ ଦାଉଁ ।
ଥରଟି ଭୋଟ୍ ଦେଇ ଦେଖ
ଆମ୍ଭେଟି କି ଭଲଆ ଲୋକ ।

ସଭିଙ୍କୁ ଦେଲେଟି ପଠାଇ
ଦେଶକୁ ଦେବୁ ଲେଉଟାଇ ।
ସେତେବେଳକୁ ତୁମ୍ଭେ ଗଲେ
ମୁହଁକୁ ନ ଚାହିଁବୁ ଭଲେ ।

କାର୍ଯ୍ୟ କାଳରେ ହେଉ କାଙ୍ଗା
କାର୍ଯ୍ୟ ସରିଲେ ବଡ଼ ପାଙ୍ଗା ।
ତୁମ୍ଭଙ୍କୁ ଦେଖିଲେଟି ଦୂରୁଁ
ବାଟ କାଟିଣ ଅପସରୁଁ !

ଯେବେ ଆଗରେ ଯିବ ପଡ଼ି
ଆଖି ବୁଲାଉଁ ମୁହଁ ମୋଡ଼ି ।
ତେବେ ବେହିଆ ହୋଇ ଅନ୍ତ
ଯେବେ ପଶିବ ଆମ୍ଭ କନ୍ତ ।

ଡ଼ାକଣ କୋଇହାପୁ ବୋଲି
ହଟାଇ ଦେବୁ ପେଲି ପେଲି ।
ଆମ୍ଭକୁ ମଣ ନାହିଁ ଶ୍ରେଷ୍ଠ
ଦିଅ ହେ ଦିଅ ଖଣ୍ଡେ ଭୋଟ ।

ଏଥର ପାଇ ଗଲେ ଭୋଟ
ତିନ ବରଷେ ପୁଣି ଭେଟ ।
ଶୁଣ ଭୋଟର ଭାଇ ଶୁଣ
ଭୋଟ୍‌ର ଅନୁକୋଟି ଗୁଣ ।

ପରଶ ମଣି ଅଟେ ଭୋଟ
ବଡ଼ କାଠଣ ଏହା ଶ୍ରେଷ୍ଠ ।
ଲୁହାକୁ ଛୁଇଁ କରେ ସୁନା
ପଥର କରି ପାରେ ଚୂନା ।

ହୁଣ୍ଡାକୁ କରଇ ନାଟୁଆ
ମୂର୍ଖକୁ କରଇ ପାଠୁଆ ।
ଫଳରେ କରଇ ଏ ରଜା
ଅଗାଡ଼ିକୁ ଏ କରେ ଟୂଜା ।

# ଭୋଟ ଭିକାରୀ

ପାଣିକୁ କରି ପାରେ ଦୁଧ
ଘୋଡ଼ା କରଇ ପିଠି ଗଧ ।
ଜାତି ଅଜାତି ନାହିଁ ତାର
ଅଘୋଷ ବା ବାଜା ପ୍ରକାର ।

ଏହା ଅଟଇ ସର୍ବଘୋଟ
ପତିତ ପାବନ ଏ ଭୋଟ ।
ଅନନ୍ତ ଭୋଟ୍‌ର ମହିମା
ଆକାଶ ପରି ନାହିଁ ସୀମା ।

ଅମିନ କଳି ନ ପାରଇ
ମୁନସି ଦେଖିଲେ ଡରଇ ।
ଭୋଟ୍‌ର ମାହାତ୍ମ୍ୟ ଅପାର
ବେଦ ବିରଞ୍ଚି ଅଗୋଚର ।

ଖବର କାଗଜ ଚାଳକ
ଯାହାର ନାମ ସଂପାଦକ,
ସେହି ବୁଝଇ ଥୋଡ଼ା ଥୋଡ଼ା
ଆନ ନ ଜାଣେ ତାଙ୍କ ଛଡ଼ା ।

ଆମ୍ଭ ଭଳିଆ ଦେଶ ନେତା
ଭୋଟ ସମୁଦ୍ରେ ସୋଲ ଯଥା ।
ଲହଡ଼ି ଭଉଁରିରେ ପଡ଼ି
ହୋଇଣ ବାଡ଼େଇ କରୁଡ଼ି ।

ପାଣି ପିଇଣ ଅଧାପ୍ରାଣ
ହୋଇଣ ହେଉ ହତଜ୍ଞାନ ।
ତଥାପି ତୁଟୁ ନାହିଁ ଆଶା
ତେବେ ବି ନ ମେଣ୍ଟେ ପିପାସା ।

ଆମ୍ଭର ସ୍ୱାର୍ଥ କିଛି ନାହିଁ
ଭୋଟ ମାଗୁଛୁ ଦେଶ ପାଇଁ ।
କରିବୁ ଦେଶ ଉପକାର
ଗପ ଖରଚ୍ଚ ମାତ୍ର ସାର ।

ଭୋଟ ଭିକାରି ଯେତେ ଛନ୍ତି
ବହୁରୂପୀ ଯେ ସେ ଅଟନ୍ତି ।
କେବେ ସେ ପିନ୍ଧନ୍ତି ଖଦଡ଼
ବୋଲନ୍ତି ଦେଶ ନେତା ବଡ଼ ।

କେବେ ପିନ୍ଧିଣ ହ୍ୟାଟ କୋଟ
ମାଗିବୁଲନ୍ତି ଦିଅ ଭୋଟ ।
କେବେ ହଳଧା କେବେ କଳା
ନେଳି, ସବୁଜ, ନାଲି ଧଳା ।

ଭୋଟ ଯେ ଚତୁର୍ବର୍ଗ ଦାୟୀ
ମୋକ୍ଷ କରିତା ମହାମାୟୀ ।
କେବେ ସେ ନାରୀ କେବେ ନର
ବାଳକ ବୃଦ୍ଧ ରୂପ ତାର ।

ତ୍ରିଲୋକ ଜିଣି ଏହି ଭୋଟେ
ବିଷ୍ଣୁ ଯେ ବସିଲେ ବୈକୁଣ୍ଠେ ।
ଲକ୍ଷ୍ମୀଙ୍କୁ ଲଭିଲେ ଆଦର
ପୁଣି କୌସ୍ତୁଭ ମଣି ବର ।

ଭୋଟରେ ଜିଣି ସର୍ବ ଦେବ
ଇନ୍ଦ୍ରତ୍ୱ ଲଭିଲେ ବାସବ ।
କବି ଗଣଙ୍କ ଭୋଟ ଲଭି
କାଳିଦାସ ଯେ ମହା କବି ।

ଋଷି ଗଣଙ୍କ ଭୋଟ ପାଇଁ
ରାବଣ ହେଲେ ଲଙ୍କା ସାଇଁ ।
କୃଷ୍ଣଙ୍କ ହେଲା ଭୋଟ ବଳ
ହଟି ଫେରିଲା ଶିଶୁପାଳ ।

ଯକ୍ଷମାନଙ୍କ ଭୋଟେ ଜିତି
କୁବେର ହେଲେ ଧନପତି ।
ଗାଇଣ ଭୋଟର ମହିମା
ଚାରି ବଦନ ହେଲେ ବ୍ରହ୍ମା ।

ଭୋଟରେ କୃଷ୍ଣ ନନ୍ଦ ସୁତ
ହୋଇଲେ ଯାଦବଙ୍କ ନାଥ ।
ବଳୀ ଯେ ଭୋଟକୁ ନ ପାଇ
ପାତାଳେ ରହିଲେଟି ଯାଇ ।

ପାଣ୍ଡବେ ଭୋଟରେ ହାରିଲେ
ରାଜ୍ୟରୁ ତଡ଼ା ଖାଇ ଗଲେ ।
ଭୋଟକୁ ଡରି ରାମ ରାଜା
ବନକୁ ପେଶିଲେ ଭାରିଯା ।

ମିଆଁକୁ ବାଇ ଯେହ୍ନେ ଘୋଟ
ମଣିଷ ପଣକୁ ଏ ଭୋଟ ।
ଦକ୍ଷୀଣା ଲଭି ଭୋଟ ଦାତା
ଯେ ଖାଏ ପସ୍ତାଇ ଥାଏ ତା ।

ପସ୍ତାଏ ପୁଣି ଯେ ନ ଖାଏ
ଶ୍ରେଷ୍ଠ ନାମକୁ ଜପୁଥାଏ ।
କେତେ ଅଗ୍ନିରେ ଝାସ ଦେଲେ
କେତେ ପାଣିରେ ବୁଡି ମଲେ ।
କେତେ ମାନବ ଶ୍ରେଷ୍ଠ ଲାଗି
ଜଗତେ ହୋଇଲେ ବୈରାଗୀ ।
କରେ କାହାର ପୁଷମାସ
କାହାର କରେ ସର୍ବନାଶ ।
ଅଭେଦ୍ୟ ଅଟେ ଶ୍ରେଷ୍ଠ ଭାବ
ମାନବ ପାଏ ନାହିଁ ଭାବ ।
ଏମନ୍ତ ପ୍ରକାର ଯେ ଶ୍ରେଷ୍ଠ
ତୁମ୍ଭଠି ହୋଇଛୁ ପ୍ରକଟ ।
ତେଣୁ ମୁଁ ଆସି ଅଛୁ ଧାଇଁ
ମୋରଣ 'ନାହିଁ' କର ନାହିଁ ।

ଶ୍ରେଷ୍ଠଦାନରେ ମହା ପୁଣ୍ୟ
ଅର୍ଜନ କରି ହେବ ଧନ୍ୟ ।
ଗୋଟିଏ ଶ୍ରେଷ୍ଠ ଦିଅ ମୋତେ
କୀରତି ରହିବ ଜଗତେ ।
ହୋଇବ ଅକ୍ଷୟ ଧରମ
ଅନ୍ତେ ଲଭିବ ମୋକ୍ଷ ଧାମ ।
ଯାହା ମାଗିବ ତାହା ଦେବି
ମୁଁ ତୁମ୍ଭ ଗୋଲାମ ହୋଇବି ।
ଏ ମୋର ଜୀବନ ଯୌବନ
ପାଦେ କରୁଛି ସମର୍ପଣ ।
ମାନ ମହତ ଦାରା ସୁତ
ଯାହାକୁ ରୁଚୁ ଅଛି ଚିତ୍ତ ।
ଧନ ସମ୍ପଦ ଆଦି କରି
ଆଜଠୁ ହୋଇଲା ତୁମ୍ଭରି ।



# ଭୋଟ ଗୀତ

ଭଲ ଲଗିଲାରେ··· ଦନା ଶ୍ରେଷ୍ଠ ଲଢ଼ାଇ
ବାହାରିଲେ ଲଢୁଆଳେ କରମ ଭିଡ଼ାଇ (ଘୋଷା)

କଏ ଖଦଡ଼ ପୋଷାକ ପିନ୍ଧି    ଗବେ ଜୟ ଜୟ ଗାନ୍ଧି
ଧାଇଁ ଗଲେ ତିନିରଙ୍ଗିଆ ପତାକା ଉଡ଼ାଇ ।

ଆନ ବୋଲେ ହାମେ ଥାଉଁ    ଆଉ ବା କଏ ଖାଇବ କଉ !
ପୁଣି ଜଣେ ବୋଲେ ରାଗେ    ଆମର ଦାବ ସବୁରି ଆଗେ
ଆମ ଗାଆଁ ଲୋକେ ଥିଲେ ଗ୍ରାମ ମାଡ଼ ଖାଇ ।

ଆଉରି ଜଣେ ବୋଲେ ଆସି    ଆମେ କାହିଁ ଯିବୁ ଭାସି !
···କମିଟି ଆମେ ନାହିଁକି ଗଢ଼ାଇ !
ଆନ ବୋଲେ ଭଲ ଏତ    ଆମର ଅଛି ଦଖଲ ସତ୍ତ୍ୱ
ଆମକୁ କାହାର ସାଧ ପାରିବ ଛଡ଼ାଇ ।

ଆନ କହେ ଜାଣିଛ ଭଲ    ଅମୁକ ନେତାର ଆମେ ଚେଲା
ହିମ୍ମତ୍ ଅଛି ଆମର ଦାବ ଦେବୁଁ ଉଡ଼ାଇ !
କଏ ବୋଲେ ଆମର ଏଠା    କରିଛୁ ମଉରସି ପଟ୍ଟା
ଅମୁକ ନେତାର ପଛେ ପଛେ ଗୋଡ଼ାଇ ଗୋଡ଼ାଇ ।

କେହୁ ବୋଲେ ସବ୍‌ସେ ବଡ଼ା    ଆମର ଦାବ ନୁହଇ ଥୋଡ଼ା
ଜେଲଖାନାରେ ଖାଇଛୁ ଖାନା ବରଷ ଅଢ଼ାଇ ।
ଆନ ବୋଲେ ଜାଣିଛ ବାଦା    ଥଲି ଭେଟି ଦେଇଛୁ ଚାନ୍ଦା
କେଉଁ ନାମରେ ହାମର ନାମ ଦେବ ଯେ ଏଡ଼ାଇ ।

ବିପକ୍ଷେ ଯେ ହୋଇବ ଛିଡ଼ା    ଖାଇବ ସିଏ କାନ ମୋଡ଼ା
ଏକା ଝୁରୁଡ଼ିରେ ତାକୁ ଦେବୁ ହୁରୁଡ଼ାଇ ।
ଆମର ଯେବେ ଉଡ଼ିବ ଭାଗ    କରିବୁ ଆମେ ଅସହଯୋଗ
ଅହିଂସା ବୋମାରେ ଦେବୁଟି ପୋଡ଼ାଇ ।

ଦେଶରେ ଆମେ କାଢ଼ିଛୁ ନାଆଁ, ଗ୍ଲାଇ ଯାଇଛୁ ଗାଆଁକୁ ଗାଆଁ
ଆମକୁ କଏ ରଖିବ ଢାଙ୍କି କତରା ଘୋଡ଼ାଇ
ବିପକ୍ଷେ ଯେ ହୋଇବ ଠିଆ    ତା ଗୁଣ୍ଡରେ ମାରିଣ ଉଆଁ
ଏକାଥରେ ଚିତ୍‌ପଟାଙ୍ଗ ଦେବୁଟି ଗଡ଼ାଇ ।

ଆମ ନାଆଁରେ କହିଲେ କଥା    ରଖିବୁଁ ନାହିଁ ତାହାର ମଥା
ଏକା ମୁଥା ମାରି ଦେବୁ ଦାନ୍ତକୁ ଝଡ଼ାଇ ।
ନ ଚିହ୍ନିଛି ଆମକୁ କଏ    ଢେଙ୍କିଶାଳରୁ ଢେଙ୍କା ଯାଏ
କାହାରିକୁ କେୟାର୍ ଆମେ କରୁ ଯେ ଥୋଡ଼ାଇ ।

ଆମ ସଙ୍ଗରେ ଲଢ଼ିବ ଯିଏ    ତାହାର ମୁଣ୍ଡ ରଖିବ କଏ ?
ଚନ୍ଦା କରିଦେବୁ ଥୋପି ଚଢ଼ାଇ ଚଢ଼ାଇ ।
ଆମେ ଯୋଗ୍ୟ ନୋହୁଁ ବୋଲି    କହିବ କଏ ଥୋମଣି ଖୋଲି ?
ଯେ କହିବ ତାହାର କାନ ଦେବୁଟି ମୋଡ଼ାଇ ।

ଯେବେ ତୁମ୍ଭେ ନଥାଅ ଜାଣି    ଦେଖ ଖବର କାଗଜ ଆଣି
ଆମେ ଆପେ କରିବୁ ନାହିଁ ଆପଣା ବଡ଼ାଇ
ଡାରେ ଡାରେ ଧରି ତାଳ    ଗାଅ ଦେଇ କରତାଳି
ଧେଇ ଧେଇ ନାଚ ବଜା ନଡ଼ିଆ ସଢ଼ାଇ ।



# ଦାସକାଠିଆ ପାଲା

ପାଲ୍ ଲାଗିଲାରେ ପାଲ୍ ଲାଗିଲାରେ
ମନ୍ତ୍ରୀ ଲଢ଼ାଇଲେ ଦେଶ ଜାଗିଲାରେ,
ବାବା ସତ୍ୟପୀର ସିନ୍ଧଣି ମାମଲାରେ ।

ଠକ୍ ଠକ୍ ଠକ୍ ଠକ୍ ଠକର ଠକର ଠକ୍
କିଏ ହୁଏ ବକ୍ ବକ୍, କିଏ ସକ୍ ସକ୍ ।
ଜଣେ ହୁଏ କୁନକାନ ଜଣେ ହାଉ ହାଉ
ମଝିରେ ଥାଇ ଆଉ ଜଣକ ମାଛ ଖାଏ ଦାଉ ।
ସପ୍ତରଥୀ ଟାଣୁଛନ୍ତି ବାଣପୁଷ୍ପ ବାଣ,
ଆସ୍ତୁ ଗସ୍ତ ପରେ ଯାଏ ବସି ଟାଣ ଟାଣ ।
ଜଣେ ଛାଡ଼େ ବୃପୁଡ଼ା ତ ଆନ ଛାଡ଼େ ବାଧା
କୁଜ ଭାଙ୍ଗିଯାଏ କାର ପିଠି ହୁଏ ସିଧା ।
ଦୁହେଁ ଦୁହିଁଙ୍କର ନାଶ ଧରି ଭିଡ଼ାଭିଡ଼ି
ସିଗାରେଟ ସଙ୍ଗେ ଯଥା ତାଳ ମାରେ ବଡ଼ି ।
ବେଳ ଠଉରାଇ ଦାଡ଼ି କଲେ କହ୍ନିମାନ୍ତ,
ହାୟୁ ହାୟୁ କରି ନାଶ ମୁନ୍ତ୍ରେ ଦେଲେ ହାତ ।
ହରି ହରି ବୋଲ ବାବା ରାମ ରାମ ବୋଲ,
ବଜାରେ ବଜାରେ ନାଚ ପିଟି ପିଟି ଢୋଲ ।
ହାନ୍ଧିକି ପାରିଲା ଉଜା ଛାଡ଼ି ଦେଲେ ରଡ଼ି,
ପାଳି ଦେଇ କର୍ମି ଉଠେ ପଣ୍ଡିତଙ୍କ ଦାଢ଼ି ।
ନାଶକୁ ମାଡ଼ିଲା ଖାଡ଼ା ଧାଏଁ ପଦାଆଡ଼େ,
ବାଟେ ବାଟେ ଢୋ-ଢୋ ବୋମାବଜା ଛାଡ଼େ ।
ଆନାରେ ପଡ଼ିଲା ନାଆଁ ନାଶ ଗଲେ ଛେପି,
ମିଆଁ ଯୁଅ ଦେଲେ ଆଣି ଚନ୍ଦନକୁ ଲେପି ।
ଆବାବ ଆବାବ ଜନାବ ସାଲମଲେ କାମ
ବୁଢ଼ା ଟୋକା ପଡ଼ିଚାହେଁ ରାମ୍ ରାମ ରାମ ।

ଦାସକାଠି ବାଜେ ଭାଇରେ ରାମ କାଠି ବାଜେ
ଠକ୍ ଠକ୍ ଠକା ଠକ୍ ଠକ ବାଜ ରାଜେ ।
ଠେକା ଠୁକ ଲଗ ଲଗ ଯେତେ ଉଦ୍ର ବୀର
ଧାଡ଼ି କରି ଗର୍ଜି ଆଇଲେ ବାବା ସତ୍ୟପୀର ।
ଲାଗିଲା ଲଢ଼େଇ ଭାଇରେ ଲାଗେ ଘମାଘୋଟ
ଓଡ଼ିଆଙ୍କୁ ଦେଖାଇ ଦେଲେ ସେରା ହାଇକୋର୍ଟ ।
ଅଜାଡ଼ି ଦେଲେ ଓଡ଼ିଆ ଡମା ଡମା ଭୋଟ
ବଡ଼ା ବଡ଼ା ନୋଟ ଧରି ଲାଗେ ହରିଲୋଟ ।
ଖଦଡର ଭେକଟିକୁ ଛାଡ଼ିନାହିଁ ବାବା,
ଚିତାକାଟି ଗାନ୍ଧି ବୁଢ଼ାକୁ କରିଦିଅ କାବା ।
ସବକୋଇତ ଲେତା ଭାଇପୁ କୋଇ ନେହିଁ ଦେତା,
ଯେତ୍ନା ଲେଗେ ଓତ୍ନା ଭାଇ ବନ୍ ଯାଓଗେ ନେତା ।
ଲେନା ଦେନା ଲଗ ରହା ହେ ଲେଲୋ ଦିଲ୍ ଯେତ୍ନା,
ଇସ୍ ମୌକା ହଟ୍ ଯାନେସେ ଘଟ୍ ଯାଏଗା ପତ୍ନା ।
ହଠାତ୍ ଦିନେ ଚଳେଇ ଦେବ ସେଇ ପୁରୁଣା ଖେଲ,
ଷ୍ଟୁଡ଼ି ଯିବ ହାଲ ସଜାଡ଼ି ହୋଇବ ଲାଲେ ଲାଲ ।
ବହୁରୂପୀର ଘଡ଼ିକ ଘଡ଼ି ବଦଳି ଯିବ ରଙ୍ଗ,
ଯୁଝୁଛି ପରା କହନ୍ତୁ ପୂରା କଂଗ୍ରେସିଆ ଢଙ୍ଗ ?
ହେଲାଚ ହେଲା କି ବହି ଗଲା ପରବା ତହିଁକି ଥୋଡ଼ି,
ଓଡ଼ିଶା ଦେଶେ ମିଳିଲା ନାହିଁ ଯା ଭୁମର ଜଣେ ଯୋଡ଼ି
ମରିଲେ ଏକା କାଳି ଅକ୍ଷରେ ରହି ଯିବଟି ନାମ,
ଓଡ଼ିଆ ଜାତି ଇତିହାସର ବଢ଼ି ଯିବଟି ଦାମ ।
ହରି ହରି ବୋଲ ଭାଇରେ ପାଲା ଗଲା ବଢ଼ି
ଲଜ୍ଜା ନାହିଁ ମୁଖେ ଯାର ତାର ଗଲାସୁ ଦାଢ଼ି ।



# ମନ୍ତ୍ରୀ ବରଣୀ

ସ୍ୱରାଜ୍ୟ ଆଜ ଯାଇଛି ମିଳି
ଚହ୍ନିଲେ ହେବ ମନ୍ତ୍ରୀ ବଛା,
ଡାକରା ହେଲା, ଆସରେ ଆସି
ହୋଇଥିବ ଯେ ନିପଟ ସଚ୍ଚା ।

ସ୍ୱାଧୀନ ଦେଶେ ମୁକ୍ତ ସବୁ
ସବୁଠିଁ ଫାଙ୍କା ସାହାଣ ମେଲା,
ନିଶୁଆ ଠେଲା, ଯାଆରେ ପେଲି,
ନିଶଟା ମାତ୍ର ଥିଲେଇ ହେଲା ।

ଯେତେକ ଥିଲେ ନିରାମିଷୀ
ନିରାହାରୀ, ନିର୍ଲୋଭ ତ୍ୟାଗୀ
ତାଙ୍କୁଇ ଘେନି ବସିଲା ସଭା
ମନ୍ତ୍ରୀ ବଛା କରିବା ଲାଗି ।

ଘରଆଡ଼ୁ ହାଜର ହେଲେ
ଗୋଷ୍ଠୀକୁ ଗୋଷ୍ଠୀ କାଂଡ଼ିଡେଟ୍,
ଶାଢ଼ୀ ଶିର୍‌ପା ଯିବଟି ମିଳି
ଯାହାର ଥିବ ତାଜା ଫେଟ୍ ।

ଚହ୍ନିଲେ ଜଣେ ପାକୁଆ ପାଟି
ଦାଖଲ କଲେ ଆପଣା କ୍ଲେମ୍,
ଜବର ମନ୍ତ୍ରୀ ଥିବାର ଏକା
ଥାଉଛି ଆମର ଦେଶରେ ଫେମ୍ ।

ଜମିଦାରର ଦାନ୍ତ ଝାଡ଼ି
କରିଛୁ ଆମେ କ୍ଷତ୍ରିମାତ୍ର,
ମହାନ୍ତଙ୍କ ଅନ୍ତଲି ପେଟ
ଫଟାଇ ଦେଲୁଁ ଅକସ୍ମାତ୍ ।

ବାରଣ କରି ଅଫିମ ମଦ
ଦେଶର କଲୁ ଉପକାର
ବନ୍ଧନ ବାଣ୍ଟି, କୃଷୀର ପେଟେ
ଭରଣି କଲୁଁ ଖାଦ୍ୟସାର ।

ତଥାପି ଆମେ ଦେଶର ଲାଗି
ମୁରୁଛୁ ଦେଉଁ ଏ ପଦଖଣ୍ଡି
ଦେଖିବ ଏକା ଯେପରି କେହି
ନ ପଶେ ପଛେ ନେବାକୁ ଭଣ୍ଡି ।

ତହିଁ ଉତ୍ତାରୁ ଅଇଲେ ଜଣେ
ଶୁଭ୍ର କେଶ, ଶୁଭ୍ର ନଖ,
ବୋଇଲେ ଧୀରେ—"ବିଚାର କର
ଅପରାଧଟା ଆମର କସ ।

ଦେଶର ସେବା କରିବା ଲାଗି
ଆପଣା ଦଳ ଦେଇଛୁଁ ଗୁଡ଼ି
ସର୍ବତ୍ୟାଗୀ-ହୋଇଛୁଁ ତେଜି
ପୁତ୍ର, ଦାରା, ବିଷୟବାଡ଼ି ।

ଚେର ପାଳିଁକ ଆତ୍ମବଳି
ଏଇ ମହତ ଧର୍ମ ପାଳି
ଆପଣା ଦେଶ ଅନ୍ନ-ଥାଳୀ
ପର ମୁଖରେ ଦେଇଛୁ ଢାଳି ।

ଦୁଷ୍ମନର ଚନେ ପଡ଼ି
ମନ୍ତ୍ରୀ ପଦୁଁ ଖାଇଲୁ ତଡ଼ା,
ଏଇ ପଦକୁ ଯୋଗ୍ୟ ଏକା
ନୁହଇ କେହି ଆମ୍ଭ ହାଡ଼ା ।"

ବୋଇଲେ ଜଣେ ହଲାଇ ଦାଢ଼ି
"ବୋଲଉ ବଡ଼ ପଣ୍ଡିତ ଆମେ,
ଭେଣ୍ଡିଆ ଦିନୁଁ ଅଂଡ଼ଆ ଭଳି
ରହିଛୁଁ ଲାଗି ଦେଶର କାମେ ।

ବୃହତ୍ କର୍ମ ଗ୍ୱେଦନାରେ
ଆମକୁ ନାହିଁ ଅବସର
ବଢ଼ି ଯାଇଛି ଦାଢ଼ିଟା ତେଣୁ
ଭଣ୍ଡାର ଠାରୁ ନ ହୋଇ ଛର ।

ଚେହେରା ସିନା ଦେଖୁଛ ବୃଦ୍ଧ
ଆମର ଶୁଦ୍ଧ ନବ୍ୟ ଭାବ,
ନବ-ଭାରତ ଗଢ଼ିବା ପାଇଁ
ଗୁଡ଼ିଛୁଁ ଆମେ ତ୍ରିମୂଳ ରାବ ।

ଆମକୁ ଦେ କରିବ ମନ୍ତ୍ରୀ,
ଦେଖିବ ତୁମେ ରାତିକା ରାତି
ଏ ମୁଣ୍ଡାରୁ ସେ ମୁଣ୍ଡ ଯାକେ
ଜଳାଇ ଦେବୁଁ ରଙ୍ଗିନ ବାତି !"

ଏଇ ପରକା ଜଣକୁ ଜଣ
ଆପଣା ସାର୍ଟିଫିକେଟ୍ ଧରି,
ବାଡ଼ି ଯେ ଗଲେ ନଜର ଦାଗି
କଏ ପାରିବ ତନଖି କରି !

ଆଖି ବାଡ଼ରେ ପଶିଲା ସରି
ହୋଇଲେ ଯେତେ ଖବୃରପତ୍ତ
କାହାକୁ ଛାଡ଼ି କାହାକୁ ନେବା
ସମସ୍ୟାଟା ବିଷମ ଅତି ।

ମନ୍ତ୍ରି ମନ୍ତ୍ରି ହାଲିଆ ହେଲେ
ମୁଣ୍ଡ-ହାଣ୍ଡିରେ ମଗଜ-ଦହି,
ମୁନ୍ଥିଲ ନାହିଁ ଲହୁଣୀ ତଳେ
ପାଣି ଫାଟି ସେ ଗଲତ ବହି !

ଏ'ା ମୁହଁକୁ ଚାହିଁଛି ସିଏ,
ତା ମୁହଁକୁ ଚାହିଁଛି ଇଏ,
କାହାର ଅକଲ ଖଟୁଚ ନାହିଁ
କଥାଏ ଅବା କହୁଛି କଏ !

ସବେ ଦଣ୍ଡେ ମୁହଁକୁ ପୋତି
ରହିଲେ ଦେଇ ମୁଣ୍ଡେ ହାତ,
ପଧାନେ ତହୁଁ ଚମକି ପଡ଼ି
ଉଠିଲେ ରବ ଅକସ୍ମାତ୍ ।

ମିଳିଛି ଏବେ ! ମିଳିଛି ଏବେ !
ବାଟଟା ସିଧା ପଡ଼ିଲା ଜଣା,
ମିଛରେ ସିନା ହରଣ୍ଡି ହୋଇ
ପହରେ ହେଲ ହେଲୁଣି ବଣା !

ସମ୍ଭଏଁ ତହୁଁ ତରଛି ଆଖି
ଚାହିଁଲେ ସଭାପତିଙ୍କ ଆଡ଼େ,
ଗମ୍ଭୀର ସେ ମୁହଁକୁ କରି
ମୁରୁକ ହସି ଭାଷିଲେ ଗାଡ଼େ ।

"ଆମକୁ ଏହା ପଡ଼ୁଛି ଜଣା
ସମ୍ଭଏଁ ଥରେ ଦେଖିଲ ଭାବି,
ଏକକୁ ଏକ ସରସ ସବୁ,
ନୁହଇ ଊଣା କାହାର ଦାବି ।

ସମ୍ଭଏଁ ପୁଣି ବନ୍ଧୁ ଆମର
କାହାକୁ ଅବା କରିବା ପର,
ଜଣକୁ ଛାଡ଼ି, ଜଣକୁ ନେଇ
ଆମେ ବା କାହିଁ ଭାଙ୍ଗିବା ଘର ।

ମୋହର ଏହି ସିଦ୍ଧ ମତ—
ସବୁର ନାମ ବରାକ୍ କାଟି
ଆମେ ଯେତେକ ଖବୃର ପତ୍ତ
ମନ୍ତ୍ରୀତ୍ୱକୁ ନେବା ହେ ବାଣ୍ଟି ।

ଏତକ ତ୍ୟାଗ କରିବା ଆମେ
ଦେଶର ଏହି ସନ୍ଧି କାଳେ,
ମହତ ଏକା ଦେଶର କାମ,
'ଆମର ସ୍ୱାର୍ଥ ନାହିଁଟି ତାଳେ ।"

"ସାଧୁ, ସାଧୁ" ବୋଇଲେ ସବେ,
ବାଜିଲା ତୁରୀ, ମହୁରୀ ଢୋଲ,
ମନ୍ତ୍ରୀ-ବଣ୍ଟା ହୋଇଲା ଶେଷ
ସବେ ଏକବାର ହରିବୋଲ ।



# ଶୋକ ଗୀତ

କାନ୍ଦରେ ଉତ୍କଳବାସୀ ଛାଡ଼ି ଦୀର୍ଘ ରଡ଼
ମାଡ଼ିଆସୁ ଅଷାଢ଼ୁଆ ମହାନଦୀ ବଢ଼ି ।

ଯାକୁ ନ ମାଡ଼ୁଛି କାନ୍ଦ, ଦିଅ ଆଖି ମଳି,
ନ ପାରିଲେ ଦି ଆଖିରେ ଛେପ ଦିଅ ବୋଳି ।

ଛାନ୍ଦରେ ବାନ୍ଧିନ ସର୍ବେ ଛାଡ଼ି ଶୋକଶ୍ଳୋକ,
କିଣିଆଣ ବଜାରରୁ (ଖଣ୍ଡେ) 'ଆଳିରାଜା ଶ୍ଳୋକ' ।

ମୁଣ୍ଡରେ ବାଡ଼େଇ ହାତ କାନ୍ଦ ସଭା କରି
ଖବରଦାର୍ ! ଧୀରେ ଧୀରେ, ଭାଙ୍ଗିଯିବନି ଟେଶ !

ବକ୍ତୃତାରେ କାନ୍ଦ ହାତ କରୁଡ଼ି ଛାତିରେ
ବିଛଣାରେ ଶୋଇ କାନ୍ଦ ଅନ୍ଧାର ରାତିରେ ।

ପଟୁଆର କରି କାନ୍ଦ ସୁଡ଼ୁସୁଡ଼ୁ ହୋଇ,
କାନ୍ଧ ପଡ଼ିକରି ନାଲି ମାଟି ଦିଅ ଧୋଇ ।

ନ କାନ୍ଦିବ ଯେବେ ଆରେ ଜାତିଟା ତମାମ,
ଅସଲ ଓଡ଼ିଆ ଜାତି ନିମକ ହାରାମ୍ ।

ତମ ପାଇଁ ଛାଡ଼ିଲେ ଯେ ପୁତ୍ର, ଦାରା, ଘର,
ପରକୁ ଆପଣା କଲେ, ଆପଣାକୁ ପର ।

ଦଶକୁ ମହାର୍ଘ ମଣି କଲେ ଦେଶ ସେବା,
ତ୍ୟାଗୀ ବ୍ରହ୍ମଚାରୀ ପଣେ ତାଙ୍କ ସରି କେବା ?

ଦେଶ ପାଇଁ ଭାବି ଭାବି ବାଳ ଗଲା ପାଚି,
ମାକାଲ ଦଶରେ ଆଉ ନ ବସନ୍ତ ମାଛି ।

ଦାଢ଼ି ବିନା କେହି ହୋଇ ପାରେକି ପଣ୍ଡିତ ?
ତାଙ୍କଠାରେ ଏ ନିୟମ ହୋଇଲା ଖଣ୍ଡିତ ।

'ଅର୍ଦ୍ଧଂ ତ୍ୟଜତି' ନୀତି ଯେଣୁ ଥିଲେ ଧରି,
ଶିଖାଇଲେ ତ୍ୟାଗ ଧର୍ମ ଆପଣେ ଆଚରି ।

ଏମନ୍ତ ପଣ୍ଡିତ ଆଜ ଛାଡ଼ିଗଲେ କାହିଁ,
ହାୟରେ ଉତ୍କଳବାସୀ ତୁମ ହିତ ପାଇଁ ।

ସ୍ବର୍ଗରୁ କଗଡ଼ ପଡ଼ି ହେଲେ କୁପ୍ କାତ୍,
ଟାଙ୍ଗାନେଇ ପଡ଼ିଲେ ଯାଇ ହୋଇ ଚିତ୍ ମାତ୍ ।

ଦାଢ଼ି ସଙ୍ଗେ ବାଦ କରି ଏମନ୍ତ ହେଲା ଫଳ
ମାଡ଼ି ଦଳି ଦେଲା ମତ୍ତଗଜ ଦନ୍ତାବଳ !

'ହାୟ୍ ! କିସ ହେଲା ! କର୍ମ ଉଠେ ପ୍ରାଣଭନ୍ତି,
ଅବୁଝା ରଜାକୁ ଯେସନେ ପାଳବନ୍ଧା ମନ୍ତ୍ରୀ ।

ପୁଣି ମାରୁଥିଲେ ଗଜା ବାରମ୍ବାର ମରି,
ଏଥର ମରଣ ଲାଗେ ସବୁ ଗଲା ସରି ।

ଆଉ କେ ବୁଝିବ ଶିକ୍ଷା ବିସ୍ତାରର ଭାଉ,
'ନନ-ପାଣ୍ଟି' ଫାର ଗୀତ କେ ଗାଇବ ଆଉ ?

କେ ଜାଳିବ ସତ୍ୟବାଦୀ ସତ୍ୟର ଆଲୁଅ,
ଆଦର୍ଶ ଚରିତ୍ର ଦେଖାଇବ କେଉଁ ପୁଅ ?

ପ୍ରେମ ଯଦି ମଲ—ତୁମ୍ଭ ଆତ୍ମାଟି ଅମର,
କୀର୍ତ୍ତିରାଜି ତବ ସିନା ଅଜର, ଅକ୍ଷର ।

ଚିରଦିନ ଦେଉଥିବ ଲୋକଗଣେ ଶିକ୍ଷା,
ଉତ୍କଳେ ଉଠିବେ ମାତି ଧରି ତୁମ୍ଭ ଦୀକ୍ଷା ।

ଦିନେ ଏ ଉତ୍କଳ ଦେଶ ତୁମରି ଆଦର୍ଶେ,
ଆକାଶେ ଟେକିବ ଶିର ଏ ଭାରତବର୍ଷେ ।

ଗୀତ ଶେଷ କରି ଏବେ ମାଗୁଛୁଁ ମେଲାଣି,
କାନ୍ଦିବାକୁ ଆଖି ଦି'ଟା ଅଥୟ ହେଲାଣି ।

ଏଇବେଳେ ସର୍ବେ ମିଳି କାନ୍ଦ ନିଅ ଥରେ
ବେଳ ପଡ଼ିଗଲେ ପୁଣି ପସ୍ତେଇବ ପରେ ।



# ଧଳା ମାଣିକରେ

ଧରେ ଯେନ ଆନନ୍ଦରେ ଦାଢ଼ି ବିଲମ୍ବିତ
ଛାତ୍ରଙ୍କୁ ବାତ୍ସଲ୍ୟ ଭାବେ ଭୁଲାନ୍ତି ପଣ୍ଡିତ ମୋ ଧଳା ମାଣିକରେ ।

ଲୁଚିଥିଲ ତୋତେ ମୁହିଁ ଗଲା ପରଯନ୍ତେ
ବଢ଼ି ବଢ଼ି ଚଢ଼ିଗଲୁ ଲୁଚିକୁ କେମନ୍ତେ ମୋ ଧଳା ମାଣିକରେ ।

ନିଧନ ବାଟ ତୁ କରୁ, କଳଙ୍କ ପସର
ଫାସି ଦଉଡ଼ି ହେଉଛୁ ଗଳାରନ୍ଧ୍ର ହାର ମୋ ଧଳା ମାଣିକରେ ।

ମୋ ଚିବୁକ ଧନ ତୁହି ଗଣ୍ଡ ବିମଣ୍ଡନ
ତୋତେ ଯେବେ ଗଲଧର୍ମ ହେଲ ଏ ଜୀବନ ମୋ ଧଳା ମାଣିକରେ ।

ଉଡୁଥାଉ ଗହଳକ ଗଡ଼ୁ ସରୁ ସରୁ
ମୋ ହୃଦ ମଣ୍ଡନା ସୁଖ ଏବେ କପାଁ ସାରୁ ମୋ ଧଳା ମାଣିକରେ ।

ଯେତେ ମୁଁ କଲପ ଦେଲି ନୋହିଲୁ ତୁ କଳା
ଦିନ ଗୋଟା ଦୁଇ ତୋତେ ଡର ନ ସହିଲ ମୋ ଧଳା ମାଣିକରେ ।

ଚନ୍ଦ୍ର କିରଣକୁ ତୁହିଁ ସେତ ଚମକାଇ
ଚଳାପାଙ୍ଗୀ ତୋତେ ଭଲ କେମନ୍ତେ ଦେଖଇ ମୋ ଧଳା ମାଣିକରେ ।

କମ୍ବଳ ଉପୁରେ ଶୀତେ ମୋତେ ଧରେ ଯାକି
ଚନ୍ଦ୍ରିକା ଭଗାରି ଜୁଡ଼ ହେଉ ଡାକ ହାକ ମୋ ଧଳା ମାଣିକରେ ।

ବୃଦ୍ଧ କାଳେ ତୁ ମୋହର ଏକଇ ଭରସା,
ହୃଦତାପ ବିନାଶନେ ତୁ ବିଛୁଡ଼ି ବସା ମୋ ଧଳା ମାଣିକରେ ।

ନଇଞ୍ଚ ବଢ଼ିଲୁ ତୋତେ କଇଞ୍ଚି ନ ଯୁଟେ
ବଇଞ୍ଚ ପାଇଁକି କାଲେ କାଟି ନେବେ ତୋତେ ମୋ ଧଳା ମାଣିକରେ ।

ଗୁଡ଼ ତେନ୍ତୁଳ ଗୋଳିକ ତୋତେ ବୋଳି ଦେଲେ,
ତେଲୁଅ ଆମ୍ଭକୁ ଭେଟି ରଖିବାର ଭୁଲେ ମୋ ଧଳା ମାଣିକରେ ।

ନାଲ ବହୁଥିଲେ ଖଟା ଚଟା ଏ ପାଟିରୁ
କାକର ଗଡ଼ଇ ଯଥା ଛଣ ବଦାଡ଼ରୁ ମୋ ଧଳା ମାଣିକରେ ।

ଗୋରୁଏ ଲୋଭନ୍ତି ତୋତେ ଉଡୁଥାଇ ମନେ
ବାର ବାର ବାରେଁ ପୁଣି ବଢ଼ି ଯାଉ କ୍ଷଣେ ମୋ ଧଳା ମାଣିକରେ ।

ସାହେବାଣୀ ମାତିଲେଣି ଶୁଭୁଛି ଶ୍ରୁତିକ,
ଯୁଦ୍ଧ ଯୋଗୁଁ କାନ୍ଧବାଳ ନ ଆସେ ଏଠିକି ମୋ ଧଳା ମାଣିକରେ ।

ଯୁଦ୍ଧ ଅଡ଼ନାସ୍ନ କରି ନେବେ ତୋତେ କାଟି,
ରଙ୍ଗ କରିବାକୁ ରଖିଲେଣି କଳାମାଟି ମୋ ଧଳା ମାଣିକରେ ।

ତୋତେ ମୁଁ ଲୁଡ଼ିଲି ଜୁତ ଲୁଡ଼ୁ ନାହୁଁ ମୋତେ,
ଭସାଉଛୁ ବୁଡ଼ାଉଛୁ କେତେ ପ୍ରେମ ସ୍ରୋତେ ମୋ ଧଳା ମାଣିକରେ ।

ତ୍ରେତା ଯୁଗେ ଗୁଡ଼ ତୋତେ ହେଉଥିଲେ ନେତା,
ସେ କାଳ ତ ପୋଡ଼ିଗଲା ଏବେ ହେଲା ଏତା ମୋ ଧଳା ମାଣିକରେ ।

ତୋ ଦୟାରୁ ଦ୍ୱାପରରେ ମୁଁ ପୁରୁଷ-ଷଣ୍ଢ,
ଏବେ ତ ମାଇପେ ହେଲେ ତା ତହୁଁ ପ୍ରଚଣ୍ଡ ମୋ ଧଳା ମାଣିକରେ ।

ତୋତେ ଦେଖି ବନଥିଲି ଉରୁଥିଲେ ଅଜା,
ଗିଧା ଏବେ ବୋଦାସନେ ହେଲେ ତେଲ ଭଜା ମୋ ଧଳାମାଣିକରେ ।

ବାଳକର କ୍ଷୁର ଡର ନାହିଁ କରେ ତୋତେ,
ଆଉ ଉଦ୍‌ବାଇଜା ତୁ ହୁଅ ନାହିଁ ଏତେ ମୋ ଧଳା ମାଣିକରେ ।

କାହାକୁ କି ଦାଢ଼ି ଦେଇ ନାହିଁରେ ଦଇବ ,
ତୋ ପରି ଅଳସ ବୁଦା କଏ କପାଁ ହେବ ମୋ ଧଳା ମାଣିକରେ ।

ଏମନ୍ତ ଅଦାଢ଼ି ଧ୍ୟାନ କରୁଛି ଭାବନା
ଦାଢ଼ି ପ୍ରେମ ରସ ବିନା ସବୁ ହେବ ଛେନା ମୋ ଧଳାମାଣିକରେ ।



# ହିନ୍ଦୁ ମୁଷଲମାନ ମିଳନ

ନୟ କରିବ ହିନ୍ଦୁ ଆଜି
ମୁଷଲମାନରେ ଅମେଳ ଖୋଜି
ତାଳକୁ ଚୁହିଁ ଦେଖି ସିଏ
ଆଖିରେ ଶୁଖୁଆ କଣ୍ଟା ମାତ୍ର ।

## ଜୁଆ ଆଡ୍‌ଡ଼ା

ବକରିଦର କୋର୍‌ବାନ ନୁହେଁ,
ମସ୍‌ଜିଦ ଆଗେ ବାଜା ନୁହେଁ
ଏଠି ନାହିଁ କଚ୍ଛୁ ଭୟ,
ଜୁଆ ଖେଳରେ ଭେଦା ଭେଦ ନାହିଁ
ଗାଅ, ହିନ୍ଦୁ ମୁଷଲମାନ କ ଜୟ ।

## ସରାପ ଦୋକାନ

ଭାରତ ମାତାର ସନ୍ତାନ ଆମେ, ଅଟୁ ଦୁଇଭାଇ
ବଢ଼ିଛୁ ଆମେ ଜନମୀର ଏକ ସ୍ତନ୍ୟ ଖାଇ
ଏକା ଗ୍ଲାସରେ ପିଇବାକୁ ତେବେ କଚ୍ଛୁ ବାରଣ ନାହିଁ ।

## ବେଶ୍ୟାଳୟ

ଶ୍ରୀ କ୍ଷେତ୍ର ଓ ମକ୍‌କା ମିଳି ହୋଇଛୁ ଏ ମହାତୀର୍ଥ
ଏକା ସାଙ୍ଗରେ ଦର୍ଶନ, ସ୍ପର୍ଶନ, ପରମ ପୁରୁଷାର୍ଥ ।

## ନୌକର ଖାନା

ଗୌରାଙ୍ଗର ସେବକ ହେଲେ ନଥାଏ ଜାତିର ବିଚାର
ଏ ତଥ୍ୟର ସତ୍ୟାସତ୍ୟ ବେହେରା ଓ ବବୁର୍ଚ୍ଚିକୁ ପଚାର ।

## ହାକିମ ଭବନ

ଦିନ ଦୁନିଆର ମାଲିକ ତୁମେ, ମା'ବାପ ଆମର ଇଷ୍ଟ
କୋରାନ୍‌ର ଆଲ୍ଲା ତୁମେ, ପୁରାଣର କୃଷ୍ଣ ।

## ଟି ପାର୍ଟି

ଲାଟ୍ ସାବ୍‌କା ଟି ପାର୍ଟିମେ ସବ୍‌କୋଇ ସମାନ
କୋଳା କୋଳି, ବୋଲା ବୋଲି, ହିନ୍ଦୁ-ମୁଷଲମାନ୍ ।



# ଅଲଣା ପୁରାଣ

ଶୁଣ ହେ ସର୍ବଲୋକେ ପୁଣ । ଅଲଣା ପୁରାଣର ଗୁଣ ॥
ଏହା ପଢିଲେ ପୁଣ୍ୟବଳ । ଲଭିବ ଚତୁର୍ବର୍ଗ ଫଳ ॥
ଏହା ଯେ କର୍ଣ୍ଣରେ ଶୁଣିବ । ଭବ ସାଗରୁ ନିସ୍ତରିବ ॥
ଅପୁତ୍ରୀ ଲଭିବ ସନ୍ତାନ । ଅଜ୍ଞାନୀ ପାଇବଟି ଜ୍ଞାନ ॥
ନିର୍ଦ୍ଧନୀ ହେବ ଧନବନ୍ତ । ନିର୍ବଳୀ ହେବ ବଳବନ୍ତ ॥
ରୋଗୀ ଯେ ଲଭିବ ଆରୋଗ୍ୟ । ଭୋଗୀ ଲଭିବ ରାଜ ଭୋଗ ॥
ଉଠିଲା ଦେଶେ ମହାରୋଳ । ଲୁଣମରାର ଗଣ୍ଡଗୋଳ ॥
ସାରା ଭାରତ ଗଲେ ମାତି । ପଞ୍ଜାବୀ, ପଶ୍ଚିମା, ଗୁଜୁରାଟି ॥
ମାନ୍ଦ୍ରାଜ, ବଙ୍ଗାଳୀ, ବିହାରୀ । ମରହଟ୍ଟା, ନେକ୍ତି, ଆଦ୍ଦିକର ॥
ତେଲଙ୍ଗା, ଶିଖ, ମାରୁଆଡ଼ି । ସବେ ଧାଇଁଲେ ଧାଡ଼ି ଧାଡ଼ି ॥
ତାଂହାଙ୍କୁ ଦେଖି ବଗ ପ୍ରାୟେ । ଧାଇଁଲେ ଓଡ଼ିଆଙ୍କ ପୁଏ ॥
କୁଆ ବଗଙ୍କ ଓଧ ସଙ୍ଗେ । ବାଇ ହୁଅଇ ଯଥା ରଙ୍ଗେ ॥
ଗାନ୍ଧିଙ୍କ ଭୁଲ କି ଅକଲ । ବୁଢ଼ା କାଳରେ କଲବଲ ॥
ଆମ୍ଭେମେ ନିଶ୍ଚିନ୍ତରେ ଶୋଇ । ରହନ୍ତେ ଯାଇ ତୁନି ହୋଇ ॥
ଏହା ନ କରି ତୁନି ହୋଇ । ତୁରୁଙ୍ଗରେ ହେଲେ ରାଜଦ୍ରୋହୀ ॥
ଆମେ ଓଡ଼ିଆ ଅସ୍ତ୍ରା ଜାତି । କି ହେବ ଏ ଗୋଳରେ ମାତି ॥
କାଳେ ଆମର ବାପ ଦାଦା । ଥିଲେ ବହୁତ ନାମଜାଦା ॥
ଥିଲା ତାଙ୍କର ବୀର ପଣ । ଶ୍ରେଣୀ ଯେ ଥିଲେ ବହୁ ରଣ ॥
ଶିଳ୍ପ ବଣିଜେ ବଳୀଆର । ପାଣ୍ଡିତ୍ୟ ସଭ୍ୟତା ଅପାର ॥
ସ୍ୱାଧୀନ ଜନ୍ମତ ବୋଲାଇ । ମହା ସୁଖରେ ଥିଲେ ରହି ॥
ସତ କି ମିଛ ସେହି କଥା । କିପାଇଁ ବଥାଇବା ମଥା ॥
ଏବେ ତ ଆମ ନାମ ମେଣ୍ଢା । ଆମକୁ ସୁଝାବଟି ହୁଣ୍ଡା ॥
ଗୋଳରେ ଆମର କି ଅଛି । ଦିନ ତ ସୁଖରେ ଯାଉଛି ॥
ନଜର କରି ଦି' ପଇସା । ଆସିଲେ ହେବ ପେଟପୋଷା ॥
ସର୍କାର ହାତେ ସବୁ ଦେଇ । ସୁଖ ଶାନ୍ତିରେ ଅଛୁଁ ରହି ॥
ଯାହା ଇଚ୍ଛା ସେ କରୁଅଛି । ଆମର ଚିନ୍ତା ନାହିଁ କିଛି ॥
ତା ରାଜ୍ୟେ ଘର କରି ରହି । ପେଟର ପଡ଼ିଲେ ଯେ ସହି ॥
ଆମର ଖାଇବା ପିନ୍ଧିବା । ଘର କରଣା ଦେବା ନେବା ॥
ସବୁ ସଅଁପି ରାଜା ହାତେ । ନାଥେ ଶୋଇଲେ ଚଉମାତେ ॥
ଯାଇ ପଡ଼ିଶା କବା ଭାଇ । ସଙ୍ଗେ କଳି ଯେ ଲଗାଇ ॥
ଧୂଳିସି କବା କଚେରିରେ । କରୁଁ ମାମଲା ଆନନ୍ଦରେ ॥
ତହିଁରେ କି ଭଲ ମଜା । ମନେ ବିଚାର କରି ବୁଝ ॥
ସର୍କାର ସଦା ଦୟା କରି । ଆମର ଘରେ ଦୟା କରି ॥
ଆମର ଆପଣାର ପାଇଁ । ଭାବନା କରିବାକୁ ନାହିଁ ॥
ଖଜଣା ଟିକସ ନଅନ୍ତି ! । ଆମର ପାଇଁ ରଖିଛନ୍ତି ॥
ଯେଣୁ ସେ ଆମର ଅଛନ୍ତି । ଆପେ ନ ଖାଇ ପୋଷନ୍ତି ॥
ହୋଇଲେ ସ୍ୱରାଜ ଏ ଦେଶେ । ବିଦେଶୀ ରହିବେ ଉପାସେ ॥
ତାଙ୍କର ଆଶା ମାରିବାର । ଅଧର୍ମ ହୋଇବ ଆମର ॥
ଏ ଭଳି ସୁଖ ଶାନ୍ତି ଛାଡ଼ି । କାହିଁକି ହୋଇବା ଉଗାର ॥
ସ୍ୱାଧୀନ ହେବା ବଡ଼ ଧନ୍ଦା । ପର ଅଧୀନ ଭଲ ଫନ୍ଦା ॥
ଆପଣେ ଅଲଗା ରହିବା । ପର ଉପରେ ମାରି ନେବା ॥
ବାହାର ଶତ୍ରୁ ଆକ୍ରମଣ । କରିବ ଯେତେବେଳେ ପୁଣ ॥
ଘରର ପୁଅ ଘରେ ଥିବ । କରିବ ଦୋଡ଼ଣ ଶୋଇବ ॥
ଆହୁରି ଅଛି ଭାଇ ଶୁଣ । ସ୍ୱାଧୀନ ହେବାର ଦୁର୍ଗୁଣ ॥
ଦେଶ ଶାସନ, ଦୁଃଖସୁଖ । ମୁଣ୍ଡ ଉପରେ ହେବ ବୋଝ ॥
ଆମେ ତ ମାମୁ ଘରେ ଖାଉଁ । କାହୁଁ ଜାଣିବୁ ଧାନ ଭାଉ ॥
ଲଠାରେ କଏ ପଡ଼େ ଭଲ । ଦିନ ଗୁଜରି ଗଲେ ଗଲା ॥
ଘୋଡ଼ାକୁ ପିଏବା ବାନ୍ଧିବ । ସିଏ ନିଶ୍ଚୟେ ଦାନା ଦେବ ॥
ଅଦାର ବେପାର ଯେ କରେ । କି କାର୍ଯ୍ୟ ଜାହାଜ ଖବରେ ॥
ଯା ଦେହେ ଅଛି ତତା ଲହୁ । ସେ ପଛେ ଲଢ଼ିବାକୁ ଯାଉ ॥
ଆମେ ପଖାଳଖିଆ ଜାତି । ଏ କଥା ଆମକୁ ଅମାତ ॥
ଯଦି ଏ ଦେଶେ ହେବ ଗୋଳ । ଛାଡ଼ି ଆମର ସ୍ତିରୀ ବାଳ ॥
କଅଁ ବୁଦାରେ ଲୁଚି ରହି । ଜୁଳୁଜୁଳୁକ ଥିବା ଚାହିଁ ॥
ଯଦି ସ୍ୱରାଜ୍ୟ ମିଳ ହୋଇ । ତେତେବେଳକୁ ଆସି ଧାଇଁ ॥
ହାପୁଲେ ଧରି ମାରିନେବା । ଅଲଣା ନାମକୁ ବହିବା ॥
ସରଳ ଅଲଣା ପୁରାଣ । ଅଟଇ ଅମୃତ ସମାନ ॥
ଶୁଣିଲେ ଏହା କର୍ଣ୍ଣେ ଥରେ । ସକଳ ପାପ ତାପ ହରେ ॥
ଅନ୍ତେ ପାଇବ ସେ ମୁକତି । ଅଲଣା ଲୋକକୁ ପ୍ରାପତି ॥

•

ବସିଣ କୈଳାସ ଶିଖରେ । ପାର୍ବତୀ ପଚାରନ୍ତି ହରେ ॥
ଶୁଣ ହେ ଶୁଣ ପ୍ରାଣେଶ୍ୱର । ମନେ ସଂଶୟ ହୁଏ ମୋର ॥
ଲୁଣମରାର ଯେଉଁ ଗୋଳ । ଲାଗିଛି ଭାରତ ମଣ୍ଡଳ ॥
କହିବ ଏହାର ବୃତ୍ତାନ୍ତ । ତୁମ୍ଭେ ତ ଅନ୍ତର୍ଯ୍ୟାମୀ ନାଥ ॥
ଶିବ କହନ୍ତି ଆଗୋ ଦେବୀ । ସକଳ ବଖାଣି କହିବ ॥

# ଅଲଣା ପୁରାଣ

ଜମ୍ବୁ ଦ୍ୱୀପର ଜନମାନ । ବହୁତ କାଳୁ ପରାଧୀନ ॥
ଥାଇ ହୋଇଲେ ଶ୍ୱାନବତ । ସତ୍ୟ, ସାହସ ହେଲା ହତ ॥
ଆପଣା ମଧ୍ୟେ କଳି କରି । ପଶୁ ପରି ଏ ଦିନ ହରି ॥
ଅଧର୍ମେ ରହିଲେ ବସ ବୁଡ଼ି । ମିଥ୍ୟା ମାୟାରେ ଗଲେ ସଡ଼ି ॥
ବିଦେଶୀ ଏ ସୁବିଧା ଦେଖି । ଦାସ ପଣରେ ଦେଲା ରଖି ॥
ଯାହା ସେ କରନ୍ତି ଅର୍ଜନ । ହରିଲା ସବୁ ତାଙ୍କ ଧନ ॥
ଶୁକଚକ୍ୟରେ ଗଲେ ଭୁଲି । ଅଭାବେ ନ ଜଳିଲା ଚୁଲି ॥
ତହୁଁ ଯେ ଭବଗ୍ରାହୀ ହରି । ଜନ୍ମିଲେ ନରରୂପ ଧରି ॥
ଏ ଦୁଃଖ ହରିବାର ପାଇଁ । ବଣିଆଁ କୁଳେ ଜାତ ହୋଇ ॥
ହୋଇଲେ ଯୁଗ ଅବତାର । ଗାନ୍ଧି ନାମରେ ପରଚାର ॥
ଶେଷ ବେଳକୁ ଥିଲା ଲୁଣ । ତାହାକୁ ହରି ନେଲା ପୁଣ ॥
ପାଣି ମାଟିରୁ ଉତପନ୍ନ । ନ ସରେ କା'ର ଗଣ୍ଠି ଧନ ॥
ତାହା କରିବା ବନ୍ଦ ହେଲା । ଲୋକଙ୍କ ନିଶ୍ୱାସ ବୁଡ଼ିଲା ॥
ଦରିଦ୍ର ଭାବେ ଦିନ ନେଲେ । ସତ୍ୟ ସାଧନା ତପ କଲେ ॥
ସେ ଗୁହ୍ୟ ଯୋଗ ସିଦ୍ଧି କରି । ବାହାର ହେଲେ ଲୁଣ ମାରି ॥
ପାର୍ବତୀ କହନ୍ତି ହେ ନାଥ । ତେଣିକି କି ହେବ ବୃତ୍ତାନ୍ତ ॥
ହର ଭାଷନ୍ତି ଅଳ୍ପ ହସି । ଶୁଣ ଗୋ ଶୁଣ ହେ ପ୍ରେୟସି ॥
ଗାନ୍ଧି ଡାକରେ କୋଳାହଳ । ଦେଶରେ ପଡ଼ିବ ଚହଳ ॥
ବାଳକ ବୃଦ୍ଧ ଯୁବା ନାରୀ । ସକଳେ ଯିବେ ଲୁଣ ମାରି ॥
ହେବେ ଆଇନ ଅମାନିଆ । ରଣ-ମଦରେ ମାତି ଉଆଁ ॥
କମ୍ପି ଉଠିବ ଭୂ ଭାରତ । ବିଦେଶୀ ଗଣିବେ ପ୍ରମାଦ ॥
ହୋଇବ ବିଷମ ସମର । ଏ ଅଟେ ନୂଆ ପରକାର ॥
ହିଂସା ସହିତେ ଅହିଂସାର । ଲାଗିବ ନୂତନ ସମର ॥
ଧର୍ମ ସହିତେ ଅଧର୍ମର । ସତ୍ୟର ମିଥ୍ୟା ସହିତର ॥
ନୈତିକ ଶକତି ସଙ୍ଗର । ପଶୁ ବଳର ଏ ସମର ॥
ରହି ଅହିଂସା ସତ୍ୟ ପଥେ । କୋଟିଏ ଭାରତର ସୁତେ ॥
ସ୍ୱାର୍ଥେ ଦେଇଣ ଜଳାଞ୍ଜଳି । ଆନନ୍ଦେ ଦେବେ ଆତ୍ମବଳି ॥
ମେମ୍ବରମାନେ ଲାଟସଭା । ଛାଡ଼ି ଦାଣ୍ଡରେ ହେବେ ଉଭା ॥
ପହିଲେ ପଢ଼ୁଆ ନେଇ ମିଳି । ମାଡ଼ଣ ମାରିବେଟି ଚଳି ॥
ତା ପରେ ସର୍କାର ଚାକର । ଚାକରି ଛାଡ଼ିବେ ତାଙ୍କର ॥
ତହୁଁ ପୁଲିସ ଚୌକିଦାର । ହାକିମ ମାନେ ତତପର ॥
ଗ୍ରାମକୁ ଗ୍ରାମ ଉଠିଆସି । ଲୁଣ ମାରିବେ ପରକାଶି ॥
ନାରୀଏ ଦଳ ବାନ୍ଧି କରି । ଘରରୁ ଆସିବେ ବାହାରି ॥
କେହି ଯେ କେହି ହୀନ ପ୍ରାଣୀ । ନୀଚ ସ୍ୱାର୍ଥକୁ ହେବେ ଟାଣି ॥
ତହୁଁ ସର୍କାର ପାଇ ଭିଡ଼ । ଲୁଣମରାକୁ ଦେବେ ଗୁଡ଼ ॥
ମାନ୍ଦ ମାନବେ ନ ମାନବେ । ଅନ୍ୟ ଆଇନେ ହାତ ଦେବେ ॥
ଚଳିବ ଠେଙ୍ଗା ଗୁଳିମାଡ଼ । ବାଧା ଯେ ଗୋଇଠା ଚାପଡ଼ ॥
ଧରା ପଗଡ଼ା ଜେଲ ଖାନା । ପୁଣି କୋରକ ପରୁଆନା ॥
ଅହିଂସା ଶାନ୍ତ ଆଶ୍ରାଧରି । ଲୋକେ ସହିବେ ତୁନି କରି ॥
ଶେଷରେ ଦେଶର ଶାସନ । ଅଚଳ ହୋଇବଟି ଜାଣ ॥
ସର୍କାର ଉପାୟ ନ ପାଇ । ଗୋଲକୁ ଦେବେ ଯେ ମେଣ୍ଟାଇ ॥
ଶାନ୍ତି ଯେ ପ୍ରୀତି ଉଦଭବେ । ସର୍ବେ ରହିବେ ବନ୍ଧୁଭାବେ ॥
ସତ୍ୟ ଯେ ଅହିଂସାର ଜୟ । ସ୍ୱରାଜ ହୋଇବ ଉଦୟ ॥
ଏହା ଯେ ପଢ଼ିବ ଶୁଣିବ । ଜିଅନ୍ତେ ସୁଖକୁ ଲଭିବ ॥
ଅନ୍ତେ ବୈକୁଣ୍ଠ ପୁରେ ବାସ । ପୁରାଣ ହୋଇଲାଟି ଶେଷ ॥



# ଏ. ଆର୍. ପି.

କଏ କେତେ ନାମେ ଆମକୁ କରେ ଅଭିହିତ,
ଯେତେ ସବୁ ଲ୍ଲେବରା, ବଜାଗ୍ଣ, ବେକାର
ଆମର କନ୍ତୁ ମୁଖ୍ୟ କାମଟା—'ପରହିତ'
ଯିଏ ଯାହା କହିବାର କହୁ—ଆମର ତହିଁକି ସ୍ୱୀକାର ।

କଏ କହେ All Rascals Provided
କଏ ବା କହେ ଅନ୍ଧାର-ରାତି-ପ୍ରହସନ୍,
କଏ କହେ All Roaund Pighead,
ଆଉ କଏ କହେ ଆତ୍ମ-ରକ୍ଷାର୍ଥେ-ପଳାୟନ ।

ଯିଏ ଯାହା କହୁ ଆମେ ରହିବୁଁ ହରଦମ୍ ଠିକ୍,
ସବୁ ମୁହଁ ଉପରେ ମାରି ଦେବୁଁ ଏକ Kick ।
ଝାଡ଼ୁ ବାପାର ନୋହୁଁ ଆମେ—ଅସଲ ଚାହିଁ Duty,
ଆଜ କଚୁ ତ ଖାଇନା, ଖାଲି ଗରମ ଗରମ ପିଉଁ Tea ।

ସିଗ୍ରେଟ ଅଭାବେ ସ୍ୱଦେଶୀ ବଡ଼ିର ବଂଶ କରୁ ଧ୍ୱଂସ,
ଜାଣିଥିବ, ଏଟା ବି ଆମର ଡିଉଟିର ଗୋଟିଏ ଅଂଶ ।

ଲଢ଼େଇ ମୌସୁମ ଯେତେ ଦିନ ଥିବ—ଆମର କ୍ୟା ଚିନ୍ତା ;
ତାଳ ମାରି ନାଚୁଥିବୁଟି ତାକ୍‌ଧିନାଧିନ୍ ଧିନ୍‌ତା ।

ନ ମିଳଲାତ ନାହିଁ ଚାଉଳ ମିଳୁଥିବ ଯେବେ ତାସ୍
କଉଁ କଥାକୁ କେଆର୍ ଆମର (ଆମେ) ନବାବକା ନାତି ଖାସ୍ ।
ଜାପ୍ ଜର୍ମାନ ମଲେ ତ ମଲେ ଆରେ ମାର୍କିନଟା କାହିଁ ?
Playing Cards ତିଆରି ପାଇଁ ବେଳେକ ଫୁରୁସତ୍ ନାହିଁ !

ବୋମାଟା କଣ ଏତିକ ଦର୍କାର Playing Card ଠାରୁ ?
ଅକଲ ତାଙ୍କର ଏତକ ନାହିଁ ! ବୁଦ୍ଧିଟା ନପଟ ବଣ ସାରୁ ।
ପୀତାତଙ୍କ, ବୋମାତଙ୍କ ଆଉରି ଆତଙ୍କ ନାନା
ତାହା ସାଙ୍ଗରେ ବସ୍ତ୍ରାତଙ୍କ ପୁଣି ଆତଙ୍କ ଦାନା ।

ସବୁ ଆତଙ୍କ ନିବାରଣର ଉପାୟ ଜାଣିଥା'
ଅକ୍‌ସନ୍ ବ୍ରିଜ, ସିଗାରେଟ୍ ଆଉ ଗରମ ଗରମ ଚା ।
ଆଉ ସବୁ ଚୁଲ୍ଲୀକୁ ଯାଉ— ଏତକ ଥାଉ ଜାଇ
Long live, longer live longest live A.R.P. ।



# କଟକ ସଫର୍

ଶୁଣିଥିଲି କଟକଟା ଗଲାଣି ବଦଳି
ମାତ୍ର ଯା ଦେଖିଲି ଅଛି ଠିକ୍ ଅଛି ସେହିଭଳି ।

ସେଇ ବରୀ, ଗୁଲୁଗୁଲି, ସେଇ ନାଲି ମାଟି,
ସେଇ ସିଜୁ କଣ୍ଟାବାଡ଼, ସେଇ ପରିପାଟୀ ।

ଏକା ବଢ଼ି ଯାଇ ଅଛି ମଶାଙ୍କର ଦଳ
ସେଟା ବୋଧହୁଏ ବ୍ଲଡ୍ ବ୍ୟାଙ୍କର ଫଳ ।

ଜୀବନ୍ତ ଟିଉବ ହୋଇ କୋଟି କୋଟି ମଶା,
ଯୁଦ୍ଧୋଦ୍ୟମ ହେତୁ ଘରେ ଘରେ ଛନ୍ତି ପୋଷା ।

ଆଉ ବଢ଼ିଛି ବିଖ୍ୟାତ ନର୍ଦ୍ଦମାର ମାଲ,
ବଡ଼ ବଡ଼ କଟକିଆ ହୋଇ ପଲ ପଲ ।

ପୋଲୁହ ଖଇଞ୍ଚ ଢେନ ଘାଣ୍ଟନ୍ତି ନସ୍ତକ
ପାଉଛନ୍ତି ମେଞ୍ଚା ମେଞ୍ଚା ସାଲୁକୁଡ଼ା ପୋକ ।

କଳା ପଙ୍କେ ଲଟ ପଟ ହୋଇ ଗଡ଼ ଗଡ଼,
ସଡ଼କର ନାଳଧୂଳି ଯାଉଅଛି ପଡ଼ ।

ଦିଶୁଛନ୍ତି ଆହା କେଡ଼େ ମନୋହର ଛବି
ନୀଳାକାଶେ ସତେ ଅବା ଅସ୍ତଗାମୀ ରବି ।

ଓଡ଼ିଆଙ୍କ କେପିଟେଲ ହୋଇଛି କଟକ ।
Capital ! —କେପିଟେଲ ସିନେମା ଫାଟକ !

'ଟ୍ରିବ୍ୟୁନ'ଟା ରଖିବାକୁ ନ ପଟିଲି ଖଞ୍ଜା,
କାଳିବାବୁ ମୁହଁ ମୋଡ଼ ଠେକିଛନ୍ତି ଲଞ୍ଜ ।

ଟ୍ରେଙ୍କୀକୁଟା ଘୋଡ଼ାଗାଡ଼ ପଡ଼ଅଛି କମି,
ରିକ୍ସାର ଘଣ୍ଟି ଗୀତ ଯାଇଅଛି ଜମି ।

ଟ୍ରିଅଙ୍କର ନାଟ ନୂଆ ପ୍ରଗତିର ଟୋଡ଼୍
ଦେଶୋନ୍ନତି ପାଇଁ ଏଇ ଏକା ରପ୍ଟେଲ ରୋଡ଼୍

ସମ୍ପାଦକ ସମ୍ମିଳନୀ କଥା ନୁହେଁ ଊଣା
ଲକ୍ଷାଧିକ ଧନ୍ୟବାଦ ତାଙ୍କର ପାଉଣା ।

ପରିଜା ସାହେବ ହୋଇ ପାଠ କୁଳପତି,
ତ୍ରିପାଠୀଙ୍କ ଛତା ତଳେ ଛନ୍ତି ମୂଳ ପୋତି ।

ରାମଚନ୍ଦ୍ର ଭବନରେ ସଭାଙ୍କ ପାଳି
ନିତି ଜମୁଛନ୍ତି ତହିଁ କେତେ ଯାହାକାଳି ।

ଛେନା ଚାଉଆ ମାହାର୍ଦ୍ଦ ହେଲ ଯହିଁ ବଡ଼ା
ପରିଷଦ ଜମାଇଲେ ଶ୍ରୀକ୍ଷେତ୍ରେ ଆଖଡ଼ା ।

ପଣ୍ଡିତଙ୍କ ଧଳା ଦାଢ଼ି ଯାଉ ନାହିଁ ଦେଖା,
କାୟକଳ୍ପ ସାଧୁଛନ୍ତି ଘରେ ପରି ଏକା ।

କଟକର ଜଳବାୟୁ ନୋହିବାରୁ ରାଜି,
ଶଶିବାବୁ ହେଲେ ଧବଳେଶ୍ୱର ବାବାଜୀ ।

କୋଷ ଗ୍ରନ୍ଥ ପଦ୍ମରାଜେ ଧରିଲେଣି Brief
ବୁଢ଼ାକାଳେ ସେଥିପାଇଁ ବଡ଼ ତାଙ୍କ Grief ।

ପାନ ଗୁଆ ଗୁଣ୍ଡି ଦର ଯିବାରୁଟି ଚଢ଼ି
ବ୍ରଜବାବୁ ମନଦୁଃଖେ ପଡ଼ିଲେଣି ଝଡ଼ି ।

କରୁଛନ୍ତି ଲଗିପଡ଼ି ସଙ୍ଗୀତ ସାଧନା
ସା-ରି-ଗା-ମା, ଯୋଗେ କରି ପ୍ରଚୁର ଯୋଜନା ।

ପ୍ରବୀଣ ଭିକାରୀ ବାବୁ ଚୋବାଇଣ ଚଣା
କରୁଛନ୍ତି ଅଭଙ୍ଗା କଣ୍ଠେଇ ଗବେଷଣା ।

ସ୍ୱାମୀଜୀ ହେଲେଣି ବୁଢ଼ା, କିନ୍ତୁ ତାଙ୍କ ମନ,
ହୋଇନ ତ ବୁଢ଼ା ! —ଅଛି କଥା ଛନ ଛନ ।

ଆଚାର୍ଯ୍ୟଙ୍କ ଓକିଲତି ସଙ୍ଗେ ହରି ନାମ
ଖାପ୍ ଖାଇ ଯାଇଛି ହୋଇ ହ୍ୱିଲଂବାମ ।

ଆରେ ହାଇକୋର୍ଟ ! —କାହା ଭାଗ୍ୟ ଛିଡ଼ା ସିକା,
ଓଡ଼ିଆର ଭାଲେ ସତେ ଅଛି ରାଜଟୀକା ।

ଜଣେ ଛଡ଼ାଇଲି ଦଳ ଆନ ଖାଏ କଜ,
କେ ସହିବ ସହ୍ଯ ଯାହା ଦେହେ ନାହିଁ ଲହୁ ।

ମାହା ତାହା! ହାତେ ଥରେ ମଙ୍ଗ ଦେଇ ଗ୍ରାଡ଼
ସନ୍ତାପିଲେ କିସ ହେବ ? —ନାଆ ଗଲା ବୁଡ଼ ।

ଚନ୍ଦ୍ରଗୁପ୍ତଙ୍କୁ ଚାଣକ୍ୟ ଜାବୁଡ଼ିଲା ପ୍ରାୟେ
ମନ୍ତ୍ରୀପଣ ରଜାଙ୍କର ଦେହରେ ନ ଯାଏ ।

କଟକ ସହର ଗୁଣ ବସିଲେ ବଖାଣି
ଯାତ ବଧଟା ଶୁଖି ଯାଇ ହେବ କଞ୍ଚା ପାଣି ।



# ଆମର ସ୍ୱାଧୀନତା

ଆମେ ପାଇ ଯାଇଛୁଁ ସ୍ୱାଧୀନତା
ଆଉ ରହିଲା କଉଁ କଥା ?
ଆଉ କଉଁଥି ପାଇଁ ବା ମୁଣ୍ଡ ବଥା ?
ଏଇଥିପାଇଁ ଏକା ସିନା
ଆମେ ନାଚୁଥିଲୁ ତାକ୍ ଧିନାଧିନ୍ ଧିନା ।
କେତେ ମୁଣ୍ଡ ହଲେଇ ହଲେଇ
ନଶ ଫୁଲେଇ ଫୁଲେଇ,
ପଡ଼ୁଥିଲା ବକ୍ତୃମା କରିବାକୁ
ପଡ଼ୁଥିଲା କେତେ ଲଞ୍ଜ ଧରିବାକୁ ।
ଟେବୁଲ ଉପରେ ହାତ କଚାଡ଼ି
ଭୂଇଁରେ ଲାତ ଛାଆଡ଼ି,
ପଡ଼ୁଥିଲା କରିବାକୁ ଲୁଣମରା ।
ପହୂଆର କରା,
ସ୍ଲୋଗାନ ଧରା,
ଖଦଡ଼ ପିନ୍ଧା, ସୂତାକଟା,
ଆଉରି ଏମିତି କେତେ କଣ ହଟହଟା ।
ପଡ଼ୁଥିଲା ସହିବାକୁ,
କେତେ ନିନ୍ଦା ବହିବାକୁ,
ଆଉ ବେଳ ନାହିଁ ପଦେ କଥା କହିବାକୁ ।
ବିଦେଶୀ ରଜାକୁ ତଡ଼ିବାର,
ପୁଲିସ ସାଙ୍ଗରେ ଲଢ଼ିବାର,
ଯେତେ କଥା ଯେତେ ପରକାର,
ଏତେ ବଖାଣିବାର କିବା ଦରକାର,
ଆମେ ତ ପାଇ ଯାଇଛୁ ନିଜ ସରକାର ।
ଛାଡ଼ିଦିଅ ସେ ସବୁ ଗତ କଥା
ଆମର ମିଳି ଯାଇଛି ସ୍ୱାଧୀନତା ।
ତାଙ୍କର ହାତେ ଦେଇଛୁ ଗୁଆ ଟେକ,
ତାଙ୍କର ମୁଣ୍ଡେ ଧୋଇଛୁ ଆମ ଠେକ,
ଆଉ କେହି ନୁହେ, ତାଙ୍କୁଇ ଏକା,
ହାଣ୍ଡି, କୁଣ୍ଡି, ବେକା,
ଦେଇଛୁଁ ଛୁରି ଆଉ ଗଳା,
ତେଲ୍ ଘଡ଼ ସାଙ୍ଗେ ପଳା,
ଘୁଞ୍ଚୁଣୀ, କୁଲ, ଚଲୁଣୀ,
ଆମର ଆଉ କିଛି ନାହିଁ ଭାଳୁଣି ।
ଆମେ ଛୁଟେଇ ଦେଇଛୁ ପଦା
ନାହିଁ ଆମର କେଉଁଥିକୁ ଲଗା ।

ଆମେ ନାଚିବା ଧେଇ ଧେଇ,
ଆମ ସରକାର ହାତେ ସଅଁପି ଦେଇ,
ଆମର ଘର କରଣା;
ଆଉର୍ କ୍ୟା ପରବା-ଅଉର କିସ୍‌କୋ ଡର୍‌ନା ?
ସେହି ଆମର ବିହିବିଧାତା, ହର୍ତ୍ତା, କର୍ତ୍ତା,
ଆମର ଆଉ ଆମର ପିଲା କବିଲାର ଭର୍ତ୍ତା;
ସେଇ ଆମ ଭରସା, ସେଇ ଆମ ସମ୍ବଳ,
ଖରା ବର୍ଷାର ଛତା, ଆଉ ଶୀତର କମ୍ବଳ ।
ଆମ ପାଇଁ ତାଙ୍କର ବୁଲାଉଛି ମଥା
ଯେଣୁ ଆମେ ପାଇ ଯାଇଛୁ ସ୍ୱାଧୀନତା ।

ଯାହା ଯେବେ ଆମର ଦରକାର,
ଯଉଁଠି ଯେତେ ପଉକାର,
ସବୁ କରି ଦେବେ,
ସବୁ ବୁଲାଇବେ ଆମ ସ୍ୱାଧୀନ ସରକାର ।
ଆମେ ମଣିଷ ହୋଇଥିବା ଯଦ
ଆମର ଭଲ ମନ୍ଦ ନିର୍ବିବାଦ
ସରକାର ମୁଣ୍ଡରେ ସବୁ ଦେଇ ଲଦି,
ଅଣ୍ଟି ଦେଇ ଖୋଳି
ନାହିରେ କଞ୍ଚା ଜଡ଼ା ତେଲ ବୋଳି,
ସବୁ ଚିନ୍ତା ସବୁଦିକ ଦେଇ ଛାଡ଼ି
ହେଁସରେ ପଡ଼ିଯିବା ନଗେଲ ମୁହଁ ମାଡ଼ି ।

ଦାଣ୍ଡ କବାଟ ବାରି କବାଟ ଦେଇ କିଳି,
ଖାଲି ବେଳେ ବେଳେ ଉଠୁଥିବା ବିଳିବିଳି,
ଦରବୁଜା କରି ଦେଇ ଯୋଡ଼ାକ ଆଖିପତା
ଆମର ସ୍ୱାଧୀନତା—ଆମର ସ୍ୱାଧୀନତା ।



# ଯୁଗର ମଜା

( ରାମ ପ୍ରସାଦ ସୁର )

ଭାଇ ରେ, ଦେଖ ଯୁଗର ମଜା
ସନ୍ଧ୍ଏ ହେଲ ସ୍ୱେଚ୍ଛାଚାରୀ
ଉଡ଼ାଇ ସ୍ୱାଧୀନ ଧ୍ୱଜା । ଘୋଷା ।

ବ୍ରାହ୍ମଣ ହେଲେ ହାଡ଼ି ଡୋମ,
ଇତର ଲୋକେ ହେଲେ ରାଜା ।
ବାବୁମାନେ ଖାଇଲେ ଯାଇ
ଚପ, କଟ୍‌ଲେଟ, କୋପ୍ତା ଭଜା ॥

ମୁରବ୍‌ବୀଙ୍କୁ ଗଲେ ଟପି
ଟୋକାଏ ହୋଇ ଓଳଆ ଗଜା ।
ସ୍ତ୍ରୀମାନେ ପୁରୁଷ ହେଲେ
ପୁରୁଷମାନେ ହେଲେ ଅଜା ॥

ଉକିଲ, ମୁକ୍ତାର, ପିଆଦା, ଟାଉଟ୍,
ଅମଲମାନେ ହେଲେ ରଜା ।
କଥା ପଦେ କହିବା ପାଇଁ
ଖୋଜା ଆଗେ ଅଣ୍ଟା-ଗୁଞ୍ଜା ॥

ଗାଆଁ ଗାଆଁ ବୁଲିଲେ ଆସି
ଭଲେଣ୍ଟିଅର ପଞ୍ଚାକୁ ପଞ୍ଚା ।
ସମ୍ପାଦକେ ଉଠିଲେ ନାଚି
ଡ଼ବ ଢ଼ବ ଡ଼ବ ବଜାଇ ବାଜା ॥

ଧର୍ମ୍ମବିଚାର ହାକିମ ମାନେ
ବସୁର କଲେ ଆଖିବୁଜା ।
ପୁଲିସ ମାନେ ଗୋଡ଼ ଲମ୍ବାଇ
ଚଲପ କଲେ ଖୋଲ ପୂଜା ॥

ଜମିଦାରେ ଗଲେ ପଡ଼ି
ଅଣ୍ଟା ଭିଡ଼ି ଉଠିଲେ ପ୍ରଜା ।
ମାଡ଼ିଗଲା ଦେଶ ଯାକ
ସରାପ, ତାଡ଼ି ଗୁଲି ଗଞ୍ଜା ॥

ଖୋଜି ଖୋଜି ନ ମିଳିଲା
ଲେମ୍ବୁ, ଲୁଣ, ଖଡ଼ା, ମଞ୍ଜା ।
ଆଉ ଦିନ କେତେ ଗଲେ
ଲଙ୍ଗଳା ହୋଇ ଖାଇବ ମଜା ॥

ଦୁଇ ହାତେ ମାଲପା ମାରି
ପାଠୁଆ କଲେ ଗୃହେର ଖୋଜା ।
ଓଦା କନା ପେଟରେ ହୋଇ
ବୁଲି ବୁଲି ପାଳିଲେ ରୋଜା ॥



# ଗାନ୍ଧି ଗୋଳ

( କୀର୍ତ୍ତନ ସ୍ୱର )

ଭଲ ଏ ଗାନ୍ଧି ଗୋଳ ଦେଖେ ଗଲା ମାଡ଼
ଏକାକାର ହେଲେ ବ୍ରାହ୍ମଣ, ପଠାଣ, ।ପାଣ, ହାଡ଼ । ଧ୍ରୁବ ।

ସାନ ବଡ଼ ରହିଲା ନାହିଁ ଭେଦ,
ସାତ ସମୁଦ୍ର ପାରି ହୋଇ
ଲୁଚିଲେ ଋଗ୍‌ବେଦ,
ପଣ୍ଡିତମାନେ ପଇତା କାଢ଼ି ରଖିଲେ ମୁଚ୍ଛ ଦାଢ଼ି ।୧।

ଗାଆଁ ଗାଆଁ ବସି ଗଲା ସଭା,
ଆମଦାନ ହେଲେ ବକ୍ତା
ଡବାକୁ ଡବା,
ମଉଳମାନେ ସବୁପ୍ ଛାଡ଼ି ଖାଇଲେ ଦେଶୀ ତାଡ଼ି ।୨।

ଘରଭୁର ଲାଗିଗଲା ଧୂମ୍,
ଗୋରାମାନଙ୍କର ହେଲା
ଅକ୍‌କଲ ଗୁଡ଼ୁମ୍,
ସ୍ୱରାଜ-ସେନା ବନ୍ଧୁକ ଛାଡ଼ି ଧଇଲେ ବାଉଁଶ ବାଡ଼ ।୩।

ବହିଗଲା ସ୍ୱାଧୀନତା ବାଆ,
ଡରେ ମରି ଭୁନ କରି
ରହିଲେ ବାପ ମା,
ଅମାନିଆ ହୋଇ ପିଲେ ଧାଇଁଲେ ଧାଡକ ଧାଡ଼ ।୪।

ଟୋକାମାନେ ହୋଇଲେ ସ୍ୱଦେଶୀ,
ସିଗାର ଛାଡି ଦେଶୀ ବିଡ଼ି
ଧୂଆଁ ନେଲେ ଶୋଷି,
ମେଳବାନ୍ଧି ମାଷ୍ଟରଙ୍କ ଦାନ୍ତ ଦେଲେ ଝାଡ଼ ।୫।

ବଲ୍ ଛାଡ଼ି ଖେଳିଲେ ବାଗୁଡ଼ି,
ବିସ୍କୁଟ ଛାଡ଼ି ଖାଇଲେ
ନଡ଼ିଆ ମୁଢ଼ି,
ବୁଟ୍ ଜୋତା ଛାଡ଼ି ଦେଇ ଗୁଳିଲେ ଖଡ଼ମ ମାଡ଼ ।୬।

ଧୂରୁତଙ୍କୁ ଚପି ଗଲେ ପ୍ରେସ୍,
ଅରଟ ଧରି ପାଶ୍ କଲେ
ବାରିକ ମିସ୍ତିରି,
ସେମିଜ ସାୟା ଉପରେ ଭଡ଼ି ପିନ୍ଧିଲେ ଖଦଡ଼ ଶାଢ଼ୀ ।୭।

ଷଣ୍ଢ଼ଯାକ ହୋଇ ଗଲେ ବାହା,
ଷଣ୍ଢ଼ୀଯାକ ଅବଶୋଷିରେ
ହେଲେ ଚଳ ମୁହାଁ,
ଲୁଆଣ୍ଡୁଣୀ ପର୍ଦ୍ଦା ଟେକ ଲାଜ ଦେଲେ ଛାଡ଼ ।୮।

"ଭୋଟ୍ ପାଇଁ" ଲାଗିଗଲା କଳି,
ଦଳକି ଦଳ ଚଢ଼ା ଉପର
ଗୁଳିଲା ପହଲି
ଲମ୍ବଲଞ୍ଜିଆ ଦଳମାନେ ପଡ଼ିଲେ କଚୁଡ଼ ।୯।

ହୋଇଗଲା ଓଲଟା ଦୁନିଆ,
ଝାମିଦଙ୍କ ମୁଣ୍ଡ ଉପରେ
ଚଢ଼ିଲେ ମୂଳିଆ,
ଧର୍ମଘଟ, ମେଳ ଦେଲା ମଥାକୁ ବିଗାଡ଼ି ।୧୦।

ବିଦେଶୀର ହଟିଗଲା ବଳ
ସ୍ୱଦେଶୀ ସ୍ୱଦେଶୀ ବୋଲି
ପଡ଼ିଲା ଚହଳ
ବାବୁମାନେ ମଟର ଛାଡ଼ି ଚଢ଼ିଲେ ଶଗଡ଼ ଗାଡ଼ି ।୧୧।

ନେତା ହେଲେ ବେତାକୁ ବେତା,
ଟିନା-ଫାନୁସ୍ ଭଳି କେତେ
ଉଡ଼ିଲା ବକ୍ତା,
ଆକାଶକୁ ଗଲେ ଚଢ଼ି କେତେ କେଉଟ ସାଢ଼ୀ ।୧୨।

ବିଲାତର ରହିଲା ନାହିଁ ଲେଶ,
ଟର୍ଚ୍ଚ ଆଉ ଗେସ୍ ବତିରେ
ଛାଇ ଗଲା ଦେଶ,
ଲୋକେ ବିଜୁଳି ଆଲୁଅ ଛାଡ଼ି ଜାଳିଲେ ପିମ୍ପୋଇଖାଡ଼ି ।୧୩।

# ଗାନ୍ଧି ଗୋଳ

ଜେଲ ଯିବା ହୋଇଗଲା ଫେସନ୍,
ଫଳକୁ ଫଲ ଠୋକାଏ କଲେ
ନନ୍ କୋ-ଅପରେସନ୍,
କାହାର କାହାର ଉପାସ ରହି ଗୁଡ଼ିଗଲା ନାଡ଼ ।୧୪।

ସତ୍ତ୍ୱେଁ ହେଲେ ସବୁ କାମକୁ ତିଆର୍,
ବୃଦ୍ଧିଷ୍ଠାମାନ ରାଉଣ୍ଡ ଯିମିତି
ହେଡ୍ଷ୍ଠା ମାନ ସ୍ୱୀଆର୍,
(ଖାଲି) ଶିଙ୍ଗ ଦାଁଣ୍ଠା ଉଠିଲେ ସାରା ଦେଶକୁ ପକାନ୍ତେ ଫାଡ଼ ।୧୫।

ମିଳିଗଲେ ହିନ୍ଦୁ ମୁସଲମାନ୍,
ରାମ ରାମ ଭାଇସାହେବ
ସଲାମ୍, ସଲାମ୍,
ହଣାହଣି ହେଲେ ପୁଣି ବେଳ ଗଲେ ପଡ଼ ।୧୬।

ଡ଼ିବ ଡ଼ିବ ନାଗରା ବଜାଇ,
ନଅଙ୍କିଆ ମିପେଇ ଗଲେ
ପତକା ଉଡ଼ାଇ,
ଲାଲ ପଗଡ଼ ଦେଖିଲା କ୍ଷଣି ଖସିଲେ ଲଙ୍ଗୁଡ଼ ଯୋଡ଼ ।୧୭।

ଓଳିଆକୁ ବାହାରିଲେ ଗଜା,
ବଡ଼ ବଡ଼ ଦାରୁ ମାନେ
ମାରିଲେ ମୁହଁ ଗୁଞ୍ଜା,
ଆଣ୍ଠାକଲେ ତାଙ୍କ ଦାଉରେ ଗୁହାଳ କଣ ଭାଡ଼ ।୧୮।

ମାଇପେ ଯାଇ କରିଲେ ଅସହଯୋଗ,
ମିଣିପେ ଯାଇ ହାଣ୍ଡି ଶାଳରେ
ଭୋଗିଲେ କର୍ମ ଭୋଗ,
ଚରିଣିଲେ ସେ, ମାଳିକନାଙ୍କୁ ସାତ ତିଅଣ ବାଡ଼ି ।୧୯।

ଦଳ ସବୁ ହେବାରୁ ବଲବଲ,
ଅଦେଳିଆମାନଙ୍କ ମନ
ହୋଇଲା ଗଲ ଗଲ,
ଚିଂଡ଼ି ଦଳ ବୁରଖାଞ୍ଜିରେ ଉଠିଲା ଗଡ଼ଆ ଆଡ଼୍ ।୨୦।

ବ୍ରମକାର୍ଯୀ ଭେଳାକୁ ଭେଳା,
ମନ୍ଦି ଦାଣ୍ଡରେ ମାରିଲେ ଚଲି
ହୋଇଣ ଲଙ୍ଗଳା,
କାହାର କର୍ମ ଉଠିଲା ଟେକ କାହାର ଗଲା ପୋଢ଼ ।୨୧।

କଳିଯୁଗ ପଳାଇଲା ଡରି,
ସତ୍ୟ ଯୁଗ ଧମାଲ୍ କଲା
ଦାନ୍ତ ନେଲା ମାରି,
ତୁମାକୁ ତମା ଧର୍ମ ଖାଳି ପଡ଼ିଲା ଅଜାଡ଼ି ।୨୨।

କୁନ୍ତେ ମୋତେ ଯେତେ ମାଠିରୁ ମାଠ,
ଯେଉଁଠି ଅଛୁ ସେଇଠି ମୁହିଁ
ସେହି ଦରପୋଡ଼ା କାଠ,
ଯେତେ ସିଧାକଲେ କୁକୁର ଲାଞ୍ଜ ମୋଡ଼ି ମୋଡ଼ ।୨୩।

କହ୍ନେ ତଥୁ କାହିଁକ କୁଟିବ,
ଟେକି ଶୋଇଛ ଯିଏ ଯିଏ
ସଚେତ ଉଠିବ ?
ଟାଇବକ ହେଲେ ଯାହା ଦେଇଛ ଫୋପାଡ଼ ।୨୪।



# ଡୁଡୁମା

'ଓଡ଼ମା'—'ଡୁଡୁମା' ହୁର ଚଡ଼ିଅଛି
ଜାଣିଛ କେହ୍ନ ତା ନାଆଁ ?

ମୁଁ କହୁଛି ସେ ଯେ ଡୁଡୁ-ମା ନୁହଇ
"ଡୁଡୁ-ମା"—"ଓଡ଼ିଆ ମାଆ" ।

ଗଙ୍ଗା ଗଜତମ ଯାକେ କହୁଛନ୍ତି
"ଓଡ଼ିଆ ସେ ଦାତା ନେହିଁ"

ହରିଶ୍ଚନ୍ଦ୍ର ରଜା ଓଡ଼ିଆ ଥିଲେ ଯେ
ଏକଥା ଜାଣିଛ କେହ୍ନ ?

ନିଜ ଦାତାପଣ ଦେଖେଇ ହବାକୁ
ଦେଲେ ସେ ଭାରଯା ପୁଅ,

ତୁମେ ରେ ଓଡ଼ିଆ ହମ୍ଭାଳ ହେଉଛ
ତାଙ୍କ ପୁଅ ନାତି ନୁହ ?

ଗୋରୁ ଦାନ କର, ମଇଁଷି ବଚର
ଦେଇଥିଲ କାଳମାନି,

ସେଥିପାଇଁ ଆଜ ମୁଣ୍ଡକଟା ହୋଇ
ପାକୁ ପାକୁ କର ପାନି ।

ଯେ ଯାହା ମାଗିଛି ତାକୁ ଦେଇ ଅଛ
ଦେଖାଉଛ ବଶ୍ୱ-ପ୍ରୀତି,

ଆପଣାଠୁଁ ପର ପଡ଼ୋଶିଙ୍କୁ ପ୍ରେମ—
କରବା ଓଡ଼ିଆ ରୀତ ।

ଓଡ଼ିଶା ଦେଶରୁ ଏହି ନୀତିଟାକୁ
ଶିଖିଥିଲେ ଯୀଶୁଖ୍ରୀଷ୍ଟ,

ଓଡ଼ିଆ ଠାକୁର 'ଜଗନ୍ନାଥ' ହେଲେ
ସେଥିପାଇଁ ତୁମ ଇଷ୍ଟ ।

ଆତ୍ମଦାନ କର ସେହି ପୁଣ୍ୟବଳେ
ବଞ୍ଚିବ ଓଡ଼ିଆ ଜାତି

ଉପାସରେ ମରୁ ପଛକେ, ରହିବ
ଯୁଗେ ଯୁଗେ ତାର ଖ୍ୟାତି

ଆପଣା ବିତ୍ତକୁ ପରକୁ ଦେଇ ତୁ
ଉଡିଗଲୁ ବାଆଁ ବାଆଁ

ଏଡ଼େ କଥାଟାଏ କର ନ ଥିଲେ କି
ଅରଜନ୍ତୁ ଏଡ଼େ ନାଆଁ ?

ଅନ୍ଧ ହେଲୁ କରେ ଓଡ଼ିଆ ଏପାଇଁ
ଓଜର କରୁଛୁ ଆଉ,

ଜାଣିଛୁ ନା ଏହା ମୁହଁରେ ଧଇଲେ
ରହିବ କି ପୁଣ୍ୟ ଭାଉ ?

ଭୁଲେ ତୁ ଜାଣିଛୁ ଅଟଇ ଓଡ଼ିଶା
ପୂର୍ବ ବଇଷମୀ ଦେଶ,

ସବୁ ଦାନ କରି ଭିକ ମାଗିବାଟା
ତୋହର ଧରମ ଶେଷ ।

ଡୁଡୁମା ଡୁଡୁମା ବୋଲି ତୁ ବୋବାଳି
ବିକଳ ହେଉଛୁ କିଆଁ ?

ମୁଣ୍ଡ ତ ଯାଇଛି—ଗୋଡ଼ କଟିଗଲେ
ଗଣ୍ଡିରେ ମାରିବୁ ଡିଆଁ ।



# ଲଢ଼େଇ ଫ୍ରଣ୍ଟ

ଆମେ ଲଢ଼େଇ ଫ୍ରଣ୍ଟ୍ ଭାଇରେ
ଆମେ ଲଢ଼େଇ ଫ୍ରଣ୍ଟ,
ଦେଶ ତମାମ କରିବୁ ଫେର
ଦାଢ଼ିରେ ଝୁଲଇ ଖଣ୍ଟ ।

ତୁଣ୍ଡାରେ କେତେ ମାରି ଗାଲୁ
ଦେଶକୁ କଲେ କାଲୁବାଲୁ
ବଖତ ବେଳେ, ଖସଡ଼ା ମାରି ବୁଲଇ ଦେଲେ ଥଣ୍ଟ ।
ଆମେ ଲଢ଼େଇ ଫ୍ରଣ୍ଟ ।

ହିଟ୍‌ଲରକୁ ମାରିବୁ ଘୁଷି,
ଜାପାନ ପିଠିରେ ଦେବୁରେ ଭୁସି;
ସ୍ୱରାଜ ଆଣି ଦେବାକୁ ଆମେ
ଦେଶକୁ ଦେଇଛୁଁ କଣ୍ଠ ।
ଆମେ ଲଢ଼େଇ ଫ୍ରଣ୍ଟ ।

ତରିଯିବାକୁ ଯେବେରେ ଇଚ୍ଛା,
ଧରରେ ଆସି ଆମର ପିଚ୍ଛା,
ହଡ଼ିବ ନାହିଁ, ବୁଡ଼ିବ ନାହିଁ, ଶକତ ହେଲେ ଝୁଣ୍ଟ ।
ଆମେ ଲଢ଼େଇ ଫ୍ରଣ୍ଟ ।

ଯେତେ ଦେଖୁଛ କଂଗରେସିଆ
ଫତୁରଖୋର୍ ବାହାପିଆ,
ଢରପୋଡଆ, ଧଡ଼ଧଡ଼ଆ, ଅଣବଶ୍ୱାସୀ ଖଣ୍ଟ ।
ଆମେ ଲଢ଼େଇ ଧ୍ରଣ୍ଟ ।

ବାର ବାଜଲା ବୁଦ୍ଧି ଗୁଡ଼
ଆଜ୍ଞା କର ଆମର ଦାଢ଼ି;
ଯାଇବ ଯେବେ ଅଛୁ ଆଶା ଚେହନାଗୁଡ଼ରୁ ବାଣ୍ଟ ।
ଆମେ ଲଢ଼େଇ ଫ୍ରଣ୍ଟ ।



# ଘୋଡ଼ାଡ଼ିମ୍ବ

କବି ହେବ ସାଧ୍ ହେଲା ଅନେକ ଦିନ ହେଲା
ବନିଲି ସେଦିନ୍ ଭାବ-ଗୁରୁଙ୍କର ଚେଲା ।

ଖୋଜିଲି ଖୋଜିଲି ବନ ଜଙ୍ଗଲ ପାହାଡ଼,
ଅନ୍ଧାରେ ଡେଇଁଲି କେତେ କଣ୍ଟା ସିଙ୍ଘ୍ ବାଡ଼ ।

ଭାବେ ବିଭୋରିଆ କଲି ଆଖି ଦିଓଟିକି
ଛଳ ଛଳ ଢଳ ଢଳ ହସିଲି ମୁରୁକି ।

ତା ପଛକୁ ଆସିଗଲା ଭାବ ଗମ୍ଭୀରତା
ପଢ଼ିଲି ବଙ୍ଗଳା ହିନ୍ଦି ଗଛ ପତ୍ର ଲତା ।

ଦଶ ଥର ହେଲି ଫେଲ୍ ମାଟ୍ରିକ୍ୟୁଲେସନ
ବଢ଼ୁଥାଏ ତେଣେ କବି ପଣର ସମ୍ମାନ ।

ଲଭ୍ ଲଭ୍ ଲଭ୍ ସବୁ ଆଖିରେ ଯା ଦେଖେଁ
ସବୁ ଲଭ୍ ଗଦା ଗଦା ଲଭ୍ ଲେଖା ଲେଖେଁ ।

ଓଲଡ୍ ଫୁଲ୍ କବି ଥିଲେ ଯେତେ ଓଡ଼ିଶାର
ଉପଇନ୍ଦ୍ର, ଅଭିମନ୍ୟୁ ଲେଖନ୍ତି ଅସାର ।

ଆଦିରସ ଆଦିରସ ସେକ୍ସ୍ ସେକ୍ସ୍ ସେକ୍ସ୍ !
ଆଁଖିକି ସୁନ୍ଦର ମିନା ଅଧା ଲଙ୍ଗା ମେନ୍ ।

ବୁଝି ନ ହୁଅଇ ସେହି ବୁଢ଼ାଦଳ ଲେଖା
ମଡ଼ରନ୍ ଆଇଡ଼ିଆ ତହିଁ ତିଳେ ନାହିଁ ଦେଖା ।

ଏକାଳେ ବସନ୍ତ ଆସେ ପ୍ରିୟା କେଶ ଚୁମି
ଶୁଣାଏ କାନରେ ପ୍ରିୟା ପ୍ରେମ ଝୁମୁଝୁମି ।

ଶବ୍ଦ ଜ୍ଞାନ ଯତି ଜ୍ଞାନ ଯାଉ ମ ଚୁଲିକି
କବିଙ୍କର ଗେଲମି ସେ ସାଜେ ତା କୁଳିଙ୍କି ।

ନାନା ଭାଷା ପଢ଼ି ଖଞ୍ଜି ଶ୍ଳେଷଟି ଶିଖିଲେ
କବି ହେବ ଅଭିମାନ ବଜାୟ ରଖିଲେ ।

ଦି’ଚାରିଟି ପତ୍ରିକାତ ଅଛି ଓଡ଼ିଆରେ
କେମିତି କେଜାଣେ ପାଣି ପଶେ ନଡ଼ିଆରେ ?

ଏତେ ଗହ୍ୱରରେ ଗୁପ୍ତ କାହିଁକି ତାଙ୍କର ?
କାଗଜ ପେଟ ପୂରିଲେ ସରିଲା ବେଭାର ।

ଗୋଟାକେତେ ଶାମା ଦାମା ଗଣ ଗଣା ମାତ୍ର,
ଦବି ଯିବେ ପଦେ ପଦେ ଦେଲେ ତାଙ୍କୁ ଲତ୍ର ।

କର୍ମ-କୋଡ଼ି ଗୁବା ନିଜେ ନ କରିବେ କିନ୍ତୁ
କରାଇ ବି ଦେବେ ନାହିଁ ଫୁଲିସ୍‌ନେସ୍ ଛୁନ୍ତୁ !

ନୂଆ ଗୋଟେ ଆଇଡ଼ିଆ କରିବି ବାହାର
ଶୁଣିଲି ମୁଁ ବଢ଼ିଲାଣି ଘୋଡ଼ାଙ୍କର ଦର ।

ତାଟକା ହୋଇବେ ଲୋକେ ଦେଖି ମୋ କଳ୍ପନା
ଦୈନିକ କାଗଜେ ହେବ ମୋ କୀର୍ତ୍ତି ଘୋଷଣା ।

ଫଟୋ ସହିତରେ ଖାଲି ନୁହଁଇ ଅକ୍ଷରେ,
ପଠାଯିବ ଲଣ୍ଡନକୁ ଦରିଆ ବକ୍ଷରେ ।

ଘୋଡ଼ା ଦର ଚଢ଼ା ଦେଖି ମନୁଷ୍ୟ ଭାବିଲେ
ଧନୀ ହେବେ ଅଳପକେ ଘୋଡ଼ା ପ୍ରସବିଲେ ।



# ଗୋପୀଙ୍କ ଶୋକ

ରାଧା ଧରି ସଖୀ କର,
ବୋଲନ୍ତି ଆକଟ ଆଜ ନ କର ଗୋ,
ବୁଡ଼ି ମରିବ ମୋତେ ନ ଧର ସଜନି ଗୋ ॥

ଶ୍ୟାମବନ୍ଧୁ ପ୍ରାଣେଶ୍ୱର,
ଛୁଟି ନେଇଯିବେ ମଥୁରା ପୁର ଗୋ,
ଚାରି ମାସ ସେ ରହିବେ ଦୂର ସଜନି ଗୋ ॥

ସୁବଳ ଠୋକା ବେରଣ୍ଡ,
କାନ ମୋଡ଼ି ଚପୁଥିଲୁଁ ଯା ଗଣ୍ଡ ଗୋ,
ସେହି ହେବ ଗୋପପୁରେ ଷଣ୍ଢ ସଜନି ଗୋ ॥

ମୁରଲୀ ଧରିଣ ହାତେ,
ପଛ ଆଡ଼ଆକ ଥୋଇବ ଲଥେ ଗୋ,
ଯାଇ ପଡ଼ିବୁଁ କେବଣ ଖାତେ ସଜନି ଗୋ ॥

ଏଡ଼େ ଅପମାନ ସତେ,
ଆମ୍ଭ ସନମାନ ଥାଉଁ କେମନ୍ତେ ଗୋ,
ସହି ପାରିବ କହନ ମୋତେ ସଜନି ଗୋ ॥

ଲଳିତା— ଯେଣୁ ସେ ତୋ ଜାତି ଭାଇ,
ସେଥିରେ କିଛି ତ ହରଜ ନାହିଁ ଗୋ,
ତେବେ ଡାକିବ ତ ମାଇଁ ମାଇଁ ଶ୍ରୀମତୀ ଗୋ ॥

ଜମାରୁ ମାସ ଚାରେଟି,
ଆଖି ବୁଜି ଦେଲେ ଯିବଟି କଟି ଗୋ,
କାହା ଏଥିପାଇଁ ହେଉ ଘାଣ୍ଟି ଶ୍ରୀମତୀ ଗୋ ॥

ବିଶାଖା— ଶୁଣ ଗୋ ରାଧିକା ଅପା,
ତିନହେଁ ଚାଲ ନ ଦେବା ଇସ୍ତଫା ଗୋ,
କଥା ହୋଇଯିବ ସଫା ସଫା ମୋ ଅପା ଗୋ ॥

ଶ୍ରୀମତୀ— ସେ କଥା ନ ଧର ତୁଣ୍ଡେ,
ତାହା କଲେ ବାଜ ପଡ଼ିବ ମୁଣ୍ଡେ ଗୋ,
ବଦା ହୋଇଯିବା ଦାଣ୍ଡେ ଦାଣ୍ଡେ ବିଶାଖା ଗୋ ॥

ବେଚଣ୍ଡୀ ସେ ଚନ୍ଦ୍ରାବଳୀ,
ସାଙ୍ଗେ ସାଙ୍ଗେ ଆସି ଯିବଟି ମିଳି ଗୋ,
ଲାଗିଯିବ ପିନା ରସ କେଳି ସଜନି ଗୋ ॥

ଆମେ ଗଲକ୍ଷଣି ଛାଡ଼ି,
ଆନ ଗୋପୀ ଆସି ବସିବେ ମାଡ଼ି ଗୋ,
ପୁଣି ହଲାଇ ହଲାଇ ଦାଢ଼ି ସଜନି ଗୋ ॥

ସୁଆଦ ପାଇଲେ ଥରେ,
ପଚାରିବ ନାହିଁ ଆମକୁ ବାରେ ଗୋ,
ଦେଖି ନ ପାରିବ ଦ'ଆଖିରେ ସଜନି ଗୋ ॥

କେମନ୍ତେ ବଞ୍ଚିବା କହ,
କେମନ୍ତେ ଦେଖାଇବାଟି ଏ ମୁହଁ ଗୋ,
ଖାଲି ଆଖିରୁ ବୋହିବ ଲୁହ ସଜନି ଗୋ ॥

ବିଶାଖା— ଏତେ ଚିନ୍ତା କାହିଁପାଇଁ,
ଖୋସାମଦେ ଶାଗ ସିଝଇ ନାହିଁ ଗୋ,
ଦେବା ଖାରା ଖାରା ଧମକାଇ ସଜନି ଗୋ ॥

ଠାଣ ପାହାରିଆ କାହ୍ନୁ,
ମୁଁ ଚିହ୍ନିଛି—ଆନ ଚିହ୍ନୁ ନ ଚିହ୍ନୁ ଗୋ,
ନାହିଁ ଉପାୟ ଏଇଠା ବିନୁ ସଜନି ଗୋ ॥

ମିଳି ତହୁଁ ତିନ ସଖି,
ଛାଡ଼ପତ୍ର ଖଣ୍ଡେ ଯତନେ ଲେଖି ଗୋ
ସାଙ୍ଗ ହୋଇ ଚଳିଲେ ସଲଖି ସୁଜନେ ହେ ॥

ଗଣ୍ଡିରି ଗଣ୍ଡର ବାନ୍ଧ,
ବସିଥିଲେ କାହ୍ନୁ ପୋଷାକ ପିନ୍ଧି ହେ
ଗୋପୀ ଓଗାଳିଲେ ବାଟ ରୁନ୍ଧି ସୁଜନେ ହେ ॥

ହଲାଇ ହଲାଇ ହାତ,
ରାଧା ବୋଲେ ଶୁଣ ପରାଣ କାନ୍ତ ହେ,
ସତେ ଚାଲିଲ କରି ଅନାଥ ପ୍ରାଣେଶ ହେ ॥

ହଠ ଧରି ଅଛୁ ତୁହି,
ଯେତେ ଯେ କହିଲୁ କାନ୍ଦକୁହାଇ ହେ,
ଆମ୍ଭ ବଚନ ଶୁଣିଲୁ ନାହିଁ ହଠିଆ ହେ ॥

ଶେଷ କଥା ଆମ୍ଭ ଶୁଣ,
ଆମ୍ଭ ତିନିଙ୍କର 'ତଲାକ୍' ଘେନ ହେ,
ଶେଷ ହେଲା ଆମ୍ଭ ପ୍ରୀତିପଣ ହଠିଆ ହେ ॥

କୃଷ୍ଣ— ଶୁଣ ଗୋ ତରୁଣ ସନ୍ତ,
ମନ ଜଣା ଆଜ ତୁ କର ନାହିଁ ଗୋ,
କଣ୍ଟଭଣା କରୁଅଛୁ ମୁହିଁ ପ୍ରେୟସି ଗୋ ॥
ଦେଖିଣ ତୁମ୍ଭର ବ୍ୟସ୍ତ,
ଭେନ୍ଦାଳି ଜଣ ମଥୁରା ଗସ୍ତ ହେ,
ଏବେ ହେବଟି ସବୁ ଦୋରସ୍ତ ପ୍ରେୟସି ଗୋ ॥
ଅଟଳି ତୁମ୍ଭର ଜାଣେ,
ଗୋଟବାରେ ଟଚଟଣେ କରଣେ ଗୋ,
ତେଣୁ ଅଣାଇବ ଅଙ୍କ ଜଣେ ପ୍ରେୟସି ଗୋ ॥
ତୁରଂ ଫାଡ଼ ଟୋକା ସେନ୍ଥ,
ତା ସାଙ୍ଗେ ତୁମ୍ଭର ଘଟିବ ସନ୍ଧ ଗୋ,
ନୂଆ ନାଗର ସେଣୁ ଅଟଇ ପ୍ରେୟସି ଗୋ ॥

ରାଧା— ମାନଲ୍ଲ ମନ ଆମ୍ଭର,
ସେବେ ଇଚ୍ଛା ଯାଅ ମଥୁରା ପୁର ହେ,
ଫେରି ଆସିବେ ଆମ୍ଭେ ତୁମ୍ଭର ପ୍ରାଣେଶ ହେ ॥



# ଗୋଦାବରୀ ନାନୀ କାନ୍ଦଣା

( କଳାମାଣିକ ବାଣୀରେ ଗାଇବ )

ଗେଟେଣ୍ଟ ଗୋଦାବରୀ ନାମୀ ଗୋଳ କରି ମୁହିଁ
ବାହୁନ କାନ୍ଦଇ, ବହେ ଧାର ଧାର ଲୁହ ।

ଭୁବା ଭୁବା କୋହ ଉଠେ ଭସ ଭସ କରି,
ମଟର ପଛରୁ ଧୂଆଁ ନିକଳିଲା ପରି ।

ଜନ୍ଦା ପିମ୍ପୁଡ଼ି ସବୁରେ କାନ୍ଦନ୍ତି ସକଳେ,
ଦେଶ ଭାଇ ଭଉଣୀଏ କାନ୍ଦନ୍ତି ବିକଳେ ।

ଏଭଳି କାନ୍ଦଣା କେବେ କେହୁ କାନ୍ଦିନାହିଁ,
ଥରେ ଏକା କାନ୍ଦିଥିଲେ ଗୋପପୁରେ ରାଇ ।

ସାରୁ ପତରରୁ ପାଣି ବହେ ଅପ ଅପ,
ଶୋକେ ବଢ଼ିଆସିଲା କାଠି ହୁଅଇ ବରଫ ।

ଯେ ଶୁଣିବ ସେ କାନ୍ଦଣା (ସେ) ଉଠିବ ଧକେଇ,
କିଏ ବା କାନ୍ଦିବ ନାକେ ସକେଇ ସକେଇ ।

ତୁମେ ଯେବେ ନ କାନ୍ଦିବ ପଢ଼ି ଏହୁ ଗୀତ,
ଛେପ ମାରି ଦ' ଆଖିରେ ଟିକେ ହେଲେ କାନ୍ଦ ।

## କାନ୍ଦଣା

( ଗଡ଼ ମାଳିଆ ବୃତ୍ତେ )

ମୋ ପରି ସରଣୀ ଝିଅ,
ତେବେ ନ ସହିଲା କାହାରି ହିଅ, ସଜନ ଗୋ
ଖୋଜି ବୁଲଲେ ସୂତାରି ଖିଅ ।୧।

କଲି ଯେତେ ଦେଶ ସେବା,
ଯେତେ ସ୍ୱାର୍ଥତ୍ୟାଗ ଜୀବନ ଦେବା ସଜନ ଗୋ
ତେବେ କୋହିଲାଟି ମନ୍ତ୍ରୀ ହେବା ।୨।

ମୋ ଭଳି ପଣ୍ଡିତ ଜ୍ଞାନୀ,
ବୁଦ୍ଧିମନ୍ତ, ମାନୀ, ସିଦ୍ଧାଣୀ, ଧ୍ୟାନୀ ସଜନ ଗୋ
ମୋତେ କଲେ ଏତେ ହୀନମାନ ।୩।

ଠକିକେ ଅଇଲା କାହିଁ,
ଚନ୍ଦକଡ଼ା ନୁହେଁ ଯାହାର ଭାଇ, ସଜନ ଗୋ
ପାଗ ବାନ୍ଧିଲାଟି ବୁହୁଁ ବୁହୁଁ ।୪।

କେହୁ ନ ଦେଖି ମୋ ଶିଷ୍ୟ,
ହାମ୍ପୁଡ଼ି ଖାଇଲେ କାକରି ଷିଷ୍ୟ, ସଜନ ଗୋ
ମୁହିଁ ଗ୍ରେଡାଇଲି କଷ୍ଟା ବରି ।୫।

ଗୁଡ଼ି ପଳାଇଲି ଖରେ,
ଆସି ପଶିଗଲି ମାଉସୀ ଘରେ, ସଜନ ଗୋ
ହଗି ବସିଲି ଅଧ ବାଟରେ ।୬।

କଲି ଯେତେ କଟକଣା,
ଯେତେ ଗୋଡ଼ଧରା ଯେତେ ଗଞ୍ଜଣା, ସଜନ ଗୋ
କିଏ କରିବ ତାର କଳନା ।୭।

ଫିଟିଗଲା ଶେଷେ ବାଟ,
ନାସ ପଡ଼ିଗଲା ଚହିଁ ସଙ୍କଟ, ସଜନ ଗୋ
ମୋତେ ନ ମିଳିଲା ଶିଷ୍ୟ ପାଟ ।୮।

ଯାହା ହେଉ ଭାଗ୍ୟ ଥିଲା,
ଶିକ୍ଷେପା ଖଣ୍ଡିଏ ମିଳିତ ଗଲା, ସଜନ ଗୋ
ମନ ଗଲୁ ମାରିଦେଲି ଭଲ ।୯।

ଯେତେ ମୁଁ ଉଲେଇ ହେଲେ,
ଅସହଣୀ ଲୋକେ ଦୁର୍ନ୍ନା ଦେଲେ, ସଜନ ଗୋ
ଦେଶଯାକ ବାନା ଉଡ଼ାଇଲେ ।୧୦।

ଯେ ଯେତେ କରିଲେ ଟାହି,
ମନ ଓରମାନ ନେଲି ମେଣ୍ଟାଇ, ସଜନ ଗୋ
ଆଖି ବୁଜିଣ ଦେଲି ଭୁଟାଇ ।୧୧।

ସ୍ୱର୍ଗେ ପାଦ ଧରି ଠେଇଁ
ନରକେ ବସନ୍ତି ହେଲି ତ ହେଉ, ସଜନ ଗୋ
ଯେତେ ହିନ ହେଲେ ହୋଇ ଯାଉ ।୧୨।

ଧରି ଗଜରାଜ ଲାଞ୍ଜ
ତରୁ ବୈତରଣୀ ଉବୁବ ଖଞ୍ଜ, ସଜନ ଗୋ
ଏବେ ପୂର୍ଣ୍ଣ ହୋଇବ କି ବାଞ୍ଛା ।୧୩।

ମନ ମାରି ମାଆ ଠେଇଁ
ମାଉସୀ ଘରରେ ପଶିଲି ଯାଇ, ସଜନ ଗୋ
ହାଣ୍ଡି ଭାଙ୍ଗିଗଲା ମାଡ଼ ଖାଇ ।୧୪।

ଦୁଇ ନାବେ ଦେଇ ଗୋଡ଼,
ପ୍ରାଣ ନ ଗୁଡ଼ିଲ ଛୁଡ଼ିଲ ଥୋଡ଼, ସଜନ ଗୋ
କିଏ କହିବ ଡବଲ ଚୋଡ଼ ।୧୫।

ଖଣ୍ଡ କ୍ଷୀର ମଣି ମୁହିଁ,
ଗରଳ ରାଶିକୁ ରଖି ଦେଲଇଁ, ସଜନ ଗୋ
କହ କେତେ କୁବୁଦ୍ଧି କଲଇଁ ।୧୬।

ପିଆସ ଛୁଟିବା ଲାଗି,
ଜଳଦ ସେବିଲ ମୁଁ ହତଭାଗୀ, ସଜନ ଗୋ
ମୁଣ୍ଡେ ବାଜ ପଡ଼ିଗଲା ବେଗି ।୧୭।

ଶୀତଳ ଚନ୍ଦ୍ରିକା ମଣି,
ଖାଲୁ କରଣକୁ ଲେପିଲି ଆଣି, ସଜନ ଗୋ
ଥୋଡ଼ ପୋଡ଼ିଗଲା ଜାଣି ଜାଣି ।୧୮।

ମଧୁ ବରଷିବ ବୋଲି,
ବିରୁଡ଼ି ବସାକୁ ଯାଇ ଖୋଳିଲି, ସଜନ ଗୋ
ଦେହଯାକ ଜଳି ପୋଡ଼ି ମଲି ।୧୯।

ଧରି ବନ୍ଧୁଆଡ ଗଛ,
ଢଷି ଦେଲି ନେଇ ଆପଣା ପଛ, ସଜନ ଗୋ
ତାହା ମଉଜକୁ କିସ ଲଛ ।୨୦।

ବାଇ ପିଚାଶୁଣୀ ଭଳି
ଯେଉଁଠି ବସିଲି ସେ ଗଲା ଜଳି, ସଜନ ଗୋ
ସାହା ଉଡ଼ିଗଲା ଖାଲି ଖାଲି ।୨୧।

ହେଲି ଏତେ ହଟହଟା,
ପହିଲି ପହିଲି ଏଭଳି ମିଠା, ସଜନ ଗୋ
ଶେଷ ବେଳକୁ ଲାଗିଲା ଅଠା ।୨୨।

କରମରେ ଏହା ଥିଲା,
ଏ କୂଳ ସେ କୂଳ କୂଳ ଗଲା, ସଜନ ଗୋ
ଠାବ କାହିଁ ହେଲେ ନ ମିଳିଲା ।୨୩।

ଏବେ ମୁଁ କରିବ କିସ,
ସବୁ ସିନା ଏକା ଭାଗ୍ୟର ଦୋଷ, ସଜନ ଗୋ
ଯାଇ ଭସିଦେବି ସିନା ବିଷ ।୨୪।

ସଖିଏ ଏହା କରିବ,
ଯେବେ ଏ ନଳଠା ପରାଣ ଯିବ, ସଜନ ଗୋ
ଉଚ୍ଚ ସମାଧି ଏକ ତୋଳିବ ।୨୫।

ପତକା ଏକ ଉଡ଼ାଇ,
ମୁଗନ ପଥରେ ଲେଖିବ ତହିଁ, ସଜନ ଗୋ
"ମହାତ୍ୟାଗୀ" ଏଠି ଶୋଇଛନ୍ତି ।୨୬।

ବେମାନ ଓଡ଼ିଆ ଜାତି,
ଚିହ୍ନି ନ ପାରିଲେ ମୋ ଗୁଣ, ଖ୍ୟାତି, ସଜନ ଗୋ
ଉଲୁ ହୋଇ ରହିଲେ ଅଖ୍ୟାତି ।୨୭।

ଏତିକି ମୋହର ଭିକ୍ଷା,
ଭାବୀ ବଂଶଧରେ ପାଇବେ ଦୀକ୍ଷା, ସଜନ ଗୋ
ଦେଶବାସୀଏ ଲଭିବେ ଶିକ୍ଷା ।୨୮।

କାଳସ୍ରୋତ ଯିବ ବହି,
ମୋ ନାମ ରହିବ ଅକ୍ଷୟ ହୋଇ, ସଜନ ଗୋ
କୀର୍ତ୍ତି ଯୁଗେ ଯୁଗେ ଥିବ ରହି ।୨୯।



# ପଞ୍ଚଦେବତା ସଙ୍ଗୋଲା

( ୧ )

ଆସ ହେ ବାରେ ଆସ,
ଆଦ୍ୟ ଦେବତା ହେ,  ଆଦ୍ୟ ଦେବତା ହେ,
ଆଦ୍ୟ ଦେବତା ହେ ଗୁଡ଼ ସ୍ୱବାସ ।

କୃଷ୍ଣ ଭଳି ତୁମ୍ଭେ ଦେଖୁଥିଲ ନାଟ ଆନକୁ କରାଇ ରଜା
ଏଥର ଯେ ଆପେ ଗାଦି ମାଡ଼ି ବସି, ବୁଝିବ ବୋଳକ କେବଣ ମଜା ?

ନିଜ ରାଇଜରେ ରଜା ହୋଇ ତୁମ୍ଭେ ଛାଡ଼ି ଦେଲ ରାଜପଣ
ଓଡ଼ିଶାରେ ପାଟ ପାଗ ବାନ୍ଧିବାକୁ ଏବେ କିସ ଲାଗି ବଳିଲା ମନ ?

ଯେବେ କି ହୋଇଲ ଆଦ୍ୟ ଦେବ ତେବେ ଗଜମୁଣ୍ଡ କର ପୋଖା
ସେତିକି ନ କଲେ ଓଡ଼ିଆ ଜାତିଟା ବୋଲିବ ତୁମ୍ଭଙ୍କୁ ଅସଲ ବୋକା ।

ନୂତନ ଯୋଜନା ବାଡ଼ିବାକୁ ହେଲେ ପ୍ରସ୍ତୁତି ଲୋଡ଼ା ଆଗ
ଥୋଡ଼ ପାହାଡ଼ରେ ଶଙ୍ଖ ବଜାଇଣ କରିବ ପ୍ରଚାର, ସେଇତ ବାଗ !

ଆପେ କ୍ଷତ୍ରୀ ପୁଣି ରଜା ହୋଇ ତୁମ୍ଭେ କରୁଛ କି ମନ୍ଦ କର୍ମ
ପର୍ଶୁରାମ ଭଳି କ୍ଷତ୍ରିୟ ସଂହାର ! —ରଜାକୁ ମାରିବା ଏ କେଉଁ ଧର୍ମ ?

ଗଦା ଗଦା ଆମ୍ଭେ ବଧାଇ ଦେଉଛୁ, ତୁମ୍ଭ ଯଶ ପୁଣି ଆସୁଛି ବଢ଼ୁ
ହାତ ଡାଳି ନୁହେଁ—ମାଛ ବେଣ୍ଟି ଦେଇ ଓଡ଼ିଆଙ୍କୁ ଖୁଆ ଗଣେଶ ଲଡ଼ୁ ।

ଓଡ଼ିଆଙ୍କ ଘର ସମ୍ଭାଳିବ ଯେବେ ଚୂଟିଆ ମୂଷାକୁ ତଡ଼
ଆପଣା ବାହନ ହେଲେ ହେଉ ପଛେ, ଗୁଞ୍ଜୁଣି ଯେକିଣ ବାହାର ପଡ଼ ।

( ୨ )

ଆସ ଆସ ମନ୍ତ୍ରୀବର ଜୟ ରାଧେକୃଷ୍ଣ ନାମକୁ ଧର ଓଡ଼ିଆରେ
ଦେବ ଭାସ୍କରେ ସ୍ୱାଗତ କର ସୋଦରେ ହେ ।

ବଡ଼ ବିଶ୍ୱାସୀ ଏ ଜନ, ନିର୍ମଳ ଅଟଇ ଯାଙ୍କ କରଣ ସୋଦରେ ହେ
ତେଣୁ ବିଦିତ ସଚ୍ଚୋଟ ପଣ, ସୋଦରେ ହେ ।
ବେପାର ବଣିଜ ଯେତେ ବାଣିଜ ମିସ୍ତ୍ରି ଯାଙ୍କ ହାତେ ସୋଦରେ ହେ
ଲାଞ୍ଚ ଜୁଡ଼ିବୁଡ଼ି ଯାହା ସାଥେ, ସୋଦରେ ହେ ।
ମନ କର୍ଣ୍ଣ ଦେଇ ଶୁଣ, କାମରେ ନାମରେ ଦେଖିବ ଗୁଣ ସୋଦରେ ହେ
ପୁଣି ଦେଖାଯିବ ଟାଣ ପଣ, ସୋଦରେ ହେ ।

( ୩ )

ତିନି କୃଷ୍ଣ ମଧ୍ୟେ ତୁମେ ଅଟ ନମ୍ବର Three
କାୟ ମନୋବାକ୍ୟେ ବିଲକୁଲ Free ।

ପଞ୍ଚ ଦେବତାରେ ବିଷ୍ଣୁ ତୃତୀୟ ଦେବତା
ନୃପନ କୋଟି ଜବର ଯେହୁ ପଡ଼ ଦାତା ।

ତେଣୁ ତୁମ୍ଭ ହାତେ ଗଲା ଯୋଗାଣର ବାନା
କଣ୍ଟ୍ରୋଲ ରହିଲା ତବ ଓଡ଼ିଆଙ୍କ ଦାନା ।

ଜମିଜମା ଆଇନର ବନ୍ଧ କାଣ୍ଡ ଶର
ଜମିଦାର ବଂଶ ଧ୍ୱଂସ କର ଏଇ ଥର ।

( ୪ )

ଚତୁର୍ଥ ଦେବତା ଅଟନ୍ତି  ଭୋଳା ମହେଶ ଶିବ
କାଙ୍ଗରାଜ ବିନା ଆଉ କେ  ସେହି ଥାନେ ବସିବ ।
ଶିକ୍ଷା ପାଇଁ ଲୋଡ଼ା ସହଜେ  ଖାଣ୍ଟି ପଣ୍ଡିତ ଜଣେ
କାହିଁକି ରହନ୍ତୁ ପଡ଼ ହେ  ଲୁଚି ସମାଜ କଣେ ?
ପାଇଅଛ ତୁମ୍ଭେ ନନା ହେ  ସ୍ଥୂଳ ଶରୀର ଟିଏ
ତୁମ୍ଭ ବିନା ସ୍ୱାସ୍ଥ୍ୟ ଶାଢ଼ୀଟା  ଆଉ ଲଭନ୍ତା କିଏ ?
ଏ ଦୁଇ ବିଭାଗ ମୂଳରୁ  ଖାଇ ଗଲାଣି ଘୁଣ
ସୁଧାରି ପାରିବ ଯେବେଟି  ତେବେ ଗାଇବୁ ଗୁଣ ।
ଏଣୁ ଭରସାରେ ରହିଲୁ  ତୁମ୍ଭ ମୁଖକୁ ଚାହିଁ
ଆଜି ଶୁଭ ଦିନେ ପଣ୍ଡିତେ  ଦେଉ ଆମ୍ଭ ବଧାଇ ।

( ୫ )

ପଞ୍ଚମ ଦେବତା  ଦୁର୍ଗାଙ୍କୁ କହି
ସର୍ବ ବିଧିଦାତ୍ରୀ  ଶକତିମୟୀ ।
ସ୍ତ୍ରୀ ଆଚାର  କରନ୍ତି ନିଜେ
ନିତ୍ୟାନନ୍ଦ ରୂପେ  ହୋଇଲେ ବିଜେ ।
ଏହାଙ୍କୁ ଆଗ ହେ
ସଙ୍ଗୋଳି ନେବଟି  ବନ୍ଧାଇ ପାଗ ହେ ।

ଦେଶକୁ ପୋଷଣ    କରିବେ ଏମାନେ,
ବରଷାଇ ଦେବେ    ଦୁଧ ଓ ମହୁ,
ହିନାଥ ମେଳରେ    ଏ ଥାଇ ଆଗ
ଗଢିନି ଅଛନ୍ତି    ଶାସନ ବାଗ ।
ଆନନ୍ଦ ଦେଇ
ନଚ୍ଚାନ୍ତି ପାଲଟେ    ଦେଶକୁ ଏହି ।

ଢୋଲ୍ ପିଟି ଏବେ    ବଜା ବଧାଇ
ଜୟ ଶବଦରେ    ମଣ୍ଡ଼ା କମ୍ପାଇ ।
ଜନ୍ତୁଶିଳ ସୂାଙ୍କ    କରନ୍ତି ଖଟ୍ଟ
ଢେବେ ତ ଜାଣିବା    ଏ କର୍ମ ପଟ୍ଟ ।
ନୋହିଲେ କରେ
ଆମେ ଯେ ଭମିରେ    ସେହି ଭମିରେ ?’



# ବାହା ରାତି

'କି ଅକାଳ କଥା ମାସ୍ୱେ ନ ହୁଏ ପରତେ
ଏତେ କାଳେ ବାହାଘର ଫିଟିଲା କି ସତେ !

କନିଆ ଖୋଜାରେ ଦେଶସାରା ଦେଇ ଧାଡ଼
ହୁଡ଼ ତଳେ ପଡ଼ିଗଲା ଆସି ମୁହଁମାଡ଼ ।

ଆସଲୋ ମାଇପେ ଧାଇଁ ଦେଖିବ ଲୋ ବର
ଗୁହାଳ ବୁଢ଼ାକୁ ଫୁଲ ଦୋଳ କି ସିନ୍ଦୂର ।

କଳା ଦେହକୁ ହଳଦୀ ଯାଇଅଛି ଖାଇ
ଖୋଲା ଆଖି କି ସୁନ୍ଦର ଢଣେ କୁ କୁ ନାଇ ।

କଳା କଳା ନଖ ତଳେ ଗଜ-ମୁକ୍ତା ଦନ୍ତ
କଳା ମେଘେ ବଗ କିବା ଉଡ଼ ଯାଉଛନ୍ତ ।

ଚିନ୍ତା ନାହିଁ, ବସନ୍ତଟା ଗଲା ବୋଲି ଗଡ଼
ଏ(ତେଣେ) ମାଡ଼ ଆସୁ ଅଛି କାଠଯୋଡ଼ ଭରା ବଡ଼ି ।

ହୁଲ ଉଙ୍ଗା ପରେ ଚଢ଼େ ପକାଇବା ଜାତ
ଏକା ରାତକରେ ହୋଇଯିବ କସ୍ତିମାତ ।

ଯେ ଯା'ହାତେ କୁଣ ଯେଣୁ ଲାଗିଗଲା ଏବେ
ଖାବୁଛି ଗୁହାଳ ବୁଢ଼ା କେହ୍ନ ନ ରହିବେ ।

ଜଙ୍ଗଲା ଚଢ଼େଇ କାଳେ ଖୋଲି ଯିବ ଉଡ଼
ଅତି ସାବଧାନେ ରଖିଥିବ ବାନ୍ଧି ଛଡ଼ ।

ଇନସିଓର କରନେବ ଅବା ଚଟ୍ କରି
Claim Bonus ମିଳିଯିବ ଡବଲ ଯେପରି'

ସମସ୍ତିଙ୍କି ଏତେ କରି କହୁଥିଲା ଆଗ
ଦୁଆର-ମଣ୍ଡା ଖଟିରେ ମୋହର ତ ଭାଗ ।

ଗୁଡ଼ ଦେଖା ବେଳେ ଭୁଲିଯିବ ନାହିଁ
ଫେଣୀ ମିଠେଇ ଅଛିକେ ଦେବଟି ଚୋଇ ।

ଏହି ଆଶୀର୍ବାଦ ମୁହିଁ କରୁଛି ତୁମ୍ଭଙ୍କୁ
ବୁଇଲ୍ଡ ଏନ୍ଡୋଜମେଣ୍ଟ କରି ଆଉ ବରପକ୍ଷ'

ସୁଖେ ଥାଅ ଦ' ପରାଣୀ ହୋଇ ଧରାପରା
ପଦେ କହି ମାରି ନେଲା ମନର ଝାଙ୍କରା ।

ଆମ ଦିନ କାଳ ସରି ଗଲାଣିଟି ପରା
ତମ ସୁଖେ ମାରୁଛି ମୁଁ ମନର ଝାଙ୍କରା ।



# ବୁଢ଼ା ବୁଢ଼ୀ ପାଠପଢ଼ା

ବୁଢ଼ା ବସି ଦାଣ୍ଡେ ପିଙ୍କା ମୋଡୁ଼ଥିଲା
ବୁଢ଼ୀ ଯାଉଥିଲା ବାସନ ମାଜି,
ନେଉଟି ପଡ଼ି ସେ ହାକି ଦେଲା ଖରେ
"କାମ ଧନ୍ଦା କରୁ ନାହିଁ କି ଆଜି ?

ବେଳ ଯେ ହେଲାଣି ହସୁ ନାହିଁ ପରା,
ବୁଢ଼ା ହେଲେ ଆଖି ଯାଏ କି ଫୁଟି,"
ଏତେ କହି, ବୁଲି ପଡ଼ିବା ମାତର
ଇଟା ଖଣ୍ଡେ ବୁଢ଼ୀ ପଡ଼ିଲା ଝୁଣ୍ଟି ।

"ଦୁର୍— ଦଣାଦିଆ ନିଆଁ ଲଗା ଇଟା
ସକାଳୁ ଚାହିଁ କି ଇଯ୍ୟାର ମୁହଁ,
ଆଜିର କି ଦଶା କେଜାଣି ମା ଅଛି,"
ଏହା କହି ବୁଢ଼ୀ ଗଡ଼ାଏ ଲୁହ ।

ଧାଇଁ ଯାଇ ବୁଢ଼ା ପକାଇଲା ଠେକ
ଝାଡ଼ି ଝୁଡ଼ି ଦେଇ ବୁଢ଼ୀର ଦେହ,
ବେଲ୍ କଂସା ଯାକ ଗୋଟାଇ ପକାଇ
ଆଉଁସି ଦେଇ ସେ ଦେଖାଏ ସ୍ନେହ ।

ବୁଢ଼ା ବୁଢ଼ୀ ଦହେଁ ବସିଲେ ପିଣ୍ଡାରେ
କାପଡ଼ା କାପଣି ଯୋଡ଼ିକ ପରି,
କଅଁ ଲେଇ କରି କହିଲା ସେ ବୁଢ଼ା
ବୁଢ଼ୀର ପାକୁଆ ଓଠକୁ ଧରି ।

"ଶୁଣିଛୁ ନା ବୁଢ଼ୀ ନୂଆ କଥା ଏକ
ବୁଢ଼ା ବୁଢ଼ୀ ସବୁ ପଢ଼ିବେ ପାଠ,
କଂଗ୍ରେସିଆ ବାବୁ କହି ଯାଇଛି ଯେ,
ଲାଗିବ ଏଣିକି ଧାନକି ନାଟ ।

ପାଠ ନ ପଢ଼ିଲେ ଅଫିମ ନେବାର
ଲାଇସନ ତାକୁ ମିଳିବ ନାହିଁ,
ଯାହା ହଉ ପଛେ ଅକ୍ଷର ଖିଣ୍ଟା
ଶିଖଯିବା ସ୍କୁଲ ସେଇଥି ପାଇଁ ।

ତାପରେ ଜାଣିଛୁ ! ଗାଆଁ ସ୍କୁଲରେ
ମାଷ୍ଟର ଚାକିରି ମିଳିବ ମୋତେ;
ତୁ ଚାରି ଅକ୍ଷର ଯିବୁ ଯେବେ ଶିଖି
ମାଷ୍ଟରାଣୀ ନିଶ୍ଚେ କରିବି ତୋତେ ।

ହାତକଟା ଜାମା ପିନ୍ଧି ଦେଇ ଖଣ୍ଡେ
ପାକିଟିରେ ଝର କଲମ ମାରି,
ଗାଆଁ ଦାଣ୍ଡେ ଯେବେ ଯାଉଥିବି ଚାଲି
ଚାହିଁଥିବେ ସବୁ ଭେଲକା ପରି ।

ସେମିଜ ଉପରେ ଶାଢ଼ୀ ପିନ୍ଧି ତୁହି
ଚାଲୁଥିବୁ ଯେବେ ଖେମଟା ଚାଲି,
କଉଁ ଟୋକା ବୋପା ଫେରି ନ ଚାହିଁବ
କିଏ ସେ କହିବ ବୁଢ଼ୀଟା ବୋଲି ।"

ଏତକରେ ବୁଢ଼ୀ ହୋଇ ମହାଖୁସି
ବୁଢ଼ା ଉପରକୁ ପଡ଼ିଲା ଢଳି,
ଆନନ୍ଦରେ ବୁଢ଼ା (ସେ) ଝାକୁଆ ଗାଲରେ
ଲଦି ଦେଲା ଗେହ୍ଲା ଭଲିକି ଭଲି ।





# ଅଜା ଆଉ ସୁଆଙ୍ଗ

ଅଜା ଆଈଙ୍କର          ଅଭେଦ ପୀରତି
ଏକା ପ୍ରାଣ, ଏକା ଘଟ,
ଦଣ୍ଡେ ନ ଦେଖିଲେ          ଆଈଙ୍କୁ ଆଖିରେ
ଅଜା ହୋନ୍ତି ଛଟ ପଟ ।

ଯେତିକି ଯେତିକି          ବୟସ ବଢ଼ଇ
ପୀରତି ସେତିକି ବଢ଼େ,
ଆଈଙ୍କ ପଣତ-          କାନି ଧରି ଅଜା
ରହିଥାନ୍ତି କଡ଼େ କଡ଼େ ।

ହାଣ୍ଡି ଶାଳେ ଆଈ          ରହିଥିଲେ, ଅଜା
ବସନ୍ତି ଦୁଆର ମାଡ଼ି,
ଝାଡ଼ା ଫେରି ଗଲେ          ପଛେ ପଛେ ଅଜା
ଚାଲୁଥାନ୍ତି ଧରି ବାଡ଼ି ।

"ଦାନ୍ତ ପାଟି ଯିବା          ବୁଢ଼ା ମିଣିପଟା—
ଇଏ କି ଅକାଳ କଥା,
ଲଜ ସରମକ          ପୋଡ଼ି ଖାଇଲାଣି
ବିଗିଡ଼ି ଗଲାଣି ମଥା !

ଏ କାଳକୁ 'ଏତେ          ମାଇପ ସୁଆଗ
କଉଁଠି ଥିଲା ମ ଲୋଚ,
କାହା ତୁଣ୍ଡେ କିଏ          ବାଡ଼ି ବଟା ଦବ
ସମସ୍ତେ କହିବେ ଛି-ଛି !"

ଭଣି ଭଣି ହୋଇ          ଅଜାଙ୍କ କାନକୁ
ଆଈ ସବୁ ନେଲେ ଟାଣି,
ଅଜାଙ୍କର ହୃଦ          ଉଛୁଳି ଉଠିଲା
ପ୍ରେମ ଫାଟି ଯାଇ ପାଣି ।

ଅଜାଙ୍କର ଚନ୍ଦା—          ମୁଣ୍ଡଟା ଭିତରେ
ବୁଦ୍ଧିଟା ମାରିଲା ଗଜା
ଏକା ନିଶ୍ୱାସରେ          ଲୁଗାପଟା ପିନ୍ଧି
ବାହାରି ପଡ଼ିଲେ ଅଜା ।

ଏକଥାକେ ଏକ          ମାଙ୍କଡ଼ିଆ କେଳା
ମାଙ୍କଡ଼ ନଚଉ ଥିଲା
ପାଡ଼ା ମାଙ୍କଡ଼ର          ନାଟ ଦେଖିବାକୁ
ଘେରିଥିଲେ ବହୁ ପିଲା ।

ମାଙ୍କଡ଼ର ନାଟ          ଦେଖି ଭୋଳ ଅଜା
ଚାହିଁ ରହି ମଟ ମଟ,
ଦେଖିଲେ ତା ମୁଖେ          ଆଈଙ୍କର ମୁଖ
ଉଭୁରିଛି ଯେସନ୍ତ ଫଟ !

'ଆହା' ବୋଲି ତୁଣ୍ଡୁ          ବାହାରି ପଡ଼ନ୍ତେ
ନିଃଶ୍ୱାସ ପଡ଼ିଲା ଫଁ······
ଦୁଇ ଟୋପା ପାଣି          ଆଖିରୁ ଗଡ଼ନ୍ତେ
ନାକ ଡାକେ ସଁ-ସଁ ।

ମାଙ୍କଡ଼ଟି ଦବୁ          କେତେ ଦାମ୍ ନବୁ
କେଳାକୁ କହନ୍ତେ ଅଜା
କେଳା କହେ, 'ମୋର          ଜୀବିକା ସରିବ
ଏହାକୁ ବିକିଲେ ରଜା ।'

"ଜୀବିକା ବଡ଼-ନା          ଜୀବନ ବଡ଼ରେ
ଜାଣି ନାହୁଁ କେଳା ଟୋକା",
ଏହା କହି ଅଜା          କେଳାର ହାତରେ
ଗୁଞ୍ଜି ଦେଲେ ଦଶ ଟଙ୍କା ।

କୋଠି ନିଧି ପାଇ          ମହା ଖୁସି ଅଜା
ଘରକୁ ଫେରିଲେ ତୁରନ୍ତେ,
ମାଈ ମାଙ୍କଡ଼କୁ          କାନ୍ଧରେ ବସାଇ
ସିଧା ସିଧା ଦାଣ୍ଡେ ଦାଣ୍ଡେ ।

ଆଈଙ୍କର ନାଆଁ          ଥିଲା ଅମ୍ବୁବଣା
ଅଜା ଡାକୁଥିଲେ 'ଅମ୍ବୁ',
ତାହା ସଙ୍ଗେ ପଦ          ମିଳେଇ ରଖିଲେ
ମାଙ୍କଡ଼ର ନାଆଁ 'ଜମ୍ବୁ' ।

ସେଇଦିନୁଁ ଅଜା          ଅମ୍ବୁ କଡ଼ ଛାଡ଼ି
ରହୁଥାନ୍ତି ଜମ୍ବୁ ପାଖେ,
କେବେ ମୁଣ୍ଡେ କେବେ          କାନ୍ଧରେ ବସାନ୍ତି
କେବେ ବା ଧରନ୍ତି କାଖେ ।

ଦିନେ ଆଈ ରାଗି          କହିଲେ ଅଜାଙ୍କୁ
"ବୁଢ଼ା କାଳଟାରେ ଭଲା,
ପ୍ରକୃତି ଛଡ଼ା          ହେଉଛ ନା କିସ
ମାଙ୍କଡ଼ କି ମନ୍ତ୍ର କଲା !

ଅଜା କହେ, 'ତୁମେ ପାଖ ନ ପରେଇ
ମୋ ସଙ୍ଗେ ସାଧିଲ ବାଦ,
ସେଥିପାଇଁ ଏଇ ମାଙ୍କଡ଼କୁ ଦେଇ
ମେଣ୍ଟାଇ ନେଉଛି ସାଧ।'

ତୁମରି ବିରହ ଭୁଲିବା ପାଇଁକି
ଏ ପିନା ଗୋଟାଏ ଆଳ,
ତୁମ ସଙ୍ଗ ସୁଖ ମାଙ୍କଡ଼ ସାଥିରେ
ପାଉଛି ମୁଁ ସଦା କାଳ।

ଗୋଟାମତେ ଏବେ ତୁମରି ଛବିଟି
ତୁମରି ଛାଞ୍ଚରେ ଗଢ଼ା,
(ମୋ) ଅମ୍ବୁକୁ ବା କିଏ ଭୁଲାଇ ପାରିବ
ଏକା ଏ ଜମ୍ବୁଟି ଛଡ଼ା।

ଏତେ କହି ଅଜା ଦରପଣ ଟାଏ
ନେଇ ଦେଲେ ଆଣ୍ଠି ପାଖେ,
ସେତିକିରେ ଆଣ୍ଠି ନିଆଁ ବାଣ ହୋଇ
ଜଳି ଯେ ଉଠିଲେ ରାଗେ।

"ପୋଡ଼ା ମୁହାଁ ବୁଢ଼ା ମାଙ୍କଡ଼ ଟାପରା
କରୁଛି—ମୁଁ କି ତୋ ଶାଳୀ ?

ଚିହ୍ନୁଛୁନା ମୋତେ ଦେଖିବଟି ଏଷଣି
ତେରଙ୍କ ତୋରଣି ଗାଳି!"

ଏହା କହି ଆଣ୍ଠି ମୁଣ୍ଡି ଗୁଞ୍ଜୁଣୀଟା
ଭାଡ଼ି ତଳୁ ଆଣି କାଢ଼ି,

ଜମ୍ବୁ ଓ ଅଜାଙ୍କ ଚକଣା ପିଠିକୁ
ଏକା ସାଙ୍ଗେ ଦେଲେ ଝାଡ଼।

ଅମ୍ବୁ ଦେଈଙ୍କର ପ୍ରେମ ସମ୍ଭାଷଣ
ଭେଦିଗଲା ହାଡ଼େ ହାଡ଼େ

ଜମ୍ବୁ ଡେଇଁ ଗଲା ପୀଢ଼ା ମଥାନକୁ
ଅଜା ଗଲେ ବାଡ଼ଆଡ଼େ।



# ଅଜା-ଆଈ ବାହାଘର

ଅଜା ଯାଇଥିଲେ ବର୍ମା ଲଢ଼ାଇକୁ
ରେଡ଼କ୍ରସ୍ ଦଳେ ମିଶି,
ଡାକ୍ତର ହୋଇ ରୋଗୀ ସେବା କରି
ମାଲିକଙ୍କୁ କଲେ ଖୁସି ।

ବ୍ରିଟିଶ ଫଉଜ ପଳାଇ ଅଇଲେ
ରଙ୍ଗୁଣିରୁ ଛଡ଼ା ଖାଇ,
ଅଜା ରହିଗଲେ ଲସ୍ ଖବର ହେତୁ
ଆସିବା ବାଟ ନ ପାଇ ।

ଆଈ ନ ଜାଣିଲେ ଅଜା ଗଲେ କାହିଁ
ଝଲ୍କୁଣିରେ ଥାନ୍ତି ବସି,
ପୁଲିସ ସାହେବ ତାଙ୍କ ଆଗେ ଦିନେ
ପ୍ରବେଶ ହୋଇଲେ ଆସି ।

ବୋଇଲେ ସାହାବ "ଶୁଣ ଆହେ ଲେଡ଼ି,
ଆଣିଅଛୁ ସୁଖବର,
ତୁମ୍ଭ ହଜବେଣ୍ଡ୍ ଲେଫ୍‌ଟେନାଣ୍ଟ ଅଜା
ମରି ହେଲେ ଜଣେ Hero ।

ଆମ୍ଭ ହାତେ ଅଛି ଦେଖ ଦେଖ ଏହି
ତାଙ୍କ ମୃତ୍ୟୁ ପରୁଆନା,
ସରକାର ତାଙ୍କୁ ଦେଲେ ପୁରସ୍କାର
'ଭିକ୍ଟୋରିଆ' କ୍ରସ୍ ବାନା ।

ସେ ଯେଣୁ ନାହାନ୍ତି ତୁମ୍ଭେ ଏ ପଦକ
ଝୁଲାଇବ ସଦାବେଳେ,
ତୁମ୍ଭ ପୁଅ ନାତି ମହତ ପାଇବେ
ଏହି ପଦକର ବଳେ ।"

କଥା ଶୁଣି ଆଈ ବୋଇଲେ—"ସାହବ
ଗହଣା ଆଣିଛୁ ତୁହି,
ରାଣ୍ଡି ତ ହୋଇଲି ଆଉ କି କରିବି
ଗହଣାରେ କାର୍ଯ୍ୟ ନାହିଁ ।

କାନ୍ତ ଯାଇଥିଲେ ସ୍ୱାଧୀନତା ବୋଲି
ଚିଜଟି ଆଣିବା ପାଇଁ,
ତୁମ୍ଭେ ଯେ ଦେଉଛ ଏହି ପଦାର୍ଥଟି
ଏହି ଦରବଙ୍କ ସେହି ?"

ଏତେ କହି ଆଈ ମସ୍ତେ ହାତ ଦେଇ
ବାହୁନିଲେ ରାହା ଧରି,
"ଆହେ ପ୍ରାଣନାଥ କାହିଁ ଗୁଡ଼ିଗଲ
ଅଭାଗୀକୁ ଏକା କରି ।

ଏତେ କଥା ଯେବେ ଥିଲଟି ମନରେ
ନ କହିଲ କିଆଁ ଆଗେ,
ଯେଉଁ ଦିନ ଗଲ ଶଙ୍ଖା ମୁଠାକୁ ମୁଁ
କାଢ଼ିଥାନ୍ତି ସେହି ଲାଗେ ।

ବିଦେଶୀ ଭୂଇଁରେ ଜୀବ ହତ୍ୟା କରି
ମୋ ସଙ୍ଗେ ସାଧିଲ ବାଦ,
ମୋ ଆଗରେ ଯଦି ମରିଥାନ୍ତ ସିନା
ପୂରିଥାନ୍ତା ମୋର ସାଧ ।

ଦେଖିଥାନ୍ତି ତୁମ୍ଭେ କି ଭଳି ମରଦ
କେତେ ମରିବାକୁ ମନ,
ଏକା ଖଡ଼୍‌ମୂଷା ମାରି ମୁହୂର୍ତ୍ତକେ
ଭାଙ୍ଗିଥାନ୍ତି ଟାଣ ପଣ ।

ଆଉ କିଏ ଏବେ ପେରେମ କରିବ
ତୁମ୍ଭ ଭଳି ରାତି ଦିନ,
ଶିରଧାରେ କାହା ପାକୁଆ ପାଟିରେ
ଖୁଆଇ ଦେବି ମୁଁ ପାନ ?

କାହାର ନଖରୁ ପାଚିଲା ବାଳ ମୁଁ
ଉପାଡ଼ିବି କରି ଗେହ୍ଲା,
ଆଉ କିଏ ମୋର ମୁଣ୍ଡ କୁଣ୍ଡାଇବ
ଲଗାଇ ବାସନା ତେଲ ।

ସବୁ ସୁଖ ମୋର ସରିଗଲା ଏବେ
ସ୍ତ୍ରୀ ଜନ୍ମ ଗଲା ସରି,
ତୁମ୍ଭେ ମଲେମଲ ଏକା କରି ଗଲ
ମୋତେ ଦେଇଗଲ ମାରି ।"

ଏଇଭଳି କେତେ ବାହୁନଣି ଆଈ
ଶଙ୍ଖା କାଚ ଦେଲେ ଭାଙ୍ଗି,
ସ୍ମୃତି ଚିହ୍ନ ରୂପେ ଭିକ୍ଟୋରିଆ କ୍ରସ୍
ଅଣ୍ଟାରେ ଥାଆନ୍ତି ଟାଙ୍ଗି ।

× × × ×

ଲଢ଼େଇ ସରିଲା ଅଜା ତହୁଁ ଦିନେ
ଉଙ୍କଣି ମୂଳକ ଯୁଡ଼,
ଭାରତ ଭୂଇଁରେ ପ୍ରବେଶ ହୋଇଲେ
ଜଙ୍ଗଲ ପର୍ବତ ମାଡ଼ି ।

ସୀମା ଜଗୁଆଳି ଅଫିସର ଆସି
ରୋକିଲେ ଅଜାଙ୍କ ପଥ,
ବୋଇଲେ ହକାରି କିଏ ତୁମ୍ଭେ କହ
ପରିଚୟ ଦିଅ ସତ ।

ଅଜା ବୋଲେ 'ଆମେ, ଲେଫ୍‌ଟନେଣ୍ଟ ଅଜା
ରେଡ଼-କ୍ରସ୍ ଡାକତର,
ଆମର ନାଆଁକୁ କିଏ ନ ଜାଣିଛି
ଏ ସାରା ଦୁନିଆ ଭର ।

ଅଫିସର ବୋଲେ ତୁମ୍ଭେ ତ ମରିଛ
ତାଲିକାରେ ଅଛି ନାମ,

ଅଜା— ନେତାଜୀଙ୍କ ଆଜାଦ ଫଉଜେ
କରୁଥିଲୁ ଆମେ କାମ ।

ଅଫିସର— ଆଜାଦ ଫଉଜ ଆଜାଦ ଫଉଜ
ତେବେ ତୁମ୍ଭେ ରାଜ-ଦ୍ରୋହୀ ?
ଆରେଷ୍ଟ କଲି ମୁଁ, ଚାଲେ ଲାଲକିଲା
ବନ୍ଦୀ ହୋଇବ ତହିଁ ।

ଅଜା— ଦୋହାଇ ସାହେବ ଏତିକି ମାଗୁଣି,
ନେଇ ଚାଲ ଥରେ ଘରେ,
ୱାଇଫ୍ ଆମର ବିରହ ବ୍ୟଥାରେ
ଗୁହିଁଥିବେ ସକାତରେ ।

ଦୟାଳୁ ସାହେବ ଅଜାଙ୍କୁ ନେଇଣ
ଭେଟାଇଲେ ଆଈ ସାଥ,
ଅଜା ଦେଖିକରି ଚାଟକା ହୋଇଲେ
ଆଈଙ୍କର ଗଣ୍ଡ ହାତ ।

ଅଜାଙ୍କୁ ଦେଖିଣ ବୋଇଲେ ଯେ ଆଈ
"ବୋପାଲୋ ଏଇଟା କିଏ ?
ଅଲପେଇଥର ଭୂତ କଲେ ଏଟା,
ମଲା ମଣିଷ କି ଜୀଏ !"

ଅଜା— ଶୁଣ ଗୋ ପ୍ରିୟସି ଖାଲି ମଣିଷ ସେ
ମରେ ପିନା ବାର ବାର,
ପରନ୍ତୁ ଥିଲି ମୁଁ ଥରେ ଅଧେ ମରି
କି ମଜା ଅଛଇ ତାର ।

× × × ×

ଏ ଉତ୍ତରୁ ଅଜା ଅଫିସର ସାଥେ
ଚାଲିଗଲେ ଜେଲଖାନା,
ଅଜାଙ୍କ ଚିନ୍ତାରେ ଧାରି ହେଲେ ଆଈ
ଛାଡ଼ ଦେଇ ଖାନା ପିନା ।

ଦିନକରେ ଆଈ ସପନ ଦେଖନ୍ତି
ଅଜାଙ୍କ ବିଚାର ହେଲା,
ଦେଶ-ଦ୍ରୋହୀ ବୋଲି ଅଜାଙ୍କୁ ହାକିମ
ଶୂଳିକି ହୁକୁମ ଦେଲା ।

ଶୂଳକାଠ ପରେ ଅଜାଙ୍କୁ ଚଢ଼ାନ୍ତେ
ଟେକି ନ ପାରନ୍ତି କେହି,
ପଥା କଥା କରି ବହୁତ ମରଦ
ଚଢ଼ାଇଲେ ଶେଷ ନେଇ ।

ଅଜାଙ୍କର ଭରି ସହି ନ ପାରିଲା
ଶୂଳି କାଠ ଏତେ ବଡ଼,
ଅଧ ଗଡ଼ିଆକ ଭାଙ୍ଗି ସେ ପଡ଼ିଲା
ହୋଇ କରି କଡ଼ ମଡ଼ ।

ଛଟ୍‌କନା ଆଈ ତହିଁକି ପଡ଼ିଲେ
ଦୁଇ ହାତେ ଆଖି ଢାଙ୍କି,
କୁଆଡ଼େ ଗଲାକି ଏଣେ ଆସ ବୋଲି
ବାହାରୁ କେ ଦେଲା ଡାକ ।

ତାଙ୍କର ତୁଣ୍ଡ ତ 'ଖାଇଲା ଭୂତ ଲୋ'
ବୋଲି ଆଈ ଧଡ଼ ପଡ଼େ,
ଅସମ୍ଭାଳ ହୋଇ ଲୁଚିଲେ ଯାଇଣ
ଗର୍ମିଗ୍ରି କବାଟ କଡ଼େ ।

ତେଣୁ ଅଜା ଆସି ପ୍ରବେଶ ହୋଇଲେ
ହସ ହସ ମୁଖ ହୋଇ,
'ପ୍ରିୟେ ପ୍ରିୟେ' ବୋଲି ଆଈଙ୍କ କାନ୍ଧରେ
ଶରଧାରେ ହାତ ଥୋଇ ।

ଅଜା— ଡର ନାହିଁ ସଖି ଆଗୋ ଚନ୍ଦ୍ରମୁଖୀ
ମୋର ଦେଖ ଦେହେ ହାତ,
ଭୂତ ମୁଁ ନୁହଁଇ ଜୀଅନ୍ତା ମଣିଷ,
ତୁମ୍ଭରି ପ୍ରାଣନାଥ ।

# ଅଜା-ଆଈ ବାହାଘର

ବର୍ଷରରେ ମୁହିଁ ନର୍ଦୋଷୀ ହୋଇଲ
ମୋତେ କିଏ ଦେବ ଦଣ୍ଡ,
ଭୁଣ୍ଡଟାରେ ଖାଲି ମଲ ବୋଲି ଶୁଣି
ତୁମେ ଯା ହୋଇଲ ଷଣ୍ଢ ।

ନୂଆ କାଚ ଶଙ୍ଖା ଆଣିଛି ମୁଁ ଦେଖ
ପିନ୍ଧ ପକା ଏଇ ସାତେ,
କଣ୍ଟ୍ରୋଲରେ କିଣି ଆଣିଛି ସିନ୍ଦୁର
ଟାକୁ ଦେନ ତୁମ ମାଥେ ।

ଏହା କହି ଅଜା ଆଈ ଗଣ୍ଡ ହାତେ
ଶଙ୍ଖା ମୁଠା ଦେଲେ ନାଇ,
ଟାଙ୍ଗରା ମୁଣ୍ଡର ସୁନ୍ଦାର ଉପରେ
ସିନ୍ଦୂର ଦେଲେ ପିନ୍ଧାଇ ।

ଆଈ ହୋଇଗଲେ କସି କନିଆ ଲୋ
ଅଜା ହେବେ କୁନ ବର,
ହରି ବୋଲ ଆଜ ନାତି-ନାତୁଣୀଏ
ଅଜା ଆଈ ବାହାଘର ।



# ଅଜା ଆଈଙ୍କ ସହର ଯାତ୍ରା

ନାକ ଫୁଲାଇ      କହିଲେ ଆଈ
ଅଜାଙ୍କ ଆଗେ ଯାଇ,
"କହିଲ ଭଲା      ଆଖି ଦିଈଟା
ଅଛୁକି ଭ୍ରମ ନାହିଁ ?

ଚହିଙ୍କି ପଡ଼ି      ଆଖିରେ ହାତ
ବୁଲାଇ ସେଇ ଲଗେ,
ଜାଣିଲେ ଅଜା,      ରହିଛି ଆଖି
ଯେଉଁଠି ଥିଲା ଆଗେ ।

କହିଲେ ଆଈ      ନୋଥ ହଲାଇ
ଫୁଟୁ ସେ ନିଆଁ ଆଖି,
ବସିଥା ଖାଲି      ଖଟ ଉପରେ
ହାତ ଗୋଡ଼କୁ ଯାକି ।

ମାଇପ ଯାର      ଲଙ୍ଗଳା ହୋଇ
ରହିଛି ଘର କଣେ,
ଘଇତା ବୋଲି      ବୋଲାଉଛି ସେ
କଉଁ ମଣିଷ ପଣେ ?

ଦଶାଦିଆ ଏ      କନ୍‌ ଟ୍ରୋଲର
ପୋଡ଼ୁ ନାହିଁ ଯା ମୁହଁ,
ଯାଇକି ତାର      ଘରକୁ ଥରେ
ଦୁଃଖଟା ହେଲେ କୁହ ।

ମଇଦା ଅଟା      ଲୋଡ଼ୁଚି କିଏ
କିଏ ଖୋଜୁଛି ଚିନି,
ତେଲ ଲୁଣ ତ      ଉଭେଇ ଗଲା
ମିଳୁଣି କିରାସିନି ।

କୁଣ୍ଡାଇ ମୁଣ୍ଡ      କହିଲେ ଅଜା—
"ସତ କହୁଚ ଏକା,
ଏଥକୁ ମୋତେ      ବୁଦ୍ଧି କିଛି
ଯାଉ ତ ନାହିଁ ଦେଖା ।"

କହିଲେ ଆଈ      ମୁଣ୍ଡରେ ଯାର
ଗୋବର ଥାଏ ରୁନ୍ଧି,
ଆସିବ କାହୁଁ      କହିଲ ଭଲା
କଉଁଠି ତାର ବୁଦ୍ଧି !

ଏଇ ଗାଁରେ      ଚଳିବ ନାହିଁ
ରହିବା କରି ଘର,
ସହରେ ଯାଇ      ରହିବା ଚାଲ
ମୋହର କଥା କର ।"

"ବାହାରେ-ବାହା      କହିଣ ଅଜା
ଉଠିଲେ ମାରି ଡିଆଁ !"
"ନାହିଁ ନ ଥିବ      ଏ ଭଳି ବୁଦ୍ଧି
ନୋହିଲେ କି ତରିଲା !"

ସେହି କ୍ଷଣିକା      ଦୁଇ ପରାଣୀ
ଗଣ୍ଠିରି ବାନ୍ଧି କରି,
କୋଲପ ଦେଇ      ବାହାରି ହେଲେ
ଜିନିଷପାତ୍ର ଧରି ।

ଉପାସ ଭୋକେ      ପନ୍ଦର କୋଶ
ଚାଲି ଚାଲିଣ ଯାଇ,
ସହର ଠେଇଁ      ପହଞ୍ଚି ଗଲେ
ଅଜାଙ୍କ ସାଥେ ଆଈ ।

ଏଡ଼ିକି ବଡ଼      ସହର ଟାରେ
ବାନ୍ଧିବା କାହିଁ ବସା,
ଭଡ଼ା ଘରଟେ      ଅନିସା କରୁଁ—
କରୁଁ ଉଡ଼ିଲା ହଂସା ।

ବୁଲି ବୁଲିକା      ହାବୁଡ଼ି ଗଲେ
ସିଭିଲ୍ ସପ୍‌ଲାଇ କୋଠି ।
କହିଲେ ଆଈ,      "ଶୁଣୁଛି ଠିକ,
ବୁଝିଲ ଯାଇ ଏଠି ।

ଏଇଠି ପରା      ମିଳଇ ସବୁ
ଯାହାର ଯାହା ଲୋଡ଼ା,
ସପ୍‌ଲାଇ ବାବୁ      ଆମକୁ କିଆଁ
ନ ଦେବେ ଘରଭଡ଼ା ।"

ଅଜା-ଆଈ      ଅଫିସ୍ ଘରେ
ପଶିଲେ ଏକା ସାଥେ,
ବଢ଼ାଇ ଦେଲେ      ଦରଖାସ୍ତଟି
ବଡ଼ ବାବୁଙ୍କ ହାତେ ।

# ଅଜା ଆଈଙ୍କ ସହର ଯାତ୍ରା

କାବ୍‌ବା ହୋଇ ଚାହିଁଲେ ବାବୁ
ଦରଖାସ୍ତଟା ପଢ଼ି,
ଆଉ ଯେ ଲୋକ ସେଇଠି ଥିଲେ
ହସରେ ଗଲେ ଗଡ଼ି ।

ହତାଶ ହୋଇ ଅଫିସ୍ ଘରୁ
ଫେରିଲେ ଅଜା ଆଈ,
ଆଈ ବୋଇଲେ "ଭେଡ଼ାଏ ଆଉ
ଚାଲି ପାରିବ ନାହିଁ ।"

ଏତିକି କହି ସେହି ପିଣ୍ଡାରେ
ବସିଲେ ଲଥ୍ କରି,
ଅଜା ତହୁଁ ଆଉଁସି ଦେଲେ
ଆଈର ପାଦ ଧରି ।

ଏତିକି ବେଳେ କାଗଜ ଖଣ୍ଡେ
ଆଇଲା କାହୁଁ ଉଡ଼ି,
ତାହା ଉପରେ ଅଜାଙ୍କର
ନଜର ଗଲା ପଡ଼ି ।

ଉଠାଇ ନେଇ ଦେଖିଲେ ଅଜା—
"ଅଉର୍ କ୍ୟା ଚିନ୍ତା !
ମିଲ୍ ଗୟା ତୋ ଘର ହାମାରା,
ତାକ୍ ଧିନା ଧିନ୍ ଧିନ୍‌ତା ।"

କାଗଜ ଧରି ଧାଇଁଲେ ଅଜା
ପୁଣି ଅଫିସ ଘରେ,
ବଡ଼ ବାବୁଙ୍କୁ ସଲାମ୍ ଦେଲେ
ଲମ୍ବ କରି ଥରେ ।

"ହଜୁର୍' ଏଇ ନଉକରିଟା
ଆମକୁ ଯାଉ ମିଳି,
ଡ୍ରାଇଭରରେ ଆମକୁ କେହି
ପାରିବ ନାହିଁ ବଳି ।"

ବଡ଼ ବାବୁଟି ମଣିଷ ଭଲ,
ପେଟରେ ଦୟା ଭରି,
ସେଇକ୍ଷଣିକା ଦରଖାସ୍ତଟା
ମଞ୍ଜୁର୍ ଦେଲେ କରି ।

ସିଭିଲ ସପ୍ଲାଇ ମଟର ଟ୍ରକ
ବାହାରେ ଥିଲା ରହି,
ଅଜା-ଆଈ ଏକା ସାଙ୍ଗରେ
ଚଢ଼ି ବସିଲେ ତହିଁ ।

ଆଈଙ୍କୁ ଭିଡ଼ି କହନ୍ତି ଅଜା,
ପ୍ରେମେ ଗଦଗଦ,
"ଏକା ସାଥିରେ ଗଲା ତ ମିଳି
ଚାକିରି ଆଉ ଘର ।"

ଜୟ ଅଜା, ଜୟ ଆଈ
ଗାଅ ପକାଇ ହୁରି,
ଅଜା ଆଈ ଜିନ୍ଦାବାଦେ
ଦୁନିଆ ଯାଉ ପୂରି ।



# ଅଜାଙ୍କ ଏ. ଆର. ପି.

ଅଜା ଯାଇଥିଲେ ବାଇସ୍କୋପ୍ ଦେଖି
ଗୃହ ବାହୁଡ଼ିଲେ ଦଶ,
ଭୋକ ଲାଗି ପେଟ କଅଁ କଅଁ ଡାକ
ଦେହ ହେଲା ଜଳମଳ ।

କିଛି ଖାଇବାକୁ ପଇସା ନ ଥିଲା
ଖାଲି ହୋଇଗଲା ହାତ,
ତରବର ହୋଇ ଧାଇଁଲେ ଘରକୁ
ରନ୍ଧା ହୋଇଥିବ ଭାତ ।

ଘରେ ଆସି ଅଜା ଦେଖନ୍ତି ଅନ୍ଧାର
ହୋଇଛି ଘରଟା ଯାକ,
କେହି ନ ଶୁଣିଲେ ଜଙ୍ଗଲରେ ଅଜା
ଯେତେ କଲେ ଡାକ ହାକ ।

ଶେଷେ ଅଜା ଘରେ ଅନ୍ଧାରି ଅନ୍ଧାରି
ଝୁଣ୍ଟୁଡ଼ି ଶୋଇବା ଦ୍ୱାର,
ଖଟରେ ଅଚେତା ଶୋଇଥିବା ଆଈ
ଗୋଡ଼ ଚପାଇଲେ ଧରି ।

ଧଡ଼ ପଡ଼୍ ହୋଇ ନିଦ ବାଉଳାରେ
ଉଠିଲେ ଆଉଜି ଖାଇ,
'ଚୋର-ଚୋର' ବୋଲି ଅଜାଙ୍କୁ କୁଣ୍ଢାଇ
ଚାବୁଡ଼ି ଧରିଲେ ଆଈ ।

'ଚୋର ନୁହଁ' ବୋଲି ଯେତେ ରଡ଼ି କରି
ଅଜା କଲେ ଛଡ଼ାମଡ଼ା,
ଆଈ ନ ଛାଡ଼ନ୍ତି ଶେଷେ ଦୁହେଁ ଯାକ
ଲାଗି ଗଲେ ଗଡ଼ା ପଡ଼ା ।

ଦୂର ଜାକି ଶୁଣି ଆସିଲେ ଯେ ଧାଇଁ
ସାଇ ଟୋକା ଥିଲେ ଯେତେ,
ଧୂନ୍ ଧାମ୍ କରି ଦେଲେ ଯେ ବସାଇ
ଅଜାଙ୍କୁ ଗୋଟା କେତେ ।

ଆଲୁଅ ଆସନ୍ତେ, ଚାହିଁଲା ହୋଇଣ
ସମସ୍ତେ ଦେଖନ୍ତି ଚାହିଁ,
ଅଜା-ଆଈ ଲଢ଼ି— ଲଜ୍ଜା ଧରି ପର
ଚୋର ଯୋଗ କେହି ନାହିଁ ।

ନକସା ଦେଖିଣ ସାଇ ଲୋକ ଯାକ
ଚାଲିଗଲେ ହସି ହସି,
ଅଜା ଆଈ ଦୁହେଁ ଛଡ଼ା ଛଡ଼ି ହୋଇ
ଚୁପ ହୋଇଥାନ୍ତି ବସି ।

କେତେବେଳ ପରେ ଭୁଣ୍ଡ ଫିଟାଇଣ
ପଚାରିଲେ କଲେ ଆଈ,
ଆଈ— "କ ହଟହଟାରେ ପକାଇଲ ଆଜି
ସେ ମୁହଁକୁ ଲାଜ ନାହିଁ ।"

ଅଜା— "ଛି-ଛି ତୁମେ ମାଇପେ ଗୁଡ଼ାକ
ଏଡ଼କ ଭରୁଆ ପୁଣି,
ଆଜି ଟିକକରେ କେହୁ ଜଣେ ହେଲେ
ହୋଇ ଯାଇଥାନ୍ତା ଖୁଣି !

ଯାହା ହୋଇବାର ହୋଇ ତ ଗଲାଣି
ଗଲ୍ କଥା ଛୋଡ଼ ଯାଉ,
ଭାତ ବାଡ଼ ଏବେ ଭୋକ ଲାଗି ପେଟ
ହେଲାଣି ଯେ ଧାଉ ଧାଉ ।

ଆଈ— ଅନ୍ଧାରରେ ଭାତ କିଏ ସେ ରାନ୍ଧିବ
ଚୋପେ ନାହିଁ କିରାସିନ,
ତିନ ପୋଲ୍ ଫାଙ୍କେ ନିଅନ୍ତି ବୁଲୁଚ
ଦଶାଦଶା ପେଟ ଦେଖ ।

ଅଜା— କଣ୍ଟ୍ରୋଲ କଣ୍ଟ୍ରୋଲ ଚିରଲ ଗୁଡ଼ାକ
କଣ୍ଟ୍ରୋଲ ଜାଣିବ କାହୁଁ,
ନ ବୁଝି ନ ସୁଝି କାଉଡ଼ପର ଖାଲି
ହେଉଥିବ ରାଉ ରାଉ ।

ଆଈ— ତୁମକୁଇ ଏକା କଣ୍ଟ୍ରୋଲ ହୋଇଚ
ଗାଆଁ ଯାକ ଲୋକେ ପୁଣି,
ଚିନି, କିରାସିନ, ଚାଉଳ, କୋଇଲା
କିତ ଆଣୁଛନ୍ତି କିଣି ।

ଅଜା— ଏ. ଆର. ପି. ଏ. ଆର. ପି. ତାହା ବ ଜାଣିନା !
ଯୁଦ୍ଧ ବଜାରରେ ଏ. ଆର. ପିର ବଡ଼ ଭାଉ,
ଉଚିତ ପୁରତ ମୁଠା ମୁଠା ଟଙ୍କା
ଆଉ ମାଗି ମିଳେ ଯାଉ ।

# ଅଜାଙ୍କ ଏ. ଆର୍. ପି.

ଆଈ— ତମ ହାତ ଗୋଡ଼     କଅଁ ଲାଗିଛି କ
ଯାଉ ନାହଁ ସେଇଠିକୁ,
ମଉଜରେ ଆମ     ଦିନ କଟିଯାନ୍ତା
ନ ରହନ୍ତା ଝିକ ଝିକ ।

ଅଜା— ବୁଢ଼ା ଯେ ହେଲଣି     ବାଳ ପାଚିଲଣି
ସେ କଥାକୁ ହେଜ ନାହିଁ,
ସେଠିକି ଯିବା ତ     ଲୋକହସା କଥା
ପୁଣି ଦେବେ ଘଉଡ଼ାଇ ।

ଆଈ— "ଏଇ କଥାଟା ତ !     ଢଙ୍ଗକେ ଗୁହିଁଲେ
ହୋଇଯିବ ଗଜା ଟୋକା,
ଆଖିରେ ଦେଖିଲେ     ବୁଢ଼ାଟାଏ ବୋଲି
କହି ଦେବ କଉଁ ବୋକା ।"

ସତ ତ ହେଲଣି     ଆଜ୍ଞ ଶୋଇ ପଡ଼
ଉପାସରୁ ପେଟେ ଖାଇ,
ଯାହା କରିବାର     କାଲିକି କରିବା
ଆଗ ସତ ଯାଉ ପାହି ।"

ବଡ଼ ସକାଳରୁ     ଆଈ ଉଠି ଯାଇ
ମେଞ୍ଚେ ହାଣ୍ଡିକଳା ଆଣି,
ଜଡ଼ାତେଲ ଗୋଳି     ଅଜାଙ୍କ ଦେହରେ
ଲଗାଇଲେ ପରମାଣି ।

ଧଳା ମୁଣ୍ଡବାଳ     ସାନ ସାନ କରି
କଇଞ୍ଚିରେ ନେଇ କାଟି,

ଅଜା ଚନ୍ଦା ମୁଣ୍ଡେ     ବେଲ ଅଠା ମାରି
ଯୋଖି ଦେଲେ ପରିପାଟି ।

କଳା ମଚ ମଚ     ନେଟରିକଟା ମୁଣ୍ଡ
କଳା କଳା ଦେଶ ଯୋଡ଼ା,
ଦେଖିଲେ ଶ୍ରୀମୁଖ     କାହା ବୋପା ପୁଣି
ଅଜାଙ୍କୁ କହିବ ବୁଢ଼ା !

ଏ. ଆର୍. ପି.ରେ ଯାଇ     ହାଜର ହୋଇଲେ
ଅଜା ହୋଇ ତରବର,
ଦେଖିଲା ମାତ୍ରକେ     ସ୍ମାର୍ଟ୍ ୟୁଥ୍ ବୋଲି
କହି ଦେଲେ ଅଫିସର ।

ମୁକରର ହୋଇ     ମିଳିଲା ଅଜାଙ୍କୁ
ଟୋପି, ଜାମା, ପେଣ୍ଟ୍, ଜୋତା,
ଏହା ବାଦେ ପୁଣି     ମାସକୁ ମାସକୁ
କୋଡ଼ିଏ ଟଙ୍କାର ଭତ୍ତା ।

ପୋଷାକ ଚଢ଼ାଇ     ମିଲିଟାରୀ ଢଙ୍ଗେ
ସିଗାରେଟ୍ ଟାଣି ଟାଣି,
ଘରକୁ ଫେରିଲେ     ଖୁସି ହୋଇ ଅଜା
ଧରି ମିଲିଟାରୀ ଠାଣି ।

ଅଜାଙ୍କ ଉପରେ     ନଜର ପଡ଼ନ୍ତେ
ଆଈ ହୋଇଗଲେ କାବା,
ଅତରଚ୍ଛେ ଆଈ     ତୁଣ୍ଡରୁ ବାହାରି
ପଡ଼ିଲା—"ଇଲୋ ମୋ ବାବା ।"



# ଗାନ୍ଧି ବୁଢ଼ା

ଗାନ୍ଧୀ ଜନମ ନ କଲା
ଯୁଗ ତ ଲେଉଟି ଗଲା ରେ ।
ପାପ ଲଞ୍ଜ ଧରି ବେଙ୍ଗଳା ବୁଲାଇ
ପାପ ବଣ ଓଗାଳିଲାରେ ॥ ଘୋଷା ॥

ଛେଳି ଅଟେ ବାଘ ଆହାର, ବାଘ ତାକୁ କରେ ଶିକାର,
ବାଘର ନାକରେ ଦଉଡ଼ି ଲଗାଇ
ଛେଳି ତାକୁ ଘୋସାରିଲା ରେ । ୧ ।

ଅମାନିଆ ଅବୁଝାମଣା, ବୁଲେ ଯେହ୍ନ ହୋଇ ଅରଣା,
ସେହ୍ନ ମଇଁଷିକୁ ଘଣାରେ ପକାଇ
ଯୁଆଳରେ ଯୋଚି ଦେଲା ରେ । ୨ ।

ଦଣାଦିଆ ଭୁଆଁବଲେଇ ବସିଥିଲା ନଶ ଫୁଲେଇ
ମୂଷା ଆଗେ ଶହେ ସଲାମ ବଜାଇ
ଲୁଚି ଲୁଚି ପଳାଇଲା ରେ । ୩ ।

କାନ ଯାହା ନ ଥିଲା ଶୁଣି ଆଖି ଦେଖି ନ ଥିଲା ପୁଣି
ହାଙ୍ଗର ମୁଣ୍ଡିଆ ଠକୁର ବୁଢ଼ାଟି
କି କୁହୁକ ଦେଖାଇଲେ ରେ । ୪ ।



# ବିଡ଼ି ମହିମା

ଶୁଣ ଶୁଣ ବଡ଼ କଥା
କଳି ପୁରାଣରେ ଅଛଇ ଯଥା ହେ,
ପୋଥି ଶାହାସ୍ତ୍ର ନୁହେଟି ମିଥ୍ୟା, ସୁଜନେ ହେ । ୧ ।

(ଦିନେ) ଶିବ ଥିଲେ ଆଖି ବୁଜି
(ତାଙ୍କ) ଗଞ୍ଜେଇ ଚିଲମ ଗଲାଟି ହଜି ହେ,
ହେଲେ ହଇରାଣ ଖୋଜି ଖୋଜି, ସୁଜନେ ହେ । ୨ ।

ଅମଳ ହେବାରୁ ପାଣି
ଦେହ ହୋଇଗଲା ବାସି ତୋରାଣୀ ହେ,
ବହେ ନାକରୁ କଞ୍ଚା ସିଙ୍ଘାଣି, ସୁଜନେ ହେ । ୩ ।

ଦେଖି ପତିଙ୍କର ଦଶା
ଦୁର୍ଗା ଦେବୀ ହୋଇଗଲେ ବିବଶା ହେ,
କରି ବସିଲେ ଆଉଁସା ଘଷା, ସୁଜନେ ହେ । ୪ ।

ନନ୍ଦୀ ଭୃଙ୍ଗୀ ଦୁଇ ଭାଇ
ଷଣ୍ଢ ଗୋବରକୁ ଆଣି ଗୋଟାଇ ହେ,
ଦେଲେ ଘସି କୁହୁଳା ଲଗାଇ, ସୁଜନେ ହେ । ୫ ।

ଗଣେଶ କାର୍ତ୍ତିକ ଆସି
ତଳପାରେ ତେଲ କରି ମାଲିସି ହେ,
ଭୁଷ ବଣ୍ଡାରେ ସେକିଲେ ବସି, ସୁଜନେ ହେ । ୬ ।

ଏପରି କରନ୍ତେ ଆଡ଼ା
ଶଅଁ ଶଅଁ ହୋଇ ଉଠିଲେ ବୁଢ଼ା ଯେ,
ସର୍ବେ ଜାଣିଲେ ଗଞ୍ଜେଇ ଲୋଡ଼ା, ସୁଜନେ ହେ । ୭ ।

ଚିଲମଟା ଗଲା କାହିଁ
କେଉଁଥିରେ ଏବେ ଦେବେ ଗଞ୍ଜେଇ ହେ,
ବୁଦ୍ଧି କାହାକୁ ଦିଶିଲା ନାହିଁ, ସୁଜନେ ହେ । ୮ ।

ପଡ଼ିଗଲା ହୁରି' ଡାକ
ଧାଇଁଲେ କୈଳାସ ନିବାସୀ ଯାକ ହେ,
ସର୍ବେ ହୋଇ ଗଲେଟି ଅବାକ, ସୁଜନେ ହେ । ୯ ।

କେ କହେ ଦିଅ ଅଫିମ
କିଏ କହେ ଭାଙ୍ଗ କରିବ କାମ ହେ,
ବ୍ରାଣ୍ଡି ଦେଲେ ହୁଅଇ ଉଷୁମ, ସୁଜନେ ହେ । ୧୦ ।

ଏହି ଗୋଳମାଳ ଶୁଣି
ତହିଁ ମିଳି ଗଲେ ନାରଦ ମୁନି ହେ,
ଢେଙ୍କୀ ଚଢ଼ି କରି ବୀଣାଧ୍ୱନି, ସୁଜନେ ହେ । ୧୧ ।

ନାରଦ କହନ୍ତେ ପୁଚ୍ଛି
ଏଥିକୁ ଭାଳେଣି ନକର କିଛି ହେ,
ଭଲ ଦବେଇ ମୋ-ଠେଇଁ ଅଛି, ପାର୍ବତୀ ଗୋ ।୧୨।

ଏହା କହି ମୁନି ବର
ମୁଣିରୁ କାଢ଼ିଲେ ଧୂଆଁ ପତର ହେ,
ତାକୁ ସେକିଲେ ନିଆଁ ଉପର, ସୁଜନେ ହେ । ୧୩ ।

ଗଞ୍ଜେଇ କଲିଟି ନେଇ
ଦୋକତା ସଙ୍ଗତେ ତାକୁ ମିଶାଇ ହେ,
ଚୂନା କଲେ ହାତେ ଦଳି ଦେଇ, ସୁଜନେ ହେ ।୧୪।

ଆଜ୍ଞା ଦେଲେ ତହୁଁ ଯତି
କେନ୍ଦୁ ପତ୍ରଟିଏ ଆଣ ମୋ କତି ହେ,
ନନ୍ଦୀ ଆଣିଲେ ତାହା ଝଟତି, ସୁଜନେ ହେ । ୧୫ ।

(ମୁନି) କେନ୍ଦୁ ପତ୍ରଟିକୁ ଧରି
ଚୂନା ଦୋକତାକୁ ତହିଁରେ ଭରି ହେ,
ମୋଡ଼ ବନାଇଲେ ଯତ୍ନ କରି, ସୁଜନେ ହେ । ୧୬ ।

(ତହୁଁ) ଦାଢ଼ିରୁ କେରେ ଉପାଡ଼ି
ଅଗକୁ ତାହାର ବାନ୍ଧିଲେ ଭିଡ଼ି ହେ
ତାର ନାମଟି ହୋଇଲା 'ବିଡ଼ି', ସୁଜନେ ହେ । ୧୭ ।

(ତାକୁ) ଘସି କୁହୁଳାରେ ରଖି
ବଡ଼ର ମୁହଁକୁ ଦେଇଣ ସେକି ହେ,
ଦେଲେ ଶିବଙ୍କ ମୁହଁରେ ଯାକି, ସୁଜନେ ହେ ।୧୮।

ବନ୍ଦୁଁ ଗଣେଶ ଗୋସାଇଁ
ମୁଖ ଆଗେ ନିଆଁ ଧରନ୍ତେ ନେଇ ହେ,
ଶିବ ଶୋଷିଲେ ଅଥୟ ହୋଇ, ସୁଜନେ ହେ ।୧୯।

ଦୁଇ ଘୂର ଦମ୍ ଟାଣି
ଛୋକଦେଇ ଧୂଆଁ ପିନାକ-ପାଣି ହେ,
ଚେତା ପାଇ ଉଠିଲେ ତକ୍ଷଣେ, ସୁଜନେ ହେ । ୨୦ ।

ଉଠିଲା ଆନନ୍ଦ ରୋଳ
ବଡ଼ କରାମତି ଦେଖି ବହ୍ୱଳ ହେ,
ତିନିପୁରେ ପଡ଼ିଲା ଚହଳ, ସୁଜନେ ହେ । ୨୧ ।

ବଡ଼ ଖାଇ ଉମା-ସାଇଁ
ନାଚନ୍ତି ଆନନ୍ଦେ ଡମ୍ବରୁ ବାଇ ହେ,
ମୁନି ନାଚନ୍ତି ବୀଣା ବଜାଇ, ସୁଜନେ ହେ । ୨୨ ।

ଶୁଣ୍ଢ ଟେକି ଗଜାନନ
ଥଲ ଥଲ ହୋଇ ନାଚନ୍ତି ପୁଣ ହେ,
କଇଲାସ କମ୍ପେ ଘନ ଘନ, ସୁଜନେ ହେ । ୨୩ ।

କୋଟି କୋଟି ବଡ଼ ମୋଡ଼ି
ଶିବ-ଗଣ ନାଚି ଯାଆନ୍ତି ଗଡ଼ି ହେ,
ମୁଖେ ସବୁରି ଲଗିଛି ବଡ଼, ସୁଜନେ ହେ । ୨୪ ।

ଦେଖିଣ ଲାଗଇ ହାସ
ବଡ଼ ଧୂଆଁ ଘୋଟେ ଗୋଟା ଆକାଶ ହେ,
ତିନି ପୁର ମହକର ବାସ, ସୁଜନେ ହେ । ୨୫ ।

ଆଜ୍ଞା ଦେଲେ ଉମାପତି
ସର୍ବ ଶିବ-ଗଣ ଯାଅ ମର୍ତ୍ତେ ହେ,
ବଡ଼ ପ୍ରଚୁର କରିବ ସ୍ଥିତି, ସୁଜନେ ହେ । ୨୬ ।

ବିଶଲ୍ୟକରଣୀ ବଡ଼
ସର୍ବ ରୋଗକୁ ଏ ଅମୃତ ଜଡ଼ ହେ,
ଦୁଃଖ ସୁଖ ମନୁ ଦିଏ ତଡ଼, ସୁଜନେ ହେ । ୨୭ ।

ପାପ-ପଙ୍କରେ ଯେ ପଡ଼ି
ମର୍ତ୍ତ୍ୟବାସୀ ଜନେ ଗଲେଣି ସଡ଼ି ହେ,
ତାଙ୍କୁ ଚଖାଅ ଏ ସୁଧା ବଡ଼, ସୁଜନେ ହେ । ୨୮ ।

ଦରିଦ୍ରତା ନ ରହିବ
ବେକାର-ସମସ୍ୟା ଆପେ କମିବ ହେ,
ବଡ଼ ଖାଇଲେ ଆୟୁ ବଢ଼ିବ, ସୁଜନେ ହେ । ୨୯ ।

ଶିଳ୍ପର ହେବ ଉନ୍ନତି
କୃଷିରେ ବଢ଼ିବ ଧନ ସମ୍ପତ୍ତି ହେ,
କଳା, ସାହିତ୍ୟ ଉଠିବ ମାତି, ସୁଜନେ । ୩୦ ।

ବାଲମିକି, କାଳିଦାସ
ବଡ଼ ସେବି କବିପଣ ପ୍ରକାଶ ହେ,
ଯୁଗେ ଯୁଗେ ରଖିଗଲେ ଯଶ, ସୁଜନେ ହେ ।୩୧।

ମିଆଁ ତାନ୍‌ସେନ୍ ଶୁଣ
ଜାଣିଥିଲେ ସିନା ବଡ଼ର ଗୁଣ ହେ,
ହେଲେ ସଂଗୀତ ବିଦ୍ୟା ନିପୁଣ, ସୁଜନେ ହେ ।୩୨।

ହନୁମନ୍ତ ବଡ଼ ଖାଇ
ମହାବୀର ନାମେ ହେଲେ ବୋଲାଇ ହେ,
ଲଙ୍କା ଦହିଲେ ନିଆଁ ଲଗାଇ, ସୁଜନେ ହେ ।୩୩।

କୃଷ୍ଣ ବଡ଼ ଧରି କଲେ
ଷୋଳ ସହ୍ର ଗୋପୀ ରମିଲେ ହେଲେ ହେ,
ପୁଣି ମୁରଲୀ ବାଇ ଶିଖିଲେ, ସୁଜନେ ହେ । ୩୪ ।

ହାକିମ ଖାଇଲେ ବଡ଼
ବିଚାର ବୁଦ୍ଧିକୁ ନ ଯାଏ ହୁଡ଼ ହେ,
ପୁଣି ଦରମା ଯାଏଟି ବଢ଼ି, ସୁଜନେ ହେ । ୩୫ ।

ଓକିଲ ଖାଇଲେ ବଡ଼
ହାକିମ ଉପରେ ଯିବେଟି ଚଢ଼ି ହେ,
ମକଦ୍ଦମା ଜିତି ନେବେ ଭିଡ଼, ସୁଜନେ ହେ । ୩୬ ।

ପୁଲିସ ଖାଇଲେ ବଡ଼
ନିଶକୁ ଫୁଲାଇ ଆଖିକୁ କାଢ଼ି ହେ,
ଦେବ ଲଗାଇ ସେ ହାତ-କଡ଼ି, ସୁଜନେ ହେ ।୩୭।

ଡାକତର ଖାଇ ବଡ଼
ଆଖି ବୁଜି ଚିପି ପାରିବ ନାଡ଼ି ହେ,
ରୋଗୀ ହେଉଥିବ ମୁଣ୍ଡ କୋଡ଼ି, ସୁଜନେ ହେ ।୩୮।

# ବଡ଼ ମହିମା

ଦୋକାମା ଖାଇଲେ ବଡ଼
ସଉଦା କାଟନ୍ତି ଯିବଟି ବଡ଼ି ହେ,
ଲାଗି ରହିବେ ଗହକ ଧାଡ଼, ସୁଜନେ ହେ । ୩୯ ।

ଚଡ଼ୁଆ ଖାଇଲେ ବଡ଼
ସାତ ଜନ୍ମ ଯାକେ ନ ଯିବ ହୁଡ଼ ହେ,
ଥରେ ପାଠ ଦେଇଥିଲେ ପଢ଼ି, ସୁଜନେ ହେ ।୪୦।

ମାଷ୍ଟର ଖାଇଲେ ବଡ଼
ବକବା ଶକତ ଯିବଟି ବଢ଼ି ହେ,
ପୁଣି ପେଟ-ବନ୍ଧା ଯିବ ଛୁଡ଼ି, ସୁଜନେ ହେ ।୪୧।

କରଣି ଖାଇଲେ ବଡ଼
ହାକମ ତା'ପରେ ନୋହିବେ ଚଡ଼ ହେ,
ଚାର ସ୍ୱର୍ଗକୁ ଲାଗିବ ସିଡ଼ି, ସୁଜନେ ହେ । ୪୨ ।

ବୈଷ୍ଣୀ ଯେ ଖାଇଲେ ବଡ଼
ତା ଘରେ ବସିବ ଧାନ କମ୍ବଡ଼ ହେ,
ଘରେ ଦରଣୀ ନୋହିବ ଚଡ଼, ସୁଜନେ ହେ ।୪୩।

ଚନ୍ଦନ ପାନମହୁରୀ
ମିଠା, କଡ଼ା, ସାଧା, ଗୋଲାପୀ କରି ହେ,
ନାନା ଜାତି ବଡ଼ ଅଛି ଭରି, ସୁଜନେ ହେ ।୪୪।

(ଭାଇ) ବଡ଼ର ଜୟକୁ ଘୋଷ
ଦିନ ରାତି ବଡ଼ ଖଣ୍ଡିଏ ଶ୍ରେଷ୍ଠ ହେ,
ସଦା ହେଉଥିବ ଦିଲ୍ ଖୋସ, ସୁଜନେ ହେ ।୪୫।

ଅମଳ କରି ଯେ ଖାଏ
ସୁଖ ପାଏ, ମଲେ କୈଳାସ ଯାଏ ହେ,
ରହିଁ ଭୂତ ହୋଇ ରହି ଥାଏ, ସୁଜନେ ହେ ।୪୬।



# ଲାଳିକା

( ୧ )

(ଝୁନୁଝୁନୁ ନନ୍ଦ ତନୟ ଗୋ ନବ ନବ ଦଶେ ମିତ—ଅନୁକରଣରେ)

ଝୁନ୍ନୁ ଝୁନ୍ନୁ ନନ୍ଦ ତନୟ ଗୋ ନବ ନବ ପର ମିତ,
ନନ୍ତ ଦେଖିଥିଲେ ଖାତ ବଢ଼ୁଥାଇ ଶୀତଶୀତ ହୁଏ ଚିତ୍ତ ॥ ଘୋଷା ॥
ଆଜି ଉମା ଉମା, ନାଇଚ୍ଛୁ ଚଷମା, ଚରଟି ଗୃହକୁଁ ପୁଣି
ବାହାଦୋଳ ପନ୍ତ ନକୁଟି ଅଛନ୍ତ ସତେ ପକାଇବେ ଝୁଣି ॥
ବାଧୂଲ ଅଧରେ କେମନ୍ତ କଦରେ ପାକୁ ପାକୁ କରୁଥାଇ
ଢଙ୍ଗ ଦେଖିଲେ ମଙ୍ଗ ହେବ କ ଚଙ୍ଗଚଙ୍ଗୀ ସେ ଖାଇ ॥
ହାସ ହସଇ, ଖାଷ ଖାଷଇ, କାସ କାସଇ ଯେବେ
ପୀଳେକ୍କ ସେ ନାଦେ ମିଳେଇ ପଡ଼ବ ମାଇପେ ପଳେଇଯିବେ ॥
ସେ ଖାଲୁ ଖାଲୁଆ ଅଟଇ ଗାଲୁଆ ଫାଲୁଆ ତାହାର ପାଟି
ପାଣି ଆଣିଗଲେ ଜାଣିଥିବୁ ଭଲେ ଟାଣି ନେଇଯିବ ଗ୍ରୁଟି ।

( ୨ )

(ପଥ ଗ୍ଛାଡ଼ ଦେ, ମୁଁ ଯିବ ଫୁଲତୋଳ ଆରେ ବନମାଳ-ଅନୁକରଣରେ)

ପଥଗ୍ଛାଡ଼ ଦେ ମୁଁ ଯିବ ଓଲ ଖୋଳ, ଆରେ ବନମାଳ !
ମୋତେ ଚନ୍ଦ୍ର ନାହିଁ ପର ଦେଉଗାଳ
ମୁଁ ଯେ ସାନ ସାଆନ୍ତଙ୍କ ଗେହ୍ଲାଶାଳୀ । ଘୋଷା ॥

ମୋ ପର ଲୋକକୁ କସ ଖାଳ
ଟାପର କରୁଚ୍ଛୁ ମାର ଚାଳ,
କାଳୀ ନାଗୁଣୀକ ବୃକ୍ଜଅଙ୍କୁ ଚୋର ମୁହଁରେ ନେଣ୍ଡୁଆ ଦେବ ଜାଳ ॥

ଓଲକୁ କାଟିଣ ଫାଳ ଫାଳ
ଆମ୍ବୁଲ ପାଣି ଯେ ଦେବ ଢାଳ,
ଆଜ ସେ ରନ୍ଧଣା ପାଳ ପଡ଼ଅଚ୍ଛୁ
(ଲୁ) ଗେଫା ମାରବୁଟି ଥାଳ ଥାଳ ॥

ହେଇ ପର କଏ ଆସେ ଏଣେ
ବାଇଦ ବାଜବ ଏଣେ ତେଣେ,
ପଣେ କ କାହାଣେ ଥିଲେ କସ ହେବ
ଅପା ଡାକ ଦେବେ ଗଲୁ କେଣେ ॥

ଏତେ ବେଳୁଟାରେ ମୁହେଁ ଭଲ
କସି ଭୁଆଷୁଣୀ ସଙ୍ଗେ ଗେଲ,
ପଦ୍ମ ପଦ୍ମ ଲୋକ ମାଡ଼ ପଡୁଛନ୍ତ
କାହା ଭୁଣ୍ଡେ ଖଣ୍ଡା ଦେବ ବୋଲ ॥

ଗ୍ରେଟ ହୋଇ କହୁ ବଡ଼ କଥା
ମୁହଁରେ ନାହିଁକ ବାଡ଼ବତା,
ସାଆନ୍ତେ ଶୁଣିଲେ ଜୋତା ପିଟି ପିନା,
ଫଟାଇ ଦେବେଟି ତୋହ ମଥା ॥

ବାଟ ଗ୍ରଡ଼ ପଡେ ଗୋଡ଼ତଳେ
ଉଚ୍ଛୁର ହେଲାଣି କଳ ଗୋଳେ,
ବାଡ଼ କବାଟ ଯେ ମୁକୁଳା ହୋଇଚ୍ଛୁ
କୁକୁର ପଶିବ ହାଣ୍ଡିଶାଳେ ॥

(୩)

( ପ୍ରାଣ ସଙ୍ଗିମାରେ, ନେହାନନ୍ଦ ପସର—ଅନୁକରଣରେ )

ପ୍ରାଣ ସଙ୍ଗିମାରେ ନେହୀନାଙ୍ଗ ପସର
ସଙ୍ଘା ପରେ ଥିଲ ପର ॥

ଓଲେଇ କାଣୀ ବଲେଇ ଅଟଇ ଚର ହୁଲେଇ
ପସର ଗଡ଼େଇ ଦେଇ ଖସିଲ ଭର ॥

ପର ସତା ଦହ ଯାକ ଇଡ଼ ତ ଯାଇଚ୍ଛୁ ଦେଖ
ଗନ୍ଧାଉଚ୍ଛୁ ଭକ ଭକ ପୁରଟା ସାର ॥

ମାଚ୍ଛୁ ଆସି ପଣ ପଣ ହୋଇଲେଣି ଭଣ ଭଣ
ଏକା ମୁଁ କରବ କ'ଣ ନାହିଁ ମୋ ଗ୍ଵର ॥

ଆସନ୍ତା ଭଲ ସେ ଆଳୀ ଫିନାଇଲ ଦେଇ ଢ଼ାଳ
କରନ୍ତେ ସରବେ ମିଳ ସଫା ସୁଭୁର ॥

ଦହ ତକ ଗଲେ ଗଲ ପତଲାଟା ଯା ଭାଙ୍ଗିଲ
ମୋ ଭାଗ୍ୟେ ନଷ୍ଟେଁ ଫଳଲ ମୁଣ୍ଡି ପହଁର ॥

ଅମୁହାଁ ବୁରରେ ନେଇ ଯମୁନା ଜଳେ ଭସାଇ
ଦଅନ୍ତ ଯେବେ ସେ ଥରେ ପଡ଼ନ୍ତା ଧର ॥

( ୪ )

( ହସିଆରେ ଫୁଲ-ଉସିଆ ପବନ ମଧୁ ମାସିଆ—ହନୁକରଣରେ )

ହସିଆରେ ହଳ ଉସିଆ—ମୂଳଆ ବାରମାସିଆ,
ହୋ ପ୍ରିୟ ଧରଣୀ କୋଇଲ ବରଣୀ
ବାଡ଼ି ବସିଛୁ ପଖାଳ ଆମ୍ବ-କଷିଆ ।
ଅଣ୍ଟାରେ ଗାମୁଛା କଷିଆ,
ପିକା କଲେ ଘେଷି ଘେଷି ଆ,
ଅଙ୍ଗର ଝାଳକୁ ପୋଛୁ ଡଷି ଆ,
ଘୁଡ଼ ଯାଉ ଦେହୁଁ ମସିଆ—
ହାଣ୍ଡିଶାଳକୁ ପଶି ଆ—
ଆରେ ବାଡ଼ପଡ଼ା ଆଣିଛୁ କି ଖଡ଼ା
ମୁହଁପୋଡ଼ା-ହେବ କାନ ମୋଡ଼ା
ସାଜ ଲୁ ଆଜ ତା' ଲାଜ ନ ଭାଜ
ପିଆଜ ଫଡ଼ାଏ ଖା ମସମସିଆ ।

( ୫ )

(ଘନ କାଳିଆ, ବରଜ ଧୂଳିଆ, ବନ ମାଳିଆ—ହନୁ କରଣରେ)

ଦର ଗଡ଼ିଆ, ଧରମ କୋଡ଼ିଆ ଘର ପୋଡ଼ିଆ,
ଓଠଚଡ଼ିଆ, ଧଡ଼ପଡ଼ିଆ, ମଡ଼ମଡ଼ିଆ, ଚଢ଼େଇ ଗୋଡ଼ିଆ, ହାଡବାଡ଼ିଆ ।
ଚଣ୍ଡି ଢଡ଼ଘଡ଼ିଆ-ଅଣ୍ଡି ନଡ଼ବଡ଼ିଆ-ପୁଣ୍ଡି ଧଡ଼ଧଡ଼ିଆ, ମୁହଁ ପେଡ଼ିଆ
ନାକରୁ କେସନ ଭାସଇ ଘନଘନ ସିଙ୍ଘାଣି ଭଡ଼ଭଡ଼ିଆ
ଦାନ୍ତ ନକୁଟି କରି, ଲାଳ ପଡ଼ଇ ଝରି, ପାଟିରୁ ସଡ଼ସଡ଼ିଆ ।
ମୁଣ୍ଡିଆ ଛଡ଼ା ନଡ଼ିଆ, ଖଣ୍ଡିଆ ନଣ ଝାଡ଼ିଆ,
ଗୁଗଲ ଥୋଡ଼ିଆ, ଆଖି ବଗଡ଼ିଆ,
ନାକ ଦେଡ଼ିଆ, ବଗ ଫଡ଼ିଆ, ପେଟ ଡୋଡ଼ିଆ,
ଖଜର ଗୋଡ଼ିଆ, ଗେଡ଼ା ହାଡ଼ିଆ,
ବଡ଼ ଅଡାଡ଼ିଆ ଯେତେ ଓଡ଼ିଆ ।

( ୬ )

( ସରିଯିବନି ଜୀବନେ କଣୋଣାରେ—ହନୁକରଣରେ )

ସରି ଯିବନି ଜୀବନେ କଣୋଣା ହେ ବଂଶୀଧାରୀ ।

ବିରହରେ ସଖି ହୋଇଛି କାତର,
ଘେବାଉଛି ଖାଲ ସେ ଧୂଆଁ ପତର,
ନାକେ ଶୁଙ୍ଘି ଶୁଙ୍ଘି ଗୋଲପି ଅତର
ଜୀବନକୁ ଅଛି ଧରି ।

ଲାଗି ନ ଥିଲା ମୋ କରକୁ ନାଟିକା,
ମାରୁଥିଲା ଆଖି କୋଣେ ସେ ମିଟିକା,
ଶୁଖି ଯାଇଥିଲା ସଖୀର ଢଟିକା
ମୁନ୍ଦାଁଟା ଆଟିକା ପରି ।

ନାସାଗ୍ରରେ ଚୂନା ଦେଲେ ଚଟପର
ସିଙ୍ଘାଣି ବହିଲା ଚପର ଚପର,
ଧୋଇ ହୋଇ ମାଞ୍ଜ ଖଣ୍ଡିଏ ଲେପର
ଶୋଇଛି ଗଧଟି ପରି ।

ତୁମ୍ଭ ଲାଗି ଯେବେ ନୋହିଲା ପାତର,
ଛୁଇଁଲି କପାଳି ସଖିର ଗାତର,
କରି କଥାଁ ତାକୁ ସନ୍ତର ପନ୍ତର
ଅନ୍ତରକୁ କଲି ଘେରି ।

ତୁମ୍ଭ ଦରି ଡାକରର ଆଉଁ ଆଉଁ,
ଜବ ଯିବ ତାର ସଙ୍ଗେ ଗୁହୁଁ ଗୁହୁଁ,
ଏ ବେଳରେ ଆଉ ସାଧ ନାହିଁ ଦାଉ
କହୁଛି ମିନତି କରି ।

( ୭ )

( ସରିଯିବନି ଜୀବନେ କଣୋଣା—ହନୁକରଣରେ )

ସରି ଗଲାଣିଟି ହାଣ୍ଡିରୁ ତୋରାଣି ହେ ବେଣୁପାଣି ।

ଆମ୍ବୁଲ ରାଇତା ସଙ୍ଗେ ସାଗ ଭଜା,
ଶୁଖୁଆ ପିଆଜ ତୁମ୍ଭଲାଗି ସାଜ,
ବେଲି କଂସା ଯାକ ଯତନରେ ମାଜି
ରଖିଥିଲେ ରାଧାରାଣୀ । (୧)

ବସି ବସି ଶେଷ ହେଲା ଆସି ରାତି,
ନ ଦିଶିଲା ତେବେ ତୁମ୍ଭ ମୁଖ-ଶଶୀ,
ସଜ ଚକଚକ ହୋଇଗଲା ବାସି
ନାହିଁ ଟୋପି ଫୁଟିଆଣି । (୨)

ବିରହେ ସଖିଙ୍କୁ ମାରିଛ ମଟକା,
ଧରୁ ଧରୁ ଗୁଡ଼ ଗଲାଟି ନାଟିକା,
କଢ଼ାଇଲେ ଯେତେ ହାଣ୍ଡି ଯେ ଆଟିକା
ହୋଇକରି ବାଇଆଣୀ । (୩)

ଥର ଥର ହୋଇ ଥଇଲା ଗାତର,
ଦେଖି ଆନନ୍ଦ ସର୍ବେ ହୋଇଲୁ କାତର,
(ଚର୍ଦ୍ଧ) ପୂରାଇ ପଖାଳେ ପଥର ପାଚର
ଗିଳାଇଲୁ ତାଙ୍କୁ ଆଣି । (୪)

ପଡ଼ଗଲା ତାଙ୍କ ଦାନ୍ତର କବାଟି,
ଦୁଇ ଡୋଳା ଯାକ ପଡ଼ଲା ଲେଉଟି,
ଆଖି କାଡ଼ି ଦେଇ ହେଲେ ଗୁଣ୍ଡିପିଟି
ଲାଗି ଗଲା କ ଡାଆଣୀ । (୫)

ଖିଆପିଆ ସବୁ ହେଲାଣି ନବାଡ଼,
ଆଉ ଖାଇବାର ଆଶା ଗୁଡ଼ ଗୁଡ଼,
ବଡ଼ଟିଏ ଖାଇ ଏବେ ଶୋଇପଡ଼
ପିଇ ମୁନ୍ଦେ ଗୁହା ପାଣି । (୬)

( ୮ )

(ଆଗୁ ଗୋଲଟେବଲ ପାଲି ଲାଗିଲାରେ—ହନୁକରଣରେ)

ଭଲା ଭୋଟ ଚାମପା ଲାଗିଲାରେ ।
ନୂଆ ସ୍ୱାଧୀନତା ଦେଶେ ଜାଗିଲାରେ ।

କଚୁକଚୁ ହେବାକୁ ବଳ Candi date ହେଲେ ଦଳକୁ ଦଳ
ଖୁଣ୍ଟା ଚୁଗୁଲା ବଦନାମ ଆଦ, ଲଗାଇ ହେଲେ ଶୋଧା ଶୋଧି,
ଅଇଣ୍ଠା ଚଟା କୁକୁର ଭଳି ଦାନ୍ତ ନକୁଟି ଲାଗିଲେ କଳି,
ହାଡ଼ଓଳ ଶୁଣ୍ଡି ପିଣ୍ଡାରେ ପଡ଼ ଧାରଣା ଦେଲେ କୁଟା କାମୁଡ଼,
ଖଣ୍ଡେ ଭୋଟ ଭିକ୍ଷାଂ ଦେହ ମାଗିଲେ ରେ ॥

ଖଦଡ଼ ଜାମା ଖଣ୍ଡେ ପିନ୍ଧ କଏ କହଲା ମୁଁ ସ୍ୱୟଂ ଗାନ୍ଧି,
କଏ କହଲା ମୁଁ କଂଗ୍ରେସ ନେତା କଏ କହଲା ମୁଁ ସ୍ୱାଧୀନଚେତା,
ହାତୀ ଦେବ ଘୋଡ଼ା ଦେବ ସରଗ ଚନ୍ଦ ଯୋଡ଼ ଦେବ,
କାହା କପାଳରେ ଛୁଞ୍ଚିଲା ଶିକା କାହା ମୁହଁ ପଡ଼ଲା ଫିକା,
କଏ ଚଣ୍ଡିଆ ଖାଇ କାହିଁ ଭାଗିଲା ରେ ॥

ଭଲଣ୍ଟ ଅର ଧାଡ଼କ ଧାଡ଼ ଭଳକ ଭଳ ଗୁଡଲେ ରଡ଼,
ଟାଉଟର ମାନେ ଟକାଇ ଲାଞ୍ଚ ଭିତରେ ଭିତରେ ମାରଲେ ପେଞ୍ଚ,
ଚହିଁକ ବଳ ଦୁପିଆର ଭୋଟର ମାହାଳଆରେ ଚଢ଼ିଲା ମୋଟର,
ଘ୍ୟୁ, ଅଫିମ ଜଳଖିଆ ଖାଇ ବରଫ ସୋଡ଼ା ଲିମନେଡ଼ ପିଇ,
(ଅସଲ) କାମବେଳକୁ ଛଟା ଜାଗିଲା ରେ ॥

( ୯ )

(ଗାଇବ କ ଗାନେ ମୋହବ କ ତାନେ—ହନୁକରଣରେ)

ଗାଇବ କ ଗାନ ଖାଇବ କ ପାନ ଦାନ୍ତ ତ ଗଲାଣି ପଡ଼
ଫାଙ୍ଗୁଲା ପାଟିରେ ବେଙ୍ଗଲା ପଡ଼ୁଛି କଥା ଯାଉଅଛି ଉଡ଼ ।
ଦାନ୍ତର ସେ ଦନ ଆଉ ଅବା କାହିଁ ଚୂନା କରୁଥିଲା ପାଣିକ ଚୋବାଇ
(ଏବେ) ଗୁଣ୍ଡି ପାନ ଖଣ୍ଡେ ଖାଇଲା ବେଳକୁ ପିକ ପଡ଼ୁଅଛି ଗଡ଼ ।
ଗୋଟା ଗୋଟା ଖାସି ଫଡ଼ଆର ହାଡ଼
ଚେପି ଦେଇ କରୁଥିଲାଟି ନବାଡ଼,
(ଏବେ) ଗବ ଦାନ୍ତକାଠି ଘଷି ହେଉ ନାହିଁ, ଚଳାଉଛୁ ଫୁଲ ଖଡ଼ ।
ନଡ଼ଆର କଥା କହିବ ବା କସ
ସଜନା ନାଡ଼ୀତ ହୋଇଲାଣି ବଷ,
ଜୀବନ ବକଳେ ପାକୁଳ ପାକୁଳ ଗୁଖୁଅଛୁ ଫୁଲ ବଡ଼ ।
ଛଅ ରାଗ ଆଉ ଛତିଶ ରାଗିଣୀ
ଦାନ୍ତ ଅଗେ ହେଉଥିଲା ଗିଣି ଗିଣି,
ଖୋଳ ହଳ ଯାକ ନକୁଟି ଦେଲେଟି ମୁକ୍ତା ପଡ଼ୁଥିଲା ଝଡ଼ ।
ଆଉ କ ଅଛୁ ସେ ପୂରବ ଗୌରବ
ସେ ବୈଭବ ହେଉ ନାହିଁ କବକବ,
କପୂର ଗଲାଣି, କନା ବ ଗଲାଣି ରହିଅଛୁ ଖାଲ ଧଡ଼ ।
ନବ ତେଜେ ପ୍ରାଣ ଉଠିଲାଣି ମାତ
ନବୋଲ୍ଲାହେ ପୂର ଉଠିଲାଣି ଗୁଣ୍ଡ,
ପୂର୍ବ ସ୍ମୃତି ସବୁ ଖୁଞ୍ଚ ହୋଇ ଯେତେ ଜନତା ଦେଲାଣି ଛଡ଼ ।
ଯେ କେତୁଟା ଅଛୁ ହୋଇ ଛଡ଼ାଛଡ଼
କଲିକତା ଯାଇ ଦେଇଣ ଉପାଡ଼
ବାନ୍ଧ ସୁନା ଦାନ୍ତ ପୂରା ଦୁଇ ଧାଡ଼ ଦେବ ତୁମ କାନ ମୋଡ଼ ।

( ୧୦ )

( ଯାହା ହେବାର ହେଉ ଏଣିକ । ମୁଁ ତ ଦେଇଣ୍ଡ ଜୀବନ ବକ
—ହନୁକରଣରେ )

ଯାହା ହେବାର ହେଉ ଏଣିକ । ସେତ ଥରେ ପକାଇଛୁ ଛୁକି
ଘରେ ନାହାନ୍ତି ବା କେତେ ଲୋକ କାହାକୁ କ ନ ମାଉଛୁ ଛୁକି
ଏତେ ଚହଳ ସେ ପାଇଁକ ॥
ତା'ର ଚଣ୍ଡି ହୁଏ ଢଡ଼ ଢଡ଼ ନାକୁ ପାଣି ବହେ ସଡ଼ସଡ଼
କଫ ଜଡ଼ ଧରୁଛୁ ଗୁଡକ ।

ସେ ତ ଘରକଣେ ମୋଡ଼ ମାଡ଼    ପଡ଼ ଅଛଇ କୋଟରୁ ଛୋଡ଼
କଁଆଁ କର ଏତେ ଝିଙ୍କା ଝିଙ୍କି ।

ସବୁ ଘୁଡ଼ୁଛୁ ଦନ୍ତ ତୋବଣି    ପିଇ ଟୋପେ ଟୋପେ ଗୃହାପାଣି
ତେବେ ବାଇ ଭଉଁଛୁ କାହିଁକ ?

ତାର ଶରଦ ସନ୍ତ୍ରେ କାଶ    ଲାଗି ରହି ଅଛୁ ବାରମାସ
ଆଶ କରି ଅଛୁ ବସନ୍ତିକ ।

ତାକୁ ଗାଧୁଆ ହେବାରୁ ମନା    ମୁଣ୍ଡେ ପିତ୍ତ ଚଢ଼ିଗଲା ସିନା
ଅନାଉଛୁ ଆଖି ତରାଟି କ ।

ଘରେ ଏତେ ଲୋକ ଥାଇ ଥାଇ    ତାକୁ ପଇଡ଼ ଦେଇ ପିଆଇ
କଲ କପାଳିଁ ଏତେ ସରକ ।

( ୧୧ )

( ରେ ମୁରଲୀ, ତୋରେ ଶରଣ ଗଲି—ଅନୁକରଣରେ )

ରେ ପୁଲିସ, ତୋରେ କହିବ କସ
ଦିନେ ନ ଦେଖା ତୋ ହୁରୁଡ଼ା ନଶ ।

ମୁଁ ମଫସଲ ସେ ଗ୍ରାଜ କଟେଶ
ତୁହି ଦେଲୁ ସିନା ପରଚେ କଶ ।

ଲୁଚି ପଣେ କେହି ନାହିଁ ତୋ ସରି
କ ଯେନ ଚହଲୁ ମୋତେ କପରି ।

ପୁଲସରେ, ତୋର ଏଡ଼େ ବଡ଼ାଇ
ଜେଲଖାନା ଡର ଦେଲୁ ଛଡ଼ାଇ ।

ଜାଡ ତୋର ବାରମାସ ବାଲୁଙ୍ଗା
ଆଗା ପିଚ୍ଛୁକୁ ତୋ ନାହିଁଟି ଲଗା ।

ଚୁଟିଠା ତୋର କେ ମୋ ଦ୍ୟନ୍ତା ହସ୍ତେ
କାଟି ପକାନ୍ତି ମୁଁ ସାଥକୁ ସାଥେ ।
ପୁଲସରେ ତୋର ଧରୁଛୁ ଓଠ
ଆଉ ଦିନେ ଲଗା ନାହିଁ ତୋ ରେଟ ।

( ୧୨ )

( ଲଖି ରହିଲ ଆଖି ସଖି ଶିଖୀ ଚୂଳରେ—ଅନୁକରଣରେ )

ଲଖି ରହିଲ ଆଖି    ରାମ-ପକ୍ଷୀ ଚୂଳରେ,
ଦେଖି କା' କଭରୁ ନ ଗଡ଼ବ ଲଳରେ !

ବଚନ ତାହାର ପର    ଲାଞ୍ଜି ଉଡ଼େ ଫର ଫର
ଶିରରେ ପିନ୍ଧଛୁ ସତେ ଫୁଲ ନୋଲରେ ।

କେସନ ମଧୁର ଡ଼ାକ    କରେ ଯେବେ କକ୍ କକ୍
ଶୋକରେ ହୁଅଇ ପେଟ ଅସମ୍ଭାଳରେ ।

ଦର୍ଶନେ ଦଶାଶ୍ୱମେଧ    ସ୍ପର୍ଶନେ କୈବଲ୍ୟ ପଦ
ଆଘ୍ରାଣେ ନର୍ବାଣ ଫଳ ଏହା ଝୋଲ ରେ ।

ଚାଖିଲେ କ ଫଳ ତାର    ବେଦବଧି ଅଗୋଚର
ହୁଏ ରାମ ଅବତାର କଳି କାଳରେ ।

( ୧୩ )

(ତୋ' ଲାଗି ଗୋପଦାଣ୍ଡ ମନା ରେ କାଳିଆ ସୂନା—ଅନୁକରଣରେ)

ତୋ ଲାଗି ଅଦା ପଦା ମୁଦା କାଳିଆ ବୋଦା,
ତୋ ଲାଗି ଅଦା ପଦା ମୁଦା ।

ତୋ ଲାଗି ନ ମାଉଁବ କୁଦା ରେ କାଳିଆ ବୋଦା,
ତୋ ଲାଗି ନ ମାଉଁବ କୁଦା ।

ନିତ ଏହି ବାଟେ ଯାଉ ରେ କାଳିଆ, ନିତ ଏହି ବାଟେ ଯାଉ
ଆମକୁ ଦେଖିଲେ ଷଣ୍ଢ ଟେକ ଦେଇ ଫୁରୁଡ଼ ମାରି ବୋବାଉ ।

ତୁହି ଅଜାଘର ପୁଅରେ କାଳିଆ ମୁହିଁ ଅଜାକୁଳ ବହୂ
ଟେଡମଣୀଙ୍କ ଭଳି ଥୋମଣି ହଲାଇ ରମଣୀ ଇଜତ ନେଉ ।

ତୁହି ଛାଗକୁଳ ରଜାରେ କାଳିଆ ତୁହି ଛାଗ କୁଳ ରଜା
କେମନ୍ତ ସଜରେ ଗୋଜ ମାରିଛନ୍ତି ଶିଙ୍ଘ ତୋର ଗଜା ଗଜା ।

ଫିଟ୍ ଫାଟ୍ ହୋଇ ନାଟକରୁ ଧରି ଲାଟ ସାହେବାନା ଥାଟ
ବାହାର ପାଟକୁ ଗଲାବେଳେ ତରି ନିତ ଫେଗାଲୁ ତୁ ବାଟ ।

( ୧୪ )

(ସଖି ରେ, ଆଜ ଦେଖିଲ ବନମାଳୀଙ୍କ ରେ—ଅନୁକରଣରେ)

ସଖି ରେ, ଆଜ ଦେଖିଲି    ବନା ଦାସକୁ
ସେ ତଳ ଦଳାଥିଲ ନାସକୁ ।

ଗଞ୍ଜେଇ ଚଲିମ ଜାକ    ଭିଡ଼ି ଥିଲ ବୁଜି ଆଖି
ଆଙ୍ଗୁ ପରେ ଟେକ ଦେଇ ବାସକୁ ।

କରି କେତେ ବାଙ୍କ ଠାଣି ·    ଧୂଆଁ ଦମେ ନେଇ ଟାଣି
ଚାପି ଧରୁ ଥିଲ ପୁଣି ଶ୍ୱାସକୁ ।

ତଣ୍ଟି ବୁଜ ନାକା ସ୍ୱରେ    କଥା କହୁଥିଲ ଧୀରେ
ଥରେ ଥରେ କାଶି ଖୁଜିଁ କାଶକୁ ।

ହୋଇ ତାର ପରିଚାରୀ    ସେବା କରନ୍ତି ତାହାର
ଦରମା ନ ନେଇ ମାସ ମାସକୁ ।

( ୧୫ )

(ସଜନ, ତାକୁ ଯା ଯା ବୋଲି କହିଦେ—ଅନୁକରଣରେ)

ସଜନ, ତାକୁ ଯା ଯା ବୋଲି କହିଦେ-ସଜନ ତାକୁ
ଦରକାର ନାହିଁ ମୋର (ସେ) ଖଦଡ଼ ପିନ୍ଧାକୁ ।

ଗାଁଆରୁ ଡାକ ନେଇ — ଦେଲି ସେ ଫୁସୁଲାଇ
ଗଲି ଗାନ୍ଧିଆ ହୋଇ ନ ଡରି କାହାକୁ ।

ଛୁଡ଼ି ସବୁ ସଉକ — ପିନ୍ଧି ଖଦି ପୋଷାକ
ବୁଲି ମାଗିଲି ଭିକ ଗାଆଁରୁ ଗାଆଁକୁ ।

ବଗଡ଼ା ଖାଇ ଖାଇ — ଶୁଖି ତ ଗଲି ନାହିଁ
ତେଲ ଟୋପାଏ ନାହିଁ ମୁଣ୍ଡେ ମାଖିବାକୁ ।

ପୁଲିସ ଦେଲା ମାଡ଼ — ଭାଙ୍ଗିଲା ହାତ ଗୋଡ଼
ଠେଲି ବସିଲା ମୋତେ କଅଳ ଖାନାକୁ ।

ବୁଦ୍ଧିଟା ଥିଲା ବୋଲି — ଚଢ଼ୁଁ ଉବୁରି ଗଲି
ହାକମ ପାଦେ ପଡ଼ି ମାଗିଣ କ୍ଷମାକୁ ।

କହିଦେ ଯାଇ ସେହି — ଆଉ ଭୁଲିବି ନାହିଁ
ଝିଙ୍କ ମାରିଛୁ, ଶହେ ଜୁହାର ତାହାକୁ ।

( ୧୬ )

( ସହି ଅଣିଲା ନାହିଁକି—ଅନୁକରଣରେ )

ତେବେ କଣିଲା ନାହିଁକି
ହେଲା ଉପରୁ ତଳି ସରୁ କି ।

ଚାହିଁଲୁ ପିଠିରେ ଅଳସି ବେଞ୍ଚସି ଝିଙ୍କିଲ ଶେଷେ ବେଞ୍ଚିକି
ଟଙ୍କି ଧନ ତୋର ଝୁଣ୍ଟି ନେଇ ଗଲା ପିଠାଇ ଦେଇ ଅଣ୍ଟିକି ।

ହାତ ବେଣିଆ କରି ତୋତେ ଛାଡ଼ିଲା ଚହ୍ନିଲୁ ନାହିଁ ତ ଚାଣ୍ଡି
ଯାଚିଲା କଅଁଳୀ ବୋଲି ଝିଙ୍କି ହୋଇ ଗିଳିଗଲୁ ଯା ଢେଙ୍କକି ।

ପଟାଣର ମାଡ଼ ଖାଇଲ ଉଳକ ରହିଲୁ କରମ ଠୁକି
ଲାଜେ ନ କାନ୍ଦିଲୁ ଆଖି ମଳି ମଳି କାନ୍ଦିଲୁ ଲୁଚି ଲୁଚି କି ।

ନିହତ ମହତ ମାଡ଼ି ଚୂଲି ସବୁ ପର ହାତେ ଦେଇ ଚକି
ଦାନା କନା ଛାଡ଼ି ନଆରି ହୋଇଲୁ ମଲୁ ତୁ ଭୁକ ଭୁକ କି ।

( ୧୭ )

( ପ୍ରେମ ଜାଣେ କ ଧନ ଗୀତ—ଅନୁକରଣରେ )

ପ୍ରେମ ନ ଜାଣେ କ ଧନ ଗୀତ
ତାର ନାହିଁ ଜାତକ ଅଜାତ ।

ପାଣ କ କଣ୍ଡରା, — ମାଇକ ଅଣ୍ଡିରା,
ଢେଙ୍ଗା ବା ବାଙ୍ଗରା, — ଲଣ୍ଡା ବା ଝାଙ୍ଗରା,
ମାନେ ନାହିଁ ବାଘ ଭାଲୁ ଅବା ଘୋଡ଼ା ହାତୀ ॥

ବଙ୍ଗାଳୀ ଓଡ଼ିଆ, — ଗୌଡ଼ୀ କ ଗୁଡ଼ିଆ,
କାମିକା କୋଡ଼ିଆ, — ମାଖୁନା ଦାଡ଼ିଆ,
ନ ଜାଣେ ଭାଇ ଭଉଣୀ କବା ଅଜା ନାତି ॥

ଲଣ୍ଡା କବା ପଣ୍ଡା, — ସାଧୁ କବା ଗୁଣ୍ଡା,
ବୁଢ଼ା କବା ଟେଣ୍ଡା, — ବୁଢ଼ିଆ ବା ହୁଣ୍ଡା,
ସବୁରି ଛାତିରେ ସେ ତ ଭିଡ଼ି ଧରେ ଛାତି ॥

ଚମ୍ପୁ କବା ସଡ଼ା, — ଜାଉଳା କ ମଡ଼ା,
ହାଜଡ଼ା ବା ଜଡ଼ା, — ଦାମୁଡ଼ିଆ ହଡ଼ା,
କରେ କ ବାଛ ବିଚାର, କ ନିଶାରେ ମାତି ॥

( ୧୮ )

( ଆଗୋ ପ୍ରିୟସହି, ଛାତି ପଥର କଲିଣି ସହି ସହି-ଅନୁକରଣରେ )

ଆଗୋ ପ୍ରିୟ ସହି, — ଛାତି ପଥର କଲିଣି ସହି ସହି
ମନ କଥା ଆଜ କାହାକୁ କହିବି ଅନ୍ତର ଭିତର ଯାଏ ଦହି ॥ ଘୋଷା ॥

ନେକ କେତେ ସିନେମା ଯାଉ ନାହିଁ,
କଏ ବା ଚଷମା ନାଉ ନାହିଁ ।
ରୁମାଲରେ ମୁହଁ ପୋଛି ବାହାନାରେ ଟୋକାଙ୍କୁ କଣେଇ ଚାହୁଁ ନାହିଁ ।୧।

ସ୍ନୋ ପାଉଡର କଲା କସ,
ସେଣ୍ଟ ଲଗାଇଲେ କେଉଁ ଦୋଷ ।
ବଜାରି ଟୋକାଙ୍କୁ କ ମଜା ଲାଗୁଛି ପୋଡ଼ଯାଉ ତାଙ୍କ ଗଜା ନିଶ ।୨।

ଗୀତ ଅଧେ ବହିଣାରୁ ଛିଣି,
କଏ ନ ଲେଖୁଛି ପ୍ରେମ ଚିଠି ।
ଆଖି ମିଟି ମିଟି କରି ଯେ ହସନ୍ତି ଚଟିରେ ଗାଲକୁ ଦିଅନ୍ତି ପିଟି ।୩।

ସିନେମା ଠାଣିରେ ହଲି ହଲି,
ବାଟରେ ଘାଟରେ ଗଲେ ବୁଲି ।
ବଲ ବଲ କରି ଚାହାନ୍ତି ଟୋକାଏ ଆଖିରେ ତାଙ୍କର ପଡ଼ୁ ବାଲି ।୪।

ଭ୍ରୂଲତା ନଚୁଇ କେଉଁ ଠୋଣ୍ଟ,
କଥା କହୁ ନାହିଁ ଢୋକ ଢୋକ ।
ଏଥିପାଇଁ ଏତେ ଠାକୁର କରିବା ନୁହେଁ କି ନିହାତି ଶ୍ରେଷ୍ଠ-ଲୋକ ।୫।
ନଟଭେଲ ନ ପଢ଼େ କେଉଁ ଝିଅ,
ସହୁ ନାହିଁ କଅଁ କାହା ବନ୍ଧ ।
ବେହିଆ, ଶ୍ଲେପଟ୍, ଅଜବ ଗୁଡ଼ାକ ଏଠୁଁ କାଢ଼ନ୍ତୁ କେତେ ଝିଅ ।୬।

( ୧୯ )

(ବନ୍ଧ କଦମ୍ବ ଲମ୍ବିଲୁ—ଅନୁକରଣରେ)

ବନ୍ଧ କି ଦଣ୍ଡ ବହିଲୁ ଆଣିରେ ।

କନିଆ ଭାରିଜା ହବ୍ସ ହେବା ମଜା
ଆଗରୁ କେ ଥିଲା ଜାଣି ରେ ।

ବୁଢ଼ା କାଳେ ଏକୁଟିଆ କରି ରେ
ଯେବେ ବେଙ୍ଗ ବୋଉ ଗଲା ମରିରେ,
ଗଡ଼ିଆ ପୋଖରୀ ଦେଇଥିଲା ଭରି
ଝୁରି ଝୁରି ଆଖି ପାଣି ରେ ।

ଏହା ମନରେ ଥିଲା ଯେ ମନାସି
ଏବେ ହୋଇଯିବ ନିଷ୍ଠେ ସନ୍ୟାସୀ,
ମାଆ ନେହୁଣ୍ଡିଆ ବେଙ୍ଗ ଲାଗି ଏକା
ମନ ବଳାଇଲା ପୁଣି ରେ ।

ତାକୁ ସଅଁପି ନୂଆ ମା' କୋଳରେ
ଭାବିଥିଲା ନ ରହିବ ଗୋଳରେ,
ତୁଳସୀ ମାଳଟେ କଣିଆଣି କୃଷ୍ଣ—
ନାମ ହେଉଥିବ ଗୁଣି ରେ ।

ପୁଞ୍ଜି ପଟା ସବୁ ଟଳି ସରି ରେ
ଲକ୍ଷ ଶୁଖିଲାଣି ଉରି ଉରି ରେ,
ଛେନା, ପଣା ଭୋଗ କାହିଁରେ ସନ୍ତୋଷ
ନୁହନ୍ତି ସେ ଠାକୁରାଣୀ ରେ ।

ଝାଡ଼ଖଣ୍ଡି ଦେବତାଙ୍କ ପ୍ରୀତିରେ
ସଂକୀର୍ତ୍ତନ ଲାଗି ଅଛୁ ମତି ରେ,
ଚଅଁର ସେବାରେ ପିଠିରୁ ମୁଣ୍ଡରୁ
ଗିଡି ଗିଡି ମରିଲାଣି ରେ ।

( ୨୦ )

(ଅନୁସରି ତ, ପ୍ରଭୁ କାଳ ଯାକ ଗଲା ସରି ତ—ଅନୁକରଣରେ)
ଅନୁ ସରି ତ ! ମୋର କାଳଯାକ ଗଲା ସରି ତ,
କନ୍ୟା ଅବଳକୁ ମୋହରି ବେଳକୁ ଶୁଖିଲା କରୁଣା-ସରିତ ।
ପଡ଼ି ଗଡ଼ି ଗଡ଼ି ନାକ ଗଲା ଛୁଡ଼ି ରକତ ହୋଇଲା କ୍ଷିତି ତ,
ହରଡ଼ ଘଣାକୁ ପେଲି ନ ପଡ଼ିଲା ଶୋଷାଏ ମାଲପା ଝରି ତ ।
ଦୋ ଅକ୍ଷର ଭାଷା ମିଶା କାନ ଘଷା ଗିଳିଲି ଅମୃତ ପରି ତ,
ବନ୍ଧୁ ସନମାନ ଯେବେ ହେଲେ କାହିଁ ନ ମିଳିଲା ଏତେ କରି ତ ।
କଲମ ମୁନରେ ଏକା ଗାରକରେ କେତେ ଗଧ ଗଲେ ତରି ତ,
ମୋ କର୍ମକୁ ସେ କି କୁନ୍ଥା ହେଲା ପୁଣି ହାତଟା ଉଠିଲା ଥରି ତ ।
ଜୀବନ ଯୌବନ କଲି ସମର୍ପଣ ଦିନ ରାତି ଡରି ଡରି ତ,
ଦୁରନ୍ତ ମୋହର ବାରି ତ ନୋହିଲା ଶ୍ରୀଚରଣ ଧରି ଧରି ତ ।
ଅନୁ ସରଣିଆ ଜନକୁ ନିନ୍ଦିବା କରିବା ନୁହେ କି ଗର୍ହିତ,
କଣା କରଣିର ବୁଝିବା ଗହନ ହାକିମ ହୁକୁମ ଚରିତ ।

( ୨୧ )

(ରଚିଛୁ ଏ ମଧୁଶଯ୍ୟା, ଶର ବାଞ୍ଛିତ ଆହେ ବାଞ୍ଛିତ—ଅନୁକରଣରେ)
ପ୍ରେୟସୀର ପ୍ରେମ କଜିଆ, ଶର ବାଞ୍ଛିତ ମୋର ବାଞ୍ଛିତ ।
ବେଳେ ଉଣାହେଲେ ପିଠି ଦୁଏ ଖିଞ୍ଚି ତଳ ପେଟ ଧରେ ଖାଞ୍ଚିତ
। ଘୋଷା ।

ଯେବେ ତାଙ୍କ ତାଜ ବେଳରେ
ଆଡ଼ୁଆଳେ ରହି ଡରି ଡରି ହୋଇ ହସି ଦେଇଥିଲି ଗେହ୍ଲରେ
ବାହା ବଞ୍ଚି ବଞ୍ଚି ଧାଇଁ ଆସିଲେ ସେ ଗୃହିଣୀ କରି ଉଞ୍ଛୁତ ।୧।
ସେ ଯେଉଁ ତରାଟ ବୃହାଣୀ
ନାସିକା ଥୋମଣୀ କୁଞ୍ଚିତ କରି (ଯେବେ) ଅଇଲେ ବାହାଣୀ ବାହାଣୀ
ପାଞ୍ଚ ହାତ ପଛେ ଘୁଞ୍ଚି ଯାଇଁ ମୁଁ କହିଁ ମତେ କଲ ବଞ୍ଚିତ ।୨।

# ଚଟକ ଚନ୍ଦ୍ରହାସ ଚମ୍ପୂ

କବିକୁଳାଗ୍ରଣୀ କବିସୂର୍ଯ୍ୟ ବଳଦେବ ରଥଙ୍କର କିଶୋର ଚନ୍ଦ୍ରାନନ ଚମ୍ପୂ ସଙ୍ଗୀତ-ସାହିତ୍ୟ-ରସାମୋଦୀମାନଙ୍କର ଅତି ଆଦରର ଧନ । ଭାବ-ବୈଭବ ଓ ପଦଲାଳିତ୍ୟରେ ଉତ୍କଳୀୟ ଗୀତ-ଗ୍ରନ୍ଥମାନଙ୍କ ଭିତରେ ଏହା ଅଦ୍ୱିତୀୟ ବୋଇଲେ ଚଳେ । ଏହା ଏପରି ଜନପ୍ରିୟ ଯେ 'ଚମ୍ପୂ' କହିଲେ ଏହି କିଶୋର ଚନ୍ଦ୍ରାନନ ଚମ୍ପୂକୁହିଁ ବୁଝାଏ ଏବଂ ଚମ୍ପୂର କୌଣସି କୌଣସି ଗୀତ ବା ଗୀତଭାଗ ଓଡ଼ିଆର କଣ୍ଠେ କଣ୍ଠେ ବିରାଜିତ ।

ଏହି ଓଡ଼ିଆ ଭାଷାରେ ହାସ୍ୟ କୌତୁକ ପୂର୍ଣ୍ଣ ଲେଖାର ଅଭାବ ଦେଖି ଏହିପରି ସର୍ବଜନାଦୃତ ଓ କବିତ୍ୱ-ଗୌରବ-ପୂର୍ଣ୍ଣ ସଙ୍ଗୀତାବଳୀର ନକଲ (Parody) ରଚନା କରିବା ପାଇଁ ମୋର ସ୍ୱତଃ କୌତୂହଳ ଜନ୍ମିଲା । ତହୁଁ ଏହି ସୁଦୁଷ୍କର କାର୍ଯ୍ୟରେ ହସ୍ତକ୍ଷେପ କଲି ।

ମୂଳ କବିତା ବା ଗୀତ ଯେତେ ଅଧିକ ସୁବିଦିତ ହୋଇଥାଏ, ତାର ନକଲ ସେତେ ଅଧିକ ଆମୋଦ-ଦାୟକ ହେବାର କଥା । ନକଲର ଉଦ୍ଦେଶ୍ୟ ଭାଷାବୃତ୍ତିଦ୍ୱାରା ହାସ୍ୟରସର ଅବତାରଣା କରି ସାମାଜିକ ଦୁର୍ଗତି ପ୍ରତି କଟାକ୍ଷପାତ କରିବା । କୌଣସି ଉଚ୍ଚ ଗୌରବାନ୍ୱିତ ରଚନାର ସମ୍ପର୍କ ଥିବା ହେତୁ ନକଲ ପ୍ରତି ପାଠକଙ୍କର ସ୍ୱତଃ କୌତୂହଳ ବୃଦ୍ଧି ପାଇବା ସ୍ୱାଭାବିକ । ଅବଶ୍ୟ କୌଣସି କୌଣସି ନିକୃଷ୍ଟ ଲେଖାର Parody ଲେଖି କବି ବା ଲେଖକଙ୍କୁ ବିଦ୍ରୂପ କରିଯିବାର ଉଦାହରଣ ବିରଳ ନୁହେଁ । ମାତ୍ର ଏ କ୍ଷେତ୍ରରେ ସେପରି ଉଦ୍ଦେଶ୍ୟ ନାହିଁ । ବରଂ ଚମ୍ପୂ ଭଳି ଉଚ୍ଚାଙ୍ଗ ଲେଖାର ସମ୍ବନ୍ଧ ରଖି ଆପଣାର ସୁବିଧା ଉଠାଇ ନେବାର ଏ ଗୋଟାଏ ଫନ୍ଦା କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଦ୍ରୂପାତ୍ମକ ନକଲର କଥା ସ୍ୱତନ୍ତ୍ର । ବର୍ତ୍ତମାନ ନକଲରେ ହାସ୍ୟରସ ସହିତ ଆଧୁନିକତାର ଗୋଟାଏ କୌତୁକପ୍ରଦ ଚିତ୍ର ଦେବାର ପ୍ରୟାସ କରା-ଯାଇଛି । କଥାରେ କହନ୍ତି, "ନକଲରେ ଅକଲ ନାହିଁ ।" ମାତ୍ର କିଶୋର ଚମ୍ପୂ ଭଳି ପ୍ରତିଭାପୂର୍ଣ୍ଣ ଲେଖାର ଅନୁକରଣ କରିବା ସଙ୍ଗେ ସଙ୍ଗେ ମୂଳ ରୂପ ଓ ବର୍ଣ୍ଣ ରକ୍ଷା କରି ରସଭେଦ ଆଣିବା ମୋ ଭଳି ବ୍ୟକ୍ତି ପକ୍ଷରେ ଧୃଷ୍ଟତା ମାତ୍ର ।

**ଲେଖକ**

ଚଟକ ଚନ୍ଦ୍ର—ଆଧୁନିକ
ମାଷ୍ଟର ମଙ୍ଗୁ—ତସ୍ୟ ସଖା
ମିସ୍ ନବୀନା—ଆଧୁନିକା
ମିସ୍ ସ୍ୱାଧୀନା—ତସ୍ୟା ସଖୀ.

# ମଙ୍ଗଳାଚରଣ

ବିଂଶ ଶତାବ୍ଦୀର ନବ୍ୟ-ସଭ୍ୟା-ସଭ୍ୟ ଦଳ,
ହାଲ୍ ଫେସନ୍‌ର ଗୁରୁ-କାରୁ-କଳା-ବିତ୍,
ବିକାଶି ଆଲୋକ ଦେଶେ ସାଧନ୍ତୁ ମଙ୍ଗଳ,
ହାଲୁକା ବତାସେ ମାତ୍ର ମାତ୍ର ଶୂନ୍‌ଚିତ୍ ॥

ନିରଙ୍କୁଶ ସ୍ୱାଧୀନତା-ବାଦୀ ସଜା ଗଜା ନିତ୍ୟ ତାଜା ମଜା ଲୁଣ୍ଠନ-କାରୀ ଆଧୁନିକ ଓ ଆଧୁନିକାଗଣ କେଉଁଠି— ଆଉ ଆମ୍ଭ ଭଳି ପଚୁସଢ଼ା, ବୁଢ଼ାହାଡ଼ା, ଖଡ଼ାଖିଆ କବି ବା କେଉଁଠି । ଆମ୍ଭେ ଯେ ଏହାଙ୍କ ମୁକ୍ତ ବିହାର ଲୀଳା ବର୍ଣ୍ଣନ କରିବାକୁ ମନ ବଳାଇଛୁଁ, ଏଥିରେ ଆମ୍ଭ କର୍ମ୍ମକୁ ଚଡ଼ାଝଡ଼ା, ଆଖିକଡ଼ା, କାନମୋଡ଼ା ଏପରିକି ବଖତ ପଡ଼ିଲେ ଯୋଡ଼ା କୋରଡ଼ା ଛଡ଼ା ଆଉ କ'ଣ ଲୋଡ଼ା ହୋଇପାରେ ?

ତଥାପି, ଏ ଯୁଗର 'ହାଲୁକା ହାଉୟା' ଦେଶରୁ ସମସ୍ତ ରସିକ ଗ୍ରାହକଙ୍କୁ ଉଡ଼ାଇ ନେଇ ନାହିଁ ଏବଂ ବିଜ୍ଞାନ ବିଜଡ଼ିତ ହାଲ-ସାହିତ୍ୟରୁ ହାସ୍ୟରସ ଏକାବେଳେ ବିଦାୟ ଗ୍ରହଣ କରିନାହିଁ । ଏହି ଭରସାରେ ଏଭଳି ନିପଟ ତଷ୍ଟୁକୁଟାରେ ହାତ ଗୋଡ଼ ଲଗାଇଲୁଁ ।



# ଚଟକ ଚନ୍ଦ୍ରହାସ ଚମ୍ପୂ

## (କ)

କି ହେଲାରେ, କହିବି ନୁହଇ ଘରଣି ରେ ।
କାଲି ଯା କେନାଲ କୂଳେ          କଳନା କଲି ଏ ଡୋଳେ
କା'ର କଳା କନ୍ଦ୍ର ମୂରତି ରେ । ଘୋଷା ।

କହିବା କଥା ସେ ନୁହେ          କୋହରେ କଲିଜା ଦହେ
କଣ୍ଠକୁ ପକାଏ କରତି ରେ । ୧ ।

କୁକୁଡ଼ା ଚୂଳିଆ ଝେରି          କୁଚ୍ଛା କନ୍ଦର୍ପ କଳୁଷି
କିଏ ସେ ପାରିବ ବରତି ରେ । ୨ ।

କହନ ପବାଣ ସହି          କୂଦ୍ରକ ଜାଣେ କି ସେହି
କଷ୍ଟଡ଼ ପଡ଼ିଲି ଆରତି ରେ । ୩ ।

କରରେ କଲି ବନ୍‌ଶୀ          କମରେ କାଚ୍ଛେଣି କସି
କୁଦୁଥିଲି କେଡ଼େ ଫୁରତି ରେ । ୪ ।

କଳେ ଝଡ଼ିଟିଏ ଜାକି          କଟି ମଟି କରି ଆଖି
କାଢ଼ୁଥିଲି ଧୂଆଁ କି ଖତି ରେ । ୫ ।

କାମୁଡ଼ ତା କୁଞ୍ଚକାନ          କୁଣ୍ଢାଇ ଚରଣ ବେନି
କୋଡ଼ ହୋଇ ମୁଣ୍ଡ ମୁଁ ମରନ୍ତି ରେ । ୬ ।

କାନ୍ତ ବୋଲି କହିଁ କହିଁ          କାନ୍ଦିଲି କେତେ କୁନ୍ଥାଇ
କୁଆବୁଆ ହୋଇ ଫୀରନ୍ତି ରେ । ୭ ।

ରେ ସଖି, କାଲି ନବ୍ୟ ଫେସନର ମୂର୍ତ୍ତିମନ୍ତ ପ୍ରତୀକ କାନ୍ତକଳା-କୁଶଳ ସେହି କୌତୁକମୟ କମନୀୟ ରୂପ ଦେଖିଲା ବେଳୁଁ ମୋ ମନ-ମୀନ ତାଙ୍କର ବଡ଼ଶୀ ମୂନରେ ଲାଖି ରହିଛି । ନଭେଲ, ପାଠ ଶାଠ, ତାସ ଖେଳ, ରେଡ଼ିଓ ଗୀତ, ଖେଳ କୌତୁକ କିଛି ଭଲ ଲାଗୁ ନାହିଁ । ସିନେମା ବା ପାର୍କକୁ ବୁଲିଗଲେ ମଧ୍ୟ ତାଙ୍କର ସେ ରସମୟ ବିହାର ଲୀଳା ଆଖି ଆଗରେ ନାଚି ଯାଉଛି । ସଖି, ସେ କିଏ ? ମୋର ହେଲା କିସ ? ମୁଁ ଏବେ କରିବି କ'ଣ କହନି । ମିସ୍ ନବୀନାଙ୍କର ଏକଥା ଶୁଣି ମିସ୍ ସ୍ୱାଧୀନା କହିଲେ —

## (ଖ)

ଖରାପ ତୁ ହେଲୁ ରେ ।
ଖେଲା ଲେଲା ଖୋଲା ଆଖି     କି ସାହସ କଲୁରେ ।ଘୋଷା ।
ଖଣ୍ଡି ଠେଇଁ ଜାଣୁ ଜାଣୁ          ଚିଣ୍ଡି ପଠାଇଲୁ ରେ,
ଖଚଡ଼ା ଜଣେ ଗୁପତ          ବାଟ ବତାଇଲୁ ରେ । ୧ ।
ଖଟା ଖାଇ ଜ୍ୱର ପେଟେ          ପୀଳେହି ପାଳିଲୁ ରେ,
ଖଇରୁ ଝାଡ଼ାରେ ଖୀର—     ଖେଚଡ଼ି ଗିଳିଲୁ ରେ । ୨ ।

ଖନ୍ଦା ଖୋଳି ଖସ୍ପିରେ ତୁ          ଖାଣରେ ବୁଡ଼ିଲୁ ରେ,
ଖଲ ଖଲ ହୋଇ ଗୃଳି          ଖସଡି ପଡ଼ିଲୁ ରେ । ୩ ।

ଖପରାକୁ ଖାଣ୍ଟି ଟଙ୍କା          ବୋଲି ଯା ବାଛିଲୁ ରେ,
ଖରାକୁ ଖାତର ନୋହି          ଖେମଟା ନାଚିଲୁ ରେ । ୪ ।

ଖଡ଼ିକା ଧରି ନ ଜାଣି          ଖଣ୍ଡା ତୁ ଧଇଲୁ ରେ,
ଖଟ ଗୁଡ଼ ଖଟଗଦା          ଆବୋରି ଶୋଇଲୁ ରେ । ୫ ।

ଆଗୁ ହୋଇଛୁ । ବେଶ୍ ହୋଇଛି, ଠିକ୍ ହୋଇଛି । ତୁ ଯେପରି କାମ କଲୁ ସେହିପରି ଫଳ ପାଇଲୁ । ଜାଣୁଁ ଜାଣୁଁ ବଳୁଆ ବସାରେ ହାତ ଦେଇଛୁ, ଏବେ ତାର ଦାଉ ସମ୍ଭାଳ । ତୁ କ'ଣ ଜାଣୁ ନା ଯେ ସେ ଉତ୍କଟ ଆଧୁନିକତାର ଆଧାର ଓ ଆଦର୍ଶ ଏବଂ ଗ୍ଲେଟରୀ ଗ୍ଲେକରୀ ଦଳର ଅଧିନାୟକ । ତାହାର ଚାଲରେ ପଡି କେତେ ଆଧୁନିକା ନବୀନାଙ୍କର ମତିଗତି ବିଗିଡ଼ି ଗଲାଣି ! ତୋର କଣ ଯେ ହେବ ମୁଁ କିଛି ଉପାୟ ଦେଖି ପାରୁ ନାହିଁ ।

ଏହା ଶୁଣି ନବୀନା ଅଧିକତର ବ୍ୟସ୍ତ ହୋଇପଡ଼ି କହିଲେ—

## ( ଗ )

ଗଲାଣି ତ ଗଲା କଥାରେ ସଙ୍ଗାତ ଗଲାଣି ତ ଗଲା କଥା,
ଗୁପୁଚୁପିଆକି ଗପିଲି ଗେହ୍ଲାଇ ଗଣ୍ଠି ହୋଇବାର ବଥା ।୧।
ଗଣ୍ଡାଠାରୁ ମୋଟ ଗମ୍ଭୀର ତୋ ପେଟ ଗଜର ଉଠୁଛି ସ୍ନେହ,
ଗୋଡ଼ ଖସି ଗଡ଼ ଗାତେ ଗଲି ପଡ଼ି ଗୁଣ୍ଡି ପାନ ଖଣ୍ଡେ ଦିଅ ।୨।
ଗଞ୍ଜାଇକି ଦଳି ଗୁଲି ତହିଁ ଗୋଳି ଗିଳି ଦେଇଛନ୍ତି ଜାଣ,
ଗିଡି ଗିଡି ହୋଇ ଗାତର ଜଳଇ ଗିଲାସେ ସରବତ୍ ଆଣ ।୩।
ଗଳା ଚୁରି ଯେତେ ଗୁଞ୍ଜି ତୋହ ହାତେ ଗୁହାରି କରୁଛି ସହି,
ଗୋଳିଆ ଗଳିକି ଗଲିତକୁ ତେଜି ଗତି ବାଟ ଦିଅ କହି ।୪।
ଗମ ଗମ ଝାଳ ଗଡ଼େ ନାଳ ନାଳ *ଗଇଫ୍ କଲାଣି ବାଇ,
ଗୁମ୍ଫାରେ ଗଳିବି ଗହନକୁ ଯିବି ଗୁଣ୍ଡାଏ ପଖାଳ ଖାଇ ।୫।
ଗୁରୁଜନ ଯେବେ ଗୋଡ଼ାଇବେ ତେବେ ଗାଡ଼ିରେ ଟିକଟ କାଟି
ଗଣ୍ଠି ରି ଗୋଟାଇ 'ଗାନ୍ଧିଜୟ' ଗାଇ ଗୁମ୍ ହେବି ଛୁଟିପିଟି ।୬।

* ଗଇଫି — ଆଳସ୍ୟ ।

ଯାହାତ ହେବାର ହୋଇ ସାରିଲାଣି । ସେହି କଥାକୁ ଆଉ ଘଷି ମାଜି ବଖାଣି ହେଲେ ଫଳ କଣ ସଖି! ତୁହି ଏକା ମୋର ନନ୍ଦନ ସାଙ୍ଗ ବୋଲି ଭାବିଥିଲି ମନ କଥା ତୋତେ କହିଲି ସିନା ! ଏବେ କିଛି ଉପାୟ ଥିଲେ କର୍ । ମୋ ଇଜ୍ଜତ ମହତ ରକ୍ଷା ହେଉ । ତୋଠେଇଁ ମୁଁ ଏକମାତ୍ର ଭରସା ରଖିଛି ।

ଏହା ଶୁଣି ସ୍ୱାଧୀନା ଭାଷିଲେ —

( ଘ )

ଘେନାଇ ଆମ୍ଭେ ଯେତେ କହିଲୁ ଗୋ,
ଘେନିଲୁ ନାହିଁ ଘୁଣେ ପହିଲୁ ଗୋ । ଘୋଷା ।

ଘିଅ ଘଡ଼ିକ ସଖି ଘସି ନଆଁରେ ରଖି
ଘିସିର-ଦେହା ଏହା ସହିଲୁ ଗୋ ।୧।

ଘୋର ଶିଶିର କାଳେ ଘୋଡ଼ାଇ କାନ ଫାଳେ
ଘୃଣା ନ କରି ଘାଣ୍ଡେ ଶୋଇଲ୍ ଗୋ ।୨।

ଘାସ ବାଡ଼କ ଗୁଡ଼ ଘୁଅରେ ମୁହଁ ମାଡ଼
ଘୁଷୁରି ପରି ଘାଣ୍ଟି ହୋଇଲୁ ଗୋ ।୩।

ଘୋଳ ଦହିରେ ମହି ଘମାଏ ପାଣି ଦେଇ
ଘୋର କର୍ପୂର ତହିଁ ପିଇଲୁ ଗୋ ।୪।

ଘଣ୍ଟା ଯୋଡ଼ାଏ ହୋଇ ଘମାଇ ଥିଲୁ ତୁହି
(ଦେଶୁ) ଘୋସଡ଼ା ଝଣା ନୋହି ଝଡ଼ିଲ୍ ଗୋ ।୫।

ଘେନ ଆମ୍ଭ ବଚନ ଘାଟବାଟ ମୁହଁ ଧନ
ଘୁରି ଆସିବୁ ସଜ ହୋଇଲୁ ଗୋ ।୬।

ଘେନା ଘେନ କରକ ଘଟି ଦୁଇ ସରକ
ଘଉଡ଼ି ଆଣିବାକୁ ରହିଲୁ ଗୋ ।୭।

ସେହି କଥା ତ ଗଲା ନାହିଁ । ଆଗରୁ ଏତେ ହୁସିଆର କରାଉ କରାଉ ମୋ ବୋଲିତ ମାନିଲୁ ନାହିଁ । ବିଛା ମନ୍ତ୍ର ନ ଜାଣି ସାପ ଗାତରେ ହାତ ଦେଲୁ । ହଉ, ତୋ ଅବସ୍ଥା ଦେଖି ମନ ବଡ଼ ଘାଣ୍ଟି ଚକଟି ହେଉଛି । ତୋହର ପାଇଁ ଥରେ ଚେଷ୍ଟା କରି ଦେଖେଁ — ମୋର ଖୁବ୍ ବିଶ୍ୱାସ କାମଟା କଉଁ ବାଟରେ ହେଲେ ମୁଣ୍ଡ ଲାଗିଯିବ ।

ଏହା କହି ସ୍ୱାଧୀନା ତତ୍କ୍ଷଣାତ୍ ଚଟକ ଚନ୍ଦ୍ରଙ୍କ ଠାକୁ ଚାଲିଲେ ଓ ତାଙ୍କୁ ନିର୍ଜନରେ ପାଇ ଏମନ୍ତ ବୋଇଲେ—

( ଙ )

ନୂଆ ନଟପଟିଆ ଲମ୍ପଟ ହେ, ନାହିଁ କ ଶ୍ରୀଅଙ୍ଗ ସୁଖ ।
ନିହାତି ନିସ୍ତେଜ ଦିଶୁଛି ଆଜ କଲେଜ ନେଫଡ଼ା ମୁଖ ॥ ଘୋଷା ।

ନାକରୁ ସିଙ୍ଘାଣି ବହେ କଞ୍ଚା ପାଣି ପରି ହୋଇ ସଡ଼ ସଡ଼,
ନେତ୍ର କୋଣେ ଛୁ ଛୁ ନେଞ୍ଜରା ଲାଗିଛି ନୁଙ୍ଗୁରା ଦିଶୁଛ ବଡ଼ ।୧।

ନଖ ଯୋଡ଼ିକରୁ ନିଗିଡ଼ିଲ ଗୁରୁ ନେଳ ନେଳ ନଳାପାଣି,
ନଳୀ ଗୋଡ଼ ଦୁଇ ନହସି ପଡ଼ଇ ନଡ଼ବଡ଼ିଆ ସେ ଠାଣି ।୨।

ନିଦ ନାହିଁ କରେ ନିଆଁ ନୟନରେ ନାଳି ନାଲି ଦିଶେ ଅତି,
ନିଶାଖୋର ପରି ନିଇଁ ନିଇଁ କରି କରୁଛ ନିଧୀର ଗତି ।୩।

ନିୟମ ଦେଉଛି ନେହୁରା ହେଉଛି ନିକୁଣା(nasty)ଟୋକାଙ୍କ ମେଳେ
ନିତି ନିଶାକାଳେ ନିଗୁଟିଆ ଥଳେ ନ ବୁଲିବ କେତେବେଳେ ।୪।

ନିଲଠାଙ୍କ ଭଳି ନାଳକୂଳେ ଚଳି ନ ହେବଟି ନିରପର,
ନବ୍ୟା ନାଗରୀଙ୍କି ନିରେଖି ଉରିକି ହେବ ନିମୋନିଆ ଜର ।୫।

କହେ, ନବ ନାଗର ନବୀନ କିଶୋର, ଆଜ ତ କାହିଁକି ବଡ଼ ହାଲିଆ ଦିଶୁଛ ? ସାରା ରାତି ଉଜାଗର ହୋଇ କାକରରେ ବୁଲିଛ ପରା ! ଖବରଦାର୍, ଏ ଭଳିଆ କାମ ଆଉ କର ନାହିଁ—ପଛକୁ ଦଗାରେ ପଡ଼ିଯିବ ଏକା । ପଗୃରେଁ — ଏକୁଟିଆ ଏଠି କଉଁ ଅନିଶାରେ ଝାକିଛ ଦିଲ୍ !

ସ୍ୱାଧୀନାଙ୍କର ଏହି ଭାଷଣ ଶୁଣି ଚଟକ ଚନ୍ଦ୍ର ଥମ ଥମ ହୋଇ କହିଲେ—

(ଚ)

ଚୁହିଁ ଚୁହିଁ ତୋ ସରଣୀ କୁକୁଭକୁ ରେ ଚେହେରଣୀ
ଚଣା ମୁଁ ଚେହେବାଉ ଥିଲି ବସି,
ଚରଣେ ଚପୁଲି ଚଟି ଚକ୍ଷୁରେ ଚଷମା ଆଣ୍ଟି
ଚଟକରେ ଚୁହିଁଦେଲୁ ହସି, ରେ ଛଳି ଆଖି,
ଚଙ୍ଗୁଡ଼ି ଶୁଖୁଆର ଚଟିଣୀ
ଚପୁଡ଼ି ପିଆଜ ଜରା ପାଣି,
ଚଉଳାଏ ଚହ୍ଲା ଦେଇ ଚିମୁଟେ ଲୁଣ ପକାଇ
ଚଖାଇଲୁ ପଖାଳ ତୋରାଣି ରେ । ୧ ।

ଚୁଗୁଲି ଚଳାଇ କେତେ          ଚୁକୁଳି ଚହଲୁ ଯେତେ
ଚହଲଇ ଚଉଦ ଭୁବନ,
ଚେଙ୍କା ଚୂନକାଳି ମାରି          ଚୁପୁଡ଼ା ଚଢ଼ାଇ ଚୁରି
ଚୁଟି କାଟି ଦ୍ୟନ୍ତୀ ଆନ ଜନ, ରେ ଚଆଁ ମାରି,
ଚେଙ୍ଗ ଚତୁସ୍ପ ଚୋ ବ୍ୟଙ୍ଗାବଳି
ଚକ୍ରପାଣି ଠାରୁ ଗଲି ବଳି,
ଚଢ଼ା ସଙ୍ଗେ ଚନ ଗୋଳି          ଚକଟି ଚମ୍ପା କଦଳୀ
ଚାଟିବା ସୁଖକୁ ଗଲି ବଳି ରେ । ୨ ।

ଚେଚର ଚପଟିଙ୍କ ମେଳେ          ଚାହା ଚେଷ୍ଟୁ ସଞ୍ଜବେଳେ
ଚନା ବାଦାମର ଚାଟ୍ ଚୁପୁ
ଚଣ୍ଡୁ ଚଉରସ ଚୁଲି          ଚହ୍ଲୁ ନାହିଁ କେଉଁ ଭଲି
ଚୂରୁଟ ଚମ୍ପିଣ ଚାଖି ଆପୁ, ରେ ଚଙ୍ଗଚଙ୍ଗୀ,
ଚହ୍ନିକିତ ନାହିଁ ମୁହିଁ ଲେଶ
ଚେଚ୍ଚେଷ୍ଟା ଅଛି ଚଉକସ,
ଚପରସି ବୋଲି ଜାଣି          ଚଳି ଚଢ଼ି ନୋହି ରାଣୀ,
ଚହଟା ଚନାଏ ଚେଚର ହସ ରେ । ୩ ।

ଅୟି ସ୍ୱାଧୀନେ, ମୁଁ ମନେ ମନେ ତୁମ୍ଭଙ୍କୁ ଖୋଜୁଥିଲି । ମାତ୍ର ତୁମ୍ଭେ ଆସିଲା ମାତ୍ରେ ଯେପରି କଥା କହିଲ, ତାହା ସହିବାର ନୁହେ; ତଥାପି ସେହିପରି ବେଳକାଳ ପଡ଼ୁଛି ମୋ ପରା ବ୍ୟକ୍ତି ସହି ଗଲି । ମୋ ଦେହ ସକାଶେ ତୁମ୍ଭେ ଯେ ଏତେ ବ୍ୟସ୍ତ ହେଉଛ, ତାର କୌଣସି କାରଣ ନାହିଁ । ସବୁ ଦିନେ ମୋ ପ୍ରତି ଏହିପରି ଟିକିଏ ସୁଦୟା ରଖି ଥିଲେ ହେଲା ।

ଏହା ଶୁଣି ସ୍ୱାଧୀନା କହିଲେ—

(ଛ)

ଛଳ ବାହିମାର ହେ          ଛାଡ଼ ଏ ସାହସ ହେ । ୧ ।
ଛଟକ ଛାଉଁଳି ରଖ          ଛତିଆ ଦିଶେ ତ ମୁଖ । ୨ ।
ଛେକ ଛେକ ମାରି ହାଇ          ଛିଙ୍କୁଛ ଛାତି ଥରାଇ । ୩ ।
ଛଳ ଛଳ ଦିଶେ ଆଖି          ଛେପ ତ ଯାଉଛି ଶୁଖି । ୪ ।
ଛୁଞ୍ଚି-ମୁହାଁ ଯାକ ଯେତେ          ଛତର ଅଟନ୍ତି ତେତେ । ୫ ।
ଛେଉଣ୍ଡ ଛୋକରଙ୍କର          ଛୁଟୁଛି କା'ରେ ନାହିଁ ଡର । ୬ ।
ଛେକା ପରି ଛାଟ ପିଟି          ଛାଲି ଦିଅନ୍ତି ସେ ପିଠି । ୭ ।

ହେ ଶଠ, ମୋ ସାଙ୍ଗରେ ଚାଲାକି ଚଳିବ ନାହିଁ କହି ଦେଉଛି । ମୁଁ ସବୁ କଥା ଜାଣେଁ । ସରଳା ନବବାଳାମାନଙ୍କୁ ଦହଗଞ୍ଜରେ ପକାଇ ଆପେ ଭଲ ମଣିଷପଣିଆ ଦେଖାଇ ହେଉଛ ପରା ! ଭଲ ଗନ୍ତି ଅଛି ତ ସାଫ୍ ସାଫ୍ ସିଧା ହୋଇ ଚାଲ । ଲୁଚା କଥା ଗୁଡ଼ାକ ଭଲ ନୁହେ ।

ସ୍ୱାଧୀନାଙ୍କର ଏକଥା ଶୁଣି ଚଟକଚନ୍ଦ୍ର ବିକଳ ହୋଇ କାହିବାକୁ ଲାଗିଲେ—

(ଜ)

ଜାଣିଛି ଏତିକି ମାତ୍ର ଆରେ ସଖି ଯାହା ଇଚ୍ଛା ଏବେ ତାହା କର
ଜ୍ୱର ଜ୍ୱର ପରି ଲାଗୁଛି ତ ଘରି ଜଲ୍‌ଦି କରି କପେ (୧) ଚାହା କର ॥
। ଘୋଷା ।

ଜଣ କେତେ ଇୟାର (୨) ଟୋକା ସାଙ୍ଗ କରି
ଯାଇଥିଲୁ ସିନେମାକୁ (୩) ଫୁର୍ତ୍ତି ମାରି,
ଜ୍ୱଳିବାରୁ ପେଟ ହୋଇ ଛଟପଟ ଖାଇ ବିସ୍କୁଟ (୪) ହେଲି ପାର ।
ଜାମ୍ବୁକୋଳି ବର୍ଣ୍ଣି ଏକ ନବ୍ୟ ବାଳା
ମଟର ମଧ୍ୟରେ ଭେଟିଲି ମୋ ଢୋଳା,
ଜହ୍ନରାତି ଭଳି ଉଠୁଥିଲା ଝଳି ବିଜୁଳି ବନ୍ତରେ ଦାନ୍ତ ତାର ।
ଜରି ଧଡ଼ଦାର ଜର୍ଜିଏଟ (୫) ଶାଢ଼ୀ
ଜଡ଼ି ପିନ୍ଧିଥିଲା ଅଙ୍ଗକୁ ସଜାଡ଼ି,
ଜୋତା ତଳେ ତାର ମଥା ରଖି ମୋର ଯାପନ୍ତିକ ଜନ୍ମ ଜନ୍ମାନ୍ତର ।
ଜୋକ ଭଳି ତାର ଗାଡ଼ି ଚକ ତଳେ
ଲାଖି ରହିଲା ମୋ ଆଖି କୁତୂହଳେ,
ଜଡ଼ା ହୋଇଯାଇ ମାରିହେଲି ହାଇ ତା ମୁଖକୁ ଚାହିଁ ବାରବାର ।
ଜିଗରରେ (୬) ଲାଗିବାରୁ କଣ୍ଟିବାଣୀ
ପେଟ କଥାଟିକ କହିଲି ବଖାଣି,
ଜାଣି ଶୁଣି କରି କରୁ ଏତେ ସରି ଜୀବ ଯିବାବେଳେ ଯାହା କର ।

(୧) Cup          (୨) ସାଙ୍ଗ          (୩) Cenema
(୪) Biscuit          (୫) Japanese          (୬) ପ୍ରାଣରେ

ତୁମ୍ଭଠାରେ କିଛି କଥା ଲୁଚାଇବି ନାହିଁ ସଖି ! ଦିନେ ସନ୍ଧ୍ୟା ବେଳରେ ବାୟୋସ୍କୋପ ଭବନ ଆଗରେ ମଟର ଗାଡ଼ିରେ ବସିଥିବା କୌଣସି ବାଳାର ଛଟକ ଓ ଫେସନ ଚାତୁରୀ ଦେଖିଲା ଦିନରୁ ମୋ ଦେହଟା ଏପରି ହେଉଛି । ସବୁବେଳେ ଡାଆଣୀ ଗ୍ରାସିଲା ପରି ଲାଗୁଛି । ତୁମ୍ଭେ ଯଦି ଗୁଣିଆ ହୋଇ ଝାଡ଼ ଫୁଙ୍କ ନ କରିବ ତେବେ ମୋର ଆଉ କିଛି ଉପାୟ ନାହିଁ ।

ଏହା ଉତ୍ତରରେ ସ୍ୱାଧୀନା କହୁ ଅଛନ୍ତି —

( ଝ )

ଝଗଡ଼ ମାନ ହେଲୁରେ ଝେଲୁ ।
ଝୁଣ୍ଟି ଝାମା ଗୋଡ଼ ରଗଡ଼ ଦେଲୁ ॥
ଝିଙ୍କା ଝିଙ୍କି କରି ନୋହିବ ଫଳ ।
ଝଟା ପଟା ଲଗି ହଟିବ ବଳ ॥
ଝୁଙ୍କ ଛାଡ଼ ଏବେ ମୋ ବୋଲ କର ।
ଝୁଟା କଥାକୁ ତୁ ମନେ ନ ଧର ॥
ଝାଳ ବୁହା ସିନା ହୋଇବ ସାର ।
ଝରିବ ଆଖିରୁ ଲୋତକ ଧାର ॥
ଝାଞ୍ଜିବ ମୁହଁକୁ ନାହିଁ କି ଲାଜ ।
ଝିଟପଣ ଏବେ ଝଟିତି ତେଜ ॥
ଝୁଣା, ପଣା, ବଳୀ ମନାସ କଲେ ।
ଝାଡ଼ଖଣ୍ଡି ଦୟା କରିବେ ହେଲେ ॥

ହେ ନାଗର, ତୁମ୍ଭେ ବୃଥାଟାରେ ତୂଳା ପଟରେ ମୁଣ୍ଡ କଚାଡ଼ ହେଉଛ ସିନା । ସେ ଯେଉଁ ଭଲ ଜହର ଟୋକୀ, ଆମଘର ଲୋକ କ'ଣ ତାଙ୍କୁ ମଙ୍ଗାଇ ପାରିବ ? ମୁଁ କହୁଛି ସେ ଆଶା ଛାଡ଼ିଦିଅ । ସେହିପରି କୁଚ୍ଛ୍ର ସାଧନ କରି କରି ଚଣ୍ଡୀ ଗୃହଣ୍ଡୀଙ୍କୁ ସନ୍ତୋଷ କରି ପାରିଲେ କେଜାଣି କଣ ହୋଇପାରେ ଅବା !

ଏହା ଶୁଣି ଚଟକଚନ୍ଦ୍ର ପୁଣି କହିଲେ —

( ଞ )

ନ ଭଙ୍ଗ ରେ ଶୃଙ୍ଗୀ ଭଙ୍ଗୀ ଘରଣି ନୁଅ ସାହା,
ନାଉରି ନୋହିଲେ ତୁହି ନହାତ ଜାଣିଥା ସହି
ନଡ଼ବଡ଼ ହୋଇଯିବ ନାହା ।୧।
ନାକରୁ ଗଡ଼ିଲା ପାଣି ନଜକର ବୋଲି ଜାଣି
ନଗାଡ଼ ପିଆଅ ଟୋପେ ଗୃହା ।୨।
ନଶାକାଳେ ଥରେ ତାକୁ ନବେଳାରେ ଭେଟିବାକୁ
ନଠାଇ ବଚାଇ ଦିଅ ବାହା ।୩।
ନଷ୍ଟପୁ କହିଲି ତୁଣ୍ଡେ ନାଗରି ବଜାଇ ଦାଣ୍ଡେ
ନହାଉ ହୋଇଲେ ହେବ ବାହା ।୪।

ତୁ ଯେତେ ଯାହା କହିଲେ ତୋତେ ଛାଡ଼ୁଛି କିଏ ? ଏକମାତ୍ର ତୋହରି ଜରିଆରେ ମୋ କାମ ହାସଲ ହେଲେ ହେବ । ମୁଁ ତ ଏପରି ଝଙ୍କମାରି କରି ସାରିଛି । ଏତେବେଳେ ଆଉ ମଝିଦରିଆରେ ଭସାଇ ଦେ ନା—ସଖି, ମୁଁ ଜବାବ ଦେଉଛି ତୁ ଯାହା କହିବୁ ତାହା କରିବ ।

ଏହା ଶୁଣି ସ୍ୱାଧୀନା କହିଲେ —

( ଟ )

ଟଙ୍କାରିକ ଶ୍ରବ ସରିକ ବାସବ କୋଦଣ୍ଡରୁ ଚଣ୍ଡ ଧନୁ,
ଟାଣ କରି ଏକା କାମ ମାରେ ଟେକା ତୁମ୍ଭଙ୍କୁ କି କଳା ହନୁ । (ଘୋ)
ଟେରେଇ ଟେରେଇ ଗୃହ୍ଣ୍ଟ କରେଇ ଟିକିଏ ନାହିଁକି ଡର,
ଟାକି ଅଛ ବୃହିଁ ଟେକି ନେବା ପାଇଁ ଟୋକାକୁ ଆପଣା ଘର ! ॥
ଟାଉଟର ପରି ଟାହୁଲ ଟାପରା କରୁଅଛ ଟାଲ୍ ମାରି,
ଟଳିବା ପାତର (ସେ) ନୁହଇ ମାତର ଜାଣିଥାଅ ଭଲ କରି ॥
ଟାଉଟର ହୋଇ କେତେ ଯାଅ କହି ଟୁଙ୍ଗାରି ଟୁଙ୍ଗାରି ମୁଣ୍ଡ
ଟିପି ଦେଲେ ସେହି ଟାକୁଆ ଗାଲକୁ ଫିଟିବ ନାହିଁଟି ତୁଣ୍ଡ ॥

ସେ ତ ବେପର୍ଦ୍ଦା ଆଧୁନିକା କଣୋଖି—ତାକୁ ହାଟ ବଜାରରେ କିଏ ବା ଦେଖୁ ନାହିଁ ? ଥରେ ମାତ୍ର ଦେଖି ତୁମ୍ଭ ବୁକୁରେ କାହିଁକି କାମବାଣ ବିନ୍ଧ ହୋଇଗଲା ? ମାତ୍ର ତୁମ୍ଭେ ଯେଉଁ ମନ୍ତଲବ ଆଣିଛ ତାହା ସଫଳ ହେବ ନାହିଁ, ଜାଣିଥା—କାରଣ ତା ଆଗରେ ତୁମ୍ଭେ ଅତି ନଉଛୁଣା, ହୀନମାନିଆ ।

ଏହା ଶୁଣି ଚଟକଚନ୍ଦ୍ର କହିଲେ —

( ଠ )

ଠିକ ଠବର୍ତ୍ତୁଳ ଚନ୍ଦ୍ରାନନା ତୋ ଠଉରେ,
ଠୋଠକ ଭାବ ରଖି ଠେସି ନ ଦେଇଣ ସଖି
ଠାବ ଦେଇ ଥିବୁଟିକ କଣ୍ଠରେ । ୧ ।
ଠଣ ଠଣିଆ ଚଟିରେ ଠୁକରି ମାରି ପିଠିରେ
ଠେଲି ଦେବା ହୋଇବକି ଉଚିତରେ ?
ଠିଆ ହୋଇ ମୋହ ପାଇଁ ଠାରି ଦେଲେ ଠଉରାଇ
ଠୁଳେ ପୁଣ୍ୟ ଯିବ ନାହିଁ ପଚାରେ ॥
ଠେକୁଆ ସରିକ ମୋତେ ଠକବୃଟି ଯେବେ ସତେ
ଠେଙ୍ଗାରେ ଠୁଙ୍କାଇ ଦେବ କୋଉ ତରେ ॥

ରସଗୋଲା ପରି ବର୍ତ୍ତୁଳ ତୋର ବଦନ ଦେଖି ମୁଁ ଭାବିଥିଲି କି ତୁ ସେହି ଭଳି ସରସ ଓ ମଧୁର ; ତୁ ଇଚ୍ଛା କଲେ ନଷ୍ଟପୁ

ମୋର କାମ ହୋଇଯାଆନ୍ତା । ଚୋର ବା ଚହିଁରେ ହାନ କସ ହୁଅନ୍ତା ? ମାତ୍ର ଏକ୍ଷଣି ଚୋର ଭାବ ଦେଖି ମୁଁ ଜାଣୁଛୁ କ ମୋତେ ହାଲପଟା କରିବା ମାନସରେ ତୁ ଗୋଡ଼ ଲମ୍ବାଇ ବସୁଛୁ । ଜାଣିଛୁ ତ ବଜାରି ଗୁଣ୍ଡାଦଳ ଆମର ଅଛନ୍ତ ; ଆମେ ଯେତକ ଭଲ ତେତକ ମନ୍ଦ । ସାରା ବାପର ନୋହୁ । ଆମ ସଙ୍ଗରେ ଚଲାକି କଲେ ମଜାଟା ବୁଝାଇ ଦେବୁ ଏକା ।

ଏହା ଶୁଣି ସ୍ୱାଧୀନା ଫଁ ଫଁ ଗର୍ଜି ଉଠି ବକବାକୁ ଲାଗିଲେ —

( ଡ )

ଡର ନାହିଁ କ ହେ ପର ତରୁଣୀ ହରଣୁଁ
ଡାକ ହାକ କରି ଡକାଇତ ପରି ଧରି ନେବ ଘରକୋଣୁଁ । ଘୋଷା ।

ଡମା ଡମା ଆଖି ଦେଖାଇ ହେଉଛ ମୁହଁରେ ଦେଇଛ ଶାଣ
ଡମ୍ଫା କଥାରେ ମୁଁ ଡରିବା ପାତର ନୁହଇ ମାତର ଜାଣ ॥

ଡଙ୍କିଏ ଡଙ୍କିଏ ଶୀତଳ ଖାଇବା ଉଚେ ତତଲ ଜାଉ
ଡାହାଣୀଙ୍କ ଭଳ ଡବଡବ ହୁଅ ଗିଳିବାକୁ ଟାଉଟାଉ ॥

ଡେଙ୍ଗା ମୁଣ୍ଡ ଫାଟି ମାଟି ଖାଇଯିବ ବସି ଯାଇ ଠେଙ୍ଗାମାଡ଼
ଡଆଁ ମାରି ଖାଣ- ଭିତରେ ପଡ଼ିବ ଭାଙ୍ଗିବ ଠେଙ୍ଗଣି ହାଡ଼ ॥

ଡ୍ୟାମ୍, ବ୍ଲଡ଼୍‌କେଲ୍ ପିଙ୍ଗଳ କୋଡ଼ରେ ପଡ଼ି ହେବ ହରବର
ଡେପୋଟିଙ୍କ ଆଗେ କହି ଏଇଲାଗେ ଠୁକି ଦେବ ମାମୁଁଘର ॥

ଡୋରି ବନ୍ଧାହୋଇ ଯୋଡ଼ି ବେତ ଖାଇ ଟାଣିବାକୁ ହେବ ଘଣା
ଡାଲି ଭାତ ପରି ଡାକ ମାରିଲାଣି ପଡ଼ୁନୁହଇ ମୋତେ ଜଣା ॥

ମୋତେ କଣ ସାଧାରଣ ମଫସଲି ମାଇକିନିଆ ଜାଣି କରି ପାଇଛୁ ଯେ ମୁଁ ତୁମ ଭୂରୁଡ଼ିରେ ଡରିଯିବି ! ସେ କାଳ ପଖାଳକୁ ବାଘ ଖାଇଲାଣି । ଖବରଦାର୍, ସେ ଭଳ ଢଙ୍ଗର ପଣ ଗୁଡ଼ ଦିଅ । ଡଲେ ମାତ୍ର ବୋଆଇନ୍ କଲେ, ପୁଲିସ ହାରି ଚଲାଣ ହୋଇ ଜଅଲ ଖଟାଇ ଦେବ ଟି ।

ଏହି ପରି ସିଧା ସିଧା ଜବାବ ପାଇ ଚଟକଚନ୍ଦ୍ର ଦେଖିଲେ ଯେ ଏଠାରେ କେବଳ ଧମକାଣରେ ଫଳ ହେବ ନାହିଁ । ଏଣୁ ନରମ—ଗରମ ମିଶା ମିଶି ଏହି ବାଣୀ ବଖାଣିଲେ —

( ଢ )

ଢାଳେ ତ ଢାଳିଲୁ ନାହିଁ କୃପା-ସୁଧା ଝରିକ ରେ ।
ଢୋଳେ ପିଇବାର ପାଇଁ ଯେତେ ହେଲେ ହାଇଁ ପାଇଁ
ଢଳାଇ ଗୁହିଁଲୁ ନାହିଁ ପାଦ ଧରି ଧରି କ ରେ । ୧ ।

ଢାଲରେ ରଖିଛୁ ଢାକି ଢେଙ୍କଇ ମାଲକୁ ଗୁଙ୍କି
ଢୋକେ ଚହୁଁ ଦେଲେ ଫିଙ୍ଗି କସ ଯାନ୍ତା ସରି କ ରେ । ୨ ।

ଢେମେଣୀଙ୍କ ପରି ସଖି ଢଗ ମେଲୁ କାଢ଼ି ଆଖି
(ଢୋ) ଢେଙ୍କୀକୁଟା ଗୀତ ଦେଖି ଗଲି ଏକା ଡରି କ ରେ । ୩ ।

ଢିପାଳ ଗଣ୍ଡାଏ ଦୁଇ ପିଠିରେ ଦେଲେଟି ଥୋଇ
ଢମ ଯିବ ଥଣ୍ଡା ହୋଇ ଗରମଟା ଜରି କ ରେ । ୪ ।

ସଖି, ମୁ ନିରୁପାୟ ହୋଇ ତୋହରି ଶରଣ ନେଇଛୁ ବୋଲି ସିନା ତୁ ମୋ' ପରେ ଏଡ଼େ ନିର୍ଦ୍ଦୟା ହେଉଛୁ । ତୁ ଯାହା କହ ପଛକେ ସବୁ ତୋ ହାତର କଥା—ଆଖି କଣରେ ଟିକଏ ଗୁହିଁ-ଦେଲେ କାମ ଫତେ ହୋଇଯିବ । ମାତ୍ର ତୁ ଇତର ଲୋକଙ୍କ ପରି ହାତ ଗୋଡ଼ ଘୁଞ୍ଚି ମୋ ଉପରେ ଜମ୍ପମାନ ହେଉଛୁ ! ମାଇକିନା ଜାତିର ସ୍ୱଭାବ ଏଇପରି ନା କ'ଣ ? କହିବୁ ତ ଏଇଲାଗେ ଦେଖିଲି କାମ କରିଦେବି ।

ଏହି କଥା କହି ଚଟକ ଚନ୍ଦ୍ରକୁ ଲୁଗା ସମଟି ହେବାର ଦେଖି ସ୍ୱାଧୀନା ପାଣି ହୋଇଯାଇ କହିଲେ —

( ଣ )

ଅମାବାସ୍ୟାଇନ୍ଦୁ ପ୍ରିୟବନ୍ଧୁ ହେ, ମୁଁ ଗଲି ଟି !

ଅଣ୍ଟା ଭିଡ଼ି ଏଇ ସାଥେ ଆଣ୍ଠୁରେ ଧରି ତା ହାତେ
ଆଣିବି ମଙ୍ଗାଇ ତାକୁ ଏ ଜବାବ ଦେଲି ଟି ।୧।

ଅମଙ୍ଗ ହେବ ସେ ଯଦି ଉଆରଣ୍ଟ୍ ବଳେ ବାନ୍ଧି
ଅକ୍ତିଆର କଲେ ତାର ଦମ୍ଭ ଯିବ ହଲି ଟି ।୨।

ଅକଳରେ ପଡ଼ିଯାଇ ଆପେ ସେ ଆସିଲେ ଧାଇଁ
ଅନ୍ତର କଣେ ପାଦେ ଦେବ ନାହିଁ ଠେଲି ଟି ।୩।

ଅତର ଓ ଫୁଲହାରେ ଆରାଧନା କରି ତାରେ
ଅପରାଧ ନ ଘେନିବ କହି ଦେଲି ଖୋଲି ଟି ।୪।

ଅନ୍ୟଥା କରିବ ଯେବେ ଅପମାନ ହେବ ତେବେ
ଅଭିମାନେ ଯିବ ସଡ଼ି ସଜଫୁଲ କଲି ଟି ।୫।

ତୁମେ ଏତେ ରାଗ ହୋଇ ଗଲ ଯେ ! ମୁଁ ତୁମ ସହିତ-ଗେଲ୍ଲି ହେଉଥିଲି ମାତ୍ର । ତୁମେ ତାହା ବୁଝି ନ ପାରି ବୋକା ବନିଗଲ ଏକା । ଆସ୍ତୁ ହେଉ, ଏବେ ସ୍ଥିର ହୁଅ । ମୁଁ ଯେପରି ହେଉ ତୁମ୍ଭର ମନୋବାଞ୍ଛା ପୂରଣ କରିବି । ଏକା ସାବଧାନ, ସେ ବଡ଼ ଗେଲ୍ହେଇ

ଲବଣୀ ପିଚ୍ଛୁଳା ଅଟେ; ସେ ଆସିଲ କ୍ଷଣି ଯଥାଶ୍ରିତ ଅଭ୍ୟର୍ଥନା କରବାଟି ? ତାର ଆତ୍ମ-ସମ୍ମାନ ହାନ ହେଲେ ପୁଣି କଥାଟା ବଢ଼ିଉ ଯିବଟି !

ତଦନ୍ତ ଚନ୍ଦ୍ରଙ୍କୁ ଏହା କହ ସ୍ୱାଧୀନା ସେଠାରୁ ପ୍ରସ୍ଥାନ କର ନନ୍ଦନାଙ୍କ ନକଟରେ ଉପସ୍ଥିତ ହୋଇ କହଲେ —

(ଢ)

(ସଖି ରେ) ତୋ ଢେନ ତରକା ଟୋକା, ମୋ ମରଜ କଷିଲ ରେ
ଢଳେ ହେଲେ କାନେ ତାର (ମୋ) ଅରଜ ନ ପଶିଲ ରେ ।ଘୋ
ଢୁହା ଢୁହା ହୋଇ ଚାହ ଢୁ ଢୁ କାର କର କହ
ଢମ ଢମ ଆସି ଚଢ଼ ଦାନ୍ତେ ଦାନ୍ତେ ଘଷିଲରେ ।୧।
ଢେଜନ୍ଟା ଚାହାର ଦେଖି ଡରଛୁ ଗଲ ମୁଁ ସଖି
ଢରଟି ଦଅନ୍ତେ ଆଖି ଲାଞ୍ଜମୋଡ଼ ଖସିଲ ରେ ।୨।
ଢୁହ ତ ଡଶଲ ଜାତ ଢହିଁକ ପୁଣି ଯୁବଣ
ଢରଲ ଜାଣି ତୋ ମତ ଉଡପଡ ଧର୍ଷିଲ ରେ ।୩।
ଢୋଡ଼ମୁହାଁ ଟୋକାଟାଏ ଢାଡ଼ ଖାଇ ବୁଲୁଥାଏ
ଢୋବା ଢୋବା ! ତାକୁ କଆଁ ତୋ ମନଟା ରସିଲ ତୋ ୪।

ସଖି, ତୋ କଥାରେ ପଡ଼ ତ ତାହାଠାକୁ ଗଲ । ଯାଇ କ ହଟହଟାଟା ଶୁଣିଲି ତାହା ତୁ କେମନ୍ତେ ଜାଣିବୁ ! ଝକ୍ ମାଇଲ, ଘୁଅ ଖାଇଲ, ଆଉ ଏ ଭଲଆ କଥାରେ ପଶିବ ନାହିଁ । ପହଲୁ ସେ ମୋତେ କେତେ ବାଗରେ ପରଖି ନେଲ, କନ୍ତୁ ପରେ ନଜ ରୂପ ଦେଖାଇ ଯହିଁ କଟୁକଥା କହଲ, ଆଉ କେହ ହୋଇଥିଲେ ଦୁବ ଗଛରେ ଦଉଡ଼ ଦଅନ୍ତା । ମୁଁ ତୋଠାରେ ବେହଆ ମୁହଁ ଦେଖାଇ ବାକୁ ଆସି ଥାଆନ୍ତ ନାହିଁ; କେବଳ ତୁ ମୋର ଅତପ୍ରିୟ ବୋଲ ଭଲ କଥା ପଦେ କହ ତୋତେ ସାବଧାନ କର ଦେବାକୁ ଆସିଲ । ଛି-ଛି-ଏ ଆଶା ଛାଡ଼ ଦେ, ନୋହଲେ ପଛରେ କାନ୍ଦୁ କାନ୍ଦୁ ଦନ ସରବ ନାହିଁ । ତଚଲ ପାଣିରେ ଗୋଡ଼ ପୂରାଇଲେ କ'ଣ ହୁଏ ଜାଣିଛୁ ତ ?

ଏହା ଶୁଣିଲକ୍ଷଣି ନନ୍ଦନା ସ୍ୱାଧୀନାଙ୍କ କୋଳରେ ଢଳ ପଡ଼ଲେ ଓ ତାଙ୍କ ଗ୍ରୀବ ଉପରେ ମଥା ରଖି କହବାକୁ ଲଗିଲେ —

( ଥ )

ଥାପି ରେ କହ ଉଥାପିରେ ପ୍ରିୟସଖି, ଥିବ କ ଛାଡ଼ବ ପ୍ରାଣ ।
ଥର ଥର ହୋଇ କମ୍ପୁଅଛି ଦେହ ଥୁମ୍ପିବାରୁ କାମ ବାଣ ।୧।
ଥିର ଆଶା ରଖିଥିଲ ତୋହଠାଇଁ କରବୁ ବୋଲ ତୁ ତ୍ରାଣ ।୨।
ଥମ ଥମ ହୋଇ ଥପ୍ପ ନ ଧରୁଛୁ କଥା କହୁ ଟାଣ ଟାଣ ।୩।
ଥକାରେ ପାଉଛୁ ଶୋଇପିବ ହୋ'ଇ- ନ ପାରବ ହଇରାଣ ।୪।
ଥାକରେ ରହଛୁ ଚକଲେଟ୍ କବା ଥୋଡ଼ାଏ ତହିଁରୁ ଆଣ ।୫।
ଥୋଇଦଅ ମୋର ଥୋମଣି ଉପରେ ପକାଉଛୁ ସହ ଗୁଣ ।୬।

ସଖି, ତୋ କଥାଶୁଣି ମୋର ମରବାକୁ ମନ ହେଉଛୁ । ଭୁ ଯେତେ ନବର୍ତ୍ତଇଲେ କ'ଣ ହେବ, ଆଉ ଲେଉଟିବାର ବାଟ ନାହିଁ । ପ୍ରେମର ବାପ୍ପ ତଳ ପେଟରୁ ଉଠି କଲଜାକୁ ବନ୍ଦ ଦେଲଣି । ମୋତେ ଶାନ୍ତିରେ ମରିବାକୁ ଦଅ ସଖି, ମାତ୍ର ଯଦ ମୋର ବଞ୍ଚବା ଉଚତ ବୋଲ ମନେ କରୁ ଅର୍ଥାତ୍ ବଞ୍ଚିଲେ ମୋର ଆଶା ପୂରଣର ସମ୍ଭାବନା ଅଛୁ ବୋଲ କହୁ ତେବେ ମୁଁ ମୂର୍ଚ୍ଛା ଗଲେ କହ ରଖି-ଥାଏଁ, କଣ କରବୁ ଶୁଣ୍ । ମୁଣ୍ଡରେ ଇଉଡ ଲୋନ ଓ Ice ଢାଳବୁ । ନାକରେ Smelling salt ଶୁଙ୍ଘାଇବୁ ଓ କଛୁ ନ ହେଲେ ବ୍ରାଣ୍ଡି ଟିକଏ ଟିକଏ ଖୁଆଇବୁ । ତହିଁରେ ସୋଡ଼ା (Soda water) ଟିକଏ ମିଶାଇ ବାକୁ ଭୁଲବୁ ନାହିଁ ଟି !

ନନ୍ଦନାଙ୍କର କାକୁତ ଶୁଣି ସ୍ୱାଧୀନା କହଲେ—

( ଦ )

ରେ, ଦୁଃଖି ଧନ, ଦନ୍ତ ଦେଖିବାକୁ କଲ ଛନ,
ଦୁଃଖମୟ ନ କର ସରସ ମନ । ଘୋଷା ।
ଦ୍ୱବ ଗଲେ ମୋତେ ଦେଖି ଦୂରୁଁ ଦଉଡ଼ଲେ ହସି କୁରୁ କୁରୁ
ଦାଡ଼ିକୁ ହଲାଇ ନଶକୁ ଫୁଲାଇ କ ମଜାରେ ନଚାଇଣ ଭୂରୁ ।୧।
ଦୁମ୍ ଦୁମ୍ ହୋଇ ଚ୍ଲୁ ଚ୍ଲୁ ଦୁଲୁକଲ ଦେହ ଦାଲୁ ଦାଲୁ
ଦର ବଗଲତ ହେଲ ମୋର ନେତ୍ର ଦେଖିବା ମାତ୍ରକେ କଳା ଭାଲୁ ।୨।
ଦମାକଟା ଦବ ଗଲଣି ଟି ଦରଜ କଲଣି ଆଣ୍ଠୁ ଗଣ୍ଠି
ଦମା ଯାଏ ଫାଟି ହେଲେ ଗୁଟିପିଟି ଦୁଇ ଆଖି କର ମିଟି ମିଟି ।୩।
ଦକ ଦକ କଆଁ କରୁ ଛାତ ଦେଲୁଣି ତ ସାର ଜାତପତ
ଦୁବଦାସ ସେହ ଦାରୁ ଅଟୁ ତୁହ ଦାଉରେ ପଡ଼ଛୁ ଦନ୍ତା ହାତ ।୪।
ଦଶା ଏବେ ପାଲଟିଲ ତୋର ଦକ୍ଦାଗରୁ ତୁ ହେଲୁ ପାର
ଦହ ହୋଇ କର ଗଲୁ ଆସି ସର ଦଲଖୁସ୍ କର ଦମ୍ ମାର ।୫।
ଦାସ ପଣେ ତାକୁ ଖଟାଇବୁ ଦରକାର ଚକ ମେଣ୍ଟାଇବୁ
ଦୂତୀ ହୋଇବାର ଦସ୍ତୁରଟା ମୋର ଦାବଟା ଫାବଲ ଜାଣିଥିବୁ ।୬।

ରେ ସଖି, ତୁ ମୋର ଜୀବ ଜୀବନ; ତୋ ଦୁଃଖ କ ମୁଁ ସହ ପାରବ ! ମନ ବଢ଼ବା ପାଇଁ ଟିକଏ ଗେହ୍ଲା ହେଉଥିଲ ତୋ

ସାଙ୍ଗରେ । ସ୍ୱାଧୀନା ଯେଉଁ କାମରେ ଲଗେ, ସେ କଣ ଫେଲ୍ ମାରିବ ! କାମଟା ବିଲକୁଲ୍ ଫଏସଲ କରି ଆସିଛୁ । ଆଉ କିଛି କଥା ନାହିଁ—ଖାଲି ମୋର କମିଶନଟା କଥା ବିଚାର କରିବୁ ।

ଏହା ଶୁଣି ନବୀନା ହୃଷ୍ଟା ହୋଇ କହିବାକୁ ଆରମ୍ଭ କଲେ—

( ଧ )

ଧୀରରେ କି ଧନ ତୁ ନ ଦେଲୁ ଆଜ
ଧରି ପରି କଲେ କି ସେ ଧିଟରାଜ ? ଘୋଷା ।
ଧମକ ଦେବାରେ ସହି ଧୂରନ୍ଧର ଅଛୁ ତୁହି
ଧରାଇ ଦେଲୁ ଯା ସେହି ଧଡ଼ିବାଜ । ୧ ।
ଧରିରେ ତୋ ଠେଇଁ ମୁହିଁ ଧାରୁଆ ଗଲି ତ ରହି
ଧାନ କୁଟି ଶୁଝିବି ଏ ଋଣ ବ୍ୟାଜ । ୨ ।
ଧକ୍‌କା ଦେଇ ତା ବେକରେ ଧରି ଆଣନ୍ତୁ କି ଥରେ
(ତାର) ଧୂଆଁ କାଢ଼ି ଦିଅନ୍ତି ମୁଁ ଗ୍ଲାଡ଼ି ଲାଜ । ୩ ।
ଧାଇଁ ଏପଟ ସେପଟ (ତୋର) ଧକାଇ ହେବଣି ପେଟ
ଧନରେ ତୁ ଝଟ ପଟ ଲୁଚ ଭାଜ । ୪ ।

ସଖି, ତୁ ମୋତେ ଯାହା ଦେଲୁ, କମିଶନ ତ ଅତି ତୁଚ୍ଛ କଥା—ମୁଁ ତୋ ଠେଇଁ ଜୀବନ ତମାମ୍ କିଣା ହୋଇ ରହିଲି । ତୋ ବୁଦ୍ଧିକୁ ବଳିହାରି ନ ଦେଇ ରହି ପାରୁନାହିଁ । ତଥାପି ଛଳେ, ବଳେ କୌଶଳେ ଯାତ୍ରା କରି ଆସିଲୁ, ତହିଁରେ ବଡ଼ ଥକା ହୋଇଥିବୁ ଓ ତୋତେ ଭୋକ ଲାଗିବଣି । ଚଞ୍ଚଳ ଷ୍ଟୋଭ୍‌ଟା ଲଗାଇ ଦେ ।

ତୁ ଯଦି ତା କାନ ମୋଡ଼ି ଧରି ଆଣନ୍ତୁ ତେବେ ସାଙ୍ଗେ ସାଙ୍ଗେ ତୋର ବକ୍‌ସିସ୍ ମିଳିଯାଆନ୍ତା ।

( ନ )

ନବ ବିଳାସିନୀ ରେ ନକ୍ଷବେଶ ହାସିନୀ,
ନାରୀ ଚପି ଏତିକି ବୁଝିଛୁ ତା ପ୍ରୀତିକି
ନାହିଁ ପରତେ ଭଳେ ହେଲେ ସହି,
ନାଇ ନ ଦେଖି କଆଁ ଲଙ୍ଗଳା ହୋଇ ଠିଆ
ହେଲୁଣି ଉଆଁ ମାରିବାକୁ ତୁହି । ୧ ।
ନାଚ ଲଗା ଫିକିର ଜାଣେ ସେହି ନକର
ମୁକର ସେ ପ୍ରୀତିରେ ଛୁ-କର ତୁ,
ନଷ୍ଟପୁ ପେଲି ବଳେ ଗଡ଼ାଇ ଦେବ ତଳେ
ଚଢ଼ାଇ ତୁଙ୍ଗ ଗିରି ଶିଖରକୁ । ୨ ।

ନଳୁଆ କେଳା ପରି ପକ୍ଷୀରେ ଅଠା ମାରି
ନେବଟି ଧରି କରି ଛଟ ପଟ,
ନାକ କାଣ ଝଟିବ ନନ୍ଦା ଲୋକେ ଘୋଷିବ
ନାରୀ ସମାଜେ ହେବୁ ବୟକଟ (Boycutt) । ୩ ।
ନେଉଳମୁହାଁ ଗୋରି ନପଟ ନିଶାଖୋରି
ନଗ୍ନେଉଡ଼ବନ୍ଦା ତାରି ସ୍ୱଭାବ ଟି,
ନମ୍ବର ୱାନ୍ ପାଜି ଅଟେ ସେ,—ତାକୁ ଭଜି
ନୁହ ମୋ ବୋଲ ମାନ ହଟି ହଟି । ୪ ।

ସଜନୀ, ତୁ ଯେ ଏତେ ଖୁସି ହୋଇ ଯାଉଛୁ, ଟିକାଏ ଭାବି ଚିନ୍ତି ଦେଖ୍ । ଲୋକଟା କିନ୍ତୁ ବଡ଼ ଧଡ଼ିବାଜ୍ । ମୋ ହିସାବରେ ଗୋଡ଼ ପୂରାଇବା ଉଚିତ ନୁହେଁ ।

ଏହା ଶୁଣି ନବୀନାଙ୍କର ଉତ୍‌ଫୁଲ୍ଲ ଆନନ ମଣ୍ଡଳ ଉଜ୍ଜ୍ୱଳ । ସେ ମୁହଁ କୁଞ୍ଚୁଣ୍ଡା କରି କହିବାକୁ ଲାଗିଲେ —

( ପ )

ପ୍ରିୟ ସହି, ପରମାଦ ବଡ଼ ତୁହି ଟଗୋ,
ପାରୁ ପାହୁପଣେ ମୋହି ଗୋ । (ଘୋଷା)

ପବନ-ଘୋଡ଼େ ଚଢ଼ାଇ ପାରୁଛୁ ଉଡ଼ାଇ,
ପୁଣି ଜାଣୁ ପଗୃପଡ଼ା ପାଣିରେ ବୁଡ଼ାଇ,
ପଳାଉ, ପାୟସ, ପଞ୍ଚାମୃତ ହାମ୍ପୁଡ଼ାଇ
ପୀଢ଼ୁ ପେଟ କାମୁଡ଼ାଇ ଟଗୋ । ୧ ।

ପିଇଣ ପଇଡ଼ ଯେବେ ପିତ୍ତବୃଦ୍ଧି ହୋଇ,
ପିଆଜ ପଖାଳ ଖାଇ ବଢ଼ଇ ପୀଳେଇ,
ପ୍ରତିକାର କିଛି ନାହିଁ ଗୋ । ୨ ।

ପାଟି ଅଫା ଆଫା ହୋଇ ଉଠିଲାଣି ହକ୍‌କା,
ପ୍ରଶ୍ନ କଡ଼ା କରି ଆଉ ନକର ପରୀକ୍ଷା,
ପାଣ୍ଟ୍ କରି ପଲଣିଟା ଦିଅ ମୋତେ ଶିକ୍ଷା
ପୂରାଅ ଏତିକି ଭିକ୍ଷା । ୩ ।

ପ୍ରେୟାର୍ କରୁଛି ମୁହିଁ ତୋହରି ପୟରେ,
ପ୍ରାଇଭେଟ୍ ଭେଟାଭେଟି କରାଇ ଦେ ଥରେ,
ପୋଢ ମୁଁ ମନାଇ ନେବି କଥା ପଦକରେ
(ତୋର) ପୁରସ୍କାର ଦେବି ପରେ ଗୋ । ୪ ।

ସତ୍ୟ, ତୁ ବଡ଼ ଚତୁରୀ, ଭଲକଭଲ କଥା କହି କେତେ ଛଇ ଦେଖାଉଛୁ ମ ! ତୋର କଠୋର ପରୀକ୍ଷା ସହିବାକୁ ମୋର ଆଉ ଶକ୍ତି ନାହିଁ । ଏତେବେଳେ କଣ ଦାଉ ସାଧିବାକୁ ଥିଲା ତୋର ? ଜାଣିଲି ତୋର ମୁହଁରେ ଗୋଟାଏ କଥା, ପେଟ ଭିତରେ ଆନପ୍ରକାର ।

ଏହା ଶୁଣି ସ୍ୱାଧୀନା କହିଲେ —

(ଫ)

ଫାଟି ପଡ଼ିବାର ଧାଆଁ ଧପଡ଼ର ଭ୍ରମୁଁ ମୋ ଫଡ଼ଆ ତଳ,
ଫଳୁଚି ଖୋର ଆଖରକୁ ହେବାର ଏହି ଏକା ଏଥୁଁ ଫଳ
ରେ ଫାପୁଲ, ଫୁଟିଲା କି ତୋ ଆଖି,
ଫୁଲଶଙ୍କ ଭଳି ଫଜରବ କଥା କହୁ ଯା ମାରଣ ଫାଙ୍କି ।୧।
ଫିସାଦ ଲଗାଇ ଫାନ୍ଦେ ପକାଇଲୁ ଫୁରତ୍ତ ଦେଖାଇ ନାନା
ଫଟା କପାଳକୁ ଏତେ ଫିକରର ଫିକ୍‌ଟା ମିଳିଲା ହେନା,
ରେ ଫାପୁଲ, ଫାଉ ନେଇ କର ମାର,
ଫନ୍ଦି ଫନ୍ଦ କେତେ ଫଟେଇ ହେଉଛୁ ଦେଖାଇଣ ଫୁରଫାର ।୨।
ଫଚଡ଼ ଟୋକାକୁ ଫେଚଙ୍କା ଟୋକା ତୁ ଫିଟ୍ ଫ୍ରେଣ୍ଡସିପ୍ ହେବ
ଫୁଲ୍ ଫୋର୍ସରେ ଫ୍ରି ପ୍ରଣୟର ଫାଉଣ୍ଟେନ୍ ଫିଟିଯିବ,
ରେ ଫାପୁଲ, ଫେଥ୍ ରଖିଥିବୁ ସତେ,
ଫାନ୍ତଆ ମାନଲେ ଫକୀରଙ୍କ ଠେଙ୍ଗା କାମ ହୋଇଯିବ ଫତେ ।୩।
ଫୁସୁର ଫାସର ହେଲେ ଯେ ଫୁଅନ୍ତୁ କେଆର ତହିଁକି ଥୋଡ଼
ଫୁଙ୍କି ଦେଇ ଏକା ଫୁଟକ ମାରଲେ ଫାକାସି ଯିବଟି ଉଡ଼ି,
ରେ ଫାପୁଲି, ଫୁକାର କହୁଛି ଧାଇଁ
ଫୁଲ କୋବ ଦଆ ଫାଉଲ୍ କାରିର ଫିଷ୍ଟ୍‌ରେ ରହିଲା ମନ ।୪।

ଏତେ କଥାକୁ ମୋର କି ଗରଜ ଥିଲା କହିଲୁ । ତୋହର ଭଲ ହେବି ଯେତେ ଗଞ୍ଜଣା ସହିଲି, ଯେତେ ମେହେନତ କଲି, ପିଠି କଙ୍କାଳ ଉଠିଲାଣି । ପୁରସ୍କାର ମିଳିବା ଦୂରେ ଥାଉ ଶେଷରେ ତୋହଠାରୁ କଥା ଶୁଣିବାକୁ ହେଲା ! କାମଟା ସରି ଯାଇ ଥିବାରୁ ସିନା ଏତେ କହିଲୁ ! ଅଚ୍ଛା ହେଉ ହେଉ ।

ଏହା ଶୁଣି ନବିନା କହିଲେ —

(ବ)

ବଚକ୍ଷଣୀ ରେ, ବନା ତୋ ପ୍ରୀତି କେ ଗତି ଅଛି ଜଗତରେ । ପଦ ।
ବୋଲି ଦେଲା ସିନା ବେଳ ହୋଇ ବୁଝିଲୁ ତ ବୋଇତାକୁ ଭୁଝି
ବଦନେ ବାହୁଳ ବାଜୁ ନାହିଁ,
ବଜ ବଜ ହେଉଅଛୁ ଭୁଛା ଅଲଣାରେ ।୧।
ବୋଇ ପର ମୁହଁଟାକୁ କରି ବକ ହେଉ ମୋତେ ଏତେ ସଞ୍ଚ
ବାରବୁଲି କେତେ ତୋହପରି
ବାଟରେ ବୁଲନ୍ତି ଭିକ ମାଗି ଅଗଣାରେ ।୨।
ବଳ କରି ଥିଲା ତୋତେ ସଖି ବଡ଼ାଇବୁ ବୋଲି ବାଟ ଟିକ
ବଗୁଡ଼ି ଛୁ ଏବେ କସ ଦେଖି,
ବକସିସ୍ ନେବୁ ଭାବଛୁକି ମାଗଣା ରେ ।୩।
ବଜାରକୁ ଗ୍ଲଲ ଏଇକ୍ଷଣି ବରିବରି ଖାଇବା ଯେ କଣି
ବାଟେ ବସିଥିଲେ ଗୁଣମଣି
ବାଆଁ ପଟେ ଥାଇ ଗ୍ରହିଁବାଟି ଅଜଣାରେ ।୪।

ଯାଲେ ଯା—ଟାହୁଲି କରି କଣ ପଦେ କହି ଦେଲି ବୋଲି ସେଇ କଥାକୁ ଧରି ବସିଚ୍ଛ ! ତୋର ମୋର ଯେ ଜୀବନ ଦିଆଦେଇ କିଏ ନ ଜାଣେ କହିଲୁ ! ଯଦି ତୁଚ୍ଛାଟାରେ ରାଗିଥାଉ ତେବେ ମୁଁ ଦୋଷ ମାଗି ନେଉଛି । ଗଲା କଥା ଯାଉ । ମୋତେ ଆଉ ତର ସହୁ ନାହିଁ । ଗ୍ଲଲ ସହର ଯାକ ବୁଲି ବୁଲି ସେ ଯେଉଁ ବଜାରରେ ଥିବେ ତାଙ୍କୁ ଭେଟିବା । ଭୋକ ହେଲେ ହୋଟଲ୍ ଅଛି । ନୋହିଲେ ବାଟରୁ ଚେନାଚୁର ଚନାବାଦାମ କିଣି ନେବା ।

ଏହା କହି ଦୁହେଁ ହାତ ଧରାଧରି ହୋଇ ବାହାରିଲେ । ସେତେବେଳକୁ ମହିଁ ସଞ୍ଜ ହୋଇ ଆସୁଥାଏ । ବେଶୀ ଦୂର ନ ଯାଉଣୁ ଏକ ନିର୍ଜନ ଗଳି ମଧ୍ୟସ୍ଥ ସଙ୍କେତ ସ୍ଥାନରେ ପ୍ରତୀକ୍ଷା କରି ଏକାକୀ ଛିଡ଼ା ହୋଇଥିବା ଚଟକଚନ୍ଦ୍ରଙ୍କୁ ଆଡ଼ୁଆଳରୁ ଦେଖାଇ ଦେଇ ସ୍ୱାଧୀନା ନବୀନାଙ୍କୁ ଧୀରେ ଧୀରେ କହିଲେ —

( ଭ )

ଭଙ୍ଗୀ, ଗ୍ରହିଁ, ଭ୍ରୂଣ୍ଡା ଭୁଆ ଭ୍ରୂଭଙ୍ଗି ଭଙ୍ଗର, ଜୀବସଙ୍ଗି ।
ଭାଗ୍ୟେ ଏ ଚଲା ଆଖି ଥିଲା ବୋଲି କି ଦେଖି ହେଜ ରେ,
ଭଉଁକ ନ ଯା' ତୁ ଭ୍ରୁରୁଡ଼ ତେଜରେ,
ଭୋକ ଲଗଇ ଯେବେ ରେ ସଖି, ଭୁଜା ଗଣ୍ଡେ ଗଣ୍ଡେ ଗ୍ରଣ୍ଡେ ଦିଅ ଭକ୍ଷି
ଭୁରୁକୁଣ୍ଡି ଲୋ,
ଭଲି ମାନୁଛି ଦେଖ ଭାଲୁ ଭାଲୁଆ ମୁଖ
ଭଡ଼ ଭଡ଼ଆ ନାଳ ଭସୁଛି ପାନ ପିକ,
ଦଶେ କ ଜକ ଜକ, ସଖିରେ, ଭଲି ରଙ୍ଗ ଅଧର, ଭରି ତାମ୍ବୁଲ ବୋଳ ।

ଭାଙ୍ଗ ଭକ୍ଷିଲା ଭଳି ଭ୍ରମାଇ ଡୋଳା ଦୁଳି, ରଙ୍ଗରେ
ଭସାଇ ନେଉଛି କାମ ତରଙ୍ଗରେ,
ଭୋପା ପାଲରେ ପଡ଼ିଲେ ସତ ଭସୁଡ଼ିବ ସଖି ତୋର ସଖା ବରତ,
ଭ୍ରୂକୁଞ୍ଚି ଲୋ,
ଭୂକ୍ଷି କନ୍ଦର୍ପ ଶର ଭାଞ୍ଜି ଦମ୍ଭ ଭୂଧର
ଭେଦ ଗ୍ଳାଡ ଭିତର ଭରିଆଇବଟି ଜ୍ୱର
ଏହିଟି ଡାକତର, ସଖିରେ, ଜାଣଇ କୁଟି ଜଡ଼, ଜ୍ୱରକୁ ଦେବ ତଡ଼ ॥

ସହି, ଭଲ କରି ଦେଖିଲୁ, ଏ ସେହିଟିକି ? ଆହା, କି ଚେହେରା, କି ଠାଣି, କି ଛଟକ ଚାହାଣି । ଦେଖିଲାକ୍ଷଣି ପେଟର ଅନ୍ତ ନାଡ଼ୀ ସହିତେ ଚହଲ ଉଠୁଛି । ତୋର ସୌଭାଗ୍ୟ ଦେଖି ହିଂସା ହେଉଛି ସତେ ! ତୁ ଆଖି ଲଗାଇ ଦେଖୁଥା, ମୁଁ ଟିକିଏ ପରସ୍ରା କରି ଆସେଁ ।

ଏହା କହି ସ୍ୱାଧୀନା ବିମୁଗ୍ଧା ନଳିନୀଙ୍କୁ ଏକାକିନୀ ରଖି ଚଟ୍‌କରି ଖସି ଚାଲିଗଲେ । ଏହି ସମୟରେ ଅନ୍ଧକାର ମାଡ଼ି ଆସୁଥିବାରୁ ମଶକ ବୃନ୍ଦ ନଳିନୀଙ୍କ ଅଙ୍ଗରେ ଆକୃଷ୍ଟ ହୋଇ ଆନନ୍ଦରେ ମନ୍ଦମନ୍ଦ ବନ୍ଦନା ଗୀତ ଆରମ୍ଭ କଲେ, ଏବଂ—

( ମ )

ମଧୁରେ, ମନ୍ଦମନ୍ଦ, ହୋଇ ଗନ୍ଧବହ
ପ୍ରସରିଲା ଆନନ୍ଦେ ନର୍ଦ୍ଦମା ସୀମାରେ,
ମୃତୁରୀ ବାସେ ଲୋକ ଚରିସେ ଭାଷିଲେ ଇଷିମାରେ ।
ମଶକ ଦଳ ହୋଇ ଉଲ୍ଲୋଳ ପିଠିରେ ବସି ମାରେ, ଅଖିଳ
ମଣ୍ଡିତ ହେଲା ସେ ଗଳା ମୁଣ୍ଡ ମହା ମଉଜ ହୋଇଲା ଚୁଣ୍ଡ
ମହକ ଗଲା ଅତର ବୋଳା ରୁମାଲ ସୁଷମାରେ ॥ ପଦ ॥

ମାରିଲା ମାର ମୂନିଆ ଶର ମଚ୍ଚି ଯେ ଦେଲା ନେବିନ ଶରୀର
ମିଳିଲେ ଦୁଇ ମୁଆଁ ସୀ ଏକ ହୋଇ,
ମୁହଁକୁ ମୁହଁ ଯୋଖି ବିଦେହ ଅନଳେ ହେଲେ ଦହି
ମସୀ ଅନ୍ଧାର ମାଡ଼ ସନ୍ତରି ଦୋଡ଼ାଇ ଦେଲା ମଶି ।
ମଦନ ମଦେ ବୁଡ଼ିଲା ଚେତା ମହା ମୋହରେ ଘୂରିଲା ମଥା
ମୂକ ପରିଏ ରହିଲେ ହୋଇ ମୁଖକୁ ଚୁହିଁ ଚୁହିଁ ।୧।

ମାଛ ହାଟରେ ଉଠିଲା ଗୋଳ ମାତାଲମାନେ ପାରିଲେ ରୋଳ
ମଦତ ଖଟି ଲୋଟିଲେ ଭାରି ମଜା,
ମାଞ୍ଚଲେ ସବୁ ମଉଜ ବାବୁ ଖାଇ ଡମ୍ବରୁ ଭଜା
ମସଲା ଦିଆ ମିଠା ବଡଆ ଚହିଁକି ହେଲା ଖୋଜା,
ମୋହନ ଭୋଗ, ମୁଆଁ ମିଠାଇ ମେଦାକୁ ମେଦା ଖୁଆ ମଲାଇ
ମୁଢ଼ି ମୁଡ଼କି ମଇରାମାନେ ବାଢ଼ିଲେ ତାଜାତାଜା ।୨।

ଆହ୍ଲାଦିନୀ ନଳିନୀଙ୍କର ନିତ୍ୟ ନବନବ ଭାବ ଓ ଚଟକଚନ୍ଦ୍ରଙ୍କର ନବନିନ ରସ ସମ୍ମିଳିତ ହୋଇ ଏପରି ଏକ ଅଚିନ୍ତ୍ୟ, ଅନନ୍ତ, ଅଶାନ୍ତ, ଅନାବିଳ ଅମୃତଧାରାର ସୃଷ୍ଟି କରୁ ଯାହା ପାନ କରି ଅବିଶ୍ୱାସୀ, ଅଗୁଆଁର, ଅହମ୍ମଦମାନଙ୍କର ଅନ୍ତରର ଅନ୍ଧକାର ଅକୂଳ—ଦୂରୀଭୂତ ହୋଇଯାଉ ଓ ଦୁନିଆ ନବାଦର୍ଶର ପ୍ରତ୍ୟୁଦନା-ମୂଳକ ଭାବ-ବନ୍ୟାରେ ବୁଡ଼ି ହାବୁଡ଼ୁବୁ ଖାଉ ।

ଟାଣିସାରି ଫିଙ୍ଗି ଦେଇଥିବା ସିଗାରେଟ୍ ଖଣ୍ଡ ପରି, ପିଇ ସାରି ଭୂଇଁରେ ଗଡ଼ୁଥିବା ମଦ ବୋତଲ ପରି, ଶିରି ଟିକି ଟିକି ହୋଇ ପଡ଼ିଥିବା ପ୍ରେମ ଚିଠାଉ ପରି, କାମ କ୍ରୀଡ଼ାର ଉଦ୍ଦାଭିଡ଼ରେ ପୀଡ଼ା ପାଇ ଛିଡ଼ା ହୋଇଥିବା ବ୍ରୀଡ଼ାବିଜଡ଼ିତା ନଳିନୀଙ୍କ କର ଧରି ଚଟକଚନ୍ଦ୍ର ଭାଷିଲେ —

( ଯ )

ଯୋଷାବରି ରେ, ଯଥାର୍ଥରେ ଜାଣ ମୁଁ ତୋହରି ହେ,
ଯୋରା ଚଳି ମଳି ଯୋଗ୍ଯ ଅରବଳି
ହେବାକୁ ଅଳି ମୋହରରେ । ପଦ ।

ଯହିଁ ଯହିଁ ଆଖି ପଡ଼େ ପ୍ରିୟ ସଖି ଦିଶୁଥାଇ କି ସୁନ୍ଦର ହେ
ଯତି ହୋଇ ଥିଲେ ରହିବ କି ଭଲେ ନୋହି ତୋ ତନୁ ଚାକର ରେ ।୧।
ଯୋଡ଼ ବେଣୀକର ଧରୁଛି ପୟର ଯାହା ଇଚ୍ଛା ତାହା କର ରେ
ଯାତନାରେ ମଲି ଡାରିଲଙ୍ଗି ବୋଲି ଚାହିଁ ଥରେ ସୁ-ନଜରରେ ।୨।
ଯୋଖି ଶର ଖର ମାରେ ହରପର ଦେହ ହେଲା ଜର ଜର ରେ
ଯାକ ଧରି ଗ୍ଳାଡ ପରେ ରେ ଯୁବତୀ ଏଥିରୁ ମୋତେ ଉଦ୍ଧର ରେ ।୩।
ଯାମିନୀଟା ପାହି ଯିବ ଯେବେ ସହି ଧରା ପଡ଼ିବାକୁ ଡର ରେ
ଯାଉଁଳିଆ ପରି ବାଟେ ଗ୍ଳାଟି ପିଟି ପଳାଇ ଯିବଟି ଘର ରେ ।୪।

ରେ ଥାଳପଟମୁହିଁ ମୁଁ ତୋର କଣା କଙ୍କର ବୋଲି ଜାଣି ମୋର ସକଳ କସୁର୍ ମାଫ କରିବୁ । ଏହା କହି ଚଟକ ଚନ୍ଦ୍ର ନଳିନୀଙ୍କୁ ବାରମ୍ବାର ଚୁମ୍ବନ କରୁଁ କରୁଁ ରୁମାଲ ଦ୍ୱାରା ବ୍ୟଜନ କରିବାକୁ ଲାଗିଲେ । କିଛିଟ୍ କାଳ ଅନ୍ତେ ମଝି ରାସ୍ତାରେ ମଇଳା ଗାଡ଼ିର କେଁ କଟର ନାଦ ଓ ଦୂରଗତ ମସ୍‌ଜିଦର ପ୍ରଭାତ ନମାଜ୍ ଡାକରା ଧ୍ୱନି ସହିତ କୁକ୍‌କୁଟ ରବ ମିଶି ରାତି ପାହୁ ଥିବାର ସୂଚନା କରି ଦିଅନ୍ତେ, ଅନତି ଦୂରରେ ଛକି ରହିଥିବା ସ୍ୱାଧୀନା ଆଡ଼ ଢ଼ିହାଡ଼ରୁ ନଳିନୀଙ୍କୁ ଲକ୍ଷ୍ୟ କରି କହିଲେ —

( ର )

ରସାଳସା ରେ
ରସି ପୁଣି ଏକ ଲୋକ ହସାରେ । ଘୋଷା ।

ରଜନୀ ପାହିଲା ହେଲା ଉଷାରେ
ରବ ଦେଲେ କାଉ ଗ୍ରାସ ଆଶାରେ ॥

ରହିଲେ ପେଚୃଏ ରୁଷି ବସାରେ
ରତ ତ୍ୟଜ ବାହୁଡ଼ିଲେ ମଶାରେ ॥

ରାତିଯାକ ମାତି ରସ ନଶାରେ
ରେକନ୍ଦା ନାହିଁକି ରତି ତୃଷାରେ ॥

ରଟିଲେ ଏକଥା ଦେଶ ଫସାରେ
ରାମା ତୋର ହୋଇବ କି ଦଶାରେ ॥

ରପୁଏ କରିବେ ହସି ଖୋସାରେ
ରସରେ ତୁ ହୋଇଯିବୁ ମୂଷା ରେ ॥

ରାଣଅଛୁ, ରୁକ୍ମଣୀଙ୍କ-ଭୂଷାରେ
ରଫା କର ଚାଲ ଆସ ସୁସାରେ ॥

ସଖି, ହିତକାମୀଙ୍କ କଥା ନ ମାନି ତୁ ତ ଯାଇ ନଳୁଆ କେଳାର ଅଠାକାଠିରେ ପଡ଼ି ଲାଖି ଗଲୁଣି । ଏବେ ବି କହୁଛି ଖସି ଆ—ନୋହିଲେ ଅସହଣୀ ସାଙ୍ଗ ଟୋକା ଯାକ ଟାପରା କରି ରଖି ଥୋଇ ଦେବେ ନାହିଁ ଟି !

ଏକଥା ଶୁଣି ସେହି ବିଡ଼ାଳ-ନିନ୍ଦିତ-ନୟନା, ଧୂସର କଜ୍ଜ୍ୱଳ-ବରଣା, କେଳି କସରତ୍ କରି କ୍ଳାନ୍ତା ନବୀନା ଝାଡ଼ି ଝୁଡ଼ି ହୋଇ ଉଠି ଲଜ୍ଜା ଭୟ ବିମିଶ୍ରିତ କଣ୍ଠରେ ଚଟକ ଚନ୍ଦ୍ରଙ୍କୁ ବୋଇଲେ—

(ଲ)

ଲୀଳାନିଧି ହେ, ଲାଜେ ମୁଁ ଗଲିଣି ସଡ଼ି,
ଲୁଚିଲ୍ କାହିଁ ବନ୍ଧୁ ହେ, ଦିଅ ମୋ ଲାଗି ଶାଢ଼ି ॥
ଲଙ୍ଗଳା ହୋଇଣ ମାଡୁଛି ଲାଜ । ଲଭ୍ କରିବାର ଏକି ମଉଜ !
ଲାଇଫ୍ ଦେଇଥିଲି ତୁମକୁ ଲଭ । ଲୁଗାଖଣ୍ଡି ନେଇଯିବ ହେ ଲୋଭି ॥
ଲୋକ ଲଫଙ୍ଗାଙ୍କୁ ଲଗାମ ନାହିଁ । ଲୁଙ୍ଗିଖଣ୍ଡ ହେଲେ ଦିଅ ପିନ୍ଧାଇ ॥
ଲଣ୍ଡିଭଣ୍ଡି କେଶ ହୋଇଛି ମୁଣ୍ଡେ । ଲୋସନ୍ ଲଗାଇ କୁଣ୍ଡାଅ ଗଣ୍ଡେ ॥
ଲୁଟିଛ ଅଧରୁ ଲୋହିତ ଶିରୀ । ଲିପ୍ ଷ୍ଟିକ୍ ତହିଁ ଦିଅ ହେ ମାରି ॥
ଲଭି ଯାଇଅଛି ଲପନ ଆଭା । ଲେପି ହିମ୍ତାର ଫେରାଅ ଶୋଭା ॥
ଲାଠ ଲଗାଇଛ ଯେଉଁଥି ପାଇଁ । ଲାଞ୍ଚଖୋର୍ ! ତାହା ଜାଣଇ ମୁହିଁ ॥
ଲୋଉଟିବି ନଷ୍ଟେ କାଲି ରାତିକି । ଲେଟ୍ ହେବ ନାହିଁ ଦେଉଛି ଲେଖି ॥
ଲୋକଙ୍କୁ ଆଡ଼େଇ ଗଳିରେ ପଶି । ଲାଞ୍ଜ ଟେକି ଲମ୍ଫା ପଳାଅ ଖସି ॥

ପୂର୍ବ ଦିଗ ରୂପ ନାୟିକା ନିଦରୁ ଉଠି ଚେମହଲା ପକା ଘରର ଉପରକୁ ତାମ୍ବୂଳବୋଳ ମିଶ୍ରିତ କୁଳକୁଚି ପକାଇ ଦେଲାଣି । ହେ ଚିତ୍ତଚୋର, ମୋତେ ଛାଡ଼ିଦିଅ ଏବେ ।

ଅବଦୁଲ ମିଆଁଙ୍କ ଘରଆଡ଼ୁ ମୋରଗାର ପ୍ରଭାତୀ କେକା ଶୁଭିଲାଣି । ବସିନିମାନେ ଲୋକ ଦେଖିବା ଭୟରେ ଘର ଆଡ଼କୁ ଅନାଇ ଗଳି ମଧ୍ୟରୁ ଛପି ଛପି ବାହାରିବା ବେଳେ ତାଟି ଉଠାଉ-ଥିବା ଦୋକାନୀଗଣ ଗଳା ଖଙ୍କାରି ମାରି ଟିଟିକାରି ଦେଲେଣି । ମେହେନ୍ତାଣୀ ଟିଣ କନସ୍ତରା କାଖେଇ ଯିବାବେଳେ ତହିଁ ମଧ୍ୟରେ ଥିବା ଝାଡ଼ୁ ଖଡ଼ଖଡ଼ ଶବ୍ଦ କଲାଣି । ଏହି ସମସ୍ତ ନାଦଦ୍ୱାରା ଆକାଶ ପୂର୍ଣ୍ଣ ହୁଅନ୍ତେ ନବୀନା ଧୀରେ ଧୀରେ ଗଳି ମଧ୍ୟରୁ ବାହରିଲେ । ତାଙ୍କୁ ଦେଖି ସଖି ପରିହାସରେ କହୁଛନ୍ତି —

( ବ )

ବିଚିତ୍ର ବେଶ ମଞ୍ଜୁଳା ରେ, ବାଳା ବିବିଧ ଚାତୁରୀ ଶୀଳା
ବିଭାବରୀ ଅର୍ଦ୍ଧେ ଏକାକୀ ବିରଚୁ (ବାଚ) ବଜାର ବିହାର ଲୀଳା,
ବିରାଡ଼ିଆ ଡୋଳାରେ
ବୁଲି କୁଟ୍ଟୀ ଭଳି ହୋଇ ଖେଳାରେ । ୧ ।

ବାଇ ସାଇକେଲ ବସିରେ ବାଳା ବୁଲିବା ବାହାନା କରି
ବାଙ୍କ ବାଙ୍କ ଅଳି ଗଳି ଗଳୁଥିଲୁ ବିଜୁଳି ବତିଟି ଧରି ରେ,
ବିଜନେ ବିଚରି ରେ,
ବାଟବଣା ହୋଇଲୁ କି ଡରି ରେ । ୨ ।

ବଟ୍, ବ୍ୟାଡ(Bad)ବୟ(boy)ପାଲରେ ବାଳା ବେଗିରି ଗଲୁଟି ପଡ଼ି
ବଗୁଲିଆ ହୋଇ ଛୁଡ଼ିଯାଇ ଅଛି ବଡ଼ିସ୍ (bodice)ବସନ ଧଡ଼ିରେ
ବୁଝି ଯାଏ ହୁଡ଼ି ରେ
କାମେ ଗଲୁଣି ଯା ବିଗିଡ଼ିରେ । ୩ ।

ବାଧୁଛି କି ବେଶୀ କରି ରେ ବାଳା ବଥା ହେଉଛି କି ଘାତ,
ବୁଜି ପଡ଼ୁଛି ତ ବେନି ଆଖି ଯାକ ରାତି ଉଜାଗରେ ମାତରେ,
ବୋଲଉ ଯେ ସତୀ ରେ
ବୁଝା ପଡ଼ିଗଲା ବଳେ ଗତିରେ । ୪ ।

ବେହିଆର ବଥ ହେଲେ ରେ ବାଳା ବୋଲେ ସେ ହୋଇଲା ଘାଇ,
ବଡ଼ ଲୋକ ଯେବେ ବିଘ୍ନ ଘେରାଇବ ବାଡ଼ ବତା କଛି ନାହିଁ ରେ,
ବାଇଦ ବଜାଇରେ
ବାନା ଜଗତେ ଦେଲୁ ଉଡ଼ାଇ ରେ । ୫ ।

ରେ ଜଳ ପୁଷ୍ପ କୋମଳାଙ୍ଗୀ, ତୁ ତ ଗଦିଦିଆ ସ୍ପ୍ରିଂ କାଉଚରେ ଶୋଇବାକୁ କଷ୍ଟ ଅନୁଭବ କରୁ—ଆଜି ଏ ମାଟି

ଉପରେ ଗଡ଼ାପଡ଼ା ଚଡ଼ାଭଡ଼ା କେମନ୍ତେ ସହିଲୁ ? ଓଃ ବଡ଼ ବାଧିଥିବ ତ !

ରଣ ରଙ୍ଗରେ ପରିଶ୍ରାନ୍ତା ନଗ୍ନା ସଙ୍କୁଚିତା ହୋଇ ପାର୍କର ଶୀତଳ ସମୀର ସେବନ କରିବା ନିମନ୍ତେ ନନ୍ଦନକାନନକୁ ଗଲେ ଓ ସାବୁନ, ସୁବାସିତ ତୈଳ, ପାଉଡର, ସ୍ନୀମ ପ୍ରଭୃତି ଟଏଲେଟ୍ ସାମଗ୍ରୀ ଧରିଥିବା ସଖୀଗଣ ସହ ସ୍ରୋତସ୍ୱିନୀ ସଲିଳରେ ପ୍ରବେଶ କଲେ ।

ଏହି ସମୟରେ ଚଟକଚନ୍ଦ୍ରଙ୍କର ସଖା ମାଷ୍ଟର୍ ମଙ୍ଗୁ ଉପସ୍ଥିତ ହୋଇ ହସି ହସି କହିଲେ—

(ଗ)

ଶଠକୁଳ ଶାର୍ଦ୍ଦୂଳ । ଶ୍ରମକି ଆଜି ଯାକେ ହେଲ-ସଫଳ ॥
ଶପ୍ନ ନୋହିବାର ଶର୍ବରୀଯାକ । ଶୁଷ୍କା ଦିଶୁଛି ତ ବଡ଼ ଶ୍ରୀମୁଖ ॥
ଶାରୁଣା ସରି ତୁମ୍ଭେ ଶିକାରୀ ଶୂର । ଶାରୀ ଚଢ଼େଇଟିକି କଲ କି ଦୂର ॥
ଶର୍ଦ୍ଦି ହୋଇଛି କି ଶିଶିରେ ପଡ଼ି । ଶିଙ୍ଗାଣି ସଡ଼ ସଡ଼ ପଡ଼ୁଛି ଗଡ଼ି ॥
ଶୋଡ଼ାରେ ଶାମୁକାଏ ଶରାପ ଗୋଳି । ଶୁଧୁରି ଯିବ ଶିରୀ ଦେଲେଟି ଗିଳି ॥
ଶିହାଣ ହୋଇ ଯାହା କଲ ହେ ହଠି । ଶହରଯାକ କାଲି ଯିବଟି ରଟି ॥
ଶାଉଁଳା ଶାଉଁଳରେ ପଟିବ ନାହିଁ । ଶୁଣା ଗୁଣା ହୋଇବ ସାଇକି ସାଇ ॥

ହେ ସ୍ପୋର୍ଟସ୍‌ମେନ୍, ଫୁଟ୍‌ବଲର କର ଦିଅ କ୍ରିକେଟ୍ ପେଣ୍ଡୁ ଲୁଫି ଲୁଫି ଏକ୍‌ସପାର୍ଟ ହୋଇଅଛୁ ; ତୁମ୍ଭପକ୍ଷେ କୋମଳାଙ୍ଗୀ ଯୁବତୀର ବକ୍ଷ ବିଦାରଣ କରିବା ବିଚିତ୍ର ନୁହେଁ । ତହିଁକି ତୁମ୍ଭେ ତ ବନ୍‌ଶୀ ଖେଳରେ ହତୋଟି ଅଟ ; କେତେ ରୋହି ଭାକୁର ଧରିଛ— ଏହି ସାମାନ୍ୟ ଅବଳାକୁ ତ ଖେଳାଇ ଖେଳାଇ ଏକା ଖାଞ୍ଚରେ ଅକ୍ତିଆର କରିଥିବ ।

ତୁମ୍ଭେ ତ ବଡ଼ ବଡ଼ ଗୁଣ୍ଡା ଓ ଲଫଙ୍ଗାଙ୍କ ଗର୍ବକୁ ଖର୍ବ କର । ତହିଁରେ ପୁଣି ଆଜି ବହୁ ଦିନର ଆଶା ପୂର୍ଣ୍ଣ ହୋଇଥିବାରୁ ମଗଜରେ ପାଣି ଗଳୁନାହିଁ ପରି ! ହଉ, "ଆଜି ନାଁ ରେ ପୋଷ୍ଟର୍ ଲେଖି ସହର ଯାକ ମାରି ଦେବି ଓ ଖବର କାଗଜରେ ଛପାଇ ଦେବି ।" ମାଷ୍ଟର୍ ମଙ୍ଗୁ ଏପରି କହନ୍ତେ ଚଟକ ଚନ୍ଦ୍ର କଞ୍ଚିତ ଭୟ ଓ ହାସ୍ୟ ସହିତ ପ୍ରୀତି ପ୍ରକାଶ କରି କହିଲେ,"ରେ ଟୋକା, ମୁଁ ଏକ୍ଷଣି ବଡ଼ ବେହାଲତ୍ ହୋଇ ପଡ଼ିଛି—ନୋହିଲେ—ମୁଣ୍ଡରେ ଚଟକଣା ବଜାଇ ଦିଅନ୍ତି ।" ପୁଣି ନରମି ପଡ଼ି କହିଲେ —

( ଘ )

ଷଟପଦ ନୀଳକେଶା ଆଗୋ ଗୁହିଁ ଗୁହିଁ
ସଲଜ୍ଜ ସେ ଦିଶେ ଆଖି କି ସୁନ୍ଦର ଆହା,
ସାଙ୍ଗ ହୋଇ ଟୋକା ଦଳେ,
ସିଧା ହୋଇ ଆସୁଛନ୍ତି ସନାଟି ସକଳେ ।

ସମୀରେ ଆସଇ ଭାସି Scent ର ସୁବାସ
ସୁଙ୍ଘି ଲ ମାନେ କାହିଁକି ମାଡ଼ୁଛି ତ କାଶ
ସଜ ହୋଇଛନ୍ତି ଜାଣି,
ସାଉଁଳି ଅଛନ୍ତି ହେର ମାରି ତେଲ ପାଣି ।

ସରଳ ସମାନେ ଦିଶୁଛନ୍ତି ଶୋଭାବନ
ସାଟିଣି ସାର୍ଟରେ ଯୋଡ଼ାଇଣ ଅପଘନ
ସିଲ୍‌କ ରୁମାଲ ଉଡ଼ାଇ,
ସଲାମ ଦିଅନ୍ତି ଆମ୍ଭ ଆଡ଼କୁ ବଢ଼ାଇ ।

ସେନାପତି ପରି ଜଣେ ଯାଉଅଛି ଜଣା,
ସମ୍ପୃକ୍ତ ଚଷମା ଚକ୍ଷେ ଅଟେ କି ସେ କଣା !
ସଦା ଫୁଙ୍କୁଅଛି ପିକା
ସାବନରେ ଘଷି ମାଜି ମୁଖ ଦିଶେ ଫିକା ।

ସଙ୍କୋଳି ଆଣିବା ଚାଲ ସର୍ବ ସହଚରୀ
ସହାସ୍ୟ ମୁଖେ ସ୍ୱାଗତ- ସମ୍ଭାଷଣ କରି,
ସଫା ଗୁଡ଼ଣ ସରମ,
ସଭ୍ୟା ନାରୀ ସମାଜରେ ସେହିଟି ଧରମ ।

ରେ ସଙ୍ଗିନୀ, ଯାହାଙ୍କ ଆଗ ପଛରେ ବିଲାତୀ କୁକୁର ଗୁଡ଼ିଏ ଗୋଡ଼ାଉଛନ୍ତି, ସେହି କୋକିଳ ବର୍ଣ୍ଣ ଖଞ୍ଜନ ସଦୃଶ ଚଟୁଳ ବାଳକଟି କିଏ ?

ଚଟକ ଚନ୍ଦ୍ରଙ୍କର ଚମକପ୍ରଦ ମୂର୍ତ୍ତି ସନ୍ଦର୍ଶନ କରି ଚପଳ-ନୟନା ନବ୍ୟ ଫେସନା ତରୁଣୀଗଣ ଆପଣା ମଧ୍ୟରେ ବାକ୍ୟାଳାପ କରିବାକୁ ଲାଗିଲେ । କ୍ରମଶଃ ସେହି ଟୋକା ଦଳ ତରୁଣୀମାନଙ୍କ ନିକଟବର୍ତ୍ତୀ ହେବା ଉଦ୍ଦେଶ୍ୟରେ ନଈ ବାଲିରେ ପଦାର୍ପଣ କରନ୍ତେ ସେମାନେ ଆତ୍ମଜ୍ଞାନ ଭୁଲି "ହେଇ ଲୋ, ଇଏ ତ ସେହି ଲୋ" ବୋଲି ଧ୍ୱନି କରିବାକୁ ଲାଗିଲେ ।

( ସ )

ସପନଟି ମୋର ରେ, ସହ ଏହ୍ମ ଥର ରେ
ସାର ସୁନ୍ଦର ସରସ ସିଗାରେଟ ପର ଧର ନରନ୍ତର ଚଞ୍ଚୁପୁଟ
ନ ଫିଙ୍ଗ ପୁଣି ହଟି ଚଡ଼ାଇ ଦେବ ପଟି,
ଏଥକୁ ବରୁଶଟି କର ଯାହା ବହ୍ନତ ॥ ଘୋଷା ॥

ସଂଷାନ୍ତ ପୁରୁଷ ଭଳ ସାମନାରେ ଯାଇ ମିଳ
ସଜାଇ କହ୍ନଲୁ ଯାହା ସିହାଣା ବାହାରେ ବାହା ।୧।

ସୁଆଲ କରୁଛୁ କେତେ ସରମ ନାହିଁ କ ତୋତେ
ସଉକୀ ଜନର ଏହ୍ମ ସ୍ୱଭାବ ପର ଅଟଇ ? ୨ ।

ସୁରତ ପୀରତ ଦୁହେଁ ସହଜ ସଳଖ ନୁହେଁ
ସନ୍ନୁଳ ସନ୍ନୁଳ ହୋଇ ସରୁଆ ହେଲଣି ମୁହିଁ ।୩।

ସାଙ୍ଗ ବୋଲ ତୋତେ ଜାଣି ସାନ ଭାଇ ପର ମଣି,
ସାହସ ବାନ୍ଧଛୁ ସିନା ସାହା କଏ ତେହ ବନା ।୪।

ସମ୍ପାଦକଗୁଡ଼ା ପାଜ ଶୁଣିବା ମାତ୍ରକେ ଆଜ
ସଜ ସମ୍ବାଦ ଛପାଇ ସହର ଦେବେ କମ୍ପାଇ ।୫।

ସାହାଯ୍ୟ ପାଇଲେ ତୋର Sure Success ମୋର
ସନ୍ଦେହ ନକର କଚ୍ଛୁ Share ତୋର ବ ଅଛୁ ।୬।

ସାକୁଲ ବଚନ ଶୁଣି ସଖା ହୋଇ ଗଲେ ପାଣି
ସବୁର୍ ସହ୍ମଲ ନାହିଁ Shake hand କଲେ ଯାଇ ॥

ତହୁଁ ଦୁହେଁଯାକ ହାତ ଧରାଧର ଓ କୁଣ୍ଢାକୁଣ୍ଢି ହୋଇ ମିଳାମିଶି ଗଲେ ଓ ହାଉଆ ଖାଇବା ପାଇଁ ନଈ କୂଳକୁ ଚାଲିଲେ । ବାଟରେ ଆଉ ସାଙ୍ଗ ଇୟାରମାନଙ୍କୁ ଭେଟିବାରୁ ସମସ୍ତେ ଏକ ଯୋଟ ହୋଇ ଗଲେ ।

ଅନନ୍ତର ନଈର ଅନ୍ୟ ଘାଟରେ ସମବେତ ହୋଇଥିବା ଫରଓ୍ୱାର୍ଡ଼ ମଡାର୍ଣ୍ଣ ଗାର୍ଲ ଯୂଥ ଏହ୍ମ ହାସ କୌତୁକ ପାଗଳମି ଇୟାର୍କି-ନରତ ମଡ଼ାର୍ଣ୍ଣ ବୟୁ ଶ୍ରେଣୀକୁ ଦେଖି ଆପଣା ଆପଣା ମଧ୍ୟରେ ଆଳାପ କରିବାକୁ ଲାଗିଲେ ।

( ହ )

ହଂଆ ହାମାର, ଏତ ପ୍ରାନେର୍ ଧନ ଗୋ,
ହିଁ-ହିଁ କର ହସି ଦେଲେ ଦାଣଇ ରଦନ
ହଲଉଛୁ ହସ୍ମର ବଦନ ଗୋ । ୧ ।
ହାଡ଼ଫୁଟି ଚନ୍ଦ୍ର ଗୋଟି ଗୋଟି ଶୋଭବନ
ହୁଗୁଳାଏ ହୃଦର ବନ୍ଧନ ଗୋ । ୨ ।
ହୁଳାପର ଜ୍ୱଳୁ ଅଛୁ ଯୁଗଳ ନୟନ,
ହୁଙ୍କୁଡ଼ ଖାଉଛୁ ଘନ ଘନ ଗୋ । ୩ ।
ହଳା ହଳ ନେଟା ଭୁଲେ ଗୃଳଇ ବହନ
ହଜ ଯାଏ ଯୁବତୀ ଜୀବନ ଗୋ । ୪ ।
ହାବୁଡ଼ ପଡ଼ିବ ଜାଲେ ମନ ଛନ ଛନ,
ହେଣ୍ଡି ମାର ଧାଇଁଛୁ ଯେସନ ଗୋ । ୫ ।
ହୁକୁମ ହୋଇଲେ ଧର ଏ ଯୁବା ରତନ
ହାଜର କରନ୍ତ ଏହିକ୍ଷଣ ଗୋ । ୬ ।

ହେ ସଖି, ଏ ଯୁବା ପୁଙ୍ଗବର ଅପାଙ୍ଗ ଭଙ୍ଗୀ ସୁନ୍ଦରୀମାନଙ୍କ ବକ୍ଷରେ ଅନଙ୍ଗ ରଙ୍ଗ-ଲୋଲୁପତା ଜନତ ଆସଙ୍ଗ ଲିପ୍‌ସା ଜାତ କରୁଛୁ ଓ କଳା କଳଜାରେ ଛୁରୀ ଚଳାଇ ଦେଉଛୁ । ଖୋଳା ନୟନର ଟେରା ଚାହାଣିରେ ତ ସମସ୍ତେ ମୋହିତ ହୋଇ ଗଲେଣି, ସେଥିରେ ପୁଣି ଲଳିତ ସ୍ୱରରେ ସୁସୁର ମାରିବାକୁ ବସୁଛୁ କଅଁ ମ ? ଏତେ ଏତେ ଦାନ୍ତ ବାହାର ଥିବାରୁ ଓଷ୍ଠ କୁଞ୍ଚିତ କର ସୁସୁର ମାରିବାକୁ କେତେ ବାଧା ହେଉ ନ ଥିବ ।

ଓହୋ, ଏହାଙ୍କର ସୁସୁର ନାଦ ଶ୍ରବଣ କର କାକ, ଭେକ, କୁକୁଟ ନୀରବ ହେଲେଣି । ମିଲ୍, ରେଲ୍, ମଟର୍ ସ୍ଥଗିତ ହେଲଣି । ପଥର ପାଣି ହେଲଣି ଓ ପାଣି ପଥର ହେଲଣି ।

( କ୍ଷ )

କ୍ଷମାନୁକମ୍ପା ଧର ହେ ।
କ୍ଷୀର ଶର୍କରା ସଜାଡ଼ ସଡ଼ା ଶୁଖୁଆ ବାଡ଼ି ଭୁଞ୍ଜିବାରେ ଚତୁର ହେ ।
କ୍ଷର ନୋହିବାରୁ ମୁଖ ଦଶେ ରଣବଣ,
ଜ୍ୱର ହେଲପର ଥର ଥର ଶ୍ରୀଚରଣ,
କଟକ ବହରଣ, ଶଠ ଶିରାଭରଣ, ଝଟ ଝଟ କରଣ, ଲଟପଟ ଚରଣ
ଘଟ ଜଣି ବାରଣ, କଣ୍ଠ ଓଟ ଧରଣ, ମଟ ମଟ ନୟନ,
(ଅଟ) ଫନ ଶରଣ ହେ । ୧ ।

# ଚଟକ ଚନ୍ଦ୍ରହାସ ଚମ୍ପୂ

କ୍ଷମତାକୁ ବଳି ଏଥି ବଳାଇଲି ଚିତ୍ତ,
ହନୁ ପରି ଅନୁସରି କଢସ୍ପର୍ଶ୍ୟ ଗୀତ,
ଆଶା ପୋଷିଲେ ମନେ, ରସାଇବାକୁ ଜନେ; ଭାଷା ନାହିଁ ବଦନେ
ଶଶା ଭୁଲେ ଆପଣେ, ହସା ହେବ ଭୁବନେ, ମଶା ମଣି ଏ ଘନେ
କ୍ଷମ କରୁଣା ଗୁଣେ, ସୁଧୀ ସୁଜନେ ହେ । ୨ ।

ଯେଉଁ ଯୁବକ ସ୍ମାର୍ଟନେସ୍‌ରେ ଆଧୁନିକ ତରୁଣ କୁଳର ମଣ୍ଡନ ହୋଇ ଅଛନ୍ତି । ଫେସନ୍ ଛଟକରେ ବଜାରିମାନଙ୍କର ଖଲିଫା ବନୁଛନ୍ତି, ଯାହାଙ୍କୁ ଲଭ୍ କରିବା ସମ୍ବନ୍ଧରେ ଭବି ଆଧୁନିକା ତରୁଣୀଗଣ ମଧ୍ୟରେ ପ୍ରତିଯୋଗିତାମୂଳକ ଈର୍ଷାର ଉଦୟ ହୁଏ, ସେହି ଚଟକ ଚନ୍ଦ୍ର ବଂଶ ଶିରୋମଣିର ଉତ୍କଟ ସଭ୍ୟତାର ପ୍ରଗତି ପରିଗତି ଦିଗରେ ସହାୟତା କରି ଜଗତରେ ମଙ୍ଗଳ ବିଧାନ କରନ୍ତୁ ।

ଆମ୍ଭେ ପୁରୁଣା ଦିନିଆ । ଏହି ନବ ଯୁଗର ଉଦ୍‌ବୋଧକ ତରୁଣ ତରୁଣୀ, ଗଜରା ଗଜରୀ, ସବୁଜ ସବୁଜାମାନଙ୍କର ଶରଣାଗତ ହେଉଅଛୁଁ ।



# କର୍ଣ୍ଣ

## ପ୍ରଥମ ଅଙ୍କ

### ( ପ୍ରଥମ ଦୃଶ୍ୟ )

( ଅତିଥିଶାଳା—ଦୁର୍ବାସାଙ୍କ ସମକ୍ଷରେ କୁନ୍ତୀ କର ଯୋଡ଼ି ନତଜାନୁ ହୋଇ ଉପବିଷ୍ଟା )

ଦୁର୍ବାସା—ବତ୍ସେ, କୁନ୍ତି ଭୋଜ ସୁତେ,
ତୁଷ୍ଟ ମୁହିଁ ସେବାରେ ତୋହର ;
କାୟମନୋବାକ୍ୟେ ତୁହି ସେବିଛୁ ବ୍ରାହ୍ମଣେ,
ଦିବସ ଶର୍ବରୀ
ବହୁ ଯତ୍ନ କରି ।
ବ୍ରତକାଳ ପୂର୍ଣ୍ଣ ମୋର ଆଜ ;
ଏବେ ମୁହିଁ ଆପଣା ଉଦ୍ଦେଶେ—
ଯିବି ଅନ୍ୟ ଦେଶେ,
ତୁମ୍ଭର ମନ୍ଦିରୁ ବତ୍ସେ, ଦେନିଣ ବିଦାୟ ।
କୁନ୍ତୀ—କି ଦୋଷେ ଦୋଷିନୀ ଦାସୀ,
କେଉଁ ଭାବେ ସେବା-ବିଘ୍ନ ଘଟିଛି କି କେବେ ?
ଋଷିବର, କରୁଣାସାଗର
ଅଜ୍ଞାତେ କରିଛି ମୁହିଁ କିବା ଅପରାଧ
ଶ୍ରୀଚରଣେ ତବ ?
ଦୁର୍ବାସା—ମୂର୍ତ୍ତିମତୀ ସେବା ତୁହି, ରାଜେନ୍ଦ୍ର ନନ୍ଦିନୀ,
ସ୍ନେହ ପ୍ରୀତି ହୋଇ ଶରୀରିଣୀ
ସ୍ୱର୍ଗ ଛାଡ଼ି ଅବତୀର୍ଣ୍ଣ ଅବନୀ ମଣ୍ଡଳେ ;
ମାତୃ ପ୍ରାଣେ ତୋର ।
ଜନନୀ ସହଇ ଯଥା ସନ୍ତାନର ଅଳି
ଅକୁଣ୍ଠିତେ ।
ସହିଛୁ ପ୍ରଶାନ୍ତ ଚିତ୍ତେ ତହୁଁ ବଳି ତୁହି
ଏ ଦୁର୍ଦ୍ଦଣ୍ଡ ବ୍ରାହ୍ମଣ ଜଞ୍ଜାଳ ।
କୁନ୍ତୀ—ଏକେ ନାରୀ, ଧର୍ମଜ୍ଞାନ ହୀନା,
ତହିଁରେ ବାଳିକା ମୁହିଁ ସହଜେ ଅବୋଧା
ବ୍ରାହ୍ମଣ କଲ୍ୟାଣ ବଳେ
ସାଧିଅଛି ଧର୍ମ୍ମ ଆପଣାର
ନାରୀର କର୍ତ୍ତବ୍ୟ ସେବା, ଅତିଥି ସତ୍କାର ।
ଦୁର୍ବାସା—ପ୍ରଚଣ୍ଡ ଦୁର୍ବାସା ଋଷି ବିଦିତ ଜଗତେ ;
ତୋଷିଅଛୁ ମୋତେ ତୁହି,
ଅକାତରେ ସହି ସହି ମୋହର ଆଦେଶ
ଦିବାନିଶି ଅତି ସାବଧାନେ ।
ଧନ୍ୟ ତୋର ଧୈର୍ଯ୍ୟ ନାରୀ,
ଧନ୍ୟ ନିଷ୍ଠା, ଧନ୍ୟ ତୋ ହୃଦୟ
ପୁଣ୍ୟବତି, ମାଗ ଇଷ୍ଟ ବର ।
କୁନ୍ତୀ—ବ୍ରାହ୍ମଣ କଲ୍ୟାଣୁ ବଳି କି ଅଛି ସଂସାରେ ?
କେଉଁ ବର ମାଗିବି ଗୋସେଇଁ ?
ସାଧିଛି ଆପଣା ଧର୍ମ୍ମ ଜନକ ଆଦେଶେ,
ବର ଲଭେ ନାହିଁ ପ୍ରୟୋଜନ ।
ଦୁର୍ବାସା—ନିର୍ଲୋଭ ଅନ୍ତର ତୋର ଧନ୍ୟରେ ବାଳିକା,
ଏ ତୋର ନିଷ୍କାମ ଭାବ ଦୁର୍ଲ୍ଲଭ ଜଗତେ ।
ବତ୍ସେ, ଧର ଏହି ଜପାମାଳି
ଦୁର୍ବାସାର ଦାନ,
ଅମୂଲ୍ୟ ରତନ ।
ଏହି ମାଳା ଧରି କରେ
ମନ୍ତ୍ରପୂତ କରି, ସ୍ମରିବୁ ଯାହାକୁ
ସୁର, ନର, ବିଦ୍ୟାଧର, ଗନ୍ଧର୍ବ, ଅପ୍ସର
ଇଚ୍ଛା ମାତ୍ରେ ହୋଇ ଉପନୀତ
ପୂରାଇବେ ବାସନା ତୋହର ।
ଦୁର୍ବାସାର ବାକ୍ୟ ଏହା—ନୁହେଁ ପିଲା ଖେଳ,
ସଯତନେ ରଖିବୁ ସମ୍ବାଦ ।
ଆୟୁଷ୍ମତି, କଲି ଆଶୀର୍ବାଦ
ଭୁବନ ବିଖ୍ୟାତ ପୁତ୍ର ଗର୍ଭେ ଧରି ତୁହି
ଯୁଗେ ଯୁଗେ ହେବୁ ମାତଃ, ପ୍ରାତଃ ସ୍ମରଣୀୟା । [(ପ୍ରସ୍ଥାନ)

କୁନ୍ତୀ—(ଏକାକିନୀ)
ଋଷିଦତ୍ତ ମନ୍ତ୍ରପୂତ ମାଳାର ପ୍ରଭାବେ
ଇଚ୍ଛା ମାତ୍ରେ, ସୁର ନର ଯାହାକୁ ସ୍ମରିବ
ଆସିବେ ମୋ ପାଶେ !
ଏ କି ଅସମ୍ଭବ !
ଭକ୍ତିଲେକି ମୁନିବର ମୋତେ,
ନିର୍ବୋଧ ଶିଶୁକୁ ଲୋକେ ଛଳନ୍ତି ଯେସନ ?
କୁହନ୍ତି ଦୁର୍ବାସା ଋଷି ମିଥ୍ୟାବାଦୀ କେବେ ;
କରିବି ପରୀକ୍ଷା
ସତ୍ୟ ମିଥ୍ୟା ବଳେ ଯିବ ଦେଖା ।
(ଅପେକ୍ଷା କରି) ଏହି ଯେ ଅସନ୍ତି ଉଇଁ ପ୍ରାଚୀ ନଭ କୋଳେ,
ଦେବ ବିଭାବସୁ, ଧରି ତପ୍ତ ହେମ ପ୍ରଭା ।
ଏହି ଦେବ ଯଦି ଆସି ହେବେ ଉପଗତ
ସ୍ମରଣ ମାତ୍ରକେ,
ତେବେ ଜାଣିବି ନିଶ୍ଚୟ,
ଦୁର୍ବାସାଙ୍କ ବର ସତ୍ୟ, ସତ୍ୟ ମାଳା ଗୁଣ ।
( ମାଳା ଧରି ସ୍ମରଣ କଲେ ଓ ସୂର୍ଯ୍ୟଦେବ ପ୍ରବିଷ୍ଟ ହେଲେ )
ସୂର୍ଯ୍ୟ—କିଶୋରି, ଆସିଛି ମୁହିଁ ଦେବ ଦିବାକର
ଆକର୍ଷଣେ ତୋର ।
କହନ୍ତି ଦୁର୍ବାସା ଆଜ୍ଞା ବ୍ୟର୍ଥ ନୁହେଁ କେବେ,
ମନ୍ତ୍ରମାଳା ନୁହେଁ ବୃଥା, ଚିନ୍ତା କର ଦୂର ।
ମାଗ ବର, ଯାହା ଇଚ୍ଛା ଗୋ ବରବର୍ଣ୍ଣିନି !
କୁନ୍ତୀ—( ଭୟ ହୋଇ )
ଅଜ୍ଞାନରେ ଅପରାଧ କରିଛି ବାଳିକା,
ଚପଳତା କ୍ଷମା କର ଦେବ !
ପରୀକ୍ଷା ମାନସ କରି ମାଳାର ପ୍ରଭାବ
ସ୍ମରିଥିଲି ବିନା ପ୍ରୟୋଜନେ ;
ଏବେ ନିଜ ସ୍ଥାନେ,
କରନ୍ତୁ ପ୍ରୟାଣ ପ୍ରଭୋ !
ସୂର୍ଯ୍ୟ—( ହସି )
ଦେବତା ଆହୂତ ହୋଇ
ଅକାରଣେ ଯାଆନ୍ତି କି ଫେରି ?
ହେ ସୁନ୍ଦରି,
ଦାନ କର ଅଙ୍ଗ ତବ,
ଭୁବନ ବିଜୟୀ ପୁତ୍ର ସ୍ଥାପିବି ତୋ ଗର୍ଭେ
ଯାହା ଯା'ର ଭୂମଣ୍ଡଳ ହେବ ବିମଣ୍ଡିତ ।

କୁନ୍ତୀ—ଏ କି ଅସମ୍ଭବ କଥା,
ହେ ସବିତା,
ପିତାଙ୍କ ଦୁହିତା ମୁହିଁ ନୁହେଁ ତ ସ୍ୱତନ୍ତ୍ରା,
ଏ ଶରୀରେ ନାହିଁ ଅଧିକାର ।
( ଅଧୋବଦନରେ ଅବସ୍ଥିତା ହେଲେ )
ସୂର୍ଯ୍ୟ—ପିତାର ଅଧୀନ ନୁହେ କନ୍ୟାର ଶରୀର ।
ସେଥିଯୋଗୁଁ କନ୍ୟା ନାମ ତା'ର
ଶାସ୍ତ୍ରମତେ ଧର୍ମମିତ ଏହି, ପୁଣ୍ୟବନ୍ତ ।
କୁନ୍ତୀ—ଅପ୍ରାପ୍ତ ବୟସ୍କା ମୁହିଁ ଅରଜା ବାଳିକା,
ସମ୍ଭବେ କି ଅଙ୍ଗଦାନ କେବେ ?
ସୂର୍ଯ୍ୟ—ସେଥିପାଇଁ ଚିନ୍ତା ନାହିଁ ତୋ'ର ।
କନ୍ୟକା ଅବସ୍ଥା କେବେ ନୋହିବ ଅନ୍ୟଥା,
ଦେବ ବରେ ବରାଙ୍ଗିନି ତୋ'ର ।
କୁନ୍ତୀ—କ୍ଷମା କର କୃପା ବହି ଦେବ ବିଭାବସୁ ;
ନିର୍ବୋଧ ବାଳିକା ମୁହିଁ ଧର୍ମଜ୍ଞାନହୀନା
ଏକାନ୍ତରେ ଜନକ ଅଧୀନା ।
ଆସିଛ କରୁଣା କରି ଯଦି ଏ ମନ୍ଦିରେ
ଏହି ଭିକ୍ଷା ପଦେ,
ସ୍ୱସ୍ଥାନେ ପ୍ରସ୍ଥାନ କର ଛାଡ଼ି ମର୍ତ୍ତ୍ୟ ଲୋକ ।
ତବ ଆଜ୍ଞା ପାଳନରେ ଅସମର୍ଥା ଦାସୀ ।
ସୂର୍ଯ୍ୟ—( କୋପାନ୍ୱିତ ହୋଇ )
ରାଜପୁତ୍ରି,
ଦେବତା ଆହ୍ୱାନ ନୁହେ ଶିଶୁର କୌତୁକ,
ନିରାଶେ ଫେରିବି ଯଦି ଆଜ ତୋ ମନ୍ଦିରୁ
ଦେବ ଅଭିଶାପ ମୂର୍ତ୍ତି, ଜନକେ ତୋହର,
ତୋହ ସଙ୍ଗେ ସେହି ମୁନିବର ।
ଆଖଣ୍ଡଳ କୋପେ ହେବେ ସବୁ ଭସ୍ମୀଭୂତ ।
କୁନ୍ତୀ—(ଭୀତ ହୋଇ)
ପ୍ରଭୁ, ପ୍ରଭୁ, କୋପ ପରିହର,
ଧର୍ମାଧର୍ମ ଜ୍ଞାନଶୂନ୍ୟା ନାରୀ
ଧର୍ମର ନିଗୂଢ଼ ତତ୍ତ୍ୱ କାହୁଁ ବା ଜାଣିବ ?
ଧର୍ମର ସୃଜନକାରୀ—
ଧର୍ମର ରକ୍ଷକ—
ତୁମ୍ଭେ ଦେବ ଧର୍ମର ପାଳକ,
ଯଥା ଇଚ୍ଛା ପୂର୍ଣ୍ଣ ହେଉ ତବ ।

ସୂର୍ଯ୍ୟ—(ମୌନ ଭାବରେ ଅବସ୍ଥିତ ହୋଇ)
ସ୍ଥାପିତ ଗର୍ଭେ ତବ ବିଭାକର ତେଜ
ପରଶି ଉଦର ।
ମୋହ ବରେ ହୋଇବ ଉଦୟ
ଦିଗ୍ୱିଜୟୀ ମାର୍ତ୍ତଣ୍ଡସମ ପୁତ୍ର ପ୍ରଭାବନ୍ତ
ଭୂମଣ୍ଡଳେ ଯଶସ୍ୱୀ ଅଜେୟ ।

କୁନ୍ତୀ—ଅନୂଢ଼ା ବାଳିକା ମୁହିଁ···
···ଅନ୍ତର୍ଯ୍ୟାମୀ··· (କ୍ରନ୍ଦନ)

ସୂର୍ଯ୍ୟ—ନୁହଁଅ କାତର ଧନ,
ଦେବ ବରେ ଏହା ମାତ୍ର ହୋଇବ ଭୂମିଷ୍ଠ
ସର୍ବାଙ୍ଗ ସୁନ୍ଦର ପୁତ୍ର—
ଅଙ୍ଗେ ଥିବ ଯା'ର
ସହଜାତ କବଚ କୁଣ୍ଡଳ ।
ଅଭେଦ୍ୟ କବଚ ସେହି । ଅମୃତ କୁଣ୍ଡଳ,
ଯାହାର ପ୍ରଭାବେ,
ମୃତ୍ୟୁଭୟ, ପରାଜୟ ନାହିଁ ।
ପ୍ରସବାନ୍ତେ ପୂର୍ବାବସ୍ଥା ପ୍ରାପ୍ତ ହେବୁ ତୁହି ।
( ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

( ରାଜସଭା—ରାଜା କୁନ୍ତିଭୋଜ ସିଂହାସନରେ ଉପବିଷ୍ଟ । ମନ୍ତ୍ରୀ ଓ ସଭାସଦ୍‌ଗଣ ଯଥାସ୍ଥାନରେ ଅବସ୍ଥିତ )

ମନ୍ତ୍ରୀ—ମହାରାଜ,
ହସ୍ତିନା ନଗରୁ ଏକ ଦୂତ ଅଛି ଆସି
ସମ୍ମୁଖରେ ସାକ୍ଷାତ ପାଇଁ କରୁଛି ଅପେକ୍ଷା
ଶ୍ରୀମୁଖେ ଆଦେଶ ।

କୁନ୍ତିଭୋଜ—ହସ୍ତିନା ନଗରୁ ଦୂତ ! ଡାକ ସଭା ସ୍ଥଳେ ।
( ପ୍ରହରୀ ପ୍ରସ୍ଥାନ କଲା )
ଜାଣିଛ କି ମନ୍ତ୍ରୀବର
କି କାରଣେ ଆସିଛି ଉଚର,
ଘେନି କି ସମ୍ବାଦ ?

ମନ୍ତ୍ରୀ—ସୋମ ବଂଶ ଭୋଜ ବଂଶେଶ୍ୱର ମିତ୍ର ଭାବ,
ଆସି ଥିବ ଘେନି କିଛି ମଙ୍ଗଳ ଉଦନ୍ତ ।
ନିବେଦିବ ବଳେ ଆସି ପଦେ ।
( ଦୂତ ଓ ପ୍ରହରୀ ପ୍ରବିଷ୍ଟ ହେଲେ )

ଦୂତ—ଜୟ ରାଜା ଭୋଜ-କୁଳ-ପତି
ପ୍ରବଳ ପ୍ରତାପଶାଳୀ, ଶତ୍ରୁ ବିମର୍ଦ୍ଦନ ।

କୁନ୍ତିଭୋଜ—ବିପ୍ରବର, ଘେନ ନମସ୍କାର ।
ଶୁଭେ ତ ଅଛନ୍ତି ସର୍ବେ ହସ୍ତିନା କଟକେ ?
ସୋମକୁଳେ କୁଶଳ ତ ସବୁ ?

ଦୂତ—ଚନ୍ଦ୍ରବଂଶେ କୁଶଳ ସମସ୍ତ;
ଦିଗ୍ୱିଜୟୀ ଚନ୍ଦ୍ରମାସମ ପାଣ୍ଡୁ ନରପତି,
ଅଗଣ୍ତି ପ୍ରମଥି
ପାଳୁଛନ୍ତି ପ୍ରଜାଗଣେ;
ନବୀନ ବୟସେ ତାଙ୍କ କୀରତି-ମୟୂଖ
ବିଦେଶ ଦେଶାନ୍ତରେ ରାଜା କରିଛି ବିସ୍ତାର;
ତିରୋହିତ ଦୈନ୍ୟ, ଅସନ୍ତୋଷ,
ପୁରବାସୀ ଅନୁରକ୍ତ ମଧୁର ସ୍ୱଭାବେ,
ଭୟେ ଅନୁରକ୍ତ ଶତ୍ରୁ ଗଣ ।

କୁନ୍ତିଭୋଜ—ମଙ୍ଗଳରେ ଅଛନ୍ତି ତ ଶ୍ରେଷ୍ଠ ମହାମତି
କ୍ଷତ୍ରକୁଳ ଅମଳ ଚନ୍ଦ୍ରମା ?

ଦୂତ—ମଙ୍ଗଳେ ଅଛନ୍ତି ବୀର,
ସତ୍ୟସନ୍ଧ, ଶାନ୍ତନୁ-ନନ୍ଦନ,
ତାଙ୍କର ଆଦେଶ ଘେନି ଆସି ଅଛି ମୁହିଁ,
ଭୋଜବଂଶ ଅବତଂସ ନରେନ୍ଦ୍ର ସମୀପେ ।
ପୃଥା ନାମେ କନ୍ୟା ତବ ତ୍ରୈଲୋକ୍ୟ ସୁନ୍ଦରୀ,
ରାଜକୁଳ ଶିରୀ ।
ପାଣ୍ଡୁରାଜ ନୃପ ଚୂଡ଼ାମଣି;
ଯୋଗ୍ୟ ବରେ କରି ରତ୍ନ ଦାନ
ଲଭନ୍ତୁ ଅକ୍ଷୟ ଧର୍ମ, କୀର୍ତ୍ତି ମହୀପୂରୀ ।

କୁନ୍ତିଭୋଜ—ବିପ୍ରବର,
ଏତେ ଭାଗ୍ୟ ହୋଇବ କି ମୋର,
ସୋମ ବଂଶ ସନେ କରି ବନ୍ଧୁତା ସ୍ଥାପନ
ଧନ୍ୟ ହେବ ଭୋଜକୁଳ,
ହେବ ମୁହିଁ ଗୌରବ ମଣ୍ଡିତ ।
ଯାଅ ଭଦ୍ର ହସ୍ତିନା ଭୁବନେ
ଭୀଷ୍ମ ସନ୍ନିଧାନେ,
ଶୁଣାଇବ କୁନ୍ତିଭୋଜ—
ଶିରୋଧାର୍ଯ୍ୟ କରୁଅଛି ରାଜର୍ଷି ଆଦେଶ ।

ଦୂତ—ଜୟ ଜୟ ଭୋଜ ବଂଶ, ଜୟ ସୋମ ବଂଶ
ଜୟ ପାଣ୍ଡୁ, ଜୟ ପୃଥା କୁନ୍ତୀ ରାଜଜେମା ।
( ଦୁର୍ବାସା ପ୍ରବେଶ ହେଲେ )

ଦୁର୍ବାସା— ରାଜନ୍,
ବ୍ରତ ମୋର ସାଙ୍ଗ ଏତେ ଦିନେ,
ପ୍ରୀତ ମୁହିଁ ଅତିଥି ସତ୍କାରେ ତବ;
ତ୍ରିଭୁବନ ଧନ୍ୟା ତୋ'ର କନ୍ୟା ପୁଣ୍ୟବତୀ
ମହୀ ସତୀ ।
ଭାରତ ପ୍ରଥିତଯଶା ବୀର ପ୍ରସବିନୀ
ପିତୃକୁଳ ଶ୍ୱଶ୍ରୁକୁଳ କରିବ ଉଜ୍ଜ୍ୱଳ ।
ବ୍ରାହ୍ମଣର ଆଶୀର୍ବାଦ ନୋହିବ ଅନ୍ୟଥା
ନିଜ କାର୍ଯ୍ୟେ ଚଳିଲି ମୁଁ ଏବେ ।
( ପ୍ରସ୍ଥାନ )

କୁନ୍ତିଭୋଜ—ପୃଥା ମୋର ମୂର୍ତ୍ତିମତୀ କମଳା ରୂପିଣୀ
ଅବା ହିମାଦ୍ରି-ନନ୍ଦିନୀ । ଭୋଜ ବଂଶେ
ଅମୂଲ୍ୟ ଭୂଷଣେ । ମନ୍ତ୍ରି, ଆଜି ଦିନ
ସୁପ୍ରଭାତ ମୋର, ପୁରବାସୀଗଣ ମାତି
ଆନନ୍ଦ ଉଲ୍ଲାସେ
ଘରେ ଘରେ ଆଚରନ୍ତୁ ମାଙ୍ଗଳ୍ୟ ଉତ୍ସବ ।
ବନ୍ଦିଗଣ ଗାଅ ଜୟଗୀତ ।

( ବନ୍ଦୀ ଓ ବନ୍ଦିନୀ ମାନଙ୍କର—ଗୀତ )

ଗୀତ

ଜୟ ଜୟ ଧରଣୀ ଭାଗ୍ୟ ବିଧାତା
ଦୀନ ଶରଣ, ଭୟ ହର, ବର ଦାତା ।

ପୁରୁଷ—ଶତ୍ରୁ ଦଳନ ବୀର ସମର ପ୍ରତାପୀ
ସ୍ତ୍ରୀ— ତ୍ରିଭୁବନ-ବିଦିତ ଯଶ କୀର୍ତ୍ତି-କଳାପି ।

ପୁ— ନୃପକୁଳ ମଣ୍ଡନ ଶୋଭନ ଇନ୍ଦୁ
ସ୍ତ୍ରୀ— ରାଜ ରାଜେଶ୍ୱର କରୁଣା ସିନ୍ଧୁ ।

ପୁ— ସଜ୍ଜନ ପାଳକ ଦୁଷ୍ଟ ନିବାରି
ସ୍ତ୍ରୀ— ଜନକ ଜନନୀ ସମ ଜନ ହିତକାରୀ ।

ପୁ— କମଳା ବାଣୀ ବର ନନ୍ଦନ ବର
ସ୍ତ୍ରୀ— ଭୋଜବଂଶ ଅବତଂସ ସୁଧୀର ।

## ତୃତୀୟ ଦୃଶ୍ୟ

( ଅନ୍ତଃପୁରଶାଳା । କୁନ୍ତୀ ଓ ପରିଚାରିକା )

ପରିଚାରିକା—ପଥିପାଇଁ କପା ବିଷାଦିନୀ,
କେ ଖଣ୍ଡିବ ବିଧିର ନିର୍ବନ୍ଧ ?
ରାଜେନ୍ଦ୍ର ଦୁଲଣି,
ନ ହୁଅ କାତର ଏବେ
ପାପନୁହେ, ଦେବତା ପ୍ରସାଦ ।

କୁନ୍ତୀ—କୁଳର ପାଂଶୁଳା ମୁହିଁ,
ସୁନିର୍ମଳ ଭୋଜ ବଂଶେ କାଳିମାର ରେଖା
କି ଦୁର୍ଯୋଗେ ସେବଥିଲି ବ୍ରାହ୍ମଣ ପଦୁର
ଲଭି ବର,
ମଜାଇଲି ପିତୃକୁଳ ।
ଅଭାଗିନୀ—କଳଙ୍କିନୀ
ତ୍ୟଜିବି ଜୀବନ । (ରୋଦନ କଲେ)

ପରି—ଦେବ ତେଜେ ଗର୍ଭମୟୀ ତୁମ୍ଭେ
ସତୀ ସୁଲକ୍ଷଣା
ଆତ୍ମହତ୍ୟା ମହାପାତକ ନ ବଳାଅ ମନ,
ଶୁଣ ମୋ ବଚନ,
ସୁବିହିତ ପ୍ରତିକାର କରିବା ବିଚାର ।
ଆଣିଛି ମୁଁ ଦେଖ ଏହି ସୁବର୍ଣ୍ଣ ମଞ୍ଜୁଷା
ଥୋଇ ଏହି ଶିଶୁ ସଯତନେ
ଅଶ୍ୱ ନଦୀ ଖର ସ୍ରୋତେ ଦେବା ଗୋ, ଭସାଇ

କୁନ୍ତୀ—କେଉଁ ଜନ୍ମେ କରିଥିଲି କେଉଁ ମହାପାପ
ଏବେ ଦେବ ଅଭିଶାପ
ପଡ଼ିଲା ମସ୍ତକେ ମୋର ।
ହାୟ, କେତେ ନରନାରୀ
ଗୋଟିଏ ସନ୍ତାନ ପାଇଁ ଦିବସ ଶର୍ବରୀ
ଭଳି ଭଳି ଜର୍ଜରିତ ପ୍ରାଣେ
ମଣନ୍ତି ମାନବ ଜନ୍ମ ବ୍ୟର୍ଥ ହାହାମୟ ।
କିନ୍ତୁ ମୁଁ ଅକାଳେ ଲଭି
ଏ ଭଳି ଅମୂଲ୍ୟ ପୁତ୍ର ସୂର୍ଯ୍ୟକାନ୍ତ ସମ
ଅବହେଳେ ଦେବି ବିସର୍ଜନ ।

ପର—ରାଜଜେମା,
ବୃଥା ପ୍ରଳାପର ଆଜ ନାହିଁ ତ ସମୟ,
ସମ୍ମୁଖରେ ଲୋକ ସଦା ଭୟ
ଚାଲ, ଚାଲ
ନଇଘାଟରେ ଯିବା ସଂଗୋପନେ ।
(ମଞ୍ଜୁଷା ମଧ୍ୟରେ ଶିଶୁକୁ ସ୍ଥାପନ କଲା)

କୁନ୍ତୀ—ଗୋପନ କରିବା ପାଇଁ ଏକ ମହାପାପ
ଅନ୍ୟ ପାପ ଅର୍ଜିଲି ନିଶ୍ଚୟ ।
ଗର୍ଭରୁ ଜନମ କରି ସ୍ୱହସ୍ତେ ନାଶିଲି
ଶିଶୁର କୋମଳ ପ୍ରାଣ,
ମାତା ନୁହେଁ, ପିଶାଚୀ ରାକ୍ଷସୀ ।

ପର— ଆସ, ଆସ, ରାଜଜେମା
ଲୋକାଳୟେ କାଲେ ହେବ ପ୍ରକାଶ ଏ କଥା ।

କୁନ୍ତୀ—ଚାଲ, ଚାଲ—ନା—ରହ କ୍ଷଣେ
ବାନ୍ଧିନିଏ ଜନମର ବକ୍ଷ ସୁକୋମଳ
ନିଦାରୁଣ ବଜ୍ର ଆବରଣେ ।
ଯହୁଁ ସ୍ନେହେ କ୍ଷୀର ରାଶି ଭାସେ
କରିଦିଏ ସେହି ହୃଦ ଶୁଷ୍କ ମରୁଭୂମି
ସ୍ନେହେ, ପ୍ରେମେ ଦେଇ ଜଳାଞ୍ଜଳି ।
ପୋଛି ଦିଏ, ଅଶ୍ରୁକଣା,
ଅଶ୍ରୁ ନୁହେଁ, ରୁଧିର ପ୍ରବାହ ।
ପାପିୟସୀ କୁଳାଙ୍ଗାର ନିର୍ମମ ନୟନେ
ଶୋଭେ କି ସେ ନନ୍ଦନର ମନ୍ଦାକିନୀ ଧାର !
(ଉଭୟେ ପ୍ରସ୍ଥାନ କଲେ)

## ଚତୁର୍ଥ ଦୃଶ୍ୟ

(ବୈକୁଣ୍ଠ ପୁର—ବିଷ୍ଣୁ ଓ ନାରଦ)

ବିଷ୍ଣୁ—କହ ତପୋଧନ, ବିଧାତା ନନ୍ଦନ
ଦିବା ନିଶି ଭ୍ରମି ଭ୍ରମି କରିଛ ସଂଗ୍ରହ
ତ୍ରିପୁରର କି ନବ ସମ୍ବାଦ ?

ନାରଦ—ଏକି କଥା ନାଥ ?
ତୁମ୍ଭେ ତ କରିଛ ମୋତେ ବାତୁଳ ଶ୍ରୀକାନ୍ତ !
ତୁମ୍ଭ ଲାଗି ହୋଇଛି ମୁଁ ବାଇ,
ତୁମ୍ଭେ ସେଥିପାଇଁ
ଦେଖିବାକୁ ନିଜ ନେତ୍ରେ ଲୀଳା ମାୟାମୟୀ ।
ଅନ୍ତର୍ଯ୍ୟାମୀ
ଅଣୁ ପରମାଣୁ ରୂପେ, ଓତଃ ପ୍ରୋତ ଭାବେ
ନିଜେ ରଚି ବିଶ୍ୱପାକ
ଲଗାଇଛ ଖେଳ—
ସେ ଖେଳ କୌଶଳ,
ଦେଖି ଦେଖି ଜନ୍ମାବଧି
ଭଲେ ହେଲେ ନ ପାରିଲି କଳି ।
ଚକ୍ଷୁ ଥାଇ ହେଲି ଅନ୍ଧ,
ମାୟାର ନିବନ୍ଧ,
ଯେତେ ଦେଖେଁ ତେତେ ଅନ୍ଧକାର,
ବୁଦ୍ଧି ଅଗୋଚର,
ଦୁର୍ବୋଧ ଅପାର,
ଜଟିଳତା ଫାନ୍ଦେ ପଡ଼ି ଶତ୍ତ ଯାଏ ଭ୍ରମି ।

ବିଷ୍ଣୁ—କହ କହ ଋଷିବର ଭୁବନ ବାରତା ।
ତୁମ୍ଭ ମୁଖେ ସୁମଧୁର କଥା
ଶୁଣିବାକୁ କୌତୁହଳ ଅତି ।

ନାରଦ—କି କହିବି ତୋହ ଆଗେ ହରି,
ସର୍ବ ଭୂତେ ରହି ତୁହି ନିତ୍ୟ ପ୍ରାଣ ରୂପେ
ଜାଣିଛୁ ସମସ୍ତ ।
ଶୁଣ ତେବେ—
ବଳଦୃପ୍ତ ଦୈତ୍ୟକୁଳ ପ୍ରଚଣ୍ଡ ପ୍ରତାପେ
ସନ୍ତାପିତା ଦେବୀ ବସୁମତୀ ।
ଭାର ଦେ ଭାର,
ସହି ସହି ନିତାନ୍ତ କାତର ।
ସତ୍ୟ ତିରୋହିତ,
ମିଥ୍ୟାର ରାଜତ୍ୱ,
ଆସକ୍ତ ମାନବବୃନ୍ଦ ନାନା ବ୍ୟଭିଚାରେ ।
ସବଳର ଦୁର୍ବଳେ ପୀଡ଼ନ ।
ରାଜା ହରେ ଧନ,
ଅଧର୍ମର ଅତ୍ୟାଚାରେ ଜର୍ଜରିତ ଧରା ।

ବିଷ୍ଣୁ—ମୁନିବର, ଚିନ୍ତା କର ଦୂର,
ଧର୍ମର ସ୍ଥାପନ ପାଇଁ ଦୁଷ୍କୃତ ବିନାଶି
ଯୁଗେ ଯୁଗେ ମୋର ଅବତାର ।
ହରିବାକୁ ଧରଣୀର ଭାର
ଧରି ନର କଳେବର
ଅବତୀର୍ଣ୍ଣ ହେବି ଧରା ଧାମେ ।

ଶୈଶବରେ ବ୍ରଜପୁରେ ନନ୍ଦର ମନ୍ଦିରେ
ପ୍ରକାଶିବ ଲୀଳା ମଧୁମୟ
ପ୍ରେମର ଅମୃତ ରସେ ଭସାଇ ଅବନୀ ।
ଦେବକୁଳ ମାନବ ଶରୀରେ
ଦୁର୍ଦ୍ଦାନ୍ତ ଦାନବବୃନ୍ଦ ସଂହାର କାରଣେ
ସମ୍ମିଳିତ ହେବେ ମୋହ ସଙ୍ଗେ
ଭୂଭାର ହରଣେ ।
ନାନା ଭାବେ ନାନା ରୂପେ
ଦେଖାଇବ ଜଗତକୁ ଆଦର୍ଶ ମହାନ ।
ଶିଖାଇବ ଆପଣେ ଆଚରି
ସୂକ୍ଷ୍ମତମ ଧର୍ମନୀତି ଲୋକେ ଅଗୋଚର ।
କୁରୁକ୍ଷେତ୍ରେ ହେବ ମହାଯଜ୍ଞ;
ହୋତାରୂପେ ଭକ୍ତ ହୋଇ ତହିଁ
ଅର୍ପିବ ଆହୁତି ସେହି ମହା କାଳାନଳେ ।
ଭାର-ମୁକ୍ତ କରି ବସୁନ୍ଧରା
ସ୍ଥାପି ଧର୍ମରାଜ୍ୟ,
ସମ୍ବରିବ ଲୀଳା ।

ନାରଦ—ଲୀଳାମୟ,
କେ ବୁଝିବ ସୂକ୍ଷ୍ମ ଗତି ତୋର
ଅଚିନ୍ତ୍ୟ ତୋ ଲୀଳାର କୌଶଳ ;
ହେ ଶ୍ରୀପତି !
ଚକିତ ମୋ ମତି,
ସ୍ତମ୍ଭିତ ସ୍ପନ୍ଦନ ହୃଦେ,
ପ୍ରବୁଦ୍ଧ ଚିତ୍ତ ଅପାର ବିସ୍ମୟେ ।
ସେ ରାଜୀବ ପଦେ
ନାରଦର ଥିବ ଧ୍ୟାନ,
ତୋହରି କରୁଣା ବଳେ
ସେହି କାଳେ ଏ ବେନି ନୟନ
ଦେଖିବ ପ୍ରକଟ ଲୀଳା ପୁଣ୍ୟ ଧରାଧାମେ ।

## ପଞ୍ଚମ ଦୃଶ୍ୟ

( ଅନ୍ଧକାର ରାତି—ରାଜପଥ । କୁନ୍ତୀ ଓ ପରିଚାରିକା )

ପରିଚାରିକା—ରାଜନନ୍ଦିନୀ,
ଧୀରେ ଧୀରେ ଚାଲୁଅଛ ଅତି,
କର କ୍ଷିପ୍ର ଗତି ;
ଗୋପନେ ଗୋପନେ,
ପ୍ରବେଶିବା ଆପଣା ଭୁବନେ ।
ଭୟ ହୁଏ ମନେ,
କାଳେ ଯିବା ପଡ଼ି କାହା ଆଗେ ।
ଅପବାଦ ରଟିବ ସଂସାରେ ।

କୁନ୍ତୀ—ଦେଖ ଦେଖ ଘୋର ନିଶାକାଳ,
ଘୃଣାଆଡ଼େ ନିବିଡ଼ ଅନ୍ଧାର—
ତହୁଁ ବଳି ମୋ ଅନ୍ତର ଆବୃତ ତମିସ୍ରେ ।
ହାୟ, ହାୟ, କିନା ଅପରାଧେ
ବିଧାତା ସାଧିଲା ବାଦ ।
ରାଜେନ୍ଦ୍ର ନନ୍ଦିନୀ ହୋଇ, ହେଲି କଳଙ୍କିନୀ,
ଅଭାଗିନୀ, ତନୁଜ-ଘାତିନୀ !
ନାରୀପ୍ରାଣ, ମାତୃପ୍ରାଣ ପାଷାଣରେ ବାନ୍ଧି
ସ୍ୱହସ୍ତେ ଭସାଇ ଦେଲି ଅଶ୍ୱନଦୀ ଜଳେ
ନୟନପିତୁଳା ମୋର ।
ରହିବ ଜୀବନେ ଯଦି
କେଉଁ ଭାଗ୍ୟବତୀ କୋଳ କରିବ ଉଜ୍ଜ୍ୱଳ,
ଅଭାଗା ଜନନୀ ହନ୍ତା—
ସେ'ତ ନ ଜାଣିବ କେବେ
ଆପଣା ଜନନୀ ବୋଲି ;
ନ ଚିହ୍ନିବ ଏ ରାକ୍ଷସୀ ସନ୍ତାନ ଘାତିନୀ ।

( ଜଣେ ପୁରୁଷ ପ୍ରବିଷ୍ଟ ହେଲେ )

ପୁରୁଷ—ନିଶାଭାଗ ଗଡ଼ିରେ କିଏ ଯାଉଛରେ ? ତିରିଲୀ ନା ମରଦ ?

ପରିଚାରିକା—ଆମେ ଯେ ହେଲୁଁ ତମର ସେଥିରେ କ'ଣ ?

ପୁରୁଷ—ତମେ ଯଦି ଚୋରି କରିବାକୁ ଯାଉଥିବ, କମ୍ପା ଆଉ କିଛି —

ପରିଚାରିକା—ରାଜ ଦାଣ୍ଡରେ କଣ କାହାରି ଝିଅ ବହୂ ଯିବେ ନାହିଁ ?

ପୁରୁଷ—ଝିଅ ବହୂ ତ ; ରାଜଦାଣ୍ଡରେ ରାତି ଅଧରେ କାହିଁକି ବାବା ?

ପରିଚାରିକା—ଭଲ ଲୋକ ହୋଇଥିବୁ ତ କହୁଦଉଛୁ —
ଭଲରେ ଭଲରେ ମହତ ଯେବେ ଆପଣା ପାଇଚିରେ
ଗୁଲିଯା—ନୋହିଲେ— ଦେଖିବୁ ନା ?

ପୁରୁଷ—( ଚମକି ) ନାହିଁ, ବାବା, ଦଣ୍ଡବତ । ମା ଚଣ୍ଡୀ, ଚାମୁଣ୍ଡୀ
ଝିର ଝିର ମୁଣ୍ଡି ମୋତେ ଛାଡ଼ି ଦେଇ'ସା ବାବା ଏ ଥରକ ।
ମୋ, ବଇଁଶ ତଣ୍ଟି ଚିପି ଦେଇ ଯା—ମୋର ଏଠି କୋଟି
କୋଟି ମୁଣ୍ଡିଆ । ( ଦଣ୍ଡବତ ହେଲା )

( କୁନ୍ତୀ ଓ ପରିଚାରିକା ପ୍ରସ୍ଥାନ କଲେ )

( ତାହାର ସ୍ତ୍ରୀ ଅନ୍ୟ ଦିଗରୁ ପ୍ରବେଶ କଲା ଓ ଗୋଇଠା ମାରିଲା )

ସ୍ତ୍ରୀ—କି ରେ ଯୋଗିମରିଆ—ଏଠି ମଡ଼ା ଭଳି ଏମିତି ଛଟକି କାଡ଼ୁଛୁ ନା କ'ଣ ?

ପୁରୁଷ—ମା, ମା, ରକ୍ଷାକର ମା ! ମୁଁ ନୁହେଁ ମା ……

ସ୍ତ୍ରୀ—ତୁ ନୁହେ କଣରେ ନଇଶୁଆ ?
ଏଠି ଶୋଇଥିଲୁ କାହିଁକି ?

( ପୁରୁଷ ଉଠିଲା )

ପୁରୁଷ—ଓଃ, ଇଏ କଏ ଆମ ଶଙ୍କର ମା ? ମୋ ସାହାତ ଉଡ଼ ଯାଉଥିଲା । ମୁଁ କହିଲି ବା ସେ ଯୋଗିମା ଗୁଡ଼ାକ ପୁଣି ଫେରି ଆସି ମୋ ବେକ ଉପରେ ଚଢ଼ି ବସିଲେ ।

ସ୍ତ୍ରୀ— କଣ ମୋତେ ଭଣ୍ଡାଉଛୁ ମ ? ମୁଁ କ'ଣ ଦେଖି ନାହିଁ ? ପରସ୍ତ୍ରୀ କରିବୁ ବୋଲି ବିଛଣାଟାରୁ ଉଠି ଆସିଲୁ । ମୁଁ କହିଲି କହ, ଶୋଇଲା ମଣିଷଟା ରାତିଟାରେ ଯାଉଛି କୁଆଡ଼େ ଦେଖେଁ । ଏହା କହି ପଛେ ପଛେ ଚାଲି ଆସିଲି । ଆସିଲା ବେଳକୁ ଯୋଡ଼ାଏ ମାଇକିନିଆଙ୍କ ସଙ୍ଗରେ ରଙ୍ଗ ନାଟ, ଫୁସୁର୍ ଫାସର୍ ଲଗିଛି । ମୁଁ ଆସୁ, ଆସୁ ସେ ଖସି ଗଲେ ନୋହିଲେ ତାଙ୍କ ଗାଲକୁ କଲେ ଲେଖାଏଁ କାମୁଡ଼ ଦେଇ ଥାଆନ୍ତି । ପର ଗିରସ୍ତଙ୍କୁ ଏତେ ଲୋଭ କାହିଁକି ?

ପୁରୁଷ—ଇଏତ ଡାହାଣୀଙ୍କ ବାବା ରେ ! ମୋତେ କାମୁଡ଼ା କାମୁଡ଼ କରିବୁ ନାହିଁ । ତୋ ଗୋଡ଼ ତଳେ ପଡ଼ୁଛି ।

ସ୍ତ୍ରୀ— ହଉ ଚାଲ୍ ଚାଲ୍ । ତୋ ସଚ୍ଚୋଟ ପଣ ଦେଖା ଗଲାଣି । ଚାଲ୍ ରେ ଅଭିକା ।

( ଘୋଷାରି ଘୋଷାରି ପ୍ରସ୍ଥାନ )

## ଷଷ୍ଠ ଦୃଶ୍ୟ

( ଯମୁନା ତୀର, ଅଧିରଥ ଓ ରାଧା )

ଅଧିରଥ—ଏଥିପାଇଁ ଏଡ଼େ ଅକିଞ୍ଚନ;
ଦିବାନିଶି ଉପବାସୀ,
ଧାଇଁଛି ଆକୁଳ ପ୍ରାଣ, ନିତାନ୍ତ କାତର
ସେ ଆଶା କି ନୋହିଲା ପୂରଣ
ଘୀନବନ୍ଧୁ ନାମେ ପରା ଲାଗିଲା କଳଙ୍କ
ଘୀନବନ୍ଧୋ !
ଅଯାଚିତେ ଦିଅ ଆଣି ଦରିଦ୍ର କୁଟୀରେ
ନଗ୍ନ ଶିଶୁ, କ୍ଳିଷ୍ଟ ଅନାହାରେ,
ବ୍ୟସ୍ତ କରି ଜନକ ଜନନୀ ।
କିନ୍ତୁ ସେ ରହିଛି ଗୃହିଁ ଆଶାପୂର୍ଣ୍ଣ ଅନ୍ତରେ
ବିନ୍ଦୁଏ କରୁଣା ଲାଗି
ଅବିରତ, କରି ଦୃଢ଼ ବ୍ରତ
ହେଉଛି ନେ ବ୍ୟର୍ଥ ମନୋରଥ
ତପ୍ତ ଶ୍ୱାସେ ଆଶା ଅବସାନ ।

ରାଧା—ଅନନ୍ତ ଆବେଗ ଭରା ନାରୀର ହୃଦୟେ
ଅନନ୍ତ ବାସନା—ଅତୃପ୍ତି କାମନା
କ୍ଷଣେ କ୍ଷଣେ ଆସେ ଉନ୍ମାଦନା
ଅନ୍ତର ନିଭୃତ ରୁଦ୍ଧ, ଉତ୍ସଦ୍ୱାର ଫେଡ଼ି
ଦିଅନ୍ତି ଅନାଡ଼ି—
ଅକ୍ଷୟ ବାତ୍ସଲ୍ୟରସ ଅମୃତ ପ୍ଲାବନ,
ମାତୃତ୍ୱରେ ନାରୀତ୍ୱର ସାର୍ଥକତା ବିନା !
ସେ ଆକାଙ୍କ୍ଷା ନୋହିଲା ପୂରଣ
ବିଫଳ ଜନମ-ବିଫଳ ଜୀବନ,
ଏ ଜୀବନେ କେଉଁ ପ୍ରୟୋଜନ ?

ଅଧିରଥ—ଶିଶୁର ଅମୃତ ଗୀତେ ନୁହେଁ ମୁଖରିତ
ପ୍ରାଙ୍ଗଣ ଯାହାର,
ଗୃହ ନୁହେଁ ତା'ର
କାନନ—କାନ୍ତାର—
ବିଧାତାରେ ଚିର ଅନ୍ଧକାର ।
ପ୍ରଭେ ଦିବାକର,
ସହସ୍ର କିରଣ ତବ, ନ କରିଲା ଯେବେ
ମୋ ଦୀନ କୁଟୀର ଗର୍ଭେଁ
ସେ ତାମସ ଗ୍ରସ୍ତ ବିଦୂରିତ—
ତୋ ଚରଣ ସେବି ହେଲା ସେ ସୁଖେଁ ବଞ୍ଚିତ,
ତେବେ ଆଉ କେଉଁ ଆଶେ ରହିଛି ଜୀବନ,
ଏ ଜୀବନ ଚିର ଜର୍ଜ୍ଜରିତ ।

ରାଧା—ନାଥ, ନାଥ, ଦେଖ ଚାହିଁ ଅଶ୍ୱ ନଦୀ ଜଳେ
ସୁବର୍ଣ୍ଣ ମଞ୍ଜୁଷାଟିଏ ଯାଉ ଅଛି ଭାସି
ସ୍ରୋତ ସଙ୍ଗେ ନାଚି ନାଚି ଆହା କି ସୁନ୍ଦର !

ଅଧିରଥ—ସନ୍ଧ୍ୟ ପ୍ରିୟେ, ରହ କ୍ଷଣେ—
ଆଣେ ତାହା ତୋଳି ।
( ନଦୀ ଗର୍ଭରୁ ମଞ୍ଜୁଷା ଆଣିଲେ ଓ ଆବରଣ ଫିଟାଇ ଦେଖି ଚମକି ପଡ଼ିଲେ । )
ପ୍ରିୟେ ପ୍ରିୟେ କି ଅଦ୍ଭୁତ କଥା—
ଦେଖ ଆସି ଭାଗ୍ୟବତୀ, ଦେବ ଅନୁଗ୍ରହ ।

ରାଧା—ଧନରତ୍ନ ନାଥ ?
ଅପୂର୍ବକି କି କରିବ କୁବେର ସମ୍ପଦ ।
ଫିଙ୍ଗିଦିଅ ନଦୀ ଖରସ୍ରୋତେ ।

**ଅଧିରଥ**—ବୃଥା ନୁହେଁ ଭାଗ୍ୟବତୀ, ଦେବ ଆରାଧନ,
ଦେବୀ, ତବ ଈଶ୍ୱର ପୂଜନ,
ଅରଣ୍ୟ ରୋଦନ ନୁହେଁ ।
ଉପବ୍ରତ ସାଧନର
ଫଳିଅଛି ଫଳ ଏତେ ଦିନେ—
ଦେଖ, ଦେଖ ପ୍ରିୟେ,
ସୌର-କାନ୍ତି-ସମ-ପ୍ରଭ ସୁନ୍ଦର ନନ୍ଦନ
**ଅମୂଲ୍ୟ ରତନ ।**
ସଦ୍ୟ ମାତୃ ଗର୍ଭାଗତ ମଞ୍ଜୁଷା ଗରଭେ ।

ରାଧା—( ଦେଖି )
ଦୟାମୟ ବିଭାବସୁ ବାଞ୍ଛା କଳ୍ପତରୁ
ପୂରାଇଲେ ଏତେ ଦିନେ ଦାସୀର ପ୍ରାର୍ଥନା ।
ଦେବ ଜାତ ଶିଶୁ ଏହି,
ଦେବତା ପ୍ରସାଦରୂପେ ରଖିବା ମୁଣ୍ଡାଇ ।

**ଅଧିରଥ**—ପ୍ରିୟତମେ, କାଲି ପ୍ରାତେ କହିବା ପ୍ରଚୁର
ଦେବ ବରେ କୁମ୍ଭ ଗର୍ଭେ ଜାତ ଏହି ଶିଶୁ ।
ଗୋପନେ ମଞ୍ଜୁଷା ନେଇ ଆସ ସ୍ୱମନ୍ଦିରେ
ନୋହିଲେ ଲଗିବ ନଷ୍ଟ ଜାରଜ କଳଙ୍କ ।
ଭବ କୃପା ବଳେ,
ଅବହେଳେ
ଅସମ୍ଭବ ହୋଇଛି ସମ୍ଭବ । (ମଞ୍ଜୁଷା ପ୍ରଦାନ, ପ୍ରସ୍ଥାନ)

ରାଧା—ଲାବଣ୍ୟ ପ୍ରତିମା ଏହି ଶିଶୁ ମୁଖ ଦେଖି
ଶତଧାରେ ଉଠେ ଜାଗି ଅନ୍ତରେ ମୋହର ।
ଅଙ୍କେ ତ ଅମୃତ ଉତ୍ସ ।
ସିକ୍ତ କର ପ୍ରାଣ ମରୁମୟ ।

ଗୀତ

ମୋ ନୟନ ପିତୁଳି ଟରିଛି
ତଚ୍ଛି ପସରା ଗଲା ମୋତି ଝରିଛି ॥
ମୋ ଘର ଅନ୍ଧାର ରାତି
ନାଶରେ ସକାଳ ଆସି
ହସି ହସି ସରଗର ଟିକ ଚରିଛି ॥
ଆସରେ ଆସ ମୋ ଧନ
ଆସ ମୋ ଜୀବ ଜୀବନ
ଦୁଃଖୀ ରତନ ମୋର ଦିନ ସରିଛି ॥

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ସ୍ଥାନ—ଅସ୍ତ୍ର ବିଦ୍ୟା ଶିକ୍ଷାଶାଳା

( ଦ୍ରୋଣଗୁରୁ ଓ ଦୁର୍ଯ୍ୟୋଧନ, ଭୀମ, ଅର୍ଜ୍ଜୁନ, ଯୁଧିଷ୍ଠିର, କର୍ଣ୍ଣ ପ୍ରଭୃତି ଶିଷ୍ୟଗଣ )

ଦ୍ରୋଣ—କ୍ଷତ୍ର ଧର୍ମ, ରଣ ବିଦ୍ୟା ଶିଖିଅଛ ସର୍ବେ
କୌରବ କୁମାର ବୃନ୍ଦ ।
ଶସ୍ତ୍ରନାଶେ ସକଳେ ସମର୍ଥ
ଶାସ୍ତ୍ର ବିଶାରଦ
କୁରୁବଂଶ ଅଜେୟ ଜଗତେ ।

ଦୁର୍ଯ୍ୟୋଧନ—ଗୁରୁଦେବ,
ଅସ୍ତ୍ରଶିକ୍ଷା ହେଲାଣି କି ଶେଷ ?

ଦ୍ରୋଣ—ହୋଇଅଛି ଶେଷ ବତ୍ସ, ଶିକ୍ଷା ସାଧାରଣୀ
ଗୁପ୍ତ ବିଦ୍ୟା ଅଛି ଯାହା
ଶେଷରେ ଅର୍ପିବି କରି ପାତ୍ର ନିର୍ବାଚନ ।

ଦୁର୍ଯ୍ୟୋଧନ—କହ ଦେବ, କିଏ କିଏ ତହିଁକି ଭାଜନ ।

ଦ୍ରୋଣ—ଭୀମ ସହ ନାହିଁ କେହି ଗଦା ଯୁଦ୍ଧେ ପଟୁ
ଦୁର୍ଯ୍ୟୋଧନ ବିନା,
ସର୍ବଶ୍ରେଷ୍ଠ ଧନୁର୍ଦ୍ଧାରୀ ମଧ୍ୟମ ପାଣ୍ଡବ
ଲକ୍ଷ୍ୟଭେଦେ ଅଦ୍ୱିତୀୟ ସେହି—
ସୂତ ପୁତ୍ର କର୍ଣ୍ଣ ବିନା
ଆନ ନାହିଁ ସମକକ୍ଷ ତା'ର ।

ଦୁର୍ଯ୍ୟୋଧନ—କାହା ଭାଗ୍ୟେ ଅଛି ଗୁରୋ ଗୁପ୍ତ ବିଦ୍ୟାଲାଭ !

ଦ୍ରୋଣ—ଯେଉଁ ବ୍ୟକ୍ତି କ୍ଷତ୍ରି ବଂଶ ଜାତ
ସତ୍‌କୁଳ ଉଦ୍‌ଭୂତ
ଶାନ୍ତ, ଶିଷ୍ଟ, ଧର୍ମପରାୟଣ, ସୁଲକ୍ଷ, ଉଦାର,
ଶାସ୍ତ୍ରଜ୍ଞ, ସୁଧୀର
ବ୍ରହ୍ମ ଅସ୍ତ୍ରେ ତାର ଅଧିକାର ।
ସର୍ବ ଗୁଣାନ୍ୱିତ ଏକା ମଧ୍ୟମ ପାଣ୍ଡବ ।

ଦୁର୍ଯ୍ୟୋଧନ—ସର୍ବ ସୁଲକ୍ଷଣ ଯୁତ ମହା ଧନୁର୍ଦ୍ଧାରୀ
କର୍ଣ୍ଣ କିମ୍ପାଁ ନୁହେଁ ଅଧିକାରୀ ?

ଦ୍ରୋଣ—ଶୁଣ ବତ୍ସ,
କର୍ଣ୍ଣ ମୋର ଶିଷ୍ୟ ପ୍ରିୟତମ ;

କିନ୍ତୁ ଅଟେ ସୂତ କୁଳେ ଜାତ,
ମାଗୁନାହିଁ ପାରିବ ।
ହୀନ ଜନେ ବ୍ରହ୍ମ ଅସ୍ତ୍ର ଦାନେ
ଅଛି ମୋର ଗୁରୁଙ୍କ ନିଷେଧ ।
ଗୁରୁ ବାକ୍ୟ ନ ପାରିବ ଲଙ୍ଘି
ଗୁରୁ ମୋର ଭୃଗୁପତି ବିଷ୍ଣୁ ଅବତାର
ଏକବିଂଶ ବାର
ନିକ୍ଷତ୍ରିୟା କଲେ ବସୁନ୍ଧରା ।
କର୍ଣ୍ଣ—ଗୁରୁ ଅଟନ୍ତି ଜନକ ସମାନ
କରେ ପୁତ୍ରଜ୍ଞାନ
ଶିଷ୍ୟେ ପ୍ରତି ।
ଆଜି ଦେଲ ଅପମାନ ମୋତେ
ବିନା ଅପରାଧେ !
ଗୁରୁ କି କରଇ କେବେ ଇତର ବିଶେଷ,
ନିଜ ଶିଷ୍ୟେ କରେ ଦ୍ୱେଷାଦ୍ୱେଷ ?
ଗୁରୁ ନିଷ୍ଠା ତଳେ ଯଦି ପାଇଥିବ ସ୍ଥାନ
କର୍ଣ୍ଣର ପରାଣେ,
ତୁମ୍ଭର କଲ୍ୟାଣେ ଗୁରୋ,
ବ୍ରହ୍ମ ଅସ୍ତ୍ର ଲଭି ମୁହିଁ କରିବ ନିଶ୍ଚୟ,
କରି ପ୍ରାଣ ପଣ
ମନ୍ତ୍ରର ସାଧନ କିମ୍ବା ଶରୀର ପାତନ ।
(ପ୍ରସ୍ଥାନ)

ଯୁଧିଷ୍ଠିର—ଗୁରୋ, ଗୁରୋ,
କୁଳ ନିନ୍ଦା ଶେଲସମ ଲାଗିଥିବ ପ୍ରାଣେ,
ଲଭିଥିବ କେତେ ମନସ୍ତାପ ।
ଆଜ୍ଞା ଦେଲେ ଦୟା ବହି,
ଆଣନ୍ତି ଫେରାଇ
ଅଧିରଥ ସୁତେ ।
ଦ୍ରୋଣ—ଅନ୍ୟଥା ନୋହିବ କେବେ ବ୍ରାହ୍ମଣ ବଚନ;
ତାତ,
ସୂତ ପୁତ୍ର ଅତି ଅଭିମାନୀ
ଅପାତ୍ରରେ ମହାଅସ୍ତ୍ର ନ ପାରିବ ଦେଇ ।
(ପ୍ରସ୍ଥାନ)

ଦୁର୍ଯ୍ୟୋଧନ—କର୍ଣ୍ଣ ଅଟନ୍ତି ଶ୍ରେଷ୍ଠତର;
ପ୍ରିୟ ଶିଷ୍ୟ ଅର୍ଜ୍ଜୁନର ମଙ୍ଗଳ ମନାସି
ଗୁରୁଦେବ କଲେ ପକ୍ଷପାତ ।

ଭୀମ—ଗୁରୁଦେବ କଲେ ପକ୍ଷପାତ !
ଆରେ ଆରେ ପାତକୀ ନିନ୍ଦୁକ,
ଗୁରୁ ଦ୍ରୋହୀ, ଅହଙ୍କାରୀ,
ଏହିକ୍ଷଣି ଦିଅନ୍ତି ଛିଣ୍ଡାଇ
ପ୍ରଚଣ୍ଡ ପ୍ରହାରି ଗଦା ମୁଣ୍ଡ ପାଷଣ୍ଡର ।
(ଗଦା ଉତ୍ତୋଳନ କଲେ)
ଦୁର୍ଯ୍ୟୋଧନ—(ଗଦା ଉତ୍ତୋଳନ କରି )
ଶୃଗାଳର ବୃଥା ଆସ୍ଫାଳନେ
ଭୀତ ନୁହେ ସିଂହିକା ନନ୍ଦନ ।
ଦୁର୍ଯ୍ୟୋଧନ ପ୍ରସ୍ତୁତ ସର୍ବଥା—
ପ୍ରସ୍ତୁତ ସର୍ବଥା ! ( ରଣୋଦ୍ୟମ )
ଯୁଧିଷ୍ଠିର—ଭାଇ, ଭାଇ, କଳହରେ କେଉଁ ପ୍ରୟୋଜନ,
ଆସ ଭୀମ, ଆସ ଦୁର୍ଯ୍ୟୋଧନ
ନୁହେଁ ଏହା ବୀର ଧର୍ମ,
ନୁହେଁ ଏହା ବଂଶର ଗୌରବ,
କୌରବର କୁଳଗୁରୁ ।
( ଏକ ଦିଗରେ ପାଣ୍ଡବଗଣ ଓ ଅନ୍ୟ ଦିଗରେ ଦୁର୍ଯ୍ୟୋଧନ
ନିଷ୍କ୍ରାନ୍ତ ହେଲେ )

## ଦ୍ୱିତୀୟ ଦୃଶ୍ୟ

(ଅମରାବତୀ-ସୂର୍ଯ୍ୟଦେବ)

ସୂର୍ଯ୍ୟଦେବ—କୁନ୍ତୀ ଗର୍ଭେ ହୋଇଅଛି ଜାତ
ସୁନ୍ଦର କୁମାର,
ଅନୁପମ ;
ତେଜସ୍ୱୀ ତପନ ସମ
ମହାଦ୍ୟୁତିମନ୍ତ ।
ହେବ ବୀର୍ଯ୍ୟବାନ୍
ଜନକ ସମାନ
ଅବନୀରେ ଅଦ୍ୱିତୀୟ ବୀର ।
( ଇନ୍ଦ୍ର ପ୍ରବେଶ ହେଲେ )
ଇନ୍ଦ୍ର—ନୋହିବ ଆକାଙ୍କ୍ଷା ପୂର୍ଣ୍ଣ ଦିବାକର ତବ
ଆଉଁ ଥାଉଁ ମଧ୍ୟମ ପାଣ୍ଡବ,
ଦେବ ବୃନ୍ଦ ଦେବେ ଯାଚି ନାନା ଅସ୍ତ୍ର ଶସ୍ତ୍ର
ଇନ୍ଦ୍ରର ନନ୍ଦନେ ।
ଲଭିବ ସେ ପାଶୁପତ ତୋଷି ଆଶୁତୋଷେ,
ଗାଣ୍ଡିବ କାର୍ମ୍ମୁକ ତାର ଅକ୍ଷୟ ତୂଣୀର
ଅମୂଲ୍ୟ କବଚ ପୁଣି ରଥ କପିଧ୍ୱଜ ।

ଏଥି ପରେ ଦ୍ରୋଣଠାରୁ ଲଭି ବ୍ରହ୍ମାସ୍ତ୍ରରେ
ହେବ ପାର୍ଥ ଅଜେୟ ସମରେ ।
ଜାଣିଛ କି ଦ୍ୟୁମଣି,
ବ୍ରହ୍ମାସ୍ତ୍ର ଅର୍ପଣେ
ଗୁରୁ ଦ୍ରୋଣ କଲେ ପ୍ରତ୍ୟାଖ୍ୟାନ,
ସୂତାନ୍ନ ପାଳିତ, ସେହି ପ୍ରିୟ ସୁତେ ତବ ?

ସୂର୍ଯ୍ୟ—ଜାଣେ, ଦେବରାଜ;
ଭାର୍ଗବ ପରଶୁରାମ ଦ୍ରୋଣଙ୍କର ଗୁରୁ
ଶିଷ୍ୟ ରୂପେ ପଠାଇଛି କର୍ଣ୍ଣେ ତାଙ୍କ ପାଶେ
ଲଭିବ ସେ ଦିବ୍ୟ ଅସ୍ତ୍ରଚୟ ।
ଦେଇ ଅଛି ଜନ୍ମକାଳେ
ଅମୃତ କୁଣ୍ଡଳ ଦ୍ୱୟ,
ନାହିଁ ମୃତ୍ୟୁ ଭୟ,
ଯାହାର ପରଶେ ।
ଅଙ୍ଗେ ତାର ସହଜାତ ଅଭେଦ୍ୟ କବଚ
ଶସ୍ତ୍ର ଭେଦ ଭୟ ତିରୋହିତ ।
ସେ ଲାଗି ମାର୍ତ୍ତଣ୍ଡ କେବେ ନୁହେଁ ଚିନ୍ତାନ୍ୱିତ
ସୂର୍ଯ୍ୟସୁତ ହେବ ବୀରାଗ୍ରଣୀ ।

( ପ୍ରସ୍ଥାନ )

ଇନ୍ଦ୍ର—ଦେଖାଯିବ ବଳେ ତବ ଦମ୍ଭ ଦିବାକର,
କରି ଯନ୍ତ୍ର କୌଶଳ ଭୂମ୍ବର,
ବ୍ୟର୍ଥ କରି କର୍ଣ୍ଣ ମନୋରଥ
ବ୍ରହ୍ମ ଅସ୍ତ୍ର ଲଭ ତାର କରିବି ନିଷ୍ଫଳ ।

( ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

ସ୍ଥାନ—ଭାର୍ଗବ ଆଶ୍ରମ

(କର୍ଣ୍ଣ ଉପବିଷ୍ଟ—ତାହାଙ୍କ କୋଳରେ ମସ୍ତକାର୍ପଣ କରି ପରଶୁରାମ ନିଦ୍ରିତ)

କର୍ଣ୍ଣ—କପଟ ବ୍ରାହ୍ମଣ ବେଶେ ତପନ ଆଦେଶେ
ଭାର୍ଗବ ଚରଣ ସେବି, କରିଅଛି ଲବ୍ଧ
ଦିବ୍ୟ ଅସ୍ତ୍ର ଗଣ,
ଯାହା ଦ୍ରୋଣେ ଅଗୋଚର ।
ଏତେଦିନେ ପୂର୍ଣ୍ଣ ମନସ୍କାମ ।
ଦେଖିବ ଏଥର ଦ୍ରୋଣ
ଜଗତରେ କିଏ ଶ୍ରେଷ୍ଠ ବୀର
କର୍ଣ୍ଣ କି ଅର୍ଜୁନ ?
କୁନ୍ତୀ ପୁତ୍ର ମନେ ମନେ ହେଉଥିବ ଦମ୍ଭ
ହୋଇ ଶିଷ୍ୟ ପ୍ରିୟତମ ଦ୍ରୋଣ ଗୁରୁଙ୍କର ;
କିନ୍ତୁ ନିଜେ ଭୃଗୁପତି ଜମଦଗ୍ନି ସୁତ
ମହର୍ଷି ପରଶୁରାମ—
ପୁତ୍ର ସମ ସ୍ନେହ କର୍ଣ୍ଣୋପରି,
ସେବା ଯତ୍ନେ ଲଭିଅଛି ଗୁରୁ କୃପା ମୁହିଁ ।

ଉଃ—କି ଯନ୍ତ୍ରଣା !
ଜାନୁତଳେ ଯନ୍ତ୍ରଣା ଦାରୁଣ ।
ଗୁରୁଦେବ ସୁଖେ ନିଦ୍ରା ଗତ
ସ୍ଥାପି ଶିର ଉରୁ ପରେ ମୋର,
କେମନ୍ତେ ଟେକିବି ଜାନୁ ।

ଉଃ, କିଏ ଯଥା ରକ୍ତମାଂସ ପକାଉଛି କାଟି
ବଜ୍ରାକ୍ତ ଛୁରିକା ଦେଇ,
କି କରିବି, କେମନ୍ତେ କରିବି ନିଦ୍ରାଭଙ୍ଗ ଗୁରୁଙ୍କର
ଓହୋ, ଓହୋ ବଢ଼ିଲା ଯନ୍ତ୍ରଣା
ଏକି ବଜ୍ରମୁଖା । ( କିଛିକ୍ଷଣ ରହି )
ଯାହା ହେବ ହେଉ ପଛେ,
ଭେଦୁ ଅସ୍ଥି,
ଛିଡ଼ୁ ଉରୁ,
ନ ହେବ କାତର କେବେ ବୀରର ଅନ୍ତର,
ଅକମ୍ପିତ ଦେହେ ଥିବ ବସି
ଯାବତ ବିନିଦ୍ର ସୁଖେ ନ ହେବେ ଭାର୍ଗବ ।

କିନ୍ତୁ ଏକି—ହେଲା ଆସି ?
ଏ ଯେ ରକ୍ତ ଧାର !
ଉଷ୍ଣ ସମ ଆସେ ସ୍ରବି ଶୋଣିତ ପ୍ରବାହ ।
ତପ୍ତ ରକ୍ତ ଗୁରୁଙ୍କର ମସ୍ତକେ ପରଶି
ଅକାଳେ ହୋଇବ କାଳେ ନିଦ୍ରାରେ ବ୍ୟାଘାତ ।
କି କରିବି—ନାହିଁ ଯେ ଉପାୟ,
ହାୟ, ହାୟ ହେଲା କି ପ୍ରମାଦ ।

( ପରଶୁରାମ ଜାଗରିତ ହେଲେ )

ପରଶୁ—ଏ କି ହେଲା ? ନିଦ୍ରା ଭଙ୍ଗ କିଏ ଘଟାଇଲା ?
( ଅନୁଭବ କରି ) ଏ ଯେ ରକ୍ତ ! ଉଷ୍ଣ ରକ୍ତଧାର !
କାହୁଁ ବା ଆସିଲା ?
ବିଶ୍ରାମରେ ବିଘ୍ନ ହେଲା ମୋର !

କର୍ଣ୍ଣ—ଦାସର ଶରୀର ରକ୍ତ, ପ୍ରଭୋ !
ଶୋଇଥିଲେ ଯେବେ ଗୁରୁ,
ସ୍ଥାପି ଶିର ଜାନୁ ଉପାଧାନେ
କାହୁଁ ଏକ ବିଷଧର ବଜ୍ରକୀଟ ଆସି
ଅଙ୍ଗେ ମୋର କଲା ଦଂଶନ
ତୀକ୍ଷ୍ଣ ଶୁଣ୍ଢେ ମାଂସପେଶୀ ଭେଦି ।
ନିରୁପାୟ,
ନ ପାରିଲି କରି ନିବାରଣ, ନିଦ୍ରାଭଙ୍ଗ ଭୟେ ।

ପରଶୁ—( ଦେଖି )
ଧନ୍ୟ ବତ୍ସ,
ଧନ୍ୟ ତୋର ଗୁରୁ ଭକ୍ତି,
ଧନ୍ୟ ତୋ ସାଧନା,
ଧନ୍ୟ ତ୍ୟାଗ, ଧନ୍ୟ ସହିଷ୍ଣୁତା
ଜଗତେ ଦୁର୍ଲ୍ଲଭ ।
ତୋର ସୁକୁମାର
ଚର୍ମ୍ମ ମାଂସ କର୍ତ୍ତନର ଦାରୁଣ ବେଦନା
ମୋର ସ୍ଥିର ନିଦ୍ରାଭଙ୍ଗ ଲାଗି
ଧୀର ଚିତ୍ତେ ଅକାତରେ ରହିଅଛୁ ସହି !
ଯେନ ମୋର କରସ୍ଥିତ ଅଜୟ କାର୍ମ୍ମୁକ ;
ଦେଲା ପୁରସ୍କାର,
ରାମ ଧନୁ କରେ ଧରି
ତ୍ରିଭୁବନ ଜିଣେ ଅବହେଳେ ।
ମୁକ୍ତ ପ୍ରାଣେ କରୁଛି ଆଶିଷ,
ବତ୍ସ, ଯୁଗେ ଯୁଗେ ଯଶ ତୋର ରହିବ ଅକ୍ଷୟ ।

କର୍ଣ୍ଣ—( ପ୍ରଣିପାତ) ପ୍ରଭୋ !

ପରଶୁ—କିନ୍ତୁ ରେ ବାଳକ;
ସନ୍ଦେହ ଜାଗୁଛି ମନେ ;
ତୁହି କିରେ ବ୍ରାହ୍ମଣ ନନ୍ଦନ ?
ଏତେ ଧୈର୍ଯ୍ୟ,
କ୍ଷତ୍ରିୟ ସନ୍ତାନ ବିନା
ବ୍ରାହ୍ମଣେ କି ସମ୍ଭବଇ କେବେ ?
କୋମଳ ବ୍ରାହ୍ମଣ ପ୍ରାଣେ
କେମନ୍ତେ ସହିଲୁ ଏହି ବ୍ୟଥା ଦୁର୍ନିବାର ?
ହେଉଛି ସଂଶୟ
କହ ସତ୍ୟ, ଦିଅ ପରିଚୟ ।

କର୍ଣ୍ଣ—ଗୁରୋ, ଗୁରୋ, ଅନ୍ତର୍ଯ୍ୟାମି,
କି କହିବି ତବ ଆଗେ ଚରଣ କିଙ୍କର ?
କେଉଁ କଥା ତୋତେ ଅଗୋଚର ?
ସୂତ ଅଧିରଥ ପୁତ୍ର,
କର୍ଣ୍ଣ ନାମ ଧାରୀ,
ବାସ ମୋର ହସ୍ତିନା କଟକେ ।
କୌରବ କୁମାର ସଙ୍ଗେ
ଧନୁର୍ବେଦ ଶିକ୍ଷା କଲି ଦ୍ରୋଣଙ୍କ ଚରଣେ ।
ଗୁରୁ ଦ୍ରୋଣ ନ କରିଲେ ବ୍ରହ୍ମ-ଅସ୍ତ୍ର ଦାନ
ଉପେକ୍ଷିଲେ ସୂତ ପୁତ୍ର ବୋଲି ।
ସେହି ଅପମାନ
ଶେଲ ସମ ବାଜିଲା ପରାଣେ,
ତବ ସନ୍ନିଧାନେ
ଅଭିମାନେ
ଆସିଲି ମୁଁ ବ୍ରହ୍ମ-ଅସ୍ତ୍ର ଆଶେ ।
କିନ୍ତୁ ଦେବ,
ଶିଷ୍ୟ ପଦେ ତବ
ଅଦ୍ୱିଜର ନାହିଁ ଅଧିକାର ।
ସେହି ହେତୁ,
ଭୃଗୁ କୁଳ ଜାତ
ବ୍ରାହ୍ମଣ ବାଳକ ବେଶେ କରିଛି ପ୍ରବେଶ ;
ଅପରାଧ କରିଛି ଶ୍ରୀପଦେ ।

ପରଶୁ—ଆରେ ଭଣ୍ଡ ପ୍ରବଞ୍ଚକ,
ମିଥ୍ୟାବାଦୀ ଚତୁର ବାଳକ
କ୍ଷତ୍ରକୁଳ କାଳାନ୍ତକ
ନ ଜାଣୁ କି ଜମଦଗ୍ନି ସୁତ
କରି ବିଖଣ୍ଡିତ
ଶାଣିତ ପରଶୁ ଘାତେ ତୋର ପାପ ତନୁ
ଦିଅନ୍ତା ଉଚିତ ଶିକ୍ଷା ବୃତ୍ତସ୍ୱର ତୋର ।
କିନ୍ତୁ ତୋତେ ଶିଷ୍ୟ ରୂପେ କରିଛି ଗ୍ରହଣ,
ସେଥିଲାଗି ଦେଲି ପ୍ରାଣଦାନ ।
ତୋହପାଇଁ ସ୍ଥାନ ନାହିଁ ସର୍ବେ ଆଶ୍ରମେ ।

କ୍ଷତ୍ରାଧମ,
ଦୂର ହୁଅ ଏହିକ୍ଷଣି ଦୃଷ୍ଟି ପଥୁଁ ମୋର ।
ମୋଠାରୁ ଲଭିଛୁ ଛଳେ
ଯେଉଁ ଦିବ୍ୟ ବ୍ରହ୍ମ ଅସ୍ତ୍ରଚୟ
ମୃତ୍ୟୁକାଳେ ବିସ୍ମରଣ ହେବ ସମୁଦାୟ ।
(ସକ୍ରୋଧେ ପ୍ରସ୍ଥାନ)

କର୍ଣ୍ଣ— ଗୁରୁପଦେ କଲି ପ୍ରବଞ୍ଚନା
ବୃଥା ହେଲା ବ୍ରହ୍ମାସ୍ତ୍ର ସାଧନା,
ବିଫଳ କାମନା ।
ବୃଥା ଶ୍ରମ,
ବ୍ୟର୍ଥ, ବ୍ୟର୍ଥ ଗୁରୁ ଆରାଧନା ।
(ସୂର୍ଯ୍ୟ ହଠାତ୍ ପ୍ରବିଷ୍ଟ ହୋଇ)

ସୂର୍ଯ୍ୟ—ନାହିଁ ଚିନ୍ତା ବତ୍ସ ।
ହୋଇଛୁ ବ୍ରହ୍ମାସ୍ତ୍ର ଲଭ,
ପୂର୍ଣ୍ଣ ଆଶା, ସାର୍ଥକ ବାସନା
ନ ହୁଅ କାତର ।
ଅମୃତ କୁଣ୍ଡଳ ଯୋଗେ ନାହିଁ ମୃତ୍ୟୁ ତୋ'ର ।
ଭାର୍ଗବର ଅଭିଶାପ ହୋଇବ ନିଷ୍ଫଳ
ବିସ୍ମରଣ ନୋହିବ ବ୍ରହ୍ମାସ୍ତ୍ର ।
ସୁଖେ ଏବେ ନିଜାଳୟେ ଯାଅ ବତ୍ସ, ଫେର ।
(ସୂର୍ଯ୍ୟ ଅନ୍ତର୍ହିତ ହେଲେ)

କର୍ଣ୍ଣ— ମୃତ୍ୟୁ ଭୟ ନାହିଁ ଯା'ର
କେମନ୍ତେ ହୋଇବ ତା'ର ମନ୍ତ୍ର ବିସ୍ମରଣ ?
ବ୍ୟର୍ଥ ବ୍ରହ୍ମ ଅଭିଶାପ ;
ସାର୍ଥକ ବାସନା ଏବେ ପୂର୍ଣ୍ଣ ମନସ୍କାମ ।
ନାହିଁ ଡର,
ଶ୍ରେଷ୍ଠତର ନୁହେ ପାର୍ଥ ସୂତ-ପୁତ୍ରଠାରୁ
ତୁରନ୍ତ ହସ୍ତିନା ପୁରେ ହୋଇ ଉପନୀତ,
ଦେଖାଇବ ଭୁଜବଳ ଶରର ନୈପୁଣ୍ୟ ।

## ଚତୁର୍ଥ ଦୃଶ୍ୟ

( ତପୋବନ—ଋଷିକୁମାରମାନେ ଦୂରରୁ ଗୀତ ଗାଉଥିଲେ )

ଉଇଁଲାଣି ନବଭାନୁ    ଦେଖ ପ୍ରାଚୀ ଗଗନେ
ଝୁଲିଲାଣି ତରୁ ଶିର    ମୃଦୁ ହେମ କିରଣେ ।।ଘୋଷା।।

ବଦରି ପତ୍ରରେ ଝୁଲେ    ଫେଣ୍ଟି ଫେଣ୍ଟି ମୋତି ଝରି
କୁସୁମିତା ବନଦେବୀ    ସ୍ନାନ ସାରି ହସେ ତୋରି
ଚଢ଼ିଲାଣି ମିଠା ଖରା    କୁଟୀରର ପ୍ରାଙ୍ଗଣେ ।୧।

ଅଳସେ ମୋଡ଼ୁଛି ଅଙ୍ଗ    ମୃଗ ଶିଶୁ ଶୋଇ ଶୋଇ,
ମୃଗୁଣୀ ବୁଜୁଛି ଆଖି    ଶିରତାର ଅବଲମ୍ବି
ପୁଲକ ଉଠୁଛି ପ୍ରାଣେ    ଚାହାଁନ୍ତିଆ ପବନେ ।୨।

କୁସୁମ ସୁବାସ ଘେନି    ମୃଦୁ ମୃଦୁ ହସି ଗନ୍ଧ,
ହୋମ ଧୂମ ସମୀରଣେ    ବହିଆସେ ମନ୍ଦମନ୍ଦ,
ଶୁଭିଲାଣି ବେଦଧ୍ୱନି    ଶଙ୍ଖ ଘଣ୍ଟା ସଘନେ ।୩।

ଆନନ୍ଦରେ ଭରିଉଠି    ଗାଏ ଗୀତ ପ୍ରାଣଭରି
ଆଶ୍ରମର ତରୁଲତା    ଝଙ୍କାରେ ଉଠଇ ଥରି
ପ୍ରଭାତୀ ସଙ୍ଗୀତ ତାନ    ପୂରିଲାଣି କାନନେ ।୪।
(ପ୍ରସ୍ଥାନ)

ଋଷି— ଆରେ ବିଭାଣ୍ଡକ, ଆରେ ସୋମଦତ୍ତ, ଆରେ ଧୀରବୁଦ୍ଧି, କୁଆଡ଼େ ଗଲ ସବୁ ଏତେବେଳଯାଏ ? ଦିନ ଆସିକି ପ୍ରହରେ ସରିକି ହୋଇ ବସିଲା । ତେବେ ଏତେବେଳଯାଏ କାହାରି ଦେଖା ନାହିଁ । ମୁଁ ଆପଣାର ନିତ୍ୟକର୍ମ ସାରି କେତେବେଳୁଁ ଖୋଜି ହେଉଛି । ହୋମ କରିବାର ବେଳ ଆସି ଗଡ଼ିଗଲା—ହବି, ସମିଧ, ପୁଷ୍ପ ପ୍ରଭୃତି ହୋମ ସାମଗ୍ରୀମାନ ଆହରଣ କରିବାକୁ ଯାଇ ସମସ୍ତେ ରହିଲେ କୁଆଡ଼େ ? ଯାଃ—ଏଗୁଡ଼ାକ ଚରା ବ୍ରହ୍ମଗୃହୀ ! ଅନାଗୃହୀ, ପାଷଣ୍ଡ, ପାଷଣ୍ଡ ! ଆପେ ଆପେ ହାତ ଘେନି ଏବେ ସବୁ ନ କଲେ ଏଭଳି ଅଧମ ଶିଷ୍ୟ ଉପରେ ନିର୍ଭର କରି ଆଶ୍ରମ ଧର୍ମ ପାଳନ କରିବା ଦୁଷ୍କର ।
( ଜଣେ ଶିଷ୍ୟ ସମିଧ ଘେନି ବ୍ୟସ୍ତ ହୋଇ ପ୍ରବିଷ୍ଟ ହେଲେ )

ଶିଷ୍ୟ—ଗୁରୁଦେବ, ଗୁରୁଦେବ !

ଋଷି— ଗୁରୁଦେବ ! ଗୁରୁଦେବ ! ଯା, ଯା, ଏତେବେଳେ ମହାଶୟଙ୍କ ବନବିହାର ସରିଲା ନା ? ବାକି ସବୁ ଗଲେ କାହିଁ ?

ଶିଷ୍ୟ—ପ୍ରଭୋ, ବଡ଼ ଭୟଙ୍କର କଥା—ବଡ଼ ଭୟଙ୍କର କଥା—

ଋଷି— ତୋର ମୁଣ୍ଡପାତ ହୋଇ ନାହିଁ ତ ! ଆଉ ଭୟଙ୍କର କଥା କ'ଣ ?

ଶିଷ୍ୟ—ତପୋବନ ମଧ୍ୟରେ ହତ୍ୟା, ଗୁରୁଦେବ ।

ଋଷି— ଯମ ଆସି ତୁମ୍ଭମାନଙ୍କୁ ହତ୍ୟା କରୁଅଛି କି ?
ଶିଷ୍ୟ—ପ୍ରଭୋ, ଜଣେ ବ୍ରାହ୍ମଣବେଶୀ ବ୍ୟାଧ ଶର ନିକ୍ଷେପ କରି
ହୋମ ଧେନୁ ହତ୍ୟା କରୁଛି ।
ଋଷି— କଣ, କଣ ! ହତ୍ୟା, ଗୋ-ହତ୍ୟା ! ମୋ ଆଶ୍ରମରେ ହତ୍ୟା,
ରକ୍ତପାତ ! କିଏ, କାହିଁ ସେ ଦୁରାଚାର ! ଏହିକ୍ଷଣି ତାକୁ
କୋପାନଳରେ ଭସ୍ମ କରିବି । ନରକକୁ ପ୍ରେରଣ କରିବି ।
କାହିଁ, କାହିଁ ସେ ବ୍ୟାଧ ?
( କର୍ଣ୍ଣ ପ୍ରବିଷ୍ଟ ହେଲେ )
କର୍ଣ୍ଣ— ମୁନିବର,
ଅଜ୍ଞାନ, ଅବୋଧ ମୁହିଁ,
ମୋହ ବଶେ କରିଅଛି ଆଶ୍ରମ ଲଙ୍ଘନ
ମୃଗ ଭ୍ରମେ ବଧି ହୋମ-ଧେନୁ ।
ଚରଣେ ଶରଣାଗତ,
କାତର ଅତ୍ୟନ୍ତ
ହୁଅ ଶାନ୍ତ,
କ୍ଷମାକର କରୁଣାସାଗର ।
ଋଷି— ରେ ରେ ଦୁଷ୍ଟ ବ୍ୟାଧ କୁଳାଙ୍ଗାର
ଗର୍ବିତ ପାମର,
ହୁଏ ମନେ ଛଦ୍ମବେଶୀ କ୍ଷତ୍ରିୟର ତୁହି ;
ବଳ ମଦେ ଅନ୍ଧ ହୋଇ
ପବିତ୍ର ଆଶ୍ରମେ ପଶି ପ୍ରକାଶୁ ବୀରତ୍ୱ ।
ରେ ଅଧମ,
ତ୍ୟଜ ଏ ଆଶ୍ରମ
ଯାବତ୍ ବ୍ରାହ୍ମଣ କୋପେ ନୋହୁ ଭସ୍ମୀଭୂତ ।
ଦେଲି ଅଭିଶାପ,
ମୃତ୍ୟୁ କାଳ ହେଲେ ଉପନୀତ
ଦ୍ୱୈରଥ ସମର କ୍ଷେତ୍ରେ,
ରଥ ଚକ୍ର ତୋର ଗ୍ରାସିବେ ମେଦିନୀ ।
କର୍ଣ୍ଣ— ଦ୍ୱିଜବର,
ଶୁଣିଛି, ବ୍ରାହ୍ମଣ ଜାତି କ୍ଷମା-ପାରାବାର
କର ପ୍ରତ୍ୟାହାର,
ନିଦାରୁଣ ଏହି ଅଭିଶାପ ।
ବାହୁ ବଳେ
କୁବେର ଭଣ୍ଡାର ଲୋଟି ଅର୍ପିବି ଚରଣେ
କିଣି ନେବି ସସାଗରା ଧରା
ଅଭିଶାପ ବିନିମୟେ ।

ଋଷି— ଧିକ୍ ତୁ କି ଏତେ ନୀଚ ବ୍ରାହ୍ମଣ ହୃଦୟ !
ପ୍ରଲୋଭନ, ପ୍ରଲୋଭନ !
ଛି, ଛି, ଜଘନ୍ୟ ଜଘନ୍ୟ,
ଇନ୍ଦ୍ରର ଇନ୍ଦ୍ରତ୍ୱ କିବା ଛାର,
ସତ୍ୟ, ସତ୍ୟ, ସତ୍ୟ ଏକା ସାର
ନୁହେଁ ମିଥ୍ୟା କଦାଚନ ବ୍ରାହ୍ମଣ ବଚନ ।
କର୍ଣ୍ଣ— ଏ ଅନ୍ତରେ ବହୁ ଆଶା ବହୁ ଅଭିଳାଷ ;
ମୁହୂର୍ତ୍ତର ଉତ୍ତେଜନା ବଶେ
ନ କର, ନ କର ବ୍ୟର୍ଥ ପ୍ରଥମ ପ୍ରଭାତେ
ମାନବର ସୁନ୍ଦର ଜୀବନ,
କଠୋର କୁଠାରାଘାତେ ନ ପକାଅ ଛେଦି
ସୁକୋମଳ ଅଙ୍କୁର ଉଦ୍‌ଗମ ।
ଋଷି— ନୁହେଁ, ନୁହେଁ ଅକାରଣ
ବିଧାତାର ଅଭିନବ ସୃଷ୍ଟି,
ଏ ଜଗତେ କିଛି ନୁହେଁ ବୃଥା,
ନୁହେ ବ୍ୟର୍ଥ, ନୁହେ ନିରୁଦ୍ଦିଷ୍ଟ ।
ଅଣୁମାତ୍ର ଆକାର ବିଶିଷ୍ଟ
କ୍ଷୁଦ୍ର କୀଟ—
ଅଛି ପ୍ରୟୋଜନ ତାର ।
ବିଶ୍ୱରାଜ୍ୟେ ଅଛି ସାର୍ଥକତା ।
ବିଜନ କାନନ ମଧ୍ୟେ କ୍ଷୁଦ୍ର ଫଳଟିଏ
ଭୂମିତଳେ ପଡ଼ିଯାଏ ସଡ଼ି,
ସେ ମଧ୍ୟ ନୁହଇ ବୃଥା
ତା ଜନମ ନୁହଇ ବିଫଳ ।
କର୍ମର ଅଧୀନ ଜୀବ, ନିୟତିର ଦାସ ।
ସ୍ୱତନ୍ତ୍ରତା ?—ଭ୍ରାନ୍ତ, ମହାଭ୍ରାନ୍ତି
ପୁତ୍ତଳିକା ସମ ସଦା
ଭ୍ରମେ ଜୀବ ନିୟତି ନିର୍ଦ୍ଦେଶେ ।
କର୍ଣ୍ଣ— ଅଜ୍ଞାନ ତିମିରାଚ୍ଛନ୍ନ, ମନ୍ଦମତି ମୁହିଁ,
ଯେତେ ବୁଝେଁ, ତେତେ ଅନ୍ଧକାର,
ଜଟିଳତା ତେତିକି ଜଟିଳ ;
କହ ପ୍ରଭୋ ସତ୍ୟ ପଥ କିଏ ଏ ସଂସାରେ ?
ଋଷି— ସଂସାରରେ ମହାପୁଣ୍ୟ— ତ୍ୟାଗ,
ନିଷ୍କାମ, ନିଃସ୍ୱାର୍ଥ ତ୍ୟାଗ, ଅକାତରେ ଦାନ,
ଆଚର ସେ ତ୍ୟାଗ ଧର୍ମ,
ଲଭିବେ ଅକ୍ଷୟ କୀର୍ତ୍ତି; ଅନନ୍ତ ସ୍ମରଣ । (ପ୍ରସ୍ଥାନ)

କର୍ଣ୍ଣ —( ଏକାକୀ )
ନୁହେଁ ବ୍ୟର୍ଥ ମାନବ ଜୀବନ ;
ବ୍ୟର୍ଥ ନୁହେଁ ଜୀବନ ସାଧନା ।
ଜଗତରେ ଶ୍ରେଷ୍ଠ ଧର୍ମ ତ୍ୟାଗ,
ସାଧିବ ସେ ଦାନ ଧର୍ମ ପ୍ରାଣ ବିନିମୟେ,
ଦେଖାଇବ ତ୍ୟାଗର ଆଦର୍ଶ ।
କିନ୍ତୁ ମୁନି ଦେଲେ ଅଭିଶାପ,
ମେଦିନୀ କରିବେ ମୋର ରଥଚକ୍ର ଗ୍ରାସ
ମୃତ୍ୟୁ କାଳେ ଦ୍ୱୈରଥ ସମରେ ।
ବୀର ଗୃହେ ଦିବ୍ୟ ଅସ୍ତ୍ର ଯୋଖି
ପୋଛି ଦେବି ଆଜଠାରୁ ବସୁମତୀ ନାମ
ପଣ୍ଡ ହେଉ ବ୍ରହ୍ମ ଅଭିଶାପ ।
( ଧନୁରେ ଶର ଯୋଜନା କରି ଆକର୍ଷଣ କଲେ ଓ ବସୁମତୀ
ଆବିର୍ଭୂତା ହେଲେ )

ବସୁମତୀ—ଅବଳା ରମଣୀ ବଧ
ନୁହେ ଧର୍ମ କ୍ଷତ୍ରିୟର ।
ଆସିଛି ମେଦିନୀ ମୁହିଁ, ନରପରାଧୀନା,
ବୀରବର, କ୍ରୋଧ ପରିହର ।
ବୃଥା କୋପେ କେଉଁ ପ୍ରୟୋଜନ ?
ବ୍ରହ୍ମ ବାକ୍ୟ ଖଣ୍ଡିବାର ନୁହେଁ କଦାଚନ ।
ଦଣ୍ଡ ଚତୁଷ୍ଟୟ ମାତ୍ର
ରହିବ ତୋ ରଥଚକ୍ର ମେଦିନୀର ଗ୍ରାସେ,
ସେହି କାଳେ, ନିଜ ଶକ୍ତି ବଳେ
ମୁକ୍ତ କରି ରଥଚକ୍ର ଅବନୀ କବଳୁଁ
ହୋଇବୁ ତୁ ରିପୁରେ ଅଜେୟ ।
ଶୁଣ ବତ୍ସ,
ତୋର ପଦଶରେ ମୁହିଁ ସନ୍ତାପିତ ଅତି ।
ବ୍ରତୀ ତୁହି ନିତ୍ୟ ଦାନ ବ୍ରତେ;
ସେହି ଅର୍ଥେ ପ୍ରତ୍ୟେକ ପ୍ରଭାତେ
ତିନି ଲକ୍ଷ ସ୍ୱର୍ଣ୍ଣ ଆଣି ଦେବି ଉପହାର ।
( ଅନ୍ତର୍ହିତା ହେଲେ )

କର୍ଣ୍ଣ—( ଏକାକୀ )
ବସୁମତୀ ଭୀତା ଯାର ଭୟେ
ବୀର ପଣେ,
କିଏ ସମକକ୍ଷ ତାର !
ଅର୍ଜୁନ ? ଅର୍ଜୁନ କେଉଁ ଛାର ।
ସାରା ବିଶ୍ୱ ସ୍ତବ୍ଧ ହେବେ ଦେଖି ଅହର୍ନିଶା,
ଗୁରୁ ଦ୍ରୋଣ କରନ୍ତୁ ପରୀକ୍ଷା
କିଏ ଶ୍ରେଷ୍ଠ;
ସୂତ ପୁତ୍ର କର୍ଣ୍ଣ, କିବା କ୍ଷତ୍ରିୟ ଅର୍ଜୁନ ।
( ପ୍ରସ୍ଥାନ )

## ( ପଞ୍ଚମ ଦୃଶ୍ୟ ).

( ରଙ୍ଗଭୂମି—ଭୀଷ୍ମ; ଦ୍ରୋଣ, ଦୁର୍ଯ୍ୟୋଧନ, ଭୀମ, ଶକୁନି, ଦୁଃଶାସନ ଯୁଧିଷ୍ଠିର, ଅର୍ଜୁନ ପ୍ରଭୃତି ରାଜକୁମାର ଗଣ )

ଭୀଷ୍ମ— ଆଚାର୍ଯ୍ୟ, ଧନ୍ୟ ଆପଣଙ୍କର ଶିକ୍ଷା ଦାନ । ଧୃତରାଷ୍ଟ୍ର ପୁତ୍ର ଓ ପାଣ୍ଡୁ ପୁତ୍ରମାନେ ବର୍ତ୍ତମାନ ପୃଥିବୀ ଜୟ କରି ପାରିବେ ।

ଦ୍ରୋଣ—ତାହା ନୁହେଁ ଭୀଷ୍ମ ଦେବ, ଏହା ସୋମବଂଶର ବଂଶାନୁକ୍ରମିକ ଗୁଣ । ଯେଉଁ କୁଳରେ ଆପଣଙ୍କ ପରି ମହାବୀର ଜନ୍ମଗ୍ରହଣ କରନ୍ତି, ସେ କୁଳର ବାଳକମାନେ ଆଉ କ'ଣ ହେବେ ?

ଭୀଷ୍ମ— ଧନୁର୍ବିଦ୍ୟା ତ ସମସ୍ତଙ୍କର ଦେଖାଗଲା । ବର୍ତ୍ତମାନ ଆପଣଙ୍କର ଶିଷ୍ୟ ମାନଙ୍କର ଗଦାଶିକ୍ଷା କିଛି ଦେଖାନ୍ତୁ ।

ଦ୍ରୋଣ—ତେବେ ଭୀମସେନ ଓ ଦୁର୍ଯ୍ୟୋଧନ ଦୁହେଁ ଗଦା ଯୁଦ୍ଧ କର । ସାବଧାନ୍, କେହି କାହାର ପ୍ରତି କ୍ରୋଧରେ ଆଘାତ କରିବ ନାହିଁ —ଏହା କ୍ରୀଡ଼ା ଯୁଦ୍ଧ, କେବଳ ଚାଳନ କୌଶଳର ପରୀକ୍ଷା ମାତ୍ର ।

( ଭୀମ ଓ ଦୁର୍ଯ୍ୟୋଧନ ଉଭୟେ ଗଦାଯୁଦ୍ଧ କରିବାକୁ ଲାଗିଲେ )

ଦ୍ରୋଣ—ଥାଉ, ଥାଉ, ଏବେ ଥାଉ । ଉଃ, ଭୀମସେନ,ଦୁର୍ଯ୍ୟୋଧନ, ସ୍ଥିର ହୁଅ । ସ୍ଥିର ହୁଅ ।
( ଯୁଦ୍ଧ ବନ୍ଦ ହେଲା )
ତୁମ୍ଭେମାନେ ଏତେ ନିବାରଣ ସତ୍ତ୍ୱେ ଉତ୍ତେଜିତ ହୋଇ ପଡ଼ିଲ ! ଛି, ଛି !

ଶକୁନି—କ୍ଷତ୍ରିୟ ରକ୍ତ ପରା, ଆଚାର୍ଯ୍ୟ ।

ଭୀଷ୍ମ— ଗଦା ସଞ୍ଚାଳନରେ ଉଭୟେ ପ୍ରାୟ ସମାନ କୌଶଳୀ । ବୋଧହୁଏ ଭୀମସେନ —

ଶକୁନି—ନା, ନା, ଦୁର୍ଯ୍ୟୋଧନ ନିଶ୍ଚେ ଭୀମଠାରୁ ଶ୍ରେଷ୍ଠ ।

ଦୁଃଶାସନ—ପିତାମହ ସବୁଦିନେ ପାଣ୍ଡବମାନଙ୍କ ପକ୍ଷରେ । ଆଚ୍ଛା ଭୀମସେନଙ୍କୁ ମୋ ସହିତ ଗଦାଯୁଦ୍ଧ କରିବାକୁ ଆଜ୍ଞା କରନ୍ତୁ ଗୁରୁଦେବ ।

ଦ୍ରୋଣ—ସ୍ଥିର ହୁଅ ଉଦ୍ଧତ ବାଳକ । ଏହା ରଣକ୍ଷେତ୍ର ନୁହେଁ—କ୍ରୀଡ଼ା ଭୂମି ।
ଭୀଷ୍ମ— ଆଚ୍ଛା, ସେହି କାଷ୍ଠ ନିର୍ମିତ ଶୁକପକ୍ଷୀର ଦକ୍ଷିଣ ଚକ୍ଷୁ କିଏ ବିଦ୍ଧ କରି ପାରିବ ?
ଦ୍ରୋଣ—ଯାଅ ଦୁର୍ଯ୍ୟୋଧନ ।
( ଦୁର୍ଯ୍ୟୋଧନ ଶର ନିକ୍ଷେପ କଲେ )
ଭୀଷ୍ମ— ନାହିଁ, ହେଲା ନାହିଁ ।
ଦ୍ରୋଣ—ତେବେ ଯୁଧିଷ୍ଠିର ଆସ ।
( ଯୁଧିଷ୍ଠିର ଶର ନିକ୍ଷେପ କଲେ )
ଶକୁନି—ବାଜିଲା ନାହିଁ, ବାଜିଲା ନାହିଁ ।
ଦ୍ରୋଣ—ଆଉ କିଏ ଅଛ, ଲକ୍ଷ୍ୟ ଭେଦ କରି ପାରିବ ? ଦୁଃଶାସନ
ଦୁଃଶାସନ—ଆଜ୍ଞା ମୁଁ ପାରିବ ନାହିଁ ।
ଭୀଷ୍ମ— ତେବେ ଯେ ପାରିବ ସିଏ ଆସୁ । ଅର୍ଜ୍ଜୁନ ?
( ଅର୍ଜ୍ଜୁନ ଅଗ୍ରସର ହୋଇ ଶର ନିକ୍ଷେପ କଲେ )
ସମସ୍ତେ—ବାଜିଛି, ବାଜିଛି ।
ଭୀଷ୍ମ— ଧନ୍ୟ ଅର୍ଜ୍ଜୁନ, ଧନ୍ୟ ତୋର ଶିକ୍ଷା, ଏହିପରି ଶିଷ୍ୟ ପାଇ ଆପଣ ମଧ୍ୟ ଧନ୍ୟ ଆଚାର୍ଯ୍ୟ ।
ଦ୍ରୋଣ—ଏପରି ସୂକ୍ଷ୍ମ ଲକ୍ଷ୍ୟ ଭେଦ ଅର୍ଜ୍ଜୁନ ବ୍ୟତୀତ ଅନ୍ୟ କେହି ପାରିବେ ନାହିଁ ।
( ସବେଗେ କର୍ଣ୍ଣ ପ୍ରବିଷ୍ଟ ହେଲେ )
କର୍ଣ୍ଣ— ଅବଶ୍ୟ ପାରିବେ ।
ଅବହେଳେ ଭେଦି ପାରେ ମୁହିଁ
ଯେଉଁ ଲକ୍ଷ୍ୟ ଭେଦିଛି ଅର୍ଜ୍ଜୁନ ।
ଭୀଷ୍ମ— କିଏ ସେ ତୁ ତରୁଣ ଯୁବକ
ସୁବିଶାଳ ଭୁଜ-ଦଣ୍ଡେ ଧରି
ପ୍ରଚଣ୍ଡ କୋଦଣ୍ଡ ?
ଗଣ୍ଡସ୍ଥଳେ ଅପୂର୍ବ କୁଣ୍ଡଳ
ମୂର୍ତ୍ତିମନ୍ତ ମାର୍ତ୍ତଣ୍ଡ ସମାନ
ତେଜପୁଞ୍ଜ ସୁନ୍ଦର ଶରୀର ।
କର୍ଣ୍ଣ— ଜାମଦଗ୍ନ୍ୟ-ରାମଶିଷ୍ୟ ମୁହିଁ
ରାମଧନୁ କରେ;
ରାମ ବରେ ଜିଣି ପାରେଁ ଏକକିତ ତ୍ରିଭୁବନ ରେ
ଦିଅ ଅନୁମତି ବାରେ,
ଦେଖାଇବି ଲକ୍ଷ୍ୟ ଭେଦେ କିଏ ଶ୍ରେଷ୍ଠତର ।
ନାହିଁ ପ୍ରୟୋଜନ, ଅନ୍ୟ ପରିଚୟେ ।

ଦ୍ରୋଣ—ତାହା କିପରି ହେବ ? ହସ୍ତିନାର ରାଜକୀୟ ରଙ୍ଗଭୂମିରେ ପ୍ରବେଶ କରି ସୋମବଂଶୀୟ ରାଜକୁମାରମାନଙ୍କ ସହିତ ପ୍ରତିଯୋଗିତା କରିବାର ଅଧିକାର ଅଜ୍ଞାତ କୁଳଶୀଳ ବ୍ୟକ୍ତିର ନାହିଁ ।
ଶକୁନି —ହାଃ, ହାଃ, ପ୍ରିୟ ଶିଷ୍ୟ ଅର୍ଜ୍ଜୁନର ଟେକ ଅକ୍ଷୁର୍ଣ୍ଣ ରଖିବା ପାଇଁ ଆଚାର୍ଯ୍ୟଙ୍କର ଏ ଗୋଟାଏ ଫାନ୍ଦି । କହ, କହ, ଯୁବକ ତୁମ୍ଭର ପରିଚୟ କହ ।
କର୍ଣ୍ଣ— ମୀଚକୁଳେ ଜାତ ମୁହିଁ,
ସୂତର ନନ୍ଦନ
କର୍ଣ୍ଣ ନାମ ଧାରୀ ।
ଶକୁନି—ଓହୋ, ଅଧିରଥଙ୍କ ପୁତ୍ର—ବୁଝିଲି—ବେଶ୍ ବେଶ୍ ।
ଭୀଷ୍ମ— ସୂତ ପୁତ୍ର ସନେ
କେମନ୍ତେ କରିବେ କ୍ରୀଡ଼ା ରାଜପୁତ୍ର ଗଣ ?
ଯାଅ ଫେରି
ଏ ଭୂମି ପ୍ରବେଶ କାର ନାହିଁ ଅଧିକାର
ଉଚ୍ଚ କୁଳେ ଜାତ କିବା ମୂର୍ଦ୍ଧା ଅଭିଷିକ୍ତ
କିରୀଟ ମୁକୁଟଧାରୀ ନରପତି ବିନା ।
ଦୁର୍ଯ୍ୟୋଧନ—ପିତାମହ,
ଜନ୍ମ ନୁହେ ନର କରିପୂତ;
ଶ୍ରେଷ୍ଠତ୍ୱ ଦେଖାଏ ନର ଆପଣା ପୌରୁଷେ,
ବିନା ଦୋଷେ, ଅର୍ଜ୍ଜୁନ ସକାଶେ
ସୂତ ପୁତ୍ରେ ଦେଲ ଅପମାନ ।
(କର୍ଣ୍ଣପ୍ରତି) ଆସ ମିତ୍ର,
ଦେନି ଶିରେ ମୋର ଏ ମୁକୁଟ
ଆଜଠାରୁ ହେଲ ତୁମ୍ଭେ ଅଙ୍ଗଦେଶ ପତି ।
( ମୁକୁଟ ପ୍ରଦାନ କରି ଆଲିଙ୍ଗନ କଲେ )
ଶକୁନି—ବାଃ—ବାଃ—ଧନ୍ୟ ଦୁର୍ଯ୍ୟୋଧନ । ନିଜେ ମାମୀ ନୋହିଲେ ଅପରର ମାନ ବୁଝିବ କିପରି—ବା ମାନବ ହେବ କିପରି ? ଏବେ ତ ଅର୍ଜ୍ଜୁନଙ୍କ ସହିତ ଅସ୍ତ୍ରକ୍ରୀଡ଼ା କରିବାକୁ ଅଙ୍ଗରାଜ କର୍ଣ୍ଣଙ୍କର ଆଉ କୌଣସି ବାଧା ବା ପ୍ରତିବନ୍ଧକ ନାହିଁ ?
କର୍ଣ୍ଣ— ଆଜଠାରୁ ସୁଖେ, ଦୁଃଖେ, ସମ୍ପଦେ, ବିପଦେ,
ଉତ୍ସବେ, ବ୍ୟସନେ କିବା ଜୀବନ ମରଣେ,
କର୍ଣ୍ଣ ତବ ଆଜ୍ଞାକାରୀ;
ଦୁର୍ଯ୍ୟୋଧନ ହିତେ ସଦା ରତ,

ଏହି ମୋର ବ୍ରତ
ଅବିରତ, ପ୍ରିୟ ତବ କରିବି ସାଧନ
ଆପଣା ଜୀବନ ଦାନେ ।
ସଭା ମଧ୍ୟେ ରଖିଲ ମୋ ମାନ,
ସୂତ ପୁତ୍ରେ ମିତ୍ର ବୋଲି ସମ୍ବୋଧନ
ଆଜି ଦିନ,
ହୃଦ୍ଧି ପଟେ ରହିଲା ଅଙ୍କିତ
ଜ୍ୱଳନ୍ତ ଅକ୍ଷରେ ।

ଶକୁନି—ଆଉ ତେବେ ବିଳମ୍ବ କାହିଁକି ? ଆସ କର୍ଣ୍ଣ, ଆସ ଅର୍ଜ୍ଜୁନ ରଣ କୌଶଳ ପରୀକ୍ଷା ହେଉ ।
(କର୍ଣ୍ଣ ଓ ଅର୍ଜ୍ଜୁନ ଦୁହେଁ ଧନୁ ଆସ୍ଫାଳନ କରି ଅଗ୍ରସର ହେଲେ—ଜଣେ ପ୍ରତିହାରୀ ପ୍ରବିଷ୍ଟ ହେଲେ)

ପ୍ରତିହାରୀ—ମହାରାଣୀ କୁନ୍ତୀ ହଠାତ୍ ଅସୁସ୍ଥା ହୋଇ ମୂର୍ଚ୍ଛିତା ହୋଇ ଅଛନ୍ତି ।

କୃଷ୍ଣ— କ୍ଷାନ୍ତ ହୁଅ ମଧ୍ୟମ ପାଣ୍ଡବ,
ମୂର୍ଚ୍ଛାଗତା ଜନନୀ ତୁମ୍ଭର
ଏକାଳେ କୌତୁକ କ୍ରୀଡ଼ା ନୁହଇ ଉଚିତ;
ଆସ ସବେ କ୍ରୀଡ଼ା ସାଙ୍ଗ କରି ।

ଶକୁନି—କର୍ମ ଭଲ ହେ ଦୁର୍ଯ୍ୟୋଧନ—କର୍ମ ଭଲ । ନୋହିଲେ ଆଜି ଅର୍ଜ୍ଜୁନର ଫୁରଫାର ଜାରିଜୁରି ଭାଙ୍ଗି ଯାଇ ଥାଆନ୍ତା । ହଉ, ଆଉ ଦିନେ ଦେଖାଯିବ । (ପ୍ରସ୍ଥାନ)

ଦୁର୍ଯ୍ୟୋଧନ—ଆସ ମିତ୍ର
...... ଆବାସେ ଚରିତାର୍ଥ୍ୟ ଗ୍ରହଣ କରିବ ।
(ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

[ଦ୍ରୁପଦ ରାଜାଙ୍କ ପ୍ରସାଦ ଆଗରେ ସୁସଜ୍ଜିତ ସଭାମଣ୍ଡପ । ଏକ ପକ୍ଷରେ କ୍ଷତ୍ରିୟ ରାଜାଗଣ ଆସୀନ । ଅନ୍ୟ ପକ୍ଷରେ ବ୍ରାହ୍ମଣଗଣ ଉପବିଷ୍ଟ । ମଧ୍ୟରେ ଜଳପାତ୍ର ଓ ସ୍ତମ୍ଭ । ଜଳପାତ୍ରରେ ସ୍ତମ୍ଭୋପରି ଘୂର୍ଣ୍ଣାୟମାନ ଚକ୍ରର ଛାୟା ପଡ଼ୁଅଛି ।]

ଦ୍ରୁପଦ—ପରମ ସୌଭାଗ୍ୟ ମୋର, ନରେନ୍ଦ୍ର ମଣ୍ଡଳ;
ଲକ୍ଷ ରାଜା ପଦରଜେ
ପବିତ୍ର ପଞ୍ଚାଳ ପୁର ।
ସୁତା ମୋର ଯାଜ୍ଞସେନୀ, ଅଯୋନି-ସମ୍ଭବା,
ରୂପେ ଗୁଣେ କନ୍ୟା ବରଣୀୟା
ଅଟଇ ମାନସ ମୋର ବୀରଶ୍ରେଷ୍ଠ କରେ ।
ଏହି ଲକ୍ଷ୍ୟ ଭେଦେ ଯେହୁ ହୋଇବ ସମର୍ଥ,
ଲଭିବ ଦ୍ରୌପଦୀ ସହ ଅକ୍ଷୟ କୀରତି,
ଶ୍ରେଷ୍ଠତମ ଧନୁର୍ଦ୍ଧାରୀ ରୂପେ
ବୀର ପ୍ରସବିନୀ ଏହି ଭାରତ ମଣ୍ଡଳେ ।

ଶକୁନି—ଧନ୍ୟ, ଧନ୍ୟ—ବେଶ୍, ବେଶ୍ ।

ଦ୍ରୁପଦ—ଯଦୁକୁଳ ଚନ୍ଦ୍ର କୃଷ୍ଣ ଦ୍ୱାରକା ଈଶ୍ୱର
ମହାଯଶା, ଜ୍ଞାନୀ ବୀରବର,
ଏ ମହାସଭାର ଆଜି ହେବେ ଧର୍ମାଧୀଶ ।

ଶକୁନି—ଅତି ଉତ୍ତମ, ଅତି ଉତ୍ତମ ।
(ଦୁର୍ଯ୍ୟୋଧନ ପ୍ରତି) ତୁମର ଶରୀର ହେ ଦୁର୍ଯ୍ୟୋଧନ !
(ଦ୍ରୁପଦ ଅଗ୍ରସର ହୋଇ ଶ୍ରୀକୃଷ୍ଣ କର ଧାରଣ କରି ସସମ୍ମାନେ ସଭାପତି ଆସନକୁ ନେଇ ଗଲେ ଓ ପୁଷ୍ପମାଳା ଚନ୍ଦନ ଅର୍ପଣ କଲେ । ଏହି ସମୟରେ ଶଙ୍ଖ, ହୁଳହୁଳି ଶବ୍ଦ ହେଲା ।)

ଶକୁନି—ମହାରାଜ, ଆଉ ବିଳମ୍ବ କାହିଁକି—
କାର୍ଯ୍ୟାରମ୍ଭ ହେଉ । ଶୁଭସ୍ୟ ଶୀଘ୍ରଂ—

ଦ୍ରୁପଦ—ଏଣିକି ସେ ଭାର ସଭାଧିପଙ୍କର

ଶିଶୁପାଳ—(ସରୋଷେ ଆସନରୁ ଉଠି)
ଭଲ ଜାଣ ପଞ୍ଚାଳେଶ ଅତିଥି ସତ୍କାର
ଜାଣି ଶୁଣି ଦେଲ ଅପମାନ
ସମଗ୍ର କ୍ଷତ୍ରିୟ କୁଳେ ।
କେଉଁ କ୍ଷାତ୍ର କୁଳେ ଜାତ ନନ୍ଦ ଗୋପସୁତ !
କେଉଁ କ୍ଷାତ୍ର ଧର୍ମ ପାଳେ
ପ୍ରାଣ ଭୟେ ଲୁଚେ ଯେହୁ ସାଗର ଗରଭେ !
ଗୁପ୍ତ ହତ୍ୟା, ନାରୀ ଚୋରି ଆଦି ପେଶା ଯାର
ସେ ପୁଣି ହୋଇବ ଆଜି ସଭା ଧର୍ମାଧିପ !
ଗୋଧନ ଚାରଣେ ଯାର ଆଜନ୍ମ ଅଭ୍ୟାସ
ଚାଳିବ ସେ କ୍ଷାତ୍ର ସମ୍ମେଳନୀ !
ଇଚ୍ଛା ହୁଏ, ଧୃଷ୍ଟତାର ନେଇ ପ୍ରତିଶୋଧ
ଏହିକ୍ଷଣି...( କ୍ରୋଧରେ ନିର୍ବାକ ହୋଇଗଲେ ଓ ଦାନ୍ତ କଡ଼ମଡ଼ କରିବାକୁ ଲାଗିଲେ )

ଶକୁନି—ଠିକ୍ କହିଛନ୍ତି ଚେଦୀଶ୍ୱର—କ୍ଷତ୍ରିୟର ଧର୍ମ ଏକା । ରୁକ୍ମଣୀ ସ୍ୱୟମ୍ବର କାଣ୍ଡଟା କ କେହି ଭୁଲିପାରେ ! ସେ ଯେଉଁ ଅପମାନ ।
( ଶିଶୁପାଳ ଶକୁନିକୁ ଚରିଛି ଚାହିଁଲେ ଓ ଘରଆଡ଼କୁ ଚାହିଁ କିଂକର୍ତ୍ତବ୍ୟବିମୂଢ଼ବତ୍ ହୋଇଗଲେ )

ଶିଶୁପାଳ—ଯହିଁ ନାହିଁ ଅତିଥି ସମ୍ମାନ,
ଆମନ୍ତ୍ରିତ ଲଭେ ଅପମାନ
ମୁହୂର୍ତ୍ତେ ତିଷ୍ଠିବା ତହିଁ ନୁହଇ ଉଚିତ ।
( ସଭାରୁ ଉଠି ଚାଲିଗଲେ )

ଶକୁନି—ଏ କଣ, ଏ କଣ ! ସ୍ୱୟଂ ରାଜା ଶିଶୁପାଳ ଚାଲିଯିବେ । ହେ, ହେ, ବୀରବର, ଧର୍ମଗାଦିରେ ବସି କୃଷ୍ଣ କଣ ସେ ବୈରିତା ସାଧିବେ ଆଜ ! ଆସ ମ ! ଫେରି ଆସ ।

ନା—ହେଲା ନାହିଁ । ମହାମାମା କନା ! ଖାଣ୍ଟି କ୍ଷତ୍ରିୟ ରକ୍ତ ପରା !
( ଦ୍ରୁପଦ ରାଜା ଅଗ୍ରସର ହେଉ ହେଉ )

ଦ୍ରୁପଦ—ବୀରବର···ଧୈର୍ଯ୍ୟ···

ଧୃଷ୍ଟଦ୍ୟୁମ୍ନ—( ପିତାଙ୍କୁ ଅଟକାଇ ଦେଲେ )
ପିତଃ,
ନୀଚବୁଦ୍ଧି ରାଜା ଶିଶୁପାଳ,
ନୁହଇ ତାଙ୍କର ସ୍ଥାନ ସୁଧୀ ସମାଜରେ

( ଦ୍ରୁପଦ ରହିଗଲେ । ଏହି ସମୟରେ ଶଙ୍ଖ ହୁଳହୁଳି ଶବ୍ଦ ହେଲା ଓ ସୁଭୂଷିତା ଦ୍ରୌପଦୀ ସଖୀ ସମଭିବ୍ୟାହାରରେ ବରଣମାଳା ସହ ସଭାରେ ଉପନୀତା ହୋଇ ଏକ ପାର୍ଶ୍ୱରେ ଦଣ୍ଡାୟମାନା ହେଲେ । )

କୃଷ୍ଣ—ବୀରବୃନ୍ଦ, ଦେଖନ୍ତୁ ଊର୍ଦ୍ଧ୍ୱରେ ଏହି ସଚ୍ଛିଦ୍ର ଅୟସ୍ତମ୍ଭ ଭ୍ରାମ୍ୟମାନ । ତଦୁପରି ଏକ ସ୍ଫଟିକ ନିର୍ମିତ କୃତ୍ରିମ ମତ୍ସ୍ୟ ସ୍ଥାପିତ । ଭୂମି ଉପରେ ଯେଉଁ ଜଳପାତ୍ର ଅଛି ତହିଁରେ ଏ ସମସ୍ତ ଛାୟା ପ୍ରତିବିମ୍ବିତ । ଯେଉଁ କ୍ଷତ୍ରବୀର ସେହି ନିମ୍ନସ୍ଥ ଛାୟାରେ ଦୃଷ୍ଟି ରଖି ଶରଦ୍ୱାରା ସେ ଛିଦ୍ରଭେଦ କରି ମତ୍ସ୍ୟର ଚକ୍ଷୁ ବିଦ୍ଧ କରି ପାରିବେ, ଦ୍ରୁପଦ କୁମାରୀ କୃଷ୍ଣା ତାଙ୍କୁ ପତିରୂପେ ବରଣ କରିବେ । ଏହା ପାଞ୍ଚାଳ ପତିଙ୍କ ପଣ ।

ଏବେ ଅଗ୍ରସର ହୁଅନ୍ତୁ ।

ଶକୁନି—ବଡ଼ ଶକ୍ତ ପରୀକ୍ଷା । ବୟସ ହୋଇଯିବାରୁ ମୋ ହାତଟା ଥରୁଛି କନା । ନୋହିଲେ···ଆଚ୍ଛା, କୁଳବୃଦ୍ଧ ପିତାମହ ଭୀଷ୍ମ ସର୍ବାଗ୍ରେ···
( ସମସ୍ତେ ଭୀଷ୍ମଙ୍କୁ ଚାହିଁଲେ )

ଭୀଷ୍ମ—( ଉଠି )
ପାଳନେ କୌମାର ବ୍ରତ ସତ୍ୟବଦ୍ଧ ମୁହିଁ ;
କିନ୍ତୁ ଯଦି କରିପାରେ ମୁହିଁ ଲକ୍ଷ୍ୟଭେଦ,
ଅର୍ପିବି ଦ୍ରୁପଦ-ପୁତ୍ରୀ ଦୁର୍ଯ୍ୟୋଧନ କରେ ।

ଶକୁନି—ଠିକ୍ ଠିକ୍ । କଣ କହୁଛନ୍ତି ମହାରାଜ ଦ୍ରୁପଦ ?
( ଚିନ୍ତିତ ଦ୍ରୁପଦ ଭୁନି ଭୁନି ପରାମର୍ଶ କଲେ )

କୃଷ୍ଣ—ଆପତ୍ତି ନାହିଁ ।
( ଭୀଷ୍ମଦେବ ଅଗ୍ରସର ହୋଇ ଧନୁ ଗ୍ରହଣ କଲେ ଓ ଶରେ ଯୋଜନା କରିବା ସମୟରେ ହଠାତ୍ ଚମକିପଡ଼ି ଧନୁ ନିକ୍ଷେପ କରି ଫେରି ଆସିଲେ )

ଶକୁନି—କଣ ହେଲା, କଣ ହେଲା ?

ଭୀଷ୍ମ—ନପୁଂସକ ଯେବେ ମୁହିଁ ଦେଖଇ ପୁରତେ,
ପଣ ମୋର, କରେଁ ଅସ୍ତ୍ର ତ୍ୟାଗ ।
( ଆସନ ଗ୍ରହଣ କଲେ )
( ସମସ୍ତେ ସେଆଡ଼କୁ ଚାହିଁଲେ )

ଶକୁନି—ଆରେ ସତେ ତ ! ଏ ଯେ ଦ୍ରୁପଦ ମହାରାଜାଙ୍କ ପୁତ୍ର— ଶିଖଣ୍ଡୀ ! ଓଃ କି ଦୁର୍ଭାଗ୍ୟ ! ସବୁ ମାଟି ହୋଇଗଲା ।

ଶିଖଣ୍ଡୀ—( ଅନ୍ତିକେ )
ଆପଣା ପୌରୁଷେ ଗର୍ବେ ଗର୍ବିତ ସ୍ଥବିର
ଏହି ନପୁଂସକ ହାତେ କାଳ ହେବ ତୋର ।

ଶକୁନି—ପିଲାଟାକୁ ବାଧି ଗଲା । ଆସ ଦୁର୍ଯ୍ୟୋଧନ ।
( ଦୁର୍ଯ୍ୟୋଧନ ଉଠି ଧନୁଶର ଯୋଜନା କଲେ )

ଧୃଷ୍ଟଦ୍ୟୁମ୍ନ—( କୃଷ୍ଣାଙ୍କୁ )
ମାମା ଦୁର୍ଯ୍ୟୋଧନ ଏହି କୌରବ ଈଶ୍ୱର
ରାଜ ଚକ୍ରବର୍ତ୍ତୀ ପୁଣି ବୀର ମହା ତେଜା ।

ଦ୍ରୌପଦୀ—ଶୁଣିଛି ତାଙ୍କର ଖ୍ୟାତି,
ଜତୁଗୃହେ ଭ୍ରାତୃ ହତ୍ୟାକାରୀ ।
( ଦୁର୍ଯ୍ୟୋଧନ ଚମକି ପଡ଼ି ଦ୍ରୌପଦୀଙ୍କ ଆଡ଼କୁ ଚାହିଁଲେ )

ଶକୁନି—ସେଥିରୁ କ'ଣ ପାଇବ ହେ—ଶର ନିକ୍ଷେପ କର ।
( ଦୁର୍ଯ୍ୟୋଧନ ଶର ନିକ୍ଷେପ କଲେ । ଶର ବ୍ୟର୍ଥ ହୋଇ ତଳେ ପଡ଼ିଲା । ସେ ଅଧୋବଦନରେ ଫେରି ଆସିଲେ )

ଶକୁନି—ଗଦା ବୁଲାଇବା କାମ ହୋଇଥିଲେ ଦେଖା ଯାଇ ଥାଆନ୍ତା ଦୁର୍ଯ୍ୟୋଧନ ଗୁଣ ସିନା ! ଏଗୁଡ଼ାକ ପିଲା ଖେଳନା ।
( ପିଠିରେ ହାତ ମାରି ) ମନ ଦୁଃଖ କର ନାହିଁ ।

କୃଷ୍ଣ—ଆଉ କିଏ ବୀର ଅଛ, ହୁଅ ଅଗ୍ରସର ।
( ଦୁଃଶାସନ ଉଠିଲେ )

ଧୃଷ୍ଟଦ୍ୟୁମ୍ନ—ଦୁଃଶାସନ ବୀର ଏହି, ଦୁର୍ଯ୍ୟୋଧନ ଭ୍ରାତା ।

ଦ୍ରୌପଦୀ—ରାଜ ଭ୍ରାତା ? ରାଜା ନୁହେ ?
ରାଜାର ସେବକ !
କେଉଁ ଯୋଗ୍ୟତାରେ ଅଗ୍ରସର ଲକ୍ଷ୍ୟ ଭେଦିବେ ?

ଦୁଃଶାସନ—ଗର୍ବିତା ରମଣି !
ଦେଲ୍ ଏହି ଅପମାନ କ୍ଷତ୍ରିୟ ସମାଜେ ।
ଆଚ୍ଛା, ପାଇବୁ ତୁ ପ୍ରତିଫଳ ଏହି ଔଦ୍ଧତ୍ୟର ।
( ଫେରି ଆସିଲେ )

ଶକୁନି—ଦୁର୍ଯ୍ୟୋଧନ ଇଚ୍ଛା କଲେ ତ ତାଙ୍କୁ କର୍ଣ୍ଣଙ୍କ ପରି ଗୋଟାଏ ରଜା କରାଇ ଦେଇ ପାରନ୍ତେ । କିନ୍ତୁ ଭ୍ରାତୃ ସ୍ନେହରେ ପାଣ୍ଡୁରୁ ଅନ୍ତର କରି ପାରୁ ନାହାନ୍ତି ।

କୃଷ୍ଣ— ଆଉ କିଏ ?
[ ଶଲ୍ୟ ଉଠିଲେ ଓ ଧନୁଃଶର ଯୋଜନା କଲେ ]

ଧୃଷ୍ଟଦ୍ୟୁମ୍ନ—ରାଜା ଶଲ୍ୟ, ମଦ୍ର ପତି, ମହା ଧନୁର୍ଦ୍ଧର ।

ଦ୍ରୌପଦୀ—ଅସଭ୍ୟ ବର୍ବର ବୋଲି ଖ୍ୟାତ ଯେଉଁ ଦେଶ,
( ଶଲ୍ୟ ନିକ୍ଷେପ କଲେ ମାତ୍ର ଶର ବ୍ୟର୍ଥ ହେଲା )

ଶକୁନି—ଓଃ, ଚକ୍ରଟାରେ ନିଶ୍ଚୟ ଛିଦ୍ର ନାହିଁ—ନୋହିଲେ ଶଲ୍ୟଙ୍କର ଶର କଣ······ !

ଧୃଷ୍ଟଦ୍ୟୁମ୍ନ—ନିଶ୍ଚୟ ଛିଦ୍ର ଅଛି—ପରୀକ୍ଷା କରନ୍ତୁ ।

ଶଲ୍ୟ— ତାହା ହେଲେ ଶରଠାରୁ ଛିଦ୍ରଟି ସାନ ।
ଆଉ ଥରେ ମୁଁ ଚେଷ୍ଟା କରିବ ।

କୃଷ୍ଣ— ତାହା ହୋଇ ପାରିବ ନାହିଁ, ମଦ୍ରରାଜ ।
ପରୀକ୍ଷା ଥରେ ମାତ୍ର ।
( ଶଲ୍ୟ ଫେରିଲେ )

ଶକୁନି—ଏଥର ମାରିଥିଲେ ମାଛ କ'ଣ ଚକ୍ରଟାକୁ ସହିତେ ଖସେଇ ପକେଇ ଥାଆନ୍ତେ ।

କୃଷ୍ଣ—ଆଉ କେହି ହୁଅ ଅଗ୍ରସର ।
( କର୍ଣ୍ଣ ଉଠିଲେ )

ଶକୁନି— ହାଁ ଏଇ ଥର ଯିବ କୁଆଡ଼େ ! ଇଏ ବାବା ଯେ ସେ ନୁହେ—ମହାବୀର କର୍ଣ୍ଣ । ପରଶୁରାମ ଶିଷ୍ୟ । ସୁଯୋଧନ କପାଳ ଫାଟିଲା । ଭାନୁମତୀ ସ୍ୱୟମ୍ବର କଥା ମନେ ଅଛି ତ !

ଧୃଷ୍ଟଦ୍ୟୁମ୍ନ—ଅଙ୍ଗଦେଶ ନାଥ କର୍ଣ୍ଣ, ଜାମଦଗ୍ନ୍ୟ ଶିଷ୍ୟ, ମହାବୀର ଧରଣୀ ମଣ୍ଡଳେ ।

ଦ୍ରୌପଦୀ—କର୍ଣ୍ଣ !···କର୍ଣ୍ଣ ! ରାଧାର ନନ୍ଦନ !
. ଦୁର୍ଯ୍ୟୋଧନ ଅନୁଗ୍ରହେ ଅଙ୍ଗ ଅଧୀଶ୍ୱର !
ପଞ୍ଚାଳ କୁମାରୀ
ସୂତ ପୁତ୍ରେ ନ ବରିବ କେବେ ।
( ମୁହଁ ମୋଡ଼ିଲେ )
( କର୍ଣ୍ଣ ଶରାସନରେ ଶର ଯୋଜନା କରୁଥିଲେ । ଦ୍ରୌପଦୀଙ୍କ ବାକ୍ୟ ଶୁଣି ଫେରି ଛିଡ଼ା ହେଲେ )

କର୍ଣ୍ଣ— ଦ୍ରୁପଦ ଦୁଲଣି,
ଆଭିଜାତ୍ୟ ଦର୍ପେ ସ୍ଫୀତା, ପ୍ରଗଲ୍‌ଭା ବାଳିକା,
ସଭାସ୍ଥଳେ କହିଲ କି ଂଧାସି
ପରିହରି ଶିଷ୍ଟାଚାର ମାତ୍ର ।
ଚନ୍ଦ୍ର ସୂର୍ଯ୍ୟ ଥିବେ ଯେବେ, ଥିବ ଯେବେ ଧର୍ମ,
ବଚନେ ହେଲେ ପ୍ରତିଫଳ ପାଇବ ଏହାର ।
( ଶରାସନ ନିକ୍ଷେପ କରି ଫେରି ଆସିଲେ )

ଶକୁନି—ଆରେ ଆଚ୍ଛା କଥା । ବଡ଼ ଚେମରାଗୀ ଲୋକ ତ ଇଏ ।
ନାରୀଙ୍କ କଥାରେ ଅଛି କଣ ମ ? ଲକ୍ଷ୍ୟଟା ଭେଦି ଦେଇଥିଲେ ବଳେ ସେ ତମରି ଦାସୀ ହୋଇ ଥାଆନ୍ତା ।
ତେଣିକି ତୁମ ଇଚ୍ଛା ।

ଦୁର୍ଯ୍ୟୋଧନ—ଘେରି ଘେରି କୁରୁସେନା ପଞ୍ଚାଳ ନଗରୀ
ବଳେ ହରି ନେଇଯିବା ଏହି ସଭାସ୍ଥଳୁ
ଦର୍ପିତା, ମୁଖରା ଏହି ଦ୍ରୁପଦ ନନ୍ଦିନୀ ।
( ଅସି ଉନ୍ମୋଚନ )

ଧୃଷ୍ଟଦ୍ୟୁମ୍ନ—କି ଭୟ ଦେଖାଅ ବୀର !
ସେ ପାଇଁ ପ୍ରସ୍ତୁତ ସଦା ପଞ୍ଚାଳ ବାହିନୀ—
( ଅସି ଉନ୍ମୋଚନ )

ଭୀଷ୍ମ— ସ୍ଥିର ହୁଅ ଦୁର୍ଯ୍ୟୋଧନ—
ଘେନ ଘେନ ବୃଦ୍ଧର ବଚନ,
ନିଦିଅ ଚରଣ ଅକାରଣେ ଏହି ଅନର୍ଥରେ ।

ଶକୁନି—ହଁ, ହେ, ପିତାମହ ଯାହା କହିଲେ ତାହା ଠିକ୍ ।
ଦେଖାଯାଉ କଉଁଠିକା ପାଣି କୁଆଡ଼େ ଯାଉଛି ।

କୃଷ୍ଣ— ଆଉ କେହି ବୀର ଅଛନ୍ତି ?

ଶକୁନି—କହେ କୀଚକ, ତ୍ରିଗର୍ତ୍ତ, ଚେକିତାନ କେହି ହେଲେ ବାହାର ।

ଦ୍ରୁପଦ—ତେବେ କି, ଧର୍ମରକ୍ଷା ନୋହିବ ମୋହର
ବୀର୍ଯ୍ୟହୀନ ହୋଇଲାଣି କ୍ଷତ୍ରିୟ ସମାଜ !
( କିଛିକ୍ଷଣ ରହି )
ବ୍ରାହ୍ମଣ ସମାଜ ମଧ୍ୟେ ଥାଅ ଯଦି କେହି
ଅଗ୍ରସର ହୁଅ ଲକ୍ଷ୍ୟ ଭେଦେ ।

ଶକୁନି—ଗୁରୁ ଦ୍ରୋଣ ଏବେ ଉଠନ୍ତୁ ।

ଦ୍ରୋଣ—ସଖା ମୋର ପଞ୍ଚାଳ ଈଶ୍ୱର
ତେଣୁ ତାଙ୍କ ସୁତା ମୋର ଅଟଇ ଦୁହିତା ।

ଭୀମ— କ୍ଷାତ୍ର ତେଜ ପଡ଼େ ଯେବେ ଊଣା
ହଟିଯାଏ କ୍ଷାତ୍ର ବାହୁବଳ,
ବ୍ରାହ୍ମଣ, ବ୍ରାହ୍ମଣ ଏକା ସାଧେ ସେହି କର୍ମ
ବ୍ରାହ୍ମଣର ଅଟେ ଏହା ଧର୍ମ ଚିରନ୍ତନ ।

ଯୁଧିଷ୍ଠିର—ବାତୁଳ ପରିପ୍ରେ କର୍ମ କର ନାହିଁ ଭାଇ ।
( ଭୀମକୁ ନିବୃତ୍ତ କରାଇଲେ )

ଦ୍ରୁପଦ—ମିଥ୍ୟା ନୁହେଁ—ବ୍ରାହ୍ମଣ ମହତ୍ତ୍ୱ—
ଧର୍ମ ରକ୍ଷା ବ୍ରାହ୍ମଣର କ୍ଷମତା ଅଜ୍ଞାତ ।

ଅର୍ଜ୍ଜୁନ—ଆଜ୍ଞା ହେଉ, କରେଁ ଲକ୍ଷ୍ୟ ଭେଦ ।
ବିପନ୍ନ ଦ୍ରୁପଦ ରାଜ ।
( ଯୁଧିଷ୍ଠିର ମୁଣ୍ଡ ହଲାଇଲେ )

ଅର୍ଜ୍ଜୁନ—ବ୍ରହ୍ମରୂପୀ ବ୍ରାହ୍ମଣ ମଣ୍ଡଳ,
ଶିରେ ଦେନ ତବ ଶୁଭାଶିଷ,
ଦିଅ ଅନୁମତି ଚଳିବି ମୁଁ ଲକ୍ଷ୍ୟ ଭେଦେ ।

୧ମ ବ୍ରା:—ଆରେ ଏଉଟା ପାଗଳ ନା କ'ଣ !

୨ୟ ବ୍ରା:—ପାଗଳ ହେବା କଣ ଗଛରୁ ଫଳେ ? କନ୍ୟାର ଯେଉଁ ରୂପ କାଠୁଆ ବୁଢ଼ା ତ ପାଗଳ ହୋଇଯିବେ—ଆଉ ଏ ଟୋକା କଥା କ'ଣ ପଚାରୁଛ ?

୧ମ ବ୍ରା:—ଶିଳ ଶିଳପୁଆ ଗଗନେ ଉଡ଼ୁଛି ଯହିଁ—

୩ୟ ବ୍ରା:—ଆଚ୍ଛା ଓଲୁ ତ । ଟୋକାଟା ସାହସ କରି ବାହାରିଛି ଯେତେବେଳେ, ତା ବିହପ ଭାଙ୍ଗିଦେବା ଉଚିତ ନୁହେଁ । ହଁ ହେ ଯୁବକ, ତୁମେ ଯାଅ । ଆମେ ଆଶୀର୍ବାଦ କରୁଛୁ ତୁମେ ଲକ୍ଷ୍ୟ ଭେଦି ଆମର ସମସ୍ତିଙ୍କ ମାନ ରଖ ।

୧ମ ବ୍ରା:—ବଡ଼ ବଡ଼ ଗଲେ ଫସର ଫାଟି, ଇଏ ଅଇଲେ ବେସର ବାଟି ।
( ଅର୍ଜ୍ଜୁନ ଧନୁ ସମୀପକୁ ଯାଆନ୍ତେ )

ଶକୁନି—ଆରେ ବାଃ, ନୁହେ ! ହାଁ, କାଛେଣିଟା ପଇତାଟା ଅଣ୍ଟାରେ ଗୁଡ଼େଇ ଦେଇ ଲାଗି ଯାଅ ବାବା ।

ଅର୍ଜ୍ଜୁନ—ଅସହାୟର ସହାୟ ଭଗବାନ୍ ।
ଏହି ବେଳରେ ସାହାଯ୍ୟ ହୁଅ ।
( କୃଷ୍ଣ ଉଦ୍ଦେଶ୍ୟେ ପ୍ରଣାମ )
(ଶର ଯୋଜନା କଲେ)

ଶକୁନି—ଡରି ଯାଅ ନାହିଁ ଗୋସେଇଁ । ଗ୍ଲତ ଦମ୍ଭ କରି—ନିଶ୍ୱାସଟା ବନ୍ଦରଖି—ହୁଁ—ବୁଝିଲଟି ? ଟୋକାଟାକୁ ଦେଖି ଏକା କମିତିକା ଲାଗୁଛି । ଛଦ୍ମବେଶୀ ଆଉ କେହି ନୁହେ ତ !

ଦ୍ରୌପଦୀ—କିଏ ଏହି ସୁନ୍ଦର ଯୁବକ,
ସୌମ୍ୟ, ସ୍ନିଗ୍ଧ, ସୁଶ୍ୟାମ ମୂରତି
ତେଜ, ଦୀପ୍ତି ଝଲକେ ବଦନେ ।
ନ ହୁଏ ସମ୍ୱରି,
ହୃଦତନ୍ତ୍ରୀ ଉଠେ ଥରି ଥରି,
କମ୍ପେ କରି କେଉଁ ଏକ ଅପୂର୍ବ ଆନନ୍ଦେ ।

କୃଷ୍ଣ—ଭୂତଳସ୍ଥ ଜଳବିମ୍ବକୁ ନିରୀକ୍ଷଣ କରି ସ୍ତମ୍ଭୋପରିସ୍ଥିତ ମୀନଚକ୍ଷୁ ଶରବିଦ୍ଧ କର ।
(ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କ ଆଡ଼କୁ ଥରେ ଚାହିଁଲେ ଓ ମସ୍ତକ ଅବନତ କଲେ)
(ତଦନ୍ତେ ଯଥା ଭାବେ ଶର ନିକ୍ଷେପ କରନ୍ତେ ମୀନ ଶର ବିଦ୍ଧ ହୋଇ ଭୂତଳରେ ପତିତ ହେଲା । ବ୍ରାହ୍ମଣମାନେ ଜୟନାଦରେ କୋଳାହଳ କରି ଉଠିଲେ । କ୍ଷତ୍ରିୟଗଣଙ୍କ ଅସ୍ତ୍ର ଝନତ୍କାର ଶବ୍ଦ ଶୁଭିଲା । ତେଣେ ଶଙ୍ଖ ହୁଳହୁଳି ମଧ୍ୟରେ ଯାଜ୍ଞସେନୀ ବରଣ ମାଳ୍ୟ ଧରି ଅଗ୍ରସର ହୋଇ ଆସିଲେ । ଅର୍ଜ୍ଜୁନ ଗଳାରେ ମାଳ୍ୟ ଦେବାକୁ ଯିବା ବେଳେ ଅର୍ଜ୍ଜୁନ ଦୁଇପାଦ ପଛକୁ ହଟିଗଲେ)

( ପଟପତନ )

# ତୃତୀୟ ଅଙ୍କ

## (ପ୍ରଥମ ଦୃଶ୍ୟ)

(ସ୍ଥାନ—ହସ୍ତିନା—ମନ୍ତ୍ରଣାଗାର । କର୍ଣ୍ଣ ଓ ଶକୁନି ଉପବିଷ୍ଟ)

ଶକୁନି—ବଡ଼ ଆଶ୍ଚର୍ଯ୍ୟ, କିଏ ଜାଣିଥିଲା କହ, ପଞ୍ଚଭାଇଯାକ ଜତୁଗୃହରୁ ପୋଡ଼ି ମରି ପୁଣି ବାହାରିଲେ । ବାହାରିଲେ ତ ବାହାରିଲେ—ଦ୍ରୌପଦୀ ସ୍ୱୟମ୍ବରରେ ଯେଉଁ ଅପମାନ ! ଏହା କ'ଣ ସହିବା କଥା ? ସେଥିରେ ପୁଣି ବୃଦ୍ଧ ଧୃତରାଷ୍ଟ୍ର ଡାକି ଆଣି ଅଧେ ରାଜ୍ୟ ଦେଇ ଇନ୍ଦ୍ରପ୍ରସ୍ଥରେ ରଖାଇ ଅଛନ୍ତି !

ଦୁର୍ଯ୍ୟୋଧନ – ଦ୍ରୌପଦୀର ସ୍ୱୟମ୍ବର ?
ଅପମାନ । ଘୋର ଅପମାନ !
ସହି ନାହିଁ ଦୁର୍ଯ୍ୟୋଧନ
ଏଭଳି ଲାଞ୍ଛନା କେଉଁ କାଳେ ।

ହେଲକ୍ଷଣି ଜାଗରିତ
ସେ ଦିନର କଥା ସ୍ମୃତିପଟେ
ଗାତ୍ର ଉଠେ କମ୍ପି,
ଖସି ପଡ଼େ ନେତ୍ରୁ ଅଗ୍ନିକଣା ।
ପ୍ରତିଶୋଧ ! ପ୍ରତିଶୋଧ !
ନାହିଁ ତ ଉପାୟ କିଛି ।

**ଶକୁନି**—ଅତୀତ କଥା ଭାବିବାର ପ୍ରୟୋଜନ ନାହିଁ । ସେହି ଅପମାନର ପ୍ରତିଶୋଧ ନେବା ହଉଛି ପୌରୁଷ । ଉପାୟ ? ଖୋଜିଲେ ଅବଶ୍ୟ ମିଳିବ ।

**ଦୁର୍ଯ୍ୟୋଧନ**—ଶୃଗାଳ ଛଡ଼ାଇ ନେଇ ସିଂହ ମୁଖୁଁ ଗ୍ରାସ
ଭୋଗିବ ତା' ସିଂହର ସମକ୍ଷେ !
ଶୋଭିବ ମୌକ୍ତିକମାଳା ବାନରର ଗଳେ
ଥାଉଁ ଥାଉଁ ଯୋଗ୍ୟପାତ୍ର ତାର;
ସହିବ କି ପୁରୁଷର ପ୍ରାଣ ?

**ଶକୁନି**—ସେ କଥା ତ ଠିକ୍ । ଦ୍ରୌପଦୀ ପରି କନ୍ୟାର ସ୍ୱାମୀ ପାଣ୍ଡବ ପଞ୍ଚପ୍ରାଣ । କୁଳନନ୍ଦା—କୁଳନନ୍ଦା—ଛି, ଛି । କିନ୍ତୁ ଏସବୁ ଅଙ୍ଗରାଜ କର୍ଣ୍ଣଙ୍କ ଦୋଷ । ସେ ଯଦି ରାଗରେ ଶରାସନ ଫିଙ୍ଗି ଦେଇ ସ୍ୱୟମ୍ବରର ସଭା ତ୍ୟାଗ କରି ନ ଆସି ଥାଆନ୍ତେ ତେବେ ସେ ଲକ୍ଷ୍ୟଭେଦ କରି ଦ୍ରୁପଦ କନ୍ୟା ଜିଣି ଆଣି ଥାଆନ୍ତେ ନିଶ୍ଚୟ । ତାହାହେଲେ କୃଷ୍ଣା ଆଜି ଦୁର୍ଯ୍ୟୋଧନର ଅଙ୍କଲକ୍ଷ୍ମୀ ହୋଇ ଥାଆନ୍ତା । ଶେଷରେ ବ୍ରାହ୍ମଣବେଶୀ ଭୀମ ଅର୍ଜୁନ ଯୋଡ଼ାକ ଯେଉଁ ବିକ୍ରମ ଦେଖାଇଲେ ଲକ୍ଷରାଜାଙ୍କୁ ପରାଜୟ କରି ଦ୍ରୌପଦୀଙ୍କୁ ନେଇଗଲେ······ଏକା କର୍ଣ୍ଣଥିଲେ କ'ଣ ତାହା ହୋଇ ପାରି ଥାଆନ୍ତା ? ତେହିଁକି ବାସୁଦେବ ରହିଲେ ଆଡ଼ଲୁଚି ଦେଇ । ଦ୍ରୋଣ କଲେ ପ୍ରିୟଶିଷ୍ୟଙ୍କୁ ଉପରୋଧ । ଭାବିଲେ କ'ଣ ହେବ ହେ, ଭାବିଲେ କ'ଣ ହେବ ? ସବୁ ଭାଗ୍ୟ ଦୋଷ—ସବୁ ଭାଗ୍ୟ ଦୋଷ । ଏକା କର୍ଣ୍ଣଙ୍କ ଲାଗି ଏତକ ହେଲା ।

**ଦୁର୍ଯ୍ୟୋଧନ**—ଅଭିମାନୀ ମିତ୍ରେ ମୋର,
ଅପମାନ ଦେଲା କୃଷ୍ଣା ସୂତପୁତ୍ର ବୋଲି ;
ଭଲେ ଯାର ପଞ୍ଚପତି ସେବା
ସେ କାହୁଁ ଜାଣିବ ହେ ପାତିବ୍ରତ୍ୟ ଧର୍ମ ?

**କର୍ଣ୍ଣ**— ରାଜେନ୍ଦ୍ର ମଣ୍ଡଳୀ ମଧ୍ୟେ କହିଲା ନିର୍ଲ୍ଲଜା,
ସୂତପୁତ୍ରେ ନ ବରିବ ମୁହିଁ ;
ସାମାନ୍ୟା ରମଣୀ;
ଅଟେମାନ ମଣି
ସଟରାଟେଷ ଆସିଲି ଛାଡ଼ି ସ୍ୱୟମ୍ବର ସଭା ।
ନୋହିଲେ ସୁତୀକ୍ଷ୍ଣ ଶରେ ମୀନ ଚକ୍ର ଭେଦି
ଆଣି ଥାନ୍ତି ହେଲେ ଜିଣି ଦ୍ରୁପଦ ନନ୍ଦିନୀ,
ଆଣିଲି ଯେସନେ ଜିଣି ରାଣୀ ଭାନୁମତୀ ;
ହୋଇଥାନ୍ତା ଆଜି ବାଳା
ଦୁର୍ଯ୍ୟୋଧନ ଅଙ୍କ ବିଳାସିନୀ ।
ପାଣ୍ଡବେ ପ୍ରସନ୍ନ ବିଧି ।
ଲକ୍ଷେ ରାଜା ଜିଣିଗଲା ଭିକାରି ଅର୍ଜୁନ
ଲଭି କୃଷ୍ଣ ସହାୟତା ।
ହାୟ, ହାୟ, ହରାଇଲି ଅପୂର୍ବ ସୁଯୋଗ
ଯୁଝିବାର ସବ୍ୟସାଚୀ ସନେ ।

**ଦୁର୍ଯ୍ୟୋଧନ**—ମିତ୍ର ! ମିତ୍ର ! ଋଣ ତବ
ନ ପାରିବ ଶୁଝି ଦୁର୍ଯ୍ୟୋଧନ
ତୁମ୍ଭେ ଏକା ବାହୁ ବଳ ମୋର
ହୃଦୟେ ସାହସ ।

**କର୍ଣ୍ଣ**— ସ୍ଥିର ନାରୀ,
ରାଜସଭା ମଧ୍ୟେ
ଦେଲା ଅପମାନ ;
ପ୍ରତିଦାନ ତା'ର
ଦେବ ଦିନେ ରାଜସଭା ତଳେ
ଏହି ମୋର ପ୍ରତିଜ୍ଞା ଅଟଳ ।
( ଦୁଃଶାସନ ପ୍ରବେଶ ହେଲେ )

**ଦୁଃଶାସନ**—ମହାରାଜ, ଅପୂର୍ବ ସମ୍ବାଦ—
ପାଣ୍ଡୁପୁତ୍ରେ କରିଛନ୍ତି ଇନ୍ଦ୍ରପ୍ରସ୍ଥ ପୁରେ
ରାଜସୂୟ ଯଜ୍ଞ ଆୟୋଜନ ।
ପୃଥିବୀର ସର୍ବ ନରପତି
ଯୁଧିଷ୍ଠିର ପାଦତଳେ
ବଳେ ଆସି ଦାସ ପଣେ ଖଟିବେ ସକଳେ ।

**ଦୁର୍ଯ୍ୟୋଧନ**—ରାଜସୂୟ ଯଜ୍ଞ !
ଅଦ୍ଭୁତ ବାରତା,
ପ୍ରତ୍ୟୟ ନୁହଇ ମନେ ;
ଆସ ମିତ୍ର ବୁଝିବା ସମ୍ବାଦ ।
( କର୍ଣ୍ଣ, ଦୁଃଶାସନ ଓ ଦୁର୍ଯ୍ୟୋଧନ ପ୍ରସ୍ଥାନ କଲେ )

ଶକୁନି—ହୁଁ, ଏହି ଯଜ୍ଞର ହୋମ କୁଣ୍ଡରୁ କାଳାନଳ ଉଦ୍ଭବ ହେବ ।
ସେଥିରେ ଶକୁନି ବ୍ୟଜନ କରିବ—ଯେତେ ଇନ୍ଧନ ଯାଏ
କୁରୁବଂଶ ସମୂଳେ ଭସ୍ମୀଭୂତ ନ ହୁଏ । ଦୁର୍ଯ୍ୟୋଧନ,
ଦୁର୍ଯ୍ୟୋଧନ, ଶକୁନିର ବଂଶ ନାଶ କରି କାଳସର୍ପ ପୋଷିଛୁ ।
ଜାଣି ନାହୁଁ ଏହି କାଳ ସର୍ପହିଁ ତୋର ସର୍ବନାଶ କରିବ ।
( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ସ୍ଥାନ—ଇନ୍ଦ୍ରପ୍ରସ୍ଥ, କକ୍ଷ । ଯୁଧିଷ୍ଠିର ଚିନ୍ତାମଗ୍ନ, ଦ୍ରୌପଦୀ )

ଦ୍ରୌପଦୀ—କିପାଁ ନାଥ ଚିନ୍ତାନ୍ୱିତ ଏତେ ?
କିପାଁଇ ଯାଇଛି ଶୁଖି ଚନ୍ଦ୍ରମାବଦନ
ଚିର ପ୍ରଫୁଲ୍ଲିତ ?
ଯୁଧିଷ୍ଠିର—ଭୀମାର୍ଜୁନ ଦୁଇ ଭାଇ ସୁକୁମାର ତନୁ
ଯାଇଛନ୍ତି ଜରାସନ୍ଧ ପୁରେ ।
ବହୁଦିନ ଗତ,
ବିରଳ ଉଦନ୍ତ,
ସେହି ହେତୁ ଚିତ୍ତ ମୋର ହେଉଛି କାତର ।
ଦ୍ରୌପଦୀ—ସମ୍ପଦେ, ବିପଦେ ନାଥ,
କୃଷ୍ଣ ଏକା ପାଣ୍ଡବ ସହାୟ
ନାହିଁ ତ ଉପାୟ
କୃଷ୍ଣ ବିନା ପାଣ୍ଡବର ଆନ ।
ନାମ ମାତ୍ର ଧରି ଯାର
ଭବସିନ୍ଧୁ ତରିଯାଏ ନର,
ସେହି କୃଷ୍ଣ ଯାହାର ସଙ୍ଗତେ
ବିଜେ ସଶରୀରେ
କାହିଁ ତା'ର ଡର ?
ନୃପବର, ଚିନ୍ତା ପରିହର ।
ଯୁଧିଷ୍ଠିର—କୃଷ୍ଣଦ୍ୱେଷୀ ଜରାସନ୍ଧ ମହା ପରାକ୍ରାନ୍ତ
ଦୁର୍ଦ୍ଧର୍ଷ ନିତାନ୍ତ ;
ଅଷ୍ଟାଦଶ ବାର ଦେଲା ଧାଡ଼ ମଥୁରା କଟକେ ।
ନିଃସହାୟ ତିନି ଜଣ କୋମଳ ଶରୀର
ଶତ୍ରୁ ଭାବେ ଗଲେ ତାର ପୁରେ ।
ସେଥିପାଇଁ ପ୍ରାଣ ମୋର ହେଉଛି ଆକୁଳ ।
ଦ୍ରୌପଦୀ—ବିଶ୍ୱ ତରୀ ନିଜ ସଙ୍ଗେ ଯହିଁ
ତାହା ପାଇଁ
ଅକାରଣେ ନ ହୁଅ କାତର ;
ମାୟା ତା'ର ମାନବର ବୁଦ୍ଧି ଅଗୋଚର ।
( କୃଷ୍ଣ, ଭୀମ ଓ ଅର୍ଜୁନ ପ୍ରବିଷ୍ଟ ହେଲେ )
ଯୁଧିଷ୍ଠିର—ଆସିଛ, ଆସିଛ କୃଷ୍ଣ, କୁଶଳ ତ ସବୁ ?
ହୋଇଛି ତ କାମନା ସଫଳ ?
କୃଷ୍ଣ— ଯଥା ଧର୍ମ, ତଥା ଜୟ, ଶାସ୍ତ୍ରର ବଚନ
କଦାଚନ,
ନୁହେ ଅକାରଣ ।
ମହାବାହୁ ଭୀମସେନ ସନେ
ମଲ୍ଲ ରଣେ, ହତ ଜରାସନ୍ଧ ;
କାରାବଦ୍ଧ ଲକ୍ଷ ନରପତି
ଧର୍ମରାଜ ଆଜ୍ଞା ବଳେ ମୁକ୍ତ ସର୍ବେ ଏବେ ।
ଯୁଧିଷ୍ଠିର—ଯଦୁପତି,
ତୁହ୍ମି ଏକା ପାଣ୍ଡବର ଗତି ;
ତୁହ୍ମି ବୁଦ୍ଧି, ତୁହ୍ମି ଶକ୍ତି, ତୁହ୍ମି ଧ୍ୟାନ, ଜ୍ଞାନ ;
ତୋହରି ଇଙ୍ଗିତେ ନିର୍ବିଘ୍ନରେ ପଞ୍ଚ ଭାଇ
ପଶିପାରୁ ହେଲେ
ଅତଳ ଜଳଧି ଜଳେ, ଜ୍ୱଳନ୍ତ ଅନଳେ ।
କୃଷ୍ଣ— ଧର୍ମେ ଜୟ—ଅଧର୍ମରେ କ୍ଷୟ ;
ଧର୍ମ ପଥେ ନାହିଁ ବିଘ୍ନ ଭୟ ।
କର ଏବେ ଧର୍ମରାଜ, ଯଜ୍ଞ ଆୟୋଜନ ;
ଯାଆନ୍ତୁ ଅର୍ଜୁନ
ତ୍ରିଭୁବନ ଆମନ୍ତ୍ରଣେ ।
ସୁରାସୁର, ଯକ୍ଷ, ରକ୍ଷ, ଗନ୍ଧର୍ବ, କିନ୍ନର,
ନାଗ, ନର କିବା ବିଦ୍ୟାଧର,
ମହା ଯଜ୍ଞେ
ସର୍ବେ ହେବେ ଉପଗତ ।
ଅତିଥି ସେବାର ଭାର ନେବେ ଦୁର୍ଯ୍ୟୋଧନ
ମହାମାନୀ କୌରବ ପ୍ରଧାନ ;
ଅଙ୍ଗପତି ଦାତା କର୍ଣ୍ଣ ଭଣ୍ଡାର ରକ୍ଷକ ।
ଏହି ରୂପେ ସର୍ବ ନରପତି
ନାନା କର୍ମେ ରହିବେ ନିଯୁକ୍ତ ।
ଯୁଧିଷ୍ଠିର—ନିଜେ ଯଜ୍ଞେଶ୍ୱର ହରି
ବୈକୁଣ୍ଠ ବିହାରୀ
ଯଜ୍ଞ ଫଳ ଦାତା ;
ଯେଉଁ ଯଜ୍ଞେ ନିଜେ ଅଧିଷ୍ଠାତା

ପାଣ୍ଡବେ କି ହେତୁ ହେବେ ତା' ପାଇଁ ଭାବିତ ?
ସମର୍ପି ସକଳ କର୍ମ ତୋହରି ଚରଣେ
ନିଶ୍ଚିନ୍ତେ ରହିବୁ ଆମ୍ଭେ ମୂକସାକ୍ଷୀ ରୂପେ
ସ୍ୱହସ୍ତ ପୁତ୍ତଳିକାବତ ।

ଦ୍ରୌପଦୀ—ମାୟାମୟ ! କେ ବୁଝିବ ନାଥ ତୋର,
ତୋ ଲୀଳା ବୃହୁସ ?
ଦୂର ନାଶ
ଏକାନ୍ତ ଶରଣଗତା ରାଜୀବ ପଦ୍ମରେ ।

ଭୀମ— ପାଣ୍ଡବର ସଖା ତୁମ୍ଭେ ଜଗତ ଜୀବନ,
ତୁମ୍ଭେ ଗୁରୁ ପାଣ୍ଡବର ପ୍ରାଣ
ତୋହ ବଳେ ତ୍ରିଭୁବନେ ନିର୍ଭୟ ପାଣ୍ଡବ ।

## ତୃତୀୟ ଦୃଶ୍ୟ

( ସ୍ଥାନ—ଅଙ୍ଗରାଜ ଭବନ—ପଦ୍ମାବତୀ )

ପଦ୍ମା— ଆହା, ବୃଷକେତୁ ମୋର ନୟନ ପିତୁଳି
ଯେବେ କରେ ଅଳି
ଧାଇଁ ଆସି ମା' ମା' ବୋଲି,
ମନେ ହୁଏ, ତୁଚ୍ଛ କରି ସରଗ ସମ୍ପଦ
ଅଞ୍ଚଳରେ ବାନ୍ଧ ସେ ନିଧିଟି
ନାରୀ ଜନ୍ମ କରନ୍ତି ସାର୍ଥକ ।
ବିଶ୍ୱ ଯାକ, ସେହି ମା' ଡାକେ
ପଡ଼ନ୍ତା ଉଛୁଳି ।
ଶିଶୁର କୋମଳ ପ୍ରାଣେ
ନ ଜାଣେ ସଙ୍ଗାଳି ମୋର
ହରି ବିନା ଆନ ।
ମୁଖେ ସଦା ହରି ହରି ବୋଲେ
ହରି ଖେଳ ଖେଳେ
ଜ୍ଞାନେ ଧ୍ୟାନେ ସଦା ହରି ହରି ।

(ଗୀତ)

ବିହୁ ବିନ୍ଦଟି ମୋର ଲୁଚିଛୁ କାହିଁ ଗୋ ?
ଦୁଃଖିନୀ ହିନସିରି          ଅନ୍ଧନେତ୍ର ପସରି
ଆନ କେହି ତା ପରି ହିଶୁ ତ ନାହିଁ ଗୋ । ଘୋଷା ।

ମଟ୍ଟିରେ ହସି ହସି ଭାଷଇ ଧୀର ଧୀର
ଧୂଳି ଲୋଳିତ ତନୁ ହରଷ କେତେ ରୁଚିର
ଲାବଣ୍ୟ ରାଶି ରାଶି          କାନ୍ତିରେ ଉଠେ ଭାସି
ତୃପତ ଆଖି ତାର ତା'ମୁଖ ଚାହିଁ ଗୋ ।

(କର୍ଣ୍ଣ ପ୍ରବେଶ ହେଲେ)

ଏକାକୀ ଆସିଲ ନାଥ
କାହିଁ ବୃଷକେତୁ ?

କର୍ଣ୍ଣ— ହବା ନାଶି ହୃଦୟମୟ ପ୍ରାଣା !
ଖେଳୁଥିବ ବୃଷକେତୁ କାହିଁ ସଙ୍ଗୀମେଳେ !

ପଦ୍ମା— ଦଣ୍ଡେ ନ ଦେଖିଲେ ତା'ର କମଳ ଆନନ
ନ ଶୁଣିଲେ ମା—ମା—ଡାକ,
ଗୃହଆଡ଼ ଲାଗେ ଅନ୍ଧକାର ।
କେତେବେଳୁଁ ଆସି ନାହିଁ ପାଶେ,
ସଙ୍ଗାଳି ମୋହର
ମୃଦୁ ମୃଦୁ ଭାଷେ,
ଡାକ ନାହିଁ ମା   ମା—ବୋଲି ।

କର୍ଣ୍ଣ— ଶୁଣ ରାଣୀ, ଏ ସଂସାର ମାୟାର ଆଗର,
ପତି, ପୁତ୍ର, ରତ୍ନ ଧନ,
ରାଜ୍ୟ ସିଂହାସନ,
ମାୟାର ସୃଜନ,
କୁହୁକମୟୀ, ନାନା ପ୍ରଲୋଭନେ;
ହବା ରଚି ବଢ଼ାଏ ଆସକ୍ତି;
ନାହିଁ ମୁକ୍ତି,
ହସ୍ତ, ପଦ ବନ୍ଧା ନାଗ ପାଶେ ।
ରକ୍ତମାଂସ ମେଦେ ଗଢ଼ା ସୁନ୍ଦର ଶରୀର,
ନୁହେ, ନୁହେ ଚିର,
ପଦ୍ମ ପତ୍ରେ ବାରି ବିନ୍ଦୁ ପରି ।
ତ୍ୟାଗ, ତ୍ୟାଗ, ମାୟାର ବିଜୟ ମନ୍ତ୍ର
ଏକ ମାତ୍ର ଧର୍ମ ମହୀତଳେ,
ନିଃସ୍ୱାର୍ଥେ, ପରାର୍ଥେ ତ୍ୟାଗ ।
ଚିତ୍ତେ ସାଧ
ଅନାସକ୍ତ ସଂସାରର କର୍ମ
ପରହିତେ ଦେଇ ଆତ୍ମବଳ ।

ପଦ୍ମା— ପରଲାଗି ଆତ୍ମଦାନ,
ନାରୀର ଏ ଧର୍ମ ଚିରନ୍ତନ,
ପର ସେବା ପାଇଁ ନାଥ ! ନାରୀର ଜୀବନ ।
ପତିପଦେ ସମର୍ପି ଦେଇ ଜୀବନ, ଯୌବନ
ମାନ, ଅପମାନ
ନିଃଶେଷେ ନିର୍ଦ୍ଦ୍ୱନ୍ଦେ କରେ ଆତ୍ମ ବିସର୍ଜ୍ଜନ.
ଆପଣାର ବୋଲି ନାରୀ ନ ଜାଣଇ କିଛି ।

କର୍ଣ୍ଣ— ସତ୍ୟ ନାରୀ, ଧନ୍ୟା ନାରୀ,
ପୁରୁଷର ବୃଥା ଅହଙ୍କାର
ଆତ୍ମ ତ୍ୟାଗେ ନାରୀ ଏକା ପୁରୁଷର ଗୁରୁ,
ତ୍ୟାଗ ଧର୍ମ୍ମ,
ନାରୀର ସ୍ୱଭାବ ସିଦ୍ଧ ।
ଦେଖା ନାରୀ ଜଗତକୁ ତ୍ୟାଗର ଆଦର୍ଶ;
ଶିଖା ନାରୀ ପୁରୁଷକୁ ଆତ୍ମ ତ୍ୟାଗ ଧର୍ମ୍ମ,
ଚଖା ସେହି ଅମୃତ ଆସ୍ୱାଦ
ପରହିତେ, ଆତ୍ମଦାନେ ଅଛି ଯେଉଁ ସୁଧା ।
ଆତ୍ମ-ସୁଖାନ୍ୱେଷୀ ନର, ଚିର ଅହଙ୍କାରୀ
ସେ ଆନନ୍ଦେ ସର୍ବଦା ବଞ୍ଚିତ ।
(ପ୍ରତିହାରୀ ପ୍ରବିଷ୍ଟ ହେଲେ)

ପ୍ରତିହାରୀ—ମହାରାଜ,
ସ୍ଥବିର ବ୍ରାହ୍ମଣ ଏକ ଅସ୍ଥି ଚର୍ମ ସାର
ଉପସ୍ଥିତ ଦ୍ୱାରେ ।
ଅନାହାରେ କ୍ଳିଷ୍ଟ ଅତିଶୟ ।
ହେଉଛି ଅଧୟ୍ୟ,
ଶ୍ରୀ ସ୍ୱାମୁ ଦର୍ଶନ ଆଶେ ।

କର୍ଣ୍ଣ— ସସମ୍ମାନେ ଘେନି ଆସ ଭିତ୍ର ।
( ପ୍ରତିହାରୀ ପ୍ରସ୍ଥାନ କଲା )
ଏ କି ହେଲା ପ୍ରିୟତମେ !
ନିତ୍ୟଦାନ ହୋଇଲାଣି ଶେଷ,
ହେଲାଣି ଭଣ୍ଡାର ଶୂନ୍ୟ, ଶୂନ୍ୟ ରାଜକୋଷ ।
ଅସମୟେ ଆସିଛି ବ୍ରାହ୍ମଣ,
କେ—ଜାଣି—
( ଛଦ୍ମବେଶୀ ବିଷ୍ଣୁ ବ୍ରାହ୍ମଣ ବେଶରେ ଉପସ୍ଥିତ )

ବ୍ରାହ୍ମଣ—ଦାତା କର୍ଣ୍ଣ ନାମ ଶୁଣି
ରାଜଦ୍ୱାରେ ଆସିଛି ମୁଁ ବୁଭୁକ୍ଷୁ ବ୍ରାହ୍ମଣ,
ଏକାଦଶୀ ଉପବାସୀ, କଣ୍ଠାଗତ ପ୍ରାଣ;
ରାଜା, ରାଜା, କରାଅ ପାରଣ ।

କର୍ଣ୍ଣ— ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଷଡ୍‌ରସ ଅର୍ପିବି
ଯାହା ଇଚ୍ଛା ତବ,
କହ ଦ୍ୱିଜ, ଆଣି ଦେବି ତାହା ।

ବ୍ରାହ୍ମଣ—କ୍ଷୁଧା ଜ୍ୱାଳା ଅତି ଭୟଙ୍କର,
ଜ୍ୱଳଇ ଉଦର,
ଆଗେ କର ପଣ
ଯାହା ଇଚ୍ଛା ତାହା ଦେବ ଆଣି
ପରିତୃପ୍ତେ କରିବି ଭୋଜନ ।

କର୍ଣ୍ଣ— କର୍ଣ୍ଣର ଅଦେୟ ବୋଲି ନାହିଁ ଏ ଜଗତେ
କଲି ପଣ, କରିବି ପୂରଣ
ଆପଣା ଜୀବନ ଦାନେ, ବାସନା ତୁମ୍ଭର ;
ଦ୍ୱିଜବର ! କିବା ଅଭିଳାଷ ତବ ?

ବ୍ରାହ୍ମଣ—ବହୁ ଦିନୁଁ ଖାଇ ନାହିଁ ମାଂସ,
ମାଂସ ଆଶେ ଆତୁର ରସନା—

କର୍ଣ୍ଣ— କହ ଦ୍ୱିଜ, କେଉଁ ମାଂସେ ହେବ ପରିତୋଷ ।

ବ୍ରାହ୍ମଣ—ନର ମାଂସ, ଅନ୍ୟ ନାମ ମଧୁ ମାଂସ ଯାର ।
ସେହି ନର ମାଂସ ଲୋଭେ ସରସ ରସନା ।

କର୍ଣ୍ଣ— ଦେବି ମାଂସ ନିଜ ଅଙ୍ଗ ଛେଦି
ରାଜ ସୂପକାରଗଣ କରିବେ ରନ୍ଧନ ।

ବ୍ରାହ୍ମଣ—ତୁମ୍ଭର କର୍କଶ ମାଂସେ ନାହିଁ ରୁଚି ମୋର,
ବୀର ମାଂସ ଅତ୍ୟନ୍ତ କଠିନ ।
ରାଜଭୋଗେ ବଢ଼ିଥିବ ଯେହୁ
ଆଣି ଦିଅ ସେହି ଶିଶୁ ମାଂସ ;
କୋମଳ ଲବଣୀ ସମ ;
ଶିଶୁ ମାଂସେ ବଳିଛି ସରାଗ ।

କର୍ଣ୍ଣ— ପ୍ରିୟତମେ, ନ ଜାଣକି କର୍ଣ୍ଣର ପ୍ରତିଜ୍ଞା ?
କଲି ପଣ,
ଆପଣା ଜୀବନ ଦାନେ ତୋଷିବି ବ୍ରାହ୍ମଣ ।

ପଦ୍ମା— ଦିଅ ରାଜ୍ୟ, ଦିଅ ସିଂହାସନ,
ଶୂନ୍ୟ ହାତେ ହେବା ବନବାସୀ ।

ବ୍ରାହ୍ମଣ—କହ ରାଜା,
ଅସମର୍ଥ କିବା
ପାଳିବାକୁ ଆପଣାର ପଣ ?
ହାରୁଁ ତବ ଫେରିଯିବ ବୁଭୁକ୍ଷୁ ଅତିଥି ।

କର୍ଣ୍ଣ— ପାଳିବି ଆପଣା ପଣ, କରିଛି ପ୍ରତିଜ୍ଞା,
କହ ଦ୍ୱିଜ, କହ ଆଜ୍ଞା ତବ ।
ବ୍ରାହ୍ମଣ—ଦେଖିଲି ଖେଳୁଛି ଦାଣ୍ଡେ ରାଜ ଶିଶୁ ଏକ
କୋମଳ ଶରୀର,
ସ୍ମରି ସେହି ଶିଶୁ କଥା, ସ୍ରବୁଛି ରସନା ।
ପଦ୍ମା— ଧର, ଧର ପ୍ରିୟତମ—ଘୂରୁଛି ଅବନୀ ।
ବକ୍ଷ ଗଲା ଫାଟି ।
କର୍ଣ୍ଣ— ଧର ଧୈର୍ଯ୍ୟ ପ୍ରିୟତମେ, ନହୁଅ କାତର ;
ଖେଳ ଘର ନୁହେଁ ତ ସଂସାର ;
ସାଧନା ମନ୍ଦିର—ପରୀକ୍ଷା ଆଗାର ।
ପଦ୍ମା— ଭୀଷଣ ପରୀକ୍ଷା ଏ ଯେ—
ରକ୍ତ ମାଂସ ଗଢ଼ା ଦେହେ ନୁହେଁ ସହିବାର ।
ବ୍ରାହ୍ମଣ—ଦୁହେଁଯାକ ହେଉଛ କାତର,
ବ୍ରାହ୍ମଣର ନୁହେଁ ଗ୍ରାହ୍ୟ କାତରର ଦାନ ।
( ବୃଷକେତୁ ପ୍ରବିଷ୍ଟ ହେଲେ )
ବୃଷ— ମା'—ମା'—ପିତା, ପିତା —
ପଦ୍ମା— ମାତା ନୁହେ, ପିତା ନୁହେ—ରାକ୍ଷସ, ରାକ୍ଷସୀ ।
ଚାଲ, ପଳା ହତଭାଗ୍ୟ ଶିଶୁ
ଅଭାଗିନୀ ଜନନୀ ସନ୍ତାନ,
ଛାଡ଼ି ଏହି ପିଶାଚର ପୁରୀ ।
ବୃଷ— ଶୁଣିଛି ମୁଁ ଅନ୍ତରାଳେ ବ୍ରାହ୍ମଣ ପ୍ରାର୍ଥନା,
ପିତାଙ୍କର ପଣ,
ଏ ଶରୀର ନୁହେ ତ ମୋହର—
ପିଣ୍ଡେ ନାହିଁ ମୋର ଅଧିକାର ।
ଗୃଧ୍ର ଶୃଗାଳର ଖାଦ୍ୟ ଏହି ରକ୍ତ ମାଂସ ।
ବ୍ରାହ୍ମଣର ତୃପ୍ତି ହେବ କ୍ଷୁଧା,
ଏହାଠାରୁ ବଳି ଭାଗ୍ୟ କାହିଁ ଅଛି ମୋର ?
ଜନନୀ ଗୋ, ନ ହୁଅ କାତର,
ଦେହ ଦାନେ ହେବ ରକ୍ଷା ପିତୃପଣ ମୋର
ସାର୍ଥକ ଜନମ, ତେବେ ସାର୍ଥକ ଜୀବନ ।
ବ୍ରାହ୍ମଣ—ଏହି ଶିଶୁ—ଏହି ଶିଶୁ,
ଆହା କେଡ଼େ ସୁକୋମଳ,
ଝଳମଳ କି ହେଉ ?
କର୍ଣ୍ଣ— ଦେବୁ କ୍ଷଣକାଳ ଦ୍ୱିଜ, ନକର ସନ୍ଦେହ ;
କରିଛି ମୁଁ ବାକ୍ୟ ଦାନ ।

ବ୍ରାହ୍ମଣ—ଶୁଣ କର୍ଣ୍ଣ, ପାରଣ ନିୟମ—
ମାତା, ପିତା ଦୁହେଁ ମିଳି କରିବେ ଛେଦନ
ଅକାତରେ ପ୍ରଫୁଲ୍ଲ ବଦନେ ।
ନୋହିଲେ ମୁଁ ଯିବି ଫେରି,—ନାହିଁ ପ୍ରୟୋଜନ ।
ପଦ୍ମା— ଦ୍ୱିଜବର !
କୃପାକର, କୃପାକର ;
ଜନନୀ ମୁଁ ନୁହେଁ ତ ରାକ୍ଷସୀ !
ମାତୃ ପ୍ରାଣ ଏଡ଼େ ନିଷ୍ଠୁରତା
ସହିବ କେମନ୍ତେ ?
ବଢ଼ାଇଛି ବକ୍ଷ ଚିରି
ବିନ୍ଦୁ ବିନ୍ଦୁ ଯେଉଁ ରକ୍ତ କଣା
ସ୍ୱହସ୍ତେ କେମନ୍ତେ ତାହା —
( ରୋଦନ କଲେ )
ବ୍ରାହ୍ମଣ— କାତରତା ! ପୁଣି କାତରତା !
ବୁଝିଲି ଅକ୍ଷମ ତୁମ୍ଭେ ପ୍ରତିଜ୍ଞା ପାଳନେ ।
ଯିବ ଫେରି କ୍ଷୁଧାର୍ତ୍ତ ବ୍ରାହ୍ମଣ ।
( ପ୍ରସ୍ଥାନୋଦ୍ୟମ )
କର୍ଣ୍ଣ— ରହ ଦ୍ୱିଜ, କୃପା କରି କ୍ଷଣେ,
କକ୍ଷାନ୍ତରେ କରନ୍ତୁ ବିଶ୍ରାମ ।
ଭୁଲିଲ କି ପ୍ରିୟତମେ ଧର୍ମ ଆପଣାର,
ପତ୍ନୀର ଆଚାର ?
ଆସ ବତ୍ସ, ମୋ କୁଳ ଚନ୍ଦ୍ରମା;
ଆସ ଭାଗ୍ୟବତୀ;
( ଦକ୍ଷିଣ ହସ୍ତରେ ବୃଷକେତୁ ଓ ବାମ ହସ୍ତରେ ପଦ୍ମାର
ହସ୍ତ ଧାରଣ କରି ପ୍ରସ୍ଥାନ କରୁଁ କରୁଁ )
ଦୀନବନ୍ଧୁ, ଦିଅ ହୃଦେ ବଳ;
ରଖ ଧର୍ମ, ରଖ ମାନ, ହେ ମଧୁସୂଦନ ।
( ନିର୍ଗତ ହେଲେ )
ବ୍ରାହ୍ମଣ—ଶୀଘ୍ର, ଶୀଘ୍ର— ବଡ଼ କ୍ଷୁଧା ଜ୍ୱାଳା ।
( ଅନ୍ୟ ଦିଗରେ ନିର୍ଗତ ହେଲେ )
( ଜଣେ ଭୃତ୍ୟ ପ୍ରବିଷ୍ଟ ହେଲା )
୧ମ ଭୃତ୍ୟ—କଳିଯଠା, ଛାତିଏକୁ ଆସି ହ' କୋଡ଼ ଦଣ ହେଲା,
ଏ କଥା ବାବା କେବେ ଦେଖା ନ ଥିଲା । ମଣିଷ କୁଆଡ଼େ
ମଣିଷ ମାଉଁସ ଖାଇବ ! ରାମ ରାମ, ମଣିଷକୁ ଆସି ଚଣ୍ଡାଳ
ନ ଘୋଟିଲେ ଏ କଥା ମୁହଁରୁ ବାହାରିବ ନାହିଁ ! ଦାନ ଦବୁ
ତ ଦେ, ଧନ ଦେ, ଦୌଲତ ଦେ, ରାଜ୍ୟ ଦେ, ବାଡ଼ ଦେ,

ଲୁଗା ପଟା ଦେ, ଚୌକସ ଭୋଜନ ଦେ, ଆଉ କ'ଣ ନା, ଆସି ପହଞ୍ଚିଲା କ; କହିଲା "ଦକ୍ଷିଣା ତୋ ପୁଅକୁ କାଟି ତା ମାଉଁସ ।"

( ୨ୟ ଭୃତ୍ୟ ପ୍ରବେଶ ହେଲା )

୧ମ ଭୃତ୍ୟ—ଜାଣି ନାହୁଁ ପରା ? ସେମାନେ ଅନେକାନେକ ମାୟା ଜାଣନ୍ତି, ରକମ ରକମ ରୂପ ଧରି ପାରନ୍ତି । ଭୁବନ ବେଳରେ ପିଲାଟା ଉପରେ ଦୃଷ୍ଟି ପଡ଼ି ଯାଇଛି କେମିତି । ଗିଳିବାକୁ ତ ବାହାକ ଖଟିନାହିଁ । ସେଥିପାଇଁ ବ୍ରାହ୍ମଣ ବେଶ ଧରି ଦାନ ମାଗି ଆଇଛି ।

୨ୟ ଭୃତ୍ୟ—ମୁଁ କହେଁ, ଏଇଟା ବଡ଼ ବରମ ରାକ୍ଷସ ନା ଆପଣା ପିଣ୍ଡରୁ ଦଇଦା କରି ରାଜା ରାଣୀ ଯାହା କଲେ, ସିଏ ବଡ଼ ବରମ ରାକ୍ଷସ ?

୧ମ ଭୃତ୍ୟ—କ'ଣ କଲେ କ ରେ ?

୨ୟ ଭୃତ୍ୟ—ମା ବାପ ଦୁହେଁ ପିଲାଟାକୁ ଶୁଆଇ ଦେଇ ଦ' ପାଖରୁ ଚର୍ ଚର୍ କରି କାଟିଲେ; ସର ସର କରି ରକତ ଖସି ଗଲା । ଆଖିରୁ ଟୋପାଏ ହେଲେ ଲୁହ ଗଡ଼ିଲା !

୧ମ ଭୃତ୍ୟ—ଆଉ ସେ ପିଲାଟା ?

୨ୟ ଭୃତ୍ୟ—ସେଇଟା ହସି ହସିକା ବେକକୁ ପତାଇ ଦେଲା ମ ?

୧ମ ଭୃତ୍ୟ—ଆଁ—ସେ ବ୍ରାହ୍ମଣ ଯିମିତି କହିଲା, ମୁଁ ହୋଇ ଥିଲେ ଏକା ମୁଥାଏ ପକେଇ ଥାଆନ୍ତି ଯେ ତା ଭୋକ ଶୋଷ ଛଡ଼େଇ ଦେଇ ଥାଆନ୍ତି ।

୨ୟ ଭୃତ୍ୟ—ମୋ ପାଲରେ ପଡ଼ିଥିଲେ, ଯଉଁ ଜିଭରୁ ତାର ଲାଳ ଗଡ଼ୁଥିଲା ସେହି ଜିଭକୁ ଦା'ରେ କାଟି ଦ'ଖଣ୍ଡ କରି ଦଅନ୍ତି ।

୧ମ ଭୃତ୍ୟ—ହେଇଟି, ରଜା ରାଣୀ ଦୁହେଁଯାକ ଏ ଆଡ଼କୁ ଆସୁଛନ୍ତି ।

୨ୟ ଭୃତ୍ୟ—ପଳେଇ ଆରେ ପଳେଇ ଆ । ସେ ତ ରକତମୁଖା ହୋଇ ଆସୁଚନ୍ତି । କାଳେ ଯଦି କହନ୍ତି କ ଇହାର ତଣ୍ଟିରେ କରତ ଲଗେଇବ ବୋଲି । (ଉଭୟେ ପଳାୟନ କଲେ )

( ଥାଳରେ ବୃଷକେତୁର ଛିନ୍ନ ମସ୍ତକ ଧରି ପଦ୍ମାବତୀ ଓ ରକ୍ତାକ୍ତ କରତ ଧରି କର୍ଣ୍ଣ ପ୍ରବେଶ ହେଲେ )

କର୍ଣ୍ଣ— ପୁଣ୍ୟବତୀ, ଧର୍ମବଳେ ତବ,
ପତି ତୋର ସତ୍ୟ ମୁକ୍ତ ଏବେ ।

ପଦ୍ମା— ନାଥ ମୁଁ ତ, ନ ଜାଣଇ ଧର୍ମାଧର୍ମ ନୀତି;
ଜାଣିଛି ଏତିକ ପ୍ରଭୁ,
ପତି ଧର୍ମ, ପତି ସ୍ୱର୍ଗ,
ଚରମେ ପରମ ଗତି
ପତି ଏକା ଗୁରୁ ରମଣୀର ।

କର୍ଣ୍ଣ— ( ବ୍ୟସ୍ତ ହୋଇ ) ଆସ ପ୍ରିୟେ,
କ୍ଷୁଧାତୁର, ଅଧୈର୍ଯ୍ୟ ବ୍ରାହ୍ମଣ ।

( ସବେଗେ ପ୍ରସ୍ଥାନ )

( ଅପର ଦିଗରୁ ଦୁଇ ଜଣ ଭୃତ୍ୟ ପ୍ରବେଶ ହେଲେ )

୧ମ ଭୃତ୍ୟ—ମୁଁ କ'ଣ କହୁଛି କହିଲୁ—ଏଠୁଁ ପଳେଇ ଚାଲ, ଏଠୁଁ ପଳେଇ ଚାଲ । ଏଠି ଆଉ ଦଣ୍ଡେ ରହିବାର ନୁହେଁ, ଆପେ ବଞ୍ଚିଥିଲେ ବାପର ନାମ ।

୨ୟ ଭୃତ୍ୟ—ଠିକ୍ କଥା ! ଏମିତି ସ୍ଥାନରେ ପାଣି ପିଇବାର ନୁହେଁ, ପୁଣି ଯଦି ଆସେ କହିବ, ପୁଅକୁ ଖାଇବ ବୋଲି ! ଲଗିଲି ବାପା, ମୋ ବାପର ମୁଁ ଗୋଟିଏ ବୋଲି ପୁଅ ।

୧ମ ଭୃତ୍ୟ—ସେ ବ୍ରାହ୍ମଣ ପୁଣି ଅଇଲାଣି ।

୨ୟ ଭୃତ୍ୟ—ଆଇଲାରେ ବାବା । ( ପଳାୟନ )

( ବ୍ରାହ୍ମଣ ପ୍ରବେଶ ହେଲେ )

ବ୍ରାହ୍ମଣ—ଉଃ—
( ଉଚ୍ଚେ ) ହେଉଛି ବିଳମ୍ବ ରାଜା,
ପୋଡ଼ିଗଲା ପ୍ରାଣ ।
( ସ୍ୱଗତ ) ଶିଶୁର କୋମଳ ମାଂସ—
ଅତ୍ୟନ୍ତ ମଧୁର,
ଯେସନେ କ୍ଷୀର ସର
ପରିତୃପ୍ତ ହେବ ଆତ୍ମା ଆଜ ।
( ଉଚ୍ଚେ ) ରାଜା, ରାଜା, ହେଉଛି ବିଳମ୍ବ ।
ଜ୍ୱଳିଲା ଜଠର ।

( ପଦ୍ମାବତୀ ରନ୍ଧନ ପାତ୍ର ଘେନି ଓ ପଛେ ପଛେ କର୍ଣ୍ଣ ପ୍ରବେଶ ହେଲେ, ପଦ୍ମାବତୀ ପାତ୍ର ଥୋଇ ଆସନ ପାରି ଦେଲେ )

କର୍ଣ୍ଣ— ଦ୍ୱିଜବର,
ବସନ୍ତୁ ଆସନେ ।

ବ୍ରାହ୍ମଣ—ଖଣ୍ଡିଏ ଆସନ କିପାଁ ?
ପାତ ଚାରି ବଖରା ଆସନ,
ଚାରି ଜଣ କରିବେ ଆହାର ।

( ପଦ୍ମାବତୀଙ୍କର ତଥା କରଣ )

କର୍ଣ୍ଣ— ଆନ କିଏ ନର ମାଂସ କରିବ ଆହାର ?

ବ୍ରାହ୍ମଣ—ଜନକ ଜନନୀ ଦୁହେଁ
ଅତିଥିର ସନେ,
କରିବେ ଭୋଜନ ।

କର୍ଣ୍ଣ— ଏ କ କଥା ଦ୍ୱିଜବର—କ୍ଷମାକର,
କେମନ୍ତେ ସନ୍ତାନ ମାଂସ କରିବୁଁ ଆହାର ?
ବ୍ରାହ୍ମଣ—ସନ୍ଦେହଗ୍ରସ୍ତ ହେଉଛି ମନ,
ହୋଇଥିବ ଅଖାଦ୍ୟ ବ୍ୟଞ୍ଜନ,
କିବା କାଳେ ହୋଇଥିବ ଗରଳ ମିଶ୍ରିତ ।
ପଦ୍ମା— ବ୍ରାହ୍ମଣ ସ୍ୱଭାବ ଏ କି ?
ଅଥବା ପିଶାଚ !
ସ୍ୱଭାବେ କାରୁଣ୍ୟ ପୂର୍ଣ୍ଣ ବ୍ରାହ୍ମଣର ହିଆ,
କାହିଁ ହେଲା ଏଡ଼େ ବଜ୍ରାଘାତ ?
ନୁହେଁ ଏ ବ୍ରାହ୍ମଣ ନାଥ
ଛଦ୍ମବେଶୀ ଅସ୍ତରର ଚର—
କ୍ଷୁଧା ନୁହେଁ ବୃଥା ଛଳ,
ହିଂସାନଳେ ଦହୁଛି ଅନ୍ତର
ପ୍ରତିଗ୍ରହ ବ୍ୟପଦେଶେ—
ଅଙ୍ଗ ବଂଶ ଧ୍ୱଂସେ ଏକା କରିଛି ମାନସ ।
କର୍ଣ୍ଣ— ପଦ୍ମା, ପଦ୍ମା—
ଅତିଥିର ଅପମାନ ନୁହେଁ ଇଷ୍ଟ ଧର୍ମ
ଚିତ୍ତ କର ସ୍ଥିର ।
ଦ୍ୱିଜବର, କ୍ଷମାକର,
ଅଜ୍ଞନା ରମଣୀ ଏକେ
ପୁତ୍ର ନାଶେ ବିକ୍ଷୁବ୍ଧ ଅନ୍ତର ।
କହ ଏବେ କାହାପାଇଁ ଚତୁର୍ଥ ଆସନ ।
ବ୍ରାହ୍ମଣ—ପୁତ୍ର ଏକ ଅଛଇ ତୁମ୍ଭର
ସ୍ନେହର ପିତୁଳ,
ପାଶୋରି କେମନ୍ତେ ତାଙ୍କୁ
ଏକାକୀ ଭୁଞ୍ଜିବ ଏହ୍ନ ମଧୁର ବ୍ୟଞ୍ଜନ ?
ପଦ୍ମାବତୀ—ହାୟ, ହାୟ, ନିଷ୍ଠୁର ବ୍ରାହ୍ମଣ,
ଏଡ଼େ ନିଦାରୁଣ !
ରକ୍ତ ମାଂସେ ନୁହେଁ କି ନିର୍ମିତ,
ହୃଦୟ ତୁମ୍ଭର,
ନୁହଁ ତୁମ୍ଭେ ଜଗତର ଜୀବ ?
ସାଗର ଶୁଖିବ
ମେରୁ ଟଳିବ,
ତେବେ ସୁଦ୍ଧା ପୁତ୍ର ନାହିଁ ଆଶା ।
ବ୍ରାହ୍ମଣ—ଉନ୍ମାଦିନୀ !
ଡାକ ଥରେ ଉଚ୍ଚ ସ୍ୱରେ,
ଆଦରେ ମଧୁର କଣ୍ଠେ,
ଜନନୀର ସ୍ନେହ ବୋଳା ଭାଷେ,
ବୃଷକେତୁ, ବୃଷକେତୁ ବୋଲି
କ୍ରୀଡ଼ାରତ, କ୍ଷୁଧାର୍ତ୍ତ ବାଳକ— ମାତା ଡାକ ଶୁଣି
ଆସିବ ଏକ୍ଷଣି ।
ପଦ୍ମାବତୀ—(ଉଚ୍ଚେ) ବୃଷକେତୁ, ବୃଷକେତୁ,
ବତ୍ସ ବୃଷକେତୁ ।
(ବୃଷକେତୁ ଧାଇଁ ଆସିଲେ ଓ ବ୍ରାହ୍ମଣ ଅନ୍ୟ ବାଗରେ
ଅନ୍ତର୍ଦ୍ଧାନ ହେଲେ)
ବୃଷକେତୁ – ମା—ମା—
କେତେବେଳୁ ଖାଇ ନାହିଁ କିଛି ।
ଲାଗିଲାଣି ଭୋକ ।
ପଦ୍ମା— (କୋଳରେ ଧରି) ବାପ, ବାପ,
ଜୀବନ ସମ୍ବଳ ମୋର,
ଶୂନ୍ୟ କୋଳେ ଆ' ବାପ ଫେରି ।
କର୍ଣ୍ଣ— ରାଣି, ଏକ ମାୟା ରାଣି ।
ଏକି କୁହେଳିକା
ବୁଦ୍ଧି ଭ୍ରଷ୍ଟ, ଜ୍ଞାନ ହତ,
ହେଲିଣି ସ୍ତମ୍ଭିତ—
ପଦ୍ମା— ବାପ, ବାପ,
କାହିଁଥିଲୁ ଏତେ ବେଳ ଯାକେ ?
ବୃଷକେତୁ—ଥିଲି ମା କହ୍ନାଇ ପାଶେ,
ଦୁହେଁ ମିଳି ଖେଳୁଥିଲୁଁ ଖେଳ ।
ପଦ୍ମା— କହ୍ନାଇ, କହ୍ନାଇ ?
କିଏ ସେ କହ୍ନାଇ ।
ବୃଷକେତୁ—ଚିକ୍କଣ କାଳିଆ କାନ୍ତ ବାଳକଟି ସେହି,
ଅପରୂପ ନବଘନ ରୂପ;
ଆସେ ନିତ୍ୟ ନାଚି ନାଚି ମୁରଲୀ ବଜାଇ,
ପୀତାମ୍ବର ଉଡ଼ାଇ ଉଡ଼ାଇ
ଦୋହଲଇ ବନମାଳା ଗଳେ,
ଖୋଷି ଶିରେ ମୟୂର ଚନ୍ଦ୍ରିକା;
ଗୋରଚନା ଟୀକା,
ଚନ୍ଦନ ଚିତ୍ତିକା,
ଶୋଭୁଥାଏ ସୁଚୁ ଭାଲପଟେ,
ମିଳି ନିତ୍ୟେ ତାରିମାଳ ସଙ୍ଗ ।

କର୍ଣ୍ଣ— ଭାଗ୍ୟବାନ,
ଭୁଜ୍ କରେ କର୍ଣ୍ଣର ନନ୍ଦନ,
ପୁଣ୍ୟବତୀ ଜନନୀ ତୋହର,
କେତେ ପୁଣ୍ୟ କରି
କୋଳେ ଧରି ତୋ'ପରି ସନ୍ତାନ,
ନାରୀ ଜନ୍ମ କରିଛି ସାର୍ଥକ ।
ଅଧମ ମୁଁ ଏଡ଼େ ଭାଗ୍ୟହୀନ ।
(ବୃଷକେତୁର ମୁଖ ଚୁମ୍ବନ କଲେ)
(ହଠାତ୍ ଚମକି)
ପ୍ରିୟେ, ପ୍ରିୟେ, କାହିଁଗଲେ ଅତିଥି ବ୍ରାହ୍ମଣ ?

ପଦ୍ମା— (ଚାରି ଆଡ଼େ ଦେଖି)
ସତେ ନାଥ, ଦ୍ୱିଜବର ଗଲେ କାହିଁ !

କର୍ଣ୍ଣ— ହାୟ, ହାୟ, ମାୟା, ମାୟା,
ପୁଣି ମାୟା କରିଲା ଆଚ୍ଛନ୍ନ,
ହେଲି ମତି ଛନ୍ନ
କରେ ପାଇ ଅମୂଲ୍ୟ ସମ୍ପଦ,
ମାୟା ମୋହେ ମିଳି ଦେଲି ତାକୁ ।
ଚକ୍ଷୁ ଥାଇ, ଅନ୍ଧ ହୋଇ ନ ପାରିଲି ଚିହ୍ନି
ହାୟ ବିଧି,
ମହାମୂଲ୍ୟ ନିଧି
ଧରୁଁ ଧରୁଁ ହରାଇଲି ହେଳେ ।

ପଦ୍ମା— ହାୟ, ହାୟ, ଅଭାଗିନୀ,
ଏତେ ଛଳ ନ ପାରିଲି ଜାଣି,
ଦୁଇ କରେ ଧରି ସେହି ଚରଣ ଦଓଟି,
ଶ୍ରୀପଦ ଯୁଗଳ ଥୋଇ ବକ୍ଷୋପରେ—

ବୃଷକେତୁ— (ଗୀତ)

କେ ଧରିବ ତାକୁ ସେ ତ ଅଧରା ମୂରତି ଧରେ
ନାନା ରୂପେ ନାନା ଭାବେ ଥାଏ ଅନ୍ତର ଭିତରେ ॥

ଅନ୍ତର ତିମିର ହରି,
ପୂର୍ଣ୍ଣଚନ୍ଦ୍ର ରୂପ ଧରି
ପ୍ରେମାଲୋକେ ଚିତ୍ତ ଭରି,
ଥାଏ ଦ୍ୟୁଲୋକେ ଭୂଲୋକେ, ଥାଏ ଅନ୍ଧାରି ଆଲୋକେ,
ପଲକେ ପଲକେ ଉଠେ ଝଲକି ନେହ ପଥରେ ।

ଅଛି, ଅଛି, ପୁଣି ନାହିଁ, ଗୁହାଁଲେ ଯାଏ ଉଭାଇ,
ତାକୁ ସେ ଦିଅଇ ଧରା, ଯେ ତାକୁ ଖୋଜେ ଅନ୍ତରେ ।
( ପ୍ରେମ ଭାବେ ଖୋଜିଲେ ଥରେ )
( ଆପେ ଆପେ ଦିଅଇ ଧରା )
( କରଇ ତାକୁ କଣ୍ଠ ହାର )
( ରହି ନ ପାରେ ଜଗତ ସାର )
( ପୀରତିଆ ପ୍ରୀତି ପସରା )

## ଚତୁର୍ଥ ଦୃଶ୍ୟ

( ସ୍ଥାନ—ହସ୍ତିନା । ଶକୁନି ଓ ଦୁର୍ଯ୍ୟୋଧନ ପ୍ରବିଷ୍ଟ ହେଲେ )

ଶକୁନି—କିଛି ଚିନ୍ତା ନାହିଁ ଦୁର୍ଯ୍ୟୋଧନ, ଏହି ତିନି ଖଣ୍ଡି କାଠିରେ ଇନ୍ଦ୍ରପ୍ରସ୍ଥର ଇନ୍ଦ୍ର ସମ୍ପଦ ରସାତଳକୁ ଗୁଲିଯିବ ।
କିଛି ଚିନ୍ତା ନାହିଁ ।

ଦୁର୍ଯ୍ୟୋଧନ—ମୋହରି ନୟନ ଆଗେ,
ଜାରଜ ପାଣ୍ଡବେ କଲେ ରାଜସୂୟ ଯଜ୍ଞ ।
ଲକ୍ଷେ ରାଜା କଲେ ପାଦ ପୂଜା
କୌରବ ମହୁଡ଼ମଣି ରାଜା ଦୁର୍ଯ୍ୟୋଧନ,
ଆପଣା ଦୁର୍ବୁଦ୍ଧି ବଶେ
ଆପେ ଆପେ ବରିଲି ଦାସତ୍ୱ ।

ଶକୁନି—ବୁଝିଲ ନାହିଁ କି ଦୁର୍ଯୋଧନ, ଶତ୍ରୁକୁ ବଢ଼ାଇ ଦେଇ ପରେ ସମୂଳ ବିନାଶ କରିବାକୁ ହୁଏ । ନୋହିଲେ, ଆମେ ମନ କରିଥିଲେ ତ ରାଜସୂୟ ଯଜ୍ଞ ଭାଙ୍ଗି ଦେଇ ପାରି ଥାଆନ୍ତେ ।

ଦୁର୍ଯ୍ୟୋଧନ—ମାତୁଳ, ସ୍ଫଟିକ ସ୍ତମ୍ଭେ ଗଲା ମୁଣ୍ଡ ପିଟି
ମାୟା ସରୋବର ନୀରେ ପଡ଼ିଲି କଗୃଡ଼
ହସିଲେ ସରବେ
ହସିଲା ଦ୍ରୌପଦୀ ସନେ ପବନ ନନ୍ଦନ
ବିଦ୍ରୂପର ହସ ।
ଦୁର୍ଯ୍ୟୋଧନ ଭାଲେ ଥିଲା ଏହି କି ଲାଞ୍ଛନା !

ଶକୁନି—ଏହି କଥା ତ ? ଆଚ୍ଛା ବେଶ୍ । କୁରୁସଭା ମଧ୍ୟରେ ସେହି ଦ୍ରୌପଦୀ ଯେତେବେଳେ ଲଙ୍ଗଳା ହୋଇ ନାଚିବ ଆଉ ପବନ ନନ୍ଦନ ମୁଣ୍ଡ ତଳକୁ ପୋତି ବସିଥିବ, ତୁମେ ସେତେବେଳେ ବତିଶ ଦାନ୍ତ ଦେଖାଇ ଠୋ—ଠୋ କରି ହସିବ ।

ଦୁର୍ଯ୍ୟୋଧନ—ପାଣ୍ଡବ ରାଜସୂ ବାନା ଉଡ଼ିଲା ଚୌଦିଗେ;
ଯୁଧିଷ୍ଠିର ପଦେ,
ବନ୍ଦୁଥିବା ଲେଟାଇଲି ଶିର;
ପାଣ୍ଡବର କୀର୍ତ୍ତି ଗନ୍ଧ ଧରି,
ରାଜସୂୟ ଯଜ୍ଞ ଧୂମ ଦିଗନ୍ତେ ସଞ୍ଚରି
ପ୍ରସାରିଲା ପାଣ୍ଡବ ଗୌରବ ।
ଅସହ୍ୟ, ଅସହ୍ୟ ଅତି ଅରାତି ବୈଭବ,
ହେ ମାତୁଳ, କର ପ୍ରତିକାର,
ଈର୍ଷାନଳେ ଦହୁଛି ଅନ୍ତର ।

ଶକୁନି—ଶକୁନିର କଥାରେ ପରା ପ୍ରତ୍ୟୟ ହେଉ ନାହିଁ, ଆଚ୍ଛା ହେଉ, ଆଉ ଘଡ଼ିକେ ବଳେ ଦେଖିବ । ଯୁଧିଷ୍ଠିର ପଶା ଖେଳର ଆମନ୍ତ୍ରଣ ଯେତେବେଳେ ଗ୍ରହଣ କରିଛି, ଖେଳ ତ ନିଶ୍ଚୟ ହେବ । ହେଲେ ଦେଖିବ ଏ କାଠିର ଗୁଣ, ମୋର ଏ ସିଦ୍ଧି କାଠି, ଯାହା ଡାକିବ ତାହା ପଡ଼ିବ—ଗୋଟି ଗୋଟି କରି ସବୁ ଜିତି ନେବ । ଦ୍ରୌପଦୀ ସଙ୍ଗେ ପାଞ୍ଚ ଭାଇଙ୍କୁ ସାତ ବେଣିଆ କରି ଛାଡ଼ିବ । ତେବେ ଯାଇ ଚିହ୍ନିବ ଶକୁନିକୁ । ଖାଲି କଥାରେ କହିଲେ କ'ଣ ହେବ ?

ଦୁର୍ଯ୍ୟୋଧନ—ଦ୍ୟୂତ କ୍ରୀଡ଼ା ଅଦୃଷ୍ଟ ପରୀକ୍ଷା,
ଫଳାଫଳ ବିଧାତାର ହାତେ ।

ଶକୁନି—ହେଇ, ଏତିକି ଅପ୍ରତ୍ୟୟ ତ ଗଲା ନାହିଁ । ଏ କାଠି ହାତରେ ଥିଲେ ଦ୍ୟୂତକ୍ରୀଡ଼ାର ବିଧାତା ନିଜେ ଶକୁନି, ଆଉ ଅଦୃଷ୍ଟ ? ଅଦୃଷ୍ଟଟା ଶକୁନିକୁ ସବୁ ପରିଷ୍କାର ଦୃଷ୍ଟ । କେବଳ ଜାଣିଲ ନା ଦୁର୍ଯ୍ୟୋଧନ, ମୋର ଗୋଟାଏ କଥାକୁ ଡର । କିଏ କି ସେହି କୃଷ୍ଣ ଟା, — ଯଦି ଆସି ପହଞ୍ଚି ଯାଏ ! ତାକୁ ଏକା ମୋର ବଳ ନାହିଁ । ଶକୁନି ତ ଶକୁନି, ଶକୁନିର ବାବାକୁ ସେ ସାତଥର ପାଣି ପିଆଇ ଛାଡ଼ିବ । ଭାରି ଧଡ଼ିବାଜ୍, ପିସାଦିଆ, ସେ ଯଦି ଆସି ପହଞ୍ଚି ଯାଏ, ତେବେ ସବୁ ଫାନ୍ଦ ଫିକର ଫସର ଫାଟ ।
( ଜଣେ ପ୍ରତିହାରୀ ପ୍ରବିଷ୍ଟ ହେଲେ )

ପ୍ରତିହାରୀ—ମହାରାଜ, ପଞ୍ଚ ପାଣ୍ଡବମାନେ ସଭାରେ ବିଜେ କଲେଣି ।
ସମସ୍ତେ ଆପଣଙ୍କୁ ରହିଁ ବସିଛନ୍ତି ।

ଶକୁନି—ଖାଲି ପାଣ୍ଡବ ପାଞ୍ଚ ଭାଇ,
ନା, ଆଉ କେହି ସାଙ୍ଗରେ ଅଛନ୍ତି ?

ପ୍ରତିହାରୀ—ଆଜ୍ଞା ଆଉ କେହି ନାହାନ୍ତି ।

ଶକୁନି—ଯାଅ କହିଦିଅ ଆମେ ଯାଉଛୁଁ ।

ଦୁର୍ଯ୍ୟୋଧନ—ଯଜ୍ଞ ସାରି
ଗଲେ କୃଷ୍ଣ ଦ୍ୱାରକାକୁ ଫେରି
ଏ କଥା ନିଶ୍ଚୟ
ନାହିଁ କୃଷ୍ଣଭୟ ତବ ।

ଶକୁନି—ହଁ, ଚାଲ ( ଯାଉଁ ଯାଉଁ ପଛରୁ )
ଦୁର୍ଯ୍ୟୋଧନ, ଦୁର୍ଯ୍ୟୋଧନ ଆଉ ଗୋଟିଏ କଥା—କହି ଦେଉଛି ବାବା; ଧୃତରାଷ୍ଟ୍ର ଯେତେ ଯାହା କହିବେ, ଖବରଦାର୍; ଦମ୍ଭ ଧରି ବସିଥିବ — ବିଚଳିତ ହେବ ନାହିଁ ।

ଦୁର୍ଯ୍ୟୋଧନ—ଦୁର୍ଯ୍ୟୋଧନ ନୁହେ ବୁଦ୍ଧି ହୀନ ।

ଶକୁନି—ଶେଷକୁ ଦେବଙ୍କର ସବୁ ରାଗ ମୋହରି ଉପରେ ପଡ଼ିବ । ଶେଷ ବେଳକୁ ସମସ୍ତେ ମିଳି ମିଶି ଯାଇ ମୋହରି ମୁଣ୍ଡରେ ସବୁଯାକ ଗଡ଼େଇ ଦେବ ନାହିଁ ଟି !

ଦୁର୍ଯ୍ୟୋଧନ—ଭାବନ୍ତି କି ଦୁର୍ଯ୍ୟୋଧନ ଏଡ଼େ ଅବିଶ୍ୱାସୀ,
ଚଞ୍ଚଳ ସ୍ୱଭାବ ?

ଶକୁନି—ହୁଁ ହୁଁ ସେହି କଥା—ପରା—ସେହି କଥା,
( ଦୁର୍ଯ୍ୟୋଧନ ପ୍ରସ୍ଥାନ କଲେ )

ଯେଉଁ ବିଷ ବୃକ୍ଷ ରୋପଣ କରିଥିଲି, ଆଜି ତାହାର ଅଙ୍କୁର ଉଦ୍‌ଗମ ହେବ । ପିତା, ମାତା, ସ୍ୱର୍ଗରେ ଥାଇ ତୁମ୍ଭର ତୃଷିତ ଆତ୍ମା ରହିଁ ରହିଥିବ, କେଉଁ ଦିନ କୁରୁବଂଶ ରକ୍ତରେ ତୁମ୍ଭର ତର୍ପଣ କରିବ । ଏହି ପଶାକାଠି ତୁମ୍ଭର ଅସ୍ଥିରେ ନିର୍ମାଣ କରି ପ୍ରତିହିଂସା ମନ୍ତ୍ରରେ ମନ୍ତ୍ରପୂତ କରିଛି ।
( ପ୍ରସ୍ଥାନ )

## ପଞ୍ଚମ ଦୃଶ୍ୟ

( ସ୍ଥାନ— କୌରବ ରାଜସଭା—ଧୃତରାଷ୍ଟ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ଏବଂ ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଆସୀନ । ଋଷୀଗଣ ଦଣ୍ଡାୟମାନ )

ଭୀଷ୍ମ— ଅକ୍ଷକ୍ରୀଡ଼ା ଆମନ୍ତ୍ରଣେ ଆସିଛ ପାଣ୍ଡବେ,
ଜାଣିଛ ତ ଅକ୍ଷକ୍ରୀଡ଼ା ଅର୍ଥ ?
ଘଟାଏ ଅନର୍ଥ;
ରାଜ୍ୟେଶ୍ୱରେ କରାଏ ଭିଖାରି ।
ବିଧାତାର ଭ୍ରୂକୁଟି କଟାକ୍ଷେ ।

ବିଦୁର—ଅକ୍ଷକ୍ରୀଡ଼ା ମାନବର ଘୃଣିତ ବ୍ୟସନ,
ବିବାଦର ଝଣି —
ଭାଇ ଭାଇ ସନେ କେବେ ନୁହଇ ଉଚିତ ।
ଯାଅ ଫେରି ଧର୍ମରାଜ;
ସାବଧାନ
ଜାଣି ଶୁଣି କୃଟ ଫାନ୍ଦେ ଦିଅ ନାହିଁ ଧରା ।

ଯୁଧିଷ୍ଠିର—ପିତାମହ, ଖୁଲ୍ଲତାତ,
ଜାଣିଛି ସମସ୍ତ ।
କିନ୍ତୁ ଶସ୍ତ୍ର ରଣେ; ଦ୍ୟୁତ ରଣେ ହୋଇଣ ଆହୂତ
କ୍ଷତ୍ରିୟ କି କେବେ
ସେ ଆହ୍ୱାନ କରେ ପ୍ରତ୍ୟାଖ୍ୟାନ ?
ଭୀରୁ କା ପୁରୁଷ ବୋଲି ବୋଲିବେ ସକଳେ ।

ଧୃତରାଷ୍ଟ୍ର—ଠିକ୍ ତ, ଠିକ ତ —
ଭାଇ ଭାଇ ଆପଣା ଆପଣା ମଧ୍ୟେ ଟିକିଏ ଆମୋଦ ପ୍ରମୋଦ କରିବେ — ସେଥିରେ କ୍ଷତି କ'ଣ ବିଦୁର ? ଏ ତ ଘର କଥା — ପିଲା ଖେଳରେ ଅନିଷ୍ଟ ବା ବିବାଦ କାହିଁକି ହେବ ।

( ଶକୁନି ଓ ଦୁର୍ଯ୍ୟୋଧନ ପ୍ରବିଷ୍ଟ ହେଲେ )

ଶକୁନି—ଓଃ, ଧର୍ମରାଜ, କେତେବେଳୁଁ ଆସିଲେଣି ।
ଆମ୍ଭେମାନେ ଟିକିଏ କାର୍ଯ୍ୟାନ୍ତରରେ ଥିଲୁଁ । ମନରେ କିଛି କଷ୍ଟ ହେବ ନାହିଁ ତ ?

ଯୁଧିଷ୍ଠିର—(ହସି ହସି ) ମାତୁଳ ।
କଷ୍ଟ କାହିଁ ଆପଣାର ଗୃହେ ।

ଦୁର୍ଯ୍ୟୋଧନ—ତେବେ ଆଉ ବିଳମ୍ବ କି ହେତୁ ?

ଶକୁନି—ନା—ବିଳମ୍ବରେ କେଉଁ କାର୍ଯ୍ୟ ।
ପ୍ରସ୍ତୁତ ମହାରାଜ ।

ଯୁଧିଷ୍ଠିର—ଇନ୍ଦ୍ରପ୍ରସ୍ଥ ତ୍ୟାଗ କାଳୁ ହୋଇଛୁ ପ୍ରସ୍ତୁତ ।

ଶକୁନି—ତେବେ ଆସ—
( ଦୁର୍ଯ୍ୟୋଧନ, ଶକୁନି, କର୍ଣ୍ଣ ଓ ଯୁଧିଷ୍ଠିର ପଶାଖେଳରେ ବସିଲେ )

ଶକୁନି—ପ୍ରଥମ ଥର ପଣ କ'ଣ, ଧର୍ମରାଜ ?

ଯୁଧିଷ୍ଠିର—ଇନ୍ଦ୍ରପ୍ରସ୍ଥ ପାଣ୍ଡବ ଭଣ୍ଡାରେ
ମଣି ମାଣିକାଦି ଯେତେ ଧନ,
ସବୁ କଲି ପଣ ।
( ଶକୁନି ପଶା ପକାଇଲେ )

ଶକୁନି—ଏହି ଦେଖ ସବୁ ନେଲି
ଏବେ ଆଉ କି ପଣ ରଖିବ ?

ଯୁଧିଷ୍ଠିର—ରଥ, ଗଜ, ଅଶ୍ୱ ଆଦି
ଯେତେ ଦାସ ଦାସୀ,
ଏଥର ରହିଲା ସ୍ଥିତ ।
( ଶକୁନି ପଶା ପକାଇଲେ )

ଶକୁନି—ପୁଣି ଜିଣିଲି—ଆଉ କି ପଣ ଧର୍ମରାଜ ?

ଯୁଧିଷ୍ଠିର—କଲି ପଣ, ଇନ୍ଦ୍ରପ୍ରସ୍ଥ ପୁର ସହ ପାଣ୍ଡବ ସାମ୍ରାଜ୍ୟ ।
( ଶକୁନି ଅକ୍ଷ ନିକ୍ଷେପ କଲେ )

ଶକୁନି—ସାବାସ, ସାବାସ—
ଏଥର ବି ଆମ୍ଭର ଜିତା—
ଆଉ ପଣ ରଖିବାର କି ଅଛି ?

ଭୀମ— କ୍ଷାନ୍ତ ହୁଅ, ମହାରାଜ,
କପଟର ଅବତାର ମାତୁଳ ଶକୁନି
ଖେଳୁଛନ୍ତି ମାୟା ଅକ୍ଷ ନେଇ
ଏ ଖେଳରେ ନାହିଁ ପ୍ରୟୋଜନ ।

ଦୁର୍ଯ୍ୟୋଧନ—ରାଜେଶ୍ୱର ଖେଳେ ଯିବା, ରାଜ୍ୟେଶ୍ୱର ସନେ,
ଶୋଭେ ରଣ, ସମାନେ ସମାନେ ।
ହେଲେଣି ପାଣ୍ଡବଗଣ ପଥର ଭିକାରୀ,
ନୁହଇ ଉଚିତ ଖେଳ ଭିଖାରୀର ସନେ ।

ଶକୁନି—ସେ କଥା ତ ଠିକ୍ ଦୁର୍ଯ୍ୟୋଧନ ।
ତେବେ ମହାରାଜ ! ନା, ନା, ତେବେ ଯୁଧିଷ୍ଠିର
ଏବକରେ ଥାଉ ।
କାରଣ ଖ୍ୟାତ, ଶଙ୍କିତ ବ୍ୟକ୍ତି—
ସହ ଅକ୍ଷ କ୍ରୀଡ଼ା ନିଷେଧ ।

ଯୁଧିଷ୍ଠିର—କ୍ଷତ୍ରକୁଳେ ଜନ୍ମ ହୋଇ ଯେହୁ
ରଣଭୂମେ ହୁଏ ପରାଙ୍ମୁଖ
ଧିକ୍ ତାର ଜୀବନ ଧାରଣ ।
କଲି ପଣ
ଭୀମ ଆଦି ଭ୍ରାତା ଚାରିଜଣ ।
( ଶକୁନି ଅକ୍ଷ ପକାଇଲେ )

ଶକୁନି—ହରିବୋଲ, ହରିବୋଲ,
ଦେଖ, ଦେଖ, ହାରିଗଲ ଯୁଧିଷ୍ଠିର—
ଚାରି ଭାଇ ଯାକ ଆମ୍ଭର କ୍ରୀତ ଦାସ ହେଲେ ।
ଆଉ ରହିଲା କ'ଣ ?

କର୍ଣ୍ଣ— ଆଜ ବାଜି ରହିଲା ଦ୍ରୌପଦୀ—
ଭୀଷ୍ମ— ଯୁଧିଷ୍ଠିର, ନ ଶୁଣିଲ ବୃଦ୍ଧ ଉପଦେଶ,
ହେଲ ଶେଷ,
ସକଳ ସମ୍ପଦ ଶେଷ ।
କାହିଁ ସେ ବିବେକ ପଣ,
କାହିଁ ଧର୍ମ ଜ୍ଞାନ,
କୂଟ ଜାଲେ ଗଲ ସବୁ ନାଶ ।
ରଖ, ମାନ ରଖ,
କୁରୁ କୁଳେ ନ ଦିଅ କଳଙ୍କ ।
ଯୁଧିଷ୍ଠିର— ପିତାମହ, କେ କରିବ ଆନ
ନିୟତିର ଅକାଟ୍ୟ ଲିଖନ ।
କେ ଲଙ୍ଘିବ ବିଧାତାର ଦୁର୍ଲଙ୍ଘ୍ୟ ନିୟମ ।
ଧର ଅକ୍ଷ କାଟି
ଦ୍ରୌପଦୀ ରହିଲା ପଣ— ।
( ଶକୁନି ଅକ୍ଷ ନିକ୍ଷେପ କଲେ )
ଶକୁନି— ହୋଇଛି, ହୋଇଛି—
ଦ୍ରୌପଦୀ ଏଥର ଦୁର୍ଯ୍ୟୋଧନର ।
କର୍ଣ୍ଣ— ଆଜ୍ଞା କର ମିତ୍ର—
ସଭାସ୍ଥଳେ ଆଣ ଦ୍ରୌପଦୀ ।
ଦୁଃଶାସନ— ଯେ ଆଜ୍ଞା ମହାରାଜ !
( ଦୁଃଶାସନ ପ୍ରସ୍ଥାନ )
ବିଦୁର— ଦୁର୍ଯ୍ୟୋଧନ,
ମତି ଛନ୍ନ ହୋଇଲାଣି ତୋର ;
ନୁହନ୍ତି କି ପାଣ୍ଡୁ ପୁତ୍ରେ, କୁରୁ କୁଳେ ଜାତ ?
ଭରତ ବଂଶର ରକ୍ତ,
ନାହିଁ କିରେ ଶରୀରେ ତାଙ୍କର ?
ସୋମ କୁଳେ ଜନ୍ମ ହୋଇ—
କେମନ୍ତେ କହିଲୁ ବାଣୀ
ପିଶାଚର କଳ୍ପନା ଅତୀତ ।
ଦୁର୍ଯ୍ୟୋଧନ— ଦାସୀ ପୁତ୍ର, ଭିକ୍ଷା ଉପଜୀବୀ
ରାଜ ସଭା ମଧ୍ୟେ ତାକୁ କେ ଦେଲା ଆସନ,
ହୀନ ମୁଖେ ଏଡ଼େ କଥା
ଅତି ଦୁଃସାହସ ।
ବିଦୁର— ଭିକ୍ଷାଜୀବୀ ଅଟଇ ବିଦୁର,
ନାହିଁ ଅଧିକାର,
ବସିବାକୁ କୁରୁ ସଭାତଳେ ।
ଆଜଠାରୁ ଏହି ପାପ ସ୍ଥାନେ
ଯହିଁ ନାହିଁ ନାରୀର ମର୍ଯ୍ୟାଦା,
ଗୁରୁ ଲଭେ ବାଧା,
ବିଦୁରର ନ ପଡ଼ିବ ପାଦ ।
କିନ୍ତୁ ଦୁର୍ଯ୍ୟୋଧନ,
ରଖ ମନେ, ଭିକ୍ଷାରୀ ବଚନ ।
ଜାଣିଥିଲି ସ୍ୱପ୍ନ ଅନ୍ଧ ମୁଖେ
ସମର୍ପିଛୁ କର,
ଭୀମ ଅଛୁ ନିଦ୍ରିତ କେଶରୀ,
ପରିଣାମ ତାର
ଫଳିବ ଅବଶ୍ୟ ଦିନେ ।
( ସବେଗେ ପ୍ରସ୍ଥାନ )
ଧୃତରାଷ୍ଟ୍ର— ଏବେ ଥାଉରେ ଦୁର୍ଯ୍ୟୋଧନ,
ଏବେ ଥାଉ, ଛେଡ଼୍ ହେଲାଣି । ଦ୍ରୌପଦୀ ଯେ
କୁଳନାରୀ, ତୋର ଭ୍ରାତୃବଧୂ ।
ଶକୁନି— ଦୁର୍ଯ୍ୟୋଧନ, ଯାହା କହିଥିଲି ମନେ ଅଛି ତ ।
ଖୁବ୍ ସାବଧାନ, ଦମ୍ଭ ଧର । ବୃଦ୍ଧଜନର ଉପଦେଶ
ସର୍ବଦା ଗ୍ରାହ୍ୟ ନୁହେ ।
ଧୃତ— ନୁହେ କିରେ ଦୁର୍ଯ୍ୟୋଧନ,
ଯାଜ୍ଞସେନୀ ପାଣ୍ଡବ ଗୃହିଣୀ,
ଶରୀରିଣୀ ଲକ୍ଷ୍ମୀ ସ୍ୱରୂପିଣୀ,
କୌରବର କୁଳବଧୂ,
ପରମା ପ୍ରକୃତି ନାରୀ,
ନୁହେ କିରେ ଶକ୍ତି ଅଂଶରୂପା ?
ନାରୀର ମର୍ଯ୍ୟାଦା ରକ୍ଷା
ନୁହେଁ କିରେ କ୍ଷାତ୍ରୋଚିତ ଧର୍ମ ?
ମିତ୍ର ବୋଲି ମଣିଛୁ ଯାହାଙ୍କୁ,
ମିତ୍ର ନୁହେଁ ପରମ ବଇରି ।
ଗୁଡ଼୍ ଗୁଡ଼୍, ଦୁଷ୍ଟବୁଦ୍ଧି,
ଦୁର୍ଯ୍ୟୋଧନ,
ବୃଦ୍ଧ କଥା ଘେନ, ନୁହନ୍ତି ପାଣ୍ଡବେ ଶତ୍ରୁ ।
ଗୃହବାଦେ ଘଟେ ପରମାଦ,
ପାଣ୍ଡବ କୌରବ ମିଳି— ଉପୁଜାଅ ମହାଶକ୍ତି,
ତ୍ରିଭୁବନ ବିଜୟିନୀ ଶକ୍ତି ମହୀୟସୀ ।
ନୋହିଲେ ଆପଣା ବିଷେ ହୋଇ ଜର୍ଜ୍ଜରିତ,
ସୃଜିବ ସଂଘର୍ଷ ।

କାଳାନଳେ ଭସ୍ମୀଭୂତ ହେବ ଆପେ ଆପେ ।
କୌରବ ଗୌରବ ରବି
ହେବ ଚିର୍ ଅସ୍ତମିତ ।
ଭାରତର ଅନିବାର୍ଯ୍ୟ ଭୀଷଣ ପତନ ।

ଦ୍ରୋଣ—ହିଂସାନଳ ଜାତ ହୋଇ ମାନବ ଅନ୍ତରେ
ଶତ୍ରୁର ଦହନ ଆଗେ ଦହେ ଆପଣାକୁ ।
ଦୁର୍ଯ୍ୟୋଧନ, ଧର୍ମାଗ୍ନିରେ ଦେଇ ଜଳାଞ୍ଜଳି
ଲଙ୍ଘି ଏବେ ମାତୃଶିକ୍ଷା, ଲଙ୍ଘି ଗୁରୁଜନ,
ଅମଳ ଚନ୍ଦ୍ରମା କୁଳେ ନ ଲଗା କଳଙ୍କ ।

ଧୃତରାଷ୍ଟ୍ର—ଦୁର୍ଯ୍ୟୋଧନ, ଦୁର୍ଯ୍ୟୋଧନ କେହି ମୋ କଥା ମାନିଲ ନାହିଁ । ଅକ୍ଷମ, ଅକର୍ମଣ୍ୟ ହେଲେ ଆପଣାର ପୁତ୍ର ସୁଦ୍ଧା ପିତାଙ୍କୁ ଅବଜ୍ଞା କରେ । ଧିକ୍, ଧିକ୍, କିଏ ଅଛରେ ମୋତେ ଏଠାରୁ ନେଇ ଯାଅ—ଭାଗ୍ୟେ ଚକ୍ଷୁ ନାହିଁ, କିନ୍ତୁ କାନକୁ ତ ଶୁଭିବ !

ଶକୁନି—ଏ ସବୁ ଅବାନ୍ତର । ମୂଲ୍ୟହୀନ କଥାରେ କ'ଣ ଅଛି, ଆସ ଯୁଧିଷ୍ଠିର—ଆଉ କଣ ରହିଲା ?

କର୍ଣ୍ଣ—ସ୍ୱୟଂ—

ଶକୁନି—ଏଁ ସ୍ୱୟଂ ? ସ୍ୱୟଂ ମହାରାଜ ରାଜଚକ୍ରବର୍ତ୍ତୀ ଯୁଧିଷ୍ଠିର ! ତାହା କପରି ହେବ କର୍ଣ୍ଣ ? ଆପଣାର ଶରୀରଠାରୁ ସଂସାରରେ ଆଉ କ'ଣ ଅଛି ? ପତ୍ନୀ ବୋଲ, ଭାଇ ବୋଲ, ଏ ସବୁ ହେଲେ ପର ! ତାହା ବୋଲି ଆପଣା ଜୀବନ ଉପରେ କାହାର ମାୟା ନାହିଁ କହିଲ ?

ଯୁଧିଷ୍ଠିର—ଯୁଧିଷ୍ଠିର ନୁହେଁ ସ୍ୱାର୍ଥପର,
ଚାରି ଭାଇ ମୋର
ପ୍ରାଣରୁ ଅଧିକ,
ପାଞ୍ଚଭାଇ ଏକ ପ୍ରାଣ ଭିନ୍ନ ଭିନ୍ନ ଅଙ୍ଗ ।
ଆପଣା ଶରୀର ପଣ ରଖିଲି ଏଥର ।

ଶକୁନି—ବେଶ୍ ବେଶ୍, ଏହି ତାହାହେଲେ ଶେଷ ଦାନ ।
( ପଶାକାଠି ପକାଇଲେ )
ଏହିଥର ଶେଷ ବାଜି ଚୂଡ଼ାନ୍ତ ହୋଇଗଲା ।
ଦୁର୍ଯ୍ୟୋଧନ କର୍ମ ବଡ଼ ତେଜ । ରାଜସୂୟ ଯଜ୍ଞକାରୀ
ଯୁଧିଷ୍ଠିର ଆଜି ଦୁର୍ଯ୍ୟୋଧନର ଦାସ ।

ଦୁର୍ଯ୍ୟୋଧନ—ଦାସ ଯୋଗ୍ୟ ନୁହେଁ ରାଜାସନ ।
ଦାସ ଗଣ,
ବସ ସର୍ବେ ଯଥା ଯୋଗ୍ୟ ସ୍ଥାନେ ।

ଯୁଧିଷ୍ଠିର—ଯାହା ଇଚ୍ଛା କର ଦୁର୍ଯ୍ୟୋଧନ,
ପାଣ୍ଡୁ ପୁତ୍ରେ ଆଜ୍ଞାଧୀନ ତବ ।

ଶକୁନି—ଆସ କନିଷ୍ଠ ପାଣ୍ଡବ ଏହି ସ୍ଥାନରେ ବସ ।
( ସହଦେବଙ୍କ ହାତ ଧରି ଭୂମିରେ ବସାଇଲେ )
ଆସ ମାଦ୍ରୀ ନନ୍ଦନ ( ନକୁଳଙ୍କୁ ବସାଇଲେ )
ଆସ ମଧ୍ୟମ ପାଣ୍ଡବ ( ଅର୍ଜ୍ଜୁନଙ୍କୁ ବସାଇଲେ )
ଆସ ଭୀମସେନ ( ଭୀମଙ୍କୁ ବସାଇଲେ ଓ ଯୁଧିଷ୍ଠିରଙ୍କ ପାଖକୁ ଗଲେ )

ଭୀମ—ସାବଧାନ ବର୍ବର ଶକୁନି,
କର ନାହିଁ ଶ୍ରୀ ଅଙ୍ଗ ପରଶ ।

ଦୁର୍ଯ୍ୟୋଧନ—କି ଭୟ ମାତୁଳ,
ଦାସ ଭୟେ ହେଉଛ ଶଙ୍କିତ ?

ଭୀମ—ଏତେ କାଳ ସହିଅଛି, ଅଗ୍ରଜ ବଦନ ଚାହିଁ ।
ଏ ଘୋର ଲାଞ୍ଛନା,
କିନ୍ତୁ ହେଲାଣି ଅସହ୍ୟ ଅତି ;
ଯାଉ ଧର୍ମ,
ହେଉ ପଛେ ଅଗ୍ରଜ ଅବଜ୍ଞା
ଧର୍ମରାଜେ ଅପମାନ ନ ପାରିବ ସହି ।

ଅର୍ଜ୍ଜୁନ—ଭାଇ, ଭାଇ
ନାହିଁ ଧର୍ମରାଜ ଆଜ୍ଞା,
ଅଗ୍ରଜଙ୍କ ଅନୁଗତ ସର୍ବେ,
ନୋହିଲେ ଦେଖନ୍ତ ଚାହିଁ
କୁରୁକୁଳ କାଳାନ୍ତକ ଗାଣ୍ଡୀବ ଆକର୍ଷି
ଏକ ଶରେ ଭସ୍ମ ସାତ କରନ୍ତି ହସ୍ତିନା ।

ଯୁଧିଷ୍ଠିର—କ୍ଷାନ୍ତ ହୁଅ, ଭୀମସେନ,
ସତ୍ୟବଦ୍ଧ ମୁହିଁ ।

ଶକୁନି—( କରଯୋଡ଼ି ) ଧର୍ମରାଜ,
ଆସିବାକୁ ଆଜ୍ଞା ହେଉ, ( ଯୁଧିଷ୍ଠିର ଭୂମିରେ ବସିଲେ )
( ନେପଥ୍ୟେ ଦ୍ରୌପଦୀ ) ଛାଡ଼ ଛାଡ଼ ଦୁଃଶାସନ,
ରଖ ମାନ,
କୌରବର କୁଳବଧୂ ମୁହିଁ ।
( ଦୁଃଶାସନ ଦ୍ରୌପଦୀଙ୍କର କେଶାକର୍ଷଣ କରୁ କରୁ ପ୍ରବେଶ ହେଲେ)

ଦ୍ରୌପଦୀ—ଏହି କି ସେ କୁରୁକୁଳ ରୀତି ?
ଗୁରୁଜନ ଗଣ ଆଗେ
ଏକବସ୍ତ୍ରା, ରଜସ୍ୱଳା ନାରୀ
ବଳେ ଧରି, ବିନା ଦୋଷେ ଆଣୁଛ ଅବଳା !

ଦୁର୍ଯ୍ୟୋଧନ—କେଉଁ କୁଳ ଅଛି ତାର ?
କାହିଁ ଲଜ୍ଜା ଭୟ
ଯେଉଁ ନାରୀ ବରେ ପଞ୍ଚପତି ?
ଲଜ୍ଜାବତି;
ନାହିଁ କ୍ଷତି ସଭାସ୍ଥଳରେ ତବ,
ଷଷ୍ଠ ପତି କରିଲେ ବରଣ ।
ଦେଖ ବୃଦ୍ଧ ଚନ୍ଦ୍ରାନନେ,
ଏହି ଊରୁ ବିଶାଳ ସୁନ୍ଦର (
ରମଣୀର-ଚିତ୍ତ-ମନୋହର ;
ଆସ ଆସ ବସ ଏହି ଜାନୁ ସିଂହାସନେ ।—
( ଜାନୁ ଦେଖାଇଲେ )
ଭୀମ—ଆରେ ଦୁଷ୍ଟ କୁରୁ କୁଳାଙ୍ଗାର,
ଅଗ୍ରଜର ଅନୁଗତ ଭୀମ,
ନୁହଇ ସ୍ୱତନ୍ତ୍ର,
ନୋହିଲେ ଏକ୍ଷଣି ତୋତେ
ଦେଇଆନ୍ତା ଶିକ୍ଷା ସମୁଚିତ ।
ଦୁର୍ଯ୍ୟୋଧନ, ରଖିରେ ସ୍ମରଣ,
ହେଲେ କାଳ ଉପନୀତ
ସେହି ଊରୁ ତୋର
ଭଙ୍ଗାଇବ ଗଦାଘାତେ ଖଣ୍ଡ ଖଣ୍ଡ କରି ।
ଦୁର୍ଯ୍ୟୋଧନ—ନୀଚ ଦାସ ବୃଥା ଆସ୍ଫାଳନେ
ଦୁର୍ଯ୍ୟୋଧନ ନୁହଇ ଶଙ୍କିତ ।
ଦୁଃଶାସନ,
କୁଳଟାରେ କର ବିବସନା —
ସହଜନେ ଦେଖନ୍ତୁ ସେ ଉଲଗ୍ନ ମୂରତି
ଚମତ୍ତି ସେବକାର ।
ଦ୍ରୌପଦୀ—ଧର୍ମ କି ଗଲାଣି ଛାଡ଼ି ଅବନୀ ମଣ୍ଡଳ ?
ଚନ୍ଦ୍ର ସୂର୍ଯ୍ୟ ପଡ଼ିଲେଣି ଖସି !
[illegible] !
କୃପ, ଦ୍ରୋଣ,
କେମନ୍ତେ ରହିଛ ସ୍ଥିର
କରୁଛି ଦୁରାତ୍ମା ଅବଳା ପୀଡ଼ନ !
ନାହିଁ କି ପୁରୁଷ କେହି କୁରୁସଭା ତଳେ
ଯେ ରକ୍ଷିବ ଲଜ୍ଜା ରମଣୀର ?
ଭୀଷ୍ମ—ଜର୍ଜ୍ଜରୀଭୂତ ବୃଦ୍ଧର ରସନା
ଅନ୍ଧ ଦୁ' ନୟନ ;
ପାଷାଣ ହେଲାଣି ମାତଃ, ଭୀଷ୍ମର ହୃଦୟ ।
ଜନନୀ ଗୋ,
ମହାସତୀ ତୁହି
ସତୀର ମର୍ଯ୍ୟାଦା ଲଙ୍ଘେ ଯେଉଁ ଦୁରାତ୍ମାର,
ନ କହିବ, କାଳ ପୃଷ୍ଠି ତାର ।—
( ଅଧୋବଦନରେ ରହିଲେ )
ଦ୍ରୋଣ—ବ୍ରହ୍ମ ଅଭିଶାପୁ ବଳି ସତୀର ନିଶ୍ୱାସେ
ନ କରେ ଯେ ଭୟ ଦୁରାଶୟ
ତା ଲାଗି ରଖିଛି ମାତଃ, ଅନନ୍ତ ନରକ
କରି ଘୋର ବଦନ ବ୍ୟାଦାନ ।
ଧୃତରାଷ୍ଟ୍ର—ଓଃ ହୋଃ ହୋଃ—ଦୁର୍ଯ୍ୟୋଧନ—ଏ କାଳରେ ଶେଷେ
କ'ଣ ଓଃ, ମୋତେ ଏଠାରୁ ନେଇ ଯାଅ ରେ ।
ଦ୍ରୌପଦୀ—ଧର୍ମରାଜ, ଏ କି ଧର୍ମ ତବ ?
କ୍ଲୀବ ଯେଉଁ ନର,
ସେ ସୁଦ୍ଧା ଆପଣା ନାରୀ ନ କରେ ବନ୍ଧକ ।
ଭୀମସେନ, ହେଲଣି ନିର୍ଜ୍ଜୀବ,
ଧିକ୍ ତବ ବାହୁ ବଳେ, ଧିକ୍-ଶତ ଧିକ୍,
ଯେଉଁ ବ୍ୟକ୍ତି ନିଜ ବ୍ୟକ୍ତି ରକ୍ଷଣେ ଅକ୍ଷମ
କେଉଁ ମୁଖେ କରେ ସେ ବିବାହ ?
କେଉଁ ମୁଖେ ଆପଣାକୁ ବୋଲଇ ପୁରୁଷ ?
ସବ୍ୟସାଚୀ, ଭୁଲିଲକି ଲଜ୍ଜା ମାନ ସବୁ ?
ଭୀମ— (ଗଦା ଉତ୍ତୋଳନ କରି)
ରହ, ରହରେ ପାଷଣ୍ଡ,
ଆଜି ଭୀମ ଧର୍ମଦ୍ରୋହୀ,
ଭ୍ରାତୃ ଦ୍ରୋହୀ ଭୀମ ।
ଯୁଧିଷ୍ଠିର—(ନିବାରଣ କରି)
ଶାନ୍ତ ହୁଅ ଭାଇ ମୋର;
ସତ୍ୟବଦ୍ଧ ପଞ୍ଚଭ୍ରାତା ଯାକ ।
ହୋଇନାହିଁ କାଳ ପୂର୍ଣ୍ଣ
ପୂରି ନାହିଁ ବିଧାତାର ଲିପି ।
ଭୀମ— ହେଉ ରକ୍ଷା ଆଦେଶ ତୁମ୍ଭର;
କିନ୍ତୁ ରେ କୌରବାଧମ,
ଏ ପାପର ପ୍ରାୟଶ୍ଚିତ୍ତ ହେବ ସେହି ଦିନ,
ଯେଉଁଦିନ ବକ୍ଷ ଚିରି ତୋର
କରିବ ରୁଧିର ପାନ
ରଣକ୍ଷେତ୍ରେ, ମେଣ୍ଟାଇ ପିପାସା,

ମୁକ୍ତ ବେଣୀ ଦ୍ରୌପଦୀର କରିବ ବନ୍ଧନ
ସେହି ଦିନ,
ଏହି ପଣ ନ ପାରିଲେ ରଖି
ଚିତାନଳେ ତ୍ୟଜିବ ଜୀବନ ।

ଦ୍ରୌପଦୀ—ଥାଉଁ ଥାଉଁ ଏତେ କ୍ଷତ୍ରଗଣ
ଅବଳାର କାତର କ୍ରନ୍ଦନ
ନ ଭେଦିଲା କାହାର ଶ୍ରବଣେ ।
ବସୁମତୀ ପାଷାଣ ଜନନୀ,
ନାରୀ ଦୁଃଖେ ଗଲା ନାହିଁ ଫାଟି ।
ଖ୍ୟାତ ତୁମ୍ଭେ ଅଙ୍ଗ ପତି
ବୀର୍ ବିଜୟୀ ମହାରଥୀ ବୋଲି,
ଧର୍ମ୍ମେ ସଦା ମତି;
କେମନ୍ତେ ରହିଛ ରହିଁ
ଜାତ ହୋଇ ସତୀର ଲାଞ୍ଛନା ?
କରୁଛି ବିନତି
କର ବାରେ ରମଣୀର ଲଜ୍ଜା ନିବାରଣ ।

କର୍ଣ୍ଣ— ନୁହେ ତ ମୁଁ ଅଙ୍ଗପତି,
ସୂତପୁତ୍ର
କର୍ଣ୍ଣ ନାମ ମୋର ।
ପତିଗଣ ତବ କ୍ଷତ୍ରକୁଳୋଦ୍ଭବ
ଜଣେ ଜଣେ ମହା ମହା ରଥୀ ।
ହେ ସତୀ, ନାହିଁକି ମନେ
ସ୍ୱୟମ୍ବର ସଭାସ୍ଥଳେ
ଲକ୍ଷ୍ୟ ଭେଦ କାଳେ
କହିଲୁ ଉଦାସି,
ସୂତପୁତ୍ରେ ନ ବରିବ ମୁହିଁ;
ଲକ୍ଷ ରାଜା ଅଗ୍ରେ ଦେଲୁ ଅପମାନ,
ଦେନ କୃଷ୍ଣା ତା'ର ପ୍ରତିଦାନ ।

ଅର୍ଜ୍ଜୁନ—ଆରେ ଆରେ ବର୍ବର ଦୁର୍ମତି,
ନୀଚକୁଳେ ଜାତ ହୋଇ
ଏତେ ନୀଚ ମତି ?
ଆର୍ତ୍ତେ ଅବଳା ନାରୀ ମାଗୁଛି ଶରଣ,
ସେ କାଳେ ତୁ କଲୁ ଉପହାସ !
ପଶୁ ତୁହି ପଶୁରୁ ଅଧମ,
କଲି ପଣ,
ରଣ କ୍ଷେତ୍ରେ ପଶୁତୁଲ୍ୟ ସଂହାରିବ ତୋତେ ।

କର୍ଣ୍ଣ— ଆରେ ମୂର୍ଖ ଦାସାଧମ,
ଭାବିଛୁ କି ମନେ
ଡରିବ ଭାର୍ଗବ ଶିଷ୍ୟ—
ସିଂହ ହୋଇ—ଜମ୍ବୁକ ହୁଙ୍କାରେ ?
ମାତ୍ରେ ହସ, ବୀରବର
ହୀନ ମକ୍ଷୀ-ଲତା କରେ ଦଂଶନ ପ୍ରୟାସ ।

ଦୁର୍ଯ୍ୟୋଧନ—ଦୁଃଶାସନ,
ହେଉ ତ୍ରସ୍ତ କୁକୁର ଚିତ୍କାରେ ?
ଦାସ ପତିଗଣ ଆଗେ
ଲଜ୍ଜାହୀନା କୁଳଟାରେ କର ବିବସନା ।
(ଦୁଃଶାସନ ବସ୍ତ୍ର ଛଡ଼ାଇବାକୁ ଅଗ୍ରସର ହେଲେ)

ଦ୍ରୌପଦୀ—ତ୍ରିଜଗତେ ଅବଳାର
କେହି ନାହିଁ ସାହା ଦୀନବନ୍ଧୁ !
ଏ ବିପଦେ କେହି ନାହିଁ ଜଣେ
ରଖିବାକୁ ନାରୀର ସମ୍ମାନ,
ପ୍ରଭୁ, ପ୍ରଭୁ, ଜଗନ୍ନାଥ, ଜଗତ ଜୀବନ,
କାହିଁ ଅଛ ହରି,
ନ ଦେଖୁଛ ଦୁଃଖ ଦୁଃଖିନୀର ?
ହେଲଣି ବଧୀର !
ନ ଶୁଣୁଛ ଆରତ ରୋଦନ !
କଲି ସମର୍ପଣ
ଦେହ, ମନ, କୁଳ, ମାନ ତୋହର ଚରଣେ ।
ସଖା ହେ, ନାଥ ହେ, କୃଷ୍ଣ,
ପଦ୍ମପତି ଅଗତିର ଗତି,
ଯାହା ଇଚ୍ଛା କର ତାହା —

( ଦ୍ରୌପଦୀ ଦୁଇ କର ଉତ୍ତୋଳନ କରି ପ୍ରାର୍ଥନା କରିବାକୁ ଆରମ୍ଭ କଲେ । ଦୁଃଶାସନ ଯେତେ ବସ୍ତ୍ର ଓଟାରିଲେ ମଧ୍ୟ ସେତେ ବସ୍ତ୍ର ବାହାରିଲା । ସେତେବେଳେ ଆକାଶରେ ଉଜ୍ଜ୍ୱଳ ଶ୍ରୀକୃଷ୍ଣ ମୂର୍ତ୍ତି ଆବିର୍ଭୂତ ହୋଇ ବସ୍ତ୍ର ଦାନ କରିବାକୁ ଲାଗିଲେ । )

ଯବନିକା

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( କକ୍ଷାଭ୍ୟନ୍ତର—ଶ୍ରୀକୃଷ୍ଣ ଓ କର୍ଣ୍ଣ ଉପବିଷ୍ଟ )

ଶ୍ରୀକୃଷ୍ଣ—ବୀରବର,
ଦୌତ୍ୟ ମୋର ହୋଇଲା ବିଫଳ,
ନ ଶୁଣିଲେ ଦୁର୍ଯ୍ୟୋଧନ ସନ୍ଧିର ପ୍ରସ୍ତାବ ।
ଦୃଢ଼ ବାକ୍ୟ କହିଲେ ମୋ ଆଗେ
ବିନା ଯୁଦ୍ଧେ ଦେବେ ନାହିଁ ସୂଚ୍ୟଗ୍ର ମେଦିନୀ ।

କର୍ଣ୍ଣ— ଶୁଣିଛି ମୁଁ ସବୁକଥା,
ଜଣା ମୋତେ ଦୁର୍ଯ୍ୟୋଧନ ପଣ ।

କୃଷ୍ଣ— ନୁହନ୍ତି ସହାୟ ହୀନ ପାଣ୍ଡୁପୁତ୍ରଗଣ,
କେଶରୀ ସମାନ
ଜଣେ ଜଣେ ମହା ବୀର୍ଯ୍ୟବାନ ।
ନିଶ୍ଚେ ବାଧିବ ରଣ ;
ତୁମୁଳ ସଂଗ୍ରାମ
ଭାଇ ଭାଇ ସନେ,
ଏହି ରଣେ
ସମଗ୍ର କ୍ଷତ୍ରିୟ ଜାତି
ଯେବେ ପକ୍ଷେ ହେବେ ନିୟୋଜିତ ।
ବହିବ ଶୋଣିତ ନଦୀ,
କୋଟି କୋଟି ଶବ
ସନ୍ତରିବେ ମୀନ ରୂପେ ତହିଁ ।
ମହା ଲୋକକ୍ଷୟ
ଘୋଟିବ ପ୍ରଳୟ !
ରଣ ଅବସାନେ କର୍ଣ୍ଣ,
ବୀର ଶୂନ୍ୟା ହୋଇବ ଧରଣୀ ।
ଲୁପ୍ତ ହେବ ଭୂମଣ୍ଡଳୁ ଆର୍ଯ୍ୟର ଗୌରବ
ଲବମାତ୍ରେ, ଯୁଗ ଯୁଗ ସାଧନାର ଫଳ ।

କର୍ଣ୍ଣ— ହେ କେଶବ !
ନୁହେଁ ରଣ ବିନାଶର ହେତୁ ;
ଅନ୍ତରେ ନବ ଗଠନର ।
ଶାନ୍ତି ନାମେ ଯାହା ଅଭିହିତ
ଅନ୍ୟ ନାମ ଜଡ଼ତା ତାହାର ।
ଜଡ଼ତାରେ ନାହିଁ ବୃଦ୍ଧି,
ନାହିଁ ସୃଷ୍ଟି, ନାହିଁ ଆବିଷ୍କାର ;
ନାହିଁ ନୂତନତା,
ଚିର ପୁରାତନ ।
ଆପଣାର ଆବର୍ଜନା ସ୍ତୂପେ
ପୋତି ହୋଇ ହୁଅଇ ବିଲୀନ
ପ୍ରାଣହୀନ ଜଡ଼ ପିଣ୍ଡ ରୂପେ ।
ବିଗ୍ରହରେ ଆସଇ ସମୃଦ୍ଧି,
ଆସେ ବୃଦ୍ଧି; ଆସେ ମୌଳିକତା ।
ବୃଦ୍ଧି ବୃତ୍ତି ହୋଇ ସମାର୍ଜିତ
ଆଣେ ଶକ୍ତି, ଆଣଇ ଜୀବନ ;
ମହା ଧ୍ୱଂସ ପୁଞ୍ଜ ଭେଦି ଅପୂର୍ବ ବିକାଶ
ମାନବର ସୁପ୍ତ ମାନବତ୍ୱେ ।

କୃଷ୍ଣ— କିନ୍ତୁ ଜାଣିଛ କି ବୀରବର,
ମୁମୂର୍ଷୁର କାତର ଚିତ୍କାର,
ହାହାକାର ଜନନୀର,
ଶିଶୁ ଆର୍ତ୍ତନାଦ ପୁଣି
ବିଧବାର ତପ୍ତ ଅଶ୍ରୁଧାର,
ବର୍ଷିବ କାହାର ଶିରେ ?
କାହାଲାଗି ସ୍ୱର୍ଣ୍ଣପ୍ରସୂ ଏହି ଜନ୍ମଭୂମି
ପବିତ୍ର ଭାରତ କ୍ଷେତ୍ର
ପରିଣତ ହୋଇବ ଶ୍ମଶାନେ,
ଶ୍ୱାନ, ଗୃଧ୍ର, ଶୃଗାଳର ବିଳାସ ବେଦିକା ?
ନୁହେ କି—ନୁହେକି କର୍ଣ୍ଣ
ଏକା ଏହି ଅଭିଶାପ ଭାଗୀ ?
କର୍ଣ୍ଣ ଏକା ଏହି ମହା ସଂହାରର ହେତୁ ?
କର୍ଣ୍ଣ ହିଁ କୌରବ ପକ୍ଷେ ପ୍ରଧାନ ଭରସା,
କର୍ଣ୍ଣଧାର ରଣ ପାରାବାରେ ;
କର୍ଣ୍ଣ ବଳେ ବଳୀ ଦୁର୍ଯ୍ୟୋଧନ
କରେ ଦମ୍ଭ ବିବାଦ କାରଣେ
ପ୍ରତାପୀ ପାଣ୍ଡବ ସନେ ।
କର୍ଣ୍ଣର ଇଙ୍ଗିତ ମାତ୍ରେ
ହୋଇ ପାରେ କ୍ଷଣେ ନିବାରିତ
ଏହି ରଣ ମହାକାଳରୂପୀ ।

କର୍ଣ୍ଣ— ଯଦୁପତି, ସତ୍ୟ ଏ ଭାରତୀ,
କିନ୍ତୁ, ଅନ୍ୟ ପାଣ୍ଡୁସୁତ ପ୍ରତି
ନାହିଁ ମୋର ବୈରଭାବ କିଛି ;

ଏକା ସବ୍ୟସାଚୀ ସନେ
ଏହି ରଣେ, ଯୁଝିବାର ଘଟିବ ସୁଯୋଗ ।
ଜିଣିବା ଅର୍ଜୁନେ ଏକା ଦ୍ୱୈରଥ ସମରେ
ଏତିକ ମୋ ଏକାନ୍ତ ବାସନା ।
କୃଷ୍ଣ— ଶୁଣ ବୀର, ଶୁଣ ତେବେ ଗୁପ୍ତ କଥା ଏକ ;
ନୁହେଁ କର୍ଣ୍ଣ ସୂତପୁତ୍ର ;
ନୁହେଁ କର୍ଣ୍ଣ ନୀଚକୁଳେ ଜାତ ;
କୁନ୍ତୀ ଗର୍ଭେ ଜନ୍ମ ଲଭି ବିଭାବସୁ ବରେ
କବଚ-କୁଣ୍ଡଳ-ଧାରୀ ଅପୂର୍ବ କୁମାର
ଅଧିରଥ ନିଳୟେ ପାଳିତ ।
ସେହି କର୍ଣ୍ଣ ଶାସ୍ତ୍ରମତେ ଅଟେ ପାଣ୍ଡୁସୁତ ।
କୁନ୍ତୀର କାନୀନ ପୁତ୍ର, ପାଣ୍ଡବ ଅଗ୍ରଜ ।
( କୃଷ୍ଣ କିୟତ୍‌କାଳ ନୀରବ ରହି କର୍ଣ୍ଣଙ୍କ ପ୍ରତି ଦୃଷ୍ଟିପାତ କଲେ ଓ କର୍ଣ୍ଣ ଚକିତ ହୋଇ ଶିହରି ଉଠିଲେ )
ଆସ କର୍ଣ୍ଣ, ଘେନ ମୋ ବଚନ,
ମିଳି ପଞ୍ଚଭାଇ ସନେ
ବସ ଏବେ ଇନ୍ଦ୍ରପ୍ରସ୍ଥ ଶୂନ୍ୟ ସିଂହାସନେ,
ପୃଥିବୀର ରାଜ ଚକ୍ରବର୍ତ୍ତୀ
ଖଟନ୍ତୁ ପାଣ୍ଡବଗଣ ପୟରେ ତୁମ୍ଭର ।
ଧର୍ମରାଜ ଶ୍ୱେତଛତ୍ର ଧରନ୍ତୁ ମସ୍ତକେ,
ଭୀମାର୍ଜୁନ ବ୍ୟଜନ୍ତୁ ଚାମର
ମାଦ୍ରୀସୁତ ବେନି
କରଯୋଡ଼ି ପାଳନ୍ତୁ ଆଦେଶ ।
ଏହିରୂପେ ଷଡ଼ ପାଣ୍ଡୁପୁତ୍ରେ ମିଳି
ଉଦ୍ଧରି ଧରଣୀ-ରାଣୀ ଅକାଳ ମରଣୁଁ
ଲଭନ୍ତୁ ଦ୍ରୌପଦୀ ସହ ମେଦିନୀ ସମ୍ଭୋଗ ।
( କର୍ଣ୍ଣ ଚିନ୍ତା କରିବାକୁ ଲାଗିଲେ—କ୍ରମେ କ୍ରମେ ତାଙ୍କର ମୁଖ ତେଜୋମୟ ହୋଇ ଉଠିଲା )
କର୍ଣ୍ଣ— ବୃଷ୍ଣି ବଂଶ ଅବତଂସ କଂସାରି ବଦନେ
ଶୋଭିଲାକି ଏଭଳି ପ୍ରସ୍ତାବ ?
ଶୈଶବେ ଗୋପାଳ ଗୃହେ ଗୋପ ଅନ୍ନ ଖାଇ
ଲଭିଛକି ଏହି ହୀନ ବୁଦ୍ଧି ?
କ୍ଷମାକର ଯାଦବ ଶେଖର ;
ଆଜନ୍ମ ସୂତାନ୍ନ ଭୁଞ୍ଜି
ତୁଡ଼ି ନାହିଁ କ୍ଷତ୍ର-ବୃତ୍ତି କର୍ଣ୍ଣ,
ଭୁଲି ନାହିଁ କ୍ଷତ୍ରିୟ ମହତ୍ତ୍ୱ ।
ତୁମ୍ଭ ବାକ୍ୟେ କଲେ ଅଙ୍ଗୀକାର,
ଛି ଛି-କାର କରିବେ ଜଗତେ ;
ଲାଗିବ କଳଙ୍କ ପାଣ୍ଡୁକୁଳେ,
ଧର୍ମରାଜ ଯଶେ ।
ବୋଲିବେ ରାଜନ୍ୟ ବର୍ଗ
ପ୍ରାଣଭୟେ କର୍ଣ୍ଣ ଯାଇ ପଶିଲା ଶରଣ
ପାଣ୍ଡବ ଚରଣ ତଳେ ;
ଅବା ଲୋଭେ ହେଲା ବଶୀଭୂତ
ଚିର ମିତ୍ର ଦୁର୍ଯ୍ୟୋଧନେ ଛାଡ଼ି ।
ନୁହେଁ କର୍ଣ୍ଣ ସ୍ୱାର୍ଥପର
ନୁହେଁ କର୍ଣ୍ଣ ବିଶ୍ୱାସ-ଘାତକ ।
କିବା ଛାର ତ୍ରୈଲୋକ୍ୟ ଐଶ୍ୱର୍ଯ୍ୟ !
ପଣ ଅନିବାର୍ଯ୍ୟ,
ଦୁର୍ଯ୍ୟୋଧନ ପ୍ରିୟ କାର୍ଯ୍ୟ କରିବି ନିରତେ ।
କୃଷ୍ଣ— ମିତ୍ର ସଦା ହିତ କର୍ମ ସାଧଇ ମିତ୍ରର
କରେ ଇଷ୍ଟ ଚିନ୍ତା ;
ପରିଣାମେ ନୁହେଁ ହିତ ଅନ୍ୟାୟ ବିରୋଧ
ଧୃତରାଷ୍ଟ୍ର ନନ୍ଦନର ପାଣ୍ଡୁପୁତ୍ର ସନେ ।
କର୍ଣ୍ଣ— ନୁହେଁ କର୍ଣ୍ଣ ବୁଦ୍ଧିହୀନ, ନୁହଇ ବାତୁଳ,
ପରିଣାମ ବୁଝିଛି ସକଳ ;
ସଂଗ୍ରାମର ଫଳାଫଳ
ଦର୍ପଣରେ ଛାୟା ପରି ଦିଶୁଅଛି ମୋତେ ।
ହୋଇବ ଧର୍ମର ଜୟ
ଅଧର୍ମର ପରାଜୟ ;
ଇଷ୍ଟଦାତା ଯାହାର ସହାୟ
କାହିଁ ତାର ଭୟ ?
ମାୟାମୟ,
ଅଭେଦ୍ୟ କୌଶଳ ତୋ'ର ନୋହିବ ସଫଳ,
ଗୁପ୍ତ ଛଳ, ଅଳ୍ପବୁଦ୍ଧି ସୂତପୁତ୍ର ସନେ ।
ନିଜେ ଧର୍ମ ସ୍ଥାପୟିତା ହୋଇ
ଧର୍ମ-ଦ୍ରୋହୀ ନ କରାଅ କର୍ଣ୍ଣେ ଅକାରଣେ ।
ପାଳିବି ଆପଣା ଧର୍ମ ଏହି-ମହାରଣେ ;
ରଣ ଅବସାନେ,
ବିନାଶି ଦୁଷ୍କୃତ ରାଶି
ଅବହେଳେ ଧର୍ମରାଜ୍ୟ ସ୍ଥାପ ଜଗତରେ ।
କୃଷ୍ଣ— ଆଜ ତେବେ ଘେନୁଛି ବିଦାୟ ।

—୩୧୩—

କର୍ଣ୍ଣ— ନମୋ ଦୟାମୟ ;
ହୋଇବ ସାକ୍ଷାତ ପୁଣି ସଂଗ୍ରାମ ପ୍ରାଙ୍ଗଣେ ।

## ଦ୍ୱିତୀୟ ଦୃଶ୍ୟ

( କୁଟୀରାଙ୍ଗନ—କୁନ୍ତୀ ଏକାକିନୀ )

କୁନ୍ତୀ—ଅଭାଗିନୀ, ହୋଇଥିଲି ରାଜେନ୍ଦ୍ର ନନ୍ଦିନୀ,
ହରାଇ ଜନନୀ କୋଳ
ଶିଶୁ କାଳେ,
ପରାଳୟେ ଆଜନ୍ମ ପାଳିତା ।
ଯୌବନେ ଲଭିଲି ପତି
ମହାମତି କୁରୁକୁଳ-ମଣି ;
କିନ୍ତୁ ରେ ସାଧିଲା ବାଦ ନିଷ୍ଠୁର ବିଧାତା,
ଅକାଳରେ ହୋଇଲି ଅନାଥା ।
ଭାଗ୍ୟବତୀ ମହାରାଜ ସୁତା
ଅର୍ପି ଅଭାଗିନୀ କରେ
ସଂସାରର ଅନନ୍ତ ଜଞ୍ଜାଳ ।
ହୋଇ ରାଜକୁଳ-ବଧୂ, ରାଜପୁତ୍ର-ମାତା
ତାଡ଼ିତା ହରିଣୀ ପ୍ରାୟ ଭ୍ରମିଲି ଜଗତେ
ପଞ୍ଚଶିଶୁ ଭିକ୍ଷାନ୍ନରେ ପୋଷି ।
ରାଜ୍ୟ ସୁଖ
ନ ସହିଲା ବନ୍ଧୁଜନ,
ପୁତ୍ର ପୁତ୍ରବଧୂ ସନେ
ନିର୍ବାସିତା ଗହନ କାନନେ
ଦ୍ୱାଦଶ ବର୍ଷର କାଳ ଭ୍ରମି ବନେ ବନେ,
ପଞ୍ଚପୁତ୍ରେ ନିଜ ସତ୍ୟ ପାଳି
ଚଳିଲେ ଅଜ୍ଞାତବାସେ,
ଥୋଇ ମୋତେ ବିଦୁରର ଦରିଦ୍ର କୁଟୀରେ ।
ରାଜକୁଳେ ଜନ୍ମ ଲଭି, ହୋଇ ରାଜ୍ୟେଶ୍ୱର,
ଅଭାଗୀର କର୍ମ ଦୋଷେ—
ପୁତ୍ରଗଣ ହେଲେ ଦେଶ ତ୍ୟାଗୀ,
ଚୋର ପ୍ରାୟ ଭିକ୍ଷା ଉପଜୀବୀ ।
ହାୟ ବିଧି ପୋଡ଼ା କର୍ମେ ଲେଖି ନାହିଁ ସୁଖ;
ଛୁଇଁଲେ ଯାଉଛି ଶୁଖି ଅପାର ଜଳଧି,
ହୋଉଛି ସୁବର୍ଣ୍ଣ ପୁର ପାଷାଣ ପାଲଟି—
ଅଲକ୍ଷଣୀ କର ସ୍ପର୍ଶେ ।

ବିଦୁର—(ଚମକି)
ବସିଛ ଏକାକୀ ଏଥି ବିଷଣ୍ଣ ବଦନେ
ରାଜମାତା, ଏତେ ଦିନେ ଦୁଃଖ ଅବସାନ;
ଉତ୍ତୀର୍ଣ୍ଣ ପାଣ୍ଡବଗଣ ସତ୍ୟ ପାଳନରୁ ।
ପୁଣ୍ୟବତୀ, ପୁଣ୍ୟ ବଳେ ତବ
ଅତୀତ ଦ୍ୱାଦଶ ମାସ ଅଜ୍ଞାତ ଆବାସେ ।
କୁନ୍ତୀ—ହେଲିଣି ବଧିର କୁନ୍ତୀ
ଶୁଣି ଶୁଣି ଆଶ୍ୱାସନା ବାଣୀ;
ଭିଖାରିଣୀ ନାରୀସନେ କିପାଁ କର ଛଳ
ଅଶ୍ରୁ ଜଳ ଅଭାଗୀର ଚିର ସହଚର ।
ବିଦୁର—ନୁହେଁ ଛଳ ମହାଦେବି,
ସତ୍ୟ ସମାଚାର;
ଅଶ୍ରୁଧାର ପୋଛିଦିଅ ଏବେ;
ସେହି ତପ୍ତ ଅଶ୍ରୁ ତବ
ହେଉ ପରିଣତ
ଆନନ୍ଦାଶ୍ରୁ ନୀରେ,
ବରଷୁ ପାଣ୍ଡବ ଶିରେ ଅମୃତ ନିର୍ଝର—
ଅଭିଷେକ ତୀର୍ଥ ବାରି ରୂପେ ।
ଚିର ଗତିଶୀଳ ଏହି ଅସ୍ଥିର ଜଗତେ,
ଅବିରତେ,
ସୁଖ ଦୁଃଖ ଘୂରି ଆସେ ଚକ୍ରନେମି ପରି ।
ଶୁଣ ପୁଣ୍ୟବତି,
ନିଖିଳ ବ୍ରହ୍ମାଣ୍ଡ ପତି
ବାସୁଦେବ, ପାଣ୍ଡବ ଜୀବନ,
ଆସିଛନ୍ତି ଦୂତ ରୂପେ ନିଜେ
ହସ୍ତିନା ଭୁବନେ,
ଦୁର୍ଯ୍ୟୋଧନ ସନେ
କରିବାକୁ ସନ୍ଧିର ପ୍ରସ୍ତାବ ।
କୁନ୍ତୀ—ସତ୍ୟ କି ବିଦୁର ?
ବିଦୁର—ଅନନ୍ତ ବ୍ରହ୍ମାଣ୍ଡ ସାଇଁ ଜଗତ ଗୋସାଇଁ
ଆସିବେ, କି ଦେବ ମୋର ଦରିଦ୍ର ନିବାସେ ?
ହେବ କି ସେ ଭାଗ୍ୟ ବିଦୁରର ?
ତ୍ରୈଲୋକ୍ୟ ଠାକୁର,
ଏ ଦୀନ କୁଟୀର ଦ୍ୱାରେ
ଅର୍ପିବେ ଚରଣ ରଜ ବିରଞ୍ଚି-ବାଞ୍ଛିତ
କଞ୍ଜପାଦ ତଳୁଁ ?
ଦୀନବନ୍ଧ, ଦୀନବନ୍ଧୁ—ଶୁଣିବ କି ଦୀନର ଆରତ ?

(ଗୀତ)

ସତେ କଏ ଅଭାଗାର ସେ ଭାଗ୍ୟ ହୋଇବ
କୃଷ୍ଣ କଳାକର ସତେ ମୋ ପୁରେ ଉଇଁବ ।
(ଆସିବେ ସେ ରଙ୍କରତନ)
(ରାଧାରମଣ ମୋ ପରାଣଧନ)
(ଯଶୋଦା ଜୀବନ ନନ୍ଦନନ୍ଦନ)
ଯେ ରଙ୍ଗ ଚରଣ ବେନ ନରଚେ ହୃଦୟେ ଯେନ
ସେବନ୍ତି କମଳା କୁତୂହଳେ,
ସେ ପଦ ପଙ୍କଜ ରଜ ଏ ଦୀନ କୁଟୀରେ ଆଜ
ପଡ଼ିବ କି ମୋର ପୁଣ୍ୟବଳେ ।
(ଇନ୍ଦୀବର ଶ୍ୟାମ ମୂରତି)
(ନିନ୍ଦ କୋଟି ରତିପତି)
(ହରିବ କି ମୋ ହୃଦୟ ଆରତି)
ଅତସୀ କୁସୁମ ଶ୍ୟାମ କାନ୍ତି ମନୋରମ
(ନବଘନ ଶ୍ୟାମଳଶ୍ରୀ)
(ଉଜ୍ଜ୍ୱଳ କଜ୍ଜ୍ୱଳ କାଳଶ୍ରୀ)
ସେ ମୋର ଜୀବନ ସ୍ୱାମୀ
ଅନାଥର ନାଥ ମୋର ପ୍ରାଣ କାନ୍ତ
ସେ ପର ଅନ୍ତରଯାମୀ ।
(ଅନ୍ତର ବେଦନା ଜାଣେ)
(ଭାବଗ୍ରାହୀ ଚିନ୍ତାମଣି)
(ଆକର୍ଷଇ ପ୍ରାଣପଣେ)

( ବିଦୁର ଚକ୍ଷୁବୁଜି ଗଦ୍‌ଗଦ୍ ଭାବରେ ରହିଲେ ଓ ସେହି ସମୟରେ ଶ୍ରୀକୃଷ୍ଣ ପ୍ରବିଷ୍ଟ ହୋଇ କୁନ୍ତୀଙ୍କୁ ପ୍ରଣାମ କଲେ )

କୁନ୍ତୀ—ଆସିଛ କେଶବ ଏବେ,
ଏତେ ଦିନେ ପଡ଼ିଲାକି ମନେ
ଅଭାଗିନୀ ପାଣ୍ଡବ ଜନନୀ ?

କୃଷ୍ଣ— ନିଶ୍ଚିନ୍ତେ ପାଣ୍ଡବେ ମାତ,
ଅରପି ବିଦୂର କରେ ତବ ରକ୍ଷାଭାର
ଗୋପନେ ଅଜ୍ଞାତ ବାସେ ସହି ନାନା କ୍ଲେଶ
ପଣ କରି ଶେଷ
ପୁତ୍ରଗଣ ଫେରିଛନ୍ତି ତବ
ମେଘମୁକ୍ତ ଦୀପ୍ତିମନ୍ତ ମାର୍ତ୍ତଣ୍ଡ ସମାନ;
ସଙ୍ଗେ ଯାଜ୍ଞସେନୀ,
ପତିପ୍ରାଣା ଲକ୍ଷ୍ମୀ-ସ୍ୱରୂପିଣୀ ।
ହେଉଅଛି ରଣ ଆୟୋଜନ,
ଆସିଛି ମୁଁ କୌରବ ସଦନେ
ପାଣ୍ଡବର ଦୂତ ରୂପେ ସନ୍ଧିବାର୍ତ୍ତା ଘେନ ।

କୁନ୍ତୀ—ସନ୍ଧି ! ସନ୍ଧି ! ସନ୍ଧି ! କୃଷ୍ଣ;
ସନ୍ଧି କାହା ସନେ ?
ନାହିଁ କି ହେ ମନେ
ଜତୁ ଗୃହେ ଦାହ କଥା ?
ନାହିଁ ମନେ କାଳକୂଟ ଦାନ ?
ଅସମ୍ଭବ, ଅସମ୍ଭବ ।
କେମନ୍ତେ ଭୁଲିଲେ କହ
କ୍ଷତ୍ରକୁଳେ ଜନ୍ମି
ସେହି ଘୋର ଅପମାନ ଅକ୍ଷକ୍ରୀଡ଼ା ଦିନ ।
କେମନ୍ତେ ପୁରୁଷ ହୋଇ
ପାଶୋରିଲେ ଏତେ ଅଳ୍ପ କାଳେ
ସଭାତଳେ ପତ୍ନୀର ଲାଞ୍ଛନା
କଲେ ଯେବେ ବିବସନା, ଧୃତରାଷ୍ଟ୍ର ସୁତେ
ଏକବସ୍ତ୍ରା ରଜସ୍ୱଳା ନାରୀ ?
କ୍ଷତ୍ରିୟ ରମଣୀ କେହି
ନାହିଁ କରେ ତାଙ୍କୁ ଗର୍ଭେ ଧରି ?
ବହୁ ନାହିଁ ତାଙ୍କ ଦେହେ କୁନ୍ତୀର ଶୋଣିତ !
ନୋହିଲେ ସେ କାପୁରୁଷ ପରି
ରଣେ ଡରି,
ଶତ୍ରୁଦ୍ୱାରେ ସନ୍ଧି ଭିକ୍ଷା କରନ୍ତି କି ହେତୁ ?
କେଶରୀ କି ବଞ୍ଚେ କେବେ ପର ଅନୁଗ୍ରହେ,
ପୋଷେ ପେଟ ପରର ଉଚ୍ଛିଷ୍ଟେ ?
ସିଂହୀକା ଉଦରେ ଜନ୍ମି ପୁତ୍ରଗଣ ମୋର
କାହିଁ ସେ ଲଭିଲେ କହ ଶୃଗାଳ ସ୍ୱଭାବ ?

କୃଷ୍ଣ— ଶାନ୍ତ ହୁଅ ପାଣ୍ଡବ ଜନନୀ,
କୁନ୍ତୀ ସୁତେ ନୁହେ ରଣେ ଭୀତ ।
ଧର୍ମରାଜ ଯୁଧିଷ୍ଠିର ସଦା ଶାନ୍ତି ପ୍ରିୟ
ଭାବି ରଣେ ବୃଥା ଲୋକ କ୍ଷୟ ।
ଧର୍ମଭାବେ କରିଛନ୍ତି ସନ୍ଧିର ପ୍ରସ୍ତାବ ।
କିନ୍ତୁ ମାତଃ,
ଦୁର୍ବୁଦ୍ଧି କୌରବ ବୃନ୍ଦ ନ ଶୁଣିଲେ ତାହା,
ବଳଦୃପ୍ତ ଧନମଦେ ମତ୍ତ, ଅହଙ୍କାରୀ
କୁରୁକ୍ଷେତ୍ରେ ଜ୍ୱଳିବ ଅଚିରେ
ଭୀଷଣ ସମରାନଳ ।

ପୃଥିବୀର କ୍ଷତ୍ରକୁଳ ସର୍ବେ ହୋଇ ଠୁଳ
ଜ୍ୱଳନ୍ତ ପତଙ୍ଗ ପ୍ରାୟ ହୋଇବେ ନିର୍ମୂଳ;
ରଣଶବ୍ଦେ କମ୍ପିବ ମେଦିନୀ
ଧରଣୀ ହୋଇବ ସିକ୍ତ ତପ୍ତ ନର ରକ୍ତେ ।
କୁନ୍ତୀ—ସିଂହ ଶିଶୁ ବାହୁବଳେ ସଂହାରି ଅରାତି
ଭୋଗେ ବସୁନ୍ଧରା,
ଅବା ଲଭେ ରଣାଙ୍ଗନେ ଅନନ୍ତ ଶୟନ—
ବୀରର ଅକ୍ଷୟ ସ୍ୱର୍ଗ ।
ଯେଉଁ ଦିନ ପଞ୍ଚଭାଇ
ରଞ୍ଜି କର କୌରବ ଶୋଣିତେ,
ଗୌରବେ କରିବେ ମୋର ଚରଣ ବନ୍ଦନ,
ସେହି ଦିନ—ସେହିଦିନ ଏକା,
ଶୁଖିବ ଲୋତକ ଧାର କୁନ୍ତୀର ନୟନୁଁ ।
ଯେଉଁ ଦିନ ଦ୍ରୌପଦୀର ରୁକ୍ଷ କେଶଦାମ
ଆର୍ଦ୍ର ହେବ ଅରାତି ଶୋଣିତେ,
ସେ ଦିନ ଲଭିବ ଶାନ୍ତି କ୍ଷତ୍ର ରମଣୀର
ତୃଷିତ ଅନ୍ତର ।
ହୃଷୀକେଶ, କୁନ୍ତୀର ନିର୍ଦ୍ଦେଶ,
ଗୋଟି ଗୋଟି କହିବ ପାଣ୍ଡବେ ।
କୃଷ୍ଣ— ମାଗୁଛି ମେଲାଣି ଦେବି,
କର୍ମ ମୋର ହେଉଅଛି ଶେଷ,
ଉଦ୍‌ଗ୍ରୀବେ ପାଣ୍ଡବ ଗଣ
ରହିଥିବେ ମୋହ ପଥ ଚାହିଁ ।
(ବିଦୁରଙ୍କ ପ୍ରତି) ହେଉଛି ବିଦାୟ ଏବେ,
ବହୁ ପୁଣ୍ୟ ହୋଇଛି ସଞ୍ଚୟ
ତୁମ୍ଭ ଭଳି ମହାତ୍ମା ଦର୍ଶନେ ।
ବିଦୁର—(ସ୍ୱଗତଃ)
ତ୍ରିଜଗତ ଚିନ୍ତାମଣି ହରି
ଗୋଲକ ବିହାରୀ
ଆପେ ଆଜି ଉପନୀତ ବିଦୁର ଦୁଆରେ ।
କି ଦେଇ କରିବ ପୂଜା ସେ ଚରଣ ବେନି
ନିଜ ହୃଦେ ଘେନି
ନିରତେ ପୂଜନ୍ତି ଯାକୁ ଦେବ ମହେଶ୍ୱର !
ଦରିଦ୍ରର କି ଅଛି ସମ୍ବଳ
କେମନ୍ତେ ତୋଷିବି ଆଜ କମଳା ବାଞ୍ଛିତେ ?
ଇଚ୍ଛାମୟ, ଏହି ଥିଲା ମନେ ?

(କୃଷ୍ଣଙ୍କ ପ୍ରତି)
ଦୟାମୟ ହରି,
କେଉଁ ଭାଗ୍ୟ ବଳେ
ରହିଥିଲେ କୁନ୍ତୀ ଦେବୀ ଦରିଦ୍ର କୁଟୀରେ,
ସେ କାରଣେ ପୂତ ହେଲା ଆଜ
ଏହି ସ୍ଥଳ, ପରଶି ସେ ରାଜୀବ ପୟର ।
( ଜାନୁପାତ କରି )
କହ ଦୀନବନ୍ଧୁ,
କାହିଁକି ଆସିଲ ନାଥ, ଦରିଦ୍ର କୁଟୀରେ ?
କି କହିବି ଅନ୍ତର୍ଯ୍ୟାମୀ,
ଅନ୍ତର ଯାଉଛି ଫାଟି
ହେଉଅଛି କଣ୍ଠରୋଧ ମୋର ।
( ବିଳାପ କଲେ )
କୃଷ୍ଣ— ( ହସ୍ତଧରି ଉଠାଇଲେ )
ଉଠ, ଉଠ, ନ କର ରୋଦନ ;
ନ ଜାଣ ବିଦୁର କି ହେ,
ତୁମ୍ଭେ ମୋର କେଡ଼େ ପ୍ରିୟଜନ ?
ସେଥିପାଇଁ କୌରବ ଭବନେ
ତ୍ୟଜି ରାଜ ଭୋଗ
ଆସିଛି ତୁମ୍ଭର ଦ୍ୱାରେ ମଣି ଆପଣାର ।
ପ୍ରୀତିର କାଙ୍ଗାଳ ମୁହିଁ
ପ୍ରୀତି ଡୋରେ ବନ୍ଧା ସଦାଦିନ ।
ଆସିଥିଲି ବହୁ ଦୂରୁଁ, ଯିବି ବହୁ ଦୂର ;
ବିଦୁର, ବିଦୁର, ପଥଶ୍ରମେ ହୋଇଛି କାତର ;
କ୍ଷୁଧା ଭୟଙ୍କର
ଦିଅ କିଛି କରିବି ଭୋଜନ ।
ବିଦୁର—ଭାବଗ୍ରାହୀ ହରି,
ଦରିଦ୍ର ସହିତେ କିପାଁ ଖେଳୁଛ ଚାତୁରୀ ;
ବାର ବାର ଦେଉଛ ଯାତନା
ଭିଖାରୀର ପ୍ରାଣେ !
ଦରିଦ୍ର ଭିଖାରୀ ସନେ
ପରିହାସ ନୁହଇ ଉଚିତ ।
କୃଷ୍ଣ— ବିଦୁର, ମୁଁ କ୍ଷୁଧାରେ କାତର
ଯାଚକ ଅତିଥି ରୂପେ
ଦ୍ୱାରେ ତବ ମାଗୁଛି ଆହାର ।
ଅତିଥି-ସତ୍କାର,

ଗୃହସ୍ଥର ଧର୍ମ ସନାତନ ।
କେମନ୍ତେ କରୁଛ ମନା ଜାଣି ଧର୍ମମତ ?
ରଖିଣ ଲୁଚାଇ ସେହି ଝୁଲିର ଭିତରେ
ଅମୂଲ୍ୟ ଆହାର୍ଯ୍ୟ
ଅତିଥିକୁ କରୁଛ ବିମୁଖ (···)
( ଶ୍ରୀକୃଷ୍ଣ ବିଦୁରଙ୍କ ବାରଣ ସତ୍ତ୍ୱେ ତାଙ୍କ ଝୁଲିରୁ ଖୁଦକଣା ନେଇ ଆହାର କଲେ )

ବିଦୁର—ହାୟ, ହାୟ, କି କଲ; କି କଲ !
କେମନ୍ତେ ଭରିଲ କହ ସେ ରଙ୍ଗ ଅଧରେ
ଅମୃତ ମଟଣୋହି ଗୁଡ଼ ତଣ୍ଡୁଳର କଣା !

ଶ୍ରୀକୃଷ୍ଣ—ଆହା କି ସୁରସ
ବ୍ରଜପୁର ଛାଡ଼ିଲା ଦିନରୁ
କରି ନାହିଁ ଏଭଳି ଆହାର ।
କେଡ଼େ ସ୍ୱାଦୁ ! କେଡ଼େ ସୁମଧୁର !

ବିଦୁର— (ଗୀତ)

ଆଜ ପଡ଼ୁଛି କି ମନେ କ୍ଷୀର ଚୋର
ନବ ନୀରଦ ନିନ୍ଦିତ ବରଣ ହରି,
ବ୍ରଜ ଯୁବଜନ ବନ୍ଦିତ ଚରଣ ହରି ॥ ଘୋଷା ॥
ଯଶୋମତୀ-ନନ୍ଦନ ଧରଣୀ ସୁଧାକର
ଚର୍ଚ୍ଚିତ ଚନ୍ଦନ ନୀଳ କଳେବର
ପୀତାମ୍ବର ଧର ମୁରଲୀ ମନୋହର
ସୁନ୍ଦର ନଟବର ନାଗର ହେ ।
ମନ ଚୋର ହେ—ମନ ଚୋର ହେ,
( ଅଞ୍ଜନ ଗଞ୍ଜନ କଞ୍ଜ ନୟନ )
( ରାଧାଧର-ସୁଧା ପାନ ଚକୋର )
( ରାସ ରସିକବର ରଙ୍ଗ ଅଧର )
( ଯମୁନା ତୀର ନୀର କେଳି କୁଞ୍ଜର )
ନବ ଶଶଧର—ସୁନ୍ଦର-କିରଣ ହରି
ଜଗଜ୍ଜୀବନ ଜନଜନ ଶରଣ ହରି ।

## ତୃତୀୟ ଦୃଶ୍ୟ

( କର୍ଣ୍ଣଙ୍କ ଗୃହ ପ୍ରାଙ୍ଗଣେ—ପୂଜୋପକରଣ ନେଇ ପଟ୍ଟବସ୍ତ୍ର ପରିଧାନ କରି କର୍ଣ୍ଣ ପ୍ରବେଶ ହେଲେ । ଅନ୍ୟଦିଗରୁ ବୃଷକେତୁ ଗୀତ ଗାଇ ପ୍ରବେଶ ହେଲେ )

( ଗୀତ )

ନାଚ ନାଚ ମୁରଲୀ ବଜାଏ,
ମଧୁରେ ମଧୁରେ ହସି ଅଧରେ ଧରଇ ବଂଶୀ
ବେଣୁ ସ୍ୱରେ ଅନ୍ତର ମଜାଏ ॥
ପରଚେ ନ ହେଲା ଆଜ୍ଞାପାଏ,
କାହିଁ ଆସେ କାହିଁ ଯାଏ, କାହିଁ ଲୁଚି ରହିଥାଏ
ଝଡ଼ି ଝଡ଼ି ଚିତ୍ତ ଚମକାଏ ॥
ନିତି ନିତି ନୂଆ ନୂଆ ରୂପ ଧରି ଆସଇ
ନିତି ନିତି ନୂଆ ନୂଆ ପଦେ ପଦେ ଖେଳଇ,
ହସିଦେଲେ ଥରେ ଥରେ ସରଗ ସୁଷମା ଝରେ
ପୁଲକରେ ମାନସ ମଜାଏ ॥

ବୃଷକେତୁ—ପିତଃ, ଶୁଣିଲି କୁରୁକ୍ଷେତ୍ରରେ ମହାରଣର ଆୟୋଜନ ହେଉଛି ।

କର୍ଣ୍ଣ— ହଁ, ବତ୍ସ, କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଭୀଷଣ ସମର ହେବ । ଏକ ପକ୍ଷରେ ରାଜା ଦୁର୍ଯ୍ୟୋଧନ ଓ ଅପର ପକ୍ଷରେ ଯୁଧିଷ୍ଠିର । ପୃଥିବୀର ସମସ୍ତ ରାଜାମାନେ ରଣକ୍ଷେତ୍ରରେ ସମବେତ ହେଉଛନ୍ତି ।

ବୃଷକେତୁ—ରାଜା ଦୁର୍ଯ୍ୟୋଧନ ତ ଯୁଧିଷ୍ଠିରଙ୍କ ଭ୍ରାତା ! ଭାଇ ଭାଇ ମଧ୍ୟରେ ଯୁଦ୍ଧ କାହିଁକି ହେବ ପିତଃ ?

କର୍ଣ୍ଣ— ଯୁଧିଷ୍ଠିରଙ୍କୁ କୌରବ ଭାଗ ନ ଦେବାରୁ ପାଣ୍ଡବମାନେ ଯୁଦ୍ଧ କରିବେ ।

ବୃଷକେତୁ—ଏ ଯୁଦ୍ଧରେ ଜୟ କାହାର ହେବ ?

କର୍ଣ୍ଣ— ଯୁଦ୍ଧରେ ଜୟ ପରାଜୟ ବଳାବଳ ଉପରେ ନିର୍ଭର କରେ; ତେବେ ବେଶି ନିର୍ଭର କରେ ନ୍ୟାୟ ଓ ଧର୍ମ ଉପରେ ।

ବୃଷକେତୁ—ଉଭୟ ପକ୍ଷ ମଧ୍ୟରେ ନ୍ୟାୟ କାହାର ଓ ଅନ୍ୟାୟ କାହାର ?

କର୍ଣ୍ଣ —ସେ କଥା କହିବା ସହଜ ନୁହେ । ଦୁର୍ଯ୍ୟୋଧନ କହନ୍ତି ଯେ ଜ୍ୟେଷ୍ଠାଧିକାର ନ୍ୟାୟରେ ସମସ୍ତ ରାଜ୍ୟ ତାଙ୍କର । ଆଉ ଯୁଧିଷ୍ଠିର ଯେତେବେଳେ ନିଜ ରାଜ୍ୟ ପଶାଖେଳରେ ହାରି ଦେଇଛନ୍ତି, ସୁତରାଂ ସେଥିରେ ତାଙ୍କର ଅଧିକାର ନାହିଁ । ପୁଣି ଯୁଧିଷ୍ଠିରଙ୍କ ଯୁକ୍ତି ଏହିକି ତାଙ୍କ ପିତା ପାଣ୍ଡୁ ଯେତେବେଳେ ରାଜା ଥିଲେ ସେମାନେ ରାଜପୁତ୍ର । ଅତଏବ ରାଜ୍ୟରେ, ତାଙ୍କର ଭାଗ ଅଛି । ପଶାଖେଳ ବେଳେ କଥା ଥିଲା କି ତ୍ରୟୋଦଶ ବର୍ଷ ଅନ୍ତେ ତାଙ୍କ ରାଜ୍ୟ ସେ ଫେରି ପାଇବେ । ସମସ୍ତ କଥା ତ ଶୁଣିଲ । ଏବେ ବିଚାର କରି କହିଲ ବତ୍ସ, କାହାର ନ୍ୟାୟପକ୍ଷ ?

**ବୃଷକେତୁ**—(ଚନ୍ଦ୍ରାକର) ଶ୍ରୀକୃଷ୍ଣ କେଉଁ ପକ୍ଷରେ ଅଛନ୍ତି ?

**କର୍ଣ୍ଣ**— ପାଣ୍ଡବଙ୍କ ପକ୍ଷରେ ।

**ବୃଷକେତୁ**—ତେବେ ପାଣ୍ଡବଙ୍କର ନ୍ୟାଯ୍ୟ ପକ୍ଷ । ଶ୍ରୀକୃଷ୍ଣ କେବେ ଅନ୍ୟାୟର ଆଶ୍ରୟ କରନ୍ତି ନାହିଁ ।

**କର୍ଣ୍ଣ**— (ହସି) ଶ୍ରୀକୃଷ୍ଣ କପଟତାର ଅବତାର ।

**ବୃଷକେତୁ**—ଦୁଷ୍ଟଜନ ସହିତରେ ସେ କପଟତାର ଆଚରଣ କରୁଥିବେ । କିନ୍ତୁ ଯେ ସରଳ ପ୍ରାଣରେ ତାଙ୍କର ଆଶ୍ରୟ ନଏ ତାହା ସହିତ ସେତ ଛନ୍ଦ କରନ୍ତି ନାହିଁ ।

**କର୍ଣ୍ଣ**— ମୁଁ କହେ କେଉଁ ପକ୍ଷରେ ଜାଣୁ କି ବତ୍ସ ?

**ବୃଷକେତୁ**—ନିଶ୍ଚୟ ପାଣ୍ଡବ ପକ୍ଷରେ ।

**କର୍ଣ୍ଣ** —ନାହିଁ, ନାହିଁ କୌରବ ପକ୍ଷରେ !

**ବୃଷକେତୁ**—କାହିଁକି ପିତଃ, ଆପଣ କପର ଅଧର୍ମକୁ ପ୍ରଶ୍ରୟ ଦେବେ ?

**କର୍ଣ୍ଣ** —ଦୁର୍ଯ୍ୟୋଧନ ଆମ୍ଭର ଅନ୍ନଦାତା । ଦୁର୍ଯ୍ୟୋଧନ ମୋର ପ୍ରିୟ ମିତ୍ର । ଦୁର୍ଯ୍ୟୋଧନଠାରେ ମୁଁ ପ୍ରତିଜ୍ଞାବଦ୍ଧ । ଆଜି ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ ମୋର ଚିର ବୈରୀ ।

**ବୃଷକେତୁ**—ଆପଣ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରିବେ ?

**କର୍ଣ୍ଣ** —ଚକ୍ରଧର ଏ ଯୁଦ୍ଧରେ ଅସ୍ତ୍ର ଧାରଣ କରୁ ନାହାନ୍ତି । ସେ ଅର୍ଜ୍ଜୁନ ରଥରେ ସାରଥି ହେବେ ।

**ବୃଷକେତୁ**—ପିତଃ, ପିତଃ, ମୁଁ ଯିବି ଆପଣଙ୍କ ସଙ୍ଗରେ ।

**କର୍ଣ୍ଣ** —ବତ୍ସ, ତୁ ନିତାନ୍ତ ବାଳକ, ଏ ଭୀଷଣ ସମରକ୍ଷେତ୍ରରେ ତୁ କ'ଣ କରିବୁ ?

**ବୃଷକେତୁ**—ପୃଥିବୀର ସମସ୍ତ କ୍ଷତ୍ରିୟ ମହାବୀରମାନେ ଯେଉଁଠାରେ ସମବେତ ହୋଇ ଅଛନ୍ତି, ଯେଉଁ ପୁଣ୍ୟ କ୍ଷେତ୍ରରେ ସ୍ୱୟଂ ଶ୍ରୀକୃଷ୍ଣ ବିରାଜମାନ ହେବେ, ମୁଁ କ୍ଷତ୍ରିୟ ସନ୍ତାନ ହୋଇ ସେଠାକୁ ଯିବି ନାହିଁ ? ପିତଃ, ମୋତେ ଘେନି ଯାନ୍ତୁ । ମୁଁ ଅର୍ଜ୍ଜୁନ ରଥରେ ଶ୍ରୀକୃଷ୍ଣଙ୍କୁ ଦେଖିବି ।

( ସନ୍ତ୍ରସ୍ତା ଭାବରେ ପଦ୍ମାବତୀ ପ୍ରବେଶ ହେଲେ )

**ପଦ୍ମା** —ନାଥ, ନାଥ,
ଅକସ୍ମାତ୍ ଅକାଳରେ ଦେଖିଲି ସ୍ୱପନ ;
ଘୋର ଅମଙ୍ଗଳ
ଅନ୍ତରାତ୍ମା ଉଠୁଛି ଶିହରି ।

**କର୍ଣ୍ଣ** —ଦୁର୍ବଳ ଅବଳାର ଚିତ୍ତ
ଅବିରତ ଆଶଙ୍କା ପ୍ରବଣ ।

**ପଦ୍ମା** —ଯେ ଦୃଶ୍ୟ ଦେଖିଲି ନାଥ, ଜ୍ୱଳନ୍ତ ଜୀବନ୍ତ,
ମୂର୍ତ୍ତି ଶିବ ପ୍ରଶିବରେ ଯାଇଅଛି ଗୁନ୍ଥି ।
ଉଠିଲା ନିମିଷେ ଜ୍ୱଳି ଗଗନ ମଣ୍ଡଳେ
ଧୂ ଧୂ ପ୍ରଚଣ୍ଡ ଅନଳ,
ଖଣ୍ଡ ଖଣ୍ଡ ରକ୍ତ ପିଣ୍ଡଚୟ
ମହୀତଳେ ପଡ଼ଲାଣି ଖସି
ରାଶି ରାଶି ମସି ବର୍ଣ୍ଣ ଅଗ୍ନି
ପ୍ରସରିଲା ଦିଶି ଦିଶି ଦିଶି
ଲୋଲ ଜିହ୍ୱା ବିସ୍ତାରି ବିସ୍ତାରି ।
ଜ୍ୱଳିଗଲା ସ୍ଥାବର ଜଙ୍ଗମ,
ଉଦ୍ଦାମେ ଉଠିଲା ନାଚି
ଚରାଚର ମହା ଘୋର ପ୍ରଳୟ ତାଣ୍ଡବେ ।
ଗର୍ଜ୍ଜିଲା ଗଗନ ଭେଦି ତୁମୁଳ ହୁଙ୍କାର
ଘୋର ହାହାକାର ।
କାଳାନ୍ତକ ଭୀଷଣ କୁଠାର,
ନ ଦିଶିଲା ବାଟ
ମହା ଧୂମେ ମଗ୍ନା ବସୁନ୍ଧରା ।

**କର୍ଣ୍ଣ** —ସ୍ୱପ୍ନ, ପ୍ରିୟେ, କଳ୍ପନା ବିକାର,
ତ୍ୟଜ ବୃଥା ଭୀତ ମନୁଁ ।

**ପଦ୍ମା** —ପ୍ରିୟତମ, ଚିତ୍ତେ ମୋର ହେଉଛି ସଂଶୟ
ମହା ଭୟ ଉପୁଜଇ ମନେ ।
ଚକ୍ରଧର ଯାହାର ସହାୟ
—ମାୟାମୟ—
ବିପଦ ନିଶ୍ଚୟ
ଦ୍ୱନ୍ଦେ ତାହା ସନେ ।
ବୃଷକେତୁ ସଙ୍ଗେ ଘେନି
ଆସ ନାଥ ଆମ୍ଭେ ଦୁଇ ଜଣ
କେଶବ ଚରଣ ତଳେ ପଶିବା ଶରଣ ।
କୃପାସିନ୍ଧୁ ଆଚରିବେ କ୍ଷମା ଅପରାଧ ।

**କର୍ଣ୍ଣ**— ଏ କି କଥା ପ୍ରିୟେ,
ବୀରଜାୟା କ୍ଷତ୍ରିୟ ନନ୍ଦିନୀ ହୋଇ
ହୀନ ବାକ୍ୟ ଉଚ୍ଚାରିଲ ମୁଖେ ।
ରଣୋଦ୍ୟତ ଶତ୍ରୁଠାରେ କରିବ ଆଶ୍ରୟ ଭିକ୍ଷା !
ଜାମଦଗ୍ନ୍ୟ ଶିଷ୍ୟ କର୍ଣ୍ଣ
ତାହାଠାରୁ ଶତଗୁଣେ ଶ୍ରେୟ
ଭଙ୍ଗୁର ଶରୀର ପାତ
ଶତ୍ରୁଣରେ ସମ୍ମୁଖ ସମରେ ।

ପଦ୍ମା— ତେବେ ନାଥ,
ଫାଟିଛି କପାଳ ମୋର
ପଡ଼ୁଛି ଅକାଳ ବଜ୍ର ଅଙ୍ଗରାଜ କୁଳେ ।
ନାହିଁ ରକ୍ଷା, ନାହିଁ ରକ୍ଷା, ଧ୍ୱଂସ ଅନିବାର୍ଯ୍ୟ ।
ଦୟାମୟ, ହେ ମଧୁସୂଦନ
ଜନାର୍ଦ୍ଦନ ଜଗତ ଜୀବନ ।
ରଖିଥିଲ ଏ ଦୁର୍ଯୋଗ ଅଭାଗିନୀ ଭାଲେ ?
କର୍ଣ୍ଣ— ଭାଗ୍ୟବତି, ମହାଭାଗ୍ୟ ହୋଇଛି ଉଦୟ,
ଏତେ ଦିନେ ସଫଳ କାମନା,
ଆଜନ୍ମ ସାଧନା ମୋର ;
ତ୍ୟାଗ ବ୍ରତ ପୂର୍ଣ୍ଣ ଏତେ ଦିନେ ।
ମହାତୀର୍ଥ କୁରୁକ୍ଷେତ୍ରେ ହେବ ମହାଯଜ୍ଞ
ହୋତା ଯହିଁ ନିଜେ ନିଜେ ଜନାର୍ଦ୍ଦନ
ପତିତ ପାବନ ;
ଅଷ୍ଟାଦଶ ଅକ୍ଷୌହିଣୀ ସେନା
ଆନନ୍ଦେ ଅର୍ପିବେ ଯହିଁ ଜୀବନ ଆହୁତି ।
କେଉଁ ଭାଗ୍ୟବାନ ପୁଣି
ଜାଣିଶୁଣି,
ଏହି ପୁଣ୍ୟ ଅର୍ଜନରୁ ହୋଇବ ବଞ୍ଚିତ ?
ପ୍ରିୟତମେ, ଦୃଢ଼କର ଚିତ୍ତ ।
ସଶରୀରେ ସମ୍ମୁଖେ ନିରେଖି
କପି-ଧ୍ୱଜେ ନର ନାରାୟଣ,
ନଶ୍ୱର ପିଞ୍ଜର ଗୁଡ଼
ପ୍ରାଣ-ପକ୍ଷୀ ଯିବ ଯା'ର ଉଡ଼
କହ ପ୍ରିୟେ, ତାହାଠାରୁ କିଏ ଭାଗ୍ୟବାନ ?
( ପ୍ରସ୍ଥାନ )
ପଦ୍ମାବତୀ—ନ ଶୁଣିଲ ନ ଶୁଣିଲ ନାରୀର ବଚନ,
ନିଷ୍ଠୁର ହୃଦୟେ
ହେୟ ଜ୍ଞାନେ ଠେଲି ଦେଲ ପାଦେ ।
ହରି, ହରି, ଦୟାମୟ ହରି,
ତୁମ୍ଭେ କି ଶୁଣିବ ନାହିଁ ଦୁଃଖିନୀ ଗୁହାରି ?
ବୃଷକେତୁ—ମା' ମା'—କାହିଁକି ମା କରୁଛ ବାରଣ ?
କ୍ଷତ୍ରକୁଳେ ଜନ୍ମ ଲଭି ହୋଇ ମହାବୀର,
କେମନ୍ତେ ରହିବେ ପିତା
ଭୟାର୍ତ୍ତ ଜମ୍ବୁକ ପରି ଲୁଚି ଗୃହ କୋଣେ !
କହ ମା' କହ ମା' ଥରେ
ଅକାତରେ ଦିଅ ମା ସଜାଇ
ପିତା ପୁତ୍ର ଦୁହେଁ ମିଳି କୁରୁକ୍ଷେତ୍ର ଧାମେ
ଦେଖିବୁଁ ବାନର-ଧ୍ୱଜେ ନର ନାରାୟଣ ;
ଧନ୍ୟ ହେବ ମାନବ ଜନମ ।
ପଦ୍ମାବତୀ—ଆସରେ ଅଞ୍ଚଳନିଧି ଜୀବନ ସମ୍ଭାଳି,
ଅଭାଗିନୀ ଜନନୀ ତୋହର
ଜନ୍ମାବଧି
ପାଷାଣେ ବାନ୍ଧିଛି ହିୟା ।
( କୋଳରେ ଧରି ପ୍ରସ୍ଥାନ )

## ଚତୁର୍ଥ ଦୃଶ୍ୟ

( ସ୍ଥାନ – ନଦୀ ତୀର; କର୍ଣ୍ଣ ଧ୍ୟାନମଗ୍ନ—କୁନ୍ତୀ ଏକାକିନୀ ପ୍ରବିଷ୍ଟ ହେଲେ )

କୁନ୍ତୀ— ମନେ ପଡ଼େ ସେହି ଦିନ,
ବିଜନ ନିଶୀଥେ ଯେବେ
ବିସର୍ଜିଲି ଅସହାୟ ଲାବଣ୍ୟ ପ୍ରତିମା
ବେଗବତୀ ସ୍ରୋତସ୍ୱତୀ ନୀରେ ;
ସେହି ଦିନ— ପୁଣି ଆଜି ଦିନ,
କେତେ ବ୍ୟବଧାନ—
ଆକାଶେ ପାତାଳେ ଯଥା ।
କିସ ବୋଲି ସମ୍ବୋଧିବି ?
ଲଜ୍ଜା-କାଳ-ବୋଳା ଏହି ବଦନ ଦେଖାଇ,
କେଉଁ ମୁଖେ ପୁଣି ନେବି ତୋଳି
ଚରଣ ନିକ୍ଷିପ୍ତ ସେହି କଳଙ୍କର ଡାଳି !
ସେହି ମୁଖ, ସେହି କାନ୍ତି, ସେହି ତେଜପୁଞ୍ଜ
ଭାସ୍ୱର ଭାସ୍କର ସମ
ଅଭାଗୀର ଅଭାଗା ସନ୍ତାନ ।
ରେ ହୃଦୟ,
ରହ କ୍ଷଣେ, ଧୈର୍ଯ୍ୟଧର, ନ ହୁଅ ଚଞ୍ଚଳ ।
( ଅଗ୍ରସର ହୋଇ )
କର୍ଣ୍ଣ, କର୍ଣ୍ଣ—
କର୍ଣ୍ଣ— ( ଚମକିତ ହୋଇ )
କିଏ ମା,
ଏକାକିନୀ ଦେବୀମୂର୍ତ୍ତି ଦିବ୍ୟ ତେଜୋମୟୀ ?

କୁନ୍ତୀ— ଅଭାଗିନୀ ପାଣ୍ଡବ ଜନନୀ ମୁହିଁ
କୁରୁକୁଳ ବଧୂ ।
କର୍ଣ୍ଣ— ( ସସମ୍ଭ୍ରମେ ଉଠି )
ଦେବି କୁନ୍ତୀ ! ରାଜ ରାଜେଶ୍ୱରୀ !
କି କାର୍ଯ୍ୟ ମା, ସୂତ-ପୁତ୍ରଠାରେ ?
ଆଜ୍ଞାଧୀନ ଅଧମ କିଙ୍କର ।
କୁନ୍ତୀ— ନୋହୁ ବତ୍ସ ସୂତପୁତ୍ର ତୁହି ;
ସୌର ତେଜେ କୁନ୍ତୀ-ଗର୍ଭ-ଜାତ
ଅଭାଗୀର ପ୍ରଥମ ସନ୍ତାନ ।
କର୍ଣ୍ଣ— ତିଷ୍ଠ ମାତଃ, ବିଦିତ ମୁଁ ସବୁ
କହ ଏବେ ଆଗମନ ହେତୁ ।
କୁନ୍ତୀ— ଷଡ଼ ପୁତ୍ର ମାତା ଆଜି କୁନ୍ତୀ
କିନ୍ତୁ ଏହି ଆସନ୍ନ ସମରେ
ପଞ୍ଚପୁତ୍ର ସନେ ମୋର ଜ୍ୟେଷ୍ଠ ନନ୍ଦନର
ଘଟିବ ବିରୋଧ ;
ନେଇବ ଭାଇର ରକ୍ତ ସହୋଦର ଭାଇ
ଲଙ୍ଘି ପୂତ ଶୋଣିତ ପ୍ରବାହ ।
କହରେ, ଜନନୀ ପ୍ରାଣ ସହିବ କେମନ୍ତେ !
ପ୍ରାଣର ସଙ୍କାଳି ମୋର ଆସ, ଫେରିଆସ
ଆପଣା ପ୍ରସୂତି କୋଳେ, ମାତାହରା ଶିଶୁ ;
ଏତେ କାଳେ ପୁଣି
ହଜିଲା ନିଧିଟି ଆଜି ପାଇଛୁ ସାଉଣ୍ଟି ।
କର୍ଣ୍ଣ— କହନା, କହନା ମାତା ଅସମ୍ଭବ କଥା ।
ତ୍ୟଜ ତ୍ୟଜ ଆଶା ବୃଥା ।
ଅଲୋଡ଼ା ପଦାର୍ଥ ମଣି
ଥରେ ଯା'କୁ ଦେଇଛୁ ଫୋପାଡ଼
ତାହାଠାରେ କେଉଁ କାର୍ଯ୍ୟ ଆଉ ?
ଛଡ଼ାଇ ଜନନୀ ବକ୍ଷୁଁ
ଯେଉଁ ଦିନ ନଦୀ ସ୍ରୋତେ ଦେଇଛୁ ଭସାଇ
ପୁତ୍ର ତୋର ମରିଛି ସେ ଦିନ ;
ନୋହିଲେ ଜନନୀ ଆଜି
ଭାରତର ଇତିହାସ ଲିପି
ଅନ୍ୟାକ୍ଷରେ ହୋଇଥାନ୍ତା ଲେଖା ।
ଏବେ ମୁହିଁ ସୂତପୁତ୍ର କର୍ଣ୍ଣ,
ହୀନଜାତି ରାଧାର ନନ୍ଦନ
ଦୁର୍ଯ୍ୟୋଧନ ଅନ୍ନରେ ପାଳିତ ।
କ୍ଷମ ମାତଃ, କ୍ଷୁଦ୍ର ଅନୁରୋଧ
ସନ୍ତାନେ ଅଧର୍ମ ମାର୍ଗେ ନ କର ପ୍ରେରିତ ।
କୁନ୍ତୀ— ବିବେକୀ ଧାର୍ମିକ ହୋଇ
କେମନ୍ତେ କାଟିବୁ କହ
ଜନନୀର ସସ୍ନେହ ଆହ୍ୱାନ ?
କର୍ଣ୍ଣ— ଏହି ପୁତ୍ର-ସ୍ନେହ ତୋ'ର
ଏତେ ଦିନ କାହିଁ ଥିଲା ଲୁଚି ?
ପାଣ୍ଡବର ଇଷ୍ଟ ଆଜି ପାଇଁ
ଆସିଅଛ ପାଣ୍ଡବ ଜନନୀ
ଲଦିବାକୁ କର୍ଣ୍ଣ ମୁଣ୍ଡେ କଳଙ୍କ ପସରା ।
ପଞ୍ଚସିଂହ ଜନନୀର
କେଉଁ ଲୋଡ଼ା କର୍ଣ୍ଣ ସହାୟତା ?
କୁନ୍ତୀ— କ୍ଷତ୍ରିୟ ଜନନୀ ମୁହିଁ, କ୍ଷତ୍ରକୁଳ ନାରୀ
ନୁହଇ କାତର ରଣ ଭୟେ,
କିବା ପୁତ୍ର କ୍ଷୟ ଶଙ୍କା କରେ ।
କିନ୍ତୁ ବତ୍ସ, କି କହିବି,
ବୁଝୁ ନାହୁଁ ରମଣୀ ହୃଦୟ
ଜାଣିନାହୁଁ ମାତାର ଅନ୍ତର ;
ସେହି ମାତୃପ୍ରାଣ ମୋର ହେଉଛି ଆକୁଳ
ନିଶ୍ଚିତ ସନ୍ତାନ କ୍ଷୟ ସମ୍ମୁଖେ ନିରେଖି
ଆପଣା ସନ୍ତାନ ହସ୍ତେ ।
କର୍ଣ୍ଣ— ଶୁଣ ଦେବୀ, ଦ୍ୱନ୍ଦ ମୋ'ର ଅର୍ଜ୍ଜୁନ ସଙ୍ଗତେ ।
ଦେଲି ବାକ୍ୟ, ରଣକ୍ଷେତ୍ରେ ସବ୍ୟସାଚୀ ବିନା
ଅନ୍ୟ ପୁତ୍ରଙ୍କର ତବ
କର୍ଣ୍ଣଠାରେ ନାହିଁ ଭୟ ଲବ ।
ଏହି ରଣେ ମାତଃ
କର୍ଣ୍ଣାର୍ଜ୍ଜୁନ ମଧ୍ୟେ ଜଣେ ହୋଇବ ନିପାତ ।
ପଞ୍ଚପୁତ୍ର ଜନନୀ ଗୋ,
ପାଞ୍ଚୋଟି ତନୟ ତୋ'ର
ଚିରଦିନ ରହିବେ ତୋ କୋଳେ ;
ବାକ୍ୟ ମୋର ନୋହିବ ଅନ୍ୟଥା,
ନିଶ୍ଚିନ୍ତେ ଆପଣା ଗୃହେ ଯାଅ ଏବେ ଫେରି ।
କୁନ୍ତୀ— ତନୁଜ ସମକ୍ଷେ ଭିକ୍ଷା ନୁହେ ଲଜ୍ଜାକର ;
ଦାତାପଣେ ଖ୍ୟାତ ନାମ ଯା'ର
ଆଜି ବତ୍ସ, ପ୍ରସୂତି ତାହାର
ମାଗିବ ଗୋଟିଏ ଭିକ୍ଷା
ସେ ଭିକ୍ଷା କି ନୋହିବ ସଫଳ ?

କର୍ଣ୍ଣ— ଅର୍ଜୁନ ଜୀବନ ବିନା
ତୁମ୍ଭଠାରେ ନାହିଁ ମୋର କିଛି
ଅଦେୟ ଜଗତେ,
କହ ଦେବି, କିବା ବାଞ୍ଛା ତବ
ଏହିକ୍ଷଣି ଅର୍ପିବି ଚରଣେ ।
କୁନ୍ତୀ— ନାଗ ବାଣ, ଦ୍ୱିଜ ବାଣ ନାମେ
ମହାବାଣ ବେନି
ଅଛି ବତ୍ସ, ତୋହ ସନ୍ନିଧାନେ ।
ସେହି ଅସ୍ତ୍ର ଦୁଇ
ମାଗୁଣି ମୋହର ।
କର୍ଣ୍ଣ— ( କିଛି କାଳ ନୀରବ ରହି )
ବୁଝିଲି ଗୋ ଅର୍ଜୁନ-ଜନନୀ,
ଆସି ଅଛ ଆଜି
ନେବାକୁ କର୍ଣ୍ଣର ପ୍ରାଣ,
ସେହି ଦୁଇ ଦିବ୍ୟ ଅସ୍ତ୍ର
ଅଟେ ଇନ୍ଦ୍ର ବିଷ୍ଣୁର ସ୍ୱରୂପ
ଲଭିଥିଲି ତୋଷି ବେନି ଦେବେ ।
ଆଜଯାଏ ରଖିଛି ସମ୍ବାଦ,
ଅଛି ସାବଧାନେ
ବଧିବାକୁ ଅର୍ଜୁନେ ସମରେ,
କିନ୍ତୁ ଦେବି !
ବାକ୍ୟଭ୍ରଷ୍ଟ କଦାଚନ କର୍ଣ୍ଣ ନ ହୋଇବ
ଉରୁ ଶର ଏଇକ୍ଷଣି ଅର୍ପିବି ସାମ୍ବକ ।
( ନଖ ଦ୍ୱାରା ଉରୁ ଚିରି ବାଣ ଅର୍ପଣ କଲେ )
ଯାଅ ଏବେ ଫେରି ଦେବି, ପୂର୍ଣ୍ଣ ମନୋରଥେ
ପାର୍ଥ ପ୍ରାଣ ବିନିମୟେ ନେଇ କର୍ଣ୍ଣ ପ୍ରାଣ ।
ପ୍ରସୂତି, ଜନନୀ ହୋଇ,
ବାରି ବାର ଦୁଇ ବାର ତୁହି
ବଧିଲୁ ଆପଣା ପୁତ୍ରେ ସଜ୍ଞାନେ, ସ୍ୱହସ୍ତେ ।
( କୁନ୍ତୀ ନିର୍ଗତା ହେଲେ )
( ସ୍ୱଗତଃ )
ଏ ତ ନୁହେଁ ନାରୀର କୌଶଳ
ଅନ୍ତଃପୁରଚାରିଣୀ ରମଣୀ
କାହୁଁ ସେ କରନ୍ତା ଏହି ଗୁପ୍ତ ମନ୍ତ୍ର ଭେଦ
କର୍ଣ୍ଣର ଜୀବନ ସୂତ୍ର !
କିଏ ସେହି ନୀତି-ବିଶାରଦ !

ଆପଣେ ଅଲକ୍ଷ୍ୟେ ରହି ଚଳାଇଛି କୂଟ ।
ସହଜେ ସମ୍ବାଦ ଦେଲ ଏକ ମୁହୂର୍ତ୍ତରେ
ମହାଧୂର୍ତ୍ତ ଦୁଇ ମହା କାର୍ଯ୍ୟ,
ଅର୍ଜୁନ ଜୀବନ ରକ୍ଷା, କର୍ଣ୍ଣର ବିନାଶ ।
ନ ଚଳିଲା ତୃଣ ପତ୍ର,
ନ ଟଳିଲା ସୃଷ୍ଟି ବାଲୁକଣା
ନ ଜାଣିଲା ସର୍ବବ୍ୟାପୀ ନିଜେ ସମୀରଣ ।
ଓଃ ! ପୁଣି ଏକ ଅନଳ ପରୀକ୍ଷା
ସୂତପୁତ୍ର ହୃଦୟର !
ହେଉ, ହେଉ
ଯେତେ ଇଚ୍ଛା ଯାହା ହେବ ହେଉ,
ଯାହା ଯିବ ଯାଉ
କର୍ଣ୍ଣର ଜୀବନ ଥାଉଁ
ପ୍ରତ୍ୟାଖ୍ୟାତ ନୋହିବ ଯାଚକ ।
ସତ୍ୟ ପଥୁଁ ନୋହିବ ସ୍ଖଳିତ,
ଟଳେ ବିଚଳିତ
ତ୍ୟାଗମାର୍ଗୁଁ ନୋହିବ ବିଧେୟ ।
( ଛଦ୍ମ ବେଶୀ ଇନ୍ଦ୍ର ବ୍ରାହ୍ମଣ ବେଶରେ ପ୍ରବିଷ୍ଟ ହେଲେ )
ଇନ୍ଦ୍ର— ଆଜି ଦିନ ସୁପ୍ରଭାତ ମୋର,
ହୋଇଛି ଦର୍ଶନ ଆଜି
ଦିବାକର ଅର୍ଚ୍ଚନା ନିରତ
ପୁଣ୍ୟଶ୍ଳୋକ ଅଙ୍ଗ ଅଧିପତି ।
ଦ୍ୱାରୁଁ ଯାର ନ ଫେରଇ ନିରାଶେ ଅତିଥି,
ଏତେ ଦିନେ ହେବ ପରା ଦୀନ ବ୍ରାହ୍ମଣର
ଦାରିଦ୍ର୍ୟ ମୋଚନ
ଦାତା କର୍ଣ୍ଣ ଅନୁଗ୍ରହେ ।
କର୍ଣ୍ଣ— କହ ଦ୍ୱିଜବର,
ଚରଣ କିଙ୍କରଠାରେ କି ଭିକ୍ଷା ତୁମ୍ଭର;
ଶିରୋଧାର୍ଯ୍ୟ ମୋର
ବ୍ରାହ୍ମଣ ଆଦେଶ ସଦା ।
ଇନ୍ଦ୍ର— ଆଜି ଯଦି ପୂରାଇବ ବ୍ରାହ୍ମଣ ପ୍ରାର୍ଥନା,
ଜଣାଯିବ ଯିନା
ସତ୍ୟ ମିଥ୍ୟା ଦାତା ନାମ ତବ !
କର୍ଣ୍ଣ— ବ୍ରାହ୍ମଣଙ୍କୁ ନାହିଁ କିଛି ଅଦେୟ କର୍ଣ୍ଣର ।
କହ ବିପ୍ରବର, ଇପ୍‌ସିତ ତୁମ୍ଭର,
ପୂରାଇବ ପ୍ରାଣ ଦାନେ ତାହା ।

ଇନ୍ଦ୍ର— ଦିଅ ତେବେ କର୍ଣ୍ଣ ! ଫେଡ଼ି କୁଣ୍ଡଳ ଯୁଗଳ,
ଅଙ୍ଗ ଛେଦି ଅକ୍ଷୟ କବଚ ।
ମନୋରଥ ଅଙ୍ଗେଶ୍ୱର
ତୀର୍ଥକୂଳେ କରିଛୁ ପ୍ରତିଜ୍ଞା ।
ନାହିଁ କେହି ଆମ୍ଭ ଦୁହେଁ ବିନା;
ଦେଖ ବୀର, ପ୍ରାଚୀ ଭାଲ ପଟେ
ତରୁଣ ଅରୁଣ ଏକା
ସାକ୍ଷୀରୂପେ ରହିଛନ୍ତି ଚାହିଁ ।
କର୍ଣ୍ଣ— ଶେଷ ଏବେ ଦିନେ
କର୍ଣ୍ଣର ସଂସାର ଖେଳ ।
ଉଦ୍‌ବେଳ ତରଙ୍ଗାକୁଳ
ମୃତ୍ୟୁ-ସିନ୍ଧୁ ଆସୁ ଅଛି ମାଡ଼ି;
ଆସିଲାଣି ଶମନର ସ୍ନେହ ନିମନ୍ତ୍ରଣ,
ଅକାରଣ
କହାଁ କ୍ଷୋଭ ଆଉ ।
ଜୀବନର ସନ୍ଧ୍ୟାକାଳେ କହାଁ ଲୋଭ ପୁଣି !
ଯାଉ, ଯାଉ — ସବୁ ଯାଉ,
ଥାଉ ଏକା ଧର୍ମ ପୁରୁଷର ।
ଜୀବନରେ ଜାଣି ନାହିଁ କେବେ
ଦୈନ୍ୟ, କାତରତା;
ଆଜି ଏ ମରଣ ପଥେ
ହେବ କର୍ଣ୍ଣ ଆତ୍ମ-ଧର୍ମତ୍ୟାଗୀ ?
ଦେଖାଇବ ପ୍ରାର୍ଥୀରେ ଦୀନତା ?
ନାହିଁ, ନାହିଁ, ଏ ଜୀବନେ ନୁହେଁ ।
ଇନ୍ଦ୍ର— କହ ନରନାଥ,
ବ୍ରାହ୍ମଣ କି ହୋଇବ ବଞ୍ଚିତ,
ବ୍ୟର୍ଥ ହେବ ବାକ୍ୟ ଦାନ ତବ ?
କର୍ଣ୍ଣ— ଯଦ୍ୟପି ଉଇଁବ ଭାନୁ ପଶ୍ଚିମ ଆକାଶେ,
ଦ୍ରବିଯିବ ହିମାଦ୍ରି ଶିଖର
ପାରାବାରୁ ଶୁଷ୍କ ହେବ ନୀର
କର୍ଣ୍ଣ ବାକ୍ୟ ନୋହିବ ଅନ୍ୟଥା ।
ଚିନ୍ତା ପରିହର,
ଏହି ମାତ୍ର ପୂରାଇବି ପ୍ରାର୍ଥନା ତୁମ୍ଭର ।
କିନ୍ତୁ ଦ୍ୱିଜବର,
କହ ମୋତେ କେଉଁ ଦେବ ତୁମ୍ଭେ ?
ଆସିଛ କପଟ ବେଶେ
ଛଳନା ଉଦ୍ଦେଶ୍ୟ
ରଖିବାକୁ କର୍ଣ୍ଣେ ବଧି ଅର୍ଜ୍ଜୁନ ଜୀବନ ?
ଇନ୍ଦ୍ର— ଇନ୍ଦ୍ର ମୁହିଁ, ସ୍ୱର୍ଗ ଅଧୀଶ୍ୱର,
ଭିକ୍ଷାର୍ଥୀ ତୁମ୍ଭର ଦ୍ୱାରେ;
ଅଛି ପ୍ରୟୋଜନ
କର ଦାନ କବଚ କୁଣ୍ଡଳ ।
କର୍ଣ୍ଣ— ବୁଝିଛି ମୁଁ ପ୍ରୟୋଜନ ତବ
ଅର୍ଜ୍ଜୁନ ଜନକ;
କିନ୍ତୁ ଦେବ, ମନେ ହୁଏ ଖେଦ
ନିଷ୍ଠୁର କୁଟିଳାଗ୍ରେ ଆତ୍ମପର ଭେଦ
ଶୋଭିବ କି ଦେବବକ୍ଷରେ ?
ଛିଦ୍ର କରି ଛଳ ଅବହେଳେ
ଅର୍ଜ୍ଜିବ କି ଭୂମଣ୍ଡଳେ
ଅମରେନ୍ଦ୍ର ଅମର କୀରତି ?
ସୁନାସୀର, ପୂଜାକାଳେ ଅପ୍ରସ୍ତୁତ ମୁହିଁ
କେମନ୍ତେ ଛେଦିବି ଏବେ
ସହଜାତ କବଚ ଶରୀରୁଁ ?
ଇନ୍ଦ୍ର—ତବ ପ୍ରୟୋଜନ ଜାଣି
ଆଣିଛି ମୁଁ ଶାଣିତ ଛୁରିକା ।
(ଛୁରି ଦେଖାଇଲେ)
ଇନ୍ଦ୍ରବରେ ନ ଜାଣିବ ଛେଦନ ବେଦନା ।
ଅକ୍ଷୁଣ୍ଣ ଶରୀରେ କର୍ଣ୍ଣ
ପୂର୍ବ କାନ୍ତି ଲଭିବ ଅଚିରେ ।
ପ୍ରତିଦାନ ବିନା ବୀର, ଦାନର ଗ୍ରହଣ
ଦେବଯୋଗ୍ୟ ନୁହେଁ ବ୍ୟବହାର;
ବୀରବର, ଇଷ୍ଟବର କର ହେ ପ୍ରାର୍ଥନା ।
କର୍ଣ୍ଣ—ଅର୍ଜ୍ଜୁନ ବିନାଶ ଛଡ଼ା ଅନ୍ୟ ଅଭିଳାଷ
ନାହିଁ ଦେବ, କର୍ଣ୍ଣର ଅନ୍ତରେ,
ହେଲାଣି ମୋ ଆଶା ଏବେ ଆକାଶ କୁସୁମ ।
ତେବେ ଯଦି ବଜ୍ରଧର
ଆପଣାର ବାକ୍ୟ ରକ୍ଷା କରିବ ନିଶ୍ଚୟ
ବଜ୍ରାୟୁଧ କର ମୋତେ ଦାନ ।
ଇନ୍ଦ୍ର— ଏକା ବଜ୍ରଧର ବିନା
ଅନ୍ୟ ଜନ ନୋହିବ ସକ୍ଷମ
ଧରିବାକୁ ସେହି ମହାୟୁଧ ।
ଦେବି ମୁହିଁ ବଜ୍ର ବିନିମୟେ

ବଜ୍ର ସମ ବଳବନ୍ତ ଶତ୍ରୁ ସଂହାରଣୀ
ମହାଶକ୍ତି ଏକାଘ୍ନୀ ନାମିକା ।

**କର୍ଣ୍ଣ—** (ଛୁରିକା ଗ୍ରହଣ କରି)
ଏବେ ନିଜ ଅଙ୍ଗ ଛେଦି ତୁମ୍ଭରି ସାକ୍ଷାତେ
ହୃଷ୍ଟ ଚିତ୍ତେ,
ଇଷ୍ଟ ମହାବ୍ରତେ
କର୍ଣ୍ଣ ଆଜ ଦେବ ପୂର୍ଣ୍ଣାହୁତି ।
(ଅଙ୍ଗ ଛେଦିବାକୁ ପ୍ରସ୍ତୁତ ହେଲେ)

## ପଞ୍ଚମ ଦୃଶ୍ୟ

( ସ୍ଥାନ---ପାଣ୍ଡବ ଶିବିର । ଯୁଧିଷ୍ଠିର ପ୍ରବେଶ ହେଲେ )

**ଯୁଧିଷ୍ଠିର—** ଭୀମସେନ, ଶ୍ରୀକୃଷ୍ଣଙ୍କର ହସ୍ତିନାରୁ ଫେରିବାକୁ ଏତେ ବିଳମ୍ବ ହେଉଛି କାହିଁକି ?

**ଭୀମ —** ବିଳମ୍ବ ତ ହେବାର କଥା । ଯେ ଜନ ଭିଖାରୀ ବେଶରେ ଅନୁଗ୍ରହପ୍ରାର୍ଥୀ ହୋଇ ଶତ୍ରୁର ଦ୍ୱାରସ୍ଥ ହୁଏ ତା'ର ବିଳମ୍ବ ନ ହୋଇ ଆଉ କ'ଣ ହେବ ? ହସ୍ତିନାର ଚିତ୍ର ମୋ ଆଖି ଆଗରେ ନାଚି ଯାଉଛି । କୃଷ୍ଣ ସନ୍ଧି ଭିକ୍ଷା କରି କରଯୋଡ଼ି ଛିଡ଼ା ହୋଇଛନ୍ତି । ଶକୁନି ଓ ଦୁଃଶାସନ ହସି ଗଡ଼ୁଛନ୍ତି । ଆଉ ଦୁର୍ଯ୍ୟୋଧନ—ଦୁର୍ଯ୍ୟୋଧନ ମୁରୁକି ହସା ଦେଇ ଅନ୍ୟ ଆଡ଼କୁ ଚାହିଁ ମୁଣ୍ଡ ହଲଉଛନ୍ତି । ଏହି ଅଭିନୟ ଦେଖାଇ ପାଣ୍ଡବମାନଙ୍କୁ ଗୌରବହୀନ କରିବା ପାଇଁ ଶ୍ରୀକୃଷ୍ଣ ସିନା ହସ୍ତିନାକୁ ଯାଇ ଅଛନ୍ତି !

**ଯୁଧିଷ୍ଠିର—** ଗୌରବ ହାନି ନୁହେଁ ଭୀମସେନ ଗୌରବ ବୃଦ୍ଧି । ନିଜେ ବଳବାନ୍ ବୀର୍ଯ୍ୟବାନ୍ ହୋଇ ସୁଦ୍ଧା କେବଳ ଧର୍ମ ଅନୁରୋଧରେ ବୃଥା ଲୋକକ୍ଷୟ, ଭ୍ରାତୃବିରୋଧ ନିବାରଣ ପାଇଁ ସନ୍ଧି ପ୍ରସ୍ତାବ କରିବା କ'ଣ ପାଣ୍ଡୁଙ୍କର ମହତ୍ତ୍ୱ ନୁହେଁ ?

**ଭୀମ —** ଧର୍ମାଧର୍ମ ମୁଁ କିଛି ଜାଣେ ନାହିଁ । ମୁଁ ଜାଣେ ଯେ କ୍ଷତ୍ରିୟର ଏକମାତ୍ର ଧର୍ମ ଯୁଦ୍ଧ । କ୍ଷମା କରିବେ ମହାରାଜ, ଆପଣ ଯେପରି ଧର୍ମ-ଭୀରୁ କୃଷ୍ଣ ସେହିପରି ରଣଭୀରୁ ।

**ଯୁଧିଷ୍ଠିର—** ସ୍ଥିର ହୁଅ ଭାଇ, କେବଳ ପାଶବିକ ବଳରେ ଇଷ୍ଟସିଦ୍ଧି କିମ୍ବା ଧର୍ମରକ୍ଷା ହୁଏ ନାହିଁ । ଆମ୍ଭମାନଙ୍କର ସନ୍ଧି ପ୍ରସ୍ତାବ ଯଦି ଦୁର୍ଯ୍ୟୋଧନ ଅଗ୍ରାହ୍ୟ କରନ୍ତି ତେବେ ଧର୍ମତଃ ନ୍ୟାୟ ପାଣ୍ଡବ ପକ୍ଷରେ ରହିବ । ତଦ୍ଦ୍ୱାରା ପାଣ୍ଡୁଙ୍କର ଶକ୍ତି କେତେଗୁଣ ବୃଦ୍ଧି ପାଇବ ତାହା ଜାଣ କି ଭୀମସେନ ?

**ଭୀମ—** ଭାଇ, ସ୍ଥୂଳବୁଦ୍ଧି ଭୀମସେନ କିଛି ବୁଝେ ନାହିଁ । ତେବେ ସେ ଏତିକି ବୁଝେ ଯେ ଶ୍ରୀକୃଷ୍ଣ ଯାହାର ସହାୟ ତାହାର ଶକ୍ତି ଅସୀମ । କୃଷ୍ଣ ଏକା ପାଣ୍ଡବର ଧର୍ମ, କୃଷ୍ଣ ଏକା ପାଣ୍ଡବର ଗତି ।

**ଯୁଧିଷ୍ଠିର—** ଭାଇରେ, କୃଷ୍ଣଙ୍କୁ ଏକା ଚିହ୍ନିଛୁ । କୃଷ୍ଣର ମର୍ମ ତୁହି ଏକା ବୁଝିଛୁ । ତୁ ଭାଗ୍ୟବାନ । କିନ୍ତୁ ସଂସାରରେ ରହିବାକୁ ହେଲେ ସଂସାରକୁ ଚାହିଁ ଚାଲିବାକୁ ହେବ । ଆମ୍ଭେମାନେ ଯଦି ଅଧର୍ମକୁ ଆଶ୍ରୟ କରିବୁଁ ତେବେ ସେହି ପରମ ପୁରୁଷର ସହାୟତା ଲାଭ କରି ପାରିବୁ କିପରି ?

( ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ପ୍ରବେଶ ହେଲେ )

**ଶ୍ରୀକୃଷ୍ଣ—** ସ୍ୱୟଂ ଧର୍ମରାଜ ଯଦି ଅଧର୍ମର ଆଶ୍ରୟ କରିବେ ତେବେ ଜଗତରେ ଧର୍ମ ସ୍ଥାପନ କରିବ କିଏ ?

**ଯୁଧିଷ୍ଠିର—** ଚିନ୍ତାମଣି, ଯୁଧିଷ୍ଠିରର ସକଳ ଧର୍ମ ତୋହର ରଙ୍ଗା ଚରଣ । ହସ୍ତିନାର ସମ୍ବାଦ କ'ଣ ?

**ଶ୍ରୀକୃଷ୍ଣ—** ହସ୍ତିନାର ସମ୍ବାଦ ଆଉ କ'ଣ ଧର୍ମରାଜ ! କାଳ ଯାହାର ପୂର୍ଣ୍ଣ ହୁଏ ତାହାର ଅନ୍ୟ ଗତି କ'ଣ ହୋଇପାରେ ? ଯୁଦ୍ଧ ନିଶ୍ଚିତ—ବିନା ଯୁଦ୍ଧରେ ଦୁର୍ଯ୍ୟୋଧନ ସୂଚ୍ୟଗ୍ର ମେଦିନୀ ଦେବାକୁ ଅସ୍ୱୀକୃତ ।

**ଭୀମ —** କୌଶଳ, ତୋର କୌଶଳ ବୁଝିବାର ସାଧ କାହାର ?

**ଶ୍ରୀକୃଷ୍ଣ—** ନାହିଁ ମଧ୍ୟମ ପାଣ୍ଡବ, ମୁଁ ସାଧ୍ୟମତ ଚେଷ୍ଟା କଲି; କିନ୍ତୁ ମୋର ଯୁକ୍ତି ବିଫଳ ହେଲା ।

**ଯୁଧିଷ୍ଠିର—** ବିଦୁରାଳୟରେ ଜନନୀଙ୍କର ସାକ୍ଷାତ ହୋଇଥିଲା ତ ?

**ଶ୍ରୀକୃଷ୍ଣ—** ହୋଇଥିଲା ଧର୍ମରାଜ ।

**ଯୁଧିଷ୍ଠିର—** ସେ କିପରି ଅଛନ୍ତି ? ଆଉ ଏ ଯୁଦ୍ଧ କଥା ଶୁଣି ମା କ'ଣ କହିଲେ ?

**ଶ୍ରୀକୃଷ୍ଣ—** ବୀର ଜନନୀ, କ୍ଷତ୍ରିୟ ରମଣୀର ଯାହା କହିବା ଉଚିତ ତାହାହିଁ କହିଲେ । ପ୍ରଥମେ ସନ୍ଧି ପ୍ରସ୍ତାବ ଶୁଣି ଆପଣ-ମାନଙ୍କୁ ଧିକ୍କାର ଦେଇଥିଲେ, ପୁଣି ଯୁଦ୍ଧ ହେବା ନିଶ୍ଚୟ ଜାଣି ଏହା କହି ଅଛନ୍ତି ଯେ— ମୋର ପୁତ୍ରମାନଙ୍କୁ କହିବ ଯେ ସେମାନେ ଯେପରି ଶତ୍ରୁର ଶୋଣିତ ଚିତା ନ ଦେଇ ମୋର ଚରଣ ବନ୍ଦନ କରିବାକୁ ନ ଆସନ୍ତି ।

( ଭୀମ ଓ ଅର୍ଜ୍ଜୁନଙ୍କର ଅସି କମ୍ପିତ ହେଲା )

**ଯୁଧିଷ୍ଠିର—** ଭୀମସେନ ଆଉ ବିଳମ୍ବ କି ହେତୁ ? ଯାଅ ଭାଇ, ସମରଆୟୋଜନ ଶେଷ କର । ମୁଁ ଯାଇ ଦ୍ରୌପଦୀଙ୍କୁ ଏ ଶୁଭ ସମ୍ବାଦ ଶୁଣାଇ ଦିଏଁ । ଅର୍ଜ୍ଜୁନ, ତୁମ୍ଭେ ପଥଶ୍ରାନ୍ତ କେଶବଙ୍କୁ ବିଶ୍ରାମାଗାରକୁ ନେଇଯାଅ । (ନିର୍ଗତ ହେଲେ)

**କୃଷ୍ଣ—** ସଖେ, ତୁମ୍ଭେ ଏତେବେଳ ଯାକେ ମାନବ କି ହେତୁ ?
( ଅର୍ଜ୍ଜୁନଙ୍କ ମୁଖ ନିରୀକ୍ଷଣ କରି ) ଓଃ, ଚିନ୍ତା—ଚିନ୍ତା, ବୀରେନ୍ଦ୍ର ସମ୍ମୁଖରେ କର୍ମକ୍ଷେତ୍ର—ଜ୍ୱଳନ୍ତ, ଜୀବନ୍ତ, ବିଶାଳ, ଏତେବେଳେ ତ ଚିନ୍ତାର ସମୟ ନୁହେଁ ସଖା ?

**ଅର୍ଜ୍ଜୁନ—** ସତ ଅନୁମାନ କରିଛ ସଖେ ! ଏହି ମହାରଣ ଯେତେ ସନ୍ନିକଟ ହେଉଛି ମୋର ପ୍ରାଣର ଆକୁଳତା ସେତେ ବୃଦ୍ଧି ପାଉଛି ।

**ଶ୍ରୀକୃଷ୍ଣ—** କି ଆଶ୍ଚର୍ଯ୍ୟ, ତୁମ୍ଭପରି ଦିଗ୍‌ବିଜୟୀ ବୀର ପକ୍ଷରେ ଏହି ସମୟରେ ଏପରି କାତରତା ନିନ୍ଦନୀୟ ନୁହେଁ କି ? ଉଠ, ଉଠ ବୀରବର, ଏହି କ୍ଳୈବ୍ୟ ପରିହାର କର ।

**ଅର୍ଜ୍ଜୁନ—** କ୍ଳୈବ୍ୟ ନୁହେଁ ସଖେ, କିନ୍ତୁ ହେ ମୁରାରି, ଅର୍ଜ୍ଜୁନର ଅସ୍ତ୍ର ଶିକ୍ଷାର ପରୀକ୍ଷାର ସ୍ଥଳ କଣ ପିତାମହ ଭୀଷ୍ମ ଓ ଗୁରୁ ଦ୍ରୋଣଙ୍କ ବକ୍ଷସ୍ଥଳ ? ନାହିଁ ସଖେ, ଏ ବୀରତ୍ୱରେ ମୋର ପ୍ରୟୋଜନ ନାହିଁ । କୌରବ ଓ ପାଣ୍ଡବ ମଧ୍ୟରେ ଯେଉଁ ପବିତ୍ର ଶୋଣିତପ୍ରବାହ ଅଛି ତାହା ଲଙ୍ଘନ କରିବି ନାହିଁ ।

**ଶ୍ରୀକୃଷ୍ଣ—** ଏ ଧର୍ମଜ୍ଞାନ କେବେ ଅର୍ଜ୍ଜୁନ ଲାଭ କଲ ? ଭୁଲିଗଲ ମଧ୍ୟମ ପାଣ୍ଡବ ! ସମ୍ମୁଖ ସମରରେ ଶତ୍ରୁ ବିନାଶ କ୍ଷତ୍ରିୟର ପ୍ରଧାନ ଧର୍ମ ? ମନେ ପଡ଼ୁଛି କି ଅସ୍ତ୍ର ପରୀକ୍ଷା କାଳରେ ତୁମ୍ଭ ପ୍ରତି ଦୁର୍ଯ୍ୟୋଧନର ଈର୍ଷା ? ମନେ ପଡ଼ୁଛି କି ଜତୁ-ଗୃହଦାହ ପରେ ଅନାଥିନୀ ଜନନୀ ସଙ୍ଗରେ ଦ୍ୱାରେ ଦ୍ୱାରେ ପଞ୍ଚଭାଇଙ୍କର ଭିକ୍ଷାବୃତ୍ତି ? ମନେ ପଡ଼େ କି ଦ୍ରୌପଦୀର ସ୍ୱୟଂମ୍ବର ? ସବୁ ଶେଷରେ, ମନେ ପଡ଼େ କି କୁରୁ ସଭାରେ ଦ୍ୟୂତ କ୍ରୀଡ଼ା ? ପଞ୍ଚପତି ସମ୍ମୁଖରେ ଏକବସ୍ତ୍ରା ଅସହାୟା ରମଣୀ ମୂର୍ତ୍ତି ? ଭୀଷ୍ମ ଦ୍ରୋଣ ସେଠାରେ ଉପସ୍ଥିତ ଥାଇ କୁଳବଧୂର ଅପମାନ ଦେଖିଥିଲେ ତ ? ପୁରୁଷ ହୋଇ କେମନ୍ତେ ପାସୋରିଲ ପାର୍ଥ, କର୍ଣ୍ଣର ବିନାଶ ପାଇଁ ତୁମ୍ଭର ପ୍ରତିଜ୍ଞା ।

**ଅର୍ଜ୍ଜୁନ—** କ୍ଷମା କର—କ୍ଷମାକର, କୃଷ୍ଣ ! ମୁଁ ବୁଦ୍ଧିଭ୍ରଷ୍ଟ ହୋଇ କି କ୍ଷଣିକ ମୋହରେ ଅଭିଭୂତ ହୋଇଥିଲି । ଏବେ ଦିବ୍ୟ ନେତ୍ରରେ ଦେଖି ପାରୁଛି ଅର୍ଜ୍ଜୁନ ଜୀବନର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ କୁରୁବଂଶର ସମୂଳ ସଂହାର, ଆଉ ପଶୁ ତୁଲ୍ୟ ସୂତ-ପୁତ୍ରର ବିନାଶ । ଏ ଉଦ୍ଦେଶ୍ୟ, ଏ କର୍ତ୍ତବ୍ୟ ସିଦ୍ଧ ନ ହେଲେ ଅର୍ଜ୍ଜୁନର ବୀରତ୍ୱ ବୃଥା ଅର୍ଜ୍ଜୁନର କର୍ତ୍ତବ୍ୟ ବୃଥା ।

**ଶ୍ରୀକୃଷ୍ଣ—** ଆତ୍ମହରା ହୁଅ ନାହିଁ ପାର୍ଥ ! ଯେଉଁଦିନ ମହାସତୀର ଅବମାନନା ହୋଇଛି, ସେହି ଦିନ କୁରୁକୁଳ ବିନଷ୍ଟ ହୋଇ ସାରିଛି । ଏବେ ତୁମ୍ଭେ କେବଳ ନିମିତ୍ତ ମାତ୍ର ହୋଇ ଆପଣାର ଧର୍ମ ପାଳନ କର । ଆସ ବୀର, ଶତ୍ରୁ ନିପାତ କରି ସସାଗରା ବସୁନ୍ଧରା ଭୋଗ କର । କିମ୍ବା ସମ୍ମୁଖ ସମରରେ ପ୍ରାଣପାତ କରି ଅନନ୍ତ ସ୍ୱର୍ଗ ଲାଭ କର । ଦେଖ, ଦେଖ ତୁମ୍ଭର କରସ୍ଥିତ ଗାଣ୍ଡୀବ ଆସ୍ଫାଳନ କରି ଉଠିଲାଣି, ଅକ୍ଷୟ ତୂଣୀର ମଧ୍ୟରେ ନିଷିତଗଣ ଅରାତି ଶୋଣିତ ପାନ ଆଶାରେ ପ୍ରକମ୍ପିତ ହେଲେଣି । ତାଳଦଣ୍ଡ ସଦୃଶ ତୁମ୍ଭର ବିଶାଳ ବାହୁଦ୍ୱୟ ସ୍ପନ୍ଦିତ ହେଲେଣି ।

( ଏହା କହୁଁ କହୁଁ ଅର୍ଜ୍ଜୁନର ବାହୁ ଧରି ଶ୍ରୀକୃଷ୍ଣ ପ୍ରସ୍ଥାନ କଲେ )

## ଷଷ୍ଠ ଦୃଶ୍ୟ

( ସ୍ଥାନ—କୌରବ ଶିବିର ; ଦୁର୍ଯ୍ୟୋଧନ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶକୁନି, ଦୁଃଶାସନ ଓ ଶଲ୍ୟ )

ଦୁର୍ଯ୍ୟୋଧନ—ପିତାମହ,
କାଲି ପ୍ରାତେ ହୋଇବ ସମର ;
ବୀରବୃନ୍ଦ ସଂଗ୍ରାମ ଉନ୍ମୁଖୀ
ରହିଛନ୍ତି ହୋଇ ସମ୍ମୁଖୀନ ।
କୁରୁକ୍ଷେତ୍ର ପ୍ରାନ୍ତେ—
ଅବିଶ୍ରାନ୍ତ ଶୁଭୁଛି ହୁଙ୍କାର
ବାରବାର ଅସ୍ତ୍ର ଝନତ୍କାର
ପ୍ରତିଧ୍ୱନି ତା'ର
ଗର୍ଜିଉଠେ ଶୂନ୍ୟ ନଭୋସ୍ଥଳେ ।
ଅଶ୍ୱ, ଗଜ, ରଥ ଆଦି ଅଗଣ୍ୟ ପଦାତି
ବିଶାଳ କୌରବ ଚମୂ
ଉଦଗ୍ରୀବେ ଅଛନ୍ତି ଟାକି ନାୟକ ଆଦେଶ ।

ଶକୁନି—ଆମର ଏତେ ମହାବୀର ଥାଉଁ ଥାଉଁ ନାୟକର ଅଭାବ କଣ ? ମହାରାଜ ଜଣେ କାହାରିକୁ ସେନାପତି ପଦରେ ବରଣ କରିଦେଲେ ହେଲା । କେହି ତ କାହାରିକୁ ଊଣା ନୁହନ୍ତି ।

ଶଲ୍ୟ— ତେବେ ମହାବୀର ଦ୍ରୋଣ ସେନାପତି ହୁଅନ୍ତୁ ।
ସେ ବର୍ଣ୍ଣଶ୍ରେଷ୍ଠ ବ୍ରାହ୍ମଣ ; ଏରୂପ ସମ୍ମାନ ତାଙ୍କର ସର୍ବାଗ୍ରେ ପ୍ରାପ୍ୟ ।

ଶକୁନି—ଆହା, ମହାରାଜାଙ୍କର କି ବୁଦ୍ଧି ! ଯୁଦ୍ଧ କ୍ଷେତ୍ରରେ ନେତା ହେବାଟା ଗୋଟାଏ ସମ୍ମାନ ସତ ; କିନ୍ତୁ ସେଉଟା

କ୍ଷତ୍ରିୟଙ୍କୁ ଶୋଭା ପାଏ । ବ୍ରାହ୍ମଣ ପକ୍ଷରେ ବରଂ ସେପରି ସମ୍ମାନ ଅପମାନ । ଏ ତ ସଙ୍ଗ କମ୍ପା ଶ୍ରାଦ୍ଧ ନୁହେଁ । ଏବେ ଦ୍ରୋଣ ଆପଣାର କୁଳ ଧର୍ମ ଛାଡ଼ି କ୍ଷତ୍ରିୟ ବ୍ୟବସାୟରେ ହାତ ଦେଇ ଅଛନ୍ତି ବୋଲି ଯେଉଁ କଥା ସେଥିରେ ପୁଣି କୁରୁକ୍ଷେତ୍ର ମହାରଣରେ ସେନାପତି ପଦଟା ପାଇଲେ ବ୍ରାହ୍ମଣ ସମାଜରେ ତାଙ୍କ ଯଶ ଅକ୍ଷୟ ହୋଇ ରହିବ ଏକା ।

ଦୁର୍ଯ୍ୟୋଧନ—ତୁମ୍ଭେ କ'ଣ କହୁଛ ମାତୁଳ ?

ଶକୁନି—ମୁଁ ତ ଅତି ସହଜ କଥାଟାଏ କହୁଛି । କ'ଣ କି କୁଶବଟି ଧରିବା ହାତରେ ବ୍ରାହ୍ମଣଙ୍କୁ ତ ଧନୁ ଧରାଇଲ । ପୁଣି ସେନାପତି କରାଇ ପରକାଳଟା ନଷ୍ଟ କରାଇବା ପାଇଁ ଏତେ ଉଦ୍‌ବ୍ୟଗ୍ର କାହିଁକି ଦୁର୍ଯ୍ୟୋଧନ ? ଏଉଟା କ'ଣ ଗୁରୁ ଦକ୍ଷିଣା ?

ଦ୍ରୋଣ—ଦୁର୍ଯ୍ୟୋଧନ ଗାନ୍ଧାରରାଜ ସତ୍ୟ କହୁଛନ୍ତି । ମହାତ୍ମା କୁରୁ-ବୃଦ୍ଧ ଭୀଷ୍ମଦେବଙ୍କୁ ଏ ପଦ ଶୋଭା ପାଇବ ।

ଶକୁନି—ଠିକ୍, ଠିକ୍ । ସେହି ହେଲେ କୁରୁବଂଶରେ ସମସ୍ତଙ୍କଠାରୁ ବଡ଼ । ତେବେ ଆଗେ ତାଙ୍କର ଠାରୁ ଆରମ୍ଭ ହୋଇ ଆସୁ ।

ଦୁର୍ଯ୍ୟୋଧନ—ସମସ୍ତଙ୍କର ଏଥିରେ ସମ୍ମତି ଅଛି ତ ?

ଶକୁନି—ଏଥିରେ କାହାର ସମ୍ମତି ଅସମ୍ମତିରେ ପ୍ରୟୋଜନ କ'ଣ ? ତୁମ୍ଭେ ତ ମାଲିକ । ତୁମ୍ଭର ହାତରୁ ଖଣ୍ଡେ ଶିରୋପା ପାଇଲେ ହେଲା ।

ଦୁର୍ଯ୍ୟୋଧନ—ପିତାମହ, କୌରବ ପ୍ରଧାନ
କୃପାକରି ହୁଅନ୍ତୁ ଏ ରଣ ପାରିବାରେ
କର୍ଣ୍ଣଧାର କୌରବ ପକ୍ଷର ।

ସକଳେ—ଜୟ ସେନାପତି ଭୀଷ୍ମଦେବଙ୍କର ଜୟ ।
ଜୟ ମହାରାଜ ଦୁର୍ଯ୍ୟୋଧନଙ୍କର ଜୟ ।

ଦୁର୍ଯ୍ୟୋଧନ—ପିତାମହ କରନ୍ତୁ ନିର୍ଣ୍ଣୟ
କୁରୁ କ୍ଷେତ୍ରେ ସମବେତ ଯୋଦ୍ଧୃବୃନ୍ଦ ମଧ୍ୟେ
ବଳାବଳ ଉଭୟ ପକ୍ଷର ।

ଶକୁନି—ଯୁଦ୍ଧ ପୂର୍ବରୁ ଶତ୍ରୁପକ୍ଷ ଓ ମିତ୍ରପକ୍ଷ ଉଭୟଙ୍କର ବଳାବଳ ନିର୍ଦ୍ଧାରଣ କରି ସାରି ତେବେ କର୍ମ କ୍ଷେତ୍ରରେ ଅବତୀର୍ଣ୍ଣ ହେବା ଉଚିତ । ଆଉ ସେହିଟା ସେନାପତିଙ୍କର କର୍ତ୍ତବ୍ୟ ।

ଦୁର୍ଯ୍ୟୋଧନ—କୃପା କରି କହ ପିତାମହ ।

ଭୀଷ୍ମ—ଉଭୟ ପକ୍ଷରେ ଅଷ୍ଟାଦଶ ଅକ୍ଷୌହିଣୀ ଓ କୌରବ ପକ୍ଷରେ ଏକାଦଶ ।

ଶକୁନି—ଏଥର ସଂଖ୍ୟା କରନ୍ତୁ ।

ଭୀଷ୍ମ—କୌରବ ସେନାରେ ଅତି ରଥ ଦୁଇ ଜଣ ।

ଶକୁନି—ଓଃ, ବୁଝିଲି, ବୁଝିଲି, ଦ୍ରୋଣ ଓ ଭୀଷ୍ମ ।

ଭୀଷ୍ମ—ପାଣ୍ଡବ ସେନାରେ ଅତିରଥ ଅର୍ଜ୍ଜୁନ ଏକାକୀ । କୌରବ ସେନାରେ ମହାରଥ ଦୁର୍ଯ୍ୟୋଧନ, ଦୁଃଶାସନ, ଶଲ୍ୟ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ସୋମଦତ୍ତ, ଭୂରିଶ୍ରବା ଓ ଜୟଦ୍ରଥ । ପାଣ୍ଡବ ସେନାରେ ଧୃଷ୍ଟଦ୍ୟୁମ୍ନ, ଦ୍ରୁପଦ, ବିରାଟ, ଅଭିମନ୍ୟୁ, ଦ୍ରୌପଦୀଙ୍କର ପଞ୍ଚପୁତ୍ର, ଭୀମାଦି ଚାରିଭ୍ରାତା, ଘଟୋତ୍କଚ ଓ ସାତ୍ୟକି ।

ଶକୁନି—ବାକି ଯେ ରହିଲେ—

ଭୀଷ୍ମ—ବାକି ଯେ ରହିଲେ ସେମାନେ କେହି ରଥୀ ବା ଅର୍ଦ୍ଧରଥୀ—

ଶକୁନି—ଆପଣ ବୋଧହୁଏ ଭ୍ରମରେ ଅଙ୍ଗପତି କର୍ଣ୍ଣଙ୍କ ନାମ ଛାଡ଼ି ଗଲେ ।

ଭୀଷ୍ମ—ନା, ଭ୍ରମରେ ଛାଡ଼ି ନାହିଁ । କର୍ଣ୍ଣ ତ ଏମାନଙ୍କ ମଧ୍ୟରେ ଗଣ୍ୟ ନୁହନ୍ତି ।

ଶକୁନି—କ'ଣ କହିଲେ ? ମହାବୀର କର୍ଣ୍ଣ କ'ଣ ଅତିରଥଙ୍କ ମଧ୍ୟରେ ଗଣ୍ୟ ନୁହନ୍ତି ।

ଭୀଷ୍ମ—ନାହିଁ ।

ଶକୁନି—ଆଉ ତେବେ କ'ଣ ରଥୀ ?

ଭୀଷ୍ମ—ତାହା ମଧ୍ୟ ନୁହେଁ ।

ଶକୁନି—ତେବେ ଆଉ କ'ଣ ?

ଭୀଷ୍ମ—ସୂତପୁତ୍ର କର୍ଣ୍ଣ ଅର୍ଦ୍ଧରଥୀ ମାତ୍ର ।

କର୍ଣ୍ଣ—ଜାଣିଥିଲି ଏତେ ଦିନ
ସତ୍ୟବାଦୀ ବୋଲି ଭୀଷ୍ମଦେବ,
ଖ୍ୟାତ ଯାର ସତ୍ୟବ୍ରତ ନାମ
କିନ୍ତୁ ଆଜ ବୁଝିଲି ନିଶ୍ଚୟ
ଦେବାପାଇଁ କର୍ଣ୍ଣେ ଅପମାନ,
ସେହି ଭୀଷ୍ମ କୌରବପ୍ରଧାନ,
କରିଛନ୍ତି ଅନ୍ୟାୟ ଆଶ୍ରୟ,
ଶୁଣ ରାଜା ଦୁର୍ଯ୍ୟୋଧନ, ସୂତପୁତ୍ର ପଣ,
ଯେତେଦିନ ରଣ କ୍ଷେତ୍ରେ ପିତାମହ ତବ
ଥିବେ ଅସ୍ତ୍ର ଧରି,
ସେହି ସ୍ଥାନେ ନ ପଡ଼ିବ କର୍ଣ୍ଣର ଚରଣ ।
ବିଦାୟ ବୀରେନ୍ଦ୍ର ।

( ନିର୍ଗତ ହେଲେ )

ଶକୁନି—ଏ କ'ଣ ! ଏ କ'ଣ ! ଆସ, ଆସ, କର୍ଣ୍ଣ, କର୍ଣ୍ଣ ଶୁଣିଯାଅ ।

ଦୁର୍ଯ୍ୟୋଧନ—ଥାଉ ଥାଉ ମାତୁଳ । ମହାମାନୀ କର୍ଣ୍ଣର ସ୍ୱଭାବ
କ'ଣ ତୁମ୍ଭେ ବୁଝି ନାହଁ ?
ଶକୁନି—ହଁ ହଁ ମାନଗୋବିନ୍ଦଙ୍କର ମିତ୍ର ପରା ! ସୁତରାଂ—କିନ୍ତୁ
ଏପରି ଅସମୟରେ ଆପଣା ମଧ୍ୟରେ ଏରୂପ ମନୋ-
ମାଳିନ୍ୟ ବଡ଼ ଶୁଭ ଲକ୍ଷଣ ନୁହେଁ । ଦୁର୍ଯ୍ୟୋଧନ, ବଡ଼
ବିପଦରେ ତ ପଡ଼ିବାକୁ ହେଲା ହେ !
ଦୁର୍ଯ୍ୟୋଧନ—ଏଥିରେ ଉପାୟ କ'ଣ ମାତୁଳ ?
ଶକୁନି—ତୁମେ ଚିନ୍ତା କର ନାହିଁ ଦୁର୍ଯ୍ୟୋଧନ । କର୍ଣ୍ଣର ପୂର୍ବ
ପ୍ରତିଜ୍ଞା ସ୍ମରଣ କର । କର୍ଣ୍ଣ ଯେ ପାଣ୍ଡବଙ୍କର ଚିରଶତ୍ରୁ ।
ଦୁର୍ଯ୍ୟୋଧନ—ପିତାମହ,
କହିବେ କି କୃପାକରି
କି କାରଣେ ମହାବୀର ଅଧିରଥ ସୁତେ
ଆଖ୍ୟାନିଲେ ଅର୍ଦ୍ଧରଥୀ ବୋଲି ।
ଭୀଷ୍ମ —ଜଣା ମୋତେ କର୍ଣ୍ଣର ବିକ୍ରମ ।
ଜମଦଗ୍ନ୍ୟ ଶିଷ୍ୟ ସେହି
ଅଦ୍ୱିତୀୟ ଧାନୁକୀ ଜଗତେ,
କେଶସିଂହ ଜିଣି ପରାକ୍ରମ
ଲଭିଥିଲା ଅସ୍ତ୍ର ଅନୁପମ
ରଣେ ତୋଷି ବିପ୍ରୁ ଦ୍ୱିଜବର ।
ସୌର ବରେ ମହା ତେଜୋମୟ
ଅଙ୍ଗେ ଶୋଭେ ତା'ର
ଅକ୍ଷୟ କବଚ ପୁଣି ଅମୃତ କୁଣ୍ଡଳ ।
ଏକାକୀ ସେ ତ୍ରିଭୁବନ ବିଜୟୀ,
କିନ୍ତୁ ବତ୍ସ ମିତ୍ର ତବ
କବଚ-କୁଣ୍ଡଳ-ହୀନ ଏବେ
ଦେବଦତ୍ତ ଦିବ୍ୟ ଅସ୍ତ୍ରଗଣ
ହୋଇଛନ୍ତି ଏବେ ଅନ୍ତର୍ହିତ ।
ଶକୁନି—ଓଃ, ଏଗୁଡ଼ିକ ତାଙ୍କର ଅଧିକରେ ଅଧିକ ଥିଲା ସିନା !
ତଥାପି କର୍ଣ୍ଣ ତ ସାଧାରଣ ରଥୀ ଅପେକ୍ଷା ହୀନ ହୋଇ
ନ ପାରନ୍ତି ।
ଭୀଷ୍ମ —ସତ୍ୟ କଥା—
କିନ୍ତୁ କର୍ଣ୍ଣ ପ୍ରତି ବ୍ରହ୍ମ ଅଭିଶାପ,
ଆସନ୍ନ ମରଣ କାଳେ
ରଣ ସ୍ଥଳେ,
ହେବ ସର୍ବ ଶସ୍ତ୍ର ବିସ୍ମରଣ" ।
"ରଥଚକ୍ର ଗଣ,
"ଅକାଳେ ମେଦିନୀ ଗ୍ରାସେ ହୋଇବେ ଅଚଳ ।"
ଏଣୁ ସେହି ମହାବୀର ଅଙ୍ଗ ଅଧୀଶ୍ୱର
ଅଟେ ହୀନତର
ସାମାନ୍ୟ ସୈନିକ ଠାରୁ ।
( ଶଲ୍ୟ, ଭୀଷ୍ମ ଓ ଦ୍ରୋଣ ପ୍ରସ୍ଥାନ କଲେ ଏବଂ ଦୁର୍ଯ୍ୟୋଧନ
ଅଧୋବଦନରେ ବସି ରହିଲେ )
ଶକୁନି—ବତ୍ସ, ତୁମ୍ଭେ ଏ ବୃଦ୍ଧ କଥା ଶୁଣି ଏପରି କାତର ହୋଇ-
ଗଲ ଯେ । ଏ ସମୟରେ ତୁମ୍ଭର କାତରତା କପରି
କୁଫଳ ପ୍ରସବ କରିବ ଜାଣିଛ ? ସାବଧାନ ଦୁର୍ଯ୍ୟୋଧନ !
ଆଉ ଯେତେବେଳେ ଭୀଷ୍ମ ସେନାପତିତ୍ୱ ଗ୍ରହଣ କରିଛନ୍ତି
ଓ ପ୍ରତିଦିନ ସ୍ୱହସ୍ତରେ ଦଶସହସ୍ର ଯୋଦ୍ଧା ନିହତ କରିବେ
ପ୍ରତିଜ୍ଞା କରିଛନ୍ତି—ତୁମ୍ଭେ ନିଶ୍ଚିନ୍ତ ଥାଅ । ଆମ୍ଭର ଜୟ
ନିଶ୍ଚୟ । ପୁଣି ମୋ'ର ସନ୍ଦେହ ହେଉଛି ଭୀଷ୍ମ ଈର୍ଷାରେ
କର୍ଣ୍ଣର ନିନ୍ଦା କଲେ କି ? ନାହିଁ ନାହିଁ ଭୀଷ୍ମଦେବ ସେ ଭଳି
ଲୋକ ନୁହନ୍ତି ।
ଆଉ ବୁଝିଲ ଦୁର୍ଯ୍ୟୋଧନ, କର୍ଣ୍ଣ ଏହିକ୍ଷଣି ଆସନ୍ତୁ ।
ଭୀଷ୍ମ, ଦ୍ରୋଣ କେବେହେଁ ହାତ ଧେନ ପାଣ୍ଡବଙ୍କର
ପ୍ରାଣ ନାଶ କରିବେ ନାହିଁ । ତେବେ ପରାଜିତ ହୋଇ
ଯେତେବେଳେ ସେ ପଳାୟନ କରୁଥିବେ ତାଙ୍କୁ ପଶ୍ଚାତରୁ
ବିନାଶ କରିବାକୁ ଆଉ କିଏ ? କର୍ଣ୍ଣ ଏକା ତହିଁକ
ଧୂରନ୍ଧର ! ହାଃ ! ହାଃ !
( ଉଭୟ ପ୍ରସ୍ଥାନ କଲେ ଓ ଅନ୍ୟ ଦିଗରୁ ଭୀଷ୍ମ
ପ୍ରବେଷ୍ଟ ହେଲେ )
ଭୀଷ୍ମ— ବୁଝିଲି ଦୁର୍ଲଙ୍ଘ୍ୟ କେଡ଼େ ନିୟତିର ଗତି
ଇଚ୍ଛା ସ୍ରୋତ କେଡ଼େ ବଳବତୀ ;
ମାନବର ଶତଯତ୍ନ କରି ଖଣ୍ଡ ଖଣ୍ଡ
ମାଡ଼ି ଆସେ ଦୁର୍ଦ୍ଦଣ୍ଡ ପ୍ରତାପେ
ଘୋର ରବେ ନାଚଇ ସମ୍ମୁଖେ
ମତ୍ତ ମହାକାଳ ଗର୍ଜି ପ୍ରଳୟ ତାଣ୍ଡବେ—
ଉନ୍ମତ୍ତ କରାଳ ଶକ୍ତି ପ୍ରଳୟ ଆବେଗେ
ଆମ୍ଭ ସଂହାରଣୀ ବେଶେ ଜ୍ୱଳେ ମହାତେଜେ ।
ବିଶାଳ କୌରବ ବଂଶ ଧ୍ୱଂସେ ଅଗ୍ରସର ।
ଅସମ୍ଭବ ନିବୃତ୍ତି ଯାହାର
କ୍ଷୁଦ୍ର ନର କି କରିବ ତା'ର
ବିଶ୍ୱମନ୍ତ୍ରୀ କୃଷ୍ଣ ଇଚ୍ଛା ପୂର୍ଣ୍ଣ ହେଉ ଏବେ ।

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

( ସ୍ଥାନ—ଶିବିର—କର୍ଣ୍ଣ, ଶଲ୍ୟ ଓ ଦୁଃଶାସନ, ଦୁର୍ଯ୍ୟୋଧନ ଚିନ୍ତାନ୍ୱିତ ହୋଇ ଉପସ୍ଥିତ )

କର୍ଣ୍ଣ— ମହାରାଜ,
ରଣଭୂମି ରଙ୍ଗଭୂମି ପ୍ରାୟ ;
ରଣସ୍ଥାୟୀ ଜୟ ପରାଜୟ ;
ଚିନ୍ତାର ସମୟ ନୁହେଁ ଏହା କଦାଚନ ।
ତ୍ୟଜ ତ୍ୟଜ ବିଷାଦ ଜଡ଼ତା
ଆପେ ଯଦି ଧର ଧନୁଶର
ସମଗ୍ର ବାହିନୀ ମଧ୍ୟେ ପ୍ରସରିବ ତାହା,
ନିରୁତ୍ସାହେ ଛତ୍ରଭଙ୍ଗ ହେବେ ସେନାଗଣ ।
ଉଠ ବୀର, ଧର ଧୈର୍ଯ୍ୟ କର ଦୃଢ଼ପଣ
ସାଧ କାର୍ଯ୍ୟ ଅବିରତ ନପାଡ଼ି ।

ଦୁର୍ଯ୍ୟୋଧନ—ନାହିଁ ମିତ୍ର, ବିଧି ଯହିଁ ବାମ
ଆଉ କମ୍ପା କରିବ ଦୁରାଶା
ହୋଇଲା ଭଗାରି ହସା
ମନ୍ଦ ଦଶା ପଡ଼ିଲା ନିଶ୍ଚୟ ।
ଯେଉଁ ରଣେ ଭୀଷ୍ମ ପରାଜିତ, ଶରଶଯ୍ୟା ଗତ,
ନିହତ ଆପଣେ ଦ୍ରୋଣ,
ଦୈବ କୃଷ୍ଟ ଛଡ଼ା ଆଉ କି କହିବ ତାକୁ !
ଯାଅ ଭାଇ ଦୁଃଶାସନ ପାଣ୍ଡବ ଶିବିରେ
ଜାନୁପାତି କରଯୋଡ଼େ ଯୁଧିଷ୍ଠିର ଆଗେ
ନତଶିର ସନ୍ଧିର ଭିଖାରୀ
ପରାଜୟ ଅନିବାର୍ଯ୍ୟ ଯେଣୁ ।
ନାହିଁ କାର୍ଯ୍ୟ ବୃଥା ଆସ୍ଫାଳନେ
ଅକାରଣେ କୋଟି କୋଟି ପ୍ରାଣୀ
ଗୋଟିଏ ଜୀବନ ପାଇଁ
ବିସର୍ଜନ ହୋଇବେ କି ହେତୁ ?
ଏ ଜୀବନ ତ୍ୟଜିବ ନିଶ୍ଚୟ ।

କର୍ଣ୍ଣ— ଶୁଣ ମିତ୍ର ଧୈର୍ଯ୍ୟ ଧର,
ଭୀଷ୍ମ, ଦ୍ରୋଣ ଚିରଦିନ କୌରବ ବିଦ୍ୱେଷୀ
ଇଷ୍ଟାନ୍ୱେଷୀ ସଦା ପାଣ୍ଡବର,
ପୁଣି ଦୁଇ ବୀର ନିପତିତ କପଟ ସମରେ ।
କର୍ଣ୍ଣର ଜୀବନ ଥାଉ ନାହିଁ କିଛି ଭୟ,
ସମରର ଫଳାଫଳ, ଜୟ ପରାଜୟ
କର୍ଣ୍ଣର ଶିରରେ ଲେଖା ହୋଇଛି ନିଶ୍ଚୟ ।

ଦୁର୍ଯ୍ୟୋଧନ—ମିତ୍ର, ମିତ୍ର, ତୁମ୍ଭେ ଏକା ଭରସା ମୋହର,
ଏ ଘୋର ବିପଦାର୍ଣ୍ଣବେ ତୁମ୍ଭେ କର୍ଣ୍ଣଧାର
ସେନାପତି ରୂପେ ଆଜି ଚଳାଅ କୌରବ ଚମୂ ।
ଆଜିଠାରୁ କୁରୁସେନା ତବ ଅନୁଗାମୀ ।

କର୍ଣ୍ଣ— ଏତେ ଦିନେ ମିତ୍ର ତବ ଆସିଛି ସୁବୁଦ୍ଧି ।
ପୂର୍ବେ ଯଦି ବରିଥାନ୍ତ କର୍ଣ୍ଣେ
ସେନାପତି ପଦେ,
ନୋହିଥାନ୍ତା କୌରବ ବଞ୍ଚିତ,
ଲକ୍ଷ୍ମୀ ପଞ୍ଚୁଆଇ ଦ୍ୱାରକା ନଗରେ ।
ମଦ୍ରରାଜ ଯଦି ମୋହର ହୁଅନ୍ତି ସାରଥୀ
ଏକାକୀ କରନ୍ତି କାଲି କୁରୁକ୍ଷେତ୍ର ଜୟ ।

ଶଲ୍ୟ— ରାଜା ଦୁର୍ଯ୍ୟୋଧନ, ତୁମ୍ଭ ସମ୍ମୁଖରେ ଏ ଅପମାନ ମୋର ଅସହ୍ୟ । ମଦ୍ରରାଜ ଶଲ୍ୟ ହେବ ସୂତପୁତ୍ରର ସାରଥୀ ! ଅଦ୍ଭୁତ, ଅଦ୍ଭୁତ !

ଦୁର୍ଯ୍ୟୋଧନ—ହେ ମାତୁଳ,
କୋପ କର ତ୍ୟାଗ
ମୋହର ମଙ୍ଗଳ ପାଇଁ କ୍ଷମ ଅପରାଧ,
ଅନୁରୋଧ ରକ୍ଷା କର ମୋର
ତୁମ୍ଭେ କଲେ ଅସ୍ୱୀକାର
ସମଗ୍ର କୌରବ ସେନା ଲଭିବ ବିଲୟ ।

ଶଲ୍ୟ— ମହାରାଜ, ସୂତପୁତ୍ର ରଥରେ ମୁଁ ଏ ହୀନକାର୍ଯ୍ୟ କରିବାକୁ ଯିବି — କିନ୍ତୁ ମୋ'ର ଏହି ପଣ ରହିଲା କି ମୁଁ ଯାହା ଇଚ୍ଛା ତାହା କହିଲେ ମଧ୍ୟ କର୍ଣ୍ଣ ତାହାର ପ୍ରତିବାଦ କରିବେ ନାହିଁ । ତାହା ହେଲେ ମୁଁ ତତ୍‌କ୍ଷଣାତ୍ ବଲ୍‌ଗା ତ୍ୟାଗ କରିବି ।

କର୍ଣ୍ଣ— କଲି ମୁଁ ସ୍ୱୀକାର ଏହି ପଣ;
ରୁଷ୍ଟ ଚିତ୍ତ ନତ ହୋଇ ଯିବ —
କେବେ ନ କରିବ ବାକ୍ୟେ ପ୍ରତିବାଦ ।

ଦୁର୍ଯ୍ୟୋଧନ—ଆସ ମିତ୍ର, ଆସ ହେ ମାତୁଳ,
ଦୁଇ ମହାବୀର ମିଳି ରଖ ଦୁର୍ଯ୍ୟୋଧନେ ।

( ସକଳେ ପ୍ରସ୍ଥାନ କଲେ )

## ଦ୍ୱିତୀୟ ଦୃଶ୍ୟ

( ସ୍ଥାନ—ପାଣ୍ଡବ ଶିବର; ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ )

**ଅର୍ଜ୍ଜୁନ**—କହ ସଖେ, ଏକ ଅଦ୍ଭୁତ — ଦ୍ରୋଣ ଗୁରୁ ହତ
ମହାରଣେ !
ରଞ୍ଜିତ ପାଣ୍ଡବ କର ବ୍ରାହ୍ମଣ ଶୋଣିତେ ।
ଗୁରୁହତ୍ୟା, ବ୍ରହ୍ମହତ୍ୟା ପାତେ କଳଙ୍କିତ
ପାଣ୍ଡବ ଗୌରବ ।
ହୃଦୟ ଯାଉଛି ଫାଟି
ଅନ୍ତରାତ୍ମା ହେଉଛି ବ୍ୟାକୁଳ ।

**କୃଷ୍ଣ**— ପୁଣି ପାର୍ଥ ହେଉଛ ବିକଳ ?
ପୁଣି ମାୟା ମୋହେ ପଡ଼ି
ମଣୁଛ ଅକ୍ଷୟ ପରା ମାନବ ଶରୀର ?
ମୃତ୍ୟୁ, ମୃତ୍ୟୁ, ମୃତ୍ୟୁ କିସ ସଖା ?
ମୃତ୍ୟୁ ଖାଲି ଜୀର୍ଣ୍ଣ-ବାସ ତ୍ୟାଗ,
ଅନନ୍ତ ଅମର ଆତ୍ମା ଲୋଡ଼େ ଅନ୍ୟ ଭୋଗ ।
କିଏ ମରେ — କେ କାହାକୁ ମାରେ ?
ସବୁ ମାୟା, ସବୁ ଭ୍ରାନ୍ତ, ସବୁ ମୋହ ସିନା,
ସ୍ୱପ୍ନ ସମ ଅନିତ୍ୟ ଜଗତେ ।
ଜ୍ଞାନଚକ୍ଷୁ ଫେଇ ଦେଖ କାହା ଗୁପ୍ତ କର
ମହାଶକ୍ତି ରୂପେ କର୍ମେ ରତ
ଅବିରତ ଭାଙ୍ଗେ ଗଢ଼େ ବିଶ୍ୱ ।

**ଅର୍ଜ୍ଜୁନ**—ବୁଝିଛି ମୁଁ ସବୁ କଥା
ପ୍ରତ୍ୟକ୍ଷେ ଦେଖିଛି ସେହି ବିଶ୍ୱରୂପ ତବ ।
ତଥାପି, ତଥାପି ସଖା,
ରକ୍ତମାଂସେ ଗଢ଼ା ଏହି ତନୁ
ଦୁରନ୍ତ ମାୟାର ଗଣ୍ଡି ନ ପାରୁଛି ଲଙ୍ଘି ।
( ଦୂତ ପ୍ରବେଶ ହେଲା )

**ଶ୍ରୀକୃଷ୍ଣ**—କି ସମ୍ବାଦ କୌରବ ଶିବିରେ ?

**ଦୂତ**— ଅପ୍ରତିହତ ମହାବୀର କର୍ଣ୍ଣ,
ସମରେ କରିବେ ରକ୍ଷା କୌରବ ବାହିନୀ,
ମଦ୍ରେଶ୍ୱର କର୍ଣ୍ଣ ରଥେ ହୋଇବେ ସାରଥୀ ।
କରିଛନ୍ତି ପଣ ରାଧାପୁତ୍ର,
କାଲି ରଣେ ପାଣ୍ଡୁ ପୁତ୍ରଗଣେ
ଏକାକୀ କରିଣ ନାଶ ରଖିବେ କୌରବେ ।
ମହୋଲ୍ଲାସେ ମତ୍ତ କୁରୁ ସେନା ।

**ଶ୍ରୀକୃଷ୍ଣ**—ଦେଖ ସଖେ,
କାଲି ହେବ ଭୀଷଣ ସମର,
ସାବଧାନେ ରକ୍ଷାକର ସେନା ।
ଦୁର୍ଜ୍ଜୟ ରାଧେୟ ସେହି ଦୈବବଳେ ବଳୀ
ଏକ ମାତ୍ର ଅଛି ବୀର କୌରବ ଗହଣେ ।
ସେହି ହେଲେ ହତ — ବିଜୟ ନିଶ୍ଚିତ,
ପାଣ୍ଡବ ଙ୍କର ବାନା ଉଡ଼ିବ ଜଗତେ ।

**ଅର୍ଜ୍ଜୁନ**—ବହୁ କାଳୁ ଅଛି ସାଧ ମନେ
ଯୁଝିବାକୁ ସୂତପୁତ୍ର ସନେ,
କାଲି ହେବ ବାସନା ପୂରଣ ।
ତୁମ୍ଭେ ଯହିଁ ରହିଛ ସହାୟ
ଜନାର୍ଦ୍ଦନ, ନିଜେ ଚକ୍ରଧର
ଅର୍ଜ୍ଜୁନର ଆଉ କିସ ଡର ?

**ଶ୍ରୀକୃଷ୍ଣ**—ଆସ ସଖେ,
ଜଣାଇବା ଏ ସମ୍ବାଦ ଧର୍ମରାଜ ପାଶେ;
ସମରର ହେବ ଆୟୋଜନ ।
( ଉଭୟେ ପ୍ରସ୍ଥାନ କଲେ )

## ତୃତୀୟ ଦୃଶ୍ୟ

(ସ୍ଥାନ—କୁରୁକ୍ଷେତ୍ର—ରଣଭୂମି ପ୍ରାନ୍ତର । କର୍ଣ୍ଣ ଓ ଶଲ୍ୟ ପ୍ରବେଶ ହେଲେ)

**କର୍ଣ୍ଣ**—ଦେଖ ଦେଖ ମହାରାଜ,
ହୁଙ୍କାର ଆସନ୍ତି କ୍ଷେପି ଶତ୍ରୁ ସେନାଗଣ
ଜୟନାଦେ କମ୍ପାଇ ମେଦିନୀ;
ଉଡ଼ଇ ବାନର ଧ୍ୱଜ ଗଗନ ମଣ୍ଡଳେ ।
ଅଭ୍ର ଭେଦି ଗର୍ଜ୍ଜେ ପାଞ୍ଚଜନ୍ୟ ।
ଚଳାଅ ତ୍ୱରିତେ ରଥ ଅର୍ଜ୍ଜୁନ ସମୀପେ ।
ଆଜ ହେବ ତୁମୁଳ ସଂଗ୍ରାମ,
ଅପାଣ୍ଡବା ହୋଇବ ଧରଣୀ ।

**ଶଲ୍ୟ**— ଗାଣ୍ଡୀବୀ ଦୁର୍ଜ୍ଜୟ ରଥୀ,
ରଥେ ଯାର ଶ୍ରୀକୃଷ୍ଣ ସାରଥୀ;
କେଉଁ ବୀର ସମକକ୍ଷ ତା'ର ?
ବୃଥା ଆସ୍ଫାଳନ କର୍ଣ୍ଣ,
ବୃଥା ଅହଙ୍କାର ।

**କର୍ଣ୍ଣ**— ଜାଣି ନାହିଁ କର୍ଣ୍ଣର ପ୍ରତାପ,
ରାମଧନୁ କରେ ଧରି,
ଏକଶରେ କରିପାରେ ବିଶ୍ୱ ପରାଜିତ ।

ଶଲ୍ୟ— କେ ନ ଜାଣେ ପ୍ରତାପ ତୁମ୍ଭର ।
ଯେଉଁ ଦିନ କୁରୁ ନାରୀଗଣ
ହସିଲେ ଗନ୍ଧର୍ବପତି ଶରସନ୍ଧାନ ଘୋର !
ସେହି ଦିନ ଜଣା ଅଛି ବୀରତ୍ୱ, କର୍ଣ୍ଣର ।
ଯେଉଁ ଦିନ ପଞ୍ଚାଳ ନଗରେ
କୃଷ୍ଣା ସ୍ୱୟଂମ୍ବରେ
ଏକାକୀ ଜିଣିଲେ ପାର୍ଥ ଲକ୍ଷ ନରପତି,
ସେହି ଦିନ ଜଣା ଅଛି ବିକ୍ରମ କର୍ଣ୍ଣର ।
ଯେଉଁ ଦିନ ବିରାଟର ଗୋଧନ ହରଣେ
କୁରୁ ବୀର ଗଣେ
ପ୍ରାଣ ଭୟେ ହେଲେ ପଳାୟିତ,
ସେହି ଦିନ ଜଣା ଅଛି କର୍ଣ୍ଣର ବିକ୍ରମ ।
ଅଷ୍ଟ ମହାବୀରେ ମିଳି
ଚକ୍ରବ୍ୟୂହେ କପାଟିଲ ବୋଲି
ଅଭିମନ୍ୟୁ, ଅସହାୟ ଶିଶୁ,
ମଣିଛ କି ବିଶ୍ୱଚର୍ଯ୍ୟୀ ସନେ
ଖେଳିବ କୌତୁକ ?
ଜାଣିଛି ଜାଣିଛି, କର୍ଣ୍ଣ ବିକ୍ରମ ତୁମ୍ଭର,
ଶୁଣିଛି ମୁଁ ଭୀଷ୍ମଙ୍କ ବଦନୁଁ ।
ଏତେ ବୀର୍ଯ୍ୟହୀନ ହୋଇ
କି ସାହସେ ଯାଉ ଅଛ ଅର୍ଜୁନ ସମକ୍ଷେ
ଧାବଇ ପତଙ୍ଗ ଯଥା ଜ୍ୱଳନ୍ତ ପାବକେ ।

କର୍ଣ୍ଣ— ମହାରଜ,
ସାରଥି ହୁଅଇ ସଦା ରଥୀ ଆଜ୍ଞାବହ ।
କିନ୍ତୁ ମୁହିଁ ବାକ୍ୟବଦ୍ଧ ଏବେ
ନିର୍ବାଧରେ ସହିବାକୁ କଟୁବାକ୍ୟ ତବ
ନୋହିଲେ ଦିଅନ୍ତା କର୍ଣ୍ଣ ପ୍ରତ୍ୟୁତ୍ତର ତା'ର ।
ଏବେ ଶଲ୍ୟ ଏତିକି ପ୍ରାର୍ଥନା,
ଚଳାଅ ଚଳାଅ ରଥ ସମରେ ସବେଗେ !
(ଯୁଧିଷ୍ଠିର ପ୍ରବିଷ୍ଟ ହେଲେ)

ଯୁଧିଷ୍ଠିର— କାହିଁ ଯାଉ ସୂତପୁତ୍ର,
ରହ ରହ କ୍ଷଣେ,
ସମ୍ମୁଖରେ ଶମନ ତୋହର ।

କର୍ଣ୍ଣ— ଧର୍ମ୍ମରଜ,
ଯାଉଅଛି ଯୁଝିବାକୁ ଅର୍ଜୁନ ସହିତେ;
ନାହିଁ ପ୍ରୟୋଜନ
ବୃଥା କାଳକ୍ଷୟେ ତବ ସନେ ।
ସମକକ୍ଷ ଯୋଦ୍ଧା ସହ
କର ଯାଇ ଶକ୍ତି ପରୀକ୍ଷା ।

ଯୁଧିଷ୍ଠିର— କାଳ କ୍ଷୟ କାହିଁ ତା'ର, କାଳ ପୂର୍ଣ୍ଣ ଯା'ର ;
ଧର ଅସ୍ତ୍ର, ଦିଅ ହେ ସମର ।

କର୍ଣ୍ଣ— (ହସି) ଆସ ତେବେ—
(କର୍ଣ୍ଣ ଓ ଯୁଧିଷ୍ଠିର ଯୁଦ୍ଧରେ ପ୍ରବୃତ୍ତ ହେଲେ । ଯୁଧିଷ୍ଠିର ପରାଜିତ ହୋଇ ପଳାୟନ କରିବା ସମୟରେ କର୍ଣ୍ଣ ତାହାଙ୍କ ଗଳଦେଶରେ ଧନୁ ଲଗାଇ ଆକର୍ଷଣ କଲେ )
ଏବେ ତ ହୋଇଲା ତବ ବାସନା ପୂରଣ ?
ଧର୍ମ୍ମରଜ, ସ୍ମର ଇଷ୍ଟଦେବ ।

ଶଲ୍ୟ— କର୍ଣ୍ଣ, କର୍ଣ୍ଣ,
ଏହି କି କ୍ଷତ୍ରିୟ ଧର୍ମ୍ମ ?
ବିଜିତ ଅରାତି ଅଙ୍ଗେ
ଶସ୍ତ୍ରାଘାତ ନୁହଇ ଉଚିତ;
କୁନ୍ତୀ-ସୁତ ଅତ୍ୟନ୍ତ କାତର ।

କର୍ଣ୍ଣ— (ସ୍ୱଗତଃ)
କରିଛି ପ୍ରତିଜ୍ଞା ମୁହିଁ ଜନନୀର ପାଶେ
ଏକାକୀ ଫଲ୍‌ଗୁନୀ ବିନା
ଆନ କୁନ୍ତୀପୁତ୍ରେ କେବେ ନ କରିବି ହତ ।
(ଯୁଧିଷ୍ଠିରଙ୍କୁ ତ୍ୟାଗ କଲେ)
ଯାଅ, ଯାଅ ଯୁଧିଷ୍ଠିର,
ପ୍ରିୟ ପ୍ରାଣ ନେଇ ବେଗେ ପଳାଅ ଶିବିରେ
ଦ୍ରୌପଦୀ ଅଞ୍ଚଳ ତଳେ ରଖିବ ଘୋଡ଼ାଇ ।
କୃପା କରି ଦେଲି ପ୍ରାଣଦାନ
(ଯୁଧିଷ୍ଠିର ଅଧୋବଦନରେ ନିଷ୍କ୍ରାନ୍ତ ହେଲେ)
ଚଳାଅ ସାରଥି ରଥ ଏବେ ଅନ୍ୟ ସ୍ଥାନେ
(ଉଭୟେ ନିଷ୍କ୍ରାନ୍ତ ହେଲେ)

## ଚତୁର୍ଥ ଦୃଶ୍ୟ

( କୁରୁକ୍ଷେତ୍ର—କୃଷ୍ଣ ଓ ଅର୍ଜୁନ ପ୍ରବିଷ୍ଟ ହେଲେ )

ଅର୍ଜୁନ—କହ ସଖେ,
ଜ୍ୟେଷ୍ଠଭ୍ରାତା ଗଲେ କେଉଁ ଦିଗେ ?
ରଣାଙ୍ଗନେ ଦିଶୁ ନାହିଁ ତାଙ୍କ ରଥ ଧ୍ୱଜା ।
( ଭୀମ ପ୍ରବିଷ୍ଟ ହେଲେ )

ଭୀମ— ଶୁଣିଛ କେଶବ,
ଧର୍ମରାଜ ପରାଜିତ କର୍ଣ୍ଣ ସହ ରଣେ ?
ଆହତ ବିକ୍ଷତ ମନେ,
ଶିବିରକୁ ଯାଇଛନ୍ତି ଫେରି ।
ଅର୍ଜୁନ—ଚାଲ ସଖେ ତ୍ୱରିତେ ଶିବିରେ,
ଭାଇଙ୍କର ଜାଣିବା ସମ୍ବାଦ ।
ଶ୍ରୀକୃଷ୍ଣ—( ଭୀମ ପ୍ରତି ) ଯାଉଅଛୁଁ ଶିବିରକୁ ଆମ୍ଭେ ଦୁଇଜଣ
ମତ୍ତସିଂହ ସମ କର୍ଣ୍ଣ ମାତିଛି ସମରେ ।
ପ୍ରାଣ ପଣ କରି ଗତିରୋଧ କର ତା'ର ।
(ଶ୍ରୀକୃଷ୍ଣ ଓ ଅର୍ଜୁନ ନିଷ୍କ୍ରାନ୍ତ ହେଲେ ଓ ଅନ୍ୟ ଦିଗରୁ
କର୍ଣ୍ଣ ଓ ଶଲ୍ୟ ପ୍ରବିଷ୍ଟ ହେଲେ)
ଭୀମ— ରେ ରେ ସୂତାଧମ,
ଜିଣି ରଣେ ଧର୍ମପୁତ୍ରେ
ଶାନ୍ତମତି,
ଅବୋଧ ବାଳକ ତୁଲ୍ୟ କୋମଳ ପରାଣ,
ଭାବିଛୁକି ଆପଣାକୁ ମହାବୀର ବୋଲି ।
ଆଜି ଭୀମ ଗଦାଘାତେ ବଧିବ ଜୀବନ,
ମେଣ୍ଟାଇବ ରଣକଣ୍ଡୂ ତୋର ।
କର୍ଣ୍ଣ— ଦୟା କରି ଜ୍ୟେଷ୍ଠ ଭ୍ରାତେ ତୋ'ର
ଦେଇଅଛି ଥରେ ପ୍ରାଣଦାନ ;
କିନ୍ତୁ ଆରେ ପବନନନ୍ଦନ,
କର୍ଣ୍ଣ ବାଣେ ନାହିଁ ରକ୍ଷା ଆଜ ।
( ଭୀମ ଓ କର୍ଣ୍ଣ ଯୁଦ୍ଧ କରୁଁ କରୁଁ ପ୍ରସ୍ଥାନ କଲେ )
ପଛରେ ସୈନ୍ୟଗଣ ପରସ୍ପର ଯୁଦ୍ଧ କରୁଁ କରୁଁ ପ୍ରବିଷ୍ଟ
ହେଲେ ଓ ନିଷ୍କ୍ରାନ୍ତ ହେଲେ ।

## ପଞ୍ଚମ ଦୃଶ୍ୟ

( ସ୍ଥାନ—ପାଣ୍ଡବ ଶିବିର—ଯୁଧିଷ୍ଠିର ଶଯ୍ୟୋପରେ ଶୟାନ
ଏବଂ ଦ୍ରୌପଦୀ ସେବାରତା )

ଦ୍ରୌପଦୀ—ଧୈର୍ଯ୍ୟ ଧର ପ୍ରାଣେଶ୍ୱର,
କିମ୍ପା ଏତେ ହେଉଛ ଅସ୍ଥିର ?
ଯୁଧିଷ୍ଠିର—ଧୈର୍ଯ୍ୟ, ଧୈର୍ଯ୍ୟ, ଯାଜ୍ଞସେନୀ,
କେମନ୍ତେ ଧରିବି ଧୈର୍ଯ୍ୟ
ରକ୍ତ ମାଂସ ଗଢ଼ା କ୍ଷୁଦ୍ର ପିଣ୍ଡେ !
ଅନ୍ତରେ ଭେଦିଛି ଯେତେ ସୁତୀକ୍ଷ୍ଣ ଶାୟକ,
ସାରା ଅଙ୍ଗ ଜର୍ଜରିତ ମୋ'ର
ପ୍ରାଣେ ପ୍ରାଣେ ବିଷମ ବେଦନା ।
କିନ୍ତୁ, ତହୁଁ ବଳି ବାଧେ ପ୍ରିୟେ,
ରାଧେୟର ଅପମାନ ବାଣୀ,
ଶେଳ ସମ ବିନ୍ଧିଛି ହୃଦୟେ,
ଜ୍ୱଳେ ଅଗ୍ନି ପ୍ରାୟ ;
ନିଭୃତ ଅନ୍ତର କକ୍ଷେ
ଭୋଗୁଅଛି ଦାହ ନିଦାରୁଣ ।
ଓଃ, ବକ୍ଷ ଯାଏ ଫାଟି ।
( ଅସ୍ଥିରତା )
ଦ୍ରୌପଦୀ—କ୍ଷଣେ କ୍ଷାନ୍ତ ହୁଅ ନାଥ,
କ୍ଷତ ମୁଖେ ଲେପି ଦିଏ ନିର୍ବିଷ ପ୍ରଲେପ ।
( ଦ୍ରୌପଦୀ ନିଷ୍କ୍ରାନ୍ତା ହେଲେ )
ଯୁଧିଷ୍ଠିର—ଉହ୍ ଉହ୍, ଦାରୁଣ ଯନ୍ତ୍ରଣା !
ସୂତପୁତ୍ର ଦେଲା ଅପମାନ !
କୋଟି କୋଟି ସୈନ୍ୟଗଣ ଆଗେ
କୃପା କରି କଲା ପ୍ରାଣ ଦାନ !
ହୀନଜନ-କୃପା-ଲବ୍ଧ ପ୍ରାଣେ,
ଲାଞ୍ଛିତ ଜୀବନେ
କିବା କାର୍ଯ୍ୟ ଆଉ ?
ଓଃ—
( ଶ୍ରୀକୃଷ୍ଣ ଓ ଅର୍ଜୁନ ପ୍ରବିଷ୍ଟ ହେଲେ )
ଶ୍ରୀକୃଷ୍ଣ—ମହାରାଜ,
ଶୁଣିଲି, କର୍ଣ୍ଣର ଶରେ ହୋଇ ପ୍ରପୀଡ଼ିତ
ଶିବିରକୁ ଆସିଅଛ ଫେରି ।
ଲାଗିଛି କି କଠିନ ଆଘାତ ?
ଯୁଧିଷ୍ଠିର—କିଏ କୃଷ୍ଣ ? କିଏ ସେ ଅର୍ଜୁନ ?
ଓଃ, ବୁଝିଲି ଏବେ
କର୍ଣ୍ଣ ଭୟେ ରଣକ୍ଷେତ୍ର ଛାଡ଼ି
ଆସିଛ ପଳାଇ ଦୁହେଁ
ରଖିବାକୁ ଆପଣା ଜୀବନ ।
ଭୀରୁ ! କାପୁରୁଷ !
ଜାଣିଥିଲି ପାର୍ଥେ ମୁହିଁ
ମହାବୀର ବୋଲି,
ନିରତେ ନିର୍ଭର କରି ବାହୁବଳେ ତା'ର
ଉତ୍ସାହେ କୌରବସନେ ପଶିଲି ବିବାଦେ

ମିଳିଅଛି ଏବେ ମୋର ଉତ୍ତମ ପୁରସ୍କାର ।
ସବ୍ୟସାଚୀ ବୋଲି ପରି ବୋଲାଉ ଜଗତେ ?
ବୃଥା ତୋର କପିଧ୍ୱଜ ଧାରଣ
ବୃଥା ତୋ ଅକ୍ଷୟ ତୂଣ
ବୃଥା ଏ ଗାଣ୍ଡୀବ ।
ଏବେ ଜଣାଗଲା ବୀରପଣ ;
ଫିଙ୍ଗିଦେଇ ପ୍ରହରଣ ଗଣ,
ଉଠାଇ ପୌରୁଷ ତୋର ସାଗର ସଲିଳେ
ନପୁଂସକ ହୋଇ ଯାଅ ରହିବ ବିରାଟେ ।
ରମଣୀ ସମାଜେ ମିଳି ମାତି ନୃତ୍ୟ ଗୀତେ ।

ଅର୍ଜ୍ଜୁନ—ପଣ ମୋର ଜାଣିଛ କେଶବ ?
ଗାଣ୍ଡୀବ-ନିନ୍ଦୁକେ ନିଶ୍ଚେ କରିବି ବିନାଶ ।
( ଖଡ୍‌ଗ ଉତ୍ତୋଳନ କଲେ )

ଶ୍ରୀକୃଷ୍ଣ— (ବାଧା ଦେଇ )
ଛି, ଛି, ବାତୁଳ ! ରାଜ ଚକ୍ରବର୍ତ୍ତୀ ସ୍ୱୟଂ ଧର୍ମ୍ମଦେବଙ୍କ ପ୍ରତି ଏପରି ବ୍ୟବହାର ତୁମ୍ଭର ଉଚିତ କି ଅର୍ଜ୍ଜୁନ ? ତୁମ୍ଭେ ଗୁରୁ ଭ୍ରାତା ଧର୍ମ୍ମଙ୍କର ଆଜ୍ଞାକାରୀ । ତୁମ୍ଭେ ସେ ସ୍ନେହ, ସେ ପ୍ରୀତି, ସେ ରକ୍ତର ବନ୍ଧନ ଛିନ୍ନ କରି କିପରି ଜ୍ୟେଷ୍ଠ ଭ୍ରାତାଙ୍କ ସହିତ ଏପରି ଆଚରଣ କରିବାକୁ ବସିଛ ? ସାବଧାନ ପାର୍ଥ, ମତି ସ୍ଥିର କର । ଦେଖ, ସମ୍ମୁଖରେ ପ୍ରବଳ ଶତ୍ରୁ ତୁମ୍ଭର ସେନା ଦଳନ କରୁଛି । ଆଉ ତୁମ୍ଭେ ଗୃହ ମଧ୍ୟରେ ଏହି ଅନର୍ଥ ଘଟାଉଛ ? ତୁମ୍ଭେ ବୁଦ୍ଧିମାନ, ଧୀର, ଶାସ୍ତ୍ରଜ୍ଞ ହୋଇ ଏ ଭଳି କାର୍ଯ୍ୟ କରିବାକୁ ମନ ବଳାଇଲ କିପରି ? ଧର୍ମ୍ମରାଜ, କର୍ଣ୍ଣ ବାଣରେ ନିପୀଡ଼ିତ ଅପମାନିତ ହୋଇ ଅଭିମାନରେ ତୁମ୍ଭଙ୍କୁ କଟୁବାକ୍ୟ ପ୍ରୟୋଗ କରିଅଛନ୍ତି । କିନ୍ତୁ ତୁମ୍ଭେ ତାଙ୍କର ଚିର ଆନୁଗତ୍ୟ ସ୍ୱୀକାର କରିଛ । ଭାବି ଦେଖ ଅର୍ଜ୍ଜୁନ, କେଉଁ ପଣ ତୁମ୍ଭର ଗୁରୁତର ।

ଅର୍ଜ୍ଜୁନ—ସତ୍ୟ କହିଛ ସଖା, ମୁଁ ଅତି ମୂଢ଼ । କିନ୍ତୁ ମୋର ପ୍ରାଣରକ୍ଷା କିପରି ହେବ ?

ଶ୍ରୀକୃଷ୍ଣ—ଦେଖ, ଗୁରୁଜନମାନଙ୍କ ପ୍ରତି ଅପମାନସୂଚକ ବାକ୍ୟ ପ୍ରୟୋଗ କଲେ ତାଙ୍କୁ ବଧ କରିବାକୁ ହୁଏ । ତୁମ୍ଭେ ତେବେ ଯୁଧିଷ୍ଠିରଙ୍କୁ ବଧ କରି ସାରିଛ ଅର୍ଜ୍ଜୁନ ।

ଅର୍ଜ୍ଜୁନ—ତେବେ ହରି, ଗୁରୁଜନଙ୍କୁ ଅପମାନ କରିବା ପାପର ପ୍ରାୟଶ୍ଚିତ୍ତ କରିବାକୁ ମୋତେ ହେବ । ନୋହିଲେ ମୁଁ ନରକଗାମୀ ହେବି । ଏହି ଖଡ୍‌ଗ ଦ୍ୱାରା ଆତ୍ମବିନାଶ କରି ଆତ୍ମକୃତ ପାପର ପ୍ରାୟଶ୍ଚିତ୍ତ କରିବି ।
( ଖଡ୍‌ଗ ଉତ୍ତୋଳନ କଲେ )

ଶ୍ରୀକୃଷ୍ଣ—ପୁଣି ପାଗଳ ହେଲ ନା କ'ଣ ? ଆତ୍ମହତ୍ୟାଠାରୁ ବଳି ପାପ ଆଉ କାହିଁ ଅଛି ? ତୁମ୍ଭେ ସେହି ମହାତ୍ମାଙ୍କ ଚରଣରେ କ୍ଷମା ଭିକ୍ଷା କର, ଅନୁତାପଠାରୁ ଅଧିକ ପ୍ରାୟଶ୍ଚିତ୍ତ ଜଗତରେ ନାହିଁ ।

ଅର୍ଜ୍ଜୁନ—( ଜାନୁପାତ ପୂର୍ବକ )
ମହାରାଜ,
ଅଜ୍ଞାନେ ହୋଇଲି ବୁଦ୍ଧିନାଶ ;
ଶ୍ରୀଚରଣେ କରିଅଛି ଦୋଷ,
ଦାସ ତବ କ୍ଷମାର ଭିଖାରୀ ।

ଯୁଧିଷ୍ଠିର—( ଉଠି ବସି )
ଭାଇ, ଭାଇ, ଭାଇରେ, ଅର୍ଜ୍ଜୁନ !
ନାହିଁ ଅପରାଧ ତୋ'ର
ଜ୍ୟେଷ୍ଠଠାରେ କନିଷ୍ଠର ଅଳି ।
ଉଠ ଭାଇ, କରେ ଆଶୀର୍ବାଦ
ସୂତ-ସୁତେ ବଧ ଆଜି ରଣେ ।

## ଷଷ୍ଠ ଦୃଶ୍ୟ

( ସ୍ଥାନ—କୁରୁକ୍ଷେତ୍ର ରଣଭୂମି ; ଭୀମ ଓ ଦୁଃଶାସନ ଗଦାଯୁଦ୍ଧ କରୁକରୁ ପ୍ରବେଶ କଲେ )

ଭୀମ— ରେ ବର୍ବର,
ଆଜି ତୋତେ କରିବି ନିପାତ
ଏତେ ଦିନେ ପଡ଼ିଛୁ ହାବୁଡ଼େ ।

ଦୁଃଶାସନ—ଆଜି ତୋ'ତ ସଂହାରି ସମରେ
ମେଣ୍ଟାଇବି ରାଜ୍ୟ ଲିପ୍‌ସା ତୋ'ର ।
( ପୁନର୍ବାର ଗଦା ଯୁଦ୍ଧ କରୁଁ କରୁଁ ବାହୁ ଯୁଦ୍ଧରେ ପ୍ରବୃତ୍ତ ହେଲେ )
( ଭୀମ ଦୁଃଶାସନଙ୍କୁ ଧରାଶାୟୀ କରି ବକ୍ଷ ଉପରେ ମାଡ଼ି ବସିଲେ )

ଭୀମ— କେ ରକ୍ଷିବ ତୋତେ ଏବେ ଆରେ ଦୁରାଚାର,
କୁରୁକ୍ଷେତ୍ରେ ଅଛି ଯେତେ ଶୂର
ଆସ କା'ର ଅଛଇ ଶକତି ।

ଦୁଃଶାସନ—ଗୁଡ଼ ଗୁଡ଼ ଭୀମସେନ
ସକାତରେ ମାଗୁଛି ଶରଣ ।

ଭୀମ— ନାହିଁ କରେ ମନେ ତୋ'ର,
କାହାଲାଗି ପାଣ୍ଡୁଭାଇ
ସହିଲେଣି ଆଜୀବନ କେତେ ନିର୍ଯ୍ୟାତନା ?
ପଡ଼ୁଛି କି ମନେ ଏବେ,
ସଭାତଳେ ତୁହି ଦୁଷ୍ଟ ନୟନ ଅଗ୍ରତେ
କୃଷ୍ଣାର ହରିଲୁ ବସ୍ତ୍ର ।
ପିଶାଚ—ପିଶାଚ,
କିଏ ଅଛି ଏହି ସ୍ଥାନେ
ଆଣ ଯାଜ୍ଞସେନୀ ;
ଆଜି ତୋର ବକ୍ଷ ଚିରି
ସେହି ରକ୍ତେ ସିକ୍ତ କରି ଦ୍ରୌପଦୀ ଚିକୁର
ପୂରାଇବି ପ୍ରତିଜ୍ଞା ମୋହର ।
( ଦୁଃଶାସନ ବକ୍ଷ ଚିରି ରକ୍ତ ପାନ କଲେ )
ଉଃ, ଏତେ ଦିନେ ମେଣ୍ଟିଲା ପିପାସା
ଚିରତୃଷ୍ଣା ଅବସାନ ଏବେ ।
( ଦ୍ରୌପଦୀ ପ୍ରବିଷ୍ଟା ହେଲେ )
ଆସ ପ୍ରିୟେ, ଆସ ଗୋ ପାଞ୍ଚାଳି,
ଯେଉଁ ଧୃଷ୍ଟ କେଶ ଧରି
ଇନ୍ଦ୍ରପ୍ରସ୍ଥ ପୁରୁଁ ଆଣି
ଏକବସ୍ତ୍ରା ରଜସ୍ୱଳା ନାରୀ
ଉଲଙ୍ଗିଲା କୁରୁସଭା ତଳେ,
ଦେଖ, ଦେଖ ଏବେ ଦୁର୍ଦ୍ଦଶା ତାହାର ।
ରଖିଅଛ ସେହି କାଳୁଁ କରି ମୁକ୍ତ ବେଣୀ,
ଯେଉଁ ରକ୍ତ ଆଶେ,
ଏହି ସେହି ପଶୁର ଶୋଣିତ ।
ଆସ ଦେବି,
ଏହି ରକ୍ତେ ରଞ୍ଜି ବେଣୀ କରି
ଉନ୍ମୁକ୍ତ କୁନ୍ତଳ ତବ କରିବି ବନ୍ଧନ ।
( ଦୁଃଶାସନର ରକ୍ତ ନେଇ ଦ୍ରୌପଦୀର ମୁକ୍ତ କୁନ୍ତଳ ବନ୍ଧନ କରି ଦେଲେ )

ଦ୍ରୌପଦୀ—ଏତେ ଦିନେ ପୂରିଅଛି ସାଧ,
ଏତେ ଦିନେ ଚିର ବ୍ରତ ଉଦ୍‌ଯାପିତ ମୋର ।
ଦୁର୍ବଳ ବ୍ରତତି ସମ ବଳହୀନା ନାରୀ
ଯୁଝନ୍ତେ ଆଶ୍ରିତ ସଦା,
ଦର୍ପ ତା'ର ଗର୍ବ ତା'ର ଦମ୍ଭ ତା'ର ସ୍ୱାମୀ ।
ଧନ୍ୟା ସେ ରମଣୀ ଭବେ
ସ୍ୱାମୀ ଯାର ବୁଝଇ ଅନ୍ତର,
ରଖେ ମାନ ରଖଇ ମର୍ଯ୍ୟାଦା ।
ଅତି ଦୁଃଖେ ହୋଇ ଜ୍ଞାନହରା
ଅନ୍ୟାୟରେ ଗଞ୍ଜିଲି ଅଜ୍ଞାନେ,
ବିମୋହିତା ଦାସୀର ଦୋଷ କ୍ଷମ ଭୀମସେନ ।

ଭୀମ— (ଉଠାଇ)
ଉଠ ପ୍ରିୟେ,
ଦାସୀ ନୁହେଁ, ବୀର କନ୍ୟା ତୁହି ।
ବୀର ମାତା ବୀରେନ୍ଦ୍ର ବନିତା
ଦୃଢ଼ ପଣ ନ ଥିଲେ ତୋହର
ପଶୁ ତୁଲ୍ୟ ଏ ପାପୀର ନାଶ
ହୁଅନ୍ତା କି ଆଜି ରଣ ସ୍ଥଳେ !
ଜାଣନ୍ତା କି କ୍ଷତ୍ରିୟ ସମାଜ
କେମନ୍ତେ ପାଳଇ ଭୀମ ପ୍ରତିଜ୍ଞା ରକ୍ଷଣେ ।

## ସପ୍ତମ ଦୃଶ୍ୟ

( ସ୍ଥାନ—ରଣକ୍ଷେତ୍ରର ଏକ ଅଂଶ ; ଦୁର୍ଯ୍ୟୋଧନ ଓ ଶକୁନି ପ୍ରବିଷ୍ଟ ହେଲେ )

ଶକୁନି—ଆଜି ଦେଖୁଛ ଦୁର୍ଯ୍ୟୋଧନ, କର୍ଣ୍ଣ କପରେ ହୁଲସ୍ଥୁଲ ଲଗାଇ ଦେଇଅଛନ୍ତି ?

ଦୁର୍ଯ୍ୟୋଧନ—କ'ଣ କ'ଣ ମାତୁଳ ?

ଶକୁନି—ଏଯାକେ ତମକୁ କିଛି କଥା ମାଲୁମ ନାହିଁ । ବାଃ କହୋ ଆଜି ଅଙ୍ଗରାଜ ପ୍ରଳୟ ମୂର୍ତ୍ତି ଧାରଣ କରି ଅଛନ୍ତି । ତାଙ୍କ ରଥ ଯେଉଁ ଆଡ଼କୁ ଯାଉଛି ଶତ୍ରୁ ସେନା ଛିନ୍ନଭିନ୍ନ ହୋଇ ପଳାଇ ଯାଉଛନ୍ତି ।

ଦୁର୍ଯ୍ୟୋଧନ—ସତେ ମାତୁଳ, ମୁଁ କି ନିର୍ବୋଧ ! ଯୁଦ୍ଧ ପ୍ରାରମ୍ଭରେ ଯଦି କର୍ଣ୍ଣଙ୍କୁ ସେନାପତିତ୍ୱ—

ଶକୁନି—କିନ୍ତୁ ମହାରାଜ, କର୍ଣ୍ଣଙ୍କ କଥାଟା କିଛି ବୁଝି ପଡ଼ୁନାହିଁ । ତାଙ୍କ ଭିତରେ—ନା, କିଛି ବୁଝି ହେଉ ନାହିଁ ।

ଦୁର୍ଯ୍ୟୋଧନ— କ'ଣ ମାତୁଳ, କହନ୍ତୁ ।

ଶକୁନି—ନାହିଁ କିଛି ନୁହେଁ—

ଦୁର୍ଯ୍ୟୋଧନ—କଥାଟା କଣ ବୁଝିବାକୁ ହେବ ମାତୁଳ ।

ଶକୁନି—କିଣ କି ଆଜି ଭୀମ, ନକୁଳ, ସହଦେବ ଏପରି କି ସ୍ୱୟଂ ଯୁଧିଷ୍ଠିର ସୁଦ୍ଧା କର୍ଣ୍ଣଙ୍କ ହାବୁଡ଼ରେ ପଡ଼ିଥିଲେ । କର୍ଣ୍ଣ ଇଚ୍ଛା କରିଥିଲେ ସ୍ୱଚ୍ଛନ୍ଦରେ ତାଙ୍କୁ ନିକାଶ କରି ପାରିଥା'ନ୍ତେ ; କିନ୍ତୁ କାହିଁକି କେଜାଣି, ମୂଠା ଭିତରୁ ଛାଡ଼ି ଦେଲେ ।

ଦୁର୍ଯ୍ୟୋଧନ—ଭୀମକୁ ଛାଡ଼ିଦେଲେ ! କିଣ କହୁଛ ମାତୁଳ ?

ଶକୁନି—ଆଉ କ'ଣ ? ଭୀମର କାମ ସାରି ଦେଇଥିଲେ ତ ଯୁଦ୍ଧ ବନ୍ଦ ହୋଇ ଯାଇଥା'ନ୍ତା । ନୋହିଲେ ଯୁଧିଷ୍ଠିରଙ୍କୁ ଧରି ଆଣିଥିଲେ ମଧ୍ୟ ଅଳ୍ପରେ ଜୟ ।

ଦୁର୍ଯ୍ୟୋଧନ—ଏହା କାହିଁକି କଲେ ?

ଶକୁନି—କେ ଜାଣେ ବାବୁ, ତାଙ୍କ ପେଟ କଥା ସେ ଜାଣନ୍ତି ।

( ଜନୈକ ସୈନିକର ପ୍ରବେଶ )

ସୈନିକ—ମହାରାଜ, ଭୀମସେନ—

ଦୁର୍ଯ୍ୟୋଧନ—ଭୀମସେନ—ଭୀମସେନ ? ଭୀମସେନ ମରିଛି ?

ସୈନିକ—ଭୀମସେନ ମଲ୍ଲରଣରେ ଦୁଃଶାସନଙ୍କୁ ନିହତ କରିଛନ୍ତି **ମହାରାଜ !**

ଶକୁନି—(ସ୍ୱଗତଃ) ହୁଁ, ଏହି ମାତ୍ର ଆରମ୍ଭ ହେଲା । ପୂର୍ଣ୍ଣାହୁତିରେ ଆଉ ଅଳ୍ପ ବାକି । (ପ୍ରକାଶ୍ୟେ) କ'ଣ କହୁଛ ଦୂତ, ଦୁଃଶାସନ ନିହତ ? ତୁ କ'ଣ ସ୍ୱଚକ୍ଷୁରେ ଦେଖିଛୁ, ନା—

ଦୁର୍ଯ୍ୟୋଧନ—ମାତୁଳ, ମୋର ହୃତ୍‌କମ୍ପ ହେଉଛି । ଚିତ୍ତ ଅସ୍ଥିର ହେଉଛି । ଯାଅ ତୁମ୍ଭେ ଏହାର ସତ୍ୟାସତ୍ୟ ନିରୂପଣ **କରି ଆସ ।**

ଶକୁନି—କାତର ହୁଅ ନାହିଁ ଦୁର୍ଯ୍ୟୋଧନ, ରଣକ୍ଷେତ୍ରରୁ ଏପରି ସମ୍ବାଦ ଅନେକ ଆସେ, ସେଥିପାଇଁ ପ୍ରସ୍ତୁତ ରହିବା ଉଚିତ । ମୁଁ ଯାଉଛି ସ୍ୱୟଂ କଥାଟା ବୁଝିଆସେ ।

ସୈନିକ—( ଅଙ୍ଗୁଳି ସଙ୍କେତ କରି ) ଆଜ୍ଞା, ଏହିଆଡ଼େ । ମହାବୀର ଦୁଃଶାସନ ମେରୁ ପରି ପଡ଼ିଛନ୍ତି । ଭୀମସେନ ଅସୁର ପରି ତାଙ୍କ ବକ୍ଷ ଚିରି ରକ୍ତ, ରକ୍ତ । ନା, ମଣିମା ଆଉ କହି ପାରିବି ନାହିଁ ।

ଶକୁନି—କ'ଣ କ'ଣ ଭୀମ ଦୁଃଶାସନର ବକ୍ଷ ଚିରି ରକ୍ତପାନ **କଲା କି ?**

ସୈନିକ—ଆଜ୍ଞା ମଣିମା, ଆଖି ବୁଜି ହୋଇ ପଡ଼ିଲା ।

ଶକୁନି—( ଯାଉ ଯାଉ ଫେରିପଡ଼ି ) କପଟ ପାଶା ବେଳରେ ଭୀମସେନର ସେହି ପ୍ରତିଜ୍ଞା କଥା । ଦୁର୍ଯ୍ୟୋଧନ, ଏ କ'ଣ ? ତୁମ୍ଭେ ଏହି ସମ୍ବାଦଟା ଶୁଣି ଏକାବେଳକେ ବିବର୍ଣ୍ଣ ହୋଇଗଲ ଯେ । ପିଶାଚର ସମୁଚିତ ଶିକ୍ଷା ଦେବା**ର** ବ୍ୟବସ୍ଥା କରିବା ପରି ?

( ଦୁର୍ଯ୍ୟୋଧନଙ୍କ ହସ୍ତ ଧାରଣ କଲେ )

ଦୁର୍ଯ୍ୟୋଧନ—ହଁ ଚାଲ ମାତୁଳ, ମୁଁ ସ୍ୱୟଂ ଯାଉଛି ରଣକ୍ଷେତ୍ରକୁ ।

( ବିଦୁର ପ୍ରବିଷ୍ଟ ହେଲେ )

ବିଦୁର—ଏବେ କ୍ଷାନ୍ତ ହୁଅ ଦୁର୍ଯ୍ୟୋଧନ,
ନ ବଳାଅ ମନ
ଲୋକ କ୍ଷୟେ, ବୃଥା ବନ୍ଧୁ ନାଶେ ।
ତବ ବୁଦ୍ଧି ମୋହେ,
ଏବେ ଏକେ ହେଉଛି ନିର୍ମୂଳ
କୁରୁକୁଳ ପଦ୍ମବନ ସମ ।
ବୃଦ୍ଧର ବଚନ ଶୁଣ;
ଏବେ ଭଲି ମେଲଅ ନୟନ—
ପାଣ୍ଡବ କୌରବେ ମିଳି
ସୁଖେ କର ପିତୃରାଜ୍ୟ ଭୋଗ ।
ଜାଣ ସୁନିଶ୍ଚୟ
ହିଂସାରେ ବଂଶର କ୍ଷୟ—
ଅଭ୍ୟୁଦୟ ସମ୍ପ୍ରୀତି ରକ୍ଷଣେ ।

ଶକୁନି—ଦୁର୍ଯ୍ୟୋଧନ, ଜାଣିଛ, ଏ ବିଦୁରଟା ଚିରକାଳ ପାଣ୍ଡବଙ୍କ ଇଷ୍ଟାନ୍ୱେଷୀ । କୌରବ ଶିବିର ମଧ୍ୟରେ ଏ ଗୁପ୍ତଚରଟାକୁ ପ୍ରବେଶ କରିବାକୁ ଦେଲା କିଏ ? ପାଣ୍ଡବ ବିନାଶ ହେଉ ଆମ୍ଭର ପ୍ରତିଜ୍ଞା କଥା ଜାଣି ଏ ଆସିଛନ୍ତି ଆମକୁ ସେଥିରୁ ନିରସ୍ତ କରିବାକୁ । ତୁମ୍ଭେ ଏ ବୃଦ୍ଧର କଥା କର୍ଣ୍ଣରେ ସ୍ଥାନ ଦିଅ ନାହିଁ ।

( ବିଦୁର ପ୍ରତି ) ପାଣ୍ଡବ ବନ୍ଧୁ ହେ, ଯାଅ ଏ ସ୍ଥାନରୁ ଯାଅ । ପାଣ୍ଡବଙ୍କ ବିପଦ ଲାଗି ଯଦି ବ୍ୟସ୍ତ ହେଉଛ ତେବେ ଯାଅ ତାଙ୍କୁ ସାବଧାନ କରି ଦିଅ କି, ଆଜି ସେ ଜୀବନର ଆଶା ଛାଡ଼ନ୍ତୁ । ସ୍ୱୟଂ ରାଜା ଦୁର୍ଯ୍ୟୋଧନ ଯେବେ ଭ୍ରାତୃହତ୍ୟାର ପ୍ରତିଶୋଧ ନେବାଲାଗି ବଦ୍ଧପରିକର ହୋଇ ରଣୋନ୍ମୁଖୀ ହେଉଛନ୍ତି, ଆଜି ଆଉ ପାଣ୍ଡବଙ୍କର ନିସ୍ତାର ନାହିଁ । ତୁମ୍ଭେ ଆସ ଦୁର୍ଯ୍ୟୋଧନ । ବୃଥା କଥାରେ ବିଳମ୍ବ ହେଉଛି ।

( ଦୁର୍ଯ୍ୟୋଧନଙ୍କ ହସ୍ତ ଧରି ନିଷ୍କ୍ରାନ୍ତ ହୋଇ ଯିବା ସମୟରେ ଟିକିଏ ପଛକୁ ରହି ଯାଇ )

( ସ୍ୱଗତ ) ହୁଁ ଆଉ ଅଳ୍ପ ବାକି । ଶତ ଭ୍ରାତା ମଧ୍ୟରୁ ଏକ ମାତ୍ର ଦୁର୍ଯ୍ୟୋଧନ ! ନା, ନା, ଦର୍ପୀ ଦୁର୍ଯ୍ୟୋଧନ,

ଆଉ ଟିକିଏ ଅପେକ୍ଷା କର । ଦେଖିବୁ ତୋ'ର ଏକାଦଶ ଅକ୍ଷୌହିଣୀର ସମୂଳ ବିନାଶ । ଯେଉଁ ଦିନ କୁରୁବଂଶ ଧ୍ୱଂସର ଶେଷ ଘଣ୍ଟା ନାଦ ଶୁଣୁଁ ଶୁଣୁଁ ତୁ ପ୍ରୟାଣ କରିବୁ ସେହି ଦିନ ଶକୁନିର ବ୍ରତ ପୂର୍ଣ୍ଣ । ସେହି ହେବ ତୋପରି ମହା ପାପୀର ଉପଯୁକ୍ତ ପ୍ରାୟଶ୍ଚିତ୍ତ । (ନିଷ୍କ୍ରାନ୍ତ)

ବିଦୁର— ସ୍ୱୈର କି ଶୁଣଇ କେବେ ଧର୍ମ୍ମର କାହାଣୀ ?

ହ୍ରିତ କରେ କିଏ ତୁଳ୍ୟ ଜ୍ଞାନ ।
ଭବିତବ୍ୟ କେ କରିବ ଆନ ?
ବଳବାନ ବିଧି,
କେ ପାରିବ ରୋଧି
ଇଚ୍ଛାମୟ ତୋ'ର ଇଚ୍ଛା ସ୍ରୋତ ।
ଅଖଣ୍ଡ୍ୟ — ଅନନ୍ତ !

(ଗୀତ)

ହରି, ତୋହରି ଇଚ୍ଛା ହେଉ ପୂର୍ଣ୍ଣ ହେ
ହେଉ ପୂର୍ଣ୍ଣ ହେ ।
ମୋର ସକଳ ବାସନା ସକଳ କାମନା
ତବ ପଦେ ହେଉ ଲୀନ ହେ ।

ଭାଙ୍ଗିଯାଉ ମୋର ମନ ଅଟ୍ଟାଳିକା
ଝରି ପଡୁ ଆଶା-କୁସୁମ ମାଳିକା,
ସଂସାରର ନାଟ ସାରି ଦିଅ ଏବେ
ହାଟ କରି ଦିଅ ଶୂନ୍ୟ ହେ ।

ରୋଧ କରି ଦିଅ ଇନ୍ଦ୍ରିୟର ଗତି
ନେଇ ଯାଅ ପୂର୍ବ କଳୁଷ ସମ୍ପତ୍ତି,
ଚିର ପାଡ଼ି ଦେଇ ନିର୍ଦ୍ଦେଶ ତୁମରି
ହେବ ନାହିଁ ତିଳେ କ୍ଷୁନ୍ନ ହେ ।
(ପ୍ରସ୍ଥାନ)

## ଅଷ୍ଟମ ଦୃଶ୍ୟ

(ସ୍ଥାନ — ରଣକ୍ଷେତ୍ର ; କର୍ଣ୍ଣ ଓ ଶଲ୍ୟ ସବେଗେ ପ୍ରବେଶ କଲେ)

କର୍ଣ୍ଣ— ଚାଳ ଶଲ୍ୟ, ଚାଳ ରଥ କପିଧ୍ୱଜ ଆଗେ,
ଆଜ ହେବ ଅର୍ଜ୍ଜୁନ ସଂହାର ।

ଶଲ୍ୟ— ବିନ୍ଧୁ କାହିଁ ରଣଶ୍ରମେ କ୍ଳାନ୍ତ ତୁମ୍ଭେ ଅତି,
ଏ ସମୟେ ନୁହଇ ଉଚିତ
ଭେଟିବାକୁ ପାର୍ଥ ମହାବାହୁ ।

କର୍ଣ୍ଣ— ରଥୀକୁ ଉତ୍ସାହ ଦାନ, କର୍ମ ସାରଥିର ;
କିନ୍ତୁ ତୁମ୍ଭେ ବାର ବାର
ହତୋତ୍ସାହ କରୁଅଛ ମୋତେ,
ଦେଉଅଛ ବାଧା ଶତ ଶତ ।
ଦେଖିଛ ଆପଣେ କେତେ
କୁରୁକ୍ଷେତ୍ରେ କର୍ଣ୍ଣ ପରାକ୍ରମ,
ତଥାପି ଏ ଭଳି ବାକ୍ୟ କହୁଛ କିପରି ?
ମଦ୍ରପତି, ନିଜେ ତୁମ୍ଭ ଭୀତ ପ୍ରାଣ-ଭୟେ !
ଅବା ଇଚ୍ଛି ଅର୍ଜ୍ଜୁନ ମଙ୍ଗଳ
କୌଶଳେ କରୁଛ ରକ୍ଷା ନିଜ ଭଗିନେୟ ?

ଶଲ୍ୟ— ସମରେ ଜିଣିଛ ବୋଲି
ନକୁଳାଦି ଅନ୍ୟ ଚାରି ଭାଇ
ଜୟମଦେ ମତ୍ତ ହୋଇ
ଧ୍ୱଂସିବ ଭଗବାନ ବୁଦ୍ଧି ସୂତ ଶିରୋମଣି ।
ତେଣୁ ଅତିମୋହ କରି
କହୁଅଛ ଆପଣାର ସାମାନ୍ୟ ଶକତି ।
ନ ଜାଣିଛ କର୍ଣ୍ଣ କି ହେ,
ଶଲ୍ୟର ସାରଥ୍ୟ ଏକା ସମ୍ପାଦିଛୁ ସବୁ ?
କାହିଁ ପାର୍ଥ ଇନ୍ଦ୍ରସୁତ — କାହିଁ ସୂତ କର୍ଣ୍ଣ
ଚନ୍ଦ୍ର ଆଗେ ଖଦ୍ୟୋତ ଯେସନ ।
ଖାଣ୍ଡବ କାଳାଗ୍ନି ସମ
ପ୍ରଚଣ୍ଡ ଅନଳୋଦ୍‌ଗାରୀ
ଗାଣ୍ଡୀବର ଶର ମୁଖେ
କିପାଇଁ ଏ କ୍ଷୁଦ୍ର ପ୍ରାଣ ଦେବ ସ୍ୱେଚ୍ଛାହୁତି ?
ମାତ୍ରେ ହସ ଶୁଣି ତବ ବୃଥା ଆସ୍ଫାଳନେ ।
ଶୁଣ କର୍ଣ୍ଣ,
କୌରବ ଶିବିର କୋଣେ ତବ ଯୋଗ୍ୟ ସ୍ଥାନ ।।
ନାହିଁ ଦୁର୍ଯ୍ୟୋଧନ ପାଶେ
ଚାଟୁ ବାକ୍ୟେ ପୂରାଇ ଉଦର
ଆପଣା ପ୍ରଶଂସା ଆପେ ଗାଇବ ବଖାଣି ।

କର୍ଣ୍ଣ— ସମ୍ମୁଖେ ଅବଶ୍ୟମ୍ଭବ ଆସନ୍ନ ସମରେ,
ଆପଣା ସାରଥି ସନେ
ନୁହେଁ ଦ୍ୱନ୍ଦ କଦାପି ଉଚିତ ;
ବୃଥା ବାକ୍ୟେ ହେଲା କାଳାତିତ,
ତୁରିତେ ଚଳାଅ ପୃଷ୍ଠେ କରି କଶାଘାତ,
ଚାଳ ରଥ ଅର୍ଜ୍ଜୁନ ଅଗ୍ରତେ ।

ଶଲ୍ୟ— ପୃଷ୍ଠେ ଦେଖ ଆସୁଛନ୍ତି ସବେଗେ
ଏ ଦଗକୁ ଧାଇଁ କପି-ଧ୍ୱଜ ।
ଶ୍ରୀକୃଷ୍ଣ—ଦେଖ ପାର୍ଥ, କର୍ଣ୍ଣ ରଥ ପୁରତେ ଭୁମ୍ବର
ସାଧ ସାଧ କାର୍ଯ୍ୟ ଆପଣାର,
ଧର୍ମରାଜ ଅପମାନେ ନେନ ପ୍ରତିଶୋଧ ।
ଅର୍ଜ୍ଜୁନ—ଧୀର ବୁଦ୍ଧି ଧର୍ମରାଜେ ସମରେ ହଟାଇ
ସୂତ-କୁଳ-ନନ୍ଦନର ବଢ଼ିଛି ସାହସ ।
ତେଣୁ ପାପ ହୁତାଶନ ମୁଖେ
ଉପୃଷ୍ଟ ପତଙ୍ଗ ତୁଲ୍ୟ କରୁଛି ନର୍ତ୍ତନ ।
ଆରେ ଦୃପ୍ତ ପବନ୍ତ ଆଶ୍ରୟୀ
ରହ କ୍ଷଣେ ରହ,
ଅଚିରେ ଅର୍ପିବ ତୋତେ ଅନନ୍ତ ବିଶ୍ରାମ,
ପ୍ରତିଶୋଧ ଭ୍ରାତୃ ଅପମାନେ ।
କର୍ଣ୍ଣ— ବହୁ ଦନୁଁ ଲୁଚି ଲୁଚି ବୁଲୁ ଅଛୁ ତୁହି
ମୋ ଆଗୁଁ ଜୀବନ ଭୟେ
ଆରେ ଘୃଣ୍ୟ ଗୋପାଳକଙ୍କର ;
ଦେଖିବି କେମନ୍ତେ ରକ୍ଷା କରିବେ କେଶବ ।
ଆଜ ରଣେ ତୋତେ କର୍ଣ୍ଣ ହାତୁଁ ।
ତୀକ୍ଷ୍ଣ ଶରେ କାଟି ତୋର ଶିର ନରାଧମ,
ପୂରାଇବି ଖାର ଅଭିମାନ ;
କର୍ଣ୍ଣର ଶ୍ରେଷ୍ଠତ୍ୱ ଆଜ କରିବି ପ୍ରମାଣ,
ପୂର୍ଣ୍ଣ ହେବ ଜୀବନ ତପସ୍ୟା ।
( କର୍ଣ୍ଣ ଶର ନିକ୍ଷେପ କଲେ ଓ ଉଭୟେ ଯୁଦ୍ଧରେ ପ୍ରବୃତ୍ତ ହେଲେ । କିଛି କାଳ ଅନ୍ତେ ଶୋଷକ କର୍ଣ୍ଣଙ୍କ ନିକଟରେ ପ୍ରବିଷ୍ଟ ହେଲେ )
ଶୋଷକ— ତିଷ୍ଠ, ତିଷ୍ଠ, ଅଙ୍ଗେଶ୍ୱର,
କପାଁ କର ବୃଥା ପରିଶ୍ରମ ?
ଶୋଷକ ମୋହର ନାମ, ନାଗକୁଳେ ଜନ୍ମ,
କୃଷ୍ଣାର୍ଜ୍ଜୁନ ଚିର ଶତ୍ରୁ ମମ ;
ଖାଣ୍ଡବ ଦହନ କାଳେ
ବିନାଦୋଷେ ନାଶିଛନ୍ତି ଜନକ ଜନନୀ ।
ପେଣ ମୋତେ ସ୍ଥାପି ଧନୁ ଅଗ୍ରେ
କ୍ଷଣ ମାତ୍ରେ ଗ୍ରାସିବି ଅର୍ଜ୍ଜୁନେ
କୃଷ୍ଣ ସହ କପିଧ୍ୱଜ ରଥ,
ପୂର୍ଣ୍ଣ ହେବ ତବ ମନୋରଥ—
ପ୍ରତିଶୋଧ ପିତୃଋଣ ମୋର ।

କର୍ଣ୍ଣ —ଭାବିଛ କି ନାଗରାଜ, ଏତେ ନୀଚ କର୍ଣ୍ଣ
ସମ୍ମୁଖ ସମର କ୍ଷେତ୍ରେ,
ନେଇବ ଭାର୍ଗବଶିଷ୍ୟ ଅନ୍ୟ ସହାୟତା ?
ଆପଣା ଶକତି ବଳେ
ନୁହଇ ଅକ୍ଷମ କର୍ଣ୍ଣ ଅରାତି ସଂହାରେ ।
ଅବା ନୁହେଁ ପରାଙ୍ମୁଖ
ଶତ୍ରୁ ଶରେ ଲଭିବାକୁ ସମ୍ମୁଖ ମରଣ,
ବୀରର ଅମୂଲ୍ୟ ଧନ, ଅନନ୍ତ ସ୍ୱରଗ ।
ଯାଅ ଫେରି ନାଗପୁତ୍ର,
ନେନ ମୋର ଶତ ଧନ୍ୟବାଦ ।
ଶୋଷକ—ହତଭାଗ୍ୟ, ନ ଶୁଣିଲୁ ବାକ୍ୟ ମୋର !
ଆଜ ତୋର ମୃତ୍ୟୁ ସୁନିଶ୍ଚୟ । ( ପ୍ରସ୍ଥାନ କଲେ )
କର୍ଣ୍ଣ—ମଦ୍ରପତି,
ମନ୍ଦ କପାଁ ହେଲା ରଥ ଗତି ?
କ୍ଷିପ୍ରକରି ଚଳାଅ ତୁରଙ୍ଗ ।
ଶଲ୍ୟ —ନ ଜାଣେ କି ହେତୁ ରଥ ହେଉଛି ଅଚଳ
ବିକଳ ତୁରଙ୍ଗ ଗଣ ଓଟାରି ଓଟାରି ।
( ନିରୀକ୍ଷଣ କରି )
କର୍ଣ୍ଣ, କର୍ଣ୍ଣ, ଅଦ୍ଭୁତ ଏ କଥା
ଚକ୍ରଚୟ ଗ୍ରାସିଛି ମେଦିନୀ ।
କର୍ଣ୍ଣ— ଓଃ, ନାହିଁ ରଥେ ପ୍ରୟୋଜନ
ଏକାକୀ ଅବନୀ ପୃଷ୍ଠେ ଉଭା ହୋଇ ସୁଖେ
ଆରୋପି ଭାର୍ଗବ ରୂପେ ଗୁରୁଦତ୍ତ ବ୍ରହ୍ମଅସ୍ତ୍ରଚୟ
କ୍ଷଣମାତ୍ରେ ଗାଣ୍ଡୀବୀର ସାରିବି ଜୀବନ ।
( ଧନୁରେ ଶର ଯୋଜନା କଲେ ଓ ସ୍ଥିର ଭାବରେ ଚିନ୍ତାନ୍ୱିତ ହୋଇ ଦଣ୍ଡାୟମାନ ରହିଲେ । )
ଏ କି ହେଲା,
ଅକସ୍ମାତେ ଏକି ହେଲା ଆସି,
ବ୍ରହ୍ମାସ୍ତ୍ରର ମନ୍ତ୍ର କପାଁ ହେଲା ବିସ୍ମରଣ !
ଏ ମୁହୂର୍ତ୍ତେ
ଏହି ତୀବ୍ର ଭୀଷଣ ମୁହୂର୍ତ୍ତେ
ଜୀବନ ଓ ମରଣର ଘୋର ସନ୍ଧି ସ୍ଥଳେ,
କି ସଙ୍କଟ ହେଲା ଉପନୀତ ?
ସ୍ମୃତି ପଟ କପାଁ ଧୂମାସୃତ ?
ମସ୍ତିଷ୍କ ବିକୃତ ଧୈର୍ଯ୍ୟ ଅପଗତ ?
ଅଦ୍ଭୁତ—ଅଦ୍ଭୁତ !

ଶଲ୍ୟ, ଶଲ୍ୟ ଦୂରଆଡ଼େ
ସବେଁ ମିଳି ସାଧୁଛନ୍ତି ବାଦ
ଶଲ୍ୟ, ଶଲ୍ୟ ଆଣ ଫେରି ଅନ୍ୟ ରଥ ।
ଅର୍ଜ୍ଜୁନ, ଅର୍ଜ୍ଜୁନ
ଏବେ ମୁହିଁ ରଥଶୂନ୍ୟ ନିରସ୍ତ୍ର ପଦାତି
ରହ, ଆଜି ରହ ଦଣ୍ଡେ ଦୁଇ ;
ଉଦ୍ଧରି ଆପଣା ବଳେ ମେଦିନୀ କବଳୁଁ
ରଥ ଚକ୍ର ମୋର
ମେଣ୍ଟାଇବି ଅଚିରେ ତୋ ସମର ପିପାସା ।
( ଅର୍ଜ୍ଜୁନ ଆଡ଼କୁ ପୃଷ୍ଠ କରି ଭୂମିରେ ଜାନୁ ଲଗାଇ ରଥଚକ୍ର ଆକର୍ଷଣ କରିବାକୁ ଲାଗିଲେ । )
ଶ୍ରୀକୃଷ୍ଣ—ହାଣ ସଖା, ବିଳମ୍ବ ନ କରି
ତୀକ୍ଷ୍ଣ ଶର ଏହି ଅବସରେ ।
ଅର୍ଜ୍ଜୁନ—କେମନ୍ତେ କହୁଛ ସଖା, କଥା ଅଲୌକିକ ?
ଅସ୍ତ୍ରହୀନ, ବିପନ୍ନ ଅରାତି,
କେଉଁ ନୀତି ବଳେ କହ
ପୃଷ୍ଠ ଦେଶେ ତା'ର
ମୃତ୍ୟୁବାଣ କରିବି ପ୍ରହାର ?
ବୀର-ଧର୍ମ ଏହା କି କେଶବ ?
ଶ୍ରୀକୃଷ୍ଣ—ଇତର ସହିତେ ସିନା
ଆଚରଇ ବୀର-ଧର୍ମ୍ମ ବୀର ;
ପଶୁସନେ ପଶୁ ଧର୍ମ୍ମ ନୁହଇ ଅନୀତି ।
ସ୍ମର ପାର୍ଥ ସେ ଦିନର କଥା,
କେଶ ଧରି ଦୁଃଶାସନ ଯେବେ ଯାଜ୍ଞସେନୀ
ଉଧି କଲା କୁରୁ ସଭା ତଳେ,
ପାଣ୍ଡବ-ମହିଷୀ ପ୍ରତି
କି କହିଲା ସେ କାଳେ ଏ ଦୁର୍ବିନୀତ ପଶୁ ;
ସେ ଦିନ ପ୍ରତିଜ୍ଞା ତବ ଗଲା କି ପାଶୋର ?
ଆଣୁଛି କି ମନେ ସଖା,
କେଉଁ ବୀର-ଧର୍ମ୍ମ ପାଳି
ସପ୍ତରଥୀ ମିଳି,
ଚକ୍ରବ୍ୟୂହେ ବିନାଶିଲେ ସୁଭଦ୍ରା ନନ୍ଦନ,
ଅସହାୟ ଶିଶୁ ଅଭିମନ୍ୟୁ ।
ଏହି ସେହି ପଶୁ ପାର୍ଥ ସମ୍ମୁଖେ ତୁମର,
ମୃଗୟା କୁରଙ୍ଗ ପରି,
ପଶ୍ଚାତୁଁ ନିକ୍ଷେପ ଶର
ସଂହାର ତୁରିତେ ।

ଅର୍ଜ୍ଜୁନ—ସତ୍ୟ ସଖା,
ପଶ୍ଚାତରୁ ପଶୁହତ୍ୟା ମୃଗୟା କାରଣେ
କ୍ଷତ୍ରିୟର ଧର୍ମ୍ମ ସନାତନ ।
ଶରାସନେ ଯୋଖି ତୀକ୍ଷ୍ଣ ବାଣ
କଲି ଏହି ପ୍ରତିଜ୍ଞା ପୂରଣ ।
( କର୍ଣ୍ଣ ପ୍ରତି ଶର ନିକ୍ଷେପ କଲେ )
କର୍ଣ୍ଣ—( ଶରାଘାତ ହେବାରୁ ଲେଉଟି ପଡ଼ି )
ଓଃ ଶଲ୍ୟ, ଶଲ୍ୟ, ମଦ୍ରପତି,
ଧର, ଧର ମୋତେ,
( ଶଲ୍ୟ ଉପରେ ଭରା ଦେଇ )
ମାୟାମୟ ଦେବକୀ ନନ୍ଦନ
ଧନ୍ୟ ମାୟା ତୋ'ର ।
କି କୌଶଳେ ରଖିଦେଲୁ ଆଜି
ଆଶ୍ରିତ ଜୀବନ ଆଉ କର୍ଣ୍ଣର ସମ୍ମାନ ।
ଅର୍ଜ୍ଜୁନ, ଅର୍ଜ୍ଜୁନ,
ବୀରପଣ ତୋର ବୁଝିଲି ଏଥର,
ଏତେଦିନେ ଭାଙ୍ଗି ଅଛି ଭ୍ରମ ।
ଏହି ଗୁଣେ ଧରୁ ତୁ ଗାଣ୍ଡୀବ ?
ଏଥିପାଇଁ ସବ୍ୟସାଚୀ ନାମ,
ବୀର ବୋଲି ବୋଲାଉ ଜଗତେ ?
କାହୁଁ ଭାଇରେ ଫାଲଗୁନୀ
କ୍ଷୋଭ ହୁଏ ମନେ,
କର୍ଣ୍ଣର ଜୀବନ ନାଶି ଆଜିକାର ରଣେ
ହରାଇଲୁ କି ଅମୂଲ୍ୟ ନିଧି—
( ଶକୁନି ଦ୍ରୁତ ବେଗରେ ପ୍ରବିଷ୍ଟ ହେଲେ )
ଶକୁନି—ଆଁ—ଆଁ—କର୍ଣ୍ଣ ! କର୍ଣ୍ଣ ! ଶେଷରେ ମହାବୀର କର୍ଣ୍ଣ—
ଦୁର୍ଯ୍ୟୋଧନର ପ୍ରିୟ ମିତ୍ର—ଶେଷ ଭରସା ! କୁରୁକ୍ଷେତ୍ରରେ
ସେନାପତି ସ୍ୱୟଂ ! ଓହୋ, ହୋଃ ( ଉଚ୍ଚସ୍ୱରେ )
ଦୁର୍ଯ୍ୟୋଧନ—ଦୁଃଶାସନ—ମହାରାଜ—
( ସବେଗେ ନିଷ୍କ୍ରାନ୍ତ ହେଲେ )
କର୍ଣ୍ଣ—କୁନ୍ତୀ, କୁନ୍ତୀ, କାହିଁ ଅଛ ମାତଃ,
ଦେଖ ଆସି ପୁତ୍ର ତୋର ପାଳିଅଛି ପଣ,
ହୋଇଛି ତୋ ବାସନା ପୂରଣ ;
ରହ ଏବେ ସୁଖେ ତୋର ପଞ୍ଚସୁତ ସେନି ।
ଅର୍ଜ୍ଜୁନ ରେ ଭାଇ,
କୁନ୍ତୀ ଗର୍ଭେ ଜନ୍ମ ହୋଇ ତୋର ଜ୍ୟେଷ୍ଠ ଭ୍ରାତା,

ସୂତଗୃହେ ଆବାଲ ପାଳିତ,
ଆଜି ମୋର ଜୀବନର କର୍ମ ଅବସାନ,
ପୂର୍ଣ୍ଣ ବ୍ରତ ପୂର୍ଣ୍ଣ ମନସ୍କାମ ।
ଅନ୍ତିମ ସମୟେ ଆଜି
ଦେଖୁଅଛି ଦିବ୍ୟ ନେତ୍ରେ ମୁହିଁ
ସମରେ ବିଜୟ ଲକ୍ଷ୍ମୀ ବରିବେ ପାଣ୍ଡବେ ।

**ଅର୍ଜ୍ଜୁନ**—ଭାଇ, ଭାଇ,
କ୍ଷମ ଅପରାଧ ତବ ଅଜ୍ଞାନ ଭ୍ରାତାର ।
ମୋହେ ପଡ଼ି ସାଡ଼କର ଉନ୍ମାଦନା ବଶେ
ହୁଡ଼ିଛି ଅନୁଜ ତବ ଧର୍ମ କ୍ଷତ୍ରିୟର ;
କ୍ଷମାକର, କ୍ଷମାକର, ନାହିଁ ପ୍ରତିକାର
ଅନୁତାପ ଏକା ମୋର ଜୀବନ ସମ୍ବଳ ।
ହେ ଗୋବିନ୍ଦ,
ଅନ୍ତର୍ଯ୍ୟାମୀ ହୋଇ କପାଁଇ କରିଲ
ଲିପ୍ତ ମୋତେ ଏହି ମହାପାପେ
ଭ୍ରାତୃ ରକ୍ତେ କଳଙ୍କିତ କର ?
ଏ କି ବିବେଚନା ତବ କପଟ ଠାକୁର ?

ଶ୍ରୀକୃଷ୍ଣ—ହେ ଭାରତ,
ସର୍ବ କର୍ମ ମୋ ଚରଣେ କରି ସମର୍ପଣ,
ଫଳ ହେତୁ କାଂକ୍ଷା ପୁଣି ହେଉଛ ବିକଳ,
ଆପଣାକୁ ମଣୁଛ ସ୍ୱତନ୍ତ୍ର ?
କିଏ ତୁମ୍ଭେ—କିଏ ସୂତ-ପୁତ୍ର,
ଶତ୍ରୁ ମିତ୍ର ; ରଣକ୍ଷେତ୍ରେ କାହିଁ ?
ଦେଖ ଚାହିଁ ଜ୍ଞାନ ନେତ୍ର ଫେଇ
ବିରାଜେ ସର୍ବତ୍ର ମୁହିଁ ସର୍ବମୟ ରୂପେ ।
( ଶକୁନି ଓ ଦୁର୍ଯ୍ୟୋଧନ ପ୍ରଭୃତି ଦ୍ରୁତବେଗରେ ପ୍ରବେଶ କଲେ )

ଶକୁନି—ଏହି ମହାରାଜ, ଅନ୍ୟାୟ ସମର ! ଅନ୍ୟାୟ ସମର !!
ଓହୋ, ଅଧର୍ମ, ଅଧର୍ମ—ଘୋର ଅଧର୍ମ ! ଆହା,
ସେନାପତି କର୍ଣ୍ଣ ; ଆହା !

ଦୁର୍ଯ୍ୟୋଧନ—( ପାଖକୁ ଯାଇ )
ସଖା, ସଖା ଦିଅ ଆଲିଙ୍ଗନ ।
( ଦୁର୍ଯ୍ୟୋଧନ ଆଲିଙ୍ଗନ )

**କର୍ଣ୍ଣ**— ଆଜି ମୋର କର୍ମ ସମାପନ ;
ଆପଣା ଜୀବନ ଦାନେ
ସାଧୁଅଛି ପ୍ରିୟ କାର୍ଯ୍ୟ ତବ,
ଋଣମୁକ୍ତ କର ସଖା ।
ହେ କୃଷ୍ଣ, ପତିତପାବନ ଅଗତିର ଗତି,
ହେ ଶ୍ରୀପତି, ଶ୍ରୀପଦେ ଏତିକି ବିନତି
ଆସନ୍ନ ମରଣ କାଳେ
କର ଦାନେ ଶିରେ ମୋର ଚରଣ ଅର୍ପଣ ।
( ଶ୍ରୀକୃଷ୍ଣ ଚରଣ ଅର୍ପଣ କଲେ )
ଧନ୍ୟ ଆଜି କର୍ଣ୍ଣର ଜୀବନ,
ପୂର୍ଣ୍ଣ ଆଜି ଆଜନ୍ମ ସାଧନା ;
ନାହିଁ ମୋର କ୍ଷୋଭ କିଛି
ହୋଇଛି ମହତ ଚିନ୍ତା—ରହିଛି ପ୍ରତିଜ୍ଞା ।
ଆଜି ରଣ କରିଛି ପ୍ରମାଣ,
ସୁଦକ୍ଷ ଧାନୁକୀ ପଣେ
କର୍ଣ୍ଣର ଶ୍ରେଷ୍ଠତ୍ୱ । ( ପତନ )
( ବୃଷକେତୁ ବ୍ୟାକୁଳ ଭାବରେ ପ୍ରବେଶ )

ବୃଷକେତୁ—ପିତା, ପିତା, କା'ର ଖର
ତୀକ୍ଷ୍ଣ ଶର ପ୍ରହାରିଛି ପୃଷ୍ଠଦେଶେ ତବ ?
କିଏ ସେ ପାଷଣ୍ଡ ?
ହତ୍ୟା ଏ ଯେ,
ନିର୍ମମ ନିଷ୍ଠୁର ହତ୍ୟା କାପୁରୁଷୋଚିତ ।
ଅତର୍କିତେ ଶୀତଳ ଶୋଣିତେ,
କହ ପିତଃ
କେଉଁ ଭୀରୁ ଦୁଷ୍କୃତ ପାମର
ଦୁରାଚାର ନରକର କୀଟ
ଦୁଃସାହସେ ବାନ୍ଧିଛି ଅନ୍ତର ?
କହ—କହ,
ଏହିକ୍ଷଣି ଖଣ୍ଡ ଖଣ୍ଡ କରି ତା' ଶରୀର
ଅର୍ପିବି ପିଶିତ ଅସ୍ଥି ଶୃଗାଳ କୁକ୍କୁରେ !
ପିତୃ-ଋଣ କରି ପରିଶୋଧ ।

କର୍ଣ୍ଣ— ଶାନ୍ତ ହୁଅ ବତ୍ସ ମୋର,
ମାନବ ଅଦୃଷ୍ଟ ଲିପି କେ କରେ ଖଣ୍ଡନ ।
ପିତା ତୋ'ର
ଆପଣାର କର୍ମଫଳ ଲଭୁଛି ଆପଣେ ।
ବୃଷକେତୁ, ବୃଷକେତୁ, ନୟନପ୍ରଦୀପ,
ଆସ ବତ୍ସ, ଆସ ଥରେ କୋଳେ
( ଆଲିଙ୍ଗନ କଲେ )

— ଶେଷ —

ଆଃ, ଶାନ୍ତି, ଶାନ୍ତି ।
ଜୀବନ ସନ୍ଧ୍ୟା ମୋର
ଯେଉଁ ଆଶେ କୁରୁକ୍ଷେତ୍ରେ ଆସିଥିଲୁ ଧାଇଁ,
ଦେଖ ଦୁହିଁ ପୁରିଲେ ତୋହର
ଜପିଥିବେ ନର ନାରାୟଣ
ଧନ୍ୟ କର ଯୁଗଳ ନୟନ ।
ବନମାଳି,
ଜୀବନେ ତାହାକୁ କର୍ଣ୍ଣ ମାଗିନାହିଁ ଦାନ,
କିନ୍ତୁ ଏ ମରଣ କାଳେ ତୁମ୍ଭର ଚରଣେ
ନୈବେଦ୍ୟ ଏହି କର୍ଣ୍ଣର ।
ହେ କେଶବ, ଶରଣ-ପଞ୍ଜର
ମୋର ବୃନ୍ତକୁ ପାଇଁ
ରକ୍ଷିବ କଣ୍ଟକ ହୀନ ରାଜୀବ ପଦ୍ମରେ ;
ଅର୍ପିଲି ନୈବେଦ୍ୟ ରୂପେ
ହେ [illegible]
ମୋର ଏହି ବୃନ୍ତ-ଚ୍ୟୁତ ଜୀବନ କୁସୁମ ।

( ନନ୍ଦନ ନଟିକାର [illegible] )

ବୃନ୍ଦେକୁ— (ଗୀତ)

ନୟନ ନୀରଦ ଶ୍ୟାମ ସୁନ୍ଦର ମୂରତି,
ତୋହ ବିନା ମୋର ଅଛି ନାହିଁ ଆନ ଗତି ।

ଭକ୍ତ ବାଞ୍ଛା କଳ୍ପତରୁ ପ୍ରେମ ପାରାବାର
ଶରଣ ରକ୍ଷଣ-ବାନା କରୁଣାଆଧାର
ଶ୍ରୀରାଧିକା ପ୍ରାଣଧନ—
ଗୋପିକା ମନମୋହନ—
ନବଘନ ଅପଘନ ।
ନ ଦେଖିବି ବୋଲି ଥରେ, ସେ ରୂପ ନେତ୍ର ପଥରେ
ଅନ୍ତରେ ଅନ୍ତରେ ବସି ନିରନ୍ତରେ
କାତରେ ଚିନ୍ତଇ ସଦା ଚିତ୍ତରେ ॥
ଏତେ ଦିନେ ପାଇଛି ଦେଖା—
ନୂପୁର ସେହି ଚରଣ ରେଖା—
ଆହେ ପ୍ରାଣ ସଖା ...
ଦାସ ପଣେ ହେଲି ବିକା
ହୃଦୟ ସଙ୍ଗିନି ଆହେ ବନମାଳି
ନାହିଁ କିଛି ଆଶା ଆଜ ।
ମନ ପ୍ରାଣ ଦେଲି ଢାଳି ତୋହ ଗୁଣ ଭାଳି ଭାଳି
ଜନମେ ଜନମେ ତୋର ଶ୍ରୀଚରଣେ
ଚିତ୍ତ ମୋର ରହୁଥାଉ ।
ବୁଝି ବୁଝି ଏ ଜୀବନ ଯାଉ —
( ସେହି ଅଞ୍ଜନ ଗଞ୍ଜନ ଛବି )
( ସେହି କଞ୍ଜ ପାଦ ଭାବି ଭାବି )
ସେ ଅମୂଲ୍ୟ ନାମ ଗାଇ ଗାଉ ।

( ଦେବକୀ ପତନେ )

— ଶୁଭମସ୍ତୁ —



# ବ୍ରଜ ବର୍ଜନ

—ପୁରୁଷ—

ନନ୍ଦ—ଗୋପ ପତି
ଶ୍ରୀକୃଷ୍ଣ—ନନ୍ଦ ପୁତ୍ର
ସୁବଳ
ସୁଦାମ
ଦାମ
କୋକିଳ
ମଧୁ
(ସୁବଳ … ମଧୁ — କୃଷ୍ଣଙ୍କ ସଖା)
ବଳରାମ—ରୋହିଣୀ ପୁତ୍ର
କଂସ—ମଥୁରାଧିପତି
ଅକ୍ରୂର—ରାଜାର ଚର
ଦୂତ ଇତ୍ୟାଦି

—ସ୍ତ୍ରୀ—

ଯଶୋଦା—ନନ୍ଦ ସ୍ତ୍ରୀ
ଶ୍ରୀମତୀ—ଚନ୍ଦ୍ରସେଣ ସ୍ତ୍ରୀ
ଲଳିତା
ବିଶାଖା
ଚିତ୍ରା
ବୃନ୍ଦା
(ଲଳିତା … ବୃନ୍ଦା — ଶ୍ରୀମତୀଙ୍କ ସଖୀ)
ଗୋପାଳୁଣୀ ତିନି ଜଣ ଇତ୍ୟାଦି



# ବ୍ରଜ ବର୍ଜନ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( କଂସ ଓ ଅକ୍ରୂର )

କଂସ— ମନ୍ତ୍ରୀ !
କୃଷ୍ଣ ଚିନ୍ତା ଅନୁକ୍ଷଣ ଦାରୁଣ ହୃଦୟ
ଶିଳାଶେଳ ସମ
ଅନ୍ତରେ ରହିଛି ଜାକି ।
ନାହିଁ ସୁଖ ଭୋଜନେ ଶୟନେ ।
ସିଂହାସନ କଣ୍ଟକ ମଣ୍ଡିତ,
ରାଜକାର୍ଯ୍ୟ ହୋଇଲାଣି ବିଶୃଙ୍ଖଳ ।
ଅପଗତ ଚିତ୍ତରୁ ପୁଲକ,
ଚିନ୍ତା ଦିନ ଦିନ ;
କି କରିବି କହ କିଛି ଏଥିକୁ ଉପାୟ ।

ଅକ୍ରୂର—ମହାରାଜ, ଖ୍ୟାତିମନ୍ତ ସସାଗରା ଧରାପତି,
ତ୍ରିଭୁବନ ବିଜୟୀ, ରାଜଚକ୍ରବର୍ତ୍ତୀ । ସାମାନ୍ୟ
ଗୋପଶିଶୁର ଭୟରେ ଏତେ ବ୍ୟଥିତ ହେବା କି —

କଂସ— ନା —ନା ମନ୍ତ୍ରୀ !
ନୁହେ କୃଷ୍ଣ ସାମାନ୍ୟ ବାଳକ ।
ଦେବର୍ଷି ନାରଦ ବାକ୍ୟ ପଡ଼ିଗଲେ ମନେ;
କମ୍ପି ଉଠେ ହିୟା ମୋର
ରକ୍ତ ଯାଏ ଶୁଖି ।
କି ଏକ ଅଜ୍ଞାତ ଭୟ ନୟନ ସମ୍ମୁଖେ,
ଜ୍ୱଳି ଉଠେ ଅଗ୍ନିଶିଖା
ପ୍ରଚଣ୍ଡ ଝାସରେ ।
ଆଜ୍ୟଯାଏ କୃଷ୍ଣ ରୂପ ଦେଖି ନାହିଁ କେବେ
ଚର୍ମଚକ୍ଷୁ ନେଇ
କିନ୍ତୁ
ମତ୍ତ ସିଂହଶିଶୁ ସମ କଶାଗ୍ର କୋମଳ
ଧାଇଁ ଆସେ ସଦା କାହିଁ କେଉଁଠି ଏ ବାଳକ ।
ସେ ରୂପ ମୁଁ ଦେଖୁଅଛି ନିତ୍ୟ
ମାନସ ନୟନେ
ସ୍ୱପନେ ଶୟନେ ଯଥା ତଥା ଜାଗରଣେ ।
**ସେହି କୃଷ୍ଣ—ସେହି କୃଷ୍ଣ**
ଚିହ୍ନିଛି ମୁଁ ତାକୁ —
ମୋର ପ୍ରାଣର ବଇରି ।

ଅକ୍ରୂର—ମହାରାଜ, ସେଇଟା ସାମାନ୍ୟ ହୃଦୟ ଦୌର୍ବଲ୍ୟ ମାତ୍ର । ମହିମା, ଆଜ୍ଞା ଦେଲେ ସେହିପରି ଗୋପାଳବାଳକ ଫଳକ ମାତ୍ରେ —

କଂସ — ସବୁ ଚେଷ୍ଟା ସବୁ ଯତ୍ନ ହେଲାଣି ବିଫଳ ।
କୃଷ୍ଣର ବିନାଶ ପାଇଁ କେତେ କେତେ ବୀର
ବୃନ୍ଦାବନେ କେତେଥର ଗଲେଣି ସଦମ୍ଭେ,
କି ମନ୍ତ୍ର କେଜାଣି ଜାଣେ ଗୋପ ନନ୍ଦସୁତ,
ବୀରଶୂନ୍ୟ ହୋଇଲାଣି ମଥୁରା କଟକ ।
ଆଜ୍ଞା ଦିଅ ସେନାଗଣେ ସାଜନ୍ତୁ ସରବେ,
ରଥ, ଗଜ, ଅଶ୍ୱ, ଆଦି ସମଗ୍ର ବାହିନୀ
ଘେରନ୍ତୁ ସକଳେ ଯାଇ ସାରା ବୃନ୍ଦାବନ,
ଆବାଳବନିତାବୃଦ୍ଧ ଯେତେ ଗୋପ, ଗୋପୀ
ନାଶନ୍ତୁ ସଭିଙ୍କୁ ଦୟାମାୟା ପରିହରି ।
ଦେଖିବି ଏଥର କୃଷ୍ଣ କରିବ କି ଛନ୍ଦ ।

ଅକ୍ରୂର—ମହାରାଜ, ଏଇ ସାମାନ୍ୟ କଥାରେ ଏତେ ଆଡ଼ମ୍ବର କରିବା ତ ଉଚିତ ନୁହେଁ । ଏ କଥାଟାରେ ଜଗତର ଲୋକେ ହସିବେ ସିନା ! ଆଉ ମହିମାଙ୍କର ଅକୀର୍ତ୍ତି ଘୋଷଣା କରିବେ । କୌଣସି ପ୍ରକାର କପଟରେ ଶତ୍ରୁ ନିପାତରୂପ କାର୍ଯ୍ୟ ସିଦ୍ଧ କଲେ ସବୁଆଡ଼ୁ ଭଲ ହେବ । ସେପରି କର୍ମ ମଧ୍ୟ ରାଜନୀତି ବିଗର୍ହିତ ହେବ ନାହିଁ ।

କଂସ— କହ, କହ ମନ୍ତ୍ରୀ କହ କି ଉପାୟ ?

ଅକ୍ରୂର—ହଜୁରଙ୍କର କୃଷ୍ଣବଳରାମ - ସମ୍ପର୍କରେ ଭାଗିନେୟ । ସେମାନଙ୍କୁ ଧନୁଉତ୍ସବ ଦେଖିବା ଛଳରେ ନିମନ୍ତ୍ରଣ କରି ମଥୁରାକୁ ଡେକ ଆସିଲେ ଏଠାରେ ଆମ୍ଭମାନଙ୍କର ଅଧୀନ ହୋଇ ପଡ଼ିବେ । ତେଣିକି ଯାହା ଇଚ୍ଛା ଆମ୍ଭେମାନେ ତାହା କରି ପାରିବା । ସିଂହ ଗୁହା ଭିତରୁ ଆଉ ପଳାଇବାର ଉପାୟ ରହିବ ନାହିଁ । ଯେ କୌଣସି ପ୍ରକାର ନିଶ୍ଚୟ କାର୍ଯ୍ୟ ସାଧନ ହେବ ।

କଂସ—ଯୁକ୍ତିଯୁକ୍ତ କଥା ।
କହ — ଦୂତ କଏ ?
ତୁମ୍ଭ ଛଡ଼ା ଆନ ଜଣେ ନ ଦେଖେ କାହାକୁ
ଛଳେ ବଳେ ଅଥବା କୌଶଳେ
ଭୁଲାଇ ଆଣିବ ଧୂର୍ତ୍ତ ଗୋପବାଳଗଣେ ।

ଅକ୍ରୂର—ପ୍ରଭୁ, ଏ ଦାସକୁ କ୍ଷମା କରନ୍ତୁ ! ଅନ୍ୟ କେହି ଯୋଗ୍ୟ
ବ୍ୟକ୍ତିଙ୍କୁ ଶ୍ରୀମୁଖରୁ ଆଜ୍ଞା ହେଉ ।

କଂସ—ରାଜ ଆଜ୍ଞା ଅବଜ୍ଞାରେ ନାହିଁ ଶଙ୍କା ଲେଶ,
କି ସାହସ କଂସର ଆଦେଶ
ଫିଙ୍ଗି ଦେଲୁ ଅବହେଳେ ତୃଣ ଜ୍ଞାନ କରି ?
ଗୁପ୍ତଚର ତୁହି ନଷ୍ଟ ଅଟୁ ଗୋପାଳର ।
ଅନ୍ନଦାନେ ପୋଷେ ଅଛି ତୋତେ ଏତେ ଦିନ,
ନିଜର ଆଗାରେ ଶତ୍ରୁ କାଳ ବିଷଧର ।
କରୁଛି ଆଦେଶ ପୁଣି ବିଳମ୍ବ ନ କରି
ଅତି ଶୀଘ୍ର ଘେନି ଆସ କୃଷ୍ଣବଳରାମ ।
ନୋହିଲେ ଜାଣିଛ ତୁମ୍ଭେ ତାର ପରିଣାମ ?
( ଅର୍ଦ୍ଧ ସ୍ଫୁର୍ତ୍ତ )

ଅକ୍ରୂର—ହେ ନାଥ, ହେ ଦୀନବନ୍ଧୁ ! ତୋର ଏଥିରେ କି ନିଗୂଢ଼
ରହସ୍ୟ ନିହିତ ଅଛି ତାହା କଏ ଜାଣିବ ? ଇଚ୍ଛାମୟ !
ତୋର ଇଚ୍ଛା ପୂର୍ତ୍ତି ହେଉ ।

କଂସ—କାହିଁକି କରୁଛ ଦ୍ୱିଧା ?

ଅକ୍ରୂର—ରାଜଆଜ୍ଞା ଶିରୋଧାର୍ଯ୍ୟ ମୋର ।

କଂସ—ଯାଅ ତେବେ ।

( ଅକ୍ରୂରର ପ୍ରଣାମ ଓ ପ୍ରସ୍ଥାନ )

କଂସ—ଦେଖିବ ଦେଖିବ କୃଷ୍ଣ ଦେଖିବ ଏଥର
କେତେ ଛଳ, କି କୈତବ ଜାଣୁରେ ପାମର !
ନାହିଁ ରକ୍ଷା ଆଉ ।
ଏତେ ଦିନେ ପଡ଼ିଛୁ ତୁ ବଡ଼ ଶକ୍ତ ଜାଲେ ।
( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ଏକାକୀ ନନ୍ଦ ପ୍ରବିଷ୍ଟ ହେଲେ )

ନନ୍ଦ—ରାମ ରାମ ରାମ ରାମ ! ଟୋକାଟା ଏଡ଼େ ହୁନ୍ଦରିଆ ? ଗଉଡ଼
ଘର ପିଲା, ପାଠ ଶାଠ ତ ପଢ଼ିଲା ନାହିଁ । ତେହିଁକି
ମା'ଙ୍କର ସ୍ନେହ ଯେ ରାଇଜରୁ ବାହାର । ପିଲାଙ୍କୁ ଫେର୍
ଏତେ ମୁହିଁ ଦିଅନ୍ତି ! ଅତି ଶରଧାରେ ଏଇପରି ଟୋକାଟାକଙ୍କ
ବିଗିଡ଼ି ଯାଇ ଘୋଡ଼ାମୁହାଁ ଧରି ଯାଆନ୍ତି ନା ! ମୁଁ ମନା
କରୁଛି । ମୁଁ ମନା କରୁଛି—କି ଲୋ, ଏବେ ଭଲ ଆଖି-
ଦେଖା କର୍ ! ନା— ହେଲା ନାହିଁ । ସେ ଯାହା କଲା—
ସାତଖୁଣ୍ ମାଫ୍ । ଏଇ ଦେଖ, ମୁଁ ଆଜି ଠାକୁର ପୂଜାରେ
ବସିଛି, ବେଗବେଗ ଥୋଇ ଦେଇ ଆଖି ବୁଜି ଜପତପ
କରିବି କିଆଣ — ରୁହିଁଲି ବେଲକୁ ଖଟୁଲିରେ ବସି ଖଳ
ଖଳ କରି ହସୁଛି । ମୋର ତ ଚକା ଗୁମ୍ ! ଯେତେକ
ଦେବ ଦେବତାମ ସବୁ ପୁରିଇଛି ଦି' କାଳରେ । ମୋର ତ
ନାରି ବିଗ ହେଲା । ମାରି ତ ଥାଆନ୍ତି । ଧରି ପକେଇଲି
ବେଲକୁ ମନ ତ କ'ଣ ହେଇ ଗଲା ! ମାରିବି କ'ଣ —
ଓଲଟି କାନ୍ଧେଇ ପକେଇ, ବାଁପରେ, ଧନରେ —
( ଯଶୋଦା ପ୍ରବେଶ )

ଯଶୋଦା—ତମେ ସମାଳିବ ତ ତମ ପୁଅକୁ ସମାଳ । ମତେ
କହେଇ ଆଉ ରଖି ଥୋଇ ଦେବ ନାହିଁ ।

ନନ୍ଦ— କ'ଣ, କ'ଣ, କହେଇ କ'ଣ କଲା କି ?

ଯଶୋଦା—ମୋ ମୁଣ୍ଡ କଲା ! ସବୁ ଦୁଧ, ଦହି, ଛେନା, ଲହୁଣୀ
ଖାଇଛି ଯେତେ — ଫୋପାଡ଼ି ଦେଇଛି ତିନି ଯେତିକି ।

ନନ୍ଦ— ଆଚ୍ଛା, ସେ ଗଲା କୁଆଡ଼େ ?

ଯଶୋଦା—କେଜାଣି ଲୁଚିଛି କେଉଁଠି ମୁଁ ଦେଖେଁ ।
( ପ୍ରସ୍ଥାନ )

ନନ୍ଦ— ହେଇ, ମୁଁ କହୁଥିଲି ପରା ! ଅତି ଗେହ୍ଲା କରିବାର
ପରିଣାମ ଏ । ଯେତିକି ଗେହ୍ଲା କରିବ ସେତିକି ମୁଣ୍ଡରେ
ଯିବ । ସେତିକି ମୁଣ୍ଡରେ ଚଢ଼ିବ । ଯଦି ବା ଗେହ୍ଲା କଲ,
ତେବେ ତା ଅର୍ଦ୍ଦଳି ସହିବ ନାହିଁ କାହିଁକି ? ଏତେ ବେଳକୁ
ତମ ପୁଅକୁ ତେମେ ସମାଳ । କି ଗେଲବସର କଲ
ବେଲକୁ ମୋତେ ଡାକୁଥିଲ ନା ?
( କୃଷ୍ଣଙ୍କୁ ବନ୍ଧନ କରି ଯଶୋଦା ପ୍ରବିଷ୍ଟ ହେଲେ )

କୃଷ୍ଣ— ( ଗୀତ )

ଫିଟାଇ ଦେ ବନ୍ଧନ ଗୋ ବଡ ବ୍ୟଥା ହେଲାଣି !
ମୁଁ ପରା ତୋହରି କଳା- ମାଣିକ ଗୋ ଜନନୀ !

ଯଶୋଦା—ନା—ନା—ଏଥର ତୋ କଅଁଳ କଥାରେ ଆଉ ଭୁଲିବି
ନାହିଁ ଯେ । କିଛି ନ କହିଲାରୁ ମନ ଅତି ବଢ଼ି ଗଲାଣି-ନା ?

କୃଷ୍ଣ— ( ଗୀତ )

ଆଜ୍ଞା ତ ନବଣୀ ଚୋର   ନ କରିବ ଚୋର ପଣ
ଆଜି ତୋ ମନରେ ବ୍ୟଥା   ନ ଦେବ ଗୋ ନୀଳମଣି !

ଯଶୋଦା—ଥାଉ ଆଜିରେ ସେତିକ ଥାଉ । ଏଣିକିପର ତ ଥରକୁ ଥର କହୁଥିଲୁ । ପୁଣି ଯେଉଁ କଥାକୁ ସେଇ କଥା । ଜଳ ପୋଡ଼ି ମଲିଣି ମୁଁ ତୋ ଲାଗି ।

କୃଷ୍ଣ— ( ଗୀତ )

ଆଉ ନ କରିବ ଗୋଳ   ନ ଲଗିବ ମୋ ଜଞ୍ଜାଳ
କାହିଁ ମାଆ ଗୋ କୋଳେ ଦେନା   କହ ମଧୁର ବାଣୀ
   ବଡ଼ ବ୍ୟଥା ହେଲାଣି ।

ନନ୍ଦ— ଯଶୋଦେ ଯଶୋଦେ ! ବଡ଼ ନିଷ୍ଠୁର ତମେ । ଛି, ଛି ନାରୀ ହୃଦୟ କେଉଁଦିନ ଏଡ଼େ କଠୋର କଲ ମ ? ମା' ହୋଇ ନୀଳମଣିର କୋମଳ ହସ୍ତରେ ବନ୍ଧନ କରିବାକୁ ତୁମର ହାତ ଗଲା ତ ?

( କୃଷ୍ଣ ପ୍ରତି ) ଆ ବାପ ମୋ କନ୍ଥକ ଆ — ମୁଁ ତୋ ହାତରୁ ଦଉଡ଼ି ଫିଟାଇ ଦିଏଁ । ( ଫିଟାଇ ଫିଟାଇ ) ଓଃ, କେଉଁ କୋହରେ ବାନ୍ଧି ଦେଇଛ । ହାତରେ ଦାଗ ବସି ଗଲାଣି ଯେ ! ବାପ କହୁଛି, ଆଉ ଏପରି ଅନ୍ୟାୟ କରିବୁ ନାହିଁ ?

କୃଷ୍ଣ— ( ଗୀତ )

ବଡ଼ କଠିନ ବନ୍ଧନେ   ତୋତେ ବାନ୍ଧି ଅଛେ ଗୋ
ଜନମେ ଜନମେ ମୁହିଁ   ବନ୍ଧା ସ୍ନେହ ପାଶେ ଗୋ ।

ଯଶୋଦା—ମୋତେ ସବୁ ସବୁବେଳେ ତୁମେ ଦୋଷ ଦିଅ କ — ମୁଁ ଅବା କଥା କହି ତା' ମୁହଁ ବନ୍ଦେଇ ଦିଏଁ ବୋଲି ? ଆଜି ଏ କ'ଣ ହେଲା ?

ନନ୍ଦ— ଘରଣୀ— ହିଁ ତା' ସତ । ହେଲେ କୃଷ୍ଣର ମୁହଁ ଦେଖିଲେ କାହିଁକି ସବୁ କଥା ପାସୋରି ଯାଏ — ହୃଦ ତରଳି ପଡ଼େ ।

ଯଶୋଦା—ଆପଣା କଥାରୁ ବୁଝିପାରୁଥିବ, ଯଶୋଦାର କି ଦୋଷ । କହିଁକି ମା'ର ମନ । (କୃଷ୍ଣ ପ୍ରତି) ମୋ ସୁନାଧନରେ ଆଉ କାନ୍ଦ ନା । ମୁଁ ତୋତେ ଏଇକ୍ଷଣି ଗୋପଯାକ ଯେତେ ସର ଲବଣୀ ଅଛି ସବୁ ଆଣି ଦେବି । ତୋ ଇଚ୍ଛା ଯାହା ଖାଇବୁ—ଯାହା ଫୋପାଡ଼ ଦେବୁ । ଚିକଏ ହସ୍ ବାପ ! ତୋ ଆଖିରେ ଲୁହ ଦେଖିବା ବେଳକୁ ମୋ ଛାତି ଫାଟି ଯାଉଛି ।

ନନ୍ଦ— ମୁଁ ଏବେ ଗୋପକୁ ଯାଉଛି । କହ୍ନେଇ ବନକୁ ଯିବ ପରା ! ବେଳ ହେଲାଣି ଯେ । ( ପ୍ରସ୍ଥାନ )

ଯଶୋଦା—ଆ' ବାପ, ଗୋଠବେଳ ଉଛୁର ହେଲାଣି । ଭାଇ ସଙ୍ଗରେ ଗାଈ ରଖି ଯିବୁ । ତୁ ତ ସୁନାପୁଅ ମୋର, କାହାର ସାଙ୍ଗରେ ମାଡ଼ଗୋଳ କରିବୁ ନାହିଁ । ଧୂମାଧୂମ ହେବୁ ନାହିଁ । ବୁଝିଲୁ ?

କୃଷ୍ଣ— ହୁଁ ।

( ଗୋପାଙ୍ଗନାଗଣ ପ୍ରବେଶ )

୧ମ ଗୋପୀ—ଗୋ ରାଣୀ, ପୁଅ ତ ତମର । ଏପରି ପୁଅ କ'ଣ ସଂସାରରେ ଅଛନ୍ତି ?

୨ୟ ଗୋପୀ—ମା'ଲୋ ପୁଅ; ଦେଖି ନାହାନ୍ତି,—ଦେଖାଉଛ !

୩ୟ ଗୋପୀ—ମୋ ପୁଅ ହୋଇଥିଲେ ତ ଏଇକ୍ଷଣି ତା ତଣ୍ଟି ଚିପି ଦିଅନ୍ତି !

ଯଶୋଦା—କଣ, କଣ, କହ୍ନେଇ ମୋର, ତମର ସବୁ କ'ଣ କଲା କି ? ଇମିତି କଥାଗୁଡ଼ାକ କାହିଁକି କହୁଛ ମ ?

୧ମ ଗୋପୀ—କ'ଣ କଲାକି ? ମୋ ଘରେ ଆଉ ଠେକିଟିଏ କି ଶିକାଟିଏ ନାହିଁ । ଶିକା ଉପରେ ଚଢ଼ି ସବୁ କଣ୍ଢେଇ ଛଡ଼ୁ ଚୂନା କରିଦେଇ ଆସିଛି । ସେ ଦୁଧ ଦହି ଗଲା ଗଲା; ମୋ ସରପଡ଼ା ପୋଡ଼ା ବେଢ଼େଙ୍ଗୀ ଦବ କିଏ ?

୨ୟ ଗୋପୀ—ପିଲା ବୋଲି ଅଣ୍ଡି ଖଣ୍ଡିଏ, ତାର ପେଟ୍ ଏଡ଼େ ଫାଟି ?—ଏଡ଼େ ପେଟ ?—ପେଟ ନା ଜାହାଜ ? ଆଖି ଆଗଟାରେ ସେ ହାଉଁ ହାଉଁ କନା ଯେତେ ଗିଳିଲା, ତା ଦଶୁଟା ମରଦ ବି ତ ପାରନ୍ତେ ନାହିଁ ।

କୃଷ୍ଣ— (ଗୀତ)

ଯେ ମୋତେ କରେ ଆପଣା   ମୁହିଁ ତାରି ପଦେ କଣା
ମୁଁ ତ ନ ଜାଣଇ କିଛି ଆତ୍ମପର ଭେଦ ।

ଯଶୋଦା—କଣ କରିବ କହିଲ ?—ସିମିତି ଅମାନିଆ ତ ହୋଇଛି । ମୁଁ କ'ଣ ତାକୁ ଫୋପାଡ଼ ଦେବି ? କାହାର କଥା ତ ମାନିଲା ନାହିଁ ।

୩ୟ ଗୋପୀ—ଆଚ୍ଛା ରାଣୀ, ପୁଅ ଶରଧା ଯଦି କଲାତ ତା' ପେଟ ପୁରାଇ ଖାଇବାକୁ ନ ଦେବ କାହିଁକି ଭଲା ? ପିଲା ଲୋକ ପେଟ ନ ପୁରିଲାକୁ ସିନା ପର ଘର ଅଣ୍ଡାଳୁଛି । ପୁଅକୁ ଭୁଖିଲା ରଖିବ ନାହିଁ, କ—ତ୍ ପେଲ ଘଡ଼ିରୁ ମୁହଁାସ ଛାଡ଼ିବ ନାହିଁ । କ—ତୁମର ରଜାଘରେ—ନାହିଁ କ'ଣ ?

**କୃଷ୍ଣ—** (ଗୀତ)

ତୁମ୍ଭେ ବ୍ରଜ ଗୋପୀଗଣ ଜାଣ ସିନା ମୋ ମରମ
ଆନ କେ ବୁଝିବ ଏବେ ନ କର ଗୋ ଖେଦ ।

ଯଶୋଦା—ମୁଁ ତୁମଠାରୁ ମାଗି ନେଉଛି—ଆଉ କିଛି କୁହ ନାହିଁ ତାକୁ । କାହ୍ନୁ ମୋର ବେଳୁ କାନ୍ଦିଲାଣି । ତମର ସେ ଯେତେ ଲୋକସାନ କରିଥିବ ମୁଁ ପଛକେ ତାର ଓଳି-ଚୋଳିକ ଦେବ ।

**କୃଷ୍ଣ—** (ଗୀତ)

ଜନମେ ଜନମେ ଋଣୀ ତବ ପାଶେ ବେଣୁପାଣି
କେମନ୍ତେ କରିବ ସେହି ଋଣ ପରିଶୋଧ ?

୧ମ ଗୋପୀ—ଆସ ଗୋ ଆସ । ଆଉ କହିଲେ କ ହେବ ? ତା ଦାଉ ସହିବାକୁ ତ ଈଶ୍ୱର କରିଛି, ସହିବ ।

୨ୟ ଗୋପୀ—କହି ହେଉଛି ନା— ସହି ହେଉଛି— ଅନ୍ତରେ ଅନ୍ତରେ ଦହି ହେଉଛି ।

୩ୟ ଗୋପୀ—ଆସ ଗୋ ଆସ—ତୁଚ୍ଛାଟାରେ ଏଠି ତସୁ କୁଟିଲେ କ'ଣ ହେବ ? ଧାନ କୁଟିଲେ ସିନା ଚାଉଳ ବାହାରନ୍ତା ?

( ଗୋପାଙ୍ଗଣୀମାନଙ୍କର ପ୍ରସ୍ଥାନ )

ଯଶୋଦା—ହେଇ ରାମ ଆଇଲାଣି ।

( ବଳରାମ ପ୍ରବେଶ )

ବାପ, ଦୁଇ ଭାଇଯାକ ସଙ୍ଗରେ ଥିବ । ରାମରେ, କହ୍ନେଇକୁ କେଉଁଠି ବଣ ଭିତରକୁ ଛାଡ଼ିଦେବୁ ନାହିଁ । ବୁଝିଲୁ ବାପ, କହ୍ନେଇ ମୋର ସୁନା ପୁଅ । ଭାଇ ପାଖରେ ସବୁବେଳେ ଥିବୁ । ବେଶି ଖରାରେ, ବଣଖମାଣରେ ବୁଲିବୁ ନାହିଁ ।

ବଳରାମ—ହଁ ମା, ତୋ'ର ଆଗରେ ସେମିତି ମୁହଁ ଶୁଖାଇ ରହୁଛି । ଏଠୁ ଟିକିଏ ବାହାରିଗଲେ ଯାହା ହୁଏ, ଯଦି ଥରେ ଦେଖନ୍ତୁ ତ ବୁଝନ୍ତୁ । କେତେବେଳେ କଦମ୍ବ ଗଛରେ ଚଢ଼ିବ ତ କେତେବେଳେ କାଳିନ୍ଦୀରେ ବୁଡ଼ିବ । ମୋ ପାଖରେ ଯେତେ ହେଲେ ଭଲ ରହନ୍ତା କି ଓଳେ ହେଲେ ମୋ କଥା ମାନନ୍ତା !

ଯଶୋଦା—ହଁରେ କହ୍ନେଇ, ତୁ କଣ ଭାଇ କଥା ମାନୁ ନା ?

କୃଷ୍ଣ— ଏଥର ମାନିବି ଯେ ।

ବଳରାମ—ହଉ ଚାଲ୍, ଆଜ ଦେଖିବା ଯେ ବଡ଼—ଲୁ ଏକା-ଦିନକେ କେତେ ଭଲ ହୋଇଗଲୁଣି ।

ଯଶୋଦା—ରାମ, ତୁ ଆଗ ଯାଇ ଗୁହାଳରୁ ଗାଈ ବାଛୁରି କାଢ଼ି ଆଣ, ମୁଁ କହ୍ନେଇକି ବେଶ କରି ଦିଏଁ ।

( ବଳରାମ ପ୍ରସ୍ଥାନ )

ଯଶୋଦା—ଆରେ କହ୍ନେଇ, ମୋ ପାଖକୁ ଆସିବୁଟି ! ତୁ ଆଜ ଏମିତି ମୁହଁ ଶୁଖାଇ ରହିଛୁ କାହିଁକି ମ ?

( କୃଷ୍ଣଙ୍କୁ ବେଶ କରିବାରେ ଲାଗିଲେ )

**କୃଷ୍ଣ—** (ଗୀତ)

ବାନ୍ଧି ଦେ' ମା ଶିରେ ମୟୂର ଚୂଳ
ଧବଳୀ ଶ୍ୟାମଳୀ ଦେଇ ହମ୍ବାରଡ଼ି
ଡାକିଲେଣି ମୋତେ ହୋଇ ଆକୁଳ ।

( ଯଶୋଦା ଗୀତ ଅନୁସାରେ ବେଶ କରୁଛନ୍ତି )

ସଜାଇ ଦେ ମା ଗୋ, ଅଳକା ତିଲକା,
ଭାଲେ ଦେଇ ଗୋରୁ ଗୋରଚନା ଟୀକା ।
(ମୋର) ପ୍ରିୟ ସଖାଗଣ ସୁବଳ ସୁଦାମ
ଦାଣ୍ଡ ଦୁଆରରେ ହେଲେଣି ଠୁଳ ।୧।

ସଜାଇ ଦେ'ମା ଗୋ, ଉଡ଼ ପୀତ ଧଡ଼ା
ଶିର ପରେ ଦେଇ ଗୁଞ୍ଜ ମାଳ ବେଢ଼ା ।
କ୍ଷୀର ନବନୀତ ଦିଅ ମା ସଜାଡ଼ି
ବେଳୁ ବେଳୁ ଗଡ଼ି ଯାଉଅଛି ବେଳ ।୨।

ପାଞ୍ଚଣ ମୁରଲୀ ଦେଇ କରେ ମୋର
ବାନ୍ଧିଦିଅ ମାଗୋ, ଚରଣେ ନୂପୁର ।
(ମୁଁ ତ) ରୁଣୁ ଝୁଣୁ ଝୁଣୁ ନାଚି ନାଚି ନାଚି
ବାଛୁରି ସଙ୍ଗରେ ଖେଳିବି ମୁଁ ଖେଳ ।୩।

ଗୋଧନ ଚରାଇ ରାମ ଭାଇ ସନେ (ବୃନ୍ଦାବନେ)
ମୁରଲୀ ବଜାଇ ବୁଲିବି ମୁଁ ବନେ,
(ମୋର) ମନେ ପଡ଼ିଲାଣି ନିକୁଞ୍ଜ କାନନ
ମନେ ପଡ଼ିଲାଣି ଯମୁନା କୂଳ ।

( ବେଳ ହେଲାଣି ଉଠୁର )
( ଖୁଆଇ ଦେ ମା ଗୋ କ୍ଷୀର ସର )
( ମଧୁମଙ୍ଗଳ ପ୍ରବେଶ )

ମଧୁ— ହଁ, ସତେ ତ ! ମୁଁ ଯାହା କହୁଥିଲି ସେଇଆ !
ଯଶୋଦା—କ'ଣ କହେ ମଧୁ ?
ମଧୁ—ନା ମା—ତମର ଏଇ ଗେହ୍ଲାପୁଅଟି କଥା । ସବୁ ସଖାଯାକ ଆସି ଏଇ ଗୁଣମଣିଙ୍କୁ ଜଗିକି ବସିଛନ୍ତି—ସିଏ ତାଙ୍କର ଏଣେ ମା ଶରଧାରେ ଅଛନ୍ତି ।
ଯଶୋଦା—ତୋ ମା ତୋତେ ଶରଧା କରେ ନାହିଁ କିରେ ମଧୁ ?
ମଧୁ— ଆମର ଗରିବ ଘର, ଶରଧା କୁଆଡ଼ୁ ପାଇବୁଁ ? ଆମର ନା ଅଛି ଧଡ଼ା ଚୂଡ଼ା—ମଣିମୁକ୍ତା ନା ଅଛି କ୍ଷୀର ସର । ଗେହ୍ଲା କରି କରି ଏକା କହ୍ନେଇକି ବଟାଳିଆ କରିଦେଲ ରାଣୀ !
ଯଶୋଦା—କହ୍ନେଇ କଣ ସତରେ ଏତେ ବଟାଳିଆ ନା ?
ମଧୁ— ମୋହନମୁହାଁ ସେ, ତା କଥା କିଏ ଜାଣିବ ? ବୁଢ଼ ବୁଢ଼ ନଖିକଯାକ ମାଛ ଖାଇବ, ଦେହରେ ଟୋପେ ବୋଲି ପାଣି ଲାଗିବ ନାହିଁ । '
ଯଶୋଦା—ହଉ ହଉ ତୁ ଆସିଛୁ ଭଲ ହେଇଛି ମଧୁ ।
ମଧୁ—କହ କଥା କହିଲ ରାଣୀ !
ଯଶୋଦା—କଣ କି କହ୍ନେଇ ମୋର ବଣକୁ ବଢ଼ ଡରେ । ରାତିରେ ସବୁ ଚନ୍ଦ୍ରକୁ ଚଉଛି ।
ମଧୁ— ହେ—ଏଇ କଥା ? ମୁଁ ଅଛି ମାନରେ । ଡର କ'ଣ ? ଏକେ ତ ମୋର ବ୍ରହ୍ମଗଣ୍ଠି ଅଛି । ତା'ପରେ ମୁଁ ଗୋଟାଏ ଶକତ ଗୁଣିଆ । ଏକା ପଦକେ ଡାହାଣୀ ଭୂତ ବାବା ବାବା ବୋଲି ଛୁଡ଼ ପଳାଇବେ ।

"ଅଶଥ ପତର ଖସ୍ ଖସ୍,
ଭୂତ ପେତ ଡାହାଣୀ ଚିରଗୁଣୀ ବ୍ରହ୍ମରାକ୍ଷସ
ଏ ଗାତରୁ ଯାଇ ସେ ଗାତରେ ପଶ୍ !
ଛୁଡ଼ବୁ ତ ଛୁଡ଼୍—ନ ଛୁଡ଼ବୁ ତ କାହାର ଆଜ୍ଞା
କାଉଁରୀ କାମଚଣ୍ଡୀଙ୍କର କୋଟି କୋଟି ଆଜ୍ଞା ।"

ଯଶୋଦା—ହଉ, କହ୍ନେଇ ଏକା ତୋତେ ଲାଗିଲା ।
ମଧୁ— ଆଉ ଗୋଟାଏ କଥା ରାଣୀ, ତା ବେକରେ ଖଣ୍ଡେ ଖଣ୍ଡିଆ ଛୁଞ୍ଚୁଣୀ ବାନ୍ଧିଦିଅ । ଆଉ ହାତରେ ଗୋଟାଏ କଜଳପାତି ଦେଇଥାଅ । ମୁଁ ବି ତା ଦେହ କଳା ଦେଇଥାଏ ଆଗରୁ—

କ୍ରିଁ ମନ୍ତ୍ର କାଳୀ—ହାତ ଦେଉ କଳା
ଗୋଡ଼ ଦେଉଁ କଳା—ପେଟ ଦେଉଁ କଳା
ଛାତି ଦେଉଁ କଳା—ପକେଇଲି ଧୂଳି
ସିଏ ଯୁଆଡ଼େ ଥିବ—ଏ ବଣରେ ଯିବ ମିଳି
କାଟ୍ କାଟ୍ ଭୂତ କାଟ୍, ଖଇପିସ କାଟ୍, ଡାହାଣୀ କାଟ୍,
ଚିରଗୁଣୀ କାଟ୍—ନ କାଟିବୁ ତ କାହାର ଆଜ୍ଞା
ନେଙ୍ଗୁଡ଼ିଗୁଣୀଙ୍କର କୋଟି କୋଟି ଆଜ୍ଞା—ଫୁ ଫୁ ଫୁ—

କ'ଣ କି ରାଣୀ, ସବୁ ଭୂତପେତଙ୍କୁ ମୋର ହେମନ୍ତ ପାଉଛି ଏକା ଗୋଟା କେତେ କଞ୍ଚା ଡାହାଣୀ ଅଛନ୍ତି ବଣରେ ତାଙ୍କୁ ତ ମୋର ବଳ ନାହିଁ ।
ଯଶୋଦା—ମୁଁ ତ ଏକଥା ଜାଣେ ନାହିଁ ମଧୁ—ତୁ ଦେଖିଛୁ ନା କେବେ ?
ମଧୁ— ବରବର୍—ନିତି ନିତି—ସେ ଆଠ ଭଉଣୀ—ପୁଣି କେତେବେଳେ ଷୋଳସହସ୍ର— ଆଉ ତାଙ୍କ ଭିତରେ ଜଣେ ସର୍ଦ୍ଦାରୁଣୀ—ତା ନାଁ—
( ଜିଭ କାମୁଡ଼ି ପକାଇବା )
ଯଶୋଦା—ତା ନାଁ କଣ ?
ମଧୁ— ନାଁ ଟା ମୋ ମନେ ପଡ଼ୁ ନାହିଁ । ସେ ସବୁ କେତେ ରୂପ ହୋଇ ଆସନ୍ତି— କେତେବେଳେ ଫୁଲ ତୋଳନ୍ତି, କେତେବେଳେ ଯମୁନାରୁ ପାଣି ଆଣନ୍ତି, କେତେବେଳେ ସୂର୍ଯ୍ୟ ପୂଜା କରିବାକୁ ଯାଆନ୍ତି ।
ଯଶୋଦା—ତେବେ ତମେ ସେ ଆଡ଼କୁ ଯିବ ନାହିଁ ।
ମଧୁ— କେବେହେଁ ନୁହେଁ—ମୁଁ ତା ସାଙ୍ଗରେ ନାହିଁକି—କଛି ଚିନ୍ତା ନାହିଁ—

(ଗୀତ)

କହ୍ନେଇରେ ବନକୁ ଯିବୁ ପରା—ଆ—
ଗୋଠ ଗୋପାଳ ଯେତେ ନେବା ପାଳିକି ତୋତେ
ଉଭା ହେଲେଣି ଯେତେ ବଜାଇ ଶିଙ୍ଗା—
ଆବାବା ବାବା ବୋଲି ଦେଇଣ କରତାଳି
( ବୁଝିଲୁ ? )

କୃଷ୍ଣ— ଉହୁଁ ।
ମଧୁ—ଆବାବା ବାବା ବୋଲି ଦେଇଣ କରତାଳି
ବନ କୁସୁମ ତୋଳି ହେଲେଣି ଉଭା ।
(ପଡ଼) ଧବଳୀ ଶ୍ୟାମଳୀ, ନେଲୀ କୁଞ୍ଜଗଳା
ହମ୍ବାରିଲେଣି କେତେ ବେଗେ ବେଗେ ଆ—

(କଥା)—ଆ ଭାଇ, ମା'ଙ୍କ କଥା ଶୁଣିଲୁଟି—ମୋ ପାଖେ ପାଖେ ଥିବୁ । ( କୃଷ୍ଣଙ୍କ ହାତ ଧରି ପ୍ରସ୍ଥାନ )

ଯଶୋଦା—ମୁଁ ବି ଯାଏଁ, ଘର ପାଇଟି ସାରିଦିଏଁ—ବେଳ ହୋଇଗଲାଣି ।

## ତୃତୀୟ ଦୃଶ୍ୟ

( ସଖାଗଣ ଗୀତ ଗାଇଗାଇ ପ୍ରବେଶ କଲେ । )

ଆସ ଆସ ଭାଇ ଜୀବନ କହ୍ନାଇ
କମ୍ପାଇ ନ ଆସୁ ବନ
କମ୍ପା ନ ବଜାଉ ମୋହନ ମୂରଲୀ
ଉଚ୍ଛନ୍ନ ହେଉଛି ମନ ।

ଏତେ ବେଳଯାଏଁ ବଦନ କମଳ
ନ ଦେଖି ପରାଣ ହେଉଛି ଆକୁଳ
ଆସରେ·········ଆସରେ
ଥରେ ମଧୁରେ ମଧୁରେ ଭାଷ ରେ
ଦଣ୍ଡେ ନ ଦେଖିଲେ ନବଘନ ରୂପ
ପିଣ୍ଡରେ ନ ରହେ ପ୍ରାଣ ।

ସୁବଳ—ଭାଇ କହ୍ନେଇ ଆଜି ଏତେ ବେଳଯାଏଁ ଆସି ନାହିଁକି ?

ସୁଦାମ—ସେ ତ କେବେ ଏତେ ଡେରି କରେ ନାହିଁ ।

ଶ୍ରୀଦାମ—କେଉଁଠି କିଛି ଗୋଳ ଲଗାଇ ଥିବ ।

କୋକଳ—ଆଜି କହ୍ନେଇ ଆସିବ ନାହିଁ ନା କଣ !

ସୁବଳ—କହ୍ନେଇ ନ ଆସିଲେ ଆଉ ଯେତେ ଆସନ୍ତୁ ପଛେ କିଛି ଭଲ ଲାଗିବ ନାହିଁ ।

ସୁଦାମ—ଏକା ସିଏ ଯଦି ନ ଆସିବ ତେବେ ଆଉ ବଣକୁ ଯିବା କାହିଁକି ?

ଶ୍ରୀଦାମ—ଚାଲ ସମସ୍ତେ ଗାଈ ଫେରାଇ ଆଣିବା ।

କୋକଳ—କହ୍ନେଇ ନିଶ୍ଚେ ଆସିବ । ଇମିତି ନ ହେଲେ ସମସ୍ତେ ଯାଇ ତାକୁ ଧରି ଆସିବା ।
(ନେପଥ୍ୟେ ବଂଶୀ ଧ୍ୱନି)

ସୁବଳ—ରହ ରହ ବଂଶୀ ଶୁଭିଲାଣି ଏମିତ ଆଉ କିଏ ବଜାଇବ ।

ସୁଦାମ—(ଦେଖି) ଇଏରେ ହଁରେ ହୋଇଚି ରାମ ଆଉ କହ୍ନେଇ ଦୁହେଁ ଯାକ ଆସୁଛନ୍ତି ।

(ରାମକୃଷ୍ଣ ଗୀତ ଗାଇ ଗାଇ ପ୍ରବେଶ କଲେ)

ମଧୁରେ ମଧୁରେ ଆଜ ବାଜରେ ବେଣୁ
ଉଚ୍ଛଳାଇ ଅମ୍ବର ଭରଳାଇ ଅନ୍ତର
ମୁଗଧ ହୃଦୟେ ଆଜ ଜାଗି ଉଠୁ ଆଶା
ବାଜରେ ବାଜରେ ବାଜ ରେଗା ରେଗା ସାସା ।
ମାଠରେ ଆନନ୍ଦେ ମନ୍ଥର ମନ୍ଦେ
ପୁଲକିତ ଛନ୍ଦେ ନାଚ ରେ ଧେନୁ,
ସୁନ୍ଦର ବନଭୂମି ସୁନ୍ଦର ଗାନ୍ତ
ସୁନ୍ଦର ଶଶଧର ବିମୋହନ ଭାନ୍ତି,
ବହ ଆସେ ରଙ୍ଗେ ପରିମଳସଙ୍ଗେ
ପବନ ତରଙ୍ଗେ କେତକୀ ରେଣୁ ।

ଶ୍ରୀଦାମ—କୁ ଭାଇ, ଏତେ ଡେରି କଲୁ କାହିଁକି କହନ ?

କୋକଳ—ଛୁ ଭାଇ ଆମକୁ ଏଣିକି ଏତେ ଦୁଃଖ ଦେବୁ ନାହିଁ ।

ସୁବଳ—କହ୍ନେଇ, ମୁଁ ତୋପାଇଁ କି ସୁନ୍ଦର ଫୁଲମାଳଟିଏ ଗୁନ୍ଥି ରଖିଛି ନେ ଗଳାରେ ପକା । (ପିନ୍ଧାଇ ଦେବା)

ସୁଦାମ—ମୁଁ ଗୁଞ୍ଜ ଫଳରେ କିମିତିକା ଚୂଡ଼ାଟିଏ କରିଛି ଆ ପିନ୍ଧାଇ ଦିଏଁ ।

କୋକଳ—ମୁଁ ଭାଇ ତୋପାଇଁ କି ସୁନ୍ଦର କୋଳଗୁଡ଼ାଏ ବଣରୁ ତୋଳି ଆଣିଛି ନେ ଖାଆ (ଖୁଆଇ ଦେବା)

ସୁବଳ—ମଲା ଏ ଖଣ୍ଡିଆ କୋଳି ଗୁଡ଼ାକ ଏତେ କରିଧାରେ ରଖି ଥିଲୁ ନା ?

କୋକଳ—ହଁ ସବୁ ଫଳ ଚାଖେଁ, ଯେଉଁଟା ଖଟା ଲାଗେ ତାକୁ ଫୋପାଡ଼ ଦିଏ ଆଉ ଯେଉଁଟା ମିଠା ଲାଗେ ତାକୁ କହ୍ନେଇ ଖାଇବ ବୋଲି ରଖି ଦିଏଁ ।

କୃଷ୍ଣ—ହଁ ଭାଇ, ମୁଁ ସ୍ନେହର ଦାସ, ସ୍ନେହରେ ମୋତେ ଯିଏ ଯାହା ଦିଏ ତାହାଠାରୁ ବଳି ମୋର ପ୍ରିୟ ବସ୍ତୁ କିଛି ନାହିଁ ।

ସୁଦାମ—ଆଜି କି ଖେଳ ଖେଳିବା କହିଲୁ ସୁବଳ, ମୋର ଘୋଡ଼ା-ଖେଳ ଖେଳିବାକୁ ମନ ହେଉଚି ।

ସୁବଳ—ମୋ ମନ ହେଉଛି ଆଜି କିଛି ଖେଳ ଭଲ ହେବ ନାହିଁ । କହ୍ନେଇର ମୁହଁ ଆଜି ଶୁଖିଲା ଶୁଖିଲା ଦିଶୁଛି । ସେ କାହିଁକି କେଜାଣି ହସୁ ନାହିଁ ।

କୋକଳ—ମଧୁ ଥାଆନ୍ତା କି ତାକୁ ସିନା ହସାନ୍ତା, ସେ ଆଜି ଗଲା କୁଆଡ଼େ ?
(ପାଟି କରି ମଧୁ ପ୍ରବେଶ କଲା)

ମଧୁ—ଆରେ ମୁଁ ଅଛିରେ ଅଛି, ଓଃ କହ୍ନେଇ ଏଡ଼େ ଦଗାବଜିଆ, ଗଉଡୁଣୀ ଯାକ ସବୁରେ କହନ୍ତି ଶଠିଆ, ହଟିଆ, ଲଟିଆ, କୁଟିଆ, କପଟିଆ ।

—:୪୫:—

ସୁଦାମ—ତୋତେ କ'ଣ କଲକ ?

ମଧୁ—ମୁଁ ଚାସାଙ୍ଗରେ ଆସୁଥିଲି ବାଟରେ ଦେଖିଲି ଗୋଟାଏ ଫଳ ପାଚି ଲାଲ ଟହଟହ ଦିଶୁଛି । ପାଚିରୁ ତ ଲାଲ ବୋହିଲା ।

ସୁଦାମ—ବ୍ରାହ୍ମଣ ପେଟ୍ ତ—

ମଧୁ—ହଁ ମନେ କଲି କହ୍ନେଇକୁ ଲୁଚେଇ ଏକା ମାରଦେବି । ଏହା କହି ଟିକିଏ ଟିକିଏ ପଚ୍ଛେଇ ପଚ୍ଛେଇ ରହିଲି, ଆରେ ଭାଇ, ଯିମିତି ହାତ ବଢ଼େଇଛି ଏକେ ବାଉଁଶ କଣ୍ଟା ପଶିଲା ଯେ ଗୋଡ଼ରେ ମୁଁ ତ ଛଟପଟାଙ୍ଗ, ଆଉ ଭାଗ୍ୟେ ଝାଡ଼ଫୁଙ୍କ ଟିକେ ଜାଣିଥିଲି ବୋଲି ପାର୍ ପାଇଲି ।

ସୁଦାମ—ଆମକୁ ଟିକେ ଶିଖାଇ ଦେନା ମନ୍ତ୍ରଟା ।

ମଧୁ—ଆରେ ଓଲୁ ମନ୍ତ୍ର କଣ ଶିଖି ନାହୁଁ କି ତା ଗୁଣ ଜାଣିନାହୁଁ । ଯେତେବେଳେ ଯେଉଁଠି ଯାହା ହେବ କୃଷ୍ଣ କୃଷ୍ଣ କହି ସାତଥର ଝାଡ଼ ଦେଲେ ଆଉ ଫେର୍ ରହୁଚି ?

ସୁଦାମ—କୃଷ୍ଣନାମର ଗୁଣ ତୋ ପରି କିଏ ଜାଣିଛି ମଧୁ ।

ସୁବଳ—ଭାଇ କହ୍ନେଇ କାହିଁକି ଆଜି ମୁହଁ ଶୁଖାଇ ରହିଛି ।

ମଧୁ—ମଧୁ ନାହିଁ ପରା, ମଧୁ ଥିଲେ ସବୁ ମିଠା, ନୋହିଲେ ସବୁ ଖଟା ।

ସୁବଳ—ହେଉ ମଧୁତ ଆସିଲାଣି ଏବେ ଭଲା ସେ ହସୁ ।

ମଧୁ—ଆଚ୍ଛା ହେଉ ଆସ ଆସ ଆଜି ଚୋରଚୋରକା ଖେଳିବା ।

ସମସ୍ତେ—ହଁ ହଁ ଭାଇ ।

ମଧୁ— ଛୁଆଁଛୁଅ ସମସ୍ତେ ଧାଡ଼ ହୋଇ (ସମସ୍ତେ ଛୁଆଁ ହେଲେ) ଇଞ୍ଚିଡ଼ି ମିଞ୍ଚିଡ଼ି ଧାଁଲି ଚାଡ଼ି ଚାଡ଼ି କାଇଞ କାକୁଡ଼ି ପିଠା ନଳଚା, ନାହିଁ ନାହିଁ ଏଉଟା ଥାଉ । ଅକଲ ମକଲ ଟକଲ ଟିଆ ଗଣପ ନାଗର ବାଜଇ ହୁଆ । ଇସ୍ ମିସ୍ କଲମ କସ୍, ଠାରେ ଠର୍ ଉଣେଇଶ୍ ବିଶ୍ । ହେଇ କହ୍ନେଇ ହେଲା ଚୋର ମୁଁ ତା ଆଖି ବୁଜାଏଁ ସମସ୍ତେ ଲୁଚ, ମୁଁ ହେଲି ବୁଡ଼ୀଆଣୀ ।

ସୁବଳ—କହ୍ନେଇ ସାଙ୍ଗରେ ତୁ ଭାରି ଲାଗୁ କାହିଁକି ମଧୁ । ତୁ ଜାଣି ଜାଣି ତାକୁ ଚୋର କଲୁ ।

ମଧୁ—ଭାରି କହିଲୁ ବାଲି ମୁଁ କଣ ଜାଣୁ ଜାଣୁ ? ହିସାବରେ ଯାହା ପଡ଼ିଲା ନା, ତୋ ଆଖି ଫୁଟି ଯାଇଥିଲା କି ?

ସୁବଳ—ନା ନା ଖେଳ କଛି ଖେଳିବା ନାହିଁ ଚାଲ୍ ରାମ କୃଷ୍ଣଙ୍କୁ ହେରି ଗୀତ ଗାଇ ନାଚିବା ।

ମଧୁ—ହଉ ନାଚରେ ବାବୁ ମୁଁ ଆଖି ବୁଜି ବସି ଦେଖେଁ ।

କଳାକାହ୍ନୁ ମନ ନୟନ ହରେ,
ନବ ଜଳଧର ଜିଣି ମନୋହର
ନଟବର ରୂପ ମୂରତି ଧରେ ।
ଆହା କି ସୁନ୍ଦର ଜଗତେ ଅତୁଳ
ଶିରୋପରେ ଶୋହେ ମୟୂର ଚୂଳ
ତ୍ରିଭଙ୍ଗ ଭଙ୍ଗରେ ମୁରଲୀ ବଜାଇ
ସକଳ ହୃଦୟ ଅଥୟ କରେ ।
ଦେଖ ଦେଖ ରାମ କହ୍ନାଇର ପାଶେ
ନୀଳ ଆକାଶେ କି ଚନ୍ଦ୍ରମା ବିକାଶେ
ସୁନୀଳ କମଳ ପାଶେ ଶତଦଳ
ଫୁଟି ଅଛି କିବା ମାନସ-ସରେ ।

ମଧୁ— ( ଉଠି ପଡ଼ି ) ଛି ଛି ଥୁ ଥୁ ଏଇ ଗୀତ୍ ରାମ୍ ରାମ୍ ।

ସୁଦାମ—ଗୀତ କ'ଣ ହେଲା କି ?

ମଧୁ —ଗୀତରେ ନା ଅଛି ତାଳ, ନା ଅଛି ଶବ୍ଦ, ନା ଅଛି ଅର୍ଥ । ଗଉଡ଼ଙ୍କର ଯେତିକି ଅକଲ ସେତିକି ସେ କରିବେ ତ !

ସୁଦାମ—ଆମେ ତ ଗଉଡ଼ ହୋଇଛୁଁ ! କ'ଣ କରିବା ବ୍ରାହ୍ମଣଙ୍କର କମିତିକା ଗୀତ ଗୋଟାଏ ଏଠି ଗାଇଲୁ ।

ମଧୁ —ମୁଁ ଗୀତ ଗାଇଲେ ତମେ ରହିବ ନା, ଛାଡ଼ି ପଳେଇବ ?

ସୁଦାମ—ହଁ ଆମେ ରହିବୁଁ, ତୁ ଗାଆ ।

ମଧୁ —ଶୁଣ ମୁଁ ଗାଉଛି,—

କଳା କଟ କଟ କାଳିଆ
ସଙ୍ଗେ ତା ହଳିଆ ବଳିଆ,
କନ୍ଦମୂଳଆଁ ସନେ ଖସାଲଡ଼ୁ ଯେହ୍ନେ
ଦିଶୁ ଅଛି ସେହ୍ନି ଭଳିଆ ।
କାଛିଚ-ମାଳିଆ ସେ ଜାମୁ-ଡାଳିଆ
କଦମ୍ବ-ମୂଳିଆ ବରଜ-ଧୂଳିଆ
ଶିଖଣ୍ଡ-ଚୂଳିଆ କାଳନ୍ଦୀ-କୂଳିଆ
ବାଙ୍କ ଆଖି ଜଳ ଜଳିଆ,
ବାଉଁଶ ନଳିଆ ସେ ବଡ଼ କଳିଆ
ଗଉଡୁଣୀ ପାଦ-ତଳିଆ ।

( ସଖାଗଣ ଓ କୃଷ୍ଣ ବଳରାମ ପ୍ରସ୍ଥାନ )

ମଧୁ —ହେଇ ମୁଁ ଯାହା କହୁଥିଲି ମୁଁ ଗୀତ ଗାଇଲେ ଛାଡ଼ି ଛାଡ଼ି ପଳେଇବ, ହଉ ଚାଲ ଚାଲ ମୁଁ କ'ଣ ଛାଡ଼ିବି କି ତୁମକୁ ! ( ପ୍ରସ୍ଥାନ )

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

**ସଖୀଗଣ**— ଗୀତ

ରସିକ ଶେଖର ମୁରଲୀ ଅଧର ନଟବର ଗିରିଧାରୀ,
ନବ ଜଳଧର ସୁନ୍ଦର ତନୁ ଯମୁନା ତଟ ବିହାରୀ ।
ଗୋପ ଗୋପାଳ ପାଳକ, ବ୍ରଜ ବାଳକ ମନୋରଞ୍ଜନ
ଅଞ୍ଜନ ଘନ କଞ୍ଜ-ନୟନ ଚରଣେ ନୂପୁର ସିଞ୍ଜନ
ଯାମଳାର୍ଜ୍ଜୁନ ଭଞ୍ଜନ      ଦୃପ୍ତର ଅଘ ଗଞ୍ଜନ
ମଧୁର ମଧୁର ମୁରଲୀ ବାଦନ କାରୀ—
ହରି କୁଞ୍ଜ ଭବନ ଚାରୀ । ୧ ।

**ଶ୍ରୀମତୀ**—ବୃନ୍ଦାବନ ଯାକ ଖୋଜି ଖୋଜି ତାଙ୍କୁ ଥକିଲିଣି କୁଆଡ଼େ ଗଲେ ସେ ସଖି ?

**ଲଳିତା**—ତାଙ୍କ ଠାଇଁ ଦଗାଦିଆ କିଏ ଅଛି ! ତୁମେ ସିନା ତାଙ୍କୁ ଚିହ୍ନିପାରୁ ନାହିଁ !

**ବୃନ୍ଦା**—କୃଷ୍ଣ ତ ଆଜେ ତାଙ୍କ ପାଇଁ ଅଧୀର । ସେ ଏତେ ଭାବନା କରୁଛନ୍ତି କାହିଁକି ?

**ଶ୍ରୀମତୀ**—ସେ କାହିଁକି ମୋତେ ପଚାରିବେ ? ମୁଁ ସିନା ତାଙ୍କ ପାଇଁ ଝୁରି ମରୁଛି !

( ଗୀତ )

କି କହିବି, କହିତ ନୁହଇ, ମରମର ବାରତା ସହି !
ଧରମ କରମ ସବୁ ଦୂରେ ଉପେକ୍ଷି
ମରମ ଭରମି ଗଲି ତା ରୂପ ଦେଖି ।
ଶଠ ଶିରୋମଣି ବଡ଼ ହଠିଆ
ପୀତ ପଟ କପଟ ଲମ୍ପଟିଆ
ଦେଲା ବଂଶୀ ଗରସି, ନେଲା ଗଳାକୁ ଫାସୀ
ଗଲି ମହତ ଘସି
ସଖି କି ହେଲି ଆସି, ହେଲି ଚରଣେ ଦାସୀ ।

**ଲଳିତା**—ଜେମାଦେଈ ! କୃଷ୍ଣ ତ ଏକେ ଗଉଡ଼ ଟୋକାଟାଏ । ତାହାଁକ କଳା କଟକଟ ଯେଉଁ ରୂପ-ଯେଉଁ ବେଶ, ସେଥିକି ଏତେ ରସି ପଡ଼ୁଛ କାହିଁକି ?

**ଶ୍ରୀମତୀ**—ସଖି ! ସେ ଯଦି ଅସୁନ୍ଦର ତ ଜଗତରେ ଆଉ ସୁନ୍ଦର କିଏ ? ତାଙ୍କୁ ଯମୁନା କୂଳରେ ଦେଖିଲି ଦିନରୁ କୁଳ, ମାନ, ଲାଜ, ଭୟ ଯମୁନା ଜଳରେ ଭସାଇ ଦେଇ ଆସିଛି ।

**ବିଶାଖା**—ଆଚ୍ଛା ସଖି ! ତାଙ୍କୁ ମନରୁ ଦୂରି କରି ଦେଲେ କ'ଣ ହେବ ? ଯାହାଲାଗି ଏତେ ଦୁଃଖ, ଏତେ ହଟହଟା, ତାଙ୍କୁ ମନରୁ ଭୁଲିଯିବା ତ ଭଲ ।

**ଶ୍ରୀମତୀ**— ( ଗୀତ )

ସ୍ୱପନେ ଶୟନେ ନୟନେ ନୟନେ
ଜାଗିଛି ତା ଚାରୁ ମୂରତି ଗୋ !
ତା କଥା ମନରେ ପଡ଼ିଲି ମାତର
ସ୍ତବ୍ଧ ହୋଇ ଯାଏ କରତି ଗୋ ।
ସୁଧାଟକା ବାହୁ ପରଏ ହୋଇଲି
ଥରେ ଚାଖି ତାର ପୀରତି ଗୋ ।
ତା କଥା ମନରୁ ପାସୋରି ଦେଲେଟି
ଆଉ କି ପାରିବ ବରତି ଗୋ ।

**ବିଶାଖା**—ସେ କଥା କାହିଁକି କହୁଛ ? ଏବେବି ବେଳ ଅଛି । ଯାହା ହେବାର ତ ହୋଇ ସାରିଲାଣି । ସଂସାରେ ଯେ ଅପବାଦ ନାଗରୀ ବାଜୁଛି, ସେତକୁ ସଖି ବିଚାର କରୁଛ ନା ?

**ଶ୍ରୀମତୀ**— ( ଗୀତ )

ସଜନୀ, ଯାହା ଇଚ୍ଛା ତାହା ହେଉ ରେ
ବାଦ ଅପବାଦକୁ ଭୟ ଅଛି କି ଆଉ ରେ ।୧।
ଉଠୁ ପଛେ କଳଙ୍କିନୀ ଘୋଷଣା ମୋ ନାମରେ
ଉଡ଼ୁ ଅକୀର୍ତ୍ତି ପତାକା ଏହି ବ୍ରଜ ଧାମରେ ।
ମୋ ମନ ନିରନ୍ତରେ ରହୁ ସେ ଚରଣରେ
ତା ଯୁଗଳ ବାହୁ ପାଶେ ମୋର ଜୀବନ ଯାଉ ରେ ।୨।

**ବୃନ୍ଦା**—ଆଉ ଭାବନା କର ନା ସଖି । ଭାବି ଭାବି ସୁନା ଅଙ୍ଗ କାଳି ହୋଇଗଲାଣି । ମୁଁ ଏହିକ୍ଷଣି ଯାଉଛି । ସେ ହଠିଆ ନାଗର ଯେଉଁଠାରେ ଥିବେ ତାଙ୍କୁ ଧରି ଆଣିବି ।

**ଶ୍ରୀମତୀ**— ( ଗୀତ )

ବୃନ୍ଦେ ଧର ଗୋ ଧର ଗୋ ଧର ଗୋ !
ଏହି ଅଭାଗିନୀ ରାଧା      ଗୁଞ୍ଜା ଫୁଲ ହାର
ଧର ଗୋ ଧର ଗୋ ଧର ଗୋ !
ଏହି ଦୀନା ହୀନା ଭିକୁରୂପିଣୀ, ଉପହାର ଧର ଗୋ । ପଦ ।

ମନେ ପଡୁଛନ୍ତି ବୃନ୍ଦେ ଗୋ,      ସେହି ନାଚୁଆ ନାଗର
ମାଳ ହାତ ମନେ ପଡୁଛନ୍ତି ବୃନ୍ଦେ ଗୋ ।୧।
ସେ ଲାବଣ୍ୟ ଠାଣି          ସେହି ହସ ମିଶା ମୃଦୁବାଣୀ
ମନେ ପଡ଼େ ମୋର          ଚେନେରୁ ଘୁହାଣୀ,
କରେ ବଂଶୀ ବାଇ ବାଇ ଗୋ ।୨।

( କଥା )—ତୁ ଦୟା ନ କଲେ ମୁଁ ପ୍ରାଣ ଧରିବ ନାହିଁ ।

( ଗୀତ )

"ଦୂତୀ ଗୋ ପ୍ରାଣ-ବନ୍ଧୁଙ୍କୁ କହ ଯାଇ ଏତିକ
ରକ୍ଷା କରନ୍ତୁ ପରା ନାଗରୀ ସତିକ ॥
ଶ୍ରୀଚରଣ ସେବି ପ୍ରାଣ ବଳଅଛି ମୁହିଁ ତ
ତାଙ୍କ ଅନୁଗ୍ରହ ବିନା ମୋ କରମ ଲିହିତ ॥
ଦୂତୀ ଗୋ, ବନ୍ଧୁଙ୍କୁ କହ ଆନ ଗତି ନାହିଁ ତ
ଦିବ୍ୟ ଚରଣେ ବରନ୍ତୁ ଯେ ତାହାଙ୍କୁ ବହିତ ॥

ବୃନ୍ଦା— ଏତେ ବ୍ୟସ୍ତ ହେଉଛ କାହିଁକି ଜେମାଦେଈ ? ମୁଁ ତ ଯିବ ବୋଲି କହିଲି । ତମ କଥା କେବେ ଏଡ଼ି ଦେଇ ପାରିବ ନା ?

ଶ୍ରୀମତୀ—          ( ଗୀତ )

ଚନ୍ଦ୍ର ବିନା ଚକୋରକୁ ଆନ ଗତି ନାହିଁ କି
ଜଳ ବିନା ମୀନ ବିନ ନେଲେଣି କି କାହିଁକି ?
ଦୂତୀ ଗୋ କହିବୁ ଯାଇ ସେ ନାଗରମଣି କି
ଦାସୀକୁ ପକାଇ ଦେଲେ କାମସିନ୍ଧୁ ପାଣିକି ।
ନିରବଧି ହୃଦୟକୁ କାମଦେବ ଦହିବ
ଅବଳା ମାନଙ୍କେ ଏତେ ଦାଉ କି ଏ ସହିବ ।
ଦୂତୀ ଗୋ, ପ୍ରାଣ ନାଥରେ ଏତେ ମାତ୍ର କହିବ
ରାଧା କୃଷ୍ଣ ଆଦ୍ୟ ବେନି ବର୍ଣ୍ଣ ଲୋପ ହୋଇବ ।"

ବୃନ୍ଦା—ଗୋ ଲଳିତେ ! ତୁମ୍ଭେମାନେ ପ୍ରିୟ ସଖିକୁ ବୁଝାଇ ସୁଝାଇ ବୋଧ ଦେଉଥିବ । ମୁଁ ଦେଖେଁ ସେ ନାଗରେନ୍ଦ୍ରବରେ଼ର, ଲମ୍ପଟ ନାଗର କେତେ କପଟ ଜାଣେ ।

( ଗୀତ )

ଦେହି ବନ୍ଧୁ.....ହରି ପାଶେ ଯାଉଛି ଗୋ
(ତୋର) ଦୁଃଖ ହରିବେ ଆଜ ମନେ ହେଉଛି ଗୋ ।
ଦୁଃଖିଧନ ମୋର ନ ହୁଅ କାତର
ଏଥିପାଇଁ ଶ୍ରୀକର ତୋର ଧରୁଛି ଗୋ ।୧।
ସହି ଏ ଯାତନା ନ ହଜା ଚେତନା
ତୋତେ ବନ୍ଧୁ ନାହାନ୍ତି ତ ମରୁଛି ଗୋ ।୨।

ଲଳିତା—ସଖି ଅସ, ଆମେ ସମସ୍ତେ ରାଇକଶୋରୀଙ୍କ ସାଙ୍ଗରେ ନାନା କଥା କହି ତାଙ୍କ ମନ ବହଲେଇବାକୁ ଯତ୍ନ କରିବା ।

ଶ୍ରୀମତୀ—ହେଉ ସଖି ଆସ, କିନ୍ତୁ ମୁଁ ତୁମ୍ଭଙ୍କୁ ନେହୁରା ହୋଇ କହୁଛି, କୃଷ୍ଣ କଥା ଛଡ଼ା ଅନ୍ୟ କଥା ଶୁଣି ପାରିବ ନାହିଁ ।

ଲଳିତା—(ସହାସ୍ୟେ) ନେରଗକୁ ଔଷଧ ଏକା ଠିକ୍ ହୋଇଛି । ହେଉ ଆସ ।

( ସକଳେ ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ପ୍ରବେଶ କଲେ ଏକାକୀ କୃଷ୍ଣ—ବନ ପ୍ରାନ୍ତର )

ଶ୍ରୀକୃଷ୍ଣ—          (ଗୀତ)

ବାଜରେ ମୁରଲୀ ବାଜ ରାଧା ରାଧା ରାଧା
ସେ ନାଦରେ ଯାଉ ମୋର ସ୍ମର ଶର ବାଧା ॥
ବୃନ୍ଦାବନେଶ୍ୱରୀ ରାଧା ପ୍ରେମ ପାରାବାର
ରାଧା ବିନା ମୋର ଏହି ଜୀବନ ଅସାର ॥
ତ୍ରିଜଗତ ଆହ୍ଲାଦିନୀ କୃଷ୍ଣ ପ୍ରାଣାଧିକା
ମହାଭାବ ସ୍ୱରୂପିଣୀ ସୁନ୍ଦରୀ ରାଧିକା ॥
ରାଧା ମୋର ପୂର୍ଣ୍ଣ ଇନ୍ଦୁ ପ୍ରେମମୟୀ ସୁଧାସିନ୍ଧୁ
ରାଧା ମୋର ପୂର୍ଣ୍ଣଇନ୍ଦୁ ଜୀବନ ବଲ୍ଲଭୀ ପରାଣ ବନ୍ଧୁ
ରାଧା ମୋର ଜୀବାଧାର—ରସନିଧି ପ୍ରେମପସରା ।

( ବୃନ୍ଦା ପ୍ରବେଶ )

ବୃନ୍ଦା—କହେ ନଟଶେଖର, ମୋତେ ଦେଖି ରାଧା ରାଧା ବୋଲି ବାତୁଳ ହେଉଛ ନା କଣ? ତମ କଥା ଯେ ଜାଣି ନ ଥିବ, ତାହା ପାଖରେ ଯାଇ ଚଳିକ କରିବ । ହେ ଦଗାବାଜ, ଶଠଶିରୋମଣି, ସଂସାରରେ ପ୍ରୀତିଆପଣରେ ତୁମ୍ଭଙ୍କୁ ବଳି କିଏ ଅଛି ?

ଶ୍ରୀକୃଷ୍ଣ— (ଗୀତ)

କାହିଁକି କହୁଛ ସଖି ଆଜ କଟୁ ଭାଷ
କି ଦୋଷ କରିଛି ତୁମ୍ଭଠାରେ ଏହି ଦାସ ॥
ତୁମ୍ଭ ବିନା ଜଗତେ ମୁଁ ନ ଜାଣଇ ଆନ
ଗୋପନାରୀ ମୋ ଜୀବନ ରାଧା ମୋର ପ୍ରାଣ ॥

ବୃନ୍ଦା—ସେହିପରି ମିଠା କଥା ତ ସବୁ ପାରନ୍ତି । ମୁଁ କଣ ଜାଣେ ନାହିଁ, ତୁମ ମୁଖରେ ମଧୁ ଅନ୍ତରରେ ଗରଳ ।

ଶ୍ରୀକୃଷ୍ଣ— (ଗୀତ)

ରାଧା ଲାଗି ପାଗଳ ମୁଁ ଭ୍ରମେ ବନେ ବନେ
ରାଧା ରୂପ ବିନା ଆନ ନଦେଖେ ନୟନେ ।

ବୃନ୍ଦା—ଠିକ୍ କହନ୍ତି ପୁରୁଷଗୁଡ଼ାକ ମଧୁକର । ଯେତେବେଳେ ଯେଉଁ ଫୁଲରେ ବସନ୍ତି, ସେତେବେଳେ ମଧୁ ଲୋଭରେ ତାହାର ଗୁଣ ଗାଆନ୍ତି । ଚତୁର ହେ, ମୋଠେଇଁ ଚତୁରୀ ଆଉ ଚଳିବ ନାହିଁ । ଆମ ସଖି ଶ୍ରୀମତୀର ତମ ଲାଗି ଯିବ ଯିବ ପ୍ରାଣ କଣ୍ଠାଗତ ହେଲାଣି । ଆଉ ତମେ କଅଣ ନା ଝାପଟ କଲା ପରି କଥା କହୁଛ, ତା ଦଶା ଯଦି ଦେଖନ୍ତ ତ ଜାଣନ୍ତ ।

(ଗୀତ)

"ସରି ଯିବନି କି ଜୀବନେ କିଶୋରୀ ହେ ବଂଶୀଧାରୀ ।
ବିରହରେ ସଖି ହୋଇଛି କାତର
ସନ୍ଧି ସଜିଲାଣି ସରୋଜ ପତର
ଦେଖିଲି ସଖିର କଣ୍ଠରେ ମାତର
ଜୀବନକୁ ଅଛି ଧରି ହେ ବଂଶୀଧାରୀ ।୧।

ଲାଗୁ ନ ଥିଲା ମୋ କରକୁ ନାଡ଼ୀକା
ସଜନୀମାନେ ଦେଖି ହେଲେ ଚାଟକା
ଧାଇଁ ଅଇଲି ମୁଁ ଶୁଣି ତାଙ୍କ ଡକା
ଥିବ କି ଜୀବନେ ସରି ହେ ବଂଶୀଧାରୀ ।୨।

ତୁମ୍ଭଭଳି ଯଦି ନୋହିଲି ପାତର
ପଚାରୁଛି ଶ୍ୟାମ ନ ଦିଅ ଉତ୍ତର
ଅନ୍ତର୍ଗତ ଯଦି ଥିଲାଟି ଅନ୍ତର
ତଉ କମ୍ପା କଲ କେଶ ହେ ବଂଶୀଧାରୀ ।୩।"

( ଡୁଏଟ୍ ସଙ୍ଗୀତ )

ଶ୍ରୀକୃଷ୍ଣ— କହ କହ ଦୂତି, କିସ କରୁଛି କିଶୋରୀ ?
ବୃନ୍ଦା— ତୁମ୍ଭ ଲାଗି ଉନ୍ମାଦିନୀ ହେଲା ହେମଗୋରୀ ।
ଶ୍ରୀକୃଷ୍ଣ— ସତେ କି ଏ କଥା ମୋତେ ନୁହଇ ବିଶ୍ୱାସ,
ବୃନ୍ଦା— କଣ୍ଠେ ଅଛି ପ୍ରାଣ ରହି ଘନ ବହେ ଶ୍ୱାସ ।

ଶ୍ରୀକୃଷ୍ଣ—(କଥା) କହ କହ, କିଶୋରୀମଣୀ କିପରି ଅବସ୍ଥାରେ ଅଛନ୍ତି । ତୁମ୍ଭ ମୁଖରୁ ତାଙ୍କ କଥା ଶୁଣିବା ପାଇଁ ମୁଁ ବ୍ୟାକୁଳ ହୋଇ ବସିଛି ।

ବୃନ୍ଦା—ଆଉ କହିବି କଅଣ, କେବଳ ସେହି କଳାଚାନ୍ଦ ଧ୍ୟାନରେ ଅଛନ୍ତି ।

(ଗୀତ)

କାଳିଆ କମଳ ଦେଖିଲେ କମଳ
ନୟନରେ ହୋଏ ଜରଜର,
ଦେଖି ନବଘନ ତାର ଅପଘନ
ପୁଲକ ହୁଅଇ ଥରଥର,
ଘନ ସୁନ୍ଦର ହେ !
ଯମୁନା ଯିବାକୁ ଡରଡର
ସେ ଅଙ୍ଗ ବରନ କଜ୍ଜଳରେ ଚିହ୍ନ
ଲେଖି ଚୁମ୍ବଇ ବାରବାର ।୧।

ଦେଖି ତମାଳକୁ ବଚ୍ଛର କୋଳକୁ
ନିତି ନେଉଥାଇ ବାହୁଯୁଗ,
ଶ୍ୟାମ ସୁବାସରେ ଆଶ ମାନସରେ
କଳାବତୀ ସଙ୍ଗେ ଅନୁରାଗ ।
ରସ ଶେଖର ହେ !
ଭୂଷଣ ମାଳେନ୍ଦ୍ର ମଣିବାର,
ବେଣୀ ବନ୍ଧାଇବ ଫିଟାଇ କବର
ଦେଖୁଥାଇ ହୃଦେ ଥୋଇ ତାର ।

ଶ୍ରୀକୃଷ୍ଣ— (ଗୀତ)

ତୋ ମୁଖ ଭ୍ରମର ଯେବେ ପିବ ସର
ଧରାନ୍ତର ପ୍ରଶଂସା ସାର ହେବ,
ଦାସ ବଲ୍ଲୀକ— ପ୍ରଣୟ ସ୍ଖଳକ
ଧାଇବା ଭିତରେ ରହିଛି ଜୀବ ।

ଆରେ ଗୁଣବତୀ,
ଏ ସ୍ନୁରକୁ ବଳାଇଲ୍ ମତି,
ତୋତେ ଚନ୍ଦ୍ରମୁହୀ    କେଉଁ ପ୍ରେମେ ମୁହିଁ
ଯୋଗାଇବ ଏହା ଭଳେ ନିତି ।

**ବୃନ୍ଦା**— ହେମ ମରକତ,    ଯୋଗିଅ ଅଧିକତ-
ପର ନେହମନ୍ଦ ରହେ କ୍ଷଣେ,
ତଇବ ଘଟଣ    ମୟୂର ନଟନ
ଦେଖି ସୁଖୀ ହୁଏ କେଉଁ ଗୁଣେ,
ଭାବ ବନୋଦ ହେ,
କୃଷ୍ଣ ବର୍ଣ୍ଣ ଶେଯେ ମାଡ଼େ ନିତ,
ଶ୍ରୀଅଙ୍ଗ ତିଳକୁ    ଚୁହିଁବା ବେଳକୁ
ଚିତ୍ତରେ ଜାତ ହୁଅଇ ମୋଦ ।

**କୃଷ୍ଣ**—କଲେ ତୁ ସେବକ    ଲେଖିବ ପବକ
ତେଣିକ ଆହାବ ପାରୁନାହିଁ
ମୋ ହୃଦ-ପୀଠକୁ    ଦେବ ତୋ କୋଠକୁ
ଯାହା ଇଚ୍ଛା ତାହା କର ତୁହି ।
ଆରେ ପ୍ରେମଦାମୀ,
ସେପାଏ ଥିଲେ ଏ ଜୀବ ଧେନି ।
ଜାଣିଲି କୃପଣ    ନୋହି ପ୍ରଭୁପଣ
ମୋଠାରେ କେତେ କହିବୁ ଧନୀ !

**ବୃନ୍ଦା**—କେଜାଣେ ଭାବନା    ବୃକ୍ଷେ ସମ୍ଭାବନା
କେତେ ଜରେ ବୃନ୍ଦାବନ ଗଲେ ।
ବୋଲଇ ଆଳୀକ    ଏ ବନ ମୂଳ କ
ବୋଳିଦିଅ ମୋର ହୃଦ ସ୍ଥଳେ ।
ନବ ନାଗର ହେ,
ରଙ୍ଗ କମଳରେ ସ୍ନେହ ତାର ।
ଲଗାଇ ହୃଦରେ    ଅତି ଆନନ୍ଦରେ
ଲୋଟୁଥାଇ ଶିରେ ବାରବାର ।

(କଥା)—ସେହି ଶ୍ରୀଚରଣକୁ ଭରସା ଅଛି ବୋଲି ଏଯାକେ ଜୀବନ ରହିଛି ମିନା ନୋହିଲେ କେଉଁଦିନରୁ ଯମୁନାରେ ଝାସ ନେଇ ସାରନ୍ତେଣି ।

**କୃଷ୍ଣ**—ମୁଁ ସ୍ନୁର ଗୋପାଳ    ପାଇଁ ଏ ଜଞ୍ଜାଳ
ସହିବ କିମ୍ପା କିଶୋରୀ
ଯାଇ ତା ପାଖକୁ,    କହ ଏ ଦାସକୁ
ପକାଉ ମନୁ ପାସୋରି ।

ବୃନ୍ଦା—ନୋହିଲା ସୁମୁଖି    ଯଦି ତୁମ୍ଭ ଲାଗି
କିମ୍ପା କଲେ ଚିତ୍ତ-ଚୋର
ମନପ୍ରାଣ ବିକ    ହେଲା ନଟମାଗି
ଏବେ ମିନା ରମ୍ପା ଗୋରୀ ।

( ଡୁଏଟ୍ )

କୃଷ୍ଣ— ଜାଣି ମୁଁ ନ ଥିଲି ରାଧା ମୋପାଇଁ ଆତୁରୀ,
ବୃନ୍ଦା— ତୁମ୍ଭେ ପ୍ରୀତି ହେଲଣି ତା ଗଳାକୁ କଟୁରୀ ।
କୃଷ୍ଣ— ନ କହ ନ କହ ଆଉ ଯିବ ଏହିକ୍ଷଣ,
ବୃନ୍ଦା— ଏଥର ଦେଖିବ ବଳେ ତୁମ୍ଭ ଶଠପଣ ।
କୃଷ୍ଣ— ତ୍ୱରା କରି ଯାଅ ସଖି ଦିଅ ଗୋ ସନ୍ଦେଶ,
ବୃନ୍ଦା— ଥିବ କି ଜୀବନେ ରାଧା ହେବନି କି ଶେଷ ।

(କଥା)—ତେବେ ଏହି କଥା ଶ୍ୟାମ ବନ୍ଧୁ । ଆଚ୍ଛା ବଇଁଶୀ ତୁମ୍ଭର ଇଷ୍ଟ ଏହି ବଇଁଶୀ ରାଣ ରହିଲା । କେବେହେଁ ନରାଶ କରିବ ନାହିଁ ଟି ? ତୁମ ପରି ଶଠ ପୁରୁଷକୁ ବିଶ୍ୱାସ କିଣ ? ମୁଁ ଏହିକ୍ଷଣି ଆସେଁ ।    (ପ୍ରସ୍ଥାନ)

କୃଷ୍ଣ— ପ୍ରେମମୟୀ ରାଇ ଗୋ ? ତୁମ୍ଭର ଅତୁଳ୍ୟ ପ୍ରେମର ଋଣ ଏ ଜନ୍ମରେ ମୁଁ କିପରି ଶୁଝିବ ? ସୁଧାମୟ ରାଧାନାମ ଜପି ଜପି ରାଧାପ୍ରେମରେ ବିଭୋର ହୋଇ ରହିଥିବ । ହାୟ ହାୟ ଧିକ୍ ମୋତେ । ମୁଁ ବା ତୁମ୍ଭ ପରି ଅଳଅଳ କିଶୋରୀକୁ ଏଡ଼େ କଠିଣ କାନ୍ଦିକି ଦେଲି ! ଏ ଅପରାଧର ଦଣ୍ଡ ମୋତେ କୋଟି କୋଟି ଜନ୍ମ ଭୋଗିବାକୁ ହେବ ମିନା ! ହାୟ ବିଧାତା !

( ମୁଣ୍ଡରେ ହାତ ଦେଇ ଚିନ୍ତା କଲେ । ମଧୁ ପ୍ରବେଶ କଲେ )

ମଧୁ—ଏ କି ରଙ୍ଗ ଲାଗିଛି କି କହ୍ନାଇ ?

କୃଷ୍ଣ—ମଧୁ ଭାଇ ! ତୁ କେଉଁଠି ଥିଲୁ ? ମୁଁ ସ୍ନାନକୁ ଯାଇ ଆସି ଏଠି ଗୋଟାଏ କଥା ଭାବୁଥିଲି ।

ମଧୁ—ଏତେ ବଡ଼ ଭାବନା ଯେ ମଥାରେ ହାତ ଦେଇ କାନ୍ଦଣା !

କୃଷ୍ଣ—ନାଇଁ—ନାଇଁ ମୁଣ୍ଡଟା କମିତିକା ହେଲା ନେ—

ମଧୁ—ଥାଉ ଥାଉ ମୁଁ ସବୁ ଜାଣେ, ଛକ ଦେଖୁଥିଲି ପରା !

(ଗୀତ)

ତୋ ବୃନ୍ଦାବନରେ ନାହିଁ ତୁଳନା
ହସିଲଟିକ୍କୁ ଦେଇ ତୁଚ୍ଛା ମିଛ ଖେଳନା ।
ମୋଠେଇଁ ଚଳିକ ଟୋର        ଚଳିବ ନାହିଁ ଏଥର
ବୁଝିଲିଣି ତୋ ଭିତର        କର କଳନା ।
ତୋ ଚେଙ୍ଗ ଚତୁର ଗୀତ      ଦେଖି ମୁଁ ହେଲେଣି ଖାନ୍ତ
ଦେଖି ଦେଖି ନିତି ନିତି କେତେ ଛଳନା ।

(କଥା)—ସେହି ମା ଯଶୋଦା, ଯାହା ଡରୁଥିଲେ ସେଇଆ । କାହିଁକି ଏକୁଟିଆ ଅଇଲୁ ଭଲା !

କୃଷ୍ଣ—କଣ କହିଲୁ ମଧୁ—

ମଧୁ—ସେଇ ଡାହାଣୀ—ସେଥିରୁ ଗୋଟାଏ ତୋତେ ଗ୍ରାସ କରି ଗଲାଣି । ସେଥିପାଇଁ ତୁ ଇମିତ ହେଉଛୁ । ଆ'ମୋ ସଙ୍ଗରେ । ଟିକଏ ଝାଡ଼ ଫୁଙ୍କ କରି ନ ଦେଲେ ଛାଡ଼ିବ ନା ?
ଆଁ—ଆ, ଶାଗୁଣା ଗୁହ, ମୁଷୁରୀ ବାଳ ଧୂପ ଦେବ ।

—ଉଭୟଙ୍କର ପ୍ରସ୍ଥାନ—

### ଷଷ୍ଠ ଦୃଶ୍ୟ

( କଂସ ପ୍ରବେଶ କଲେ )

କଂସ—ସାମାନ୍ୟ ଗୋଆଳ ପୁଅ, ଜାଣେ କି କୁହୁକ,
ସମସ୍ତ କୌଶଳ ମୋର କଲାଣି ସେ ବ୍ୟର୍ଥ ।
କି ଆଶ୍ଚର୍ଯ୍ୟ ।
ପ୍ରକମ୍ପିତ ତ୍ରିଭୁବନ ଯାହାର ପ୍ରତାପେ ।
ଦେବାସୁର, ଯକ୍ଷ, ରକ୍ଷ, ଗାନ୍ଧର୍ବ, କିନ୍ନର,
ଭୟେ ଯାର ପଦାନତ ।
ସେହି କଂସ ବୀରେନ୍ଦ୍ର କେଶରୀ,
ଗୋପାଳ ଅର୍ଭକେ କରେ ଜୀବନର ଭୟ ।
ଏହିକ୍ଷଣି ଇଚ୍ଛେ ଯଦି
ବୃନ୍ଦାବନ ନନ୍ଦଗ୍ରାମ ଗୋବର୍ଦ୍ଧନ ସହ
ଯେତେ ଗୋପଗୋପୀ
ଉପାଡ଼ି ପକାନ୍ତି ନେଇ ଯମୁନା ତରଙ୍ଗେ ।
କିନ୍ତୁ ହସିବେ ଅରାତି,
କହିବେ ଷଡ଼ିପୁ କୁଳେ ଭୟାନ୍ତ ସେ କଂସ — ।
ନା—ନା— ତା ନୁହେଁ ।
କୌଶଳ, କୌଶଳ ।
କୌଶଳରେ ଶତ୍ରୁକ୍ଷୟ ଶ୍ରେଷ୍ଠ ରାଜନୀତି ।

( ଜନୈକ ଦୂତର ପ୍ରବେଶ )

ଦୂତ—ମହାରାଜ ! ମନ୍ତ୍ରୀ ଅକ୍ରୂର ରଥ ନେଇ ବୃନ୍ଦାବନ ଗଲେ ।
କଂସ—ଗଲେ ? ଆଚ୍ଛା, ଉତ୍ସବର ଆୟୋଜନ କେତେଦୂର ହେଲା ?
ଦୂତ—ସବୁ ଠିକ୍ ।
କଂସ—ଯାଅ ତେବେ । ( ଦୂତ ପ୍ରସ୍ଥାନ )
କରିଛି କୌଶଳ ଏବେ ଅଭେଦ୍ୟ ଅକାଟ୍ୟ ।
ତୁଳିଲା ମାତ୍ରକେ ଧନୁ କୌଶଳେ ନିର୍ମିତ,
ଖଣ୍ଡ ଖଣ୍ଡ କରିଦେବ ଗୋପ ଶିଶୁଗଣେ ।
ଦ୍ୱାରେ ଅଛି କୁବଳୟା କରୀ,
ପ୍ରବେଶ ମାତ୍ରକେ ଦେବ କରି ନିଷ୍ପେଷିତ ।
ନୋହିଲେ ଅଛନ୍ତି ଯେ ଯେ ଅଷ୍ଟମଲ୍ଲଗଣେ ।
କିନ୍ତୁ ସତେକି ଆଣିବ ମନ୍ତ୍ରୀ !
ନୁହଇ ବିଶ୍ୱାସ ।
ଆସିବେ ଗୋପାଳପୁତ୍ରେ ମଥୁରା ନଗରୀ ।
ଭାବି ଏହି କଥା ମନ ଛନ—ଛନ ।
ଉଦ୍‌ବେଗେ ଧମନୀ ଶିରା କମ୍ପେ ଘନ ଘନ ।
ମୁହୂର୍ତ୍ତେ ମଣଇ ମୁହିଁ ଯୁଗ ଯୁଗ ସମ ।
ଓଃ କି ଯନ୍ତ୍ରଣା !
କାହିଁ ଶାନ୍ତି—କାହିଁ ଶାନ୍ତି !

(ପଟ୍ଟପତନ)

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

ଅକ୍ରୂର—ଏଇ ତ ବୃନ୍ଦାବନ—ଏଇ ତ ଜଗତ ଜୀବନ ନନ୍ଦ-ନନ୍ଦନର ଲୀଳାସ୍ଥଳୀ । ଆହା କି ସୁନ୍ଦର ରମଣୀୟ ସ୍ଥାନ । ଏହି ସ୍ଥାନହିଁ ଏକା ଗୋଲକବିହାରୀଙ୍କର ଯୋଗ୍ୟ । ଲତାକୁଞ୍ଜ ସବୁ ବିବିଧ ସୁଗନ୍ଧଯୁକ୍ତ କୁସୁମରେ ଭୂଷିତ ହୋଇଛନ୍ତି । ତରୁଗଣ ନାନା ସୁମିଷ୍ଟ ଫଳରେ ଅବନତ ହୋଇଛନ୍ତି । ମୃଗଯୂଥ ନିର୍ଭୟରେ ଇତସ୍ତତଃ ବିଚରଣ କରୁଛନ୍ତି । ମୟୂରମାନେ ଶିଖା ଉତ୍ତୋଳନ କରି ବୃକ୍ଷ ଡାଳରେ ନୃତ୍ୟ କରୁଅଛନ୍ତି । କାହାନ୍ତି ପ୍ରାଣ ବଲ୍ଲଭ ! ରାଧା ବଲ୍ଲଭ କାହାନ୍ତି ! ପ୍ରଭୁ ହେ ! ମୁଁ କପଟ ଭାବରେ ଆସିଛି ବୋଲି

ମୋତେ କି ଛଳନା କଲ ? ଏ ଦାସର ନୟନ ତୋଳା କି ସେ ଶ୍ୟାମ ସୁନ୍ଦର ମଦନମୋହନ ମୂରତି ଦେଖିବ ନାହିଁ ? ମଧୁର ବୃନ୍ଦାବନ ରାଜ୍ୟରେ ମିର୍ଲ୍ୟେର ଅଧିକାର ନାହିଁ । ମୋ ମନ ମଧ୍ୟରେ ଅହଂକାର ଅଛି ବୋଲି କ'ଣ ସେହି ମଧୁର ମୂରତି ମୋର ଦୃଷ୍ଟିଗୋଚର ହେଉ ନାହିଁ । ହେ ବଂଶୀଧାରୀ ! ହେ କୃଷ୍ଣ ! ହେ କେଶବ ! ତୁମ୍ଭର ପବିତ୍ର ନାମ ଥରେ ଉଚ୍ଚାରଣ କଲେ ତ ଜନ୍ମାନ୍ତରର ପାପ ବିଦୂରିତ ହୋଇ ଚିତ୍ତ ନିର୍ମଳ ହୁଏ । ଏ ପାପୀ ପ୍ରତି କି ଦୟା ହେବ ନାହିଁ ନାଥ ? ଓଃ ଏହି ରାଜବେଶ ପରିଧାନ କରି ମୁଁ ବ୍ରଜଧାମକୁ ପ୍ରବେଶ କରିବାକୁ ଯାଉଛି । କି ପାଷଣ୍ଡ ମୁଁ । ଯାଃ—ଦୂର ହୁଅ ଏହି ପରିଚ୍ଛଦ । ଯାହା କୃଷ୍ଣପ୍ରାପ୍ତିର ଅନ୍ତରାୟ ( ପୋଷାକ କାଢ଼ିବା ) । ଆପେ ଦୀନହୀନ କାଙ୍ଗାଳ ନ ହେଲେ କପରି ସେହି ଦୀନ ଦୟାମୟ କାଙ୍ଗାଳ ଠାକୁରର ସାକ୍ଷାତ ହେବ । ଆହା—ଏହି ତ ସେ ବ୍ରଜରଜ । ଏହି ରଜ ମୋ ହୃଦୟ ଦେବତା ଗୋପୀନାଥଙ୍କର ରଙ୍ଗା ଚରଣ ସ୍ପର୍ଶ କରିଥିବ ! ଏହି ଧୂଳିରେ ସେ ଧୂଳି ଧୂସରିଆ—କଜ୍ଜଳ କାଳିଆ ଗୋଚାରଣ କରୁଁ କରୁଁ କେତେ ଖେଳ ଖେଳିଥିବେ । ବ୍ରଜବାସୀଙ୍କର ଚରଣ ପୂତ ଏହି ପବିତ୍ର ଧୂଳି ଉପରେ ମୁଁ ପାପ ଅଙ୍ଗରେ ଲୋଟି ହେବ ! (ଲୋଟି ହେଲେ)

ସତେ କି ଦେଖିବ ଆଜି ଜୀବନ ସଙ୍ଗୀନି,
ଛନ୍ଦି ଛନ୍ଦି ନାଚି ନାଚି ଆସି ମାରି କରତାଳି ।

ସତେ କି ସେ ରୂପ ଦେଖି      ଧନ୍ୟ ହେବ ଦେନି ଆଖି
ମୁହିଁ ଅଧମ ପାତକେ କରି କୃପା ବନମାଳୀ । ୧ ।

କଳା-କାନ୍ତ-ଦଳା-ଶିଖୀ      ମୋ ନେତ୍ରେ ମିଳିବ କି ପୁଣି
ମୋ ସନ୍ନିତେ ଆଜି ହରି ଖେଳ ନାହିଁ ଲୁଚକାଳି । ୨ ।

( ମଧୁ ମଙ୍ଗଳ ପ୍ରବେଶ କଲେ )

**ମଧୁ**— ଇଏ ପୁଣି ଗୋଟାଏ କିଏ ରେ ? ନା — ଅସୁର ଫସୁର ତ ନୁହେଁ । ଟଗାଟେକିଆ ପୁଣି ବଇଦିମ । ନା — ଟଗାବାଜ ! ମଣିଧରି କାମ ତ ଚଳିଲା ନାହିଁ । ଏବେ କଉଁଳ ସଉଁଳ କରି କିଛି ଗୋଟାଏ ଫିକର କରିବ । ମୁଁ ତ ଏଇଥି ପାଇଁ ବୁଢ଼ିଟା ଅଣ୍ଡି କରି ଜଗିଛି । ମୋ ଆଗରୁ ମିଳିବ କୁଆଡ଼େ ? ( ଯାଉଁ ଯାଉଁ ଫେରି ପଡ଼ ) ଉଁ, ହୁଁ ମୋତେ ପାଦ ଧରି ଦିଲେ — ବାବା, ମୁଁ ତ ବ୍ରାହ୍ମଣ ପିଲ, ତହିଁକି ଗୁଳୁଟା ନିଏ ? ହାତ ଗୋଡ଼ ମିଶି ଦୁଇ ପଳ — ତା ପେଟ କ'ଣ ପୂରିବ କି ?

ଅକ୍ରୂର—ହେ ବ୍ରାହ୍ମଣ ବାଳକ, ଏହି ବନରେ କ'ଣ ରାମକୃଷ୍ଣ ଅଛନ୍ତି ?

ମଧୁ— ହେଇ ଠିକ୍ , ଯାହା ଭାବୁଥିଲି ( ପ୍ରକାଶ୍ୟରେ ) ନା—ନା ସେ ସବୁ ଏଠି କେହି ନାହାନ୍ତି ।

ଅକ୍ରୂର—ଦୟା କରି ଥରେ ଦେଖାଇ ଦିଅ ତାଙ୍କୁ ।

ମଧୁ— ମୁଁ ତ ସେହି ଭଳିଆ ପିଲା, ମୋତେ ଫୁସୁଲାଇ ନେବୁ ? ସିଧା ସିଧା ଚାଲ ଯା ଏହି ବାଟ ଧରି । ଏ ଆଡ଼େ ସେ କେହି ନାହାନ୍ତି ( ସ୍ୱଗତ ) ମୁଁ ଯାଉଛି ରାମକୃଷ୍ଣଙ୍କୁ କହି ଦେବି, ଏ ଆଡ଼କୁ ଆସିବେ ନାହିଁ । ତାଙ୍କୁ ନେଇ ଘରକୁ ଚାଲି ଯିବ । ( ପଡ଼ି ଥିବା ପୋଷାକକୁ ଦେଖି ) ଏଗୁଡ଼ାକ କ'ଣ ମ ! ଇଆରି ତ ! ନେଇ ଯାଏଁ ଘୁଞ୍ଚାକୁ ସବୁ ।

( ସାବଧାନରେ ପୋଷାକ ନେଇ ପ୍ରସ୍ଥାନ )

ଅକ୍ରୂର—ଏହି ତ ଏଇ ଦିଗରୁ ମୁରଲୀ ଧ୍ୱନି ଶୁଭୁଛି । ନିଶ୍ଚୟ ବଂଶୀଧାରୀ ଏହି ଆଡ଼କୁ ଆସୁଛନ୍ତି । ( ନେପଥ୍ୟେ ବଂଶୀ ଧ୍ୱନି ) ସତେ କି ମୁଁ ଆଜି ରାମକୃଷ୍ଣଙ୍କୁ ଦେଖି ନୟନ ସଫଳ କରିବ ? ଯାହାର ଚରଣକମଳ ଯୋଗୀ, ଋଷିଗଣ କୋଟି କୋଟି ଜନ୍ମ ତପସ୍ୟା କରି ଧ୍ୟାନରେ ନ ପାଆନ୍ତି । ବ୍ରହ୍ମା, ମହେଶ୍ୱର ଯା'ର ନାମ ଗାନ କରି ଜୀବନ ସାର୍ଥକ କରନ୍ତି । ସତେ କି ମୁଁ ଆଜି ସେହି ଦେବାଧିଦେବଙ୍କୁ ଦର୍ଶନ କରି ପବିତ୍ର ହେବି !

( କୃଷ୍ଣ ଓ ବଳରାମ ପ୍ରବେଶ )

କୃଷ୍ଣ— ଭାଇ, ଏ ଗୋଟିଏ ନୂଆ ଲୋକଟିଏ କିଏ ?

ବଳରାମ—କେହି ହୋଇଥିବେ ଆମର ସେଥିରେ କ'ଣ ?

ଅକ୍ରୂର—ଆହା, କି ସୁନ୍ଦର, ସତେ କି ଗଙ୍ଗା ଯମୁନାର ସଙ୍ଗମ ହୋଇଛି, ଧନ୍ୟ ଗୋପପୁର ! ଧନ୍ୟ ଗୋପାଳ ଗଣ ! ତୁମ୍ଭେ ଏ ଦେବଦୁର୍ଲଭ ରତ୍ନଙ୍କୁ ଅଞ୍ଚଳରେ ବାନ୍ଧି ରଖିଛ ।

( ନିକଟକୁ ଯାଇ ଜାନୁ ପାତି—ଗୀତ )

ହେଲି ନୟନ ସଫଳ ମୋହର
ନବ ନୀରଦ-ନିନ୍ଦିତ ବରଣ ହରି
ଯଶୋମତୀ ନନ୍ଦନ, ଧରଣୀ ସୁଧାକର
ଚନ୍ଦନ ଚର୍ଚ୍ଚିତ, ଶ୍ୟାମ କଳେବର
ପୀତାମ୍ବର ଧର ମୁରଲୀ ମନୋହର
ସୁନ୍ଦର ନଟବର ନାଗର ହେ-ମନଚୋର ହେ ।
ଯମୁନାତୀର ନୀର କେଳି କୁଞ୍ଜର ମନଚୋର ହେ ।

ରାସ ରସିକବର ରଙ୍ଗ ଅଧର, ମନଚୋର ହେ,
ଅଞ୍ଜନ ଖଞ୍ଜନ କଞ୍ଜନୟନ, ମନଚୋର ହେ ।
ନବ ଶଶଧର ସୁନ୍ଦର କରଣ ହରି
ଜଗ ଜୀବନ ମନରଞ୍ଜନ ଶରଣ ହରି
ହେଲ୍ ନୟନ ସଫଳ ମୋହରି ।
ନମୋଃ ବ୍ରହ୍ମଣ୍ୟ ଦେବାୟ, ଗୋ ବ୍ରାହ୍ମଣ୍ୟ ହିତାୟ ଚ
ଜଗଦ୍ଧିତାୟ କୃଷ୍ଣାୟ, ଗୋବିନ୍ଦାୟ ନମୋନମଃ ।

କୃଷ୍ଣ— ହେ ଆଗନ୍ତୁକ ! ତୁମେ କିଏ ?
ଅକ୍ରୂର— ହେ ଜଗବନ୍ଧୁ ! ତୁମ୍ଭ ଦାସାନୁଦାସର ନାମ ଅକ୍ରୂର ।
କୃଷ୍ଣ —ବୃନ୍ଦାବନକୁ କି ହେତୁ ଆସିଅଛ ?
ଅକ୍ରୂର—ଅନ୍ତର୍ଯାମୀ ନାଥ ହେ ! ତୋତେ କେଉଁ କଥା ଅବିଦିତ ଅଛି ଯେ ମୁଁ କହିବି ? ତୁମ୍ଭର ମାମୁଁ କଂସରାଜ ବିରାଟ ଧନୁ ଉତ୍ସବ କରି ଅଛନ୍ତି । ମୁଁ ତାଙ୍କର ମନ୍ତ୍ରୀ, ତୁମ୍ଭମାନଙ୍କୁ ସଙ୍ଗରେ ନେଇ ଯିବାପାଇଁ ମୋତେ ପଠାଇ ଅଛନ୍ତି ।
କୃଷ୍ଣ —( ହସି ) ମାମୁଁ କଂସର ଆମ ଉପରେ ଭାରି ଶରଧା । ଆମ ପାଖକୁ ଲୋକ ପଠାଇଲାଣି କେତେ ଥର । ଭାଇ ବଡ଼ ମନ ହେଉଛି ଯାଆନ୍ତେ—
ବଳରାମ—ରାଜନଗର କାହାକୁ କହନ୍ତି, ଆମେ ତ କେବେ ଦେଖି ନାହୁଁ । ମନ ତ ହେବାର କଥା, ତେବେ ବାପ ମା' ନ କହିଲେ କମିତି ଯିବା ?
ଅକ୍ରୂର—ମୁଁ ନନ୍ଦରାଜଙ୍କ ନିକଟକୁ ଯିବି, ଯେପରି ହେଉ ତାଙ୍କୁ ମନାଇବାକୁ ହେବ । ଇଚ୍ଛାମୟ ହେ ! ତୁମେ ଇଚ୍ଛା କଲେ କ'ଣ ହୋଇ ନ ପାରେ ।
କୃଷ୍ଣ —ହଁ, ହଁ ସମସ୍ତେ ମିଳି ବାପାଙ୍କୁ କହିଲେ ମାନିନେବେ ଯେ ।
( କୃଷ୍ଣ ଓ ବଳରାମ ପ୍ରସ୍ଥାନ )
ଅକ୍ରୂର—(ଯାଉ ଯାଉ) ହେ ମାୟାମୟ ! ତୋର ଅନନ୍ତ ମାୟା ତୋତେହିଁ ଗୋଚର । ( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ନନ୍ଦ ଓ ଯଶୋଦା ପ୍ରବେଶ )

ଯଶୋଦା—ଆଜ ମୋ କହ୍ନେଇ ତ ଏତେବେଳ ଯାଏ ଫେରୁନାହିଁ ।
ନନ୍ଦ —ଖେଳ ଖେଳ ଆସୁଥିବ ।
ଯଶୋଦା—ତାକୁ ତ ଭୋକ ଲାଗିଲେ ସେ ଦଣ୍ଡେ ରହିପାରେ ନାହିଁ । ପୁଣି ବଣରେ କି ବିପଦ ହେଲା କି ?
ନନ୍ଦ —ତମ ମନଟା ଭାରି ଗୁଡ଼ୁଗୁଡ଼ିଆ—ଓଃ, ନେଇଛି ତ ରାମ କହ୍ନେଇ ଦୁହେଁଯାକ ଆସିଗଲେଣି ।
( ରାମ କୃଷ୍ଣ ଓ ଅକ୍ରୂର ପ୍ରବେଶ )
ଯଶୋଦା—ଦୁହିଁଙ୍କ ମୁହଁ ତ ଶୁଖି ଗଲାଣି, ଆଜି ଏତେ ଡେରିର କାହିଁକି ବାପା ?
କୃଷ୍ଣ —ବାପା ! କଂସ ମାମୁଁ ରଥ ପେଶିଛନ୍ତି । ଆମକୁ ରଥରେ ବସାଇ ମଥୁରା ନେଇ ଯିବା ପାଇଁ । ସେଠି ଧନୁ ଯାତ୍ରା ହେବ, ଯିବୁ ମା । ଆମେ ତ କେବେ ରଥରେ ଚଢ଼ିନାହୁଁ ।
ଯଶୋଦା—କିଏ କଂସ ? ଏପରି ଅକଥା କହନା । ତୋତେ ଛାଡ଼ି ଦେଇ ମୋ ପ୍ରାଣ ରହିବ ନା ବାପ ?
ନନ୍ଦ —(ଅକ୍ରୂର ପ୍ରତି) ତୁମେ କଣ ମଥୁରାରୁ ଆସିଛ ? କଂସରାଜା କ'ଣ କହିଛନ୍ତି ?
ଅକ୍ରୂର—ମହାରାଜ ! କଂସରାଜା ଆଜ୍ଞା ଦେଇଛନ୍ତି କି ରାମକୃଷ୍ଣଙ୍କୁ ଆପଣ ଧନୁର୍ଦ୍ଧନ ପାଇଁ ମଥୁରା ପଠାଇବେ । ଏଥିରେ କଦାଚ ଅନ୍ୟଥା କରିବେ ନାହିଁ । ରାଜାଆଜ୍ଞା ଅବଜ୍ଞା କଲେ ତାର ପ୍ରତିଫଳ ପାଇବେ ।
ନନ୍ଦ —କିରି ଦିନ କଥା କଣ କହୁଛନ୍ତି । ଘଡ଼ିକ ଲାଗି ରାମକୃଷ୍ଣଙ୍କୁ ଛାଡ଼ି ବ୍ରଜବାସୀମାନେ ରହି ପାରିବେ ନାହିଁ, ଆମେ ପଛକେ ରାମକୃଷ୍ଣଙ୍କୁ ନେଇ ବ୍ରଜ ଛାଡ଼ି ସକଂରାଜ୍ୟରୁ ଅନ୍ତର ହୋଇଯିବୁ, ତଥାପି ରାମକୃଷ୍ଣଙ୍କୁ ଆମ ପ୍ରାଣ ଥାଉଁ ଥାଉଁ କଂସନଗରକୁ ପଠାଇ ପାରିବୁ ନାହିଁ ।
ଯଶୋଦା—କିଏ ନେବ ମୋ ରାମକୃଷ୍ଣଙ୍କୁ ! ମୁଁ ଜୀଇ ଥାଉଁ ଥାଉଁ ମୋ ଆଗରୁ କଂସ କିପରି ନେବ ନେଉ । ଆଗ ମୋତେ ମାରି ପକାଉ ପଛେ ମୋ ଦୁଃଖିଧନକୁ ନେଇଯିବ ।
ଅକ୍ରୂର—( ସ୍ୱଗତ ) ଦେଖୁଛି ଏମାନଙ୍କୁ ଭୟ ଦେଖାଇ କାର୍ଯ୍ୟ ସିଦ୍ଧି ହେବ ନାହିଁ । ( ପ୍ରକାଶ୍ୟେ ) ଆପଣମାନେ ଏପରି ରାଗ ହେଉଛନ୍ତି କାହିଁକି ? କଂସ କଣ ଆପଣମାନଙ୍କର ପରଲୋକ ? କେଡ଼େ ସ୍ନେହରେ ଭଣଜାକୁ ନେଇଯିବା ପାଇଁ ରଥ ପଠାଇଛନ୍ତି । ଆପଣ ସେଥିରେ —
ନନ୍ଦ—କଂସର ସ୍ନେହ ମୁଁ ଖୁବ୍ ଜାଣେ । ପୁତନାଠାରୁ କେଶୀ, ଅଘାସୁରକେ ସମସ୍ତଙ୍କୁ ସେ ସ୍ନେହରେ ପଠାଇଥିଲା, ଆପଣ ମଧ୍ୟ ସେହିପରି ଆସିଛନ୍ତି ।
ଯଶୋଦା—ରାମ କୃଷ୍ଣ ମୋର ଅନ୍ଧର ଲଉଡ଼ି । ଦରିଦ୍ର ଙ୍ଖାଳ । ତାଙ୍କୁ ମୁରୁଛି ମୁଁ ଜୀବନ ଧରି କିପରି ରହିବ ?
ଅକ୍ରୂର—ଜଗନ୍ନାଥଙ୍କୁ ତୁମ୍ଭେମାନେ ପୁତ୍ରସ୍ନେହରେ ବାନ୍ଧିରଖିଛ ବୋଲି କ'ଣ ଜଗତରେ ଆଉ କାହାର ଭାଗ ନାହିଁ ? ମୁଁ ଦାୟୀ ରହିଲି, ନିର୍ବିଘ୍ନରେ ତାଙ୍କୁ ପୁଣି ଫେରାଇ ଆଣିବି ।

—ଶାନ୍ତି—

କୃଷ୍ଣ— ( ଗୀତ )

ବାଳକାଙ୍କ ଧେନୁ ସନେ ବୁଲିଲି ମୁଁ ବନେ ବନେ
ମଧୁପୁର ଦେଖିବାକୁ ବଳଅଛି ସାଧ ଗୋ,

ନ କର ନ କର ମନା ନ ଦିଅ ମନେ ବେଦନା
କରିଛି ତୋ ପାଶେ ମୁହିଁ କେଉଁ ଅପରାଧ ଗୋ ।

ଅନୁମତି ଦିଅ ଗୋ ବାରେ ଆକୁଳ ହେଉଛି ମନ
ଯେନ ଯେନ ମୋର ବିନତି ଯେନ ।

ଯଶୋଦା—ହିଁ, ପିଲାମାନଙ୍କର ଯାତ୍ରା ଦେଖିବାକୁ ମନହୁଏ ଏକା ? କାହିଁକି କେଜାଣି ଡର ହେଉଛି—( ମଧୁ ପୋଷାକ ହେନ ପ୍ରବେଶ )

ମଧୁ— ଡର ନୁହେଁ ରାଣୀ — ସତ, ସତ । ତା କଥାରେ ଭୁଲିବେ ନାହିଁ । ତା'କଥା ଲୁଚ୍ଚା ମିଛ — ଭଣ୍ଡାଏ । ଏ ବହୁ-ରୂପୀ । ପାଗପଟକା ଲୁଚେଇ ଦେଇ ଦେହସାକ ଧୂଳିରେ ମାଖି ବଇଷ୍ଣମ ହେଉ ଥିଲା, ମୁଁ ଧରି ପକାଇଲି । ଦେଖିଲ, ଏ ବେଶ କାହାର ! ତା ଦେହକୁ ଦେଖିଲେ ମୋ କଥା ପରତେ ଯିବ । ମୁଁ ଯାଉଛି ସମସ୍ତଙ୍କ ଆଗରେ କହିଦେବି । ଗୋପ ଗଉଡ଼ମାନେ ମିଳି ଶିକାରେ ଏହାକୁ ବାନ୍ଧି ବାଉଙ୍ଗୀରେ ବାଡ଼େଇ ବାଡ଼େଇ ଠିକଣା କରିଦେବେ ।

( ପ୍ରସ୍ଥାନ )

ନନ୍ଦ— ଯଶୋଦେ ! ଏକେ ରାଜ ଆଜ୍ଞା । ସେଥିରେ ପିଲାମାନଙ୍କର ଏତେ ମନ । ଏପରି ସ୍ଥଳେ ଆମର ବାରଣ କରିବା ଉଚିତ ନୁହେଁ । ତୁମ୍ଭେ କ'ଣ ବୁଝି ପାରୁ ନାହିଁ ରାଣୀ ବକ, ଶକଟା ମୁହଁରୁ କିଏ ତାଙ୍କୁ ରକ୍ଷା କଲା ? କିଏ କାଳୀ କବଳରୁ ବଞ୍ଚାଇଲା ? (ଅକ୍ରୂରକୁ) କିନ୍ତୁ କଂସକୁ ଡଲେ ମାତ୍ର ମୋର ବିଶ୍ୱାସ ନାହିଁ । ତୁମ୍ଭେ ଏକା ସବୁବେଳେ ଆଖି ଆଗରେ ରଖିଥିବ ।

ଯଶୋଦା—ମା କାନକା ? ତୁମ୍ଭେ ରକ୍ଷା କର ମୋ ଅଜ୍ଞାନ ପିଲାଙ୍କୁ—

ନନ୍ଦ— ମନ୍ତ୍ରୀବର ! ଆଜି ସନ୍ଧ୍ୟା ହେଲାଣି । ଆମ୍ଭ ଘରେ ଆଜି ରହି ବିଶ୍ରାମ କରନ୍ତୁ । କାଲି ପ୍ରଭାତରେ ଅନୁକୂଳ କରିବେ ।

( ସକଳେ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

ସୁବଳ—ଭାଇ ! ଶୁଣିଛୁ ନା ରାମ କହ୍ନେଇ ଆଜି କୁଆଡ଼େ ମଥୁରା ଯିବେ ।

କୋକିଳ—କାହିଁକି ଭାଇ ?

ସୁବଳ—କ'ଣ କି, ତାଙ୍କ ମାମୁଁ କଂସ କ'ଣ ଗୋଟାଏ ଯାତ୍ରା କରୁଛନ୍ତି ଯେ ତା' ଉପର ଆସିଛି ରାମକୃଷ୍ଣଙ୍କୁ ଘେନିଯିବା ପାଇଁ ।

କୋକିଳ—ନା —ନା ଆମେ ତାଙ୍କୁ ଛାଡ଼ି ଦେବା ନାହିଁ ।

ସୁବଳ—ଆମେ କରିବା କ'ଣ ରେ ? ସେ ତ ରଥ ଘେନି ଆସିଛି । ଯିମିତି ହେଲେ ନେଇ ଯିବ ।

କୋକିଳ—ଆମେ ଅଟକାଇ ରଖିବା ।

ସୁବଳ—ଆମେ ପିଲାଏ କ'ଣ ପାରିବା ?

କୋକିଳ—ନ ହେଲେ ମରିବା ତ — ମଲେ ଭଲ ହେବ । ଆମ ଜୀବନ ଥାଉଁ ଥାଉଁ କିଏ ନେବ — ଦେଖିବା !

ସୁଦାମ—ଆମେ ସମସ୍ତେ ନ ହେଲେ ତାଙ୍କ ସାଙ୍ଗରେ ଯିବା ଚାଲ । କହ୍ନେଇ ନ ଥିଲେ ଆମେ ଆଉ ଗାଈ ଚରେଇବାକୁ କାହିଁକି ଆସିବା କି ?

ସୁବଳ—କହ୍ନେଇର ଯିବାକୁ ମନ ନ ଥିଲେ ତାକୁ କ'ଣ କେହି ଜୋର୍ କରି ନେଇ ଯାଇ ପାରନ୍ତା ନା ? ତା କଥା କ'ଣ ତୁମେ ବୁଝି ନାହଁ ?

ସୁଦାମ—ଆଚ୍ଛା, କଂସ ତ ଏଠି କିଛି କରି ପାରିଲା ନାହିଁ । ଏବେ ତା' ଘରକୁ ଡାକି ନେଉଛି କାଳେ କିଛି —

ସୁବଳ—ହିଁ, କଂସଟା ଫେର୍ ତାର କ'ଣ କରିବ ମ ? — ଏକା କହ୍ନେଇ କେତେଟାଙ୍କ ଭଣ୍ଡି ଚିପି ନ ମାରିଲାଣି ! ଗୋବର୍ଦ୍ଧନ କମିତି ଟେକିଲା ! କାଳୀୟର ବେକ ମୋଡ଼ିଲା । ଫେର୍ ଏ କଥା କହୁଛ ?

କୋକିଳ—ତୁ ଯାହା କହ ପଛକେ, ରାମକହ୍ନେଇଙ୍କୁ ଛାଡ଼ି ଆମେତ ରହି ପାରିବୁ ନାହିଁ ।

ସୁଦାମ—ତାଙ୍କୁ ଛଡ଼ାଇ ରଖିବା । ସେ ଜଣେ ଲୋକ, ଆମ ସଭିଙ୍କୁ ପାରିବ ନା ? ହେଇ, ଏଇ ବାଟେ ତ ଆସୁଛନ୍ତି ।

(ରାମ, କୃଷ୍ଣ ଓ ଅକ୍ରୂର ପ୍ରବେଶ)

ସୁଦାମ—ଭାଇରେ କହ୍ନେଇ ! ତୁ କଣ ଆମ ସାଙ୍ଗରେ ଗାଈ ଚରେଇ ଯିବୁ ନାହିଁ ନା ?

ଶ୍ରୀଦାମ—ଭାଇ ! ତୁ କୁଆଡ଼େ ମଥୁରା ଯାଉଛୁ ? ତୁ ଗଲେ ଆମେ କାହା ସଙ୍ଗରେ ଖେଳିବୁ ?

କୋକିଳ—ଆମକୁ ଭୋକ ଲାଗିଲେ ଶୋଷ ଲାଗିଲେ କିଏ ଆମକୁ ଖାଇବାକୁ ଦେବ — ପିଇବାକୁ ଦେବ ?

ସୁଦାମ—ତୁ ନ ଥିଲେ କିଏ ଆମକୁ ଅସୁରଙ୍କ ଦାଉରୁ ବଞ୍ଚାଇବ ?

କୃଷ୍ଣ— ତମେ ସବୁ କେଉଁ କ'ଣ ମାମୁଁ ଘରକୁ ଯାଅ ନାହିଁ ନା ? ମୁଁ ସେଇପରି ମାମୁଁ ଘରକୁ ଯାଉଚି ଦେଖିବାକୁ ଯାଉଛି ପରା !

ସୁଦାମ—ଆଜ ଥାଉ — ଆଉ ଦିନେ ଗଲେ କ'ଣ ହେବ ନାହିଁ ?

କୃଷ୍ଣ— ନା—ନା ଭାଇ, ଆଜ ଯିବାକୁ ହେବ । ତମେ ସବୁ ବ୍ୟସ୍ତ ହୁଅ ନାହିଁ । ମୋତେ ବିଦାୟ ଦିଅ । ମୁଁ ଶୀଘ୍ର ଦିନରେ ଫେରି ଆସିବି, ମୋ ରାଣ ।

ସଖାଗଣ— ( ଗୀତ )

ତୁମ୍ଭେ ଗଲେ ବନମାଳୀ
ବନେ ବନେ ଫୁଲ ତୋଳି
କାହା ଗଳେ ପିନ୍ଧାଇବୁ ହାର,
କିଏ ସେ ଖେଳିବ ଧୂଳି
କିଏ ଝୁଲାଇବ ଦୋଳି
ବଜାଇବ ବେଣୁ ବାର ବାର ।
କାହାକୁ କରିବୁ ରଜା
ସକଳେ ହେବୁ ପରଜା
ତୁମ୍ଭରେ ଖଟିବୁ ଆଜ୍ଞାକାରୀ,
ବୃନ୍ଦାବନେ କେକୀ, ପିକ
ନାଚି ଦେବେ କରେ ଡାକ
ଆଉ କି ପିଇବେ ଧେନୁ ବାରି !

କୃଷ୍ଣ— ଶୁଣ ଶୁଣ ପ୍ରାଣ-ସଖା
ତୁମ୍ଭଠାରେ ପ୍ରାଣ ରଖା
ତୁମ୍ଭେ ମୋର ଜୀବନ ପିତୁଳୀ,
କହ ହେ କେମନ୍ତ କହ
ପାଶୋରିବି ତୁମ୍ଭ ସ୍ନେହ
ତୁମ୍ଭ ମୁଖ ପାରିବି କି ଭୁଲି ?
ସଖା ମେଳେ ବୃନ୍ଦାବନେ
ମୋ କଥା ପକାଇ ମନେ
ନିତି ନିତି ଚରାଇବ ଧେନୁ,
ଖେଳିବ କାଳିନ୍ଦୀ ଜଳେ
ମୋ ପ୍ରିୟ କଦମ୍ବ ତଳେ
ନିତି ନିତି ବଜାଇବ ବେଣୁ ।

ସଖାଗଣ—
ନ ଆସିବାଯାଏ ତୁମ୍ଭେ
କାନନେ ଆସିବୁ ନାହିଁ
ନ କରିବୁ ଗୋଚାରଣ ଭାଇ,
ନ ଖାଇବୁ ଦଧି ସର
ନ ଖେଳିବୁ ଧୂଳି ଘର
ରହିଥିବୁ ତୋହ ପଥ ଚାହିଁ ।

ସୁବଳ—ଚାଲ ସମସ୍ତେ ରାମକୃଷ୍ଣଙ୍କୁ ଯମୁନା ଘାଟଯାକେ ସଙ୍ଗେ ସଙ୍ଗେ ଯାଇ ବାଟୋଇ ଦେଇ ଆସିବା ।

ଅକ୍ରୂର—ଧନ୍ୟ ଗୋପ ଶିଶୁଗଣ, ତ୍ରିଜଗତ ଚିନ୍ତାମଣି ଗୋଲୋକ-ବିହାରୀ ହରିଙ୍କୁ ତୁମ୍ଭେମାନେ କି ପ୍ରେମଡୋରିରେ ବାନ୍ଧି ରଖିଛ ? ( ସକଳ ପ୍ରସ୍ଥାନ )

## ଚତୁର୍ଥ ଦୃଶ୍ୟ

( ବୃନ୍ଦା ଓ ଲଳିତାଙ୍କର ପ୍ରବେଶ )

ବୃନ୍ଦା— ଲଳିତେ, ବ୍ରଜବାସୀଙ୍କୁ ପୁଣି ଏ କି ବିପତ୍ତି ପଡ଼ିଲା ଗୋ ?

ଲଳିତା—ସର୍ବ ବିପତ୍ତି-ନାଶନ ବ୍ରଜବିହାରୀ ଯେଉଁଠି ଅଛନ୍ତି, ସେଠି ବିପତ୍ତି କ'ଣ ଗୋ ବୃନ୍ଦେ !

ବୃନ୍ଦା— ତୁମେ ତ ଲଳିତେ ଚତୁରୀ ଗୁଆଁଳୀଙ୍କ ପରି କଥା କହୁଛ ଗୋ ?

ଲଳିତା—ନା ସଖି, ମୁଁ ସତ କହୁଛି, କିଛି ଜାଣେ ନାହିଁ, କଣ କହ ନ ଗୋ ?

ବୃନ୍ଦା— କଂସ ରଥ ପଠାଇଛି, ରାମକୃଷ୍ଣଙ୍କୁ ନେଇଯିବା ପାଇଁ ।

ଲଳିତା—କଣ କହିଲ ? ରାମକୃଷ୍ଣଙ୍କୁ କଂସ ରଥ ମଧୁପୁରକୁ ନେଇଯିବ । ସଖି ଏ କ'ଣ ରହସ୍ୟ କରି କହୁଛ ?

ବୃନ୍ଦା— ଏହିପରି ମର୍ମଘାତୀ କଥା କ'ଣ ରହସ୍ୟ କରି କହନ୍ତି ଲଳିତେ ! ସତ କଂସର ରଥ ଆସିଛି । ରାମକୃଷ୍ଣଙ୍କୁ ମଥୁରା ନେଇଯିବ । ନନ୍ଦରାଜା ଓ ଯଶୋମତୀ ଅନୁମତି ଦେଇ ଅଛନ୍ତି ।

ଲଳିତା—ଓଃ, ଏ କି ନିଦାରୁଣ ବାର୍ତ୍ତା ଶୁଣାଇଲ ବୃନ୍ଦେ ! ହୃଦୟ ଯେ ଶୁଣିଲାକ୍ଷଣି ବିଦୀର୍ଣ୍ଣ ହୋଇ ଯାଉଛି । ମନପ୍ରାଣ ଅସ୍ଥିର ହେଉଛି । ଥରେ ବ୍ରଜ ଛାଡ଼ିଗଲେ ଆଉ କି ବ୍ରଜରାଜ ଫେରି ଆସିବେ ? ବ୍ରଜାଙ୍ଗନାମାନେ ତାଙ୍କ ବିରହ କିପରି ସହ୍ୟ କରିବେ, ତାଙ୍କ ଅଦର୍ଶନରେ ବ୍ରଜବାସୀମାନେ କିପରି ଜୀବନ ଧରି ରହିବେ ବୃନ୍ଦେ !

(ଗୀତ)

ସତେ ଗୁଡ଼ି ଯିବ ଶ୍ୟାମ କି ମଥୁରା ଗୋ ଆଜପରା ।

ଦାରୁଣ ବନ୍ଧ କି କଲ      ଗୋପ ଶିଶୁ ଲୁଟାଇଲ
ଏହା କି ଲଲାଟେ ଥିଲ      ଆମ୍ଭଙ୍କୁ ଭଗାର ହେଲ
କଂସ ରଜା ପେଶିଛୁ ଡଗର ଗୋ ଆଜପରା ।

ଆହା ସେ ମୁରଲୀ-ପାଣି      କି ଶୋଭା ତ୍ରିଭଙ୍ଗ ଠାଣି
ମନୁ ଯିବକି ମିଳଣୀ      ହୃଦଯ଼ ହେଉଛି ହାଣି
କି ନ କଲେ ଦରଦ୍ର-ପସରା ଗୋ ଆଜ ପରା ।

ଆହା ସେ ମୁରଲୀ ସ୍ୱନ      ଲଳିତ ମଧୁର ଗାନ
ଶୁଣିବ ଏ ପାପ କର୍ଣ୍ଣ      ଦେଖିବା ନେହର ନୟନ
ଗୋପ ତେଜି ଗଲେ ଚିତ୍ତ ଚୋର—ଆଜପରା ।

ଆଜ କି କୁଞ୍ଜ-ବିହାରୀ      ଗୋପକୁ ଆସିବେ ଫେରି
ଯିବ ଯିବ ଝୁରି ଝୁରି      ହୃଦୟ ହୁଏ ବିଦାରି
ନଦିବନ ହେବଟି ଅସାର ଗୋ ଆଜପରା ।

ବୃନ୍ଦା—ଲଳିତେ, ଧୈର୍ଯ୍ୟ ଧର । ଏପରି ଅଧୀର ହେଲେ ଚଳିବ କିପରି ?

ଲଳିତା—ଶ୍ରୀମତୀ ଏ କଥା ଶୁଣିଲେଣି ନା ?

ବୃନ୍ଦା—ନ ଶୁଣିଲେ କ'ଣ କଥା ଲୁଚି ରହୁଛି ।

ଲଳିତା—ସେ ଶୁଣିଲେ ତାଙ୍କ ଦଶା କ'ଣ ହେବ ସଖି ?

ବୃନ୍ଦା—ମୋର ତ ସେଇ ଭାବନା ପଡ଼ିଛି । କ'ଣ କରାଯିବ ? ଆଜି କି ସଖି ଦେହ ଧରି ରହିବେ ?

( ଶ୍ରୀମତୀ ବିହ୍ୱଳ ଅବସ୍ଥାରେ—ବିଶାଖା ଓ ଚିତ୍ରା ତାଙ୍କୁ ଧରିଛନ୍ତି—ପ୍ରବେଶ କଲେ )

ଶ୍ରୀମତୀ—ଏଇ ତ ଯମୁନା ଘାଟ—କେଉଁ ଘାଟ ଦେଇ ପାରି ହୋଇ ଯିବା ? (ବୃନ୍ଦା ପ୍ରତି) ତୁମେ କିଏ କଂସର ଦୂତ ? ମୋତେ ମଥୁରା ନେଇଯିବା ପାଇଁ ଆସିଛ । ଟିକିଏ ବିଳମ୍ବ କର । ମୁଁ ସଜ ହୋଇ ଆସେ ।

ଲଳିତା—ଏଁ ଏଁ ଶ୍ରୀମତୀଙ୍କର ଏ ଦଶା କିଏ କରାଇଲା ଗୋ ?

ବୃନ୍ଦା—ସଖି ବିଶାଖା, ଶ୍ରୀମତୀ କ'ଣ ସେ କଥା ଶୁଣିଲେଣି କି ?

ବିଶାଖା—ହିଁ ଗୋ—ଶୁଣିଲେ ବେଳୁ ତ ବାଇଆଣୀ ପରି ହେଉଛନ୍ତି । ଯେତେ କହିଲେ ବୁଝାଇଲେ ଶୁଣୁଛନ୍ତି ନା ବୁଝୁଛନ୍ତି ?

ବୃନ୍ଦା—( ଶ୍ରୀମତୀଙ୍କୁ ଧରି ) ପ୍ରିୟ ସଖି, ଏପରି କାତର ହେଉଛ କାହିଁକି ?

ଶ୍ରୀମତୀ—ହେଇ ମୁରଲୀ ବାଜିଲାଣି । ସଖାମାନେ ଗୋଚାରଣକୁ ଆସିଲେଣି । ଗୋବତ୍ସଗଣ ହମ୍ବାରଡ଼ ଦେଲେଣି । ଦେ' ଦେ' ଚୂଡ଼ା ବାନ୍ଧି ଦେ', ପୀତବାସ ପିନ୍ଧାଇ ଦେ' ମୁଁ ବନକୁ ଯିବି । ଯମୁନା କୂଳେ କୂଳେ ମୁରଲୀ ବଜାଇ ବାଛୁରିଙ୍କ ପଛରେ ଧାଇଁ ବୁଲିବି । ବଂଶୀବଟ ତଟରେ କଦମ୍ବ ଶାଖାରେ ଚଢ଼ି ଗୋପବାଳାମାନଙ୍କର ବସ୍ତ୍ର ଚୋରି କରିବି ।

ବୃନ୍ଦା—ସତେ ତ ! ପାଗଳଙ୍କ ପରି କ'ଣ ଗୁଡ଼ାଏ ବକୁଛନ୍ତି । ଏପରି ଦେଖିଲ ତ ଦାଣ୍ଡଟାକୁ କାହିଁକି ଆଣିଲ ?

ବିଶାଖା—ଆମେ କଣ କରିବୁଁ ? ସେ ତ ଅସମ୍ଭାଳ ହେଉଛନ୍ତି ।

ଶ୍ରୀମତୀ— ଦେଖ, ଦେଖ, ରଥ ଆସିଲାଣି । ମୋତେ ସଜ କରି ଦେ' ! ଆମେ ଦୁଇଭାଇଯାକ ସାଙ୍ଗରେ ଯିବୁଁ । ମା ଯଶୋମତୀଙ୍କର ସରଳବର୍ଣ୍ଣ ମାୟା ଆଉ ମୋତେ ରଖି ପାରିବ ନାହିଁ । ବ୍ରଜବାସୀଙ୍କର ଶୁଖିଲା ମୁହଁଆଗରେ ଆଉ ମୁଁ ଭୁଲି ରହି ପାରିବ ନାହିଁ ।

ଲଳିତା—ସଖି, ସ୍ୱପ୍ନ ଦେଖୁଛ ନା କ'ଣ ?

ବୃନ୍ଦା—ହଠାତ୍ ଅତି ଦୁଃଖରେ ମତିଭ୍ରମ ହୋଇଗଲେ ଏହିପରି ହୁଏ ଏକା ।

ଲଳିତା—ତେବେ କ'ଣ କରିବା ?

ବୃନ୍ଦା—ବ୍ରଜଜୀବନ ବ୍ରଜ ଛାଡ଼ିଗଲେ ବ୍ରଜେଶ୍ୱରୀଙ୍କ ଜୀବନ ରହିବା ବଡ଼ କଠିନ ହେବ । ଏଇବାଟେ ତ ଏକ୍ଷଣି ଅକ୍ରୂରର ରଥ ଯିବ, ସମସ୍ତେ ଚାଲ ବାଟ ଓଗାଳି ଛିଡ଼ା ହେବା । ଅକ୍ରୂର ଘରକୁ ଫେରିଯାଉ ।

ଶ୍ରୀମତୀ—ହେ କୃଷ୍ଣ, ଗୋପୀବଲ୍ଲଭ, ଓଃ କି ନିଷ୍ଠୁର—କି ନିର୍ଦ୍ଦୟ !

( ସଖିମାନେ ହାତ ଧରାଧରି ହୋଇ ଛିଡ଼ା ହେଲେ—ଅକ୍ରୂର, କୃଷ୍ଣ, ବଳରାମ ପ୍ରବେଶ )

କୃଷ୍ଣ— କି ଗୋ ବ୍ରଜବଧୂଗଣ, ତୁମେମାନେ ରାଜଦାଣ୍ଡରେ ଏପରି ବାଟ ବନ୍ଦ କରି ଛିଡ଼ାହୋଇଛ କାହିଁକି ? ରଥତଳେ ଚାପା ପଡ଼ିବ ଯେ !

ବୃନ୍ଦା—ହେ ନିଷ୍ଠୁର କହ୍ନାଇ ! ଆମେ ତୁମରି ରଥତଳେ ଚାପା ପଡ଼ିବା ପାଇଁ ତ ଛିଡ଼ା ହୋଇଛୁଁ । ଏତେ କଥା ଯଦି ତୁମ ମନରେ ଥିଲା, ତେବେ ଆମ ଅଳିଳୀ ସୁକୁମାରୀ ବୃଷଭାନୁ-କୁମାରୀଙ୍କୁ କାହିଁକି ଏତେ ହଟହଟାରେ ପକାଇଲ ଭଲା !

କୃଷ୍ଣ— ତୁମେ ସମସ୍ତେ କୁଳ-ଭୁଆସୁଣୀ । ଲାଜସରମ ସବୁ ପୋଡ଼ି ଖାଇଲ ନା କ'ଣ ?

ବୃନ୍ଦା—ଆମ ଲଜ ସରମ କ'ଣ ତୁମେ ରଖିନ୍ତ ?

(ଗୀତ)

ଗୋପ-ପଙ୍କଜ-ବନ-ମିହିର
କରି ଗୋପପୁର ଅନ୍ଧକାର,
ମଥୁରା ଭୁବନ          କରିବ ଗମନ
ଦୟା ନାହିଁ କି ତିଳେ ତୁମର ହେ ମୋହନ ।

ସରୋଜମୀର ଆଶ୍ରୟ ବନ
ହେଉଁ ବାରବାରଣ ଭଗନ
ବହିଯାଏ ପାଣି          ଜମ୍ବାଳରାଣୀ
ନଳମୀର କି ରହେ ଜୀବନ ହେ ମୋହନ ।

ନୋହେ ଅଧମୀ ଶ୍ରୀପଦେ ଦୋଷୀ
ଅଧମୀକି କା କରେ ନିବେଶି
ହୋଇଅଛ ଆଜ          ମଥୁରାକୁ ସଜ
ଝୁରାଇବାକୁ ଦିବସନିଶି ହେ ମୋହନ ।

କୃଷ୍ଣ— ବୃନ୍ଦେ ! ଆଜ ଏତେ ଅଧୀର ହେଉଛ କାହିଁକି ? ମୁଁ ତ ବୃନ୍ଦାବନ ପାଇଁ ମାମୁଁ ଘରକୁ ଯାଉଛି ମାତ୍ର । ଯେ ବୃନ୍ଦାବନ ପାଇଁ ତୁମ୍ଭମାନଙ୍କର ଦାସାନୁଦାସ ତାକୁ ବୃନ୍ଦାବନ ପାଇଁ ବିଦାୟ ଦେବାକୁ କୁଣ୍ଠିତ କାହିଁକି ?

ବୃନ୍ଦା—ହେ କପଟରାଜ – ବୃନ୍ଦାବନ ପାଇଁ ତ ଯିବ ବୋଲି କହୁଚ କିନ୍ତୁ ତୁମେ ଜାଣନାହିଁ ଯେ ତୁମର ମୁହୂର୍ତ୍ତେ ବିରହ ଶ୍ରୀମତୀଙ୍କ ପକ୍ଷରେ କେତେ ଅସହ୍ୟ । ତୁମ୍ଭଙ୍କୁ ସବୁ କୃପାସିନ୍ଧୁ ବୋଲି କହନ୍ତି । ଦେଖୁନାହିଁ ଶ୍ରୀମତୀଙ୍କର କି ଦଶା ହେଲାଣି ?

( ଗୀତ )

ହେ କୃପାନିଧି, କେମନ୍ତେ ମୁକ୍ତିବୁ ତୁମ୍ଭଙ୍କୁ
କହ ହେ ବଂଶୀଧର ଆମ୍ଭଙ୍କୁ ।

କେଉଁ ମନ୍ତ୍ର ବଳରେ          ହୃଦୟ କମଳରେ
ଧଇଲ ଏମନ୍ତ ଦମ୍ଭକୁ ହେ !

ହୂର କୁସୁମ-ଧନୁ          କୃଶ କରଇ ତନୁ
କାନନୁ ଆସିବା ସରିକି,
କେମନ୍ତ କରି ଦେହ          କରିବ ସେ ଅଦେହ
ଗଲେ ମଥୁରା ନଗରୀକି ହେ କୃପାନିଧି ?

କଲ ଯେତେ ରୂପରେ ପ୍ରୀତି
କରୁଛ ତେତିକି ଅମୀତି
କମଠ ଧ୍ୱଂସ ପ୍ରାୟ          ନ କର କୃପାମୟ
କୋମଳ ମୀଳ ତନୁ ଗୁନ୍ତି ହେ ।

କଲୁ ହତ ଆଦର          କୁଳଶୀଳ ବେଭାର—
ଠାରେ ତୁମ୍ଭଙ୍କୁ ମନ ଦେଇ
କାଳ ହେଉଛୁ ଏବେ          ଚରଣ ବେନି ନାବେ
ଦେଲ ଲୋକ ସରାଏ ହୋଇ ହେ କୃପାନିଧି ।

କାହାକୁ କହିବୁଁ ଏ କଥା
କେବା ଖଣ୍ଡିବ ମନ ବ୍ୟଥା,
କୃପାଳୁ ହୋଇ ଯେବେ          କୃପା ଗୁଡ଼ ଅଭାବେ
ତୁମ୍ଭେ ତ ପୋଡ଼ିଲଣି ମଥା ହେ

କରିଥିଲୁଁ କାମନା          ସକଳ ଗୋପାଙ୍ଗନା
ତୁମ୍ଭେ ଗୋପରେ ସୁଖେ ଥିବ,
କଉତୁକ ହରଷ          ରସେ ପଦ ସାରସ—
ସେବାରେ ଆମ୍ଭ ଦିନ ଯିବ ହେ କୃପାନିଧି ।

କଲି ସେ କଥା ଆନ ବିଧି
କରୁଛ ତୁମ୍ଭେ ଏ ଅବଧି
କଳାନିଧିକୁ କରେ          ଧରିବାକୁ ମନରେ
ବଳିଲେ କି ହୁଏ ସିଦ୍ଧି ହେ !

କୃଷ୍ଣ— ବୃନ୍ଦେ, ଦେଖ, ଆମ୍ଭବସ୍ତୁ ତ ଦୁଅନାହିଁ । ଦୂର ଅତୀତକୁ ଭୁଲିଥାଅ ନାହିଁ । ପୁଣି ଭବିଷ୍ୟତକୁ ଅନାଅ । କେବଳ ବ୍ରଜଲୀଳା ତ ମୋର ଉଦ୍ଦେଶ୍ୟ ନୁହେଁ ।

( ଗୀତ )

ନ ଧର ନ ଧର ମନେ ନ କର ଗୋ ଭାବନା
ଅକାରଣେ ପ୍ରିୟ ସଖି କାନ୍ଦ ନା ଗୋ କାନ୍ଦ ନା ।

ବ୍ରଜରସ ସୁମଧୁର          ମୋର ଅତି ପ୍ରିୟତର
କୋମଳ ପରାଣୁ ବ୍ୟଥା ଗୁଡ଼ ବଧୂ-ବନ୍ଦନା ।
ଏ ଛାର କଙ୍କର ପାଇଁ ନିଜ ପ୍ରାଣ ବଧ ନା ।

ସରସ ମଧୁର ମୁଖ          ଦେଖିଲେ ଯିବ ମୋ ଦୁଃଖ
ଥିବେ ପାଅ ଫେରି ସୁଖେ ଆଗୋ କୁନ୍ଦରଦନା
ନୟନ ପୀରତି-ଲତା ଅଯତନେ ଛେଦ ନା ।

ତୁମର ଶକ୍ତିରେ ଶକ୍ତିମନ୍ତ ନ ହେଲେ ଜଗତ୍‌କର୍ତ୍ତା କପର ସ୍ୱକାର୍ଯ୍ୟ ସାଧନ କରିବେ ? ତୁମ୍ଭେ ଚିଦାନନ୍ଦମୟୀ ହୋଇ ଆପଣାକୁ ପାସୋରି ପକାଉଛ କପର ? ରାଧାକୃଷ୍ଣ ଯେ ଏକ ଅଭେଦ ଆତ୍ମା । ଏ କଥାକୁ ଭୁଲିଗଲ ସଖି ? ଆତ୍ମ-ଜ୍ଞାନରେ ଦର୍ଶନ କର ! ଶ୍ରୀକୃଷ୍ଣ କେବେ ବୃନ୍ଦାବନ ତ୍ୟାଗ କରି ପାରନ୍ତି ନାହିଁ । ବ୍ରଜଲୀଳା ଯେ ନିତ୍ୟଲୀଳା ସଖି !

ରାଧା — ( ଗୀତ )

ପ୍ରାଣ ମିତଣି ଗୋ ଆଉ କହ ନା,
ପୋଡ଼ା ପ୍ରାଣ ପୁଣି ଥରେ ଦହ ନା,
ହସାଇ ରସାଇ ବାଟରେ ବସାଇ
ହେଲେଣି ସେ ମନ ମୋହନା । ୧ ।

ଯାହା ହେବାର ତ ତାହା ହେଲାଣି,
ବ୍ରଜେ ସବୁ ସୁଖ ସରି ଗଲାଣି
ରାଧାର ଜୀବନେ କେଉଁ କାର୍ଯ୍ୟ ଆଉ
ଦିଅ ମୋତେ ଏବେ ମେଲାଣି । ୨ ।

ବୃନ୍ଦା— ଛି ସଖି, ମାୟା ମୋହରେ ତୁମ୍ଭେ ଯଦି ନଜେ ଏପରି ହେବ, ରାଧାଗତପ୍ରାଣା ତୁମର ଅନୁଗତା ଲଳିତାଦି ସଖିଗଣ କପରି ଜୀବନ ଧରି ରହିବେ ? ତାଙ୍କୁ ଚାହିଁ ଟିକିଏ ସ୍ଥିର ହୁଅ ଭଲି !

ରାଧା— ( ଗୀତ )

ଯେବେ ପିଣ୍ଡରୁ ପରାଣ ଛାଡ଼ିବ,
ଶ୍ୟାମକୁଣ୍ଡ ମାଟି ଅଙ୍ଗେ ଲେପିବ ।
କୃଷ୍ଣ ତୁଳସୀରେ ଏ ଅଙ୍ଗ ଆବୋରି
କର୍ଣ୍ଣେ କୃଷ୍ଣ ନାମ କହିବ ।

ବୃନ୍ଦା— ଛି-ଛି ! ଏପରି ଅକଥା କହିଲେ ଆମେ ଏଠୁ ଯାଉଛୁ ଚଳିକେ ! ଦେଖୁ ନାହିଁ, ତୁମର ପ୍ରିୟ ସଖିମାନେ ଅଧାପ୍ରାଣ ହୋଇ ସାଉଲେଣି । ଏବେ କୃଷ୍ଣ ବିରହ — ଚିନ୍ତାରେ ତୁମର ଏ ଦଶା ଏଥିରେ ସେମାନେ କପରି ଦେହ ଧରି ରହିବେ ?

ରାଧା— ( ଗୀତ )

ଶିରେ ମୟୂର ଚନ୍ଦ୍ରିକା ଖଞ୍ଜାଇ
ଗଳେ ଗୁଞ୍ଜା ମାଳ ଦେବ ସଜାଇ
ଅଙ୍ଗଠାରୁ ରାଧା ନାମକୁ ପାଶୋରି
ଯମୁନାରେ ଦେବ ଭସାଇ ।

ବୃନ୍ଦା—ଲଳିତେ, ନା—ସ୍ୱାଙ୍କୁ ଏଠି ଆଉ ସମ୍ଭାଳି ହେବ ନାହିଁ ସମସ୍ତେ ଆସ ପ୍ରବୋଧ ଦେଇ ଘରକୁ ନେଇ ଯିବା ।
(ସମସ୍ତେ ଗୀତ ଗାଇ ଶ୍ରୀରାଧାଙ୍କୁ ଧରି ଧୀରେ ଧୀରେ ନେଇ ଯାଉଛନ୍ତି)

ସକଳେ— ( ଗୀତ )

ଧଇରଜ ଧର ଧନୀ,
ଜୀବ ଥିଲେ ଦିନେ ହେଲେ ମିଳିବେ ସେ ଗୁଣମଣି ।
ବ୍ରଜବନ୍ଧୁ ରସସିନ୍ଧୁ ରାଧା ତହିଁ ପୂର୍ଣ୍ଣ-ଇନ୍ଦୁ
କୃଷ୍ଣ ଆକର୍ଷିଣୀ ତୁହି କୃଷ୍ଣ ପ୍ରେମ ତରଙ୍ଗିଣୀ ।
ଜଗତ ଆଧାର ସେହି ତାହାରି ଆଧାର ତୁହି
ତ୍ରିଜଗତ ଚିନ୍ତାମଣି ତୋହ ପାଶେ ସଦା ଋଣୀ ।
ରସରାଜ ନନ୍ଦ ସୁତ ମହା ଭାବମୟୀ ତୁ ତ
ପରମ ପୁରୁଷ କୃଷ୍ଣ ତୁହି ପ୍ରକୃତି ରୂପିଣୀ ।
ରାଧାକୃଷ୍ଣେ ନାହିଁ ଭେଦ ନାହିଁ ବିରହ ବିଚ୍ଛେଦ
ରସିକ ଭକତ ଜନ ମନକୁଞ୍ଜ ବିହାରିଣୀ ।

( ସକଳେ ପ୍ରସ୍ଥାନ )

( ଯବନିକା )



# କାଳୀୟ ଦଳନ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ — ରାଜବାଟି

( କଂସ ଓ ଦୂତ )

କଂସ— କି କହିଲୁ ଦୂତ, ଏଯେ ଆଶ୍ଚର୍ଯ୍ୟ କାହାଣୀ !
ବାତୁଳ ପ୍ରଳାପ ତୁଲ୍ୟ ହୁଅଇ ପ୍ରତ୍ୟୟ ।
ଦୂତ— ସତ୍ୟ ପ୍ରଭୋ, ଦୂତ ସତ୍ୟ, ନିଶ୍ଚିତ ବାରତା ।
କଂସ—ଜାଣୁକି ରେ ଦୂତ ତୁହି,
ଦୌତ୍ୟ କର୍ମ କେଡ଼େ ଗରୀୟାନ,
ଗୁରୁତର କେତେ ?
ଦୂତ ଅଟେ ରାଜାଙ୍କର ନୟନ ସ୍ୱରୂପ,
ଦୂତ ହସ୍ତେ ଭୂପାଳର ଜୀବନ-ପେଟିକା ।
ଦୂତ ଯଦି କରେ ଛଳେ ସତ୍ୟ ଅପଳାପ,
ଅଣୁ ମାନ ମାତ୍ରାଧିକ୍ୟ କରେ ବାସ୍ତବର,
ଜାଣୁକି ତାହାର କିବା ବିଷମୟ ଫଳ,
ବିଶ୍ୱାସୀ ପ୍ରଭୁର କେଡ଼େ ଘୋର ବିଡ଼ମ୍ବନା !
ଦୂତ— ଜାଣେ ପ୍ରଭୋ, ଦୌତ୍ୟ କର୍ମେ ବୃଦ୍ଧ ହେଲି ଆସି,
ଦୂତ ହେଲେ ଅବିଶ୍ୱାସୀ, ପ୍ରଭୁର ସନ୍ତାପ ।
କଂସ—କିନ୍ତୁ ତେବେ, କହ ଦୂତ, କହ ସତ୍ୟ କଥା,
କହ ପୁନର୍ବାର ।
ଦୂତ— ଅଦ୍ଭୁତ ସେ କଥା ପ୍ରଭୋ !
ଯକ୍ଷ, ରକ୍ଷ, ବିଦ୍ୟାଧର, ଗନ୍ଧର୍ବ, କିନ୍ନର
ଯେତେକ ଦେବର୍ଷି ସହ ଅମର ମଣ୍ଡଳୀ,
ଏକାକୀ ସେ ଗୋପବାଳେ ବେଢ଼ି ଚୌପାଶେ
ଭକ୍ତିଭରେ କର ଯୋଡ଼ି ସ୍ତବ ପାଠେ ରତ ।
ବାସୁକି କରଇ ସ୍ତୁତି ସହସ୍ର ବଦନେ
ସହ ନାଗଗଣ, ଯେତେ ପାତାଳ ନିବାସୀ ।
ଆନନ୍ଦେ ଗଦ୍‌ଗଦ ହୋଇ ଉଭା ଶ୍ରୀ ସମ୍ମୁଖରେ
ବରୁଣ ଦେବତା, ଯେହ୍ନେ ପ୍ରାପ୍ତ କୋଟିନିଧି ।
ଅର୍ଘ୍ୟସ୍ଥାଳୀ କରେ ଧରି ବରୁଣ-ଗୃହିଣୀ
ବନ୍ଦାପନା ରତ, ଯେନି ପୁର ନାରୀଗଣ ।
ମଙ୍ଗଳ ସଙ୍ଗୀତ ନାଦେ କମ୍ପିତ ଦିଗନ୍ତ;
ଉଚ୍ଛୁଳଇ ପାରାବାର ତରଙ୍ଗ ହିଲ୍ଲୋଳେ ।

କଂସ—ଏ କି ମାୟା ଦୂତ ? କିବା ଅଳୀକ କାହାଣୀ ?
ଛିଦ୍ରାନ୍ୱେଷୀ ଅରାତିର କପୋଳ କଳ୍ପନା ?
ଦୂତ— ନୁହଇ କଳ୍ପନା ପ୍ରଭୋ, ସତ୍ୟ ଏ ଘଟଣା,
ସତ୍ୟ ଯଥା ଚନ୍ଦ୍ର ସୂର୍ଯ୍ୟ, ଦିବସ, ଶର୍ବରୀ ।
କଂସ—( କ୍ଷଣ କାଳ ରହି ) ଗୁପ୍ତ କଥା କାହା ଆଗେ
ନ କର ପ୍ରକାଶ,
ଯାଅ ଦୂତ ନିଜାବାସେ ବିଶ୍ରାମ କାରଣେ ।
( ଦୂତର ପ୍ରସ୍ଥାନ )
( ସ୍ୱଗତ ) ନିଶ୍ଚେଷ୍ଟତା ନିଶ୍ଚେଷ୍ଟତା !
କାତରତା ନାମାନ୍ତର ଅଟେ ନିଶ୍ଚେଷ୍ଟତା !
ଅପେକ୍ଷା ? ଅକାରଣ ଅପେକ୍ଷା ତ ଦୁର୍ବଳର ଢାଲ;
ଆଶୁ କର୍ମେ ତତ୍ପରତା ସିଦ୍ଧିର ଲକ୍ଷଣ;
ବିଳମ୍ବରେ ନିର୍ବୋଧର କ୍ଷତି ସୁନିଶ୍ଚୟ ।
( ହଠାତ୍ ବ୍ୟଗ୍ର ହୋଇ ଉଚ୍ଚ ସ୍ୱରେ )
ଦୂତ, ଦୂତ —
( ଦୂତର ପୁନଃ ପ୍ରବେଶ )
ଏହି ବାଟେ ଯାଅ ତୁମ୍ଭେ ଗୋକୁଳ ନଗରୀ
ଅତି ତ୍ୱରା କରି;
ମୁହୂର୍ତ୍ତେ ବିଳମ୍ବ ହେଲେ ହେବ ସର୍ବନାଶ ।
ଦୂତ— ରାଜ କାର୍ଯ୍ୟେ ତତ୍ପରତା ଅଭ୍ୟାସ ଦୂତର;
କରନ୍ତୁ ଆଦେଶ ପୁଣି ଯିବି ଏହିକ୍ଷଣି ।
କଂସ—ଶୁଣାଇବ ଗୋପପତି ନନ୍ଦରାଜେ ଯାଇ
ଅତି ବେଗେ ବ୍ରଜପୁରେ ଆମ୍ଭର ଆଦେଶ ।
କାଳୀ ଦହୁଁ ଶତ ଭାର ତୋଳି ଶତଦଳ
କାଲି ପ୍ରାତେ ଭେଟିବେ ସେ ଆମ୍ଭ ଶ୍ରୀ ସମ୍ମୁଖରେ ।
ଅତି ପ୍ରୟୋଜନ ଦୂତ; ହୋଇଲେ ଅନ୍ୟଥା
ବିଷମୟ ପ୍ରତିକାର ହୋଇବ ନିଶ୍ଚୟ ।
ବୁଝିଲ କି ଦୂତ ? ତୁମ୍ଭେ ପ୍ରବୀଣ ଏ କର୍ମେ ।
ଦୂତ— ଆଜ୍ଞା ମହାରାଜ ।
କଂସ—ଏବେ ଯାଅ ତ୍ୱରା କରି —
( ଦୂତର ପ୍ରସ୍ଥାନ )
( ସ୍ୱଗତ ) ଅଖଣ୍ଡ୍ୟ, ଅକାଟ୍ୟ, ଏହି କଂସର କୌଶଳ
ଦୈତ୍ୟଗୁରୁ ଶୁକ୍ର ମନ୍ତ୍ର ସର

ଅଭେଦ୍ୟ କପଟ !
ଶତଭାର ଶତଦଳ କେ ପାଇବ କାହୁଁ
ଇଚ୍ଛା ମାତ୍ରେ, ଏକା ଦିନକରେ ?
ରାଜ ଭୟେ ନନ୍ଦ ଗୋପ ପଶିବ ନିଶ୍ଚୟ
ସଙ୍କଟରେ କାଳୀଦହେ, କାଳକୂଟମୟ,
ନାଗରାଜ କାଳୀୟର ସଯତ୍ନ ରକ୍ଷିତ ।
ଦୁର୍ଦ୍ଦାନ୍ତ ସେ ନାଗଗଣ ମହା ବୀର୍ଯ୍ୟବାନ ।
ବିଷମୟ କାଳୀ ହ୍ରଦ ସଲିଳ ପରଶେ
ନ ରହେ ଜୀବନେ କେହି ।
ଆକାଶରେ ପକ୍ଷୀଗଣ ନ ବୁଲନ୍ତି ଉଡ଼ି
ବିଷର ପ୍ରଭାବେ ।
ସେହି କାଳୀ ଦହେ ଗୋପେ ଯିବେ ପଦ୍ମ ତୋଳି ।
ନାଗରାଜ କାଳୀ ଅଟେ ଚିର ମିତ୍ର ମୋର,
ପ୍ରୟୋଜନ କାଳେ ମିତ୍ର କରେ ଉପକାର ।
ଏଥର ମରିବ କୃଷ୍ଣ, କଂସର ଭଗାରି ।
ରାଜୋଚିତ କୂଟ ମନ୍ତ୍ର, ସୁନ୍ଦର କୌଶଳ;
ହାଃ, ହାଃ । ( ଚିନ୍ତାକରି )
ପୁତ୍ର ସ୍ନେହବଶେ ଯଦି ନ କରେ ପାଳନ
ଆଦେଶ ମୋହର ନନ୍ଦ,
ଓଃ, ତେବେ ତ ସହଜ—
ରାଜ ଆଜ୍ଞା ଅବଜ୍ଞାର ଘୋର ଅପରାଧେ
ମାରିବ ସବଂଶେ ତାକୁ, କରି ରାଜ ଦଣ୍ଡ,
ଉଭୟ ସଙ୍କଟେ ପଡ଼ି ହେବ ଲଣ୍ଡ ଭଣ୍ଡ,
ଯାହା କଲେ, ଗୋପାଳର ମରଣ ନିଶ୍ଚୟ;
ଏବେ ନିଷ୍କଣ୍ଟକେ କଂସ ଭୋଗିବ ଅବନୀ ।

## ଦ୍ୱିତୀୟ ଦୃଶ୍ୟ

ଶ୍ରୀକୃଷ୍ଣ ଗୀତଗାଇ ପ୍ରବିଷ୍ଟ ହେଲେ ।

ସିନ୍ଧୁ ଖାମ୍ବାଜ—ଏକତାଲ

ଦେଖ ସ୍ୱର୍ଣ୍ଣ ରେଣୁ ଉଡ଼ାଏ ଭାନୁ ନଭେ ପରକାଶି ।
ଚକ ଚକିଆ ମେଘଦଳ ଆସେ ଭ୍ରମି ଭାସି । ଘୋଷା ॥

ଶିଶିର-ସିକ୍ତ ହରିତ ପତ୍ର ନଚାଇ ତାଳେ ତାଳେ,
ରଙ୍ଗ ରଙ୍ଗିଆ ମୁକ୍ତା ଫଳ ସଜାଇ ମାଳେ ମାଳେ,
ଛୁଇଁ ଦେଉଛି କନକ କାଠି କେଉଁ କୁହୁକ ଆସି ॥
ତାଳ ଦେଉଛି ମଧୁର ଗନ୍ଧ ମୁଗଧ ଅନ୍ତରେ,
ବୋଲ ଦେଉଛି ସୁନେଲି ରଙ୍ଗ ଦିଗ ଦିଗନ୍ତରେ,
ଛନ୍ଦେ ଛନ୍ଦେ ଉଠାଇ ତାନ,
ଗାଏ ଭରଡିଆ ପ୍ରଭାତୀ ଗାନ,
ଫୁଟି ଉଠୁଛି ଶତ-ସରେ ପଦ୍ମ ରାଶି ରାଶି ॥

( ଗୀତାନ୍ତେ ମଧୁମଙ୍ଗଳର ପ୍ରବେଶ )

ମଧୁ—ବାହା ବା, କହ୍ନେଇ, ଆଜତ ଭାରି ଫୁର୍ତ୍ତି ; କି, ଆଜି ଅଧିଆ ମୁହଁରେ ସଖାଙ୍କ ଉଠି କଛି ଚକଣା ମାଲ ପଡ଼ି ଗଲାଣି କି ?

କୃଷ୍ଣ—କିଏ ମଧୁ ! ଫୁର୍ତ୍ତି କଣ ଖାଲି ପେଟରେ ମାଲ ପଡ଼ିଲେ ହୁଏ, ଆଉ କୋଉଥିରେ ହୁଏ ନାହିଁ ?

ମଧୁ—ମୁଁ ତ ଜାଣେ ସେଇଆ । ମୋର ଯେଉଁ ଦିନ ଚଉକସ ଭୋଜନଟା ପଡ଼ି ଯାଇ ଥିବ ସେ ଦିନ ମୋତେ ତଉଦ ଭୁବନ ଦିଶିଯାଏ ।

କୃଷ୍ଣ—ତା, ହଉଥିବ ଏକା । ବ୍ରାହ୍ମଣେ ପେଟ ଛଡ଼ା ତ ଆଉ କଛି ଜାଣନ୍ତି ନାହିଁ ।

ମଧୁ—ଆଉ ଗଉଡ଼େ, ସିକାରେ ଚଢ଼ି ଠେକି ମାଠିଆ ଭାଙ୍ଗି ଜାଣନ୍ତି !—ନା ?

( ଯଶୋଦା ପ୍ରବିଷ୍ଟ ହେଲେ )

ଯଶୋଦା—କିରେ କହ୍ନେଇ, ମଧୁ, ସକାଳୁଟାରୁ କଳି ଲଗିଛି ନା କଣ ? ହେଇ ମଧୁ ତ ସଜ ହୋଇ ବାହାରିଲାଣି । କହ୍ନେଇକୁ ଖୋଜି ଖୋଜି ପାଉ ନାହିଁ । ଆ, ଆ, ବାପ, ତୋତେ ବେଶ କରି ଦିଏ ।

( ଗୀତାନୁସାରେ ଯଶୋଦା ବେଶ କରିବାକୁ ଲାଗିଲେ )

ଝିଞ୍ଜିଟ-ଏକତାଲି

କୃଷ୍ଣ— ବାନ୍ଧିଦେ ମା, ଶିରେ ମୟୂର ଚୂଳ
ଧବଳୀ ଶ୍ୟାମଳୀ ଦେଇ ହମ୍ବାରଡ଼ି
ଡାକିଲେଣି ମୋତେ ହୋଇ ଆକୁଳ । ଘୋଷା ।

ସଜାଇ ଦେ ମା ଅଳକା ତିଳକା,
ଭାଲେ ଦେଇ ରୁରୁ ଗୋରଚନା ଟୀକା,
(ମୋର) ପ୍ରିୟ ସଖାଗଣ ସୁବଳ, ସୁଦାମ
(ଆସି) ଦାଣ୍ଡ ଦୁଆରରେ ହେଲେଣି ଠୁଳ ।

# କାଳୀୟ ଦଳନ

ପାଞ୍ଚଣ ମୁରଲୀ ଦେଇ କରେ ମୋର,
ପିନ୍ଧାଇ ଦେ ମାଗୋ ଚରଣେ ନୂପୁର,
ରୁଣୁ ଝୁଣୁ ଝୁଣୁ ନାଚ ନାଚ ନାଚ,
ବାଳୁଙ୍ଗ ସଙ୍ଗତେ ଖେଳିବ ଖେଳ ।
ମୁରଲୀ ବଜାଇ ରାମ ଭାଇ ସନେ,
ଗୋଧନ ଚରାଇ ବୁଲିବି ମୁଁ ବନେ,
( ବୃନ୍ଦାବନେ ଗୋ )
(ମୋର) ମନେ ପଡ଼ୁଲାଣି ନିକୁଞ୍ଜ କାନନ
ମନେ ପଡ଼ୁଲାଣି ଯମୁନା କୂଳ ।
ପିନ୍ଧାଇ ଦେ ମାଗୋ, ଭିଡ଼ ପୀତ ଧଡ଼ା,
ଚୂଡ଼ା ପରେ ଦେଇ ଗୁଞ୍ଜମାଳ ବେଢ଼ା,
କ୍ଷୀର ନବନୀତ ଦିଅ ମା ସଜାଡ଼,
ବେଳୁଁ ବେଳ ଗଡ଼ ଯାଉଛି ବେଳ ।

( ନନ୍ଦ ପଛଆଡ଼ୁ ପ୍ରବେଶ ହେଲେ )

ନନ୍ଦ— କି ଗୋ ଯଶୋଦେ, ପୁଅ ଶରଧାରେ ତ ଭାରି ଲାଗି ଯାଇଛ ! ସେ ଆନନ୍ଦରେ ଆଜି କାହାରି ଭାଗ ଅଛି ନା ?

ଯଶୋଦା—(ହସି) ତା ସତ ତ ! ମିଣିପ ଲୋକଙ୍କର ଏ ସୁଖରେ ଭାଗ କାହୁଁ ଆସିବ ? ତୁମେ କ'ଣ ବେଶ କରି ଦେଇ ପାରିବ ନା ସର ଲବଣୀ ଖୁଆଇ ଦେଇ ପାରିବ ?

ନନ୍ଦ— ଆମେ ପୁରୁଷ ଜନ୍ମ ହେଲୁଁ ବୋଲି କଣ ଏଡ଼େ ଅପରାଧ ହେଲା ?

ଯଶୋଦା—ହୋଇଛି ତ ! ଏ ଜନ୍ମରେ ଠାକୁରଙ୍କୁ ଡାକ ଯେପରି ଆର ଜନ୍ମକୁ ତମକୁ ସ୍ତ୍ରୀ-ଜନ୍ମ ଦେବେ ।

ନନ୍ଦ— ଆଚ୍ଛା, ସ୍ତ୍ରୀ ଲୋକଙ୍କ କାମ ଯାଇ ଆମେ କରି ନ ପାରିଲୁଁ । କିନ୍ତୁ ଦେଖିବାର ତ ଅଧିକାର ଅଛି ଯଶୋଦେ ?

ଯଶୋଦା—କିଏ ମନା କଲା କି ଦେଖିବାକୁ ? ଦେଖୁ ନାହଁ, ଆଜି ନୀଳମଣି ମୋର କେଡ଼େ ସୁନ୍ଦର ଦିଶୁଛି !

ନନ୍ଦ— ହଁ, ସେହିପରି କାରିଗର ତୁମେ । କିନ୍ତୁ ତୁମେ ଏତେ ଯତ୍ନ କରି ସଜାଇ ଦେଲେ କଣ ହେବ, ଆଉ ଘଡ଼ିକେ ପୁଣି ଧୂଳି ଧୂସର ହୋଇଥିବ ।

ଯଶୋଦା—ସେ କଥା ପୁଣି କହୁଛ ! ମାଡ଼ ଗୋଳ, ଧୂମାଧୂମି ତ ତାର ସ୍ୱଭାବ । ଘର ଭିତରେ ଦେଖୁନାହଁ କ'ଣ ହୁଏ ?

ନନ୍ଦ— ମୁଁ କହେ, ରାଣି, ଏଡ଼େ ଟିକିଏ କଅଁଳ ପିଲା, 'ସେ କରୁଛି କ'ଣ କୁହନ ? ପ୍ରଥମେ ସେହି ପୁତନା କଥା କହିଲ !

ଯଶୋଦା—ରାମ, ରାମ, ସେ ଡହାଣୀଟା କଥା କୁହ ନାହିଁ । ପିଲା ମୋର ଡରିବ ଏଇକ୍ଷଣି । ମା ଷଠୀ ଗାଁଉଛି ଘଣ୍ଟ ଘୋଡ଼େଇ ରଖିଛନ୍ତି ସେ ଦିନ ।

ନନ୍ଦ— ସେ କଥା ଗଲା, ସେ ଯାମଳାର୍ଜୁନ ଉପାଡ଼ିବା କଥା ?

ଯଶୋଦା—ହରି, ହରି ! ମୁଁ ଚଣ୍ଡାଳୀ କ'ଣ ଜାଣିଛି ଯେ ଏଡ଼େ ଏଡ଼େ ମେରୁ ପରି ଦାରୁ ଯୋଡ଼ାକ ଏମିତି ଥୁଆ ହୋଇ ରହିଛି । ସେ ଦିନ ମହାଦେବ ଏକା ରକ୍ଷା କଲେ ।

ନନ୍ଦ— ଆଚ୍ଛା ତା'ଯାଉ ହେଲା, ସେ ଦିନ ଯେ ପାଟିଟାକୁ ମେଲା କରି ଚଉଦ ଭୁବନ ଦେଖେଇଲା ?

ଯଶୋଦା—ସେହି ଦିନ ଏକା ମୋହରି ଦୋଷରୁ ତାକୁ କେଜାଣି କଣ ନଦେବତା, କି ଭୂତ ପ୍ରେତ ଗ୍ରାସିଥିଲା । ମା କାଳୀଙ୍କ ଠେଇଁ କେତେ ମନାସିବାରେ ଯାଇ ସେ ଛାଡ଼ି ଗଲା ।

ନନ୍ଦ— ହଉ, ସବୁ କଥା ଗଲା । ଗୋବର୍ଦ୍ଧନ ଟେକିବାଟା ତ ଦି' ଆଖିରେ ଦେଖିଛ । ସିଏ ତେବେ କ'ଣ ?

ଯଶୋଦା—ମତେ ସେ ଗୁଡ଼ାକ ତୁମେ କିଛି କୁହ ନାହିଁ । କଥା ଶୁଣୁ ଶୁଣି ଏଣେ ମୋ କାମ ସରିବା ହେଲା ଆସି । ତେଣେ କହ୍ନେଇର ଗୋଠ-ବେଳ ଉଛୁର ହେଉଛି ।

ନନ୍ଦ— ମୋର ବଡ଼ ସନ୍ଦେହ ହେଉଛି ରାଣି, କୃଷ୍ଣ କିଏ ? ଯାହାକୁ ତୁମେ ପୁଅ ବୋଲି ଅଞ୍ଚଳରେ ବାନ୍ଧି ରଖିଛ ତାକୁ ଚିହ୍ନିଛ କି ଯଶୋଦା ?

ଯଶୋଦା—କହ୍ନେଇ ମୋର ଗୋଠରେ ଗାଈ ରଖେ, ଘରେ ସିକାରେ ଚଢ଼ି ଠେକି, ଠେକା ଭାଙ୍ଗେ । ଏହା ଛଡ଼ା ମୁଁ ଆଉ କିଛି ଜାଣେ ନାହିଁ । ଆଉ ଏତିକି ଜାଣେ ଯେ ତାକୁ ଦଣ୍ଡେ ନ ଦେଖିଲେ ମୋତେ ସଂସାରଟା ଯାକ ଅନ୍ଧକାର ଦିଶିଯାଏ ।

ନନ୍ଦ— ଧନ୍ୟ ମୁଗ୍ଧା ନାରୀ ! ପିତା ହେବାଠାରୁ ଜନନୀ ହେବା କେଡ଼େ ସୌଭାଗ୍ୟ !

( କଂସର ଡଗର ପ୍ରବେଶ ହେଲେ )

ଡଗର—ନନ୍ଦରାଜ—
କଂସର ଡଗର ମୁହିଁ,
ଆସିଅଛି ତୁମ୍ଭଠାକୁ ଆଜ୍ଞାପତ୍ର ଘେନି ।
ରାଜେନ୍ଦ୍ର ମହୁଡ଼ ମଣି ଛତ୍ରପତି କଂସ,
ବୀର ଶ୍ରେଷ୍ଠ ମଥୁରା ନରେଶ,
କରିଛନ୍ତି ପୂଜା ଆୟୋଜନ ;
କାଲି ପ୍ରାତେ ଶତଭାର ସଜ ଶତଦଳ
ତୋଳି କାଳୀ ହ୍ରଦୁଁ ନେଇ ଭେଟିବ ଛାମୁରେ ।

ରାଜାଙ୍କ ଅବଜ୍ଞା କଲେ ତିଳ ପ୍ରମାଣରେ
ରାଜ-ଦଣ୍ଡେ ହେବ ତୁମ୍ଭେ ସବଂଶେ ବିନାଶ ॥
କର ପ୍ରାଣପଣ,
କର ଯତ୍ନେ ରାଜାଜ୍ଞା ପାଳନ ।
ଆଜଦିନ ମଧ୍ୟେ ହୁଅ ସତ୍ୱର ପ୍ରସ୍ତୁତ ;
ସାବଧାନ ! ଅନ୍ୟଥାରେ ଘଟିବ ଅନର୍ଥ ॥

( ପତ୍ର ଦେଇ ପ୍ରସ୍ଥାନ )

ନନ୍ଦ— ଏ ପୁଣି କି ବିଡ଼ମ୍ବନା ଯଶୋଦା ! ଏ କି କୌଶଳ ! ବିପଦପରେ ଏ ପୁଣି ବିପଦ ! ଏଥର ରକ୍ଷା ପାଇବାର ଆଉ କୌଣସି ଉପାୟ ଦେଖୁନାହିଁ ।

ଯଶୋଦା—କଣ କହୁଛ ? ମୁଁ ଏ ଉପରର କଥା କିଛି ବୁଝି ପାରୁନାହିଁ ।

ନନ୍ଦ— ବୁଝିଲ ନାହିଁ ! କଂସ ପୁଣି ଗୋଟିଏ କୂଟ କରିଛି । କାଲି ପ୍ରଭାତରେ ଶହେ ହଜାର ପଦ୍ମ ଭେଟିବାକୁ ହେବ । ଏତେ ପଦ୍ମ ଏକା କାଳୀୟ ହ୍ରଦ ଛଡ଼ା ଆଉ କେଉଁଠି ମିଳିବ ନାହିଁ । ନାଗରାଜ୍ୟ କାଳୀଦହରୁ ପଦ୍ମ ତୋଳିବା ଯାହା, ମରିବା ମଧ୍ୟ ସେଇଆ । ତହିଁକି ଦେଇ ନ ପାରିଲେ କଂସ ରାଜ ଦଣ୍ଡରେ ସବଂଶ ମାରିବ । ମରଣ ନିଶ୍ଚୟ ।

ଯଶୋଦା—ଆଛା ଆମେ କଂସର କଣ କରିଛୁଁ ଯେ, ସେ ଆମରି ସାଙ୍ଗରେ ଏତେ ଭଗାରି ସାଧୁଛି ? ତୁମେ ତୁମର ଏଣିକି ଥାଅ, ମୁଁ ଯାଉଛି ମୋ ପିଲାଙ୍କୁ ନେଇ ଏ ରାଇଜରୁ କୁଆଡ଼େ ଚାଲିଯିବି ।

ନନ୍ଦ— ସେ ବୁଦ୍ଧି କଣ ମୁଁ ପାଉନାହିଁ ଯଶୋଦେ ! କିନ୍ତୁ କଲେ କଣ ହେବ, କଂସ ଯେ ପୃଥିବୀର ରଜା । ତା ଆଖି ଆଗରୁ ତ କୁଆଡ଼େ ଯାଇ ପାରିବ ନାହିଁ ।

ଯଶୋଦା—ତେବେ ଆଉ କି ଉପାୟ କରିବା ?

ନନ୍ଦ— ଆଉ ଉପାୟ କିଛି ନାହିଁ । ଏକ ମାତ୍ର ଉପାୟ ମୃତ୍ୟୁ । କିନ୍ତୁ ପାପୀ କଂସ ହାତରେ ମରିବାଠାରୁ ଚାଲ ସବୁ ଗୋପ ଗୋପୀ କାଳୀଦହରେ ପଶିବା । ଦେଖିବା ବିଧାତାର ଇଚ୍ଛା ।

କୃଷ୍ଣ— ବନ୍ଧୁ ପ୍ରୟୋଜନ କାଳେ ବନ୍ଧୁର ସାହାଯ୍ୟ
ଗୃହସ୍ଥର କର୍ତ୍ତବ୍ୟ ନିଶ୍ଚୟ ।
ନ ହୁଅ କାତର ପିତା, ନ କର ଭାବନା,
ସାମାନ୍ୟ ଏକଥା ଲଟି ।
କେତେ କେତେ ସଖାମେଳେ ଚରାଉ ଗୋଧନ
ବୃନ୍ଦାବନେ ଯମୁନା ପୁଳିନେ ;
ନିତି ନିତି ପଦ୍ମ ପୁଷ୍ପ ତୋଳି ଭାରେ ଭାରେ
ସଜାଉଁ ଗୋମାତାଗଣ, ଖେଳୁଁ କେତେ ଖେଳ ।
କର ଅନୁମତି ମୋତେ,
ଶତଭାର ଶତଦଳ ତୋଳି ଅବହେଳେ
ଆଣିବି ନିଶ୍ଚୟ
ପିତଃ, ଚିନ୍ତା କର ଦୂର ।

ନନ୍ଦ— କଣ, ଅନୁମତି ଦେବି ! ଏଁ, ଏଁ, ଅନୁମତି ଦେବି ! ପିତା ହୋଇ ଦୁଗ୍ଧ ପୋଷ୍ୟ ଶିଶୁକୁ ଜାଣୁ ଜାଣୁ କାଳର କରାଳ ଗ୍ରାସକୁ ପେଲି ଦେବି ! ନା, ନା, ତାହା ହେବ ନାହିଁ । ନନ୍ଦର ପ୍ରାଣ ଥାଉଁ ଥାଉଁ, ଗୋପାଳ ଆଜି ପଦ୍ମ କାଳୀଦହରେ ତୋଳିବାକୁ ଯାଇ ପାରିବ ନାହିଁ ।

ଯଶୋଦା—କହ୍ନେଇରେ, କାଳୀହ୍ରଦକୁ ଯିବା କଣ ପିଲାଖେଳ ଯେ ତୁ ସଖାଙ୍କୁ ନେଇ ପଦ୍ମ ତୋଳି ଯିବୁ ? ମୋ କଥା ମାନ ବାପ । ସେଠିକି ଯାଆନା । କଂସ ପଛକେ ସମସ୍ତଙ୍କୁ ମାରୁ ।

କୃଷ୍ଣ— (ଏକାନ୍ତେ) ପୁତ୍ର ସ୍ନେହ ମୋହେ ଅନ୍ଧ ଗୋପାଳ ଦମ୍ପତି
ମଣୁଛି, ରଖିବ ବାନ୍ଧି ସ୍ନେହ ମାୟା ଡୋରେ
ମାୟାର ଅତୀତ ଯେହୁ, ପୁଣି ମାୟାମୟ,
ଯାର ବିଶ୍ୱ ଆବୃତ ଯା ମାୟାର ପ୍ରଭାବେ ।
ଲୀଳାହିଁ ଉଦ୍ଦେଶ୍ୟ ମୋର, ଲୀଳା ମାତ୍ର ସାର
ଏକା ଲୀଳା ହେତୁ ମୋର ମର୍ତ୍ତ୍ୟେ ଆଗମନ ;
ଦେଖ ଦେଖ ବାରେ ମାତ୍ର ଜ୍ଞାନ-ଚକ୍ଷୁ ଫେଇ
ଅନନ୍ତ କୌଶଳ ମୋର, ଅଭେଦ୍ୟ ରହସ୍ୟ ;
ସୂତ୍ରଧାର ରୂପେ ମୁହିଁ ଚଳାଏ ଜଗତ ।

ନନ୍ଦ— ଯଶୋଦେ, ଯଶୋଦେ !

କୃଷ୍ଣ-- (ନନ୍ଦକୁ କୁଣ୍ଢାଇ) ପିତା, ପିତା,
କରିଛ ପୂରଣ ମୋର ସକଳ ପ୍ରାର୍ଥନା
ଯାହା ଯେତେବେଳେ ।
ଆଜି କମ୍ପା ହେଉଛ ନିଷ୍ଠୁର ?
(ଯଶୋଦାକୁ କୁଣ୍ଢାଇ) ଜନନୀ ଗୋ,
ପଦ୍ମ ତୋଳି ଯିବି ମୋର ସାଧ ମନେ
ଥରେ ମାତ୍ର ରଖ ତୋର କହ୍ନାଇର ସାଧ ।
ନ କର ଭାବନା କିଛି ଥାଅ ସୁଖେ ଘରେ
ଶତଭାର ପଦ୍ମ ତୋଳି ଆଣିବି ଏକ୍ଷଣି ।

( ବେଗେ ପ୍ରସ୍ଥାନ )

( କିଛିକ୍ଷଣ ଉଭୟ ଭେଲିକା ହୋଇ ରହିଲେ )

ଯଶୋଦା—ନା ବାପ, ମୋ ନୀଳମଣିରେ ଆ ଫେରିଆ, ଫେରିଆ । ମୁଁ ତୋତେ ଗୋପ ପୋଲ ଯିବାକୁ ଆଉ ମନା କରିବି ନାହିଁ । ମୋ ସଙ୍ଖାଳିରେ, ତୁ ଆଜ କିଛି ନଖାଇ ଚାଲିଗଲୁ କିପରି ? ମୁଁ ତୋପାଇଁ ସର ଲବଣୀ ସଜାଡ଼ି ରଖିଛି । ଟିକିଏ ତୋ ରଙ୍ଗ ପାଟିରେ ଖୁଆଇ ଦିଏ ବାପ, ତେଣିକି ଯଛେ ଯିବୁ ।

( ବ୍ୟସ୍ତ ହୋଇ ପଛେପଛେ ପ୍ରସ୍ଥାନ )

ନନ୍ଦ— ଯଶୋଦେ, ଯଶୋଦେ, ଆସ ଫେରିଆସ । ହାୟ ବାତ୍ସଲ୍ୟ-ବିମୁଗ୍ଧା ନାରୀ !

( ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

( ସୁଦାମ ପ୍ରବିଷ୍ଟ ହେଲା ) ସ୍ଥାନ-ଗହନ ବନ

ସୁଦାମ—ଆ, ଆ, ବଉଳ, ଆ, ଆ, ବଉଳ, ବଉଳ ଆ, ଆ । ନା ଇଆଡ଼େତ କିଛି ମାଲୁମ ହେଉ ନାହିଁ । ମୋ ବଉଳୀ କୁଆଡ଼େ ଗଲା । ଏଁ-ଏଁ-ଏଁ- । ମୁଁ କଣ କରିବି । ଏଁ-ଏଁ-ଏଁ- । ( କାନ୍ଦିବାକୁ ଲାଗିଲା )

( ସୁବଳ ପ୍ରବିଷ୍ଟ ହେଲେ )

ସୁବଳ—କି ଭାଇ ସୁଦାମ, ତୁ ଗୋଠ ଛାଡ଼ି ଏକୁଟିଆ କେତେବେଳେ କିମିତି ଖସି ଚାଲି ଆସିଲୁ ମ ? ଆଉ ଏଠି ବା କାନ୍ଦୁଛୁ କାହିଁ କି ?

ସୁଦାମ—ସୁବଳ, ମୋ ବଉଳୀ ଗାଈ ଏ ଆଡ଼କୁ ଡ଼ିଆଁ ମାରି ମାରି ଆସିଲା । ମୁଁ ତା ପଛେ ପଛେ ଗୋଡ଼େଇ ଗୋଡ଼େଇକା ଆସିଲି । କୁଆଡ଼କୁ ଚାଲି ଗଲା, କାହିଁ ତ ମିଳୁ ନାହିଁ । ମୁଁ କଣ କରିବି ! ଏଁ ଏଁ ।

ସୁବଳ—ସାଙ୍ଗେ ସାଙ୍ଗେ ଆସୁଁ ଆସୁଁ ମିଳୁନାହିଁ ! କି ଆଶ୍ଚର୍ଯ୍ୟ ! ଇମିତି କଣ ଆଖି ଆଗୁଁଠାରେ ହଜିଗଲା ନା ?

ସୁଦାମ—ଭାଇ, ଆମେ ଦୁହେଁ ଚାଲ ନ ଭଲ କରି ଥରେ ଖୋଜିବା ପୁଣି ।

ସୁବଳ—ଦୁହେଁ କାହିଁ କି, ସବୁ ସଖାମାନେ ମିଳିତ ଏ ବଣଟାକୁ ହନ୍ତାଳ ପକେଇବା । ହେଇ ରାମ, କହ୍ନାଇ, ଆଉ ସବୁ ସଖାମାନେ ଆସିଗଲେଣି ।

( କୃଷ୍ଣ, ରାମ, ଦାମ, ଅର୍ଜ୍ଜୁନ ପ୍ରବିଷ୍ଟ ହେଲେ )

କୃଷ୍ଣ— ତୁମ ଦୁହିଁଙ୍କୁ ଆମେ ସେ ଆଡ଼େ ଖୋଜି ହେଉଛୁଁ, ଆଉ ତୁମେ ଆସି ଏଠି କ'ଣ କରୁଛ ?

ସୁବଳ—ଶୁଣିଛୁନା କହ୍ନେଇ, ସୁଦାମର ବଉଳୀ ଗାଈ ହଜିଛି ! ସେ ତାକୁ ନ ପାଇ ଏଠି କାନ୍ଦୁଥିଲା । ମୁଁ ଆସି ଦେଖିଲି !

ଦାମ— ଆଚ୍ଛା ଏପାଖ ବଣଟାକୁ ଆସିଲେ କାହିଁକି ଏତେ ଗାଈ ବାଛୁରୀ ହଜନ୍ତି ମ ? ମୁଁ ସେଇଥିଲାଗି ଏ ଆଡ଼େ ଗୋଠ କରିବାକୁ ଭଲ ପାଏ ନାହିଁ ।

ଅର୍ଜ୍ଜୁନ—ସେ ଖାଲି ଦୋଷ ଦେବା କଥା । ମୋର ତ କାହିଁ କେବେ ଗାଈ ବାଛୁରୀ ଏ ବଣରେ ହଜି ନାହାନ୍ତି । ସେ ଯିମିତି ଚହଲା ଥିବ, ତା ଗାଈ କାହିଁକି ହଜିବ !

ସୁଦାମ—ମୋଠୁଁ ବେଶି ଚହଲା ହେବ କିଏ ? ସେ ହୁରୁଡ଼ି ଯିମିତି ଧାଇଁଲା, ମୁଁ ତ ପଛେ ପଛେ ଆସୁଁ ଆସୁଁ କେଉଁଠି ଉଭେଇ ଚାଲି ଗଲା ।

ସୁବଳ—ମୁଁ ସେଥିପାଇଁ କହୁଛି କି ଚାଲ ସଭିଏଁ ବଣଯାକ ପଟା ପଟା କରି ହନ୍ତାଳ ପକେଇବା । ଯଉଁଠି ଥିବ, ବାହାରିବ ।

କୃଷ୍ଣ— ବୃଥାଟାରେ କାହିଁକି ଏତେ କଷ୍ଟ କରିବ ମ ? ମୁଁ କହୁଛି ଇଏ ସେହି ବର୍ବର ନାଗଙ୍କ କାମ । ଏ ବଣରେ ନାଗଙ୍କ ପ୍ରତାପ ବଡ଼ ବେଶି । ଯେତେ ଗାଈ ବାଛୁରୀ ହଜୁଛନ୍ତି, ସବୁ ସେହି ଚୋରି କରି ନେଉଛନ୍ତି ।

ସୁବଳ—ତେବେ ଆମେ ଆପେ ଆପେ ହୁସିଆର ରହି ଏ ବଣକୁ ଆଦୌ ନ ଆସିଲେ ହୁଅନ୍ତା !

ବଳରାମ—କାହିଁକି, ସେ ଆମ ସଙ୍ଗରେ ଏହିପରି ସବୁଦିନେ ଲଗାଉ ଥିବେ, ଆଉ ଆମେ ତାଙ୍କୁ ଡରି ଲୁଚି ରହୁଥିବା ! ଇମିତି ଅପାରଗ ହେଲେ ନା ଆମେ ?

ସୁବଳ—ମୋତେ କିନ୍ତୁ ଡର ମାଡ଼େ । ସବୁ ତ ସବୁ, ତାଙ୍କର ସେଇ ସେ କାଳୀୟ ନାଗଟା, ବାପ ରେ, ତାର ସାତଟା ମୁଣ୍ଡ ! ସେହି ଦୁଷ୍ଟ ଟା ନାଗଙ୍କ ରଜା ?

କୃଷ୍ଣ— ହଁ, ଆମେ ତାଙ୍କ ଦାଉ ଅନେକ ସହିଲୁଣି । ଆଜ ତାଙ୍କୁ ଜବଦ୍ କରିବା । ଏକାଦିନେ ତାଙ୍କ ବିଷଦାନ୍ତ ଭାଙ୍ଗିଦେଲେ ଆଉ ସେ କେବେ ଉତ୍ପାତ କରିବେ ନାହିଁ ।

ସୁବଳ—ତାଙ୍କୁ ପାଇବା କେଉଁଠି ? ସେତ ପାଣିରେ ପଶିଥିବେ ।

କୃଷ୍ଣ— ଆମେ ସେ କାଳୀଦହରେ ପଶି ପଦ୍ମ ଫୁଲ ତୋଳିବା । ତହିଁରେ ନାଗ ସବୁ ରାଗ ହୋଇ ବଳେ ବାହାରିବେ ।

ସୁବଳ—ସେ କଥା ହେବ ନାହିଁ । ତତେ ତ ମୁଁ ସେଠିକି ଯିବାକୁ ଦେବି ନାହିଁ । ସେ ପାଣି ଛୁଇଁଲେ କ'ଣ ମଣିଷ ବଞ୍ଚିବ !

କୃଷ୍ଣ— ଯାହା ହେଉ, କରିବାକୁ ହେବ । ଆମର ଆଜ ଶହେ ହଜାର ପଦ୍ମ ଫୁଲ ଦରକାର । ସେଠିକି ନ ଗଲେ ଫୁଲ କେଉଁଠୁ ଆସିବ ?

ସୁବଳ—ଏତେ ଫୁଲ କ'ଣ ହେବ କ ଭାଇ ?
କୃଷ୍ଣ—କଂସ ରାଜାଙ୍କ ଉପରଉ ଆସିଛି, ତାଙ୍କର କ ପୂଜା ହବ ।
ଶଏ ଭାର ପଦ୍ମଫୁଲ ବାପା ଭେଟିବେ ।
ସୁବଳ—ନ ଦେଲେ କ'ଣ ହେବ ?
କୃଷ୍ଣ— ନ ଦେଲେ ସବଂଶରେ ମାରବ ।
ବଳରାମ—ତେବେ ଆଉ ଉତ୍ତର କରୁଚ କାହିଁକ ? ଯାଅ ସମସ୍ତେ କାଳୀଦହରେ ପଶି ପଦ୍ମ ବନ ଭାଙ୍ଗବ; ନେଣିକ ଯାହା ହଉ । ଯେ ଡରବ ସେ ପଛକେ ନ ଯାଉ ।
ସୁବଳ—କହେଇ ଯଉଁଠି ସାଙ୍ଗରେ ଅଛୁ, ସେଠି ଡର କ'ଣ ?
ସକଳେ—ନା, ଆମେ କେହ୍ନ ଡରବା ନାହିଁ ।

ଗୀତ ( ସୁରଟ ମିଶ୍ର କବାଲ )

ତୋଳାବା କମଳ ଆଜ ରାଶି ରାଶି ।
ହରସେ, ହରଷେ ଫୁଲ ଦଳ ପରଶେ,
ଭେଳ ସନେ ଖେଳ ଯିବା ନୀଳ ଜଳେ ଭାସି ଭାସି ।
କାଳୀ ସରୋବରରେ ଖେଳେ କେତେ ଗୁହ୍ୟ ଲହରୀ,
ସଖା ସନେ ସୁଖ ମନେ ପହଁର ପହଁର,
ରଙ୍ଗେ ରଙ୍ଗେ, ଫୁଲ ତୋଳ ଆଣିବା,
ଜଗୁଆଳ ନାଗଗଣେ କୋଟି କୋଟି ନାଶି ନାଶି ।
( ପ୍ରସ୍ଥାନ )

( ପଟକ୍ଷେପ )

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ନାଗ ସେନାମାନେ ନାଚ ନାଚ ପ୍ରବେଶ ହେଲେ )

ଗୀତ (ନାଗେଶ୍ୱରୀ କାନଡ଼ା)

ନାଗରେ ନାଗରେ ଖେଳ ଖେଳ ଆ
ଢଳ ଢଳ ଆ—ଗଳ ଗଳ ଆ ।
ଢକ ଢକ ବାଙ୍କି ବାଙ୍କି ଗଳ ଗଳ ଆ,
ହଲ ହଲ ଝୁଲ ଝୁଲ ବଷ ଗାଳ ଆ ।
ଘୁଲ ଘୁଲ ବାଟ ଘାଟ ଜାଳ ଜାଳ ଆ,
କଳ କଳ ଆ, ଚଳ ଚଳ ଆ, ଫେଣ ତୋଳ ଆ,
ଆ———ଆ———ଆ———ଆ ।

୧ମ ନାଗ—ହୁସିଆର୍, ଭାଇ ଜଙ୍ଗ ଯବାନ, ଖବରଦାର ।
୨ୟ ନାଗ—ମୋ ପାଖ ମୁଁ ଠିକ୍ ସମ୍ଭାଳଛି । ମାଛି ପଡ଼ିଲେ ନବ ଖଣ୍ଡ । (ତରବାର ଆସ୍ଫାଳନ)
୩ୟ ନାଗ—ମୋ ବାଟରେ ଯିଏ ଯିବ, ଏକା ଲାଟେ ପକେଇବ ଯେ ଛଟ୍ କର ପଡ଼ବ । ଏ ବାବା! ଗଛୁଆ ନାଗର ବଷ । ହୁଁ ।
୧ମ ନାଗ—ଓଃ, ଅଡ଼େଇ କଥାଣଆ ତମଠାରୁ କ'ଣ ବେଶି ? ଗଦ ମାନବ, ନା ପଦ ମାନବ । ଏ ଅଝାଡ଼, ଅଫୁଙ୍କ ।
୨ୟ ନାଗ—ଗୁରୁବାର ଦନ ଯଦ ହାବୁଡ଼େ ପଡ଼ ଯିବ ଚ, ଉମଣା ମାପ ବାବା କଛି ନ ମାନେ । ନା, ଗାମୁଛ ମୋଡ଼ା, ନା, ବ୍ରହ୍ମ ବ୍ରପୁଡ଼ା । ତେବେ ବଖତ ପଡ଼ଲେ ହାଲୁଆଏ ଧରବ ତ ମେଣ୍ଢାଏ ମାଉଁସ ଉଠେଇବ ।
୪ର୍ଥ ନାଗ—ଏ, ଏ, ସମସ୍ତେ ତ ଆପଣା, ଆପଣା କରାମତ ଜାହର କର ଗଲ । ମୁଁ ବଚରା କ'ଣ କରେଁ ?
୧ମ ନାଗ—ଆରେ ଲୁ'ଟା କାରନଲ, ତୁ କ'ଣ କରବୁ । ମଣିଷ ଦେଖିଲେ ଗାତ ଭିତରେ ପଶିବୁ କବା କଥା ବାଡ଼ରେ ଗୁଞ୍ଜି ହବୁ । ନୋହିଲେ ତୋ ଲାଞ୍ଜ ଧର ବୁଲେଇବେ ଟି !
୪ର୍ଥ ନାଗ—ଓଃ, ଭାର କହଲ ବାଲ ! ଇମିତ ନ ପାରଲେ ଗୋଡ଼ରେ ଗୁଡ଼େଇ ହୋଇ ଯିବ । ଜାଣିଛୁ ନା, ସାନ ସାପର ବେଶି ବଷ !
୨ୟ ନାଗ—ଭାଇ ! ଆଜ ଏତେ କଡ଼ାକଡ଼ ପହରା କାହିଁକ କହ ନ ?
୧ମ ନାଗ—କ'ଣ କ, ଗୋପ ଗଉଡ଼ ଟୋକା ଯାକ ନତ ନତ ପଦ୍ମ ଫୁଲ ସବୁ ଭାଙ୍ଗି ମନ୍ଥି ପକାଉଛନ୍ତ, ସେଇଥି ପାଇଁ ।
୨ୟ ନାଗ—ବାପ ଲୋ, ତାଙ୍କର ଯେଉଁ ସାହସ, ତାଙ୍କୁ ପାରବ କଏ ! ସବୁଠୁଁ ସେହ୍ନ କାଳଆ ଟୋକାଟାର—
୧ମ ନାଗ—କରେ ଲୁ'ଟା ନାଗ ବଚା ନୋହୁକ ? ଦୋନସଲାଙ୍କ କଥା ସେହ୍ନପର । ଅସଲ ଜାତଆ ହୋଇଥିଲେ ଏପର କଥା କହନ୍ତୁ କ !
୩ୟ ନାଗ—ଏ, ଚୁପ୍ ଚୁପ୍, ରଜା ମଣିମା ଆସୁଛନ୍ତ ।
( କାଳୀୟ ପ୍ରବେଶ ହେଲେ ଓ ସେନାଗଣ ଧାଡ଼ଧର ସଲାମ ଦେଲେ )
କାଳୀୟ—ନାଗ ସେନାଗଣ,
ସାବଧାନେ କର ରକ୍ଷା କମଳ କାନନ ।
ଅଗାଧ ଅଭେଦ୍ୟ ଏହି କାଳୟ ସାଗର,
ଅବଚ୍ଛିନ୍ନ ଆଧିପତ୍ୟ ଆମ୍ଭର ଏଥିରେ,
ନ ଦେବ କାହାକୁ ଯେହ୍ନେ ଛିସୀମା ପରଶି ।
ପ୍ରାଣ-ପଣେ ଜଗି ଥିବ ଜାତର ଗୌରବ ।

୧ମ ନାଗ—ନାଗେନ୍ଦ୍ର,
ଗୋପବାସୀ ଶିଶୁଗଣ ଗୋଧନ ପାଳକ,
ନିତ୍ୟ ନିତ୍ୟ ପଶୁଛନ୍ତି ଅସୀମ ସାହସେ,
ପବିତ୍ର ଏ ନାଗ ସରୋବରେ ;
ନ ମାନି କାହାରି ବାଧା ମହା ଦମ୍ଭଭରେ ।
୨ୟ ନାଗ—ମହାରାଜ,
କଳା ହୋଇ ତାଙ୍କ ମେଳେ ଗୋଟିଏ ବାଳକ,
ଅଦମ୍ୟ ତେଜସ୍ୱୀ ସେହି, ଦୁର୍ବିନୀତ ଅତି ।
ଏକାକୀ ସେ ମୁକ୍ତ ନୀର କରୁଛି ଆବିଳ,
ମର୍ଦ୍ଦିଣ କମଳ ବନ ମତ୍ତ କରୀ ସମ ।
କାଳୀୟ—ସ୍ଥିର ହୁଅ, ସ୍ଥିର ହୁଅ—
ବୀର ବଂଶେ ଜନ୍ମ ହୋଇ କେମନ୍ତେ କହିଲ
ଜାତିର କଳଙ୍କ କଥା, ଲଜ୍ଜା ପରିହରି !
ଶୃଗାଳ କରଇ ନୃତ୍ୟ ସିଂହ ଅନ୍ତଃପୁରେ,
ସିଂହ ଶିଶୁ ହୋଇ ତୁମ୍ଭେ ଦେଖୁଛ ମଉନେ !
ହେଲଣି କି ନାଗ ଜାତି ଏତେ ବୀର୍ଯ୍ୟହୀନ !
ବସି ଥିର ହିନ,
କ୍ଳୀବ ସମ ସହୁଥିବ ପର ଅତ୍ୟାଚାର ?
ଜାଣିଲି, ଜାଣିଲି, ଏବେ ବହୁ ନାହିଁ ଆଉ
ଉତ୍ତପ୍ତ ନାଗେନ୍ଦ୍ର ରକ୍ତ ତୁମ୍ଭ ଧମନୀରେ ;
ଅବା ବହୁଦିନ ରହି ଭୟେ ବିଜଡ଼ିତ,
ଭୁଲିଲଣି ବୀର ଭାବ, ଆତ୍ମ ଅଭିମାନ ।
ଉଠ ଉଠ, ଜାଗ ଜାଗ, ନାଗ ପୁତ୍ରଗଣ !
ଘୁଞ୍ଚାଇ ଜଡ଼ତା ଦୈନ୍ୟ, ନବ ଜାଗରଣେ,
ରକ୍ଷା କର ନିଜ ବାସସ୍ଥଳୀ ପବିତ୍ରତା ।
ଆତତାୟୀ ଶତ୍ରୁ କରେ ଦିଅ ନା ସମର୍ପି,
ପ୍ରାଣଠାରୁ ପ୍ରିୟ ବସ୍ତୁ, ଜାତୀୟ ମର୍ଯ୍ୟାଦା ।
ଅବିଳମ୍ବେ ଶତ୍ରୁକୁଳ ବିନାଶି ନିର୍ମୂଳେ,
ଅଗ୍ରତ ହୃଦୟ ରକ୍ତେ ମେଣ୍ଟାଅ ପିପାସା,
କର ପ୍ରାଣ ପଣ,
ମନ୍ତ୍ରର ସାଧନ , ଅବା ଶରୀର ପାତନ ।

( ପ୍ରସ୍ଥାନ )

୧ମ ନାଗ—ଆଜ ଆଉ ଛାଡ଼ିବା ନାହିଁ । ଯେ ଆସି କାଳୀୟ ହ୍ରଦ
ପାଣିରେ ଗୋଡ଼ ଦେବ, ତା ଜୀବନ ମୋ ହାତରେ ।
୨ୟ ନାଗ—ବେଙ୍ଗକୁ ଯେପରି ଗିଳନ୍ତି, ସେହି ଗଉଡ଼ ଟୋକାଙ୍କୁ
ଆଜ ଗୋଟି ଗୋଟି କରି ଗିଳି, ନିକାଶ କରିବା ।
୩ୟ ନାଗ—ଗୋଟି ଗୋଟି ଯେତେ ତାଙ୍କୁ ସବୁ ମୁଁ ଏକା ସାବାଡ଼
କରି ଦେବି ।
୪ର୍ଥ ନାଗ—କଅଁଳା ବାଛୁରୀ ଗୁଡ଼ିକ ଏକା ମୋ ଭାଗରେ, ଜାଣିଥା ।
୧ମ ନାଗ—ଯାହାହେଉ ଆଜି ଆଉ କାହାରି ରକ୍ଷା ନାହିଁ । ଆସ
ସବୁ ନାଗମାନେ ହ୍ରଦ କୂଳେ କୂଳେ ହାତ ହତିଆର
ହୋଇ ରହିବା ।

( ନାଗମାନଙ୍କର ସାମରିକ ନୃତ୍ୟ ଗୀତ )

ସାଜରେ, ସାଜରେ, ଜୀବନ ଆହବେ ସାଜରେ,
ବାଜରେ ଭେରୀ ବାଜରେ ।
ବାଜରେ ଭେରୀ, ବାଜରେ ଭେରୀ, ବାଜରେ ଭେରୀ ବାଜରେ ।
ହୁଙ୍କାରି ଉଠ ବୀର ନନ୍ଦନ, ଜାତୀୟ ଧର୍ମ ଆଜରେ ।
ଜାତିର ଡାକେ ହୋଇ ପ୍ରବୁଦ୍ଧ, ଉଠରେ ସର୍ବ ବାଳକ ବୃଦ୍ଧ,
ଜୟ ପତାକା ଉଡ଼ାଇ ଗର୍ବେ, ସମର କ୍ଷେତ୍ରେ ରାଜରେ ।
ଧର ଧର ଅସି ଧର କୃପାଣ, ଧର କାର୍ମୁକ, ଶାଣିତ ବାଣ,
ଅଭୟ ଚିତ୍ତେ ମୁକ୍ତ ଖଡ୍‌ଗ, ଶତ୍ରୁ ଶୋଣିତେ ମାଜରେ ।

( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ସୁକେଶୀ ନୃତ୍ୟ ଗୀତ କରୁଁ କରୁଁ ପ୍ରବେଶ ହେଲା )

କାନଡ଼ା ମିଶ୍ର-କଓ୍ୱାଲି ।

ବନେ ବନେ ଫୁଲ ତୋଳିବି ।
ସଯତନେ ବନଫୁଲେ ବନ ମାଳା ବିରଚିବି । ଘୋଷା ।
ପାଖୁଡ଼େ ପାଖୁଡ଼େ କେତେ ମଧୁ ଦେଇଛି ଭରି ଗୋ,
ଲୁଚିଛି ରସିକ ତହିଁ କନ୍ଦର୍ପ କଉତୁକୀ ଗୋ,
ଅତୁଳ ମୋ ସଜ ଫୁଲ, କେ ବୁଝିବ ତାର ମୂଲ,
କେ ଅଛି ରସିକ କାହା ଗଳେ ମାଳା ପିନ୍ଧାଇବି ।
ନେନ୍ତ ନେନ୍ତ ଫୁଲ ଗୁନ୍ଥି ବନାଇବି ହାର ଗୋ,
ଶିରେ ଦେନି ବୁଲିବି ମୁଁ ଫୁଲର ପସରା ଗୋ,
ଶରଧା ଚନ୍ଦନ ବୋଳି, ପ୍ରେମର ପୀୟୂଷ ଢାଳି,
ଚିହ୍ନିରି ଗ୍ରାହକ ହେଲେ ବିନା ମୂଲେ ଯାଚି ଦେବି ।

( ମାଳା ହକ ଛକ ପ୍ରବେଶ ହେଲେ )

ମାଳା— କଲେ, ନୂଆ ବିରହିଣୀ ! ହେଇ ପରା ମୁଁ ଅଛିଛି ।
ମୋହରି ଗଳାରେ ବରଣ ମାଳା ପିନ୍ଧାଇ ଦେ ।

ସୁକେଶୀ—ଛି, ତୁମେ ସଖି କେଉଁଠି ଲୁଚି ଶୁଣୁଥିଲ ?

ମାଳା— କାହିଁ କି, ମୋ ପରି ରସିକ କ'ଣ କେହୁ ମନ ଚୋରି ପାରିବ ନାହିଁ ନା ?

ସୁକେଶୀ—ହଁ, ତୁମ ମନ ନିଜେ କିଏ ନେଉଛି ତାହାର ଠିକ୍ ନାହିଁ । ତମେ ପୁଣି ପର ମନ ଚୋରିବାକୁ ଆସିନ !

ମାଳା— ସଖି, ମୁଁ ଆଜି ପୁଣି ତାକୁ ଦେଖିଲି ?

ସୁକେଶୀ—କିଏ ଗୋ କିଏ ? କାହାକୁ ଦେଖିଲ ?

ମାଳା— ସେହି ଯେ, ଯାହା କଥା ସବୁବେଳେ କହୁଛି ।

ସୁକେଶୀ—ସେହି ନା, ଯାହା କଥା ଭାବିବାକୁ ମୁଁ ସବୁବେଳେ ନାହିଁ କରୁଛି ?

ମାଳା— ମୁଁ କ'ଣ ଆପେ ଆପଣାକୁ ନାହିଁ ନ କରୁଛି ! କିନ୍ତୁ ନାହିଁ କଲେ କ'ଣ ହେବ । ମୋ ଆଖିର ପ୍ରତି ପରଦାରେ ତା ଛବି ଲାଖି ଗଲାଣି । ମୋ ହୃଦୟରେ ପ୍ରତି ରକ୍ତ ବିନ୍ଦୁରେ ତା ଭାବ ମିଶି ଗଲାଣି ।

ସୁକେଶୀ—ଛି, ରାଜ କୁମାରୀ, ସିଏ ତ ସାମାନ୍ୟ ଗାଈ ରଖୁଆଳ; ଟୋକାଟାଏ । ତା ଛଡ଼ା ଆମେ ହେଲୁ ନାଗକନ୍ୟା, ସେ ମନୁଷ୍ୟ; ଏ ଅସମ୍ଭବ ପ୍ରୀତିରେ ମନ ବଳାଉଛ କାହିଁକି ସଖି ? ତାହିଁକି ସେ କାଳିଆ ପିଲାଟାର ସେପରି କ'ଣ ଯେ ଗୁଣ ଅଛି ମୁଁ ତ ଜାଣି ପାରୁନାହିଁ ।

ମାଳା— କଳା ଆକାଶ, କଳା ସାଗର, କଳା କୋକିଳ, କଳା ଜଳଧର ଯଦି କିଛି ଗୁଣ ନ ଥାଏ ତେବେ ତା'ର ବି ନ ଥିବ !

ଗୀତ । ( ମିଶ୍ର ବେହାଗ । )

କାଳିଆ ରୂପ ତାର ସଜନୀ କେମନ୍ତେ ।
ଚୋରିଲା ଚାହିଁଲେ ସଖି ତା ଛବି ସଦା ଚିତ୍ତେ ॥ ଘୋଷା ॥

ଗୋଠ ବାହୁଡ଼ା ବେଳରେ,
( ସେ ଯେ ) ଗୋପ ବାଳକ ମେଳରେ,
ରଙ୍ଗରେ ଧୂଳି ଖେଳରେ, ମୃଦୁକ ମୃଦୁକ ହସେ ॥
ମୋହନ ବେଣୁ ନାଦରେ,
( ସେ ଯେ ) ଡାକଇ କେଡ଼େ ଆଦରେ,
ଚାହାଁଇଲି ପରମାଦରେ, ଧୀରଜ ନାଶଇ ସେ ॥

ସୁକେଶୀ—ସଖି, ତା କଥା ଯଦି ଜାଣି ଥାଆନ୍ତ ତେବେ ଏପରି ହୁଅନ୍ତ କି ! ପିଲାଟିଏ ବୋଲି କହୁଛ ସିନା, କିନ୍ତୁ ସେ ବଡ଼ ଦୁଷ୍ଟମ ପିଲା । ବଡ଼ ଶକତ କୁହୁକ ଜାଣେ । ସେହି କୁହୁକ କରି, ସରଳା, ଅବଳାଙ୍କ ମନ ଭୁଲାଇ ମଜା ଦେଖେ । ଏହି ତାର ସ୍ୱଭାବ । ଏହି ତାର ରୀତି ।

( ଗୀତ )

ତାକୁ ଚିହ୍ନିନୁ କି ସଖି, ସେତ କୁଳବଧୂଙ୍କ କୁଳଖିଆ ।
ନନ୍ଦ ନନ୍ଦନ କାଳିଆ ॥ ଘୋଷା ॥

ଗୋପ ଯୁବତୀ କେତେ — ପଡ଼ି ତା ପ୍ରେମ ପଥେ,
କାନ୍ଦି କାନ୍ଦି ଦିନ — ନ ସରିଲା ନିରତେ,
ତା ପ୍ରୀତିକି ପରତେ — ନାହିଁ ସଜନୀ ସତେ,
ରମଣୀ-ଗଳା ଫାଶୀ ଦିଆ ॥

ଜାଣେ କେତେ ଦୁନ୍ଦର — ହାତିଆ ବେଣୁ ଧର,
ଧରିଥାଇ ଅଧରେ — ମୁରଲୀ ମନୋହର,
ତା ପ୍ରୀତି କି ଜୁହାର — ହେଉଛି ବାର ବାର
ରମଣୀ ପରାଣ ଘାତିଆ ॥

ଦେଖିଲ ସଖି, ଏହିପରି ବାଙ୍କ ଗୁହାଣୀ ଚାହିଁ, ବଇଁଶୀ ବଜାଇ, ନବ ଯୁବତୀମାନଙ୍କୁ ବଶ କରେ । ବେଳ ଥାଉଁ ଥାଉଁ କହୁଛି ସଖି, ସାବଧାନ !

ମାଳା— ବେଳ ଥାଉଁ ଥାଉଁ ଏକା ଏକା କହୁଛୁ ସୁକେଶି ! ସଖି, ଆଉ କ'ଣ ବେଳ ଅଛି ? ତୁ ନାରୀ ହୋଇ ନାରୀର ମନ ବୁଝି ପାରୁ ନାହୁଁ ? ଯାହା ହେବାର ତାହା ହୋଇ ସାରିଲାଣି । ଆଉ ସମୟ ନାହିଁ, ଆଉ ଉପାୟ ନାହିଁ । ସେ କୁହୁକୀ ହେଲେ ହେଉ, ବ୍ୟାଧ ହେଲେ ହେଉ, ମୋ ମନ-ମୃଗ ତାହାରି ଫାନ୍ଦରେ ଧରା ପଡ଼ିଲାଣି ।

ସୁକେଶୀ—ତୁମ ରୀତି ଦେଖି, ଯାହା ଭାବୁଥିଲି, ଦେଖୁଛି ତାହା ତ ତେବେ ସତ ! ଦୁରନ୍ତ ପୀରତି ନିଶା ଆସି ତୁମ ଚିତ୍ତକୁ ଅକାଳରେ ଗ୍ରାସିଲାଣି ! ସେ କାଳିଆ ଭୁଜଙ୍ଗ କେବେ ଦଂଶିଲା ସଖି ? ସେହି କୋମଳ କୋମଳ-କୋରକରେ କଳାଭୃଙ୍ଗ କିପରି ପଶିଲା ସଖି ?

ଗୀତ

ମାଳା— ସଖିରେ ବ୍ୟାକୁଳିତ ମୋର ଚିତ୍ତ । ଯେ କର ବିହିତ ॥

ସୁକେଶୀ—ଘୁଡ଼ ଘୁଡ଼ ଏ ଭାଳୁଣି ମୋ ରାଣୀଟି ସଜନୀ,
କାହିଁ ପାଇଁ ଭାଳି ଭାଳି କରା ଦିବା ରଜନୀ,
ଦିନୁଁ ଦିନ ତନୁ କ୍ଷୀଣ ବାରେ ସଖି ହେଜନ ।

ମାଳା— ସଖିରେ ବ୍ୟାକୁଳିତ ମୋର ଚିତ୍ତ ।

ସୁକେଶୀ—ଜାଣୁକରେ ସଙ୍ଗିନ ପୀରତି କି ରୀତି,

ମାଳା— ସଦାହୃଦେ ଜାଗେ ସେ ମୋହନ ମୂରତି,
ସରଳା ଅବଳା କେ ପାରିବ ବରତି ?
ସଖିରେ ବ୍ୟାକୁଳିତ ମୋର ଚିତ୍ତ, ଯେ କର ବିହିତ ॥

ସୁକେଶୀ—ନୂଆ ପ୍ରୀତି ଯେ କରନ୍ତି ସେ କପଟ ଠିକନ୍ତି ଜାଣିଛ ନା ? ପୀରତି ଖାତିରେ ଯେ ପୁରୁଖା ହେଲଣି ତାଙ୍କ ଉପଦେଶ ନେଇ ବାଟ ଚାଲ । ନୋହିଲେ ପଛରେ ପସ୍ତାଇବାକୁ ପଡ଼ିବ ।

ମାଳା— ମଣିଷ ତ ଜୀବନରେ ଥରେ ପ୍ରୀତି କରେ । ତୋ'ପରି ଯେ ପ୍ରୀତିର ବଣିଜ କରୁଥିବ ସେ କେଜାଣି ଥରକୁ ଥର ଠକି ଶିଖି ପୁରୁଖା ହେଉଥିବ ।

ସୁକେଶୀ—ମୋ ଉପରେ ରାଗୁଛ କାହିଁକି ? ତମେ ରଜା ଝିଅ । ତମକୁ କିଏ ଅଟକାଇବ ? ତମ ଇଚ୍ଛାରେ କିଏ ବାଧା ଦେବ ? ତେବେ ମୁଁ କହୁଥିଲି କି ଏଠୁଁ ଯିବା ଚାଲ ।

ମାଳା— ସଖି, ସୁକେଶି, ତୁ କଣ ଜାଣୁନାହୁଁ, ସେ ରୂପ ଦେଖିଲା ଦିନୁଁ ପୁଣି ଦେଖିବା ଆଶାରେ ମୁଁ ସବୁବେଳେ ଏହି ବନରେ ବୁଲୁଛି । ଏତେ ଦିନେ ତାକୁ ପାଇଛି ।

ସୁକେଶୀ—କେଉଁଠି ଦେଖିଲ ସଖି ?

ମାଳା— ଏହିଠି ଲୋ ଏହିଠି । କାଳୀଦହ କୂଳରେ ।

ସୁକେଶୀ— ଗୀତ

"ଖରୂପ ତୁ ହେଲୁ ରେ ।
ଖେଳା ଲୋଳା ଖଞ୍ଜନାକ୍ଷି କି ସାହସ କଲୁ ରେ ॥ ପଦ ॥
ଖବ ହୋଇ ସୁର-ତରୁ କୁସୁମ-ବାଞ୍ଛିଲୁ ରେ ।
ଖେଦ-ବୀଜ ନିଜ ହୃଦ-କେଦାରେ ବୁଣିଲୁ ରେ ॥ ୧ ॥
ଖିଆଲ ପରିକି ଧନ ମନରେ ଭାଳିଲୁ ରେ
ଖଳକାର ନୋହି କଳା ନାଗକୁ ଚାଳିଲୁ ରେ ॥ ୨ ॥
ଖାଇ ଦେଇ କି ଅମଳ ଅଚେତା ହୋଇଲୁ ରେ ।
ଖାରି ଖଣ୍ଡା ଧାର ଖଟ ଉପରେ ଶୋଇଲୁ ରେ ॥ ୩ ॥
ଖରି ସ୍ୱର ଝାଉଁଳିବା ଶ୍ରୀଅଙ୍ଗ ପାଇଲୁ ରେ ।
ଖ-ମଣି ମଣ୍ଡଳକୁ ତୁ କର ବଢ଼ାଇଲୁ ରେ ॥ ୪ ॥

( କାଳୀୟ ପ୍ରବିଷ୍ଟ ହେଲେ )

କାଳୀୟ—ମାଳା, ସୁକେଶୀ, ଏଠି ଏକୁଟିଆ କ'ଣ କରୁଛ ମା ?

( ମାଳା ବାଳିକା ସୁଲଭ ଆଦରରେ ଧାଇଁଗଲେ ଓ ସୁକେଶୀ ଘୁଞ୍ଚିଯାଇ ଅଧୋବଦନରେ ରହିଲେ )

ମାଳା— (କୁଣ୍ଢାଇ) ବାପା ବାପା, ଆମେ ଦିହେଁ ତୀର କାନନରେ ଫୁଲ ତୋଳୁଥିଲୁଁ ।

କାଳୀୟ—ଏ ସ୍ଥାନ ସବୁ ଆଜିକାଲି ବଡ଼ ବିପଦଜନକ ହୋଇଛି । ଏକୁଟିଆ ଅସମୟରେ ଆସିବା ଉଚିତ ନୁହେଁ ମା ।

ମାଳା— ଯେ ପରକୁ ହିଂସା କରେ ତାର ପିନା ପଦେପଦେ ବିପଦ, ଯାହାର କେହି ଶତ୍ରୁ ନାହିଁ, ତାର ପୁଣି ବିପଦ କ'ଣ ବାପା ?

କାଳୀୟ—ବାଳିକା, ସଂସାର କଥା ତୁ କ'ଣ ଜାଣୁ ? ଦୁଷ୍ଟ ଜନ କି ସେ ବିଚାର କରେ ନାହିଁ ମା ?

( ଜଣେ ନାଗ ଦୂତର ପ୍ରବେଶ )

ନାଗ— ମହାରାଜ—
ଗୋପବାଳେ ମତ୍ତ ଛନ୍ତି ମହା ଉଦ୍ୟମରେ
କାଳୀଦହେ କମଳ କାନନ ;
କରି ଆସ୍ଫାଳନ,
ମଦମତ୍ତ କରି ଯୂଥ ସମ,
ଛାରଖାର କରୁଛନ୍ତି ନାଗେନ୍ଦ୍ର ଭବନ ।

କାଳୀୟ—ଆସିଛି କି ସେହି ଶିଶୁ
କଳାରୂପ ଯାର,
ଘନ ଘନ କୁଞ୍ଚିତ ଚିକୁର ?

ନାଗ—ଆସିଛି ସେ ଶିଶୁ ପ୍ରଭୁ, ସେହି ଯୂଥପତି,
ପିନ୍ଧି ପୀତ ବାସ,
ବାନ୍ଧି ଶିରେ ଗୁଞ୍ଜାମାଳ, ଶିଖିପୁଚ୍ଛ ଚୂଳ
ଇନ୍ଦ୍ରନୀଳ ଦ୍ୟୁତି ସମ ଝଟକେ ତା କାନ୍ତି !
କରେ ବେଣୁ ଧରି,
ଅସଂଖ୍ୟ ବାଳକ ମେଳେ ସନ୍ତରି ସନ୍ତରି,
ଉଲ୍‌କା ସମ ନୀଳ ଜଳେ ଖେଳୁଅଛି ରଙ୍ଗେ ।

କାଳୀୟ—ନିର୍ଲଜ୍ଜ ପ୍ରହରୀବୃନ୍ଦ କାହିଁଗଲେ ଦୂତ ?
ନିଶ୍ଚିନ୍ତେ ହୋଇଣ ଛିଡ଼ା
ଦେଖନ୍ତି କି ନିଜ ଗୃହେ ଅରାତିର ନାଟ ?

ନାଗ—ଶଙ୍କିତ ପ୍ରହରୀକୁଳ ବାଳକ ପ୍ରତାପେ,
ପ୍ରାଣ ଭୟେ ଛାଡ଼ି ନିଜ ସ୍ଥାନ
ଇତସ୍ତତଃ କଲେ ପଳାୟନ ।

କାଳୀୟ—ଫଣୀନ୍ଦ୍ର ଆଗାରେ ପଶି ନିର୍ଭୟେ ମୂଷିକ
ସାନନ୍ଦେ କରିବ ନୃତ୍ୟ,
ଫଣୀନ୍ଦ୍ର ତା ସହିବ କାତରେ !
କାଳୀୟ ମସ୍ତକ ମଣି
ହୋଇ ନାହିଁ ଏତେ ପ୍ରଭାହୀନ;
କାଳୀୟର ନୀଳ ରକ୍ତ
ଛାଡ଼ି ନାହିଁ ତାର ସ୍ୱାଭାବିକ ତାପ ।
ଆଜି ତେବେ ନାଗକୁଳେ ଏ କି ଅଭିଶାପ !

ନାଗ ନାମଧାରୀ ଖଳୁ, କଏ ଅଛ କାହିଁ,
ଦେଖରେ ଅନ୍ତକେ ଗୃହିଁ
ଏକେଶ୍ୱର ରଣକ୍ଷେତ୍ରେ କରିବି ପ୍ରୟାଣ
ଦେଲି ଧର୍ମ ଡାକ,
ନରହତ୍ୟା, ଶିଶୁହତ୍ୟା ଦେଖୁ ବିଶ୍ୱ ଯାକ ॥
(ପ୍ରସ୍ଥାନୋଦ୍ୟତ)

ମାଳା—(ଆକୁଳାଇ) ପିତା, ପିତା,
ଖଗେନ୍ଦ୍ରର ଶୋଭେ କି ଏ ପଣ ?
ନରହତ୍ୟା ! ଶିଶୁହତ୍ୟା ! !
ନିରସ୍ତ୍ର, ନିର୍ବୋଧ,
କ୍ରୀଡ଼ା ଲୋଭେ ଦେବ ତୋଳି ସନ୍ତରଣ ରତ
କେମନ୍ତେ ବଧିବ ଶିଶୁ ?
ଏ କି ବୀର ଧର୍ମ ?

କାଳୀୟ—ସାମାନ୍ୟା ବାଳିକା ହୋଇ କରିଛୁ ସାହସ,
ନୀତି ଶିକ୍ଷା, ଧର୍ମ ଶିକ୍ଷା, ଦେବୁ ବୃଦ୍ଧ କାଳେ !
ଏକାଳେ କର୍ତ୍ତବ୍ୟ ପଥେ ଯେ କରେ ବାରଣ
ଶତ୍ରୁ ବୋଲି ମଣିବି ତାହାକୁ ।

ମାଳା—କାଳୀୟର ପରାକ୍ରମ ନ ଜାଣିଛୁ କିଏ ?
ତୁମ୍ଭ କୋପେ କ୍ଷଣ ମାତ୍ରେ ହେବ ଭସ୍ମୀଭୂତ
ବିଶ୍ୱ ଚରାଚର,
ପିତା, ପିତା, କ୍ରୋଧ ପରିହର ।

କାଳୀୟ—ନାଗେନ୍ଦ୍ରନନ୍ଦିନୀ ହୋଇ, ରଣ ଭୟେ ଭୀତା !
ଏ କଳଙ୍କ କଥା,
ନ କହିବୁ କାହା ଆଗେ
ପଳା ପ୍ରାଣ ଭୟେ ।

ମାଳା—କାଳୀୟ ଦୁହିତା ହୃଦ ନୁହେଁ ତ ନିର୍ମିତ
ହୀନ ଉପାଦାନେ,
ନୁହେଁ ତ ମୁଁ ପ୍ରାଣ ଭୟେ ଭୀତା;
ଦେଖି ସମୁଦ୍ୟତ,
ଶିଶୁ ନାଶେ, ଧର୍ମ ନାଶେ, ଆପଣା ଜନକେ,
କେମନ୍ତେ ରହିବି ପିତଃ, ନ କରି ବାରଣ ?
ଏ କି ନ୍ୟାୟ ରଣ !

କାଳୀୟ—ଧର୍ମ କଥା ଶୁଣି ଶୁଣି ହେଲଣି ସ୍ଥବିର,
ବାକି ଥିଲା ତୋହର ଉପଦେଶ !
( କିଛି କାଳ ଭାବି )
ବିଳମ୍ବରେ ଗଲା ସବୁ ନାଶ
ଯାଅ ଦୂରେ ଅପସରି,
ସମ୍ମୁଖେ ସମର
ଏ ସମୟ ନୁହେଁ ଆଦରର ।
( ବେଗେ ପ୍ରସ୍ଥାନ )

ମାଳା—ସୁକେଶୀ, ଏବେ ଉପାୟ କଣ ସୁକେଶୀ ? କାଳୀ ବିଷରୁ କିଏ ରକ୍ଷା ପାଇବ ? ଆଜି ସବୁ ପୋଡ଼ି ଯିବ, ସବୁ ଭସ୍ମୀଭୂତ ହୋଇ ଛାର ଖାର ହୋଇ ଯିବ ।

ସୁକେଶୀ—ସଖି, ସଖି, ବିପଦରେ ଧୈର୍ଯ୍ୟ ଧର ସଖି; ଏପରି ହେଲେ କଣ କରିବା । ଶୀଘ୍ର ଆସ, ଯଦି କିଛି ଉପାୟ ଥାଏ, ତେବେ ରକ୍ଷା କରିବାକୁ ଚେଷ୍ଟା କରିବା ।

ମାଳା—ହଉ ଚାଲ ତେବେ, ସୁକେଶୀ, ଚାଲ, ଚାଲ । କୁଆଡ଼େ ଯିବୁ ଚାଲ, ଚାଲ, ବିଷଜ୍ୱାଳାରେ ସବୁ ଜଳିଗଲା—ସବୁ ଜଳିଗଲା; ହେଇ ଦେଖ, ପଦ୍ମ ବନରୁ ଧୂଆଁ ବାହାରୁଛି—କାଳିନ୍ଦୀ ଜଳରେ ଅଗ୍ନି ଲୋଳ ଜିହ୍ୱା ବିସ୍ତାର କରୁଛି—ତୀର କାନନ ଧୂ-ଧୂ ହୋଇ ଜ୍ୱଳି ଉଠୁଛି । ଜଳେ ସ୍ଥଳେ, ଆକାଶେ, ଚାରିଆଡ଼େ ଅଗ୍ନି । ସବୁ ପୋଡ଼ିଗଲା ସବୁ ଜଳିଗଲା—ଚାଲ—ଚାଲ ।
( ଉଭୟ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

( ନନ୍ଦାଳୟ—ଏକାକୀ ନନ୍ଦ )

ନନ୍ଦ—ଦେଖୁଁ ଦେଖୁଁ ଟୋକାଟା କଥା ନ ମାନି ଚାଲିଗଲା । ଆଚ୍ଛା, ମୁଁ ଯଦି ତାକୁ ଛାଡ଼ି ନ ଥାନ୍ତି ସେ ଭଲା କିମିତି ଯାଆନ୍ତା । ଦୋଷ ତା'ର, ନା ମୋର ? ନା- ତାର ଦୋଷ କିପରି ହେଲା ! ସେ ତ ପିଲା, ପିଲାଏ ଭଲ ମନ୍ଦ କଲେ ସେ ଦୋଷ ମା-ବାପାଙ୍କର । ଉଁ, ହୁଁ, ମୋର ସେଥିରେ ଦୋଷ କାହୁଁ ଆସିଲା ! ସିଏ କ'ଣ ସେଭଳିଆ ପିଲା ? ଯେଉଁ ପିଲା ମା-ବାପଙ୍କର ବୋଲରେ ଉଠନ୍ତି ! ତେବେ ମୋର ଏତିକି ଦୋଷ ଯେ, ସିଏ ଯେଉଁଥିରେ ଅଳି କରି ରଗଡ଼ ଧରେ ମୁଁ ତାହା ଏଡ଼ିପାରେ ନାହିଁ । ଏଇଟା ଯଦି ଦୋଷ ବୋଲି ଲେଖାହୁଏ, ତେବେ ଜଗତରେ ସ୍ନେହ ନାହିଁ, ଆଦର ନାହିଁ, ଶରଧା ନାହିଁ ।
( ଯଶୋଦା ପ୍ରବେଶ ହେଲେ )

ଯଶୋଦା—ହଁ, ଅତି ସ୍ନେହ ଶରଧାରେ କାଳୀ ମୁହଁକୁ ଠେଲି ଦଅନ୍ତ ଏକା ! ଆଉ ବୟସ କେତେ ହେଲେ ବୁଦ୍ଧି ହେବ ?

ନନ୍ଦ— ସତ କହିଲ ରାଣୀ । ମୁଁ ସବୁଦିନେ ପଛ ବୁଦ୍ଧିଆ ; ତେଣୁ କି ଗଉଡ଼ ଜାତି । ଏଇକ୍ଷଣି ମନରେ ଭାବୁଛି, କହ୍ନେଇକୁ ପଦ୍ମ ତୋଳିବା ପାଇଁ ଛାଡ଼ ଦେବାଟା ଆମର ଉଚିତ ନ ଥିଲା । ଆଗ୍ରୁ ତମେ ଭଲ କମିତି—

ଯଶୋଦା—ଶେଷ ବେଳକୁ ମୋହରି ଦୋଷ ହେବ ନାହିଁ କି ! ମୁଁ ତ ମୂଳରୁ ମନା କରୁଥିଲି ; ମୋ କଥା କିଏ କେବେ ଗଣିଲ ନା ଶୁଣିଲ । ତମେ ତ ତାହାରି କଥାରେ ଏକ ରକମ ସନମତ ହେଲ ।

ନନ୍ଦ— ତେବେ ତମେ କାହିଁକି ଭଲ ଜୋର କରି ଅଟକାଇ ନ ରଖିଲ ?

ଯଶୋଦା—କହିବି କିଣ, କହ୍ନେଇ ମୋର ଯେତେବେଳେ ବାହାରି ଚାଲିଗଲା, ମୁଁ ମନେ କରୁଥାଏଁ ଅଟେକେଇ ରଖିବି । କିନ୍ତୁ ମୋ'ର କିଣ ହୋଇ ଗଲା କେଜାଣି, ସେତେବେଳେ ମୋ ମୁଣ୍ଡକୁ ବୁଦ୍ଧି ଆସିଲା ନାହିଁ କି ପାଟିରୁ କଥା ବାହାରିଲା ନାହିଁ ।

ନନ୍ଦ —ମୋର କିଣ ହେଲା କୁହ ନ ? ମୋତେ ସେତେବେଳେ ସେ କଅଁଳା ପିଲାଟି ପରି ଆଉ ଦିଶିଲା ନାହିଁ । ମୋତେ ଲାଗିଲା ଯେପରି କହ୍ନେଇ ବିରାଟ ମୂର୍ତ୍ତି ଧରି କାଳୀ ମୁଣରେ ଚଢ଼ି ତାକୁ ଦଳି ଦେଉଛି । ତା ଦେଖି ମୋ ସାହା ଉଡ଼ିଗଲା । ମୁଁ କଥା କହିବି କ'ଣ !

ଯଶୋଦା—ତମର ସବୁଦିନେ ସେହି ଭଳିଆ କଥା । ଦୁଧପିଆ ଛୁଆଟାକୁ, ତୁମେ ବୁଢ଼ା ମିଣିପ ହୋଇ କିଣ ଯେ ଭାବ, ମୁଁ କିଛି ବୁଝି ପାରେ ନାହିଁ ।

ନନ୍ଦ— ମୁଁ କ'ଣ ମନେ କରି ସେପରି ଭାବେଁ ? ବେଳେ ବେଳେ ତ କାହିଁକି ମୋତେ ସେ ସେହିପରି ଦିଶି ଯାଏ । ମୁଁ କ'ଣ କରିବି !

ଯାଶୋଦା—ମୋ ଡ଼ାଆଣ ଆଖିଟା କାହିଁକି ଫରକ ଉଠୁଛି କୁହନା ? ମୋ ପୁଅର କ'ଣ ବିପଦ ହେଲା କି ! ତମ ଗୋଡ଼ତଳେ ପଡ଼ୁଛି ଭଲା ତମେ ଏହିକ୍ଷଣି ଯାଇ ତାକୁ ଫେରାଇ ଆଣ । ଆମର ଯେତିକି ହେଲା ପଛେ ସେତିକି ଥାଉ ।

ନନ୍ଦ— ମୁଁ ବି ସେଇ କଥା ଭାବୁଛି, କିନ୍ତୁ କଂସ—

ଯଶୋଦା—'କଂସ, କଂସ' ବୋଲି ତମେ ବାଇଆ ହେଲଣି । କଂସ ଯାହା କରିବ କରୁ ପଛକେ, ତମେ ମୋ ପୁଅକୁ ଆଣି ଦିଅ ଏଇକ୍ଷଣି । ନୋହିଲେ ମୁଁ ଜୀବନ ରଖିବି ନାହିଁ ।

ନନ୍ଦ— ଯଶୋଦେ, ଏତେ ବ୍ୟସ୍ତ ହୁଅ ନାହିଁ । ମୁଁ ଏଇ ଯାଉଛି ତାକୁ ଫେରାଇ ଆଣିବି । (ପ୍ରସ୍ଥାନ)

ଯଶୋଦା— ହଁ, ତମେ ମୋ ନୀଳମଣିକୁ ଆଣି ଦେଲେ ଆଜ ରାତି ଭିତରେ ଗୋପ ନଗର ଛାଡ଼ ବନ ଭିତରକୁ ଚାଲିଯିବା ଆଉ ଦେଖିବା କଂସ କ'ଣ କରିବ ଦେଖିବ ।

(ପଟକ୍ଷେପ)

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ଗୋଟିଏ ନାଗ ଆଉ ଗୋଟିଏ ନାଗକୁ ଟାଣି ଟାଣି ପ୍ରବେଷ୍ଟ ହେଲ)

୧ମ ନାଗ—(ଚାରି ଆଡ଼କୁ ସଭୟେ ଅନାଇ) ଓଃ ବଞ୍ଚିଲ ବାବା ! ନିଶ୍ୱାସ ପକେଇବାକୁ ଟିକିଏ ତର ମିଳିଲା । ( ଚମକି ) ହେଇ କାହା ପାଟି ଶୁଭୁଛି ନା କ'ଣ । ବାପ ଲୋ ! ଗଲି, ଗଲି—ଧର, ଧର ।

୨ୟ ନାଗ—( ଚାରି ଆଡ଼କୁ ଚାହିଁ ) ଦୂର୍, ଡରୁଆଟା, କେହି କୁଆଡ଼େ ନାହିଁ, ମିଛୁଟାରେ ଇମିତି ହେଉଛୁ ନା ? ତୋତେ ଭୂତ ଲାଗିଛି ନା କ'ଣ ?

୧ମ ନାଗ—ମୋ କଥା କ'ଣ କହୁଛୁ । ନିଜେ ରଜା ଯାହା ହଉଛନ୍ତି ତାଙ୍କ ଆଗରେ ଯେ ପଡ଼ିଥିବ, ତା ଦଫା ରଫା ।

୨ୟ ନାଗ—ଆମର ସେଥିକୁ ଡର କ'ଣ, ସେ ଗଉଡ଼ ଟୋକାଏ ଯିମିତିକା କର୍ମ କଲେ ସିମିତିକା ଫଳ ପାଇଲେ । ଆଚ୍ଛା —ହାଲ୍‌ଟା କିଣ କହିଲୁ ?

୧ମ ନାଗ—ବାପ ଲୋ, ରଜା ଆମର ଏଆଡ଼ୁ ତ ରାଗରେ ଫଁ-ଫଁ ହୋଇ ଗଲେ ! ଯାଇ ଏକା ଚୋଟେ ପକେଇଲେ ଯେ, ସେ ଟୋକା ତ ପଡ଼ୁଛି ଚାରିକାତ ମେଲେଇ ! ଆଉ ଜାଣିଛୁ ନା, ସେ ଭାରି ରାଗିଛନ୍ତି ଆମ ସଭିଙ୍କ ଉପରେ; କହିଛନ୍ତି କି ଯାହାକୁ ଯଉଁଠି ପାଇବେ ତାକୁ ହାଣରେ ଦେବେ ।

୨ୟ ନାଗ—ଆମର ଦୋଷ ?

୧ମ ନାଗ—ଦୋଷ ? କାହିଁକି, ଏଇ ସାମାନ୍ୟ ଗଉଡ଼ ଟୋକାଏ ଆସି ଏତେ ସବୁ କଲେ, ଆମେ କିଛି କରି ନ ପାରିଲେ ବୋଲି । ମୁଁ କହୁଛି, ଭଲ ଦଶା ଅଛି ତ ପଳେଇବା ଚାଲ ଏଠୁଁ । ନୋହିଲେ ଆଜି କାଳୀ ନାଗ ଆଗରେ କାହାରି ରକ୍ଷା ନାହିଁ । ଜାଣିଲୁ ?

ଗୀତ ।

ଉଭୟ— ଭାଇ ହୁସିଆର୍, ଆରେ ଖବରଦାର୍ ।
ଆଣକର ଭିଡ଼ ନେରେ ପଞ୍ଚୁ ହାତିଆର୍ ॥

୧ମ ନାଗ—ବସିଥିଲି ଚଢ଼େଇଟା ଉଡ଼ି ଗଲା ଘରୁ,
୨ୟ ନାଗ—ଶିକାରୀଆ ଭାଇ ମୋର ଧର୍ ଧର୍ ଧର୍,
୧ମ ନାଗ—ଚୁପ୍ ଚୁପ୍ ଆରେ ଭାଇ ଛପି ଛପି ଆ,
୨ୟ ନାଗ—ଲକ୍ଷ କରି ଛକ ଛକ ମୋ ପଛରେ ଥା,
ଉଭୟେ— ଗୁଣ୍ଡେ ଗୁଣ୍ଡେ ଆ, ଖଣ୍ଡା ଧରି ଆ,
କାଣ୍ଡେ ବେଶି ମୁଣ୍ଡ କାଟି କର ଗୁରଖାର୍ ।୧ ।

୧ମ ନାଗ—ମୋର ଲାଗି ଲତାଟିଏ ଯିବନ ଝାଉଁଳି,
୨ୟ ନାଗ—(ତା)ସୁନା ଅଙ୍ଗ ଭାଳ ଭାଳ ପଡ଼ିବଣି କାଳି,
୧ମ ନାଗ—ବୋହୂ ମୋର ଅଟେ ଘରୁ ବଡ଼ଘର ପିଲ୍ଲି,
୨ୟ ନାଗ—ତା' ଗଳାରେ ଫୁଲ ଝରି କରେ ଝିଲ ମିଲି,
ଉଭୟେ— ମାରେ ଝକ୍ ଝକ୍, କରେ ଚକ୍ ମକ୍,
ଭଲ କରି ଶାଣି ନେ'ରେ ଲମ୍ବା ତଲବାର୍ ।୨ ।

( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ସୁକେଶୀ ପ୍ରବେଶ ହେଲା )

ସୁକେଶୀ—ସଖି ମାଳା କୁଆଡ଼େ ଗଲେ ! ଏଇଠିଁ ଆସେ ବୋଲି କହି କେଉଁଠି ଉଭେଇ ଗଲେ ନା କ'ଣ । ଘୂରି ଆଡ଼େ ତ ଖୋଜି ଖୋଜି ଥକିଲଣି । ଆଉ ପାରିବି ନାହିଁ । ଯା, ମୁଁ ମୋର ଏଇଠି ବସୁଛି । ଯଉଁଠି ଥିବେ ବଳେ ଏଠିକି ଆସିବେ ।

ବାଗେଶ୍ରୀ-ଏକତାଲି

( ଗୀତ )

ଏ ଜଗତେ
କାହିଁ ସେ ପୀରତି ଯହିଁ ସୁଧା ଝରେ ନିରତେ ॥

ଯେଉଁ ପ୍ରୀତି ଲାଗି ରବି, ଚନ୍ଦ୍ର, ତାରା,
ଭ୍ରମୁଛନ୍ତି ଦିବା ନିଶି ମତୁଆରା,
ଯେଉଁ ପ୍ରୀତି ଲାଗି ଉଚ୍ଛୁଳେ ସାଗର,
ଝରି ପଡ଼େ ଘନ ମରତେ ॥

( ଗୀତାନ୍ତେ ମାଳା ପ୍ରବେଶ )

ମାଳା—ସୁକେଶୀ, ସୁକେଶୀ, ଇଏ କ'ଣ ଗୀତ ଗାଇବାର ସମୟ ? ତୁ ଏଠି ଏକୁଟିଆ ଲୁଚି ଗୀତ ଗାଉଛୁ !

ସୁକେଶୀ—ଗୀତ ଗାଇବାର କ'ଣ ଗୋଟାଏ ସମୟ ଅସମୟ ଅଛି ସଖି ? ହୃଦୟ ପୂର୍ଣ୍ଣ ହୋଇ ଗଲେ, ଗୀତ ଯେ ଆପେ ଆପେ ବାହାରି ଆସେ ।

ମାଳା—ମୁଁ ଜାଣେ କି, ଯାହାର ମନ ଆନନ୍ଦ ଥାଏ, ସେ ଗୀତ ଗାଇବାକୁ ଯାଏ । କଥାରେ କହନ୍ତି "ମନ ଫୁଲଣା ଗୀତ ଗାଏ ।"

ସୁକେଶୀ—ଗୀତଟା ସଖି, ମନୋଭାବର ବାହ୍ୟ ବିକାଶ । ମନ ଭିତରେ ଯେତେବେଳେ ଯେଉଁ ଭାବର ପ୍ରାବଲ୍ୟ ହୁଏ, ତାହା ଗୀତ ଆକାରରେ ପ୍ରକାଶ ହୋଇ ପଡ଼େ ସିନା ?

ମାଳା—କେ ଜାଣି, ତୋ ଭାବ ଗତି ଅଦ୍ଭୁତ ସୁକେଶୀ । ତୁ ପ୍ରକୃତିର ବାହାର ।

ସୁକେଶୀ—ନା ସଖି, ତୁମେ ଭୁଲ ବୁଝୁଛ । ମୁଁ ଠିକ୍ ପ୍ରକୃତିର ଅନୁସରଣ କରେଁ । ତୁମେ କ'ଣ ସିର ସିର ଦକ୍ଷିଣା ପବନର ଗୀତ ଶୁଣି ନାହିଁ ? ତୁମେ କ'ଣ ଝର ଝର ନିର୍ଝରଧାରର ଗୀତ ଶୁଣି ନାହିଁ ? ସାଗର ବକ୍ଷରେ କଚୁଡ଼ି ପଡ଼ୁଥିବା ତରଙ୍ଗର ଉନ୍ମାଦ ଗୀତିକା କେବେ ମନ ଦେଇ ଶୁଣିଛ ନା ସଖି ? ଯେ କ'ଣ ଖୋଜି ଖୋଜି ଢଡ଼କି ଘଡ଼ି ମୁଣ୍ଡ କୋଡ଼ି ହୁଏ ! ହେଲା ତେବେ ଶୁଣ—

ଗୀତ

ସେ ପ୍ରୀତିର ଯଦି ପାଆନ୍ତି ସନ୍ଧାନ,
ତାଙ୍କ ମୁଁ ଦିଅନ୍ତି ମୋର ମନ ପ୍ରାଣ,
ଦିବସ ରଜନୀ କରି ଆରାଧନ,
ଜପୁଥାନ୍ତି ନାମ ଆରତେ ।

ମାଳା—ଥାଉ, ଥାଉ ସୁକେଶୀ; ତୋ ଗୀତ ଶୁଣିବାକୁ ମୋର ସମୟ ନାହିଁ । ଆମେ ଯେଉଁଥିକି ଡରୁଥିଲେ ସେହିୟା ହେଲାଣି ଏବେ କ'ଣ କରିବା କହ ।

ସୁକେଶୀ—କ'ଣ, ହେଲା କଣ ?

ମାଳା—କାଲି ବିପରେ ଯାହା ହେବାର ତାହିଁ ହେଲା ।

ସୁକେଶୀ—ତେବେ ସେ କାଳିଆ କିଶୋର ଅଛନ୍ତି କେଉଁଠି ?

ମାଳା—ମୁଁ ଦେଖି ଆସିଲି ଲୋ, ସେହି ସରୋବର ମଝିରେ ନୀଳ କମଳଟିଏ ଭାସୁଛି, ବିଷ ଜ୍ୱାଳାରେ ମଉଳି ପଡ଼ୁଛି ! ଆହା ସେ କେଡ଼େ ସୁନ୍ଦର, ସୁକେଶି !

ସୁକେଶୀ—ତେବେ ଚାଲ ସେଠୁଁ ନେଇ ତାଙ୍କୁ ଘରରେ ଥୋଇ-ଆସିବା । ଏତେ ବେଳୁଁ ଉପାୟ ନ କଲେ ବିପଦ ହୋଇପାରେ ।

ମାଳା— ଆଉ ବିଳମ୍ବ କର୍‌ନା, ଚାଲେ ଆ । ଦୁହେଁଯାକ ତାଙ୍କୁ ଧରି ଘରରେ ରଖି ସେବା କରିବା, ଆଉ ଗୋପପୁରକୁ ସମ୍ବାଦ ଦେବା ।

( ଉଭୟ ବେଗେ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

( ଜଣେ ନାଗ ସୈନିକ ପ୍ରବିଷ୍ଟ ହେଲା )

୧ମ ନାଗ—ଉଦରବୃତ୍ତ ଉର୍, ବଅଁଶ ଯାକକୁ ଉର୍ । ଜଣକୁ ଜଣେ ତ ମୁନିବ । ଏବେ, କାହାକୁ ମାନ କରିବ ? ରଜା, ରାଣୀ, ପୁଅ, ଝିଅ, ପୋଇଲା, ପରିବାର, ନୌକର, ଚାକର, କୋଠିଆ, ବେଠିଆ—କିଏ କାହାକୁ ଭଲ ଭଣା ? ଯେ ଯାହା ହାତକୁ ତ 'ସାଢ଼େ-ଚଉଦ ପା' !

( ଦ୍ୱିତୀୟ ନାଗର ପ୍ରବେଶ )

୨ୟ ନାଗ—ଏ ନାଗ ଭାଇ, କଣ ବଳବଳ ହଉଛୁ କି ହେ ?

୧ମ ନାଗ—ଭାଇ ବଡ଼ ବିପଦ । ଏକେ ଗରୁଡ଼ଙ୍କ ସାଙ୍ଗରେ ଆମ ନାଗଙ୍କର ବିବାଦ, ସେଥିରେ ମୁଁ କୁଆଡ଼େ ଯିବି ଗୋପପୁର ଭିତରକୁ ! କାହା ଜୀବନକୁ କାହାର ମୁଆଁସ ନାହିଁ କହିଲୁ ? ଗରିବ ବୋଲି ସିନା —

୨ୟ ନାଗ—ସେ ତ ଭଲ କଥା ଗରୁଡ଼ ଟୋକାଏ ତ ସବୁ ନିପାତ । ବାକି ଅଛନ୍ତି ବୁଢ଼ାଏ, ଆଉ ମାଇପେ । ଆମେ ସମସ୍ତେ ଯାଇ ସେ ବୁଢ଼ାଙ୍କୁ ଗିଳି ପକେଇଲେ, ବାପୁଡ଼ାଙ୍କ କୁଳରେ ବତୀ ଦବାକୁ କେହି ନ ଥିବେ ।

୧ମ ନାଗ—ଆରେ ନାହିଁ ମ, ତୁ ତ ସବୁ ବୁଝି ପକେଇଲୁ ! କଥା କଣ କି, ରଜାଙ୍କ ଗେହ୍ଲା ଝିଅ ମାଳା—ମୋତେ ପଠେଇ-ଛନ୍ତିକ—ଗୋପପୁର ନନ୍ଦ ରଜା ଘରେ ଖବର ଦେବି ଯେ, ତାଙ୍କ ପୁଅକୁ କାଳୀ ଦଂଶିଛି । ସେ ଶୀଘ୍ର ଆସିବେ ।

୨ୟ ନାଗ—କାହିଁକି ମ ? ସେ କଳା ଟୋକାଟାର ଯିମିତି ଫୁର୍ତ୍ତି ଦେଖାଉଥିଲା ସିମିତି ଧାଉଁଳା ହୋଇ ପଡ଼ିଛି ପାଣି ଭିତରେ । ଆଉ ଟିକିଏ ଗଲେ ତ ମରି ପଚିକରି ଫୁଲିବ ! ଏ ପୁଣି କି କଥା ରେ ?

୧ମ ନାଗ—ବୁଝିଲୁ ନାହିଁ କିରେ ବୁଝିଲୁ ନାହିଁ କି ? ରଜା ଝିଅ ଯେ, ତା ରୂପ ଦେଖି ଏକାବେଳକେ ବାଇଆଣୀ । ତାକୁ ବଞ୍ଚେଇବାକୁ ପାଣିପିଇ ଲାଗିଛନ୍ତି ।

୨ୟ ନାଗ—ବାପ ଯାହାକୁ ମାରିବ, ଝିଅ ତାକୁ ରଖିବ ? ଏ ବୁଦ୍ଧି ତାକୁ କିଏ ଦେଲା ମ ?

୧ମ ନାଗ—ଯୁଗ ସେହିମନ୍ତ ରେ ଯୁଗ ସେହିମନ୍ତ । ପ୍ରେମ ଆଗରେ କ'ଣ ମାବାପ ଅଛି, ନା ଜାତିପତି ଅଛି ?

୨ୟ ନାଗ—ନନ୍ଦ ରଜା ଜାଣିଲେ, କିଛି ଉପାୟ କରି ଯଦି ବଞ୍ଚାଏ ?

୧ମ ନାଗ—କାଳୀ ବିଷରୁ ପୁଣି ବଞ୍ଚିବ କିଏ ମ ? ଏକା —

୨ୟ ନାଗ—ହେଇ ଚୁପ୍, ଚୁପ୍, ରଜା ଝିଅ ମାଳା ଆଉ ତାଙ୍କ ସଖି ସୁକେଶୀ ଏ ଆଡ଼କୁ ଆସୁଛନ୍ତି । ଆହୁରି ଟୋକାଟାଏ ହାତରେ ଧରିଛନ୍ତି କଣ ମ ?

୧ମ ନାଗ—(ଦେଖି) ସେଇ ଗଉଡ଼ ଟୋକା ମୃତଦେହଟାକୁ ତ ଟେକି କରି ଆଣିଲେଣି ରେ । ଏ ପଳେଇ ଆ, ପଳେଇ ଆ, ଦେଖା ପଡ଼ିଲେ ଆମ ମୁଣ୍ଡ ରହିବ ନାହିଁ ଏହିକ୍ଷଣି ।

( ଉଭୟେ ପ୍ରସ୍ଥାନ )

( ମୂର୍ଚ୍ଛିତ ଶ୍ରୀକୃଷ୍ଣଙ୍କୁ ଘେନି ମାଳା ଓ ସୁକେଶୀ ପ୍ରବିଷ୍ଟ )

ସୁକେଶୀ—ସଖି, ଏ ସ୍ଥାନଟି ବେଶ୍ ନିରାପଦ, ଏଇଠି ଥୋଇବା । ( ସେହି ସ୍ଥାନରେ ଥୋଇଲେ ) ଦେଖିଲଣି ନା ସଖି, ଏଭଳି କଅଁଳ ନିକ ପିଲାଟିକୁ ଏ ଦଣ୍ଡ ! ରଜା ମଣିମାଙ୍କ ଗ୍ଭତି କପରି ସହିଲା କୁହ ନ !

ମାଳା— ସଖି, କାଳୀ ବିଷରେ ଜର୍ଜ୍ଜରିତ ହୋଇ ଯେ ଏତେ ସୁନ୍ଦର, ଖାଲି ବେଳରେ ସେ କେତେ ସୁନ୍ଦର ହୋଇ ନ ଥିବେ । ନା ସଖି, ମୁଁ ବଡ଼ ଅଭାଗିନୀ, ପାପିଷ୍ଠା, ସେ ଚରଣ ସେବାର ଅଯୋଗ୍ୟ ; ସେଥିପାଇଁ କଳାମାଣିକ ଆଖି ମେଲି ମୋ ଆଡ଼କୁ ଗ୍ଭହୁଁ ନାହାନ୍ତି ।

( କୃଷ୍ଣଙ୍କ ପାଦତଳେ ବସି ) ଗୀତ ( ଲଳିତ ଭୈରବୀ-ତେଉଁରା )

ଫେଡ଼ ଫେଡ଼ ହେ ନୟନ, ରାଧା ମୋହନ ।
ଗୋପିନାଥ ଗୋପୀ ଜୀବନ ॥ ଘୋଷା ॥

ନବୀନ ଜଳଦ କାନ୍ତି, ଦିଶୁଛି ମଳିନ ଅତି,
(ଏବେ) କାଳୀ ହୋଇଲାଣି ରଙ୍ଗ ଚରଣ ॥
କୁସୁମ ବିଛଣା ପରେ, ଯେ ସୁଖେ ପହୁଡ଼ କରେ
(ଏବେ) କେମନ୍ତେ କରିଛି ଧରା ଶୟନ ॥
ଭ୍ରମର ପ୍ରିୟ ମୁରଲୀ, ଭୂତଳେ ପଡ଼ିଛି ଢଳି
(ତାକୁ) କରେ ନିଅ ତୋଳି ଅଧରେ ବଦନ ॥
ସୁନ୍ଦର ଶିଖଣ୍ଡ ଶିଖା, ଅଳକା ତିଳକା ରେଖା,
(କାହିଁ) ଦିଶୁ ନାହିଁ ତେଡ଼େ ଚାରୁ ଗଠନ ॥

( ଗୀତାନ୍ତେ କାଳୀୟ ପ୍ରବେଶ କଲେ )

**କାଳୀୟ**—ଶୁଣିଛି ମୁଁ ସବୁ କଥା ଅନ୍ତରାଳେ ଥାଇ,
ଜାଣିଛି କୌଶଳ ତୋର ।
କନ୍ୟା ରୂପେ କାଳ ହୋଇ ଜନ୍ମିଥିଲୁ ତୁହି
କାଳୀୟ ଆଗାରେ ।
ଭୁଲି ନିଜ ଆଭିଜାତ୍ୟ, ବଂଶର ଗୌରବ,
ମର୍ଯ୍ୟାଦାରେ ଦେଇ ଜଳାଞ୍ଜଳି,
କୁଳେ ଦେଇ କାଳୀ,
ବଂଶାଙ୍କୁର ଶତ୍ରୁ ପାଇଁ ଲଙ୍ଘିଲୁ ଜନକେ !
ପାପିୟସୀ, ନାଗ-ଗୃହେ ନାହିଁ ତୋର ସ୍ଥାନ ।

**ମାଳା**— ପିତା, ପିତା,
ନୁହେଁ କି ନାରୀର ଧର୍ମ, ଆତୁରର ସେବା ?
ଜନନୀ, ଭଗିନୀ ରୂପେ,
ନାରୀ ତ ନ ଜାଣେ କିଛି ଶତ୍ରୁ ମିତ୍ର ଭେଦ ।

**କାଳୀୟ**—କଳଙ୍କିନି,
ଲଜ୍ଜା ନାହିଁ କାଳୀୟକୁ ପିତୃ ସମ୍ବୋଧନେ !
ଧର୍ମ ଶିକ୍ଷା କୁଳଟା ବଦନେ !
ଭାବିଛୁ କି ମନେ,
କାଳୀୟ ବଂଶକୁ କେହି ଲଭିବ ନିସ୍ତାର ?
ବୃଥା ଆଶା ତୋର,
କୋର୍ଣ୍ଣ ହାତେ ଏ ଶିଶୁର ମରଣ ନିଶ୍ଚୟ ।

**ମାଳା**— କେମନ୍ତେ ବୁଝିବ ପିତଃ, ନାରୀର ହୃଦୟ ?
ପୁରୁଷର ନାହିଁ ସେ ଶକତି ।
( ପାଦ ଧରି )
କଳଙ୍କିନୀ କନ୍ୟା ତବ କ୍ଷମା ଭିଖାରିଣୀ ।

**କାଳୀୟ**—କ୍ଷମା ! କ୍ଷମା !
ପିତୃ ଦ୍ରୋହେ, ରାଜ ଦ୍ରୋହେ, ଜାତି ଦ୍ରୋହେ କ୍ଷମା !
ଏହି ଅସି ବିଦୀର୍ଣ୍ଣ କରନ୍ତା କି ତୋର
ପାପ-ମତ୍ତ ତନୁ;
ତେବେ ବା ଲଭନ୍ତା ଶାନ୍ତି ପିତାର ହୃଦୟ
ତିଳେ ମାତ୍ର ;
କିନ୍ତୁ, ନ କରିବ କଳଙ୍କିତ
କାଳୀୟର ପବିତ୍ର କୃପାଣ,
ତୁଚ୍ଛ ତୋର ପଙ୍କିଳ ଶୋଣିତ ।
ସ୍ୱେଚ୍ଛାଚାରିଣୀ ନାରୀ,
ନାହିଁ ତୋର ନରକେ ଆଶ୍ରୟ ।
( ପଦ ପ୍ରହାର କରି ପ୍ରସ୍ଥାନ )

**ମାଳା**— (ଉଠି) କିଲୋ ସୁକେଶୀ, ତୁ ଥରୁଛୁ ନା କ'ଣ ?

**ସୁକେଶୀ**—ହଁ ସଖି, ମୋତେ ଘାରି ଡର ମାଡ଼ୁଛି ।

**ମାଳା**— କର୍ତ୍ତବ୍ୟ ପାଳନରେ ଭୟ କିସ ସଖି ? ଭୟହାରୀ ଜନାର୍ଦ୍ଦନ ଆମ୍ଭର ସହାୟ ଅଛନ୍ତି । (ଚିନ୍ତା କରି) ଆଚ୍ଛା ସୁକେଶୀ, ମୁଁ କ'ଣ ପିତୃ-ଦ୍ରୋହିଣୀ, ସ୍ୱେଚ୍ଛାଚାରିଣୀ ? ନା, ନା, ପିତା ଭ୍ରାନ୍ତ, ପିତା ଉନ୍ମାଦ । କନ୍ୟାର କର୍ତ୍ତବ୍ୟ ପିତାଙ୍କୁ ସୁବୁଦ୍ଧି ଦେବା । କିନ୍ତୁ ପିତା ତା ଶୁଣିଲେ ନାହିଁ । କ'ଣ ହେବ ସୁକେଶୀ ? ଏ ମୋହ ତାଙ୍କର କପରି ଭାଙ୍ଗିବ ସଖି ? ହେ ଅନ୍ତର୍ଯ୍ୟାମୀ, ମୋର ମୁଗ୍ଧ ପିତାଙ୍କୁ ସୁମତି ପ୍ରଦାନ କର—ଦର୍ପାନ୍ଧ ନାଗରାଜର ଜ୍ଞାନଚକ୍ଷୁ ଉନ୍ମୀଳିତ କର । ହେ କୃପାନିଧି, ଏ ଦାସୀର କାତର ପ୍ରାର୍ଥନା କି ଶୁଣିବ ନାହିଁ ନାଥ ?

ଗୀତ

( ବେହାଗ ମିଶ୍ର )

ହରି ହେ, ଗୋପାଳ ବେହାରୀ ।
ଦୀନବନ୍ଧୁ ଦୟାସିନ୍ଧୁ ଭବ-ଭୟ-ହାରୀ ॥

ଜୀବନେ ମରଣେ ସଦା    କରିଛି ତୁମ୍ଭର ଆଶ,
ଧାଇଁଛି ଆକୁଳ ପ୍ରାଣ    ତୁମ୍ଭର ଚରଣ ପାଶ,
ଧରିଛି ତୁମ୍ଭର ନାମ    ଅନ୍ତରେ ହେ ପୀତବାସ,
(ଏ) ସଂସାର ପାଶୋରି ।

ଏ ଦେହ, ହୃଦୟ, ପ୍ରାଣ    ସକଳ ତୁମ୍ଭର ଗଢ଼ା,
ଏ ଜଗତେ କିଛି ନାହିଁ    ଶ୍ରୀନିବାସ ତୁମ୍ଭ ଛଡ଼ା,
ତୁମ୍ଭ ସେବା ପାଇଁ ମୋର    ଯେତିକ ଇନ୍ଦ୍ରିୟ ଲୋଡ଼ା
(ହେ) ସନ୍ତାପ ନିବାରି ।

**ସୁକେଶୀ**—ଦେଖ ସଖି, ଜଣେ ବୃଦ୍ଧ ଏଆଡ଼କୁ ଆସୁଛନ୍ତି । ବୋଧ-ହୁଏ ଏହାଙ୍କ ପିତା । ଆମେ ଅନ୍ତରାଳରେ ରହିବା ଆସ ।

( ଉଭୟେ ପ୍ରସ୍ଥାନ )

( ନନ୍ଦ ପ୍ରବେଶ କଲେ )

**ନନ୍ଦ**— ହେଇ ତ, ମୋ ଲବଣୀ ପିତୁଳି ନୀଳମଣିର କୋମଳ ତନୁ ଏହିପରି ଧୂଳିରେ ପଡ଼ି ରହିଛି । କେହି ତ କୁଆଡ଼େ ନାହାନ୍ତି ! ହାୟ, ହାୟ, ପିତା ହୋଇ ମୁଁ ଏ କଅଁଳା ପିଲାକୁ କାଳ ମୁଖକୁ ପେଲିଦେଲି ! ଧିକ୍ ମୋତେ ! ଏ ବୃଦ୍ଧ ବୟସରେ ବିଧାତା କପାଳରେ ଏ ଦୁଃଖ ଲେଖିଥିଲା !

# କାଳୀୟ ଦଳନ

( ବେଗରେ ଯଶୋଦା ପ୍ରବେଶ ହେଲେ )

ଯଶୋଦା—କାହ୍ନାଁ, କାହ୍ନାଁ, ମୋ ଦୁଃଖିଧନ କାହ୍ନାଁ ? ( କୋଳରେ ଧରି ) ମୋ ରଙ୍କୁଣୀ ନିଧିରେ, ମୋ ଦୁଃଖ ସଙ୍ଖାଳରେ, ସେ ଚନ୍ଦ୍ର ବଦନରେ ଥରେ ମା ବୋଲି ଡାକୁ ନାହୁଁ କାହିଁକି ? ନା, ମୁଁ ତୋର ମା ନୁହେଁ । ମା' ହୋଇଥିଲେ ଯଶୋଦା ଏତେବେଳ ଯାକେ ପ୍ରାଣ ଧରି ରହନ୍ତା କିପରି !

ନନ୍ଦ—ରାଣୀ, ବିପଦ ବେଳରେ ଅଧୈର୍ଯ୍ୟ ହେଉଛ କାହିଁକି ? ତମେ ଏପରି ହେଲେ ଏଥିରେ ଉପାୟ ବିଧାନ କରିବ କିଏ ? ହେଇ, କହ୍ନେଇର ସଖାମାନେ ଆସିଲେଣି, ତାଙ୍କର ଡାକରେ ନିତ ନିତ ସେ ଶେଯରୁ ଉଠି ଗାଈ ରଖିବାକୁ ଯାଏ ।

( ସଖାମାନଙ୍କର ପ୍ରବେଶ )

ବାପ, ତୁମେ ଥରେ ତୁମଜୀବନ କହ୍ନାଇକୁ ଡାକ, ତୁମର କଥା ଶୁଣିଲେ ବା ସେ ଚେତାପାଇ ଉଠିବ ।

ସଖାମାନଙ୍କର ଗୀତ ( ଭଙ୍ଗା କୀର୍ତ୍ତନ-ଏକତାଳି )

ଉଠରେ ଉଠରେ ଜୀବନ କହ୍ନାଇ,
ବେଣୁ ଧରି କରେ ବଜା ଥରେ ଭାଇ ।
ଧେନୁ ବତ୍ସାଗଣ ବିଷାଦ ନୟନେ,
ତୋହ ଆନନକୁ ରହିଛନ୍ତି ଚାହିଁ । ଘୋଷା ॥

ଛୁଡ଼ା ହୋଇ ଭାଇ ତ୍ରିଭଙ୍ଗ ଭଙ୍ଗୀରେ,
ହସି ହସି ବାରେ କଥା କହ ଧୀରେ,
ତୋ ରଙ୍ଗ ଅଧରେ ହସ ନ ଦେଖିଣ,
ଏ ପୋଡ଼ା ପିଣ୍ଡରେ ପ୍ରାଣ ରହୁନାହିଁ ॥

ବ୍ରଜ ସଖାଗଣ କରନ୍ତୁଁ କି ଦୋଡ଼,
ତେଣୁ ପରା ଭାଇ କରିଅଛୁ ରୋଡ଼,
ତୁ ହେଲେ ଏଭଳି ଆମ୍ଭେ ସର୍ବେ ମିଳି,
ନାଶିବୁ ଜୀବନ କାଳି ବିଷ ଖାଇ ॥

ମଧୁରେ ମଧୁରେ ବଜାଇ ମୁରଲୀ,
ରୁଣୁ ଝୁଣୁ ଝୁଣୁ ନାଚ ଢଳି ଢଳି,
ବାହୁରି ପଛରେ ଦେଇ କରତାଳି,
ବୃନ୍ଦାବନେ କାହିଁ ବୁଲୁ ନାହୁଁ ଧାଇଁ ॥

ନନ୍ଦ—ରାମ କାହିଁ ଗଲା ? ସେ କ'ଣ କହ୍ନେଇ କଥା ଜାଣି ନାହିଁ ଏତେବେଳଯାଏ ? ଯାଅ ବାପ ସମସ୍ତେ, ସେ ଯେଉଁଠି ଥିବ ତାକୁ ଖୋଜି ଆଣିବ । ( ସଖାମାନଙ୍କର ପ୍ରସ୍ଥାନ )

ଯଶୋଦା—କାହ୍ନାଁ ମୋ କହ୍ନେଇ ତ କେବେ ଘୁଙ୍ଗା କଥା କହୁ ନାହିଁ । ତାର ପ୍ରିୟ ସଖାଙ୍କ ତୁଣ୍ଡ ଶୁଣିଲେ ସେ ଶେଯରୁ ଉଠି ବାହ୍ୟା ହୋଇଯାଏ । ଏ କ'ଣ ହେଲା ? କହ୍ନେଇ ମୋର କଣ ଆଉ କଥା କହିବ ନାହିଁ ? ମା' ମା' ବୋଲି ସର ଲବଣୀ ପାଇ ଆଉ କଣ ଅଳି କରିବ ନାହିଁ ? ଓଃ— ଆକାଶ, ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ ! ବସୁଧା ଦ୍ୱିଧା ହୋଇ ଯା । ବାପରେ, ଲବଣୀ ଚୋରି କରିଥିଲୁ ବୋଲି ତୋତେ ମୁଁ ବାନ୍ଧି ପକାଇ ଥିଲି ; ସେଥିପାଇଁ କ'ଣ ଆଜି ରାଗ କରିଛୁ ! ମୋ ସଙ୍ଖାଳରେ ଏବେ ଉଠ । ମୁଁ ଆଉ ତୋତେ କଷ୍ଟ କହିବି ନାହିଁ—ନା, ତେବେ ବି ତ ଉଠୁ ନାହିଁ ! ବଜ୍ର ଯଶୋଦା ମୁଣ୍ଡରେ ଖସି ପଡ଼ । ହୃଦୟ ବିଦୀର୍ଣ୍ଣ ହୋଇଯା । — (ମୂର୍ଚ୍ଛା)

ନନ୍ଦ—ଯଶୋଦେ, ଯଶୋଦେ, ପାଗଳ ହେଲ ନା କ'ଣ ? ଧୈର୍ଯ୍ୟ ଧର । ଏଣ୍ଡ ଯେ ଗୋପ କନ୍ୟାମାନେ ଆସିଲେଣି

( ଗୋପକନ୍ୟାମାନଙ୍କର ପ୍ରବେଶ )

ତୁମ୍ଭେମାନେ ତୁମ୍ଭର ବଡ଼ ସ୍ନେହର ନୀଳମଣିକୁ ଥରେ ଡାକ ଭଲା ।

( ଗୋପକନ୍ୟାମାନଙ୍କର ଗୀତ )

ଗୋପକନ୍ୟାଗଣ—

ବ୍ରଜ କୁମୁଦ-କାନନ ଇନ୍ଦୁ ! ଗୋପି ଜନ ହୃଦ-ମୃଦ-ସିନ୍ଧୁ ।
ଆଜି ଗୋପପୁର, କରି ଅନ୍ଧକାର,
(କପାଁ) ମଉନ ଜୀବନ ବନ୍ଧୁ ହେ—ମୋହନ ॥

ତୁମ୍ଭେ ହୋଇଲେ ଏତେ ନିର୍ଦ୍ଦୟ, ଫାଟି ଯିବ ସିନା ଏ ହୃଦୟ,
ନବନା କିଶୋରୀ, ବରଜ ନାଗରୀ,
(ଆଉ) କେମନ୍ତେ ଧରିବେ ଥୟ ହେ—ମୋହନ ॥

ବ୍ରଜବାସୀଙ୍କ ନେତ୍ର ପସରା, ଅଭିମାନ କରିଅଛ ପରା,
କୁହ୍ମ ଶଯ୍ୟନ, ତ୍ୟଜି ଜୀବଧନ,
(ତେଣୁ) ଆଶ୍ରୟ କରିଛ ଧରା ହେ—ମୋହନ ॥

ଆଉ ନ କର ନ କର ହଠ, ଧୂଳି ଶେଯ ତେଜି ଏବେ ଉଠ,
ପିତ ପଟ ପିନ୍ଧା ନଟବର ବେଶ,
(କାହ୍ନାଁ) ଦିଶୁନାହିଁ ଝଟ ଝଟ ହେ—ମୋହନ ॥

( ଗୀତାନ୍ତେ ବଳରାମ ପ୍ରବେଶ )

ବଳରାମ—କୃଷ୍ଣର କୋମଳ ଅଙ୍ଗେ କେ କଲା ଆଘାତ,
କହ ତାତ, କାହିଁ ଗଲା ଦୁଷ୍ଟ ନାଗ ରାଜ ।

ଆରେ ଆରେ ଦୁର୍ବୃତ୍ତ ପିଶାଚ,
ସବଂଶେ ପେଶିବି ତୋତେ ଶମନ ସଦନେ ।
ମୂଷଳର ପ୍ରଚଣ୍ଡ ପ୍ରହାରେ,
ଉପାଡ଼ି ଲଙ୍ଗଳ ମୁନେ ତୋର ବାସସ୍ଥଳୀ
ଭସାଇବି ଯମୁନା ତରଙ୍ଗେ ।
କେ କରିବ ରକ୍ଷା ଏବେ କିଏ ଅଛି ତୋର,
ରାମ କୋପେ ନାହିଁ ଟି ନିସ୍ତାର ।

( ଏହି ସମୟରେ ଆକାଶ ବାଣୀ ହେଲା )

( ଶାନ୍ତ ହୁଅ ପ୍ରଭୁ, ତୁମ୍ଭ କୋପରେ ସୃଷ୍ଟି ନାଶ ଯିବ ।
ବିନତାନନ୍ଦନ ଗରୁଡ଼ଙ୍କୁ ସ୍ମରଣ କର )

ବଳରାମ—ଏ ଶୂନ୍ୟ ବାଣୀ କାହିଁ ହେଲା ! ଆସ୍ତୁ ତେବେ ନାଗ ବୈରୀ ଗରୁଡ଼ଙ୍କୁ ସ୍ମରଣ କରେଁ ।

( ସ୍ମରଣ କଲେ ଗରୁଡ଼ ପ୍ରବେଷ୍ଟ ହେଲେ )

ଗରୁଡ଼—(କରଯୋଡ଼ି) ଏ ଦାସକୁ ଆଜ୍ଞା କରନ୍ତୁ ପ୍ରଭୁ ।

ବଳରାମ—ଶ୍ରୀକୃଷ୍ଣ କାଳୀୟନାଗ ଦଂଶନରେ ମୂର୍ଚ୍ଛାଗତ ହୋଇ ଅଛନ୍ତି । ତୁମ୍ଭେ ଅମୃତ ଦାନ କଲେ ସେ ସଂଜ୍ଞା ଲଭ କରିବେ ।

( ଗରୁଡ଼ ଶ୍ରୀକୃଷ୍ଣଙ୍କ ମୁଖରେ ଅମୃତ ଦାନ କଲେ
ଓ କୃଷ୍ଣ ସଜ୍ଞାଲଭ କଲେ )

ଗରୁଡ଼—ପ୍ରଭୋ, ଆଜ୍ଞା ଦିଅନ୍ତୁ । ଏହି ଦୁର୍ବୃତ୍ତ ନାଗକୁ ସବଂଶରେ ନିକିପକାଇ ବୃନ୍ଦାଯିବି । ଏହା ତାହାର ଦୁଷ୍କୃତିର ଉପଯୁକ୍ତ ଦଣ୍ଡ ହେବ ।

ବଳରାମ—ଧନ୍ୟ, ପକ୍ଷୀରାଜ, ତୁମ୍ଭ ଲାଗି ଆଜି ଶ୍ରୀକୃଷ୍ଣ ଚେତନା ଲଭ କଲେ । କାଳୀୟର କୌଣସି ଅନିଷ୍ଟ ନ କରି ଏବେ ତୁମ୍ଭେ ସ୍ବସ୍ଥାନକୁ ଗମନ କର । ଆଉ ଗୋଟିଏ କଥା, ଏହି କାଳୀ ଦହର ଜଳ ବିଷାକ୍ତ ଅଟେ । ଏଥିରେ ଅମୃତ ସଂଯୋଗ କରି ଏହାର ବିଷ ହରଣ କର । ଆଜିଠାରୁ ଏହା ପବିତ୍ର ତୀର୍ଥରୂପେ ପରିଗଣିତ ହେଉ ।

ଗରୁଡ଼—ପ୍ରଭୁଙ୍କର ଆଜ୍ଞା ଶିରୋଧାର୍ଯ୍ୟ । ( ଗରୁଡ଼ ପ୍ରସ୍ଥାନ କଲେ )

( ପଟକ୍ଷେପ )

## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

( କାଳୀ ହ୍ରଦରେ ନାଗକନ୍ୟାମାନେ ସନ୍ତରଣ କରୁଁ କରୁଁ )

ଗୀତ

ସିନ୍ଧୁ-ବେହାଗ — ଖେମଟା

ନୀଳ ଲହରୀ ।
ଦୋହଲି ଆସେ ଖେଳି ଖେଳି ଚକା ଭଉଁରୀ ।
ଝୁଲି ଝୁଲି ଉଲ୍ଲାସେ ମାତି,
ବୁଲି ବୁଲି ଫୁଲଏ ଛାତି,
ତୁଙ୍ଗ ତୁଙ୍ଗ ଖର ତରଙ୍ଗ ସୁଖେ ବିହରି ।
ନାଚେ ତେଜି ତାଳକୁ ତାଳ;
ବାନ୍ଧି ଦିଏ ମୁକ୍ତା ମାଳ,
ଯୁକ୍ତ ବେଣୀ ମୁକ୍ତ କରି ଆସ ପହଁରି ।

(ନାଗ କନ୍ୟାଗଣ ଗୀତ ଗାଇ
ପହଁରି ପହଁରି ଅଦୃଶ୍ୟ ହୋଇଗଲେ)

### ଦ୍ୱିତୀୟ ଦୃଶ୍ୟ

( ନିଷ୍କାସିତ ଅସି ହସ୍ତେ ନୀଳାର ହସ୍ତ ଧାରଣ କରି
କାଳୀୟ ପ୍ରବେଷ୍ଟ ହେଲେ )

କାଳୀୟ—ନୀଳା, ରାକ୍ଷସୀ, ତୋହରି ଲାଗି ଆଜି ନାଗ କୁଳର ଏ ଲାଞ୍ଛନା । ବିଶ୍ୱାସଘାତିନୀ, ଗୃହଚ୍ଛିଦ୍ର ତୁହି ଶତ୍ରୁ ନିକଟରେ ପ୍ରକାଶ କରିଛୁ । ତୋହରି ମନ୍ତ୍ରଣାରେ ଗରୁଡ଼ ଆସି ମୃତ ଶତ୍ରୁକୁ ପ୍ରାଣ ଦାନ କରିଅଛି । ନାଗବଂଶ ଧ୍ୱଂସ କରିବାକୁ ବସିଛୁ । ଅନେକ ସହ୍ୟ କଲିଣି, ଆଉ ନା—ଧୈର୍ଯ୍ୟର ସୀମା ଅଛି, ସହିଷ୍ଣୁତାର ମାତ୍ରା ଅଛି ।

ନୀଳା—ପିତା, ପିତା !

କାଳୀୟ—ପିତା ! ପିତା କିଏ ନୀଳା ? ନା, ମୁଁ ପିତା ନୁହେଁ—ପିଶାଚ । ରାଜ ଧର୍ମ, ରାଜ ଧର୍ମ । ରାଜ ଧର୍ମ ବଡ଼ କଠିନ ନୀଳା । ସେ ସ୍ନେହର ମମତା ରଖେ ନାହିଁ—ପ୍ରୀତିର ମର୍ଯ୍ୟାଦା ରଖେ ନାହିଁ । ଆଜି ସେହି ପିତୃ ସ୍ନେହରେ ଜଳାଞ୍ଜଳି ଦେଇ, ସେହି ପ୍ରୀତି ମସ୍ତକରେ ପଦାଘାତ କରି ଏ ଘୋର ଅବମାନନାର ପ୍ରତିଶୋଧ ନେବି । ଏ

କଳଙ୍କ ପ୍ରକ୍ଷାଳନ କରିବ, ତୋହରି ରକ୍ତରେ । ଶିଶୁ-ହତ୍ୟା ମହାପାପର ପ୍ରାୟଶ୍ଚିତ୍ତ, କନ୍ୟାର ଶୋଣିତରେ ପିତାର ତର୍ପଣ !

( ରାଜଲକ୍ଷ୍ମୀ ପ୍ରବିଷ୍ଟ ହେଲେ )

ରାଜଲକ୍ଷ୍ମୀ—ଆରେ ଆରେ ମଦାନ୍ଧ ବର୍ବର,
ଏହି କି ତୋ ରାଜଧର୍ମ !
ଏଥିପାଇଁ କରୁ ଏତେ ଆତ୍ମ ଅହଙ୍କାର !
ଗୋଲୋକ ବିହାରୀ ହରି ନର ରୂପ ଧରି,
ଲୀଳାଛଳେ ଅବତରି ଏବେ ଗୋପପୁରୀ,
ପଦ୍ମ ସରୋବର ମଝରେ, ଖେଳଲେ ବିହରି ;
ନ ପାରିଲୁ ଚିହ୍ନି ତାଙ୍କୁ ଗର୍ବର ପ୍ରଭାବେ ।
ପୁଣ୍ୟବତୀ ଲକ୍ଷ୍ମୀ ସ୍ୱରୂପିଣୀ,
କୃଷ୍ଣ-ପ୍ରୀତିମତି ମାଳା, ନାଗକୁଳ ମଣି,
ପିତା ହୋଇ, ରଜା ହୋଇ କେଉଁ ଦୋଷେ ତୁହି,
ନାରୀ ବଧ ମହାପାପେ ବଳାଇଛୁ ମନ ?
ରେ ଅଧମ, ନାଗକୁଳ ରାଜଲକ୍ଷ୍ମୀ ମୁହିଁ,
ଆସିଅଛି ତୋହଠାକୁ ଦେଖି ଅମଙ୍ଗଳ,
ରେ ରେ ଦୃପ୍ତ ନାଗ,
ଘେନ ଘେନ ମୋର ଉପଦେଶ,
ଦୁଷ୍ଟ ବୁଦ୍ଧି ବଶେ,
ଆପଣାର ସର୍ବନାଶ ନ କର ବରଣ ।

କାଳୀୟ—ମାଳା, ମାଳା, ଏବେ ଉପାୟ କଣ ମାଳା ? ଏ କି ଇନ୍ଦ୍ରଜାଲ !

ମାଳା— ଉପାୟ ? ଏକମାତ୍ର ନନ୍ଦନନ୍ଦନ ଜନାର୍ଦ୍ଦନଙ୍କ ଛଡ଼ା ଆଉ ଅନ୍ୟ ଉପାୟ କ'ଣ ଅଛି ପିତା ?

କାଳୀୟ—ମୁଁ କିଛି ବୁଝି ପାରୁ ନାହିଁ । ସେହି ଗୋପବେଶୀ ଅପୂର୍ବ ବାଳକ କିଏ ମା ? ଏ କି ମାୟା ମାଳା ?

ମାଳା— ଆଉ ବୁଝିବାକୁ ବାକି କ'ଣ ? ପକ୍ଷୀରାଜ ଗରୁଡ଼ ଯାହାଙ୍କର ଆଜ୍ଞାକାରୀ, ସେ ଆଉ କିଏ ହୋଇପାରେ ପିତା ! ଆମ୍ଭେମାନେ ଜୀବ, ସେହି ଏକା ପରମାତ୍ମା । ତାଙ୍କ ସହିତରେ ଜୀବର ଅନନ୍ୟ ଅଭେଦ୍ୟ ସମ୍ବନ୍ଧ । ଜୀବ ଦାସ, ସେହି ପ୍ରଭୁ । ଜୀବ ପ୍ରକୃତି, ସେହି ପୁରୁଷ । ଜୀବ ସ୍ତ୍ରୀ, ସେହି ତାହାର ଏକମାତ୍ର ସ୍ୱାମୀ । ସେ ଯେ ଜଗତର ସ୍ୱାମୀ, ପିତା ।

କାଳୀୟ—ମାଳା, ମୋର ବୁଦ୍ଧି ଭ୍ରଷ୍ଟ ହେଲଣି, ଜ୍ଞାନ ହଜି ଗଲଣି, ବିବେକ ଶୂନ୍ୟ ହେଲଣି । ତୁହି କହି ଦେ ମା, ମୁଁ କଣ କରିବି— କହ କହ ମାଳା, ନାଗବଂଶ ରକ୍ଷାର ଆଉ ଉପାୟ କଣ କହ । ତୁ କନ୍ୟା ହୋଇ କନ୍ୟାର କର୍ତ୍ତବ୍ୟ ପାଳନ କରିଛୁ ; ନାରୀ ହୋଇ ନାରୀର ଧର୍ମ ରକ୍ଷା କରିଛୁ କିନ୍ତୁ ମୁଁ ପିତା ହୋଇ ପିତାର କର୍ତ୍ତବ୍ୟ କରିନାହିଁ ; ପ୍ରଭୁ ହୋଇ ପ୍ରଭୁର ମର୍ଯ୍ୟାଦା ରଖିନାହିଁ । ତୁ ପୁଣ୍ୟବତୀ ମାଳା— ତୁ ଭାଗ୍ୟବତୀ ମାଳା ମୁଁ ପାପିଷ୍ଠ, ତୋ ପରି କନ୍ୟାର ଜନକ ହେବାର ଅଯୋଗ୍ୟ । ମୋର ପାପର ପ୍ରାୟଶ୍ଚିତ୍ତ କାହିଁ ମାଳା—ମୋର ଉନ୍ମତ୍ତତାର ଶାନ୍ତି କାହିଁ ମାଳା—ମୋର ଅପରାଧର କ୍ଷମା କାହିଁ ମାଳା ?

ମାଳା— ପିତା, ପିତା, ଏଥିପାଇଁ ଏତେ କାତର ହେଉଛ କାହିଁକି ? ଏହା ସେହି ଲୀଳାମୟଙ୍କର ଲୀଳା ମାତ୍ର । ସେହି ଅଭୟ-ପଞ୍ଜର, ଶରଣରକ୍ଷଣ ବାନାର ଆଶ୍ରୟ ନେଲେ ସମସ୍ତ ସନ୍ତାପ ଦୂର ହୋଇ ଯିବ । ତୁମ୍ଭେ ଶତଭାର ପଦ୍ମ ତୋଳି ତାଙ୍କର ଶ୍ରୀଚରଣ ତଳେ ଅର୍ପଣ କରି କ୍ଷମା ଭିକ୍ଷା କର ।

କାଳୀୟ—( ଚିନ୍ତିତ ଭାବରେ କିଛି କ୍ଷଣ ରହି ) ନା ନା, ଲୀଳା ଖାଲି ତ ସେତିକି ନୁହେଁ । ଆହୁରି କିଛି ମୋର ଦେବାର ଅଛି । ( ମାଳାର ହାତ ଧରି ) ସେ ବଡ଼ ଅମୂଲ୍ୟ ରତ୍ନଟି ମୋର ପ୍ରାଣ ଠାରୁ ପ୍ରିୟତର । ବଡ଼ ସ୍ନେହର, ବଡ଼ ଆଦରର, ବଡ଼ ଯତ୍ନର ଧନ ।

ମାଳା— ( ଯାଉଁ ଯାଉଁ ସ୍ୱଗତ ) ଏତେ ଦିନେ ଏ ଦାସୀର କାତର ପ୍ରାର୍ଥନା କ'ଣ ଶୁଣିଲ ପ୍ରଭୁ !

( ଉଭୟେ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

ଯଶୋଦା—ହେଇ ଦେଖୁଛ ନା, ମୋ କଳାମାଣିକ ଉଠି ବସିଲାଣି ।

ନନ୍ଦ— ମୁଁ କହୁଥିଲି ପରା ସେ କିଛି ନୁହେଁ । ତୁମେ ଖାଲି ତୁଚ୍ଛାଟାରେ ଏତେ ବ୍ୟସ୍ତ ହେଉଥିଲ ।

କୃଷ୍ଣ— ମା, ବାପା, ତୁମେ ସମସ୍ତେ ଏଠିକି ଆସିଛ କାହିଁକି ? ମୋତେ ବା କାହିଁକି ଘେରି ବସିଛ । ମୁଁ କଣ ଶୋଇ ପଡ଼ିଥିଲି ମା ?

ନନ୍ଦ— ହଁ ବାପ, ତୁ ଏଠି ଏକୁଟିଆ ଶୋଇ ପଡ଼ିଥିଲୁ । ଏବେ ଚାଲ ଘରକୁ ଯିବା ।

କୃଷ୍ଣ— ଆମେ ତ କାଳୀ ଦହରେ ପଦ୍ମଫୁଲ ତୋଳିବାକୁ ଆସିଛୁଁ । ଫୁଲ ନେଇ ନ ଗଲେ କଂସ ତେଣେ ଦଣ୍ଡିବ ପରା !

ନନ୍ଦ— ଫୁଲତୋଳାରେ ଆଉ ଆମର ଦରକାର ନାହିଁ । ଚାଲ ବାପ, ସମସ୍ତେ ଘରକୁ ଯିବା ।

କୃଷ୍ଣ— ଆମର ଫୁଲତୋଳା ତ ସରି ନାହିଁ । ମୁଁ ପୁଣି କାଳୀ ଦହରେ ପଶିବି । ତୁମେ ମୋତେ ମନା କରୁଛ କାହିଁକି ବାପା ?

ବଳରାମ—କହିଲେ ରେ, ପୁଣି ତୋତେ କିଏ ଛାଡ଼ି ଦେବ ? ତୁ ପହଁରି ପହଁରି ପଦ୍ମ ତୋଳିବା ବେଳରେ କାଳୀୟ ନାଗ ତୋତେ ଦନ୍ତାଘାତ କରିଥିଲା । ତୁ ତାରି ବିଷ ଜ୍ୱାଳାରେ ମୂର୍ଚ୍ଛାଗତ ହୋଇଥିଲୁ ? ଗରୁଡ଼ ଆସି ଅମୃତ ଦାନକରି ସେ ମୂର୍ଚ୍ଛା ଭାଙ୍ଗିଲେ ।

କୃଷ୍ଣ— ସତେ ଭାଇ, ମୁଁ ତ ଏତେ କଥା ଜାଣି ନ ଥିଲି,
ଏଡ଼େ ଦର୍ପ ବର୍ବର ନାଗର !
କେଉଁ ବଳେ କୃଷ୍ଣ ସଙ୍ଗେ ବୈରିଭାବ ଧରି,
କୃଷ୍ଣ ଅଙ୍ଗେ କରିଛି ଦଂଶନ ?
ବିଷମଦେ ହୋଇଛି ସେ ମତ୍ତ,
ମଣିଛି ଜଗତେ ତାର ଅଖଣ୍ଡ୍ୟ ପ୍ରତାପ ।
ସେହି ଗର୍ବ ଚୂର୍ଣ୍ଣ ଆଜ କରିବି ତାହାର ।
କିନ୍ତୁ, ଯଦି ଶଠୁଭାବେ ପୁଣି କରେ ଛଳ,
ଦୁଷ୍ଟ ନାଗକୁଳ,
ନିଷ୍ପେଷିତ କରିଦେବ ପେଶି ସୁଦର୍ଶନ ।
ଦେଖେ କିଏ କରେ ରକ୍ଷା କୃଷ୍ଣ କୋପାନଳୁଁ ।
( କାଳୀୟ ମାଳାର ହାତ ଧରି ପ୍ରବିଷ୍ଟ ହେଲେ )

କାଳୀୟ—( କର ଯୋଡ଼େ ଉପସ୍ଥିତ ହୋଇ )
ଚକ୍ରଧର,
କ୍ରୋଧାନଳ ସମ୍ବର ସମ୍ବର,
ଇଚ୍ଛା ମାତ୍ରେ ଯାର
କୋଟି ବିଶ୍ୱ ହୋଇପାରେ କ୍ଷଣେ ଭସ୍ମୀଭୂତ,
ଶୋଭେ କି ତାହାର କୋପ କ୍ଷୁଦ୍ର ନାଗ ପ୍ରତି ?
ଯତନେ ରଖିଥିଲି ସଞ୍ଚି ବହୁକାଳୁଁ,
ତୋହ ପଦ ପୂଜା ପାଇଁ ଏହି ପୁଷ୍ପବନ ।
ଶତ ଭାର ସଜ ପୁଷ୍ପ ଆଣିଅଛି ଦାସ,
ଭେଟିବାକୁ ତୋହ ସନ୍ନିଧାନେ ।
କମଳା-ସେବିତ ସେହି କୋମଳ ଚରଣେ,
କରିଛି ଅଜ୍ଞାନେ ଦୋଷ,
ହୃଷୀକେଶ,
କାଳୀ ନାଗ ଶତ ଅପରାଧୀ,
କୃପାନିଧି—କ୍ଷମାକର ବାରେ ।
( କାଳୀୟ ଦଣ୍ଡବତ ପ୍ରଣିପାତ କଲେ )

କୃଷ୍ଣ— ( ସ୍ୱଗତ ) ଭକ୍ତର ଅନ୍ତର ବାସନା ମୋତେ ପୂରଣ କରିବାକୁ ହେବ । ପ୍ରେମମୟୀ, ଭାଗ୍ୟବତୀ, ନାଗରାଜ ନନ୍ଦିନୀ ମାଳାର କାତର ପ୍ରାର୍ଥନା ରକ୍ଷା କରିବାକୁ ହେବ । ତେବେ କାଳୀୟର ଗର୍ବ ଗଞ୍ଜନ ଛଳରେ ତାହାରି ପ୍ରତି କୃପା ଦଣ୍ଡ ବିଧାନ କରିବ ।
ପିତା, ଏ ଅପୂର୍ବ ବ୍ୟକ୍ତି କି କାଳୀ ନାଗ ?
ମୋର ଇଚ୍ଛା ହେଉଛି ଏହାର ପ୍ରଶସ୍ତ ସ୍କନ୍ଧରେ ଚଢ଼ନ୍ତି ।
( କୃଷ୍ଣ କାଳୀୟ ମସ୍ତକରେ ଛିଡ଼ା ହେଲେ )

କାଳୀୟ—ନାଗ କୁଳେ ଜନ୍ମ ମୋର ହୋଇଲା ସଫଳ,
ସ୍ୱର୍ଗ ମର୍ତ୍ତ୍ୟ ରସାତଳେ,
କିଏ ଅଛି ଏଡ଼େ ଭାଗ୍ୟବାନ ?
ବ୍ରହ୍ମା, ଶିବ, ପୁରନ୍ଦର, ଯୋଗୀନ୍ଦ୍ର ମଣ୍ଡଳୀ,
ଯେଉଁ ପଦ ଧ୍ୟାନେ ସଦା ରତ,
ଯେଉଁ ପଦ ସେବା ଲାଗି କମଳା ଲାଳସୀ,
ଧରିଛି କାଳୀୟ ଶିର ସେ ଚରଣ ବେନ ।
ପ୍ରଭୁ, ପ୍ରଭୁ, ଦୟାମୟ ବାଞ୍ଛା-କଳ୍ପତରୁ,
ମଦମତ୍ତ କାଳୀୟର ଦର୍ପନାଶ ଛଳେ,
ବିହିଲ ଏ କୃପାଦଣ୍ଡ, ଦଳି ତା ଗରବ,
କିନ୍ତୁ ନାଥ, ବଢ଼ିଗଲା ଗୌରବ ଦାସର ।
( ଏହି ସମୟରେ ମାଳା ପ୍ରଭୃତି ନାଗବାଳାଗଣ ପୁଷ୍ପାଞ୍ଜଳି, ଧେନି ଉପସ୍ଥିତ ହେଲେ )
ଦୀନବନ୍ଧୁ, ଏହି ଭିକ୍ଷା ଶ୍ରୀ ଚରଣେ ତୋର,
ଦେଲି ଉପହାର,
ଅନୂଢ଼ା ଦୁହିତା ମୋର ମାଳା ରୂପବତୀ,
ଚରଣ କିଙ୍କରୀ ରୂପେ କଲେ ତୁ ଗ୍ରହଣ,
ଆଜଠାରୁ ପୂର୍ଣ୍ଣ ହେବ କାଳୀୟ ତପସ୍ୟା,
ନାଗ ଜନ୍ମ ଧନ୍ୟ ହେବ ମୋର ।
( ମାଳା ନତଜାନୁ ହୋଇ ଚରଣରେ ପୁଷ୍ପାଞ୍ଜଳି ପ୍ରଦାନ କଲେ ଓ ନାଗ ବାଳାଗଣ ସଙ୍ଗୀତ ଗାୟନ କଲେ )

ନାଗ କନ୍ୟାଗଣ— ( ଗୀତ )
ଜୟ ଜୟ ଯଦୁ ନନ୍ଦନ, ନିଖିଳ ଜଗତ ବନ୍ଦନ
ଜୟ ନବଘନ ବରଜ ମୋହନ ରାଧିକା ହୃଦ ଚନ୍ଦନ ॥ ଘୋଷା ॥

## କାଳୀୟ ଦଳନ

କାମ ଦରପ ଗଞ୍ଜନ                    କାଳୀୟ ମଦ ଭଞ୍ଜନ
ଅଞ୍ଜନ ବରଣ କଞ୍ଜ ନୟନ, ଗୋପୀଜନ ମନ ରଞ୍ଜନ ॥

କୃଷ୍ଣ—

ଭକ୍ତ ମୋ ଜୀବ ଜୀବନ,                    ଭକ୍ତ ମୋହର ପ୍ରାଣ ଧନ
ମୁହିଁ ଶରଦନ ଭକତ ଅଧୀନ, ଭକ୍ତ ଦୁଃଖ କରେ ଖଣ୍ଡନ ॥

ନାଗ କନ୍ୟାଗଣ—

ନଟବର ଘନ ସୁନ୍ଦର                    କେଳି କାନନ କୁଞ୍ଜର
ମଧୁର ମୁରଲୀ ବାଦନ ପର, ନାଶ ହୃଦ-ମୃଦ ସାଧନ ॥

କୃଷ୍ଣ—

ଭକତି ଭାବରେ ଯେବା ଭାବେ    କୃପାକରେଁ ତାକୁ କେଉଁ ଭାବେ
ଭକ୍ତ ମୋହର ପ୍ରାଣୁଁ ପ୍ରିୟତର ଭକ୍ତ ମୋ ହୃଦ ମଣ୍ଡନ ॥

—( ଡ୍ରପ୍ )—



# ବେଶବଦଳା

( 'ବରୁଣ ବିଜୟ' ଅନ୍ତର୍ଗତ ଶ୍ରୀକୃଷ୍ଣଙ୍କ ବେଶ ପରିବର୍ତ୍ତନ )

( ଶ୍ରୀମତୀ, ଲଳିତା ଓ ବିଶାଖାଙ୍କ ପ୍ରବେଶ )

ଶ୍ରୀମତୀ— ( ଗୀତ )

ସଜନି, କହ ଗୋ ବାରେ କାହିଁ ରହିଲେ ମୁରଲୀପାଣି,
(ମୋର) ଲାଜଭୟ ଦେଲିଣି ସାରି ଗୁହିଁ ଗୁହିଁ ବାଙ୍କ ଗୁହାଣି ।
ସେ ନବ ନୀରଦ ଶ୍ୟାମ,
ରୂପ ଜିଣି କୋଟି କାମ,
କି ଦୋଷେ ଏ ଦାସୀ ପ୍ରତି ହୋଇଲେ ବାମ
ଶୁଣି ତାଙ୍କ କପଟ ଗୀତ ଶଠ ପିରତି
ହୃଦୟ ହେଉଛି ହାଣି । ୧ ।
ସୁନ୍ଦର ଚନ୍ଦ୍ରିକା ଚୂଡ଼ା .ଅବଳାଙ୍କ ଘରବୁଡ଼ା
କୁଳବତୀ କୁଳମାନ ଧରମବୁଡ଼ା ।
କହ ସଖି କେଉଁ କଣୋଣି ଯିବ ପ୍ରାଣୋଣି
ଆଖିରେ ଦେଖନ୍ତି ମୋହନ ଠାଣି । ୨ ।
ନୀପମୂଳେ ତ୍ରିଭଙ୍ଗ ହୋଇ
ଧୀରେ ଧୀରେ ବେଣୁ ବଜାଇ
ଯୁବତୀଙ୍କ ମତିଗତି କଲାଣି ବାଇ,
ଗଢ଼ିଅଛି କେଉଁ ବିଧି ଲାବଣ୍ୟ ନିଧି
କେଉଁ ସରଗ ସୁଷମା ଗୁଣି । ୩ ।

ଲଳିତା—ସଖି, ଯେତେହେଲେ ସେ ଗଉଡ଼ ଟୋକା ଆମ ସଙ୍ଗରେ କେତେ ଛଳ କରିବ—ବେଳେ ଦେଖିବ ! ତମେ ଅଜ୍ଞାନ ଲୋକ ବୋଲି ତମକୁ ଛଇ ଦେଖାଇ ମଜାଇ ନେଉଛି । ମୋ ପରି ବ୍ୟକ୍ତି ହୋଇଥିଲେ ତା' ଫୁରିଫାରି ଜୁରିଜାରି ଏକା ଦିନକେ ଭାଙ୍ଗି ଦିଅନ୍ତି । ଟାଣୁଆ ଦେଖିଲେ ପାଖ ପଶନ୍ତା ନାହିଁ ।

ଶ୍ରୀମତୀ—ଯାହା ହେଉ ସଖି, ଥରେ ମାତ୍ର ତାଙ୍କୁ ଦେଖିବି । ଏତିକି ମୋର ଜୀବନର ସାଧ । ସେ ଯେଉଁଠି ଅଛନ୍ତି ସେଠିକି ମୋତେ ନେଇଯାଅ ସଖି ।

ଲଳିତା—ତୁମେ ଯିବ ତା' ଠାକୁ ? କି—ଆମର ଯଦି କରାମତି ଥିବ ତ ସେ ନିଜେ ଆସି ତମ ଗୋଡ଼ ଧରିବ ।

ଶ୍ରୀମତୀ—ନା ସଖି, ମୁଁ ଆଉ ବିଳମ୍ବ ସହି ପାରିବି ନାହିଁ । ଘଡ଼ି ଘଡ଼ି ମୋତେ ଯୁଗ ଯୁଗ ପରି ଲାଗୁଛି ।

ଲଳିତା—ଏ କ'ଣ ସେପରି ଉଚ୍ଛୁଳା ହେବା କାମ ? ତୁମେ ହେଲ ରଜାଘର ଝିଅ । ଯଦି ଯିବ ତ ସେମିତିକା ପରିପାଟୀ ବେଶଭୂଷଣ ନ ହୋଇ ଯିବ କିପରି ? ହେଇଟି ଦେଖିଲଣି କିଏ ଗୋଟିଏ ଆସୁଛି ଏଣିକି ।

( ବାରିକାଣୀ ବେଶରେ କୃଷ୍ଣଙ୍କର ପ୍ରବେଶ )

ଶ୍ରୀକୃଷ୍ଣ— ( ଗୀତ )

କେ ନେବ ରଙ୍ଗ ଅଳତା—( ଆ ଆ ଆ )
ନେଲେ ଜାଣିବ ଯୁବାଙ୍କୁ ଜିଣିବ;
ମଣିବ ଗୋ ତେବେ ଯିନା ସତ ମିଛ ମୋହ କଥା ।
କେ ଜାଣିଛି ମୋର ଅଳତା ମରମ
କରି ଦେବ ସରୁ ଗୁରୁ କୋଟିକମ
ଛାଟିବେ ରସିକେ ହଟି, ପାଦତଳେ ଲୋଟି ମଥା ।

ଲଳିତା—ଗୋ ବାରିକ ଝିଅ, ଗୋପପୁରରେ ତୋତେ ତ ମୁଁ କେବେ ଦେଖି ନ ଥିଲି । ତୁ କ'ଣ ନୂଆ ବାରିକଆଣୀ କି ?

ବାରିକଆଣୀ—ହଁ, ଜେମା ଦେଈଙ୍କ ନାଁ ଶୁଣି ଆସିଛି ।

ଲଳିତା—ହଉ, ଆମ ସଖି ଆଜି ବିଜେ କରୁଛନ୍ତି । ତାଙ୍କ ପାଦରେ ଭଲ କରି ଅଳତା ଦେଇ ପାରିବୁ ଭଲା ?

ବାରିକଆଣୀ—ମୋର ତ ସେଇ ବେଉସା । ସେଇଥି ପାଇଁ ଆସିଛି । ମୋ ଅଳତାର ଗୁଣ ନେଲେ ଜାଣିବ ।

ଲଳିତା—ସଖି, ପାଦ ଦେଖେଇବଟି ।

ଶ୍ରୀମତୀ—ନାଇଁ ନାଇଁ ମୁଁ ପାଦ ଦେଖାଇବି ନାହିଁ । କିଏ କୋଉ ଗୋଟାଏ ।

ବିଶାଖା—ସେ କଥା ହବ ନାଇଁ ( ଜୋର କରି ବସାଇ ) ବସ ଏଠି । ଆହା, ସତେ ଯେମିତି ମନ ନାହିଁ ।

ଶ୍ରୀମତୀ—ଯାଃ—ବଡ଼ ଦୁଷ୍ଟ ବିଶାଖା ।

ବିଶାଖା—ଆଣିବୁଟି ଲୋ ବାରିକଆଣୀ ତୋ ସଜ !

( କୃଷ୍ଣ ଶ୍ରୀମତୀଙ୍କର ପାଦ ଦୁଇଟି ଧରୁଛନ୍ତି )

ବାରକଆଣୀ—ଆହା, କି ସୁନ୍ଦର ପାଦ—ମନ ହେଉଛି, ପାଦ ଦୁଇଟିକି ଗ୍ରୀବା ଉପରେ ଥୋଇ ଜନ୍ମ ଜନ୍ମ ସେବା କରନ୍ତି । ଏ ଭଳିଆ ପାଦ ନ ହୋଇଥିଲେ—

( ଭିତରୁ କୁଟିଳା ଚିତ୍କାର କଲେ )

କୁଟିଳା—ଗୋ ବୋହୂ, ଆଜି ତମ ପୁରରେ ତ ଭାରି ଫୁସୁର୍ ଫାସର୍ ଚାଲିଛି—କ'ଣ ହୋଉଛି କି ?

( ସମସ୍ତେ ଚମକି ପଡ଼ିଲେ )

ବାରକଆଣୀ—ମୁଁ ଏବେ ଯାଉଛି ସାନ୍ତାଣୀ !

ବିଶାଖା—କଲେ, ପୁରସ୍କାର ନ ନେଇ ଚାଲି ଯିବୁ ନା ?

ବାରକଆଣୀ—ପୁରସ୍କାର କ'ଣ ପାଇଲି ନାହିଁ କି ? ଯଉଁ ପାଦ ମୁଁ ଆଜି ଛୁଇଁ ପାରିଲିଣି ସେ ତ ମୋର କୋଟିନିଧି । ତାହା-ଠାରୁ ବଳି କି ପୁରସ୍କାର ଆଉ କ'ଣ ଜଗତରେ ଅଛି !

( ପ୍ରସ୍ଥାନ )

ଲଳିତା—ମଲ, ସତକୁ ସତ ପଳାଇଲ ତ । ଏ କୁଟିଳାଙ୍କ ଦାଉରେ ଏଠିକି ଭଲ ଲୋକ ମନ୍ଦ ଲୋକ କେହି ଆସିବେ ନାହିଁ ।

ବିଶାଖା—ବାରକଆଣୀ ତ ଭାରି ବଡ଼ାଣିଆ କରୁଥିଲା, ଦେଖେଁ, ଦେଖେଁ, ଶ୍ରୀମତୀଙ୍କୁ କପର ସରୁ ଅଳତା ଦେଇଛି ।

( ଶ୍ରୀମତୀଙ୍କ ପାଦତଳ ଦେଖିବା )

ଦେଖିଲଣି, ଦେଖିଲଣି, କି ଅକାଳକଥା ହେଲିଣି ! ଲଳିତେ ଦେଖିଲଣି, ଏ କଣ ଲେଖିଛି । ଏ ବଡ଼ ଛଟକା ବାରକଆଣୀ ଟୋକା ତ ।

ଶ୍ରୀମତୀ—କ'ଣ, କ'ଣ ଲେଖିଛି କି ଲଳିତେ ?

ଲଳିତା—( ପାଦ ତଳ ଦେଖି ) ସେ ତ ତୁମର ମନକଥା ଲେଖିଛି । ଲେଖିଛି—ଶ୍ୟାମ ଶ୍ୟାମ । ଆହା, ପାଦ ତଳ୍ଟାରେ ସେ ନାମ କମିତି ଲେଖିଲା କୁହ ନ !

ଶ୍ରୀମତୀ—ସତେ ନା ? ଛି—ଲିଭାଇ ଦିଅ ଲିଭାଇ ଦିଅ ସଖି ! ଗୋପପୁର ଯାକ ତ ସମସ୍ତେ ମୋର ସଙ୍ଗରେ ଟାପରା କରୁଛନ୍ତି—ଶେଷକୁ କି ଏ ବାରକଆଣୀ ଥିଲା ? ଏ ଲେଖା ପୋଛି ଦିଅ ଲଳିତେ !

ବିଶାଖା—ନାହିଁ, ନାହିଁ, ପୋଛ ନାହିଁ ! ବାରକଆଣୀ ଠିକ୍ ଲେଖିଛି । ମୋ ମନକୁ ଖୁବ୍ ଆସିଛି । ଏଥିରୁ ଜଣାଗଲା କି ଶ୍ୟାମସୁନ୍ଦର ତମ ପାଦତଳକୁ ଯୋଗ୍ୟ ।

ଶ୍ରୀମତୀ—ଛି, ଛି, ଏଭଳିଆ କଥା କୁହନାହିଁ । ତାଙ୍କର ରଙ୍ଗ ଚରଣକୁ ସେ ଅଧୀନା ସବୁ ବେଳେ ଆଶା କରି ବସିଛି ।

ଲଳିତା—ଯାହାହେଉ ଦେଖାଯିବ ବଳେ, କିଏ କାହା ରଙ୍ଗ ଚରଣକୁ ଆଶା କରେ । ଏ ପଦ୍ମ ପାଦ ଦେଖିଲେ, ତାହାର ପରି ପଣେ କଳାଭ୍ରମର ଲଟଲଟ ହୋଇ ଲୋଟି ପଡ଼ିବେ ।

ବିଶାଖା—ଆହୁରି ଗୋଟିଏ କିଏ ପୁଣି ଆସିଲାଣି !

( ଗୀତ ଗାଇ ଗାଇ ମାଲୁଣି ବେଶରେ ଶ୍ରୀକୃଷ୍ଣ ପ୍ରବେଶ )

ଶ୍ରୀକୃଷ୍ଣ— (ଗୀତ)

ଆଣିଛି ନାନା ଜାତି ଫୁଲ
ଫୁଲ ମୋର ଅମୂଲ ମୂଲ ।
ଯେବେ ଥିବେ କେହି ସେହିପରି ରସିକା,
ବିନା ମୂଲେ ତାହା ପାଶେ ହେବି ମୁଁ ବିକା,
(ଦେଖ) ମୋର ଏ ସୁନ୍ଦର ହାର
(ଗଳେ) ପିନ୍ଧାଇ ଦେବି ମୁଁ ତାର ।
ଜାଇଯୁଇ ମାଳତୀ ମଲ୍ଲୀ କୁନ୍ଦ ସେବତୀ
ଛୁଇଁଅନା ଟଗର ଝୁରି ହେବେ ନାଗରୀ
ଆଣିଛି—ନାନା ଜାତି ଫୁଲ
ଫୁଲ ମୋର ଅମୂଲ ମୂଲ ।

ଲଳିତା—ବାହା ବାହା—ଏଡ଼େ ସୁନ୍ଦର ଫୁଲଗୁଡ଼ାଏ ତୁ କୁଆଡ଼ୁ ପାଇଲୁ ଲୋ ? ତୁ କି ଘର ଝିଅ କହିଲୁ ?

ମାଲୁଣୀ—ମୁଁ ମାଳୀ ଘର ବୋହୂ ।

ଲଳିତା—ବୋହୂ ? ତୋ ମୁଣ୍ଡରେ ସିନ୍ଦୁର ନାହିଁ ତ ?

ବିଶାଖା—ବୁଦ୍ଧି ପାଇଲ ନାହିଁକି ଲଳିତେ, ସେ ପରା ନୂଆ ଝିଆଝିଅଣୀ ସିନ୍ଦୂର ଦେବାକୁ ପାଶୋରି ଯାଇଛି ।

ଲଳିତା—ହଉ ହେଲା ହେଲା, ତୋ' ଘର କେଉଁ ଗାଁ କହିଲୁ ବହୂଟି ?

ମାଲୁଣୀ—ମୋ ଘର ଏଇଠି—ଏଇ ଗୋପ ନଗରରେ ।

ଲଳିତା—ଗୋପ ନଗରରେ ତ କାହିଁ ତୋତେ ମୁଁ କେବେ ଦେଖି ନଥିଲି ।

ବିଶାଖା—ଦେଖିବ କେମିତି, ସେ ପରା ନୂଆ ଘର କରିବାକୁ ଆସିଛି ।

ଲଳିତା—ତୋର ଆଉ ଅନନ୍ତ କିଏ ?

ମାଲୁଣୀ—ମୋର ଶାଶୁ ଶଶୁର, ଆଉ ଆଉ ସମସ୍ତେ ଅଛନ୍ତି ଯମୁନା-କୂଳରେ ତାଙ୍କର ଫୁଲ ବଗିଚା ଅଛି । ଆମେ ନନ୍ଦରାଜାଙ୍କ ଘରେ ଫୁଲ ଯୋଗାଉଁ ।

ଶ୍ରୀମତୀ—ଏଁ—ଏଁ—ନନ୍ଦରାଜାଙ୍କ ଘରେ ? ତେବେ ତ—

ଲଳିତା—ହଁ, ଠିକ୍ କଥା, ନନ୍ଦରାଜାଙ୍କ ଘରେ ସେ ଯଉଁ ବାଙ୍କ ଚୂଳିଆ କାଳିଆ ଟୋକାଟା ଅଛି, ତାକୁ ଦେଖିଛୁ ନା ?

ମାଲୁଣୀ—ଦେଖିବ ନାହିଁ ନା ? ମୋହର ଫୁଲ ନ ହେଲେ ସେ ଆଜ କନ୍ଥ ଦେଖିବେ ନାହିଁ । ଚମ୍ପା ଫୁଲକୁ ଏକା ତାଙ୍କର ଭାରି ଶରଧା । କେତକୀ ପାଖୁଡ଼ାଟିଏ ପାଇଲେ ଚୂଡ଼ାରେ ଗୁଞ୍ଜନ୍ତି ।

ଲଳିତା—ଦେଖିଲ, ଦେଖିଲ ଗୋ କେତକୀବରଣୀ, ମୁଁ ଯାହା କହୁଥିଲି ସେଇଆ ହେଲା ନା ? ( ମାଲୁଣୀ ପ୍ରତି ) ଆଚ୍ଛା ମାଳୀଘରର ବହୂ, ତାଙ୍କ ପିନ୍ଧିଥିଲା ଫୁଲ ତୋଠେଇଁ ଅଛି ନା ?

ମାଲୁଣୀ—ଏଇକ୍ଷଣି କେଉଁଠୁ ପାଇବି, କହିଲେ ଯୋଗାଇ ଦେବି ।

ଶ୍ରୀମତୀ—ତାଙ୍କୁ କହିଦିଅ ଲଳିତେ, ସେ ନିତି ନିତି ତାଙ୍କ ଛଡ଼ାଫୁଲ ଆଣି ଦେବେ !

ମାଲୁଣୀ—ହଉ, ହଉ ।

ଲଳିତା—ଆଲୋ ମାଳୀଘରର ବୋହୂଟି, ଏ ଫୁଲ ଏତେକ ଆମ ଜେମା-ଦେଈଙ୍କ ପାଇଁ ନଅଣେ । ମୂଲ କେତେ ନେବୁ କହନ ?

ମାଲୁଣୀ—କି କଥା କହୁଛ ଗୋ । ଅକାଳେ ସକାଳେ ବନେ ଫୁଲ ବଛା ଆଣିଛୁ ବୋଲି କଣ ମୂଲ ନେବି ନା ? ଜେମା-ଦେଈଙ୍କୁ ମୁଁ ନିଜ ହାତରେ ବେଶ କରି ଦେଲେ କଣ ମୂଲ ପାଇବି ନାହିଁ କି ?

ଲଳିତା—ଓଃ, ବଡ଼ ରସିକା ଲୋ ତୁ, ହଉ ହଉ ତୋ ମନ ରହୁ । ଏକା କଉଁ ସ୍ଥାନରେ କଉଁ ଫୁଲ ଦେଲେ ମାନିବ, ସେହି ହିସାବରେ ବେଶ କରିବୁ ।

ମାଲୁଣୀ—ନିଜେ ଜେମାଦେଈ ଏଥିରେ ଅନୁମତି ଦେବେ ନା ?

( ଶ୍ରୀମତୀ ଅଳ୍ପ ହସି ମୁଣ୍ଡ ହଲାଇ )

ଶ୍ରୀମତୀ—ସଖି, ମୋତେ ଏକା ଭାରି ଲାଜ ମାଡ଼ୁଛି ।

ମାଲୁଣୀ—(ଫୁଲ ନେଇ ବେଶ କରିବା) ଦେଖିଲ, କେତକୀ ଝିଅ ଆଜ ବଉଳବେଣୀ କେଡ଼େ ମାନୁଛି । ( ମାଳ ନେଇ ବେକରେ ଦେବା ) ଏ ମାଳରେ ମଲ୍ଲୀ ସାଙ୍ଗକୁ ପାଟଳି ଫୁଲ ଗୁନ୍ଥା ହୋଇଛି । ଏହାକୁ ଗଳାରେ ପକାଇଲେ ଯୁବା ପୁରୁଷମାନେ ମୁଣ୍ଡ କୋଡ଼ ହୋଇ ମରିବେ ।

( କୁଟିଳା ପ୍ରବେଶ ହେଲେ )

କୁଟିଳା—ଓହୋ—ଏଠି ତ ଏଭଳିଆ ରଙ୍ଗ ରହସ୍ୟ ଲାଗିଛି । ମୁଁ କହିଲି କହ, ଏତେ ହସ କୁରୁକୁଟି ରଙ୍ଗ ରହସ୍ୟ ଚାଲିଛି କାହିଁକି ?

( ମାଲୁଣୀ ବେଗେ ପଳାୟନ କଲା )

ଲଳିତା—ନା, କ'ଣ କି କୁଟିଳେ, ଏ ମାଲୁଣୀ ଫୁଲ ବିକି ଆସିଥିଲା । ଆମେ ସମସ୍ତେ କିଣୁଥିଲୁ ।

କୁଟିଳା—କ'ଣ ଫୁଲ ବିକି ଆସିଥିଲା ? ମୁଣ୍ଡରୁ ଲୁଗା କାଢ଼ି ଢେଙ୍ଗେ କରୁଥିଲା କ'ଣ ? ହୁଁ, ଭାବିଛୁ ମୁଁ କିଛି ଜାଣେ ନାହିଁ, ମୁଁ ସବୁ ଜାଣେ ଲୋ—ସବୁ ଜାଣେ । ହାଣ୍ଡି ମରି କୁଲିତାକୁଡ଼ ପଡ଼ୁଛି । ଆଚ୍ଛା ସେ ଗଲା କୁଆଡ଼େ ?

ଲଳିତା—(ଘରଆଡ଼କୁ ଚାହିଁ) ସତେ ତ, ସେ ଚାଲିଗଲା କୁଆଡ଼କୁ ? ତୁମକୁ ଦେଖି ତରତର ପଳାଇଲା ।

କୁଟିଳା—ହୁଁ, ଯେ ସଚୋଟ୍ ହୋଇଥିବ, କାହାକୁ ଡରିବ କାହିଁକି ? ମୁଁ କ'ଣ ବୁଝି ନା ଓଲି ? ଇଆର ଭିତରେ କଣ ଠାର-ଠୁର ହୋଇ ଖସାଇ ଦେଲ ତାକୁ ।

ଲଳିତା—ସତ କହୁଛୁ କୁଟିଳେ, ଆମେ ତାକୁ ଚିହ୍ନୁନାହୁଁ ।

କୁଟିଳା—ହଉ ହଉ, ଭାଇ ଗୋଠରୁ ଆସିଲେ ବଳେ ଚିହ୍ନାଚିହ୍ନି ହେବେ । ସେ ଚହିବ କି ତା ପିଠି ଚହ୍ନିବ । ବ' ଓଲି ଯମୁନା ଘାଟକୁ ଯାଇ ଅଭିମାନ ମେଣ୍ଟିନାହିଁ । ପୁଣି ଦିନ ବ' ପହରେ ଘର ଭିତରେ ପଶି ଏତେ ରଙ୍ଗ ?

ଲଳିତା—ଛି ଛି, ଝିଅ ବୋହୂ ନାଆଁରେ ମିଛୁଟାରେ ଏପରି ଦୁର୍ନ୍ନାମ ଦେଉଛ କାହିଁକି ?

କୁଟିଳା—କ'ଣ, ମିଛୁଟାରେ ଦଉଛି ? ମୁଁ କହିବି ମିଛ ? କଥା ପଡ଼ିଲେ, ଗୋଟି ଗୋଟି କରି ସାବୁଦ୍ କରି ଦେବି ।

ଲଳିତା—ତୁମ ଛଡ଼ା ଏମିତି କଥା ଆଉ କେହି କହନ୍ତି ନାହିଁ । ଯାହା ମନ ଯିମିତି ।

କୁଟିଳା—କ'ଣ କହିଲୁ, କ'ଣ କହିଲୁ, ମୋ ମନ ? ମୋ ମନ ଆଉ ଯାଙ୍କର ମନ ? କିଏ କହିବ କାହା ଜିଭରେ ବାଳ ଉଠିଛି ? ଗଲୁ ଗଲୁ ପରୂର ଆସିବୁ, ଗୋପପୁର ଯାକ କାହା ନାଆଁରେ ଡବ ଡବ ବାଜୁଛି । ହେଇ ପୁଣି କିଏ ଗୋଟାଏ ଅଇଲାଣି ଯେ !

( ଗୀତ ଗାଇ ଗାଇ କୃଷ୍ଣ ସନ୍ୟାସୀ ବେଶରେ ପ୍ରବେଶ )

ସନ୍ନ୍ୟାସୀ— ( ଗୀତ )

ଆସିଛି ମୁଁ ନବୀନ ସନ୍ୟାସୀ
କରେ ପ୍ରୀତି ସାଧନ ପ୍ରୀତି ନାମ ଆରାଧନ
ପ୍ରୀତି ଲାଗି ସଦା ମୁଁ ଉଦାସୀ ।
ପ୍ରୀତି କଥା ଭାଲି ଭାଲି କରି ପ୍ରୀତି ଜପାମାଳି
ହୋଇଛି ମୁଁ ପ୍ରୀତିର କାଙ୍ଗାଳ
ପ୍ରୀତି-ପାଗଳ ବେଶେ ଘୁରେ ମୁହିଁ ଦେଶେ ଦେଶେ
ଅଙ୍ଗ ମୋର ହୋଇଲାଣି କାଳ ।

କେଉଁଠାରେ ଗଲେ ପ୍ରୀତି ପାଇବ
ଖୋଜି ଖୋଜି ସେହି ଦେଶକୁ ଯିବ ।
କେଉଁ ଭାବେ ଧରେ କିବା ମୂରତି
କେଉଁ ପ୍ରକାରରେ ହୁଏ ପୀରତି ।
କେବଣ ଦେଶରେ କରେ ବସତି ।

କୁଟିଳା—( ସନ୍ନ୍ୟାସୀଙ୍କୁ ଦଣ୍ଡବତ ହୋଇ )— କଲେ, ତମେ ସବୁ ଠିଆ ହୋଇଛ ନା ? ଏଡ଼େ ବଡ଼ ବାବାଜୀଙ୍କୁ ଦେଖି ମନରେ ଟିକିଏ ଭକ୍ତି ଆସୁ ନାହିଁ ନା ? ଏ କ'ଣ ବଅସ ମଗଜ ? ( ସମସ୍ତେ ଦଣ୍ଡବତ ହେଲେ )

ସନ୍ନ୍ୟାସୀ—ମନୋବାଞ୍ଛା ପୂର୍ଣ୍ଣ ହେଉ ।

କୁଟିଳା—ଗୋସେଇଁ ମହାପ୍ରଭୁ, ଆପଣ କୁଆଡ଼େ ବିଜେ କଲେ ?

ସନ୍ନ୍ୟାସୀ—ଆମେ ସନ୍ନ୍ୟାସୀ ଲୋକ, ଦେଶ ବିଦେଶରେ ବୁଲି ବୁଲି ଏଠାରେ ଆସି ପହଞ୍ଚିଗଲୁଁ ।

କୁଟିଳା—ଗୋସେଇଁ, ତମେ ମହାଯୋଗୀ ପୁରୁଷ ପରି ଦିଶୁଛ । ଆମ ଭାଗ୍ୟର ଭଲ ମନ୍ଦ କିଛି କହି ପାରିବ ନା ?

ସନ୍ନ୍ୟାସୀ—କର, କପାଳ, କୋଷ୍ଠୀ—ଏଇ ତିନିରୁ ସବୁ ଜଣାଯାଏ ।

କୁଟିଳା—ମୋ କଥା ଟିକିଏ କହନ୍ତୁ ଗୋସାଇଁ ।

ସନ୍ନ୍ୟାସୀ—ଓଃ, ତୁମେ ଭାରି କପାଳିଆ, ସତୀ ସାଧ୍ୱୀ, ଅତ୍ୟ ସୁଲକ୍ଷଣୀ ।

କୁଟିଳା—ଆଉ କି ଲକ୍ଷଣ ଦେଖୁଛନ୍ତି ?

ସନ୍ନ୍ୟାସୀ—ଆଉ ଦେଖୁଛି, ବୁଝିଲ ନା ? ତମର ଗୋଟିଏ ଭାରି ଦଶା ଅଛି । ଏ ଦଶା ସାତଦିନ ପଡ଼ିବ । ଆଜି ସକାଳୁ ଆରମ୍ଭ ହେଲାଣି । କିଛି ଗୋଟାଏ ବଡ଼ ରକମ କଷ୍ଟ ଦେବ—କି ଅନିଷ୍ଟ କରିବ ।

କୁଟିଳା—ମହାପ୍ରଭୁ, ତମ ଗୋଡ଼ ଧରୁଛି, ଏ ଦଶା ମେଣ୍ଟଣ ହେବାର କିଛି ଉପାୟ ଅଛି ନା କହି ଦିଅ । ଯାହା କହିବ ତାହା ଦେବି ।

ସନ୍ନ୍ୟାସୀ—ରାମ ରାମ ଆମେ ବୈରାଗୀ, ଆମେ ନବୁ କ'ଣ ? କେବଳ ଲୋକଙ୍କ ଉପକାର କରି ବୁଲୁଥାଉଁ ।

କୁଟିଳା—ତେବେ ଦୟା କରି କହି ଦିଅ ଭଲ କ'ଣ କରିବି— ତୁମେ ସିଦ୍ଧ ପୁରୁଷ ।

ସନ୍ନ୍ୟାସୀ—କ'ଣ କି ଟିକିଏ କଷ୍ଟ ସହିବାକୁ ହେବ ।

କୁଟିଳା—ଯାହା କହିବ, ତାହା କରିବି ।

ସନ୍ନ୍ୟାସୀ—ତେବେ ଏଇକ୍ଷଣି ଯାଅ, ନିର୍ଜଳା ଉପବାସ କରି କବାଟ କିଲି ଘର ଭିତରେ ରହିବ । କାହା ମୁହଁ ଦର୍ଶନ କରିବ ନାହିଁ—ସାତ ଦିନ । ଆଉ ଦିବାରାତ୍ର ରାଧା ନାମ ଜପ କରୁଥିବ । ଆଠଦିନ ଦିନ ସକାଳୁ ଉଠି ସ୍ନାନ କରି ମହାଦେବ ଦର୍ଶନ କରି ବାଳକ ଲୀଳା କରାଇବ । ତେବେ ଯାଇ ଏ ଦଶା ମେଣ୍ଟଣ ହେବ ।

କୁଟିଳା—କେତେବେଳ ଠଉଁ ବ୍ରତ ଆରମ୍ଭ କରିବି ?

ସନ୍ନ୍ୟାସୀ—ବିପଦ ଯେ କେତେବେଳେ ଆସିବ ତାର ଠିକ୍ ନାହିଁ । ଏହିକ୍ଷଣି ଆରମ୍ଭ କରିବା ଉଚିତ ।

କୁଟିଳା—ତେବେ ମୁଁ ଯାଉଛି, ଗୋସେଇଁ, କଲ୍ୟାଣ କର ଯେପରି ଠିକ୍ ପାଳିବି । ( ପ୍ରସ୍ଥାନ )

ଲଳିତା—ଦେଖୁଛି, ତୁମେ ଠିକ୍ ସିଦ୍ଧ ପୁରୁଷ, ନୋହିଲେ ଏପରି କଞ୍ଚା ଡାହାଣୀ, କାଳ ନାଗୁଣୀକୁ ଜବଦ୍ କରନ୍ତା କିଏ ? ଏ ବିଦ୍ୟା କେଉଁଠୁ ଶିଖିଲ ଗୋସେଇଁ ।

ସନ୍ନ୍ୟାସୀ—ମୁଁ ଜଣେ ଶକ୍ତି ଉପାସକ—ସେଇ ଆଦ୍ୟାଶକ୍ତିଙ୍କ କୃପାରେ ଏସବୁ ହାସଲ ହୋଇଛି ।

ଲଳିତା—ଆଚ୍ଛା, ସିଦ୍ଧ ପୁରୁଷ ହେ, ଆମ ସଖୀଙ୍କ ହାତ ଦେଖିଲ ଟିକିଏ—ଗୋଟିଏ ପ୍ରଶ୍ନ ଅଛି ।

ସନ୍ନ୍ୟାସୀ—(ହାତ ଦେଖି ) ଓଃ ଏ ତ ଜୀବଚନ୍ଦ୍ରା ।

ଲଳିତା—କାର୍ଯ୍ୟଟି ସଫଳ ହେବ ତ ?

ସନ୍ନ୍ୟାସୀ—ପାଠ ଡାକୁଛି ତତ୍କ୍ଷଣାତ୍ ସିଦ୍ଧି ।

ଲଳିତା—ହଉ, ତମ ସତ ମିଛ ବଳେ ଜଣାଯିବ ଯେ । ମଲା ମ, ଇଏ କି କଥା, ଗୋସେଇଁ—ତମେ ଏମିତି ଥରୁଛ କାହିଁକି ?

ସନ୍ନ୍ୟାସୀ—ତମ ସଖୀ ତ ନିଜେ ଥରୁଛନ୍ତି । ତାଙ୍କର ହାତ ଧରିବାରୁ ମୋତେ ଥର ଉଠାଉଛି ।

ଲଳିତା—ଦେଖେଁ ଦେଖେଁ (ପାଖକୁ ଯାଇ) ସତେ, ଶ୍ରୀମତି, ଏ କଣ ? ପର ପୁରୁଷକୁ ଛୁଇଁ ଏପରି ଥରୁଛ କାହିଁକି ? ଗୁଡ଼ ଗୁଡ଼— ଆମ ସଖୀଙ୍କ ହାତ ଗୁଡ଼ିବଟି ଏବେ । ବାଃ, ହାତକୁ ହାତ ଏପରି ଭିଡ଼ି ଗଲାଣି ନା ? ଭଲ ସନ୍ନ୍ୟାସୀ ତ ଇଏ । ହଇ ହେ ସନ୍ନ୍ୟାସୀ, କି କୁହୁକ କଲ କହେ ? କେତେ ଦିନ ହେଲା ବାବାଜୀ ହେଲଣି ଦେଖେଁ— ! ( ଜଟା ଓ ନାମାବଳି ବାହାର କରି ) ସଖି, ମୁଁ ଯାହା କହୁଥିଲି ଏବେ ହେଲା ନା ? ଆଗୋ, ତମେ ଭଲ ଲୋକର ପୁଅ ହୋଇ ଭଲ ଭୂଆସୁଣୀଙ୍କ ମହତ ନେବାକୁ ଏତେ ମନ କାହିଁକି ? ସବୁ ଶେଷ କରିସାରି ଆଉ କଣ ନେବାକୁ ଆସିଛ ? ସଖି ବିଶାଖା, ଏ ଚୋରକୁ ଧର, ଏହାଙ୍କୁ ବାନ୍ଧ

ପକାଇ ଆଜ ଶ୍ରୀମତୀଙ୍କ ପୁରରେ ବନ୍ଦୀ କରିବା । ଏଭଳିଆ
ଚୋରଙ୍କୁ ଏହି ଠିକ୍ ଦଣ୍ଡ ।

( ଦୁଇଜଣ ଦୁଇ ହାତକୁ ଧରି ଗୀତ )

**ଲଳିତା, ବିଶାଖା—**

ବଡ଼ ହଟିଆ, ଯମୁନା ଘାଟିଆ, ନନ୍ଦ ଗୃହିଆ !
ନବଗୁଞ୍ଜି କଣ୍ଠିଆ, ରଙ୍ଗବସ୍ତ୍ର ଅଣ୍ଟିଆ, ପ୍ରୀତିରତ୍ନ ଗଣ୍ଠିଆ,
ନଟକୁଟିଆ, ପୀତ-ପଟିଆ, ବଂଶୀ-ବଟିଆ,
କାଳନ୍ଦୀ ତଟିଆ—ସେ ଲମ୍ପଟିଆ ।
ଯଶୋମତୀ ବାଳକ, ଗୋବତ୍ସ ପାଳକ, ଗୋପେ ଗୋଧନ ଗୋଠିଆ,
ଗୋପ ଯୁବତୀଗଣ, ମାନସ ରଞ୍ଜନ କ୍ଷୀରସର ନବନୀତ ଲୋଟିଆ,
ଯମୁନା ତଟ ଘାଟ ଗ୍ଲୁଟିଆ, ବୃନ୍ଦାବନ ବନ ମାଟିଆ,
ତପନ ତନୟ ମାର ଘାଟିଆ,
କେଶରୀ କଟିଆ, କୁଞ୍ଜ ନିକଟିଆ ।
ପ୍ରୀତି-ଲଟିଆ, ରଙ୍ଗ-ପାଟିଆ, ଶିର-ବାଟିଆ,
ଶିଖଣ୍ଡ ଜଟିଆ, ବେଣୁ ରଟିଆ !

—ସମାପ୍ତ—



# ବଂଶୀ ଶିକ୍ଷା

( ଶ୍ରୀକୃଷ୍ଣ ଓ ମଧୁମଙ୍ଗଳ ପ୍ରବିଷ୍ଟ ହେଲେ )

ମଧୁ—ଆଜ୍ଞା, ଭାଇ କହ୍ନାଇ, କେତେଦିନୁ ଗୋଟାଏ କଥା ପଚାରିବି ପଚାରିବି ହେଉଛି ।

କୃଷ୍ଣ—କଣ ପଚାରୁ ନାହୁଁ ।

ମଧୁ—ସମସ୍ତେ କହୁଛନ୍ତି—କୁଆନ୍ତେ, ତୁ ବଇଁଶୀ ବଜାଇଲେ ଗଛପତ୍ର କଅଁଳ ଉଠେ, ଫୁଲ ଫୁଟେ, ଯମୁନା ଉଜାଣି ବହେ, ଆଉ ମୁଁ ବି ଦେଖୁଛି ନିତି ଆଖି ଆଗରେ ଏ ଗଉଡୁଣୀ ଟୋକୀଏ ବି ଉଚ୍ଚାଟ ହେଉଛନ୍ତି । ଏକା ମୋର ତ କିଛି ହେବାକୁ ନାହିଁ !

କୃଷ୍ଣ—ତୋର କାହିଁକି ନ ହେଲା, ମୁଁ କେମିତି କହିବି ? ସେ କଥା ତୁ କହି ପାରିବୁ ନା !

ମଧୁ—ମୋର ଗୋଟାଏ କଥା ସନ୍ଦେହ ହେଉଛି ଏକା ।

କୃଷ୍ଣ—କଣ କହିଲୁ ?

ମଧୁ—ମୋର ମନେ ହେଉଛି, ତୋ ବଇଁଶୀର ଡାକ ଖାଲି ମାଇକିନିଆଙ୍କ ଉପରେ, ଅଣ୍ଡିରାଙ୍କର ସେ କିଛି କରିପାରେ ନାହିଁ ।

କୃଷ୍ଣ—( ହସି ) କାହିଁକି କହିଲୁ ?

ମଧୁ—ବଇଁଶୀ ଶୁଣିଲେ କଅଁଳ ଉଠେ କୁଞ୍ଜଲତା, ଫୁଲ ଫୁଟେ ମାଳତୀ ମାଧବୀରେ, ଉଜାଣି ବହେ ଯମୁନା, କାନ ଡେରନ୍ତି ଗାଈ ପଲ, ଉଚ୍ଚାଟ ହୁଅନ୍ତି ଗଉଡୁଣୀଏ । ଏ ସବୁ ତ ସ୍ତ୍ରୀ ଲିଙ୍ଗ ।

କୃଷ୍ଣ—ଠିକ୍ କହିଛୁ ମଧୁ, ମାତ୍ର ଯେଉଁ ସ୍ୱରରେ ଅଣ୍ଡିରା ଉଚ୍ଚାଟ ହେବେ ମୁଁ ତାକୁ ଜାଣେ, ବଜାଏ ନାହିଁ । କହିବୁ ତ ତୋତେ ଥରେ ପରଖାଇ ଦେବି ।

ମଧୁ—ହଉ, ହଉ, ଥରେ ବଜାଇଲୁ ଦେଖିବା କ'ଣ ହେଉଛି ।

କୃଷ୍ଣ—ତୁ ଆଖି ବୁଜି ଛିଡ଼ା ହ ମୁଁ ବଜାଏ—

( ମଧୁ ଆଖିବୁଜି ଛିଡ଼ା—କୃଷ୍ଣ ବଂଶୀ ବଜାଇଲେ । )

ମଧୁ—( ଥରଥର ) ହେଇରହ, ରହରହ, ସେତିକି ଥାଉରେ ସେତିକି ଥାଉ ! ଉ ହୁ ହୁ ( କମ୍ପିବା )

କୃଷ୍ଣ—କିରେ, କ'ଣ ହେଲା କି ?

ମଧୁ—କଣ ହେଲା କି ? ନାଇଁ ନାଇଁ ବାବା ତୋ ବଇଁଶୀର କରାମତି ଏଥର ବୁଝିଲି ।

କୃଷ୍ଣ—ହଠାତ୍ କେମିତି ଜାଣିଲୁ ?

ମଧୁ—ମୋ ଦେହ ଯାକ ତ ଗଜା ମୁନେଇଲା ପରି ଲାଗୁଛି । ଗୋଟା ଧଡ଼ିଟା ମୋର ବରଡ଼ାପତର ପରି ଥରୁଛି । ଆଖି ଦିଟା ବି ଖୋଲି ହେଉ ନାହିଁ ।

କୃଷ୍ଣ—ଆଜ୍ଞା, ମୋ ସାଙ୍ଗରେ ଆ—ରାଧାକୁଣ୍ଡରେ କେତେଥର ବୁଡ଼ାଇ ଆଣିଲେ ସବୁ ଛାଡ଼ି ଯିବ ।

( ମଧୁ ହାତ ଧରି କୃଷ୍ଣ ଚାଲିଲେ )

ମଧୁ—( ଯାଉଁ ଯାଉଁ ) ହଉ ଚାଲ୍‌ରେ ବାବୁ ଚାଲ୍ । ସବୁଦିନେ ତ ବେକରେ ପଘା ନଗେଇ ଟାଣୁଛୁ । ଯୁଆଡ଼େ ନବୁ ତୋ ଇଚ୍ଛା । ( ଉଭୟେ ପ୍ରସ୍ଥାନ )

( ଅନ୍ୟ ଦିଗରୁ ଶ୍ରୀମତୀ ଓ ଲଳିତା ପ୍ରବେଶ )

ଲଳିତା—ହେଇ ସଖି, ଏହି ବାଟେ ବଂଶୀଧାରୀ ଯାଇଛନ୍ତି ।

ଶ୍ରୀମତୀ—କେମିତି ଜାଣିଲୁ ଲଳିତେ ?

ଲଳିତା—ଦେଖୁନାହିଁ, ତାଙ୍କର ବଂଶୀ ନାଦରେ କିପରି ବୃକ୍ଷଲତା ପଲ୍ଲବି ଉଠିଛନ୍ତି ?

ଶ୍ରୀମତୀ—ହଁ ସଖି, ତାଙ୍କର ଅଙ୍ଗ ଗନ୍ଧରେ ଏକା ବନସ୍ଥଳୀ ମହକି ଉଠୁଚି ।

ଲଳିତା—ହେଇଟି, ଆହୁରି ଦେଖ, ଏ କାହାର ପାଦଚିହ୍ନ ପଡ଼ିଛି ଏଠି ?

ଶ୍ରୀମତୀ—(ଦେଖି) ହଁ ଗୋ ହଁ, ଏତ ତାଙ୍କର ପାଦ ଗୋ ! ଏଇଠି କେଉଁଠି ଅଛନ୍ତି ସେ ସଖି ।

ଲଳିତା—ମୁଁ କହେଁ, ଆମ ସଙ୍ଗରେ ସେ ଏତେ ଲାଗେଇଛନ୍ତି କାହିଁକି ? ସେ ନିଜେ ଯେପରି ଛିଟ, କୁଳବୁଡ଼ା ବଇଁଶୀଟା ତହୁଁ ବଳି ଛିଟ । ବଇଁଶୀ ଯଦି ନଥାନ୍ତା, ସେ ଆମର କଣ କରିପାରନ୍ତେ କି ? ସବୁ ଅନର୍ଥର ମୂଳ ସେ ବାଉଁଶ ନଳି ଖଣ୍ଡିକ ।

ଶ୍ରୀମତୀ—ସେ କଥା ସତ ଏକା ଲଳିତେ ?

(ଗୀତ)

ବଚନ ଅଟଇ ସଖି ମୁରଲୀ ପ୍ରଭାବ
ବାଉଁଶ ବଇଁଶୀ କେତେ ତାର ଭାବ
ପ୍ରିୟ ସଜନୀ ଗୋ ।

—ଗ୮୪—

ସେ ନାଦରେ ତରୁଲତା ପଲ୍ଲବ ଉଠଇ,
ସୁବାସ କୁସୁମଚୟ କାନନେ ଫୁଟଇ
ପ୍ରିୟ ସଜନୀ ଗୋ ।

ପଞ୍ଚମେ କୋକିଳ ଗାଏ ମାଧବୀ କୁଞ୍ଜରେ
ମଧୁକର ମଧୁ ଲୋଭେ ମଧୁରେ ଗୁଞ୍ଜରେ
ପ୍ରିୟ ସଜନୀ ଗୋ ।

ସେ ଧ୍ୱନି ଶ୍ରବଣେ ମନ ହୁଏ ଛନଛନ
ଅପୂର୍ବ ପୁଲକେ କମ୍ପି ଉଠେ ଅପଘନ
ପ୍ରିୟ ସଜନୀ ଗୋ ।

ଲଳିତା—ସଖି ଦେଖିବା ଚାଲନ, କେଉଁଠି ଛକି ରହି ସେ କ'ଣ କରୁଛନ୍ତି ।

ଶ୍ରୀମତୀ—ନା ଲଳିତେ, ଏ ସ୍ଥାନଟି ମୋତେ ଏତେ ଭଲ ଲାଗୁଛି ଯେ ଏଠୁ ଘୁଞ୍ଚିଯିବାକୁ ମନ ବଳୁନାହିଁ ।

ଲଳିତା—(ଅଳ୍ପ ହସି) ହବାର ତ କଥା ।

ଶ୍ରୀମତୀ—ଯାଃ—ବଡ଼ ଇଏ ଲଳିତା । ତମେ ଯା, ସବୁ ସଖିମାନଙ୍କୁ ଡାକି ଆଣିବ—ମୁଁ ଏଇଠି ଅଛି ।

ଲଳିତା—ଏକୁଟିଆ ଥିବ ନା ? ନାହିଁତ, ଏକୁଟିଆ କମିତି ହେଲା—ଏଠି ପରା—
( ଜିଭ କାମୁଡ଼ ପକାଇ ) ହଉ, ହଉ, ମୁଁ ଯାଉଛି ।
(ପ୍ରସ୍ଥାନ)

( ଅନ୍ୟ ଦିଗରୁ ଶ୍ରୀକୃଷ୍ଣ ପ୍ରବେଶ ହେଲେ )

ଶ୍ରୀକୃଷ୍ଣ—କିଏ ରାଇ-କିଶୋରୀ ? ତୁମ୍ଭଙ୍କୁ ମୁଁ ନିର୍ଜନରେ ଏକାକିନୀ ପାଇ ଏତେଦିନେ ମୋର ବଂଶୀ ଶିକ୍ଷା ସଫଳ ହେଲା । ଦିନରାତି ରାଧା ନାମ ଜପ କରି ଏହି ବେଣୁରେ ରାଧା ରାଧା ନାମ ସାଧୁଛି । ସେ ସାଧନାର—ସେ ତପସ୍ୟାର ସିଦ୍ଧି ଏତେ ଦିନେ ।

ଶ୍ରୀମତୀ—ବ୍ରଜକିଶୋର ହେ, ତୁମର ସେ ଯୁବତୀ-ମନୋହରୀ, ପ୍ରାଣ ପାଗଳକରୀ, ବଂଶୀ କଥା କଣ କହିବ ! ତାହାରି ଲାଗି ବ୍ରଜ ତରୁଣୀଗଣ କୁଳଶୀଳ ବୁଡ଼ାଇ ସାରିଲେଣି ।

ଶ୍ରୀକୃଷ୍ଣ—କାହିଁକି ରାଧେ ? ମୋ ବଂଶୀରେ ଆଉ କାହାର କିଛି ହେବ କଅଣ ?

ଶ୍ରୀମତୀ—ହିଁ, ତୁମକୁ ତ ଝାପରି ଲାଗିବ, ବଂଶୀନାଦ ଶୁଣିଲେ, ଚିତ୍ତ ଭିତରେ କଣ ହୁଏ, ତା ତୁମେ କମିତି ବୁଝିବ ? ତୁମେ ତ ବଜାଇ ଦେଇ ପର ମନ ମଜାଇ ଦେଇ ବସି ରହିଲ; ଆଉ କେହି ବଜାନ୍ତା, ତୁମ ନାମଧରି ଡାକନ୍ତା, ତୁମେ ଯେବେ ଶୁଣନ୍ତ, ତେବେ ଯାଇ ଜାଣନ୍ତ ।

ଶ୍ରୀକୃଷ୍ଣ—ସତ ଏକା ସଖି, ମୋର ମନେ ହୁଏ, ଆଉ କେହି ବଂଶୀରେ କୃଷ୍ଣ କୃଷ୍ଣ ବୋଲି ବଜାନ୍ତା, ମୁଁ ଶୁଣନ୍ତା । ବୁଝନ୍ତି ମୋ ବଂଶୀର ପ୍ରଭାବ । କିନ୍ତୁ କିଶୋରୀ, ମୋ ବଂଶୀ ଧାରଣ କରିବାର ଶକ୍ତି ତୁମଛଡ଼ା ଆଉ କାହାର ଅଛି ?

ଶ୍ରୀମତୀ—ହଉ ତେବେ, ମୁଁ ଶିଖିବି । ମାତ୍ର ତୁମେ ବଂଶୀ ସ୍ୱନରେ ମୁଁ ମୁଗ୍ଧ ହୁଏ ସିନା, ହେଲେ, ତା ମରମ ତ ମୁଁ କିଛି ଜାଣେ ନି । ବୁଝାଇ ନ ଦେଲେ ବୁଝିବି କପରି ।

(ଗୀତ)

ତୁମରି ମୁରଲୀ କଥା କହ ମୋତେ ହରି,
କେଉଁ ରନ୍ଧ୍ରେ କେଉଁ ଗୁଣ ଗୋଟି ଗୋଟି କରି ।

ଶ୍ରୀକୃଷ୍ଣ—

(ଗୀତ)

ମୋହରି ମୁରଲୀ ଗୁଣ ବିଚିତ୍ର ଅଟଇ,
ଗୋଟି ଗୋଟି ସପ୍ତସ୍ୱର ଦେବି ରାଧେ କହି ଗୋ ।

ପ୍ରଥମ ରନ୍ଧ୍ରରେ ହୁଏ ତରୁ ପଲ୍ଲବିତ,
ଦ୍ୱିତୀୟ ରନ୍ଧ୍ରରେ ହୁଏ ଯମୁନା ସ୍ଥଗିତ ।

ତୃତୀୟ ରନ୍ଧ୍ରରେ ମୃଦୁ ମଳୟ ବହଇ,
ଚତୁର୍ଥ ରନ୍ଧ୍ରରେ ରାଧେ, କଦମ୍ବ ଫୁଟଇ ।

ପଞ୍ଚମ ରନ୍ଧ୍ରରେ ବେଣୁ ଗୋପୀ ମନ ହରେ,
ରାଧା ରାଧା ବୋଲେ ସଦା ଷଷ୍ଠ ରନ୍ଧ୍ର ସ୍ୱରେ ।

ସପ୍ତମ ରନ୍ଧ୍ରର ସ୍ୱର ମୋତେ ଅଗୋଚର
ମୋହିତ ହୁଅଇ ମୁହିଁ ସହଚରାଚର ।

ଶ୍ରୀମତୀ—ସ୍ୱର ଗୁଣତ ଜାଣିଲି, ମାତ୍ର ନ ସାଧିଲେ କପରି ବଜାଇବି ?

ଶ୍ରୀକୃଷ୍ଣ—ରାଧେ, ମୋତେ ଗୁରୁ କରି ଶିଖିବ ତ ସପ୍ତସ୍ୱର ଗୋଟି ଗୋଟି କରି ସଧାଇ ଦେବି ।

ଶ୍ରୀମତୀ—ଶିଖାଅ ମୁରଲୀ ମୋତେ ଶିଖାଅ ମୁରଲୀ,
ବଂଶୀରେ ବାଇବି ସଦା ଶ୍ୟାମ ଶ୍ୟାମ ବୋଲି !

ଶ୍ରୀକୃଷ୍ଣ—ହଉ ତେବେ—

ଚରଣେ ଚରଣ ଛନ୍ଦି ନୀପ ତରୁ ମୂଳେ
ଭଲି ଭଲି ଆସ ରାଈ ଯମୁନାର କୂଳେ ।
ମୋହ ପରି ତ୍ରିଭଙ୍ଗରେ ଛିଡ଼ା ହୁଅ ରାଈ,
ସପ୍ତ ରନ୍ଧ୍ରେ ସପ୍ତସ୍ୱର ଦେବି ମୁଁ ଶିଖାଇ ।
ବାମ କରେ ବେଣୁ ଧରି ଅଧରେ ଲଗାଅ,
ଦକ୍ଷିଣ ରନ୍ଧ୍ରରେ ଚିପି ବାଂଶୀ ବଜାଅ ।

ଏ ମୋର ବାଁଶରୀ କରେ ରାଧା ରାଧା ଗାନ,
ରାଧା ନାମ ବିନା କେଭେଁ ନ ବାଜବ ଆନ ।
( ଶ୍ରୀମନ୍ତୀ ସେହିପରି ଫୁଙ୍କିଲେ—କୃଷ୍ଣ ତାଙ୍କୁ ଭଙ୍ଗିରେ ଠିଆ କରାଇ ଦେବା ପରେ )

ଶ୍ରୀମନ୍ତୀ— (ଗୀତ)

ବାଜୁଛି ବାଜୁଛି ବେଣୁ ଶିଖି ଗଲି ମୁହିଁ,
ଏଥିପାଇଁ କର ପରା ଏତେକ ବଡ଼ାଇ ।

ଶ୍ରୀକୃଷ୍ଣ—ରାଧେ ରାଧେ, ମୋ ବଂଶୀ ତ ଖାଲି ରାଧାନାମ ସାଧୁଛି,
ସେଥିରେ ତୁମେ ଶ୍ୟାମ ଶ୍ୟାମ ବୋଲି କପରି ବଜାଇଲ ?
ଶ୍ରୀମନ୍ତୀ—ବାଃ, ମୁଁ ତ ଫୁଙ୍କିଲି ବେଳକୁ, ସେ ଆପେ ଆପେ ଶ୍ୟାମ ଶ୍ୟାମ ବାଜୁଛି ।
ଶ୍ରୀକୃଷ୍ଣ—ତେବେ ରହ ରହ ମୁଁ ଧରି କହୁଦିଏ ।
( ରାଧାକୃଷ୍ଣ ଏକ ସଙ୍ଗରେ ଯୁଗଳ ହୋଇ ବଜାଇଲେ )

ଶ୍ରୀକୃଷ୍ଣ— ( ଗୀତ )

ଏଥର ବାଜିଲା ଦେଖ ରାଧା ରାଧା ନାମ
ଶ୍ରୀମନ୍ତୀ— ମୋହର ବାଜୁଛି ଶୁଣ, ଶ୍ୟାମ ଶ୍ୟାମ ଶ୍ୟାମ ।
ଶ୍ରୀକୃଷ୍ଣ— ଶିଖିଛି ରସିକ ପଣ, ରାଧା ନାମ ଗାଇ,
ଶ୍ରୀମନ୍ତୀ— ଏଭଳି ବିଲକ୍ଷ ବଂଶୀ ଜଗତରେ ନାହିଁ ।
ଶ୍ରୀକୃଷ୍ଣ— ଏ ଅତି ବିଚିତ୍ର ରାଧେ ଏ ଅତି ବିଚିତ୍ର,
ଶ୍ରୀମନ୍ତୀ— ଏକ ରନ୍ଧ୍ରେ ଦୁଇ ନାମ ବାଜୁଛି ଏକତ୍ର ।
ବାଜେ ବେଣୁ ଅବିରାମ
ଉଭୟେ— ରାଧେ ରାଧେ ରାଧେ ଶ୍ୟାମ
ରାଧେ ରାଧେ ରାଧେ ଶ୍ୟାମ ।
( ସଖୀଗଣ ପ୍ରବେଶ ହୋଇ )

ସଖୀଗଣ— ( ଗୀତ )

ଦେଖ ଏ କି ରଙ୍ଗ
ଉଦେ ଉଭା ଛନ୍ଦାଛନ୍ଦି ଉଭୟେ ତ୍ରିଭଙ୍ଗ ।
ଏକ ତାନେ ଡାକେ ବେଣୁ ଦୁଇ ଦୁଇ ନାମ
ରାଧେ ଶ୍ୟାମ ରାଧେ ଶ୍ୟାମ ରାଧେ ରାଧେ ଶ୍ୟାମ ।
ବାଉଛନ୍ତି ରାଈ କାହ୍ନୁ ହୋଇ ଏକ ସଙ୍ଗ
ଦେଖ ଏ କି ରଙ୍ଗ
କୁଞ୍ଜେ କୁଞ୍ଜେ ବାଜି ଉଠେ ସେହି ନାମ ତାନ,
କୁଞ୍ଜେ କୁଞ୍ଜେ ପିକକୁଳ ଗାଉଛନ୍ତି ଗାନ ।
ଆନନ୍ଦେ ଅଧୀର ହୋଇ ମାତୁଛି ଅନଙ୍ଗ,
ଦେଖ ଏ କି ରଙ୍ଗ ।

( ପଞ୍ଚ ପତନ )



# ବସନ୍ତ ବିଳାସ

—ପ୍ରସ୍ତାବନା—

ବଂଶୀଧାରୀ ! ଗୋପୀନାଥ ଗୋପୀ ମନୋହାରୀ !
ଶ୍ୟାମ ସୁନ୍ଦର, ଗୋପପୁରନ୍ଦର ମନ୍ଦ ମନ୍ଦ ବନଚାରୀ ।
ରାଧିକାରଞ୍ଜନ, ଅଞ୍ଜନଗଞ୍ଜନ କଞ୍ଜନୟନ ଗିରିଧାରୀ
ବରଜ ନାୟକ ମୁରଲୀ ବାଦକ କୁଞ୍ଜଭୁବନ ଅଭିସାରୀ ।
ନନ୍ଦନନ୍ଦନ ଚର୍ଚ୍ଚିତ ଚନ୍ଦନ ବନ୍ଦିତ ବ୍ରଜ ବରନାରୀ ।
ଗୋକୁଳ ମଣ୍ଡନ ଗୋପୀବିନୋଦନ ଯମୁନା ବାରି ବିହାରୀ ।
ଖଣ୍ଡଖଣ୍ଡ ବିଧୁ ଗଣ୍ଡ ମଣ୍ଡିତ କେକୀ ଶିଖଣ୍ଡକ ଧାରୀ
ଲୋଚନ ଇଙ୍ଗିତ ଭଙ୍ଗି ତରଙ୍ଗିତ ହରପର ଦରପ ନିବାରି
ରାଧାଧରସୁଧା ଘନରସ ଗୃତକ ରାତୁଳ ଚରଣ ଭିକାରୀ ।

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ନାରଦ ପ୍ରବେଶ )

ଗୀତ

ହରି ହେ ! ଗୋଲୋକ ବିହାରୀ,
ଦୀନବନ୍ଧୁ ଦୟାସିନ୍ଧୁ ଭବଭୟ ହାରୀ ।
ଜୀବନେ ମରଣେ ସଦା କରିଛି ଆଶ,
ଧାଇଁଛି ଆକୁଳ ପ୍ରାଣେ ତୋହରି ପାଶ
ଧରିଛି ତୁମ୍ଭରି ନାମ ଆଶରେ ହେ ପୀତବାସ
ସଂସାର ପାଶୋରି ।
ଏ ଦେହ ହୃଦୟ ପ୍ରାଣ ସକଳ ତୁମ୍ଭରି ଗଢ଼ା ।
ଏ ଜଗତେ କିଛି ନାହିଁ ଶ୍ରୀନିବାସ ତୁମ୍ଭ ଛଡ଼ା
ତୁମ୍ଭ ସେବା ପାଇଁ ମୋର ଯେତିକ ଇନ୍ଦ୍ରିୟ ଲୋଡ଼ା
ସନ୍ତାପ ନିବାରି ।

( ଶ୍ରୀକୃଷ୍ଣ ପ୍ରବିଷ୍ଟ ହେଲେ )

ଶ୍ରୀକୃଷ୍ଣ—କହେ ଦେବର୍ଷେ, ଆଜି ପୁଣି କେଉଁ ଉଦ୍ଦେଶ୍ୟରେ ମର୍ତ୍ତ୍ୟକୁ ଆଗମନ ? କେଉଁଠାରେ କେଉଁ କଳିର ସମ୍ଭାବନା ଅଛି କି ?

ନାରଦ—ପ୍ରଭୋ ! କଳି ଲଗାଇବା କଣ ନାରଦର ବ୍ୟବସାୟ ହୋଇ ପଡ଼ିଛି ! ତୁମ୍ଭେ ମଧ୍ୟ ମୋତେ ସେଇ ଉପାଧି ଦେଇ ବସିଲଣି ?

ଶ୍ରୀକୃଷ୍ଣ—କାହିଁକି—ଜଗତଯାକ ଲୋକେ ତ ତମକୁ ସେଇ ଉପାଧି ଦେଇଛନ୍ତି, ମୁଁ କଣ ଜଗତରୁ ବାହାର ?

ନାରଦ—ଅନ୍ତର୍ଯାମୀ ନାଥ, ତୁମ୍ଭଠାରେ ମୁଁ କି ଯୁକ୍ତି କରିବ ? କେଉଁ କଥା ତୁମକୁ ଜଣାନାହିଁ । ନାରଦ ଯେଉଁଠି ଯାହା କରେ, ତାହା ତ ଉଦ୍ଦେଶ୍ୟହୀନ ପିଲାଖେଳ ନୁହେଁ । ଯେଉଁଠାରେ ଅନ୍ୟାୟ ଅତ୍ୟାଚାରର ଆବିର୍ଭାବ ହୁଏ ମୁଁ ତାହାର ପ୍ରତିବିଧାନ କରେଁ । ପାପୀର ଦଣ୍ଡ ବିଧାନ କରେ । ଧର୍ମର ମହତ୍ତ୍ୱ ରକ୍ଷା କରେଁ । ଆଉ ଶେଷରେ ତୁମ୍ଭରି ମହିମା କୀର୍ତ୍ତନ କରେଁ । ଏତିକି ମୋର ଲକ୍ଷ୍ୟ—ଏତିକି ମୋର ଧର୍ମ !

କୃଷ୍ଣ—ସେ କଥା ଠିକ୍ ତପୋଧନ । ମୁଁ ରଙ୍ଗ କରି ପଚାରୁଥିଲି । ଆଜି କି ହେତୁ ବୃନ୍ଦାବନକୁ ଆଗମନ ?

ନାରଦ—ଦାସ ପ୍ରାର୍ଥନା ଯଦି ରକ୍ଷା କରିବେ ତ କହିବ । ନୋହିଲେ ଚାଲିଯିବ !

ଶ୍ରୀକୃଷ୍ଣ—ଏ କ'ଣ ଦେବର୍ଷେ ! ତୁମ୍ଭର କେଉଁ କଥା ମୁଁ କେବେ ରକ୍ଷା କରିନାହିଁ ଯେ ଏପରି କଥା କହୁଛ ? ଭକ୍ତ ମୋର ପ୍ରାଣଠାରୁ ପ୍ରିୟତର ।

ନାରଦ—ମୁଁ ଜାଣେ, ତୁମ୍ଭେ ଭକ୍ତ ବାଞ୍ଛା-କଳ୍ପତରୁ । ସେଥିପାଇଁ ମୁଁ ବଡ଼ ସାହସ କରି ଆସିଛୁ ।

ଶ୍ରୀକୃଷ୍ଣ—କ'ଣ କୁହ, ମୁଁ ତାହା ନିଶ୍ଚୟ ପୂରଣ କରିବି ।

ନାରଦ—ତେବେ ଶୁଣ, ତୁମେ ଗୋଲୋକ ଛାଡ଼ି ବ୍ରଜଧାମରେ ବିହାର କରୁଛ । ତେଣେ ଗୋଲୋକ ଶୂନ୍ୟ ହୋଇ ପଡ଼ିଛି । କିନ୍ତୁ ତୁମ୍ଭର ଅବସ୍ଥିତି ଯେଉଁଠାରେ ସେଇଠାରେ ହିଁ ଗୋଲୋକ । ବର୍ତ୍ତମାନ ଋତୁରାଜ ବସନ୍ତ ଧରାଧାମରେ ଅବତୀର୍ଣ୍ଣ ହେଲେଣି । ଚତୁର୍ଦ୍ଦିଗ ମଳୟ ଗନ୍ଧରେ ଆମୋଦିତ । ତରୁଲତା ନବକିଶଳୟରେ ବିଭୂଷିତ ହୋଇ ନବୀନ ବେଶ ଧାରଣ କଲେଣି । ଏହି ମଧୁକାଳରେ ଯମୁନା ତୀରରେ ବ୍ରଜକିଶୋର ଓ ବ୍ରଜକିଶୋରୀ ମାନଙ୍କର ବସନ୍ତ ବିହାର ଲୀଳା ଦେଖିବା ପାଇଁ ମନରେ ଆକାଂକ୍ଷା ଜାଗି ଉଠିଛି । ଏ ବାସନା ତୁମ୍ଭଙ୍କୁ ପୂରଣ କରିବାକୁ ହେବ ହରି ।

ଶ୍ରୀକୃଷ୍ଣ—ଆଜିର ବାଳିକାମାନଙ୍କ ସହିତ ସୁମଧୁର କେଳିବିଳାସ କରିବା ନିମନ୍ତେ ମୋର ବୃନ୍ଦାବନ ଲୀଳା । ଏଥିପାଇଁ ଚିନ୍ତା କ'ଣ ? ତୁମ୍ଭେ ନିଶ୍ଚିନ୍ତ ହୋଇ ଏକାନ୍ତରେ ରହି ଗୋପୀ ଭାବରେ ଏ ଲୀଳା ଦର୍ଶନ କର ।

( ପ୍ରସ୍ଥାନ )

ନାରଦ—ଭକ୍ତ ଜୀବନ—ଭକ୍ତର ମନୋରଥ ପୂର୍ଣ୍ଣ କରିବାକୁ ଆଜ୍ଞା ଦେଇଛନ୍ତି । ମୁଁ ଯାଏଁ, ବସନ୍ତକୁ ସାବଧାନ କରାଇ ଦିଏଁ ଓ ନିଜେ ପୁରୁଷ ଅଭିମାନ ଛାଡ଼ି ପ୍ରକୃତି-ଭାବରେ ବିଭାବିତ ହୁଏଁ ।

## ଦ୍ୱିତୀୟ ଦୃଶ୍ୟ

( ଲଳିତା, ଚମ୍ପକଲତା, ଚିତ୍ରା, ବିଶାଖା ପ୍ରବେଶ )

(ଗୀତ)

ସଖି ଯିବା ଯମୁନା ଘାଟ,
ନଟକୃତ ପୀତପଟ   ଜଗି ବସିଥିବ ବାଟ
ଝଟକି ଭେଟିବ ଆସି ଲଗାଇବ କେତେ ନାଟ ।

ଗୃହାଣୀ ଛଟକେ   ନୟନ ମଜାଇ
ଚିତ୍ତ ନେବ ହରି   ମୁରଲୀ ବଜାଇ
ଲମ୍ପଟ କପଟ ଶଠ   ଅଟେ ସେହି ନନ୍ଦସୁତ
ବଂଶୀବଟ ତଟେ ବସି ବଣୁଥିବ ଝଟଝଟ ।

ଲଳିତା—ସଖି ଦେଖିଲଣି ନା, ଯମୁନା କୂଳରେ ପଳାଶ ବନରେ କି ଶୋଭା ହୋଇଛି ।

ଚମ୍ପକଲତା—ହଁ ସଖି, ଉପରେ ନାଲି ନାଲି ପଳାଶ ଫୁଲ ଆଉ ତଳେ ଯମୁନା କଳା ଜଳ । ମନ ମୋହି ନେଉଛି ତ !

ବିଶାଖା—ସଖି, ଏଇ ପଳାଶ ଫୁଲକୁ ସବୁ କାମଦେବଙ୍କର ପତାକା ବୋଲି କହନ୍ତି ?

ଚିତ୍ରା—କି ଗୋ, ବଡ଼ ଚତୁରୀଙ୍କ ପରି ତ କଥା କହୁଛ । ଜାଣିନାହଁ ନା—ବସନ୍ତ ଯେ କାମଦେବଙ୍କ ଦୂତ । ଋତୁପତି ଆସି ମଧୁକାଳରେ ବିଜେ କଲେଣି ସବୁ !

ଲଳିତା—ବସନ୍ତ ତ କାମଦେବଙ୍କର ଦୂତ—ବସନ୍ତର ଦୂତ ତେବେ କିଏ ?

ଚମ୍ପକଲତା—ବସନ୍ତର ଦୂତ, କଳା କୋକିଳ, ଆଉ କିଏ ? ଶୁଣୁନାହଁ ନା, ମାଧବୀ କୁଞ୍ଜରେ କୋକିଳ ରାବ ଦେଲେଣି ।

ବିଶାଖା—ସତ ଏକା ସଖି, ମାଧବୀ ଫୁଲ ସବୁ କି ସୁନ୍ଦର ଫୁଟିଛନ୍ତି ଦେଖିଲଣି ନା ?

ଚିତ୍ରା—ଆଉ ଦେଖିଲଣି ନା—ରକ୍ତ କମଳମାନ ସବୁ କାଳିନ୍ଦୀ ଜଳରେ କେଡ଼େ ଶୋଭା ପାଉଛନ୍ତି ।

ଲଳିତା—ସତେ ସତେ ସଖି, ମୋ ମନେ ହେଉଛି ଯେପରି କୃଷ୍ଣ ଅନୁରାଗିଣୀ, ରାଜନନ୍ଦିନୀ, ରାଧାରାଣୀ, ନବଘନ ସୁନ୍ଦର, ନବୀନ ନଟବର ନନ୍ଦନନ୍ଦନଙ୍କ କୋଳରେ ବିରାଜି କରୁଛନ୍ତି ।

ଚମ୍ପକଲତା—ତେବେ ଚାଲ ସଖି ସେହି କୃଷ୍ଣ ରୂପ-ସ୍ରୋତରେ ଅବଗାହନ କରିବା ।

(ଗୀତ)

ନାଚେ ଯମୁନା ରଙ୍ଗେ
କଳକଳ ଛଳଛଳ ତରଳ ତରଙ୍ଗେ
ଝୁରୁଝୁରୁ ଫୁରୁଫୁରୁ ସମୀରଣ ସଙ୍ଗେ ।

ଅମଳ ଧବଳ ଚଳ ଚଞ୍ଚଳ ପାତି
ବିହରାଏ ଚରଚର ହରଷରେ ମାତି
ପ୍ରେମ ମଗନ ଭରେ ଫୁଲାଇଣ ଛାତି
ତାଳେ ତାଳେ ଅବିରଳ ଛୁଟଇ ବିଭଙ୍ଗେ ।
ନାଚେ ଯମୁନା ରଙ୍ଗେ ।

## ତୃତୀୟ ଦୃଶ୍ୟ

( ଏକାକୀ ଶ୍ରୀକୃଷ୍ଣ ପ୍ରବେଶ )

( ଗୀତ )

ଆଜି ଅଟିଛି ଋତୁପତି ହସଇ ଧରଣୀ ଋତୁ ବିଳାସେ—ମଧୁମାସେ
ଫୁଲ୍ଲ କୁସୁମଚୟ ମୁଦିତ ଅବନୀମୟ
ପୂରିତ ଦଶଦିଶ ମଳୟ-ଶ୍ୱାସେ—ମଧୁମାସେ ।
ମନ୍ଦମନ୍ଦ ବହେ ଦକ୍ଷିଣା ପବନ ଗନ୍ଧେ ଆକୁଳ ନବଯୁବ ଭୁବନ
ଗାବନ୍ତି ବିହଙ୍ଗେ ନବନବ ଛନ୍ଦେ
ଆନନ୍ଦେ ନବନବ ଭାଷେ—ମଧୁମାସେ ।
ନବୀନ ପୁଲକ ଭରା—ଋତୁ ବସୁନ୍ଧରା
ସଙ୍ଗୀତ ସାଗରେ ଭାସେ—ମଧୁମାସେ ।

( ଗୀତାନ୍ତେ ବସନ୍ତ ପ୍ରବେଶ )

ବସନ୍ତ—ହିଜଗତ ନାଥ, ଦେବର୍ଷି ନାରଦ ମୋତେ ତୁମ୍ଭଠାକୁ ପଠାଇ ଅଛନ୍ତି । ଏ ଦାସ ପ୍ରତି କି ଆଜ୍ଞା ହେଉଛି ।

କୃଷ୍ଣ— ତୁମ୍ଭେ କିଏ ?

ବସନ୍ତ—ମୁଁ କନ୍ଦର୍ପର ସହଚର ଋତୁରାଜ ବସନ୍ତ ।

କୃଷ୍ଣ— ଆଚ୍ଛା ବେଶ୍ ହୋଇଛି—ତୁମ୍ଭେ ଆସିଛ । ଦେଖ ବୃନ୍ଦାବିପିନରେ ମୋର ବସନ୍ତ ବିଳାସ ଅଭିଳାଷ ହୋଇଛି । ତୁମ୍ଭେ ବିହାର ଉପଯୋଗୀ ସାଜସଜ୍ଜାରେ କୁଞ୍ଜ କାନନକୁ ବିଭୂଷିତ କରାଅ । ଚୂତାଙ୍କୁରର ମଧୁର ଗନ୍ଧରେ ପ୍ରାଣକୁ ଉନ୍ମାଦ କରାଇ ଦିଅ । କେତକୀ ରେଣୁ ଓ ଚନ୍ଦନର ସୁଗନ୍ଧ ନେଇ ମୃଦୁମଳୟ ପ୍ରସ୍ଫୁଟିତ ମାଧବୀ ଗୁଚ୍ଛକୁ ଧୀରେ ଧୀରେ ଦୋହଲାଇ ଦେଉ । ଲତାଗୁଳ୍ମ ସବୁ ଉଜ୍ଜ୍ୱଳ ହରିତ ବର୍ଣ୍ଣରେ ରଞ୍ଜାଇ ଦିଅ । ପଳାଶପାଟଳ ପ୍ରଭୃତିର ଫୁଲ ଫୁଟାଅ । ଶିରୀଷ ଭ୍ରମରେ ବ୍ୟଜନ କରୁ । ଯମୁନା ବକ୍ଷରେ ହେମ କମଳ ଫୁଟି ଉଠୁ । ପିକବଧୂ ଚୂତଶାଖାରେ ବସନ୍ତର ଆଗମନ ଘୋଷଣା କରନ୍ତୁ । ଆମ୍ଭେ ଓ ରାଧା-କିଶୋରୀ ବ୍ରଜ ସଖା ଓ ବ୍ରଜତରୁଣୀଙ୍କୁ ନେଇ ଫଗୁ ଖେଳରେ ମାତିବୁଁ । ତୁମ୍ଭେ ଏ ଖେଳର ସମସ୍ତ ସରଞ୍ଜାମ ଯୋଗାଇ ଦିଅ ।

ବସନ୍ତ—ପ୍ରଭୁଙ୍କର ଯେଉଁ ଆଜ୍ଞା ?

କୃଷ୍ଣ— ମୋର ପ୍ରିୟ ସଖାଗଣ ମୋ ପାଇଁ ବ୍ୟସ୍ତ ହେଉଥିବେ । ଧେନୁବତ୍ସ ମୋର ନୂପୁର ଧ୍ୱନିକୁ କାନଡେରି ରହିଥିବେ । ମୁଁ ଯାଏଁ, ସେମାନଙ୍କ ସହିତରେ ମିଶି ଫଗୁ ଖେଳ ଆରମ୍ଭ କରିବି । ( ପ୍ରସ୍ଥାନୋଦ୍ୟତ )

( ମଧୁମଙ୍ଗଳର ପ୍ରବେଶ )

ମଧୁ— ଏ—ଏ କହ୍ନେଇ—ମୁଁ ତୋତେ ବଣଯାକ ଗୋଡ଼େଇଛି—ଆଉ ତୁ କ'ଣ ନା ଲୁଚକାଳି ଖେଳିଲାପରି ଖସି ଖସି ପଳାଉଛୁ ।

କୃଷ୍ଣ— ନାହିଁ ତ—ମୁଁ ଆଉରି ତମ ସଭିଙ୍କୁ ଖୋଜି ଖୋଜିକା ଗୁଳିଆଡ଼େ ବୁଲୁ ଛି—କାହାରି ଦେଖାନାହିଁ ।

ମଧୁ— ହଁ, ସମସ୍ତଙ୍କ ସାଙ୍ଗରେ ଚଲାଖି କରିବୁ କହ୍ନେଇ କାନ୍ଥ ମଧୁକୁ ଭୁଲାଇବାକୁ କାଟିକରି ପାଠ ଲାଗେ । ମୁଁ କ'ଣ ଗଉଡ଼ ବାଉଡ଼ ହୋଇଛି ଯେ ଅଣୀ ବରଷରେ ନାଁ ବାଳକ ଫିଟିବ ?

କୃଷ୍ଣ— କାହିଁ—ମୁଁ ତ କିଛି ଚଲାଖି କରୁ ନାହିଁ—ସିଧା କଥା କହୁଛି ।

ମଧ— ସିଧା କଥା କହୁଛୁ ? ସିଧା କିମିସଟା କ'ଣ ତା ତୋତେ ଛୁଇଁଛି ନା କେବେ ? ତୋର ତ ମୂଳରୁ ସବୁ ବଙ୍କା । ସିଧା କଥା ତୁ କୋଉଁଠୁ ପାଇବୁ ? ତୋ ଚୂଳ ବଙ୍କା, ତୋ ଆଖି ବଙ୍କା, ହସ ବଙ୍କା, ପାଦ ବଙ୍କା, ନାଁ ଟା ବି ବାଙ୍କ ବିହାରୀ—ସିଧା ତୋର କେଉଁଟା କହିଲୁ ?

( ଗୀତ )

ସବୁ ତୋର ବାଙ୍କ ବାଙ୍କିଆ ବାଙ୍କ ଆଖି ବାଙ୍କ ଶିଖିପଖିଆ ;
ବାଙ୍କ ପାଦ ପାଣି ବାଙ୍କ ତୋ ରାଧାଣୀ
ହୋଇଥାଉ ବାଙ୍କ ଠାଣିରେ ଠିଆ ।
ଗୋରୁ ଗୋପ ଟୋକାଙ୍କ ମେଳେ ବାଙ୍କ ହୋଇ ଗୁଳିଲା ବେଳେ
ମୁରୁକ ମୁରୁକ ବାଙ୍କ ହସ ଠିକ
ଗଉଡ଼ ଟୋକାଙ୍କ ପରାଣଖିଆ ।
ବାଙ୍କ ଅନ୍ତରରେ ବାଙ୍କ ବୁଦ୍ଧି ତୋର
ଅବାଙ୍କିଆଙ୍କର ପରାଣନିଆ ।

କୃଷ୍ଣ— ତୁ ତେବେ ବଡ଼ ସିଧା ସରଳିଆ, ନାଇଁ ମଧୁ ?

ମଧୁ— ମୋ ସ୍ୱଭାବଟା ଥିଲା ସିଧା, ବ୍ରାହ୍ମଣଙ୍କର ଯାହା ହୁଏ ; କେବଳ ତୋହରି ସାଙ୍ଗରେ ପଡ଼ି ସତ ଏକା ବଡ଼ ବଙ୍କା ହୋଇ ଗଲିଣି ।

କୃଷ୍ଣ— ତେବେ ତ ଭଲ ହେଲା ମୋ କଥା ତୁ ଠିକ୍ ବୁଝି ପାରୁଥିବୁ ।

ମଧୁ— ସବୁ ବୁଝେଁ—କିଛି କିଛି । ସେତିକି ବୁଝୁଛି ବୋଲି ତ କହୁଛି । ନ ହେଲେ ତୁ ମୋତେ ବାଷଠା ମାରି ଦିଅନ୍ତୁ ନାହିଁ କି ?

କୃଷ୍ଣ— କ'ଣ ବୁଝିଛୁ କହିଲୁ —

ମଧୁ— ବୁଝିଛୁ ଏତିକି ଯେ ଆଜି କହ୍ନେଇ ଗୋଟିଏ ମତଲବ ଆଣିଛୁ ।

କୃଷ୍ଣ— କୋଉଁଥିରୁ ବୁଝିଲୁ ?

ମଧୁ— ଛକ ଦେଖିଲି, ଗୋଠାକପରେ ଗୋଟାଏ ଅଚିହ୍ନା ଲୋକ ତୋ ସାଙ୍ଗରେ ଫୁସୁର ଫାସର ହୋଇ ଚାଲି ଯାଉଛନ୍ତି । ଏବେ ଭଲ ଖୋଲି କହ କଥାଟା ।

କୃଷ୍ଣ— କାହିଁକି—ତୁ ଆପେ ଭାବ ଠିକ୍ କରୁନୁ !

ମଧୁ— ସେତକକୁ ତ ବୁଦ୍ଧି ଚଳୁନାହିଁ । ତା ହେଉଥିଲେ କଥା କ'ଣ ଥିଲା କି ?

କୃଷ୍ଣ— ଆଚ୍ଛା ହେଉ, ଏଣିକି ଆ ଏକୁଟିଆ — ତୋତେ କହିଦେବି । ହେଇଟି ସୁବଳ ହେଣିକା ଏଣିକି ଆସୁଛନ୍ତି ।

( ପ୍ରସ୍ଥାନ )

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ଦାମ, ସୁଦାମ, ସୁବଳ ଓ କୋକିଳ )

( ଗୀତ )

ଆଜି ଖେଳିବା ଖେଳ,
କାଳିନ୍ଦୀ କୂଳରେ ଯେତେ ବରଜ ବାଳ ।
(ଆଜି) କଦମ୍ବ ମୂଳରେ ହେବ ପୀରତି ମେଳ ।
ନାଚି ନାଚି ତାଳେ ତାଳେ କେତେ ଗୀତ ଗାଇବା
ମଧୁର ମୋହନ ବେଣୁ ଥରେ ଥରେ ବାଇବା
ନାଚିବା—ହସିବା—ରଙ୍ଗରସେ ରସିବା
ନାଚିବା ବାହୁଣି ହୋଇ ପ୍ରେମରେ ଭୋଳ ।
ବନେ ବନେ ବୁଲି ବୁଲି ବନ ଫୁଲ ତୋଳିବା
ବ୍ରଜଧୂଳି ଅଙ୍ଗେ ଅଙ୍ଗେ ପତନରେ ବୋଳିବା
ଯମୁନା କୂଳରେ ଅତି କୁତୂହଳରେ
କନକ କମଳ ତୋଳି ଗୁନ୍ଥିବା ମାଳ ।

ସୁଦାମ—ଭାଇ ସୁବଳ, ଆଜି ଦିନଟା କେଡ଼େ ସୁନ୍ଦର ଦିଶୁଛି କହ ନ !

ଦାମ —ହଁ ଭାଇ, ପବନଟା କେଡ଼େ ମଧୁର ଲାଗୁଛି ସତେ !

ସୁବଳ—ହବ ନାହିଁ ନା ? ଏ ଯେ ବସନ୍ତ କାଳ ! ଏଥିଲେ ତ ଗଛପତ୍ର ପଲ୍ଲବ ଉଠିଲେଣି—ଆଉ ମଣିଷ ମନ ପୁଲକ ଉଠିବ ନାହିଁ ନା ?

ଦାମ —ବସନ୍ତ କାଳର ଦକ୍ଷିଣା ପବନକୁ ମଳୟ ପବନ କାହିଁକି କହନ୍ତି ଭାଇ ?

ସୁଦାମ—ମଳୟ ଗିରିରୁ ଏ ପବନ ଗୁଡ଼ାକ ବହି ଆସେ ପରା ! ସେଠି ଚନ୍ଦନ ଗଛରେ ବାଜି ଆସେ ବୋଲି ଏଡ଼େ ମିଠା ଲାଗେ ମିନା ଏ ପବନ !

କୋକିଳ—ଆଜି କିନ୍ତୁ ନୂଆ ରକମର ଖେଳ ଖେଳିବା ଚାଲ ।

ସୁବଳ—ରୁହ, କହ୍ନେଇ ଆସିଯାଉ ନା ! ସେ ତ ନିତ ନିତ ନୂଆ ନୂଆ ଖେଳ ଖେଳେ । ବଳେ ସେ କହିବ ନାହିଁକି ।

କୋକିଳ—ରୁହ, ରୁହ, ହେଇଟି ଶୁଣ—ବଇଁଶୀ ବାଜୁଛି । ( ସମସ୍ତେ କାନ ଡେରିବା )! ହଁ—କହ୍ନେଇ ତ ! ସେ ନ ହେଲେ ଏପରି ବେଣୁ ଆଉ ବଜାଇବ କିଏ ?

( ଗୀତ ଗାଇ ଗାଇ ଶ୍ରୀକୃଷ୍ଣ ମଧୁମଙ୍ଗଳ ପ୍ରବେଶ )

ଶ୍ରୀକୃଷ୍ଣ— ମଧୁରେ ମଧୁରେ ଆଜି ବାଜରେ ବେଣୁ ।
ଉଛୁଳାଇ ଅମ୍ବର ତରଳାଇ ଅନ୍ତର
ମଧୁରେ ମଧୁରେ ଆଜି ବାଜରେ ବେଣୁ ।
ମୁଗ୍ଧ ହୃଦୟେ ଆଜି ଜାଗିଉଠୁ ଆଶା
ବାଜରେ ବାଜରେ ବାଜ ରେଗା ରେଗା ସାସା
ସୁବଳ — ମାତରେ ଆନନ୍ଦେ ମନ୍ଦରେ ମନ୍ଦେ
ପୁଲକିତ ଛନ୍ଦେ ନାଚରେ ଧେନୁ । ୧ ।
କୃଷ୍ଣ —ସୁନ୍ଦର ବନ ଭୂମି ସୁନ୍ଦର ଗୀତ
ସୁନ୍ଦର ଶଶଧର ବିମୋହିତ ଚିତ୍ତ
ସକଳେ—ବହିଆସେ ରଙ୍ଗେ ପରିମଳ ସଙ୍ଗେ
ପବନ ତରଙ୍ଗେ କେତକୀ ରେଣୁ । ୨ ।

ସୁବଳ—ଭାଇ, ତୁ କୁଆଡ଼େ ଥିଲୁକି ? ଆମେ କେତେ ଖୋଜିଲୁଣି ।

କୃଷ୍ଣ —ଭାଇ ଦେଖୁଛନା, କିପରି ମଧୁର ପବନ ବହୁଛି—ମନ କିପରି ଉଚାଟ ହେଉଛି ।

କୋକିଳ — ହଁ ଭାଇ, ସେଇଥିପାଇଁ ଆମେ ସବୁ କହୁଥିଲୁ କି କହ୍ନେଇ ଆସିଲେ ଗୋଟିଏ ନୂଆ ରକମ ଖେଳ ଖେଳିବା ।

କୃଷ୍ଣ —ଠିକ୍ ଠିକ୍ ମୋହରି ମନକଥା ତ ତମେ କହିଲଣି, ମୁଁ ବି ସେଇଆ ଭାବୁଥିଲି ଏକା ।

କୋକିଳ—କି ଖେଳ ଖେଳିବା କହନ କହ୍ନେଇ ?

**କୃଷ୍ଣ** —ଭାଇ ସୁବଳ ସୁଦାମ ମଧୁମଙ୍ଗଳାଦ୍ଧ, ମଧୁ ବସନ୍ତରେ ଚାଲ ଯିବା ଫଗୁ ଖେଳିବା । ଧେନୁ, ବତ୍ସ, ଗୋଲପୁଷ୍ପ, ସଖା-ସଖି ସମସ୍ତଙ୍କୁ ଫଗୁ ରଙ୍ଗରେ ବୁଡ଼ାଇ ଦେବା । ସବୁ ଲାଲେଲାଲ୍ କରି ଦେବା ।

**ସକଳେ**—ଚାଲ ଚାଲ ! (ପ୍ରସ୍ଥାନ କଲେ ସମସ୍ତେ—ଏକା ମଧୁ ରହିଗଲ )

**ମଧୁ** —ହେଁ, ଗଜଡ଼ ଆଣ୍ଡୁ ଗୁଡ଼ାକ ଫର ? କହ୍ନେଇ ଯଉଁଥିରେ ମତାଇ ଦେଲ, ମେଣ୍ଢାଟେଲ ପରି ସେଇଥିରେ ମାତିଲେ । ଆପଣାର ତ ବୁଦ୍ଧିଶୁଦ୍ଧି ନାହିଁ—ପର ଝିଅ ବୋହୂଙ୍କ ସଙ୍ଗରେ ଏଇଷଣି ନବରଙ୍ଗ ନଗେଇବେ । ଗୋପଯାକ ହାକହୁର ପଡ଼ିବ, ହାଟ ବଜାରରେ ଡେଙ୍ଗୁର ବାଜିବ । ଅମେ ବାବା ଭିକାରି ବ୍ରାହ୍ମଣ—ଆମର ଏତେ ଲଟରେ ଦରକାର କ'ଣ ? ସେ ଯେଉଁ ବୁଢ଼ୀ ଡାକୁଣୀ ଜଟିଳା, ଅଉ ତା' ଝିଅ କଣ୍ଟା ଡାହାଣୀ କୁଟିଳା—ସେତ ସତାନେଇ ସାତପୁରୁଷଙ୍କୁ ଉଦ୍ଧାର ଦେବେ । ତହିଁକି ଆଉକ ହେ ଅଛି ଚନ୍ଦ୍ରସେଣା—ବାପରେ ବାପ୍ କୁଆଡ଼ୁ ଆସି ଏକ୍ ଠେଙ୍ଗା ଦେନି ଗୋଡ଼େଇବ ଯେ ଯିଏ ଯୁଆଡ଼େ ସବୁ ଝଟି ପଳେଇବେ—ମୁଁ ବଟର ଏଇ ବରଡ଼ା ପତର ଭଳି ସରୁଆ ଲଦ୍‌ଟା ଦେନି ଯିବି କୁଆଡ଼େ ? ହାବୁଡ଼ ଖାଇବି ମୁଁ—ଆଉ ଠେଙ୍ଗା ଟା ବ ପଡ଼ିବ ମୋର ମୁଣ୍ଡରେ । ଯେତିକ ଗଙ୍ଗା ଯିବ—ସେତିକ ଫଳ ପାଇବ । ଯିଏ ଯାଉ ପଛେ—ମୁଁ ଏଇଠି ରହିଲି ବାବା !

**ସୁବଳ**—( ନେପଥ୍ୟେ )—କ ରେ ମଧୁ, ତୁ ପଛକୁ ରହିଗଲୁ କା ?

**ମଧୁ**— ଯାଉଛି ଭାଇ—ଏ ହାଲୁକା ଦେହଟାକୁ ପୁଣି ବୋହି ନେବ ତ ?

**ସୁବଳ**—( ନେପଥ୍ୟେ )—କହ୍ନେଇ ଡାକୁଛି ପର !

**ମଧୁ**— ମୁଁ ଯାଉ ନାହିଁ କ—ଚାଲ । କହ୍ନେଇଟାକୁ ଆଉ ପାର ହେବ ନାହିଁ । ମୋର ସାଙ୍ଗରେ ଯେତିକ ହାଠ ଚା'ର । ମୋ ମନକଥା ସେ ଠିକ୍ ଠଉରେଇଛି—ଆଉ ହବ ନାହିଁ—ହବ ନାହିଁ । (ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

( ଚନ୍ଦ୍ରସେଣା ଦୁଧଭାର ଦେନି ପ୍ରବେଶ )

**ଚନ୍ଦ୍ରସେଣା**—ମା, ଆଲେ ମା, ଓଃ—କୁଆଡ଼େ ଗଲୁକ ଲୋ ? ଦୁର୍—କୁଆଡ଼େ ସବୁ ମଲେଣି ନା କଣ ?

( ଜଟିଳା ପ୍ରବେଶ )

ଜଟିଳା—ଆଇଲେ ତ ଗଡ଼ ଜନ୍ତି—ମା ଲୋ !

ଚନ୍ଦ୍ରସେଣା—କଲେ ମା—ଏମିତି ହେଉଛୁ କାହିଁକି ମ ?

ଜଟିଳା—ଇମିତି କାହିଁକି ହଉଛି ? ତୁ ତ ଗଲୁ ଗୋଠକୁ । କେଉଁ-ଦିନ ଆଇଲେ ଆଇଲୁ ନ ଆଇଲେ ନାହିଁ । ଏଣେ ଘର କଣ ହେଉଛି ସେ ହାଲ୍ କଏ ବୁଝିବ ?

ଚନ୍ଦ୍ରସେଣା—ମୁଁ କଣ ଗୋଟାକ ଯୋଡ଼ାଏ ହେବ ନା କ'ଣ ?

( କୁଟିଳା ପ୍ରବେଶ )

କୁଟିଳା—ନହେଇ ପାରିବୁ ତ ବାହା ହେବାକୁ ହକର ହକର ହେଲୁ କାହିଁକି ? କଏ କହୁଥିଲା କ, ଯୁଆଣିଆ ବହୂଟାକୁ ଘରକୁ ଆଣ ଆଣ ବୋଲି ?

ଚନ୍ଦ୍ରସେଣା—କଥା କ'ଣ କହନ ? ମୋ ସୁନା ଭଉଣୀଟା ପରା ! କଥା କ'ଣ ?

କୁଟିଳା—ହଁ, ସେଇମିତିକା ସୁନାଟା ଧନଟା କରି କରି ମୁଣ୍ଡ ଦେଇ ଦେଇ କ ତ ମାଇପଟାକୁ ଷେଣ୍ଢ କରି ଦେଲୁଣି । ସେ କ'ଣ ଏବେ ମଣିଷ ମାନୁଛି ! ପଦେ କହିଲେ ତ ଦଶପଦ ହାଙ୍କି ଦେବ—ମା ଲୋ କ ଦମାକ ସେ ଟୋକୀଟାର !

ଜଟିଳା—ମୁଁ ବାପ ସେଇଥିଲାଗି ତାକୁ କିଛି କହେ ନାହିଁ । ମତେ ଘାରି ଡର ମାଡ଼େ । କାଲେ ମହତ ନେଇନେବ । ବୋଇଲା ଆରେ ସଖି, ଆପଣା ମହତ ଆପେ ରଖି ।

ଚନ୍ଦ୍ରସେଣା—ମୋତେ ଖୋଲିକରି କଣ କହ ନ ।

କୁଟିଳା—ଖୋଲି ଆଉ କହିବ କ'ଣ ? ତମ ଅତି ଶରଧାର ଯେଉଁ ରାଧା ସଙ୍ଗ—ସେ ଯମୁନାରୁ ଖାଲି ପାଣି ଆଣିବାରେ ଲାଗିଛନ୍ତି । ତେଣେ ନନ୍ଦ ପୁଅ ଯମୁନା ଘାଟରେ ବଇଁଶୀ ବଜାଉଛନ୍ତି । ତେଣିକ ସେଗୁଡ଼ାକ କହିବ କ'ଣ ?

ଜଟିଳା—ତେହିଁକି ଯେଉଁ ଖେଚଡ଼ୀ ତେରଚଣ୍ଡୀ ଟୋକୀଗୁଡ଼ାକ ସାଙ୍ଗ, ହେ ତ ଜଣକୁ ଜଣେ ବଳିଆର ।

ଚନ୍ଦ୍ରସେଣା—ବହୂ ଏଇକ୍ଷଣି ଅଛି ନା ଘରେ ?

ଜଟିଳା—ଶୁଣୁଛୁ କ'ଣ, ପଚାରୁଛୁ କ'ଣ ?

ଚନ୍ଦ୍ରସେଣା—କ'ଣ—ନାହିଁ ? ଘରେ ନାହିଁ ? ମୋ ସାଙ୍ଗରେ ଚାଲିଥି । ଆଜ ତାକୁ ଯୋଉଠି ପାଇବ ତା ଚୁଟି ଧରି ଘୋସାରି ଘୋସାରି ହାଡ଼ ଭାଙ୍ଗିବ ; ଆଉ ସେ କାଳିଆ ଟୋକା, ସେ ଚହଲିବ କ ମୁଁ ଚହଲିବ । ଯାଏଁ —

( ପ୍ରସ୍ଥାନ )

ମଧୁ—( ନେପଥ୍ୟେ ) ମାଉସୀ ଲୋ ମାଉସୀ, ମାଉସୀ ଅଛ ହେ ?

ଜଟିଳା—କିଏ, ମଧୁ ନା କିଏ ରେ ?

( ମଧୁ ପ୍ରବେଶ )

ମଧୁ— ହଁ ମୁଇଁ ପରା, ତମର ଏଠି କ'ଣ ଲାଗିଛି କି ?

ଜଟିଳା—କିଛି ନା – ଜାଣୁ ନାହିଁ ନା – ପୁଅଟା ତ ବାଇଘୁଂଟାଏ— ଏଣୁ ତେଣୁ କଣ ବକୁଛି ।

ମଧୁ— କୁଆଡେ ରାଗ ହୋଇ ଗଲା କି ସେ ?

କୁଟିଳା— ମା ଖବରଦାର୍ । ଘୂାକୁ କିଛି କହନା, ଇଏ ତାଙ୍କର ସାଙ୍ଗ, ଘର ପଣରେ ଆସି ଏଠି ଉଲେଇ ହେଉଛି । ନକଲ୍ ନକଲ୍ ଏଠୁ । ଏକା ଖଡ୍ଡ଼ୁ ପଶାରେ ତୋ ବ୍ରାହ୍ମଣ ଚଣିଆ ଛଡେ଼ଇ ଦେବି ।

ମଧୁ— ମାର୍ ନା—ମୁଁ ମଲିଣି ।

କୁଟିଳା—ଦେଖିଲୁ ମା, ଆଜିକାଲି କଅଁଳ କଥାରେ ଶାଗ ସିଝେ ନାହିଁ ।

ଜଟିଳା—ଯୁଗ ଓଲଟା ଏ ଯୁଗ ଓଲଟା ।

( କୁଟିଳା ଜଟିଳାର ହାତ ଧରି ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

( ଲଳିତା ଓ ଚମ୍ପକଲତା ଗୀତ ଗାଇ ଗାଇ ପ୍ରବେଶ )

—ଗୀତ—

ଦେଖ ସଖି, ମନ୍ଦ ସମୀର ଧାଏ ଫୁଲ କଳି ପରଶି
ଚନ୍ଦ୍ର ଶାଖେ ଶୁଣ ବିହଙ୍ଗ କାକଳି ଦିଏ ସୁଧା ଧାର ବରଷି ।

ଦେଖ ସୁଚଞ୍ଚଳ ଜଳଦ ଶ୍ରେଣି
ନିର୍ମଳ ଆକାଶେ ଯାଉଛି ଭାସି
ଦୂରୁ ବହି ଆସେ ଫୁଲ ପରିମଳ ଆକୁଳପରାଣ ପରଶି ।

ଦେଖ ଦେଖ ସଖି ଏ ବଡ଼ ମନ୍ଦ
ଏଥି ପରେ ପଦ ଉଇଁବ ଚନ୍ଦ୍ର
କୋମଳ ହୃଦୟେ କେମନ୍ତେ ସହିବ ଯିବ ସିନା ଘ୍ରୃତ ତରସି ।

ଚମ୍ପକଲତା—ଚନ୍ଦ୍ର ଉଇଁବ କ'ଣ ଗୋ ଲଳିତେ ? ଆଜିତ ପୂର୍ଣ୍ଣିମୀ । ପୂର୍ବ ଦିଗକୁ ଚାହିଁଲଣି ନା !

ଲଳିତା—ସତେ, ଜଣିପଡ଼ୁ ଆଜି କେଡ଼େ ବଡ଼ ଦିଶୁଚନ୍ତି ! ଏ ଚନ୍ଦ୍ର ନା ସୂର୍ଯ୍ୟ !

ଚମ୍ପକଲତା—କାହିଁକି ସଖି, ଭ୍ରମର କୁମୁଦିନୀ ନ ହୋଇ ପଙ୍କଜିନୀ ହେବାକୁ ଏତେ ମନ କାହିଁକି ?

ଲଳିତା—ଚମ୍ପକଲତେ, ଅକଳଙ୍କ କୃଷ୍ଣ ଚନ୍ଦ୍ରଙ୍କ ଠେଇଁ ଯାହା ମନ ମଜିଛି, ସେ କୁମୁଦିନୀ ହେବାକୁ କାହିଁକି ମନ କରିବ ନା ପଙ୍କଜିନୀ ହେବାକୁ କାହିଁକି ଯିବ ? କୁମୁଦବାନ୍ଧବ କଳଙ୍କ ଯୁକ୍ତ ସତ,—ପଙ୍କଜନାଥ କଳଙ୍କ ମୁକ୍ତ ନୁହନ୍ତି ।

ଚମ୍ପକଲତା—ଠିକ୍ କହିଛ ଲଳିତେ । ଦେଖିଲଣି, ଧରଣୀର ଚପ୍ତ ବକ୍ଷରେ କି ସୁନ୍ଦର ଶୀତଳ ଚନ୍ଦ୍ରିକା ଝରି ପଡ଼ୁଛି । ଏ ଚନ୍ଦ୍ରାଲୋକ ସହିତ ଫୁଲର ସୁବାସ ଓ ଦକ୍ଷିଣା ପବନ ମିଶି ପ୍ରାଣକୁ ମତାଇ ଦେଉଛି ।

ଲଳିତା—ହଁ ସତ, ତା' ସହିତ କୋକିଳ ଥରେ ଥରେ ରାବି ଉଠିଲା ବେଳକୁ କି ଅପୂର୍ବ ପୁଲକରେ ପ୍ରେମ ଟାଙ୍କୁର ଉଠୁଛି ।

ଚମ୍ପକଲତା—କିନ୍ତୁ ଏ ସବୁ ସେହି କୁଞ୍ଜବନୋବିହାରୀଙ୍କୁ ସ୍ମରଣ କରାଇ ଦେଉଛି ମାତ୍ର । ତାଙ୍କ ବିନା ଏ କୁଞ୍ଜବନ ଶୂନ୍ୟ ଦିଶୁଛି ।

ଲଳିତା—ରହ ରହ କୁଞ୍ଜ-ରାଣୀ ଶ୍ରୀମତୀ ଆସୁଛନ୍ତି ପରା ! ତାଙ୍କର ନୂପୁର ସିଞ୍ଜିନୀ ଶୁଭୁଛି । ଆସ ଲୁଚି ରହିବା ।

( ସମସ୍ତେ ଲୁଚିଗଲେ )

( ଶ୍ରୀମତୀ, ବିଶାଖା, ଚିତ୍ରା ପ୍ରବେଶ )

ସଖିଗଣ— ଗୀତ

ମିତ ମଧୁର ବସନ୍ତ
ରତ୍ତ ହୋଇ ଅଛି ଜନମତ ଗୋ ।

ଯୂଥି ଜାଇ ମଲ୍ଲୀ ମାଧବୀ କେତକୀ ଫୁଟିଲାଣି ମଧୁ-ମାଳତୀ
ଛୁଟିଲେଣି ଦେଖ ମଧୁପ ନିକର ଭୁଟିଲି ଯୁବତୀ ମତ ଗୋ ।
ପିଇ ଚୂତ-ମଧୁ ମତ୍ତ ପିକବଧୂ ରଚିଲି ମଧୁର ସଙ୍ଗୀତ
ମନ୍ଦ ମନ୍ଦ ବହି ମଧୁର ମଳୟ ହରି ନେଉଅଛି ଚିତ୍ତ ଗୋ ।
ତରୁଲତାଗଣ ହେଲେ ଆନନ୍ଦେ ନବ କିଶଳୟ ଭୂଷଣ
ମଦକ ଉଠୁଛି ପଙ୍କଜ ସୁବାସ ମତାଇ ଦେଉଛି ମନ ଗୋ ।
ନୀଳ ଆକାଶରୁ ଚହଟ ଚନ୍ଦ୍ରିକା ଝରି ପଡ଼ୁଅଛି ହରଷେ
ଅଙ୍ଗେ ପୁଲକ ଧାଇବିଏ ଚନ୍ତୁ ମନ ରହି ନାହିଁ ବଶେ ଗୋ ।

ଶ୍ରୀମତୀ—ସଖି ଦେଖ, ସେ ମୋହନ ମୁରଲୀର ପ୍ରଭାବରେ କିପରି ଶୁଖିଲା ଗଛ ସବୁ ପଲ୍ଲବ ଉଠିଲେଣି । କୁସୁମ ସୁବାସରେ ଚତୁର୍ଦ୍ଦିଗ ମହକି ଉଠିଲାଣି ।

( ଚମ୍ପକଲତା ପଛଆଡୁ ଶ୍ରୀମତୀଙ୍କ ଆଖି ବୁଜି ରଖିବା )

ଶ୍ରୀମତୀ—ମୁଁ ଜାଣେ ସେ—କାଳିଆ ହୋଇ ପିନ୍ଧିଛିଏ, ହାତରେ ମୁରଲୀ ଅଛି—

—ଅଧ୍ୟାୟ—

ଚମ୍ପକଲତା—(ହାତ ଗୁଡ଼ାଦେଇ) ବସନ୍ତ ତ ସେହି ବଂଶୀ ସ୍ୱନର ବିକାଶ ମାତ୍ର । ହେଇ ଦେଖ, ମଧୁର ମଳୟ ଉପର ବଂଶୀ-ତାନରେ ଦୋହଲ ଦୋହଲ ଭାସି ଆସୁଛି । ସେଇ ତାନେ ତାନେ ଚିତ୍ତ ନାଚି ନାଚି ଉଠୁଛି । ଏହି ମଳୟ ସମୀରଣର ଆବାହନ ସଙ୍ଗୀତ ଗାନ କର ସଖି ।

ସଖିଗଣ— (ଗୀତ)

ଆ'ରେ ବହି ଆ'
ସିଣସିଣ ସମୀରଣ ଧୀରଧୀର ରହି ରହି ଆ ।
ନନ୍ଦନ ବନ ଧୋଇ ଚନ୍ଦନ ଗନ୍ଧେ
ମନ୍ଦମରୁତ ବହି ଆ'ରେ ଆନନ୍ଦେ
ସୁଦୂର ବାରତା ଆଣି    ନବୀନ ଆଶାର ବାଣୀ
କାନେ କାନେ କହି କହି ଯା' ।
ରଙ୍ଗିଆ କୋକିଳର    କୁହୁତାନ ସଙ୍ଗିଆ
ଅନ୍ତର ତଟିନୀ ତରଙ୍ଗିଆ
ସୁର ପୁର ସଙ୍ଗୀତ ଭଙ୍ଗିଆ
କହି ଅତୀତର କଥା    ଜଗାଇ ମଧୁର ବ୍ୟଥା
ମୋ ମରମ ଦହି ଦହି ଯା ।

( ଶ୍ରୀକୃଷ୍ଣ ମଧୁମଙ୍ଗଳାଦି ସଖାଗଣ ପ୍ରବେଶ )

ଶ୍ରୀକୃଷ୍ଣ—କି ଗୋ ବ୍ରଜସୁନ୍ଦରୀଗଣ ! ଆଜି ତ ତୁମ୍ଭମାନଙ୍କ ପ୍ରାଣରେ ଭାରି ବସନ୍ତ ବହୁଛି ।

ଲଳିତା—ହଁ ହଁ ହେ କାହ୍ନୁ—ତମେ କଳାକୋକିଳ ଆସିଛ ପରା, ଏଥିରୁ କ'ଣ ବୁଝିପାରୁନା ?

ଶ୍ରୀକୃଷ୍ଣ—ହଁ, ସେଇଥିପାଇଁ ତେବେ ବସନ୍ତ ହାଉଆ ବାଜି ତୁମେ ସବୁ ଜାଇଯୂଇ କୁନ୍ଦମଲ୍ଲିକା ଫୁଲ ପରି ଫୁଟି ଉଠୁଛ ।

ଲଳିତା—ତୁମେ ବି ଫୁଲ ଫୁଟିବା ଦେଖି ଝିଂଟ ମଧୁଲୋଭ ଭ୍ରମର ପରି ଆସି ଜୁଟିଲଣି ଯେ !

ଶ୍ରୀକୃଷ୍ଣ—ଆମେ ସବୁ ଆଜି ବସନ୍ତ ଉତ୍ସବରେ ମାତିଛୁଁ । ଭାଗ୍ୟକୁ ତୁମେ ସବୁ ଯେତେବେଳେ ଆସି ମିଳିଲଣି—ଆଉ କି ତୁମକୁ ଛାଡ଼ିବୁଁ ?

ଲଳିତା—ଉଃ—ଆମେ କଣ ତମ୍ଭଙ୍କ ଅପାରଗ ଯେ ଡରିବୁଁ ?

ଶ୍ରୀକୃଷ୍ଣ—ତମ ସଭିଙ୍କୁ ଆଜି ଲାଲେଲାଲ୍ କରିଦେବୁଁ । ରାଇଙ୍କ ଚମ୍ପକ ବରଣକୁ ନାଲି ରଙ୍ଗ ମାନିବ ଯେ ।

ଲଳିତା—ତା ତ ମାନିବ । ହେଲେ କଳା ଦେହକୁ ନାଲି ରଙ୍ଗ ଏକା ଖାଇଯିବ ତ !

ଶ୍ରୀକୃଷ୍ଣ—ଆଚ୍ଛା ହଉ, ଦେଖାଯିବ—କିଏ କାହାକୁ କେତେ ରଙ୍ଗ କରିପାରେ ।

ଲଳିତା—ଆସ ଆସ ତ ଭଲ—ଆମେ ବି ଅଣ୍ଟା ଭିଡ଼ି ତିଆରି ହେଲୁଁ ।

ଶ୍ରୀକୃଷ୍ଣ—ସୁବଳାଦି ସଖା-ଗଣ ! ଦେଖିବଟି !

ସଖାଗଣ— ( ଗୀତ )

ଘୁରିଘୁରି ଚରକି ପରି    ପିଙ୍ଗିଦେବା ରଙ୍ଗ ବାରି
ରଙ୍ଗି ଦେବା ଗୋରି କିଶୋରୀ    ରଙ୍ଗିଦେବା ବ୍ରଜନାରୀ ।
ଆଜି ହେବ ରଙ୍ଗ ରଣ    ଦେଖାଯିବ ଚତୁର ପଣ
ମାରି ରଙ୍ଗ ପିଚକାରୀ    କେ ଜିଣିବ କେ ଯିବ ହାରି ।
ଗୁଣ୍ଠି ଗୁଣ୍ଠି ରଙ୍ଗ ପାଣି    ଭେଜାଇବା ପଣତ କାନି
ରଙ୍ଗାଇବା ମୀନକୁଣ୍ଡଳ    ରଙ୍ଗ ରଙ୍ଗ ଅଧର ମାରି ।

ଲଳିତା—(ହସି) ତମ କରାମତି ତ ଏତିକି ? ସାବାସ୍ ସାବାସ୍ !

ଶ୍ରୀମତୀ – ଲଳିତେ—ଆମେ କ'ଣ ହାରିଯିବା ନା ?

ଲଳିତା—ହାରିଯିବା ? ଗୋ ଚମ୍ପକଲତେ, ଆମେ ରାଜ କୁମାରୀଙ୍କ ସଖି, ଆମେ କ'ଣ ଏ ଗଉଡ଼ ଟୋକାଙ୍କ ପାଖରେ ହାରିଯିବା ନା ? ଆସିବଟି ଦେଖିବା ।

( ସଖିଗଣଙ୍କର ଗୀତ )

ସଖିଗଣ— ଦୋ'ଳେ, ସଜନୀ ଅବିର ଉଡ଼ାଇ ।
ଦକ୍ଷିଣା ପବନ ଖରେ ବହିଆସେ ରଙ୍ଗେ
ଉଡ଼ିଯାଏ ଫଗୁରାଣି ସମୀରଣ ସଙ୍ଗେ
ରଙ୍ଗ ପିଙ୍ଗି ଦିଅ କଳାକାହ୍ନୁ ଅଙ୍ଗେ
ଚତୁରବରର ଦିଅ ଚତୁରୀ ଛଡ଼ାଇ ।
ଲାଲ କାନନ ସ୍ଥଳ
ଲାଲ ଯମୁନା ଜଳ
ଲା'ଲ କୋକିଳକୁଳ
ଲାଲ ମୟୂର ଚୂଳ
ଲା'ଲ କମଳ ଦଳ
ଅନୁରାଗେ ଢଳ ଢଳ
ଗୋପାଳ ବାଳକେ ଦିଅ ରଙ୍ଗରେ ବୁଡ଼ାଇ ।

ସୁବଳ—ତମକୁ ଆମେ ଏକା ଲାଲେଲାଲ କରି ଦେଇଛୁ ।

ମଧୁ— ଯେତେବେଳେ ଆମେ ମରଦ ପୁଅ ନା—ଥଣ୍ଡା ?

ଲଳିତା—ସେଇଥିପାଇଁ ଉହାଡ଼ରେ ଲୁଚି ରହିଛ କି ? ସଖି ଧରିବଟି ଏ ବଟୁଙ୍କୁ । ୟାଙ୍କୁ ଇମିତି ବେଶ କରାଇ ଦିଅ ଯେପରି ବ୍ରଜଗାଁ ଲୋକ ଦେଖୁଥିବେ ।

( ସମସ୍ତେ ଧରି ବଟୁଙ୍କୁ ରଙ୍ଗ କରିଦେଲେ )

ମଧୁ—ହଉ ହଉ ବନ୍ଧୁଆନ୍ତି ନାଚରେ ହାତ ଘଷିଛ, ଦେଖିବ ଯ୍ୟା ମଜାଟା । (ପ୍ରସ୍ଥାନ)

ଲଳିତା—ଛି—ଛି ବେହିୟାଙ୍କୁ ଲାଜ ନାହିଁ ପରି । ଆହୁରି ଏକଥା କହୁଛ ? ଆପଣା ମୁହଁ ଯଦି ଆପଣାକୁ ଦିଶୁଥାନ୍ତା ତେବେ ବୃତର କରନ୍ତ କି ?

ଶ୍ରୀକୃଷ୍ଣ—ଏତେ କଳିରେ କଣ ଅଛି ? କେହି ତ କାହାକୁ ଊଣା ନୁହେଁ—ତୁହିଁକି ତମେ ସବୁ ହେଲ ଶକ୍ତିରୂପିଣୀ ।

ସଖିଗଣ— ଗୀତ

ନଟବର ନାଗର ନବୀନକିଶୋର ବର
ମୋହନମୁରଲୀ ଧର ଲଳିତ ତ୍ରିଭଙ୍ଗ ।

ସଖୀକୃଷ୍ଣ—ନାଗରୀ ଶିରୋମଣି ବୃଷଭାନୁ ନନ୍ଦିନୀ
ଅରୁଣ ବରୁଣ ଜିଣି ଅଧର ସୁରଙ୍ଗ ।

ସଖିଗଣ—ଚେରିଛ ନୟନ ଠାଣି ବଙ୍କିମ ବେଣୁପାଣି
ଦରଶନେ ମୁରୁଛିଲ କୋଟି ଅନଙ୍ଗ ।

ସଖୀକୃଷ୍ଣ—ମଧୁରେ ମଧୁର ମିଶି ପରାଣେ ପରାଣ ମିଶି
ଅବିରତ ଉଚ୍ଛଳ ପ୍ରେମ ତରଙ୍ଗ ।

( ସମସ୍ତେ ପ୍ରସ୍ଥାନ )

( ଚନ୍ଦ୍ରସେଣା ପ୍ରବେଶ )

ଚନ୍ଦ୍ରସେଣା—ଆହା ହା—କି ସୁନ୍ଦର ! କି ସୁନ୍ଦର—ଏତେ ଦିନେ ମୋ ଜୀବନ ସଫଳ ହେଲା । ମାନବ ଜନ୍ମ ଧନ୍ୟ ହେଲା । ଦେବ ଦୁର୍ଲ୍ଲଭ ଏ ମଧୁର ଲୀଳା ଆଜି ଯାହା ମୁଁ ଚର୍ମ ଚକ୍ଷୁରେ ଦେଖିଲି ! କିଏ କାହିଁ ଅଛ ଜଗତବାସୀ—ଦେଖିଯାଅ ଥରେ—ଯମୁନା ତଟରେ ଗୋଲକବୃନ୍ଦାବନର ମାଧୁର୍ଯ୍ୟ । ରାସ-ରସ-ବିହାରୀ ରାଧାଗୋବିନ୍ଦଙ୍କର ଅମୃତ ଲୀଳା ରହସ୍ୟ । କି ମଧୁର—କି ମଧୁର !

( କୁଟିଳା ପ୍ରବେଶ )

କୁଟିଳା—ଆଁ—ଏଉଟା ଇମିତି ଭେଲକା ମାଇଲା ପରି ଛିଡ଼ା ହୋଇଛି କାହିଁକି ? ଏ ଭାଇ—ଭାଇ ମ ! ନଆଁ ଭାଇ, ନା ଚୁଲି ଭାଇ ନା—ଗାଡ ଭାଇ ଏଟା !

ଚନ୍ଦ୍ରସେଣା—କିଏ କୁଟିଳା ? ତୁ ମୋର ଏ ମଧୁର ସ୍ୱପ୍ନ ଭାଙ୍ଗିଦେଲୁ ? ସେ ନୟନାନନ୍ଦଙ୍କର ଯୁଗଳ ମାଧୁରୀ—ସେ ପ୍ରାଣାରାମ ଲୀଳା ମାଧୁରୀ ଆଉ କି ଦେଖିବି ? ଧନ୍ୟ ବ୍ରଜବାଳକ, ଧନ୍ୟ ବ୍ରଜ ଯୁବତୀ, ଏ ଲୀଳାର ସ୍ୱାଦ ତୁମେ ଏକା ଅନୁଭବ କରିଛ । ଧିକ୍ ମୋତେ ।

କୁଟିଳା—ଏଉଟା ବାୟା ନା କ'ଣ ? ଆରେ ନିର୍ଲଜ ! ତୋର ଆଖି ଆଗରେ ନନ୍ଦପୁଅ କାଳିଆ ତୋ'ର ଭାଆସୁଣୀକି ନେଇ ଗେହ୍ଲା ନାଟ ହୋଇ ଚାଲିଗଲା, ତୁ କଣ ଦେଖି କହୁଛୁ ମଧୁର ? ମୁଁ କହିବି କାହାକୁ ଲୋ ମା !

ଚନ୍ଦ୍ରସେଣା—ଏ ପ୍ରେମର ଗତି ବଡ଼ ଜଟିଳ—ଏ ଲୀଳା ରହସ୍ୟ ବଡ଼ କୁଟିଳ । କିନ୍ତୁ ଏ ଜଟିଳତା—ଏ କୁଟିଳତା ନ ଥିଲେ ଏହାର ମାହାତ୍ମ୍ୟ ଏତେ ବଢ଼ନ୍ତା ନାହିଁ । ତୁ ଅତି ଭାଗ୍ୟବତୀ କୁଟିଳେ । ତୋ'ର ଲାଗି ଏ ଗୁପ୍ତ ପ୍ରେମ ରହସ୍ୟର ଏତେ ମାଧୁର୍ଯ୍ୟ !

ଜଟିଳା—ମୋତେ ତ ଶୁଣି ତାଟକା ଲାଗିଲାଣି ଭାଇ ! ତୁ ଏତେ ଫୁରଫାର କରି ଆସିଥିଲୁ ବୋହୂର ଚୁଟି ଧରି ମାଡ଼ ମାରିବୁ ବୋଲି—ନନ୍ଦପୁଅର ଚମ୍ପି ଚପିବୁ ବୋଲି—ଇଟିଲୁ ଏଇ କ'ଣ ? ଛି—ତୋ ପୁରୁଷ ପଣକୁ ! କ'ଣ କହିବି ତୋତେ ! ଯମୁନାରେ ଯାଇ ବୁଡ଼ି ମରୁନାହୁଁ ? ତୋ ମୁହଁରେ କ'ଣ ପାଣି ମରିଗଲା ? ଛି—ଛି—ବେହିଆ, ଢିଟ, ଅଲଜୁକ—ଲାଜ ନାହିଁ ? ବେହିଆ ଗାଣ୍ଡିରେ ବଥ ଉଠିଲେ—ବେହିଆ କହେ—ମୋତେ ଭଲ ହେଲା ।

( ପ୍ରସ୍ଥାନ )

ଚନ୍ଦ୍ରସେଣା—ଆଁ—ଆଁ—ସତେ ତ ! ମୁଁ କଣ ଏଡ଼େ ଅଲଜୁକ ? ମୋହରି ସ୍ତ୍ରୀ ମୋହରି ଆଗରେ ପର ପୁରୁଷ ସଙ୍ଗରେ ରଙ୍ଗ ନାଟ ଗେଲବସର ହେଲା । ମୁଁ କଣ କିଛି କହିଲି ନାହିଁ ? ମୋ ଉପରେ କି ମନ୍ତ୍ର ଧୂଳି ପକାଇଲା ନା କ'ଣ ? ବଡ଼ ମାୟାବୀ ସେ କାଳିଆ, ମୋର ଏତେ ବଡ଼ ପ୍ରତିଜ୍ଞା, ଦମ୍ଭ, ସବୁ ଦଣ୍ଡକେ ଛଡ଼ାଇ ଦେଲା । ଆଚ୍ଛା ହଉ ହଉ, ଥରେ ଦିଥର ତିନିଥର ବେଳକୁ ଯିବ କୁଆଡ଼େ ? ମୋ ପାଲରୁ ଏଥର ଖସି ଗଲୁ । ହଉ ଯା—ଯା—କେତେ ବାଟ ଯିବୁ ? ଯାଇ ଯାଇ ଯଉଁଠି ପାଇବି ଏକା ଠେଙ୍ଗାକେ ଲୁଲେଲଲ କରି ହୋରି ଖେଳାଇ ଦେଇଥିବି ସେ ଦେଖିବୁ— (ପ୍ରସ୍ଥାନ)

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( କୃଷ୍ଣ ଏକାକୀ ପ୍ରବେଶ )

( ଗୀତ )

କୃଷ୍ଣ— କ୍ଷଣେ କ୍ଷଣେ ଆକୁଳ ଚିତ୍ତ,
କାହାନ୍ତି ମୋ ରସବତୀ, ବ୍ରଜଯୁବତୀ ।
କାହିଁ ମୋ ଆନନ୍ଦମୟୀ ପ୍ରେମ ମନ୍ଦାକିନୀ ଧାର,
କାହିଁ ରସ ବିଳାସିନୀ କାହିଁ ମୋ ହୃଦୟ ହାର ।
ବିଫଳ ମୁରଲୀନାଦ ବିଫଳ ପୀରତି ସାଧ
ବିଫଳ ହେଲା କି ଆଜି ଏ ସୁଖରାତି ।

ଆଜି ସୁନିର୍ମଳ ବାସନ୍ତୀ ଚନ୍ଦ୍ରିକା ବିଧୌତ ହୋଇ ବୃନ୍ଦାବନର ତରୁଲତା କେଡ଼େ ସୁନ୍ଦର ଦିଶୁଛି ! ପଶୁପକ୍ଷୀ କୀଟ ପତଙ୍ଗାଦି ସମସ୍ତ ପ୍ରାଣୀ ଆଜି ଋତୁରାଜ କୁହୁକରେ ଉନ୍ମତ୍ତ ପ୍ରାୟ । କିନ୍ତୁ କୁଞ୍ଜବନର ସକଳ ସୁଷମା, ବନ ମଲ୍ଲିକାର ସମସ୍ତ ସୌରଭ, ଯମୁନାର ସମସ୍ତ କଳତାନ, ଏକା ପ୍ରାଣ ପ୍ରିୟତମା ରାଧା ଲାଗି ଅସାର ବିଫଳ ହୋଇଛି ।

( ଗୀତ )

ଜୀବର ଜୀବନ ମୋର ସୁବଦନୀ ରାଇ
ଆନନ୍ଦ ଅମୃତ ଧାର ସୁଧାରସ ଦାୟୀ ।
ରାଧା ମୋର ପୂର୍ଣ୍ଣ ଇନ୍ଦୁ
ପ୍ରେମ ମୟୀ ସୁଧା ସିନ୍ଧୁ, ରାଧା ମୋର ପରାଣ ବନ୍ଧୁ !
ରାଧେ, ରାଧେ, ରାସେଶ୍ୱରୀ ! ଆନନ୍ଦମୟି ଗୋ !
କାହିଁ ଅଛ ? ତୁମ୍ଭ ଲାଗି ମୋର ବସନ୍ତ ଉତ୍ସବ ବୃଥା ।

ରାଧା ପ୍ରେମ ଆହ୍ଲାଦିନୀ, କାଞ୍ଚନବରଣୀ ଧନୀ
ଜୀବନେ ମରଣେ ଶୟନେ ସ୍ୱପନେ
ନୟନେ ନୟନେ ନୟନମଣି ।
ରାଧା ମୋର ସୁଧା ଧାର,
ହୃଦୟ ନିଧି କଣ୍ଠହାର,
ରାଧା ମୋର ଧ୍ରୁବ ତାର,
ବିନୋଦିନୀ ! ବିନୋଦିନୀ !
ରାସ-ରସ ଉନ୍ମାଦିନୀ ।

ରାଧା ପ୍ରେମ ଆରାଧନ-ରାଧା ନାମ ସାଧନ,
ରାଧା ରାଧା ବାଜରେ ବେଣୁ,
ରାଧାର ଯୁଗଳ ପଦ କୋଟିନିଧି ସମ୍ପଦ
ଆସ ମୋର ରାଧା ମୋର ରେଣୁ ।
ଅମୂଲ୍ୟ ରାଧାର ପୀରତି,
(ସେତ) ନବ ନବ ନିତି—ନିତି
(ହୃଦେ) ଅଙ୍କିତ ତାର ଚାରୁ ମୂରତି ।

( ଗୀତାନ୍ତେ ଚନ୍ଦ୍ରାବଳୀ ପ୍ରବେଶ )

ଚନ୍ଦ୍ରାବଳୀ—କହେ। ରାଧା ମନଚୋର, କପଟ ନାଗର, ରାଧା ପ୍ରେମରେ ତ ଏକାବେଳେ ବିଭୋର— ବାହା ବା !

କୃଷ୍ଣ —କିଏ ଚନ୍ଦ୍ରେ, ତୁମର କଥା ଏହିକ୍ଷଣି ଭାବୁଥିଲି ଚନ୍ଦ୍ରାନନେ !

ଚନ୍ଦ୍ରା —ହଁ, ମୁଁ ସବୁ ଶୁଣିଛି । ବେଶି କପଟତାର ପ୍ରୟୋଜନ ନାହିଁ ଶ୍ୟାମବନ୍ଧୁ । ଠିକ୍ କହନ୍ତି ପୁରୁଷ ଭ୍ରମର । ତୁମ୍ଭଙ୍କ ଭ୍ରମର ରୂପଟି ବି ଠିକ୍ ଭ୍ରମର ପରି । ଗୁଣ ମଧ୍ୟ ତଦ୍ରୂପ ।

( ଗୀତ )

କୃଷ୍ଣ —ତୋର ପ୍ରେମ ବିନା ଚନ୍ଦ୍ରେ ନ ଜାଣେ ମୁଁ କାହାରି,
ଚନ୍ଦ୍ରା—ତେଣୁ ପରି ରାଧା-କୁଞ୍ଜେ ଥାଅ ବ୍ରଜ ବିହାରୀ !

କୃଷ୍ଣ —ରାଧିକା ଅଧିକା ତୁ ଗୋ ଚାରୁ ଚନ୍ଦ୍ରାନନେ !
ଚନ୍ଦ୍ରା —ରାଧା ରାଧା ବୋଲି ବେଣୁ ବଜାଅ କାନନେ !

କୃଷ୍ଣ —ନ କର ସନ୍ଦେହ ସଖି ମୁହିଁ ବାରେ ସରାଗେ,
ଚନ୍ଦ୍ରା—କଳା ଅଙ୍ଗ ରଙ୍ଗାଇଛ କିଏ ଫଗୁ ପରାଗେ ।

କୃଷ୍ଣ —ମୋ ଜୀବ ନବନ ତୁହି ଆଗୋ ବ୍ରଜସୁନ୍ଦରୀ,
ଚନ୍ଦ୍ରା—ଜଣା ଅଛି ଶ୍ୟାମ ନଟ ଶଠ ପଣ ତୁମ୍ଭରି ।

ଚନ୍ଦ୍ରା—ଯେତେ ଚାତୁରୀ କର ପଛକେ ମୁଁ ସେଥିରେ ଭୁଲିବା ପାତ୍ର ନୁହେଁ । ଏତେ ରାତିରେ ଏକାକୀ ବନ ପଥରେ କାହାପାଇଁ ଅପେକ୍ଷା କରୁଛ ? ଏବେ ତ ରଙ୍ଗ ଖେଳି ଖେଳି ଦେହଯାକ ଲାଲେଲାଲ ହୋଇଛି । ସେଥିରେ ମନ ସନ୍ତୋଷ ହୋଇ ନାହିଁ ଯେ ରାତି ଅଧରେ ଅଭିସାର କରୁଛ ? ରସିକ ଶିରୋମଣି, ମନେ କରିଛକି କି, ଆଜି ତୁମ୍ଭଙ୍କୁ ଛାଡ଼ିଦେବି ? ବଡ଼ ସାଧରେ ବାଧା ପଡ଼ିଗଲା ଏବା । ଆସ ଆସ ଧରା ପଡ଼ିଛ ତ ?

( ଗୀତ )

ଚନ୍ଦ୍ରା—ତୋତେ କେ ଧରିପାରେ ?
କୃଷ୍ଣ —ଆପଣା ଇଚ୍ଛାରେ ମୁହିଁ ଧରା ଦିଅଇ ଯାହାରେ ।
ଚନ୍ଦ୍ରା—ତୋତେ କେ ଧରିପାରେ ?
କୃଷ୍ଣ —ପ୍ରେମରେ ଯେ ଖୋଜେ ପ୍ରେମରେ ଯେ ଭଜେ ।
ଚନ୍ଦ୍ରା—ପ୍ରେମର ଫାନ୍ଦରେ ପଡ଼ିଣ ସେ ମଜ୍ଜେ ।
କୃଷ୍ଣ —ସେ ମୋର ଜୀବନ—ମୋ ପରାଣ ଧନ
ଯେତେଣେ ଯାଏ ତେତେଣେ ମୋତେ ଟାଣେ ସେହି ପ୍ରେମଡୋରରେ ।

( କୃଷ୍ଣଙ୍କ ହାତ ଧରି ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

(ଜଣେ ଗୋପୀ ପ୍ରବେଶ)

ଗୋପୀ—ବୃନ୍ଦାବନରେ ଏ କଥା କିଏ କେବେ ଦେଖିଛ ଲୋ ମା ? ଏକେ ତ ବସନ୍ତ କାଳ, ସେଥିରେ ଏ ନିର୍ମଳ ଆକାଶ, ପୁଣି ମଧୁର ଗନ୍ଧବହ—ମଳୟ ପବନ ! ଓଃ ! ମନଟା କିମିତିକା ମାତି ଉଠୁଛି । ଆମ ଭଳିଆ ଶୁଖିଲା କାଠ ବିହୁରୁତ ଡାଳପତ୍ର କଅଁଳେଇ ଉଠିଲାଣି । ଆଉ ଏ ଗଜବ ଗଜବ ଟୋକା ଟୋକୀଙ୍କର କଥା କ'ଣ କହିବି ! ଆଜ ଦିନଟା ଯାକ କେହି ଜଣେ ହେଲେ ଭଲ ଘରେ ଥାଆନ୍ତେ । ସବୁ ଗୁଡ଼ାକ ଫଗୁ ଖେଳରେ ବାଇଆ ହୋଇ ଗଲେଣି ।

( ମଧୁ ରଙ୍ଗ ହୋଇ କାନ୍ଦି କାନ୍ଦି ପ୍ରବେଶ )

କିରେ ? ତୋତେ ଇମିତି କିଏ କଲାରେ ? ଆହା, କି ସୁନ୍ଦର ରୂପ ହୋଇଛି ! ଦେଖ, ଯେମିତି କେଉଁ ଗାତରୁ ବାହାରି ଅଇଲେ କି ସତେ !

ମଧୁ —ଏଁ-ଏଁ-ଏଁ (କାନ୍ଦିବା)

ଗୋପୀ—ହଉ, ହଉ, ଧକେଇ ହେବାଟା ସେତିକି ଥାଉ ଏବେ । ଏତେ ବାହୁନା ହେଉଛୁ କାହିଁକି କି ? କି—ପାଟିରୁ ଗିକା ବାହାରୁ ନାହିଁ ତ ? କ'ଣ କହୁରେ—ମୁଖ ତ ଦିଶୁଛୁ ପାତି ବାନ୍ଦର ପରି ।

ମଧୁ— ମୋତେ ଲଳିତା ହେଳିକା ସେଇ ମୋ ମୁହଁଯାକ କ'ଣ ଗୁଡ଼ାଏ ନାଳିଆ ନାଳିଆ ଘଷି ଦେଲେ ।

ଗୋପୀ—ଏଁ ? ନାଳିଆ ନାଳିଆ କ'ଣ ଘଷି ଦେଲେ ରେ ।

ମଧୁ— ହିଁ, ଆହୁରି ନାଳପାଣି ଗୁଡ଼ାଏ ବି ଢାଳି ଦେଇଛନ୍ତି ।

ଗୋପୀ—ଚେହେରାଟା ତୋତେ ଅଣ୍ଡିବା ଜନ୍ମ କିଏ ଦେଲାରେ ? ତୁ ଆହୁରି ମୁହଁ ହଲାଇ ଫେରାଦ ହେଉଛୁ ?

ମଧୁ— ହିଁ ଘରେ କହିଲାବାଲୀ ତୁ—ମୋତେ କମ୍ ଠିଉରେଇଛୁ କି ? ମୁଁ କଣ ଗୁଡ଼ଲାବାଲା ? ମୁଁ ବି ସେମିତି ମୋ ଅପମାନ ମେଣ୍ଟାଇ ନେଉଛି ଯେ ।

(ଯଶୋଦାଙ୍କର ପ୍ରବେଶ)

ଯଶୋଦା—କି ଗୋ, କଣ ହୋଇଛି କି ?

ଗୋପୀ—ହେଇ ରାଣୀ ତ ଆସିଲେଣି । ଯାଆଙ୍କଠିଁ ଶୁଦ୍ଧାକ କର୍ ଯା । ରାଣୀ ବୁଝିବ କି—ଏ ଅକାଳ କଥା କ'ଣ ? ଗୋପପୁରଟା ବଡ଼ ବେମହତ ହୋଇଗଲା ଏକା !

ଯଶୋଦା—କଣ କଣ, ମୁଁ ତ କିଛି ଶୁଣିନାହିଁ ଗୋ !

ଗୋପୀ—ଶୁଣିବ କାହିଁକି ? ତମର ରଜାଘର—ବଡ଼ ବଡ଼ ଚାକ-ପର ! ଆମ ଗୋପାଳ ଗୋଷ୍ଠୀରେ କାଳଯୁଗେ ଯା ନଥିଲା । ଲାଜ ସରମ ସବୁ ପୋଡ଼ ଖାଇଲେଣି । ତମ କହ୍ନେଇ ଚେଳିକ ଖେଚଡ଼ା ଟୋକାଙ୍କୁ ନେଇ ଯାହା ହେଉଛି ତାହ୍ନି କୁତାହ୍ନି କଲ ହେଇଛନ୍ତି ସେ ଟୋକୀଯାକ । ମାଇକିନିଆ ଝିଅଗୁଡ଼ାକ ଏ କଅଣ ଲୋ ମା ?

ଯଶୋଦା—ଆଁ ! କ'ଣ, କରିଛନ୍ତି କ'ଣ ?

ଗୋପୀ— ଆଉ କରିବେ କ'ଣ ? ରଙ୍ଗ ପାଣି ଅବିର ନେଇ ନିଜେ ନିଜେ ତ ନାଲି ଗୁଲୁଗୁଲୁ ହୋଇଛନ୍ତି—ତା'ପରେ ବ୍ରଜପୁରଯାକ ଲାଲେଲାଲ୍ କରି ଭସାଇ ଦେଲେଣି । ପଚାରି ଏ ମଧୁକୁ । କହିବୁଟିରେ ମଧୁ ।

ମଧୁ— (ଗୀତ)

କି କଥା କହିବି ଭଲା ପଚାରୁଛ ରାଣୀ,
ସରମ ଲାଗୁଛି କହିବାକୁ ସେ ବଖାଣି ।
ଆଖି ନ ଥିବ ଦେଖ କାନରେଟି ଶୁଣି,
ବିରଜ ଦାଣ୍ଡରେ ଯାହା ହେଲାଣିଟି ପୁଣି ।
ଗଉଡ଼ ଟୋକାଙ୍କ ସଙ୍ଗେ ଗୋପ ଗଉଡୁଣୀ,
ରଙ୍ଗ ପାଣି ଫିଙ୍ଗି ହେଉଛନ୍ତି ଟଣାଟଣି ।
ବାଟଘାଟ ନାଲି ରଙ୍ଗେ ବୁଡ଼ିତ ଗଲାଣି,
କାହ୍ନୁ କଳା ଅଙ୍ଗ ଲାଲଗୁଲାଲ ହେଲାଣି ।
ପ୍ରଶ୍ନଙ୍କୁ ଉତ୍ତର ନାହିଁ ସ୍ୱର୍ଗକୁ ନଶୁଣି,
ଆଉ କିଏ ହୋଇଥିଲେ ବସନ୍ତା କାହୁଣୀ ।

ମହତ ଖାଇଲେ ପୋଡ଼ କୁଳ ଭୂଆସୁଣୀ,
ଙ୍ଗର ନାହିଁ କାହାର ହେବାକୁ ଜଣାଜଣି ।
ଯେତେ ଲଟ ଲଗାଇଛୁ ତୁମ ଗୁଣମଣି
ମୋ ମୁଖ ଦେଖିଲେ ତାହା ପାରିବଟି ଜାଣି ।

ଯଶୋଦା—ଆଁ, କ'ଣ କହୁଛ ଗୋ ? ତାକୁ ଚମ୍ପି ପାରଲ ନାହିଁ । କଣ କରିବ ? କହ୍ନେଇ ତ ମୋର ଏମିତ ନ ଥିଲା । ଏ ବଗୁଲିଆ ଟୋକାଗୁଡ଼ାଙ୍କ ସାଙ୍ଗରେ ପଡ଼ି ଏବେ ତ କାହିଁକି ଇମିତ ହଉଛି ।

ଗୋପୀ—ଯାହା କୁହ ପଛକେ ତାକୁ ଖରାପ କଲେ ସେ ଟୋକାମାନେ ।

ଯଶୋଦା—ହୁଁ, ପିଲାଟା ଆଗରେ ଇମିତକା କଥାଗୁଡ଼ା କହ ନାହିଁ । ମୁଁ ଦେଖେଁ ଯାଏଁ—ସେ କୁଆଡ଼େ ଗଲା । (ପ୍ରସ୍ଥାନ)

ଗୋପୀ—ବାପମାଙ୍କ ମୁହଁ ପାଇଲେ ପିଲାଏ ଆଉ ଥଇ ଧରିବେ ? ମାଲୋ, ଗାଲ ଚିପିଦେଲେ ଦୁଧ ବାହାରି ପଡ଼ିବ । ସେ କଳା ମଚମଚ ଟୋକାଟାର ପୁଣି ଏତେ ଦାଉ ! ପୃଥିକୁ ଜୁଳୁମାଜୁଳ କରୁଛି । ସେ ରଜାଘର ଗେହ୍ଲା ମୁଅ—ସେ ଯାହା କଲା ତାକୁ ଶୋଭା ପାଇଲା—ଓଧ ସାଙ୍ଗର ଭୂଆବରାଡ଼ ବାଇ ହେଉଛନ୍ତି କାହିଁକି ଭଲା ? ସଙ୍ଗଦୋଷ ବାଧା । ପୁଣି ଏହାପର କି ମୋହନ ମନ ତ ମଟେଇଛି ସମସ୍ତଙ୍କୁ । ମୁଁ କାହିଁକି କହିବଲେ ମା, ଯେ ଯାହା କର ।

(ଉଭୟେ ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

( ଏକପାର୍ଶ୍ୱରେ ଶ୍ରୀରାଧା ଓ ସଖିଗଣ, ଅନ୍ୟ ପାର୍ଶ୍ୱରେ କୃଷ୍ଣ ଓ ସଖାଗଣ ରଙ୍ଗ ଖେଳୁ ଖେଳୁ—ସଖିଗଣଙ୍କର )

( ଗୀତ )

ସଖିଗଣ—( ପୁଣି ) ଆଗରେ ପଡ଼ିଛୁ ଧରା ଶ୍ୟାମସୁନ୍ଦର
ଦେଖାଯିବ ବଳେ ଜାଣ କେତେ ସୁନ୍ଦର ।
ଥରେ ପର ଥକ ଯାଉଛ ପଳାଇ
ଏଥର କହ୍ନାଇ ଆଉ ଯିବ କାହିଁ ?
ରଙ୍ଗାଇ ଦେବୁଟି ନୀଳ ତନୁ ତୁମର ।
ପୁରୁଷ ପଣକୁ ଛି ଛି ଲାଜ ନାହିଁ
ଗୋପାଲ ବାଳକେ ଦେବୁ ଦଉଡ଼ାଇ ।
( ସଖାଗଣ ପରାସ୍ତ ହୋଇ ପଳାଇଗଲେ )
ବାନ୍ଧିବୁ ତୁମକୁ ବାହୁ ପାଶେ ଆମର
(ପୁଣି) ଆଗରେ ପଡ଼ିଛ ଧରା ଶ୍ୟାମସୁନ୍ଦର ।

କୃଷ୍ଣ—ସୁନ୍ଦରୀଗଣ, ମୋତେ ଏକୁଟିଆ ପାଇ ତମର ଆରମାନ ସାଧି ନେବ ନା କ'ଣ ? ମୋତେ ଛାଡ଼ିଦିଅ ମୁଁ ମୋର ସଖାମାନଙ୍କ ସାଙ୍ଗରେ ଯିବ ।

ଲଳିତା—ଶଠ ନାଗର ହେ, ତୁମକୁ ଛାଡ଼ ଦେବୁ କୁଆଡ଼େ ! ଚୋରକୁ ଥରେ ଛାଡ଼ିଦେଲେ ଆଉ କଣ ଗତି ଅଛି ! ତୁମେ ଆମକୁ ଯେତେ ଅବସ୍ଥା, ହଟହଟା କରି ସାରିଲଣି ସେଥିର ଦଣ୍ଡ ଆଗ ପାଇସାର—ତେଣିକି ରାଧାରାଣୀଙ୍କର ଆଜ୍ଞା ହେଲେ ଖଲାସ ପାଇବ । ଏଇକ୍ଷଣି ତୁମେ ବନ୍ଦୀ ।

କୃଷ୍ଣ—କିଶୋରୀ ! ଏ ଅପରାଧୀ ପ୍ରତି ଶ୍ରୀମୁଖରୁ ଯେଉଁ ଆଜ୍ଞା ହେବ ତାହା ମୁଁ ଶିରୋଧାର୍ଯ୍ୟ କରିବ । ( ନତଜାନୁ ହୋଇ )

ଲଳିତା—( ଶ୍ରୀକୃଷ୍ଣଙ୍କ ହାତ ଧରି ଉଠାଇ ନେଇ ) ଶ୍ରୀମତୀ କ'ଣ କହିବେ ? ମୁଁ ଆଦେଶ କରୁଛି, ତୁମେ ଓ ଶ୍ରୀମତୀ ଦୁହେଁଯାକ ବନ୍ଦାବନ୍ଦ ଓ ଛନ୍ଦାଛନ୍ଦ ହୋଇ ଛିଡ଼ା ହୁଅ—ତ୍ରିଭଙ୍ଗରେ । ତୁମପରି ଚୋରକୁ ଏହାହିଁ ଉପଯୁକ୍ତ ଶାସ୍ତି ।

( ଲଳିତା ରାଧାକୃଷ୍ଣଙ୍କୁ ଯୁଗଳ କରିଦେଲେ )
( ସଖିଗଣଙ୍କ ଗୀତ )

ନବଘନ ସୁନ୍ଦର, କିଶୋର ନଟବର,
ରୁଚିରୁ ରଙ୍ଗାଧର ମୁରଲୀପାଣି,
ନବଭାବ କି ମଧୁର, ରଙ୍ଗଯବା ଅଧର,
ଝଟଝଟ ବିଜୁଳି ହେମବରଣୀ ।
କିବା ନବ ତମାଳେ ହେମଲତା ଜଡ଼ିତ
ଉଭେ ଉଭ ଛନ୍ଦାଛନ୍ଦ ଲଳିତ ଠାଣି
କିବା ନବନୀରଦ ପାଶେ ହେମ ସରୋଜ
ଯୁଗଳ ମାଧୁରୀ କେ ପାରିବ ବଖାଣି ।
ଅନୁପମ ସୁଷମା ଜଗତେ ନାହିଁ ସୀମା
ଗଢ଼ିଅଛି କେଉଁ ବିଧି ପୀୟୂଷ ଛାଣି,
ଉଛୁଳଇ ଭୁବନ, ଉଛୁଳଇ ଗଗନ
ଉଛୁଳଇ ପବନ ସମସ୍ତ ଜାଣି ।

କୃଷ୍ଣ—ସଖିଗଣ, ତୁମ ସଖି ରାସେଶ୍ୱରୀ ଆଜି ବସନ୍ତ ରାସ-ବିଳାସରେ ଉନମତ୍ତ ହୋଇ ଅଛନ୍ତି । ମଧୁର ଗନ୍ଧ, ମୃଦୁଳମଳୟ ଚିତ୍ତରେ ନୂତନ ମାଦକତା ଜଗାଇ ଦେଉଛି । ମଧୁକରମାନେ ମାଧବୀ କୁଞ୍ଜରେ ମଧୁର ଗାୟନ କରୁ-ଅଛନ୍ତି । ତୁମ୍ଭେମାନେ ମଧୁକାଳର ଉପଯୋଗୀ ସଙ୍ଗୀତ ଯୋଜନା କର ।

## ବସନ୍ତ ବିଳାସ

ଲଳିତା—ହେ ରାସବିଳାସୀ ! ଆମ ସଖି ମାଧବିକା, ତୁମେ ତାହାଁକ କୃଷ୍ଣ ମଧୁକର । କିନ୍ତୁ ଆଜି ବସନ୍ତ ଉତ୍ସବରେ ଅବିର ବୋଳି ହୋଇ ଦୁହେଁଯାକ ଅନୁରାଗ ରଞ୍ଜିତ ହୋଇଅଛ । ଆସ ଚମ୍ପକଲତେ, ଆମେ ସବୁ ଗୋପାଙ୍ଗନା ମିଳି ବସନ୍ତଉତ୍ସବ ଗୀତିକା ଗାୟନ କରି ଯୁଗଳମାଧୁରୀ ଉପଭୋଗ କରିବା ।

( ସଖିମାନଙ୍କର ଗୀତ )

ଆଜିରେ ବସନ୍ତ ପ୍ରାଣେ ଜାଗିଛି ହୋରି,
କଳା ଅଙ୍ଗ ରଙ୍ଗ ହୋଇ ଗୋରା କରଇ ଗୋରି ।
ଧୀରି ଧୀରି ବହେ ସମୀର
ଫୁରୁ ଫୁରୁ ଉଡ଼େ ଅବିର
କିଶୋରୀ ବଦନ୍ତ ଫଗୁ-ରଞ୍ଜିତ ହେମଗୋରୀ ।
ଫଗୁ ରାଗେ ବୃନ୍ଦାବନ
ଅନୁରାଗେ ଉନ୍ମାଦନ
ଖେଳନ୍ତି କିଶୋର ସନେ ଲଜ୍ଜୁଳି କିଶୋରୀ
ଆଜିରେ ବସନ୍ତ ପ୍ରାଣେ ଜାଗିଛି ହୋରି ।

କୃଷ୍ଣ—ତୁମ୍ଭେମାନେ ଅସରନ୍ତି ସୁଧାରସ ଭଣ୍ଡାର । ଯେତେ ପାନ କଲେ ମଧ ମୋର ତୃପ୍ତି ଆସୁନାହିଁ । ଆହୁରି ପିଇବାକୁ ମନ ହେଉଛି । ଗାଅ ଗାଅ ସଖି, ତୁମ ଅମିୟ ସଙ୍ଗୀତରେ ମନ ପାଗଳ ହୋଇଯାଉ ।

ଲଳିତା—ଆମକୁ ପାଗଳ କରିଦେଇ ରଙ୍ଗ ଦେଖୁଛ ! କହିବାର ତୁମେ—ତୁମ୍ଭେ କାହିଁକି ପାଗଳ ହେବ ? ହେଉ, ତୁମର ଆନନ୍ଦ ବର୍ଦ୍ଧନରେ ତ ଆମର ଆନନ୍ଦ । ଗାଅ ସଖି ।

( ଗୀତ )

ସଖିଗଣ— ସଙ୍ଗିନୀ ରସ ରଙ୍ଗିନୀ ଆସ ଗୋ ବରଜ ନାରୀ,
କୁଞ୍ଜ ଭିବନେ ରାଧିକା ସନେ ବିଜୟ କୁଞ୍ଜବିହାରୀ ।
ନବୀନା କିଶୋରୀ କିଶୋର ପାଶ
ନବଘନେ କିବା ତଡ଼ିତ ହାସ,
ଜଡ଼ିତ ଶ୍ୟାମ ପାଦପ ଅଙ୍ଗେ ହେମଲତା ମନୋହାରୀ !
ଜୟ ରାଧେଶ୍ୟାମ ରାସରସିଆ
ଜୟ ବିନୋଦିନୀ ଜୟ ବିନୋଦିଆ,
ମନ ମୋହନିଆ ଯୁଗଳ ମାଧୁରୀ ଦେଖିରେ ନୟନ ଭରି !

( ଯବନିକା )



# ଶରଦ୍ରାସ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

ଶରତ୍‌କାଳ ରଜନୀ, ଆକାଶରେ ପୂର୍ଣ୍ଣିମା ଚନ୍ଦ୍ର—ବୃନ୍ଦା ପ୍ରବେଶ)

(ଗୀତ)

ବୃନ୍ଦା— ଆ'ରେ ଶରଦ ଶଶୀ ନଭୁଁ ଖସି ଆ'ରେ
ତରଳ ତାରକା ମେଳେ ହସି ହସି ଆ ରେ ।
ତର ବରହଣୀ ଏହି କୁମୁଦନୀ କାସାରେ
ଏକାକୀ ରହିଛି ଚୁହିଁ ତୋତେ କେତେ ଆଶାରେ
ମୀର ଦରପଣେ ତାର ପାଶେ ବସି ଆ'ରେ ।

(ଜ୍ୟୋତ୍ସ୍ନାରେ ବଶାଖା, ଇନ୍ଦୁ, ଚମ୍ପା ପ୍ରଭୃତି ସଖି ମେଳରେ ଶ୍ରୀମତୀଙ୍କର ପ୍ରବେଶ )

ଲଳିତା—କି ଗୋ ବୃନ୍ଦେ, ଏକୁଟିଆ ଏକୁଟିଆ କାହା ସାଙ୍ଗରେ ପ୍ରେମାଳାପ କରୁଛ କି ?

ବୃନ୍ଦା— (ହସି) ସଖି ଏ ପୂର୍ଣ୍ଣିମା ରାତିରେ ଶରଦଚନ୍ଦ୍ର ଦେଖିଲେ କାହାର ହୃଦୟ-ସାଗର ଉଚ୍ଛୁଳି ନ ଉଠିବ କହିଲ ?

ଇନ୍ଦୁ— ତାହିଁକି ତୁମ ପରି ରସିକାର—

ଚମ୍ପା— ଯାହାକୁ ସିନା ବିରହ ବାଧୁଥିବ ।

ଶ୍ରୀମତୀ—ବ୍ରଜପୁରେ ଏପରି କେଉଁ ଗୋପାଙ୍ଗନା ଅଛି ଯେ ସେଥିରୁ ମୁକ୍ତ ପାଇଛି ?

ଲଳିତା—ଠିକ୍ ଠିକ୍ ତୁମଠାରୁ ଅଧିକ କିଏ ?

ଶ୍ରୀମତୀ—ତୁମମାନଙ୍କଠାରୁ ମୁଁ ଅଧିକ କେଉଁଥିରେ ଭଲି । ତୁଚ୍ଛାଟାରେ ମୋହରି ନାଁରେ ଯେତେକ ଅପବାଦ ।

ବୃନ୍ଦା— ସଖି ଶ୍ରୀମତୀଙ୍କର ସେଥିପାଇଁ ଦୁଃଖ କ'ଣ ? କୃଷ୍ଣ ଅନୁରାଗ ପାଇଁ ସଂସାରରେ ଯେ ଅପବାଦ ତାହାଠାରୁ ବଳି ସୁଖ ଆଉ ଅଛିକି ସଖି ? ତୁମ ଭଳି କୃଷ୍ଣ ପ୍ରେମର ଅଧିକାରିଣୀ ଯଦି ଆମେ ହୋଇଥାନ୍ତୁ ତେବେ—

ଶ୍ରୀମତୀ—(ବୃନ୍ଦା ମୁଖରେ ହାତ ଦେଇ ବାରଣ କଲେ) ଥାଉ ଥାଉ ସଖି, ସେତିକି ଥାଉ ।

ବୃନ୍ଦା— ହଉ ତେବେ ଅନ୍ୟ କଥା କହ ।

ଶ୍ରୀମତୀ—ଆଚ୍ଛା ସଖି, ଏ ନିର୍ମଳ ଆକାଶରେ ଚନ୍ଦ୍ର ଦେଖି ତମର କ'ଣ ମନେ ହେଉଛି ସତ କହିଲ ?

ବୃନ୍ଦା—କ'ଣ ତୁମ ମନକଥା କହିବି ନା ? ଏ ସକଳଙ୍କ ଧଳା ଚନ୍ଦ୍ର ଦେଖି ମୋର ସେହି ଅକଳଙ୍କ କାଳିଆ ଚନ୍ଦ୍ରଙ୍କ କଥା ମନେ ପଡ଼ୁଛି । ହେଲା ନା ସଖି ?

ଲଳିତା—ଶ୍ରୀମତୀଙ୍କ ମନ କଥା ଠିକ୍ କହିଦେଇଛ—ବାଃ ବାଃ ।

ଇନ୍ଦୁ— ସଖି, ସରୋବରର ନିର୍ମଳ ଜଳରେ କେତେ ପ୍ରଫୁଲ୍ଲ କୁମୁଦ ଫୁଟିଛି ଦେଖିଲଣି ?

ଚମ୍ପା— ରାତିଟାରେ କ'ଣ ଭ୍ରମର ଉଡ଼ୁଛନ୍ତି ନା କ'ଣ ଗୋ ?

ବୃନ୍ଦା— ଆପଣା ମନର ଭାବରୁ ତୁମକୁ ସେହିପରି ଦିଶୁଥିବ ।

ଶ୍ରୀମତୀ—ରାତିରେ କ'ଣ ଭ୍ରମର ଆସେ ନାହିଁ ସଖି ?

ବୃନ୍ଦା— ନ ଆସିବେ କାହିଁକି ? ପ୍ରେମରେ କ'ଣ ଦିନ ରାତି ଅଛି ନା ବେଳକାଳ ଅଛି ? ସେପରି ଉତ୍କଣ୍ଠା—ସେପରି ଆକର୍ଷଣ ଥିଲେ ନିଶ୍ଚେ ଆସିବେ ?

ଲଳିତା—ଆସିଲ ଏଇ ଚନ୍ଦ୍ରକୁ ଡାକିବା । ବଳେ ତୁମ କଥାର ସତମିଛ—

(ଗୀତ)

ସଖିଗଣ— ନୀଳ ଗଗନେ ବସି ସୁନ୍ଦର ଶଶୀରେ
ମଧୁରେ ମଧୁରେ ହସି ଉଠଇ ଉଲ୍ଲସିରେ ।
ନୀରବ ନଶୀଥେ ତୋର କେହି ଯଦି ସାଥି
ଏକାକୀ ରହିଛି ଚନ୍ଦ୍ର ବସି ସାରା ରାତି
ରଖିଛି ତୋ ଲାଗି ଚୁରୁ ଅଞ୍ଚଳ ପାତି ।
କହିବି ତୋ ଆଗେ କେତେ ପ୍ରାଣର କାହାଣୀ
ଗୋପନେ ବିଜନେ ମୋର ହୃଦୟର ବାଣୀ
ଅପାର ଆବେଗେ ଚିତ୍ତ ଅଥୟ ହେଲାଣି
ସରାଗେ ସବେଗେ ଆସି ଯାଆ ତୁ ପରଶିରେ ।
ଝରିଆସେ ଆକାଶରୁ ସୁଧା ରାଶିରାଶି
ପ୍ରେମ କଲ୍ଲୋଳିନୀ କିବା ଯାଉଅଛି ଭାସି ।
ଚାହିଁ ରହିଅଛି ମୁହିଁ ଆକୁଳ ପିଆସୀ
ବିଧୂର ଅନ୍ତର ମୋର ଦେଇ ଯା ପରଶିରେ ।

(ପଟକ୍ଷେପ)

## ଦ୍ୱିତୀୟ ଦୃଶ୍ୟ

( ଶ୍ରୀକୃଷ୍ଣ ଏକାକୀ ପ୍ରବେଶ ହେଲେ )

( ଗୀତ )

ସୁନ୍ଦର ଶଶଧର ନଭେ ବିରାଜେ
ହସଇ ନାଚଇ ମଧୁର ସାଜେ ।
ପୁଲକେ ପୁଲକେ ନାଚେ ତାଳେ ତାଳେ
ଝଲକେ ଝଲକେ ସୁଧା ରାଶି ଢାଳେ ।
ଛାଡ଼ି ଅଭିମାନ ଛାଡ଼ି ସବୁ ଲାଜ
ଅତଏବ ପିପାସିତ ଅନ୍ତର ଆଜ ।
ସରମ ଭରମ କରି ଦୂର
କାମ ଦରପ କରି ଚୂର
ଅଥୟ ହୃଦୟ, ଝରି ମୁରଲୀ ବାଜେ ।

ଶ୍ରୀକୃଷ୍ଣ—ଯେପରି ମଧୁର ଯାମିନୀ, ସେହିପରି ମଧୁର ଚନ୍ଦ୍ରମା ! ଆହା, କି ମନୋରମ ! ପୂର୍ଣ୍ଣ ଶଶଧର ଦେଖି ମନେ ହେଉଛି, ଆଜ ପୂର୍ଣ୍ଣିମା ରଜନୀ । ତେବେ ମୋ ପ୍ରାଣରେ କଣ ଅପୂର୍ଣ୍ଣ ରହିଗଲା ପରି ଲାଗୁଛି କାହିଁକି ? ମୁଁ ଯେପରି ଆଜ କି ଅନିର୍ବଚନୀୟ ଅଭାବ ଅନୁଭବ କରୁଛି । ଏ ଅକାରଣ ଆକୁଳତାର କାରଣ କ'ଣ ? କିଏ ମୋର ମୁଗ୍ଧ ଚିତ୍ତକୁ କି ମୋହନ ମନ୍ତ୍ରରେ ଆକର୍ଷଣ କରୁଛି । ଇଏ ତ ଆଉ କେହି ନୁହେଁ । କୃଷ୍ଣଗତପ୍ରାଣା ଗୋପାଙ୍ଗନାମାନଙ୍କ ବ୍ୟତୀତ ଆଉ କେହି ନୁହେଁ । ମୁଁ ତେବେ ପୌର୍ଣ୍ଣମାସୀ ଯୋଗମାୟା ଦେବୀଙ୍କୁ ସ୍ମରଣ କରେ । ତାଙ୍କ ଛଡ଼ା ଆଉ କିଏ ମୋର ମନୋରଥ ପୂର୍ଣ୍ଣ କରିବ ?
( ସ୍ମରଣ କଲେ )

( ଯୋଗମାୟା ପ୍ରବେଶ )

ଶ୍ରୀକୃଷ୍ଣ—ଦେବୀ ! ମୋର ପ୍ରଣାମ ଗ୍ରହଣ କରନ୍ତୁ ।

ଯୋଗମାୟା—ଗୋଲକବିହାରୀ ! ଆଜ ଅସମୟରେ ମୋତେ ସ୍ମରଣ କରୁଛ କାହିଁକି ?

ଶ୍ରୀକୃଷ୍ଣ—ଦେବୀ ! ତୁମଙ୍କୁ ସ୍ମରଣ କରିବାର ଏହାଠାରୁ ବଳି ସୁସମୟ ଆଉ ଅଛି କି ? ବିଶେଷତଃ ଅସମୟ ନ ପଡ଼ିଲେ ତୁମଙ୍କୁ ବା ସ୍ମରଣ କରନ୍ତି କାହିଁକି ?

ଯୋଗମାୟା—ତୁମ ମନର ଅଭିଳାଷ ମୋତେ ଖୋଲିକରି କୁହ ହରି !

ଶ୍ରୀକୃଷ୍ଣ—ମୋର ମନର ଅଭିଳାଷ ତୁମ୍ଭେ କ'ଣ ଜାଣି ପାରୁନାହଁ ? ଦେଖ ଦେଖ ଦେବି, ଚନ୍ଦ୍ରକିରଣରେ ବୃନ୍ଦାବନର ବନଭୂମି କେତେ ରମଣୀୟ ଶୋଭା ଧାରଣ କରିଛି । ଶରଦଲକ୍ଷ୍ମୀ ଅନୁପମ ବେଶଭୂଷାରେ ବିଭୂଷିତ ହୋଇ ବିରାଜ କରିଛନ୍ତି । ଏହା ସବୁ ଦେଖି ରାସବିଳାସିନୀ ବ୍ରଜସୀମନ୍ତିନୀମାନଙ୍କ ପାଇଁ ମୋର ଚିତ୍ତ ବଡ଼ ଅଧୀର ହେଉଛି ।

ଯୋଗମାୟା—ଜଗତ୍ ଚିନ୍ତାମଣି ! ତୁମ ଇଚ୍ଛାରେ ନିଜଗତ ଆତଜାତ ହେଉଛି, ଏଥିପାଇଁ ଚିନ୍ତା କ'ଣ ? ତୁମ ଲୀଳାର ସାହଚର୍ଯ୍ୟ କରିବା ପାଇଁ ତ ମୁଁ ବ୍ରଜଧାମକୁ ଆସିଛି ।

ଶ୍ରୀକୃଷ୍ଣ—ବେଶ୍ ବେଶ୍ ଦେବୀ ! ଏଇ ଗୁପ୍ତ ରାସବିଳାସର ଅନୁକୂଳ ଯେଉଁମାନେ କେବଳ ତାଙ୍କର ଛଡ଼ା ଆଉ ସମସ୍ତଙ୍କୁ ତୁମର ଯୋଗନିଦ୍ରାରେ ଅଭିଭୂତ କରାଅ ଏବଂ ବ୍ରଜବଧୂମାନଙ୍କର ଅଭିସାରରେ ସାହଚର୍ଯ୍ୟ କର ।

ଯୋଗମାୟା—ଇଚ୍ଛାମୟଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ( ପ୍ରସ୍ଥାନ )

ଶ୍ରୀକୃଷ୍ଣ—ଯୋଗମାୟା ଦେବୀଙ୍କ ଉପରେ ଲୀଳାର ସମସ୍ତ ଭାର ଦେଲି । ମୁଁ ଏବେ ବେଣୁବାଦନ କରି ଏଣୀନୟନା ବ୍ରଜଲଲନାମାନଙ୍କୁ ଆହ୍ୱାନ କରେଁ । ଏହି ନିଜଗତାକର୍ଷିଣୀ ବଂଶୀଧ୍ୱନି ଶ୍ରବଣ କରି କେଉଁ ପ୍ରେମୋନ୍ମାଦିନୀ—କେଉଁ କୁଳକାମିନୀ ସ୍ଥିର ହୋଇ ରହିପାରିବ ?

( ଗୀତ )

ବେଣୁ ବାଜ ରେ ବାଜ ରେ
ରାଧା ରାଧା ରାଧା ବୋଲି ବେଣୁ ବାଜ ରେ ।
ଭେଦି ନନ୍ଦ ନିକେତନ  କମ୍ପି ଉଠୁ ବଂଶୀ ସ୍ୱନ
ମଜାଇ ଗୋପିକା ମନ  ବେଣୁ ବାଜ ରେ ।
ମଧୁର ମୁରଲୀ ନାଦ  ନାଶେ ଚିତ୍ତ ଅବସାଦ
ପୂରିବ ମୋ ମନସାଧ -- ବେଣୁ ବାଜ ରେ ।

## ତୃତୀୟ ଦୃଶ୍ୟ

( ଗୋପାଳ ବାଳକ ପ୍ରବେଶ )

ବାଳକ—ମା କହୁଥିଲା, ନାହାକ କହୁଛି ମୋର କୁଆଡ଼େ ଦଶ ବର୍ଷକୁ ଦଶା ଅଛି । ମରିବ କି ବଞ୍ଚିବ କହୁଛ ତ ଠିକ୍ ନାହିଁ । ଗୋଟେ ଗୀତ ଗାଇଦିଏଁ ।

( ଗୀତ )

ଏକୁଟିଆ ଚଗଢି
ଆକାଶେ ଫୁଟି
ମୁହିଁଛ କାହାକୁ କର ମିଟି ମିଟି କର ମିଟି ମିଟି ।
ଏକୁଟିଆ ଚଗଢି ।

ଆପଣା ମନେ ନାଚ ନାଚ ଗଲଣି ସେ ଥକ,
ବେଳେବେଳେ ମେଘ ଉହାଡ଼େ ଯାଉଛୁ ସେ ଛକ
ମୋହର ଆଗରେ ଲୁଚିଗଲେ ଆସି ପଡ଼ନ୍ତାକ କେଟି ।

ପାଖ ଦଅନ୍ତ ଫୁଲ ଶେଯ ବଜନେ ଯତନେ,
କେତେ କେତେ ମନ କଥା କହନ୍ତ ଗୋପନେ
ଦୁହିଁଙ୍କ ପରାଣୁ ଦୁହିଁଙ୍କର ଆଶା ଯାଆନ୍ତା ତ ମେଣ୍ଟି ।

( ଗୀତାନ୍ତେ ବାଳକର ମାତା ପ୍ରବେଶ )

ଗୋପୀ—କରେ, ତୁ ଏଠି ଏତେ ରାତି ଯାକେ ଉଗୁର ହେଉଛୁ ନା କ'ଣ? ଯା ଶୋଇ ପଡ଼ିବୁ ଯା' । ସକାଳୁ ଉଠି ପୁଣି କହ୍ନେଇ ସାଙ୍ଗରେ ଗାଈ ଚରାଇ ଯିବୁ ।

ବାଳକ—ମା' ଖାଇବ କଣ ଲେ ମା ?

ଗୋପୀ—ଏଇକ୍ଷଣି ପରା ବହେ ଗିଲେଇ ଦେଇ ଶୋଇବାକୁ ପଠାଇ ଦେଲି ତୋତେ ? ସେ ପେଟରେ କଣ ଅଛି କ ?

ବାଳକ—ସେ କେତେବେଳୁ ଝଡ଼ି ଗଲାଣି ନା ! ପଦେ ଗାଈ ଦେଇ କୁଦାଟାଏ ମାର ଦେଲେ ସେ ପାର୍ ।

ଗୋପୀ—ମୋ ବାପଟା, ଧନଟା, ଯେତକ ଖାଇଲୁ ସେତକ ଖାଇ ଏବେ ଶୋଇ ପଡ଼ । ରାତି ଢେର୍ ହେଲାଣି ।

ବାଳକ—ନା, ନା, ଦହି ସର ଆଉ ଗୁଡ଼ ନବାତ ଆଣି ଦେ' । ମୁଁ ଚକଟି ଖାଇବ, ତେବେ ଶୋଇବ ।

ଗୋପୀ—ଆରେ ରାତିଟାରେ ଦହି ଖାଆନ୍ତି ନା ? ରାତିରେ ଦହି ଖାଇଲେ ପରା ଜର ହେବ ।

ବାଳକ—( ମା'ର ଲୁଗା ଟାଣୁ ଟାଣୁ ) ହଉ ପଛେ ଜରେ—ମୁଁ ଖାଇବ—ଛାଡ଼ିବ ନାହିଁ । ନ ହେଲେ ଠେକାଠେକା ସବୁ ଭାଙ୍ଗି ଦେବ ।

ଗୋପୀ—ହିଁ ଆଉ କଣ ଅଛି ? ନନ୍ଦପୁଅ କାଳିଆ ଟୋକା ଠାରୁ ଏଇ ଗୁଣଗୁଡ଼ାକ ଭଲ ଶିଖିଛୁ । ସେତ ରଜାଘରର ପିଲା । ହଂସ ଗଲା ଯେଉଁ ବାଟେ, ବଗ କହଲା—ମୁଁ ବି ଯିବ ସେଇ ବାଟେ ।

ବାଳକ—ନ ଦେବୁ ତ ଦେଖିବୁ କ'ଣ କରବ ?

ଗୋପୀ—( ଡରଡର ହୋଇ ହାତ ଧରି ଅଟକାଇ ) ରହ ରହ ମୋ ସୁନା ପୁଅଟା ପରା ! ତୋ ବାପ ଗୋଠରୁ ଦୁଧ ଆଣୁ । ଆଜି ରାତିରେ ବସାଇ କାଲି ସକାଳେ ଯେତେବେଳେ ଗୋଠକୁ ଯିବୁ ସେତେବେଳେ ସବୁଯାକ ସର ତୋତେ ଦେବ ।

ବାଳକ—ସେତ କାଲିକା କଥା—ଏଇକ୍ଷଣି କ'ଣ ଖାଇବ, ଦେ ।

ଗୋପୀ—ଏହିକ୍ଷଣି କଣ ଦେବ ବାପ ? ଲହୁଣୀ ମେଞ୍ଚେ ଦେଉଛି—ଖା' ପଛେ ।

ବାଳକ—( ବଂଶୀନାଦ ଶୁଣି ) ରହ ରହ, ଇଲେ ମା—ବଇଁଶୀ ବଜାଉଛି କଏ ?

ଗୋପୀ—(ସ୍ଥିର ହୋଇ) ଏତେ ରାତିରେ କଏ ବଇଁଶୀ ବଜାଇଲା ? ଓଃ ନାଦ ତ ମରମ ଭେଦିଯାଉଛି । ନା, ଆଉ ହେବ ନାହିଁ । ମନ ଏପରି ଅଧୀର ହେଉଛି କାହିଁକି ? ଚିତ୍ତ ଏପରି ଅଥୟ ହେଉଛି କାହିଁକି ? ପ୍ରାଣ ଏମନ୍ତ ଆକୁଳ ହେଉଛି କାହିଁକି ? ଏକ ଅଦ୍ଭୁତ ବଂଶୀସ୍ୱନ । ଗାରୁଡ଼ି ମନ୍ତ୍ର ପରି ଦେହମନ ଏକା ଥରକେ କୁଆଡ଼େ ଟାଣି ନେଉଛି । ଏ ଆଉ ରଖି ଦେବନାହିଁ—ଯାଏଁ ଦେଖିଆସେଁ !

( ପ୍ରସ୍ଥାନ )

ବାଳକ—ଏ ମା ମା, ମୋତେ ଖାଇବାକୁ ଦେଉଁ ଦେଉଁ ପଳାଉଛୁ କୁଆଡ଼େ ? ମୋତେ ନେଇକରି ଯୁଆଡ଼େ ଯିବୁ ଯା' । ଏଁ, ମାନିଲୁ ନାହିଁ ? ହେଉ, ଯା ଯା, ବାପା ଆସିଲେ ଯଦି କହି ନ ଦେଇଛି—ଦେଖିବୁ—ଏଁ ଏଁ ଏଁ,—

( କ୍ରନ୍ଦନ )

( ଜଣେ ଗୋପାଳର ପ୍ରବେଶ )

ଗୋପାଳ—କରେ ? ତୁ କାନ୍ଦୁଛୁ କାହିଁକି ? ତୋ' ମା' କୁଆଡ଼େ ଗଲା କରେ ?

ବାଳକ—କଏ କେଉଁଠି ବଂଶୀ ବଜାଇଲା, ସେ ନାଦ ଶୁଣି ତ ଅଥାଳିଆ ହୋଇ ପଳାଇଛି ।

ଗୋପାଳ—ଏଁ, ରାତିରେ ପୁଣି ବଂଶୀନାଦ । ଓହୋ, କହୁ ନ କହୁଁକୁ ଘର ମଗଜ ବଡ଼ି ଗଲାଣି । ହଁ ରେ, କେଉଁ ଆଡ଼କୁ ଗଲା । କେତେବେଳୁ ଗଲାଣି ?

ବାଳକ—( ଆଙ୍ଗୁଳି ଦେଖାଇ ) ହେଇ ଏଇ ଆଡ଼କୁ ତ ଯାଇଛି । ଏଇକ୍ଷଣି ତ ଗଲା । ମୁଁ ଖାଇବାକୁ ମାଗୁଥିଲି, ମୋତେ ଭଣ୍ଡି ଦେଇ ପଳାଇଲା ।

ଗୋପାଳ—ଏଇବାଟେ ତ ଯାଇଛି ? ତୁ ଥା ମୁଁ ଦେଖେଁ ସେ କୁଆଡ଼େ ଗଲା । ( ପ୍ରସ୍ଥାନ )

ବାଳକ—ତୁମେ ବୁଢ଼ୀ ତ ଗଲ । ମୁଁ ଏବେ ଯାଉଛି ଘର କବାଟ କିଳି, ଶିକାରେ ଚଢ଼ି, ଦୁଧ ସର ଛେନା ଯେତେକ ଅଛି ସବୁ ଖାଇବ । ମୋତେ ଛମିଛକା ଦେଇ ନ ଥିଲ—ହେକ୍, ହେଁ ହେଁ । (ପ୍ରସ୍ଥାନ)

---

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ଶ୍ରୀମତୀ ଲଳିତା ଆଦି ସଖିଗଣ ପ୍ରବେଶ )

ଗୀତ

ବାଜିଲାଣି ସଖି ମଧୁର ମୁରଲୀ ମାଧବୀ କୁଞ୍ଜରେ
ସେ ତାନ ପରଶେ ଅମିୟ ବରଷେ ମଧୁପ ଗୁଞ୍ଜରେ ।
ବେଣୁ ନାଦ ଶୁଣି ବହୁଛି ଉଜାଣି ପୁଲକେ ଯମୁନା ବାରି
ମନ ଛନ ଛନ ଅଧୀର ପରାଣ ଆକୁଳ ବରଜ ନାରୀ ।
ପ୍ରେମେ ଢଳ ଢଳ ବନଫୁଲ ଦୋଳ ହରଷ ଚିତ୍ତରେ
ଖର ଖର ଖର ମଳୟ ସମୀର ସୁବାସ ବଢରେ ।

ଲଳିତା—ଚାଲ ସଖି, ଆମେ ସମସ୍ତେ କୁଞ୍ଜବନକୁ ଯିବା । ସେଠାରେ ଯମୁନା ତୀରରେ ମୁରଲୀଧାରୀ ଆମ ମନ ଜାଣି ମୁରଲୀ ବଜାଉ ଅଛନ୍ତି । ତାଙ୍କୁ ସେଠାରେ ଭେଟିବା ।

ଇନ୍ଦୁରେଖା—ହେଉ ତେବେ ଚାଲ । ଆଜି ପୂର୍ଣ୍ଣିମା ନିଶି ବିଫଳ ହେବାକୁ ଦେବା ନାହିଁ ।

ବୃନ୍ଦା—ସଖି, ଆମ ମନକଥା ରସିକଶିରୋମଣି ଜାଣିଲେ କିପରି କୁହ ନ ?

ଲଳିତା—ସେ ପରା ପ୍ରୀତି-ମସବ୍, ଫାରଦିଆ । ଆମ ମନରେ ଯେଉଁ ଚିନ୍ତା ହେବ, ତାକୁ ସେ ନ ଜାଣି ପାରିବେ ତ ଆଉ ଜାଣିବ କିଏ ?

ଇନ୍ଦୁରେଖା—ନା ସଖି, ଖାଲି ଜାଣିବା କଥା ନୁହେଁ, ସେ ଚିନ୍ତା ଦୂର କରିବାର ଭାର ମଧ୍ୟ ତାଙ୍କର ଉପରେ ।

ଚମ୍ପା—ଆଚ୍ଛା ସଖି, ଆମେ ସମସ୍ତେ ତ କୁଞ୍ଜ ବନରେ କୁଞ୍ଜବିହାରୀଙ୍କୁ ଭେଟିବାକୁ ଯାଉଛୁଁ । ସଖି, ଶ୍ରୀମତୀଙ୍କୁ ବେଶ କରି ଦେଲ ନାହିଁ ନା ?

ଲଳିତା—ସତ ସତ, ସେ କଥା ତ କାହାର ମନରେ ନାହିଁ । ବୃନ୍ଦାବନେଶ୍ୱରୀ ବିନା ବେଶୋଭୂଷା ଯେତେବେଳେ ନାଗର ନାଗରଙ୍କ ସଙ୍ଗରେ ଛିଡ଼ା ହେବେ, ଏପରି ବେଶ ଦେଖିଲେ ସେ କ'ଣ କହିବେ ?

ଇନ୍ଦୁ—ସେ ଦୋଷ କାହାର ? ବଂଶୀ ଶୁଣିଲାକ୍ଷଣି ସମସ୍ତେ ତ ଉଚାଟ ହୋଇ ଧାଇଁଛନ୍ତି । ଏତେ ବେଶଭୂଷାକୁ କାହାର ମନ ଅଛି ?

ଲଳିତା—ଆମ ସଖି କ'ଣ ଅସୁନ୍ଦରୀ ଯେ ନାଗରଙ୍କ ଆଖିରେ ସୁନ୍ଦର ବୋଲି ଦେଖାଇବା ପାଇଁ ପୁଣି ବେଶ ଭୂଷଣର ପ୍ରୟୋଜନ ହେବ ?

ଚମ୍ପା—ଆପଣା ରୂପ ଯୌବନରେ ତ ଫାଟି ପଡ଼ୁଛନ୍ତି । ସେଥିରେ ଆଉ ବେଶଭୂଷା କ'ଣ ହେବ ? ଯାହାର ନ ଥାଏ, ସେ ସିନା ଲୋଡ଼େ ।

ବୃନ୍ଦା—ଯେଉଁ ବେଶଭୂଷା ରୂପଛଟାରେ ନିଜେ ମଦନମୋହନ ମୋହିତ ହୋଇଛନ୍ତି ସେ ରୂପରେ ପୁଣି ସାଜସଜ୍ଜା କ'ଣ ଗୋ ? ତାହା ଛଡ଼ା ସଜ ହେବାକୁ କ'ଣ ତର ଥିଲା ? ସେ ତଣ୍ଡିକଟା, କୁଳଛଡ଼ା, ଘୁଞ୍ଚିଚିରା ବଂଶୀନାଦ ଶୁଣି ତ ସମସ୍ତେ ଆକୁଳ ହୋଇ ଧାଇଁଛନ୍ତି । ଏଇ ମୋହରି କଥା ଦେଖ । ମୁଁ ତ ନିଜେ ଖଣ୍ଡେ ଭଲ ଲୁଗା ପିନ୍ଧି ଆସି ପାରିଲି ନାହିଁ । ଭୁଲି ଗଲି ।

ଲଳିତା—ଦେଖିଛ ନା—ଦେଖିଛ ନା—ଆମ ସଖି ଇନ୍ଦୁରେଖାଙ୍କୁ । କଙ୍କଣ ବୋଲି କହି ନୂପୁରକୁ ହାତରେ ପିନ୍ଧିଛନ୍ତି । ଏତେ ଉତଲା ହୋଇ ପଡ଼ିଥିଲ ନା ?

ଇନ୍ଦୁ—ମୁଁ କ'ଣ ଏକା ଉତଲା ହୋଇ ପଡ଼ିଥିଲି ନା ? ଆପଣା ମୁଣ୍ଡକୁ ଅଣ୍ଡାଳି ଦେଖ ନା ? ଜୁଡ଼ା ବାନ୍ଧିବାକୁ ଯାଇ ଛଡ଼ା ବାନ୍ଧି ବସିଛ ।

ଚମ୍ପା—( ତାଳି ମାରି ହସି ହସି ) କିଗୋ ! ତୁମ୍ଭେ କୃଷ୍ଣ-ଚିନ୍ତା କରୁଁ କରୁଁ ନିଜେ ତୁମେ କୃଷ୍ଣ ରୂପ ହୋଇ ଗଲଣି ନା କ'ଣ ?

ବୃନ୍ଦା—ପର ଆଖିକୁ ଆଙ୍ଗୁଳି ଦେବା ଶିଖିଛ । ନିଜେ କମିତି କଣି ଫୁଲକୁ ଆଣି ନାକରେ ନାଇଛ ଦେଖିଲଣି ନା ?

ଲଳିତା—କଥାରେ କହନ୍ତି ସ୍ୱର୍ଗକୁ ନିଶୁଣି ନାହିଁ—ପ୍ରଭୁଙ୍କୁ ଉତ୍ତର ନାହିଁ । ନୋହିଲେ ମୁଁ ଏଇକ୍ଷଣି କହନ୍ତି କି ନିଜେ ଶ୍ରୀମତୀ ସିନ୍ଦୂର ଗାରଟା କପାଳରେ ନ ଦେଇ ଗାଲରେ ଘେନିଛନ୍ତି ।

ଇନ୍ଦୁରେଖା—କି କହ କି କହ କ'ଣ କି କହିଲ କି ? ବଡ଼ ରସରେ ତ କଥାଟି କହି ଦେଲ ?

ଚନ୍ଦ୍ରା— ଗୋ, ମୁଁ ତ ଚୂଲରେ ଦୁଧ ବସାଇ ଥିଲି । ସବୁ ଉଛୁଳି ପଡ଼ିବଣି ଏକା ।

ବୃନ୍ଦା— ଏଣେ ତ ପ୍ରେମ ଭଣ୍ଡାର ଉଛୁଳି ପଡ଼ୁଛି । ଦୁଧଉଛୁଳାକୁ ପଚାରୁଛି କିଏ ? ଯେଉଁଥି ପାଇଁ ରାତି ଅଧରେ ଘରଦ୍ୱାର, କାମ ପାଇଟି, ପୁଅ ଗେରସ୍ତଙ୍କୁ ଛାଡ଼ି ବାଇାଣୀ ହୋଇ ବନସ୍ତକୁ ଆସିଲୁ ସେ କଥା ନ କରି ଉନ୍ଥାଟାରେ ଏତେ ବେଳ ଉଚ୍ଛୁର କରୁଛ କାହିଁକି ? ସେଣେ କୁଞ୍ଜବିହାରୀ କୁଞ୍ଜବନରେ ଶ୍ରୀମତୀଙ୍କ ପାଇଁ ଅପେକ୍ଷା କରି ବିରହରେ କେଡ଼େ କାତର ହେଉଥିବେ ।

ସକଳେ— ଗୀତ

ମନ୍ଦ ମନ୍ଥର ଗମନେ, ଶୁଚୁ ଆନନେ ଚଳ କାନନେ ଗୋ ।
ମୁରଲୀ ଅଧରେ ରହିଥିବେ ଠାକ ରାଧା ରାଧା ରାଧା ବୋଲି ଡାକ ଡାକି
ନିକୁଞ୍ଜ ସଦନେ, ଗୋ ବନ୍ଧୁ ବଦନେ, ଚଳ ଚଞ୍ଚଳ ଚରଣେ ଗୋ ।
କୋଇଲି ପିକ ଡାକେ ପଡ଼ିଣ ଚମକି ଲତା ଉହାଡ଼ରେ ରହିଥିବେ ଛକି
ଭ୍ରମର ଗୁଞ୍ଜନେ ନୂପୁର ସିଞ୍ଜନେ ମଣୁଥିବେ ପ୍ରେମ ମଗନେ ଗୋ ।
ପତ୍ର ଅନ୍ତରାଳେ ଦେଖି ସବଳିତ ଚନ୍ଦ୍ରମା କିରଣେ ଥିବ ଉଲ୍ଲସିତ
ଅଙ୍ଗକାନ୍ତି ଜାଣି, ତୋର ବେଣୁପାଣି ଚୁମ୍ବୁଥିବେ ସଖି ସଘନେ ଗୋ ।
ପ୍ରାଣ ସଖି ଆଉ ନ କର ଉଚ୍ଛୁର ଉଚ୍ଛନ୍ନ ହୁଅନ୍ତୁ ସେଣେ ବେଣୁଧର
ନବ ନଟବର ନବୀନ ନାଗର ବ୍ୟଥା ପାଇବେ ଟି ଜୀବନେ ଗୋ ।

( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ଜଣେ ଗୋପୀ ବ୍ୟଗ୍ର ହୋଇ ପ୍ରବେଶ )

ଗୋପୀ— କାହିଁ, କାହିଁ, କେହି ତ କୁଆଡ଼େ ନାହାନ୍ତି ? କ'ଣ କରିବି, କୁଆଡ଼େ ଯିବି ? ଏଇକ୍ଷଣି ତ ନୂପୁର ଧ୍ୱନି ଶୁଣୁଥିଲି । ମନେ କଲି ମୋ'ର ପରି କୃଷ୍ଣକାଙ୍ଗାଳିନୀ ଆଉ କେହି ବ୍ରଜ ରମଣୀ କାନନ ପଥରେ ଅଭିସାର କରୁଥିବେ । ସେଇ ଆଶା କରି ଏତେବାଟ ଧାଇଁ ଆସିଲି । କିନ୍ତୁ ଏ କ'ଣ ମାୟା ନା ସ୍ୱପ୍ନ ? କେହି ତ କୁଆଡ଼େ ନାହାନ୍ତି । ଫେରିଯିବି ! ଘରର ମାୟା ଛାଡ଼ି କୃଷ୍ଣଙ୍କ ଚରଣ ତଳେ ମୋ ନବୀନ ଯୌବନ ଫୁଲମାନ ସବୁ ସମର୍ପି ଦେଇଛି । ଏତେବେଳେ ଆଉ କ'ଣ କରିବି ? ବଂଶୀ ଗୀତ ଶୁଣି ତ ଏତେ ବାଟ ଧାଇଁ ଆସିଲି । ଆଉ ତ ବଂଶୀ ଶୁଭୁନାହିଁ । (ଜାନୁପାତି କରଯୋଡ଼ି) ହେ ଜୀବିତେଶ୍ୱର ! ଆଉ ଥରେ ଭଲି ସେ ନାଦ ଶୁଣାଅ ! ଅସହାୟା ଏ ଦାସୀ ପ୍ରତି ଆଉ ଛଳନା କରନାହିଁ ହରି !

( ଗୀତ )

ଆଜି ମୋ ହୃଦୟ କୁଞ୍ଜେ ମଧୁ ମୁରଲୀ ବଜାଏ କେ ସେ ?
ଉଠୁଅଛି ଜାଗି କାହାର ମୂରତି ମୋହନ ମଧୁର ବେଶେ ?
ଅନ୍ତର ଭିତରେ ମୋହନ ମୁରଲୀ ବାଜଇ ମନ୍ଦ ମନ୍ଦ
ଝଙ୍କାରି ଉଠେ ନୂତନ ରାଗିଣୀ ନୂତନ ନୂତନ ଛନ୍ଦ
ମରମର ତାକେ ଆଜି ମୋର ଚିତ୍ତ
ନୂତନ ଆବେଗେ ଉଠୁଅଛି ମାତି
ଲୁଟି ଯାଉଅଛି ଏ ମୋର ମରମ କାହାର ଚରଣ ଦେଶେ ।

( ଗୋପାଳର ଛକି ଛକି ପ୍ରବେଶ )

ଗୋପାଳ— ଓ ହୋଃ, ଏଇଠିକି ବସି ଏକୁଟିଆ ଅଣ୍ଡାଳି ହେଉଛି ! ସାଙ୍ଗସାଥିସବୁ ବାହାରି ଗଲେଣି ନା ? (ଚମକି) ଏଗୁଡ଼ାକ ତ ସବୁ କଣ୍ଟା ଡାହାଣୀ ଲୋ ବାବା ! ଯାଙ୍କ ଭୁବନ ବେଳରେ ଯେ ଆଗରେ ପଡ଼ିଯିବ, ଏ ତ କଞ୍ଚା ଗିଳି ଦେବେ । ହଉ ତୁ ଧୋଳ କଳାର ଡାହାଣୀ ହେଲେ ମୁଁ ବି ବନ୍ତିଶି କଳାର ଗୁଣିଆ ଯେ ! କଣ କରିବ ! ଗୋଟା କେତେ ବତିଶ ପଳିଆ ବସେଇ ଦେବି—ନା—ଜଳକାବାଣ ମାରିଦେଇ ଡମ୍ବରୁ ବଜାଇ ଲଙ୍ଗଳା କରି ନଚାଇବି । ଯାହାକରେଁ—ଆଗ ଆପଣା ଦେହକୁ କିଳିଦିଏଁ । ତା' ନ ହେଲେ, ଯା ଆଗକୁ ଯିବାର ନୁହେଁ ।

( କୁଣ୍ଡିକିଏ ଧରି ମନ୍ତ୍ରି ମୁଣ୍ଡରେ ଛାତିରେ ମାରିଦେବା ଓ ଗୁପୁଡ଼ି ମାରି ଫୁଙ୍କି ଦେବା )

ତା' ବାଦେ, ଯାକୁ ବି ବନ୍ଧନ କରିଦିଏଁ । ତା' ନ ହେଲେ କାଳେ ପାଖକୁ ଧାଇଁ ଆସିବ ! କିବା ଚଳାଇ ଯିବ ।

( ଧୂଳି ମନ୍ତ୍ରି ଗୋପୀ ଗୁରିପିଠି ବୁଲି ଫୁଙ୍କି ଦେବା ) ଏଇଥର ଠିକ୍ ହୋଇଛି ( ଡେଇଁ ପଡ଼ି ଯାଇ ଗୋପୀକୁ ଧରି ) ଆଉ ଯିବୁ କୁଆଡ଼େ ?

ଗୋପୀ—( ଚମକି ) ତୁମେ କିଏ ?

ଗୋପାଳ—ମୁଁ ତୋ ବାବାର ବାବା ।

ଗୋପୀ—ମୋତେ କାହିଁକି ବାଧା ଦେଉଛ ? ଯାଅ ଘରକୁ ଫେରିଯାଅ ।

ଗୋପାଳ—କ'ଣ କହିଲୁ, ମୁଁ ଫେରିଯିବି ? ଆଉ ତୁ ଯିବୁ ରାତି-ଅଧରେ ଚରିବାକୁ ନା ?

ଗୋପୀ—ମୋର କୃଷ୍ଣ ସେବାରେ ଅନ୍ତରାୟ ହୁଅନାହିଁ । ନୋହିଲେ ଭଲ ହେବ ନାହିଁ ।

ଗୋପାଳ—ଧମକଟା ଦେଖ ଫେର୍ । ଆପଣା ସ୍ୱାମୀକୁ ଛାଡ଼ି କହୁଛି ଯିବ ଲମ୍ପଟ କୃଷ୍ଣ ସେବାରେ ।

ଗୋପୀ—ପୁଣି କହୁଛି, ଭଲ ଦଶା ଅଛି ତ କୃଷ୍ଣ ନିନ୍ଦା କରନାହିଁ । କୃଷ୍ଣନିନ୍ଦା ଶୁଣିଲେ ମୋର ପ୍ରାଣ ବାହାରି ଯିବ !

ଗୋପାଳ—ବାହାବା କି ପତିବ୍ରତାରେ ! ଆପଣା ସ୍ୱାମୀକୁ ଏତେ ମୁହାଁସ ଅଛି ନା ?

ଗୋପୀ—କିଏ କାହାର ସ୍ତ୍ରୀ ? କିଏ କାହାର ସ୍ୱାମୀ ? ଅଜ୍ଞେଇ ଜନର ସଂସାର ବନ୍ଧନ । ପରମ ପୁରୁଷ କୃଷ୍ଣହିଁ ଏକା ଜଗତର ସ୍ୱାମୀ । କୃଷ୍ଣ ସମ୍ବନ୍ଧରେ ଅନନ୍ତ ଅଚ୍ଛେଦ୍ୟ ବନ୍ଧନ ।

ଗୋପାଳ—ନାଁ—ଉହୁଁ—ଏହାକୁ ତ କିଏ ଗ୍ରାସିଛି । ଆଚ୍ଛା ତୁ କିଏ କହିଲୁ ? କଣ ଡାହାଣୀ ନା ଚିରଗୁଣୀ ? —ନା ଖପିସ, ନା ବ୍ରହ୍ମରାକ୍ଷସ—ନା ଆଉ କେହି କହ ! ଛେନାପଣା ଖାଇବୁ ? ବାଦୁଲୀ ନା ମଙ୍ଗଳା ନା ବୁଢ଼ୀ ଜାଗୁଳାଇ ?

ଗୋପୀ—ମୁଁ ଜଗତପତି କୃଷ୍ଣଙ୍କର ଦାସୀ ।

ଗୋପାଳ—ଚୁପ୍‌ରହ ! ମୁହଁ ସମ୍ଭାଳି କଥା କହ । ଫେର୍ ସେ କଥା କହିବୁ ତ ଠିକଣା କରିଦେବି । ଯଦି ଭଲ ଦଶା ଅଛି ତେବେ ଥିର୍ ଥିର୍ ଘରକୁ ଚାଲ । ( ଗୋପୀର ହାତଧରି ଟାଣିବା )

ଗୋପୀ—ହେ ନାଥ ! ହେ କୃଷ୍ଣ ! ହେ ଦୀନବନ୍ଧୁ, ତୁମ୍ଭପାଦପଦ୍ମରେ ଏ ଅଭାଗିନୀ କି ଦୋଷ କରିଥିଲା ଯେ ଏ ଶାସ୍ତି ବିଧାନ କରୁଛ ! ସରଳା ଅବଳା ଗୋପବାଳା ହୃଦୟରେ ଅପାର ଆକୁଳତା ଜଗାଇ ଦେଇ ପୁଣି କାହିଁକି ଏପରି ନିଦାରୁଣ ହେଉଛ ? କୃପାନିଧି, ଜାଣିଥାଅ, ତୁମ୍ଭର ଅଦର୍ଶନରେ ଏ ପ୍ରାଣ-ପକ୍ଷୀ ଦେହ-ପିଞ୍ଜରା ଛାଡ଼ି ଚାଲିଯିବ !

(ଉଭୟେ ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

( କୃଷ୍ଣ ଏକାକୀ ପ୍ରବେଶ )

(ଗୀତ)

କୃଷ୍ଣ— ଆଜି ଶରଦ ରଜନୀ ମନ-ଲୋଭା,
ଢଳଢଳ ସୁନ୍ଦର ଡାଳଇ ଶଶଧର
ତରଳ ରଜତ କିବା ଶୋଭା ।

ଆକୁଳେ ଉଛୁଳଇ ଅନ୍ତର-ସାଗର
ପୁଲକେ ପୂରିତ ମମ ଅଙ୍ଗ
ଚଞ୍ଚଳମନ ଛନ ଛନ କମ୍ପଇ ଅଧର
ମିଳିବାକୁ ବ୍ରଜବଧୂ ସଂଗ ॥

କାହିଁ, ଏ ଯାଏକେ ତ କେହି ଆସିଲେ ନାହିଁ । ଆଉ କେତେକାଳ ଅପେକ୍ଷା କରିବି ? ଏ ବଂଶୀର ପ୍ରଭାବରେ ଚରାଚର ସ୍ଥାବର ଜଙ୍ଗମ ବିମୁଗ୍ଧ ହୋଇଯାନ୍ତି । ଆଉ ଏ କୃଷ୍ଣ-ପ୍ରେମ-ବିହ୍ୱଳା ସରଳା ଗୋପବାଳାମାନେ କପରି ସ୍ଥିର ହୋଇ ରହିଛନ୍ତି ଭଲା ? ଆକାଶଶଶଧର ଶରଦଭ୍ର କୋଳରେ ଲୁଚକାଳି ଖେଳି ଖେଳି ଥକି ଗଲାଣି । ପ୍ରଫୁଲ୍ଲ କୁମୁଦ କହ୍ଲାର ଯମୁନାର ଲହରୀ ହିଲ୍ଲୋଳରେ ଦୋହଲି ଦୋହଲି ନଇଁ ପଡ଼ିଲାଣି । ଆଶା ପଥକୁ ଚାହିଁ ଚାହିଁ ନୟନ ଥକିତ ହେଲାଣି, କାହିଁତ କେହି ଆସିଲେ ନାହିଁ ?

(ଗୀତ)

କାମଶର ଖରତର ତାପେ ତନୁ ଜରଜର
ସାରା ନିଶି ଆଶା-ପଥ ଚାହିଁ,
ଧିକ ମୋର କୃଷ୍ଣନାମ ଧିକ ମୋ ମିଳନ କାମ
ଧିକ ଧିକ ମୁରଲୀ ବଜାଇ ।

ବିଫଳ ହୋଇବ ଯେବେ ଆଜ ସୁଖ ଯାମିନୀ
ନ ଆସିବେ ସୁବଦନୀ ରାଈ,
ରାଧାକୁଣ୍ଡ ତୀରେ ଯାଇ ରାଧାନାମ ଗାଇ ଗାଇ
ରାଧାନାମେ ହୋଇବି ମୁଁ ବାଇ ।

ଏ ବର ଜୀବନ ଧନୀ
ରାସ ରଙ୍ଗିଣୀ ବିନୋଦିନୀ
ସୁହାସିନୀ ସୁଭାଷିଣୀ
ବୃନ୍ଦାବନ ବିଳାସିନୀ
(ମୋର) ହୃଦସର ସରୋଜିନୀ ।

( କାନ ଡେରି ) କାହାର ପଦଧ୍ୱନି ଶୁଭୁଛି ନା କ'ଣ ! ରାସ-ରଙ୍ଗିଣୀ ବ୍ରଜସଙ୍ଗିନୀ ଗଣ ଆସୁଛନ୍ତି ପରା ! ସୁଖଠାରୁ ସୁଖର ଆଶାରେ ସିନା ଅଧିକ ସୁଖ । ହଁ, ହଁ, ସଖୀମାନଙ୍କ ନୁପୁର ଧ୍ୱନି ଶୁଭୁଛି ତ ! ମୁଁ କପଟ ଭାବରେ ଅନ୍ୟମନସ୍କ ହୋଇ ରହେଁ ।

(ଶ୍ରୀମତୀ ଓ ସଖୀମାନଙ୍କର ପ୍ରବେଶ)

**ସକଳେ—** (ଗୀତ)

ଝଇଝର ଅମିୟ ଝରେ— କୁସୁମକୁଞ୍ଜ କୁଞ୍ଜରେ
ରୁଣୁଝୁଣୁ ମଧୁ ନୂପୁରେ ପରାଣ ହରେ ଗୁଞ୍ଜରେ ଅଳି ଗୁଞ୍ଜରେ ।
ଧୀର ଧୀର ବହେ ପବନ
ଭାସିଆ ରେ ମୁରଲୀ ସ୍ୱନ
ଆସ ସଖି ଆସ ଗୋ ବେଗେ ଅଭିସାରେ
ଡାକୁଛନ୍ତି ହରି କେଉଁ ସଙ୍କେତରେ ।
ଠିଆ ହୋଇ ତ୍ରିଭଙ୍ଗ ଭଙ୍ଗେ
ବାଉଛନ୍ତି ମୁରଲୀ ରଙ୍ଗେ
**ନଟବର ବଙ୍କିମ ଠାଣି,** ବାଙ୍କଚୂହାଣୀ
ବୋଲ ହୋଇଛନ୍ତି ବ୍ରଜରଜରେ ।
କାନନରେ କାଳିଆ ଚାନ୍ଦ
ପାତିଛନ୍ତି ପୀରତି ଫାନ୍ଦ
ବସିଛନ୍ତି କୁସୁମ ତଳେ ଶ୍ୟାମ ସୁନ୍ଦର
ଥର ଥର ହିୟା ମଦନ ଜ୍ୱରେ ।

**ବୃନ୍ଦା—**ସଖି, ଶ୍ୟାମ ସୁନ୍ଦର କାହିଁକି ମଉନ ହୋଇ ବସିଛନ୍ତି ? ଲଳିତା, ଆମେ କେଉଁ ଆଶା କରି ଘରଦ୍ୱାର ଛାଡ଼ି ତାଙ୍କରି ଲାଗି ଆସିଲୁ—ସେ କଣ ଆମକୁ ସ୍ୱାଗତ କରିବେ ନା ?

**ଚନ୍ଦ୍ରରେଖା—**ନା ଗୋ, ସେ ରସିକଶେଖର ନୂଆ କୌତୁକ କରି ଆମ ଆଡ଼କୁ ଚାହୁଁ ନାହାନ୍ତି ।

**ରମ୍ଭା—**ନା—ନା ସଖି, ଆମର ଆସିବାର ଡେରି ହେଲା ବୋଲି ଶ୍ୟାମନାଗର ଅଭିମାନ କରିଛନ୍ତି ।

**ବୃନ୍ଦା—**ଯଦି ଅଭିମାନ କରିଥିବେ ତେବେ ମାନମୟୀ ଶ୍ରୀମତୀଙ୍କ ଛଡ଼ା ସେ ମାନ ଆଉ କିଏ ଭାଙ୍ଗିବ ?

**ଶ୍ରୀମତୀ—**(ଏକାନ୍ତେ) ବୃନ୍ଦେ, ନାଗରଙ୍କ ଆଗକୁ ଯିବାକୁ ମୋତେ ଭାରି ଲାଜ ମାଡ଼ୁଛି । କାଲି ସେ କଣ ବୋଲୁଥିବେ ।

**ବୃନ୍ଦା—**ଆଜ ଆଉ, ତମ ମନକଥା ମୁଁ ବୁଝି ପାରିଛି । କାଲିପରି ଗୋଡ଼ତଳେ ପଡ଼ି ପଡ଼ି ଯାଇ ମୁଣ୍ଡ ଛାଡ଼ି ଯାଇଛି, ଆଜି ତାକୁ ପୁଣି ନେହୁରା ହେବ କିପରି ? ଏଇ କଥା ନା ? କଣ କରିବା ଝକମାରି ତ କରିଛୁଁ । ହେଉ ତେବେ ଆମେ ସବୁ ଆଗେ ଆଗେ ଯାଉଛୁ, ତୁମେ ପଛେ ପଛେ ଥାଅ । ( କୃଷ୍ଣଙ୍କ ପ୍ରତି ) ହେ ରଙ୍ଗାଧର, ଆଜି ପୁଣି ଏକ ରଙ୍ଗ ଲଗାଇଛ ? ଡାକିହାକି କୁଳଭୁଆସୁଣୀମାନଙ୍କୁ ରାତି ଅଧରେ ବଣକୁ ଆଣି ଏତେ ହଟହଟାରେ ପକାଉଛ କାହିଁକି ?

(ଗୀତ)

ସକଳେ—ଶଠ ଲମ୍ପଟ କପଟ ନାଗର
ହଟ କରି ଲଟ ଲଗାଅ ନାହିଁ ।
ଯେତେ କୁଳବତୀ ବରଜ ଯୁବତୀ
ମୁରଲୀ ନାଦରେ ହୋଇଲୁ ବାଇ ।
ଧନ ଜୀବନ ଯୌବନ ରତନକୁ
ଚୋରିକଲ ହରି ବେଣୁ ବଜାଇ ।
କୁଳଶୀଳ ମାନ ଧୈର୍ଯ୍ୟଗ୍ରାମାନ
ଯମୁନା ଜଳରେ ଦେଲୁଁ ଭସାଇ ।
ରଙ୍ଗବରଣ ଚରଣ ସରୋଜରେ
ଶରଣ ନେବାକୁ ଅଇଲୁ ଧାଇଁ ।

**କୃଷ୍ଣ—** ବ୍ରଜବାସୀଗଣ, ଅକାରଣ ମୋର ଦୋଷ ଦେବାର ପ୍ରୟୋଜନ କ'ଣ ? ମୁଁ ତ ଆପଣା ମନକୁ ନିର୍ଜନରେ ବସି ବଂଶୀ ବଜାଉଥିଲି । ତୁମେମାନେ ଏଠାକୁ ଏପରି ସମୟରେ କାହିଁକି ଆସିଲ ଭଲା ?

**ବୃନ୍ଦା—**ଚିତ୍ତଚୋର, ତୁମର ଏ ନଟ ସ୍ୱଭାବ କି କେବେ ହେଲେ ଛାଡ଼ିବ ନାହିଁ ? ତୁମର ସେହି ମାନସମୋହନ ମୃଦୁମନ୍ଦହସା ଯେ ଥରେ ଦେଖିଥିବ, ସେହି କଜ୍ଜଳକାଳିଆ ଅଙ୍ଗକାନ୍ତି ଯାହା ଆଖିରେ ଲାଗିଥିବ, ସେଇ ଉନ୍ମାଦ ବଦନସୁଧା ଯେ ଥରେ ଚାଖିଥିବ, ସେ କଳଙ୍କାକରୁଣ ବାଙ୍କଚୂହାଣୀ ଯାହା ମରମରେ କେବେହେଲେ ପଶିଥିବ, କେଉଁ ଅବଳା ପୁଣି ସେ ଭୁବନବିଜୟୀ ବଂଶୀଧ୍ୱନି ଶୁଣି ସ୍ଥିରହୋଇ ରହିପାରିବ ?

**କୃଷ୍ଣ—** ଦେଖ, ମୁଁ ପିତାମାତାଙ୍କର ଅତି ଆଦରର ଶିଶୁ ମାତ୍ର । ମୋଠାରେ ତୁମମାନଙ୍କର କି କାର୍ଯ୍ୟ ମୁଁ ତାହା ବୁଝି-ପାରୁନାହିଁ । ମୁଁ ତୁମଙ୍କୁ ମିନତି କରି କହୁଛି, ତୁମେମାନେ ଯେଉଁ ମତଲବରେ ଅଧରାତିରେ ବିଜନକାନନକୁ ଆସିଛ—ତାହା କରିବ ଯାଅ । ମୋତେ ଛାଡ଼ ଦିଅ !

**ଲଳିତା—**କଣ, ତୁମକୁ ଛାଡ଼ିଦେବୁ ? କୁଳଯୁବତୀମାନଙ୍କୁ କୁଳରୁ ବାହାର କରି ଏତେବେଳେ ଏତେ ଗଞ୍ଜୁଛ କାହିଁକି ? ତୁମ ଭଳି ଅବିଶ୍ୱାସୀ ଶଠ କ'ଣ ଏ ଜଗତରେ ଅଛନ୍ତି ?

**କୃଷ୍ଣ—** ନାହିଁ—ନାହିଁ—ରାଗିଯାଉଛ କାହିଁକି ? ମୁଁ ତୁମର ହିତ କଥା କହୁଛି । ତୁମେମାନେ ସମସ୍ତେ କୁଳନାରୀ । ଏପରି ଅସମୟରେ କାନନକୁ ଆସିବାର ଦେଖିଲେ ତୁମର ସ୍ୱାମୀ ଆତ୍ମୀୟମାନେ କ'ଣ କହିବେ ? ଦେଶସଂସାର ବା

କ'ଣ କହିବ ? ଅତଏବ ଶୀଘ୍ର ଶୀଘ୍ର ନିଜର ଇଜ୍ଜତମହତ ସମ୍ଭାଳି ଘରକୁ ଫେରଯାଅ ।

ବୃନ୍ଦା— ଘର ମୁହାଁସ ଯଦି ଥାଆନ୍ତା, କୁଳଶୀଳର ଡର ଯଦି ଥାଆନ୍ତା ତେବେ କଣ ଆସିଥାଆନ୍ତୁ ? ସେସବୁ ରଙ୍ଗାଚରଣ ତଳେ ବିସର୍ଜନ ଦେଇସାରି ତେବେ ଆସିଚୁ । ଯଦି ତୁମ ମନରେ ଏତେ କପଟ ଅଛି ତେବେ ଆମେ ସମସ୍ତେ ଫେରିଯାଉଛୁ, କିନ୍ତୁ ଘରକୁ ଫେରିବାର ତ ମୁହଁ ନାହିଁ । ଏଇବାଟେ ସମସ୍ତେ ବଂଶୀବଟ ତଟରେ ବା ଯମୁନାରେ ଝାସ ଦେବୁ । ( ସଖିଙ୍କ ପ୍ରତି ) ଚାଲ ସଖି, ଆପେ ଆପେ ଗଳାରେ ଫାସି ପିନ୍ଧିଥିଲୁ ସିନା ଏତେ ଦଶା ! ଏପରି ଶଠ ପୁରୁଷର ମୁହଁ ଚାହିଁବା ଉଚିତ କି ? ଯମୁନା ତ କିଛି ବେଶି ଦୂର ନୁହେଁ । କୃଷ୍ଣ ନାମ ଧରି ମରିବା ଗୋପାଙ୍ଗନା-ମାନଙ୍କର ଅତି ସହଜ କଥା ।

( ଗୀତ )

(ସଖି) ଯାହାର ମୂରତି ମରମ ଆରତି
ଜପାମାଳ ଯାର ନାମ,
(ଏବେ) ଅକୂଳ ସାଗରେ ଭସାଇ ଦେଇଣ
ସେ ଯଦି ହୋଇବେ ବାମ ।
ଆଉ କିସ ହେବ ଜୀବ ଥାଇ
ଯମୁନା ଜୀବନେ ଝାସିବା ଜୀବନ
ରାଧାନାମ ଗାଇ ଗାଇ ।
(ସକଳେ) କଳ୍ପବଟ ପାଶେ କରିବା କାମନା
ଯେତେକ ବରଜବାଳୀ,
ଜନମେ ଜନମେ ପୀରତି ପାଗଳ
ହୋଇଥାଉ ବନମାଳୀ ।
ସେ କି ବୁଝିଛି ପୀରତି କଥା
ସେ କାହୁଁ ଜାଣିବ ପ୍ରୀତି ବାରତା
ପୀରତିର ଭବ ପୀରତି ବ୍ୟଥା ।

କୃଷ୍ଣ— ( ଫେରିପଡ଼ି ବୃନ୍ଦାଙ୍କ ହାତ ଧରି ) ମାନିନୀ, ହଠାତ୍ ରାଗି ଚାଲିଯାଉଛ କାହିଁକି ? ମୁଁ କ'ଣ ଜାଣେ ନାହିଁ ଯେ ତୁମେ ସବୁ କୃଷ୍ଣମୟ ଜୀବନ ଯାପିତା—କୃଷ୍ଣ ଅନୁଗତା ଗୋପସୁତା !

ବୃନ୍ଦା— ସେହି ଝିଟ ମୁହଁରେ କ'ଣ ଉଆଉସୁନା ସବୁ ଅଛି ନା ? ନାହିଁ ନାହିଁ ଆମେ ତୁମ କଥାରେ ଟିକିଏ ଭିଜୁନାହିଁ ।

କୃଷ୍ଣ— ଏ କିଣା କଙ୍କରଠାରେ ଏପରି କୋପ କରିବା ଉଚିତ କି ? ମୋତେ ଏ ନିର୍ଜନ କାନନରେ ଏକାକୀ ଛାଡ଼ିଯିବାକୁ ତୁମର ମନ ବଳୁଛି ତ ? ତୁମମାନଙ୍କ ଜୀବନ ଆଉ ମୋ ଜୀବନ ଏକ ସୂତାରେ ଗୁନ୍ଥା ପରା ?

ବୃନ୍ଦା—ତୁମେ ବଡ଼ ମାୟାବୀ । ସରଳା ଅବଳା ଗୋପବାଳାଙ୍କ ପ୍ରତି ଏତେ ଛଳନା କରି କି ସୁଖ ପାଅ ତମେ ? ହୃଦୟଟା ତୁମର ପାଷାଣଠାରୁ କଠିନ ।

କୃଷ୍ଣ—ଏବେ ଖେଦ ତ୍ୟାଗ କରି ଆସ ସଖି, ମଧୁର ଶରତର ସୌନ୍ଦର୍ଯ୍ୟ ତରଙ୍ଗରେ ପ୍ରାଣ ଢାଳିଦେବା । ଦେଖ ଦେଖ ପ୍ରକୃତି ସୁନ୍ଦରୀ କିପରି ନବୀନ ଭୂଷାରେ ବିଭୂଷିତା ହୋଇ ହସି ଉଠୁଛନ୍ତି । ଶାନ୍ତ ସୁନ୍ଦର ଶରତର ମୃଦୁମନ୍ଥର ମାଦକତାରେ ଶତ୍ରୁ ତନ୍ମୟ ହୋଇ ଯାଉଛୁ । ଏହି ମଧୁର ସଙ୍ଗୀତମୟ ସମୟରେ ଆସ ସଖି ଆମ୍ଭେମାନେ ନାଚିଗାଇ ମଧୁଯାମିନୀ ଯାପନ କରିବା ।

ଗୀତ

ସଖିଗଣ— ଢାଳିଦେବା ପ୍ରେମ ରାଶି
କୃଷ୍ଣ— ପ୍ରେମେ ହସି ପ୍ରେମେ ରସି ପ୍ରେମ ସ୍ରୋତେ ଯିବାଭାସି ।
ସଖିଗଣ— ଢାଳିଦେବା ପ୍ରେମ ରାଶି ।
କୃଷ୍ଣ— ତୁହି ପ୍ରେମ ପସରା— ( ଜଣଜଣ କରି )
ସଖିଗଣ— ଜୀବର ଜୀବନ ତୁହି ମୋ ଧନସରା ।
କୃଷ୍ଣ— ଦାନ କର ପ୍ରେମ-ସୁଧା ଆକୁଳ ପିପାସୀ ନାଶି ।
ସଖିଗଣ— ତୁହି ପୂର୍ଣ୍ଣ ଇନ୍ଦୁ
କୃଷ୍ଣ— ତୁହି ସୁଧା-ସିନ୍ଧୁ
ସଖିଗଣ— ଆନନ୍ଦ ଆଧାର ତୁହି ଜଗତ-ବନ୍ଧୁ
ସକଳେ—ପ୍ରେମେ ରସି ପ୍ରେମେ ହସି ଯାମିନୀ ପାହିଲା ଆସି ।

( ଗୀତ ଶେଷ ହେବା ପୂର୍ବରୁ କୃଷ୍ଣ ଓ ଶ୍ରୀମତୀ ଧରାଧରି ହୋଇ ଗୋପନରେ ପଳାଇଲେ )

ବୃନ୍ଦା—( ଚାରିଆଡ଼େ ଚାହିଁ ) ରସ ସାଗର ଶ୍ୟାମନାଗର କାହିଁ ଗଲେ କି ସଖି ?

ଲଳିତା—( ଚକିତରେ ଚାହିଁ ) ସତେ ତ କୁଆଡ଼େ ଗଲେ ? ଆହୁରି ପ୍ରିୟ ସଖି ଶ୍ରୀମତୀ ବି ନାହାନ୍ତି । ତେବେ ବୋଧହୁଏ ଆମ ସଙ୍ଗରେ ଖେଳ ହେବାପାଇଁ ଏଇଠି କେଉଁଠି ଲୁଚି ରହିଥିବେ ।

ବିଶାଖା—ମୁଁ ଯାଉଛି କୁଞ୍ଜ ଦ୍ୱାରପିଠି ଖୋଜି ଆସେ—

( ଖୋଜି ଆସି—ସମସ୍ତେ ବୃକ୍ଷଁ ଆନ୍ତୁ ଡ଼ିଦ୍‌ଗ୍ରୀବ ହୋଇ )
ନା କେହ୍ବ ତ କୁଆଡ଼େ କାହାନ୍ତୁ ।

**ବୃନ୍ଦା**—ଆମକୁ ତ ବଡ଼ ଦଗାଦେଲେ ସେ ଶ୍ୟାମ ନାଗର । ତାଙ୍କ ସ୍ବଭାବଟ ଏହ୍ବପରି । ଆଗେ ମଣିଷମାନଙ୍କୁ ଆକାଶକୁ ଉଠାଇ ନେବେ । ପୁଣି ଦୁଲ୍‌କର ଭୂଇଁରେ କଚାଡ଼ି ଦେବେ ।

**ଲଳିତା**—ମୁଁ ମନେ କରିଥିଲି, ଆଜ ତୁଙ୍କ ନୀତି ଏହ୍ବପରି ଟାହ୍ବିଯିବ ।

**ଇନ୍ଦୁରେଖା**—ମୋ ମନ ହେଉଥିଲା ବ୍ରଜଜୀବନ ସମସ୍ତଙ୍କଠାରୁ ମୋ ଉପରେ ବେଶି ପ୍ରସନ୍ନ ଥିଲେ ପର ।

**ଲିଶା**—ହିଁ ଗୋ, ମୋର ତ ଠିକ୍ ସେଇଆ ମନେ ହେଉଥିଲା ।

**ବୃନ୍ଦା**—ଗଲା କଥା କହ୍ବଲେ ଆଉ କଣ ହେବ ? ଥରେ ତ କହ୍ବିଲ—ସବୁଦିନେ ତାଙ୍କର ଖିଆଳ ଏହ୍ବପରି । ଆମେ ଯେତେବେଳେ ସବୁ ଛାଡ଼ି ତାଙ୍କୁ ଆଶ୍ରୟ କରିଛୁଁ, ଆଉ ଆମର ଅନ୍ୟ ଉପାୟ କଣ ଅଛି ? ହେ ଗୋପୀନାଥ, ଆମକୁ ଥରକୁ ଥର ଏହ୍ବପରି ନଟହାଟ କରି କି ସୁଖ ପାଉଛ ଦିଅ !

( ଗୀତ )

**ଲଳିତା**— ଅଜାଣିତେ ପ୍ରାଣ ସଖି କି ହେଲା କି ହେଲା
ଅକାଳ ଅତଳ ଜଳେ ବୁଡ଼ିଗଲା ଭେଳା
ସହ୍ବଗୋ, ଶ୍ୟାମଗୁଣମଣି
ଅନାଥା କରିଣ କାହିଁ ଛାଡ଼ିଗଲେ ପୁଣି ।

**ବୃନ୍ଦା**—କପଟ କହ୍ନାଇ ଶଠ ଅଟେ ଦଗାଦାର
ଆହିରି ତକୁ ହଟହଟା ସ୍ବଭାବ ତାହାର
ସହ୍ବ ଗୋ, କାହିଁକି ଚଇତେ
ଜାଣିଅ ପୁଛିଲେ ଯାକି ଅବଶ୍ୟାର୍ଥୀ ଯେତେ ।

**ଇନ୍ଦୁରେଖା**—ଅଭିସାରିକୁସୁମ ଶ୍ୟାମ ଶାରଦନନ୍ଦନ
ଛଳ ଛନ୍ଦୋଭରି ଚଳୁ ଚୋରା ପ୍ରାଣଧନ
ସହ୍ବ ଗୋ, ଶ୍ୟାମସୁନାଗର
ଶୁଖାଇ ଦେଲେ ଅନ୍ତର କରୁଣା ସାଗର ।

**ବୃନ୍ଦା**— ସବୁଦିନେ ତାଙ୍କଆର ସ୍ଥିତ ଏହ୍ବପରି
ଜାଣିଶୁଣି ସ୍ବେଚ୍ଛ ହାତେ ଦେଲ ଗଳା ଛୁରି
ସହ୍ବ ଗୋ ! ଆଉ ଅଛୁ କଣ
ଅପଣା ମନକୁ ବୁଡ଼ ଖାଇଛ ତ ବଧ ।

**ଲଳିତା**— ଆଗେ ତ ଏଭଳି ତାଙ୍କ ନ ଥିଲା ସ୍ବଭାବ
ଯେତେ ପ୍ରୀତି ଯେତେ ସ୍ନେହ ଯେତେ ଯେତେ ଭାବ ।
ସହ୍ବ ଗୋ, ନାହିଁ ପଟାନ୍ତର
କପଟ ଦାରୁଣ ହେଲେ ଦୟାଳୁ ଅନ୍ତର ।

**ଶଶୀ**— ତୁଣ୍ଡରେ ଅମୃତ ତାର ଅନ୍ତରେ ଗରଳ,
ଭିତରେ କପଟ ସଖି ବାହାରେ ସରଳ,
ସହ୍ବ ଗୋ, ବନରେ କେବଳ
ବାଙ୍କ ଆଖି ବାଙ୍କ ଠାଣି ବାଙ୍କ ଶିଖିଚୂଳ ।

**ଇନ୍ଦୁରେଖା**—ପ୍ରଣୟ-ପସରା ସଜେ ଯିବେ କି ମୁରୁଛି,
ଲତା ଗହଳରେ ଗୋଟିଏ ଥିବେ ପରା ଲୁଚି
ସହ୍ବ ଗୋ, ଭୁବନ୍ତ ତେମନ୍ତ
ଆମପ୍ରତି ଦୟାନିଧି ଅତି ପ୍ରୀତିବନ୍ତ ।

**ଲଳିତା**— କହନା କହନା ସଖି, ତାହା କଥା ମୋତେ
ବୁଡ଼ାଇଲା ସ୍ରୋତେ ଚଢ଼ାଇଣ ଆଶା-ପୋତେ
ସହ୍ବ ଗୋ, ବଢ଼ାଇଲେ ପ୍ରେମ
କଡ଼ାଇଲେ କୁଳରୁ ସେ ଛଡ଼ାଇଣ ଧର୍ମ ।

ଆମ ଦୁଃଖ ଦେଖିବାକୁ ତାଙ୍କୁ ଯଦି ଏତେ ସୁଖ ଲାଗେ ତେବେ ଚାଲ ଆମେ ସଭିଏଁ ବିଷଖାଇ ମରିବା ନୋହ୍ବଲେ ଶିଳାପରେ ମୁଣ୍ଡ କୋଡ଼ି ମରିବା । ଏହା ଦେଖିଲେ ତ ସେ ଆହୁରି ସୁଖ ପାଇବେ ।

**ଇନ୍ଦୁରେଖା**—ସେ ପରା ଦୟାସାଗର ! ଆମେ କାତର ହୋଇ ଡାକିଲେ, ସେ ଯେଉଁଠି ଥିବେ, ଦେଖା ନ ଦେଇ ରହ୍ବ ପାରିବେ ନା ?

( ଗୀତ )

**ସକଳେ**—ହେ ଦୀନବନ୍ଧୁ, ଦେଖା ଦିଅ ବାରେ ପ୍ରେମସିନ୍ଧୁ !
ମୁରଲୀ ନାଦରେ ହୋଇ ବାଇ
କାନନକୁ ଆସିଥିଲୁ ଧାଇଁ,
ପ୍ରେମ-ସ୍ରୋତେ ମାତି କଲୁ ଯେତେ ପ୍ରୀତି
(ଏବେ) ନିର୍ଦ୍ଦୟ ହୋଇଲ କାହିଁପାଇଁ
ଆହେ ପ୍ରାଣସାଇଁ ।
(ଆଉ) ଗୁହାରି କରିବୁଁ କାହାଠାଇଁ ।

କୁଳଶୀଳ ଗୁଡ଼ି ଗୋପନାରୀ,
ଆସିଲୁ ତୁମ୍ଭ ଭରସା କରି
ମଝି ଦରିଆରେ ଦେଉଛ ଭସାଇ
କାହା ସାହା ଧରି ହେବୁ ପାରି
ଆହେ ବଂଶୀଧାରୀ,
କେଉଁ ଯଶ ହେବ ନାରୀ ମାରି ।

ଲଳିତା—କାହିଁ ତ ଶୁଣିଲେ ନାହିଁ । ଏଠି ରହି ଆଉ କିସ ହେବ ? ଚାଲ ଯମୁନା କୂଳେ କୂଳେ କୁଞ୍ଜେ କୁଞ୍ଜେ ଖୋଜି ବୁଲିବା । ଯାହାକୁ ଦେଖିବା ତାକୁ ପଚାରିବା, ଆମ ପ୍ରାଣନାଥ କୁଆଡ଼େ ଗଲେ ?

ସକଳେ— ( ଗୀତ )

(ଏତେ) ଦାରୁଣ କିମ୍ପା ହେଉଛ ହରି ଅଣାଇ ବଜନେ,
(କେତେ) ସରଳ ମନେ ସରଳ ପ୍ରାଣେ ଆସିଛୁ କାନନେ ।
(ତୁମ୍ଭ) ମଧୁର ମୁରଲୀ ନାଦ
ଘଟାଇଲା ପରମାଦ,
(କବା) ଚାପରି କରି ରହିଛ କି ଛକି ମାଧବୀ ଗହନେ ?
କାହିଁ ଅଛ ବନମାଳି
ଖେଳୁଛ କି ଲୁଚକାଳି,
(ଏତେ) କୂଟକପଟ କେ'ଜାଣିଥିଲା ରଖିଥିଲ ମନେ ?
ସାଧିଲଣି ଯେତେ ଦାଉ
(ଏବେ) ହଠା ନ କର ଆଉ,
ଯେତେ ଯେତେ ଗୁଆଳି ଏତିକି ଅଳି କରୁଛୁ ଚରଣେ ।

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ନାରଦ ବୀଣାଧରି ପ୍ରବେଶ )

(ଗୀତ)

ଗାଅରେ ଗାଅରେ ପିଅରେ ପିଅରେ ସୁରଗ-ସୁଧା ହରିନାମ,
ଜପରେ ରସନା ଅଲସେ ବସନା ହରିହରି ନାମ ଅନୁପମ ।
ହରିନାମ ସାଧନ ହରି ଆରାଧନ ମାନସ କୁଞ୍ଜବିହାରୀ,
ହରିନାମ ଜୀବନ ଅନ୍ତରତର ଧନ ହୃଦୟର କଳୁଷହାରୀ ।
ଦୁଃଖ-ଦୁରିତ-କ୍ଷୟକାରୀ ସଂସାରତାପ-ନିବାରି,
ଜୀବନେ ମରଣେ ଶୟନେ ସ୍ୱପନେ ଭଜ ହରିହରି ଅବିରାମ ।
ନବୀନ ପୟୋଧର କାନ୍ତି ମନୋହର ନଟବର ସୁନ୍ଦର ଇନ୍ଦୁ,
ଶତଶତ ଶଶଧର ଚରଣ ନଖରପର ଉଚ୍ଛୁଳିତ ସୁଷମା ସିନ୍ଧୁ ।
ରଞ୍ଜିତ ଶଶଧର ଚରଣେ ଶରଣ ଦେହି ମମ ମରଣେ
ଶୟନେ ସ୍ୱପନେ ନୟନେ ନୟନେ ରାଜିତ ରୂପ ଅବିରାମ ।

ନାରଦ—ଗୋଲକପତିଙ୍କ ଅବସ୍ଥିତିରେ ଭୂଲୋକ ବୃନ୍ଦାବନ ଗୋଲୋକବୃନ୍ଦାବନରେ ପରିଣତ ହୋଇଛି । ତହିଁରେ ପୁଣି ଆଜି ପ୍ରେମମୟଙ୍କର କି ଅଭିନବ ପ୍ରେମଲୀଳା ସଂଘଟିତ ହୋଇଛି ଯେ, ଚତୁର୍ଦ୍ଦିଗରେ ମାଧୁର୍ଯ୍ୟ-ତରଙ୍ଗ ଉଚ୍ଛୁଳି ପଡ଼ୁଛି । ଯାହାହେଉ ବୃନ୍ଦାବନରେ ପ୍ରବେଶ କରି ଏ ରହସ୍ୟ ଭେଦ କରିବାକୁ ହେବ ।

(ଯୋଗମାୟାଙ୍କର ପ୍ରବେଶ)

ଯୋଗମାୟା—କିଏ ତୁମ୍ଭେ, ଏ ଅସମୟରେ ରଜନୀର ଶାନ୍ତି ଭଙ୍ଗ କରୁଛ ? ବୃନ୍ଦାବନର ପବିତ୍ରତା ନଷ୍ଟ କରୁଛ ?

ନାରଦ—ତୁମ୍ଭେମାନେ ଗୋଲକବିହାରୀଙ୍କୁ ବ୍ରଜପୁରରେ ବନ୍ଦୀ କରି ମନେ କରିଛ କି ତାଙ୍କଠାରେ ଆଉ କାହାରି କିଛି ଅଧିକାର ନାହିଁ ? ତୁମ୍ଭେ କି ଜାଣ ନାହିଁ, ତାଙ୍କର ଲୀଳା କାନନରେ ଭକ୍ତମାତ୍ରର ସମାନ ଅଧିକାର ?

ଯୋଗମାୟା—ବୃନ୍ଦାବନବିହାରୀଙ୍କର ମହାରାସ ଆଜି ଅନୁଷ୍ଠିତ ହେଉଅଛି । ଦେବମାନବ ଅଗୋଚର ଏ ଲୀଳା ଅତି ଗୋପନୀୟ । ଆମ୍ଭେ ଲୀଳାସ୍ଥଳୀ ରକ୍ଷାରେ ନିଯୁକ୍ତ ଅଛୁ । ଏ ଲୀଳାରେ କେବଳ ଯେଉଁମାନଙ୍କର ଅଧିକାର, ତାଙ୍କ ଛଡ଼ା ଆଉ କେହି ପ୍ରବେଶ କରି ପାରିବେ ନାହିଁ ।

ନାରଦ—ଆମ୍ଭେ ବ୍ରହ୍ମାପୁତ୍ର ଦେବର୍ଷି ନାରଦ । ଆମ୍ଭକୁ ତ୍ରିଭୁବନରେ କୌଣସି କଥା ଅଗମ୍ୟ ନୁହେଁ । ଏହି ମଧୁର ଲୀଳା ଦର୍ଶନ ଅଭିଳାଷରେ ଆମ୍ଭେ ଏଠାକୁ ଆସିଅଛୁଁ । ଆମ୍ଭଙ୍କୁ ତୁମ୍ଭେ ବାରଣ କରି ପାରିବ ନାହିଁ ।

ଯୋଗମାୟା—ହେ ଭ୍ରାନ୍ତ ତପସ୍ୱୀ ! ମଧୁର ବୃନ୍ଦାବନରେ ଅହଙ୍କାରର ସ୍ଥାନ ନାହିଁ । ଅନ୍ତରର ଆଦେଶରେ ଏ କାନନ ପରିତ୍ୟାଗ କରି ଶୀଘ୍ର ଅନ୍ତର ହୁଅ ।

ନାରଦ—ଦେବୀ, ବୁଝିଲି । ତୁମ୍ଭେ ଯୋଗମାୟା । ତୁମ୍ଭର ମୋହିନୀ ମାୟାରେ ଜଗତ ବିମୁଗ୍ଧ ହୋଇ ରହିଛି । ତୁମ୍ଭର କରୁଣା ନୋହିଲେ ବ୍ରଜଲୀଳା ଆସ୍ୱାଦନ କରିବାର କାହାରି ଶକ୍ତି ନାହିଁ । ଦୟା କରି ରାସେଶ୍ୱରଙ୍କର ରାସ ସନ୍ଦର୍ଶନ କରିବାକୁ ଏ ଦାସକୁ ଅନୁମତି ଦିଅ ।

ଯୋଗମାୟା—ଦେବର୍ଷି, ମଧୁର ରସ ସବ ରସର ସାର । ତୁମ୍ଭେ ପୁରୁଷଭାବ ପରିତ୍ୟାଗ କର । ବ୍ରଜବାସିନୀ ଗୋପିନୀ ଭାବରେ ଭାବିତ ହୋଇ ପରମପୁରୁଷ ଶ୍ରୀକୃଷ୍ଣ ଓ ରସସ୍ୱରୂପିଣୀ ଗୋପିକାମାନଙ୍କର ରାସବିହାର ଆସ୍ୱାଦନ କରି ପାରିବ ।

( ପ୍ରସ୍ଥାନ )

ନାରଦ—(ସ୍ୱଗତଃ) ଲୀଳାମୟ ହେ, ବୃନ୍ଦାବନରେ କି ଅପୂର୍ବ ଲୀଳା ଲଗାଇଛ ? ଏ ଲୀଳାର ତାତ୍ପର୍ଯ୍ୟ, ଏ ଲୀଳାର ମର୍ମ ବୁଝିବା କାହାର ସାଧ୍ୟ । ଦେବୀ ଯୋଗମାୟାଙ୍କର ଅନୁଗ୍ରହ ନ ହେଲେ, ରାଧାରାଣୀଙ୍କର କୃପା ନ ହେଲେ ଏ ଲୀଳା ଅନୁଭବ ବା ଆସ୍ୱାଦନ କରିହେବ ନାହିଁ । ଆହା, ନାରଦର ଆଜି କି ସୌଭାଗ୍ୟ । ଏହି ତ୍ରିଭୁବନ ଅଗୋଚର ମଧୁର-ଲୀଳା ଆଜି ଯାହା ମୁଁ ଚର୍ମଚକ୍ଷୁରେ ଦର୍ଶନ କରିବ !

( ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ଶ୍ରୀକୃଷ୍ଣ ଓ ଶ୍ରୀମତୀଙ୍କର ପ୍ରବେଶ )

ଶ୍ରୀକୃଷ୍ଣ—ଦେଖିଲ ସଖି, ତୁମ୍ଭେ ମୋର କେଡ଼େ ପ୍ରିୟ, କେଡ଼େ ଆଦର ! ନୋହିଲେ ଷୋଳ ସହସ୍ର ବ୍ରଜତରୁଣୀଙ୍କୁ ଛାଡ଼ି ଏକା ତୁମ୍ଭଙ୍କୁ ନେଇ ଏକାନ୍ତରେ କ୍ରୀଡ଼ା କରିବାକୁ ଆସି ଥାଆନ୍ତି କି ?

ଶ୍ରୀମତୀ—ଲମ୍ପଟ ପୁରୁଷମାନେ ସେହିପରି କହନ୍ତି ସିନା । ଯେତେବେଳେ ଯାହା ପାଖରେ ଥାଆନ୍ତି, ଗୋଟାକଯାକ ତାହାର ହୋଇଯା'ନ୍ତି, ଭ୍ରମରର ସ୍ୱଭାବ ଯେପରି !

ଶ୍ରୀକୃଷ୍ଣ—ହଁ, ଭ୍ରମର ସବୁ ଫୁଲରେ ବସେ । ପଳାଶ ଫୁଲକୁ ମଧ୍ୟ ଛାଡ଼େ ନାହିଁ । କିନ୍ତୁ କମଳିନୀଠାରେ ତାହାର ଯେଉଁ ଅନୁରାଗ ତାହା ଅନ୍ୟ ସ୍ଥାନରେ ଥାଏ କି ସଖି ? ମନ ଥାଏ ଏକା ସେଇଠି ।

ଶ୍ରୀମତୀ—ମୁଁ ତ ଦେଖିଛି ହରି, ତୁମେ କେଡ଼େ ସ୍ନେହରେ, କେଡ଼େ ସୁଆଦରେ, କେଡ଼େ ଶରଧାରେ ଗୋପଯୁବତୀମାନଙ୍କ ସହିତ ରମଣ କର !

ଶ୍ରୀକୃଷ୍ଣ—ସେଇଟା ପୁରୁଷମାନଙ୍କର ରସିକତା । ଆଉ ଯେଉଁମାନେ ଅନୁରାଗିଣୀ ସହଚରୀ ତାଙ୍କ ମନ ଟିକିଏ ରଞ୍ଜାଇବା ଉଚିତ । ଯେତେ ହେଲେ ବି ତୁମ୍ଭପରି କେହି ହେବେ କି ?

—ଗୀତ—

ଶ୍ରୀକୃଷ୍ଣ— ତୁହି ମୋ ଆନନ୍ଦମୟୀ ରାସ ରସ ବିଳାସିନୀ
ଶ୍ରୀମତୀ— ପରାଣଦେବତା ମୋର ତୁ ରସିକ ଚୂଡ଼ାମଣି ।
ଶ୍ରୀକୃଷ୍ଣ— ପ୍ରେମର ଲୋଭରେ ତୋର ଗୋକୁଳେ ଜନମ ମୋର
ଶ୍ରୀମତୀ— ଯୁଗେ ଯୁଗେ ସେବେ ମୁହିଁ ତୋହରି ଚରଣ ବେନି ।
ଶ୍ରୀକୃଷ୍ଣ— ଗୁପତ ଗୋକୁଳ ଲୀଳା ତୁ ଆଧାର ସ୍ୱରୂପିଣୀ
ଶ୍ରୀମତୀ— ଜନମେ ଜନମେ ମୁହିଁ ତୋ ପ୍ରେମରେ ପାଗଳିନୀ ।
ଶ୍ରୀକୃଷ୍ଣ— ସୁନ୍ଦରୀ ପଣରେ ତୋତେ ଜଗତେ କେ ଅଛି ଜିଣି
ଶ୍ରୀମତୀ— ନିତି ନବ ନବ ରୂପେ ଦାସୀକି ନେଉଛ କିଣି ।

ଶ୍ରୀକୃଷ୍ଣ—କିଶୋରୀ ! ଦେଖ ଦେଖ, ଆଜି ଶରଦଶୋଭା ପାନ କରି, ସାରା ପ୍ରକୃତି ଉଲ୍ଲାସତରଙ୍ଗରେ କିପରି ନୃତ୍ୟ କରୁଛି । ମଧୁର ସମୀର ନାଚି ନାଚି ଆସି ଲଜ୍ଜାବନତମୁଖୀ ମଧୁମାଳତୀକୁ ମତାଇ ଦେଉଛି । କେକୀ, ପିକ, ଶୁକ ବୃକ୍ଷ ଡାଳରେ ନୃତ୍ୟ କରୁଛନ୍ତି । ଆକାଶରେ ଚନ୍ଦ୍ରମା ନୃତ୍ୟଶୀଳା ତାରା ବଧୂ ସଙ୍ଗରେ ଲୁଚକାଳି ଖେଳି ଖେଳି ତୁଷାରଶୁଭ୍ର ଅଭ୍ର ଅନ୍ତରାଳରେ ନାଚି ନାଚି ଲୁଚି ଯାଉଛି । ସରସୀ ବକ୍ଷରେ ଫୁଲ୍ଲ କୁମୁଦିନୀ କୋଳରେ ଧରି ଶତ ଶତ ଶଶଧର ଲୁବ୍ଧ ବୀଚିମାଳା ସଙ୍ଗେ ନାଚି ଉଠୁଛନ୍ତି । ଏକା ତୁମ୍ଭେ କାହିଁକି ସଖି, ସ୍ଥିର ହୋଇ ରହିଛ ? ଆସ କିଶୋରୀ ! ନାଚ ଥରେ । ଏହି ପବନ ତାଳରେ ଢଳ ଢଳ ନାଚ ରେ ବିନୋଦିନୀ !

ଶ୍ରୀମତୀ—ନାଚିବାଟା ସିନା ତୁମ୍ଭର ସ୍ୱଭାବ ନଟବର । ତୁମ୍ଭେ ଆଗେ ନାଚ ମୁଁ ଦେଖେଁ ।

ଶ୍ରୀକୃଷ୍ଣ —ମୁଁ ଯଦି ଆଗେ ନାଚେଁ, ତୁମ୍ଭେ ପଛେ ନାଚିବ ତ ?

ଶ୍ରୀମତୀ—ହଁ, ନାଚି ବି ଯେ !

ଶ୍ରୀକୃଷ୍ଣ—ହେଉ ତେବେ ନାଚୁଛି ।

( ରାଧା ଗାନ କଲେ—କୃଷ୍ଣ ନାଚିଲେ )

ଗୀତ

ଶ୍ରୀମତୀ— ନାଚ ନାଚ ହେ ମୋହନ ନାଚ ନାଚ,
ଚରଣେ ଚରଣୋପରି ମୁରଲୀ ଅଧରେ ଧରି
ହାସ ଅଧରେ ଭରି ନାଚ ।

ଶ୍ରୀକୃଷ୍ଣ—ଏବେ ନାଚ କିଶୋରୀ !

( କୃଷ୍ଣ ଗାନ କଲେ—ରାଧା ନାଚିଲେ )

ଗୀତ

ଶ୍ରୀକୃଷ୍ଣ— ନାଚ ନାଚ ଗୋ ବିନୋଦିନୀ ନାଚ,
ଚିବୁକେ ନବେଣୀ କର ଆନ କର କଟି ପର
ନୟନ ନଚାଇ ଧୀରେ ନାଚ ।

ଏବେ ଚାଲ ସଖି—ଯମୁନା ତୀରକୁ ଯିବା । ଆଜ ମଧୁ ନିଶିରେ ବୃନ୍ଦାବନର ସମସ୍ତ କୁଞ୍ଜରେ ବୁଲି କ୍ରୀଡ଼ା କରିବା ଚାଲ । ଆସ ଏବେ ଯମୁନା ତୀରକୁ ଯିବା । ସେଠାରେ ରୂପସୀ ଯମୁନା ଚନ୍ଦ୍ର କିରଣରେ ଝକଝକ ହେଉଥିବ । ଆସ ଆସ ସଖି !

ଶ୍ରୀମତୀ—ତୁମେ ଯାହା କହୁଛ—ମୋ ମନ ଜାଣି ଏକା କହୁଛ । କିନ୍ତୁ ବନ ପଥରେ ତ ମୁଁ ବୁଲି ପାରିବି ନାହିଁ । ଚାହିଁକି ମୋତେ ବଡ଼ ଥକା ଲାଗିଲାଣି । ଆଉ ମୋ ଗୋଡ଼ ଉଠୁ ନାହିଁ । ସେପରି ଶରୀର ଥିବ ତ ·········

ଶ୍ରୀକୃଷ୍ଣ—( ସ୍ୱଗତ ) ଦେଖୁଛି ଶ୍ରୀମତୀଙ୍କ ମନରେ ଟିକିଏ ଗର୍ବ ଆସିଲାଣି । ଆଚ୍ଛା ! ( ପ୍ରକାଶ୍ୟେ ) ସଖି, ମୋପରି କିଣା-କିଙ୍କର ଥାଉ ଥାଉ ଏତେ ଭାବନା କାହିଁକି ? ମୁଁ ତୁମ୍ଭଙ୍କୁ କାନ୍ଧରେ ବସାଇ ନେଇ ଯିବି । ତୁମ୍ଭେ ସଜ ହୁଅ ।

( ଶ୍ରୀମତୀ ସଜ ହେଉ ହେଉ ଶ୍ରୀକୃଷ୍ଣ ଅନ୍ତର ହେଲେ )

ଶ୍ରୀମତୀ—( ସଚକିତ ଦୃଷ୍ଟିରେ ଚାରି ଆଡ଼କୁ ଚାହିଁ ) ସତ କହନ୍ତ—ତୁମର ଚୋର ସ୍ୱଭାବ । ମୁଁ ଜାଣିଛି ଯେ—କୌତୁକ କରି ଏଇଠି କେଉଁଠି ଲୁଚିଯାଇଛ । ମୁଁ ଏଇକ୍ଷଣି ଧରିବି । ( ଚାରିଆଡ଼େ ଖୋଜି ) କାହିଁ ତ ପାଇଲି ନାହିଁ ! ଦଗାଦାର ଶ୍ୟାମ ନାଗର ଦଗାଦେଇ କାହିଁ ଚାଲିଗଲେ ତ ! ଏ ଘୋର ବନରେ ମୁଁ ଏକାକିନୀ କୁଆଡ଼େ ଯିବି ? କ'ଣ କରିବି, ହାୟ ହାୟ ମୁଁ ଚଣ୍ଡାଳୁଣୀ କି କୁବୁଦ୍ଧି କଲି ? ଷୋଳସହସ୍ର ସହଚରୀଙ୍କୁ ଫାଙ୍କି ଦେଇ ଏକୁଟିଆ କୃଷ୍ଣ ସଙ୍ଗ-ସୁଖ ଭୋଗ କରିବି ବୋଲି ଭାବିଥିଲି । ତାଙ୍କର ନିଶ୍ୱାସରେ ମୋତେ ବି ସେହି ଦଶା ଆସି ପଡ଼ିଲା । ଏ ବିଜନ କାନନରେ ଏକୁଟିଆ ମୋତେ କାହିଁ ଛାଡ଼ିଗଲ ନାଥ ! ଶ୍ୟାମ ଗରବରେ ଗରବିଣୀ ହୋଇ ମୁଁ ଆପଣାକୁ ପାଶୋରି ପକାଇଲି । ହେ ପ୍ରାଣବଲ୍ଲଭ, ଏ ଦାସୀର ଅଜ୍ଞାନ ଅପରାଧ କ୍ଷମା କରି ଥରେ ଭଲ ଦର୍ଶନ ଦିଅ ।

ଗୀତ

ଛାଡ଼ି ଗଲ କାହିଁ !
ଏକାକିନୀ ବନେ ବୁଦ୍ଧି ଦିଶୁ ନାହିଁ ।

ଗରବରେ ମାତି ହରାଇଲି ବୁଦ୍ଧି
ଗରବ-ଗଞ୍ଜନ-ବାନା ଦୟାନିଧି
ସେ ରଙ୍ଗାଚରଣେ ପ୍ରାଣ ବିକଛନ୍ତି ।

ଗୋକୁଳ ପରାଣ ଧନ ଗୋପୀନାଥ
ଜୀବନର ବନ୍ଧୁ ମୋର ପ୍ରାଣକାନ୍ତ
ଅନାଥର ନାଥ ହରି ଭକତପ୍ରାଣ ।

( ଗୀତାନ୍ତେ ବୃନ୍ଦା ଲଳିତା ଇନ୍ଦୁରେଖାଙ୍କର ପ୍ରବେଶ )

ବୃନ୍ଦା—ଏଠି କାହାର ପାଦଚିହ୍ନ ପଡ଼ିଛି ସଖି, ଦେଖିଲଣି ନା ?

ଲଳିତା—ତେବେ ଏଇଠି କେଉଁଠି ନିକଟରେ ଥିବେ ।

ବୃନ୍ଦା—ଆମେ ତ ଗୋଟି ଗୋଟିକରି ସମସ୍ତଙ୍କୁ ପଚାରି ଆସିଲେଣି । କେହି ତ କହି ପାରିଲେ ନାହିଁ । ଆଉ ପଚାରିବା କାହାକୁ ? କଦମ୍ବ ନାଗେଶ୍ୱର ପ୍ରଭୃତି ହେଲେ ପୁରୁଷ ଜାତି । ପୁରୁଷଜାତିଙ୍କଠାରୁ ଅବିଶ୍ୱାସୀ କିଏ ଅଛି ? ତହିଁକି ମାଧବୀ ମାଳତୀ ହେଉଛନ୍ତି ପଚାରନ୍ତେ କ୍ଷଣି ସେମାନେ ଆମର ଅବସ୍ଥା ଦେଖି ଟାପରା କରୁଛନ୍ତି । ସେ ପରା ହେଲେ ନାରୀ ଜାତି । ନାରୀଙ୍କର ଦୁଃଖ ଦେଖି ଦୁଃଖ କରନ୍ତେ କ'ଣ ନା—ତାଙ୍କୁ ହସ ମାଡ଼ୁଛି ।

ଲଳିତା—ଏ ସଖି, ସଖି, ଆମ ସଖି ଶ୍ରୀମତୀ କାହିଁକି ଏଠି ବସିଛନ୍ତି ?

ବୃନ୍ଦା—ହଁ, ହଁ, ଶ୍ରୀମତୀ ତ ! କି ଗୋ ଶ୍ରୀମତୀ, ଆମ ସଭିଙ୍କୁ ଠକି ଏକୁଟିଆ ତୁମେ ତ ନାଗରଙ୍କୁ ନେଇ ଆସିଲ । ଏବେ ପୁଣି କେଉଁଠି ଲୁଚାଇ ରଖିଛ କି ?

ଲଳିତା—ସଖି, ତୁମ ଆଶା ମେଣ୍ଟିଲାଣି ତ ? ଏବେ ଭଲ କହିଦିଅ—ଆମେ ଚୋରଙ୍କୁ ଧରୁଁ ।

ଶ୍ରୀମତୀ—ମୁଁ ତୁମ୍ଭଠାରେ ଅନେକ ଦୋଷ କରିଛି । ତା'ର ଫଳ ଦଣ୍ଡ ଏବେ କୋଟି ଗୁଣରେ ଭୋଗୁଛି । କଣ୍ଟା ଘା'ରେ ଆଉ ଲୁଣ ଦିଅ ନାହିଁ ସଖି ! ମନକପାଳିନୀ ମୁଁ କାହିଁକି ଏ କଥା କରନ୍ତି ?

ଗୀତ

କେ ଦେବ କହି— ଜାଣିଛି କେହି
କାହିଁଗଲେ ପ୍ରାଣ ମାଧୋଇ ।

ଅଭାଗିନୀ ମୁହିଁ କି ବୁଦ୍ଧି କଲି,
ଅଞ୍ଚଳର ନିଧି ହଜାଇ ଦେଲି
ଦାରୁଣ ବିଧି, କରମରେ ଥିଲା କି ଲିପି ।

ବୃନ୍ଦା—ଅଁ ସେ, 'ହଟ ନାଗର ତୁମକୁ ବି ମଝିରେ ହଟହଟାରେ ଚକାଇଛନ୍ତି ? ଆଜି କାନ୍ଦ ନାହିଁ ସଖି । ଯଦି ତାଙ୍କ ଶ୍ରୀଚରଣରେ ଗୋପବାଳାମାନଙ୍କର ଏକାନ୍ତ ମତି ଥିବ, ତେବେ ସେ ତିବେ କୁଆଡ଼େ ?

ଶ୍ରୀମତୀ—କହ କହ ବୃନ୍ଦେ, ମୋ ପ୍ରାଣ ପୀୟୂଷାଧାର କାହାନ୍ତି ? ମୋ କଣ୍ଠ ଚନ୍ଦ୍ରହାର କାହାନ୍ତି ? ସେ ଘନ ନୀଳକାନ୍ତ ମଣି କାହିଁ ଗଲେ ? ସେ ପ୍ରୀତିସୁଧାରସ ଖଣି କାହିଁ ଗଲେ ? କହ କହରେ ସଙ୍ଗିନୀ, ମୋ ମାନସ କୁଞ୍ଜବିହାରୀ କେଉଁ ଆଡ଼େ ଅଛନ୍ତି ! ମୋ ଜୀବନ-ଜାହ୍ନବୀ-ବାରି କେଉଁଆଡ଼େ ଅଛନ୍ତି ? ସଜନୀ ଗୋ ଖୋଜି ଆଣି ଦିଅ ତାଙ୍କୁ । ତାଙ୍କ ଅଦର୍ଶନରେ ଏ ପାପ ଜୀବନ କେବେହେଁ ରଖିବି ନାହିଁ ।

ଲଳିତା—ହେଇ ଗୋ, ହେଇ ହଟ ନାଗର ଶ୍ୟାମ ସୁନ୍ଦର ଏଇଠି ଠିଆ ହୋଇଛନ୍ତି ପରା !

ବୃନ୍ଦା—(ଯାଇ ଦେଖି) କାହାନ୍ତି ? ତୁମେ କ'ଣ ଲଳିତେ, କୃଷ୍ଣମୟ ଦେଖୁଛ । ଏଇଟା ପରା ତମାଳ ଗଛ । ତମାଳର ଶ୍ୟାମ ରୂପ ଦେଖି ତୁମେ କଳା କହ୍ନାଇ ବୋଲି ଭାବୁଛ ନା କଣ ?

ଲଳିତା—ହଁ ବୃନ୍ଦେ, ମୁଁ ଯେଉଁଠାକୁ ଚାହିଁଲା ବେଳକୁ ସେହି ମୋହନ ମୂରତି ଦେଖା ଯାଉଛି ।

ଇନ୍ଦୁରେଖା—(ଅନ୍ୟ ଦିଗକୁ ଯାଇ) ସଖି, ସଖି, ଧାଇଁଆସ, ମୁଁ ଚୋରକୁ ଏତେବେଳେ ଧରିଛି ।

ବୃନ୍ଦା—(ଧାଇଁଯାଇ) କାହାନ୍ତି ଗୋ କାହାନ୍ତି ?

ଇନ୍ଦୁ—ହେଇ ପରା, ଚାହିଁଲଣି ନା ଏ କଦମ୍ବ ଗଛକୁ ? ଏଣେ ଗହଳରେ କେମିତିକା ଚୋର ପରି ଛକି ବସିଛନ୍ତି । ଏଣେ ଚୂଡ଼ାଟି ଟିକିଏ ଟିକିଏ ଦିଶି ଯାଉଛି । (କଦମ୍ବ ଗଛକୁ ଅନାଇ) ଆସ ଆସ ଧରା ତ ପଡ଼ିଲଣି—ଏବେ ଓହ୍ଲାଇ ଆସ ।

ବୃନ୍ଦା—(ଯାଇ ଦେଖି) ତୁମେ କ'ଣ ବାଇଆଣୀ ହେଲ କି ? ସେଠି ପରା ମୟୂରଟାଏ ବସିଛି । ତା'ର ପୁଚ୍ଛ ଟିକିଏ ଟିକିଏ ଦିଶି ଯାଉଛି ନା !

ଇନ୍ଦୁ—ହଁ ସତେ ତ ! ତେବେ ଆଉ କଣ କରିବା ସଖି ?

ବୃନ୍ଦା—ଆସ ତେବେ ଦଗାଦାର ନାଗରଙ୍କୁ ଚାରିଆଡ଼େ ଖୋଜିବା ।

ସକଳେ— (ଗୀତ)

କହରେ କହରେ ଚମ୍ପକ ଭୁରୁବର ନଟବର ନାଗର କାହିଁ,
ଖୋଜି ଖୋଜି ସାରା ବୃନ୍ଦାବନରେ ନ ଶୁଣିଲେ ରାଇ ରାଇ ।
ସେ ତ ଲମ୍ପଟ ଶଠ ନଟ ଖାଳିଆ, ସୁନ୍ଦର ମାଳତି ମାଳିଆ,
ନନ୍ଦଦୁଲାଳିଆ, ଶିଖଣ୍ଡ ଚୂଳିଆ, ନବଘନ କାଳିଆ କହ୍ନାଇ ।
(ମୁଁ ତ) ଖୋଜିଲିଣି ନୀପତରୁ ମୂଳେ
(ମୁଁ ତ) ଖୋଜିଲିଣି ଯମୁନା କୂଳେ,
କି ଦୋଷେ ତେଜିଲେ କାହିଁ ସେ ହଜିଲେ
କା' ସଙ୍ଗେ ମଜ୍ଜିଲେ ଯାଇ ।
କହ କହରେ କୋକିଳ କେକି
କେହି ଅଛ କି ତାହାଙ୍କୁ ଦେଖି,
ମାଧବୀ ଗହନେ ବିଜନେ ବିପିନେ
ଜୀବର ଜୀବନ ମୋର ନାହିଁ ।

(ଗୀତ ସରି ନ ଥିବା ଅବସ୍ଥାରେ ଶ୍ରୀକୃଷ୍ଣଙ୍କର ହଠାତ୍ ପ୍ରବେଶ)

କୃଷ୍ଣ—ବାଃ, ତୁମ୍ଭମାନଙ୍କ କରୁଣ ଗୀତିକା ବେଶ୍ ମଧୁର । ସୁନ୍ଦରୀମାନଙ୍କର ହସ ଯେପରି କାନ୍ଦ ମଧ୍ୟ ସେହିପରି ସୁନ୍ଦର ।

ବୃନ୍ଦା—ତୁମେ ସେହି ପରା ରସିକ ଚୋର ! ଯେ ତୁମକୁ ଯେତିକି ଲୋଡ଼େ, ତାକୁ ତୁମେ ସେତିକି ହୀନସ୍ତା ସେତିକି ଅବସ୍ଥା କର । ଅନୁଚରୀମାନଙ୍କୁ କନ୍ଦାଇ କିପରି ସୁଖ ପାଅ ଭଲା ! ଆମେ ତୁମକୁ ଖୋଜୁ ନାହୁଁ । ଯେଉଁଠି ଥିଲ ସେଠିକି ଚାଲିଯାଅ !

ଲଳିତା—ଏଇଠି ଲୁଚିରହି ଆମକୁ ଏତେ ସର୍ କଲଣି ! ଶ୍ରୀମତୀଙ୍କୁ ଏତେ ଦୁଃଖ ଦେବାକୁ ଦେହ କିପରି ସହିଲା ଭଲା ? ବେଶି ଘିଅ ଲବଣୀ ଖାଇବାରୁ ହୃଦୟ ଏକା ଭାରି କଠିନ ହୋଇ ଗଲଣି ନା ?

ଇନ୍ଦୁ—ସଖି, ଗୋପୀଙ୍କ ଭଲମନ୍ଦ ଗୋପୀନାଥଙ୍କୁ କ'ଣ ଲାଗିଛି ଯେ ଏତେ ଟାଉଳି କରି କଥା କହୁଛ ?

ଚିତ୍ରା—ତେବେ ସେ ବେହିଆଙ୍କ ଭଳି ଆମ ମେଳ ଭିତରକୁ ଆସୁଛନ୍ତି କାହିଁକି ?

କୃଷ୍ଣ—ତୁମ୍ଭମାନଙ୍କ ମୁଖରୁ ଏହିପରି ଶୁଣିବାକୁ ମୋତେ ଭାରି ଭଲ ଲାଗେ । ସେଥିପାଇଁ ମୁଁ ଥରକୁ ଥର ଏହିପରି ରଙ୍ଗ କରେଁ । ଶୁଣ ସଖି, ବିରହ ନ ଥିଲେ ମିଳନର ମଧୁରତା ଜଣାପଡ଼ନ୍ତା ନାହିଁ, କମ୍ପା ପ୍ରେମର ଉଦାରତା ବୁଝି ହୁଅନ୍ତା ନାହିଁ । ଆଚ୍ଛା ସମସ୍ତେ ତ କହିଗଲ, ଶ୍ରୀମତୀ କାହିଁ ମଉନ ହୋଇ ରହିଛନ୍ତି ?

ବୃନ୍ଦା—ହେ ଶଠଶିରୋମଣି, ଆମ ସଖି ଶ୍ରୀମତୀ ଯଦି ଭ୍ରମରେ ପଡ଼ି କୁଳଶୀଳ ତେଜି ଲଜ୍ଜାସରମ ପୋଡ଼ି ଖାଇ, ତୁମପରି

କପଟ ପୁରୁଷ ସହିତ ପ୍ରୀତି କରିଥିଲେ । ବର୍ତ୍ତମାନ ତାଙ୍କ ଭ୍ରମ ବୁଝିପାରି ମଉନ ହୋଇ ଅନୁତାପ କରୁଛନ୍ତି ।

କୃଷ୍ଣ—ବୃନ୍ଦେ, ତୁମେ କ'ଣ ଜାଣ ନାହିଁକି, ଆକୁଳ ହୋଇ ମୁଁ ଖୋଜୁଥାଏଁ ଶ୍ରୀମତୀ କେତେବେଳେ ଅଭିମାନ କରିବେ । ତାଙ୍କର ଏଇ ଅଭିମାନ ଭାଙ୍ଗିବା ତ ମୋ ଜୀବନର ସର୍ବଶ୍ରେଷ୍ଠ ସୁଖ ! ମୋର ପ୍ରୀତିର ଚରମ ସାର୍ଥକତା । (ଶ୍ରୀମତୀଙ୍କ ପ୍ରତି) ମାନମୟି ! ମୁଁ ଯଦି ତୁମଠାରେ କିଛି ଦୋଷ କରିଥାଏଁ, ତେବେ ତାହାର ଉପଯୁକ୍ତ ଦଣ୍ଡବିଧାନ କର । ଏ ଦାସ ସହିବାକୁ ପ୍ରସ୍ତୁତ ।

(ଗୀତ)

ପ୍ରିୟେ ଚାରୁଶୀଳେ ମୁଞ୍ଚମୟି ମାନମନିଦାନଂ
ସପଦି ମଦନାନଳେ ଦହତି ମମ ମାନସଂ
ଦେହି ମୁଖ-କମଳମଧୁ ପାନଂ ।

ବୃନ୍ଦେ—ରାଧେ ରାଧେ ! ରାସେଶ୍ୱରି ! ଦେଖ ତୁମ ପ୍ରାଣଠାରୁ ପ୍ରିୟତର କାହ୍ନୁଙ୍କର ଚୂଡ଼ାର ଚିକୁର—କି ବିକଳରେ ସେହି ରଙ୍ଗା ଚରଣ ତଳେ ଲୋଟିପଡ଼ୁଛି !

ଶ୍ରୀମତୀ—( ଶ୍ରୀକୃଷ୍ଣଙ୍କ ହାତ ଧରି ତୋଳିଲେ ) ଜୀବନ ବଲ୍ଲଭ ଆଜି ଏ କି ଭାବାନ୍ତର ! ଲଜ୍ଜା ଭୟ, କୁଳମାନ ସବୁ ତ ସେହି ଚରଣ-କମଳରେ ଜଳାଞ୍ଜଳି ଦେଇ ସାରିଛି । ଶ୍ରୀମତୀର ନିଜର ବୋଲି କହିବାକୁ ଆଉ କ'ଣ ଅଛି ଯେ ସେ ଅଭିମାନ କରିବ ! ହୃଦୟେଶ୍ୱର, ଅବସ୍ଥାର ପ୍ରତିକୂଳ ତରଙ୍ଗାଘାତରେ ଅଧୀର ହୋଇ ଯଦି କିଛି କରିଥାଏ ତେବେ ଏ ଦାସୀ କଣ କ୍ଷମାର ଅଯୋଗ୍ୟ ପ୍ରଭୋ ?

କୃଷ୍ଣ—ଥାଉ ଥାଉ, ଆଉ ଲଜ୍ଜା ଦିଅ ନାହିଁ ପ୍ରିୟତମେ । (ସଖିମାନଙ୍କ ପ୍ରତି ) ଅଭିମାନିନୀ ! ରାସରଙ୍ଗିଣୀଗଣ, ଆଜି ତୁମମାନଙ୍କୁ ଛଳିବାକୁ ଯାଇ ବଡ଼ ସୁଖରେ ତୁମମାନଙ୍କଠାରେ ହାରିଗଲି । ଏବେ ରୋଷ ତ୍ୟାଗ କରି ଆସ ସଖିଗଣ — ମଧୁଯାମିନୀ ପାହିଲାଣି, ଆସି ଆଉ ବିଳମ୍ବ ନ କରି ଆନନ୍ଦ ଉତ୍ସବରେ ମାତି ଯାଅ ।

(ଶ୍ରୀମତୀ ଓ କୃଷ୍ଣ ଯୁଗଳ ହୋଇ ଛିଡ଼ା ହୁଅନ୍ତେ ସଖିଗଣ ଚତୁର୍ଦ୍ଦିଗରେ ଘେରି ନୃତ୍ୟଗୀତ ଆରମ୍ଭ କଲେ)

ସଖିଗଣ— (ଗୀତ)

ସଙ୍ଗିନୀ ରାସରଙ୍ଗିନୀ ଆସ ଗୋ ବରଜନାରୀ
କୁଞ୍ଜଭବନେ ରାଧାଧନୀ ସନେ ବିଜୟେ ରାସ ବିହାରୀ ।
ନବୀନା କିଶୋରୀ କିଶୋରପାଶ ନବଘନେ କିବା ତଡ଼ିତ ହାସ
ଜଡ଼ିତ ଶ୍ୟାମ ପାଦପଅଙ୍ଗେ ହେମଲତା ମନୋହାରୀ ।
ଜୟ ରାଧେଶ୍ୟାମ ରାସରସିଆ ଜୟ ବିନୋଦିନୀ ଜୟ ବିନୋଦିଆ
ମନମୋହନିଆ ଯୁଗଳମାଧୁରୀ ଦେଖରେ ନୟନ ଭରି ।

× × × ×

ଦେଖ ଏ କି ରଙ୍ଗ,
ରାଈ ଅଙ୍ଗ ସଙ୍ଗ ଲଭି ଶ୍ୟାମ ହେଲେ ଗୌରାଙ୍ଗ ।



# ଶ୍ରୀ ଶ୍ରୀ ଗୌର ସନ୍ନ୍ୟାସ

**ଦୃଶ୍ୟ କାବ୍ୟ**

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ସ୍ଥାନ—ପୁଷ୍ପୋଦ୍ୟାନ । ଶ୍ରୀବାସ ଓ ଗଦାଧର )

ଶ୍ରୀବାସ—ଦେଖିଲ ଶ୍ରୀକୃଷ୍ଣଙ୍କର ମହିମା । ନିମାଇଁଙ୍କ ପରି ଜ୍ଞାନଗର୍ବୀ ପଣ୍ଡିତ, ଉଦ୍ଧତ ଯୁବକର କି ଅଦ୍ଭୁତ ପରିବର୍ତ୍ତନ !

ଗଦାଧର—ଅଦ୍ଭୁତ, ଅଦ୍ଭୁତ । ଶ୍ରୀକୃଷ୍ଣଙ୍କ ଲୀଳା ସମସ୍ତହିଁ ଅଦ୍ଭୁତ, ଅନିର୍ବଚନୀୟ ।

ଶ୍ରୀବାସ—ତୁମେ ଲକ୍ଷ୍ୟ କରିଛ କି ପଣ୍ଡିତ, ଗୌରଚନ୍ଦ୍ର ଗୟାଧାମରୁ ଫେରିଲା ଦିନଠାରୁ ଏ ପରିବର୍ତ୍ତନ ହୋଇଛି ।

ଗଦାଧର—ତା ଠିକ୍, କିନ୍ତୁ ସେ ଯେ ଜଣେ ରସିକ ପୁରୁଷ ଓ ଭକ୍ତ ଏହା ମୋର ଚିରକାଳର ବିଶ୍ୱାସ । ଭସ୍ମାଚ୍ଛାଦିତ ବହ୍ନି ପରି ସେ ଭାବ ଏତେ ଦିନ ଅପ୍ରକଟ ଥିଲା ।

( ଅଦ୍ୱୈତଙ୍କର ପ୍ରବେଶ )

ଅଦ୍ୱୈତ—କି ହେ, ଦୁଇ ପଣ୍ଡିତ ମିଳି କି ଚର୍ଚ୍ଚା ଚାଲିଛି ?

ଶ୍ରୀବାସ—ନିମାଇଁ ପଣ୍ଡିତଙ୍କ କଥା ଅତି ଆଶ୍ଚର୍ଯ୍ୟ !

ଅଦ୍ୱୈତ—ଆଶ୍ଚର୍ଯ୍ୟ କିଛି ନୁହେଁ । ମୁଁ ବହୁ କାଳରୁ ଏହି କଥା ଅନୁମାନ କରିଛି ଓ ଏ ସୁଯୋଗକୁ ଅପେକ୍ଷା କରୁଥିଲି । ଏତେ ଦିନେ ସେ ଶୁଭ ଦିନର ଉଦୟ ହେଲା ।

ଗଦାଧର—କୃଷ୍ଣଭକ୍ତି ରାଜ୍ୟରେ ସମସ୍ତହିଁ ଅଲୌକିକ । ସବୁ ରହସ୍ୟମୟ ।

ଶ୍ରୀବାସ—ନିମାଇଁଙ୍କ ପରି ଶକ୍ତିଶାଳୀ ପୁରୁଷର ଆମ ସଙ୍ଗରେ ମିଶିବା ଦ୍ୱାରା ଭକ୍ତିଦ୍ୱେଷୀ ଦୁଷ୍ଟ ନିନ୍ଦକମାନେ ବଡ଼ ବିପନ୍ନ ହେବେ ଏଥର ।

ଅଦ୍ୱୈତ—କୃଷ୍ଣଭକ୍ତିର ମାହାତ୍ମ୍ୟ ବଢ଼ିବ । ନାମ ପ୍ରଚାରରେ ସୁବିଧା ହେବ ।

ଗଦାଧର—ଶୁଣାଯାଉଛି ଗୟା ଧାମରେ ସେ ଯେତେବେଳେ ଈଶ୍ୱର ପୁରୀଙ୍କଠାରୁ ଦୀକ୍ଷା ଗ୍ରହଣ କଲେ ସେତେବେଳେ ତାଙ୍କ ଶରୀରରେ ଅତି ଅଦ୍ଭୁତ ସାତ୍ତ୍ୱିକ ଲକ୍ଷଣମାନ ପ୍ରକାଶ ପାଇଥିଲା ।

ଅଦ୍ୱୈତ—କିଛି ଅଦ୍ଭୁତ ନୁହେଁ । ସବୁ ତାଙ୍କର ଇଚ୍ଛା । କଳିଯୁଗ—ସର୍ବ ଯୁଗଶ୍ରେଷ୍ଠ । ଏହି ଯୁଗରେ ପ୍ରେମ ଭକ୍ତିର ମଧୁର ରସ ଆଚାମରି ସର୍ବ ଜୀବ ପାନ କରି ଧନ୍ୟ ହେବେ ; ପ୍ରେମ ବନ୍ୟାରେ ଜଗତ ସଂସାର ଭାସିଯିବ । ସେ ଶୁଭଦିନ ଏବେ ଆସିଛି । ପ୍ରେମାନନ୍ଦରେ ସମସ୍ତେ ବୋଲ 'ହରିବୋଲ' ।

ସମସ୍ତେ— ( ଗୀତ )

ହରିବୋଲ ହରିବୋଲ ହରି ବୋଲ ହରିବୋଲ ।

### ଦ୍ୱିତୀୟ ଦୃଶ୍ୟ

( ସ୍ଥାନ—ଚୌପାଢ଼ି । ପଢ଼ୁଆ ଛାତ୍ରଗଣ । )

ପ୍ରଥମ ଛାତ୍ର—କି ହୋ ଭାଇ, ତମର ତ ଦେଖା ନ ଥିଲା । କି ବାହାନାରେ ଆଜି ପାଠ ପଢ଼ିବାକୁ ଆସିଲ କି ? ବଡ଼ ଭାଗ୍ୟ ତ !

ଦ୍ୱିତୀୟ ଛାତ୍ର—ଠିକ କହିଲ ଭାଇ । ପଢ଼ିବାକୁ ଆସି ଆଉ ହେବ କ'ଣ ? ପଢ଼ା ତ ହେଉଛି ନିଫଳ ।

ତୃତୀୟ ଛାତ୍ର—ହଁ ଭାଇ, ପଣ୍ଡିତେ ଏଥର ଠିକ୍ ବାଇଆ ପାଗଳଙ୍କ ପରି ହେଉଛନ୍ତି । ପଢ଼ାଇବାରେ ତ ମନ ନାହିଁ ; ଖାଲି କୃଷ୍ଣ କୃଷ୍ଣ ଗାଉଛନ୍ତି ।

ଚତୁର୍ଥ ଛାତ୍ର—ତମ ପରି ପାଷଣ୍ଡ ସେ କଥାକୁ ଗାଉଛନ୍ତି ନ କହି ଆଉ କିଏ କହିବେ ? ତମର ଅକଲ ସେତିକି । ଯାହାର ବୁଦ୍ଧି ଯେତିକି ଗମ୍ଭୀରକୁ ।

ତୃତୀୟ—ତମେ ତ ଭାରି ଜ୍ଞାନୀ ଗଣେଶ । ତମ ପରି କେତେ ପଣ୍ଡାଙ୍କୁ ଆମେ ଦଶ ବରଷ ପାଠ ପଢ଼ାଇ ପାରୁଁ, ଜାଣିଛ ?

ଚତୁର୍ଥ—ତା ପଢ଼ାଇ ପାର । କିନ୍ତୁ କଥାକୁ ଯେ ଗାଉଛନ୍ତି ବୋଲି କହେ ଓ ନିମାଇ ପଣ୍ଡିତଙ୍କୁ କପଟ ପାଗଳ ବୋଲି କହେ, ସେପରି ପାଷଣ୍ଡ ମୁଣ୍ଡରେ ମୁଁ ପଦାଘାତ କରେ ।

ପ୍ରଥମ—ଆରେ ଚୁପ, ଚୁପ, ପଣ୍ଡିତେ ଆସୁଛନ୍ତି ।

( ସମସ୍ତେ ତର ତର ହୋଇ ବସିପଡ଼ି ପୋଥି ମେଲାଇ ପଢ଼ିଲେ )

( ଗୌର ପ୍ରବିଷ୍ଟ ହେଲେ ଓ ଛାତ୍ରମାନେ ଉଠି ନମସ୍କାର କଲେ )

ଗୌର—ତୁମେ ସମସ୍ତେ ଆସିଛ ତ ? ଅନେକେ ନ ଆସିଲା ପରି ଲାଗୁଛି କାହିଁକି ?

ପ୍ରଥମ—ଆଜ୍ଞା, ଆପଣଙ୍କର ଛାତ୍ର ନ ଆସିବା ଦେଖି କେହି କେହି ଆସୁ ନାହାନ୍ତି ।

ଗୌର—ସେହି ଦୋଷଟା ମୋର ହୋଇଛି ସତ୍ୟ ?

ଦ୍ୱିତୀୟ—କେହି କେହି କହୁଛନ୍ତି ପଢ଼ା ପଢ଼ି ଭଲ ହେଉନାହିଁ ।

ଗୌର—ସେ କଥା ମଧ୍ୟ ମୁଁ ଆପେ ଆପେ ବୁଝି ପାରୁଛି ।

ତୃତୀୟ—କେହି କେହି ବିରକ୍ତ ହୋଇ ଅନ୍ୟ ପଣ୍ଡିତଙ୍କ ପାଖେ ପାଠ ପଢ଼ିଲେଣି ।

ଗୌର—ସେମାନେ ତେବେ ବୁଦ୍ଧିମାନର କର୍ମ କରିଛନ୍ତି ।

ଚତୁର୍ଥ—ଯାହାହେଉ ଆପଣଙ୍କ ଛଡ଼ା ଆଉ କାହାରି ପାଖେ ପଢ଼ିବାକୁ ଆମର ମନ ନାହିଁ । ଆପଣ ପଢ଼ାନ୍ତୁ ।

ଗୌର—ତେବେ ପୋଥି ଦିଅ ।

( ପୋଥି ଗ୍ରହଣ କଲେ )

ଦେଖ ଛାତ୍ର ଗଣ, ତୁମ୍ଭେମାନେ ସମସ୍ତେ ବିଦ୍ୟାର୍ଥୀ । କିନ୍ତୁ ଏଠାରେ ଯାହା ଶିଖିବାକୁ ଆସିଛ ତାହା ବିଦ୍ୟା ନୁହେଁ । କାବ୍ୟ, ବ୍ୟାକରଣ, ନ୍ୟାୟ, ଦର୍ଶନ, ଏ ସମସ୍ତ ଅବିଦ୍ୟା । ଏକା କୃଷ୍ଣ ଭକ୍ତି ହିଁ ବିଦ୍ୟା । ଏ ବ୍ୟାକରଣ କାବ୍ୟରେ ରସ ଅଛି ସତ୍ୟ, ମାତ୍ର ନବୀନ ନୀରଦ ସୁନ୍ଦର, ନବକିଶୋର ନଟବର, ଶିଖୀପୁଚ୍ଛଚୂଡ଼ାଧର, ଗୋପବେଶ ବେଣୁକର ଶ୍ରୀକୃଷ୍ଣ ଓ ଆହ୍ଲାଦିନୀ ରସରୂପିଣୀ, ଶ୍ରୀରାଧାଙ୍କର ଉଜ୍ଜ୍ୱଳ ରସ ମାଧୁରୀ ନିକଟରେ ଏ ଅତି ସାମାନ୍ୟ, ଅତି ନୀରସ । ଯାହା ପରା ବିଦ୍ୟା ତାହାର ସେବା କର ଆଉ ଏ ଅବିଦ୍ୟା ଅନ୍ଧକାରରେ କେତେକାଳ ରହିବ ଭାଇ ?

ପ୍ରଥମ—କ୍ଷମା କଲେ ମୁଁ ଗୋଟିଏ କଥା କହନ୍ତି ।

ଗୌର—ଅବାଧରେ କୁହ ।

ପ୍ରଥମ—ଏହିପରି କଥା ଆପଣ ଛାତ୍ରଙ୍କୁ କହି କହି ପାଠ ପଢ଼ାଉ ନାହାନ୍ତି ବୋଲି ଆପଣଙ୍କର ଗୃହ ଆଡ଼େ ନିନ୍ଦା ହେଉଛି ।

ଦ୍ୱିତୀୟ—ଲୋକେ ଆହୁରି ଆପଣଙ୍କୁ ପାଗଳ ବୋଲି କହୁଛନ୍ତି ।

ଗୌର—ସେମାନେ ମିଥ୍ୟା କିଛି କହୁ ନାହାନ୍ତି । ମୁଁ ବାସ୍ତବିକ୍ ପାଗଳ । କିନ୍ତୁ ଜଗତରେ ପାଗଳ ନୁହେ କିଏ ସେ ? କିଏ କାମିନୀପାଇଁ ପାଗଳ, କିଏ କାଞ୍ଚନପାଇଁ ପାଗଳ, —କିଏ ଯଶପାଇଁ ପାଗଳ, କିଏ ମାନପାଇଁ ପାଗଳ । ଏହିପରି କିଛି ହେଲେ ଗୋଟାଏ ବାଇ ସମସ୍ତଙ୍କର ଅଛି । ମୁଁ ସେହିପରି ସବୁ ରସାଧାର ସ୍ୱୟଂ ରସସ୍ୱରୂପ ରାଧାକୃଷ୍ଣ ପ୍ରେମରେ ପାଗଳ ହୋଇଛି । ଅନ୍ୟର ଚକ୍ଷୁରେ ମୁଁ ଯେମନ୍ତ ପାଗଳ, ମୋ ଚକ୍ଷୁରେ ସେହିପରି କୃଷ୍ଣଭକ୍ତିହୀନ ଜନ ପାଗଳ । ତଫାତ୍ ଏତିକି । ପାଗଳ ମାନେ କିଏ ଭାଇ !

ପ୍ରଥମ—ଏପରି ହେଲେ ଅଧ୍ୟାପନା କାର୍ଯ୍ୟ ଚଳିବ କିପରି ?

ଗୌର—ହରିଙ୍କୁ ଛଡ଼ା ଆଉ କିଛି ବୁଝିବାକୁ ବା ବୁଝାଇବାକୁ ମୋର ଶକ୍ତି ନାହିଁ ।

ପ୍ରଥମ—ଆମେ ତେବେ କଣ କରିବୁଁ ?

ଗୌର—ଆଉ କରିବ କ'ଣ ? କହିଲେ ମୋହର ମାର୍ଗରେ କୃଷ୍ଣ ପାଗଳ ହୁଅ, ନୋହିଲେ ଯାହାର ଯାହା ଇଚ୍ଛା ହୁଏ ତାହାର ଅନୁସରଣ କର । ଏତେ ଦିନ ମୁଁ ତୁମ୍ଭମାନଙ୍କୁ ପଢ଼ାଇଲି । ମୋର ଶେଷ ପ୍ରାର୍ଥନା ରକ୍ଷା କରି ସକଳେ ଥରେ ହରି ନାମ ଗାୟନ କର । ତୁମ୍ଭମାନଙ୍କ ମୁଖରୁ ସେହି ମଧୁର ନାମ ଶୁଣିଲେ ମୋର ଅନ୍ତରାତ୍ମା ତୃପ୍ତ ହେବ । ଏତିକି ମୋର ଗୁରୁ ଦକ୍ଷିଣା ।

ଗୀତ

ପ୍ରାଣ ଭରି ବୋଲ ହରି ହରି
ହରି ନାମ ସୁଧା ଧାରା ସୁରଗରୁ ଆସେ ଝରି ॥
ହରି ନାମେ ଜଗତ ଭାସେ,
ହରି ନାମ ପାନ କଲେ ପିପାସା ନାଶେ,
ହରି ହରି ଶବ୍ଦରେ, ପାପ ତାପ ଯାଏ ଅପସରି ॥
ହରି ନାମେ ଉଠରେ ମାତି
ହରି ବିନା ଆନ କେହି, ନାହିଁରେ ସାଥୀ,
ହରିନାମ ମାଳ ଗୁନ୍ଥି ହୃଦପରେ ସଦା ଥାଅ ଧରି ॥

## ତୃତୀୟ ଦୃଶ୍ୟ

(ଶ୍ରୀବାସଙ୍କ ଅଙ୍ଗନ—ଶ୍ରୀବାସ ଓ ଗୌର)

ଗୌର—ପଣ୍ଡିତ ମହାଶୟ, ଆଜି ଗୋଟିଏ ବନ୍ଧନ ଛିଣ୍ଡାଇଲି ।

ଶ୍ରୀବାସ—ତୁମେ ନିତ୍ୟ ମୁକ୍ତ ପୁରୁଷ । ତୁମର ପୁଣି ବନ୍ଧନ କ'ଣ ?

ଗୌର—ରକ୍ତ, ମାଂସ, ଅସ୍ଥିରେ ନିର୍ମିତ ଏହି ଯେ ଭୂତ ଶରୀର ଏହା ବନ୍ଧ ନୁହେଁ ତ ଆଉ କଣ ? ଜୀବ ମାତ୍ରକେ ମାୟା ପାଶରେ ଆବଦ୍ଧ ।

ଶ୍ରୀବାସ—ହଉ, ହଉ, କି ପ୍ରକାର ବନ୍ଧନ ଛିଣ୍ଡାଇଲ ଭଲା ?

ଗୌର—ମୋର ଆଜିଠାରୁ ପଣ୍ଡିତ ନାମ ଘୁଞ୍ଚିଲା । ପାଠଶାଳା ବନ୍ଦ କରିଦେଲି ।

ଶ୍ରୀବାସ—କାହିଁକି?

ଗୌର—ଭକ୍ତ ପଥର ଅନ୍ତରାୟ ବୋଲି ।

ଶ୍ରୀବାସ—ଲୋକ ଶିକ୍ଷା ପାଇଁ ଏ ଲୀଳା । ବୁଝିଲି ।

ଗୌର—ପଣ୍ଡିତ ପଣିଆଟା ଅଭିମାନର ଆଗାର ।

ଶ୍ରୀବାସ—ଲୋକେ କିନ୍ତୁ ପଣ୍ଡିତେ ବୋଲି ଡାକିବେ ।

ଗୌର—ନାହିଁ, ତାହାର ଉପାୟ ଅଛି । ଲୋକେ ଏବେ ପାଗଳ ବୋଲି ଡାକିବେ ।

ଶ୍ରୀବାସ—ତୁମ୍ଭର ଲୀଳାର ମର୍ମ ତୁମେ ଏକା ବୁଝିଛ । ମୋ ପରି କ୍ଷୁଦ୍ର ଜୀବର ବୁଝିବା ସାଧ୍ୟ ନୁହେଁ ।

(ହରିଦାସଙ୍କର ପ୍ରବେଶ)

ହରିଦାସ—ପଣ୍ଡିତ ମହାଶୟ, ଆପଣଙ୍କ ପାଖକୁ ଧାଇଁ ଧାଇଁ ଆସିଲି, ବେଶ୍ ହେଲା ପ୍ରଭୁ ମଧ୍ୟ ଏଇଠି ଅଛନ୍ତି ।

ଶ୍ରୀବାସ—କି ହରିଦାସ, ମୋ ପାଖକୁ ଧାଇଁ ଧାଇଁ ଆସିବାର କାରଣ ? ଖବର କଣ ?

ହରିଦାସ—ସେଇ ଯେଉଁ ଅବଧୂତଙ୍କ କଥା ଶୁଣିଥିଲେ ତାଙ୍କୁ ମୁଁ ଦେଖି ଆସିଲି, ଅଲୌକିକ ।

ଶ୍ରୀବାସ—କଣ ଦେଖିଲ ?

ହରିଦାସ—ଦେଖିଲି, କୃଷ୍ଣ ପ୍ରେମରେ ଉନ୍ମତ୍ତ । ବାହ୍ୟଜ୍ଞାନ ନାହିଁ । କୃଷ୍ଣ ଅନ୍ୱେଷଣ କରି କରି ଏଠାକୁ ଆସିଛନ୍ତି ।

ଶ୍ରୀବାସ—ଆଉ କ'ଣ କହୁଛନ୍ତି ?

ହରିଦାସ—କହୁଛନ୍ତି ଶ୍ରୀକୃଷ୍ଣ ନବଦ୍ୱୀପରେ ଅଛନ୍ତି । ଶୀଘ୍ର ତାଙ୍କୁ ସେ ପାଇବେ ।

ଶ୍ରୀବାସ—କି ଭାବରେ ସେ ଅଛନ୍ତି ?

ହରିଦାସ—ବାଳସ୍ୱଭାବ, ହସୁଛନ୍ତି, ନାଚୁଛନ୍ତି, ଗାଉଛନ୍ତି ।

ଗୌର—ସେ କେଉଁଠି ଅଛନ୍ତି ? ହରିଦାସ, ଶୀଘ୍ର ତାଙ୍କ ସନ୍ନିକଟରେ ମୋର ଭେଟ କରାଅ । ଚିତ୍ତ ଅତ୍ୟନ୍ତ ବ୍ୟାକୁଳ ହେଉଛି ।

ଶ୍ରୀବାସ—ଏପରି ବ୍ୟସ୍ତ ହେବାର କାରଣ ନାହିଁ । ମୁଁ ତାଙ୍କୁ ଯାଇ ଏଠାକୁ ନେଇ ଆସେଁ । ତୁମ୍ଭେ ଯାଇ ସ୍ନାନାହାର କରି ଆସ । ଏହି ଗୃହରେ ହିଁ ଉଭୟଙ୍କର ମିଳନ ହେବ । ଚାଲ ହରିଦାସ ।

ହରିଦାସ—ଆସନ୍ତୁ । (ସମସ୍ତଙ୍କର ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

(ସ୍ଥାନ—ଶଚୀ ମାତାଙ୍କର ଅଙ୍ଗନ । ଶଚୀମାତା ପ୍ରବିଷ୍ଟା ହେଲେ ।)

ଶଚୀ—ମା, ଗୋ ବହୂ ମା । କି, ଆଜି ଏତେ ବେଳ ହେଲା, ରନ୍ଧା ବଢ଼ା କରିବ ନାହିଁ କି ? ପୁଅ ଏଇକ୍ଷଣି ଆସିବ ।

(ବିଷ୍ଣୁପ୍ରିୟା ଓ ମାଳିନୀ ପ୍ରବିଷ୍ଟା ହେଲେ)

ମାଳିନୀ—କି, ମା, ଏତେ ତରବର କାହିଁକି ? ପୁଅ ତ ତମର ଅଢ଼େଇ ପହରରେ ଆସିବେ । ଆଉ ଏତେ ଚଞ୍ଚଳ ଚୂଲି ଲଗାଇଲେ ସବୁ ଶୁଖିଯିବ ନାହିଁ ?

ଶଚୀ—ହଁ ମା, ତୁ କ'ଣ ମିଛ କହୁଛୁ କି ! ହେଲେ କ'ଣ ହେବ, ସେ ତ ବାଇଆ ଟା, କାଳେ କେତେବେଳେ ରାଗ ହୋଇଯିବ କଣ କରିବ !

ମାଳିନୀ—ଆଚ୍ଛା ମା, ଏବେ ତ ସେ କାହିଁକି ଆଉ ଭଳିଆ ହୋଇ ଗଲେଣି । ପିଲାଙ୍କ ପରି ଯଉ ନାଚ, କୁଦ, ହସ, ଟାପରା ସବୁ ତ କୁଆଡ଼େ ଗଲାଣି । ଏବେ ଖାଲି ଧୀର, ଗମ୍ଭୀର ।

ଶଚୀ—ହଁ ମା, ମୁଁ ବି ସେଇଆ ଦେଖୁଛି । କେତେବେଳେ ଆପେ ଆପେ ବସି ମନକୁ ମନକୁ କ'ଣ ବକି ହଉଛି । କେତେବେଳେ ହା କୃଷ୍ଣ, କୃଷ୍ଣ କହି କାନ୍ଦୁଛି, କେବେ ବା 'ପାଇଲି', 'ପାଇଲି' ବୋଲି ହସୁଛି ।

ମାଳିନୀ—ଆଉ ଶୁଣିନ ନା, ରାତିରେ ନିଦରେ ଶୋଇ ସେଇପରି ହଉଛନ୍ତି ; କେତେବେଳେ ବା ରାତି ଅଧରେ ଉଠି ଖଟଉଲେ ବସି କାନ୍ଦୁଛନ୍ତି ।

ଶଚୀ—ମୋହର କପାଳ ମନ୍ଦ ଲୋ ମା । 'କାହାକୁ କହିବି' । ଏହିପରି ତ ତା ବଡ଼ ଭାଇ—

(ଗୌର ପ୍ରବିଷ୍ଟ ହେଲେ)

ଗୌର—ମା, ମା,—ଭାତ ହେଲାଣି ? ଟିକିଏ ତେଲ ଦେ ମା, ମୁଁ ଗଙ୍ଗାରୁ ଗାଧୋଇ ଆସେ ।

ଶଚୀ—(ବିଷ୍ଣୁପ୍ରିୟା ପ୍ରତି) ବହୂ ମା, ମାଲପା ଟିକିଏ ଦେଇ ଯା ।

(ବିଷ୍ଣୁପ୍ରିୟା ପ୍ରସ୍ଥାନ କଲେ)

ବାପ, ତୁ ଏବେ ଇମିତି କାହିଁକି ହଉଛୁ କହନା । ମୋ ମୁଣ୍ଡ ଖାଇବୁ । ସତ କହିଲୁ ।

ଗୌର—କିଛି ନୁହେ ମା, କୌଣସି ଚିନ୍ତା ନାହିଁ । ପିଲା କାଳରୁ ମୋ ମୁଣ୍ଡରେ ଗୋଟାଏ ବାତବେଗ ଅଛି ଜାଣିଛୁ । ସେହି ବିକାର କିଛି ବାହାରି ପଡ଼ୁଥିବ ।

ଶଚୀ—ନାହିଁ ବାପ, ମୋତେ ବଡ଼ ଡର ମାଡ଼ୁଛି, ମୋ କଲିଜା ଥରୁଛି । ଏହିପରି ହୋଇ ତୋ ବଡ଼ ଭାଇ ବିଶ୍ୱରୂପ ମୋତେ ଫାଙ୍କି ଦେଇଗଲା ।

ଗୌର—(ହସି) ସେ ବାଟ ତୁ ମା ମୋର ବନ୍ଦ କରିଛୁ ପରା ! ପଣହିଅ ବେକରେ ବାନ୍ଧି ଦେଇ ସେ ବାଟେ କଣ୍ଟା ଦେଇ ସାରିଛୁ ।

( ବିଷ୍ଣୁପ୍ରିୟା ତୈଳହସ୍ତେ ପୁନଃ ପ୍ରବେଶ କଲେ )

ମା, ଗୋଟାଏ କଥା କହିବି । ଆମର ପାଠଶାଳା ଭାଙ୍ଗି ଦେଲି । ମନେ କଲି ମାନସିକ ପରିଶ୍ରମ କଲେ ମୁଣ୍ଡର ରୋଗ ବଢ଼ିପାରେ । (ଗୌର ତୈଳ ଗ୍ରହଣ କଲେ)

ଶଚୀ—ଆଚ୍ଛା କରିଛୁ । ଆପଣା ଦେହ ଆଗେ, ଆଉ ସବୁ ପଛେ । ତୋର ଦେହ ଭଲ ଥିଲେ ସବୁ ହେଲା । ଈଶ୍ୱର ଯାହା ଦେଇଛନ୍ତି ଶାଗ ଭାତ ମୁଠାଏ ଦରିଦ୍ର ମିଳିବ ତ ।

ଗୌର—ହଁ, ଟିକିଏ ସୁସ୍ଥ ହେଲେ ତେଣିକି ପୁଣି ଦେଖାଯିବ ।

( ଗୌର ପ୍ରସ୍ଥାନ କଲେ )

ଶଚୀ—ବହୂ ମା, ତମେ ନିମାଇକୁ ବୁଝାଇ ଶୁଝାଇ ତା ମନ ଭଲ ରଖାଇଥିବ । ସେ ଯେପରି କିଛି କଥାରେ ଉଣା ହେଲି ବୋଲି ନ କହେ କିମ୍ବା ଅସନ୍ତୋଷ ନ ହୁଏ ।

( ପ୍ରସ୍ଥାନ )

ମାଳିନୀ—ଆଜି, ମୁଁ କହି ଦେଉଛି ରାତିରେ ଉଜାଗର ରହି ମନ ଗୌରକୁ ଜଗି ବସି ଥିବ । କାଳେ କେତେବେଳେ—

ବିଷ୍ଣୁ—ଦୂର୍, ତୋର ସବୁ ବେଳେ ସେହି କଥା ।

ମାଳିନୀ—ନା, ସଖି, ମୋ କଥାଟା ସେହିପରି ସତ, କିନ୍ତୁ ମୁଁ ଅସଲ ମଞ୍ଜି କଥା କହୁଛି । ତାଙ୍କର ଯେପରି ଅବସ୍ଥା, ସେଥିରେ ତମର ଖୁବ୍ ସାବଧାନ ରହିବା ଉଚିତ ।

ବିଷ୍ଣୁ—ତୋ କଥା ମୁଁ ବୁଝି ପାରୁନାହିଁ, ସଖି ।

ମାଳିନୀ—ବୁଝି ପାରୁ ନାହିଁ ? ଦିନେ ବୁଝିବ । କଥା ଏହି କି, ତାଙ୍କର ଯେପରି ଲକ୍ଷଣ ଦେଖା ଯାଉଛି ସେଥିରେ ମୋ ବିଚାରରେ ତୁମେ ତାଙ୍କ ମନକୁ ରଞ୍ଜାଇ ମଜାଇ ଯେତେ ରଖିବ ସେତେ ମଙ୍ଗଳ ।

ବିଷ୍ଣୁ—ସଖି, ମୁଁ ଦାସୀ, ସେ ପ୍ରଭୁ; ତାଙ୍କର ସେବାପାଇଁ ମୋର ଜନ୍ମ । ତାଙ୍କର ଆଜ୍ଞା ପାଳନ ମୋର କର୍ତ୍ତବ୍ୟ, ତାଙ୍କର ଇଚ୍ଛା ମୋର ଇଷ୍ଟ । ନାରୀ ଜୀବନରେ ଆଉ ଅନ୍ୟ ଧର୍ମ କ'ଣ ଅଛି ସଖି ?

ମାଳିନୀ—ନାରୀର ଧର୍ମ ଓ ହୃଦୟ ମଧ୍ୟରେ କେତେ ଫରକ ଅଛି । ତାହା ତୁମେ ଜାଣି ନାହିଁ । ବଡ଼ଲେ ଜାଣିବ । ଠକିଲେ ଶିଖିବ । ଆସ ସେ କଥା ଭଲ କରି ବୁଝାଇ ଦିଏଁ ।

( ଦୁହିଁଙ୍କର ପ୍ରସ୍ଥାନ )

## ପଞ୍ଚମ ଦୃଶ୍ୟ

ସ୍ଥାନ—ଶ୍ରୀବାସ ଅଙ୍ଗନ—ଶ୍ରୀବାସ, ଗଦାଧର, ଅଦ୍ୱୈତ, ହରିଦାସ ନିତ୍ୟାନନ୍ଦଙ୍କ ଭାବାବିଷ୍ଟ ଅବସ୍ଥାରେ ଯେପନ ପ୍ରବିଷ୍ଟ ହେଲେ ।

( ଗୀତ )

କଳିଯୁଗେ ଧନ୍ୟ ନିତ୍ୟାନନ୍ଦ ଅବତାରେ
ପ୍ରେମ-ଗଙ୍ଗାଯାଏ ବହି ସୁଧାରସ ଧାରେ ॥
ଆସିଛିରେ ପ୍ରେମ ଭଣ୍ଡାରୀ
ଅସରା ପ୍ରେମ ପସରା ନିଜ ଶିରେ ଧରି
ଆଚଣ୍ଡାଳେ ଯାଚେ ପ୍ରେମ ବୁଲି ଦ୍ୱାରେ ଦ୍ୱାରେ ॥
ପାପୀ ତାପୀ କିଏ ଅଛ କାହିଁ
ଆସିଛି ପ୍ରେମ-ତରଣୀ ଆସ ବେଗେ ଧାଇଁ
ସେହି ତରଣୀ ଆଶ୍ରା କରି ପାରି ହୋଇ ଯା'ରେ ।

ନିତ୍ୟାନନ୍ଦ—ଦେଖାଅ; ଦେଖାଅ ମୋତେ କୃଷ୍ଣ ଦେଖାଅ । ମୁଁ ଆଉ ରହି ପାରିବି ନାହିଁ ।

ଅଦ୍ୱୈତ— ପ୍ରଭୁପାଦ, ସ୍ଥିର ହୁଅନ୍ତୁ । ଶୀଘ୍ର ଆପଣଙ୍କର କୃଷ୍ଣ ଉପସ୍ଥିତ ହେବେ ।

ନିତ୍ୟାନନ୍ଦ—କାହିଁ, କାହିଁ, ମୋର କୃଷ୍ଣ କାହିଁ ? ଭାଇ କହ୍ନାଇରେ କେତେଦିନ ହେଲା ଆମେ ଦୁହେଁ ବୃନ୍ଦାବନରେ ଗୋ-ଚାରଣ କରି ନାହୁଁ । କେତେକାଳ କଦମ୍ବ ଡାଳରେ ଚଢ଼ି କାଳିନ୍ଦୀ ଜଳକୁ ଡେଇଁ ପଡ଼ି ନାହୁଁ । ଆ, ଆ,—ଭାଇ, ମୋ ଜୀବନ କହ୍ନାଇରେ । ବଇଁଶୀ ବଜାଇ ରୁଣୁ ଝୁଣୁ ଝୁଣୁ ନାଚି ଆ ଭାଇ ! ତୋହର ବେଣୁ ବିରହରେ ମୋର ଶିଙ୍ଗା ନୀରବ ରହିଅଛି । ତୋ ନବଘନ ଶ୍ୟାମ ସୁନ୍ଦର ମୂରତି ମୋ ଆଖିରେ········ ( ବିହ୍ୱଳାବସ୍ଥା )

ଅଦ୍ୱୈତ—ପ୍ରଭୋ, ଧୈର୍ଯ୍ୟ ଧରନ୍ତୁ । କୃଷ୍ଣ ଆସୁଛନ୍ତି ।

ନିତ୍ୟାନନ୍ଦ—ଆଁ ? କହ୍ନାଇ ଆସୁଛି ? ହଁ ହଁ, କହ୍ନାଇ ନିଶ୍ଚୟ ଆସୁଛି । ତାହାର ମୁରଲୀଧ୍ୱନି ଶୁଭୁଛି ଏକା ! ଯେଣୁ ବତ୍ସ-ଗଣ ଗ୍ରୀବା ଟେକି ରହିଁ ରହିଛନ୍ତି । ମୟୂର ମୟୂରୀ ଶିଖା ମେଲାଇ ନୃତ୍ୟ କରୁଛନ୍ତି । ଆ, ଭାଇ, କୁଆଡ଼େ ଏତେ-ବେଳ ଯାଏ ଲୁଚି ରହିଥିଲୁ ? ମୁହଁ ତ ଶୁଖି ଗିଲାଣି । କେତେ ଭୋକ ଲାଗିବଣି । ମା ଯଶୋଦା ସର ଲବଣୀ ସଜାଡ଼ି ରଖି ଦାଣ୍ଡ ଦୁଆରେ ଛିଡ଼ା ହୋଇ ରହିଁ ରହି-ଥିବେ । ତୋର ଶୁଖିଲା ମୁଖ ଦେଖି ମୋତେ କହିବେ

"ସମରେ, ତୁ ଥାଉଁ ଥାଉଁ, କହେଇ ମୋର କେତେ ଦୁଃଖ ପାଇ ନ ଥିବ !''

ଅଦ୍ୱୈତ—ରହନ୍ତୁ, ରହନ୍ତୁ, ବିଶ୍ୱମ୍ଭର ଆସିଲେଣି ।

( ଗୌରଙ୍କ ପ୍ରବେଶ )

( ଗୌରଙ୍କ ପ୍ରତି ) ତୁମ୍ଭ ପାଇଁ ପ୍ରଭୁପାଦ ନିତ୍ୟାନନ୍ଦ କେଡ଼େ ବ୍ୟାକୁଳ ହେଉଛନ୍ତି ।

ନିତ୍ୟାନନ୍ଦ—( ଦୌଡ଼ିଯାଇ ଗୌରଙ୍କୁ ଆଲିଙ୍ଗନ କରି ) ଭାଇରେ ତୋତେ ମୁଁ କୋଟି ଯୁଗ ଯୁଗାନ୍ତରେ ଖୋଜି ଖୋଜି ଥକିଲିଣି । ତୁ ବଡ଼ କପଟୀ । ମୋ ସଙ୍ଗରେ କେତେ ଲୁଚକାଳି ଖେଳିଲୁଣି ! ଏତେ ଦିନେ ତୋତେ ପାଇଛି । ଏଥର ଆଉ ଛାଡ଼ିବି ନାହିଁ । ସବୁ କଥା ଭୁଲି ପକାଇ ତୁ ପରା ଆନନ୍ଦରେ ବସି ରହିଛୁ ।

( ଗୀତ )

ନିତ୍ୟାନନ୍ଦ—ଏବେ ଧରିଛି ଧରିଛି ତୋତେ ରେ କହ୍ନାଇ
ଏତେ ଦିନ ଲୁଚି ଥିଲୁ ତୁ କାହିଁ,
ଏଣ୍ଟି ଅବଧୂତ ବେଶେ, ବୁଲି ଦେଶେ ଦେଶେ,
ଖୋଜି ଖୋଜି ହୋଇ ଗଲିଣି ବାଇ ॥

ଗୌର— ( ମୁହିଁ ବସିଛି ମୁଁ ତୁମରି ପାଇଁ— )
( ତାହା ଜାଣି ପରା ଅଇଲି ଧାଇଁ— )

ନିତ୍ୟାନନ୍ଦ— ( କଳି ଜୀବ ଉଦ୍ଧାରିବା ମନେ କି ନାହିଁ )
( ସଂସାର ସୁଖେ ଭୁଲି ରହି )
( ଆଲିଙ୍ଗନ କରି )—

ଗୌର—ଶାନ୍ତ ହୁଅ ଭାଇ । ଆଉ ଲଜ୍ଜା ଦିଅ ନାହିଁ । ମୋ ପାଇଁ ତୁମ୍ଭେ ଏତେ କଷ୍ଟ ପାଇଛ ! ସାନ ଭାଇ କ'ଣ ବଡ଼ ଭାଇଠାରୁ ଏତିକି ଅପରାଧ କ୍ଷମା ଭିକ୍ଷା କରି ନ ପାରେ !

ଅଦ୍ୱୈତ—ଆହା, ଆଜି ଜଗତରେ କେଡ଼େ ଶୁଭଦିନ ! ନିତାଇ ଗୌରଙ୍କ ମିଳନ ଦେଖି ଏ ପାପ ଆଖି ସାର୍ଥକ ହେଲା । ଆସ ଆସ ଭକ୍ତମଣ୍ଡଳି, ଆସ ଶ୍ରୀବାସ, ଗଦାଧର, ଶ୍ରୀଧର, ହରିଦାସ ସମସ୍ତେ ମିଳି କୀର୍ତ୍ତନାନନ୍ଦ ଉପଭୋଗ କରି ମହୋତ୍ସବର ଆୟୋଜନ କରିବା ।

ହରିଦାସ—( ନତଜାନୁ ହୋଇ ) ପ୍ରଭୁ, ଏ ଅଧମକୁ ଆଉ କପାଳି ଡାକୁଛନ୍ତି । ଏହି ମୋର ଅତି ଭାଗ୍ୟ ଯେ ମୁଁ ଦୂରରେ ରହି ଏହି ମଧୁରଲୀଳା ଦର୍ଶନ କଲି । ଅତି ନୀଚ ଅସ୍ପୃଶ୍ୟ ଯବନ ମୁହିଁ—ଉତ୍ସବରେ ଯୋଗ ଦେବାର ଅଧିକାର ନାହିଁ ।

ଗୌର—ହରିଦାସ, ହରିଦାସ, ଏ କ'ଣ କହୁଛ ! ତୁମ୍ଭେ ନୀଚ ! ତୁମେ ଅସ୍ପୃଶ୍ୟ ! କଦାପି ନୁହେ । ହରିଭକ୍ତକୁ ଯେ ନୀଚ ବୋଲି କହେ ତାହାଠାରୁ ପାଷଣ୍ଡ ଆଉ କିଏ ଅଛି ? ତୁମ୍ଭଠାରୁ ମୋର ପ୍ରିୟତର ଆଉ କେହି ନାହିଁ ହରିଦାସ ! ଆସ, ଆସ, ମୋତେ ଥରେ କୃପା କରି ଆଲିଙ୍ଗନ ଦିଅ । ତୁମ୍ଭର ପୁଣ୍ୟ ସ୍ପର୍ଶ ଲାଗି ଏ ପାପତନୁ ପବିତ୍ର ହେଉ ।

( ଆଲିଙ୍ଗନ କଲେ )

ହରିଦାସ—ଆଁ ଆଁ—କି କଲ, କି କଲ ପ୍ରଭୁ ! ଏ କଳୁଷିତ ଦେହରେ ସେ ଶ୍ରୀଅଙ୍ଗ ଛୁଆଁଇଲ ! ହା, ପତିତପାବନ, ଦୟାମୟ— (ରୋଦନ)

ଅଦ୍ୱୈତ—ଉଠ ଉଠ ହରିଦାସ । ପ୍ରେମ ଭକ୍ତି ରାଜ୍ୟରେ ଭେଦ-ବୁଦ୍ଧିର ସ୍ଥାନ ନାହିଁ । ବାରେ ମାତ୍ର ଯେ କାୟ-ମନୋ-ବାକ୍ୟରେ ହରିନାମ ଉଚ୍ଚାରଣ କରେ ତାହାର କୋଟି କୋଟି ଜନ୍ମାନ୍ତର ପାପ ବିଦୂରିତ ହୁଏ । ତୁମେ ହରିଭକ୍ତ, ପୁଣ୍ୟାତ୍ମା, ମହାପୁରୁଷ । ବୈଷ୍ଣବ ଠାରେ ଜାତି ବିଚାର ନାହିଁ ହରିଦାସ । ଏହି ତତ୍ତ୍ୱ ପ୍ରକାଶ କରିବା ପାଇଁ ତ ସ୍ୱୟଂ ଶ୍ରୀକୃଷ୍ଣ ଗୋଲୋକରେ ନିତ୍ୟ ବିଳାସ ଛାଡ଼ି କଳିହତ ଜନ-ସମାଜରେ ନର ରୂପ ଧରି ଅବତୀର୍ଣ୍ଣ ହୋଇ ଅଛନ୍ତି । ଆହା, ହରିଦାସ, ତୁମ୍ଭେ କେଡ଼େ ଭାଗ୍ୟବାନ । ଏ ଭାଗ୍ୟ ତ ଏ ବୃଦ୍ଧର ହେଲା ନାହିଁ ।

## ଷଷ୍ଠ ଦୃଶ୍ୟ

(ସ୍ଥାନ ଗଙ୍ଗାତୀର—ନଦିଆ ନାଗରୀଗଣ ପ୍ରବିଷ୍ଟ ହେଲେ)

( ଗୀତ )

ଆସ ଗୋ ନଦିଆ ନାଗରୀ
ସୁରଧୂନୀ ତୀରେ ବିଜେ ଗଉରହରି ।
ନଟନ ମୋହନ ଠାଣି ଛଟକ ବାଙ୍କ ଗୁହାଁଣି,
ରହିବ କେଉଁ ରମଣୀ ପରାଣ ଧରି ।୧।
ହାଟକ ବରଣ ଶୋଭା, ଝଟକେ ତା ଅଙ୍ଗ ପ୍ରଭା
ଚାଲ ଗୋ ଦେଖିବା ଚାଲ ନୟନ ଭରି ।୨।
ଗୁଞ୍ଜର ଚକୁର ଶିରେ ଯୁବତୀଙ୍କ ମନ ହରେ
ଯିବ ଗୋ ଦେଖିଲେ ଥରେ ମରମେ ମରି ।୩।

ପ୍ରଥମ ନାଗରୀ—ଗୋ ସହି, ମୁଁ ଯେତେ ମନରେ ବିଚାରୁଛି କି ଆଉ ଏଣିକି ଗଙ୍ଗାଘାଟକୁ ଆସିବି ନାହିଁ ବୋଲି, ମନ

କାହିଁକି ଆସିବାବେଳ ହେଲାଷଣି ତେତିକ ତେତିକ ମାଡ଼ ପଡ଼ୁଛି ।

ଦ୍ୱିତୀୟା—ମୁଁ ଯାହା ଭାବୁଥିଲି ତୁମେ ସେହିକଥା କହିଲଣି ଏକା । ଏଠି କ'ଣ ଅଛି କେଜାଣି । ନ ଆସି ଘରେ ରହି ହଉଛି, ନା, ନ ଆସିଲେ ମନ ଥୟ ହଉଛି !

ତୃତୀୟା—କାହିଁକି କହିଲ, ତମକୁ ଇମିତି କେଉଁ ଭୂତ ଲାଗିଛି କି ?

ଚତୁର୍ଥୀ—ପ୍ରେମ ଭୂତ ଗୋ, ପ୍ରେମ ଭୂତ ! ବ୍ରଜ ଗୋପୀଙ୍କୁ ଯେମିତି କଳା ଭୂତ ଲାଗିଥିଲା ସିମିତି ଆଙ୍କୁ ଗୋରା ଭୂତ ଲାଗିଛି । ଆଉ ପୁଣି କଣ ! ଏଇକଥା ନା ସଖି ?

ପ୍ରଥମା—ମନ କଥା ତ ଟାଣି ନଉଛ । ସିମିତିକା ମରମୀ ହୋଇ ନ ଥିଲେ ମରମ ବୁଝନ୍ତା ପୁଣି କିଏ ଗୋ ।

ଦ୍ୱିତୀୟା—ଆଚ୍ଛା, ସଖି, ତାଙ୍କୁ ଆଣି ଏ ନଦିଆପୁରରେ ବିଧାତା ଜନମ ଦେଲା କାହିଁକି କୁହନ । ନଦିଆ ନାଗରଙ୍କ ଉପରେ ତାର କି ଅଦିନ୍ତା ଥିଲା ନା କଣ ?

ତୃତୀୟା—ବିଧାତାର କାହିଁକି ଅଦିନ୍ତା ଥିବ ! ତମେ ସେହିପରି ଆର ଜନମରେ ତପସ୍ୟା କରିଥିବ । ମନ ଦେନ ତ ଫଳ ।

ଚତୁର୍ଥୀ—ନାହିଁ ଗୋ ନାହିଁ, ଯାହା କଥା କହୁଛ, ଯାହା ଲାଗି ଏମିତି ହଉଛ ତାହାର ଅଦିନ୍ତା ଥିଲା ପରା ଆର ଜନମରେ । ଏ ଜନମରେ ଦାଉ ସାଧି ନଉଛି ।

ପ୍ରଥମା—ଠିକ୍ ଠିକ୍ କହିଲ । ଏହି କଥା ଯାଇ ମନକୁ ଆସିଲା । ସେ ରୂପକୁ ବିଧାତା କଣ ଦେଇ ଗଢ଼ିଛି କୁହନ ।

ଦ୍ୱିତୀୟା—ଜଗତରେ ଯେତେ ସୁନ୍ଦର ଦରବ ଗଢ଼ି ସାରି, ବିଧାତାର ମନ କଉଁଥିରେ ନ ମାନବାରୁ ସବୁଥିରୁ ଟିକିଏ ଟିକିଏ ସାର ନେଇ ଗୌରରୂପ ଗଢ଼ିଛି ।

ତୃତୀୟା—ନାହିଁ, ତା ନୁହେଁ । ମୋ ମନେ ହେଉଛି ଖାଲି ଫୁଲ ଫୁଲରେ ସେ ତନୁ ନିର୍ମାଣ କରିଛି । ଅତସୀ ଫୁଲରେ ଚୂଳ, ତିଳ ଫୁଲରେ ନାସା, କୁନ୍ଦ ଫୁଲରେ ଦାନ୍ତ, ପାଟଳି ଫୁଲରେ ଓଠ, ରକ୍ତ କମଳରେ କର ପଲ୍ଲବ, ନୀଳ ପଦ୍ମରେ ଆଖି, ଚମ୍ପା କଢ଼ରେ ଆଙ୍ଗୁଳି, ସ୍ଥଳ ପଦ୍ମରେ ଚରଣ, ଛଣ ଫୁଲରେ ଅଙ୍ଗକାନ୍ତି ।

ଚତୁର୍ଥୀ—ମୋ କଥା ବୁଝିବ ନା ? ଆଉ ବିଧାତା ଗଢ଼ିଛି ଭ୍ରମରରେ ତାଙ୍କ ଦରଦର ହସ, କନ୍ଦର୍ପରେ ଅଙ୍ଗ ଠାଣି, ଧନୁଶରରେ ଆଉ ଚାହାଣୀ ।

ପ୍ରଥମା—ରସିକା ନୋହିଲେ ବୁଝନ୍ତା ନା । ଏହି କଥାକୁ ଯେ ମନ ପିଇଗଲା । ଏକା ଯାହା କୁହ ପଛକେ କୁଳଭ୍ରଷ୍ଟଣୀ-ଗୁଡ଼ାକ ବାଟ ଘାଟରେ ପର ପୁରୁଷର ରୂପ ଗୁଣ ବଖାଣିଲେ ଲୋକେ କ'ଣ କହିବେ ।

ଦ୍ୱିତୀୟା—ଲୋକେ କହିବେ କି କୁଳଟା । ଆଉ କଣ କହିବେ ?

ତୃତୀୟା—ହଁ କହିବେ ? କିଏ କହିବ କୁହନ, ତା ଜିଭ ଉପାଡ଼ି ଦେବି ନାହିଁନା ? ଶଚୀ ନନ୍ଦନ ଗୌରସୁନ୍ଦର କଣ ପର-ପୁରୁଷ ଯେ ଲୋକେ ଆମକୁ କୁଳଟା ବୋଲି କହିବେ ? ସିଏ ତ ପର ପୁରୁଷ ନୁହେଁ, ପରମ ପୁରୁଷ । ଯେ ପରମ ପୁରୁଷ ସିଏ ତ ସମସ୍ତଙ୍କର ସ୍ୱାମୀ । ଜଗତର ପତି । ତାଙ୍କ କଥାରେ କ'ଣ ···

ଚତୁର୍ଥୀ—ସେତିକି ଥାଉ, ସେତିକି ଥାଉ । ସବୁ କଥାଗୁଡ଼ାକ ଆଉ ଆମ ଆଗରେ ବେଶି ବଖାଣି କୁହନା । ଆମେ ତ ମୂର୍ଖ ଲୋକ, ସେଥିରୁ କ'ଣ ପାଇବା । ଆମେ ଏତିକି ଜାଣିଛୁ ଯେ ଭାବ ବିନୋଦିଆ ଗୌରକିଶୋର ନଦିଆ ନାଗରୀଙ୍କ ଚିତ୍ତବିତ୍ତ, ମନପ୍ରାଣ, ସବୁ ହରି ନେଇ—ରୂପ, ରସ ଭାବରେ ଆମକୁ ବାୟାଣୀ କରି ଦେଇଛି । ବାସ୍, କଥା ତ ସରିଲା— ।

ପ୍ରଥମା—ବିଷ୍ଣୁପ୍ରିୟାଟି ଏକା ବଡ଼ ଭାଗ୍ୟବତୀ । ବିଧାତା କେତେ ସୂତରେ ଦୁଇଜଣଙ୍କୁ ଖଞ୍ଜେଇଛି କୁହନ ।

ଦ୍ୱିତୀୟା—କାହିଁକି, ଏକା ସେ କାହିଁକି ଭାଗ୍ୟବତୀ, ଆଉ କେହି ନୁହନ୍ତି ? ଗୌର କଣ ଏକା ତାହାର ସ୍ୱାମୀ । ମୋହର କଥା ତ ମୁଁ କହୁଛି, ମୋ ସ୍ୱାମୀଙ୍କୁ ଦେଖିଲେ ତାଙ୍କ ଭିତରେ ମୁଁ ଗୋରା ରୂପ ଦେଖେଁ, ଆଉ ଗୌର ରୂପ ଦେଖିଲେ ତାଙ୍କ ଭିତରେ ଆପଣା ସ୍ୱାମୀଙ୍କୁ ଦେଖେଁ ।

ତୃତୀୟା—ସତ କଥା । ତାଙ୍କର କ'ଣ ଆପଣା ପର ଅଛି । ସମସ୍ତେ ତ ତାଙ୍କ ଆଖିରେ ସମାନ । ନଦିଆବାସୀଙ୍କର କି ଭାଗ୍ୟ, କି ତପସ୍ୟା, କି ସ୍ପୃହା !

ଚତୁର୍ଥୀ—ଏ ସୁଖ ଏକା ବିଧାତା ସହି ପାରିଲେ ହୁଏ । ଗୌର ଯେ ବିଜୁଳିକା ଲଡ଼ୁ । ଏହାପାଇଁ ସମସ୍ତେ ଦିନେ ପସ୍ତେଇବେ । ଯେ ଖାଇଛି ସେ ତ ପସ୍ତେଇବ, ଯେ ନ ଖାଇଛି ସିଏ ବି ପସ୍ତେଇବ । ସେଥିପାଇଁ କହୁଛି ଅତି ମତୁଆଲି ନ ହୋଇ ଆଗରୁ ସାବଧାନ !

ପ୍ରଥମା—ଓଃ, ଏଠି ଗଳ୍ପ କରି କରି ବେଳ ଡେରି ଉଚ୍ଛୁର କଲିଣି । ତେଣେ ଘରେ କହିବେ କି ସବୁଗୁଡ଼ାକ ମେଳ ବାନ୍ଧି ଗଙ୍ଗା ଘାଟରେ ଉଚ୍ଛୁର ହଉଛନ୍ତି । ଚାଲ ଗୋ ଚାଲ— ।

ଦ୍ୱିତୀୟା—ହଁ ଚାଲ—( ସ୍ଥିର ହୋଇ ରହିଲେ )

ପ୍ରଥମା—( ହଳଇବେଇ ) କଲେ, ଗୌର-ବହ୍ଲା, ଗୋବ୍ର ରୂପ ସୁମର ସୁମର ସବୁ ପାଶୋର ଦେଲୁ ନା କ'ଣ ? ଏ ସ୍ଥାନରୁ ମନ ଛୁଡ଼ନାହିଁ ଟେ ! ହଉ, ଏଇ ଧ୍ୟାନରେ ରହ୍ୱଥା— ତୋତେ ବର ମିଳବ ।

ତୃତୀୟା—ସଖି, ସଖି, ଚପ ନ କରୁଣୁ ତ ବର ମିଳ ସାରଲଣି । ଦେଖିଲଣି, ଗୌରାଙ୍ଗ ସୁନ୍ଦର ଗଜଗମନରେ ଏହ୍ୱ ଆଡ଼େ ଆସୁଛନ୍ତ ।

ପ୍ରଥମା—ମୁଁ କହୁଥିଲ ପରା ! ଧନ୍ୟ କଳିଯୁଗ । ଧନ୍ୟ ଗୌର ଅବତାର । ଅନ୍ୟ ଯୁଗରେ ଖୋଜ ଖୋଜ ଯାହା ମିଳୁ ନ ଥିଲ, ସେହ୍ୱ ଅମୂଲ୍ୟନିଧି ଆପେ ଆପେ ପଦ୍ମପତ ହେବ । ଦେଖିଲଟିକି ।

ଚତୁର୍ଥୀ—ଦେଖିଲଣି ସଖି, ସୁବର୍ଣ୍ଣ ଥାଳ ପରି ସେହ୍ୱ ଗଉର ନାଗର କପରି ଝୁଲି ଝୁଲି ଆସୁଛନ୍ତ । ଛଳ୍ଛଳ୍ ଆଖି ଦିଓଟି ତାଙ୍କର କେଡ଼େ ସୁନ୍ଦର ପଦ୍ମଫୁଲ ପରି ଦିଶୁଛ୍ଛି ।

ପ୍ରଥମା—ସତେ ଗୋ, ଆସ ଏବେ ଉହାଡ଼ରେ ରହ୍ୱ ସେ ରୂପସୁଧା ପାନ କରିବା ।

ଦ୍ୱିତୀୟା—ଆଚ୍ଛା ସଖି, ଗୋଟିଏ କଥା କହନ୍ତ—କିଛି ମନରେ ନ କହ୍ୱବୁ ତ କହ୍ୱବ ।

ପ୍ରଥମା—ଏତେ ଛଟକ ହଉଛୁ କାହିଁକି ; କହୁ ନାହୁଁ !

ଦ୍ୱିତୀୟା—ପିଲିବନରୁ ତ ଆମେ ଦେଖି ଆସୁଛୁଁ, ଯାଙ୍କର କ ଉଦୁଣ୍ଡିଆ ସ୍ୱଭାବ, କ ଝାହୁଲ ଝାପରା । ଗଙ୍ଗା କୂଳରେ ତ ମଣିଷକୁ ରଖି ଥୋଇ ଦିଅନ୍ତ ନାହିଁ—ଏବେ କମିତ ଏ ଭଲଆ ହୋଇଗଲେ ?

ପ୍ରଥମା—ସତ ଏକା ସଖି, ଏବେ ଯାଙ୍କୁ ଦେଖିଲେ କିଏ କହ୍ୱବ ଏ ସେହ୍ୱ ବଗୁଲିଆ ଶଚୀଦୁଲଳିଆ ବୋଲ । ଭାବ-ବିନୋଦିଆଙ୍କର ଘଡ଼ଘଡ଼ି ନୂଆ ନୂଆ ଭାବ । ସେ ଭାବରେ ଯେ ପଶିବ ସେ ଜାଣିବ—ମୁଁ କମିତ କହ୍ୱବ ଲୋ ମା !

( ସକଳେ ପ୍ରସ୍ଥାନ କଲେ )

( ଏକାକୀ ଗୌରାଙ୍ଗ ପ୍ରବିଷ୍ଟ ହେଲେ )

ଗୌର—(ସ୍ୱଗତ) ମାଗୋ ସୁରଧୁନ, ପତିତ ପାବନ ମା—ତୋହର ଅଧମ ସନ୍ତାନର ଜଞ୍ଜାଳ ତୁ କେତେ ନ ସହୁଛୁ; ଗର୍ଭଧାରିଣୀ ଜନନୀ ପରି କରତେ ଶତ ଶତ ପାଦ ପ୍ରହାର ସହ୍ୟ କରି ସୁଦ୍ଧା ଜନକ ଲଗି ତୋର ସ୍ନେହମୟୀ କରୁଣା-କ୍ଷୀର ପାନରୁ ତ ବଞ୍ଚିତ କର ନାହୁଁ ! ଶ୍ରୀକୃଷ୍ଣ ଚରଣରୁ ଉଦ୍ଭୂତା ହୋଇ କେତେ ଦେଶ ବୁଲି ବୁଲି ଯୁଗଯୁଗାନ୍ତ କାଳ କେତେ ପାପୀର ପାପ କେତେ ତାପୀର ତାପ ଧୌତ କରି ଜଗତରେ ଅଖଣ୍ଡ ଶାନ୍ତ-ପୀଯୂଷ ଧାରା ବିତରଣ କରି ଆସିଛୁ । ଆଜ ଏହ୍ୱ ଅହଙ୍କାରୀ ନିମାଇଁ ପଣ୍ଡିତର ସମସ୍ତ ପଣ୍ଡିତାଭିମାନ ତୋହରି ସ୍ରୋତରେ ଭସାଇ ଦେବାକୁ ଆସିଛୁ । ତୋହରି ତୀରରେ ବସି ସେ ଦିନ ଦିଗ୍ବିଜୟୀ ପଣ୍ଡିତର ଗର୍ବ ଚୂର୍ଣ୍ଣ କରି ଥିଲି—ହାୟ, ହାୟ, କ ଦୁର୍ବୁଦ୍ଧି ମୋତେ ଆଚ୍ଛନ୍ନ କରିଥିଲ ମା । ସେ ବିଦ୍ୟା, ସେ ପାଣ୍ଡିତ୍ୟ ସବୁ ଦୂର କରି ଦେ' ମା । କେବଳ ମୋର ଏତିକ ମାଗୁଣି, ସେହ୍ୱ ଶ୍ରୀକୃଷ୍ଣ ଚରଣ-କମଳ ପ୍ରତି ଚିତ୍ତଭୃଙ୍ଗ ଧାବିତ ହେଉ । ତାହା ନୋହ୍ୱଲେ ଏ ପାପ ତନୁ ତୋହରି ଗର୍ଭରେ ବିସର୍ଜନ ଦେବ ।

( ଗୋବିନ୍ଦ ପ୍ରବିଷ୍ଟ ହେଲେ )

ଗୋବିନ୍ଦ—ପ୍ରଭୁ, ପ୍ରଭୁ, ମୁଁ ଏତେଥର କହ୍ୱଲ କ ଏକୁଟିଆ କୁଆଡ଼େ ଯିବେ ନାହିଁ ବୋଲ । ବିଶେଷତଃ ଗଙ୍ଗାତୀରକୁ । ତାହା ତ ଶୁଣିଲେ ନାହିଁ । ବାରମ୍ବାର ଏପରି କଲେ ମୁଁ ତ ଆଉ ପାରିବ ନାହିଁ ।

ଗୌର—କିଏ ଗୋବିନ୍ଦ ! ଓହୋ, ମୋର ଅପରାଧ ହୋଇଛ୍ଛି । ମୁଁ ତୋତେ ନ କହ୍ୱ ଏକୁଟିଆ ଚାଲ ଆସିଛୁ । କ'ଣ କରିବ କହ, ସବୁବେଳେ ମନେ କରେ, କନ୍ତୁ ମନରେ ପଡ଼େ ନାହିଁ । ଜାଣିଛୁ ତ ଗୋବିନ୍ଦ, ମୋର ମସ୍ତିଷ୍କ ଏବେ ବିକୃତ ହୋଇଛ୍ଛି । ଗୋଟିଏ କଥା ଭାବୁଁ ଭାବୁଁ ଅନ୍ୟ ଗୋଟିଏ କାର୍ଯ୍ୟ କରି ବସୁଛୁ; କେତେବେଳେ ହୋସ୍ ରହୁନାହିଁ । ଲୋକେ କହୁଛନ୍ତ ମୁଁ ପାଗଳ ।

ଗୋବିନ୍ଦ—ହଁ ସେଥିପାଇଁ ତ ବେଶି ସାବଧାନ ହେବାକୁ ପଡ଼ୁଛି । ଏଣିକ ଆଉ କେତେବେଳେ ହେଲେ ଏକାକୀ କୁଆଡ଼େ ଯିବେ ନାହିଁ ।

ଗୌର—ହଉ ଗୋବିନ୍ଦ, ମୁଁ ଖୁବ୍ ସାବଧାନ ରହ୍ୱବ । କନ୍ତୁ—ଆଚ୍ଛା ଗୋବିନ୍ଦ, ତୁ ସେହ୍ୱ ଗୀତଟି ଥରେ ଗାଇଲୁ ।

ଗୋବିନ୍ଦ—କଉଁ ଗୀତ ପ୍ରଭୋ ?

ଗୌର—ସେହ୍ୱ ଯେ "ଆଉ କ ଗୋ ବାଜବ ନାହିଁ ।"

ଗୋବିନ୍ଦ—ହଉ ଗାଉଛି —

( ଗୀତ )

ଆଉ କ ଗୋ ବାଜବ ନାହିଁ ବନେ ବାଂଶରୀ
ଆଉ କ ଗୋ ଆସିବେ ନାହିଁ ରାଈ କିଶୋରୀ ।
ଆଉ କ ସେ ବ୍ରଜ ତରୁଣୀ ବେଣୁ ନାଦ ଶ୍ରବଣେ ଶୁଣି
ଲୁଚି ଲୁଚି ଆସିବେ ପୁଣି କୁଳ ପାଶୋରି ॥

ମଧୁର ସେ ମୁରଲୀ ରବ ସତେ କି ଗୋ ନୀରବ ହେବ
ଆଜିଠାରୁ ସବୁ ସରାଗ ଯିବ କି ସରି ॥
ବେଣୁ ତାନେ ମିଶାଇ ତାନ ପିକ କି ଗୋ ଗାଇବ ଗାନ
ଉଜାଣି କି ବହିବ ନାହିଁ ଯମୁନା ବାରି ॥

ଗୌର—ଏହି ତ ଯମୁନା ତଟ; ଏହି ତ ସେ ବଂଶୀ ବଟ—କିନ୍ତୁ ସେ ନିପଟ କପଟ ଶ୍ୟାମ ନଟ କାହାନ୍ତି ସଖି ? ତାଙ୍କ ବିରହରେ ଶୁକ ସାରିକା କଦମ୍ବ ଶାଖାରେ ନୀରବ ହୋଇ ବସି ରହିଛନ୍ତି । ଧେନୁ ବତ୍ସା ବିକଳ ଦୃଷ୍ଟିରେ ସ୍ଥିର ହୋଇ ଛିଡ଼ା ହୋଇଛନ୍ତି । କାଳିନ୍ଦୀ ସଲିଳ ମଳିନ ଭାବ ଧାରଣ କରିଅଛି । ହାୟ, ହାୟ, ଏକାକିନୀ ମୋତେ କାହିଁ ଛାଡ଼ିଗଲ ପ୍ରାଣ ବଲ୍ଲଭ । ଯମୁନେ ଗୋ, ତୁ କ'ଣ ମୋହରି ପରି ବିରହିଣୀ, କୃଷ୍ଣ କାଙ୍ଗାଳିନୀ, ପାଗଳିନୀ ? ସେଥିପାଇଁ ସେ ଶ୍ୟାମଚନ୍ଦ୍ରଙ୍କୁ ଖୋଜି ଖୋଜି ମୁକ୍ତ କେଶ ମୁକ୍ତ ବେଶରେ ଅଶ୍ରାନ୍ତ ଉନ୍ମତ୍ତ ହୋଇ ଧାଇଁ ଯାଉଛୁ ! ରହ, ରହ ସଖି, ମୁଁ ମଧ ତୋହରି ସଙ୍ଗରେ ଯିବି—ଦୁଇ ସଖି, ମିଳି କାନନ ପ୍ରାନ୍ତରେ, ନଗରେ ନଗରେ ପ୍ରାଣ-ନାଥଙ୍କୁ ଖୋଜିବା — ।

ଗୋବିନ୍ଦ—ଧୈର୍ଯ୍ୟ ଧରନ୍ତୁ, ଚିତ୍ତ ସ୍ଥିର କରନ୍ତୁ; ଆପଣ ବିବେକୀ, ପଣ୍ଡିତ ହୋଇ କାହିଁକି ଏପରି ଜ୍ଞାନ ଶୂନ୍ୟ ହେଉଛନ୍ତି । ଏ ଅବସ୍ଥା ଦେଖିଲେ ମାତା ଠାକୁରାଣୀ କେତେ ବେଦନା ପାଇବେ କହନ୍ତୁ ପ୍ରଭୁ !

ଗୌର—ଶୁଣ, ଶୁଣ ସଖି—କୁଞ୍ଜ ଗହନରେ କୃଷ୍ଣ ବିନୋଦିଆଙ୍କର ଅପୂର୍ବ ମୁରଲୀ ଧ୍ୱନି ଶୁଭୁଛି । ସେହି ତାନରେ ଶୁଷ୍କ ତରୁ ମୁଞ୍ଜରି ଉଠିଲେଣି—ମଧୁପକୁଳ ଗୁଞ୍ଜରି ଗୁଞ୍ଜରି ନବ ବିକଶିତ କୁସୁମ ପ୍ରତି ଧାବମାନ ହେଲେଣି । କେକୀ ଗଣ ସୁମଧୁର ନୃତ୍ୟ କରୁଁ କରୁଁ ପିକ ବଧୂର ପଞ୍ଚମ ରାଗିଣୀରେ ତାଳ ଧ୍ୱନି ଦେଲେଣି । ଦେଖ ଦେଖ ସଜନୀ, କମଳ ମାଳିନୀ ଯମୁନାର ଖର ସ୍ରୋତ ଉଜାଣି ବହିବାକୁ ଆରମ୍ଭ କଲଣି – ( ବିହ୍ୱଳ ଭାବରେ ରହିଲେ ) ଧର ଧର ସଖି, ମୋର ଏ କଣ ହେଲା—ଅଙ୍ଗ ପ୍ରତ୍ୟଙ୍ଗ ଶିଥିଳ ହୋଇ-ଗଲା କି ପାଇଁ, ଚରଣ ଦ୍ୱୟ ଅବଶ ହେଲା କାହିଁକି—ସେ ରୂପ ଦେଖିବି ବୋଲି ଯେତେ ଆବେଗ ହେଉଛି ଆଖିପତା ତେତିକି ତେତିକି ମାଡ଼ି ପଡ଼ୁଛି । କଣ କରିବି, ସେ କାଳିଆ କିଶୋରଙ୍କୁ କଣ ଦେଖିବି ନାହିଁ ? ହାୟ, ମୋ ଶ୍ରୀକୃଷ୍ଣ କାହିଁ ଅଦୃଶ୍ୟ ହେଲେ ସଖି ! ମୋତେ ଛଳିବା ପାଇଁ ସେ କ'ଣ କାଳିନ୍ଦୀ ଗର୍ଭକୁ ଡେଇଁ ପଡ଼ିଲେ କି ? ସେଥିପାଇଁ ଶ୍ୟାମ ଅଙ୍ଗ ପରଶ ଲାଗି ଯମୁନା ଶ୍ୟାମ କାନ୍ତି ଧାରଣ କରିଛି । ତୁ ଭାଗ୍ୟବତୀ ଯମୁନେ—ଶ୍ୟାମ ଅଙ୍ଗ ସଙ୍ଗ ପାଇଁ ଧନ୍ୟ ହେଲୁ—ଏ ଅଭାଗିନୀ ଭାଗ୍ୟରେ ତାହା ତ ଘଟିଲା ନାହିଁ—ଛାଡ଼—ଛାଡ଼ ଲଳିତେ, ମୁଁ ଯମୁନା ସ୍ରୋତରେ ଝାମ୍ପ ଦେବି; ସେହିଠାରେ ଶ୍ୟାମ ଦର୍ଶନ ପାଇବି ନୋହିଲେ ଶ୍ୟାମ ପରଶପୂତ ଯମୁନାର ନୀଳ ସଲିଳରେ ଅଙ୍ଗ ମିଶାଇବି । ( ଡେଇଁବାକୁ ଉଦ୍ୟତ )

ଗୋବିନ୍ଦ—(ସ୍ୱଗତ) ଅନୁକୂଳ ବାଆ ଦ୍ୱାରା ଏ ସ୍ଥାନରୁ ଅନ୍ତର କରି ନ ଦେଲେ ପ୍ରଭୁଙ୍କର ଭାବ ଭାଙ୍ଗିବ ନାହିଁ ଦେଖୁଛି । ( ପ୍ରକାଶ୍ୟେ ) ଏହି ଆଡ଼େ ଶ୍ୟାମ ସୁନ୍ଦରଙ୍କୁ ଭେଟିବାକୁ ଯିବା—ସେ ମୁରଲୀ ବଜାଇ ତୁମ୍ଭର ପାଇଁ ଅପେକ୍ଷା କରୁଛନ୍ତି ।

ଗୌର— (ଗୀତ)

ପ୍ରିୟ ସହି, ଦେବୁଟିକି ମୋତେ କହି ଗୋ,
ରାଇ ରାଇ ରାଇ, ମୁରଲୀରେ ବାଇ କାହିଁ ସେ ଅଛନ୍ତି ରହି ଗୋ ।
ବାଙ୍କ ବାଙ୍କ ଆଖି, ବାଙ୍କ ଶିଖୀ ପକ୍ଷୀ, ତିନି ବାଙ୍କୁଣିଆ ଛାଇ ଗୋ,
ନୟନ ପଥରେ, ପଶିବା ମାତରେ, ଅନ୍ତର ହେଉଛି ଦହି ଗୋ ।

ଗୋବିନ୍ଦ— ଶୁଭୁଛି ମୁରଲୀ ନାଦ ଏହି ବନେ ଗୋ,
ରାଧା ରାଧା ଡାକେ ବେଣୁ ଅନୁକ୍ଷଣେ ।
ତୋ ନାମେ ବଜାଇ ବଂଶୀ
କିଶୋର କାଳିଆ ଶଶୀ
ଜଗି ରହି ଥିବେ ବସି ଉଚ୍ଚାଟନେ ଗୋ ।

ତୋହର ନାମ ଗାଇ ଗାଇ
ବ୍ୟାକୁଳେ ବାଂଶରୀ ବାଇ
ରହିଥିବେ ପଥ ଚାହିଁ ଛନ ଛନେ ଗୋ ।

ଆସ ଗୋ ଆସ ସଖି ହୋଇଣ ତରତର
ଦେଖିବୁ ପରା ସେହି କାଳିଆ ଶଶଧର
କପରି ହେଉଥିବେ, ବିରହେ ଜରଜର, ଚନ୍ଦ୍ରାନନେ ଗୋ ।

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

(କାଜି ଭବନ, କାଜି ଉପବିଷ୍ଟ, ଇସୁଫ୍ ଖାଁ ସୁରା ପାତ୍ର ନେଇ ଦଣ୍ଡାୟମାନ)

କାଜି—ମିଆଁ ସାହେବ, ଆଜି ଥାଉ, ତବିୟତ—କସୁର୍ ମାଲୁମ ହେଉଛି ।

ଇସୁଫ୍—ମୁନିବ ହୁସିଆର ଆଦ୍‌ମି । ମୁନିବ୍ ଦୁନିଆର ମାଲିକ । ଏହି ଗୋଲାପୀ ସରବତ ଥୋଡ଼ା ପିଇ ଦେଲେ ମିଜାଜ ସଫା ହୋଇ ଯିବ ।

କାଜି—ସରବତ୍ ନା ଦାରୁ ? ଜାଣିଛୁ ଇସୁଫ୍ ବନ୍ଦା ନବିଆର କାଜି । ପବିତ୍ର ଇସଲାମ ଧର୍ମର ପ୍ରହରୀ । ଜାଣି ଶୁଣି କିପରି କୋରାନ୍ ବହିର୍ଗତ ପଦାର୍ଥ ଛୁଇଁବ । ହାରାମ୍ ହାରାମ୍ ।

ଇସୁଫ୍—ବହୁତ ଠିକ୍ ହଜୁର, ତେବେ କ'ଣ କି ମିଜାଜ୍ ସଫା୍ କରିବାକୁ ଏପରି ଦବାଇ ଆଉ ଦୋସରା ନାହିଁ ? ହୁକୁମ ହୁଏ ତ ବାଈଜୀଙ୍କୁ ଡକାଇ କିଛି ଗାଓନା—

କାଜି—ଆଚ୍ଛା, ଆଚ୍ଛା ଯାଓ ଜଲ୍‌ଦି ।

ଇସୁଫ୍—ଯୋ ହୁକୁମ୍ ଖୋଦାବନ୍ଦ । (ପ୍ରସ୍ଥାନ)

( ତର୍କରତ୍ନ ଓ ବିଦ୍ୟାବାଗୀଶ ପ୍ରବିଷ୍ଟ ହେଲେ )

କାଜି—ସଲାମ, ସଲାମ, ପଣ୍ଡିତ ଜୀ । କୁଆଡ଼େ କି ?

ତର୍କରତ୍ନ—ରାଜ ଦର୍ଶନର ପୁଣ୍ୟ ଅର୍ଜନ କରିବାକୁ ଆସିଲୁଁ ।

କାଜି—ଖବର କ'ଣ ପଣ୍ଡିତ ଜୀ, ସବୁ ଆଚ୍ଛା ?

ତର୍କରତ୍ନ—ହଜୁରଙ୍କ ଶାସନରେ ସବୁ ଆଚ୍ଛା ନୁହେ ତ କ'ଣ, ତେବେ ଆପଣଙ୍କ ଅଗୋଚରରେ ଗୋଟିଏ ବଡ଼ ଅନୀତି ହେଉଛି ।

ବିଦ୍ୟାବାଗୀଶ—ରାଜା ଯେ କେବଳ ଶାସନ କରେ ତାହା ନୁହେ । ଧର୍ମରକ୍ଷା ତ ରାଜାର କର୍ତ୍ତବ୍ୟ । ପ୍ରଜା ଧର୍ମଦ୍ରୋହୀ ହେଲେ ସେଥିପାଇଁ ରାଜା ଯେ ଦାୟୀ ।

ତର୍କରତ୍ନ—ହଜୁର ! ସନାତନ ହିନ୍ଦୁ ଧର୍ମ ଲୋପ ହେବାକୁ ବସିଲା । ବୈଦିକ ଧର୍ମ ଉଠି ଯିବାକୁ ବସିଲା । ଶାସ୍ତ୍ରୋକ୍ତ ଆମ୍ଭର ନିୟମ ସବୁ ଧ୍ୱଂସ ହେଲାଣି ଆସି ।

କାଜି—ବହୁତ ଆଚ୍ଛା, ବହୁତ ଆଚ୍ଛା, ଆଲ୍ଲାଙ୍କ ମେହେର୍‌ବାନି । ପଣ୍ଡିତ ଜୀ ଆଲ୍ଲାଙ୍କ ମେହେର୍‌ବାନି । ପୟଗମ୍ବରଙ୍କ ପ୍ରଚାରିତ ପବିତ୍ର ସତ୍ୟ ଧର୍ମ ସମସ୍ତେ ଗ୍ରହଣ କରିବେ । ଦୁନିଆର ମଙ୍ଗଳ ହେବ । (ଇସୁଫ୍ ପ୍ରବିଷ୍ଟ ହେଲା)

ଇସୁଫ୍—ଆସନ୍ତୁ ପଣ୍ଡିତ ଜୀ । ତମକୁ ଆମର ମୌଲବୀ ସାହେବ କରାଇ ଦେବା ।

ତର୍କରତ୍ନ—ହରି ହରି; ରାମ ରାମ ।

ଇସୁଫ୍—ତୋବା, ତୋବା, ଆଲ୍ଲା ହୋ ବିସମିଲ୍ଲା କହନ୍ତୁ, ଲଣ୍ଡା ତ ହୋଇଛନ୍ତି । ଆଉ ହରକତ କ'ଣ ? ଦିନାକେତେ କ୍ଷୁର ନ ଲଗାଇଲେ ମୁହଁ ଦାଢ଼ି ହୋଇଯିବ । ତେଣିକି କଚ୍ଛ ଫିଟାଇ ଥରେ କଲମା ପଢ଼ି ଦେଲେ, ବାସ୍ ।

କାଜି—ସବୁର ସବୁର, ବୁଢ଼ା ପଣ୍ଡିତଙ୍କ ସାଙ୍ଗରେ ଏପରି ବେଆଦବି ଉଚିତ ନୁହେ । କହନ୍ତୁ ପଣ୍ଡିତ ଜୀ, ଆପଣଙ୍କ କଥାଟା ଖୋଲସା କରି କହନ୍ତୁ ।

ବିଦ୍ୟାବାଗୀଶ—ହଜୁର ଜାଣନ୍ତି, ନବ ଦ୍ୱୀପରେ ଜଗନ୍ନାଥ ମିଶ୍ର ଥିଲେ ।

କାଜି—ହିନ୍ଦୁ ଲୋକଙ୍କ ଦେଓତା ?

ବିଦ୍ୟା—ଆଜ୍ଞା, ପଣ୍ଡିତ ଜଗନ୍ନାଥ ମିଶ୍ର ।

କାଜି—ଓଃ ହୋ—ଖୁବ ଜାଣେ । ସେ ତ ବହୁତ ଦିନରୁ ମରି ଗଲେଣି ।

ବିଦ୍ୟା—ହଁ ତାଙ୍କର ପୁଅ ବିଶ୍ୱମ୍ଭର ।

କାଜି—କିଏ ନିମାଇଁ ପଣ୍ଡିତ ?

ବିଦ୍ୟା—ଆଜ୍ଞା, ସେହି ନିମାଇଁ ପଣ୍ଡିତ ବର୍ତ୍ତମାନ ଟୋଲ ବନ୍ଦ କରି ଦେଇ ବଡ଼ ଅତ୍ୟାଗୃର ଆରମ୍ଭ କଲେଣି ।

କାଜି—କିପରି ଅତ୍ୟାଗୃର ?

ଇସୁଫ୍—ବୁଝିଲେ ନାହିଁ ହଜୁର୍, ଖୁବ୍ ସୁରତ୍ ଚେହେରା, ତହିଁକି ଯବାନ ଅଛି—ଯାହା ହବାର ତାହା ହୋଇଥିବ । ଏ ବଖତ୍‌ରେ ସେପରି ଟିକିଏ ଟିକିଏ କରିବା ତ ମରଦ୍ ବଚ୍ଚାର ମରଦାନି ।

ବିଦ୍ୟା—ଆଜ୍ଞା ନା, ସେପରି ଅତ୍ୟାଗୃର ନୁହେ ।

କାଜି—ଆଉ କଣ, ମଦ ଖାଉଛି ?

ବିଦ୍ୟା—ନା, ତାହା ମଧ୍ୟ ନୁହେ—

କାଜି—ତେବେ ଚୋରି ?

ବିଦ୍ୟା—ସେ କଥା ମୁଁ କହୁ ନାହିଁ ।

କାଜି—ଆଉ ତେବେ ଅତ୍ୟାଗୃର କ'ଣ । ଝୁଟ୍ ଝୁଟ୍, ଦୁଷ୍‌ମନି ।

ଇସୁଫ୍—ବରାବର ବରାବର ।

ତର୍କରତ୍ନ—ଆମ ଗୁହାରି ସମୁଦାୟ ଶୁଣିବାକୁ ଆଜ୍ଞା ହେଉ । ତାହା ପରେ ଯେ ବିଗୃର କରିବେ ।

କାଜି—ଆଚ୍ଛା ଆଚ୍ଛା କହି ଯାଅ ।

ତର୍କରତ୍ନ—କେତେ ଗୁଡ଼ାଏ ଶଠ ଚୈତନ୍ୟଧାରୀ ଭଣ୍ଡଙ୍କୁ ନେଇ ନିମାଇଁ ପଣ୍ଡିତ ଶାସ୍ତ୍ରୋକ୍ତ ଧର୍ମକର୍ମ ଛାଡ଼, ବ୍ରାହ୍ମଣର ଆଚାର ପଦ୍ଧତି ଛାଡ଼ ନାନା କୁକାର୍ଯ୍ୟରେ ରତ ହୋଇଛନ୍ତି ଓ ହିନକୁହିନ ଲୋକମାନଙ୍କୁ ନାନାପ୍ରକାର କୁଶିକ୍ଷା ଦେଉଛନ୍ତି ।

ବିଦ୍ୟାବାଗୀଶ—ଆଜ୍ଞା, ରାତି ସାରା ଖୋଳକରତାଳ ନେଇ ନାଚ ତାମସା କରୁଛନ୍ତି । ଆଉ ଗୋଟାଏ ଘର ମଧ୍ୟରେ କବାଟ କିଳି କି ବ୍ୟଭିଚାର କରୁଛନ୍ତି ତାହା ସେ ଜାଣନ୍ତି । ଅନ୍ୟ ଲୋକଙ୍କ ପ୍ରବେଶ ନିଷେଧ ।

ତର୍କରତ୍ନ—ସେମାନଙ୍କର କାର୍ଯ୍ୟକଳାପ ପ୍ରଚରିତ ହେଲେ ସମାଜରେ କିମ୍ବା ରାଜଦ୍ୱାରେ ଘୋର ଅନର୍ଥ ଘଟିବ । ଏହି ଭୟରେ ସେମାନେ ଖୁବ୍ ସାବଧାନ ହୋଇ ଚଳୁଛନ୍ତି । କିନ୍ତୁ ବେଶ୍ ଜଣା ପଡ଼ୁଛି ସେଇଟା କୌଣସି ଅମଙ୍ଗଳର ଗୁପ୍ତ ଅନୁଷ୍ଠାନ ।

ବିଦ୍ୟାବାଗୀଶ—ଯେଉଁ ରଡ଼ ଚହଳ, ସେଥିରେ କାହାର ସାଧ୍ୟ ସ୍ୱଚ୍ଛନ୍ଦରେ ନିଦ୍ରା ଯିବ ! ମାଦକ ଦ୍ରବ୍ୟର ଉତ୍ତେଜନା ନ ହେଲେ ଏହା କି ସମ୍ଭବ ?

କାଜି—ଦେଖ ପଣ୍ଡିତ ଜୀ, ନୀଳାମ୍ବରଙ୍କ ନାତି ନିମାଇଁ ପଣ୍ଡିତ ଗ୍ରାମ ସମ୍ପର୍କରେ ମୋର ଭଣଜା । ସେ ପିଲାଲୋକ, ଟିକିଏ ପାଗଳାମି କରୁଛି । ମୁରବି ଭାବରେ ମୁଁ ତାକୁ ଜବଦ କରିଦେବି । ତୁମ୍ଭେମାନେ ଯାଅ ।

ତର୍କରତ୍ନ ଓ ବିଦ୍ୟାବାଗୀଶ—ରାଜ ପ୍ରତିନିଧିଙ୍କର ଜୟ ହେଉ ।

( ଉଭୟେ ପ୍ରସ୍ଥାନ କଲେ )

କାଜି—ଇସୁଫ୍, ଦୁଇଜଣ ବରକନ୍ଦାଜ ସାଙ୍ଗରେ ନେଇ ତୁମେ ନିଜେ ଯାଅ । ନିମାଇଁ ପଣ୍ଡିତଙ୍କୁ ତାକିଦ୍ କରିଦେବ କି ସେମାନେ ରାତିରେ ଆଉ ଏପରି ହଲ୍ଲା କରିବେ ନାହିଁ । ଖବର୍ଦାର୍ ।

ଇସୁଫ୍—ହଜୁର, ଯଦି ଆମ କଥା ନ ମାନନ୍ତି ?

କାଜି—କହିଦେବ କାଜି ସାହେବଙ୍କ ହୁକୁମ ; ହୁକୁମ ଅମାନ୍ୟ କଲେ ବିଧିମତେ ଦଣ୍ଡ ପାଇବେ ।

ଇସୁଫ୍—ଯୋ ହୁକୁମ ଖୋଦାବନ୍ଦ୍ । ଏହିକ୍ଷଣି ବାଇଜୀ ହାଜର ଅଛନ୍ତି । ଫରମାଏସ୍ ହେଲେ—

କାଜି—ବହୁତ ଅଚ୍ଛା, ବହୁତ ଆଚ୍ଛା । ଜଲ୍ଦି ଲେ ଆଓ ।

ଇସୁଫ୍—ଆରେ କୋଇ ହ୍ୟାୟ—ବାଇଜୀ କୋ ବୋଲାଓ ।

( ବାଇଜୀ ପ୍ରବେଶ ହୋଇ ଅଭିବାଦନ କଲେ )

ଇସୁଫ୍—ଖୁବ୍ ବଢ଼ିଆ ଦେଖି କେ—ଚଲାଇଏ—

( ବାଇଜୀ ନୃତ୍ୟ ଓ ଗୀତ ଆରମ୍ଭ କଲେ ଓ ଇସୁଫ୍ ନାନା ପ୍ରକାର ଅଙ୍ଗଭଙ୍ଗୀ ପ୍ରଭୃତି କରିବାକୁ ଲାଗିଲେ )

(ଗୀତ)

ଉଡ଼ି ବୁଲ୍ ଥାଉ ଫୁଲେ ଫୁଲେ କିରେ ମଧୁକର,
କେ ଅଛି ରସିକ ତୋହି ତୁଲେ କିରେ ମଧୁକର ।

## ଦ୍ୱିତୀୟ ଦୃଶ୍ୟ

(ରାଜପଥ । ସୁରାପାତ୍ର ହସ୍ତେ ଜଗାଇ ମତୁଆଲ ଅବସ୍ଥାରେ ପ୍ରବେଶ ହେଲେ)

ଜଗାଇ—(ପାତ୍ର ମୁଖରେ ଲଗାଇ) ଯା—ଥୁ-ଥୁ-ଟୋପାଏ ବି ନାହିଁ—ସବୁ ଶେଷ । ରେ ମାଧା, ଇରେ ମାଧା, ଆରେ ଇଆଡ଼ୁକୁ ଆ'ରେ । ଅସଲ ଘଣ୍ଟା ରଖିଛି ଆପଣା ପାଖରେ—ଘରି ଚଲଖ—କାନରେ ବାନ୍ଧି ବୁଲୁଛି—ଯେମିତି ଯ୍ୟା ବାପ ଗଣ୍ଡୁଗ—ଥୁ—ଥୁ—ଆସୁଛି ନା ଇଆଡ଼କୁ—ଶାଳ ପାଜି—ବଦ୍‌ମାସ୍—ନିଶାଖୋର—ମାତାଲ୍ ।

( ମାଧାଇ ଗୋଟାଏ କଳସୀ ହସ୍ତରେ ନେଇ ଢଳ ଢଳ ପ୍ରବେଶ ହେଲେ )

ମାଧାଇ—କିରେ ଶାଳ ଭାଇ, ଏତେ ବୋବାଳି ହଉଚୁ କାହିଁକି ? ଘଣ୍ଟ ପାକ ପିଇ ପିଇ ତେବେ କ'ଣ ଆଶା ମେଣ୍ଟିନାହିଁ ।

ଜଗାଇ—ଆଃ, ମୋ ସୁନା ଭାଇଟା, ଆ, ମୋ କଣ୍ଡକ (କଳସୀଟି ମାଧାଇ ହାତରୁ ନେଇ ) ବୁଝିଲୁରେ ମାଧିଆ, ତୁ ଏ ଏ, ମଦ ବଡ଼୍‌ଡ଼ ଖରାପ ଚଜ । ମିଜାଜ୍ ବିଗିଡ଼େଇ ଦିଏ, କଲିଜା ଜାଳି ଦିଏ । ଖବରଦାର୍ ଆଉ ଖାଇବୁ ନାହିଁ । (କଳସୀରୁ ଢାଳି ପାନ କଲା) ବୁଝିଲୁ—ନିୟମ କରୁଛି—କଉ ଶଳା ଆଜି ଠଉଁ ଆକୁ ଆଉ ଛୁଇଁଛି । ଏବି ଶେଷ—ଫେର୍ ଯେ ଛୁଇଁବ ତା ଚୌଦ୍ଦ ପୁରୁଷ ମୁହଁରେ ମୁଁ ମୁତେ—ଥୁ, ଥୁ—

ମାଧାଇ—ଖୁବ୍ ହୁସିଆର୍ ! ମୋହରି ବେଳକୁ ସବୁ ନିୟମ ନା ଆପଣା ବେଳକୁ କିଛି ଅଛି ।

( ଜଣେ ଭିଖାରି ପ୍ରବେଶ ହେଲା )

ଭିଖାରି—ବାବା, ଦିନଯାକ ଉପାସ—ଗୋଟିଏ ପଇସା ଦେ ବାବା । ଗରିବର ଜୀବନ ରଖ, ଅନେକ ଧର୍ମ ହେବ ବାବା—

ଜଗାଇ—ଆରେ ଯାଃ ଯାଃ, ଏଠି କ'ଣ ବାପ ଥାତି ରଖିଛୁ ରେ ଶଳା ! ନିକଲ ନିକଲ୍ ।

ଭିଖାରି—ବାବା କିଛି ଗଣ୍ଡାଏ ଦେ ବାବା—ତିନିଦିନ ହେଲା ପେଟରେ ଦାନା ପଣି ନାହିଁ ।

ମାଧାଇ—ଆରେ ଦାନା ପଣି ନାହିଁ ତ ଘାସ ଖାଉ ନାହୁଁ । ଏହି ଘାସ ସବୁ ଖାଇବୁ, ତେବେ ଜାଣିବା ତୋତେ ଭୋକ ଲାଗୁଛି ।

ଜଗାଇ—ବାଃ, ବାଃ ରେ ମାଧିଆ, ଠିକ୍ କହୁଛୁ । ଖୁଆ ଏ ଶଳାକୁ ଘାସ । ନ ଖାଇବ ତ ମାଡ଼ବସି ପୁରା ତା ପାଟିରେ—

ମାଧାଇ—ଆ, ନେ ଖା ଘାସ (ମାଡ଼ବସି ଘାସ ପାଟିରେ ପୁରାଇଲା)

ଭିଖାରୀ—ରକ୍ଷା କର ବାବା, ରକ୍ଷା କର ବାବା, କିଛି ନ ଦେଲୁ ତ ନାହିଁ—ମୋତେ ଛାଡ଼ି ଦେ ଏବେ ।

ଜଗାଇ—ଛାଡ଼ୁଛି କଏ—ପେଟେ ଘାସ ଖୁଆଇ ତେବେ ଛାଡ଼ିବ ।

( ମାରିବାକୁ ଲାଗିଲା )

( ଭିଖାରୀ ପଳାଇ ଗଲା ଓ ଜଗାଇ ମାରି ମାରି ଗୋଡ଼େଇ ଗଲା )

ମାଧାଇ—ଭାଇ, ଭାଇ ଡେରି ହୋଇଛି, ଥାଉ ଥାଉ ଏବେ ଫେରିଆ ।

( ଜଗାଇ ଫେରି ଆସିଲା )

ଜଗାଇ—ଦେଖିଲୁରେ ମାଧିଆ, ଗୋଟାଏ ମଉଜ ହେଇଗଲା । ଏହିପରି ଯଉ ଶଳା ଏ ବାଟରେ ଆସିବ ତାକୁ ଦେଖିଲା କାମ କର୍ । ଶଳାଗୁଡ଼ାକ ମଣିଷକୁ ଟିକିଏ ହେଲେ ଖାତିରି କଲେ ନାହିଁ ।

ମାଧାଇ—ଏହି ପରିଶ୍ରମରେ ମୋ ନିଶାଟା ଛାଡ଼ିଗଲା । ଓଃ ଲକ୍ଷେ ଟଙ୍କାର ନିଶା ଏ ଶଳା ଲାଗି ମୋର ଭଣ୍ଡୁର୍ ହେଲା ।

ଜଗାଇ—କିଛି ପରୱା ନାହିଁ, ନେ, ନେ, ଏଇ ଥରକ ଖାଇଥା । ଖବରଦାର୍ ଆଉ ଖାଇବୁ ନାହିଁ ।

(ମଦ୍ୟପାତ୍ର ଦେଲା ଓ ମାଧାଇ ପାନ କଲା)

ମାଧାଇ—ଆଃ—ସାବାସ୍ ଭାଇ ସାବାସ୍ । ସାତ ଜନ୍ମରେ ତୁ ମୋର କଏ ଥିଲୁ କହିଲୁ ?

ଜଗାଇ—ମୁଁ ତୋ ଭଣେଇ ଥିଲି ଆଉ ତୁ ମୋ ଶଶୁର ଥିଲୁ ।

ମାଧାଇ—ଆରେ ନା, ମୁଁ ତୋର ବାବା ଥିଲି ।

ଜଗାଇ—ଠିକ୍ ଠିକ୍, ନୋହିଲେ ଏ ଜନ୍ମରେ ସାନ ଭାଇ ହୁଅନ୍ତୁ କିମିତି ।

( ଗୋଟିଏ ସ୍ତ୍ରୀ ଲୋକ ପ୍ରବେଶ ହେଲା )

ସ୍ତ୍ରୀ—ବାବା ଗଙ୍ଗାକୂଳକୁ ଯିବା ଏହି ବାଟ ନା ?

ଜଗାଇ—ଇରେ ମାଧିଆ, ମାଧିଆ, ଗୋଟାଏ ବଡ଼ ବଢ଼ିଆ ଶିକାର ମିଳିଲାଣି ଦେଖ୍, ଦେଖ୍ ।

ମାଧାଇ—(ନିକଟକୁ ଯାଇ ନିରୀକ୍ଷଣ କରି) ଇସ୍, ଇଏ କଏ ଗୋବିନ୍ଦମୁହିଁ । ଆସ, ଆସ, ତୁମକୁ ଚାହିଁ ଆଖିରୁ ପାଣି ମଲାଣି । ଏତେ ଉଚ୍ଛୁର କଲ କାହିଁକି ସହି ?

ସ୍ତ୍ରୀ—ବାବା, ମୁଁ ଜଣେ ବିଦେଶିନୀ । ଗଙ୍ଗାସ୍ନାନକୁ ଆସିଛି; ବାଟ କହି ନ ଦେଲୁ ତ ନାହିଁ ପଛେ । ମୋତେ ବାଟ ଛାଡ଼ ଦେ ବାବା । ମୁଁ ତୋର ଝିଅ ବାବା ।

ଜଗାଇ—ସତ କହିଛି, ତାର ଝିଅ ହେଲେ ତ ମୋର ହିସାବରେ ଠିକ୍ ହେଲା, ଛାଡ଼୍‌ରେ ମାଧିଆ ପାଜି, ମୋତେ ସେ ଆପେ ଆପେ ରାଜି । ( ହାତ ଧରିଲା )

ମାଧାଇ—ଚୁପ୍ ରହୋ, ନେମକ୍ ବଦମାସ୍ । ଆରେ ତୋର ଯେ ଏ ଭାଇବାହୁ ହେଲା, ତୁ ଛୁଇଁବୁ କେମିତି ? ଭାଗୋ, ଭାଗୋ । ଏ ହମାରି ହେ—ହାମ କଭି ନହିଁ ଛୋଡ଼ଙ୍ଗେ ।

( ଅନ୍ୟ ହାତ ଧରିଲା )

ସ୍ତ୍ରୀ—ହରି ହେ, ହରି ହେ, ମଧୁସୂଦନ ରକ୍ଷା କର । ମୋର ଆଉ କେହି ସାହା ନାହିଁ, ହେ ଦୀନବନ୍ଧୁ !

(ହାଠାତେକ ନିତ୍ୟାନନ୍ଦ ଓ ହରିଦାସ ବେଗରେ ପ୍ରବେଶ ହେଲେ)

ନିତ୍ୟାନନ୍ଦ—ଭୟ ନାହିଁ ମା, ଭୟ ନାହିଁ ।

( ଏମାନଙ୍କ ହଠାତ୍ ପ୍ରବେଶରେ ଚମକି ଜଗାଇ ମାଧାଇ ସେହି ସ୍ତ୍ରୀ ଲୋକର ହାତ ଛାଡ଼ି ଦେବାରୁ ସେ ଦ୍ରୁତ ବେଗରେ ପଳାଇ ଗଲା )

ଜଗାଇ—ତମେ କଏ ରେ ପାଜି ଟୋକିର ? ଆମର ଅସଲ ମଉଜ ବେଳରେ ଆସି ବିଗିଡ଼େଇବାକୁ ବସିଛ ?

ମାଧାଇ—ଭାଇ, ଭାଇ, ଶିକାର ତ ଖସିଗଲା ଏଣେ ।

ଜଗାଇ—କଣ, କଣ, ଖସିଗଲା ! ଧର, ଧର—ଧର, ଧର—

( ଦୁହେଁଯାକ ଇତସ୍ତତଃ ଦୌଡ଼ିବାକୁ ଲାଗିଲେ )

ନିତାଇ—ଦେଖ ଭାଇ ଅସହାୟା ଅବଳା ପ୍ରତି ଅତ୍ୟାଚାର କରିବା ଉଚିତ କି ? ବିପନ୍ନ ବ୍ୟକ୍ତିକୁ ରକ୍ଷା କରିବା ଧର୍ମ । ଏ ପାପ ମାର୍ଗ ଛାଡ଼ି ଦିଅ ଭାଇ !

ଜଗାଇ—ଆରେ, ଏ ଅସଲ ବଦମାସ୍ । ଏ ମାଇକିନା ସାଙ୍ଗରେ ସଠ୍ କରି ଖସେଇ ଦେଲେ—ଏବେ ଆମକୁ ଧର୍ମ କଥା ଶୁଣେଇବାକୁ ଆସିଛି । ଧର ଏହି ଟୋକିରକୁ—ଆଜ୍ଞୁ ଆଜ ଠିକଣା କରେଇବା ।

ନିତାଇ—ଭାଇରେ ତୁମର କିଛି ମାତ୍ର ଦୋଷ ନାହିଁ । ବହୁ ଦିନରୁ ପାପ କର୍ମ କରି କରି ମସ୍ତିଷ୍କ ବିକୃତ ହୋଇଛି । ଥରେ ମାତ୍ର ହରି ହରି ବୋଲି କହ ଭାଇ । ପବିତ୍ର ହରିନାମ ଥରେ ଉଚ୍ଚାରଣ କଲେ ସବୁ ପାପତାପ ଦୂର ହୋଇ ଯିବ ।

ଜଗାଇ—ଚୋପ୍ ରହୋ, ସବୁ କହିବୁ ପଛକେ ସେହି ନାମ ମୋ ଆଗରେ ବକିବୁ ନାହିଁ । ସେ କଥା ଶୁଣିଲା କ୍ଷଣି ମୋ ଦେହ ଜଳେ ।

ମାଧାଇ—ହଁ ରେ ଭାଇ । ମୋର ତ ବାନ୍ତି ମାଡ଼ି ଆସେ ।

ନିତାଇ—ଆହା, କି ଦୁଃଖୀ ଏମାନେ । ପାପ ରାକ୍ଷସର କରାଳ ଗ୍ରାସରେ ପଡ଼ିଛନ୍ତି । ଭାଇ, ହରି ହରି ବୋଲି ଦୟାମୟ ଗୌର ହରିଙ୍କର ଶରଣ ନିଅ । ସବୁ ଅପରାଧ ଖଣ୍ଡନ ହୋଇଯିବ ।

ଜଗାଇ—ରେ ମାଧିଆ, ଦେଖୁଛୁ କ'ଣ ମ; ଏ ଦୁହିଁଙ୍କୁ ମାଡ଼ବସି ପାଟି ମେଲି କରି କଞ୍ଚା ମାଲ ଢାଳି ଦେବୁଟି—ଆଜି ପାଗଳାମି ଛୁଟିଯିବ । ଔଷଧ ନ ପଡ଼ିଲେ ଏ ଉଠିବେ ନାହିଁ ।

ନିତାଇ—ଭାଇରେ, ପାପର ଭାର ଆଉ ବଢ଼ାଅ ନାହିଁ । ତୁମର ଯେତିକି ପାପ ବୋଝ ସବୁ ମୋ ମୁଣ୍ଡ ଉପରେ ଲଦି ଦେଇ ଥରେ ଆଲିଙ୍ଗନ ଦେ ଭାଇ । ପତିତପାବନ ଗୌର ଗୋବିନ୍ଦ କ୍ଷମା କରିବେ ।

ଜଗାଇ—ଏ ବଡ଼ ବେହିଆରେ ମାଧିଆ, ଭାଗ୍ ଭାଗ୍ ଏଠୁଁ—ଭଣ୍ଡ, ନ ଯିବ ତ ଦେଖିବ ନା ଏହିକ୍ଷଣି—

ନିତାଇ—ଭାଇ, ଭାଇ, ମୋର ଅଜ୍ଞାନ ଭାଇରେ—ଏତିକି ଭିକ୍ଷା ଯେ ଥରେ ମାତ୍ର ହରି ବୋଲ ।

( ଆଲିଙ୍ଗନ କରିବାକୁ ଗଲେ )

ଜଗାଇ—ଆରେ, ଏତେ ସାହସ ଚୋର । କଥା କହୁଁ କହୁଁ ପାଖକୁ ଧାଇଁ ଆସୁଛୁ । ଆଜି ତୋ ଜୀବନ ନ ନେଇ ଛାଡ଼ିବି ନାହିଁ ।

( କଳସୀ ଫେନ୍ଦି ନିକ୍ଷେପ କଲେ ଓ କଳସୀ ଫେନ୍ଦି ନିତ୍ୟାନନ୍ଦଙ୍କ ମୁଣ୍ଡରେ ବାଜିଲା )

ହରିଦାସ—ପ୍ରଭୁପାଦ, ଏମାନଙ୍କୁ କୃପା କରିବାକୁ ଯାଇ ଏମାନଙ୍କର ଅପରାଧ ବଢ଼ାଉଛନ୍ତି କାହିଁକି ? ଆସନ୍ତୁ ଚାଲିଯିବା । କପାଳରେ ଖପର ବାଜି ରକ୍ତ ବାହାରୁଛି । ଆହା ।

( ନିତାଇଙ୍କୁ ଧରି ନିର୍ଗତ ହେଲେ )

ଜଗାଇ—ପଳେଇଛୁ କୁଆଡ଼େ—ତମ ଦୁହିଁଙ୍କୁ ଆଜି ଯଦି ଟିକିଏ ନ କରିଛି ତ ମୋ' ନାଁରେ କୁକୁର ପାଳିବୁ ।

( ପଛେ ନିର୍ଗତ )

ମାଧାଇ—ତମ ହରିବୋଲ ଛଡ଼େଇ ଦେଉଛି ଚାଲ ।

( ନିର୍ଗତ )

## ତୃତୀୟ ଦୃଶ୍ୟ

( ଶ୍ରୀବାସ ଅଙ୍ଗନ, ଗୌର ସିଂହାସନରେ ଭାବାବିଷ୍ଟ ହୋଇ ଉପବିଷ୍ଟ ଓ ଶ୍ରୀବାସାଦି ଭକ୍ତ ବୃନ୍ଦ ସ୍ତବ କରୁଛନ୍ତି )

( ଗୀତ )

ସକଳେ—ନୂତନ ଏ ପ୍ରେମ ଲୀଳା ଦେଖ ରେ ଜଗତ ବାସୀ,
ବୃନ୍ଦାବନ ବ୍ରଜ ରସ ମନ୍ଦାକିନୀ ଯାଏ ଭାସି ।
ପ୍ରିୟା ଭାବ କାନ୍ତି ଧରି ଅବତୀର୍ଣ୍ଣ ଗୌର ହରି
କେସନ ରାଧାର ପ୍ରେମ ଆସ୍ୱାଦନ ଅଭିଳାଷୀ ।
ଜୀବର ଦୁର୍ଗତି ଦେଖି ନିଜେ ପ୍ରଭୁ ହୋଇ ଦୁଃଖୀ
ବାଣ୍ଟୁଛନ୍ତି ଦ୍ୱାରେ ଦ୍ୱାରେ ନିଜ ନାମାମୃତ ରାଶି ।

ଶ୍ରୀବାସ—ପ୍ରଭୁ, ଘୋର କଳି ପ୍ରଭାବରେ ଜୀବଗଣ ନାନା ବ୍ୟଭିଚାରାସକ୍ତ, ଉନ୍ମତ୍ତ ହୋଇ ଅଛନ୍ତି । ଏହି ପାପହତ ଜୀବଙ୍କର ଉଦ୍ଧାରର ଉପାୟ କ'ଣ ?

ଗୌର— ଯେତେବେଳେ ଧରଣୀରେ ପାପର ପ୍ରାଦୁର୍ଭାବ ହୁଏ, ସମାଜରେ ବିଶୃଙ୍ଖଳା ଘଟେ, ଧର୍ମରେ ଗ୍ଲାନି ପ୍ରବେଶ କରେ, ମୁହିଁ ସେତେବେଳେ ଧର୍ମ ସଂସ୍ଥାପନ ପାଇଁ ଅବତୀର୍ଣ୍ଣ ହୁଏ ।

ଶ୍ରୀବାସ—ଆମ୍ଭେମାନେ ଆପଣଙ୍କୁ ଶଚୀ-ନନ୍ଦନ ଗୌର-ସୁନ୍ଦର ବୋଲି ଜାଣୁଁ । କିନ୍ତୁ ଆପଣ ଯେ ପ୍ରକୃତରେ କିଏ ତାହା ବୁଝିବାର ଶକ୍ତି ନାହିଁ ।

ଗୌର—ଯୋଗୀ ଯାହାଙ୍କୁ ପରମାତ୍ମା ବୋଲି ହୃଦୟ କମଳରେ ଧ୍ୟାନ କରେ, ସେ ମୋର ଅଂଶ କଳା ମାତ୍ର । ଜ୍ଞାନୀ ଯେଉଁ ବ୍ରହ୍ମଜ୍ୟୋତି ଦର୍ଶନ କରେ ତାହା ମୋର ଅଙ୍ଗ କାନ୍ତି ମାତ୍ର । ମୁଁ ଅଣୁ ପରମାଣୁ ରୂପରେ ଓତପ୍ରୋତ ଭାବରେ, ସର୍ବଦା ସର୍ବତ୍ର ବିରାଜମାନ । ମୁହିଁ ମାୟାମୟ ହୋଇ ଅତୀତ, ମହାକାଳ ହୋଇ କାଳର ଅତୀତ, ସ୍ୱତନ୍ତ୍ର ନିର୍ଗୁଣ, ଇନ୍ଦ୍ରିୟଅଗମ୍ୟ ପୁରୁଷ । ପୁଣି ପ୍ରକୃତି ସହଯୋଗରେ ସଗୁଣ । ଜୀବ ମୋହରି ଅଂଶ ସତ୍ୟ, କିନ୍ତୁ ଜୀବ ସହିତରେ ମୋର ଅଚିନ୍ତ୍ୟ ଭେଦାଭେଦ ବିରାଜିତ ।

ଶ୍ରୀବାସ—ପ୍ରଭୁ ଅଜ୍ଞାନ ତମିସ୍ରାଚ୍ଛନ୍ନ ଜୀବର ଏ ତତ୍ତ୍ୱ ପ୍ରବେଶ କରିବା ଦୁଃସାଧ୍ୟ ।

ଗୌର—ଯେ ମୋତେ ଯେଉଁ ଭାବରେ ଭାବେ, ମୁଁ ତାହାକୁ ସେହି ଭାବରେ ପ୍ରାପ୍ତ ହୁଏ । ମୁହିଁ ସେହି ସଚ୍ଚିଦାନନ୍ଦ ବିଗ୍ରହ,

ଘନରସ ମୂର୍ତ୍ତି, ନିତ୍ୟ ବୃନ୍ଦାବନବିଳାସୀ, ଗୋପକାମିନୀ-ପରିବେଷ୍ଟିତ, ରାଧାବଲ୍ଲଭ, ନନ୍ଦନନ୍ଦନ ଗୋବିନ୍ଦ ।

ଶ୍ରୀବାସ—ପ୍ରଭୁ, ଦୁର୍ବଳ କଳିଜୀବ ପକ୍ଷରେ ଏହି ଦୁର୍ଲ୍ଲଭସାଧ୍ୟ ବସ୍ତୁ ଲାଭ କରିବା ଦୁଷ୍କର ।

ଗୌର—ନିଜେ ଆଚରଣ କରି କଳିଜୀବଙ୍କୁ ସହଜ ସାଧନ ଶିଖାଇବା ପାଇଁ ମୋର ଏହି ଅବତାର । ଏଥିରେ ଐଶ୍ୱର୍ଯ୍ୟ ଲେଶ ମାତ୍ର ନାହିଁ । ଦୈନ୍ୟ ଓ ମାଧୁର୍ଯ୍ୟ ଏହାର ମୂଳମନ୍ତ୍ର । ଅନ୍ୟାନ୍ୟ ଅବତାର ପରି ଏଥିରେ ଅସ୍ତ୍ରଶସ୍ତ୍ରର ପ୍ରୟୋଜନ ହେବ ନାହିଁ, କେବଳ ପ୍ରେମାସ୍ତ୍ର ଦ୍ୱାରା ଦୁଷ୍କୃତ ସଂହାର ହେବ । କାରଣ, ପ୍ରେମର ଜୟ ସର୍ବଶ୍ରେଷ୍ଠ ଜୟ । ଏହାହିଁ ଏ ଅବତାରର ବିଶେଷତ୍ୱ ଏବଂ ଏହାହିଁ ପ୍ରକୃଷ୍ଟ ଯୁଗଧର୍ମ ।

ଶ୍ରୀବାସ—ଯୁଗଧର୍ମ କି ରୂପେ ପ୍ରଭୁ ?

ଗୌର—ଯେଉଁ ଯୁଗରେ ଯେଉଁ ଧର୍ମ ଉପଯୋଗୀ, ତାହାହିଁ ଯୁଗଧର୍ମ । କଳିର ଅଳ୍ପାୟୁ ଦୁର୍ବଳ ଚିତ୍ତ ଜନମାନଙ୍କ ପକ୍ଷରେ 'ନାମ କୀର୍ତ୍ତନ'ହିଁ ପରିତ୍ରାଣର ସର୍ବଶ୍ରେଷ୍ଠ ଉପାୟ ।

( ଅନ୍ତରେ ବିଳାପ ଧ୍ୱନି )

ଶ୍ରୀବାସ—ତୁମ୍ଭ ଅନ୍ତଃପୁରରେ କ୍ରନ୍ଦନ ଧ୍ୱନି ହେଉଛି କିପାଇଁ ?

( ଜଣେ ଭୃତ୍ୟ ପ୍ରବିଷ୍ଟ ହେଲା )

ଭୃତ୍ୟ— ଶ୍ରୀବାସ ପଣ୍ଡିତଙ୍କ ଶିଶୁ ସନ୍ତାନଟିକୁ ସର୍ପ ଦଂଶନ କରିଛି ।

ଗୌର—ତଥା ଶୀଘ୍ର ଏ ସ୍ଥାନକୁ ନେଇଆସ ।

ଶ୍ରୀବାସ—କେଉଁ ଅପରାଧରେ ଦାସ ପ୍ରତି ଏ କୃପାଦଣ୍ଡ ବିଧାନ କଲ ପ୍ରଭୁ ?

ଗୌର—ଶ୍ରୀବାସ, ନିୟତି କେହି ଖଣ୍ଡନ କରି ନ ପାରେ । (ହସି) ଦେଖ ସ୍ୱୟଂ ମୁହିଁ ମଧ୍ୟ ନିୟତିର ଅଧୀନ ।

( ମୃତ ଶିଶୁକୁ ନେଇ ଭୃତ୍ୟ ପୁନଃ ପ୍ରବିଷ୍ଟ ହେଲା )

ହରିନାମ ଶବ୍ଦରେ ଶୁଷ୍କ ତରୁ ପଲ୍ଲବିତ ହୁଏ । ତୁମ୍ଭେମାନେ ସମସ୍ତେ ଏହି ଶିଶୁକୁ ଘେରି ନାମ କୀର୍ତ୍ତନ କର । ନାମର ମାହାତ୍ମ୍ୟ ଯଦି ସତ୍ୟ ହୁଏ, ତେବେ ଏହି ମୃତ ଶିଶୁ ପ୍ରାଣଲାଭ କରିବ ।

ସକଳେ—ହରେ କୃଷ୍ଣ, ହରେ କୃଷ୍ଣ, ହରେ କୃଷ୍ଣ, ହରେ ହରେ ହରେ ରାମ, ହରେ ରାମ, ରାମ ରାମ, ହରେ ହରେ ।

( କିୟତ୍‌କ୍ଷଣ ଉତ୍ତାରୁ ଶିଶୁ ଉଠି ନାଚିବାକୁ ଲାଗିଲା )

ଗୌର—ଆଉ, ଆଉ, ଶିଶୁଟିକୁ ଘର ଭିତରକୁ ନେଇଯାଅ ।

( ଶିଶୁକୁ ନେଇ ଗଲେ ଓ ନିତ୍ୟାନନ୍ଦ, ହରି ଦାସ ପ୍ରବିଷ୍ଟ ହେଲେ )

ପ୍ରଭୁପାଦଙ୍କ ଶିରରେ ରକ୍ତ କାହିଁ ଆସିଲା ହରିଦାସ ?

ହରିଦାସ—ଜଗାଇ ମାଧାଇ ନାମରେ ଅତ୍ୟାଚାରୀ, ମଦ୍ୟପ, ଦୁଇ ଭାଇ ପ୍ରଭୁପାଦଙ୍କୁ ଏ ଦଶା କରାଇଛନ୍ତି ।

ଗୌର—କଣ, ସ୍ୱୟଂ ବଳରାମ ସ୍ୱରୂପ ନିତ୍ୟାନନ୍ଦଙ୍କ ଶରୀରରେ ରକ୍ତପାତ ! କି ଆସ୍ପର୍ଦ୍ଧା ! ଆଜି ମୁଁ ସୁଦର୍ଶନ ଚକ୍ର ଘେନି ସେ ଦୁଇ ପାଷଣ୍ଡଙ୍କ ଶିରଚ୍ଛେଦନ କରିବି । ଆଉ ସେ କାଳକୁ ନୃସିଂହ ମୂର୍ତ୍ତି ଧରି ସଂହାର କରିବି ।

(ଉଠି ଛିଡ଼ା ହେଲେ)

ନିତାଇ—(ହାତ ଧରି) ଭାଇ, ଆତ୍ମବିସ୍ମୃତ ହେଉଛ କାହିଁକି ? ପ୍ରେମ ଦ୍ୱାରା ଯଦି ପାଷଣ୍ଡ ଦଳନ କରି ନ ପାରିବ ଏହି ଅବତାର ଗ୍ରହଣ ବୃଥା ହେବ । ମୋର ଏତିକି ମାଗୁଣି, କ୍ରୋଧ ସମ୍ବରଣ କର । ଆହା ଅଜ୍ଞାନ ଜୀବ ପ୍ରତି ଦୟା କରି ପ୍ରେମଦାନ ଦ୍ୱାରା ତାଙ୍କୁ ପରିତ୍ରାଣ କର ।

ଗୌର—ତେବେ, ଆଉ ଗୋପନରେ ରହିବାର ପ୍ରୟୋଜନ ନାହିଁ । ଆଜିଠାରୁ ପ୍ରକାଶ୍ୟରେ ନାମ ପ୍ରଚାର ଆରମ୍ଭ ହେଉ । ଆସ ସବୁ ଭକ୍ତବୃନ୍ଦ ସଜ ହୁଅ; ହରି ସଂକୀର୍ତ୍ତନରେ ନଦିଆ ନଗର ଉନ୍ମତ୍ତ କରାଇବା ।

(ସକଳେ 'ଜୟ ଗୌର ହରି' ଧ୍ୱନି କଲେ କେବଳ ଅଦ୍ୱୈତ ମୌନ ଭାବରେ ଅଧୋବଦନ ହୋଇ ରହିଲେ)

ଗୌର—କି, ବୃଦ୍ଧ ଅଦ୍ୱୈତ କିପାଇଁ ନିରୁତ୍ସାହ ଭାବରେ ରହିଛନ୍ତି । ଓହୋ, ମହାତ୍ମାଙ୍କ ଐଶ୍ୱର୍ଯ୍ୟ ପରା, ସେଥିପାଇଁ ମନରେ ନାନାପ୍ରକାର ସନ୍ଦେହ ଜାତ ହେଉଛି । ଆଚ୍ଛା ହେଉ, ହେଉ—ଦେଖ ଅଦ୍ୱୈତ, ତୁମର ବିଶ୍ୱାସ ହେଉ ନାହିଁ—ତର୍କ ମହା ଅନିଷ୍ଟର ମୂଳ—ବିଶ୍ୱାସ, ବିଶ୍ୱାସ, ବିଶ୍ୱାସରେ ସବୁ ସନ୍ଦେହ ଦୂର ହୋଇଯିବ ।

(ହଠାତ୍ ଦୃଶ୍ୟ ପରିବର୍ତ୍ତନ ହେଲା ଓ ଆଲୋକମୟ ବେଣୁ, କୋଦଣ୍ଡ, ଦଣ୍ଡକମଣ୍ଡଳୁଧାରୀ ଷଡ଼୍‌ଭୁଜ ଗୌରାଙ୍ଗ ମୂର୍ତ୍ତି ଆବିର୍ଭୂତ ହେଲେ)

(ପଟପତନ)

## ଚତୁର୍ଥ ଦୃଶ୍ୟ

( ରାଜପଥ—ଏକ ଦିଗରୁ ତର୍କରତ୍ନ ଓ ଅନ୍ୟ ଦିଗରୁ ବିଦ୍ୟାବାଗୀଶ ପ୍ରବିଷ୍ଟ ହେଲେ )

ତର୍କ —ନମସ୍କାର, ନମସ୍କାର, ବିଦ୍ୟାବାଗୀଶ ମହାଶୟ !

ବିଦ୍ୟା—ନମସ୍କାର, ନମସ୍କାର । ସମସ୍ତ କୁଶଳ ତ ?

ତର୍କ —କୁଶଳ ଏକ ପ୍ରକାର । ଆପଣଙ୍କର ଟୋଲ ଉତ୍ତମରେ ଚଳୁଛି ତ ?

ବିଦ୍ୟା—ହୁଁ—ନିମାଇଁ ପଣ୍ଡିତଙ୍କ ଗ୍ରନ୍ଥର ଅଧିକାଂଶ ତ ଆପଣଙ୍କ ଟୋଲରେ ପ୍ରବିଷ୍ଟ ହେଲେ ; ଆମର ସେଉଁପରି ଥିଲ ତାହିଁବଳ୍ତ ।

ତର୍କ—ଆଃ, ସେ ଗ୍ରନ୍ଥଗୁଡ଼ାକ ସବୁ କୁ ଅଧ୍ୟାପକର କୁଶିକ୍ଷାରେ ବିଗଡ଼ ଯାଇଛନ୍ତି । ବଡ଼ କଠିନ ପରିଶ୍ରମ ପଡ଼ୁଛି ତାଙ୍କୁ ସୁଧାରିବାକୁ ।

ବିଦ୍ୟା—ଆଚ୍ଛା, ପଣ୍ଡିତ ମହାଶୟ, କାଜିଙ୍କଠାରେ ଆମର ଗୁହାରିର କୌଣସି ଫଳ ହେଲା ପରି ଲଗୁ ନାହିଁ ; ହେଲା କ'ଣ ?

ତର୍କ—ଶୁଣି ନାହାନ୍ତି ପରା ସେ କଥା । କାଜିର ପିଆଦା ଯାଇ ସେ ଭଣ୍ଡଗୁଡ଼ାକର ସମସ୍ତିଙ୍କ ମୁଖରେ ନିଷ୍ଠୀବନ କ୍ଷେପଣ କରି ଜାତି ମାରି ଦେଇ ଆସିଛି । ଆଉ ମଧ କହି ଆସିଛି କି ପୁନରାୟ ଗୋଳ କଲେ ଅସ୍ପୃଶ୍ୟ ମାଂସ ଭକ୍ଷଣ କରାଇବ ।

ବିଦ୍ୟା—କିନ୍ତୁ ତାଙ୍କର ନାଚ କୀର୍ତ୍ତନ ତ ବନ୍ଦ ହୋଇ ନାହିଁ ; ବରଂ ହଟ୍ଟଗୋଳଟା ଉତ୍ତରୋତ୍ତର ବୃଦ୍ଧି ପାଉଛି ।

ତର୍କ—ବୁଝିଲେ ନାହିଁ କି ପଣ୍ଡିତ ମହାଶୟ, ସେମାନେ ମ୍ଲେଚ୍ଛସେବାପନ୍ନ, ଧର୍ମଦ୍ୱେଷୀ । ଏପରି ଧମକରେ ଡରିବେ କାହିଁକି ? ବରଂ ଉକ୍ତ ଯାବନିକ ପଦାର୍ଥର ସ୍ୱାଦାନ୍ୱେଷୀ ଥିବେ ।

ବିଦ୍ୟା—ତେବେ ସେମାନଙ୍କୁ ଦମନ କରିବାର ଉପାୟ ?

ତର୍କ—(ହସି) 'ମୂର୍ଖସ୍ୟ ଲଗୁଡ଼ୌଷଧଂ' । ଓହୋ, ଆଉ କଥା ସ୍ମରଣ ହେଲା । ସେହି ଯେ ଗୋଟାଏ ଲଣ୍ଡିତ ମସ୍ତକ ସନ୍ନ୍ୟାସୀଟାଏ ଆସିଛି, ବିଶୁଦ୍ଧ ପାଗଳଟାଏ—ସବୁଯାକ ଆସି ମିଳୁଛନ୍ତି ଏକାଠେଇଁ !—ହିଁ—କଣ କହିଲ— କି ନାମ ତାର, ନିତ୍ୟାନନ୍ଦ—ହିଁ, ନିତ୍ୟାନନ୍ଦ—ସେହିଟା, ତା ସଙ୍ଗରେ ପୁଣି ଅପରଂଚ ବଡ଼ାଳ ବୈଷ୍ଣବ ସେହି ଯେ, ଯବନ-କୁଳ-ପୁଙ୍ଗବ—ଭଲ ନାମ ତାର, ହରିଦାସ, ହିଁ—ସେ ଦୁହେଁ ଯାଇ ପଡ଼ିଲେ ଆମ ଜଗାଇ ମାଧାଇଙ୍କ ହାବୁଡ଼ରେ । ସେ ଦୁହେଁ ତ କାଳ ଉପାସକ । ଚରଣାମୃତ ବିତରେ ମହାତେଜସ୍ୱୀ ପୁରୁଷ ! ଦେଇଛନ୍ତି ଏପରି ମାଡ଼ ଯେ ଏକାବେଳକେ ରକ୍ତ ଝୋଳ । ହାଃ—ହାଃ—ହାଃ—ଏହିପରି ଶିକ୍ଷାଟାଏ ଥରେ ନିମାଇଁ ପାଇଲେ, ଏ ସମସ୍ତ ବନ୍ଦ ହୋଇଯିବ ।

ବିଦ୍ୟା—ଆଚ୍ଛା ଶ୍ରୀବାସ, ଗଦାଧର ଦୁହେଁ ବୟସ୍କ, ସୁପଣ୍ଡିତ ବ୍ୟକ୍ତି ହୋଇ କପରି ବିଶ୍ୱମ୍ଭର କଥାରେ ପାଗଳ ହୋଇଛନ୍ତି ?

ତର୍କ—ଖାଲି କ'ଣ ସେତିକ ? ଶାନ୍ତିପୁରର ସେ ବୁଢ଼ାଟା, ଅଦ୍ୱୈତ୍ୟ ଆଚାର୍ଯ୍ୟ ! କଳିକାଳରେ ସମସ୍ତେ ଅଦ୍ଭୁତ ହେ ସମସ୍ତେ ଅଦ୍ଭୁତ । ବଞ୍ଚି ରହିଲେ ଏହିପରି କେତେ କ'ଣ ଦେଖିବାକୁ ହେବ । ନାରାୟଣ, ନାରାୟଣ ।

ବିଦ୍ୟା—ଆପଣଙ୍କ ପରି ବ୍ୟକ୍ତି ହେଲେ ସମାଜର ମୁଖପାତ୍ର, ଏପରି ଅବସ୍ଥାରେ ଆପଣଙ୍କର ତ ନିଶ୍ଚିନ୍ତ ହୋଇ ରହିବା ଯୁକ୍ତିସଙ୍ଗତ ନୁହେଁ ।

ତର୍କ—କ'ଣ କରିବା, ମୂର୍ଖମାନେ ପ୍ରାଦୁର୍ଭୂତ ହେଲେ ସୁଧୀବୃନ୍ଦ ଦୂରକୁ ଅପସରଣ କରନ୍ତି ।

ବିଦ୍ୟା—ନାହିଁ, ନାହିଁ, ଏ ବିଷୟରେ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାକୁ ହେବ । ସମସ୍ତ ମୁଖ୍ୟ ବ୍ୟକ୍ତିମାନଙ୍କୁ ସମବେତ କରାଇ କୌଣସି ସଦ୍‌ଯୁକ୍ତିପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ନ ହେବା ଯାଏ ସ୍ଥିର ରହିବା ଏକାନ୍ତ ଅନୁଚିତ ।

ତର୍କ—ଆଚ୍ଛା, ତେବେ ସେ ବିଷୟରେ ସମ୍ୟକ୍ ଚିନ୍ତା କରି ଆପଣାର ଅଭିମତ ଜ୍ଞାପନ କରିବ । ଆଜ୍ଞା ବିଦାୟ ନମସ୍କାର । (ପ୍ରସ୍ଥାନ)

ବିଦ୍ୟା—ନମସ୍କାର । କିନ୍ତୁ ମନେ ରଖିଥିବେ ଏହା ଅତି ଗୁରୁତର ବିଷୟ । (ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

(ପଥପାର୍ଶ୍ୱ, ଜଗାଇ ଓ ମାଧାଇ)

ଜଗାଇ—ବୁଝିଲୁ ରେ ମାଧିଆ, ଚତା ଚୈତନିଆ, ହରିବୋଲ ଗୁଡ଼ାକ ଘୋର ବଦ୍‌ମାସ । ତାଙ୍କୁ ଦେଖିଲାକ୍ଷଣି ମାତ୍ର ସିଧା କରିବୁ । ଦେଖିଲୁ ତ କମିତି ଜବର କରି ଦେଲି ।

ମାଧାଇ—ଏଣିକି ତାଙ୍କୁ ଦେଖିଲେ, ଆଉ କଥା ନାହିଁ, ଏକ ଦମ୍ ଧପା ଧପ୍ ପଟାପଟ୍ । ଏହି ଠେଙ୍ଗା ପଜେଇ ରଖିଲି ।

ଜଗାଇ—ଆରେ ଶୁଣ୍, ସେହି ଯେ ମାଡ଼ ଖାଇଗଲେ ସେ ଯାଇ ତାଙ୍କ ସାଙ୍ଗ ଭାଇଙ୍କୁ ଡାକି ଆଣି ପାରନ୍ତି । ଟିକିଏ ହୁସିଆର ହୋଇ ରହିଥାଏ ।

ମାଧାଇ—କ'ଣ ବେଶୀ ମଣିଷ ଆସିବେ ବୋଲି ଡରି ରହିଥିବ ନା କ'ଣ ? ଯେତେହେଲେ ସେ ଗୁଡ଼ାକ ଗୋରୁ—ତାଙ୍କର କେତେ ସାହସ ହେବ ! ଆଜି ସେ ଖାଆନ୍ତି ବା କ'ଣ ଯେ ତାଙ୍କ ଦେହରେ ବଳ ଆସିବ । ମଦ ମାଉଁସ ତ ଥରେ ଚାଖିବାକୁ ମିଳେ ନାହିଁ—ଶୁଖିଲା ଅରୁଆ ଚାଉଳ, ମାରଚ ଖଣ୍ଡାରେ କେତେ ଜୁମ୍ । ଭୁ ବସି ଦେଖୁଥା । ମୁଁ ଏକା ସାବାଡ଼ କରିଦେବି । (ଅନ୍ତରେ କରତାଳି)

ଜଗାଇ—ଆରେ ହେଇ, ହେଇ,—ସେଇଟା ନା କ'ଣ? (ଗୃହିଁ ଦେଖି)
ବାପ ଲୋ, ଶଙ୍କର ଦଳରେ ବାବା ! ମୁଁ ଖସୁଛି ।

ମାଧାଇ—ଛି, ଛି,—ଏତେ ଡରୁଆଟେ । ରହିଥା ତୁ ଓ ମୁଁ ଛୁଡ଼ା ହେବା ତ କେହି ପାଖ ପଶିବେ ନାହିଁ । ତୁ ଖାଲି ଟିକିଏ ମୋ ପଛକୁ ସାହା ହୋଇ ଥା ।

ଜଗାଇ—ଦେଖିଲୁଣି, କି ଭୟାନକ ରୂପ ! ମୋତେ ମାଇଲାରେ ! ମୋତେ ଖାଇଲାରେ ! ମାଧିଆ, ମାଧିଆ !

ମାଧାଇ—ହଁ ସତେ, କି ବିକଟାଳ ମୂର୍ତ୍ତିରେ ବାବା ! ହାଣିଲା ଭାଇ, ହାଣିଲା ।

(ଏଣେ ତେଣେ ଭୟରେ ଦୌଡ଼ିଲେ ଓ ଦୁହେଁ ଯାଇ ଏକ ପାର୍ଶ୍ୱରେ ତୁନି ହୋଇ ରହିଲେ ।

(ନିତ୍ୟାନନ୍ଦ, ଗୌର ପ୍ରଭୃତି ସମସ୍ତ ଭକ୍ତବୃନ୍ଦ କରତାଳ ସହ ଗାଇ ଗାଇ ପ୍ରବେଶ ହେଲେ)

ଗୀତ

ଆସ କେ ଲୋଟିବ ଆସ, ପ୍ରେମର ଭଣ୍ଡାର
ଆଚଣ୍ଡାଳେ ଯାଚ ଦେବ ନ କର ବିଚାର ॥
ଧାଇଁ ଆସ ପାପୀ ତାପୀ କିଏ ଅଛ କାହିଁ
ଆଣିଛି ଅମୂଲ୍ୟ ନିଧି ମୁହିଁ ତୁମ୍ଭ ପାଇଁ ॥
ତୁମ୍ଭ ପାପ ବୋଝ ଲଦି ଦିଅ ମୋର ଶିରେ
ଜୀବର ଉଦ୍ଧାର ଲାଗି ସବୁ ଝିଙ୍କିବାରେ ॥
ଆରେ କଳିହତ ଜୀବ ଆଉ ନାହିଁ ଭୟ
ହରେ ରାମ କୃଷ୍ଣ ବୋଲି ଥରେ ମାତ୍ର କହ ॥

ଜଗାଇ— ( ଗଳଲଗ୍ନ ବାସରେ କର ଯୋଡ଼ି )
ପ୍ରଭୁ, ମୁଁ ମହା ଅପରାଧୀ, ପାଷଣ୍ଡ—ମୋ ପାପର ସୀମା ନାହିଁ ପ୍ରଭୁ ! ମୋର କି ଦଶା ହେବ ?

ନିତାଇ—ନା, ଭାଇ ତୁ ପାପୀ ନୋହୁ; ମହା ପୁଣ୍ୟବାନ୍ । ମହା-ଭକ୍ତ । ନୋହିଲେ ସ୍ୱୟଂ ଭଗବାନ ତୋ ନିକଟକୁ ଆସନ୍ତେ କାହିଁକି ? ତାଙ୍କର କୃପା-କିରଣରେ ତୋର ଅଜ୍ଞାନ-ଅନ୍ଧକାର ଦୂର ହୋଇ ନିର୍ମଳ ଜ୍ଞାନ ସଞ୍ଚାର ହେଉ ।

ଜଗାଇ—( ଗୌରଙ୍କ ନିକଟକୁ ଯାଇ ) ଏ ମହାପାପୀକୁ ଦୟା କର ପ୍ରଭୁ ।

ଗୌର—ତୁମ୍ଭ ପରି ପାପୀଙ୍କୁ ଉଦ୍ଧାର କରିବାର ଶକ୍ତି ମୋର ନାହିଁ । କାରଣ ତୁମ୍ଭେ ଶ୍ରୀ ମନ୍ନିତ୍ୟାନନ୍ଦଠାରେ ଅପରାଧୀ । ସେହି ଅଦୋଷଦର୍ଶୀ କ୍ଷମାସିନ୍ଧୁ ନିତାଇ ତୁମ୍ଭଙ୍କୁ ପାର କରିବେ ।

ନିତାଇ—ଆ ଭାଇ, ପାପ-ତାପ-ଦଗ୍ଧ, ହତଭାଗ୍ୟ ଭାଇଟିରେ ମୋର, ମୁଁ ତୋହର ପରି ତାପିତ । ପ୍ରାଣରେ ଶାନ୍ତ-ସୁଧା ବର୍ଷଣ କରିବା ପାଇଁ ସଂସାରଟା ଯାକ ବୁଲୁଛି । ଆ ଭାଇ, ମୋ କୋଳକୁ ଆ । (ଆଲିଙ୍ଗନ)

ମାଧାଇ—ଭାଇ, ତୁ ତ ପାର ହୋଇଗଲୁ । ମୋର କ'ଣ ହେବ ? ମୁହିଁ କ'ଣ ଏକା ପଡ଼ିଲି !

ନିତାଇ—ନା, ଭାଇ, ବନ୍ଧ ବନ୍ଧୁ ବିତରଣ କଲେ ଗୌରଚନ୍ଦ୍ରଙ୍କର ଅସରନ୍ତି କରୁଣାପାରାବାର ଶୁଖି ଯିବ ନାହିଁ । ସେ କୃପା ପସରା ମେଲାଇ ବସିଛନ୍ତି – ଆସ, ଯେ ଯେତେ ପାରିବ ମନ ପୂରାଇ ପାନ କର ।

( "ହରି ବୋଲ, ହରି ବୋଲ, ହରି ବୋଲ, ହରି ବୋଲ," )
( ଗାଇ ଗାଇ ସକଳେ ପ୍ରସ୍ଥାନ କଲେ )

## ଷଷ୍ଠ ଦୃଶ୍ୟ

(କାଜି ଭବନ । କାଜି ବ୍ୟସ୍ତ ଭାବରେ ପ୍ରବେଶ ହେଲେ )

କାଜି—ଇସୁଫ୍, ଇସୁଫ୍, ଏ ରହମାନ, ରହମାନ, ଆରେ ସବୁ ଏ ଜଗତରେ କାହିଁ ଗଲେରେ ?

ଇସୁଫ୍—ଜୀ, ହଜୁର, ଖୋଦାବନ୍ଦ, ଦୁନିଆରେ ମାଲିକ --

କାଜି—ଚୁପ୍, ଚୁପ୍ ଏ ଖୋସାମୁଦି କରିବାର ବେଳ ନୁହେ । ବିଶ୍ୱମ୍ଭର ପଣ୍ଡିତ ହଜାର ହଜାର ଲୋକ ନେଇ ମୋ ଘର ଲୁଟ୍ କରିବାକୁ ଆସୁଛି । ମୁଁ ମନା କରୁଥିଲି, ସେ ଯାହା କଲା ଆମର ସେଥିରେ କ'ଣ । ଏ ବଜାରୁ ପଣ୍ଡିତ-ଗୁଡ଼ାକ ଆସି ସବୁ ହରକତ ଲଗେଇଲେ । ଉହିଁକି ଗୁଡ ସେଥିରେ ଡେଇଁ ପଡ଼ିଲୁ , ଯେପରି ଖୋଦ୍ ପୟଗମ୍ବରଙ୍କ ନାଚ !

ଇସୁଫ୍—ଆମେ ଆଉ କ'ଣ କରିବୁ କି—ଖାଲି ଧମକ ଚମକ ଦେଇ ଆସିଥିଲୁ । ଦୋରବସ୍ତ ଜବଦ୍ ହୋଇ ଯାଇ ଥାଆନ୍ତେ । ହଜୁର କ'ଣ ମାନିଲେ ?

କାଜି—ଆରେ ବେତହକୁବ୍, ସେତିକିରେ ତ ଏତେ, ତା ହୋଇଥିଲେ କିଏ ଜାନ୍ ରହିଥାଆନ୍ତା ?

ଇସୁଫ୍—ଖାମିଦ୍ ଯଦି ଏହିକ୍ଷଣି ହୁକୁମ ଦିଅନ୍ତେ ତ ତେବେ ଫୌଜ ଚଲବ କରି ଘଣ୍ଟାକ ଭିତରେ ସବୁ ଥଣ୍ଡା କରି ଦିଅନ୍ତି । (ଯିବାକୁ ଉଦ୍ୟତ ହେଲା)

କାଜି—(ଅଟକାଇ) ଆରେ ନା, ନା,—ସବୁର୍, ସବୁର୍ । ତୁ ଯା ତାଙ୍କୁ ମିଠା କଥା କହି ଫେରାଇ ଦେବୁ । ଏ ଆଡ଼କୁ ଯେପରି ନ ଆସନ୍ତି—ହେଇ, ଗୋଳମାଳ ଶୁଭିଲାଣି—ଆଇଲେ ପରା—ଦେଖ୍ ଦେଖ୍, ଇସୁଫ୍ ଦୋସ୍ତ ମୋର ।

( ଇସୁଫ୍ ନିଷ୍କ୍ରାନ୍ତ ହେଲା )

( କାନ ଡେରି ) ଜରୁର ସେହିମାନେ ଆସୁଛନ୍ତି; ମୋତେ ଧରି ଦାଢ଼ୀ ଉପାଡ଼ ପକାଇବେ । ଜିଅନ୍ତା ଖୁନ୍ କରିବେ । ହା ଆଲ୍ଲା—ହା ଆଲ୍ଲା ।

( ଜଣେ ଭୃତ୍ୟ ସବେଗେ ପ୍ରବିଷ୍ଟ ହେଲା )

ଭୃତ୍ୟ—ହଜୁର, ହଜାର ହଜାର ଲୋକ ! ବେଧଡ଼କ ମାଡ଼ି ଆସୁଛନ୍ତି ।

କାଜି—ଆଁ, ଆଁ—ହଜାର ହଜାର ! ଆଉ ସେ ନିମାଇଁ ପଣ୍ଡିତ ?

ଭୃତ୍ୟ—ଜୀ ହଜୁର୍ !

କାଜି—ତାର ଚେହେରା କି ରକମ ରେ ?

ଭୃତ୍ୟ—ଖବ୍ ସୁରତ୍ ।

କାଜି—ଦୂର ! ତୁ ଦେଖି ନାହୁଁ । ସିଂହ ପରି ମୁଣ୍ଡ, ଲମ୍ବ ଲମ୍ବ ଦାନ୍ତ କାଢ଼ି ଆଁ କରିଛି । ଲାଲ ଆଖି ଯୋଡ଼ାକ ମସାଲ ପରି ଜଳୁଛି । ଏପରି ନୁହେଁ ?

ଭୃତ୍ୟ—ଆଜ୍ଞା ନା, ସେପରି ତ କିଛି ନାହିଁ । ତେବେ ଥୋଡ଼ା ଥୋଡ଼ା ଗୋସ୍ସା ହେଲପରି ଲାଗୁଛି ।

କାଜି—ଆରେ ଇସୁଫ୍ ଯାଇ ଅଟକାଇଲା ନାହିଁ ?

ଭୃତ୍ୟ—ଇସୁଫ୍ ମିଆଁ ତ ସିଧା ଚମ୍ପଟ ।

କାଜି—କ'ଣ, ନିମକହାରାମ । ଆଚ୍ଛା, ତୁ ଯାଇ ଜଲଦି ଦରଓ୍ୱାଜା ବନ୍ଦ କର ।

ଭୃତ୍ୟ—ହଜୁର ଦରଓ୍ୱାଜା ବନ୍ଦ ଥିଲା । ସେମାନେ ଜବରଦସ୍ତି ଅନ୍ଦରକୁ ପଶିଲେ । ହଜୁର ଜଲଦି ପଳାଇ ଯାଆନ୍ତୁ ।

କାଜି—କେଉଁ ବାଟେ ପିଛାରେ—

( ଏହି ସମୟରେ ଶ୍ରୀ ଗୌରାଙ୍ଗ, ନିତ୍ୟାନନ୍ଦାଦି ପରିଷଦଗଣ ପ୍ରବିଷ୍ଟ ହେଲେ ଓ କାଜି ଲୁଚିବାକୁ ଚେଷ୍ଟା କଲେ )

ଗୌର—କାଜି, କାଜି—, କାଜି ସାହେବ କାହାନ୍ତି ?

କାଜି—( ଥରୁଁ ଥରୁଁ ବାହାରି ) ଦୋହାଇ ନିମାଇଁ ପଣ୍ଡିତ—ମୋତେ ମାଫ୍ କର—ମୋର କିଛି କସୁର ନାହିଁ ।

ଗୌର—( ହସି ) ସାହେବ, ତୁମ୍ଭେ ଯବନ ହେଲେ ମଧ୍ୟ ବୟୋବୃଦ୍ଧ, ଏବଂ ଗ୍ରାମ ସମ୍ପର୍କରେ ମୋର ମାମୁଁ, ମୁଁ ତୁମ୍ଭ ପ୍ରତି ଅତ୍ୟାଚାର କରିବାକୁ ଆସିନାହିଁ; କେବଳ ପଚାରିବାକୁ ଆସିଛି ଆମ୍ଭମାନଙ୍କ କାର୍ଯ୍ୟରେ ତୁମ୍ଭର ବାଧା ଦେବାର କାରଣ କ'ଣ ?

କାଜି— ସବୁ ମୋର କସୁର ହୋଇଛି ପଣ୍ଡିତ ଜୀ । ମୁଁ ଦୁଷ୍ଟ ଲୋକଙ୍କ କଥାରେ ଟିକିଏ ଭୁଲି ଯାଇଥିଲି । ଏବେ ମୋର ଭୁଲ ସମଝୁଛି ।

ଗୌର—କିପରି ବୁଝିଲ ?

କାଜି—ଯେଉଁଦିନ ତୁମ୍ଭର କୀର୍ତ୍ତନ ବନ୍ଦ କରିବାକୁ ଲୋକ ପଠାଇଥିଲି ସେହି ଦିନ ରାତିରେ ସ୍ୱପ୍ନ ଦେଖିଲି କି ଗୋଟାଏ ବିକଟାକାର ଜାନୁଆର୍, ମୁଣ୍ଡଟା ସିଂହ ପରି, ଦେହଟା ମନୁଷ୍ୟ । ମୋ ଛାତି ଉପରେ ବସି ତଣ୍ଟି ଚିପିଲା । ମୁଁ ବିକଳ ହୋଇ ତାର ଶରଣ ପଶିଲି । ସେ ଦାନ୍ତ କଡ଼କଡ଼ କରି କହିଲା କି, "ତୁ କାହିଁକି ମୋର କୀର୍ତ୍ତନ ବନ୍ଦ କରୁଛୁ ?" ମୁଁ ସଲାମ କରି କହିଲି କି ଆଉ କେବେ କରିବି ନାହିଁ । ତହୁଁ ସେ ଛାଡ଼ି ଦେଇ ଗଲା । ପଣ୍ଡିତ, ମୁଁ ଠିକ୍ ଜାଣିଛି ସେ—ତୁମ୍ଭେ ।

ଗୌର—କି ରକମ ! ମୁଁ କିପରି ଜାନୁଆର୍ ହେଲି କାଜି ସାହେବ ? ମୋତେ ତ ଆଗରେ ଦେଖିଛ ।

କାଜି— ମନା କଲେ ମାନିବ ନାହିଁ କେବେ । ମୁଁ ଦୁଇ ଆଖିରେ ଦେଖିଛି ଯେ ଯିବାବେଳେ ତୁମ୍ଭର ଏହି ରୂପ ଧରି ବାହାରି ଗଲା ।

ଗୌର—ଶୁଣ କାଜି ସାହେବ, ଈଶ୍ୱରଙ୍କ ଆଖିରେ ସବୁ ମନୁଷ୍ୟ ଏକ । ସବୁ ଧର୍ମର ଉଦ୍ଦେଶ୍ୟ ଏକ । କେବଳ ଆଚରଣଗତ ସାମାନ୍ୟ ପାର୍ଥକ୍ୟ ମାତ୍ର । ରାମ ରହିମ୍ ସମାନ । ଯେ ଯାହାର ଇଚ୍ଛାନୁସାରେ ତାଙ୍କୁ ଭଜିବ ସେଥିରେ ଅନ୍ୟ ବାଧା ଦେବା ଅନ୍ୟାୟ ଓ ପାପ । ଏହା ଠିକ୍ ତ ?

କାଜି— ବେସକ୍ ।

ଗୌର—ତେବେ ତୁମ୍ଭେ ମୋତେ ପ୍ରତିଶ୍ରୁତି ଦିଅ କି, ହରି ସଂକୀର୍ତ୍ତନରେ କେବେ ରାଜ ସରକାର ବାଧା ନ ହେବ ।

କାଜି— ମୁଁ ଆଜି ପୀର ପଇଗମ୍ବରଙ୍କ ନାମରେ କୋରାନ ଛୁଇଁ ପ୍ରତିଜ୍ଞା କରୁଛି କି ଆଜିଠାରୁ ମୋ ଇଲାକା ମଧ୍ୟରେ ସଂକୀର୍ତ୍ତନରେ କୌଣସି ବାଧା ହେବ ନାହିଁ । ଆଉ ମଧ୍ୟ ମୁଁ ଏପରି ସନନ୍ଦ କରି ଦେଉଛି କି ମୋ ବଂଶରେ ଯେ କେହି ଥିବେ ତାଙ୍କ ଦ୍ୱାରା ଭବିଷ୍ୟତରେ ମଧ୍ୟ ଏଥିରେ କୌଣସି ପ୍ରକାର ଅନିଷ୍ଟ ହେବ ନାହିଁ ।

( ଭକ୍ତବୃନ୍ଦ ସମସ୍ୱରରେ ଗାୟନ କଲେ )

ଜୟ ହେ ଜୟ ହେ ଗୋରା ଜୟ ଶଚୀ-ସୁତ
ପତିତ ପାବନ ଅବତାର ଅଦ୍ଭୁତ ॥

ସୁପଚ ଭକତ ଘରେ କଳ ନାମ ଗାଏ
ଆପଣେ ଆଚରି ଧର୍ମ ଜଗତେ ଶିଖାଏ ॥

ଅଖଣ୍ଡ କରୁଣା-ସିନ୍ଧୁ ପ୍ରେମ-ସୁଧା ଢଳି
ପାଷଣ୍ଡ ତାରଣ ପ୍ରଭୁ ଗୋରା ଗୁଣମଣି ॥

ନାମ ସଂକୀର୍ତ୍ତନ ମହାଯଜ୍ଞ ଅଧିଷ୍ଠାତା
ଆଚଣ୍ଡାଳେ ଅଯାଚିତ ପ୍ରେମ-ଭକ୍ତିଦାତା ॥

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ଶୟନ କକ୍ଷ । ଏକାକିନୀ ବିଷ୍ଣୁପ୍ରିୟା ବିଷଣ୍ଣ ଭାବରେ ଉପବିଷ୍ଟ, ମାଳତୀ ପ୍ରବେଶ କଲେ )

ମାଳତୀ—ହେଲା, ମୁଁ ଯାହା ମନେ କରି ଆସିଥିଲି, ଠିକ୍ ସେଇଆ ।

ବିଷ୍ଣୁପ୍ରିୟା—( ଚମକି ଉଠି ଅଳ୍ପ ହସି ) ନାହିଁ, ନାହିଁ,—କ'ଣ ! କଣ ! କ'ଣ କହିଲୁ ମାଳତୀ ?

ମାଳତୀ—ଆଉ, ଥାଉ, ଆଉ ଲୁଚେଇ କରୁଛ କାହିଁକି ବିଷ୍ଣୁପ୍ରିୟା ? ଯେ ଯେତେ ଲୁଚାଇବ ତାକୁ ଦେଖେଇ ଦେବ । ତମ ମୁହଁ ଦେଖି ମୁଁ ସବୁ ଠଉରେଇ ନେଇଛି । ହସ ତ ଲୁଚିବ, ଆଖି ତାକୁ ନଲୁହ ।

ବିଷ୍ଣୁପ୍ରିୟା—କଉ ନାହିଁ, କାରଣ ନାହିଁ, ତୁଚ୍ଛଟାରେ କ'ଣ ମୋତେ କ'ଣ କହୁଯାଉଛୁ । ମୁଁ କ'ଣ କଲି କି ମାଳତୀ ? ତମ ରହସ୍ୟ ମୁଁ କିଛି ଭେଦ ପାରେ ନାହିଁ ।

ମାଳତୀ—ମନ କେବେ ହିନା ଦେଖନ୍ତ । ଯେ ବନପ୍ରାନ୍ତ ଅପୂର୍ବ ରହସ୍ୟ ହାତରେ ବୁଡ଼ ରହି ଥକେଇ ପାଉ ନାହିଁ, ସେ କାହିଁକି ଏ ଛୋଟ ନାରୀକୁଳ ରହସ୍ୟ ଭେଦିବାକୁ ମନ ବଳେଇବ ତ ?

ବିଷ୍ଣୁ—ମଲି, ହଲି, ହଟି, କ'ଣ କହିଲୁ ମୁଁ ବୁଝି ପାରିଲି ନାହିଁ ।

ମାଳତୀ—ସେଇ କଥା ତ ମୁଁ କହୁଥିଲି । ଇନ୍ଦ୍ରଦ୍ୟୁମ୍ନଙ୍କ ରଜା ଯେ ମନ, ହିଏ ତ ଥିଲ କେଉଁଠି ଭୋଳ କେଉଁଠି, ଆଉ ଗୁର ଜାଣନ୍ତା କିପରି ମୋ କଥା ବୁଝି ପାରନ୍ତା !

ବିଷ୍ଣୁ—ହେଲା, ହେଲା, ମୋହର ସବୁ ବୋଲି !

ମାଳତୀ—ଦେଖ କେମିତି ହେଲା ଚୁଣି ! ମୁଁ ମନେ କରି ଆସିଥିଲି ଯେ ବିଷ୍ଣୁପ୍ରିୟା ଏକା ବସି ତନ୍ମୟ ହୋଇ ଭାବୁଥିବେ; ଆସି ଦେଖିଲି ମୋ ଅନୁମାନଟା ଠିକ୍ । ଏଥିରେ ଦୋଷା-ଦୋଷ କ'ଣ ? କହେ କିଛି ଲୁଚେ ।

( ଶଚୀ ପ୍ରବେଶ କଲେ ଓ ତାଙ୍କୁ ଦେଖି ବିଷ୍ଣୁପ୍ରିୟା ଆଡ଼ ହୋଇ ଛିଡ଼ା ହେଲେ )

ଶଚୀ—କିଏ ମାଳୀ—ତୁ ଆସିଛୁ ମା, ଭଲ କରିଛୁ ।

ମାଳତୀ—ଇସ୍! କାହିଁକି କହୁଛ ମା ! ମୁଁ କେତେବେଳେ ନ ଆସୁଛି କି !

ଶଚୀ—ନାହିଁ, ସେଇ କଥା କହୁଥିଲି । ତୁମ୍ଭେ ଟିକିଏ ଆସିଲେ ଯାଇ ବହୂ ମନ ଭଲ ଥାଏ । ନୋହିଲେ ସବୁବେଳେ ତ ବିରସ । ପୁଅଟା ଯିମିତି ବାଇଆ ପାଗଳା ହେଲା, ବହୂଟା ବି ତହୁଁ ବଳିଲା । ସେଇଟିତ ମୋର ବାପ ଛେଉଣ୍ଡିଆ ଗୁଣ୍ଡଘର ସଙ୍ଗାଳ । ତେଣିକି ପୁଣି ପିଲାଟି ବନରୁ ଏକବୁଝା, ମନୁଆ । କେତେବେଳେ ସେ କଉଁଥିରେ ମାତିଯାଏ ତାହାର ଠିକ୍ ନାହିଁ । ମୁଁ ସେଇଥିପାଇଁ କହେଁ, ତୁ ଟିକିଏ ସିନା ତା ମନକୁ ବହେଲେଇ ହରଷ ରଖେଇଥିବୁ । ସବୁ କଥାରେ ଭଲ ବୁଦ୍ଧି, ବିଚାର; ଖାଲି ଏତିକରେ ତ ଅକଲ ବଡ଼ନାହିଁ । ଆପେ ତ ସବୁବେଳେ ମନ ଖରାପ କଲା, ପରକୁ ସମ୍ଭାଳିବ କ'ଣ ?

ମାଳତୀ—ତମେ ଯାହା କହିଲ ମା ସେକଥା ସତ । ହେଲେ କ'ଣ ହେବ ଏ ଯେ ପ୍ରକୃତି ସେଥିରେ ପିଲା । କେତେ କଣ କରିବ ।

ଶଚୀ—ନାହିଁ, କ'ଣ ବୁଝିଲୁ ନାହିଁକି ଝିଅ, ସେ ବଡ଼ ଟୋକା ବିଶ୍ୱରୂପ କଥା ତ ଜାଣୁ । ଥିଲା ଥିଲା ବାପାମାଙ୍କ ବୁକୁରେ ପଥର ଦେଇ କୁଆଡ଼େ ପଳେଇଲା । ଏଇଟିକି କେତେ ଦିଅଁ ଦେବତାଙ୍କ ଦୟାରୁ ପାଇଥିଲି । ତା ବଡ଼ ଭାଇ ଯିମିତି ଉଡ଼ିଥିଲା ଇଏ ବି କେତେ ଦିନ ହେଲା ସେହିମିତି ଉଡ଼ୁଛି । ବୁଢ଼ୀ ବେଳେ କେତେକେ ଗୁଡ଼ ଧନ୍ଦ କହିଲୁ ମା ? ମୋ ହିଂସା ଉଡ଼ି ଯାଉଛି ।

ମାଳତୀ—ସେଇଗୁଡ଼ାକ କାହିଁକି ଭାବୁଛ ମା ! ବିଶ୍ୱରୂପ ଠାକୁରଙ୍କର ତ ଘରମାୟା ଲାଗି ନ ଥିଲା । ସେଥିପାଇଁ ସେ ଏଡ଼େ ସହଜରେ ଘରଦୁଆର ଛାଡ଼ି ବାବାଜୀ ହୋଇଗଲେ । ଯାଙ୍କ କଥା କ'ଣ ସେ ଭଲ ? ତେଣିକି ମା ବୁଢ଼ୀକୁ କାହା ହାତରେ ଦେଇ ଯିବେ ? ସିଏ କଣ ଏଡ଼େ ଅବିବେକୀ ହୋଇଛନ୍ତି ମା !

ଶଚୀ—ଯାହା କହ ମା, ମୋ'ର ଗୁଡ଼ ଦକଦକ ହୁଏ, କାଲେ ମୁଁ ତ ଫୁଟ କପାଳୀ— (କାନ୍ଦିବାକୁ ଲାଗିଲେ)

ମାଳତୀ—ଯାଅ, ଯାଅ, -ତୁମେ ଏଠୁ ଯିବଟି ! ଇଏ କୁଆଡ଼େ ବହୂଙ୍କୁ ବୁଝାଇବାକୁ ଆସିଥିଲେ । ତମକୁ ଦେଖି ଦେଖି ତାଙ୍କ ମନ ଆହୁରି ଖରାପ ହଉଛି ।

ଶଚୀ—ସତ କହିଲୁ ମାଳ । ମୁଁ ବୁଢ଼ୀଲୋକ, ମୋର କଣ୍ଠ ଠିକ୍ ଥାଏ ନାହିଁ । ମୁଁ ମୋର ଏଠୁ ଯାଉଛି । ବହୂକୁ ଟିକିଏ ବୁଝାଇ କହିବୁ ମା । (ପ୍ରସ୍ଥାନ କଲେ)

ମାଳତୀ—(ବିଷ୍ଣୁପ୍ରିୟାଙ୍କ ହାତ ଧରି) କି ଗୋ ଗୌରମୟୀ, ସତେ କ'ଣ ତୁମେ ଏହିସବୁ କଥା ଭାବି ମନ ଖରାପ କରୁଛ ?

ବିଷ୍ଣୁପ୍ରିୟା—(ବିଳାପସ୍ୱରରେ) ହଁ ସହି, ମା ଯାହା କହିଲେ ସେହି—

ମାଳତୀ—ଛି, ଛି, କିଛି କୁଆଡ଼େ ନାହିଁ, ଖାଲି ଖାଲିଟାରେ ସକ ସକ ! ଏତେ ଲେମ୍ବୁର ରସ ଅଛି ନା ଆଖିରେ ! ଓଃହୋ, ବୁଝିଲି ଏଇଟା ଉତ୍କଟ ପ୍ରେମ ବିକାର । ଗୋରା ପ୍ରେମରେ ଯେ ପଡ଼େ ସେ ଏହିପରି ଆଚକା ମାଚକା ହୁଏ ଏକା ।

ବିଷ୍ଣୁପ୍ରିୟା—ତମକୁ ଖାପରା ଲାଗିଛି ପରା, ମୁଁ କିନ୍ତୁ ସତ କହୁଛି, କେତେ ଦିନ ହେଲା ତାଙ୍କ ଭାବ ଦେଖି ମୋତେ ଭାରି ଡର ମାଡ଼ୁଛି ।

ମାଳତୀ—ବୁଝିଛି ଗୋ ବୁଝିଛି । ସେ ଚିତ୍ତଚୋର ଗୋରା ପୀରତିରେ ଯେ ମଜ୍ଜେ ସେ ଏହିପରି କେତେ କାନ୍ଦେ । ତୁମେ କ'ଣ ଜାଣ ନାହିଁ ସେ ନବକିଶୋର, ଗୌରନାଗରଙ୍କ ହୃଦୟ କେବଳ ବିଷ୍ଣୁପ୍ରିୟାମୟ ! ସେ ଦିନପୀରତିଆ ଯେ ତୋ ପ୍ରେମ ଫାନ୍ଦରେ ପଡ଼ିଛି ।

ବିଷ୍ଣୁପ୍ରିୟା—ନା, ସଖି ମୁଁ ବଡ଼ ଅଭାଗିନୀ, ମୋର କଉଁ ଗୁଣ ଅଛି ଯେ ସେ ଦେବତାଙ୍କ ଲାଗି ପୂଜା ଯୋଗାଇ ତାଙ୍କ ମନ ରେଖାଇବ । ତାଙ୍କୁ ଧରି ରଖିବାକୁ ଶକ୍ତି କ'ଣ ମୋର ମାଳତୀ ।

ମାଳତୀ— (ଗୀତ)

ସେତ ଆସିଛି ଆପେ ଆପେ ଦେବାକୁ ଧରା
ଧର ଧର ବୋଲି ଡାକି ବୁଲୁଛି ପରା—ଜଗତ ସାରା
ପୀରତିବନ୍ତ ଅନ୍ତରେ ଯେ ତାଙ୍କୁ ଚିହ୍ନଇ ଥରେ
ଲୋଟେ ସେ ତାପାଦରେ ଯେପରି ଲୋଟଣୀ ପାରା,
(ସେ ତାଙ୍କୁ କରଇ ତାର ଗଳାର ହାର) (ଧରି) ପ୍ରେମ ପସରା ।
ସେ ଯେ ବଡ଼ ସହଜ ଦେବତା ଲୋ ବଡ଼ ସହଜ ଦେବତା ।

ପୂଜା ଅରଘ୍ୟ ତାର ଲୋଡ଼େ ନାହିଁ—ଖାଲି ଟିକିଏ ପ୍ରେମ,
ତୁମେ ଯହିଁର ଭଣ୍ଡାର, ( ଚମକ ପଡ଼ ) ଦେଇ ଠାକୁରେ
ଆସୁଛନ୍ତି ପରା । ଦେଖିଲୁ ଗୋ ବିନୋଦିନୀ, କୁଞ୍ଜବିନୋ-
ଦିଆଙ୍କୁ ଦେନ ତମେ ଥାଅ—ମୁଁ ଆସେ—ସାବଧାନ, ସଖି, ସେ କଅଁଳ ପ୍ରାଣରେ ବାଜିବଟି ।

(ପ୍ରସ୍ଥାନ କଲେ)

( ଗୌର ପ୍ରବେଷ୍ଟ ହେଲେ ଓ ତାଙ୍କୁ ଦେଖି ବିଷ୍ଣୁପ୍ରିୟା ଅଧୋବଦନରେ ଛିଡ଼ା ହେଲେ )

ଗୌର—(ହସି) ମାଳତୀ ସଙ୍ଗରେ କଥାବାର୍ତ୍ତା ହେଉଥିଲ, ମୁଁ ଆସି ସେ ସୁଖରେ ବାଧା ଦେଲି ପରା ? ତେବେ ମୁଁ ଯାଉଛି—

( ପ୍ରସ୍ଥାନୋଦ୍ୟତ ହେଲାକ୍ଷଣି ବିଷ୍ଣୁପ୍ରିୟା ଯାଇ ହାତ ଧରି ପକାଇଲେ )

ଓଃ, ମୋର ଚାଲିଯିବା ତୁମର ଇଚ୍ଛା ନୁହେଁ । ଆଉ ମୁଁ ବସୁଛି ତେବେ । (ଉପବେଶନ କଲେ)

ବାଃ, ମୁଁ ବସିବି ଆଉ ତୁମେ ସେଠି ଅଲଗା ହୋଇ ଛିଡ଼ା ହୋଇଥିବ ଏ କପରି ବିଚାର ?

( ପୁଣି ଉଠିଯାଇ ବିଷ୍ଣୁପ୍ରିୟାଙ୍କର ହାତ ଧରି ଖଟ ଉପରେ ବସାଇଲେ ଓ ନିଜେ ଉପବେଶନ କଲେ )

(କିଛିକ୍ଷଣ କାଳ ଉଭୟେ ନୀରବ ରହିଲେ)

ଗୌର—( ଗମ୍ଭୀର ଭାବରେ ) ତୁମକୁ ଗୋଟିଏ କଥା ପଚାରିବି, ସତ୍ୟ କହିବ ତ ?

(ବିଷ୍ଣୁପ୍ରିୟା ଗୌରଙ୍କ ବଦନକୁ ଚାହିଁ ରହିଲେ)

ଆଚ୍ଛା ବିଷ୍ଣୁ, ତୁମଠାରେ ଆଜିକାଲି କି ପ୍ରକାର ଗୋଟାଏ ପରିବର୍ତ୍ତନ ଲକ୍ଷ୍ୟ କରୁଛି ।

ବିଷ୍ଣୁ—କାହିଁ ? ନା । (ଅଧୋବଦନରେ ରହିଲେ)

ଗୌର—ମୁଖମଣ୍ଡଳ ମନୁଷ୍ୟ ମନର ଦର୍ପଣ । ମନର ଭାବ ମୁଖ ମଣ୍ଡଳରେ ସ୍ପଷ୍ଟ ଫୁଟି ଉଠେ । ତୁମର ଚିରପ୍ରଫୁଲ୍ଲ ମୁଖମଣ୍ଡଳରେ କିଏ ଯେପରି କି ବିଷାଦର କାଳିମା ବୋଳି ଦେଇଛି । କି ଦୁଃଖ ବିଷ୍ଣୁ ?

ବିଷ୍ଣୁ—ମୁଁ ତ କିଛି ବୁଝି ପାରୁ ନାହିଁ ।

ଗୌର—ଲୁଚାଇଲେ କଣ ହେବ, ତୁମର ଚକ୍ଷୁ ଦୁଇଟି ତ ପ୍ରାଣର କଥା କହି ଦେଉଛି ବିଷ୍ଣୁ ।

ବିଷ୍ଣୁ—ସ୍ତ୍ରୀ ଲୋକଙ୍କର ପୁଣି ସୁଖ ଦୁଃଖ କଣ, ନିଜର କ'ଣ ? ସେ ତ କେବଳ ଆଉ ଜଣଙ୍କର ଛାୟା ମାତ୍ର । ତୁମର ଯଦି କିଛି ପରିବର୍ତ୍ତନ ହୋଇଥିବ ତେବେ ମୋର ବା ହୋଇଥିବ ।

ଗୌର—ମୋର ? ମୋର ? ହଁ ମୋର ଟିକିଏ ପରିବର୍ତ୍ତନ ହୋଇଛି ; ଟିକିଏ କାହିଁକି, ଘୋର ପରିବର୍ତ୍ତନ ହୋଇଛି

ମୁଁ ଆଜ ବର୍ତ୍ତମାନ ବିଦ୍ୟାଭିମାନୀ ଉଦ୍ଧତ ନିମାଇଁ ପଣ୍ଡିତ ନୁହେ—କୃଷ୍ଣଦାସାନୁଦାସ ଦୀନହୀନ କାଙ୍ଗାଳୀ । କୃଷ୍ଣ ଧ୍ୟାନ, କୃଷ୍ଣ ଜ୍ଞାନ, କେବଳ କୃଷ୍ଣ ଚିନ୍ତା ଛଡ଼ା ମୋର ଆଜ ଅନ୍ୟ କଥା ଭାବିବାର କ୍ଷମତା ନାହିଁ । ସେହି ନବୀନ ନଟବର, ନବଘନସୁନ୍ଦର, ମୋହନ ମୁରଲୀଧର, ବ୍ରଜକିଶୋର ମୋ ପ୍ରାଣକୁ ଅବିରତ ଆକୁଳ କରୁଛି । ସେହି ମୋର ପ୍ରାଣବଲ୍ଲଭ, ମୋ ଜୀବନସର୍ବସ୍ୱ । ସଂସାରରେ ଅଳୀକ ସ୍ତ୍ରୀ ପୁରୁଷ ଭେଦବୁଦ୍ଧି କେବଳ ମାୟା । ଜୀବନ ମାତ୍ରେହିଁ ପ୍ରକୃତି, ସେହି ଏକା ପରମ ପୁରୁଷ । ଜାଗତିକ ପ୍ରେମ ପ୍ରେମ ନୁହେ, କାମର ନାମାନ୍ତର ମାତ୍ର । ଏଥିରେ ଆନନ୍ଦ ନାହିଁ, ପୂର୍ଣ୍ଣତା ନାହିଁ, ତୃପ୍ତି ନାହିଁ । ମାତା, ପିତା, ପୁତ୍ର, କନ୍ୟା, ସ୍ୱାମୀ, ସ୍ତ୍ରୀ, କେବଳ ତାଙ୍କୁହିଁ ଲାଭ କରିବାର ସୋପାନ । ଏ ସମସ୍ତ ମିଥ୍ୟା ନୁହେ, ବିଚାର ନୁହେ— କିନ୍ତୁ ଅସାର ଅନିତ୍ୟ । ସେହି ଏକା ସାର, ସେହି ଏକା ନିତ୍ୟ । ସେ ମାଧୁର୍ଯ୍ୟର ପାରାବାର, ଆନନ୍ଦର ସୁଧାକର, ରସାମୃତର ଅକ୍ଷୟ ଉତ୍ସ । ସେହି ଶ୍ରୀଚରଣସେବା ମାନବ ଜୀବନର ପରମ ଉଦ୍ଦେଶ୍ୟ, ଚରମ ଲକ୍ଷ୍ୟ । ମାୟାଚ୍ଛନ୍ନ ଭ୍ରାନ୍ତ ଜଗତ ଜୀବ ଏହା ବୁଝିଲେ ନାହିଁ । ଏହି ଦୁଃଖ ଅହୋରାତ୍ର ମୋର ହୃଦୟରେ ଶୂଳବିଦ୍ଧ ବେଦନା ଦେଉଛି । ଏହି ଦୁଃଖରେ ମୋର ଅନ୍ତର ବିଦୀର୍ଣ୍ଣ ହେଉଛି ।

( ବିଷ୍ଣୁପ୍ରିୟା ରୋଦନ କରିବାକୁ ଲାଗିଲେ )

( ଗୌର କିୟତ୍କ୍ଷଣ ନୀରବ ରହି )

ପ୍ରିୟେ, ତୁମ୍ଭେ କାନ୍ଦୁଛ ନା କ'ଣ ? କି ଆଶ୍ଚର୍ଯ୍ୟ ! ସୁଖ-ଦୁଃଖବୋଧ କେବଳ ଅନୁଭୂତିର ବିକାର । ମନୁଷ୍ୟ ଚେଷ୍ଟା ଯତନ ଦ୍ୱାରା ତାହା ଜୟ କରିପାରେ । ତୁମେ ସେହି କ୍ଷୁଦ୍ର ସ୍ୱାର୍ଥରେ ଜଳାଞ୍ଜଳି ଦିଅ ; ଆତ୍ମ-ସୁଖ-ବାଞ୍ଛା ଦୂର କରି ଦେଇ ସେହି ଅଗାଧ ପ୍ରେମସିନ୍ଧୁରେ ନିମଗ୍ନ ହୁଅ ।

( ଶଚୀ ପ୍ରବେଶ କଲେ ଓ ବିଷ୍ଣୁପ୍ରିୟା ଉଠି ଛିଡ଼ା ହେଲେ )

ଶଚୀ— ବାପ ନିମାଇଁ, ମୁଁ ଶହେ ଥର ମନା କଲିଣି ଏପରି ବକ ବକ୍ କରନାହିଁ । ମୋ କଥା ତ ଶୁଣିଲୁ ନାହିଁ ।

ଗୌର—ହଁ ମା, ବକ ହେଲେ ମୋର ବାୟୁ ବିକାର ବଢ଼େ, କିନ୍ତୁ ମୋର ସେ କଥା ସବୁବେଳେ ମନେ ରହେ ନାହିଁ ; କେଁ କରିବି ? ମୁଁ ଆଉ କଥା କହିବି ନାହିଁ । ଚୁପ୍ ହୋଇ ରହିଲି । ( ଖଟ ଉପରେ ଶୋଇ ପଡ଼ିଲେ )

ଶଚୀ—ମା, ତୋତେ ଏତେ କରି ବୁଝେଇଲି । ତୁ ଟିକିଏ ବାରଣ କରି ପାରୁନାହୁଁ । ନେ, ଏହି ତେଲ ଟିକିକ ନେଇ ତା ତାଳୁରେ ମାଲିସ କରି ଦେବୁଟି ।

(ତୈଳ ପ୍ରଦାନ କଲେ ଓ ନିଷ୍କ୍ରାନ୍ତ ହେଲେ)

## ଦ୍ୱିତୀୟ ଦୃଶ୍ୟ

(ରାଜପଥ । ତର୍କରତ୍ନ ଓ ବିଦ୍ୟାବାଗୀଶ ପ୍ରବିଷ୍ଟ ହେଲେ)

ତର୍କରତ୍ନ—ହୁଁ, ବ୍ୟାପାର ଯେ ଗୁରୁତର ଏଥିରେ ସନ୍ଦେହ ନାହିଁ । କିନ୍ତୁ—କିନ୍ତୁ— (ମଥା କୁଣ୍ଡାଇବାକୁ ଲାଗିଲେ)

ବିଦ୍ୟା—କିନ୍ତୁ ଉପାୟ କଣ ?

ତର୍କରତ୍ନ—ଉପାୟ ଆଉ କଣ ? ବ୍ରାହ୍ମଣ ଧର୍ମ୍ମ ଲୁପ୍ତ ହେଉଛି । ଆର୍ଯ୍ୟସମାଜ ବିଧ୍ୱସ୍ତ ହେଉଛି । ବ୍ରାହ୍ମଣର ମର୍ଯ୍ୟାଦା ବିପର୍ଯ୍ୟସ୍ତ ହେଉଛି । ଏ ସମୟରେ ବ୍ରାହ୍ମଣ ଶକ୍ତିର ପୁନରୁତ୍‌ଥାନ ନ ହେଲେ ଆଉ ଉପାୟ କ'ଣ ?

ବିଦ୍ୟା—ନିମ୍ନଶ୍ରେଣୀୟ ଜନସାଧାରଣ ଯେ ସେଥିର ପକ୍ଷପାତୀ ଏକା ବ୍ରାହ୍ମଣ କ'ଣ କରିବ ?

ତର୍କରତ୍ନ—ବ୍ରାହ୍ମଣ କ'ଣ କରିବ ? ଆପଣ ବ୍ରାହ୍ମଣ ହୋଇ ଏକଥା କହୁଛନ୍ତି । ଆପଣାର ଶକ୍ତି ଆଜି ବ୍ରାହ୍ମଣ ଭୁଲି ଯାଇଛି ବୋଲି, ସନାତନ ଧର୍ମ୍ମର ଏ ଦୁର୍ଦ୍ଦଶା । ସେହି ପ୍ରଚ୍ଛନ୍ନ-ତେଜର ପୁନରୁଦ୍‌ବୋଧନ କର । ସେହି ସୁପ୍ତ ଶକ୍ତିକୁ ଜାଗରିତ କର । ଏକ ପ୍ରଚଣ୍ଡ ଫୁତ୍‌କାରରେ ଏ ସମସ୍ତ ବୈକ୍ଳବ୍ୟ ଭସ୍ମୀଭୂତ ହୋଇଯିବ । ଅନାଦି କାଳରୁ ବ୍ରାହ୍ମଣେ ଏ ହିନ୍ଦୁ ସମାଜକୁ ସ୍ୱୀୟ ପାଦତଳରେ ଚାପି ରଖିଛି—ଆଜି ସେହି ସମାଜ ବିପ୍ଲବବାଦୀର ଉତ୍ତେ-ଜନାରେ ବିଦ୍ରୋହୀ ହୋଇ ଉଠିବ, ଏହା କେଉଁ ବ୍ରାହ୍ମଣ ସନ୍ତାନ ସହ୍ୟ କରିବ ?

ବିଦ୍ୟାବାଗୀଶ—ମୋର ସନ୍ଦେହ ହେଉଛି ସେମାନେ କୌଣସି ପ୍ରକାରେ ଦୈବୀ ବଳରେ ବଳୀ, ନୋହିଲେ ଯବନ କାଜିକୁ କାବୁ କରି ଦେଲେ କପରି ? ଅତି ପାଷଣ୍ଡ ଜଗାଇ ମାଧାଇଙ୍କୁ ଶାସନ କଲେ କପରି ? ଆହୁରି ମଧ୍ୟ ଶ୍ରୀପାଳ, ଗୋପାଳ, ମୁକ୍ତି ପ୍ରଭୃତି କେତେ ଅଲୌକିକ କଥା ଲୋକେ ପ୍ରତ୍ୟକ୍ଷ କରୁଛନ୍ତି ।

ତର୍କରତ୍ନ—ସେ ସମସ୍ତ କିଛି ନୁହେଁ । ଇନ୍ଦ୍ରଜାଲିକ ମାୟା । ବ୍ରାହ୍ମଣର ଯଜ୍ଞୋପବୀତ ଆଗରେ ସେ ସବୁ କୁଆଡ଼େ ଉଡ଼ିଯିବ । ଅଶିକ୍ଷିତ ନୀଚ ଲୋକେ ସିନା ସେଥିରେ ଭୁଲିବେ । କାଜିର

ମୁଖ ବନ୍ଦ କରିବା ମଧ୍ୟରେ କିଛି ରହସ୍ୟ ଅଛି । ସମୟରେ ଉଦ୍‌ଘାଟିତ ହେବ । ଆଉ ଜଗାଇ ମାଧାଇ ଯେବେ ପ୍ରକାଶ୍ୟରେ ମଦ୍ୟପାନ କରି ବ୍ୟଭିଚାରପରାୟଣ ଥିଲେ ତାହା ବରଂ ଭଲ ଥିଲା, ବର୍ତ୍ତମାନ ଗୋପନରେ ତତୋଧିକ କରିବେ । କେବଳ ବାହାରିବରଣଟା ପାପପଥର ସୁବିଧା କରିଦେବ । ସମସ୍ତ ଭଣ୍ଡତା ହେ, ସମସ୍ତ ଭଣ୍ଡତା ।

ବିଦ୍ୟା—ଏହାର ତ ପୁଣି ପ୍ରତିବିଧାନ ଅଛି ।

ଚକ୍ରଧର—ଅବଶ୍ୟ ଅଛି, ଅବଶ୍ୟ ଅଛି । ରଜା ତ ବିଧର୍ମୀ । ସେଥିରେ କୌଣସି ଫଳ ନାହିଁ । ଆମ୍ଭେମାନେ ବର୍ତ୍ତମାନ ସମସ୍ତ ପଣ୍ଡିତମଣ୍ଡଳୀଙ୍କୁ ସମବେତ କରାଇ ଏହି ସାମାଜିକ ବିଶୃଙ୍ଖଳା ବିଷୟ ପକାଇବା ଏବଂ ଏହି ଭଣ୍ଡତପସ୍ୱୀ ବାଉଳ ବୈଷ୍ଣବଗୁଡ଼ାଙ୍କୁ ଜାତିଚ୍ୟୁତ କରିଲ ସମାଜରୁ ବହିଷ୍କୃତ କରାଇବା ।

ବିଦ୍ୟା—ଉତ୍ତମ ପ୍ରସ୍ତାବ, ଅତି ଉତ୍ତମ ପ୍ରସ୍ତାବ ।
ତେବେ ଶୁଭସ୍ୟ ଶୀଘ୍ରଂ—

( ପ୍ରସ୍ଥାନ )

ଚକ୍ରଧର—ହଁ, ହଁ, ଵଳମ୍ବେନାଳଂ ।

( ଛାତ୍ରଗଣ ପ୍ରବିଷ୍ଟ ହେଲେ )

ଚକ୍ରଧର—ଓଃ, ତୁମ୍ଭେମାନେ ମଧ୍ୟ ଆସିଛ ! ବେଶ୍, ବେଶ୍ । ଦେଖ ବ୍ରାହ୍ମଣ ସନ୍ତାନଗଣ ! କେତେଗୁଡ଼ାଏ ଧର୍ମ ବକ ମିଳି ବେଦ, ବିଧି, ଆଗମ ପଞ୍ଚଭର ମସ୍ତକ ଚର୍ବଣପୂର୍ବକ ସନାତନ ଧର୍ମ ଉଚ୍ଛନ୍ନ କରିବାକୁ ବସିଛନ୍ତି । ଏହାର ପ୍ରତିକାର ପାଇଁ ବିଶେଷ ତତ୍ପରତା ପ୍ରୟୋଜନ ।

ପ୍ରଥମ ଛାତ୍ର—କାହା କଥା କହୁଛନ୍ତି ?

ଚକ୍ରଧର—ବିଶ୍ୱମ୍ଭର ହେ ବିଶ୍ୱମ୍ଭର । ସେହି ଅର୍ବାଚୀନ ନିମାଇ ପଣ୍ଡିତ ଓ ତାହାର ସହଚରବୃନ୍ଦ । ତାଙ୍କୁ ବିଧିମତ ଶିକ୍ଷା ଦେବା ଉଚିତ ।

ଦ୍ୱିତୀୟ ଛାତ୍ର—ନବଦ୍ୱୀପର ଜନସାଧାରଣ ତାଙ୍କର ଏକାନ୍ତ ବଶୀଭୂତ ।

ଚକ୍ରଧର—ତୁମ୍ଭମାନଙ୍କୁ ମାରିବ ଓ ନିଷ୍କର୍ମା ଦେଖି ।

ତୃତୀୟ ଛାତ୍ର—ଆପଣଙ୍କ ପରି ସମାଜର ମୁଖ୍ୟ ବ୍ୟକ୍ତିମାନେ ଥାଉଁ ଥାଉଁ ଆମ୍ଭମାନଙ୍କଦ୍ୱାରା କି ଭଲ ପ୍ରତିବିଧାନ ସମ୍ଭବ ?

ଚକ୍ରଧର—ଆମ୍ଭମାନଙ୍କ କାର୍ଯ୍ୟ ତ ଆମ୍ଭେମାନେ କରିବୁଁ ; କିନ୍ତୁ ତୁମ୍ଭମାନଙ୍କ କର୍ତ୍ତବ୍ୟ ତୁମ୍ଭେମାନେ କର । ଧର୍ମ ରକ୍ଷା ନିମନ୍ତେ କିଛି ଦୁଃଖଣୀୟ ନୁହେ, କିଛି ବିଗର୍ହିତ ନୁହେ । ବ୍ରାହ୍ମଣ ଯେଉଁ ବଜ୍ରମୁଷ୍ଟିରେ ସମାଜକୁ ବାନ୍ଧି ସ୍ୱୀୟ ଅଙ୍ଗୁଳି ସଙ୍କେତରେ ଯଥେଚ୍ଛା ଚାଳନ କରୁଥିଲା, ସେହି ବନ୍ଧନ ଶିଥିଳ ହୋଇ ଯିବାରୁ ଅନର୍ଥ । (ପ୍ରସ୍ଥାନ)

୪ର୍ଥ ଛାତ୍ର—ଚକ୍ରଧର ପଣ୍ଡିତ କ'ଣ ସଙ୍କେତ ଦେଇଗଲେ କିଛି ବୁଝିଲଟିକି ?

୧ମ ଛାତ୍ର—ବାଃ, ନ୍ୟାୟ ଶାସ୍ତ୍ର ଅଧ୍ୟୟନ କରି ଏହି ଟିକକ ଆଉ ବୁଝିବାକୁ ବାକି ରହିଲା ପରା ।

୨ୟ ଛାତ୍ର—କିନ୍ତୁ ଏସବୁ ଗୁରୁତର ବିଷୟରେ ଆମ୍ଭମାନଙ୍କ ପରି ଚେଙ୍ଗ୍ ଆମାନେ କ'ଣ କରିବେ ମୁଁ ବୁଝି ପାରୁନାହିଁ ।

୩ୟ ଛାତ୍ର—ଆମ୍ଭମାନଙ୍କ ସାହାଯ୍ୟରେ ନେତାମାନଙ୍କ କାର୍ଯ୍ୟଭାର ଅନେକ ଲଘବ ହୋଇଯିବ । ସେମାନେ ଯାହା କରିବେ କରନ୍ତୁ; କିନ୍ତୁ ଆମ୍ଭେମାନେ ଲୋକମାନଙ୍କ ନିକଟରେ ନିମାଇଁ ପଣ୍ଡିତ ଓ ତାଙ୍କ ଅନୁଚରଙ୍କ ଧର୍ମଦ୍ରୋହିତା ପ୍ରମାଣ କରାଇବା, ନିନ୍ଦା ଗାୟନ କରିବା, କୁତ୍ସା ରଟନା କରିବା । ଚରିତ୍ରର ନଷ୍ଟହେଲା ହେଲେ ସେମାନେ ଜବଦ ହୋଇଯିବେ ଅଥବା ଗାଡ଼ ପଳାଇବେ ।

୪ର୍ଥ ଛାତ୍ର—ଏ ସବୁରେ କିଛି ଫଳ ନ ହେଲେ ?

ପ୍ରଥମ ଛାତ୍ର—ଶେଷରେ "ମୂର୍ଖସ୍ୟ ଲାଠ୍ୟୌଷଧି" ।

୪ର୍ଥ ଛାତ୍ର—ଜାଣିଛ ନା ନିମାଇ ପଣ୍ଡିତ ମନ୍ତ୍ରସିଦ୍ଧ ପୁରୁଷ ।

ପ୍ରଥମ ଛାତ୍ର—ଓଃ, ତାହା ମୁଁ ଜାଣେ । କାମରୂପ କାମାକ୍ଷା ଯାଇ ଦୁଇ ଚାରିଟା ଗାରଡ଼ ମନ୍ତ୍ର ଶିଖି ଆସିଛନ୍ତି ।

୪ର୍ଥ ଛାତ୍ର—ଆଉ ସେ ଯେଉଁ ଅବଧୂତ ଆସିଛନ୍ତି ତାଙ୍କ ଜନ୍ମସ୍ଥାନ ମଧ୍ୟ ସେହି ଆଡ଼େ କୁଆଡ଼େ ।

ପ୍ରଥମ ଛାତ୍ର—ତାହା ଠିକ୍ । ସେହି ଆସିଲା ଦିନଠାରୁ ସେ ଦଳର ଉଦ୍ୟମ ବୃଦ୍ଧି ପାଇଛି । କିନ୍ତୁ ସେସବୁ ଭେଳକିବିଦ୍ୟା ମୁଁ ଖାତିର କରେ ନାହିଁ ।

୨ୟ ଓ ୩ୟ— ନିଶ୍ଚୟ ନିଶ୍ଚୟ ।

( ୧ମ, ୨ୟ, ୩ୟ, ପ୍ରସ୍ଥାନ )

୪ର୍ଥ ଛାତ୍ର—ତଥାପି ବୁଝିସୁଝି କାର୍ଯ୍ୟ କରିବା ଉଚିତ । ଆମର ଅଦା ବେପାରି ହୋଇ ଜାହାଜର ଖବର ନେବା ପ୍ରୟୋଜନ କ'ଣ ? ( ପ୍ରସ୍ଥାନ କଲେ )

## ତୃତୀୟ ଦୃଶ୍ୟ

[ ଶ୍ରୀବାସ ମନ୍ଦିର । ଶ୍ରୀବାସ ଓ ଅଦ୍ୱୈତ ]

ଶ୍ରୀବାସ—ଆଚାର୍ଯ୍ୟ, ନବଦ୍ୱୀପରେ ଘର କରି ରହିବା ଦୁଷ୍କର ହୋଇ ପଡ଼ିଲା । ଆପଣ ସମୟ ସମୟରେ ଏଠାକୁ ଆସି ଧିକି ଚାଲି ଯାଉଛନ୍ତି ବୋଲି କିଛି ବୁଝି ପାରୁ ନାହାନ୍ତି ।

— ୪୩୩ —

କିନ୍ତୁ ଏଠାରେ ଯେ ସର୍ବଦା ବାସ କରୁଛି ସେ କିପରି ନିଶ୍ଚିନ୍ତ ରହନ୍ତୁ ।

ଅଦ୍ୱୈତ—କାହିଁକି ପଣ୍ଡିତ ମହାଶୟ, ଜନସାଧାରଣ ତ ସମସ୍ତେ ଆମ୍ଭମାନଙ୍କର ଅନୁକୂଳ । ଗୌରାଙ୍ଗ କୃପାବଳରେ ରାଜ-ଭୟ ତିରୋହିତ ହୋଇଛି । ଆଉ କ'ଣ ?

ଶ୍ରୀବାସ—କିନ୍ତୁ ବିଦ୍ୟାଭିମାନୀ ପଣ୍ଡିତମଣ୍ଡଳୀ ଓ ତାଙ୍କ ପଛେ ପଛେ ନବଦ୍ୱୀପର ବ୍ରାହ୍ମଣସମାଜ ଯେ ଆମକୁ ପ୍ରାୟ ଏକ-ଘରିଆ କଲେଣି । କହିବି କ'ଣ ଆଚାର୍ଯ୍ୟେ, ପାଷଣ୍ଡଗଣ ଆମ୍ଭମାନଙ୍କୁ ଯାହା କଲେ କଲେ, ସ୍ୱୟଂ ଶଚୀନନ୍ଦନଙ୍କର ଯେଉଁଭଳି ନିନ୍ଦା କରୁଛନ୍ତି, ତାହା ଅସହ୍ୟ ।

ଅଦ୍ୱୈତ—ପଣ୍ଡିତ ମହାଶୟ, ଏପରି ହେବାଟା ସ୍ୱାଭାବିକ । ସବୁ ଯୁଗରେ ସବୁ କାଳରେ ଏହିପରି ହୋଇଛି । ଧର୍ମରକ୍ଷା ନିମନ୍ତେ ଯେତେବେଳେ ଶ୍ରୀ ଭଗବାନ ଜଗତରେ ସାକ୍ଷାତ ଅବତୀର୍ଣ୍ଣ ହୁଅନ୍ତି ପାଷଣ୍ଡଗଣ ସେତେବେଳେ ତାଙ୍କ ବିରୁଦ୍ଧା-ଚରଣ କରି ଥାଆନ୍ତି । ମୁଁ ଶୁଣିଛି ବୁଦ୍ଧ, ଯିଶୁ, ମହମ୍ମଦଙ୍କ ସମୟରେ ଏହା ହୋଇଥିଲା । ଏପରି କି ସ୍ୱୟଂ ଶ୍ରୀକୃଷ୍ଣଙ୍କ ସହିତରେ କଂସ, ଜରାସନ୍ଧ, ଶିଶୁପାଳ ପ୍ରଭୃତି ଦ୍ରୋହା-ଚରଣ କରିଥିଲେ । ପଣ୍ଡିତେ, ଏହା ମଧ୍ୟ ତାଙ୍କର ଲୀଳା । ତାଙ୍କର ଅବତାରର ମାହାତ୍ମ୍ୟ ବୃଦ୍ଧି କରାଇବା ପାଇଁ କେତେ ଜଣଙ୍କୁ ଶତ୍ରୁଭାବରେ ପଠାଇବା ମଧ୍ୟ ତାଙ୍କର କୌଶଳ । ଏଥିଲାଗି ବ୍ୟସ୍ତ ହେବେ ନାହିଁ ।

ଶ୍ରୀବାସ—ତଥାପି ଆଚାର୍ଯ୍ୟେ, ଧୈର୍ଯ୍ୟ ଧରି ରହିବା କଠିନ ହୋଇ ପଡ଼ୁଛି । ବାଟ ଘାଟରେ, ଦୋକାନ ପାଟରେ ଦୁଧା ଅଳ୍ପ-ବୟସ୍କ ପଢ଼ୁଆ ଛାତ୍ରଗଣ ନାନାପ୍ରକାର ବିଦ୍ରୂପାତ୍ମକ କଥା କହୁଛନ୍ତି । ଏଥିର ପ୍ରତିକାର କ'ଣ ?

ଅଦ୍ୱୈତ—କି ଆଶ୍ଚର୍ଯ୍ୟ ! ଆପଣ ପାଗଳ ହେଲେ ନା କ'ଣ ! ପ୍ରତିକାର କ'ଣ ଆମ୍ଭମାନଙ୍କ ହାତରେ ଅଛି ? ପ୍ରତିକାରର ପ୍ରୟୋଜନ ଥିଲେ ସେହି କରିବେ । ତାଙ୍କଠାରେ ସବୁ ସମର୍ପଣ କରି ନିଶ୍ଚିନ୍ତ ରହନ୍ତୁ ।

( ଶ୍ରୀ ଗୌରାଙ୍ଗ ପ୍ରବିଷ୍ଟ ହେଲେ )

ଗୌର—ଦୁଇ ବୃଦ୍ଧ ମିଳି କି କଥା ପଡ଼ିଛି କି ଆଚାର୍ଯ୍ୟେ ?

ଶ୍ରୀବାସ—ଏହି ନିନ୍ଦୁକମାନଙ୍କ କଥା । ସେମାନଙ୍କ ପ୍ରଭାବ ବଡ଼ ଅସହନୀୟ ହୋଇଛି ।

ଗୌର—ଓଃ, ଏହି କଥା ! ମୁଁ ମଧ୍ୟ ତାହା ବେଶ୍ ବୁଝିଲିଣି । ବିଷୋଦ୍‌ଗାରଣ କରିବା ସେପରି ସ୍ୱଭାବ ! କିନ୍ତୁ ଅତି ହେୟଜ୍ଞାନରେ ମୁଁ ସେସବୁ ଅବହେଳା କରେ । ମହତ ବ୍ୟକ୍ତି ସାମାନ୍ୟ ନିନ୍ଦା ପ୍ରଶଂସା ପ୍ରତି ଦୃକ୍‌ପାତ ନ କରି ଆପଣାର କର୍ତ୍ତବ୍ୟ କରିଯାଏ । ନିନ୍ଦୁକମାନେ କାଳକ୍ରମରେ ଆପଣାର ଅସାରତା ବୁଝି ଆପେ‌ଆପେ ବିରତ ହୋଇ ରହିବେ ବୋଲି ମୋର ବିଶ୍ୱାସ ।

ଅଦ୍ୱୈତ—କିନ୍ତୁ ଖଳର ସ୍ୱଭାବ ଠିକ୍ ତହିଁର ବିପରୀତ । ପ୍ରତି-ପକ୍ଷକୁ ନିଶ୍ଚେଷ୍ଟ ଦେଖିଲେ ସେମାନଙ୍କର ସାହସ ବୃଦ୍ଧି ପାଇବ ଓ ସେମାନେ ଉତ୍ତରୋତ୍ତର ଅଧିକ ଅନିଷ୍ଟ କରିବାକୁ ଚେଷ୍ଟିତ ହେବେ । ଏତଦ୍ଦ୍ୱାରା ସଂସାରରେ ସେମାନେ ପାପରାଶିର ସୃଷ୍ଟି କରିବେ ଓ ନିଜେ ଯେଉଁ ମହାପାପରେ ମଗ୍ନ ହେବେ ସେଥିପାଇଁ ଦାୟୀ କିଏ ବିଶ୍ୱମ୍ଭର ଠାକୁର ?

ଗୌର—ତେବେ କ'ଣ କରିବାକୁ କହୁଛନ୍ତି ଆଚାର୍ଯ୍ୟେ ?

ଅଦ୍ୱୈତ—ଏ କଥା ଜାଣିଥାଅ ଯେ ନିଷ୍କ୍ରିୟ ହୋଇ ପାପର ପ୍ରଶ୍ରୟ ଦେବା ଓ ପାପୀର ସାହଚର୍ଯ୍ୟ କରିବା ଉଭୟେ ସମାନ । ଏହାର ପ୍ରତିବିଧାନ କରିବାକୁ ହେବ ।

ଗୌର—ବୁଝିଲି ଆଚାର୍ଯ୍ୟେ, ପ୍ରତିବିଧାନ କରିବା ଧର୍ମ । କିନ୍ତୁ ପାପୀକୁ ପାପ କରିବା ନିମନ୍ତେ ସୁବିଧା ଦେଇ ତହିଁପରେ ତାର ପ୍ରତିବିଧାନ କରିବାଠାରୁ ଆଉ ଗୋଟିଏ ମହତ୍ତର ଧର୍ମ ଅଛି । ତାହା ଆତ୍ମତ୍ୟାଗ । ଦୁଷ୍କୃତର ଦମନ ଚିର ପ୍ରଚଳିତ ପ୍ରଥା ସତ୍ୟ; କିନ୍ତୁ ଦମନଦ୍ୱାରା ପାପ ଏକାବେଳକେ ଲୋପ ପାଏ ନାହିଁ; ଆଉ ମଧ୍ୟ ଦମନ-କାରୀକୁ ହିଂସାର ଆଶ୍ରୟ କରି ପୁନରାୟ ସେହି ପାପରେ ଲିପ୍ତ ହେବାକୁ ପଡ଼େ । ତ୍ୟାଗର ଆଦର୍ଶ ଅତି ମହାନ୍, ଅତି କାର୍ଯ୍ୟକର । ପର ପାଇଁ ଆପଣାର ସ୍ୱାର୍ଥ ବଳି ପ୍ରଦାନ କରି ପ୍ରେମ ମନ୍ତ୍ରରେ ଜଗତକୁ ଜୟ କରିବା କେତେ ଉଚ୍ଚ, କେତେ ସୁନ୍ଦର, କେତେ ସହଜ !

ଅଦ୍ୱୈତ—ପାଗଳ ଠାକୁର ହେ, ତୁମ୍ଭ କଥାର ମର୍ମ ଏ ବୃଦ୍ଧ କିଛି ଗ୍ରହଣ କରିବାକୁ ଅକ୍ଷମ ।

ଗୌର—କାହିଁକି, ଏ ତ ଅତି ସହଜ କଥା । ପ୍ରେମ ମନୁଷ୍ୟର ସ୍ୱାଭାବିକ ଧର୍ମ । ପ୍ରୀତିରେ ଜଗତର ସୃଷ୍ଟି ଓ ବୃଦ୍ଧି, ହିଂସାରେ କ୍ଷୟ । ପ୍ରୀତିର ଜୟ ସର୍ବଶ୍ରେଷ୍ଠ ଓ ସ୍ଥାୟୀ ଜୟ । କିନ୍ତୁ ସ୍ୱାର୍ଥ ଏହି ପ୍ରୀତିର ପ୍ରଧାନ ପ୍ରତିବନ୍ଧକ । ଏହି ସ୍ୱାର୍ଥର ଯେତିକି ବିଲୋପ, ପ୍ରୀତିର ସେତିକି ଉତ୍କର୍ଷ ସାଧନ । ଜୀବହିତରେ ଆତ୍ମୋତ୍ସର୍ଗ କରି ଦେଖିବ ଏ ଜଗତ ପ୍ରେମର ସ୍ୱର୍ଗରାଜ୍ୟରେ ପରିଣତ ହେବ । ଆଖି ଆଗରେ ତୃପ୍ତି ଓ ଆନନ୍ଦର ଅକ୍ଷୟ ଉତ୍ସ ପ୍ରବାହିତ ହୋଇଯିବ । ( ପ୍ରସ୍ଥାନ )

ଶ୍ରୀବାସ—ଆଶ୍ଚର୍ଯ୍ୟ, ପ୍ରଭୁଙ୍କର ଭାବ ଦେଖି ମୋ ମନରେ ଭୟ ଜାତ ହେଉଛି ।

ଅଦ୍ୱୈତ—ଭୟର ତ କିଛି କାରଣ ନାହିଁ ପଣ୍ଡିତେ । ପ୍ରଭୁ ଆମ୍ଭର ଜୀବ ଉଦ୍ଧାର ନିମନ୍ତେ ପ୍ରେମାବତାର ଗ୍ରହଣ କରିଛନ୍ତି । ସେହି ପ୍ରେମ ପ୍ରକଟାଇବା ପାଇଁ ନୂତନ ଲୀଳାର ଅଭିନୟ ହେବ । ଏହା ତାହାର ସୂଚନା ମାତ୍ର ।

ଶ୍ରୀବାସ—ଇଚ୍ଛାମୟ, ତୋର ଇଚ୍ଛା କ୍ଷୁଦ୍ର ମାନବ ବୁଦ୍ଧିର ଅଗୋଚର ।

ଅଦ୍ୱୈତ—ଥାଉ, ଥାଉ, ଆସ ପଣ୍ଡିତେ ସନ୍ଧ୍ୟା ଆରତିକି ଓ ନିତ୍ୟ ସଂକୀର୍ତ୍ତନର ଆୟୋଜନ କରିବା ।

## ଚତୁର୍ଥ ଦୃଶ୍ୟ

[ ଗଙ୍ଗାଘାଟର ପଥ—ଜଣେ ନାଗରିକ ଗଡ଼ୁ ଧରି ସ୍ନାନ କରିବାକୁ ଯିବା ସମୟରେ ଅପର ଦିଗରୁ ଅନ୍ୟ ଜଣେ ପ୍ରବିଷ୍ଟ ହେଲେ ]

୨ୟ ନାଗରିକ—କହୋ, ମହାଜନ ପୁଅ, ଏତେବେଳେ ଏ ବେଶ ଯେ ?

୧ମ ନାଗରିକ—( ହସି ) ହଁ, ହଁ,—ମୁଁ ତ ପ୍ରାୟ ପ୍ରତିଦିନ ଏତିକି ବେଳେ ମା ଗଙ୍ଗାରେ ବୁଡ଼ିଟାଏ ମାରି ଦେଇ ଯାଏଁ ।

୨ୟ ନାଗ—ସତେ ନା ? ଏମିତି ଗତ କେଉଁ ଦିନୁ ହେଲାଣି କି ?

୧ମ ନାଗ—ଆଉ ମତ ଗତ ଏଥିରେ କ'ଣ ? ଦିନ ଯାଉଛି ନା ରହୁଛି କହିଲ ? ଦେଖି ଦେଖି ଆସି ଦିନ ତ ସରି ଆସିଲା; କେଉଁ ଦିନ ଅଜାଣତରେ ଆସି ହାବୋଡ଼ ଯିବ । ଆଉ କ'ଣ କହୁଛ ।

୨ୟ ନାଗ—ବେଶ୍, ବେଶ୍,—ଭଲ କରିଛ—ବେଳ ଥାଉଁ ଥାଉଁ ଭବିଷ୍ୟତ ପାଇଁ ଜମା କରି ରଖୁଛ । ଏ ତ ଅସଲ ହିସାବୀ ଲୋକର କାମ ।

୧ମ ନାଗ—ଆରେ ନାହିଁ ହୋ — ଦିନଯାକ ତ କେତେ ପାପ କରିବାକୁ ପଡ଼ୁଛି, କେତେ ମିଛ କହିବାକୁ ହେଉଛି;— ଦିନ ଶେଷରେ ଗଙ୍ଗା ଜଳରେ ସ୍ନାନଟା ସାରି ଆସିଲେ ଆଉ ଦୁଇ ପଦ ନାମ ଗାଇଦେଇ ପକେଇଲେ ଆପଣା ମନଟା ତ ଟିକିଏ ପବିତ୍ର ହୁଏ ।

୨ୟ ନାଗ—ଓହୋ ! ଠିକ୍ ଠିକ୍,—ଏବେ ବୁଝିଲି । ରାଜ୍ୟଯାକ ପାପ କରି ଶେଷରେ ମା ଗଙ୍ଗା ମୁଣ୍ଡରେ ଢାଳିଦେଇ ଦେଇ ଆପେ ଖଲାସ । ଆଉ ଯେତେ ମିଛ ସତ କହିବ, କହିଯାଅ —କେବଳ ଦୁଇ ଚାରିଥର "ହରେ କୃଷ୍ଣ" "ହରେ କୃଷ୍ଣ" ବକି ଗଲେ ସବୁ ଭସ୍ମ ହୋଇଗଲା—ବାସ୍ ! ଏଇ ତ ?

୧ମ ନାଗ—ଗଙ୍ଗା ଜଳ ବା ହରି ନାମର ସେ ମହାତ୍ମ୍ୟ, ସେ କ୍ଷମତା ଅଛି ସତ; ତାହା ବୋଲି ଯେ ସେହି ଭରସାରେ ଜାଣି ଜାଣି ପାପ କରେ ସେ ମହା ପାଷଣ୍ଡ ।

୨ୟ ନାଗ—ଆଚ୍ଛା, ମୁଁ ଦେଖୁଛି, ଏସବୁ ଚାଲିଚଳଣି, ଢଙ୍ଗରଙ୍ଗ । ତୁମେ ସେହି ପାଗଳା ପଣ୍ଡିତ ଆଉ ତାଙ୍କ ଭକ୍ତଗୁଡ଼ାଙ୍କ ପାଲରେ ପଡ଼ିଲଣି । କିନ୍ତୁ ବାବା, କହି ଦଉଛି ଏକା ସା-ବ-ଧା-ନ !

୧ମ ନାଗ—ସେ ଭଳି ମହାପୁରୁଷଙ୍କ ନାମରେ ଯେ କୁତ୍ସା ରଟନା କରେ ସେ ନିନ୍ଦକ ସହିତ ବାକ୍ୟାଳାପ କରିବା ମହାପାପ ।
( ଯିବାକୁ ଉଦ୍ୟତ ହେଲେ )

୨ୟ ନାଗ—ରାଗିଲ କି ମହାଜନ ପୁଅ, ନାହିଁ, ନାହିଁ—ମୁଁ ଖାଲି ଟିକିଏ ଗେହ୍ଲା ହଉଥିଲି । ଶୁଣ, ଶୁଣ, ଆଉ ଗୋଟିଏ କଥା ।

୧ମ ନାଗ—କ'ଣ କହିବ କହ, ମୋର ଅନେକ କାର୍ଯ୍ୟ ଅଛି ।

୨ୟ ନାଗ—ତାହା ତ ମୁଁ ବୁଝି ପାରୁଛି ଠିକ୍ ; ଶ୍ରୀବାସ ପଣ୍ଡିତଙ୍କ ଘରଠେଇଁକି ଯିବ ତ ?

୧ମ ନାଗ—ହଁ, ସେଠିକି ଯିବାକୁ ହେବ ।

୨ୟ ନାଗ—ଆଚ୍ଛା, ସେଠି କ'ଣ ହୁଏ ନିତ ନିତ ସନ୍ଧ୍ୟା ବେଳରେ ?

୧ମ ନାଗ—ନାମ ସଂକୀର୍ତ୍ତନ ଓ ହରି କଥା ।

୨ୟ ନାଗ—ସେ ତ ଖୁବ୍ ଭଲ କଥା ; କିନ୍ତୁ ସେଥିପାଇଁ ଏତେ କବାଟକିଳା କାହିଁକି ?

୧ମ ନାଗ—ନାହିଁତ ; ପ୍ରଥମେ ପ୍ରଥମେ ବହିର୍ମୁଖ ଲୋକଙ୍କ ମେଳରେ ବିଘ୍ନ ହେବ ବୋଲି ନିମାଇଁ ପ୍ରଭୁ କେବଳ ଅନ୍ତରଙ୍ଗ ଭକ୍ତମାନଙ୍କୁ ନେଇ କୀର୍ତ୍ତନ କରୁଥିଲେ ; କିନ୍ତୁ ଅବଧୂତ ପ୍ରଭୁ ସେ ପ୍ରଥା ଉଠାଇ ଦେଲେଣି । ବର୍ତ୍ତମାନ ଆଚଣ୍ଡାଳ ସମସ୍ତଙ୍କୁ ମୁକ୍ତଦ୍ୱାର ।

୨ୟ ନାଗ—ସତେ, ସତେ, ତମର ଏହି ଅବଧୂତ ପ୍ରଭୁଟି କିଏ ?

୧ମ ନାଗ—ସେ ଜଣେ ସଂସାରତ୍ୟାଗୀ ସନ୍ନ୍ୟାସୀ ।

୨ୟ ନାଗ—ସନ୍ନ୍ୟାସୀ ସତ, କିନ୍ତୁ ରାଗିବ ନାହିଁ ଏକା, ବଦ୍ଧ ପାଗଳ ।

୧ମ ନାଗ—ହୋଇପାରେ,—ହରିନାମରେ ପାଗଳ ।

୨ୟ ନାଗ—ସେ ଯାହା ହେଉ, କିନ୍ତୁ ପାଗଳର କଥା ଲୋକେ ଶୁଣିବେ ବା କାହିଁକି, ନା ବିଶ୍ୱାସ କରିବେ କିପରି ?

୧ମ ନାଗ—ଯେ ତାଙ୍କର ପରି ପାଗଳ ହେବ ସେ ବିଶ୍ୱାସ କରିବ ।

୨ୟ ନାଗ—ତେବେ କ'ଣ ସଂସାର ଯାକ ସମସ୍ତେ ପାଗଳ ହେବେ ? ଆଚ୍ଛା ବ୍ୟବସ୍ଥା ତ ହେ ! ପୁଣି ସଂସାର ଚଳିବ କପରି ?

୧ମ ନାଗ—କୃଷ୍ଣ ସେବାରେ ଯେ ପାଗଳ ହେବ, ସେ ମାୟା ସଂସାରରେ ପଶିବ କାହିଁକି ? ସଂସାରକୁ ସେ ଜିଣି ଯିବ ଯେ !

୨ୟ ନାଗ—ଆଚ୍ଛା ତୁମ ନିମାଇ ପଣ୍ଡିତ ତ ପାଗଳ ହୋଇଛନ୍ତି, ଏଣେ ପୁଣି ସଂସାର ଆଡ଼ମ୍ବର ରଖିଛନ୍ତି ଠିକ୍ ଦୋରସ୍ତ ।

୧ମ ନାଗ—ସଂସାରରେ ଅଛନ୍ତି କିନ୍ତୁ ଅନାସକ୍ତ, ଉଦାସୀନ ପଦ୍ମ ପତ୍ରରେ ନୀର ପରି ।

୨ୟ ନାଗ—ହଁ, ସେସବୁ ଉପମା ତ ଢେର ଶୁଣାଅଛି ; କିନ୍ତୁ ବାହାରେ ସବୁବେଳେ ଭାବ ଦେଖାଇ, ଘର ଭିତରେ ସ୍ୱର୍ଗ ଅପ୍‌ସରା ପରି ଯୁବତୀ ସ୍ତ୍ରୀ ରହିବାଟା କିଭଳି ଅନାସକ୍ତି, ସେ କଥା ଆମେ ମୂର୍ଖ ଲୋକ ବୁଝି ପାରୁ ନାହୁଁ ।

୧ମ ନାଗ—ଯେ ନ ବୁଝେ ତାକୁ ତର୍କ ଯୁକ୍ତି କରି ବୁଝାଇବା ସହଜ ନୁହେ । ମୋର ବିଳମ୍ବ ହେଲା ମୁଁ ଯାଉଛି ।

୨ୟ ନାଗ—ରାଗି ଯାଅ ନାହିଁ, ଶୁଣ କୌଣସି ବିଷୟରେ ସନ୍ଦେହ ହେଲେ, ଖୋଳି ତାଡ଼ି ବୁଝିବା ତ ମଣିଷର ସ୍ୱଭାବ । ଭଲ କରି ବୁଝି ସନ୍ଦେହ ଦୂର କରିବା ସକାଶେ ଏତେ ପଚାରୁ ଥିଲି । ଆଚ୍ଛା, ଆମେ ଶ୍ରୀବାସ ପଣ୍ଡିତଙ୍କ ଘର କୀର୍ତ୍ତନ ସ୍ଥାନକୁ ଯାଇ ପାରିବୁଁ ତ ?

୧ମ ନାଗ—କାହିଁକି ତ, କାହାରିକୁ ବାରଣ ନାହିଁ ।

୨ୟ ନାଗ—ତେବେ ଆଜି ମୁଁ ତୁମରି ସାଙ୍ଗରେ ଯାଇପାରେ ?

୧ମ ନାଗ—ଆପତ୍ତି ନାହିଁ ।

୨ୟ ନାଗ—ହଉ ତେବେ, ସନ୍ଧ୍ୟାପରେ ମୁଁ ତମ ଘରଠେଇଁ ପହଞ୍ଚିବି; ସାଙ୍ଗ ହୋଇ ଯିବା ।

୧ମ ନାଗ—ହଉ । ( ପ୍ରସ୍ଥାନ )

୨ୟ ନାଗ—ସେଠିକି ନିଜେ ଯାଇ ଦେଖି ଆସିଲେ ରହସ୍ୟଟା ବେଳେ ମାଲୁମ ପଡ଼ିବ । (ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

( ବିଷ୍ଣୁପ୍ରିୟାଙ୍କ ଶୟନ କକ୍ଷ । ବିଷ୍ଣୁପ୍ରିୟା ଓ ମାଳିନୀ ଉପବିଷ୍ଟ )

ମାଳିନୀ—ମୁଁ ଯାହା କହୁଛି ସଖି, ମାନୁନାହିଁ—କିନ୍ତୁ ମୁଁ ସତ କହୁଛି, ଦିନେ ଏହିପରି ହେଇ ହେଇ ମରିଯିବୁ ଯେ !

ବିଷ୍ଣୁ—ମାଳୀ, ସତେ ଯଦି ଏ ଅଭାଗିନୀକୁ ମରଣ ହୁଅନ୍ତା ତେବେ—

ମାଳିନୀ—ତେବେ ଗୌର ନାଗର ତୋ ପାଇଁ କମିତ ଝୁରି ହୁଅନ୍ତେ ଦେଖନ୍ତୁ ନା ?

ବିଷ୍ଣୁ—ନାହିଁ, ନାହିଁ, ତେବେ ସେ କେଡ଼େ ସୁଖ ପାଆନ୍ତେ ; ମୁହିଁ ତ ତାଙ୍କର ଗଳଗ୍ରହ ହୋଇ ରହିଛି ।

ମାଳିନୀ—ବଡ଼ ଦୁଃଖ ହଉଛି ସଖି, ତୁ ତାଙ୍କୁ ଯାହା ଚିହ୍ନିଲୁ ନାହିଁ ! ହାତୁରେ କରମ, ମୁଁ ହେଇଥାନ୍ତି କି !

( ଶଚୀ ପ୍ରବିଷ୍ଟ ହେଲେ )

ଶଚୀ—ନିମେଇ ମୋର ଖାଇ ସାରିଲାଣି । ତୁ ଯା ମା' ସେଇ ଥାଳୀରେ ବସି ଦି'ଟା ତୁଣ୍ଡରେ ଦେଇ ଆ । ମୁଁ ପଛକେ ସେତେବେଳଯାକେ ତା ପାଖରେ ରହିଛି । ମା' ମାଳୀ, ତୁ ସବୁବେଳେ ଥାଉ ବୋଲି ମୋ ଗୃହରେ କେଡ଼େ ଦମ୍ଭ ଥାଏ ; କିନ୍ତୁ ଏହି ତୁ ଏଇକ୍ଷଣି ଚାଲିଯିବୁ, ଏକୁଟିଆ ମାଇପି ଘର—

ମାଳିନୀ—କ'ଣ କହୁଛ ମା ! ମୁଁ ଆଉ କ'ଣ ଜଗି ଶୁଅନ୍ତି ନା କ'ଣ ?

( ବିଷ୍ଣୁପ୍ରିୟା ନିର୍ଗତା ହେଲେ )

ଶଚୀ—ନା, ତା କହୁନାହିଁ ଯେ । ମୁଁ ତ ବୁଢ଼ୀ ଲୋକ, ବହୂ ତ ବହୂ ; କିଏ ଜଣେ ହୁସିଆର ମଣିଷ ଅଛି ନା । ତେହିଁକି ବାଇଦୂଆଟା କେତେବେଳେ କୁଆଡ଼କୁ ପଳେଇବ, କୁଆଡ଼େ ଯାଇ ନଈ ପୋଖରୀରେ ପଡ଼ିବ—ଏହି ଡରରେ ମତେ ରାତିଯାକ ନିଦ ହଉନାହିଁ ମା ।

ମାଳିନୀ—ପିଲା ନା ଛୁଆ ଯେ ଏମିତ ଜଗି ବସିଥିବ । ତାଙ୍କ ଆପଣା ଦାୟିତ୍ୱ କ'ଣ ସେ ବୁଝି ନାହାନ୍ତି ନା ?

ଶଚୀ—ବୁଝିଥିଲେ ଆଉ ଏତେ ଭାବନା କ'ଣ ଥାଆନ୍ତା କି ? ଆପେ କ'ଣ ଖାଇବାକୁ ଭଲ ଲାଗେ ସେ କଥା ତ ଜାଣେ ନାହିଁ, ହାତ ଧୋଇ ଆଜଯାଏ ଖାଇଲାଣି ନା ଆପେ !

ମାଳିନୀ—ହୁଁ—ଯାହା ହାତକୁ ଚଉଦ ବ୍ରହ୍ମାଣ୍ଡ ଚାହିଁ ବସିଛି, ସେ ପୁଣି ହାତ ଧୋଇ ଖାଇ ଜାଣେ ନାହିଁ !

ଶଚୀ—ସତ କହୁଛି ସିନା, ଏବେ ଦିନେ ଦିନେ ରାତି ଅଧିଆରେ ଉଠି କୁଆଡ଼େ ପଳେଇବ । ଖୋଜିଲା ବେଳକୁ ଯାଇ ଗଙ୍ଗାକୂଳରେ ବସିଥିବ, କି ମଶାଣି ପଦାରେ ବୁଲୁଥିବ । ସେଇ ଡରରେ ମୁଁ ରାତିଯାକ ଆଖି କଷା କରୁନାହିଁ ।

( ଗୌରାଙ୍ଗ ପ୍ରବିଷ୍ଟ ହେଲେ ଓ ମାଳିନୀ ନିର୍ଗତା ହେଲେ )

ଗୌର—ମା, ବଡ଼ କ୍ଳାନ୍ତ ବୋଧ ହେଉଛି ।

ଶଚୀ—ବାଇଆ ପାଗଳାଙ୍କ ପରି ରାତି ଦି'ପହରଯାକେ ନାଚି ନାଚି ଦେହରେ କ'ଣ ହାଲ ଅଛି !

ଗୌର—ହଁ, ରାତ ଢେର୍ ହେଲାଣି, ତୁ ଖାଇବୁ ଯା ।

ଶଚୀ— ହଁ, ମୁଁ ଯାଉଛୁ ବାବା, ବହୂ ଖାଇ ସାରିବଣି ; ତାକୁ ପଠେଇ ଦିଏ । ତୁ ଟିକିଏ ଥିର୍ ହୋଇ ଶୋଇପଡ଼ ।

( ପ୍ରସ୍ଥାନ କଲେ )

ଗୌର—ହେ କୃଷ୍ଣ, ଏ ମାୟାମୟ ସଂସାର ଜଞ୍ଜାଳରୁ କେବେ ଉଦ୍ଧାର କରିବ ? ଏହି ମିଛ ସ୍ନେହ, ମିଛ ପ୍ରୀତିରେ ପଡ଼ିରହି ତୁମର ଶାଶ୍ୱତ ପ୍ରେମକୁ ଭୁଲି ରହିଲି । ସେ ଦିନ ଆଉ କେତେ ବାକି—ଯେଉଁ ଦିନ ଏହି ଐହିକ ସୁଖ ସମ୍ପଦ ଅଳୀକ ମଣି ତୁମର ପରମ ପଦରେ ଲୀନ ହୋଇ ରହିବି । ( ଦୀର୍ଘଶ୍ୱାସ ପରିତ୍ୟାଗ କଲେ )

( ବିଷ୍ଣୁପ୍ରିୟା ଅର୍ଘ୍ୟସ୍ଥାଳୀ ଦେନି ପ୍ରବେଶ ହୋଇ ଶ୍ରୀ ଗୌରଚନ୍ଦ୍ରଙ୍କୁ ବନ୍ଦାପନା କଲେ ଓ ତାମ୍ବୁଳ ପ୍ରଦାନ କଲେ । ତଦନନ୍ତର ପ୍ରଣାମ କରି ପଦସେବାରେ ନିରତା ହେଲେ )

## ଷଷ୍ଠ ଦୃଶ୍ୟ

( ଯୋଗମାୟା ଦେବୀ ପ୍ରବେଶ ହେଲେ )

ଯୋଗମାୟା—ଆଜି ଜଗତ ପକ୍ଷରେ କେଡ଼େ ମହାର୍ଘ ଦିବସ । ନଦିଆବିହାରୀ ଗୌରହରି ଆଜି କଳିହତ ଜୀବର ଦୁର୍ଦ୍ଦଶା ହରଣ ନିମନ୍ତେ ଅନ୍ତରର ପ୍ରେମଧନ ଘରେ ଘରେ ବିତରିବା ପାଇଁ ଜନ୍ମଭୂମି ଓ ଆତ୍ମୀୟ ପରିଜନ ତ୍ୟାଗ କରି ଜଗତରେ ମହାତ୍ୟାଗର ଆଦର୍ଶ ଦେଖାଇବେ । ଯୁଗେ ଯୁଗେ ଗୋଲୋକ-ପତିଙ୍କର ଲୀଳାର ସାହଚର୍ଯ୍ୟ ମୋତେହିଁ କରିବାକୁ ହୁଏ । ଗୌରଚନ୍ଦ୍ରଙ୍କର ଏହି ଇଚ୍ଛା ନିର୍ବିଘ୍ନରେ ଘଟାଇ ଦେବା ମୋର କର୍ତ୍ତବ୍ୟ । ଏହି ହୃଦୟ ବିଦାରକ କଠୋର କର୍ତ୍ତବ୍ୟ ମୋତେ ହିଁ ସମ୍ପାଦନ କରିବାକୁ ହେବ । ହାୟ ହାୟ, ପୁତ୍ରଗତପ୍ରାଣା ଶଚୀ ଦେବୀଙ୍କର କୋଳରୁ ଏହି ସୁବର୍ଣ୍ଣ ପିତୁଳି ଗୌରମଣୀଙ୍କୁ କେଉଁ ପ୍ରାଣରେ ଛଡ଼ାଇ ନେବି ! ଗୋରାମୟ ଜୀବିତା ନବକିଶୋରୀ ବିଷ୍ଣୁପ୍ରିୟାଙ୍କୁ ପତି-ବିରହିଣୀ କରାଇ ସେ ଦୃଶ୍ୟ ମୁଁ କପରି ସହ୍ୟ କରିବି ! ହାୟ, ହାୟ, ଏ ଅଭାଗିନୀ ଭାଗ୍ୟରେ ଏହା ଅଛି । କିନ୍ତୁ ଉପାୟ କ'ଣ !

ମାୟାବିନୀ ନିଦ୍ରାଦେବୀଙ୍କୁ ସ୍ମରଣ କରେଁ ।

( ସ୍ମରଣର ଅଭିନୟ କଲେ ଓ ନିଦ୍ରାଦେବୀ ଆବିର୍ଭୂତା ହେଲେ )

ଯୋଗମାୟା—ଦେବି, ଜାଣିକି କଳିପାବନ ପ୍ରେମାବତାର ଶ୍ରୀ ଗୌରାଙ୍ଗ ଆଜି ଜଗଦୁଦ୍ଧାରଣ ନିମନ୍ତ ଭକ୍ତ ଭାବରେ ସ୍ୱୟଂ ଲୋକଶିକ୍ଷା ଦେବା ପାଇଁ ମାୟା ସଂସାର ତ୍ୟାଗ କରି ସନ୍ନ୍ୟାସ ବ୍ରତ ଧାରଣ କରିବାକୁ ଯିବେ । ସେଥିପାଇଁ ତୁମ୍ଭଙ୍କୁ ସ୍ମରଣ କଲି ।

ନିଦ୍ରା— ମହାଦେବି, ଆପଣ ତ ସବୁ ଯୁଗରେ ତାଙ୍କର ଲୀଳାର ଅନୁବର୍ତ୍ତିନୀ । ଏ ଦାସୀଙ୍କୁ ପୁଣି କି ନିରର୍ଥକ ସ୍ମରଣ କଲେ ଜାଣିନି ?

ଯୋଗମାୟା—ପ୍ରଭୁ ଗୋପନରେ ଗୃହ ତ୍ୟାଗ କରିବେ । ସୁତରାଂ ତାଙ୍କ ଯାତ୍ରାକାଳରେ ଯେପରି କୌଣସି ବିଘ୍ନ ନ ହୁଏ, ସେଥିପାଇଁ ତୁମ୍ଭେ ଗୃହମଧ୍ୟସ୍ଥ ସମସ୍ତଙ୍କୁ ଘୋର ନିଦ୍ରାରେ ଅଭିଭୂତ କରାଇ ଦେଇ ପ୍ରଭୁଙ୍କୁ ସଚେତନ କରାଇ ଦିଅ ।

ନିଦ୍ରା— ସେ ମାୟାର ଅଧୀତ ତାଙ୍କଠାରେ ତ ମୋର ଅଧିକାର ନାହିଁ, ମହାଦେବି !

ଯୋଗମାୟା—ତାହା ସତ୍ୟ ; କିନ୍ତୁ ଏ ଲୀଳାରେ ପ୍ରଭୁ ନିଜେ ଲୀଳା ଛଳରେ ଆତ୍ମବିସ୍ମୃତ ଅଛନ୍ତି । ଏହାହିଁ ଗୌରାବତାରର ଚାତୁର୍ଯ୍ୟ ଓ ଏଥିପାଇଁ ଗୌରଲୀଳା ଅନ୍ୟ ଲୀଳାମାନଙ୍କଠାରୁ ଅଧିକତର ମଧୁର ।

ନିଦ୍ରା— ଆପଣଙ୍କ କଥାର ଭାବ ମୁଁ ବୁଝିପାରିଲି ନାହିଁ ଦେବି !

ଯୋଗମାୟା—ଏ ଅତି ସରଳ କଥା ନିଦ୍ରେ ! ବ୍ରଜ-ବିଳାସିନୀ ଶ୍ରୀମତୀର କୃଷ୍ଣ ଅନୁରାଗ କେତେ ପ୍ରଗାଢ଼ ଓ କିପରି ମହିମାମୟ ତାହା ସ୍ୱୟଂ ବୁଝିବା ନିମନ୍ତ ଓ ତାଙ୍କର କୃଷ୍ଣ-ପ୍ରେମର ମାଧୁର୍ଯ୍ୟ କପରି ତାହା ନିଜେ ଆସ୍ୱାଦନ କରିବା ନିମନ୍ତେ ବ୍ରଜକିଶୋର କଳାରୂପ ଛାଡ଼ି ରାଧାଙ୍କର ହେମବରଣ ଧାରଣ କରିଅଛନ୍ତି ଓ ରାଧା ଭାବରେ ବିଭୋର ହୋଇଅଛନ୍ତି । ଆତ୍ମଭାବ ବିସ୍ମୃତ ହୋଇ ରାଧାମୟ ନ ହେଲେ ସେ ସୁଖ ଅନୁଭବ କରନ୍ତେ କପରି ? ଏବେ ବୁଝିଲ ତ ?

ନିଦ୍ରା— ବୁଝିଲି ଦେବି, ଏ ଲୀଳା ପ୍ରକୃତରେ ବଡ଼ ମଧୁର । କିନ୍ତୁ ଏ ମାଧୁର୍ଯ୍ୟ ରସ ସମ୍ଭୋଗ କରିବେ ଯିନା ସେ ଆପେ ଆଦେ, ଅନ୍ୟ ଲୋକଙ୍କର ଏଥିରେ କ'ଣ ହେବ ?

ଯୋଗ—ସତ୍ୟ ଦେବି; ବ୍ରଜରେ ତାଙ୍କର ଏ ବାଞ୍ଛା ଅପୂର୍ଣ୍ଣ ଥିଲା ବୋଲି ପୁନର୍ବାର ଏ ଲୀଳାର ବିକାଶ । କିନ୍ତୁ ବ୍ରଜରେ ଯାହା ହୋଇ ନ ଥିଲା ଏଥିରେ ତାହା ହେବ । ବ୍ରଜମାଧୁରୀ କେବଳ ବ୍ରଜଜନ ଉପଭୋଗ କରିଥିଲେ, କିନ୍ତୁ ବର୍ତ୍ତମାନ ସେହି ଗୁପ୍ତ ରସ ଗୌରାଙ୍ଗ ସୁନ୍ଦର ମୁକୁଳାଇ ଦେବେ ଯେପରିକି ଆପାମର ସମସ୍ତ ପ୍ରାଣୀ ତାହା ଅଞ୍ଜଳି ଅଞ୍ଜଳି ପାନ କରି ପରିତୃପ୍ତ ହେବେ । ସ୍ୱୟଂ ପ୍ରଭୁ କଳିଜୀବର ଦ୍ୱାରେ ଦ୍ୱାରେ

ସେହି ପ୍ରେମାମୃତ ଯାଚି ଯାଚି ବଣ୍ଟନ କରିବେ । ଅତଏବ କହିଲ ଦେବି, ଏ ଲୀଳାର ମହତ୍ତ୍ୱ କେତେ ?

**ନିଦ୍ରା**—ଆହା, ଧନ୍ୟ ଏ କଳିଯୁଗ, ଯହିଁରେ ସ୍ୱୟଂ ପ୍ରଭୁ ଜୀବଙ୍କ ଦୁର୍ଗତି ଦେଖି କରୁଣାବତାର ଗ୍ରହଣ କରିଅଛନ୍ତି ।

**ଯୋଗମାୟା**—ଆହା, ଏପରି କରୁଣା ଯେ କଳିଜୀବ ଅଳ୍ପାୟୁ ଓ ଦୁର୍ବଳ ଥିବାରୁ ସେମାନେ ଯାଗ ଯଜ୍ଞ ବା ଯୋଗ-ସାଧନାରେ ଅକ୍ଷମ ବୋଲି ସେମାନଙ୍କ ପରିତ୍ରାଣର କେଡ଼େ ସହଜ ଉପାୟ ଉଦ୍‌ଭାବନ କରିଅଛନ୍ତି । କେବଳ ନାମ ସଂକୀର୍ତ୍ତନ କଲେ ଆଉ କିଛି ଆବଶ୍ୟକ ନାହିଁ ।

**ନିଦ୍ରା**—ତେବେ କଳିଯୁଗ ସର୍ବ ଯୁଗର ଶ୍ରେଷ୍ଠ ଓ ନାମସଂକୀର୍ତ୍ତନ ସର୍ବ ଧର୍ମର ସାର ।

**ଯୋଗମାୟା**—ତେବେ ଯାଅ ଦେବି, ଆପଣାର କର୍ତ୍ତବ୍ୟ ସମ୍ପାଦନ କର । ଶୁଭ ମୁହୂର୍ତ୍ତ ଉପସ୍ଥିତ । (ପ୍ରସ୍ଥାନ କଲେ)

**ନିଦ୍ରା**— (ଗୀତ)

ଖେଳେଁ ମୁହିଁ ତରଳିତ ତମିସ୍ର ତଳେ
ସ୍ନିଗ୍ଧ ଶ୍ୟାମ ନବ ବାରିଦ କୋଳେ ।
ନାହିଁ ମୋର ରୂପ ରସ ସୌରଭ ସଙ୍ଗୀତ
ଅଜାଣତେ ଲୁଚି ଆସି ତନ୍ମୟ କରେ ଚିତ୍ତ ।
କୁହୁକ ପରଶ ମୋର, ବରଷେ ପୀୟୂଷ ଧାର
ଶ୍ରାନ୍ତ ନୟନ ତଟେ ଅମିୟ ବୋଳେ
ଦୁନେ ମେଳେ ।

## ସପ୍ତମ ଦୃଶ୍ୟ

[ ଗୌରଙ୍କ ଶୟନ କକ୍ଷ; ପଲଙ୍କୋପରି ଗୌର ଓ ତାଙ୍କ ପଦପ୍ରାନ୍ତରେ ବିଷ୍ଣୁପ୍ରିୟା ନିଦ୍ରାଗତ । ଗୌରଙ୍କ ଶିର ଦେଶରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ଓ ଅନ୍ୟାନ୍ୟ ବ୍ରଜ-ଲୀଳାକାର ଆଲେଖ୍ୟ ଚିତ୍ରପଟ ଦୃଶ୍ୟମାନ ]

(ଗୌର ସ୍ୱପ୍ନ ବିକାର ଜଡ଼ିତ ସ୍ୱରରେ କହିବାକୁ ଲାଗିଲେ)

**ଗୌର**—ହେ ପ୍ରାଣପ୍ରିୟ, ମୋର ଚିତ୍ତ ଚାତକ ସେହି ନବଘନ ଶ୍ୟାମଳ ମୂରତି ଦର୍ଶନ ଆଶାରେ ବହୁକାଳ ତୃଷିତ ନୟନରେ ଚାହିଁ ବସିଛି । ହେ ଗୋପୀଜନମନମୋହନ, ଏ ଅଭାଗିନୀକୁ ଅପାର ବିରହସାଗରରେ ଭସାଇ ଦେଇ ଏତେ କାଳ କାହିଁ ଲୁଚି ରହିଥିଲ ବନ୍ଧୁ !

*        *        *        *

ଯମୁନା କୂଳରେ କଦମ୍ବ ଡାଳରେ ଲୁଚି ରହି ଯେଉଁଦିନ ଅହିର ବାଳାମାନଙ୍କର ବସ୍ତ୍ର ଚୋରି କରି ତୁମ୍ଭର ଚରଣରେ କୁଳ ଲଜ ଭୟ ସବୁ ବିସର୍ଜ୍ଜନ ଦେବାକୁ ଶିଖାଇଥିଲ ତାହା ମୋର ମନେ ପଡ଼ୁଛି । ମନେ ପଡ଼ୁଛି ଯେଉଁ ଦିନ ଚନ୍ଦ୍ରିକାବିଧୌତ ଶାରଦ ରଜନୀରେ ଗୋପତରୁଣୀଗଣ ସଙ୍ଗରେ କୁଞ୍ଜ ବିହାର କରୁଁ କରୁଁ ଏକାକୀ ଏ ଅଭାଗିନୀକୁ ଯେମନ ନିର୍ଜ୍ଜନ ବିଳାସ କରିବାକୁ ଚାଲିଗଲ । ଆହା ସେ କେଡ଼େ ସ୍ନେହ, ସେ କେଡ଼େ ପ୍ରୀତି । ମୁଁ ତ ସେ ପରମ ପ୍ରୀତିର ଅଯୋଗ୍ୟା । ଅପାତ୍ରରେ ଏପରି କରୁଣା କଲ କାହିଁକି ନାଥ ? (ରୋଦନ କଲେ)—ନା, ନା, ତୁମ୍ଭେ ବଡ଼ ନିଷ୍ଠୁର । ନୋହିଲେ କାନ୍ଦି ଦେଇ ସେ ସେଦିନ ମଥୁରାକୁ ଚାଲିଗଲ, ଆଉ ତ ଆସିଲ ନାହିଁ । ସରଳା ଗୋପବାଳାଙ୍କର ତପ୍ତ ଶ୍ୱାସରେ ବୃନ୍ଦାବନର ତରୁଲତା ଶୁଷ୍କ ହୋଇଗଲେ, ବ୍ୟଥାରେ କୁସୁମକଳିକା ଝଡ଼ି ପଡ଼ିଲେ, ନୟନ ପ୍ରବାହରେ ଯମୁନାର ଶୀତଳ ବାରି ତପ୍ତ ହୋଇଗଲା, ତଥାପି ତୁମର ଦାରୁଣ ଅନ୍ତର ତରଳିଲା ?

ପରେ ଅନୁତାପ କରିବାକୁ ଆସିଛ ପରା ! ଆଉ ଆମର କ'ଣ ଅଛି ଯେ ଆସିଛ, ତୁମ୍ଭର ବିଚ୍ଛେଦ-ବିଷରେ ଦେହ ମନ ଜର୍ଜ୍ଜରିତ ହୋଇ ଗଲାଣି, ଶ୍ୟାମ ବିରହ-ବହ୍ନି ସବୁ ଭସ୍ମ କରି ଦେଇ ଗଲାଣି । ଯାଅ, ଯାଅ, ଫେରିଯାଅ । ଯେଉଁଠି ଏତେ କାଳ ଆମକୁ ପାଶୋରି ସୁଖରେ ରହିଥିଲ ସେହିଠାକୁ ଫେରିଯାଅ ।

*        *        *        *

( ଆଲେଖ୍ୟ ଚିତ୍ର ଅଦୃଶ୍ୟ ହୋଇଗଲା )

ଆଁ ଆଁ, ଚାଲିଗଲ ! ସତେ ଚାଲିଗଲ !! ମୁଁ ଅଭିମାନରେ ଦୁଇ ପଦ କଟୁ କଥା କହିଲି ବୋଲି ରାଗ ହୋଇ ସତେ ଚାଲିଗଲ ! ମୋର ହୃଦୟ-ଗଗନ ଅନ୍ଧକାର କରି କାଳିଆ ଚାନ୍ଦ କାହିଁ ଗଲ ? (ହଠାତ୍ ନିଦରୁ ଉଠି) ନା-ନା ଆସ, ଫେରି ଆସ । ଦାସୀ ପ୍ରତି ତୁମ୍ଭର ଯେଉଁ ଚିର ପ୍ରୀତି, ସେହି ପ୍ରୀତି ବଳରେ ଅପରାଧ କ୍ଷମା କରି ଏହି ଥରକ ଫେରି ଆସ । ହଉ, ଆସିଲ ନାହିଁ ; କିନ୍ତୁ ମନେ କରିଛ କି ମୋ ଆଗରୁ ଏଥର ଖସି ଯିବ ? ଯେଉଁ ଆଡ଼େ ଯାଅ ପଛକେ ମୋ ଆଗରୁ ଯାଇ ପାରିବେ ନାହିଁ । ଚାଲ, ଚାଲ କେତେ ଲୁଚକାଳି ଜାଣ, କେତେ ପଳାଇ ପାର, ଦେଖିବି;—ଆଜିଠାରୁ ସାରା ଜୀବନ ତୁମ୍ଭର ପଛେ ପଛେ ଗୋଡ଼ାଇ ଗୋଡ଼ାଇ—

( ସବେଗେ ନିର୍ଗତ ହେଲେ )

( ନବଦ୍ୱୀପରେ ବିଷ୍ଣୁପ୍ରିୟାଙ୍କର ଶିରଦେଶରେ ଦଣ୍ଡ କମଣ୍ଡଳୁ ଧରି, ଲୁଣ୍ଠିତ ମସ୍ତକ, କଷାୟ ବସ୍ତ୍ର ପରିହିତ ଗୌରାଙ୍ଗଙ୍କର ସନ୍ନ୍ୟାସ ମୂର୍ତ୍ତି ଆଲୋକ ଚକ୍ରରେ ପ୍ରକଟିତ ହେଲ )

( ବିଷ୍ଣୁପ୍ରିୟା ସ୍ୱପ୍ନ ଘୋରରେ କହିବାକୁ ଲଗିଲେ )

ବିଷ୍ଣୁପ୍ରିୟା—ଛି, ନାଥ, ଏ ବେଶ କାହୁଁ ପାଇଲ ! ସେ କୋଟିକମ ଧଡ ଲେଟଣୀ ପିନ୍ଧା, ସେ ଦୁଧଫେଣପରି ଧୋବ ଫର ଫର ଭଙ୍ଗ ଭଙ୍ଗ ଉତ୍ତରୀୟ ଛଡ଼ାଇ ଏ ଗେରୁଆ କାଛେଣି କିଏ ତୁମ୍ଭଙ୍କୁ ଦେଲ ? ସେ ବାରବାମୀ ସୁବର୍ଣ୍ଣକଣା କନକ ବରଣକୁ ଗେରୁଆ ରଙ୍ଗ କଣ ମାନୁଛି ? ଛି, ଛି, ଆସ ମୁଁ ପାଲଟାଇ ଦିଏଁ ;

*    *    *    *

ଉଁ—ତୁମେ ବଡ଼ ଚାହୁଲ ଜାଣ । ମୋତେ ବ୍ୟସ୍ତ କରି ରଙ୍ଗ ଦେଖିବା ଲଗି ପୁଣି ରୁଦ୍ରାକ୍ଷ କଣ୍ଠି ଗଳାରେ ପକାଇଛ ପରି ! ହଉ, ହଉ, ଥାଉ ତୁମ ରସିକପଣ—ଜାଣିଛ ନା ମୁଁ ସେ ମାଳ ଛିଣ୍ଡାଇ ପକାଇବି । ଯେଉଁ ବକ୍ଷରେ ମଲ୍ଲୀ ମାଳତୀ ମାଳ ଶୋଭା ପାଉଥାଏ, ସେଠି ସେ କଣ୍ଟା କଣ୍ଟା ରୁଦ୍ରାକ୍ଷ କିପରି ଲମ୍ବାଇଛ ଭଲ ? ସେ କଅଁଳ ଛାତିକୁ ବାଧି ନାହିଁ ନା କ'ଣ ? ଓହୋ, ଦେଖାଇ-ବାକୁ ଆସିଛ କି ଆଜିକାଲି ସେ ଛାତିକୁ କେଡ଼େ କଠିନ କରି ଦେଲଣି !

*    *    *    *

ଏ ପୁଣି କ'ଣ ! ଲଲାଟରେ ଏ ଯେ ବିଭୂତିରେଖା ! ହାୟ ହାୟ, କାହାର କର୍କଶ କର କୁଙ୍କୁମ ଚନ୍ଦନଚର୍ଚ୍ଚିତ ସେହି ସୁନ୍ଦର କପୋଳରେ ଭସ୍ମ ବିଲେପନ କରି ଦେଲ ! କେଉଁ ନିର୍ମମ ହୃଦୟ ଏହା ସହିଲ ? ଆସ ଆସ, ମୋର ପଣତ କାନିରେ ପୋଛି ଦିଏଁ । ନୋହିଲେ ମା ଦେଖିଲେ କଣ କହିବେ ? ଆଁ, ଏ ଯେ ମୁଣ୍ଡିତ ମସ୍ତକ ! ଅଳକାରଞ୍ଜିତ ସେହି ଗୁଚ୍ଛ ଗୁଚ୍ଛର ଚିକୁର କାହିଁ ? ତେବେ ସେତେ କ'ଣ—ମା—ଲୋ !

(ହଠାତ୍ ନିଦ୍ରା ଭଙ୍ଗ ହୋଇ ଶଯ୍ୟାରୁ ତଳେ ପଡ଼ିଲେ ଏବଂ ଉନ୍ମାଦବତ୍ ଶଯ୍ୟା ଘରପିଠି ଖୋଜିଲେ, ପରେ ମା' ମା, ଚିତ୍କାର କରି ନିଷ୍କ୍ରାନ୍ତ ହେଲେ)

[ପଟକ୍ଷେପଣ]

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( କାଟୋଆ ଗ୍ରାମବାସିନୀ ପଲ୍ଲୀବଧୂଗଣ ଗଙ୍ଗାଘାଟରେ ଗୀତ ଗାଇ ଗାଇ ପ୍ରବେଶ ହେଲେ । )

(ଗୀତ)

କଳି-କଳୁଷ-ହାରିଣୀ ହରି-ଚରଣୀ ଗଙ୍ଗେ
ପତିତ-ଜନ-ତାରିଣୀ ତର ତର ତରଙ୍ଗେ ॥
ସୁରପୁର-ନିବାସିନୀ, ଭବ-ଭୟ-ବିନାଶିନୀ
ଅମଳ-ଜଳ-ହାସିନୀ, ଶୁଭ୍ର ଧବଳ ଅଙ୍ଗେ ॥
ହରି-ଚରଣ-ବାହିନୀ, ଦୀନ-ଶରଣ-ଦାୟିନୀ,
ଶମ୍ଭୁ-ଶିର-ଶାୟିନୀ, କୁରୁ କୃପା ଭ୍ରୂଭଙ୍ଗେ ॥

(ଗୀତାନ୍ତେ ଗୌରାଙ୍ଗ ଉନ୍ମତ୍ତ ସନ୍ନ୍ୟାସୀ ବେଶରେ ପ୍ରବେଶ ହେଲେ)

ଗୌରାଙ୍ଗ—ଏହି ତ ସେ ବୃନ୍ଦାବନ ପ୍ରବାହିନୀ ଶ୍ୟାମ ଉନ୍ମାଦିନୀ ଯମୁନା !—ଏହି ଯେ ଗୋକୁଳ ନାଗରୀ ଗଣ, କାଳିନ୍ଦୀର ନୀଳ ସ୍ରୋତରେ ସେହି ଗୋକୁଳ ମୋହନର ନୀଳ ଶିରୀ ମୁଗ୍ଧ ନେତ୍ରରେ ଦର୍ଶନ କରୁଅଛନ୍ତି ।

ଦେଖିଛ, ଦେଖିଛ ସଖିଗଣ, ଯମୁନାର ସ୍ୱଚ୍ଛ ନୀର ଦର୍ପଣରେ । ତାଙ୍କର ମୁଖଛବି ଦେଖିଛ କି ? ନା, ନା,—ତୁମ୍ଭେମାନେ ବି ମୋହରି ପରି କୃଷ୍ଣବିରହିଣୀ,—ସେ ହଟିଆ ନାଗର ହଟ କରି କାଳିନ୍ଦୀ ସଲିଳରେ ବୁଡ଼ି ରହି ତୁମ୍ଭଙ୍କୁ ମଧ ଧରା ଦେଉ ନାହାନ୍ତି ।

ସେ ଯେ ଏହିଠି ଅଛନ୍ତି, ଏଥିରେ ସନ୍ଦେହ ନାହିଁ । ନୋହିଲେ ଯମୁନା ଜଳ ଏ ରୂପ ଦିଶନ୍ତା କି ! ସେହି ନୀଳ ଚନ୍ଦ୍ରମଣି ପରଶରେ ଏପରି ଗାଢ଼ ନୀଳମା ଧାରଣ କରିଛି । ଆଚ୍ଛା, ରହ, ରହ, କେତେ ଲୁଚକାଳି ଖେଳ ଜାଣ ଦେଖିବି ; ତୁମ୍ଭର ଅଙ୍ଗ ଗନ୍ଧ ମୋତେ ଅଜଣା ନାହିଁ; ଯେଉଁଠି ଥିବ ଏହିକ୍ଷଣି ଧରି ଆଣିବି ।

(ନୀରରେ ଡେଇଁ ପଡ଼ିବାକୁ ଉଦ୍ୟତ ହେଲେ )

ପ୍ରଥମ ପଲ୍ଲୀବାସିନୀ—(ଆଗୁଳାଇ) ହାଁ,—ହାଁ—ପାଗଳ ନା କ'ଣ ?

ଗୌରାଙ୍ଗ—ଆଁ, ପାଗଳ ? ହଁ, ମୁଁ ପାଗଳ । ସେ ମୋତେ ପାଗଳ କରି ଦେଇଛି ।

୧ମ ପଲ୍ଲୀବାସିନୀ—କିଏ, କୃଷ୍ଣ ?

**ଗୌରାଙ୍ଗ**—ହଁ, ହଁ, ସେହି, ସେହି, । ତା ନାଁ ମୋ ଆଗରେ ଆଜି କହନା ସଖି ; ମୁଁ ଆଗ ତାଙ୍କୁ ଧରିପାରେଁ—

**୧ମା ପଲ୍ଲୀବାସିନୀ**—କିପରି ଧରିବ ତାଙ୍କୁ, ସେ କ'ଣ ଏଠି ଅଛନ୍ତି ?

**ଗୌରାଙ୍ଗ**—ହଁ ହଁ, ଏଇଠି ; ଏହି ଜଳ ଭିତରେ ଲୁଚି ରହିଛନ୍ତି ।

**୧ମା ପଲ୍ଲୀବାସିନୀ**—(ଅନ୍ୟ ପ୍ରତି) ସତେ ଗୋ, ଏଙ୍କର ଜ୍ଞାନ ନାହିଁ ; ଏଠୁଁ ଫେରାଇ ନ ଦେଲେ ସେ ସତକୁ ସତ ନଈକୁ ଡେଇଁପଡ଼ି ବୁଡ଼ି ମରିବେ । (ଗୌରାଙ୍ଗଙ୍କ ପ୍ରତି) ଆମ କଥା ମାନ, ତୁମେ ଯାହାଙ୍କୁ ଖୋଜୁଛ ସେ ଏଠି ନାହାନ୍ତି ।

**ଗୌରାଙ୍ଗ**—ନାହାନ୍ତି ! ନାହାନ୍ତି ! ତେବେ କୁଆଡ଼େ ଗଲେ ? ମୁଁ ତ ସାରା ସଂସାର ଖୋଜି ସାରିଲିଣି । କହିଦିଅ, କହିଦିଅ ଥରେ— । ତାଙ୍କୁ ନ ପାଇଲେ ଏହି ନଦୀ ସ୍ରୋତରେ ଜୀବନ ହାରିବି ।

**୧ମା ପଲ୍ଲୀବାସିନୀ**—ନ ପାଇବ କାହିଁକି ? ତମ ଆଗରୁ ସେ କି ଲୁଚି ରହି ପାରିବେ ? ସେ ତ ଏଇଠି ଥିଲେ । ତମ ଆସିବା ଆଗେ ଆଗେ ସେହିଆଡ଼କୁ ଚାଲିଗଲେ ।

**ଗୌରାଙ୍ଗ**—ଠିକ୍ ଠିକ୍, ସେହି ଆଡ଼କୁ ଯାଇଛନ୍ତି । ସଖାମାନଙ୍କ ସଙ୍ଗରେ ସେହିଆଡ଼େ ଗୋଚାରଣକୁ ଯାଇଛନ୍ତି । ଏହିଆଡ଼େ ଶିଙ୍ଗା ନାଦ ଶୁଭୁଛି ନା ! ମୁଁ ଯାଏ—

( ସବେଗେ ପ୍ରସ୍ଥାନ କଲେ )

**୨ୟା ପଲ୍ଲୀବାସିନୀ**—ସଖି, ଏ ଅପରୂପ ନବୀନ ସନ୍ନ୍ୟାସୀଟି କିଏ ଗୋ ? ଖଣ୍ଡିଏ ମହୁଆଳିଆ ମଳୟ ବତାସ ପରି କୁଆଡ଼ୁ ଆସି ଦେହ ଚହଟାଇ ଦେଇ ଚାଲିଗଲେ ।

**୩ୟା ପଲ୍ଲୀବାସିନୀ**—ହଁ ଲୋ, ଦେଖିଥିଲୁ ତାରାଟି ଯେପରି ସରଗରୁ ଛିଡ଼ିପଡ଼ି ମଣିଷଙ୍କ ଆଖି ଝଲସାଇ ଦେଇ ଗଲା ମ !

**୧ମା ପଲ୍ଲୀବାସିନୀ**—କେଉଁ ଭରଷାଙ୍କ ଠେଇଁ ନଦୀଆରୁ ଆସି ଯେ ଆଜି ନୂଆ ଦେଖା ଦେଲେ ଏ ପରା ସେହି ଗୋ ?

**୪ର୍ଥୀ ପଲ୍ଲୀବାସିନୀ**—ଆହା, ନରଦେହରେ ଏତେ ରୂପ ! ସାରା ଶରୀରରୁ ଲାବଣ୍ୟ ଯାକି ଉଚ୍ଛୁଳି ପଡ଼ୁଛି । ମୁଁ ତ ଦେଖିଲା ବେଳଠୁଁ ବାଆ ହୋଇଗଲି । ତୁମେ ଏକା ସଖି, ବୁଦ୍ଧି କରି ବାଆଁରି ଦେଇ ନ ଥିଲେ ସେ ଆମର ଆଗରେ ଗଙ୍ଗାକୁ ଡେଇଁପଡ଼ି ଥାଆନ୍ତେ ।

**୨ୟା ପଲ୍ଲୀବାସିନୀ**—ଏ ବୟସରେ ଏଙ୍କୁ ଏ ବୁଦ୍ଧି କିଏ ଦେଲା ? ଏଙ୍କର କ'ଣ ମା ମାଉସୀ କେହି ନାହାନ୍ତି ?

**ତୃତୀୟା**—ଥିଲେ କ'ଣ ସେ ଆଜି ଜୀଇଁ ରହିଥିବେ, ଦେଖିଲା ଲୋକଙ୍କର ତ ଛାତି ଫାଟି ଯାଉଛି !

ଚତୁର୍ଥୀ—ଇଏ କ'ଣ ବଞ୍ଚି ହୋଇ ନ ଥିବେ ? କେଉଁ ହୀନକପାଳୀ ବୁକୁରେ ପଥର ଲଦି ଦେଇ ଆସିଲେ କହ ନ ?

ପ୍ରଥମା—ମୋତେ ଲାଗୁଛି ସେ ଘରୁ ଲୁଚି ପଳେଇ ଆସିଛନ୍ତି । ତା ନୋହିଲେ ରକ୍ତ ମାଂସ ପିଣ୍ଡରେ ତାଙ୍କୁ ଛାଡ଼ ଦେବାକୁ କାହା ଦେହ ସହନ୍ତା !

ଦ୍ୱିତୀୟା—ଆଚ୍ଛା ସେ କଅଁଳ ହାତରେ ଦଣ୍ଡ କମଣ୍ଡଳୁ ଧରାଇବାକୁ କେଶବ ଭାରତୀଙ୍କ ଦେହ କିମିତି ସହିଲା ?

ତୃତୀୟା—ସେ ନିଜେ କହିଥିବେ ବୋଲି ନା ! ଭାରତୀ ଗୋସେଇଁଙ୍କର ଦୋଷ କ'ଣ ?

ଚତୁର୍ଥୀ—ଆଁ, ଦୋଷ ନାହିଁ ? ଯେ ପାଗଳ, ତା କଥା ଗୋଟାଏ କଥାରେ ଲେଖା ।

ପ୍ରଥମା—ଆଲୋ, ପାଗଳ ନୁହେ ଲୋ ପାଗଳ ନୁହେ । ଏଙ୍କୁ କହନ୍ତି ଜ୍ଞାନପାଗଳା !

ଦ୍ୱିତୀୟା—ସତେ ଏକା ଠିକ୍ ଠଉରେଇଛ । କୃଷ୍ଣପ୍ରେମରେ ଏକାବେଳେକେ ହତଜ୍ଞାନ । ସବୁ ତ କୃଷ୍ଣମୟ ଦେଖୁଛନ୍ତି ।

ତୃତୀୟା—ଖାଲି ଯେ ଦେଖୁଛନ୍ତି ସେତିକି ନୁହେଁ । ମୋତେ ଲାଗୁଛି ସେ ନିଜେ କୃଷ୍ଣ ସ୍ୱରୂପ ; ଖାଲି ବର୍ଣ୍ଣଟି ଯା ଗୋରା ।

ଚତୁର୍ଥୀ—ଆଉ ମୁହଁରେ ରାଧାଭାବ । ଭିତରେ ଭିତରେ ଗୋଟିମତେ କୃଷ୍ଣ, ବାହାରେ ରାଧା ।

ପ୍ରଥମା—ତାଙ୍କର ତ ଥାନ ଜ୍ଞାନ ନାହିଁ ; ଆମେ ସିନା ଏଠୁଁ ଫେରେଇ ଦେଲୁଁ—ସେ ଆଉ କେଉଁଠି ଯାଇ ପୁଣି କିଛି ବିପଦରେ ପଡ଼ୁଥାଆନ୍ତି !

ଦ୍ୱିତୀୟା—ସେ କଥା ଏକା ସତ ; କିନ୍ତୁ ଆମେ କ'ଣ କରିବା ।

ପ୍ରଥମା—ଆମେ କିଛି ନ କରି ପାରିବା ତ ଗାଁ ଭିତରେ ଯାଇ ପାଞ୍ଚଜଣଙ୍କୁ କହିଦେବା । ମୋ ମନେ ହେଉଛି ତାଙ୍କର ନିଜ ଲୋକ କେହି ତାଙ୍କୁ ଖୋଜିବାକୁ ଆସିଥିବେ । ସେ କୁଆଡ଼କୁ ଗଲେ, ଜାଣିପାରିଲେ ତାଙ୍କ ପଛେ ପଛେ ଯିବେ ।

ତୃତୀୟା—ହଁ ହଁ, ଚଞ୍ଚଳ କାମ ସାରି ଦିଅ ଯିବା ।

( ସମସ୍ତେ ଗଙ୍ଗାରେ କଳସୀ ବୁଡ଼ାଇବାକୁ ଲାଗିଲେ )

( ପଟକ୍ଷେପଣ )

## ଦ୍ୱିତୀୟ ଦୃଶ୍ୟ

( ଶୋକାତୁର ବିଷର୍ଣ୍ଣ ବଦନରେ ଗଦାଧର ଓ ଶ୍ରୀବାସ ପ୍ରବିଷ୍ଟ ହେଲେ )

ଶ୍ରୀବାସ—ଆପଣ ପଣ୍ଡିତ, ବିବେକୀ । ଏ ସମୟରେ ଆପଣଙ୍କର ବିଚଳିତ ହେବା ଉଚିତ ନୁହେ । ବରଂ ଧୀର ଚିତ୍ତରେ ସମସ୍ତେ ମିଳି କର୍ତ୍ତବ୍ୟ ସ୍ଥିର କରିବା ଆସନ୍ତୁ ।

ଗଦାଧର—ଆମର ଆଉ କର୍ତ୍ତବ୍ୟ କ'ଣ ? ସେ ଯଦି ତାଙ୍କର ଏକାନ୍ତ ଶରଣାଗତ ଦାସମାନଙ୍କୁ ତ୍ୟାଗ କରି ଗଲେ, ଆମ୍ଭମାନଙ୍କର ପ୍ରୀତି ଯଦି ତାଙ୍କୁ ଆକର୍ଷଣ କରି ରଖି ନ ପାରିଲା, ତେବେ ଆମର ଆଉ କର୍ତ୍ତବ୍ୟ କ'ଣ ଅଛି ?

ଶ୍ରୀବାସ—ଆମ୍ଭମାନଙ୍କର ସେ ଏକମାତ୍ର ଆଶ୍ରୟ ସତ୍ୟ, କିନ୍ତୁ ଆମ୍ଭେମାନେ କେବଳ ତ ତାଙ୍କର ଆଶ୍ରିତ ନୋହୁ । ସେ ଯେ ବିଶ୍ୱମ୍ଭର ।

ଗଦାଧର—ଏ ତ ମନକୁ ପ୍ରବୋଧ ଦେବା କଥା ମାତ୍ର । କିନ୍ତୁ ମନ ତ ପ୍ରବୋଧ ମାନୁ ନାହିଁ । ତାଙ୍କର ବିରହ ବିଷଶଲ୍ୟ ପରି ଅନ୍ତରକୁ ଜର୍ଜ୍ଜରିତ କରି ଦେଉଛି । ସେ କନକ କାନ୍ତି ଶଚୀଦୁଲାଳଙ୍କ ଭାବବିହ୍ୱଳ ସଜଳ ନୟନ ମନେ ପଡ଼ିଲା ବେଳକୁ ହୃଦୟ ବିଦୀର୍ଣ୍ଣ ହୋଇ ଯାଉଛି । କହନ୍ତୁ ଆଚାର୍ଯ୍ୟ, ସେ ରସରାଜଙ୍କ ସନ୍ନ୍ୟାସ ରୂପ ଦେଖିବା ଆଗରୁ ଏ ଚକ୍ଷୁ ଅନ୍ଧ ହୋଇଯାଇ ନାହିଁ କାହିଁକି ? ( ରୋଦନ କଲେ )

ଶ୍ରୀବାସ—ଆହା, ସ୍ଥିର ହେଉନ୍ତୁ ପଣ୍ଡିତେ । ବର୍ତ୍ତମାନ ବିଳାପର ସମୟ ନୁହେ । ଆମ୍ଭମାନଙ୍କ ଉପରେ ବର୍ତ୍ତମାନ ଗୁରୁତର ଦାୟିତ୍ୱ ଉପସ୍ଥିତ ।

ଗଦାଧର—ଆମ୍ଭମାନଙ୍କ ସକଳ ଦାୟିତ୍ୱ ଯେ ତାଙ୍କର ଚରଣରେ ସମର୍ପଣ କରିଛୁ—ଆଉ ପୁଣି କ'ଣ ? ତାଙ୍କର କାର୍ଯ୍ୟ ସେ କରନ୍ତୁ । ଆମ୍ଭେମାନେ କେବଳ ଦୁଃଖ ପାଇବା ପାଇଁ ଜନ୍ମଗ୍ରହଣ କରିଥିଲୁ ।

ଶ୍ରୀବାସ—ପ୍ରଭୁଙ୍କ ଲାଗି ବୃଦ୍ଧା ଶଚୀ ମାତା ମୃତକଳ୍ପ ହୋଇ ପଡ଼ିଛନ୍ତି । ବିଷ୍ଣୁପ୍ରିୟା ଦେବୀଙ୍କ କଥା ବା କ'ଣ କହିବି । ଆମ୍ଭେମାନେ ନିଜେ ଅଧୀର ହେଲେ ସେମାନଙ୍କୁ ସାନ୍ତ୍ୱନା ଦେବ କିଏ ବା ରକ୍ଷା କରିବ କିଏ ?

ଗଦାଧର—ଆପଣଙ୍କର ସେ ଶକ୍ତି ଥାଏ ତ ଯାଆନ୍ତୁ, ମୋର ଧୈର୍ଯ୍ୟର ବଳ ଭାଙ୍ଗିଗଲାଣି । ଓଃ—

( ହରିଦାସ ପ୍ରବିଷ୍ଟ ହେଲେ )

ହରିଦାସ—ଆଚାର୍ଯ୍ୟ ଠାକୁର, ସଠିକ ଖବର କ'ଣ ପାଇଲେ ?

ଶ୍ରୀବାସ—ହଁ, ପ୍ରଭୁଙ୍କୁ କାଟୋୟା ନିକଟରେ ଲୋକେ ଦେଖିଛନ୍ତି ।

ହରିଦାସ—କେଉଁଠି, କେଶବ ଭାରତୀଙ୍କ ଆଶ୍ରମରେ ?

ଶ୍ରୀବାସ—ଖୁବ୍ ସମ୍ଭବ ; ତାହା ଛଡ଼ା ସେଠାକୁ ଯିବାର ଆଉ ଉଦ୍ଦେଶ୍ୟ କ'ଣ ? ମୁକୁନ୍ଦ, ଚନ୍ଦ୍ରଶେଖର ଓ ସ୍ୱୟଂ ନିତ୍ୟାନନ୍ଦ ଠାକୁର ଯାଇଛନ୍ତି । ଆଜି ନିଶ୍ଚୟ ସମ୍ବାଦ ମିଳିବ ।

ହରିଦାସ—ସତେ କ'ଣ ପ୍ରଭୁ ସନ୍ନ୍ୟାସ ଗ୍ରହଣ କରିଥିବେ ?

ଶ୍ରୀବାସ—ସେହି ଜାଣନ୍ତି ! କିନ୍ତୁ ଦୀକ୍ଷା ନେବା ପୂର୍ବରୁ ଯଦି ଏମାନଙ୍କ ସହିତ ଭେଟ ହୁଏ, ତେବେ ମୋର ବିଶ୍ୱାସ ଏମାନେ ଫେରାଇ ଆଣିବେ ।

ହରିଦାସ—ଯଦି ନ ହୋଇଥାଏ ?

ଶ୍ରୀବାସ—ତେବେ ଯାହା ହେବାର ହୋଇଥିବ । ଆମ୍ଭମାନଙ୍କ କର୍ମ ପୋଡ଼ିଥିବ ।

ହରିଦାସ—ଆମେ ତାଙ୍କ ପଦରେ କି ଅପରାଧ କରିଥିଲୁ ଯେ ଆମକୁ ଦଣ୍ଡିବା ପାଇଁ—କିନ୍ତୁ ସେ ଦୟାମୟ ହୋଇ ସେ ଅବଳା ଦୁହିଁଙ୍କୁ ସତେ କ'ଣ ଅକୂଳ ସାଗରରେ ଭସାଇ ଦେଇ ଗଲେ ?

ଶ୍ରୀବାସ—ବିଶ୍ୱାସ ହେଉଛି ଯେତେ, ନୋହୁଛି ମଧ୍ୟ ସେତିକି । ଯାହା ହେଉ, ବର୍ତ୍ତମାନ ପ୍ରଭୁଙ୍କ ଗୃହକୁ ଯିବା ଆସନ୍ତୁ । ଗଦାଧର ପଣ୍ଡିତ ବରଂ ନ ଯାଆନ୍ତୁ ।

( ସକଳେ ପ୍ରସ୍ଥାନ କଲେ )

## ତୃତୀୟ ଦୃଶ୍ୟ

( ଗୋଚରଣ ଭୂମି—ଗୋପାଳକ ବାଳକମାନେ ଗୀତ ଗାଉଁ ଗାଉଁ ନୃତ୍ୟ କରି ପ୍ରବିଷ୍ଟ ହେଲେ )

( ଗୀତ )

ବାଳକଗଣ— କାଳିଆ କାହ୍ନୁକ ବାଂଶରୀ ବାଜୁଛି
ବନେ, ପବନେ ସଘନେ ସୁଧାରାଶି ବରଷି ଯାଉଛି ।
କି ମଜାରେ ଥରେ ଥରେ ପଦେ ପଦେ ଗାଉଛି ।
ବଳୁଆ ସଙ୍ଗରେ ରଙ୍ଗରେ ନାଚି ନାଚି କେମନ୍ତେ ଧାଉଁଛି !

( ଗୌରାଙ୍ଗ ପ୍ରବିଷ୍ଟ ହେଲେ )

ଗୌରାଙ୍ଗ—ଏହି ସ୍ଥାନ ନିଶ୍ଚୟ ବୃନ୍ଦାବନ । ବୃନ୍ଦାବନବିହାରୀ ଆଉ ଯିବେ କାହିଁ ? ଏହି ଯେ ତାଙ୍କର ସଖାବୃନ୍ଦ ; ଗୋଧନ ଚରାଉ ଚରାଉ ଆନନ୍ଦରେ କୃଷ୍ଣ ଗୁଣ ଗାୟନ କରୁଅଛନ୍ତି । ଗାଅ, ଗାଅ ଭାଇ, ଆଉ ଥରେ ସେ ମଧୁର କୃଷ୍ଣ କଥା କୀର୍ତ୍ତନ କର, ମୋର ତୃଷିତ ଚିତ୍ତ ତୃପ୍ତ ହେଉ ।

( ବାଳକଗଣ, ପୁନରାୟ ଗାୟନ କଲେ ଓ ଗୌରାଙ୍ଗ ବିଭୋର ହୋଇ ବାଳକମାନଙ୍କ ସଙ୍ଗରେ ନୃତ୍ୟ କରିବାକୁ ଲାଗିଲେ ),

ବାଳକଗଣ— ଗୀତ

ମରମରେ ଭେଦି ନାଦ ଚଳୁ କମ୍ପାଉଛି
ରଙ୍ଗା ଅଧରେ ମଧୁରେ ହସି ହସି ଡେରିଛେ ଧିହୁଁଛି । •

ଗୌରାଙ୍ଗ—ସୁବଳରେ, କହିବୁକି ତୋର ସେ କାଳିଆ କାହ୍ନୁ ତୁମ୍ଭଙ୍କୁ ଛାଡ଼ି କେଉଁଠାରେ ବାଂଶୀ ବାଦନ କରୁଛି ? ମଧୁ, ମଧୁ ତୁ ତ କେବେ ତାଙ୍କ ସାଙ୍ଗ ଛାଡ଼ୁ ନାହୁଁ । ତୁହି ଜାଣିଥିବୁ ସେ କୁଆଡ଼େ ଗଲେ । କହିଦିଅ ଭାଇ, ମୁଁ ତାଙ୍କୁ ଚାରିଆଡ଼େ ଖୋଜି ଖୋଜି ଥକିଲଣି । ଓଃ—ତୁମେ ଭାବୁଚ ପରା, କହି ଦେଲେ ମୁଁ ତାଙ୍କୁ ଏକା—ତୁମ୍ଭଠାରୁ ଛଡ଼ାଇ ନେବି ବୋଲି ? ନାହିଁ, ନାହିଁ, ଆଉ ମୁଁ ସେ କଥା କରିବି ନାହିଁ, ଥରେ ସେ ପାପର ଫଳ ଏପରି ପାଇଛି ଯେ ଆଜଯାକେ ଭୁଲି ନାହିଁ । ଆଉ ସେ କ'ଣ ଏକା ଜଣକର ଯେ ମୁଁ ନେଇଗଲେ ତୁମକୁ ସେ ଛାଡ଼ି ଯିବେ ? ଛି, ଛି, ସେ ଭୟ କର ନାହିଁ ଭାଇ ।

୧ମ ବାଳକ— ଇଏ କିଏ ମ ?

୨ୟ ବାଳକ—ଏ, ଚୁପ୍—ତୁମେ ଗୋସେଇଁ କାହାକୁ ଖୋଜୁଛ ? ଆମେ ତ ତାଙ୍କୁ ଦେଖି ନାହୁଁ ।

ଗୌରାଙ୍ଗ—ଦେଖିନାହିଁ ତେବେ । ଓଃ—ସେ ଦାରୁଣ ନାଗର ସମସ୍ତଙ୍କୁ ଫାଙ୍କି ଦେଇ ଲୁଚିଛି ।— ମୁଁ ସିନା ଏଡ଼େ ହତଭାଗିନୀ—କିନ୍ତୁ ତୁମେ ତ ତାଙ୍କର ପ୍ରାଣସଖା । ତୁମ ସଙ୍ଗରେ ଛନ୍ଦ କଲା କାହିଁକି !

ଭାଇ, ମୁଁ ଅନେକ ଡାକିଲଣି, ଅନେକ ଖୋଜିଲଣି, ମୋ ଡାକ ଶୁଣୁ ନାହାନ୍ତି । କିନ୍ତୁ ତୁମ ଡାକ ଏଡ଼ାଇ ପାରିବେ ନାହିଁ କେବେ । ଡାକିଲ ଥରେ, କାନ୍ଦି, କାନ୍ଦି କାତର ହୋଇ—ଡାକିବଟି ଥରେ—

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।

( ଗୌରାଙ୍ଗ ଲଳିତ ସ୍ୱରରେ ଗାୟନ କଲେ ଓ ଗୋପାଳ ବାଳକମାନେ ତାଙ୍କ ସହିତରେ ଗାୟନ କରି ନୃତ୍ୟ କରିବାକୁ ଲାଗିଲେ )

( ନିତ୍ୟାନନ୍ଦ ଓ ମୁକୁନ୍ଦ ପ୍ରବିଷ୍ଟ ହେଲେ )

ମୁକୁନ୍ଦ—ପ୍ରଭୁ, ପ୍ରଭୁ,—( ଚରଣରେ ପତିତ ହେଲେ )

ଗୌରାଙ୍ଗ—ସଖି, ତୁ ଏତେବେଳେ ଆସିଛୁ ! ପାଇଲୁ କି, ସେ ମନପ୍ରାଣ ଚୋରର ଦେଖା ପାଇଲୁ କି ?

ମୁକୁନ୍ଦ—ହଁ, ମୁଁ ତାଙ୍କ ସନ୍ଧାନ ଜାଣି ଆସିଛି । ସେ ଏହି ବାଗରେ ଯମୁନା ତୀରରେ ଅଛନ୍ତି । ( ଅଙ୍ଗୁଳି ନିର୍ଦ୍ଦେଶ କଲେ )

ଗୌରାଙ୍ଗ—ଏହି ବାଗରେ ? ( ଦ୍ରୁତ ନିର୍ଗତ ହେଲେ )

ମୁକୁନ୍ଦ—( ନିତ୍ୟାନନ୍ଦଙ୍କ ପ୍ରତି ) ପ୍ରଭୁପାଦ, ଆପଣ ଯେତେ ଶୀଘ୍ର ପାରିବେ ନବଦ୍ୱୀପକୁ ଯାଆନ୍ତୁ; ଶଚୀ ମାତା ଆପଣଙ୍କ ଅଦର୍ଶନରେ ଅର୍ଦ୍ଧ ମୃତାବସ୍ଥାରେ ଅଛନ୍ତି । ତାଙ୍କୁ ସାନ୍ତ୍ୱନା ଦେଇ ଶାନ୍ତିପୁର ଆଚାର୍ଯ୍ୟ ପ୍ରଭୁଙ୍କ ଘରଠାକୁ ଘେନି ଯିବେ ।

ପ୍ରଭୁଙ୍କର ବର୍ତ୍ତମାନ ବାହ୍ୟଜ୍ଞାନ ନାହିଁ । ମୁଁ ତାଙ୍କ ସଙ୍ଗରେ ଥାଇ ତାଙ୍କୁ ମିଛ ବୃନ୍ଦାବନ ଦେଖାଇବା ଛଳନାରେ ସେହିଠାକୁ ନେବି । ସେହିଠାରେ ମାତା ଠାକୁରାଣୀ ଓ ଅନ୍ୟାନ୍ୟ ଶୋକାତୁର ଭକ୍ତମାନଙ୍କ ସହିତ ପ୍ରଭୁଙ୍କ ମିଳନ କରାଇବା ।

( ନିତ୍ୟାନନ୍ଦ ଆଗେ ଓ ତତ୍ ପଶ୍ଚାତ୍ ମୁକୁନ୍ଦ ପ୍ରସ୍ଥାନ କଲେ )

## ଚତୁର୍ଥ ଦୃଶ୍ୟ

( କଳି, କାମ ଓ କ୍ରୋଧ ବ୍ୟସ୍ତ ଭାବରେ ପ୍ରବିଷ୍ଟ ହେଲେ )

କଳି— ସବୁ ନଷ୍ଟ ଗଲା, ସବୁ ଭ୍ରଷ୍ଟ ହେଲା । ତୁମ୍ଭମାନଙ୍କ ଉପରେ ନିର୍ଭର କରି ତୁମ୍ଭମାନଙ୍କୁ ଭରସା କରି କଳିରାଜ୍ୟ ଏକାବେଳକେ ଉଚ୍ଛନ୍ନ ହେଲା ।

କାମ— କ'ଣ ହେଲା ମହାରାଜ ? ଆପଣ ଏ ଯୁଗର ଏକଚ୍ଛତ୍ର ସମ୍ରାଟ ; ଆପଣଙ୍କ ପ୍ରଭାବ ନଷ୍ଟ କରିବ, ଏପରି ପାଗଳ କିଏ ହୋଇଛି ?

କ୍ରୋଧ— ମହାରାଜ, ଆପଣଙ୍କର କିଙ୍କର କ୍ରୋଧ ଥାଉଁ ଥାଉଁ କାହାର ସାହସ ଆପଣଙ୍କ ଅଧିକାରରେ ଅଶ୍ୱିନ୍ତାକ ହସ୍ତକ୍ଷେପ କରିବ ! ମୁଁ ଇଚ୍ଛା କଲେ ଏକ ମୁହୂର୍ତ୍ତରେ ଜଗତବ୍ୟାପୀ ତୁମୁଳ ବ୍ୟାପାର ସଂଘଟନ କରାଇ ଦେବି ।

କଳି— ସ୍ୱୟଂ କର୍ତ୍ତା ଯଦି ସେପରି ଇଚ୍ଛା କରନ୍ତି, ତେବେ ଆମ୍ଭମାନଙ୍କର ଆଉ ଉପାୟ କ'ଣ !

କାମ— ମହାରାଜାଙ୍କ ଉକ୍ତିର ଅର୍ଥ ଗ୍ରହଣ କରିବାକୁ ଏ ଦାସ ଅକ୍ଷମ ।

କଳି— କ'ଣ କି, ସ୍ୱୟଂ ଗୋଲୋକପତି ଧର୍ମ ପ୍ରଚାର ପାଇଁ ନବଦ୍ୱୀପରେ ଗୌରାଙ୍ଗ ଅବତାର ଗ୍ରହଣ କରିଅଛନ୍ତି ।

କାମ— ବେଶ ତ ; ଯୁଗଧର୍ମ ରକ୍ଷା କରିବା ନିମନ୍ତେ ସେ ତ ଯୁଗେ ଯୁଗେ ତାହା କରନ୍ତି । ବର୍ତ୍ତମାନ ଯେତେବେଳେ କଳିଯୁଗ, ସେ ନିଶ୍ଚୟ କଳିଧର୍ମ ପ୍ରଚାର କରିବେ ।

କଳି— ତାହା ନୁହେ, ତାହା ନୁହେ, କଳି-ହତ ଜୀବମାନଙ୍କୁ ଉଦ୍ଧାର କରି ପାପୀ ତାପୀ ପରିତ୍ରାଣ କରିବା ପାଇଁ ସେ ପତି ପତିତ-ପାବନ ରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ।

କାମ— କେଉଁ ଉପାୟରେ ସେ ପତିତ-ତାରଣ କରିବେ ?

କଳି— ନାମ-ଶକ୍ତି ଓ ପ୍ରେମ ଭକ୍ତିରେ । ସେ ପତିତ ଜନଙ୍କ ଦ୍ୱାରେ ଦ୍ୱାରେ ବୁଲି ଅସରି ନାମପସରା ଅଜାଡ଼ି ଦେବା ଲାଗି ନିଜେ ପୁଣି ସନ୍ନ୍ୟାସ ବ୍ରତ ଧାରଣ କଲେଣି । କୋଟି କୋଟି ନର ନାରୀ ପ୍ରେମୋନ୍ମତ୍ତ ହୋଇ ନାମ ସଙ୍କୀର୍ତ୍ତନ ରୋଳରେ ମେଦିନୀ କମ୍ପାଇବେ । ସେ ଧ୍ୱନି ଯେତେଦୂର ବ୍ୟାପ୍ତ ହେବ, କଳି କମ୍ବା ତଦନୁଚର କାମ, କ୍ରୋଧ, ଲୋଭ, ମୋହାଦି ମହାବୀରମାନଙ୍କ ପ୍ରଭାବ ତହିଁ ମଧ୍ୟରେ ପ୍ରବେଶ କରି ପାରିବ ନାହିଁ ।

କାମ— ତେବେ ଲୋକେ ଆଉ ଆମ୍ଭମାନଙ୍କ ସେବା ନ କଲେ ଆମ୍ଭେମାନେ ରହିବା କେଉଁଠାରେ ?

କଳି— ସେହି କଥା ତ କହୁଛି ; ଆମ୍ଭମାନଙ୍କର ଏବେ ଉପାୟ କ'ଣ ? ପଳାୟନ ଛଡ଼ା ଆଉ ତ —

( ମାୟା ହଠାତ୍ ପ୍ରବିଷ୍ଟ ହେଲେ )

ମାୟା—ଛି—ଛି— ଏତେ ଭୀରୁ ଯେ ତାହା ମସ୍ତକରେ ରାଜମୁକୁଟ ଶୋଭା ପାଇବା ଉଚିତ ନୁହେଁ, ରାଜ୍ୟ ତ୍ୟାଗ କରି ପଳାୟନ କରିବାଟା ଏକା ତୁମ୍ଭପରି ବୀରର ଉପଯୁକ୍ତ ।

କଳି —ଦେବି, ଆମ୍ଭେମାନେ ବଡ଼ ବିପଦଗ୍ରସ୍ତ—ଆପଣ ଯଦି ଦୟା କରି ଏ ଅସମୟରେ ଆସିଛନ୍ତି ତେବେ ଆମ୍ଭମାନଙ୍କୁ ସୁଯୁକ୍ତି, ସୁପରାମର୍ଶ, ସଦୁପଦେଶ ପ୍ରଦାନ କରନ୍ତୁ । ଆମ୍ଭେମାନେ ସଙ୍କଟରେ କିଂକର୍ତ୍ତବ୍ୟବିମୂଢ଼ ।

ମାୟା—ବାସ୍ତବିକ ପୁରୁଷମାନେ ସାଧାରଣତଃ ବୁଦ୍ଧିହୀନ । ବିଚାରି ଦେଖ କଳିରାଜ, ମୋ କଥା ସତ୍ୟ କି ନୁହେ । ତୁମ୍ଭେମାନେ ଭାବୁଛ ଯେ ସ୍ୱୟଂ ଦାତା ଆପଣାର ଦତ୍ତ ପଦାର୍ଥ ହରଣ କରି ତୁମ୍ଭମାନଙ୍କୁ ତୁମ୍ଭର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିବେ । ସେ ବିଶ୍ୱନିୟନ୍ତା ହୋଇ ଏରୂପ ଅନୀତି କଦାଚ କରିବେ ନାହିଁ ।

କଳି —କିନ୍ତୁ ଦେବି, ଆମ୍ଭେମାନେ ପ୍ରତ୍ୟକ୍ଷ ଦେଖୁଛୁଁ, ସେ ତାହାହିଁ କରିବାକୁ ଉଦ୍ୟତ ।

ମାୟା—ଏ ତୁମ୍ଭର ମହା ଭ୍ରମ । ଯେ ନିୟମର ପ୍ରବର୍ତ୍ତନ କରି ଅଛନ୍ତି ଓ ସେହି ବିଧି ନିୟମରେ ସୃଷ୍ଟି ପରିଚାଳନ କରୁ-ଅଛନ୍ତି ସେ କଦାଚ ତାହାର ବ୍ୟତିକ୍ରମ କରିବେ ନାହିଁ । ଏପରି କି ସେ ନିଜେ ମଧ୍ୟ ତାହାର ଅଧୀନ ହୋଇ ଚଳନ୍ତି । ତାହା ନୋହିଲେ ତାଙ୍କର ଜଗତରେ ବିଶୃଙ୍ଖଳା ଘଟିବ ।

କଳି —ତେବେ ତାଙ୍କର ଉଦ୍ଦେଶ୍ୟ କ'ଣ ?

ମାୟା—ଉଦ୍ଦେଶ୍ୟ ବୁଝିବା ଅତି ସହଜ । ସେ କେବଳ ଲୀଳା ଛଳରେ ତୁମ୍ଭମାନଙ୍କର ଶାସନ ଓ ଶକ୍ତିର ପରୀକ୍ଷା କରିବା ନିମନ୍ତେ ଏ ରୂପ କରୁଅଛନ୍ତି । ତୁମ୍ଭେମାନେ ତାଙ୍କର ଦତ୍ତ ଅଧିକାର ଓ କ୍ଷମତା ବଳରେ ଆପଣାର କୃତିତ୍ୱ ଦେଖାଇ ପାରିଲେ ସେ ନିଶ୍ଚୟ ସନ୍ତୁଷ୍ଟ ହେବେ ।

କଳି —ଧନ୍ୟା ତୁମ୍ଭେ ଦେବି ! ଏ ସୂକ୍ଷ୍ମତତ୍ତ୍ୱ ଭିତରକୁ ଆମ୍ଭେମାନେ ପ୍ରବେଶ କରି ପାରି ନ ଥିଲୁଁ । ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ ନିର୍ଦ୍ଦେଶ କରି ଦିଅନ୍ତୁ ।

ମାୟା—ତୁମ୍ଭେମାନେ ପ୍ରଚଣ୍ଡ ତେଜ ଓ ତତ୍ପରତାସହ ଆପଣା ଆପଣା କାର୍ଯ୍ୟରେ ଅଗ୍ରସର ହୁଅ । ଦେଖିବ, ଜୟ କେତେ ସୁଗମ ।

କଳି—ଆମ୍ଭେମାନେ କିନ୍ତୁ ହରିନାମରତ ଗୌରଭକ୍ତମାନଙ୍କ ନିକଟକୁ ଯିବାକୁ ଶକ୍ତିହୀନ ।

ମାୟା—ହଃ, ସେଥିପାଇଁ ଭୟ ନାହିଁ । ନିତାନ୍ତ ଏକାଗ୍ରମନା କେତେ ଜଣଙ୍କୁ ଛାଡ଼ି ଦିଅ; ବାକି ସାଧାରଣ ମାନବ ସ୍ୱଭାବତଃ ଅସ୍ଥିରଚିତ୍ତ । ମୁଁ ଅସତର୍କ; ଦୁର୍ବଳ ମୁହୂର୍ତ୍ତମାନଙ୍କରେ ସେମାନଙ୍କୁ ଆଚ୍ଛନ୍ନ କରି ମୁଗ୍ଧ କରି ପକାଇବି, ତୁମ୍ଭେମାନେ ଅବସରକୁ ପ୍ରତୀକ୍ଷା କରି ରହିଥିବ, ଛିଦ୍ର ପାଇଲା ମାତ୍ରେ ପ୍ରବେଶ କରିବ । ଯେ ଥରେ ମୋତେ ଆଶ୍ରୟ କରିବ, ଆଉ ତାହାର ପରିତ୍ରାଣ ନାହିଁ, ସହଜରେ ତୁମ୍ଭମାନଙ୍କର ଦାସ ହୋଇ ପଡ଼ିବ ।

କଳି—ଆପଣଙ୍କ ଉପଦେଶଦ୍ୱାରା ଆମ୍ଭେମାନେ ଅତ୍ୟନ୍ତ ଉତ୍ସାହିତ ହେଲୁ । ବର୍ତ୍ତମାନ ଆସ ସମସ୍ତେ ନବୋଦ୍ୟମରେ ଆପଣା ଆପଣା କର୍ତ୍ତବ୍ୟ ସମ୍ପାଦନ କରିବା । ଆଶୀର୍ବାଦ କରନ୍ତୁ ଦେବି, ଆମ୍ଭେମାନେ ଯେପରି ଅକୃତକାର୍ଯ୍ୟ ନ ହେଉ ।

( ସକଳେ ପ୍ରଣାମ କଲେ )

ମାୟା—ଯଶସ୍ୱୀ ହୁଅ ।

( ମାୟାଙ୍କ ବ୍ୟତୀତ ସକଳେ ପ୍ରସ୍ଥାନ କଲେ )

(ଗୀତ)

ମାୟା— କଏ ନ ଚହ୍ନେ ମୋତେ କଏ ନ ଜାଣେ
ମାନବ ମନମୀନ ମୋହନ ଫାନ୍ଦେ ଟାଣେ ॥ ଘୋଷା ॥
ମୋହମୟୀ ମାୟା ବୋଲି ଯେ ଦିଏ ଅପବାଦ
ସେ ପୁଣି ଭ୍ରମି ଭ୍ରମି ଆପେ ଧରଇ ପାଦ,
ପଳାଇ ଗଲେ ହେଲେ
ଭୁଲାଇ ନାନା ଛଳେ
ମୋହନ ମନ୍ତ୍ର ବଳେ ପୁଣି ଓଟାରି ଆଣେ ।
(ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

[ ସ୍ୱ ମନ୍ଦିର—ବିଷ୍ଣୁପ୍ରିୟା ମୁହଁ ମାଡ଼ି ଭୂମିରେ ଶୋଇଥିବା—
ମାଳିନୀ ନିକଟରେ ଉପବିଷ୍ଟା ]

ମାଳିନୀ—ସଖି, ଯାହା ହେବାର ତ ହେଲାଣି; ତୁମେ ଖାଲି କାନ୍ଦି କାନ୍ଦି······(ନିଜେ ଆଖିରୁ ଲୁହ ପୋଛୁଥିବା) ଛୁ, ମୋରାଣ ଆଜି କାନ୍ଦନା—କାନ୍ଦିଲେ କ'ଣ ଫେରି ଆସିବେ ? ଏତେ ଜାଣିଲ ଶୁଣିଲ ମଣିଷ ହୋଇ······ଆଚ୍ଛା କେତେ କଥାରେ ମୋତେ ତ ପୁଣି ବୁଝାଉଥିଲ; ଆପଣା ବେଳକୁ ସେ ସବୁ କୁଆଡ଼େ ଗଲା ?

ବିଷ୍ଣୁ—(ଧୀରେ ଧୀରେ ଅଳ୍ପ ଉଠି) ସଖି, ମୁଁ କଣ ଆପଣା କରମ କଥା ବୁଝୁ ନାହିଁ ଯେ ବୁଝାଉଛୁ ? କାହିଁକି କେଜାଣି ସଖି, ଛାତି ଭିତରେ ହାଉ ହାଉ କ'ଣ ଜଳି ଉଠୁଛି; ମୁଁ ଆଉ ସମ୍ଭାଳି ପାରୁ ନାହିଁ । (ମାଳିନୀ ଉପରେ ହାତ ପକାଇଲେ)

ମାଳିନୀ—ଅଚ୍ଛା, ତୁ ତ ଆପେ କହୁଛୁ, ସେ ମନୁଷ୍ୟ ନୁହନ୍ତି; ଆଜି ପୁଣି ସେ କଥା ଭୁଲି ଯାଉଛୁ କାହିଁକି ?

ବିଷ୍ଣୁ—ସତ ସଖି, ସେ ମନୁଷ୍ୟ ନୁହନ୍ତି; ମୋର କଉଁ ଜନ୍ମରେ କି ତପସ୍ୟା ଥିଲା ତାଙ୍କ ସେବା ସୁଖ ପାଇଛି । କିନ୍ତୁ ମୁଁ ତ ମନୁଷ୍ୟ । କେତେବେଳେ କହି······(ମାଳିନୀ କାନ୍ଧ ଉପରେ ମୁଖ ରଖିଲେ )

ମାଳିନୀ—ତମର ଦୁଃଖ କ'ଣ ସଖି ? ଯାହାର ଚରଣ ସେବାପାଇଁ ଦେବକନ୍ୟାମାନେ ଝୁରି ମରୁଛନ୍ତି, ତମେ ଯେ ସେ ସୁଖର ଅଧିକାରିଣୀ ହେଉଛ । ଆଉ ଦୁଃଖ କ'ଣ ?

ବିଷ୍ଣୁ—ସେଥିଲାଗି ତ ଦୁଃଖ ନାହିଁ ମୋର । ଦୁଃଖ ଏତିକି ସେ ଚରଣକମଳ ସଦାଦିନେ ହୃଦୟରେ ଧରି ରଖି ପାରିଲି ନାହିଁ ।

ମାଳିନୀ—ଯେ ପରମ ପୁରୁଷ, ଜଗତର ସ୍ୱାମୀ, ତାଙ୍କୁ ତମେ ବା କମିତି ଏକା ଆପଣାର କରି ରଖିବାକୁ ମନ କରିଥିଲ ?

ବିଷ୍ଣୁ—ସତ ସଖି, ସେତିକି ମୋର ଅପରାଧ । ସେହିତକ ପାପ ପାଇଁ ମୁଁ ଏବେ ଏଇ ଯାତନା ସହୁଛି । ଜାଣି ଶୁଣି ମୁର୍ଖୀ ମୁଁ ତାଙ୍କୁ ସାମାନ୍ୟ ମନୁଷ୍ୟ ପରି ଚିରଦିନ ବାନ୍ଧି ରଖିବାକୁ ମନ ବଳାଇଥିଲି ।

ମାଳିନୀ—ଯେ ନିଜେ ପ୍ରେମମୟ, ତାଙ୍କୁ ତୁଚ୍ଛା ସଂସାରପ୍ରୀତିର ମାୟାରେ କ'ଣ ବାନ୍ଧି ରଖି ହୁଏ ?

ବିଷ୍ଣୁପ୍ରିୟା—ନା, ନା, ମୋର ଦୋଷ ନାହିଁ । ମୁଁ ସାମାନ୍ୟ ଅବଳା ମାତ୍ର । ମୋତେ ସେ ସେହିପରି କରିଥିଲେ ।

ମାଳିନୀ—ସେଇଟା ତ ତାଙ୍କର ସ୍ୱଭାବ । ସମସ୍ତଙ୍କୁ ସେ ବାନ୍ଧିବେ ଅଥଚ ନିଜେ ଧରା ଦେବେ ନାହିଁ । ଆଉ ଯାହାକୁ ଯାହା କରନ୍ତୁ—ଅବଳା ନାରୀଙ୍କ ଉପରେ ତାଙ୍କର ବଡ଼ ଅଦୟା । ସବୁ ଯୁଗରେ ସେ କେତେ ରମଣୀଙ୍କୁ କନ୍ଦାଇ କନ୍ଦାଇ ଏବେ ବି ସାଧ ମେଣ୍ଟି ନାହିଁ । ସେ ତାଙ୍କଠେଇଁ ଯେତେ ପ୍ରାଣ ସମର୍ପିଛି, ତାକୁ ସେ ସେତିକି କନ୍ଦାଇଛନ୍ତି ।

ବିଷ୍ଣୁପ୍ରିୟା—ମୁଁ ତ ଖାଲି ତାଙ୍କ ପ୍ରୀତି ଭିକାରୁଣୀ ନୁହେ । ମୁଁ ଯେ ସହଧର୍ମିଣୀ, ମୋତେ ଯେତିକି କାନ୍ଦିବାକୁ ହେବ ସେତିକି ଛାତି ପଥର କରି ବାଧା ଦେବା ଦୂରେ ଥାଉ ତାଙ୍କ ଧର୍ମର ସହାୟତା କରିବାକୁ ହେବ ।

ମାଳିନୀ—ତେବେ ତୁମେ ଆଉ କାନ୍ଦିବ କାହିଁକି ?

ବିଷ୍ଣୁପ୍ରିୟା - ହଁ କାନ୍ଦିବି, କାନ୍ଦିବି ମାଳୀ । ଯେତେ କାଳଯାଏ ବିଷ୍ଣୁପ୍ରିୟା ଥିବ ସେତେ କାଳଯାଏ କାନ୍ଦିବ ।

ମାଳିନୀ—ସେ ଶକ୍ତି ନ ଥିଲେ ତୁମେ କ'ଣ ଶକ୍ତିଧରଙ୍କର ଅଙ୍କଲକ୍ଷ୍ମୀ ହୋଇ ଥାଆନ୍ତ ? ତୁମେ ନିଜେ ଶକ୍ତିମୟୀ; ତମରି ଶକ୍ତି ବଳରେ ସେ ସିନା ଯାହା କରିବେ ।

ବିଷ୍ଣୁପ୍ରିୟା—ସେ କଥା କହନା ମାଳୀ, ମୁଁ ତାଙ୍କର ଦାସୀ, ତାଙ୍କରି ସେବା ମୋର ଏକମାତ୍ର ଧର୍ମ ।

ମାଳିନୀ—କିନ୍ତୁ ଜଗତର ମଙ୍ଗଳପାଇଁ ଜୀବନର ସର୍ବସ୍ୱଧନ—ନାରୀର ସର୍ବଶ୍ରେଷ୍ଠ ସୁଖ ତୁମେ ଆଜି ତ୍ୟାଗ କଲ । ଏହି ନୀରବ ମହାତ୍ୟାଗର କଥା ଚିରଦିନ ରହିବ ।

( ଯବନିକା ପତନ )

## ଗୋର ସନ୍ନ୍ୟାସ

( ନବକିଶୋର ନଟବର ନିତାଇଗୌରମୂର୍ତ୍ତି ପ୍ରକଟିତ ହେଲେ ଓ ଭକ୍ତ ବୃନ୍ଦ ଗାୟନ କଲେ । )

(ଗୀତ)

ଜୟ ହେ ଜୟ ଗୌରଚନ୍ଦ୍ର କଳି-କଳୁଷହାରୀ
ଜୟ ଅବଧୂତ ନିତ୍ୟାନନ୍ଦ ଜୟ ହେ ଅଧମତାରୀ ।
ବ୍ରଜପୁରେ ଯେବା ରାମ କହ୍ନାଇ
ଗୌର ନିତାଇ ଏ ଦୁଇଭାଇ
ପ୍ରେମ ଜଳେ ଦେଲେ ଜଗତ ଭସାଇ ସିଞ୍ଚି ହରିନାମବାରି ।୧।

ଆସ କଳିଜୀବ ଆଉ ଭୟ ନାହିଁ
ଡାକୁଛନ୍ତି ହରି ନିଜ ନାମ ଗାଇ
ଆଚଣ୍ଡାଳ ସର୍ବ ଜୀବେ କୋଳ ଦେଇ ପାପତାପ-କ୍ଷୟକାରୀ ।୨।

କାଞ୍ଚନ ବରଣେ କଳା ଅଙ୍ଗ ଢାଙ୍କି
ରାଧାପ୍ରେମଭୋର ନିଜେ ପଦ୍ମ ଆଖି
ରାଧାର ଅମିୟ ମଧୁରିମା ଚାଖି ଉଦୟ ବ୍ରଜବିହାରୀ ।୩।

ସ ମା ପ୍ତ



# ଲକ୍ଷ୍ମୀ ଚଣ୍ଡାଳୁଣୀ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ନୀଳାଚଳର ବଡ଼ଦାଣ୍ଡ । ଶ୍ରୀମନ୍ଦିର ଦେଖା ଯାଉଛି । ଯାତ୍ରୀଗଣ ଦର୍ଶନକୁ ଚାଲିଛନ୍ତି । ଦଳେ ବୈଷ୍ଣବ ଝାଞ୍ଜଣୀ ବଜାଇ ଭଜନ ଗାଇ ଗାଇ ଚାଲିଗଲେ । )

( ଭଜନ )

ଆରେ ବାଇମନ ! ଭଜ ଗଲ ସବୁ ଚୋର ଜନାର୍ଦ୍ଦନ । ଘୋଷା ।

ଚକାନୟନକୁ ଚାହିଁ ଚାହିଁ, ବଳଆର ଭୁଜ ଟେକି ବାହା,
ଶରଣ ରକ୍ଷଣ ବାନା ଉଡ଼ାଉଛି
ପତିତ ଜନକୁ ହୋଇ ସାହା । ୧ ।

ଜଗତ ଗୋସାଇଁ ଜଗନ୍ନାଥ, ଜଗତ କରଇ ଆତଯାତ,
ଆସ ଆସ ବୋଲି ପାପୀଙ୍କୁ ଡକାଇ
ବଢ଼ାଇ ଦେଇଛି ଚାରି ହାତ । ୨ ।

ବ୍ରହ୍ମାଣ୍ଡ ଠାକୁର ଚନ୍ଦ୍ରଧାମ, ରତ୍ନ ସିଂହାସନେ ବଜେ ହରି
କୈବଲ୍ୟ ପସରା ବଣ୍ଟା ହେଉଅଛି
ନଅ ବେଳ କରି ସିବ ତରି । ୩ ।

( ଦୁଇଜଣ ପଣ୍ଡା ବଟମୂଳ ଆଡ଼ରୁ ଆସି ଭେଟାଭେଟି ହେଲେ )

ଧନ —ହଇ ହେ ପାଣିଆପଟେ ! ଆଜି ତ ଭାରି ସଅଳ ?

ନାଥ —କେବଳ ଜଣାପଡ଼ୁ ନାହିଁ କ ଭାଇନା ତମକୁ ?

ଧନ —ଘମାଘୋଟିଆ କନ୍ଦଟେ ଆଜି ହୋଇଥିଲା ହେ, କେବେ ଜଣା ପଡ଼ିବ କାହିଁ ?

ନାଥ —ସେଇଟା କହ । ପୁଣି—

ଧନ —ପୁଣି "ସୁନାବେଶ ଦେଖା" ମଉଜ । ହେଲେ କେହ୍ନପୋ ଗୋବରପାଣି ମାର୍ଜେ ଯୋଉ ପାଟକଟେ କାଲି ସମ ସୁଆରେ ଯୋଗାଡ଼ିଥିଲେ—କଦଳୀ, ଗୁ ଚୁଡ଼ା—ଆହାଃ ହା—

ନାଥ —ଆଉ ତା ଉପରକୁ କେଉଁଜନ ?

ଧନ —ତା' ଉପରକୁ ଖଜା ବେଣି, ଛାଲିମା, ଅମାଲୁ, ଚଡ଼େଇ-ନେଦା, ଶୁକଟା ଅସଲ ଗୁରୁଦା ପଟପଟିଆ, ବରି ଅଟା ମାର୍ଜେ ସବୁ—

ନାଥ —ଆଖଡ଼ା ପିଲା କ୍ ଜେଗାର ଆସିଥିଲେ କ ?

ଧନ —ଆରେ କେହ୍ନପୋ ! ବାଲିସାହିର ସେ ବାଁପଟ ପିଲାଟାର ଅଷ୍ଟଠାରୁ ଖାଲି ଗୁଡ଼ିକୁ ଚୁଏଁ ଚୁଏଁ ଝଡ଼ ପକାଉଥିଲା !

( ଏହି ସମୟରେ ବାଟ କଡ଼ରେ ପଡ଼ିଥିବା ରୋଗୀଟିଏ କରୁଣ ଚିତ୍କାର କରି ଉଠିଲା )

ରୋଗୀ—ଯାହା ଉଡ଼ିଗଲା ବାପା, ଯାହା ଉଡ଼ିଗଲା—ଟୋପାଏ ପାଣି !

ଧନ —ଏଇଟା ପୁଣି କିଏ ରେ—ଦେଖିବଟି ହେ !

ନାଥ —(ଦେଖି) ଗୋଟାଏ ରୋଗୀ ଭାଇନା, ଆହା ବିଚରା ! ଦଉଡ଼ି ତମ ଢାଳଟା—ପାଣି ମୁନ୍ଦାଏ ତା ତୁଣ୍ଡରେ ଦେଇ ଆସେଁ !

ଧନ —କଣ କହିଲୁ ! ଢାଳରୁ ପାଣି ଦେବ ! ନା ଆଉ କିଛି ! ଦର୍ଶ ପୂଜା ପାଇଁ ଜଳ, କେହ୍ନପୋ ରୋଗୀକି ଦେବ ?

ନାଥ —ଧର୍ମ ହେବ ଭାଇନା—ବିଚରା—

ଧନ —ରଖ୍ ତୋ ଧରମ, କେହ୍ନପୋ ଧରମ କେଞ୍ଚେଇଛି । ଭଣ୍ଡ ଭଣ୍ଡ !

ନାଥ —ଦେଖୁନା ଭାଇନା—ଲୋକଟାର ଜୀବନ ଯିବାବେଳ । ଏତେବେଳେ ତାକୁ········

ଧନ —ଆମକୁ ପାଠ ପଢ଼େଇବ ଅଣ୍ଡା ବକଟଟ ! ଅରେ ତୋ ହଳିଆ କୁକୁର ଯେବେ ଧରମ କରି ସରଗକୁ ଯିବେ ତ ଅଇଁଠା ପତର ଗୁଡ଼ିବ କିଏ ?···କେହ୍ନପୋ ହାଡ଼ଟା ଭ କମଟା—ମରୁଛି ବୋଲି ତାକୁ ଦେବ ପାଣି ! କାହ୍ନୁ ମାର କରିବ ତାହାବୋଲି !

ନାଥ —ହଉ, ଢାଳଟା ମୋ ହାତକୁ ଦେଲ—ମୁଁ ମୁନ୍ଦାଏ ଦେଇ ଆସେଁ । ମୋର କାହ୍ନୁ ମାର ହଉ ପଛକେ !

ଧନ —ଆରେ ଦର୍ଶ ପୂଜା ଢାଳ—କ'ଣ ମାର ହେବ ନାହିଁ ?

ରୋଗୀ—ବଡ଼ ଶୋଷ—ଜୀବ ଗଲା ବାହାରି—କିଏ ଅଛ ବାପା—!

ନାଥ —(ଢାଳ ଛଡ଼ାଇ ନେଇ) ଯାହା କହ ପଛକେ ମୁଁ······

ଧନ —(ବାଧା ଦେଇ ଢାଳ ଧରିଲେ) କେମିତି ଯିବୁ ଚାଲୁ ଭଲା ! ଆଜି ତୋତେ ସାତ ସିକାନ ଲଣ୍ଡା କରିଭ, ଗୋବରପାଣି, ଗଙ୍ଗାଜଳ ନ ପିଆଇଛି ତ ମୋ ନାଆଁରେ କେଧେଇଗୋ କୁକୁର ପାଳିବୁ । ଭଲ ଗତି ଅଛି ତ ମୋ ବୋଲ ମାନ୍ ! ( ଟାଣିନେଇ ବାହାରି ଗଲେ )

ବେଗୀ—କାହାର କଣ୍ଠରେ ଦୟା ହେଲା ନାହିଁ—ହଁସା ଉଡ଼ିଗଲା ବାପା···ହେ ଜଗନ୍ନାଥ—!

( ଶ୍ରୀସ୍ୱା ଚଣ୍ଡାଳୁଣୀ ଝାଡ଼ୁ ଧରି ପ୍ରବେଶ କଲା ).

ଶ୍ରୀସ୍ୱା—ମାଆ ଲେ ! ଦେଖୁଛ ନା ଏ ମିଣିପଙ୍କ ଅକଲ ! ମହା ଜବଟାଏ ଝକଲ ହଉଛି ଶୋଷରେ—ହାତରେ ପାଣି ଭାଣ୍ଡ ଧରି, କମିତି ଭଲ ହରି ଗୁଡ଼ିଗଲେ ପୂଆଙ୍କୁ ? ରହ ବାପ, ମୁଁ ପାଣି ଆଣି ଦଉଚି ।

(ବେଗରେ ବାହାରି ଗଲା )

ବେଗୀ—ଏ ବେଳରେ ଟୋପାଏ ପାଣି—ହେ କାଳିଆ ସାଆନ୍ତ ! କାହାର କଣ୍ଠରେ ଦୟା ନାହିଁ··· ?

( ପଟେଇ ପଣ୍ଡା ପ୍ରବେଶ କଲେ )

ପଟେଇ—ଆଁ —ମାହାବ୍ରାଣୀଟା ଦବ ବଇଷ୍ଣମଟା ମୁହଁରେ ପାଣି ! ଏଡ଼େ ବଢ଼ପ ! ଧର୍ମ ଗୁଡ଼ିଗଲା, ଧର୍ମ ଗୁଡ଼ିଗଲା ! ଓହୋ !

( ଶ୍ରୀସ୍ୱା ମାଟି ପାତ୍ରରେ ଜଳ ଘେନି ପ୍ରବେଶ କଲା )

ଶ୍ରୀସ୍ୱା—ନେ ବାପ, ପାଟି ଆଁ କର କ, ମୁଁ ଢାଳିଦିଏଁ । ( ଜଳ ଦେବା ବେଳରେ ଚମକ ପଡ଼ି ) ଆଁ, ଏ ଯେ ବଇଷ୍ଣମ ! ମାଳ, ତିଳକ ଅଛି । ମୁଁ ଚଣ୍ଡାଳୁଣୀଟା କମିତି···ଅଚିବ ହାତରୁ ଜଳ ଖାଇଲେ ···

ବେଗୀ—ଏ ବକ୍ତରେ ଜାତି ଅଜାତି ନାହିଁ ମା ! ଦେ, ଦେ ମୁନ୍ଦାଏ ପାଣି···ଜୀବ ଗଲା ବାହାରି ।

ପଟେଇ—ହେ, ହେ, ବୁଝି ସୁଝି ପାଣି ଦଉଥା । ବଇଷ୍ଣମର ଜାତି ମାରିବୁ ତୁ ?

ଶ୍ରୀସ୍ୱା—ଯେ ଯାହା କହୁ ପଛକେ, ମୋ ଧର୍ମ ମୁଁ ପାଳିବି । ଜଗନ୍ନାଥ ସାକ୍ଷୀ । ଆଁ କର ବାପ !

(ବେଗୀ ପାଟି ମେଲାଇଲା ଓ ଶ୍ରୀସ୍ୱା ଜଳ ଦେଲା)

ବେଗୀ—ଆଃ, କ ଶାନ୍ତି ! ନୀଳାଦ୍ରିନାଥ ତୋତେ ଅଯୂସୁଲକ୍ଷଣୀ କରି ଥାଆନ୍ତୁ ମା !

ଶ୍ରୀସ୍ୱା—ବାପ, ଭୂଇଁଟାରେ ପଡ଼ିଛ, କେତେ ବାଧା ହଉଥିବ । ଟିକିଏ କଡ଼ ଲେଉଟାନ୍ତୁ କ ଝାଡ଼ିଝୁଡ଼ି ଦେଇ ଲୁଗା ଖଣ୍ଡେ ପାରି ଶୁଆଇ ଦଅନ୍ତି ।

(ଅଂଟଣାର ଲୁଗା ଖଣ୍ଡେ ପାରି ବେଗୀକୁ ଶୁଆଇ ଦେଲା)

ପଟେଇ—ଯୁଗଟା କଣ ହେଲା ଆସି ! ଏତେ ବଡ଼ ଶ୍ରୀକ୍ଷେତ୍ରରେ ଆଉ କେହି ନ ଥିଲେ, ଏ ମାହାବ୍ରାଣୀଟା ଥିଲା ଏକା ବଇଷ୍ଣମ ତୁଣ୍ଡରେ ପାଣି ଦବାକୁ ! ଢମାକ୍ ଦେଖୁଛ ମାଇକନାଟାର !

(ଘନ ପଣ୍ଡା ପ୍ରବେଶ କଲେ)

ଘନ—ହେ ଟୋକି, ତୋ ଘର କୋଉ ସାଇରେ ?

ଶ୍ରୀସ୍ୱା—ସାଆନ୍ତେ, ମାହାର ସାଇରେ ମୋ ଘର ।

ଘନ—ତୁ ଜାଣୁ ଜାଣୁ କମିତି ଲୋକଟାର ଜାତି ନଷ୍ଟ କଲୁ ? କାୟା ଭ୍ରଷ୍ଟ କଲୁ ?

ପଟେଇ—ମୁଁ ଯେତେ ନାହିଁ କଲେ କ'ଣ ମାନିଲା ? ଖାଲି ଢମାକ !

ଘନ—ହବ ନାହିଁ ? ଆହେ, ସେ କ'ଣ ଢମାକ କରୁଛି କ ! ତା ରୂପ କରୁଛି, ତା ଯୌବନ କରୁଛି ।···ହଇଲେ ତୋ ବୟସ କେତେ ?

ଶ୍ରୀସ୍ୱା—ମୋ ବଅସରୁ ତମେ କଣ ପାଇବ ? ଭଲ ଲୋକର କଥା ଇଏ ଏକା— !

ଘନ—ହେଁ-ହେଁ, ରାଗ ହେଲୁ କ ଲୋ ! ନାହିଁ ନାହିଁ ମୁଁ ସେମିତ ପଚାରୁଥିଲି ନା !

ଶ୍ରୀସ୍ୱା—ତମର କ'ଣ ମା ଭଉଣୀ ନାହାନ୍ତି ? ତାଙ୍କୁ ପଚାରୁ ନା ?

ଘନ—କଥା ପଚାରିବାରେ କ'ଣ ଦୋଷ ହେଲା ? ହଇଲେ, ତୋର ଗିରସ୍ତ ଅଛନ୍ତି କ ?

ଶ୍ରୀସ୍ୱା—ଲାଜ ନାହିଁ ତୁମ ମୁହଁକୁ···ଏଇଥିପାଇଁ ତୁମେ ଜାତିଆ ବୋଲାଉଛ—ଛିଃ, ଛିଃ··· (ବାହାରିଗଲା)

ପଟେଇ—ଯେମିତି ଗଜା ବଅସ, ରୂପ ଖଣ୍ଡକ ବି ପାଇଚି ସେମିତି । କଣ ଖାତିର କରୁଛି ମଣିଷଙ୍କୁ ?

ଘନ—କାହିଁକି କରିବ ଭଲା ? କେତେ କେତେ ମଣିଷ ଭଲଆ ମଣିଷ ତା ଗୋଡ଼ତଳେ ମୁଣ୍ଡ ଢକୁଥିବେ, ଆଉ ତୁମ ଆମ ଭଳିଆଙ୍କୁ ସେ କାହିଁକି ପଚାରିବ ?

ପଟେଇ—ତା ନାଆଁଟା ପଚାରିଲ ନାହିଁ ?

ଘନ—ଓହୋ, ଭୁଲି ଗଲି ତ ! ହେଲେ ସେ କ'ଣ କହି ଥାଆନ୍ତା ? ଆଉରି ଦଶ ପଦ ଦେଇ ଥାଆନ୍ତା ଝାଡ଼ି ।

ପଟେଇ—କହୁ ବୁଝିବାକୁ ପଡ଼ିବ । ଏ ଭଳିଆ ଉଗ୍ରଚଣ୍ଡୀ ମାଇକନିଆଙ୍କୁ ଜବଦ ନ କଲେ, ସବୁ ମାଇପେ ମୁଣ୍ଡରେ ଚଢ଼ିବେ ।

ଘନ— ଖାଲି ମୁଣ୍ଡରେ ଚଢ଼ିବେ ! ମୁହଁରେ ମୁତିବେ ।

ପଟେଇ—ଠିକ୍ କଥା ଭାଇନା, ମାଇପେଗୁଡ଼ାକ ଖାଲି ଅଗ୍ରବଳକା ଧରିଲେଣି ।

ଘନ— ଆରେ ଯୁଗ କରୁଛି ।

( ନାଥ ପଣ୍ଡା ପ୍ରବେଶ କଲେ )

ନାଥ— ଯୁଗ କରୁଛି ନା ତମେ କରୁଛ ?

ଘନ— ଆମେ—ଆମେ ? ଆରେ ତୁ କହୁଚୁ ଏଡ଼େ କଥା ! ଏ ହାଡ଼ିଆଣୀଟା ମନା କରୁକରୁ ଦେଲା ସେ ବଇଷ୍ଣମଟା ତୁଣ୍ଡରେ ପାଣି···ଯୁଗ କରୁ ନାହିଁ ତ କଏ କରୁଚ ?

ନାଥ— ହାଡ଼ିଟା କ ଡମଟା ବୋଲି ତୁମେ ତ ପାଣି ମୁହାଏ ଦେଲ ନାହିଁ ତୁମର ଜାତି ଯିବ ବୋଲି, ଏବେ ହାଡ଼ି ମୁହଁରେ ହାଡ଼ିଆଣୀ ପାଣି ଦେଲା ; ସେତେବେଳକୁ ସେ ହେଲା ବଇଷ୍ଣମ ! ତମ ଧର୍ମ ଠାକୁରକୁ, ତମ ନ୍ୟାୟ ଠାକୁରକୁ ଧନ୍ୟ କହୁବା ।

ଘନ— କ'ଣ ଆମର ଠାକୁର ନାହାଁନ୍ତି ? ଶ୍ରୀକ୍ଷେତ୍ର ନୀଳାଚଳ ବଡ଼ଦାଣ୍ଡ ମଝିରେ, ନୀଳଚକ୍ର ତଳେ, ସ୍ୱୟଂ ପତିତପାବନଙ୍କ ଚକାଡୋଳା ଆଗରେ ଏ ଅଧର୍ମ ! ଯେତେହେଲେ ଚଣ୍ଡାଳୁଣୀଟା···

ନାଥ— ଚଣ୍ଡାଳ ତୁମେ ଆମେ, ନା ସେ ?

ଘନ—ବଡ଼ ବଡ଼ି ବଡ଼ି କଥା କହୁଛୁ ଯେ ! ଜାଣିଛୁଟି ?

ନାଥ—ଖୁବ୍ ଜାଣିଛୁ, ଭଲ ଜାଣିଛୁ, ବେଶ୍ ଜାଣିଛୁ । ଏଣେ ହାଡ଼ିଆଣୀ ବୋଲି କହୁଛ, ତେଣେ ତାର ରୂପ ଯୌବନ ଦେଖି ଜିଭରୁ ଲାଳ ଗଡ଼ୁଛୁ । ମୁଁ କ'ଣ ଦେଖିନାହିଁ ?

ଘନ—ଆରେ ପଗ୍ଳ, ଆମେ କ'ଣ ସେମିତି ?

ପଟେଇ—ଆରେ ରାମ, ରାମ—ମଧୁସୂଦନ ! ପାପ, ପାପ, ମହାପାପ ।

ନାଥ—ପାପୀ ଆମେ, ମହାପାପୀ । ଆମେ ଜାତିଆତକ ଦୁଃଖୀ, ରଙ୍କୀ, ଆରତସ୍ୱରୂପ ଯେ ନାରାୟଣ, ତାଙ୍କୁ ଛୁକାର କରି, ତାଙ୍କର ଜୀବନ ମାରି ଶୌଚ ଆଚାର ଧର୍ମ ଦେଖାଇ ହଉଛୁଁ ସିନା ! ପୋଡ଼ୁ ସେ ଜାତି, ପୋଡ଼ୁ ସେ ଧର୍ମ ।

ଘନ—ନାଥିଆଟା ମହାପାପୀ ! ଏହାକୁ ଜାତିରେ ଅଟକ କରି ଦେଉଳ ବାସନ୍ଦ କରିବା ଉଚିତ ।—କଣ କହୁଛୁ ପଗ୍ଳ ?

ପଟେଇ—ବେହପୋର ପକ୍ଷୀ ଉଠିଲାଣି—

ନାଥ—ଧିକ ତମ ଜାତିରେ—ଗୋଇଠା ମାରେ ତୁମ ସମାଜକୁ—ଏଇ ଧରିଲି ଏ ରୋଗୀକୁ । ଏହାକୁ ନେଇ ମୋ ଘରେ ସେବା କରିବି । ଏଇ ମୋର ଧର୍ମ । କଏ କଣ କରିବ ଦେଖେଁ । (ରୋଗୀକୁ ଉଠାଇଲା)

ପଟେଇ—ଆରେ ହେ ନାଥିଆ । ବଡ଼ ସାନଙ୍କ କଥା ମାନ୍ । ଟୋକାଟାକର ବୁଦ୍ଧି ଛାଡ଼ିଦେ । କାନ୍ଧରେ ପଇତା ଖିଅକ ଅଛି ତ ! ବ୍ରାହ୍ମଣ କୁଳର ମାନ ମହତଟା ହେଲେ ରଖ ।

ନାଥ—ଆଉ ତମ ବ୍ରାହ୍ମଣକୁଳ—ରଖ ତମ ପଇତାର ବଡ଼ାଇ । ଏଇ ଛିଣ୍ଡେଇଲି ପଇତା······ (ପଇତା ଛିଣ୍ଡାଇଲା)

ଘନ ଓ ପଟେଇ—ହରି—ହରି—ତ୍ରାହି ମଧୁସୂଦନ ।

ନାଥ—ଶ୍ରୀଘ୍ର ଧରବୁଟି ଏ ରୋଗୀଟାକୁ । ମୋ କାନ୍ଧକୁ ଟେକ ଦେ । ମୁଁ ନେଇ ଯିବି ଆମ ଘରକୁ । ସେଠି ସେବା କରିବି । ଦେଖିବି ମୋର କଏ କ'ଣ କରିବ ।

ଘନ ଓ ପଟେଇ—ତ୍ରାହି ମଧୁସୂଦନ ।

(ପଟ୍ଟପତନ)

## ଦ୍ୱିତୀୟ ଦୃଶ୍ୟ

[ମାର୍ଗଶୀର ମାସ ପହିଲୁ ଗୁରୁବାର ରାତି । ମା ଲକ୍ଷ୍ମୀ ତୁଳସୀ ଓ କୁମ ସହ ଶ୍ରୀକ୍ଷେତ୍ରର ସାଇ ସାଇ ବୁଲୁଛନ୍ତି ]

କୁମ—ଜାଣିଲ ତୁଳସୀ ମାଉସୀ, ମା ଠାକୁରାଣୀ ଖାଲି ପାଦରେ କେତେ ବୁଲିଲେଣି କହିଲ ? ଗୋଡ଼ ଖପରାରେ ଚାଲି ଚାଲି ସେ ପଦ୍ମପାଦକୁ କେତେ ଫୋସ ହେଉ ତ ଥିବ । ମୋ ଗୋଡ଼ ତ ଘାରି ଗଲାଣି ।

ତୁଳସୀ—ଆମ କଥା ଆଉ ତାଙ୍କ କଥା ? ବଡ଼ ଲୋକଙ୍କ ସବୁ ସୁନ୍ଦର ।

ଲକ୍ଷ୍ମୀ—ବର୍ଷର ଆଜି ଗୋଟିଏ ଦିନ । କେତେ ଯତ୍ନ କରି ଲୋକେ ମୋ ପୂଜା ଆରାଧନା କରୁଛନ୍ତି । ମୁଁ ଟିକିଏ କଷ୍ଟ କରି ମୋ ପୁଅଝିଅଙ୍କ ଦୁଆର ମାଡ଼ି ଆସିବି, ଏଥିରେ········ ?

କୁମ—ହେଲେ, ମା ସବୁରି ଦୁଆର ତ ମାଡ଼ୁ ନାହାନ୍ତି ?

ଲକ୍ଷ୍ମୀ—ମୁ କ'ଣ ପୂଜା ନେବାକୁ ଆଉ ଭୋଗ ପାଇବାକୁ ରଙ୍କୁଣୀ ହୋଇଛି କି ଲୋ ? ମୁଁ ପରଖୁଛି କାହାର, ଭକ୍ତି କେତେ ନିରୋଳା । କଏ କେତେ ଆଚାର ଧର୍ମ, ସତ୍ୟ ପାଳୁଛି ।

କୁମ—ଏତେ ଧନୀ, ରାଜା ସାଧବଙ୍କ ଘରେ ପୂଜା ହେଉଛି—କଉଁଠି କ'ଣ ଧର୍ମ, ସତ, ଆଚାର ନାହିଁ ?

ଲକ୍ଷ୍ମୀ—ବଡ଼ ଲୋକଙ୍କର ଗର୍ବ ଅହଙ୍କାର ବେଶୀ । ଖାଲି ଅନାଚାର ଅଭିମାନ, ଦମ୍ଭ !

କୁମ—ଦେଖିଲଣି ମା, ଏଇ ଯଉଁ ପକା ଦୋ-ମହଲା ଘର ଦିଶୁଛି, ଏଠି ଝୋଟିଚିତା, ପୂର୍ଣ୍ଣ କୁମ୍ଭ, କଦଳୀ ଗଛ, ଫୁଲ ପତ୍ରରେ କି ସୁନ୍ଦର ସଜା ହୋଇଛି । ଘଣ୍ଟା, ଘଡ଼ି, ତାଳ, ମର୍ଦ୍ଦଳ,

ଶଙ୍ଖ, ହୁଳହୁଳି କମ୍ପି ଯାଉଛି । ଭୋଗରାଗର ସୀମା ନାହିଁ । ଏଇଠିକି ବିଜେ କରନ୍ତୁ ।

ଲକ୍ଷ୍ମୀ—(ହସି) ତୋ ମନ ହେଉଛି ସବୁ ଦେଖିବା ପାଇଁ ? କନ୍ତୁ ଏଠିକି ଗଲେ ମୋ ଦେହ ଯେ ଜଳିଯିବ । ଏ ଧର୍ମଲୋକ, ରାଜସିକ ପୂଜା କରୁଛି । ଏ ଘରର ଘରଣୀ ଅନାଚାରିଣୀ । ଗୁରୁବାର ବୋଲି ଆଇଁଷ ବାରେ ନାହିଁ । କ୍ଷାଣକୁ ଅଗାଧିଆ ପଣେ । ଏଠୁ ଚାଲ ପଳେଇ ।

କୁମ—ଆଜ୍ ମା ଇଏ ଯଜ ବ୍ରାହ୍ମଣ ଘର—କି ସୁନ୍ଦର ଲିପି ପୋଛି ଝୁଣ୍ଟି ଦେଇଛି । ଚୂଆ, ଚନ୍ଦନ, କର୍ପୂର, ଧୂପ ବାସନା ତ ମହକ ପଡ଼ୁଛି । ଏଇଠିକି ଚାଲନ୍ତୁ ।

ଲକ୍ଷ୍ମୀ—ଜାଣିଛୁ କୁମ, ଏ ଘରଣୀ ଅଛୁଆଁ ଲୋକଙ୍କୁ ଘୃଣା କରେ । ତାଙ୍କ ଛୁଇ ମାଡ଼ିଲେ ସାତ-ସ୍ନାନ କରିବ । ମନେ ମନେ ଭାରି ଆତ୍ମଗର୍ବ । ହେଲେ ମୋର ଗରିବ, କାଙ୍ଗାଳୀ ପୁଅ ଝିଅଙ୍କୁ ଯେ ଏପରି ହେଟ ନଜରରେ ଦେଖେ, ତା' ଘରକୁ ମୁଁ ଯିବି କେଉଁ ସୁଖରେ ?

କୁମ— କେଜାଣି ମା, ତମ କଥା ତମକୁ ଗୋଚର ! ଆମେ କାହୁଁ ଜାଣିବୁ ? ରାତି ଆସି ତିନି ପହର ହେଲାଣି । ତୁଳସୀ ମାଉସୀ ତୁମେ ବୁଢ଼ୀ ମା' ଠାକୁରାଣୀଙ୍କୁ ଡେଉଳକୁ ଫେରିବା ପାଇଁ । ତୁମ କଥା ହେଲେ ଶୁଣିବେ । ସିଂହଦ୍ୱାର ତେଣେ ମୁକୁଳା ହୋଇ ରହିଥିବ ।

ତୁଳସୀ—ଖାଲି କ'ଣ ସେତିକି । ତେଣେ ପହୁଡ଼ରେ ଥାଇ ସାନ ଠାକୁରଙ୍କ ଆଖିକି ନିଦ ଆସୁ ନ ଥିବ ଯେ !

ଲକ୍ଷ୍ମୀ— ଯାଃ, ତୋର ଖାଲି ସେଇଭଳିଆ କଥା ।

ତୁଳସୀ—କ'ଣ ମିଛ କହିଲି ? ସେ ପଦ୍ମ-ପାଦରେ ତୁମ ପଦ୍ମ-ହସ୍ତ ନ ବାଜିଲେ ତାଙ୍କୁ କ'ଣ ନିଦ ଆସେ ?

କୁମ— ଆହୁରି ପୁଣି ବଡ଼ ଠାକୁରେ ରାଗ ହେବେନି କି କ'ଣ ?

ତୁଳସୀ—ମିଶିପଙ୍କର ସାତ ଖୁଣ ମାଫ୍ । ମାଇପେ ଆଜ ନଥିଓ ବୁହନ୍ତି । ସବୁବେଳେ ମିଶିପଙ୍କ ଅନୁସରଣିଆ ହୋଇ ରହିଥିବେ । ତାହାଁ ଉପରେ ପୁଣି ଯେତେ ହାନମାନ, ସେତେ ଗଞ୍ଜଣା ।

ଲକ୍ଷ୍ମୀ—ତୁଳସୀ, ତୁମକୁ ବଡ଼ ବ୍ୟସ୍ତ ଲାଗିଲାଣି, ନାହିଁ ? ଆଜି ଟିକିଏ ରହ କି, ସେଇ ସାଇଟା ବୁଲାପଡ଼ି ଆସିବା ।

କୁମ— କ'ଣ କହୁଛ ମା ! ସେଇ ସାହିଟା ପରା ହାଡ଼ି ସାହି ! ମାହାରଙ୍କ ବସ୍ତି । ରାତି ଅଧରେ ପୁଣି ଗାଧୁଆ ସିନାନ କରିବ କିଏ ?

ଲକ୍ଷ୍ମୀ—(ହସି) ମୋର କ'ଣ ପର ଆପଣା ଅଛି କୁମ ? ହାଡ଼ି ଡମ ମୋତେ କ'ଣ ମାଆ ବୋଲି ପୂଜୁ ନାହାନ୍ତି ? ମୁଁ ଯେ ସମସ୍ତଙ୍କର ମା ।

କୁମ —ହଉ ମା ତମ ଇଚ୍ଛା···ଆମର ରାଗ କ'ଣ ?

( ସମସ୍ତେ ଚାଲି ବାହାରି ଗଲେ )

## ତୃତୀୟ ଦୃଶ୍ୟ

( ଶ୍ରୀୟାର କୁଟୀର ଅଭ୍ୟନ୍ତର । ଖଟୁଲୀ ଉପରେ ଧାନ ମାଣିକା ବସାଇ ଫୁଲ ଆଦି ଦେଇ ସଜାଇଛି । ଆଗରେ ଶ୍ରୀୟା ଜାନୁ ପାତି ବସି କର ଯୋଡ଼ି ଜଣାଣ କରୁଛି )

( ଗୀତ )

ଜଗତ ଜନନୀ ମାତ,
ଜଗତକୁ କରୁ ତୁ ଆତ ଜାତ ଗୋ,
ତୋର ପୟରେ ନମୁଛି ମାତ—ଜନନୀ ଗୋ ।
ଅଧମ ପାତକୀ ମୁହିଁ,
ଖୁଦକଣା ଘରେ ମୋହର ନାହିଁ ଗୋ,
ପୂଜାବିଧି କିଛି ନ ଜାଣଇ—ଜନନୀ ଗୋ ।
ଜଗତନାଥ ଘରଣୀ,
ପଦ୍ମାଳୟା ଶୁଦ୍ଧ-ସ୍ୱର୍ଣ୍ଣ-ବରଣୀ ଗୋ,
ଧନାହୀନାର ଦୁଃଖହାରିଣୀ—ଜନନୀ ଗୋ ।
ଚରଣେ ଶରଣ ତୋର
ନିଜ ଗୁଣେ ବାରେ ସୁଦୟା କର ଗୋ,
ଦୁଃଖସାଗରୁ ଉଦ୍ଧରି ଧର—ଜନନୀ ଗୋ ।
ଜନମିଛି ନୀଚ-କୁଳେ
ଶରଧା ଭକତି ନ ଜାଣେ ଠୂଳେ ଗୋ,
ପ୍ରାଣ ସମର୍ପିଲି ସେ ପାଦ ମୂଳେ—ଜନନୀ ଗୋ ।

( ଗୀତାନ୍ତେ ଶ୍ରୀୟା ପ୍ରଣାମ କରୁଥିବାବେଳେ ଲକ୍ଷ୍ମୀ ପ୍ରବିଷ୍ଟା ହେଲେ । )

ଲକ୍ଷ୍ମୀ—ଉଠ ଝିଅ, ନ କର ଭାବନା,
ଆସିଛି ମୁଁ ଫେଡ଼ିବାକୁ ଦରିଦ୍ରର ଦୁଃଖ,
ଦାମ୍ଭିକର ଅତ୍ୟାଚାରୁ କରିବି ଉଦ୍ଧାର
ଯେତେ ମୋର ପତିତ ସନ୍ତାନେ;
ସର୍ବହରା, ଉତ୍ପୀଡ଼ିତ ଜନେ ।

ସତୀ, ପୁଣ୍ୟବତୀ ତୁହି, ଶ୍ରୀୟା, ପ୍ରିୟା ମୋର,
ପବିତ୍ର ଶରୀର ତୋର,
ଆତ୍ମା ସୁନିର୍ମଳ ।
ଆଗ୍ରହ, ବଗ୍ରହ ଭକ୍ତି,
ଦେଖି ତୋର ହୋଇଛୁ ପ୍ରସନ୍ନ ।

ଶ୍ରୀୟା—କିଏ ଗୋ ମା ତୁମେ ? ରାଜରାଣୀ କି ଦେବୀ ପରି ଦିଶୁଛ । ପଦ୍ମଫୁଲ ବାମ ମସ୍ତକ ଉଠୁଛି । ତୁମ କାନ୍ତିରେ ଘର ମୋର ଆଲୁଅ ହୋଇ ଯାଉଛି ।

ତୁଳସୀ—ଚିହ୍ନି ପାରୁ ନାହୁଁ ଶ୍ରୀୟା ! ତୁ ଯାହାଙ୍କୁ ପୂଜୁଛୁ, ଏ ସେହି ସ୍ୱୟଂ ସେହି ।

ଶ୍ରୀୟା—ମା ଲକ୍ଷ୍ମୀ ! ମା ଲକ୍ଷ୍ମୀ ! ସତେ ଏଡ଼େ ଭାଗ୍ୟ ମୋର ? ଏ ଚଣ୍ଡାଳୁଣୀଟା ଘରକୁ କିପରି ବିଜେ କଲ ମା, ଏତେ ଦୟା ? ମୁଁ କଣ କରିବି !

( ପୁଣି ପ୍ରଣାମ କଲା )

ଲକ୍ଷ୍ମୀ—ଉଠ ମା ! ଦେଲି ବର
ଧନ, ଧାନ୍ୟେ ପୂର୍ଣ୍ଣ ହେଉ ତୋର ବାସଗୃହ,
ଚଞ୍ଚଳା ଅଚଳା ହୋଇ କରନ୍ତୁ ବସତି ।
ପୁତ୍ରବତୀ, ଆୟୁଷ୍ମତୀ,
ଅହ୍ୟସୁଲକ୍ଷଣୀ ହୋଇ କାଟୁଥାଅ ଦିନ;
ଅନ୍ତେ ଯାଇ, ବୈକୁଣ୍ଠରେ ଲଭ ଦିବ୍ୟ ସ୍ଥାନ
ସହଚରୀ ରୂପେ ମୋର ।

( ଲକ୍ଷ୍ମୀ ଅନ୍ତର୍ଦ୍ଧାନ ହୋଇଗଲେ । ଶ୍ରୀୟା ମା' ମା' ବୋଲି ଡାକି ମୂର୍ଚ୍ଛିତା ହୋଇ ପଡ଼ିଗଲା ।

( ପଟ ପତନ )

## ଚତୁର୍ଥ ଦୃଶ୍ୟ

[ବଳଦେବଙ୍କ ଶୟନାଗାରର ଦୁଆର ଆଉଜା ହୋଇଛି, ଦୁଆର ଆଗରେ ଜୟ ବିଜୟ ଜଗୁଆଳୀ ଅଛନ୍ତି, ଜୟ ନିଦ୍ରିତ, ନାରଦ ଗୀତ ଗାଇ ଗାଇ ପ୍ରବେଶ କଲେ]

—ଗୀତ—

ଭଜ ରାମ ନାମ ବରଦାୟୀ
ଜାନକୀ ବଲ୍ଲଭ ଚରଣ କମଳ ପର
ମନ-ମଧୁକର ହେଉ ବାଇ । ଘୋଷା ।

ଜୀବନ, ଯୌବନ ସୁନ୍ଦର କାୟା
ଧନ, ଜନ, ସମ୍ପଦ ସ୍ୱପନର ମାୟା,
ଏ ଭବ-ସାଗର- ତାରଣ କାରଣ ରାମ ଚରଣ ଥିବୁ ଧ୍ୟାୟି ।
ଜଗଜ୍ଜନ ବନ୍ଦନ ଦଶରଥ ନନ୍ଦନ ସୁନ୍ଦର ରଘୁବର ଶ୍ୟାମ
ପ୍ରେମ ପୁଲକଭରେ ଅନ୍ତରେ ଅନ୍ତରେ ଜପୁଥା ରାମ ନାମ
(ବୁଲ) ରାମ ନାମ ଗାଇ ଗାଇ
(ମନରେ) ରାମ ନାମ ଗାଇ ଗାଇ ।
କେ ତୋର କାନ୍ତା କେ ତୋ' ପୁତ୍ର
କେ, ତୋ' ପିତା ମାତା,
କେ ତୋର ସାଥି ବନ୍ଧୁ ଜ୍ଞାତି
କେ ତୋର ଭଗ୍ନୀ ଭ୍ରାତା,
(ସବୁ) ଚଞ୍ଚଳ ବାଦଲ ଛାଇ,
(ମନରେ) ଚଞ୍ଚଳ ବାଦଲ ଛାଇ ॥

ବିଜୟ—ଗୋସେଇଁ ମହାପ୍ରଭୁ, ବଡ଼ ଠାକୁରେ ପହୁଡ଼ରେ ଅଛନ୍ତି, ଗୋଳମାଳରେ ନିଦ ଭାଙ୍ଗିଗଲେ ଆମ ଉପରେ ହବ ଗାଳି ।

ନାରଦ—କିନ୍ତୁ ମୁଁ ତ ନିଦ ଭଙ୍ଗେଇବା ପାଇଁ ଆସିଛି—ଖୁବ ଆକଟ କାମ ।

ବିଜୟ—ଆମେ ତ ଗୋସେଇଁ ହୁକୁମର ଚାକର—ବିନା ହୁକୁମରେ ···

ଜୟ—ଆରେ ବିଜା ! କଉଁଠି କି କଥା କହୁଛୁ, ଏତେ ଦିନ-ଯାଏ ଏତକ ବୁଦ୍ଧି ହେଲା ନାହିଁ ତୋର ? ଜାଣିଛୁ ନା ସେ କିଏ ? ପୁଣି ଗୋଟାଏ ଅପଶାଇପ ଫପଶାଇପ ଦେଇ ବସିବେ ତ ମେଞ୍ଚକ ମରିଯିବ ଏକାବେଳେ । ··· ଗୋସେଇଁ ମହାପ୍ରୁ ! ଆପଣଙ୍କୁ ତ ସବୁଠିଁ ସାହାଣ ମେଳା । ବିଜାଟାର ଅକଲ ନାହିଁ । ପେଲି ଚାଲିଯାଆନ୍ତୁ ସିଧା ସରପଟ ଭିତରକୁ ।

ବିଜୟ—କିନ୍ତୁ ···

ଜୟ—ଫେର୍ । ଚୁପ୍ କର କହୁଚି । ଯାଆନ୍ତୁ ଆପଣ ।

[ଦୁଆର ମେଲେଇ ନାରଦ ଘର ଭିତରେ ପ୍ରବେଶ କଲେ । ] (ପଟ ପରିବର୍ତ୍ତନ)

[ ରତ୍ନ ପଲଙ୍କରେ ବଡ଼ଠାକୁରେ ବିଜେ କରିଛନ୍ତି । ମାତ୍ର ତାଙ୍କର ନିଦ୍ରା ଭଙ୍ଗ ହୋଇଛି । ନାରଦ ପ୍ରବେଶ କଲା ମାତ୍ରେ ସେ ଉଠି ବସିଲେ ]

ବଳଦେବ—ଏ ସମୟରେ ପୁଣି କି ସମ୍ବାଦ ଘେନି ଆସିଲେ ଦେବର୍ଷି ?

ନାରଦ—ସମ୍ବାଦ ଗୁରୁତର ହୋଇ ନ ଥିଲେ ଆପଣଙ୍କ ସୁଖ ଶୟନରେ ବ୍ୟାଘାତ ଘଟାଇବାକୁ ଏ ଦାସ ସାହସ କରନ୍ତା କି ପ୍ରଭୋ ! ଅଭୟ ଦେଲେ କହିବ ।

ବଳ—ନିର୍ଭୟରେ କହନ୍ତୁ ।

ନାରଦ—ମା ଲକ୍ଷ୍ମୀ ଜଗତ୍ର ପାଳୟିତ୍ରୀ ଓ ଧର୍ମର ରକ୍ଷୟିତ୍ରୀ । ସେ ଯେବେ ଅନାଚାର, ଅଧର୍ମର ପ୍ରଶ୍ରୟ ଦିଅନ୍ତି, ଲୋକେ ତାହା ଅନୁସରଣ କରିବେ । ଶେଷେ ପବିତ୍ର ଧର୍ମ ନାଶ ହୋଇଯିବ; ଜଗତ ଛାରଖାର ହେବ ।

ବଳ—କ'ଣ ହୋଇଛି, ଖୋଲି କହନ୍ତୁ ।

ନାରଦ—ଆଜି ଧାନ ମାଣିକା ଓଷା ଜାଣିଥିବେ ?

ବଳ—ହଁ ଲକ୍ଷ୍ମୀ-ପୂଜା ଆଜି । ଲୋକେ ଧାନ ମାଣିକା ପୂଜି ଲକ୍ଷ୍ମୀ ଦେବୀଙ୍କର ଆରାଧନା କରୁଥିବେ ।

ନାରଦ—ତାହା ବୋଲି ସ୍ଥାନାସ୍ଥାନ, ପାତ୍ରାପାତ୍ର ନ ମାନି ମ୍ଳେଚ୍ଛ, ଅଚ୍ଛୁଆଁ, ଚଣ୍ଡାଳ ଘରକୁ ନିଜେ ଯାଇ ପୂଜା ଗ୍ରହଣ କରିବାଟା ···

ବଳ—ଘୋର ଅନ୍ୟାୟ, ଆଚାରବିରୁଦ୍ଧ !

ନାରଦ—ମା ଲକ୍ଷ୍ମୀ ନିଜେ ଚଣ୍ଡାଳ ସାହିରେ ବୁଲୁଛନ୍ତି ପରା ।

ବଳ—ସତେ ଦେବର୍ଷି ?

ନାରଦ—ଆଉ ପୁଣି କଣ ! ମୁଁ ନିଜ ଆଖିରେ ଦେଖି ଆଇଲି ।

ବଳ—ଚଣ୍ଡାଳ, ମାହାର ସାହିରେ !···କିଏ ଅଛରେ ।

( ଜୟ ବିଜୟ ପ୍ରବେଶ କଲେ )

ଜୟ—ଆଜ୍ଞା ହେଉ ମହିମା ।

ବଳ—ସାନ ଠାକୁରଙ୍କୁ ଖବର ଦିଅ ।

ଜୟ—ଆଜ୍ଞା ସେ ପଦ୍ମୁଡ଼ିରେ ଅଛନ୍ତି ।

ବଳ—ମୋର ଆଦେଶ; ଶୀଘ୍ର ଡାକିଆଣ ।

(ଜୟ ବିଜୟ ପ୍ରସ୍ଥାନ କଲେ)

ଦେଖି ଦେବର୍ଷି, ନିଜେ ଆରାମରେ ଶୋଇଛନ୍ତି ଏଣେ, ସ୍ତ୍ରୀ ବୁଲୁଛନ୍ତି ସାହି ସାହି ରାତି ଅଧରେ ।

ନାରଦ—ଗିରସ୍ତଙ୍କ ଅଜଣାରେ କ'ଣ ମା ଠାକୁରାଣୀ ···

ବଳ—ସେ ଯାହା ହେଉ, ସାନ ଠାକୁରଙ୍କ ଆଗରେ ତୁମେ କହି ସବୁ କଥା । ମାଇପି ଲୋକଙ୍କୁ ମୁହଁ ଦେଲେ···

ନାରଦ—ଜାଣିଛନ୍ତି ତ ଆପଣ । ତୁଚ୍ଛାଟାରେ ତାଙ୍କୁ କହି ଫଳ କଣ ? ପ୍ରତିକାର କରିବାର ହେଲେ ଆପଣ ହିଁ କରିବାର କଥା । ଆପଣ ହେଲେ ଘରର କର୍ତ୍ତା ।

(ଜଗନ୍ନାଥ ପ୍ରବେଶ କଲେ)

ଜଗନ୍ନାଥ—ଭାଇ, ଏତେ ରାତିରେ କି ଆଜ୍ଞା ହେଉଛି—ଓଃ ! ଦେବର୍ଷି ଯେ!···କିଛି ଖଳି ଭିଆଇଛନ୍ତି ପରା !

ନାରଦ—ହଁ ପ୍ରଭୁ, ମୋ ନାଆଁଟା ତ ବଦନାମ । ମାତ୍ର ଆଜିକାର କଥାଟା ହସି ଉଡ଼ାଇ ଦେବାର କଥା ନୁହେ । ଭାରି ଗୁରୁତର । ବୁଝି ଦେଖନ୍ତୁ, ଭାରି ଗୁରୁତର ।

ବଳ—ଦେଖି କହ୍ନେଇ, କମଳା ବର୍ତ୍ତମାନ ଘରେ ଅଛନ୍ତି ତ ?

ଜଗ—(ଲଜ୍ଜାନତ ହୋଇ) ନାହାନ୍ତି ।

ବଳ—କୁଆଡ଼େ ଯାଇଛନ୍ତି ଜାଣୁ, ଏ ନିଶବଦ ରାତିରେ ?

ଜଗ—ଆଜି ତାଙ୍କର ପୂଜା···ସେଥିପାଇଁ ··· ···

ବଳ—ସେଥିପାଇଁ ଦାଣ୍ଡରେ ବୁଲୁଛନ୍ତି—ପୁଣି ଚଣ୍ଡାଳ ସାହିରେ ?

ନାରଦ—ଚଣ୍ଡାଳ ଘରେ ପୂଜା ଗ୍ରହଣ କରୁଚନ୍ତି ନିଜେ ।

ବଳ—ମୁଁ କହୁଛି କହ୍ନେଇ, ନାରୀଙ୍କର ଏ ସ୍ୱେଚ୍ଛାଚାରିତା ଭଲ ନୁହେ ।

ନାରଦ—ଖାଲି ପୂଜା ତ ନୁହେଁ—ଭୋଗ ବି—ପୁଣି ଶ୍ରୀୟା ଚଣ୍ଡାଳୁଣୀ ହାତରେ, ତାହାର ଘରେ ।

ବଳ—ଓଃ, ଅସହ୍ୟ, ଅସହ୍ୟ, । ଏଥିର ପ୍ରତିବିଧାନ ନ କଲେ ଚଳିବ ନାହିଁ ।

ନାରଦ—ଆଉ କ'ଣ ! ଦୁନିଆ ଭଣ୍ଡୁର ହୋଇଯିବ ।

ବଳ—ଠିକ୍ । ···ଦେଖ୍ କହ୍ନେଇ, ମୋର ଆଦେଶ, କମଳାକୁ ଦେଉଳ ବାସନ୍ଦ । ସେ ପ୍ରବେଶ କଲେ ଦେଉଳର ପବିତ୍ରତା ନଷ୍ଟ ହୋଇଯିବ । ବରଂ ହାଡ଼ି ସାହିରେ ନୂଆ ଦେଉଳ ତୋଳାଇ ତୁମେ ଦୁଇଜଣ ରହିପାର । ମୁଁ ବଡ଼ ଦେଉଳରେ ଏ ଭଳି ଅମାନ୍ତ ଅନାଚାର ପଶିବାକୁ ଦେବି ନାହିଁ ।

ଜଗ—ଭାଇ କଥାଟା ସମ୍ପୂର୍ଣ୍ଣ ନ ବୁଝି, ଶୁଣା କଥାରେ ଏପରି ଗୁରୁଦଣ୍ଡ ?

ବଳ – ଆଉ ବୁଝିବି କ'ଣ ? ନାରଦ କ'ଣ ମିଥ୍ୟା କହୁଛନ୍ତି ?

ନାରଦ—ନାରଦ ମିଥ୍ୟା କହିବେ ? ପୁଣି ମା ଠାକୁରାଣୀଙ୍କ ନାଆଁରେ—ଆଉ ଆପଣଙ୍କ ସମ୍ମୁଖରେ ? ଏକା ସାନ ଠାକୁରଙ୍କ କଥାଟା ବୁଝି ପାରିଲେ ତ ?

ଜଗ—(ହସି) ମୋ ନାଆଁରେ କ'ଣ ପୁଣି ଲଗାଇଛନ୍ତି କି ଦେବର୍ଷି ? ନାରଦଙ୍କର ହାଡ଼ଆଣୀ ସମ୍ପର୍କଟା ତ ··· କାହାରିକୁ ଅଜଣା ନୁହେଁ ?

ବଳ—ମୁଁ ଯାହା କହିଲି, ତାହା କରିବାକୁ ହେବ । ଅନ୍ୟଥା ହେଲେ ମୁଁ ନିଜେ ଦେଉଳ ଛାଡ଼ି ବାହାରି ଯିବି । ମାତ୍ର ଦେଉଳରେ ଜଳ ଗ୍ରହଣ କରିବି ନାହିଁ ।

ନାରଦ—ମୁଁ ଜାଣେ ପରା କୌଣସି ଅନାଚାର ବ୍ୟଭିଚାର ତାଙ୍କ ଆଖିରେ ଯାଏ ନାହିଁ । ବଡ଼ ଠାକୁରଙ୍କର ଏଇ ଏକ ଜିଦ୍ ।

ଜଗ—ଭାଇ, କ୍ରୋଧ ତ୍ୟାଗ କରନ୍ତୁ, ଆପଣଙ୍କ ଆଜ୍ଞା ନିଶ୍ଚୟ ପ୍ରତିପାଳିତ ହେବ ।

(ଜୟ ବିଜୟ ପ୍ରତି)

ଜୟ ! ବିଜୟ ! ସିଂହଦ୍ୱାର କ'ଣ ମୁକୁଳା ଅଛି ?

ଜୟ—ମା ଠାକୁରାଣୀ ମୁକୁଳା ରଖିବାକୁ ଆଜ୍ଞା ଦେଇ ଯାଇଛନ୍ତି ।

ଜଗ—ଯାଅ ଦ୍ୱାର କିଳି ଦିଅ । ଯେତେ କହିଲେ ଖୋଲିବ ନାହିଁ । ବଡ଼ ଠାକୁରଙ୍କ ଆଦେଶ ।

ଜୟ—ଯେ ଆଜ୍ଞା ।

ନାରଦ—ମୁଁ ତେବେ ବିଦାୟ ନେଉଛି । ସିଂହଦ୍ୱାର ତେଣେ କିଳା ହୋଇଯିବ ।

( ନାରଦ ବାହାରି ଆସିଲେ ଓ ପଛେ ପଛେ ଜଗନ୍ନାଥ ଆସିଲେ । )

ଜଗନ୍ନାଥ—ଦେବର୍ଷି, ଚାଲି ଯାଉଛନ୍ତି ଏତେ ବେଗି ! ନାଟ ଦେଖିବାକୁ ରହିବେ ନାହିଁ ନାଟର ଗୋବର୍ଦ୍ଧନ ?

ନାରଦ—ନାରଦର ଗୁରୁ କି ଏ ଚତୁର ଶିରୋମଣି ? ନାରୀର ମାନ ବଢ଼ାଇବା ଓ ପତିତ ଉଦ୍ଧାର କରିବା ପାଇଁ ତୋର କୌଶଳ ନାରଦକୁ ଭଲ ଜଣାଅଛି ।

—ଗୀତ—

ତୋ ଚତୁରପଣର ନାହିଁ ତୁଳନା,
ଭୁଲାଉଛୁ ମିଛେ ଦେଇ ତୁଚ୍ଛା ଖେଳନା । (ଘୋଷା)
ମୋଠେଇଁ ଫନ୍ଦିର ତୋର    ଚାଲିବ ନାହିଁ ଏଥର
ଜାଣିଛି ମୁଁ ତୋ ଚିତ୍ତଚୋର କଳନା ।
ତୋ ନବରଙ୍ଗିଆ ମତି    ଭଲେ ମୁଁ ଜାଣିଛି ଅତି
ଦେଖି ଦେଖି ନିତି ନିତି ନୂଆ ଛଳନା ।

( ପଟ୍ଟ ପତନ )

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ବଡ଼ ଦେଉଳର ସିଂହ ଦ୍ୱାର ଭିତରୁ କିଳା ହୋଇଛି, ଭିତର ପଟେ ଜୟ ବିଜୟ ଜଗି ବସିଛନ୍ତି ]

ଜୟ—ରେ ବିଜା, ଚେଇଁଚୁ ନା ଶୋଇ ପଡ଼ିଲୁଣି ?···ମୁଁ ଟିକିଏ ଗଡ଼ପଡ଼ ହଉଛି, ବୁଝିଲୁ ? ତୁ ଜାଗତା ଥିବୁ କି, ମା' ଠାକୁରାଣୀ ଆସିଲେ ମୋତେ ଡାକ ଦବୁ ।

ବିଜୟ—ମୋ ଯୋଡ଼ାକ ଯାକ ଆଖି ଲାଗି ଲାଗି ଆସିଲାଣି, ତୁ ଟିକିଏ ଜଗିଥା, ମୁଁ ଷାଠିଏଟା ନିଶ୍ୱାସ ମାରିନିଏଁ ।

ଜୟ—ମୋର ସାଙ୍ଗରେ ଦେଖୁଛି ତୋର ସବୁବେଳେ ହଠ । ଯାହା କହିଲି ତା' କର । ମୁଁ ବାବା ପଡ଼ିଲି ।

( ଭୂଇଁରେ ଗଡ଼ ପଡ଼ିଲା ଓ ଘୁଙ୍ଗୁଡ଼ି ମାରିଲା )

ବିଜୟ—ନିଦ କ'ଣ ଏକା ତୋହରି ଅଛି ? ମୁଁ ବି ଏଇଠି ପଡ଼ିଲି ବାବା ! (ପଡ଼ି ଘୁଙ୍ଗୁଡ଼ି ମାରିଲା)

[ଲକ୍ଷ୍ମୀ, ତୁଳସୀ ଓ କୁମ ବାହାର ପଟେ ସିଂହଦ୍ୱାର ଆଗରେ ଆସି ପହଞ୍ଚିଲେ ]

କୁମ—(ସିଂହଦ୍ୱାର ଠେଲି) ଦୁଆର କିଳିଲା କିଏ ? ଖୋଲ, କିଏ ଅଛ ?

(ଆଉ ପାଖରେ)

ଜୟ—ଜବାବ ଦେ ବିଜା !

ବିଜୟ—ତୁ ଦଉନୁ ?

ଜୟ—ମୁଁ ପରା ଶୋଇଛି ନିଘୋଡ଼ ନିଦରେ, କିମିତି ଜବାବ ଦେବି ?

ବିଜୟ—ଆଉ ମୁଁ କ'ଣ ଚେଇଁଛି ! (ଘୁଙ୍ଗୁଡ଼ି ମାରିଲା)

କୁମ—ଜୟ, ବିଜୟ, ମା ପରା ଛିଡ଼ା ହୋଇଛନ୍ତି ।···ତମକୁ କ'ଣ ଲାଗିଲାଣି କି ?···ଦଶା ନିଦ—କାଳ ନିଦ୍ରା ଘୋଟିଛି ନା କ'ଣ ? ମାଡ଼ ପଡ଼ୁ ନାହିଁ ଟିକେ !

ଜୟ—କବାଟ ଖୋଲା ହୋଇ ପାରିବ ନାହିଁ ।

କୁମ—କାହିଁକି ମ ?

ଜୟ—କହିଲି ତ ଖୋଲା ହେବ ନାହିଁ ।

ତୁଳସୀ—ଜୟ, ବିଜୟ ! ଏତେ ଦିମାକ ତମର ? ଦରଜା ଖୋଲିବ କି ନାହିଁ ପଚାରେଁ ?

ଜୟ—ଜବର ମାମଲାରେ ବିଜା—ଆମେ ସମ୍ଭାଳି ପାରିବା ନାହିଁ । ଧାଇଁ ଯା, ସାନଠାକୁରଙ୍କୁ ଡାକି ଆଣ ।

( ବିଜୟ ଉଠିପଡ଼ି ଭିତରକୁ ଗଲା )

ତୁଳସୀ—ଜବାବ ଦଉନା ଯେ ! ମଲଣି କି ?···ଖୋଲିବ ନା କବାଟ ଭାଙ୍ଗିବି ? ଚିହ୍ନିବନି ମୋତେ ?

ଜୟ—ଆମ ଉପରେ ରାଗୁଛ କାହିଁକି ମାଉସୀ ? ଆମକୁ ତ ସେଇ ଭଳି ହୁକୁମ ।

ଲକ୍ଷ୍ମୀ—ହୁକୁମ୍ କାହାର ?

ଜୟ—ଖୋଦ୍ ସାନଠାକୁରଙ୍କର ।

ଲକ୍ଷ୍ମୀ—ଓଃ, ଆଚ୍ଛା ମୁଁ କହୁଛି କବାଟ ଖୋଲ । ମୋ ହୁକୁମ ମାନିବ ନାହିଁ ତୁମେ ?

(ଜଗନ୍ନାଥ ଆସିଗଲେ)

**ଜଗ—କବାଟ ଖୋଲି ହେବ ନାହିଁ ।**

ଲକ୍ଷ୍ମୀ—କାରଣ ?

ଜଗ—କାରଣ, ତୁମେ ସାହି ସାହି ବୁଲି ହାଡ଼ି ଘରେ ପଶିଛ ।

ଲକ୍ଷ୍ମୀ—ତେବେ କ'ଣ ପବାଡ କରିବ ?

ଜଗ—ସେଥିରେ ହେବ ନାହିଁ ।

ଲକ୍ଷ୍ମୀ—ଆଉ ?

ଜଗ—ଏକାବେଳକେ ତ୍ୟାଗ । ତୁମ ହାତରୁ ଜଳ ଛୁଇଁଲେ ଆମ ଜାତି ଯିବ । ତୁମେ ଦେଉଳରେ ପଶିଲେ ଦେଉଳ ହେବ ମାର୍ଦ୍ଦ ।

ଲକ୍ଷ୍ମୀ—ଗୁହକ ଚଣ୍ଡାଳ ହାତରୁ ଖାଇଲେ ଜାତି ଯାଏ ନା, ଆଉ ଶବରୁଣୀ ଅଇଁଠା ଖାଇଲେ ଜାତି ଯାଏ ନା କି ଗଉଡ଼ ଘରେ ରହିଲେ ଜାତି ଯାଏ ନା ?

ଜଗ—ସେ ସବୁ ପୁରୁଷଙ୍କ କଥା, ଧରାଯାଏ ନାହିଁ ।

ଲକ୍ଷ୍ମୀ—ଆଉ ସ୍ତ୍ରୀଙ୍କ ବେଳକୁ କିଛି ପଡ଼ିଲେ ଧରାଯାଏ— କାରଣ ସ୍ତ୍ରୀ ଅବଳା, ପୁରୁଷ ବଳବାନ୍ । ନାଇଁ ?

ଜଗ—ଯାହା କହିଲ ତାହା ଠିକ୍ । ପୁରୁଷ ପ୍ରଭୁ, ସ୍ତ୍ରୀ ଦାସୀ ।

ଲକ୍ଷ୍ମୀ—ଏ କ'ଣ ଦୁର୍ବଳ ଉପରେ ସବଳର ଅତ୍ୟାଚାର ନୁହେଁ— ଜୁଲମ ନୁହେଁ ?

ଜଗ—ସମାଜର ନୀତି ।

ଲକ୍ଷ୍ମୀ—ଏ ନୀତି ବାନ୍ଧିଛି କିଏ—ପୁରୁଷ ତ ? ନାରୀର କ୍ଷମତା ଥିଲେ କ'ଣ ହୁଅନ୍ତା ?

ଜଗ—ପ୍ରକୃତି ନାରୀର ବିପକ୍ଷରେ । ଇଚ୍ଛା ହେଲେ ପରୀକ୍ଷା କରିପାର, ପ୍ରକୃତି ବିରୁଦ୍ଧରେ ଯୁଦ୍ଧ କର ।

ଲକ୍ଷ୍ମୀ—ତେବେ ଏହି କଥା — ମୁଁ ଫେରିଯିବି ?

ଜଗ—ଆଉ କଅଣ ବୁଝିବ ?

ଲକ୍ଷ୍ମୀ—ମୋତେ ଅସହାୟା, ନିଃସ୍ୱା ଅବଳା ଭାବି ଏ କଥା କହୁଛ ଟି ! ଜାଣ କି ରତ୍ନାକର ମୋର ବାପ ଘର ?

ଜଗ—କିଏ ନ ଜାଣେ ?

ଲକ୍ଷ୍ମୀ—ତେବେ ମୁଁ ସେଇଠିକୁ ଯାଉଛି । ଯେ ବେଶ୍ୟା ହୋଇଥିବ ସେ ପୁଣି କେଉଁଠିକୁ ଯିବ । ତୁଳସୀ, ମୋ ଅଳଙ୍କାର ସବୁ ଓହ୍ଲାଇ ଫୋପାଡ଼ି ଦଉଛି ଏଇଠି ।

ତୁଳସୀ—ଅଳଙ୍କାରର ପୁଣି କି ଦୋଷ ହେଲା ? ସେ ତ ତୁମ ବାପଘରର ଅଳଙ୍କାର ।

ଲକ୍ଷ୍ମୀ—ହେଲେ ବି ଏଥିରେ ଶ୍ୱଶୁର ଘରର ଦାଗ ଥାଇପାରେ ।

ତୁମ—ମା, ଆମେ ବି ତୁମ ସଙ୍ଗରେ ଯିବୁଁ ।

ତୁଳସୀ—ଆମେ ବି ତ ତୁମର ସଙ୍ଗରେ ଅଜାତି ହୋଇଛୁ । ଦେଉଳକୁ କମିତି ଯିବୁଁ ? ଆଉ ଏକୁଟିଆ ବା ତୁମକୁ କମିତି ଛାଡ଼ିଦବୁ ?

ଲକ୍ଷ୍ମୀ—ହଁ;···ତୁମ ଇଚ୍ଛା ।

(ଅଳଙ୍କାର ଫୋପାଡ଼ି ଦେଇ ତିନହେଁ ଚାଲିଗଲେ)

ଜୟ—ଆରେ ବିଜା, ଆମେ ଏକା ଖୁବ୍ ପାର ପାଇଗଲେ ରେ ।

ବିଜୟ—କହୁଚୁ ପୁଣି ! ମୋର ଭାରି ଡର ଥିଲା ଅପଶାଇପକୁ । ପୁଣି କଉଁଠି ଗୋଟାଏ ଅସୁର ଫସୁର ହୋଇ ଜନ୍ମ ନେବାକୁ ପଡ଼ ଥାଅନ୍ତା ।

ଜୟ—ଦେଖିଲୁଟି କବାଟ ଫାଙ୍କରେ ଚାହିଁ—ସତରେ ଗଲେ କି ନାହିଁ ?

ବିଜୟ—(ଉଙ୍କିମାରି) ହଁ, ସବୁ ଗଲେଣି । ଦେଖା ଯାଉ ତ ନାହାନ୍ତି ।

ଜୟ—ଗୋଟାଏ କଥା ବିଜା !······

ବିଜୟ—କ'ଣ କହିଲୁ ?

ଜୟ—ଅଳଙ୍କାର ଗୁଡ଼ାକ ବାହାରେ ପଡ଼ି ରହିଛି । ଏଣେ ତ କବାଟ କିଳା । ଯେ ଦେଖିବ ମାରି ନବ ନାହିଁ କି ରାତି ପାହିଲା ବେଳକୁ ?

ବିଜୟ—ସତ କଥା । ଚାଲ କବାଟ ଖୋଲି ଗୋଟେଇ ଆଣି ଭଣ୍ଡାରରେ ଦେଇ ଦେବା ।

ଜୟ—ବୁଦ୍ଧିଟାତ ତୋହର ! ମୋତେ ଆଉ ସେ ବୁଦ୍ଧି ଦଶୁ ନ ଥିଲା ! ଆରେ ଲକ୍ଷ୍ମୀ ପରା ଭାରିପାକୁ ଯେ ଛୁଃ କରିଦେଲା ଅଳଙ୍କାରଗୁଡ଼ାକ ପାଇଁ ସେ କଣ ପରୁଆ କରିଛନ୍ତି ? ଛପନ କୋଟି ଭଣ୍ଡାରରେ କଉଁ ବା ଊଣା କ'ଣ ଅଛି ! ଏ ଅଳଙ୍କାର ନେଲେ ଠାକୁରେ ଆହୁରି ରାଗିବେ ।

ବିଜୟ—ଯାହା କହିଲୁ ଠିକ୍ କଥା । କ'ଣ କରିବା ତେବେ ?

ଜୟ—ଏତକ ଅକଲ ଖଟୁନାହିଁ ତୋର ? ଗୋଟେଇ ଆଣିବୁଟି ଆଗେଁ। ତା' ପରେ ଯାହା କରିବାର କରିବା ।

ବିଜୟ—ହୁକୁମ ଅମାନ୍ୟ ହେବ ନାହିଁ କବାଟ ଖୋଲିଲେ ?

ଜୟ—କାହିଁକି ହବ ? ସିଂହ ଦରଜା ଖୋଲିବାକୁ କ'ଣ ମୁଁ କହୁଛି ? ଗଳାକବାଟିଟା ଖୋଲି ଗୋଟେଇ ଆଣ । ହୁକୁମକୁ ହୁକୁମ ରହିବ, କାମକୁ କାମ ବି ହେବ ।

ବିଜୟ—ତୋ ବୁଦ୍ଧିଟା ଏକା ସରସ ବୋଲି ମୁଁ ମାନେ ଟି !

[ଗଳାକବାଟ ଖୋଲି ଗହଣା ଗୋଟାଇଲା ବିଜୟ]

(ପଞ୍ଚ ପତନ)

## ଦ୍ୱିତୀୟ ଦୃଶ୍ୟ

[ରାତି ଅଧ ବେଳ । ଜଣେ ନଗରବାସୀ ନିଜ ଘରେ ନିଦରେ ଶୋଇଛି । ନିଦ ବାଉଳାରେ ଡାକିଲା]

ନଗରବାସୀ—ହେଇଟି ଶୁଭୁଛୁ—ଶୋଷ ଲାଗିଲାଣି—ପାଣି ଟିକିଏ ଦିଅତି ।

[କେହି ଜବାବ ନ ଦେବାରୁ ଶେଯ ଅଣ୍ଡାଳିଲା । ଶେଷରେ ସ୍ତ୍ରୀକୁ ନ ପାଇ ଉଠି ବସିଲା]

କୁଆଡ଼େ ଗଲ ମ ?···ଡାକିଲେ ବି ଶୁଭୁନାହିଁ—କାଲୁଣୀ ନା କ'ଣ ?

(ତଥାପି କେହି ଜବାବ ଦେଲେ ନାହିଁ)

ଆଃ—କେତେ ପରିସ୍ତା କରୁଛ କି ? ପାଣି ମୁନ୍ଦେ ଦେଇ ଯା ।

[କାହାର ଜବାବ ନ ପାଇ ଭଲ କରି ବିଛଣାରେ ଦରାଣ୍ଡିଲା ଓ ଖଟ ତଳକୁ ଉଣ୍ଡିଲା । କବାଟ ପାଖକୁ ଯାଇ ବାହାରକୁ ଚାହିଁଲା । ମାତ୍ର ସ୍ତ୍ରୀକୁ ପାଇଲା ନାହିଁ ।]

ଆରେ ଗଲ କୁଆଡ଼େ ମ, ଏ ରାତି ଅଧିଆରେ ? ପରିସ୍ତା କରି ଯାଇଥିଲେ ତ ଫେରନ୍ତାଣି ! ବାଡ଼ିଆଡ଼େ ଯାଇଥିଲେ ତ ମୋତେ ଡାକି ଥାଆନ୍ତା ! ···ନାଃ—ଏଇଟା ବୋଧହୁଏ କଣ୍ଟା ଡାଆଣୀ—ମୋ ଉପରେ ନିଦମାଟି ମକାଇ ଚରିବାକୁ ଯାଇଛି । ମୋ ଅଜାଣରେ ଯେ ଡେଉଁରିଆ ଅଛି ତା'ର ଆଉ ମାଲୁମ ନାହିଁ । କମିଆଟା କାଟଣ ହୋଇ ପାରିଲା ନାହିଁ । ମୋ ନିଦ ଗଲା ଭାଙ୍ଗି ।

[ପୁଣି ଥରେ ଚାରିଆଡ଼େ ଉଣ୍ଡିଲା]

ନାହିଁ—ଏ ମୁଲକରେ କଉଁଠି ନାହିଁ ସେ । କୁଆଡ଼େ କିଏ କାହା ସାଙ୍ଗରେ ଶଠ୍ କରି···! ମାଇକିନା ଗୁଡ଼ାକ ଅମାନିଆ ହେଲେଣି ଏବେ । ମିଣିପଙ୍କୁ ବିଲ୍‌କୁଲ୍ ଖାତିର କରୁ ନାହାନ୍ତି । ହଉ, ଆଉ ଶୋଇବି ନାହିଁ । ଏଇ ଠେଙ୍ଗା ଧରି ବସିଲି ଜଗି । ଯେତେବେଳେ ଆସିବ, ତା ଚୁଟି ଧରି ଦେବି ଯେ ଏକା ପାହାରେ, ଡାକିବ ବୋପା ବୋଲି !

(ଭୂଇଁରେ ଠେଙ୍ଗା କଚାଡ଼ିଲା । ନାଗରିକର ସ୍ତ୍ରୀ ପ୍ରବେଶ)

ସ୍ତ୍ରୀ—କି ! କାହା ଉପରେ ମାଡ ଚାଲିଛି କି ?

ପୁରୁଷ—(ଚମକି ପଡ଼ି) ନାଇଁ, ଏଇ ଝିଲେଇଟା କି କ'ଣ···

ସ୍ତ୍ରୀ—ହଁ ଝିଲେଇଟା । ମୁଁ ଶୁଣିଛି ଯେ, ମାଇପି ଜାତିର ପିଣ୍ଡ ପଡ଼ିଥିଲା । କାହିଁକି ? ମାଇପେ କାହାର କ'ଣ କଲେ କି ?

ପୁରୁଷ—କ'ଣ ଆଉ କରନ୍ତେ ! ମାଇପେ ଆଉ କ'ଣ ମିଣିପଙ୍କୁ ଅଖା ଛ'ପଟରେ ପକାଉଛନ୍ତି ?

ସ୍ତ୍ରୀ—ବେଶ୍ କଲେ, ଖୁବ୍ କଲେ; ଏଥର ମିଣିପଙ୍କ ମୁହଁରେ···

ପୁରୁଷ—କ'ଣ, କ'ଣ, ଆମ ମୁହଁରେ—ମଡ଼େ ବଡ଼ ଦିମାକ ! ଘୁଅର ମାଇକିନା ହେଇ···ଦେଖିବୁ ନା ଏଇକ୍ଷିଣି···

ସ୍ତ୍ରୀ—କ'ଣ ଦେଖଉଛ ମ ! ଭଲକୁ ଦେଖିଛି । ତମ କରାମତିଟା ଦେଖି ଦେଖି ଆଖି କଅଁଳ ହେଲାଣି । ଆଉ କ'ଣ ଦେଖଉଛ ମ ?

ପୁରୁଷ—କୁଆଡ଼େ ଯାଇଥିଲୁ ପଚାରେ ?

ସ୍ତ୍ରୀ—ଯୁଆଡ଼େ ଗଲି—ମୋ ଇଚ୍ଛା, ମୋ ଦିଲ୍, ମୋ ଖୁସି ।

ପୁରୁଷ—ରାତି ଅଧରେ ପଦାରେ ବୁଲି ବୁଲି ଦିଲ୍‌ଖୁସି କରିବୁ, ତାହା ବୋଲି ?

ସ୍ତ୍ରୀ—ମିଣିପେ ପଦାରେ ଦିଲ୍‌ଖୁସି କରି ପାରନ୍ତି, ଆଉ ମାଇପେ କାହିଁକି ନ କରିବେ ?

ପୁରୁଷ—ଓହୋ ! ତୁ କହୁନାହୁଁ ଯେ—ଯୁଗ କହୁଛି । ହଉ, ଗସ୍ତଟା ହୋଇଥିଲା କୁଆଡ଼େ ଶୁଣେ ?

ସ୍ତ୍ରୀ—ତମର ଶୁଣିବାର ଦରକାର ନାହିଁ । ତେବେ ପଚାରିଲ ତ କହୁଛି ଶୁଣ । ମୁଁ ଯାଇଥିଲି ଆମ ମହିଳା ସଭାକୁ । ନାରୀ-ସ୍ୱାଧୀନତାପାଇଁ ସମିତି ବସିଛି ଜାଣି ନ ଥିବ ?

ପୁରୁଷ—ସ୍ୱାଧୀନ ହେବାରେ ଆଉ ବାକି ଅଛି କ'ଣ ମାଇପଙ୍କର ? ପୁଣି ସମିତି କାହିଁକି ?

ସ୍ତ୍ରୀ—ମିଣିପଙ୍କୁ ଜବଦ କରି ନାକରେ ଦଉଡ଼ି ଲଗାଇ ଘୋଷାଡ଼ିବା କାମଟା ବାକି ରହିଛି ପରା !

ପୁରୁଷ—ସେ ପୁଣି କ'ଣ ?

ସ୍ତ୍ରୀ—ମିଣିପେ ବାସି ପାଇଟି କରିବେ, ଭାତ ରାନ୍ଧିବେ, ପିଲା ଖେଳେଇବେ ···

ପୁରୁଷ—ଆଉ ପିଲା ଜନ୍ମ ବି କରିବେ,—ନାଇଁ ?

ସ୍ତ୍ରୀ—ଦରକାର ପଡ଼ିଲେ ତା' ବି ···

ପୁରୁଷ—ତେବେ ଆମକୁ ବି ଆତ୍ମରକ୍ଷା ପାଇଁ ପୁରୁଷ-ରକ୍ଷା ସମିତି ଗଢ଼ିବାକୁ ପଡ଼ିବ ଦେଖୁଚି ।

( ଘନ ପଣ୍ଡା ବାହାରୁ ଡାକିଲେ )

ଘନ—କବାଟ ଫିଟା ! କବାଟ ଫିଟା !

ପୁରୁଷ—କିଏ ସେ ?

ଘନ—ମୁଁ ତ ଘନ ।

ପୁରୁଷ—ଧନ ଭାଇନା ? ଆସ ଆସ ! ଏତେ ରାତରେ ଯେ ?

( କବାଟ ଫିଟାଇ ଦେବାରୁ ଧନ ପ୍ରବେଶ କଲା )

ଧନ —ହଁ ପରଣୀ ତ ଘର ଗରମା ଗରମ । ଏଇ ବାଟେ ଯାଉଥିଲି ଯେ ପାଟି ତୁଣ୍ଡ ଶୁଣି ଚାଲି ଆସିଲି । କଥାଟା କ'ଣ ?

ପୁରୁଷ—ଭଲ କଲ ଆଇଲ । ତମେ ବୁଝିବଟି ଭାଇନା—

ଧନ —ଆରେ ଗିରସ୍ତ ଘରଯା କଳି—ବୁଝିବ ଗୋଟେ କ'ଣ ବା ! ବୋଇଲେ—ଅଜା ଯୁଦ୍ଧେ ଋଷି ଶ୍ରାଦ୍ଧେ ··· ଶେଷଣିକ ଜଣ ପଇନ୍ଦୁ ନାହିଁ ।

ପୁରୁଷ—ହଁ ତମେ କଳହ ତ ? କିନ୍ତୁ ଯେମିତି ସେମିତି କଳହ ବୁଝିବ ଭାଇନା ! ଶୁଣ । ଗିରସ୍ତ ଆଉ ଘରଯା—ତେବେ ଯାଇ ତ ଘର ! ଜଣେ ଜଣଙ୍କୁ ମାନି ରହିବ ; ତେବେ ଯାଇ ଘର ଚଳିବ । ଏଇ ତ ?

ଧନ —ଠିକ୍ ।

ପୁରୁଷ—ଅଚ୍ଛା, ମରଦ ହେଲା ଘରର ମାଲିକ, ପ୍ରଭୁ ; ଆଉ ସ୍ତ୍ରୀ ହେଲା ଦାସୀ ।

ଧନ —ସତ କଥା ।

ପୁରୁଷ—ଶୁଣିଲ ଭାଇନାଙ୍କ କଥା ? ଭାଇନା ! ଇଏ କହୁଛି, ମାଇପେ ହେବେ ଘରର ମାଲିକାଣୀ, ଆଉ ମିଣିପେ ତାଙ୍କ ହୁକୁମରେ ଚଳିବେ । କିମିତି ହବ କହିଲ ?

ଧନ —କିମିତି ହବ ? ତାହା ନାହିଁ କାଳେ କାଳେ···

ସ୍ତ୍ରୀ —ଇଏ ଅଛନ୍ତି ତାହୁଁ କଜଳପାତିଆ ଭଲ ଲୋକ । ତମେ ଯେତେ ହେଲେ ମିଣିପ ଜାତି । ମିଣିପଙ୍କ ପକ୍ଷ ନେଇ କହିବ । ମୁଁ ଡାକି ଆଣିବ ପଣ୍ଡିଆଣୀଙ୍କୁ । ସେ ଆମ ସମିତିର ସମ୍ପାଦିକା !

ଧନ —ପଣ୍ଡିଆ ହଉଁ ହଉଁ ପତି ପାଲଟିଲେଣି ପରା ! ଓହୋ, ସେଇଥିପାଇଁ ତ ଏତେ କେତେ ଦିନ ହେଲା ସେ କେମିତି କେମିତି ହଉଛନ୍ତି । ମୁଁ କହିଲି ··· ତହୁ ···

ପୁରୁଷ—ହଉ ପଛେ, ସବୁ ମାଇକିନା ଯାକ ଏକଯୁଟ ହେଉଛନ୍ତି । ବିଭ୍ରାଟ ଘଟେଇବେ ।

ଧନ —ଆଜ୍ଞା ଶୁଣି ତୁନିଲିଣି···ହଉ ଗୋଟାଏ ଗୋଷ୍ଠୀ, ଛଟକା ହାଡ଼ିଆଣୀ ହେଲା ନେତ୍ରୀ—ତା' ନା ଶ୍ରୀମ୍ବା—ସବୁ ଲଟ ଲଗେଇଛି ସେଇ ।

ସ୍ତ୍ରୀ —ଶ୍ରୀମ୍ବା ତ ଆମ ସମିତିର ସମ୍ପାଦିକା ।

ଧନ —ସେଇ କଥା କୁହ । କୋଉଠି-ଏମିତି—

ସ୍ତ୍ରୀ —କଣ ହେଲା କି ?

ଧନ—ମାଆ ବର୍ଣ୍ଣୋହୀ ଦେ— ।

ସ୍ତ୍ରୀ —ଆମ ସମିତିରେ ଜାତି, ଅଜାତି, ଛୁଆଁ, ଅଛୁଆଁ ନାହିଁ ।

ପୁରୁଷ—କ'ଣ କଲ କି ସିଏ ?

ଧନ —ନାଥିଆକୁ ଜାଣିଛ ? ଆମ ନାଥ ପଣ୍ଡା—

ପୁରୁଷ—ହଁ, ହଁ ।

ଧନ —ସେ ହାଡ଼ୀଆଣୀ ଟୋକୀ ସାଙ୍ଗରେ ଲଟର ପଟର—ଆଉ କ'ଣ !

ପୁରୁଷ—କ'ଣ କହୁଛ ଭାଇନା !

ଧନ —କ'ଣ ମିଛ କହୁଛି ! ଧନଆ ଜାତକରେ ମିଛ ପଦ ନାହିଁ । ହଁ ଆଖିରେ ଦେଖିବା କଥା ।

ପୁରୁଷ—କ'ଣ, କ'ଣ ଦେଖିଲ ?

ଧନ —ପାପ କଥା କହିବାକୁ କ'ଣ କଉ ଲାଜ ଲାଗୁଛି ? ମହା ପାପ ମହା ପାପ । ଖାଁଟ୍ ବଡ଼ ଦାଣ୍ଡରେ, ମାଳଚନ୍ଦ ତଳେ, ପତିତପାବନ ବାନା ଆଗରେ ଏ କଥା ଘଟିଛି । ଗୋଟାଏ ବେଗୀକୁ ଦୁହେଁ ଏକା ସାଥିରେ ··· ଓ ହୋ ! ବସୁଧା କେମିତି ସହୁଛି !

ପୁରୁଷ—ଘୋର କଳି, ଘୋର କଳି ।

ସ୍ତ୍ରୀ —ଆଉ ତମେ ସବୁ ତୁଳସୀ ପତ୍ର ! ଜାଣିଲ, ନାଥ ଗୋସେଇଁ ଦେବତା ଭଳିଆ ପୁରୁଷ, ଆଉ ଶ୍ରୀମ୍ବା ସାକ୍ଷାତ୍ ଲକ୍ଷ୍ମୀ ।

ଧନ —ସେଇଥିପାଇଁ ତ ଦୁହିଁଙ୍କର ରାଜଯୋଟକ !

ସ୍ତ୍ରୀ —ଛି, ପାପ କଥାଗୁଡ଼ାକ କହନା ଗୋସେଇଁ ।

ଧନ —ହଇଲେ, ଆମେ ପାପୀ ? ଏତେ ବଡ଼ି ବଡ଼ି କଥା କହୁଛ !

ସ୍ତ୍ରୀ —କହିବି ନାହିଁ ? ଡରିବି ତମ ଭଳିଆ ବୁଲା କୁକୁରଙ୍କୁ ?

ଧନ —ଦେଖୁଛ, ଦେଖୁଛ, ତମ ସାମନାରେ ମାଇକିନାଟା ଆମକୁ ଅପମାନ ଦଉଛି ! ବାବା ! ଇଏ ତ ଚେଗରଣୀ ମାଇକିନା ! ସ୍ତ୍ରୀକୁ ସମାଳିଛ କେମିତି ମ ?

ସ୍ତ୍ରୀ —ମୋର ଘର ଭିତରେ ମୋତେ ଅପମାନ କରୁଛ ? ତମେ ବାହ୍ମଣ ହୋଇ ନ ଥିଲେ ଏଇ ଗୁଞ୍ଜୁଣୀରେ ଏଇକ୍ଷଣି···

ପୁରୁଷ—ଭାଇନା, ମାନେମାନେ ଏଠୁ ଖସି ଯିବଟି ତମେ । ମୁଁ ପରା ବଡ଼ଉଲ ତାକୁ ଶହେ ଦଣ୍ଡବତ ଲଗାଏଁ । ତେବେ ଯାଇ ···

ସ୍ତ୍ରୀ —କ'ଣ କହିଲୁ ? ଅଲେପେଇସିଆ, ନିଛଣୁଆ—ଆଣିବ ନା ଗୁଞ୍ଜୁଣୀ । ( ପ୍ରସ୍ଥାନ )

ପୁରୁଷ—ପଳେଇ ଚାଲ ଭାଇନା—କାହାର ମୁଣ୍ଡ ରହିବ ନାହିଁ, ଏଇକ୍ଷଣି ।··· ( ପଳାୟନ କଲେ )

( ଦୃଶ୍ୟ ପରିବର୍ତ୍ତନ )

## ତୃତୀୟ ଦୃଶ୍ୟ

( ସମୁଦ୍ର କୂଳ । ଲହରୀ ମାଡ଼ି ମାଡ଼ି ଆସୁଛି । ଲକ୍ଷ୍ମୀ, ତୁଳସୀ ଓ କୁମ । ଲକ୍ଷ୍ମୀ ସମୁଦ୍ର ଭିତରେ ପ୍ରବେଶ କରିବାକୁ ଉଦ୍ୟତା)

ଲକ୍ଷ୍ମୀ— ତମେ ଏଇଠି ଥା, ମୁଁ ଯାଉଛି ।

କୁମ —ଆମକୁ ସାଙ୍ଗରେ ନବ ନାହିଁ ମା ? (କାନ୍ଦିଲା)

ଲକ୍ଷ୍ମୀ—କାନ୍ଦନା କୁମ ? ମୁଁ ଆଗ ଯାଏଁ, ତୁମକୁ ଲୋକ ପଠାଇ ନେଇଯିବି । ମୋ ସାଙ୍ଗରେ ତୁମେ କ'ଣ ଯାଇ ପାରିବ ?

ତୁଳସୀ—ଠାକୁରାଣୀ, ଗୋଟାଏ କଥା କହିବି । ··· ଲେଉଡ଼ା ସଙ୍ଖୋଳା ନ ଆସିଲେ ଝିଅର ବାପଘରକୁ ଯିବା ହତମାନିଆ କଥା । ତୁମେ ଆପେ ଆପେ କମିତି ···

ଲକ୍ଷ୍ମୀ—ମୁଁ କଉ ମାନମହତରେ ରହିଛି ଯେ ଏତେ ତମ ଖୋଜିବ ?

ତୁଳସୀ—ଯେତେହେଲେ ତୁମେ କାହାର ଘରଣୀ, କାହାର ଝିଅ ! ଦୁଇ କୁଳକୁ ନିନ୍ଦା ହବ ନାହିଁ ?

ଲକ୍ଷ୍ମୀ—ମୋର ଆଉ ନିନ୍ଦା ପ୍ରଶଂସାର ଡର ନାହିଁ, ତୁଳସୀ !

ତୁଳସୀ—ହେଲେ ବାପଘର ପାଲ୍ଲେଟି ନେବାକୁ ଆସିବେ ନାହିଁ ?

ଲକ୍ଷ୍ମୀ—ମୁଁ କଉଁ ସନମାନରେ ଯାଉଛି ଯେ ···

ତୁଳସୀ—କୁମ, ଠାକୁରାଣୀ ବାପ ଘରକୁ ବିଜେ କରୁଛନ୍ତି । ଶଙ୍ଖ ହୁଳହୁଳିଟା ଦଉ ନାହୁଁ ? କେଡ଼େ ଅଲଗୀଟା ମ !

( ଶଙ୍ଖ ହୁଳହୁଳି ଶବଦ ହେଲା )

( ଏହି ସମୟରେ ସମୁଦ୍ର ଗର୍ଭରୁ ସାଗର-ବାଳାଗଣ ଫୁଲମାଳ, ଅର୍ଘ୍ୟଥାଳୀ ଧରି ବାହାରି ପଡ଼ିଲେ ଗୀତ ଗାଇ ଗାଇ )

( ଗୀତ )

ଆସ ଆସ ଆସ ରମେ      ଆସ ଗୋ କମଳେ
ପାଲ୍ଲେଟି ନେବାକୁ ଆମ୍ଭେ      ଆସିଛୁଁ ସକଳେ;
ଅଭିମାନିନୀ ଗୋ, କୃଷ୍ଣ ଭାମିନୀ ଗୋ ।

କହ ଗୋ କେମନ୍ତେ ରହି—      ଥିଲଟି ପାଶୋରି,
ଆପଣା ଜନକୁ ଏତେ—      କାଳ ଚମ୍ପାଗୋରି;
ଅଭିମାନିନୀ ଗୋ, କୃଷ୍ଣ ଭାମିନୀ ଗୋ ।

ଶିରୀହୀନ ତୋର ପ୍ରିୟ      କମଳ କାନନ,
ବିକଶି ଉଠିବ ଦେଖି      ତୋର ଚନ୍ଦ୍ରାନନ ;
ଅଭିମାନିନୀ ଗୋ, କୃଷ୍ଣ ଭାମିନୀ ଗୋ ।

ଜନମ ଥାନକୁ ବିଜେ      କର ଗୋ ରଙ୍ଗିଣି,
ବନ୍ଦାଇ ନିଅ ଗୋ ସବୁ      ଜୀବନ ସଙ୍ଗିନୀ,
ଅଭିମାନିନୀ ଗୋ, କୃଷ୍ଣ ଭାମିନୀ ଗୋ ।

[ ଗୀତାନ୍ତେ ଶଙ୍ଖ ହୁଳହୁଳି ଧ୍ୱନି ସହ ବନ୍ଦାପନା ହେଲା । ଲକ୍ଷ୍ମୀ ସାଗର ପ୍ରବେଶ କରିବାକୁ ଯାଇ ଅଗ୍ରସର ହୁଅନ୍ତେ ନାରଦ ଆକାଶ ପଥରୁ ପ୍ରବିଷ୍ଟ ହେଲେ । ]

ନାରଦ—ମା, ମା, ଏ କ'ଣ କରୁଛନ୍ତି ? ଜଗନ୍ମାତା ଗୁଡ଼ିଗଲେ ଦେଶ ସଂସାର ରହିବଟି ?

ଲକ୍ଷ୍ମୀ—ନାରଦ, ତୁମେ କୁଆଡ଼ୁ ଆସିଲ ଏତେବେଳେ ? ସଂସାର ରହିଲ କି ନାହିଁ, ମୋତେ ତହିଁକି କି ଲଗା ? ଯାହାର କାମ ସେ କରିବ !

ନାରଦ—ସମସ୍ତେ ଯେ ହତଶ୍ରୀ, ଲକ୍ଷ୍ମୀଛଡ଼ା ହେଇ ଯିବେ ! ମା ହୋଇ ସନ୍ତାନ ସନ୍ତତିଙ୍କର ଏ ଦଶା ଦେଖି ପାରିବଟି ମା ?

ଲକ୍ଷ୍ମୀ—ନାରୀ ଉପରେ ପୁରୁଷର ଅତ୍ୟାଚାର, ପତିତ ଉପରେ ସମାଜର ଉତ୍ପୀଡ଼ନ ଦୂର ନ ହେଲେ ମୁଁ ଏଠି ରହିବି କମିତି ?

ନାରଦ—ତୁମେ ଅଭିମାନ କଲେ ଏ ଦୁର୍ନୀତିର ପ୍ରତିକାରଟା କରିବ କିଏ ?

ଲକ୍ଷ୍ମୀ—ମୁଁ ଅବଳା, ପର ଆଶ୍ରିତା ନାରୀ ! ମୁଁ କ'ଣ ପ୍ରତିକାର କରିବି ?

ନାରଦ—ଇଚ୍ଛାମୟୀ, ତୋ ଇଚ୍ଛାରେ କ'ଣ ହୋଇ ନ ପାରେ ? ପ୍ରଭୁମାନଙ୍କୁ ଉଚିତ ଶିକ୍ଷା ଦେବା ସଙ୍ଗେସଙ୍ଗେ ପତିତ ଉଦ୍ଧାର କାର୍ଯ୍ୟ ତୁମ ଛଡ଼ା କରିବା ଶକ୍ତି ଆଉ କାହାର ?

ଲକ୍ଷ୍ମୀ—କ'ଣ କରିବାକୁ ହେବ ଦେବର୍ଷି !

ନାରଦ—ତୁମକୁ କଉଁ କଥା ଅଜଣା ଅଛି ? ତେବେ ନାରଦ ମୁହଁରୁ ଯେବେ ଶୁଣିବାକୁ ଇଚ୍ଛା ଥାଏ, ମୁଁ କହୁଛି । ବିଶ୍ୱକର୍ମାଙ୍କୁ ଆଦେଶ ଦିଅନ୍ତୁ, ସେ ଏହିଠାରେ ଏକ ବିରାଟ ନଅର ତୋଳାଇ ଦେଉ । ସେଥିରେ ବାପ ଘର ଯିବା ବି ହେବ, ଦେଶରେ ରହିବା ବି ହେବ । ଆଉ ତାଳ ବେତାଳଙ୍କ ଦ୍ୱାରା ବଡ଼ ଦେଉଳର ଛପନ କୋଟି ଭଣ୍ଡାର ଏଠାକୁ ବୁହାଇ ଆଣ ! ତେଣିକି ଯାହା ହେବ ତୁମକୁ ଜଣା । ମୁଁ ଏବେ ଯାଉଛି ।

[ ନାରଦ ଉଭାଇ ଗଲେ । ଲକ୍ଷ୍ମୀ ତାଳ ବେତାଳଙ୍କୁ ସ୍ମରଣ କଲେ ]

ତୁଳସୀ—ରୂପେଟି ବଡ଼ ରଙ୍ଗିଆ !

କୁମ— ସତେ ଏକା । ଯାହାକୁ କହନ୍ତି, ଏ ଘର ମାଉସୀ ସେ ଘର ପିଉସୀ । ଚୋରକୁ କହନ୍ତି ଚୋରି କର, ଗୃହସ୍ଥକୁ କହନ୍ତି ଜଗି ଥା' ।

ତୁଳସୀ—ମୋ ମନକୁ ଏକା ଖୁବ୍ ପାଉଛି । ମିଣିପେ ଜାଣନ୍ତି ସ୍ତ୍ରୀ ଜାତିର କରାମତିଟା ।

କୁମ— ମାଉସୀ, ମୁଁ ସତରେ କିଛି ବୁଝି ପାରୁ ନାହିଁ ।

ତୁଳସୀ—ବୁଝିବୁ ଲୋ, ବୁଝିବୁ । ଯେତେବେଳେ ନାକ ଘଷା, କାନ ମୋଡ଼ା ଦେଖିବୁ । ଟିକଏ ସବୁର ଧର ।

( ତାଳ ବେତାଳ ପ୍ରବେଶ କଲେ )

ତାଳ— ମାଈ ଜୀ, କି ଆଜ୍ଞା କରଛନ୍ ? ଆମେ ତାଲ୍, ବେତାଲ୍ ।

ଲକ୍ଷ୍ମୀ—ତୁମେ ବିଶ୍ୱକର୍ମାଙ୍କୁ ମୋ ଆଦେଶ ଜଣାଇ ଦିଅ କି ସେ କ୍ଷଣମାତ୍ରେ ଏଇଠାରେ ଗୋଟିଏ ସୁନ୍ଦର ନଅର ତୋଳାଇ ଦେବେ । ସୁନାର କାନ୍ଥ, ହୀରାର ଛାତ, ମଣି ମାଣିକ୍ୟର ଖମ୍ବ । ଆଜି ତୁମେ ଦୁହେଁ ଯାଇ ଏଇ ରାତି ଭିତରେ ବଡ଼ ଦେଉଳର ସବୁ ପଦାର୍ଥ ଏଠାକୁ ବୋହିଆଣ ! ପାରିବଟି ?

ତାଳ— ତୋର୍ ଆଜ୍ଞାରେ ସବ୍ ପାର୍ ମୁ !

ଲକ୍ଷ୍ମୀ— ଠାକୁରମାନେ ଯେଉଁ ରତ୍ନପଲଙ୍କରେ ଶୋଇଛନ୍ତି ତାକୁ ମଧ୍ୟ ।

ତାଳ— ତା କେନ୍ତା କରମୁ ମା—ଆମର ଜୋର୍ ନାହିଁ ପାଏ ।

ଲକ୍ଷ୍ମୀ— ମୋ ବରରେ ସେ ଶକ୍ତି ତୁମର ହେବ । ଭୟ ନାହିଁ ।

ତାଳ— ଯେ ଆଜ୍ଞା ମାଈ ଜୀ !

ଲକ୍ଷ୍ମୀ— ହେ ଅଗ୍ନି, ବରୁଣ, ବାୟୁ ଆଦି ଦଶ ଦିଗପାଳଗଣ ! ମୋର ସହାୟ ହୁଅ । ସରସ୍ୱତୀ, ତୁମେ ମଧ୍ୟ ନାରୀ ଜାତିର ସମ୍ମାନ ରକ୍ଷା ନିମନ୍ତେ ସାହାଯ୍ୟ କର ।

ତାଳ— ଆରେ ବେତାଳ, ଶୁନ୍‌ଲୁ ଭାଇ, ପାର୍‌ବୁ ତ ?

ବେତାଳ—କେନ୍ ନାହିଁ ପାର୍‌ମା ! ହାମାର୍ ଗାଏଁ ସିଂହର ତେଜ ଆସ୍‌ଛେ ।

ତାଳ— ଡର ଲାଗ୍‌ଛେ, ବଡଠାକୁର ନଦରୁ ଉଠେ ମୁଷଳ ଘା ନାଇଁ ମାରେ ?

ବେତାଳ—ମାଈ ଜୀ ରଖିବେ । ହୁକୁମ ହେଲେ ବଡ଼ଦେଉଳଟା ବି ଟେକି ଆନ୍‌ତେ ପାର୍ ମୁଁ ।

—ଗୀତ—

ଚଲ୍ ଚଲ୍ ଝଟ୍ ପଟ୍ କର ଲୁଟ୍‌ପାଟ୍,
ଅନ୍ଧାରିଆ ରାତି ନାଇଁ ଦିଶେ ବାଟ୍‌ଘାଟ୍ ।
ଉଡ଼ଉଡ଼ ଚଲ୍ ଭଡ଼ଭାଡ଼ ଚଲ୍
ହୁଡ଼ହାଡ଼ ଗଲେ ଭାଇ ହବ ମୁଣ୍ଡକାଟ୍ ।

( ପଟ୍ଟ ପତନ )

## ଚତୁର୍ଥ ଦୃଶ୍ୟ

[ ବଡ଼ ଦେଉଳ ବେଢ଼ା ଭିତର । ଏକ ପାଖରୁ ବଳଦେବ ଓ ଅନ୍ୟ ପାଖରୁ ଜଗନ୍ନାଥ ଭେଟ ହେଲେ ]

ବଳ—କହ୍ନେଇ, ତୁ କେତେବେଳୁ ଉଠିଲୁଣି କି ? ମୁଁ ଟିକିଏ ଶୋଇ ପଡ଼ିଥିଲି । ଦିନ ବହୁତ ହେଲାଣି ।

ଜଗ—ହଁ, ଦିନ ପ୍ରାୟ ପ୍ରହରେ ହେବ । କାଲି ରାତିରେ ନିଦ୍ରାର ବ୍ୟାଘାତ ହୋଇଥିଲା ପରା ?

ବଳ—ଆଚ୍ଛା, ଏ ସବୁ କ'ଣ କହ୍ନେଇ ! କିଛି ବୁଝି ପାରୁଛୁ ?

ଜଗ—ମୋତେ ବି ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ।

ବଳ—ବାଦ୍ୟକାର ଆସି ନାହାନ୍ତି । ପୂଜାପଣ୍ଡା, ଛତିଶାନିଯୋଗ, କାହାରି ଦେଖା ନାହିଁ । ଦେଉଳଯାକ ଶୂନଶାନ୍ । ରହସ୍ୟଟା କ'ଣ ?

ଜଗ—ମୁଁ ବୁଲି ଦେଖି ଆସେଁ । (ଜଗନ୍ନାଥ ବାହାରି ଗଲେ)

ବଳ—ଏ ଭଳିଆ କାଣ୍ଡ, ମୁଁ କେବେ ଦେଖି ନ ଥିଲି । ଏ ଭଳି ପରିହାସ କିଏ କରୁଛି ? ସାହସ କାହାର ? କହ୍ନେଇ ହାଲଚାଲଟା ବୁଝି ଆସୁ, ତାପରେ ଦେଖାଯିବ । ଏଥିର ବିହିତ ପ୍ରତିକାର କରିବାକୁ ହେବ । ସହଜରେ ଛାଡ଼ିବି ନାହିଁ କେବେଁ ।

( ଜଗନ୍ନାଥ ପ୍ରବେଶ କଲେ )

ବଳ—କ'ଣ ଦେଖିଲୁ ?

ଜଗ—ଭାଇ, କହିବାକୁ ସାହସ ହେଉ ନାହିଁ । ବେଢ଼ାଟାଯାକ ବୁଲି ଆସିଲି, କୁଆ କୋଇଲଟିର ଦେଖା ନାହିଁ ଛପନ କୋଠି ଭଣ୍ଡାର ସବୁ ଶୂନ୍ୟ ।

ବଳ—ଆଚ୍ଛା, ଜଳ ମୁନ୍ଦାଏ ଆଣିଲୁ, ମୁହଁ ଧୋଇବା ।

ଜଗ—ଜଳ ଟୋପାଏ ହେଲେ କେଉଁଠି ନାହିଁ । କୂଅ ଶୁଖିଲା । ଜଳ ପାଣିଟିଏ ବି ପାଇଲି ନାହିଁ ।

ବଳ—ରୋଷଘର ଦେଖିଲୁ !

ଜଗ—ସେଠି ହାଣ୍ଡି ଆଟିକା କାଠ ସୁଦ୍ଧେ ଉଡ଼ି ଯାଇଛି ।

ବଳ—ମୋ ରତ୍ନ ପଲଙ୍କରୁ କିଏ ମୋତେ ଭୂଇଁରେ ଗଡ଼ାଇ ଦେଇଛି ।

ଜଗ—ମୋର ବ ସେହି ଦଶା ।

ବଳ—ତେବେ ଏଠୁ ବାହାରଯିବା ଛଡ଼ା ଆଉ ଉପାୟ ନାହିଁ ଦେଖୁଛୁ । ଗଲୁ ଲଣ୍ଡାରରୁ କିଛି ଧନ ଆଣିବୁ ।

ଜଗ—ରତ୍ନ ଭଣ୍ଡାର ଶୂନ୍ୟ ।

ବଳ—ଖମାରରୁ କିଛି ଧାନ ଆଣେ ତେବେ ।

ଜଗ—ଖମାର ପୋଛୁପୋଛି ।

ବଳ—କ'ଣ କରିଯିବ ତେବେ ? (ବସିପଡ଼ିଲେ)

ଜଗ—ଚାଲନ୍ତୁ ଛଦ୍ମବେଶ ଧରି ବଡ଼ପଣ୍ଡାଙ୍କ ଘରକୁ ଯିବା । ସେଇଠି ସବୁ ମିଳିବ ।

ବଳ—କିନ୍ତୁ ଇଏ କ'ଣ ହେଲା କହିଲ ?

ଜଗ—ସେ କଥା ଭାବିବାକୁ ଆଉ ବେଳ ନାହିଁ ଭାଇ, ବାହାରକୁ ଗଲେ ସବୁ ଜଣା ପଡ଼ିବ ।

ବଳ—ହଉ...ଆଉ ଉପାୟ କଣ !

(ଦୃଶ୍ୟ ପରିବର୍ତ୍ତନ)

## ପଞ୍ଚମ ଦୃଶ୍ୟ

[ ବଡ଼ ଦାଣ୍ଡ । ଶ୍ରୀୟା ଏକାକିନୀ ଝାଡ଼ୁ ଟୋକେଇ ଧରି ପ୍ରବେଶ କଲା ]

ଶ୍ରୀୟା—ମୋ ହେତୁ ହେଲା ଦିନଠୁଁ ଏ ଭଳି ଅକାଳ କଥା କେବେ ଦେଖି ନ ଥିଲି, କି ଶୁଣି ନ ଥିଲି । ଏଡ଼େବଡ଼ ଦେଉଳ, ଯଉଠି ଛତିଶାନିଯୋଗ, ପଣ୍ଡା, ପଡ଼ିହାରୀ ସାଧୁ, ସନ୍ଥ, ଯାତ୍ରୀ ଗହଳରେ ହୋ ହୋ ଲାଗୁଥାଏ, ସେଠି ଆଜି ମାଛି ମରି ଯାଉଛି ! ଯାହା ହେଲା ହେଲା, ଦିଅଁମାନେ ଉଭେଇ ଗଲେ କୁଆଡ଼େ ! କି ଅମଙ୍ଗଳିଆ କଥା ଲୋ ମା ! ପୃଥ୍ୱୀ ଲେଉଟି ଯିବ କି ଆଉ ?

( ଜଣେ ମଠଭୃତ୍ୟ ପ୍ରବେଶ କଲା )

ଚଇତା—ଯା ଆଡ଼ୁଆ—ଯା ଆଡ଼ୁଆ, ମଝି ବାଟଟାରେ...କିଏ ଲୋ ତୁ ? ( ଦାନ୍ତ ନିକୁଟିଲା )

ଶ୍ରୀୟା—ମୁଁ କଣ ଏଡ଼େ ବଡ଼ ଦାଣ୍ଡଟା ଯାକ ଓଗାଳି ବସିଛି ? ଏତେ ଥାନ ପଡ଼ିଛି—ଚାଲି ଯାଉନା !

ଚଇତା—ଇଏ କଣ ମୋ ନିଜ କଥା ହେଉଛି ! ମୁଁ ହେଇଥିଲେ ତ ତୋ ଭଳିଆ ଟୋକୀର ଦେହ ଘଷି ହୋଇ କରି ଯାଇ ଥାଆନ୍ତି । ତୋ ଦେହର ପବନ ବାଜିଗଲେ କିଏ ପବିତ୍ର ହେଇ ନ ଯିବ କହିଲୁ ?...ଇଏ ପରା ମହନ୍ତ ମହାରାଜେ ବିଜେ କରୁଛନ୍ତି ।

ଶ୍ରୀୟା—କଉଁ ଗାଁ ମହାରାଜେ ମ ? ମୁଁ କଣ ତାହାର ବାଟ ଅଟକି କରିଛି ?

ଚଇତା—ଆଲୋ ନାହିଁ ମ—ତୁ ହେଲୁ ସେତେବେଳେ ହେଣ୍ଡାଖାଇ ହାଡ଼ିଆଣୀଟା—ଆଉ ସେ ହେଲେ ନିରୋଳ ନିରମିଷ ଚିତା ଚଇତନିଆ ବଇଷ୍ଣିମ । ହନବେଳେ ତୋ ପବନ ବାଜିଗଲେ ମହାରାଜଙ୍କ କର୍ଣ୍ଣୀ କଣ୍ଡପିବ, ମାଗ 'ହେଇଯିବ ନାହିଁ ?...ହେଇ ସେ ଆସି ଗଲେଣି...

(ମହନ୍ତ ପ୍ରବେଶ କଲେ)

ମହନ୍ତ—କେହି ଗୋ, ଭାରି ପେରମ ଲାଗିଛି ମଝି ଦାଣ୍ଡଟାରେ !

ଚଇତା—ଆଜ୍ଞା; ମହାରାଜେ ବିଜେ କରୁଛନ୍ତି ବୋଲି ଏ ମାହାରାଣୀ ଟୋକୀଟାକୁ ଅଡ଼ଉଥିଲି ।

ମହନ୍ତ—ଅଡ଼ଉ ଥିଲୁ ନା ପଟାଉ ଥିଲୁ ବେ ? ଖାସା ଟୋକୀଟା ତ ! ଆବେ ଆମେ ତ ମହାରାଜ, ସେ ତ ମହାରାଣୀ—ଏବେ ହଟାହଟି କାହିଁକି ! ଇଏ ତ ଘଟାଘଟିର ମାମଲା !... ହଇ ଲୋ, ତୋ ମଠ କୁଠି ?

ଶ୍ରୀୟା—ମୋ ଘର ଏଇ ଶ୍ରୀକ୍ଷେତ୍ରରେ ।

ମହନ୍ତ—ତା' ତ ଜାଣିଲି...ତେବେ ପଚାରୁଥିଲି କି,...ତୋ' ନାଁ କଣଟି...ତୋର ଡେରା କୁଠି...ଆଉ ତୋର ଅଛନ୍ତି କିଏ ?

ଶ୍ରୀୟା—ମୋର ଶାଶୁ, ନଣନ୍ଦ ଗିରସ୍ତ କିଏ ନାହାନ୍ତି ?

ମହନ୍ତ—ବେଶ୍, ବେଶ୍...ଆଚ୍ଛା...ତୋ ନାଆଁ କ'ଣଟି ରାଣୀ ?

ଶ୍ରୀୟା—ମୋତେ ଶ୍ରୀୟା ବୋଲି ଡାକନ୍ତି ।

ମହନ୍ତ—ବାଃ, ବାଃ, ଖାସା ମଧୁରିଆ ନାଆଁଟି ତ । ନାଆଁଟି ଯେମିତି ରୂପଟି ବି ସେମିତି ।

ଶ୍ରୀୟା—ଏତେ କଥା କାହିଁକି ଫଟେଇ ହଉଛ ମ—ତମ ପାଇଟିରେ ତମେ ଚାଲି ଯାଉ ନା ।

ମହନ୍ତ—ପାଇଟି ଆଉ କଅଣ ବାପୁଣୀ—ଏଇ ଦିଅଁ ଦର୍ଶନକୁ ଯାଉଥିଲି ଯେ...ଏଇଠି ତ ଦରଶନ ମିଳିଗଲା, ଆଉ କ'ଣ ପାଦ ଚଳୁଛି ? —ବୋଇଲା...ଆଖି ରହିଲା ଲାଖି (ଗୀତ ସ୍ୱରରେ) ତେଣିକି ପଦଟା କ'ଣଟିରେ ଚଇତା ?

ଚଇତା—ସେଇୟା ମହାରାଜେ ।

ଶ୍ରୀୟା—ସରମ ନାହିଁ ତୁମ ଥୋମଣିକି ? ବଇଷ୍ଣିମ ବୋଲାଉଛ ପରା । ଯା—ଯା ତମ ମହତ ଏତିକି ।

ମହନ୍ତ—ରାଗ ହେଇ ଗଲୁକି ବାପୁଣୀ ?...( ସ୍ୱର କରି ) ଗୁମାନ କରି ଗୋଷା ରହି ପାରିବୁନି ରେ ।.. ତେଣିକି ପଦଟା କ'ଣ କହିବୁଟିରେ ଚଇତା ?

ଚଇତା—ହଁ, ମହାରାଜେ ସେଇତା ।

ଶ୍ରୀପ୍ରିୟା—ହାଡ଼ିଆଣୀ ଛୁଇ ପଡ଼ିଲେ ନାହିଁ ଉଏଁ ପରା ତୁମ ଜାତିଆଙ୍କର ?

ମହନ୍ତ—ବୁଝିଲୁ ନାହିଁକି ବାପୁଣୀ, ଆମର ଆଉ ଜାତି ଅଜାତି କ'ଣ ? ବୋଇଲୁ ବାରଜାତି ତେର ଗୋଳ, ବଇଷ୍ଣମ ହେଲେ ସବୁ ଗଲା । ଆମେ ହେଲୁ ସଦା ପବିତ୍ର । ଥରେ ଯାହାକୁ ଛୁଇଁଦବୁ ସେ ହେଇଯିବ ପବିତ୍ର । (ସ୍ୱର କରି) "ପ୍ରେମ ଜାଣେ କି ଦିନ ରାତି" ପଦଟା କ'ଣ କହୁଥିଲେ ଚେଣିକି ଚଇତା !

ଚଇତା—ସେଇ, ସେଇତା ମହାରାଜେ ।

ଶ୍ରୀପ୍ରିୟା—ଯେତେହେଲେ ତମେ ଗୁରୁ ଗୋସେଇଁ—ଠାକୁର, ବାପ ସମାନ । ଏଭଳିଆ ବେମହତ କଥାଗୁଡ଼ା ··· ।

ମହନ୍ତ—ସେଇ କଥା ତ ମୁଁ କହୁଛି ଲୋ ବାପୁଣୀ, ବଡ଼ ଧରମୀ ଲୋକଟା ତୋତେ ଦେଖିଲି । ତୋତେ ନାମକରଣୀ ମନ୍ତ୍ର ଦେଇ···ହାଁ ବୁଝିଲୁଟିକି—ତୁଳସୀ କଣ୍ଠି ବନ୍ଧେଇ ରାମାନନ୍ଦୀ ଟିକା କଟେଇ—ହା—ଜାଣିଲୁଟିକି—ଆମ ମଠର ହାଃ—ହାଃ—କଣ କହୁଚୁରେ ଚଇତା ?

ଚଇତା—ମାତାଜୀ, ମାତାଜୀ—ଖାଲି ଅମାଲୁ, କାକରା, ଚନ୍ଦ୍ରକଳା-ନଡ଼ା, ମଗଜ ଲଡ଼ୁ, ଆଉ ଖଟ ପଲଙ୍କ, ତୁଆ ଚାଦର, ମସଲା ଦିଆ ଝଡ଼ିଆ ପାନ, ବଅଁଶଯାକ ପୋଷା ହେବେ । ଭାବନା କ'ଣ ?

ମହନ୍ତ—ଖମାର ରୁବି, ଭଣ୍ଡାର କାଠି, କାହା ହାତରେ ରହିବ କି ?

ଚଇତା—ଆଉ ପୁଣି କାହା ହାତରେ । ଏକାବେଳେ ମାଲିକାଣୀଙ୍କ

ଶ୍ରୀପ୍ରିୟା—ଜରେ ଅଲପେଇଷ, ଯୋଗିମାଖିଆ, କ'ଣ କରି ପାଇଲଣିକି ମୋତେ । ତମ ଆଖିରେ ଚନ୍ଦ୍ରସୂର୍ଯ୍ୟ ନାହାନ୍ତି ପରା । ମା ଲକ୍ଷ୍ମୀଙ୍କ ଦୟାରୁ ମୋ ଘରେ କଣ ଉଣା ହୋଇଛି କି, ମୋତେ ଖଟ ପଲଙ୍କ ଦେଖଉଚ । ଅଲଣ୍ଡାଚଟା, ଅଲଜୁକ, ଢିଟ । ସେ ଲଣ୍ଡା ମୁଣ୍ଡରେ ଦେବି ଯେ ପାହାରେ ···

(ପହଁରା ଉଞ୍ଚାଇଲା)

ଚଇତା—ପଳେଇ ଆସିବା ହଜ, ପଳେଇ ଆସିବା ହଜ ମହାପ୍ରଭୁ, ବଡ଼ ଜବର ମାଇକିନା ଇଏ ।

ମହନ୍ତ—ଇଏ ବେଶ୍ବପୋ ମାଈକିନାଙ୍କ ବୋପା !

(ଦୁହେଁ ପଳେଇ ଗଲେ । ଅପର ଦିଗରୁ ନାଥ ପଣ୍ଡା ପ୍ରବେଶ କଲେ)

ନାଥ—କ'ଣ, କ'ଣ, କି ଗୋଳମାଳ ଏଠି ?

ଶ୍ରୀପ୍ରିୟା—ଦେଖିଲ ଗୋସେଇଁ, ଏକୁଟିଆ ମାଇପି ଲୋକ ଦେଖି ଏ ତେମଣା ଯୋଡ଼ାକ ମଟି ଦାଣ୍ଡଟାରେ କମିତ ··· ।

ନାଥ—ସତେ, ସତେ ! ଏଇ ଯୁ ମହନ୍ତ ମହାରାଜ ଧାଇଁଛନ୍ତି—ସେହି ନା ?

ଶ୍ରୀପ୍ରିୟା—ହଁ ସେ ନଜେ··· ।

ନାଥ—ଛୁଇଁଲାବେଳକୁ ଜାତି ମାରା ହୋଇଯାଉଛି ହାଡ଼ିଆଣୀକୁ—ଏଣେ ଆଖି ବୁଜି ସବୁ ପାପ କରିବାକୁ ତିଆର । ହଉ, କେତେ ଦିନ କରିବ କରି ଯା—ଅସହାୟ ପତିତଙ୍କର ବି ଦିନକାଳ ଆସୁଛି । ମନ ଦୁଃଖ କର ନା ମା—ମୁଁ ଦେଖେଁ ସେ ବେଶ୍ବପୋ ଗଲେ କୁଆଡ଼େ ? କଉଠିକା ମହନ୍ତ ସେ । ତୁ ମୋ ପଛେ ପଛେ ଆ । ଡରିବୁ ନାହିଁ । ମୁଁ ଅଛି । ···ଜାଣିଲୁ··· ।

(ନାଥ ପଣ୍ଡା ଚାଲିଗଲେ)

—ଗୀତ—

ଶ୍ରୀପ୍ରିୟା— (ଶ୍ରୀରାଧା ବାଉଳୀ—ବୃତ୍ତେ)

ତୁମ୍ଭେ ବଳବନ୍ତ କାଳିଆ ସାଆନ୍ତ
ଭିଡ଼ ବସିଥିଲ ନୀଳାଚଳେ,
ଚଉବାହା ଟେକି ଦେଖୁଛ ନିରେଖି
ଦିବାରାତି ସେହି ଚକାମେଳେ;
ଜଗଜ୍ଜୀବନ ହେ,
ପାଷାଣ ହେଲା କି ତୁମ୍ଭ ପ୍ରାଣ,
ପତିତର ଗତି ହୋଇ ହେ ଶ୍ରୀପତି
ପତିତକୁ ନ କରୁଛ ତ୍ରାଣ ।

(ଗୀତ ଗାଇ ଗାଇ ପ୍ରସ୍ଥାନ)

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ବଡ଼ପଣ୍ଡାଙ୍କ ଘର । ବଳଦେବ ଓ ଜଗନ୍ନାଥ ଛଦ୍ମ ବ୍ରାହ୍ମଣ ବେଶରେ ଦ୍ୱାର ଦେଶରେ ଉପସ୍ଥିତ ହେଲେ । ]

ବଳ—ଏତେ ଦିନ ହେଲଣି । ବଡ଼ପଣ୍ଡାଙ୍କ ଦାଣ୍ଡ କବାଟ ଫିଟି ନାହିଁ । ବଡ଼ ଆଶ୍ଚର୍ଯ୍ୟ ତ !

ଜଗ—ଡାକିବା ତେବେ । (ଉଚ୍ଚସ୍ୱରେ) ବଡ଼ନ୍ତୁ ହେଉ ପଣ୍ଡା ସାଆନ୍ତଙ୍କର, ବଡ଼ନ୍ତୁ ହେଉ ।

ବଡ଼ପଣ୍ଡା—(ଭିତରୁ ଥାଇ) କିଏସେ ·ବେ—ସକାଳୁଟାରୁ ହୁରି ଚହଳ ପକେଇଛ ।

ଜଗ—ଆମେ ଦୁଇଜଣ କ୍ଷୁଧାର୍ତ୍ତ ବ୍ରାହ୍ମଣ ଆଜ୍ଞା—କାଲିଠୁଁ ଉପବାସୀ ।

ବଡ଼ ପଣ୍ଡା—ଯାଃ—ଯାଃ—ଏଠୁ ପଳା । ଅମଙ୍ଗଳିଆ ଛତରଖିଆଙ୍କ ମୁହଁ ଚୁହିଁଲେ ଯଶ ନାହିଁ ।

ଜଗ— ଦୟା କରନ୍ତୁ ସାଆନ୍ତେ—ଆମେ ମୁହଁ ବି ଧୋଇନାହୁଁ—ବଡ଼ୁଛ ଆଶା କରି ଆପଣଙ୍କ ଦୁଆରେ······

( ପଣ୍ଡା କବାଟ ଫିଟାଇ ବାହାରକୁ ଆସିଲେ )

ବଡ଼ ପଣ୍ଡା—ନୀଳାଚଳ ଯାକ ଏତେ ଛତ୍ର ପଡ଼ୁଛି, ତୁମକୁ ଆଉ ଥାନ ମିଳିଲା ନାହିଁ—ଏଇଠିକୁ ଧାଇଁଛ ?

ବଳ— ଏଇ ଘରେ ଲକ୍ଷ୍ମୀ ଅଛନ୍ତି ଜାଣି ଆସିଲୁଁ । ଗୋସେଇଁ, ମୁଠାଏ ଅନ୍ନ, ମଢ଼ାଏ ଜଳ, ଏତିକି ଭିକ୍ଷା ।

ବଡ଼ ପଣ୍ଡା—କଳକାଳ ଭେଣ୍ଡିଆ ଯୋଡ଼ାକ — ନଅଙ୍କିଆ, ମହରଗିଆ ଭଲ ତ ଦିଶୁ ନାହଁ । ଗତର ଖଟେଇ ଅରଜନ ନ କରି, ବାର ଦୁଆରେ ଭିକ ମାଗି ବୁଲୁଛ କିଆଁ ? ତମତମାନଙ୍କ ପାଇଁ ଦେଶରେ କାଳ ମହରଗ ପଡ଼ୁଛି ସିନା !

ବଳ— ଯାହା କହିବାର କହନ୍ତୁ ସାଆନ୍ତେ—ମୁଠାଏ ଅନ୍ନ ଦାନ କରି ଗୃହସ୍ଥ ଧର୍ମ ରକ୍ଷା କରନ୍ତୁ ଭଲା ! ଭୋକରେ ପେଟ ଜଳି ଗଲାଣି । ବ୍ରହ୍ମହତ୍ୟା ଲାଗିବ ନୋହିଲେ ।

ବଡ଼ ପଣ୍ଡା—ଦେଖିହେ, ଆମକୁ ଧର୍ମ ଶିଖେଇବାକୁ ଆସିଛନ୍ତି ଏ ଛତରଖିଆ ! ଆବେ, ଗଣ୍ଡା ଗଣ୍ଡା ଦେବତା କୋଡ଼ କୋଡ଼ ବ୍ରାହ୍ମଣଙ୍କ ତୋଟି ଚିପି ପାର କରିବାବାଲା ଆମେ ! ଆମକୁ ପୁଣି ଧରମ ଦେଖଉଛ ?

( ପଣ୍ଡିଆଣୀ ବାହାରି ଆସିଲେ )

ପଣ୍ଡିଆଣୀ—ସକାଳଟାରେ କାହା ସାଙ୍ଗରେ ବକ୍ ବକ୍ ଲଗେଇଛ ମ?

ବଡ଼ ପଣ୍ଡା—ଏହି କାଙ୍ଗାଳିଆ ଯୋଡ଼ାକ – ଦେଖିଲଣି······

ବଳ— ଆମେ ଉପବାସୀ ବ୍ରାହ୍ମଣ—ମୁଠାଏ ଅନ୍ନ ମାଗୁଛୁ ମା ଲକ୍ଷ୍ମୀ !

ପଣ୍ଡିଆଣୀ—ଆଚ୍ଛା ହଉ, ବସ ଏଇଠି—ବ୍ରାହ୍ମଣ ଘର ପୁଅ ତ—ମୁଁ ଯାଏ କ'ଣ ଅଛି ଦେଖେଁ ଘରେ, ରନ୍ଧା ବଢ଼ା ତ ହୋଇ ନାହିଁ, ପଖାଳ ଖାଇବଟି ?

ବଳ— ଯାହା ଦବ ତାହା ଖାଇବୁଁ, ଭୋକରେ ପେଟ ଜଳିଲାଣି ।

ପଣ୍ଡିଆଣୀ—ଭୋକିଲା ବ୍ରାହ୍ମଣଙ୍କୁ କହିଁ ଅକଲରେ ଘଉଡ଼ ଦେଉଥିଲ ତୁମେ ? ବୁଢ଼ାଟିଏ ହେଲଣି, ଏତେ ବୁଦ୍ଧି ନା ତୁମର ? ଭାଟ ଉପାସୀ ଦୁଆରୁ ଫେରିଲେ କ'ଣ ହୁଏ ଜାଣଚି ? ହଉ, ମୁଁ ଆସୁଛି ।

( ପଣ୍ଡିଆଣୀ ଘର ଭିତରକୁ ଗଲେ )

ବଡ଼ ପଣ୍ଡା – କଥା କହିବାରେ ଘର ପାରିଲ ତମେ ଦେଖିଲ । ଆମ ପଣ୍ଡିଆଣୀ ଭଲ ଜବର ଜନ୍ତୁକୁ ବି'ଗଡ ଜଅଁଳ କଥାରେ ଧାପ୍ପା ଫଟେଇ ନେଲ । ବାର ଦରଜାରେ ଜୟ ବୋଲି ଅଭ୍ୟାସ ହୋଇ ଗଲଣି, ନାହିଁ ? ଭିକମଗା ବେହିମା କ ନା ।

ବଳ—ଆଜ୍ଞା, ଭିକ ମାଗିବା ଆମର ବେଉସା ନୁହେ ପଣ୍ଡା ଠାକୁରେ ! ଅକଲରେ ପଡ଼ି—

ବଡ଼ ପଣ୍ଡା—ଆରେ ଯା—ଯା—ଆମେ କ'ଣ ମଣିଷ ଚିହ୍ନିନାହୁଁ ! ଆଖି ପଡ଼ିଲା କ୍ଷଣି ଠଉରେଇ ନବୁଁ ।

ଜଗ— ପଣ୍ଡିଆଣୀ ମା ବଡ଼ ଭଲ ଲୋକ – ସାକ୍ଷାତେ ଅନ୍ନପୂର୍ଣ୍ଣା ।

ବଡ଼ ପଣ୍ଡା—( ହସି ) ଠିକ୍ ଚିହ୍ନିଛ ଏକା । ବଖତ ହେଲା ଦିନଠୁଁ ଗୋଡ଼ ଧରି ଧରି ମୋ ପରି ଲୋକ ଯାହାକୁ ବାଗେଇ ଆଣି ପାରି ନାହିଁ; ଖୁବ୍ ବାହାଦୁରି ତୁମର ଯେ ତାକୁ କଥା ପଦକରେ ପାଣି କରି ଦେଲ ! ହଉ, ତମ ଭାଗ୍ୟ ଭଲ, ନିଜ ରୂପ ଦେଖି ନା ।

( ପଣ୍ଡିଆଣୀ ଥମ ଥମ ହୋଇ ପ୍ରବେଶ କଲେ )

ପଣ୍ଡିଆଣୀ—ଆରେ ଛତରଖିଆ, ଅମଙ୍ଗଳିଆ, ଲକ୍ଷ୍ମୀଛଡ଼ା ଭେଣ୍ଡିଆ···

ବଡ଼ ପଣ୍ଡା—କ'ଣ ପୁଣି ବିଗିଡ଼ି ଗଲାକି ସାଙ୍ଗେ ସାଙ୍ଗେ ! ସମ୍ଭାଳ ଏବେ ଅନ୍ନପୂର୍ଣ୍ଣା କି ଚଣ୍ଡି, ଗୃହମନ୍ତ୍ରୀ !

ପଣ୍ଡିଆଣୀ—କାଲି ରାତି ଅଧରେ ଯନ୍ତା ହାଣ୍ଡିଏ ପଖାଳ ପିଆଣ ଧୋଡେଇ ରଖିଛି—ଦେଖିଲାବେଳକୁ ବବାକ ପୋଛା-ପୋଛି !

ବଡ଼ ପଣ୍ଡା—କିଏ ଖାଇଗଲା ନା କ'ଣ ହେ ?

ପଣ୍ଡିଆଣୀ – ଖାଇବ ପୁଣି କିଏ ? ପୁଅଙ୍କର ନାଆଁ ଧରିଲାବେଳେ ହାଣ୍ଡିରୁ ଅନ୍ନ ଉଭେଇ ଗଲା । ସତରେ ଏ ଗୁହାଳ ଲକ୍ଷ୍ମୀଛଡ଼ା ! ଯା – ଯା – ମୋ ଘରୁ ନିକଳ—ଆଉ କିଏ ରହିଲେ ତ ଭଣ୍ଡାର ଶୂନ୍ ହୋଇଯିବ ।

ବଳ— ଆମର କି ଦୋଷ ମା – ଆମେ ତ···

ବଡ଼ ପଣ୍ଡା—ପଣ୍ଡିଆଣୀ କ'ଣ ମିଛ କହୁଛନ୍ତି ? ତୁମର ଏତେ ବହପ ତାଙ୍କ କଥାରେ ଉତ୍ତର ଦଉଛ ? ଯାହା ଚୁଲିକୁ ଉଡି ମୋ ପରି ବ୍ୟକ୍ତି କୁକୁର ହୋଇ ରହିଛି ।

ବଳ—ଆଜ୍ଞା, ପଣ୍ଡା ସାଆନ୍ତେ···

ବଡ଼ ପଣ୍ଡା—ପଳା ପଳା ଏଠୁ—ଭାଗ୍ ଭାଗ୍ ଭାଗ୍—ନୋହିଲେ ଚଣ୍ଡିଆ ଦେଇ ନିକାଲି ଦେବି ।

[ ପଣ୍ଡା ଭିଡ଼ ଆସନ୍ତେ ବଳଦେବ ଓ ଜଗନ୍ନାଥ ପଳାଇଲେ ]

ବଡ଼ ପଣ୍ଡା—ଖୁବ୍ ବୁଦ୍ଧିଟା କଲୁ ପଣ୍ଡିଆଣୀ ! କେଉଁ କନ୍ଦରରେ ଏ ଯୋଡ଼ାକ ଭିକାରୀଙ୍କୁ ବିଦା କରିଦେଲୁ ଯାହା ।

ପଣ୍ଡିଆଣୀ—ନାହିଁ, ମିଛ କହି ନାହିଁ । ତୁମେ ନିଜେ ଯାଇ ଦେଖି ଆସ, ହାଣ୍ଡିକୁଣ୍ଡି ସବୁ ଫିନ୍‌ଫାନ୍ । ମୁଁ ଯାଏଁ ଗୋଟେଇ-ବାଟର ଯୋଗାଡ଼ କରେଁ; ନୋହିଲେ ବଅଁଶଯାକ ଉପାସ ।

( ପଣ୍ଡିଆଣୀ ଚାଲିଗଲେ ଧନ ପଣ୍ଡା ପ୍ରବେଶ କଲେ )

ଧନ—ନକେଇ ଓଳଗି !

ବଡ଼ ପଣ୍ଡା—କିରେ ଧନିଆ, ସବୁ ଭଲ ?

ଧନ—ଭଲ ଆଉ କ'ଣ ! ପାପ ଘୋଟି ଆସିଲା ସଂସାରରେ ।

ବଡ଼ ପଣ୍ଡା—କ'ଣ ହେଲା କିରେ ? ଭାରି ଧରମ କଥା କହୁଛୁ ତ ରେ ଆଜି ।

ଧନ—ଏଇ ଦିଅଁଙ୍କ କଥା କହୁଥିଲି, ଏମିତି ଅଘଟଣା କଥା କେବେ ଶୁଣା ଚୁଣା ନ ଥିଲା ନକେଇ !

ବଡ଼ ପଣ୍ଡା—ତୋ କଥା ତ ବୁଝି ପାରୁ ନାହିଁ କିଛି ! କ'ଣ ଗୁଡ଼ାଏ ବକୁଛୁ ମ ?

ଧନ—ବଡ଼ ଦେଉଳରୁ ଏଇ ଯେ ଦିଅଁମାନେ ଉଭେଇ ଯିବା କଥା—

ବଡ଼ ପଣ୍ଡା—ମୁଁ ତ କିଛି ଶୁଣି ନାହିଁ ଏ ଯାକେ—କ'ଣ କହିଲୁ ?

ଧନ—ସହରଯାକ ହୋହାଲ ପଡ଼ିଛି—ଆଉ ତମେ ଶୁଣି ନା ? ଆଜି ସକାଳୁ ଦେଖିଲା ବେଳକୁ ବଡ଼ ଠାକୁରେ ସାନ ଠାକୁରେ ଦେଉଳରେ ନାହାନ୍ତି । ଲକ୍ଷ୍ମୀ ଠାକୁରାଣୀ ବି ନାହାନ୍ତି ।

ବଡ଼ପଣ୍ଡା—କ'ଣ କହୁଚୁରେ । ଗଞ୍ଜେଇ ଖାଇଚୁ ନା କ'ଣ ?

ଧନ—ସତ କହୁଛି କି ମିଛ କହୁଛି ବଳେ ଶୁଣିବ । ମୁଁ ସେଥିପାଇଁ ଧାଇଁ ଧାଇଁ ଆଇଲି ଖବର ଦେବାକୁ । ଆଉ ଜାଣିଛ ନକେଇ, ଦେଉଳରେ ଧୂଳି ସହିତେ ଉଡ଼ୁଛି । ଖମାର ଭଣ୍ଡାର ସବୁ ଫୋପଡ଼ୋଛି ।

ବଡ଼ ପଣ୍ଡା—ଚୋର କ'ଣ ଏହା କରିପାରେ ?

ଧନ—ଚୋର ! ଚୋରତ ବୋପା ପାରିବ ? କେତେ ହଜାର ଚୋର ହେଲେ, କେତେ ଦିନରେ ଏ ପାଇଟି କରିବେ ?

ବଡ଼ ପଣ୍ଡା—(ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ ଓ ଦୀର୍ଘ ନିଶ୍ୱାସ ଛାଡ଼ିଲେ)—ଜଗନ୍ନାଥ ! କାଳିଆ ସାଆନ୍ତ !

ଧନ—ଏ ସବୁ ଦେବ-କୂଟ ନକେଇ ! ପାପ ବଢ଼ିଯିବାର ଦେଖି ଠାକୁରେ ବୈକୁଣ୍ଠକୁ ଚାଲିଗଲେ । ଆଉ କ'ଣ କହୁଛ ନକେଇ ?

ବଡ଼ ପଣ୍ଡା—କଉଁଠି ଏମିତି କି ପାପ ହେଲା ଯେ ଠାକୁରେ ସହି ପାରିଲେ ନାହିଁ ?

ଧନ—ପାପ ! ପାପ ! ଆଉ ଏଠୁଁ ବଳି କି ପାପ ହୋଇପାରେ ? ମହାପାପ, ଘୋର ପାପ ! ପୁଣି ଏ ପବିତ୍ର ଶ୍ରୀକ୍ଷେତ୍ର ଧାମରେ !

ବଡ଼ ପଣ୍ଡା—କ'ଣ କଉଁଠି ହେଲା କହିଲୁ ?

ଧନ—କହିବି କ'ଣ; ଆଖିରେ ଦେଖିଲି ପରା ନକେଇ ! ମାହାରାଣୀଟା ବଇଷିମ କୁଣ୍ଡରେ ପାଣି ଦେଲା ।

ବଡ଼ ପଣ୍ଡା—ସତେ !

ଧନ—ଖାଲି କ'ଣ ସେତିକି ! ତମ ନାଥିଆ ଆଉ ସେ ମାହାରାଣୀ ସାଙ୍ଗ ହୋଇ ରୋଗୀଟାକୁ କାନ୍ଧେଇ ନେଇଗଲେ । ଆଉ ରହିଲା କ'ଣ ନକେଇ ?

ବଡ଼ ପଣ୍ଡା—ଆମ ନାଥିଆ ? ତୁ ବାରଣ କଲୁ ନାହିଁ ?

ଧନ—ବାରଣ ! ହାତ ଧରି ଝୋଷାରିଲି—କହିଲି ରେ ନାଥ, ବ୍ରାହ୍ମଣର କାୟା ନଷ୍ଟ କର ନା, ଧର୍ମ ଭ୍ରଷ୍ଟ କର ନା—ସେ କ'ଣ ଶୁଣିଲା ? —ଆହୁରି ମୋ ସାତପୁରୁଷ ଉଦ୍ଧାରି ଆପଣା ପଇତା ଆପେ ଛିଣ୍ଡେଇ ପକାଇଲା । କହିଲା ମୁଁ ହାଡ଼ି ।

ବଡ଼ ପଣ୍ଡା—ଠିକ୍ କଥା କହିଲୁ ଧନ । ଏଇ ପାପରୁ ଏକା ଠାକୁରେ ଅନ୍ତର୍ଦ୍ଧାନ ହୋଇଗଲେ । ଏହାର ପ୍ରତିକାର ନ କଲେ ତ ଚଳିବ ନାହିଁ, ଠାକୁରେ ବି ରହିବେ ନାହିଁ । ଦେଉଳରେ ଦିଅଁ ନ ରହିଲେ ଆମେ ବଞ୍ଚିବା କେମିତି ? ସଂସାର ବା ରହିବ କେମିତି ?

ଧନ—ପ୍ରଳୟ, ନକେଇ ଧ୍ୱଂସ—ଯୁଗ ଶେଷ ହୋଇଗଲା ।

ବଡ଼ ପଣ୍ଡା—ଆଚ୍ଛା, ତୁ ଯା, ସବୁ ପଣ୍ଡା, ପଡ଼ିହାରି, ସେବକମାନଙ୍କୁ ଖବର ଦେ' । ମୁଁ ପଛେ ପଛେ ଯାଉଛି ଦେଉଳକୁ ।

ଧନ—ତିଳ ସୁବର୍ଣ୍ଣଟାଏ କରାଇ ଗୋଳେଇଦବ ନାହିଁଟି—ମହାପାପ ଏ । ଗୋବର ପାଣି, ଲଣ୍ଡା, ଜାଣିଲ ! ମୁକ୍ତିମଣ୍ଡପରେ ପଡ଼ୁ ଏ କଥା । (ଚାଲିଗଲେ)

(ପୁଣି ଫେରିଆସି) ହଁ ନକେଇ, ସେ ହାଡ଼ୀଆଣୀ ଟୋକା ସାଙ୍ଗରେ ନାଥିଆ···ବୁଝିଲଟି । (ପ୍ରସ୍ଥାନ)

(ପଣ୍ଡିଆଣୀ ପ୍ରବେଶ କଲେ)

ପଣ୍ଡିଆଣୀ—କି ଆଶ୍ଚର୍ଯ୍ୟ ! ଭିକାରୀ ଯୋଡ଼ାଙ୍କୁ ଘଉଡ଼ାଇ ଯାଇ ଦେଖିଲି, ହାଣ୍ଡି ଅଟିକା ପୁରି ରହିଛି !

ବଡ଼ ପଣ୍ଡା—ତମର ତେବେ ଭ୍ରମ ହୋଇଥିଲା ।

ପଣ୍ଡିଆଣୀ—କେଉଁ ନୁହେଁ । ମୋ ଆଖି ତ ଫୁଟି ଯାଇ ନାହିଁ । ନା, ମୁଁ ପାଗଳ ହୋଇଛି ?

ବଡ଼ ପଣ୍ଡା—ଏଣେ ଶୁଣିଛ, ଦେଉଳରୁ ଦିଅଁମାନେ ଉଭେଇ ଯାଇଛନ୍ତି—ଲକ୍ଷ୍ମୀ ଠାକୁରାଣୀ ସହିତେ । ଭଣ୍ଡାର, ଖମାର ସବୁ ଶୂନ୍ୟ । ମୁଠାଏ ଧୂଳି କି ଠୋପାଏ ପାଣି ସୁଦ୍ଧା ନାହିଁ ଦେଉଳରେ ।

ପଣ୍ଡିଆଣୀ—କ'ଣ କହୁଛ ମ ! ଆଚ୍ଛା, ସେ ଚଣ୍ଡାଳୁଣୀ ଦୁହେଁ ଗଲେ କୁଆଡ଼େ ?

ବଡ଼ ପଣ୍ଡା—ଆରେ ରାମ ରାମ,—ତାଙ୍କୁ ପୁଣି ଡାକିବ କହୁଛ ? ସେ ଆସିଲେ ପୁଣି ଉଭେଇ ଯିବଟି ସବୁ । କାଙ୍ଗାଳିଆ, ଲକ୍ଷ୍ମୀଛଡ଼ାଗୁଡ଼ାକ ! ତମେ ଯା ଘରକୁ । ମୁଁ ଯାଉଛି ଦେଉଳ ଆଡ଼େ । ହାଲଟା କ'ଣ ଦେଖେଁ ।

(ଉଭୟେ ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

[ରାସ୍ତା । ଦୁଇଟି କୱାର କୁମାରୀ ଗୀତ ଗାଇ ଗାଇ ପ୍ରବେଶ କଲେ]

—ଗୀତ—

ଝାଇଁ ଝାଇଁ କରେ ଖରା ଲୋ ସଙ୍ଗାତ, ଝାଇଁ ଝାଇଁ କରେ ଖରା,
ଛୁଇ ତଳେ ବସି ଗୁହାଁରୁ ବାଳାରେ, ସାଇଁ ମୋ ଆସିବେ ପରା ଲୋ;
ଚମ୍ପା ଚହଟେ ଗୋରୀ, ତୋର ପରାଣ କରିବେ ଚୋରି ଲୋ ।

ମେଘ ତ ଅଇଲା ଦୁମୁଦୁମୁମାଇ ଲୋ, ବଜ୍ର ମାରେ ଘନ ଘନ,
ସୁଉ ସୁଉ ବାଆ ବତାସ ଧନରେ, ମନ କରେ ଛନ ଛନ ଲୋ;
କଳା କୋଇଲି କଣ୍ଠୀ, ଥିବୁ କାନରେ ପକାଇ ଗଣ୍ଠି ଲୋ ।

ସିରି ସିରି ସିରି ଦକ୍ଷିଣା ବହିଲା, ବଣମଲ୍ଲୀ ମହକିଲା,
ପଳାଶ ଫୁଲର ରଙ୍ଗ ପତକାରେ, ଦଶଦିଗ ଚହଟିଲା ଲୋ;
ନବ ଛଇଳା ବାଳୀ, କାନ୍ତ ବିନା ହେଉଥିବୁ ଖାଲି ଲୋ ।

[ବ୍ରାହ୍ମଣ ବେଶରେ ବଳଦେବ ଓ ଜଗନ୍ନାଥ ପ୍ରବେଶ କଲେ]

ବଳ—ତମ ଟୋକେଇରେ କ'ଣ ରଖିଛ ?

ପ୍ରଥମ କୁମାରୀ—ତୋର ଆଖିରେ ଦିରଶ ପଡୁ ନାହିଁ—ଖଇ ଗୋ ଖଇ, ଲିଆ ଗୋ ଲିଆ ।

ବଳ—ଭଲ ସଜ ଖଇ ତ ! ଆମକୁ ତହିଁରୁ କିଛି ଦବ ?

ଦ୍ୱିତୀୟ କୁମାରୀ—ବେତତେ ଅଛନ୍ତି—ହକ୍ କଉଡ଼ି ପାଇଲେ ନାହିଁ ଦବା କେନେ ?

ବଳ—ଆମେ ଭିକାରୀ ଲୋକ, କଉଡ଼ି କାହୁଁ ପାଇବୁ ?

ପ୍ରଥମ କୁମାରୀ—ଲାଜ ନାହିଁ ଛତରାଟା—ଯୁଆନ୍ ଯୁଆନ୍ ମରଦ ଯୋଡ଼ା, ଭିକ୍ ମାଗୁଛ ?

ଦ୍ୱିତୀୟ କୁମାରୀ—ବନ୍ଧା ସାଦ କରେଚ ?

ପ୍ରଥମ କୁମାରୀ—ଆଲୋ, ବନ୍ଧା କରିବେ ? ମାଗକୁ ପୋଷିବେ କେମିତି ? ଗତର କୋଡ଼ିଆ ଲୋ ଛତରଖିଆ ।

ଜଗ—ଭାଇ, ଆପଣଙ୍କ ଆଙ୍ଗୁଠିରେ ଯେଉଁ ରତ୍ନ ମୁଦି ଅଛି, ତାକୁ ବନ୍ଧା ଦେଇ ଖଇ କିଣନ୍ତୁ ।

ବଳ—ଆରେ ଠିକ୍ କଥା ତ ! ମୋ ମନେ ନ ଥିଲା । (ମୁଦି ବାହାର କଲେ ) ଦେଖ, ଏଇ ମୁଦିଟି ରଖି ଆମକୁ କିଛି ଖଇ ଦିଅ ।

ପ୍ରଥମ କୁମାରୀ—(ମୁଦି ନେଇ ଦେଖିଲା) ଏ ତ ସୁନାର ଆଂଠି । ତୁ କୁଆଡ଼େ ପାଇଲୁ ? ରଜାରାଜୁଡ଼ାର ଘରର ଚଳ୍ । ଦେଖ୍, ଦେଖ୍ ! ଡାକୁ ଲୋ ଡାକୁ !

ଦ୍ୱିତୀୟ କୁମାରୀ—(ମୁଦି ନେଇ ଦେଖିଲା) ସୁନା ନାଇଁ ଲୋ, କାଚ । ବେଙ୍କି ପିତଳର ଆଂଠି ।

ପ୍ରଥମ କୁମାରୀ—ନାଇଁ ଲୋ, ସୁନା । ଚୋର, ଡାକୁ, ଗାଲକଟା । ରଜାର ଠାଇଁ ଦେଖେଇଲେ ମାମାର ଘରେ ଘାନି ଟାନଟାନ ଗତର ଭାଙ୍ଗିବ ।

ବଳ—କହ୍ନେଇ, ଆମକୁ କି ଦଶା ପଡ଼ିଲା କି ?

ଜଗ—ଆଚ୍ଛା, ବେଙ୍କି ପିତଳ ହେଲେ ବି ଏଥିର କିଛି ହେଲେ ମୂଲ୍ୟ ଅଛି ତ ? ସେଇ ମୁତାବକେ ଖଇ କିଛି ଦିଅ ।

ଦ୍ୱିତୀୟ କୁମାରୀ—ଦେ ଲୋ ଦେ । ପିତଳର ଆଂଠି—ଚାରିକଡ଼ା କଉଡ଼ି । ଚାରିମାଣ ଖଇ ଦେ ।

( ବଳଦେବ କାନି ପତାଇ ଖଇ ନେଲେ )

ବଳ—ଯେପରି ହେଉ, ଏତିକିରେ ଆଜି ପ୍ରାଣଟା ରହୁ । ମୁହଁ ଧୁଆ ହୋଇନାହିଁ । ପାଣି ମୁନ୍ଦାଏ କେଉଠୁ ଦେଖେଁ । ତୁ ଏଇଠି ଥିବୁ କହ୍ନେଇ ।

( ବଳଦେବ ଚାଲିଗଲେ )

ଦ୍ୱିତୀୟ କୁମାରୀ—ଖଇଟା ଆମେ ଭିକ୍ ଦେଲୁ । ତୋର ଆଂଠିଟା ନେ ।

( ଜଗନ୍ନାଥଙ୍କୁ ମୁଦି ଦେଲା )

ଜଗ—ସୁନ୍ଦରୀ, ତମ ଗୀତଟି ବଡ଼ ମଧୁର । ଆଉ ଥରେ ଗାଆନ୍ତ...

**ପ୍ରଥମ କୁମାରୀ**—ଭାରି ରସିକଟା ତ ! ଭକ୍ ମଙ୍ଗାଟାର ସଉକ ଦେଖ୍ ଲୋ !

**ଦ୍ୱିତୀୟ କୁମାରୀ**—ଅଟେଳ ଡାଗର ଡାଗର ଗ୍ଲେଖଛେ କେମନେ ଘୁରୁଛେ ଦେଖ୍ ।

**ପ୍ରଥମ କୁମାରୀ**—ହେମଣାଟା ଲୋ, ଭାଲୁଆଟା !

**ଜଗ**—ମୋ ଆଖି ଦୁଇଟା ଟିକିଏ ବଡ଼ ବୋଲି ଲୋକେ ମୋତେ ଚକାଆଖିଆ ବୋଲି କହନ୍ତି ।

**ପ୍ରଥମ କୁମାରୀ**—(ହସି) ଚକାଆଖିଆ ଲୋ ଚକାଆଖିଆ । କେମନେ ଘୁରୁଛେ ଦେଖ୍ ।

**ଦ୍ୱିତୀୟ କୁମାରୀ**—ନାହିଁ ଲୋ, ଢେଙ୍କା ଆଖିଆ, ଉଠ୍ଛେ ନାମ୍ଛେ !

**ପ୍ରଥମ କୁମାରୀ**—ଗୁହାମଟା ତ କଟାଳ !

**ଜଗ**—ଗୀତ ମୋତେ ଭାରି ଭଲ ଲାଗେ, ପୁଣି ତୁମ ଭଳି ନବୀନା କୁମାରୀଙ୍କର ! ଗାଇବ ନାହିଁ ପରେ ?

**ପ୍ରଥମ କୁମାରୀ**—ଗାଅ ଲୋ ଗାଅ—ବେହିଆ ମରଦଟାର ମନ ରହୁ !

( କୁମାରୀ ଦ୍ୱୟ ପୁଣି ଗାଇଲେ )

(ଗୀତ)

ଛନ୍ଦଟ କୁଆଁରୀ ଜହ୍ନରେ ସଙ୍ଗାତ ଚଢଟ କୁଆଁରୀ ଜହ୍ନ,
ଗଙ୍ଗ ଶିଉଳିର ଉତଲା ବାସରେ ଉଛନ ହେଉଛି ମନ ଲୋ ;
ରଙ୍ଗ ଲେଟଣୀ ପାବୁ ! ଫାନ୍ଦେ ପଡ଼ିଯିବୁ ପରୁ ଧରୁ ଲୋ !
ଉତ୍ତର ବହୁଲା ସୁଲୁସୁଲିଆ ଲୋ ଜାଡ଼ ତ ଅଇଲା ମାଡ଼;
ଯୁବା କାଳେ ମିତ କେମନ୍ତେ ରହିବୁ ବନ୍ଧୁର କୋଳକୁ ଛାଡ଼ ଲୋ;
ନୂଆ ଜଜଳ ଚାନ୍ଦ, ଭଡ଼ ଦାଆନ୍ତା ଛନ୍ଦରେ ଛାନ୍ଦ ।

( ଗାଇ ଗାଇ ଚାଲିଗଲେ ଓ ବଳଦେବ ପ୍ରବେଶ କଲେ )

**ବଳ**—କଣ କହିବି, ଖାଇ ମୂଠାକ ପବନ ଉଡ଼ାଇନେଲା । ସବୁ ବିପଦ କ'ଣ ଏକାବେଳେ ପଡ଼ୁଛି କହେଇ ! ହାତରେ ପାଇ ହେଲେ ଭୋଗ ହେଉନାହିଁ ।

**ଜଗ**—ମୁହଁ ଧୋଇଲେ ତ ?

**ବଳ**—କମିତି ଧୋଇବ, ପାଣି ଟୋପାଏ ବି କେଉଁଠି ପାଇଲି ନାହିଁ ।

**ଜଗ**—ଚାଲନ୍ତୁ ପଦ୍ମପୋଖରୀକୁ ଯିବା ।

**ବଳ**—ଗଲାବେଳକୁ ପଦ୍ମପୋଖରୀ ଶୁଖିଲା—ଖାଲି ପଙ୍କ ।

**ଜଗ**—ଇନ୍ଦ୍ରଦ୍ୟୁମ୍ନ ?

**ବଳ**—ସେଥିରେ ବି ଟୋପାଏ ଜଳ ନାହିଁ ।

**ଜଗ**—ତେବେ ଚାଲନ୍ତୁ 'ସମୁଦ୍ର'କୂଳକୁ—ସମୁଦ୍ର କେବେ ଶୁଖି ନ ଥିବ । ସେଇଠି ମୁହଁ ଧୋଇ ଲୁଣି ପାଣିରୁ ପେଟେ ଲେଖାଏଁ ପିଇବା ।

**ବଳ**—ଆଉ ତ କିଛି ଉପାୟ ଦେଖା ଯାଉନାହିଁ । କି ହଇରାଣିଆ ଯୋଗ ଅଛି କେଜାଣି ! ସେ କୁମାରୀଗୁଡ଼ାକ ଗଲେ କୁଆଡ଼କୁ ?

**ଜଗ**—ତାଙ୍କୁ ଖୋଜି ଆଉ ଲାଭ କ'ଣ ? ସବୁତକ ଖାଇ ତ ସେ ଅଜାଡ଼ ଦେଇଥିଲେ ଆମକୁ ।

**ବଳ**—ଏଠି ଆଉ ରହି ଲାଭ କ'ଣ ? ଚାଲ ଆଉ କଉଁଠି ଦେଖିବା ।

**ଜଗ**—ଚାଲନ୍ତୁ ।

( ଉଭୟେ ଚାଲିଗଲେ )

( ଧନ ପଣ୍ଡା ପ୍ରବେଶ କଲା )

**ଧନ**—ଦେଖୁଛ ଭଲ ! ଏ ଛତରଖିଆ ଗୁଡ଼ାକ, ଭିକ ମାଗି ମାଗି ଧନ ସରୁନାହିଁ—ଯୁଙ୍କର ପୁଣି ପେରମ ! ପୁଣି କେଲୁଣୀ ଶଅରୁଣୀ ଟୋକୀଙ୍କ ସାଙ୍ଗରେ । ଓହୋ ! ଦୁନିଆଟା ଲଣ୍ଡର ହୋଇଗଲା ଏକା ।

ସବୁ ସେଇ ଗ୍ଲେଚ୍ଛକାର ଟୋକା ନାଥିଆର ଫିକର । ତାର ଯିମିତି ହାଡ଼ୀଆଣୀ, ବାଉରୁଣୀ ବାରଣ ନାହିଁ—ତାହାରି ବୁଦ୍ଧିରେ ପଡ଼ି ଏ ବ୍ରାହ୍ମଣ ଟୋକାଯୋଡ଼ାକ ବି ବିଗିଡ଼ି ଗଲେଣି । ଧର୍ମ ବୁଡ଼ିଗଲା ଏ ପୃଥିବୀକୁ । ଘୋର କଳି ହୋଇଟିଲା ଆସି ! ଯାଏଁ ଯୁଙ୍କ ପିଚ୍ଛ ଧରି—ଦେଖେ ଆଉ କି ନାଟ ଲଗିଛି । (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

( ବାଟରେ ଯୋଗୀପିଲା ଯୋଡ଼ିଏ କେନ୍ଦରା ବଜାଇ ଗୀତ ଗାଉଛନ୍ତି । )

—ଗୀତ—

ବାଇ ମନରେ, ବାରେ ଚିତ୍ତରେ ହେଜ;
ଏବେ ତ ମାଇପେ ପ୍ରବଳ ହୋଇଲେ
ଅଣ୍ଡିରୀ ପୁଅଙ୍କ ହଟିଲା ତେଜ ॥
ସ୍ତ୍ରୀରୀ ହେଲେ ପରଦା ଟେକି,
ମିଣିପେ ଯେ ଭେଳକା ଦେଖି ;
ଛୁଞ୍ଚ କନା ଧରି ମିଣିପେ ଲେପିଲେ;
ହାଣ୍ଡିଶାଳେ ପଶି ବାଳିଲେ ସେଜ ॥

ନାଗଙ୍କର ଫିଟିଲା ତୁଣ୍ଡ
ନରେ ପୋଡ ରହିଲେ ମୁଣ୍ଡ,
ମିଣିପେ ତ ଢେଙ୍କି ଲାଞ୍ଜିରେ ଚଢ଼ିଲେ
ମାଇପଙ୍କ ପାଇଁ ପାଇଲେ ଶେଷ ॥

(ଜଗନ୍ନାଥ ଓ ବଳଦେବ ପ୍ରବେଶ କଲେ)

ବଳ—ଏମାନେ ଯୋଗୀ ପିଲା, ଭିକ ମାଗି ବୁଲୁଚନ୍ତି । ଏମାନଙ୍କ ଥାଳରେ ନିଶ୍ଚୟ କିଛି ଥିବ ! ପଚାରିଲୁ କହିଲେ !

ଜଗ—ଅଚ୍ଛା ଯୋଗୀ ଥାଳରୁ···

ବଳ—ହଃ—ଅକାଳେ ନିୟମ ନାସ୍ତି । ପଚାର ତାଙ୍କୁ ।

ଜଗ—ହଇରେ ପିଲେ, ତମ ଥାଳରେ କ'ଣ ଅଛି କ ?

୧ମ ପିଲା—କାହିଁକି ମ ! ଲୋଭ ହେଉଛି କ ?

୨ୟ ପିଲା—ଲୁଗା ଛୋଡ଼େଇ ଦବୁଟି ! ଡାହାଣାଗୁଡ଼ାକ ଏ । ଏମାନଙ୍କ ଦୃଷ୍ଟି ପଡ଼ିଗଲେ ପେଟ କାଟିବଟି !

ଜଗ—ସତେ ଆମେ ବଡ଼ ଭୋକିଲା—ଭୋକରେ ଆଉଟି ହେଲୁଣି । କିଛି ଥିଲେ ମୁଠାଏ ଦେଇ ବ୍ରାହ୍ମଣଙ୍କ ପ୍ରାଣ ରକ୍ଷା କର । ଧର୍ମ ହେବ ତୁମର ।

୧ମ ପିଲା—ବ୍ରାହ୍ମଣ ! କଉଁ ଗାଁଆ ବ୍ରାହ୍ମଣ ମ ? ଯୋଗୀ ଥାଳରୁ ଅନ୍ନ ଖାଇଲେ ଜାତି ଯିବ ନାହିଁ ?

ଜଗ—ଆମେ ଜାତି ଅଜାତି ମାନୁ ନା ।

୨ୟ ପିଲା—ଆରେ ବୁଝିଲୁ ନାହିଁକି ? ଭଲ ବେଳରେ ଜାତିଆ ଯାକ ଅଜାତିଆଙ୍କ ଛୁଇ ମାଉନ୍ତି ନାହିଁ—ପୁଣି ଆପଣା ଗରଜ ପଡ଼ିଲେ ତାଙ୍କ ଅଇଁଠା ଗୁଣ୍ଟନ୍ତି ।

ଜଗ—ମନକୁ ଯାହା ଆସୁଛି କୁହ ପଛକେ, ଆମକୁ ଗଣ୍ଡାଏ ଖାଇବାକୁ ଦିଅ ।

୧ମ ପିଲା—ଦେ'ରେ ଦେ—ମୁଠାଏ ଦେଇ ଦେ । ମାଗିଲାଠଉଁ ହାନ ନାହିଁ, ଦେଲାଠଉଁ ପୁଣ୍ୟ ନାହିଁ ।

୨ୟ ପିଲା—(ଥାଳରୁ କାଢ଼ି ଦେବାକୁ ଗଲାବେଳେ ଦେଖି ଚମକି ପଡ଼ିଲା) ଦେଖିଲୁଣି ଇଏ କ'ଣ ?···ମୋ ଥାଳରେ ଖିରି, ପିଠା, କାନିକା, ଡାଲି, ତିଅଣ, ଶାକର ସବୁ ପୁରି ରହିଥିଲା—ଗଲା କୁଆଡ଼େ ? (କାନ୍ଦ କାନ୍ଦ ହେଲା)

୧ମ ପିଲା—ଭୂତ ଲାଗିଛି ନା କ'ଣ ?
ତୁ ନିଜେ ଗୁପି ଦେଇଥିବୁ ଲୁଚେଇ ।

୨ୟ ପିଲା—ମୁଁ ତ ପେଟେ ଖାଇସାରି ଏତେ ଥାଳରେ ରଖିଥିଲି । ମୋର କିନିଧ ମୁଁ ଲୁଚେଇ ଖାଆନ୍ତି ନା ? ପେଟ କୁଆଡ଼ୁ ପାଆନ୍ତି ?

୧ମ ପିଲା—(ନିଜ ଥାଳ ଦେଖି) ଆରେ ମୋର ବି ସେଇଆ । ମୁଁ ଯେତେ ଦରବ ରଖିଥିଲି, କିଛି ନାହିଁ । ବଡ଼ ଆଚମ୍ବିତ କଥା ! ଗଲା କୁଆଡ଼େ ? ଥାଳ ତ ଆମରି ହାତରେ ରହିଛି ! ଭେଳିକବିଦ୍ୟା ନା କ'ଣ ରେ ?

୨ୟ ପିଲା—ଏ ଲୋକ ଦି'ଟା ବ୍ରହ୍ମରାକ୍ଷସ, ନୋହିଲେ ଗୁଣିଆ । ଆମ ଖିରି ପିଠାତକ ଉଡ଼େଇ ନେଇଛନ୍ତି ।

୧ମ ପିଲା—ନାଇଁରେ ଏଗୁଡ଼ାକ ଲକ୍ଷ୍ମୀଛଡ଼ା—ନାଁ ଧଇଲେ ଭଣ୍ଡାର ଉଡ଼େଇ ଯାଉଛି ।

୨ୟ ପିଲା—ଭାଇ ମୁଁ କେତେ ଆଶା କରି ସଞ୍ଚିଥିଲି, ଭଲ ଭଲ ପଦାର୍ଥ ସବୁ ପଛକୁ ଖାଇ ଢେକୁଣିଆ ଛାଡ଼ିଉଇବ ବୋଲି । ଏ ଅଧିଆମୁହାଁ ଅଜାନାଗୁଡ଼ାକ କଉଁଠୁ ଅଇଲେ ଯେ ଆମର ସବୁ ସରିଲା ।

୧ମ ପିଲା—ମାର ବେହିଙ୍କୁ - ବଜାରେ ଘୁଞ୍ଚାଏ—ତାଙ୍କ ଅରଜନ ଖିଆ ସରୁ ।

ଜଗନ୍ନାଥ—ଆମର କିଛି ଦୋଷ ନାହିଁ ପିଲେ ! ଆମକୁ ଦୟା କର ।

୧ମ ପିଲା—ଦୟା ନା ଆଉ କିଛି ! ମାଇବ ଯେ ମୁଥାଏ ।

୨ୟ ପିଲା—ଚୁଟୁ ଦିହଙ୍କୁ ମାରି ହାତ ଗନ୍ଧେଇବ । ···ମୋ କଥା ଶୁଣ । ଖାଇବ ଯେବେ ସିଧା ଚାଲଯା ସମୁଦ୍ର କୂଳକୁ । ସେଠି ନୂଆ ରାଣୀ ନଅରରେ ଅନ୍ନଛତ୍ର ବଣ୍ଟା ହେଉଛି ।

ବଳ—ବାଟ କଉଁ ବାଟେ କହି ଦବ କ ?

୨ୟ ପିଲା—(ଆଙ୍ଗୁଳି ଦେଖାଇ) ଏଇ ବାଟେ ଏକ ମୁହାଁ ଯା ଚାଲି ।

ଜଗ—ଆସନ୍ତୁ ଭାଇ । (ଜଗନ୍ନାଥ ଓ ବଳଦେବ ଚାଲିଗଲେ)

୧ମ ପିଲା - (ପଛରୁ) ଯା, ଯା, ତମ କପାଳ ।

୨ୟ ପିଲା —ଆରେ, ସତ ଇଏ ଭେଳିକବିଦ୍ୟା ନା କ'ଣ ?

୧ମ ପିଲା – କ'ଣ କରେ ?

୨ୟ ପିଲା—ଆଗ ଦେଖ୍ ତୋ ଥାଳ, ମୁଁ କହୁଛି ।

୧ମ ପିଲା – ଇଏ କ'ଣ ! ମୋ ଥାଳ ତ ପୂରିଗଲାଣି—ଖିରି ପିଠା, ଅମାଲୁ, କାକରାରେ !

୨ୟ ପିଲା—ମୋର ବି ତ ।

୧ମ ପିଲା—ଆମର କଏ କ'ଣ ଚକ୍ଷୁ ବନ୍ଧନ କରିଦେଲା ?

୧ମ ପିଲା—ମୋତେ ତ କାଙ୍କା ଲାଗିଲାଣି । କଉଁ ଗୁଣିଆ ଏମାନଙ୍କୁ ଝୁଣି ମୁଣି କରିଛି ନା ବାର ବାଉତି ପେଷିଛି ?

୧ମ ପିଲା—ଆହା, ବିଚରାଙ୍କୁ କେତେ ଗଞ୍ଜିଲୁ ଆମେ ତୁଚ୍ଛାଟାରେ ।

୨ୟ ପିଲା—ମୋ ମନଟା ବି ଗୁଡ଼େଇ ହଉଚି ତାଙ୍କ ବ୍ୟସ୍ତ ଦେଖି ।

୧ମ ପିଲା—ଛାଡ଼—ଚାଲ ପୋଖରୀ ତୁଠରେ ବସି ଏତିକ ମାରି ଦବା—କେତେବେଳେ ପୁଣି କଉ କଥା ।

(ଜଣେ ଭକ୍ତ ଗୀତ ଗାଇଲେ)

ବାଇମନରେ, ବାରେ ଶତ୍ରରେ ହେଜ ।
ସ୍ତ୍ରେଚ୍ଛମାନେ ଏବେ ପ୍ରବଳ ହୋଇଲେ,
ସରିଲା ଅଣ୍ଡିରାପୁଅଙ୍କ ତେଜ ।

ସ୍ତ୍ରିଶ ଦାଣ୍ଡେ ମାରିଲେ ଚିଗ
ଖେଳାଇଲେ ମିଣିପେ ପିଳ,
ହେଁସ ପାରି ଘରେ ମିଣିପେ ଶୋଇଲେ,
ସ୍ତ୍ରିଶଙ୍କର ଲାଟେ କୁତ୍ରୀ ମେଜ ॥

ସ୍ତ୍ରିଶ ଯାଇ କଚେରି କଲେ,
ଅରଦଳୀ ମିଣିପେ ହେଲେ,
ମିଣିପେ ପାଦରେ ଅଲଟା ଘେନିଲେ,
ଜୋତା ମାଡ଼ ସ୍ତ୍ରିଶ ଟେକିଲେ ଖୋଜ ॥
(ଗୀତ ଗାଇ ଗାଇ ପ୍ରସ୍ଥାନ)

(ଘନ ପଣ୍ଡା ପ୍ରବେଶ କଲା)

ଘନ—ସେଇ ନାଥିଆ, ସେଇ ନାଥିଆ । ଇଏ ବି ସେଇ ଶଳାର ଫିକର । ସାଇ ସାଇ ବୁଲି ଲୋକଙ୍କୁ ଶିଖେଇ ଜାନି ପଡ଼ି ଉଠଉଚ୍ଛି । ନୋହିଲେ ଏ ବ୍ରାହ୍ମଣ ଟୋକାପୋଲାକ ଯୋଗୀ ଅଇଁଠା ଖାଇବାକୁ ମଙ୍ଗନ୍ତେ !

ଧର୍ମ—ଧର୍ମ—ଓହୋ, କି ପବିତ୍ର ସନାତନ ଧର୍ମଟା ! ହାୟ ହାୟ, ଜୁସରପାତ୍ର ହୋଇଗଲା ଶ୍ମଶାନ ଶୂନ୍ୟ । ଆଉ ଏଣିକି ସହିବା କଥା ନୁହେଁ । ମହାରାଜାଙ୍କ ଗ୍ରାମରେ ଏକଥା ପଡ଼ିବ । ଏଥର ଲାଗିଲା ତୋ ପଛରେ—ସମ୍ଭାଳ ଏବେ ଘନଆର କାଟଣି । (ପ୍ରସ୍ଥାନ)

## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

[ ଲକ୍ଷ୍ମୀଙ୍କ ନୂଆ ନଅର । ଲକ୍ଷ୍ମୀ ଓ ତୁଳସୀ ]

ଲକ୍ଷ୍ମୀ—ଯେତେ ମାଗୁଣି, ଯାଚୁଣୀ, ଭଟ୍ଟ, ଭିକାରି ସମସ୍ତଙ୍କୁ ଚର୍ଚ୍ଚା ହୋଇଗଲା ତ ? ନଅଣ୍ଟ ପଡ଼ି ନାହିଁ ତ ?

ତୁଳସୀ—ତମ ଶ୍ରୀହସ୍ତ ଲାଗିଛି ଯଉଁଠି, ସେଠି ନଅଣ୍ଟ ହବ ? ସମସ୍ତେ ଖାଇ ପିଇ ଯେତେ ଇଚ୍ଛା ବୋହି ନେଇ ଗଲେଣି ।

ଲକ୍ଷ୍ମୀ—ଆଚ୍ଛା ତୁଳସୀ, ଏଠି ତୋତେ କମିତିକା ଲାଗୁଛି ?

ତୁଳସୀ—ସବୁ କଥା ଭଲ ଲାଗୁଛି—ଏକା ···

ଲକ୍ଷ୍ମୀ—ରହିଗଲୁ ଯେ !···(ହସି) ଏକା କ'ଣ ?

ତୁଳସୀ—ତୁମେ କ'ଣ ବୁଝି ପାରୁନାହଁ ?

ଲକ୍ଷ୍ମୀ—ବୁଝୁଛି ତୁଳସୀ, ମୋ ମନଟା ବି ଭାରି ଗୁଡ଼େଇ ହଉଚି । ସେ' ଭାଇ କି ଦହଗଞ୍ଜ ହେଉ ନ ଥିବେ କି ! ଆଉ ମିଣିପେ ନ ଥିଲେ, ଘର କାହାପାଇଁ ? ସୁଖ ଲାଗୁନାହିଁ କିଛି ।

ତୁଳସୀ—ଯେମିତି କର୍ମକୁ ସେମିତି ଫଳ । ଆମର କି ଦୋଷ ?

ଲକ୍ଷ୍ମୀ—ଏତେବେଳଯାଏ ତ ଅମୃତମଣୋହି ହୋଇ ନ ଥିବ ଦୁଇ ଠାକୁରଙ୍କର ?

ତୁଳସୀ—ଏଡ଼େ ମୁଆଁସ ଥିଲା ତ ଗୃହା ଆସିଲ କାହିଁକି ଭଲା ? ଏବେ ଫେରିଗଲେ ଦେଉଳକୁ । ଗୋଡ଼ତଳେ ପଡ଼ି ପରିଚିତ କଲେ ଘରକୁ ନେବେ ଯେ ।

ଲକ୍ଷ୍ମୀ—ହେଇ କୁମ ଆସିଲାଣି···

( କୁମ ପ୍ରବେଶ କଲା )

ତୁଳସୀ—କିଲୋ, ତୁ କୁଆଡ଼େ ଯାଇଥିଲୁ କି ? ଦେଖା ତ ନ ଥିଲା ତୋର ?

କୁମ—ମୋତେ ପରା ମା ଠାକୁରାଣୀ ପଠେଇଥିଲେ ବଡ଼ ଦେଉଳକୁ —ସେଠା ଖବର ବୁଝି ଆସିବା ପାଇଁ ।

ତୁଳସୀ—ଓଃ, ଏତେକଥା ଭିତରେ ଭିତରେ ହେଉଛି—ମୁଁ କୁଆଡ଼େ ଜାଣିବି ଲୋ ମା !

ଲକ୍ଷ୍ମୀ—କ'ଣ ଦେଖିଲୁ କୁମ ?

କୁମ—ଦେଖିବି ଆଉ କ'ଣ ? ଦେଉଳ ତ ଖାଁ ଖାଁ । ପଣ୍ଡା, ପଡ଼ିଆରି, ନିଯୋଗୀ, ସେବକ, ସୁଆର କେହି ହେଲେ ଜଣେ ଦେଖାଯାଉ ନାହାନ୍ତି । ଲୋକେ ମେଳା ମେଳା ହେଉଛନ୍ତି । ଏତେ ବଡ଼ ଦେଉଳରେ ମାଛି ମରି ଯାଉଛି ।

ଲକ୍ଷ୍ମୀ—ଆଉ କ'ଣ ଦେଖିଲୁ ?

ତୁଳସୀ—ଆଲୋ, ଠାକୁରମାନଙ୍କ କଥା କହିଲୁ ନାହିଁ, ଯେଉଁଥି ପାଇଁ ଯାଇଥିଲୁ ?

କୁମ—ହଁ, ସେ' ଭାଇ ମୁହଁ ଧୋଇବାକୁ ପାଣି ମୁନ୍ଦାଏ ନ ପାଇ ଛତର ବାଉଳ ପରି ହାଡ଼ଓଳି ଶୁଖି ପିଣ୍ଡା ହଉଛନ୍ତି । ଯଉଁଠିକି ଯାଉଛନ୍ତି, ସେ ଘଉଡ଼ ଦେଉଛି । ତାଳ ବେତାଳ ଦିଶଟା ଇମିତିକା ନା ! ଇମିତି ପୋଛୁପାଛୁ ନବାଡ଼ କରି ଦେଇଛନ୍ତି !

ଲକ୍ଷ୍ମୀ—ଏତେବେଳଯାଏ କଣ ଅଗାଧିଆ, ଅଖିଆ ରହିଛନ୍ତି ? ବଡ଼ ଠାକୁରେ ତ ରାଗରେ ଜରଜର ହେବେଣି !

କୁମ—ଦାନ୍ତ ଢଷା ବି ହୋଇନାହିଁ । ଆହା, ଦୁହିଁଙ୍କ ମୁହଁ ଶୁଖି କଳାକାଠ ପଡ଼ିଗଲାଣି ।

ଲକ୍ଷ୍ମୀ—କଉଁଠି ଦେଖିଲୁ ତାଙ୍କୁ ?

କୁମ—ଏଇ ଆଡ଼କୁ ତ ଆସୁଛନ୍ତି ଦେଖିଲି । ଏଇଠିକି ଆସିବେ ପରା ।

ଲକ୍ଷ୍ମୀ—ସତେ ନା କୁମ ! କ'ଣ କରିବା ତୁଳସୀ ?

ତୁଳସୀ—ଠିକ୍ ହେଇଛି । ଠାକୁରାଣୀଙ୍କ ଆଖି ରହିଛି ।···ତୁମେ ଟିକିଏ ଆଡ଼ ହୋଇ ରହିବଟି—ମୁଁ ଯାହା କରିବାର କରୁଛି । ମଜାଟା ଦେଖ ।

ଲକ୍ଷ୍ମୀ—ହଉ, ମୁଁ ଯାଉଛି ଏଠୁ । ଭୋଷେଇ ବସେଇ ଦିଏଁ । ମୋ ହାତ ରନ୍ଧା ନ ହେଲେ ବଡ଼ ଠାକୁରଙ୍କୁ ତ ଯେ ରୁଚେ ନାହିଁ । (ଯାଉଁ ଯାଉଁ ଫେରି ପଡ଼ିଲେ) ହଁ ତୁଳସୀ, ଏ ରଙ୍ଗାଳିଆ ବେଳରେ ତୁ ତାଙ୍କୁ ବେଶି ହଇରାଣ କରିବୁ ନାହିଁ । ବଡ଼ ବାଧା ହେବଣି ।

(ଲକ୍ଷ୍ମୀ ଚାଲିଗଲେ)

ତୁଳସୀ—ମୁଁ ଜାଣେ ପରା ତୁମ ସୁଆଗ !

(ଜଗନ୍ନାଥ ଓ ବଳଦେବ ପ୍ରବେଶ କଲେ)

ବଳଦେବ—ଏହି କ'ଣ ନୂଆରାଣୀଙ୍କ ଉଆସ ?

ତୁଳସୀ—କାହିଁକି, କି ଦରକାର ତୁମର ?

ବଳ—ଶୁଣିଲୁଁ ଏଠି ଦାନ ଖଇରାତ ଲାଗିଛି । ଅନ୍ନଛତ୍ର ଖୋଲା ହୋଇଛି । ସେଥିପାଇଁ ଆମେ ଦୁଇଟି କ୍ଷୁଧାର୍ତ୍ତ ବ୍ରାହ୍ମଣ ···

ତୁଳସୀ—ବ୍ରାହ୍ମଣ ଭୋଜନ ତ ଏଠି ହଉନାହିଁ । କଙ୍ଗାଳ ଭୋଜନ ହଉଛି ।

ବଳ—ଆମେ ଜାତିରେ ବ୍ରାହ୍ମଣ ହେଲେ ବି କାଙ୍ଗାଳ ।

ତୁଳସୀ—କିନ୍ତୁ ଜାଣିଛ ଗୋସେଇଁ, ଆମ ରାଣୀ ଜାତିରେ ହାଡ଼ିଆଣୀ ।

ଜଗନ୍ନାଥ—ଆମେ ଜାତି ମାନୁନା ।

ତୁଳସୀ—ତୁମେ କେଜାଣି ମାନୁ ନ ଥିବ; ବଡ଼ ଗୋସେଇଁ ତ ଭାରି ଜାତିଆ ଭଳି ଜଣା ପଡ଼ୁଛନ୍ତି ।

ବଳଦେବ—ଆମର ବଡ଼ କ୍ଷୁଧା । ଅବାଗରେ ପଡ଼ି ଆଉ ଉପାୟ କ'ଣ ? ତେବେ ଆମକୁ ସିଧା ଦେଲେ ଆମେ ହାତରେ ଭୋଷେଇ କରିନେବୁଁ ।

ତୁଳସୀ—ବୁଝିଲ ଯେ ! ଆପଣାର ଗରଜ ପଡ଼ିଲେ ସବୁ ଚଳିଯାଏ । ପରବେଳକୁ ଜାତି ଧରା ହୁଏ । ହଉ, ମୁଁ ଆମ ରାଣୀ ମାଆଙ୍କୁ ପଚାରି ଆସେଁ ।

ଜଗ—ଆମପାଇଁ ଟିକିଏ ଭଲ କରି ବୁଝାଇ ସୁଝାଇ କହିବ । ଭୋକିଲା ବ୍ରାହ୍ମଣଙ୍କୁ ଅନ୍ନ ଦାନ କଲେ ତାଙ୍କର ଧର୍ମ ହେବ, ଧନ, ଦୌଲତ, ବଂଶ ବଢ଼ିବ ।

ତୁଳସୀ—ଥାଉ, ଥାଉ, ସେତିକି କଲ୍ୟାଣ କରିଥା—ତୁମ କଲ୍ୟାଣର ସେପରି କରାମତି ଥିଲେ, ଆଜି ବାରଦୁଆରେ ହାତ ପତେଇ ବୁଲୁ ଥାଆନ୍ତ କି ? ତୁମ ଭଳିଆ ପେଟବିକଳିଆ ବ୍ରାହ୍ମଣଙ୍କ କଲ୍ୟାଣରେ ଶାଗ ସିଝେ ନାହିଁ ।

(ତୁଳସୀ ଚାଲିଗଲେ)

ବଳ—କହିଲେଇ, ଏ ମାଇକିନାମାର କି ଶାଣଦିଆ ମୁହଁ ଖଣ୍ଡିକ । ଏ ଅବସ୍ଥାରେ ପଡ଼ିଛୁ ବୋଲି—ନୋହିଲେ ···

ଜଗ—ରାଗ କରିବାର ବେଳ ନୁହେ ଇଏ । ବଖତ ପଡ଼ିଲେ ସବୁ ସହିବାକୁ ହୁଏ ।

ବଳ—ମୁଁ କହୁଛି, ଯାହା ହେବାର ହେବ ପଛକେ, ଏଠୁ ଫେରି ଚାଲ୍ । ଏପରି ଅପମାନ ଅସହ୍ୟ—ପୁଣି ମାଇପିଟା ହାତରେ ।

ଜଗ—ଏଠୁ ଫେରିଲେ ଆଉ ଭରସା ନାହିଁ କଉଁଠି ।

ବଳ—ପୁଣି ହାଡ଼ିଆଣୀ ଯେ···

(ତୁଳସୀ ଓ କୁମ ସିଧା ସରଞ୍ଜାମ ଧରି ପ୍ରବେଶ କଲେ)

ତୁଳସୀ—ଗୋସେଇଁ, ଡେରି ହେଲା ବୋଲି ରାଗୁଥିଲ କି ?

କୁମ—ପେଟ ଜଳିଲେ ରାଗ ବଢ଼େ ।

ତୁଳସୀ—ହେଇ ତୁମ ପାଇଁ ସିଧା ଆଣିଛୁ, ଧର ।

ବଳ—ଥୋଇଦିଅ ସେଇଠି ।

ତୁଳସୀ—ଓଃ, ଛୁଇଁବ ନାହିଁ ପରା ଆମକୁ ?

କୁମ—ହାଡ଼ିଆଣୀ ଘର ସିଧାଟା ଛୁଆଁ ସ୍ତ୍ରୀ ନୁହେଁ ।

ବଳ—ନାହିଁ, ସେ କଥା ନୁହେଁ ଯେ, ଆମେ ଅଗାଧୁଆ ।

ଜଗ—ତା'ପରେ ତୁମେ ହେଲ ତରଳ ଲୋକ, ଯେତେ ହେଲେ ପର ସ୍ତ୍ରୀ । ଛୁଇଁବୁ କିମିତି ?

ତୁଳସୀ—ଏ ପରସ୍ତ୍ରୀ ବିଗୁରଟା ସବୁଦିନେ ତୁମର ଥାଏଟି ଗୋସେଇଁ ? ନାଁ, ଏବକୁ ଅଭ୍ୟାସ କରୁଛ ? ହଉ, କୁମ ! ଏଇଠି ସିଧା ଥୋଇଦେ ।

(ତଳେ ସିଧା ଥୋଇଲେ)

ତମେ ଯାଅ ଗାଧୋଇ ପଡ଼ି ଆସିବ । ଆମେ ଏଣେ ହାଣ୍ଡି ଆଟିକା, ଜାଳ ସଜଳ କରି ରଖୁଛୁଁ । ଆସିଲେ ପାଣି ଆଣି ଚୂଲି ଲଗାଇବ ।

ବଳ—ହଉ ।

ତୁଳସୀ—ମାଲପା ଲଗେଇବ ନାହିଁ ?

ବକ—ଦରକାର ନାହିଁ । ସମୁଦ୍ରରେ ସ୍ନାନ କରିବୁଁ ।

(ଉଭୟେ ପ୍ରସ୍ଥାନ)

ତୁଳସୀ—ଦେଖିଲୁ, କୁମ ଜାତିଆଙ୍କ ଚାଣପଣିଆ ?

କୁମ—ଠାକୁରେ କ'ଣ ରାନ୍ଧ ପାରିବେ ମାଉସୀ ?

ତୁଳସୀ—(ହସି) ଦେଖ୍ ନା ମଜାଟା ? (ପ୍ରସ୍ଥାନ)

## ଦ୍ୱିତୀୟ ଦୃଶ୍ୟ

(ରାଜସଭା । ମହାରାଜ ସିଂହାସନରେ ବସିଛନ୍ତି । ପାତ୍ର, ମନ୍ତ୍ରୀ, ପଣ୍ଡା, ମହନ୍ତ, ପ୍ରତିହାରୀ ଆଦି ସଭାରେ ଉପସ୍ଥିତ ।)

(ବନ୍ଦୀମାନଙ୍କ ଗୀତ)

ଜୟ ଜୟ ଉତ୍କଳ ଈଶ୍ୱର ଜୟ ହେ,
ଧର୍ମ ସଂରକ୍ଷଣକାରୀ
ଜୟ ଜୟ ଭାରତ ଧରଣୀ ମଣ୍ଡନ
ଅରିକୁଳ-ଦର୍ପ-ନିବାରୀ ।
ସକଳ ଶାନ୍ତି ସୁଖ ଦାତା
ସକଳ ଦୁଃଖ ଭୟ ତ୍ରାତା,
ଭୂଧର, ସାଗର, ଚନ୍ଦ୍ର, ଦିବାକର
ଗାଏ ତବ ଜୟ ଗାଥା,
ଜୟ ହେ, ଜୟ ହେ, ଜୟ, ଜୟ, ଜୟ, ଜୟ ହେ,
ଆତ୍ମ ତନୟ ସମ ପରଜା ପାଳକ
ଜନଗଣ ହୃଦୟ ବିହାରୀ ।

(ଗୀତାନ୍ତେ)

ମନ୍ତ୍ରୀ—ଆଜି ଧନ ପଣ୍ଡାଙ୍କର ଶ୍ରୀଛାମୁରେ କିଛି ଗୁହାରି ଅଛି । ମହିମା ଶୁଣିବାକୁ ଆଜ୍ଞା ହେଉ ।

ମହାରାଜ—ଧନ ପଣ୍ଡା ବୋଲନ୍ତୁ ।

ଧନ—(ଛିଡ଼ାହୋଇ କହିଲେ) ମହିମାଙ୍କ ଧର୍ମରାଜ୍ୟ ଭିତରେ ଅନାଚାର ପ୍ରବେଶ କରିଛି । ତାହା ରୋଧ ନ କଲେ ସଂସାର ବୁଡ଼ିଯିବ । ଧର୍ମ ଛାଡ଼ିଯିବ । ସୃଷ୍ଟି ଲୋପ ପାଇବ ।

ମହାରାଜ—କେଉଁଠି କ'ଣ ଦେଖିଲ, ତାହା ପ୍ରକାଶ କର ।

ଧନ—ଆଜ୍ଞା, ଏହି ଶ୍ରୀକ୍ଷେତ୍ରରେ ଶ୍ରୀୟା ନାମିକା ଗୋଟାଏ ଚଣ୍ଡାଳୁଣୀ ଅଛି । ସେ ବଡ଼ଦାଣ୍ଡ ମାର୍ଜନା କରେ । ଦେଖିବାକୁ ଉଜଳ ଡାଉଳ । ନାଥ ପଣ୍ଡାଙ୍କ ସାହସ ପାଇ ସେ ଆଉ ଧର୍ମାଧର୍ମ ମାନିବାକୁ ନାହିଁ । ଘରର ମାହାରାଣୀଟାର ଗର୍ବ କହିଲେ ନ ସରେ । ଏଥିର ବିହିତ ପ୍ରତିକାର କରିବାକୁ ଆଜ୍ଞା ହେଉ । ଏତିକି ମୋର ପ୍ରାର୍ଥନା ।

ମନ୍ତ୍ରୀ—ଗୁହା ଅଛନ୍ତି ?

ଧନ—ଅଛନ୍ତି । ଆମ ବଡ଼ ପଣ୍ଡାଙ୍କୁ ଜଣାଇଥିଲି । ସେ ଶ୍ରୀୟା ଗୋଟାଏ ବରଷମେର ଜାତି ନଷ୍ଟ କରିଅଛି । ଆଉ ନାଥିଆ କଥା ଛାଡ଼ନ୍ତୁ । ନୀଳାଚଳଯାକ ତ ନାଗରା ବାଜୁଛି ।

ମନ୍ତ୍ରୀ—ବଡ଼ ପଣ୍ଡା ଗୋସେଇଁ କଅଣ ଜାଣନ୍ତି କହନ୍ତୁ ।

ବଡ଼ ପଣ୍ଡା—ମୁଁ ଆଖିରେ ଦେଖିନାହିଁ, ମାତ୍ରକ କଥାଟା ସତ । ନାଥ ପଣ୍ଡା ନିଜେ ସ୍ୱୀକାର କରିଛନ୍ତି । ଆଉ ଶ୍ରୀୟା ମଧ୍ୟ ସ୍ୱୀକାର କରିଛି ।

ମନ୍ତ୍ରୀ—ବଡ଼ପଣ୍ଡାଙ୍କ କଥାରେ ଅବିଶ୍ୱାସ କରାଯାଇ ନ ପାରେ । ଆଉ ଗୁହା ଅଛନ୍ତି ?

ଧନ—ଏହି ମହନ୍ତ ମହାରାଜଙ୍କୁ ପଚରାଯାଉ ।

ମନ୍ତ୍ରୀ—ମହନ୍ତ ମହାରାଜ କହନ୍ତୁ ତେବେ ।

ମହନ୍ତ—ଆମେ ସ୍ୱୟଂ ନେତ୍ରରେ ଦେଖିଥିବାର ଆଜ୍ଞା । ଆମ୍ଭ ସଙ୍ଗରେ ଆମ୍ଭ ନବା ଗୃକର ମଧ୍ୟ ଥିବାର ଏକା ।

ମନ୍ତ୍ରୀ— ଦରକାର ନାହିଁ ; ଆପଣ କହିଲେ ଯଥେଷ୍ଟ ହେବ ।

ମହନ୍ତ—ମାଇକିନିଆଟାର ଚରିତ୍ର ମନ୍ଦ ଥାଉଛି । ଆମ୍ଭ ଭଳି ବ୍ୟକ୍ତିଙ୍କୁ ଘୋର ଅପମାନ । ତାକୁ ଗୁରୁଦଣ୍ଡ ହେବା ଉଚିତ ଏକା ।

ମନ୍ତ୍ରୀ— ଆଉ ପ୍ରମାଣର ପ୍ରୟୋଜନ ନାହିଁ । ଏଣିକି ଶ୍ରୀଛାମୁଙ୍କର ଆଦେଶ ।

ଧନ— ଆଉ ପଦେ କହିବାର ଅଛି ମୋର । ଘରର ମାହାରାଣୀଟା ଏତେ ଧନ ଦଉଲତ କାହୁଁ ପାଇଲା ? ଅମାପ ଦାନ ଖଇରାତ ଲଗାଇଛି । ହାଡ଼ିଆଣୀଠାରୁ ଦାନ ଗ୍ରହଣ କରି ଲୋକଙ୍କର ଧର୍ମ ନଷ୍ଟ ଗଲା । ସେ ନିଶ୍ଚୟ ଚୋରି କରିଛି, କିମ୍ବା ଅସତ୍‌କାର୍ଯ୍ୟ କରି ଧନ ଅର୍ଜନ କରିଛି ।

ମହାରାଜ—ସତେ ମନ୍ତ୍ରୀ ଏଭଳି ସ୍ତ୍ରୀ ଶ୍ରୀକ୍ଷେତ୍ରରେ ରହିଲେ ଲୋକଙ୍କ ଧର୍ମ ନାଶ ଯିବ । ମାତ୍ର ସ୍ତ୍ରୀ ଜାତି ଅବଧ୍ୟ । ତେଣୁ ଏ ଚଣ୍ଡାଳୁଣୀକୁ ଦେଶାନ୍ତର କରିବା ଉଚିତ । ଆଉ ତାର ଧନ ସମ୍ପଦ ରାଜକୋଷକୁ ଆସୁ ।

ମନ୍ତ୍ରୀ— ଆଜ୍ଞା ହେଲେ ମୋର କିଛି କହିବାର ଅଛି ।

ମହାରାଜା——ଆଜ୍ଞା, କହ ।

ମନ୍ତ୍ରୀ— ଶ୍ରୀୟା ଏଠାରେ ନ ଥାଇ ତାର ପରୋକ୍ଷରେ ବିଚାର ହେବା ବିଧିସଙ୍ଗତ ନୁହେଁ । ତା ବିଷୟରେ ସବୁ କଥା ଅନୁସନ୍ଧାନ

କରି ଜାଣିବା ନିମନ୍ତେ ନଗର କଟୁଆଳଙ୍କୁ ଆଦେଶ ହେଉ । ତା'ପରେ ବିଗ୍ରହ କରାଯିବ ।

ମହାରାଜା—ଠିକ୍ କଥା, ସେତେବେଳେ ଶ୍ରୀୟାଙ୍କୁ ମଧ୍ୟ ତଲବ କରାଯିବ । ବର୍ତ୍ତମାନ ତାଙ୍କୁ କାରାଗାରରେ ବନ୍ଦୀ କରି ରଖାଯାଉ ।

ସକଳେ—ଜୟ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧିବୀରବର ଉତ୍କଳ ମହୁଡ଼ମଣି ମହାରାଜାଙ୍କର ଜୟ !

## ତୃତୀୟ ଦୃଶ୍ୟ

( ଲକ୍ଷ୍ମୀଠାକୁରାଣୀଙ୍କ ନୂଆ ଘର । ବଳରାମ ଚୁଲି ଫୁଙ୍କି ଫୁଙ୍କି ଥକିଲେଣି । ଜଗନ୍ନାଥ କାଠ ଯୋଗାଉଛନ୍ତି )

ଜଗନ୍ନାଥ—ଭାଇ, ଆପଣ ଏଣିକି ଆସନ୍ତୁ, ମୁଁ ଫୁଙ୍କି ଦିଏଁ ।

ବଳରାମ—ଯାଃ, ପିଲାଲୋକ ତୁ ପାରିବୁ ନାହିଁ । କାଠଗୁଡ଼ାକ ଓଦା ।

ଜଗନ୍ନାଥ—ଆଜ୍ଞା, ଓଦା କୁହେଁ ସେ—ଆମକୁ ଲଗାଇ ଆସେ ନାହିଁ ।

ବଳ— ଠିକ୍, ଏଗୁଡ଼ାକ ମାଇପି ପାଇଁ ସବୁ···

( ତୁଳସୀ ପ୍ରବେଶ କଲେ )

ତୁଳସୀ—ଗୋସେଇଁ, ରୋଷେଇବାସ ସରିଲାଣି ?

ବଳ— ରୋଷେଇ ସରୁଛି ! ଚୁଲି ତ ଲାଗିବାକୁ ନାହିଁ···ଫୁଙ୍କି ଫୁଙ୍କି ବେଦମ୍ ହେଲିଣି ।

ତୁଳସୀ—ସତ ଏକା, ଅଧୂଆ ମୁହାଁଙ୍କ ହାତରେ ଚୁଲି ଲାଗେ ନାହିଁ । ତମେ ମୁହଁ ଧୋଇ ନାହଁ କି ଆଜି ସକାଳୁ ?

( ବଳରାମ ଚାଟକା ହୋଇ ରହିଲେ )

ଜଗ— ଏ ସବୁ ମାଇପଙ୍କ କାମ, ମିଣିପଙ୍କୁ ଶୁହାଏ ନାହିଁ ।

ତୁଳସୀ—ସାନ ଗୋସେଇଁ ଟିକିଏ ଫୁଙ୍କି ଦେଉ ନା—ତମର ବଇଁଶୀ ଫୁଙ୍କା ଅଭ୍ୟାସ ଅଛି ପରା !

( ଜଗନ୍ନାଥ ଚାଟକା ହୋଇ ଉଠିଲେ )

ଜଗ— ତମେ ଟିକିଏ ସାହାଯ୍ୟ କରନ୍ତ କି ବଡ଼ ଧର୍ମ ହୁଅନ୍ତା ।

ତୁଳସୀ—ନମୋ କଥା ମାନ ଗୋସେଇଁ । ରୋଷେଇ କାମ ମିଣିପଙ୍କୁ ଭାରି ଅଡୁଆ । ବଡ଼ ଗୋସେଇଁଙ୍କ ନାଲି ଆଖି ଦୋଟାକ ଧୂଆଁରେ ନାଲି ଟହଟହ ଦିଶିଲାଣି । ସିଧା ସରଞ୍ଜାମ ସବୁ ତମ ଘରକୁ ନେଇ ଯାଅ କି, ସେଠି କେହି ରାନ୍ଧି ଦେବେ ।

ଜଗ— ଆମର ତ ଘର ନାହିଁ ।

ତୁଳସୀ—ହଉ, ଘରଣୀ ତ ଥିବେ ?

ଜଗ— ତାହା ବି ନାହାନ୍ତି ।

ତୁଳସୀ—ଓହୋ, ଏକେ ଅଘର, ତହିଁରେ ପୁଣି ମାଇପଛଡ଼ା ତମ ମୁହଁ ଚାହିଁଲେ ପଣ ନାହିଁ ।

ବଳ— ଆଉ ଗଞ୍ଜଣା ଦିଅ ନା, ଭୋକରେ ଆଉଟି ହୋଇ ଆମର ହାତଗୋଡ଼ ଚଳିବାକୁ ନାହିଁ । ଦୟା କରି ତମ ରାଣୀଙ୍କୁ କହି, ଯାହା ହେଲେ ଗଣ୍ଡାଏ ଦିଅନ୍ତୁ । ତମ ସିଧା ସରଞ୍ଜାମ ଏଇଠି ରହିଲା ।

ତୁଳସୀ—ଆଁ—କି କଥା ମ ! ହାଡ଼ିଆଣୀଟା ହାତରୁ ଖାଇବ ? ସେତେହେଲେ ବ୍ରାହ୍ମଣ ତ ।

ବଳ— ଗୁଡ଼ ସେ କଥା । ଆଗ ଯିବଟି, ପେଟ ଜଳିଲାଣି ।

ତୁଳସୀ—ନିଆଁ ଲାଗିଲେ ସିନା ପେଟ ଜଳେ । ତମର ଖାଲଟାରେ ଜଳୁଛି ଗୋସେଇଁ ?

ଜଗ— ଆଗ ମୁଠାଏ ଦେଇସାରି ମନଇଚ୍ଛା ଯାହା ଯେତେ କହିବ ତେଣିକି ।

ତୁଳସୀ—ଏତକ ଆଗରୁ କହିଥିଲେ ତ···ଭୁଚ୍ଚାଟାରେ ଯା ବଆସ ଗଡ଼େଇ ଏତେ ହେହଗଞ୍ଜି ହେଲ । ଆଲେ କୁମ, ଆସିବୁ ଟି ।

( କୁମ ପ୍ରବେଶ କଲା )

କୁମ— କ'ଣ କହୁଛ ମାଉସୀ ?

ତୁଳସୀ—ହ' ଗୋସେଇଁଙ୍କ ପାଇଁ ଠାଆ ପିଢ଼ା କରି ଦଉଛି । ମୁଁ ଅମଣିଆ ନେଇ ଆସେ । ( ପ୍ରସ୍ଥାନ କଲେ )

ଜଗ— ଜଳପାନ ନା ଅନ୍ନ ବ୍ୟଞ୍ଜନ ?

କୁମ— ଏତେବେଳଟାରେ ଜଳପାନ କ'ଣ ହେବ ? ରାଣୀମା ନିଜେ ରୋଷେଇ କରିଛନ୍ତି ପରା !

ଜଗ— ହଉ, ତାଙ୍କ ଦୟା ।

( ଜଗନ୍ନାଥ ବଳରାମଙ୍କୁ ଚାହିଁଲେ )

ବଳ— ଚାହୁଁଛୁ କ'ଣ କହେଇ ? ଅକାଳେ ନିୟମ ନାସ୍ତି ।

( ତୁଳସୀ ଅନ୍ନ ବ୍ୟଞ୍ଜନ ନେଇ ପ୍ରବେଶ କଲେ, ବଳରାମ ଓ ଜଗନ୍ନାଥ ଆସନରେ ବସି ଭୋଜନ କଲେ )

ବଳ— ଏତେପ୍ରକାର କେତେବେଳେ କଲେ ମ ? ଆଃ, ବଡ଼ ସୁଆଦ ହୋଇଛି ।

ତୁଳସୀ—ଭୋକ ବେଳରେ ସବୁ ସୁଆଦ ଲାଗେ ତୁଣ୍ଡକୁ ।

ବଳ— କହେଇ, ଏ ଠିକ୍ କମଳାଙ୍କ ହାତ ରନ୍ଧା ପରି ଲାଗୁଛି ।

ତୁଳସୀ—ବଡ଼ ଚୋରସେଇଁ, ହିକଏ ସନ୍ଧ ସମାନ ହୋଇ ମଣୋହି କର । ଝଟକ କଣ୍ଠରେ ଲଗିବ କି ।···ଆଜ କ'ଣ ଆଣିବ ?

ବଳ— ଯଥେଷ୍ଟ ହେଲଣି ।

ତୁଳସୀ—ତେବେ ପୋଡ଼ପିଠା ନିଅନ୍ତୁ । ଭୋଜନ ଶେଷରେ ଭଲ ଲାଗେ ପର !

ବଳ— ( ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ) ···ମୁଁ ଭୋଜନ ଶେଷରେ ପୋଡ଼ପିଠା ଖାଇବାକୁ ଖୁବ ପାଏ ବୋଲି ତମେ କାହୁଁ ଜାଣିଲ ?

ତୁଳସୀ—ରାଣୀ ମା ତ ସବୁଜାଣ ।

ବଳ— କହ୍ନେଇ, ଏ ରାଣୀ ଲକ୍ଷ୍ମୀଙ୍କ ଛଡ଼ା ଆଉ କେହି ନୁହେଁ ।

ଜଗ— ମୋତେ ବି ସେହିପରି ଲାଗୁଛି । ଆପଣଙ୍କ ଅନୁମାନ ଠିକ୍ ।

ବଳ—( ହସି ) ତେବେ କହ୍ନେଇ, ଆମେ ହାରିଲୁଁ ଜଣାଗଲା । ତୁ ଏବେ ଯାଇ ତାଙ୍କ ହାତ ଧରି ଆମ ଦୁହିଁଙ୍କ ଦୋଷ ମାଗି ନେ । ଯାହା ହେବାର ହୋଇଗଲା ! ଏବେ ଘରର ଲକ୍ଷ୍ମୀ ଘରକୁ ଚାଲନ୍ତୁ ।

( ବଳରାମ ବାହାରି ଗଲେ )

ଜଗ— ଜାତି ତ ମାଇଲ । ଆଉ ଲୁଚନ୍ତୁ କାହିଁକି—ବାହାରି ଆସ ଏବେ । ଜଣାଗଲ ଯେ ।

( ଲକ୍ଷ୍ମୀ ପ୍ରବେଶ କଲେ )

ଲକ୍ଷ୍ମୀ—କ'ଣ ଜଣାଗଲ ?

ଜଗ— ତମର କରାମତି, ମାଇପଙ୍କ ବାହାଦୁରି ।

ଲକ୍ଷ୍ମୀ—ମାଇପଙ୍କର ଗୋଟାଏ କରାମତି କଣ ? ଏକେ ମାଇପି ଜାତି, ତହିଁରେ ପୁଣି ହାଡ଼ିଆଣୀ ।

ଜଗ—ଏତେ ସରକ ନାକୁଆ କାନୁଆ କଲ ତେବେ ବି ମନ ଅଭିମାନ ମେଣ୍ଟି ନାହିଁ !···ଏବେ ଦେଉଳକୁ ବିଜେ କରିବା ପାଇଁ ଶ୍ରୀମୁଖରୁ ଆଜ୍ଞା ହେଉ !

ଲକ୍ଷ୍ମୀ—କେଉଁଠିକି ଯିବି !···ଦେଉଳକୁ ? ଦେଉଳ ମାରା ହୋଇ ଯିବ ଯେ !

ଜଗ—ପାଶୋରି ପକା ସେ କଥା ।

ଲକ୍ଷ୍ମୀ—ପାଶୋରିବା କଥା ଏକା । ତମେ ଯେ ଆଜି ହାଡ଼ିଘରେ ଖାଇଲ, ସେଥିପାଇଁ ଆଗ ପ୍ରାୟଶ୍ଚିତ୍ତ କର, ତା'ପରେ ଅନ୍ୟ କଥା । ତମେ ବେହିଆ ବୋଲି ମୋତେ କ'ଣ ଲାଜ ସରମ ନାହିଁ ?

ଜଗ—ଆମେ ବେହିଆ, ଆମେ ଅଲାଜୁକ, ଆମେ ସବୁ । ମାତ୍ର ହାଡ଼ିର ଦେହରକୁ ଆଜି ମୁଣ୍ଡକାଟ ଦେଇ କାହିଁକି ? ନିଜ ମରାଇଲ, ନାକ ଦଖାଇଲ, ଆଉ ପୁଣି ବାକି କ'ଣ ?

ତୁଳସୀ—ବାକି ଅଛି ଗୋଡ଼ଧରା ।

ଜଗ—ସେଥିପାଇଁ ବି ହାଜର ଅଛି । (ଆଗେଇ ଗଲେ)

ଲକ୍ଷ୍ମୀ—(ପଛେଇ ଯାଇ) ଛି, ଛି, କଣ କରୁଛ ଇଏ । ତୁଳସୀଟାର କି ଅକଲ ? ଶୁଣ ମୋ କଥା । ବଡ଼ଠାକୁରଙ୍କ ଆଜ୍ଞା ମୁଁ ଅମାନ୍ୟ କରି ପାରିବି ନାହିଁ । ବଡ଼ ଦେଉଳକୁ ଯିବି । ଏକା ତମ ସଙ୍ଗରେ ଗୋଟାଏ କଥା ଅଛି ।

ଜଗ—କ'ଣ କୁହ ।

ଲକ୍ଷ୍ମୀ—ଏଇ ଯେ, ଆଜଠଉଁ ଦେଉଳରେ ଜାତିଭେଦ ରହିବ ନାହିଁ । ଅଛିଵ ଲୋକେ ଅବାଧରେ ଦର୍ଶନର ଅଧିକାରୀ ହେବେ । ସ୍ତ୍ରୀ-ପୁରୁଷଙ୍କର ସମାନ ଅଧିକାର ରହିବ ଦେଉଳ ଭିତରେ ।

ଜଗ—ହଉ, ତମର କଥା ହେଲା, ଏବେ ଚାଲ ।

ଲକ୍ଷ୍ମୀ—ତିନିବାର ସତ୍ୟ କର ।

ଜଗ—ହଁ, ସତ୍ୟ କଲି, ଏଇ ନିୟମ ଦେଉଳରେ ପାଳିତ ହେବ ।

ଲକ୍ଷ୍ମୀ—ତୁଳସୀ, କୁମ, ସମସ୍ତଙ୍କୁ କହିଦିଅ ସମସ୍ତେ ସଜ ହୋଇ ଦେଉଳକୁ ବାହାରି ଚାଲନ୍ତୁ ଆମ ସଙ୍ଗରେ ।

ତୁଳସୀ, କୁମ—ଜୟ ଲକ୍ଷ୍ମୀଠାକୁରାଣୀଙ୍କର ଜୟ ।

## ଚତୁର୍ଥ ଦୃଶ୍ୟ

[ନଗରବାସୀ ଗୃହସ୍ଥର ଘର । ଦୁଆର କଳା ହୋଇଛି ଭିତରୁ । ଗୃହସ୍ଥ ପହଞ୍ଚିଗଲା ଓ ଦୁଆରରେ ହାତ ମାଇଲା । ]

ଗୃହସ୍ଥ—ଦିନ ଆସି ପହରେ ହେଲଣି, ଦାଣ୍ଡ କବାଟ ବି ଫିଟି ନାହିଁ ? (କବାଟରେ ହାତ ମାରି) କବାଟ ଖୋଲ, କବାଟ ଖୋଲ । ହେ ଶୁଣୁଛ, କବାଟ ଖୋଲ ମ । ଆରେ ମଲଣି ନା କ'ଣ—ଏଯାକେ ନିଦ ଭାଙ୍ଗିବାକୁ ନାହିଁ ।

(ଭିତରପଟୁ ଜବାବ ଦେଲା ଘରଣୀ)

ଘରଣୀ—କବାଟ କ'ଣ ରାତିଯାକ ମୁକୁଳା ରଖି ଥାଆନ୍ତି, ତୁମରି ପାଇଁ କେତେବେଳେ ଦେବତା ଆସିବେ ବୋଲି ?

ଗୃହସ୍ଥ—ରାତି କ'ଣ ପାହିନାହିଁ ତମକୁ । ଦିନ ପହ ପହରେ ହେଲଣି ।

ଘରଣୀ—ହଁ, ତମକୁ ସିନା ରାତି ପାହୁଛି ।

ଗୃହସ୍ଥ—ହଉ, କବାଟଟା ଖୋଲିଦିଅ ଏବେ ।

ଘରଣୀ—ନାଇଁ, କବାଟ ଖୋଲି ହବ ନାହିଁ । ଝାଡ଼ୁଟାପାଇ ଯଉଁଠି ଥିଲି ସେଇଠିକି ଯା' ।

ଗୃହସ୍ଥ—ସେମିତି କହିଲେ ଭାଙ୍ଗିଦେବି କବାଟ ।

ଘରଣୀ—କେମିତି ଭାଙ୍ଗିବ ଭାଙ୍ଗିଲ ଦେଖେଁ !

ଗୃହସ୍ଥ—( ସ୍ୱଗତ ) ଏମିତି ସହଜରେ ହେବ ନାହିଁ, କୌଣସି କୌଶଳ କରିବାକୁ ହେବ ।

(ପେଟରେ ହାତ ଦେଇ ଶୋଇ ଗଡ଼ିଲା ଭୂଇଁରେ)

ବାପଲୋ, ବାପଲୋ, ମରିଗଲି । ମଧିଏ ପାଣି—ମଧିଏ ପାଣି । ଓହୋ ! ପ୍ରାଣ ଗଲା ।

ଘରଣୀ—(କବାଟ ଖୋଲି ବାହାରି ଆସିଲା ତରବରରେ) ତମ ବେଳ ହବାଟା ଜଣାଗଲା ଯେ, ହଉ, ଏବେ ଉଠି ପଡ଼ ।

ଗୃହସ୍ଥ—( ହଠାତ୍ ଉଠି ପଡ଼ି ନିଜ ରୂପ ଧାରଣ କଲା ) ପଚ୍ଛରେ କବାଟ କିଳା ହୋଇଥିଲା କାହିଁକି ? ମୋ ଘରେ ମୋତେ ପୁଣି କବାଟ କିଳା ?

ଘରଣୀ—ତମ ଘର ! ତମର କି ଘର ! ତମ ଘର ମାହାଣ୍ଡି ସାହିରେ, ଏଠି ତମ ଘର କାହୁଁ ଆଇଲା ?

ଗୃହସ୍ଥ—ମିଣିପଙ୍କର ସବୁ ଆଡ଼େ ଘର । ତାଙ୍କୁ ରୋକିବ କିଏ ?

ଘରଣୀ—ଆଉ ମାଇପେ ଖାଲି ପୋଇଲି ପରି ଘର କୋଣରେ ପଶି ରହିଥିବେ, ନାଇଁ ?

ଗୃହସ୍ଥ—ଆଉ କ'ଣ ଦାଣ୍ଡରେ ନାଚିବେ ?

ଘରଣୀ—ମିଣିପେ ନାଚି ପାରନ୍ତି—ମାଇପଙ୍କର କି ଦୋଷ ହେଲା ?

ଗୃହସ୍ଥ—ଯାଉ ନା ଦାଣ୍ଡଘରକୁ ।

ଘରଣୀ—ମରଦ-ଦାଣ୍ଡ ଘର ଥିଲେ ମାଇପଙ୍କ ନିଶ୍ଚେ ମିବା ଉଚିତ, ଏଇ ହାଟକୁ ।

ଗୃହସ୍ଥ—ଯେତେହେଲେ ତ ମାଇପି ଜାତି—ଛୁଇଁଲେ ଛୁଆଁସ୍ତା ।

ଘରଣୀ—ଆଉ ମିଣିପେ ଧୁଆଁରେ ଧାଣିହେଲେ କି ପବିତ୍ର ।

ଗୃହସ୍ଥ—ବିଧାତା ଯାହା ଭିଆଇଛି ନା ?

ଘରଣୀ—ବିଧାତା ନୁହେଁ—ଏଇ ମିଣିପେ କରିଛନ୍ତି ।

ଗୃହସ୍ଥ—ଜାଣିଛଟି ମୁଁ ମନ କଲେ ତମକୁ ଘରୁ ବାହାର କରି ଦେବି ।

ଘରଣୀ—ଘରତ ମୋର । ମୁଁ ମନ କଲେ ତମକୁ ନିକାଳି ଦେଇ ପାରେ ।

ଗୃହସ୍ଥ—ତମକୁ ମୁଁ ସ୍ତ୍ରୀ ବୋଲି ସ୍ୱୀକାର କରିଛି ବୋଲି ସିନା ! ଛାଡ଼ପତ୍ର ଦେଇ ଦେଲେ ?

ଘରଣୀ—ଛା-ଡ଼-ପ-ତ୍ର ! ଓହୋ ! ଖାଲି ଛାଡ଼ପତ୍ର ଦେଲିବାଲା । ମୁଁ କ'ଣ ରଖୁଣୀ ଛତିଲି ହୋଇଚି ଯେ ଡରିଯିବି । ଜାଣିଛଟି, କଚେରିରେ ଛାଡ଼ାହୋଇ କାନ ମୋଡ଼ି ଖୋରାକ ପୋଷାକ ଆଦାୟ କରିନେବି । ଅଧେ ଭାଗ ମୋର କି ?

ଗୃହସ୍ଥ—ହମାକ୍ ଦେଖ । ଭାଗ ଖୋଜିଲାଣି । ମାଇକିନାଟାର ଏତେ ବଢ଼ପ । ଆଚ୍ଛା, ଏଇ ନିକାଲି କରିଦେଲି—ଯା ବାହାରି ମୋ ଘରୁ । (ଟାଣି ବାହାର କରିବା)

ଘରଣୀ—ମୋ ଶାଶୁ ଶ୍ୱଶୁରଙ୍କ ଘରୁ ଏଉଟା ମୋତେ ବାହାର କରି ଦବ ! ତୁ ଯା ମୋ ଘରୁ ବାହାରି । (ଭିଡ଼ିବାକୁ ଲାଗିଲା)

(ଏହି ସମୟରେ ନାଗରଚୀ ନାଗରା ବଜାଇ ପ୍ରବେଶ କଲା)

ନାଗରଚୀ—ଭାଇ ହୋ ! ସବୁ କୋଇ ଶୁଣ—ବଡ଼ ଦେଉଳକୁ ମହାପ୍ରଭୁମାନେ ଗୋପ୍ୟ ହୋଇଥିଲେ । ଆଜି ଆପେ ମନେ ପୁଣି ପ୍ରକଟ ହୋଇଛନ୍ତି । କାଲି ରାତିରେ ମହାରାଜାଙ୍କୁ ସ୍ୱପ୍ନାକୃତ ହୋଇଛି କି, ଆଜିଠାରୁ ଛୁଆଁ ଅଛୁଆଁ ଜାତି ବିଚାର ଉଠିଗଲା । ସ୍ତ୍ରୀମାନଙ୍କର ଅଧିକାର ପୁରୁଷଙ୍କ ସହିତ ସମାନ ହେଲା । କେହି କାହାଠାରୁ ବଡ଼ ନୁହେଁ କି କେହି କାହାଠାରୁ ସାନ ନୁହେଁ । ଏ ହୁକୁମ ସମସ୍ତେ ମାନିବେ । ଯେ ଅମାନିଆ ହେବ, ତାର ମୁଣ୍ଡ କାଟ ।

ଆଉ ଶୁଣ, ଆଜି ବଡ଼ ଦେଉଳରେ ସ୍ୱୟଂ ଶ୍ରୀପ୍ରଭୁ ଦର୍ଶନକୁ ବିଜେ କରିବେ । ସ୍ତ୍ରୀ, ପୁରୁଷ, ଛୁଆଁ, ଅଛୁଆଁ ସମସ୍ତେ ସେଠି ଉପସ୍ଥିତ ରହିବେ ।

(ନାଗରା ବଜାଇଲା)

ଘରଣୀ—ହେଇ ଶୁଣିଲଟି ! ମହାରାଜାଙ୍କ ହୁକୁମ । ମହାପ୍ରଭୁଙ୍କ ଆଦେଶ । ଏବେ ହେଲା ?

ଗୃହସ୍ଥ—ଆମ କଳି ତ ମେଣ୍ଟିଗଲା । ଆଉ କ'ଣ ? ତୁ ବି ସ୍ୱାଧୀନ ମୁଁ ବି ସ୍ୱାଧୀନ । ଚାଲ ଯିବା ଦେଉଳକୁ ।

ଘରଣୀ—ହଉ ଚାଲ । ମୁଁ ଗାଧୋଇ ପଡ଼ି ଆସେ । (ପ୍ରସ୍ଥାନ)

ଗୃହସ୍ଥ—ମାଇପଙ୍କର କି ଓଟାପଟ । ଯୁଗ ବଦଳିଛି । (ପ୍ରସ୍ଥାନ)

(ଭିକାରୀଟିଏ ଗୀତ ଗାଇ ଗାଇ ଚାଲିଗଲା)

—ଗୀତ—

ଆଖି ଦେଖିଲା ରେ, ନ ଥିଲା କେବେ ଯା ଦେଖା,
ଅଛିବ ଅଛିବ ଯା'ଙ୍କୁ କହୁଥିଲ
ଉଠିଲେ ସେ ମୁଣ୍ଡ ଟେକ ।
ଏକା ହାତ ଗୋଡ଼, ଏକା ନାକ କାନ
ବହୁଛି ତ ଏକା ଲହୁ,
ଜାତିଆଠଉଁ ସେ ଉଣା କେଉଁଥିରେ
ଅଛୁଆଁ ବୋଲି ତୁ କହୁ ?

ନାତଆ, ଅନ୍ଧୁଆଁ ଏକାଠି ଜନମି
ଏକାଠେଇଁ ଛନ୍ତ ବଢ଼ି,
ଶେଷରେ ଏକାଠି ଶୋଇବେ ସଭିଏଁ
ଏକା ଶେଯ ଗଢ଼ ଗଢ଼ି ।
(ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

[ ବଡ଼ଦେଉଳର ଅଭ୍ୟନ୍ତର । ଠାକୁରମାନେ ରତ୍ନ ସିଂହାସନରେ ବିଜେ କରିଛନ୍ତି । ଆଳତି ହେଉଛି । ଶଙ୍ଖ, ଘଣ୍ଟା, ତାଳ, ମର୍ଦ୍ଦଳ ବାଜୁଛି । ଭକ୍ତମାନେ ସ୍ତବ ପାଠ କରୁଛନ୍ତି । ]

—ସ୍ତବ—

କଦାଚିତ୍ କାଳିନ୍ଦୀ-ତଟ-ବିପିନ-ସଙ୍ଗୀତକବରୋ
ମୁଦାଭୀରୀ ନାରୀ ବଦନ-କମଳାସ୍ୱାଦ-ମଧୁପୋ
ରମା ଶମ୍ଭୁବ୍ରହ୍ମାମରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥ ସ୍ୱାମୀ ନୟନ-ପଥଗାମୀ ଭବତୁ ମେ ।

ଛାଟିଆ—ଚୁପ୍‌କର, ଚୁପ୍‌କର ।
ଡଗର—ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧିବୀରବର ପ୍ରତାପ ପ୍ରବଳ ଉତ୍କଳ-ମଣ୍ଡଳ-ମଣି ଶ୍ରୀ ଶ୍ରୀ ଶ୍ରୀ ମହାରାଜାଙ୍କର ଜୟ ।
ସକଳେ—ଜୟ, ଜୟ, ଜୟ ।
ମହାରାଜ—ପ୍ରଜାବୃନ୍ଦ,
ପାତ୍ରମନ୍ତ୍ରୀ ଗଣ,
ସେବକ, ମହନ୍ତ, ଆଉ ଦେଉଳ କରଣ,
କର ସର୍ବେ ଅବଧାନ,
କାଲି ରାତ୍ରେ ପ୍ରଭୁଙ୍କର ହେଲା ସ୍ୱପ୍ନାଦେଶ,
ନ ରହିବ ଉଚ୍ଚ ନୀଚ ଜାତିଭେଦ ଲେଶ,
ଆଜଠାରୁ ଶ୍ରୀମନ୍ଦିରେ ମୋର ।
ବ୍ରାହ୍ମଣ ଚଣ୍ଡାଳ ଆଦି ଛତିଶ ପାଟକେ—
ଯେତେ ନରନାରୀ,
ମନ୍ଦିର ପ୍ରବେଶେ ହେବେ ସମ ଅଧିକାରୀ ।
ସାମ୍ୟବାଦ ମହାଧର୍ମ୍ମ ମହିମା ପ୍ରଚୁର
ପତିତ-ପାବନ ବାନା ଉଡ଼ିବ ଗୌରବେ ।
ସକଳେ—ଜୟ ଗଜପତି ମହାରାଜାଙ୍କର ଜୟ,
ଜୟ ମା ଲକ୍ଷ୍ମୀଠାକୁରାଣୀଙ୍କର ଜୟ,
ଜୟ ଜଗନ୍ନାଥ ସ୍ୱାମୀଙ୍କ ଜୟ ।

—ଗାୟକ ଗାୟିକାମାନଙ୍କ ଗୀତ—

ଜୟ ପତିତ ଉଦ୍ଧାରଣୀ କମଳେ,
କମଳ ନିବାସିନୀ ଅମଳ ସୁହାସିନୀ
ଦୁରିତ ବିନାଶିନୀ କମଳେ ।
ହାଟକ ବରଣୀ ସାଗର କନ୍ୟେ
ଜୟ ଜଗଜ୍ଜୀବନ- ଧରଣୀ ଧନ୍ୟେ
ଶମନ ନିବାରଣୀ ଗଗନ-ବିଳାସିନୀ
ଜୟ ଜଗଜ୍ଜନନୀ କମଳେ ।

—ଯ ବ ନି କା ପ ତ ନ—



# ଶୈଶବ ସ୍ମୃତି

ଶୈଶବର ପଛକୁ ପଛକୁ ଫେରି ଚାହିଁଲେ ଯଉଁଠୁ ଆଉ ତେଣିକି ଆଖି ପାଏ ନା, ସେ ହେଉଛି ମୋ ମାମୁଁଘର ଗାଁ । ତା ପଛକୁ ନିବିଡ଼ ନିରନ୍ଧ୍ର ଅନ୍ଧକାର ।

ଏ ପରିଣତ ବୟସରେ ଦିଶିଯାଉଛି ମୋତେ ସେହି ରଙ୍ଗିନ କୁହୁଡ଼ିଘେରା ମାମୁଁଘର ମୋର କେଉଁ କୁହୁକପୁରୀ ଭଳି ଝଟଝଟ ହୋଇ ଚକ୍ରବାଳର ଉହାଡ଼ରେ । ଏହି ସ୍ମୃତି ବକ୍ଷୁବ୍ଧ ଅନ୍ତର-ସମୁଦ୍ରକୁ ମୋର ତରଙ୍ଗାୟିତ କରି ଦେଉଛି ଏକ ତାରୁଣ୍ୟର ଶାନ୍ତ, ମଧୁର, କୋମଳ ପରଶରେ । ବୁକୁ ଭିତରୁ ଗଜୁରି ଉଠୁଛି ଶତ ଶତ ସଜ ସବୁଜ କଅଁଳ କିଶଳୟ, ସମଗ୍ର ଚିତ୍ତବୃତ୍ତିକୁ ମୋର ସ୍ନିଗ୍ଧ କରି, ମୁଗ୍ଧ କରି, ତନ୍ମୟ କରି ।

ଦିନ ଯାଏ—ଦିନ ଆସେ । କିନ୍ତୁ ଯାହା ଯାଏ ତାହା ଆଉ ଫେରି ଆସେ ନାହିଁ । ରହିଯାଏ ଏକା ସ୍ମୃତିଟିକି । ସେତିକି ଥାଏ ବୋଲି ମଣିଷ ତାକୁ ହିଁ ସଙ୍ଗାଳି କରି ସହିପାରେ ଦୁର୍ଦ୍ଦିନର ଦାବଦାହ ।

ପ୍ରକୃତ ସହିତରେ ମୋର ପ୍ରଥମ ପରିଚୟ ସେହି ବୈତରଣୀ ତୀରରେ । ମୋତେ ସଙ୍ଖୋଳିବା ପାଇଁ ମାତା ବୈତରଣୀ ତା'ର ସମସ୍ତ ଶୋଭାସମ୍ଭାର ମେଲିଇ ଦେଇଥିଲି ସତେ କି ! ଶିଶୁ ଚିହ୍ନିଲି ଚିହ୍ନେ ତାର ମା'କୁ । ମୁଁ କିନ୍ତୁ ଚିହ୍ନିଲି ଚିହ୍ନିଥିଲି ମାତାରୂପିଣୀ ବୈତରଣୀକୁ,—ତାହାରି ମଧୁମୟ କୋଳରେ ହୋଇଥିଲି ମୋର ପ୍ରଥମ ନୟନ ଉନ୍ମୀଳନ—ଝଲସି ଉଠିଥିଲି ପ୍ରଥମେ ମୋର ନେତ୍ରପଥରେ ବୈତରଣୀର ବର୍ଣ୍ଣୋଦ୍ଭବମୟୀ ସ୍ୱଚ୍ଛ ସୁଷମା ଶିରାପ୍ରଶିରା ଭେଦ କରି ଅଣୁ ପରମାଣୁ ରୂପେ ।

ସଂସାରଚକ୍ରର ଦୁରନ୍ତ ଆବର୍ତ୍ତନ ମଧ୍ୟ ଦେଇ ଏହି ସୁଦୀର୍ଘ ଜୀବନପ୍ରବାହ ସେ ସ୍ମୃତିକୁ ବିକଳ ବା ମଳିନ କରି ପାରି ନାହିଁ—ବରଂ ଯେତେବେଳେ ବ୍ୟଥାତୁର ତ୍ରସ୍ତ ଚିତ୍ତ ଆର୍ତ୍ତନାଦ କରି ଉଠିଛି, ଶୈଶବର ସେହି ମଧୁମୟ ସ୍ମୃତିଟି ମୋତେ ଦେଇଛି ଟିକିଏ ଶାନ୍ତ ; ଜନନୀ ବୈତରଣୀ ତା'ର ସ୍ନେହାଶିଷବୋଳା କରୁଣଦୃଷ୍ଟି କଲ୍ୟାଣରେ ଅମୃତଧାରା ବର୍ଷଣ କରି ମୋର ଅନ୍ତରାତ୍ମା ଶୀତଳାଇ ଦେଇଛି—ଅଙ୍ଗରେ ତା'ର ମଙ୍ଗଳମୟ କର ବୁଲାଇ ଆଣି ଦେଇଛି ଅପୂର୍ବ ଆରାମ ଓ ପ୍ରଶାନ୍ତ ।

ଯାହାର ବର୍ତ୍ତମାନ ଅସ୍ପଷ୍ଟ ଓ ଭବିଷ୍ୟତ ଅନ୍ଧକାରମୟ, ତା'ର ଏହି ମଧୁଗନ୍ଧଭରା ମନୋରମ ଅତୀତହିଁ ଆଶ୍ରୟସ୍ଥଳ । ହେଲେ ଏହି ଆନନ୍ଦମୟ ଅତୀତର ଅନ୍ତରାଳରେ ଯେଉଁ ବେଦନା ନିହିତ ରହିଛି, ତାହାର ଅନୁଭୂତିଟି ବଡ଼ ମଧୁର ! ସେତିକି ସତେ ତା'ର ସୁଆଦିଆ ରସ । ଏହି ବେଦନାଟିକି ମୋର କେତେ ପ୍ରିୟ !

'ମୁଁ କିଏ—କିପରି କାହୁଁ ଆସିଲି—' ଏହି ପ୍ରଶ୍ନ ବୋଧହୁଏ ପ୍ରତି ଶିଶୁର ପ୍ରଥମ ପ୍ରଶ୍ନ । ଏହି ଶିଶୁସୁଲଭ କୌତୂହଳର ନିବୃତ୍ତି କରିବା ନିମନ୍ତେ ମାତା ନାନା ପ୍ରକାର କାଳ୍ପନିକ ଗଳ୍ପର ଅବତାରଣା କରି ଭୁଲାଇ ଦିଅନ୍ତି । ମାମା ମୋ ପାଇଁ ମଧ୍ୟ ଗୋଟିଏ କାହାଣୀ ରଚନା କରିଥିଲେ । ଦିନେ ବୈତରଣୀ ନଦୀରେ ସେ ଗାଧୋଇବାବେଳେ ଆଟିକାଟିଏ ଭାସି ଭାସି ଆସି ତାଙ୍କ ଦେହରେ ଲାଗିଲା । ସେ ତାକୁ ଧରି ଦେଖିଲେ ତା ଭିତରେ ପିଲାଟିଏ । ସେହି ପିଲା କୁଆଡ଼େ—ମୁଁ !

ଏହି କାହାଣୀ ମୋ ମନରେ ଏପରି ଲାଖି ଯାଇଥିଲା ଯେ, ମୁଁ ସତକୁସତ ବୈତରଣୀ ମୋର ଜନ୍ମଦାତ୍ରୀ ମାତା ବୋଲି ବିଶ୍ୱାସ କରି ପକାଇଥିଲି । ଏ ଧାରଣା ମୋର ଅନେକ ଦିନଯାଏ ଅକ୍ଷୁଣ୍ଣ ରହିଥିଲା । କିନ୍ତୁ ଏହି ଇତିହାସ ମୋ ଜୀବନ ଉପରେ କି ପ୍ରଭାବ ପକାଇଥିବ ଅଲକ୍ଷିତରେ, ତାହା କିଏ କହିପାରିବ ? ଶୈଶବର ଗୋଟିଏ ଗୋଟିଏ କ୍ଷୁଦ୍ର ଧାରଣା ମାନବ ପ୍ରକୃତି ଗଠିତ ଓ ତାହା ସମଗ୍ର ଜୀବନର ଗତିପଥ ନିୟମିତ କରିଦିଏ ବୋଲି ପଣ୍ଡିତମାନେ କହନ୍ତି ।

ସେ ଯାହା ହେଉ, ଅଧିବା ମାମାଙ୍କ କୋଳରେ ଥାଇ ମୋର ପ୍ରଥମ ଜ୍ଞାନର ଉନ୍ମେଷ । ମାମା ବଡ଼ଭୋରରୁ ଉଠି ନଈକୁ ଯାଆନ୍ତି । ମୁଁ ଯାଏଁ ପଛେ ପଛେ । ସେତେବେଳେ ପୂର୍ବ ଦିଗରୁ ସୂର୍ଯ୍ୟ ଉଇଁ ଉଇଁ ଆସୁ ଥାଆନ୍ତି । ନାଲି ନାଲି ମଧୁର ଖରା ତୀରସ୍ଥ ତାଳ ଗଛର ମଥାନ ଉପରେ ଅବିର ବୋଳି ଦିଏ । ବୈତରଣୀର ମୃଦୁ ମୃଦୁ ହିଲ୍ଲୋଳରେ ସହସ୍ର ଇନ୍ଦ୍ରଧନୁ ଝକଝକ ଉଠେ । କାକରବୋଳା ନଈବାଲି ଚହଟି ଉଠେ ହୀରା ମାଣିକ୍ୟର ଦ୍ୟୁତି ଧାରଣ କରି । ତୋଟା ଆମ୍ବ ଗଛରେ କୋଇଲି ଡାକ ମାରେ

କୁଉ—କୁଉ । ମହାଦେବ ବଉଳଡାଳରୁ ତା'ର ସାଥି ଦିଏ ତା'ର ପ୍ରତ୍ୟୁତ୍ତର କୁ—! ମୁଁ ଅସମ୍ଭାଳ ହୋଇ କୁ ରବରେ ଧାଇଁ ବୁଲେଁ କୋଇଲି ସହିତ ପ୍ରତିଯୋଗିତା କରି । ସଂସାରର କଠୋର ପରୀକ୍ଷା ଭିତରେ ଯେତେବେଳେ ପ୍ରାଣ ହାହାକାର କରି ଉଠେ, ସେତେବେଳେ କେଉଁ ଗହନ ଅନ୍ତରାଳରୁ ଏବେ ବି ମୋତେ ଶୁଭିଯାଏ ସେହି ଲୁଚିପଡିଥା ମଧୁର ଧ୍ୱନି—କୁଉ ।

କଞ୍ଚାବୁଦାରୁ ଡାହୁକ ଉଠେ ଡାକି । ନଈ ସେପାରିରୁ କୁମ୍ଭାଟୁଆ ଦିଏ ତା'ର ପ୍ରତିଧ୍ୱନି । କାପଡା ଡାକେ ଲମ୍ବା ଶିମିଳିଗଛ ଉପରୁ—'ଉଠ୍‌ରେ ପୁତା' । ହଳଦୀବସନ୍ତ ନିମ ଗଛରେ ବସି ସୁଷୁରି ମାରେ ।

ନୂଆ ବୋହୂଆଣୀମାନେ ଗଗରା କାଖେଇ ଗାଧୋଇ ଆସନ୍ତି । ତାଙ୍କର ଝୁମୁଝୁମୁ ଝୁଣ୍ଟିଆ ନାଦ ଶୁଭୁଥାଏ ନଈବାଲିରେ ଥମକି ଥମକି ।

ଆରପାରି ପାଲି ମଟିରୁ ହଳିଆ ଗୁଡ଼ିଦିଏ ତା'ର ହଳି ଗୀତ । ସେ ଗୀତ ମୁଁ ବୁଝିପାରେ ନା, କିନ୍ତୁ ସେ ସ୍ୱରଟା ସତେ କି ମୋର ମନେ ହୁଏ ମୋ କାନ ଭିତରେ ପଶି ମରମରେ ବାଜି-ଉଠୁଛି ।

ଧାଡ଼ି ଧାଡ଼ି ହୋଇ ମାଛରଙ୍କା ପାଣି ପାଖରେ ବସି ଯାଆନ୍ତି, ଏକ ଧ୍ୟାନରେ । ମନେ ହୁଏ ସତେ କି ଧଳା ଧଳା ପଦ୍ମଫୁଲଗୁଡ଼ିଏ ଫୁଟି ଉଠିଛି ଧାଡ଼ି ଧାଡ଼ି ହୋଇ । ଶୁଣିଥିଲି ସକାଳୁ ଶଙ୍ଖଚିଲ ମୁହଁ ଚାହିଁଲେ ମାଛ ଭାତ ଖାଇବାକୁ ମିଳେ । ସେଥିପାଇଁ ଚଢ଼େଇଆଡ଼କୁ ଚାହୁଁଥାଏ । ମାତ୍ର ଶଙ୍ଖଚିଲ ଅହଲ୍ୟା କଲି ପରି ନିତି ଆସେ ନା । ଯେଉଁଦିନ ଆସିଯାଏ, ମୁଁ ତାକୁ ଚୁ ଚୁ କରି ସମ୍ଭାଷଣ ଜଣାଏ ।

ଭଦଭଦଳିଆ ( ଭରଦ୍ୱାଜ ) ପକ୍ଷୀର ମୁହଁ ଚାହିଁଲେ ଧନ ହୁଏ ବୋଲି ମାମୁଁ କହନ୍ତି । ଧନ ଅର୍ଜନ କଥା ବୁଝୁ ନ ଥିଲି, ଭଦଭଦଳିଆର ଝାଡ଼ି ଦେଇଥିବା ପରଟିଏ ସାଉଣ୍ଟି ପାଇଲେ କୋଟିନିଧି ପାଇଗଲି ପରି ମନେ ହୁଏ । ଭରଦ୍ୱାଜର ପର ସତେ କେଡ଼େ ସୁନ୍ଦର !

ନଈକୂଳରେ ଥିବା କାଶ କୁସୁମର ହଳଦିଆ ଫୁଲ ଉପରେ ନାନା ରଙ୍ଗର ପ୍ରଜାପତି ଉଡ଼ି ଉଡ଼ି ବୁଲୁ ଥାଆନ୍ତି । ପ୍ରଜାପତି ଧରିବା ଆଶାରେ ଧାଇଁ ଧାଇଁ ଥକି ପଡ଼େ । ମାମା ଫେରନ୍ତି ଘରକୁ । ତାଙ୍କ ପଛେ ପଛେ ଘରକୁ ଯାଏଁ ।

ଦିନ ପରେ ଦିନ ସକାଳୁ ପୁଣି ମାମାଙ୍କ ସଙ୍ଗରେ ଗାଧୋଇ ଆସେଁ । ନଈକୂଳରେ ଗାଆଁ ମାଇପେ ଓ ପିଲା ରୁଣ୍ଡ ହୋଇ ଥାଆନ୍ତି । ମାଇପଙ୍କ ଭିତରେ କେତେ କଥା, କେତେ କଳି, କେତେ ହାସ । ସେସବୁ ମୁଁ ବୁଝେ ନା । ସାଙ୍ଗ ପିଲାଏ ମିଶି ସମସ୍ତେ ତିଆରି କରୁ ବାଲିର ଦେଉଳ । ଚୂଳ ଉପରେ ଶିମୁଳି ଫୁଲ ବସାଇ ଉଡ଼ାଇ ଦେଉଁ ରଙ୍ଗ ପତାକା । ଓଦା ବାଲିରେ ପାଦ ପୂରାଇ ଶିଆଳଗାତ ନିର୍ମାଣ କରୁଁ । ଆପେ ଆପେ ଭାଙ୍ଗି ଦେଇ ପୁଣି ରଚନା କରୁଁ । ଭଙ୍ଗା ଗଢ଼ାର ଅନ୍ତ ନାହିଁ ।

ମାମା ଗାଧୋଇ ସାରିଲେ ପୁଣି ତାଙ୍କ ସାଙ୍ଗରେ ଘରକୁ ଆସେଁ । ଏତେ ଯତ୍ନର ବାଲିଘର ରହିଯାଏ ବାଲିରେ । ସଂସାରରେ ଆମେ ଯେଉଁ ସବୁ ସତସତିକା ଘର ନିର୍ମାଣ କରୁଛୁଁ ସବୁ ତ ଏହି ବାଲିଘର ।

ମାମା ବସନ୍ତି କୋଥଳି ମେଲାଇ । ମୁଁ ବସେଁ ଆଗରେ । ପାଦୁକ ପାଣି ଉର୍କୀରେ ପିଇବାକୁ ଭାରି ମିଠା ଲାଗେ । ଠାକୁର ପୂଜା କରି ମାମା ଜୁହାର ହୁଅନ୍ତି । ମୁଁ ଜୁହାର ହୁଏଁ । ଠାକୁରଙ୍କଠେଇଁ ମାଗୁଣି କିଛି ନ ଥାଏ—ଖାଲି ଜାଣିଥାଏଁ ସେ ଠାକୁର । ସେ ସବୁ କରନ୍ତି । ସେ ସରଳ ବିଶ୍ୱାସକୁ ଏବେ ବାଧ ଖାଇଲାଣି । ଠାକୁର ନିର୍ଜୀବ ପଥର ପାଲଟି ଗଲେଣି । କୁଟ ତର୍କ, ସନ୍ଦେହ, ବିତ୍ତର ଆସି ଆସି ସେହି ନିର୍ମଳ ଚିତ୍ତକୁ କଳୁଷିତ କରି ପକାଇଲାଣି । ଆଉ କି ତାହା ଫେରିବ ? ହାତ ପାଆନ୍ତାରେ ଯାହା ଥିଲା, ସେ ସ୍ୱର୍ଗ କେତେ ଦୂରକୁ ଘୁଞ୍ଚି ଗଲାଣି !

ଗୋରଚନା ଟିପା ମୁଣ୍ଡରେ ମାରି ତିଳକ ଟଚା ଦେଇ ମାମାଙ୍କ ସାଙ୍ଗରେ ଭାତ ଖାଏଁ । ଖାଇ ସାରିଲେ ମାମା ଶୁଆଇ ପକାନ୍ତି ଓ ନିଜେ ଶୁଅନ୍ତି । ମୋତେ ନିଦ ଆସେ ନାହିଁ । ମାମାଙ୍କ ଆଖି ଲାଗିଗଲେ ମୁଁ ଧୀରେ ଧୀରେ ଉଠି ଦେହେର ମନ ମଳାଇଯାଏ ତୋଟା ଆଡ଼େ । ସେଠି ସାଙ୍ଗ ପିଲାଏ ଆଗରୁ ଆସି ରୁଣ୍ଡ ହୋଇ ଥାଆନ୍ତି । ରଜା ମନ୍ତ୍ରୀ ଖେଳ, ଲୁଚକାଳି ପ୍ରଭୃତି କେତେ ପ୍ରକାର ଖେଳ ଲାଗେ, ସବୁ କଥା ମନରେ ନାହିଁ । କେଉଁ ଦିନ ବାସଙ୍ଗ ଫୁଲରୁ ମହୁ ଖାଉଁ, କେଉଁ ଦିନ ସପ୍ତପର୍ଣ୍ଣୀ ଫୁଲରେ ଠାକୁର କରୁଁ ; କାହା ବାଡ଼ରେ କଞ୍ଚା ଆମ୍ବ, କଇଆଁ, ବରକୋଳି, ପିଜୁଳି ପ୍ରଭୃତି ବଡ଼ ପିଲାଏ ପାରି ଦେଲେ ଆମେ ସାନ ପିଲେ ତଳେ ଥାଇ ସାଉଣ୍ଟି ଖାଉଁ । କାହା ଅଗଣାରେ ଆମ୍ବୁଲ, ତେନ୍ତୁଳି ଶୁଖୁଥିଲେ ସେଥିରୁ ଫୁଲାଏ ଫୁଲାଏ ଖାଇବା ପାଇଁ ସାଇ ବୁଲା ହୁଏ । ଦହି ଦହିଆ ଟମରେ ଛେନା କରି ଖାଇବାକୁ ବଡ଼ ସୁଆଦ ଲାଗେ ।

# ଶୈଶବ ସ୍ମୃତି

ପ୍ରାୟ ଏହିପରି ଖରାବେଳଟା କଟାଇ ବେଳ ବୁଡ଼ିଗଲେ ସମସ୍ତେ ଯାଉଁ ନଈକୂଳକୁ । ଦକ୍ଷିଣା ପବନ ବହୁଥାଏ । ନଈ ଜଳରେ ବାଜି ସେ ପବନ କେଡ଼େ ଶୀତଳ ! ବଡ଼ ବଡ଼ମାନେ ବଉଳତଳ ପିଣ୍ଡିରେ ବସି ପଶା, ତାସ ଖେଳୁଥାଆନ୍ତି ।

ଦିନଯାକ ଖରାରେ ବୁଲି ବୁଲି ସୂର୍ଯ୍ୟଙ୍କ ମୁହଁ ଲାଲ ପଡ଼ିଯାଏ । ତାଙ୍କ ମାଆ ସୁନେଲି ପଣତ ମେଲାଇ ଦେଇ ପୁଅକୁ ତାଙ୍କର ଟାଣି ଟାଣି ନେଇ ଯାଆନ୍ତି କାନରେ ଗଣ୍ଠି ପକାଇ ।

ବିସ୍ତୀର୍ଣ୍ଣ ବାଲୁକାଶଯ୍ୟାରେ ଡାଆଣିଆ ଖରା ବନ୍ଦ ହୋଇ-ଯାଏ । ବୈତରଣୀର ସ୍ୱଚ୍ଛ ବକ୍ଷରେ ନାଲି ରଙ୍ଗ ଝଲକ ଉଠେ । ଗୁହୁଁ ଗୁହୁଁ ନଡ଼ିଆ ଗଛ, ବାଉଁଶ ବୁଦା ମୂଳରେ କଏ ରଙ୍ଗ ମୁକୁଟ ପିନ୍ଧାଇଦିଏ । ଧୀରେ ଧୀରେ ଦକ୍ଷିଣା ପବନରେ ଦୋହଲୁଥାଏ ଖରଭୁଇଁର ତାଳଗଛଗୁଡ଼ାକ ଝଣ ଝଣ ଶବ୍ଦ କରି । କୁଳବଧୂଗଣ ହଲି ହଲି କଳସୀ କାଖେଇ ବାହାରି ଆସନ୍ତି ଓଢ଼ଣା ପକାଇ । ଦର-ମୁକୁଳା ମୁହଁରେ କାହାର ଡାହାଣିଆ ଖରା ପଡ଼ିଗଲେ ଝଟକି ଉଠେ ତାର ଗୋରା ତୋରା ମୁହଁଟା, ଚହଁକି ପଡ଼ି ସେ ଓଢ଼ଣା ଟାଣି ଦେଇ ମୁହଁ ବୁଲାଇ ନିଏ । ପାହୁଡ଼ର ଝୁମୁ ଝୁମ ନାଦ ତାଳଖାଡ଼ର ଝଣ ଝଣ ଧ୍ୱନି ସହିତ ମିଶି ରଚନା କରେ ଏକ ଅପୂର୍ବ ସଙ୍ଗୀତର ସମତାନ ।

ଗୁହୁଁ ଗୁହୁଁ ସୂର୍ଯ୍ୟ ବୁଡ଼ି ଯାଆନ୍ତି ତାଙ୍କ ମାଆର ନୀଳ ପଣତ ତଳେ ଦିନମାନର ଥକା ମେଣ୍ଟାଇବା ପାଇଁ । ଆର ପାଖ ବାଉଁଶ-ବଣ ଉହାଡ଼ରୁ ମାଡ଼ି ମାଡ଼ି ଆସେ କାଳୀ ଅନ୍ଧାର । ଆମେ ସବୁ ନଈବାଲିରୁ ସାଉଣ୍ଟିଥିବା ଶାମୁକାଗୁଡ଼ିକ କାନିରେ ବାନ୍ଧି ଘରକୁ ଫେରୁ । ମନେ ମନେ ହୋଇଯାଉଁ ବଡ଼ ଲୋକ । କିନ୍ତୁ ତହୁଁ ଆଉ ଦିନ ସେ ଧନର ପତ୍ତା ନ ଥାଏ । ଏବେ କେତେ ଲୁହ ଲହୁ ବୁହାଇ ହାଲିକାଲି ହୋଇ ଯେଉଁ ଧନ ଅର୍ଜନ କରୁଛୁ ଆମେ—ଏହି ଶାମୁକାଠାରୁ କେତେ ତଫାତ୍ ?

ନଈ ସେପାରିରେ ସନ୍ଧ୍ୟା ଆଳତିର ଘଣ୍ଟା ଘଣ୍ଟ ଶୁଭେ । ଗାଆଁ ଭିତରେ ଉଚ୍ଛୁଳିପଡ଼େ ସଞ୍ଜଦୀପର ଘନ ଘନ ଶଙ୍ଖଧ୍ୱନି । ନଈକୂଳରେ ଛିଡ଼ା ହୋଇଥିବା ଲମ୍ବ ଲମ୍ବ ତାଳଗଛର ଛାଇ-ଗୁଡ଼ାକ ପାଣି ଭିତରେ ଅଜଗର ସାପ ଭଳି ବାଙ୍କି ବାଙ୍କି ହଲୁଥାଏ । ସେ ଆଡ଼କୁ ନଜର ପଡ଼ିଗଲାକ୍ଷଣି ଛାତି ଭିତର ଉଠେ ଥରି ଥରି । ବଣିଖିବାଗ ତୋଟାର କିଆବଣରେ ବିଲୁଆ ନନା ରଡ଼ିଛାଡ଼େ ସେତିକି ବେଳେ 'ହୁକେ ହୋ' । ତାକୁ ଖତେଇ ହୋଇ ଆମେ ଡାକ ମାରୁ—

"ହୁକେ ହୁକେ ଜପ୍ପି ନାହାକେ
ନିଆଁ ରଡ଼ ଖଣ୍ଡି କାଖରେ ଜାକେ"

ଘରକୁ ଲେଉଟି କେତେ ଜଣ ସାଙ୍ଗପିଲା ମିଳି ଆପଣା ଭିତରେ ଖେଳୁଁ—'ଅକଲ ମକଲ ଟକଲ ହିଆ'......କିମ୍ବା ବୁଢ଼ୀଆଣୀ ଖେଳ । କେତେବେଳେ ବା ତୁଳସୀ ଚଉରା ଚାରିପଟେ ବୁଲି ବୁଲି ଚକା ଭଉଁରୀ ଖେଳୁଁ—

ଚକା ଚକା ଭଉଁରୀ
ମାମୁଁ ଘର ଚଉଁରୀ......

ଜହ୍ନ ପଡ଼ିଥିଲେ ସମସ୍ତେ ସାଙ୍ଗ ହୋଇ ଯାଉଁ ସାଇ ବୁଲି । କେଉଁଠି କେଉଁଠି ବଡ଼ ବଡ଼ ଝିଅମାନେ ନୂଆ ବୋହୂଙ୍କଠୁଁ ବାହାଘର କାନ୍ଦଣା ଶିଖୁ ଥାଆନ୍ତି । କେଉଁଠି କୁଆଁରପୁନେଇ ବା ଦୋଳି ଗୀତ ଶିଖନ୍ତି । କଉଁଠି ବା ସାନ ସାନ ଝିଏ ବୁଢ଼ୀ ମାଉସୀ ଖେଳରେ ମାତି ଥାଆନ୍ତି । ସେ ଗୀତରୁ ପଦେ ଏବେ ସୁଦ୍ଧା ମନେ ଅଛି—

ଇଷ୍ଟିଡ଼ି ମିଷ୍ଟିଡ଼ି ଧାଙ୍କି ଚଡ଼ି ଚଡ଼ି
କଇତ୍ଥ କାକୁଡ଼ି ପିଠା ନଳିତା...

ସବୁରି ଅଗଣାରେ ପିଠଉ ପରି ଜହ୍ନ ପଡ଼ିଥାଏ । କୋଳ ପିଲାଙ୍କୁ ଧରି କାହାର ଅପା ଜହ୍ନମାମୁଁଙ୍କୁ ଡାକି ଟୀକା ଦେଇ କହୁଥାଏ—

ଆ ଜହ୍ନମାମୁଁ—ଆ ଆ
ମୋ ଧନମଣି ମୁଣ୍ଡରେ ଟୀକା ଦେଇ ଯା—

ମୋତେ ଭାରି ଆଶ୍ଚର୍ଯ୍ୟ ଲାଗେ କି ଯାହା ଅଗଣାକୁ ଗଲେ ସେଠି ଗୋଟାଏ ଜହ୍ନ । ବୁଝି ପାରେଁ ନାହିଁ, ଏହା କପରି ସମ୍ଭବ ହେଲା । ଆମ ଜହ୍ନମାମୁଁ ଏଠିକି ଆସିଲା କପରି ? ନା—ସମସ୍ତଙ୍କ ଘରେ ଗୋଟାଏ ଗୋଟାଏ ଅଲଗା ଜହ୍ନମାମୁଁ ଅଛନ୍ତି !

ପୂର୍ଣ୍ଣିମା ରାତିରେ କେବେ କେବେ ମାମା ଓ ଆଉ ମାଇପେ ନଈବାଲିରେ ଯାଇ ବସନ୍ତି । ମୁଁ ଯାଏଁ । ଜହ୍ନ ଆଲୁଅରେ ଚଉଦିଗ ଚହଟି ଉଠୁଥାଏ । ସତେ ଯେପରି ଗୋଟାଏ ଗଜରା ଦୁଧର ଉନ୍ମତ୍ତ ତରଙ୍ଗ ମାତି ଉଠିଛି ବିଶ୍ୱଦିଗନ୍ତ ପ୍ଲାବିତ କରି । କେଉଁ ଅପାର ଆବେଗକୁ ସମ୍ଭାଳି ନ ପାରି ନଈବାଲିଟା ଉଲ୍ଲାସରେ ଫାଟି ପଡ଼ି ଉଠୁଛି ଯେପରି ! ଆକାଶରେ ରୂପା ଥାଳିପରି ପରି ଗୋଟିଏ ଜହ୍ନ । ପାଣି ଭିତରେ ଉକୁଟି ଉଠୁଛି ମାଳକୁ ମାଳ ଜହ୍ନର

ଥିଲି । ଧୀର ପବନରେ ଚହଲା ଉଠୁଥିବା ଟିକି ଲହରୀରେ ଜହ୍ନର ଫାଟ ବସି ଯାଇଛି ସତେ କି !

ମେଲା ଛାତ ଉପରେ ସପ ବିଛାଇ ମାମା କାନ୍ଧେ ଝୁଲି ଧରି ବସନ୍ତି । ମୁଁ ତାଙ୍କର ପାଖରେ ଶୁଏ । କେତେ ରାଜାପୁଅ ରାଜାଝିଅ କାହାଣୀ କହନ୍ତି ସେ । ମଖାମଖୀ କଥା । ଟୁଆଁ ଟୁଇଁ କଥା । ସେଇ ଏକା କଥା ପ୍ରତିଦିନ ଶୁଣି ମଧ ତିକ୍ତ ଲାଗେ ନାହିଁ । ମନେ ହେଉଥାଏ ମୁଁ ନିଜେ ଟୁଆଁ । ମୋହର କଥା ମାମା କହୁଛନ୍ତି । କଥା ଶୁଣୁ ଶୁଣୁ ନିଦ ଘାରି ଆସେ । କହେ—ନିଦ ମାଡ଼ିଲାଣି—ବାଇ ଚଢ଼େଇ ଗୀତ ଗାଅ । ମାମା ମୋ ପିଠିରେ ହାତ ମାରି କହନ୍ତି—

ବାଇ ଚଢ଼େଇରେ ବାଇ ଚଢ଼େଇ
ବାଇପୁଅ ଯାଉଛି ଗାଈ ଚରେଇ—

ମୁଁ ଶୋଇ ପଡ଼େ ।

ରାତିରେ ସ୍ୱପ୍ନ ଦେଖେଁ—ପକ୍ଷୀରାଜ ଘୋଡ଼ା ଉପରେ ଚଢ଼ି ଶୂନ୍ୟରେ ଧାଉଁଛି ମୁଁ କୁଆଡ଼କୁ କେଜାଣି ଲକ୍ଷ୍ୟହୀନ ହୋଇ । କେବେ କେବେ ଖାଲୁର ବାଳୁଆ ଗୋଡ଼ ଦେହରେ ଲାଗିଯିବାରୁ ଚମକି ଉଠେ । କେବେ ବାଘମାମୁଁ କାଞ୍ଜି ପାଣି ହାଣ୍ଡିଟା କରୁଡ଼ି ଭୁଇଁରେ ପଡ଼ି ଓଦା ସରସର ହୋଇ ଡରରେ ମାମାଙ୍କୁ କୁଣ୍ଢାଇ ପକାଏ । ମାମା ଆଉଁସି ଦେଇ କହନ୍ତି—ଇହିଁ—ମୁଣ୍ଡକୁ !

ରାତି ପାହେ । ହାଣ୍ଡିଶାଳ ପିଡ଼ା ଉପରେ ବସି କାଉ ରାବେ । ପୁଣି ସୂର୍ଯ୍ୟ ଉଠେ, ଫୁଲ ଫୁଟେ, କୋଇଲି ଡାକେ । ବୈତରଣୀ ପୁଣି ତାର ରଙ୍ଗ ପଣତ ପ୍ରସାରି ଆମନ୍ତ୍ରଣ କରି ନିଏ ତାର ଆନନ୍ଦ-ଉଲ୍ଲାସ-ଭରା କୋମଳ କୋଳକୁ ।

ମନେ ପଡ଼ି ଯାଉଛି, ମାମୁଁଙ୍କର ଚଉପାଢ଼ିରେ ବୁଢ଼ା ଅବଧାନ କଥା । ଧାଡ଼ିକ ଧାଡ଼ି ପିଲା ବସି ଭୁଇଁ ଉପରେ ଖଡ଼ିପାଠ ଲେଖନ୍ତି, ପଣିକିଆ ଡାକନ୍ତି । ଅବଧାନେ ମଝିରେ ବସି ଥାଆନ୍ତି ପିଢ଼ା ଉପରେ ବେତ ଖଣ୍ଡିଏ ଧରି । ଏ ବେତର ନାଆଁ 'ଜ୍ଞାନ ଦାସ' । ଜ୍ଞାନଦାସକୁ ସମସ୍ତଙ୍କର ଯମ ପରି ଡର ।

କିଛି ଦିନ ମୁଁ ଯାଇ ବସିଥିଲି ଚାଟଶାଳୀରେ । ଖଡ଼ିରେ ଡାହିଁଥିଲି ମୂର୍ଖ୍ୟଲା । ମନେ ହେଉଛି ଭଲ ଲାଗୁଥିଲା ପିଲା ନଡ଼ିଆ ଧରି ମାରିଟ କରି ଯାଉଥିଲି । ବଡ଼ ପିଲାଏ ଗୀତ ଗାଉଥିଲେ—"କାଳାକଳେବର କହ୍ନାଇ", "ବନ୍ଦଇ ହରି, ଦେବ ମୁରାରି" ।

ସଞ୍ଜବେଳେ ପୁଣି ଅବଧାନେ ଡାକ ନଅନ୍ତି ଚଉପାଢ଼ିକୁ । ତେଲ ଦୀପଟିଏ ଜଳୁଥାଏ । ସ୍ୱାଧୀନତା ଉପରେ ଏ ଜୁଲୁମ ଭାରି ଖରାପ ଲାଗୁଥିଲା । ମାମାଙ୍କ କାନ ଧରି ଉଧୁରି ଯିବାର ଚେଷ୍ଟା କରେଁ, ମାତ୍ର ଅବଧାନଙ୍କ ପାଟି ଶୁଣିଲେ କୋଠଆଡ଼ି ପରି ବାହାରି ଆସେଁ । ଅବଧାନେ ପିଲାଙ୍କୁ କେତେ ପ୍ରକାର ଗୀତ, ଶ୍ଳୋକ, ସୁମ୍ଭରୁଡ଼ି ଶିଖାନ୍ତି ଭୁଣ୍ଡରେ । ମୋର ପଦଟିଏ ସେଥିରୁ ମନେ ପଡ଼ୁଛି—

"ନଦୀ କନାରେ ବଗଲା ବଇଠେ
ଚୁନ୍ ଚୁନ୍ ମାଛଲା ଖାଏ
ଚିଙ୍ଗି ମାଛଲା କଣ୍ଟା ମାରେ
ଚଡ଼ପ୍ ଚଡ଼ପ୍ ଜୀ ଯାଏ" ।

ଅବଧାନେ ବେଳେବେଳେ ଜ୍ଞାନଦାସକୁ ଭୂଇଁରେ କରୁଡ଼ି କହନ୍ତି—

"ପଢ଼ିଲେ ଶୁଣିଲେ ଦୁଧ ଭାତ
ନ ପଢ଼ିଲେ ଠେଙ୍ଗା ନାଥ ।"

ମାମୁଁଙ୍କର ଦୋଳଯାତ୍ରା ହୁଏ । ଧାଡ଼ ଧାଡ଼ ଠାକୁର ବିମାନ ଚଉପିଠି ବସନ୍ତି । ଝାଞ୍ଜ ମର୍ଦ୍ଦଳ ବାଜେ । ଲୋକଗୁଡ଼ାକ ନାଲିରଙ୍ଗ ବୋଳି ହୋଇ ନାଚନ୍ତି । ଅବିର ଉଡ଼ି ଘରଆଡ଼ ହୋଇଯାଏ ଲାଲ ଲାଲ । ଆମର ଭିତରେ ଲେସାଲେସି ହେଉଁ । ଏତକରେ ଆମର ମହା ଆନନ୍ଦ ।

ରଜରେ ଝିଅ ଦୋଳି ଖେଳନ୍ତି, କଉଡ଼ି ବସି ଖେଳନ୍ତି । ଡାଲ ଚଢ଼ୁଆର ଚପଲ ମାଡ଼ନ୍ତି । ମିଶିପେ ପଶା ଖେଳନ୍ତି, ଟୋକାଏ ତାସ, ବାଗୁଡ଼ି ଖେଳନ୍ତି । ଆମେ ପିଠା ଖାଇ ଗାଆଁ ବୁଲି ଖୁସି ।

ବୈତରଣୀରେ ବଢ଼ି ଆସେ । ମାମୁଁଙ୍କର ବାଡ଼ିଦୁଆରକୁ ପାଣି ଲାଗେ । ନଈରେ ନାଆ ଚାଲେ । ଯୁଆଡ଼କୁ ଚାହିଁଲେ ତାଜ ପାଣିର ସମୁଦ୍ର ।

ଏହା ପରେ କୁଆଁରପୁନେଇ ଆସେ । ଝିଏ କଇଁଫୁଲର ଘର ତୋଳନ୍ତି । ଗୀତ ଗାଆନ୍ତି । ପୁନେଇ ଦିନ ଆମେ ଚନ୍ଦନପାଟୀ ନାଇ ନୂଆଲୁଗା ପିନ୍ଧି ଚୁନ୍ଦ ଖାଉଁ ।

ଦୂର ଅତୀତର ଏହିସବୁ ମଧୁର ସ୍ମୃତି ଯେତେ ଦୂର ହୋଇ ଯାଉଛି ସେତିକି ମଧୁରତର ହୋଇ ଉଠୁଛି । ମାମୁଁଙ୍କର ବୋଲି କଥାଟା ପ୍ରତ୍ୟେକ ଲୋକର ପ୍ରିୟ; କିନ୍ତୁ ମୋର ମାମୁଁଙ୍କର ଚୁମ୍ବକ

# ଶୈଶବ ସ୍ମୃତି

ପଥର ଭଳି ମୋର ମନମନକୁ କି ଏକ ମଧୁର ଆବେଗରେ ଆକର୍ଷଣ କରି ରଖିଛି ଜୀବନ ସାରା । ସେହି ଗୋଟିଏ ସ୍ନିଗ୍ଧ ସୁଆଦିଆ ସ୍ମୃତି ଧ୍ରୁବତାରା ରୂପେ ଚିର ଭାସ୍ୱର ହୋଇ ମୋର କ୍ଷୀଣ, ଅବସନ୍ନ, ବ୍ୟଥାତୁର ପ୍ରାଣକୁ ଦେଇଛି ଆଶା, ଆଶ୍ୱାସନା, ଆନନ୍ଦ । ଏହି ସ୍ମୃତି ଫିଟାଇ ଦେଇଛି ଏକ ଅସରା ଅମୃତର ପ୍ରସ୍ରବଣ, ଯାହା ଆସ୍ୱାଦନ କରି ମୋର ଜର୍ଜରିତ ଚିତ୍ତରେ ହେଉଛି ଜୀବନସ୍ପନ୍ଦନର କ୍ଷୀଣ ଅନୁଭୂତି । ମନେ ପଡ଼େ ମୋର—ଯେଉଁଦିନ ଖଡ଼ଖଡ଼ି (ପାଲିଙ୍କି)ରେ ପୂରାଇ ଏକୁଟିଆ ଠାକୁର ଦେଖିବା ଛଳନାରେ ମୋତେ ଘେନି ଆସିଲେ । ସେହିଦିନ ମୋ ଜୀବନର ଏକ ସନ୍ଧିକ୍ଷଣ । ଅଭିଶପ୍ତ ଦେବଶିଶୁ ଭଳି ସ୍ୱର୍ଗଭ୍ରଷ୍ଟ ହୋଇ ଭୂତଳରେ ପତିତ ହେଲି ।

ସେହି ମାମୁଁଘର ରହିଛି । କିନ୍ତୁ ସେ ମାମା ନାହାନ୍ତି, ସେ ମାମୁଁ ନାହାନ୍ତି, ସେ ମାଈଁ ନାହାନ୍ତି । ତାହା ସାଙ୍ଗରେ ସୁନାର ଶିକୁଳି ଛିଣ୍ଡି ଯାଇଛି ମୋ ଅନ୍ତରର ତନ୍ତ୍ରୀ ତାରକୁ ବିକଳ ବେସୁର କରି । ଏ ଜୀବନରେ ପୁଣ୍ୟମୂର୍ତ୍ତି ଦର୍ଶନର ଆଶା ଲିଭି ଯାଇଛି ନିଃଶେଷ ହୋଇ । ମନ ରହିଛି ଖାଲି ଗୋଟାଏ ଭସ୍ମସାର ଧୂପ-ଦାନର ମୃଦୁ ଗନ୍ଧ—ଗୋଟାଏ ଦରଲିଭା ରଙ୍ଗିନ ଛବିର ଫିକାଳିଆ ପୃଷ୍ଠଭୂମି—ଗୋଟାଏ ବେଦନାର ବଂଶୀର ଅବଲୀୟମାନ ମୂର୍ଚ୍ଛନା । ବିଦାୟ ନେଉଛି ବୈତରଣୀ, ତୁ ତୋର ଚିରତରୁଣ ଲାବଣ୍ୟମୟୀ ମୂର୍ତ୍ତିରେ ସେହିପରି ବହିଯାଉଥିବୁ । ମୋହରି ଭଳି କେତେ ହତଭାଗ୍ୟ ତୋର ଶାନ୍ତିମୟ କୋଳରେ ଆଶ୍ରୟ ନେଇ ଅନ୍ତରର ଜ୍ୱାଳା ଲିଭାଇବେ । ତୋର ଯେଉଁ ଛବିଳ ରୂପଶିଖାକୁ ଚୁହିଁ ଚୁହିଁ ଦିନେ ମୁଁ ନେତ୍ର ଫିଟାଇଥିଲି—ସେହି ରଙ୍ଗମହଲ ସତେ କି ମେଲାଇ ଦେବୁ କି ବୈତରଣୀ, ଯାହାର ଶାନ୍ତ, ଶୀତଳ ଲାବଣ୍ୟକୁ ଆଖିପତାରେ ମାଖି ମାଖି ମୁଁ ଆଖି ବୁଜିବି ।



# ବାଲ୍ୟ ସ୍ମୃତି

ମୁଁ କେବେ, କେଉଁଠାରେ, କପରି ଜନ୍ମ ହେଲି, ଜାଣେ ନା। ମନୁଷ୍ୟର ବୋଧହୁଏ ଜନ୍ମର ସ୍ମୃତି ଥାଏ ନାହିଁ। ତେବେ ମୋର ବହୁବର ଧାରଣା ଥିଲା ଯେ, ମୁଁ ନଈରେ ଆଟିକାଟି ଭିତରେ ପଶି ଭାସି ଆସୁଥିଲି। ମୋତେ ବୋଉ ଗାଧୋଇ ଯାଇ ପାଇ ଆଣିଲା। ମୋର ଜନ୍ମ ପ୍ରସଙ୍ଗ ଶୁଣିବା ପାଇଁ ପିଲାଦିନେ ବଡ଼ ଝୁଙ୍କ ଥିଲା। ବୋଧହୁଏ ମୋର ଚପଳ କୌତୂହଳ ଚରିତାର୍ଥ କରିବା ପାଇଁ ଲୋକେ ଏହି ଗଳ୍ପର ଅବତାରଣା କରିଥିଲେ। କିନ୍ତୁ ସେ ଯାହା ହେଉ କଥାଟି ମୋତେ ବଡ଼ ଭଲ ଲାଗୁଥିଲା। ଏବେ ବୁଦ୍ଧି ହେଲା। ବୃଦ୍ଧି ପାଇଲା—ସେଥି ସଙ୍ଗେ ସଙ୍ଗେ ମୋର ସେ ସୁଖଟି ଅନ୍ତର୍ହିତ ହୋଇ ଗଲା। ହାୟ, କିଏ ପୁଣି ସେ ବିଶ୍ୱାସ ମୋ ହୃଦୟରେ ଜାତ କରାଇ ଦେଇ ପାରନ୍ତା! ଶୈଶବର ବିଶ୍ୱାସ, ପିଲାକାଳର ଧାରଣା ବଡ଼ ମଧୁର; କାହିଁକି କେଜାଣି ମୋର ସେହି ସମସ୍ତ ବିଶ୍ୱାସ ଫେରି ପାଇବା ଲାଗି ବଡ଼ ମନ ହୁଏ। କିନ୍ତୁ ଯାହା ଯାଇଛି ଆଉ ବା ଆସିବ କାହୁଁ!

ହଁ, ମୁଁ ଅନେକ ଥର ଚେଷ୍ଟା କରିଚି, କେତେଥର ଅତୀତର ଅନନ୍ତ ଗର୍ଭ ଭେଦ କରିବାକୁ କେତେ ଯତ୍ନ କରିଛି। କିନ୍ତୁ ଆଖି ତ ପାଏ ନାହିଁ। ଯେତେ ଯେତେ ପଛକୁ ଫେରି ଚାହିଁବାକୁ ଚେଷ୍ଟା କରେଁ, ସେତିକି ସେତିକି ଆଲୁଅ କମି ଆସେ। ଶେଷରେ ସ୍ୱପ୍ନ-ବାଜି ପ୍ରାୟ ଅପୂର୍ବ ଦୃଶ୍ୟାବଳୀ ମାଲୁମ ହୁଏ; ସେଠିକି ଅନ୍ଧାର। ଅଧା ଆଲୁଅ; ସୂର୍ଯ୍ୟୋଦୟ ପୂର୍ବରୁ ଯେଉଁ ଅଭିନବ ନବୀନ ଅରୁଣର କିରଣଚ୍ଛଟା—ଆଲୁଅ ଅନ୍ଧକାର ମିଶାମିଶି, ଛନ୍ଦା ଛନ୍ଦି—ବିଚିତ୍ର ବର୍ଣ୍ଣୈଶ୍ୱର୍ଯ୍ୟର ରଙ୍ଗିନ ଖେଳ। ଆହା ସେ କେଡ଼େ ରମଣୀୟ, କେଡ଼େ ମନୋମୁଗ୍ଧକର, କି ସୁନ୍ଦର! ସେ ଚିତ୍ର ପ୍ରକୃତିର ତୂଳିକାରେ ଚିତ୍ରିତ; ଏ କୃତ୍ରିମ କଲମରେ କ'ଣ ଅଙ୍କନ କରିବ? ସେ ସୌନ୍ଦର୍ଯ୍ୟର ଅନୁଭୂତି ସ୍ୱପ୍ନମୟ। ତାହା ହୃଦୟର ଅନୁଭୂତିରେହିଁ କେବଳ ସମ୍ଭବ। ଇନ୍ଦ୍ରଜାଲର ଶୋଭା ଇନ୍ଦ୍ରଜାଲରେ। ଅନୁଭବ ନ କଲେ ସେ ଆନନ୍ଦର ଉପଭୋଗ ବୃଥା ପ୍ରୟାସ ମାତ୍ର। ସେଥିପାଇଁ କହୁଛି, ଥରେ ସ୍ମୃତିକୁ ଓଟାରି ନେଇ ସେହି କମନୀୟ ସ୍ଥାନକୁ ଦେଖିଯାଅ। କଠୋର ସଂସାରର ଦୁଃଖ, ଦାହ, ଜଞ୍ଜାଳ, ଯନ୍ତ୍ରଣା ସମସ୍ତ ତିରୋହିତ ହୋଇଯିବ। ପୂତ ମନ୍ଦାକିନୀଧାରାରେ ଅଙ୍ଗ ଶୀତଳ ହୋଇଯିବ, ମନ ପବିତ୍ର ହେବ, ହୃଦୟ ନିର୍ମଳ ହେବ। ମର୍ତ୍ତ୍ୟରେ ସେହି ସ୍ୱର୍ଗ, ସଂସାର ନରକରେ ସେହି ନନ୍ଦନ କାନନ। ସେହି ଅମୃତ ସ୍ରୋତସ୍ୱିନୀରେ ପ୍ରାଣ ଢାଳି ଦିଅ, ଚିତ୍ତ ମଜାଇ ଦିଅ, ପ୍ରେମାନନ୍ଦରେ ବିଭୋର ହୋଇଯିବ, ସୁଧାସ୍ରାବରେ ସମସ୍ତ ସନ୍ତାପ ବିଧୌତ ହୋଇଯିବ।

ହାୟ, ସେ ଦିନ ଗଲାଣି! ତା'ର ଆନନ୍ଦମୟୀ ପ୍ରାଣାରାମ-କାହାଣୀ ସ୍ମୃତି ହିଁ ସୁଖ। ସେହି କମନୀୟ ସ୍ମୃତି ହିଁ ମୋର କଠୋର ସଂସାରପଥରେ ଶିରୀଷପେଲବ କୁସୁମ ବିକୀରଣ କରିବ—ସେହି ସ୍ମୃତି ମୋର ନୈରାଶ୍ୟପୂର୍ଣ୍ଣ ତମସାଚ୍ଛନ୍ନ ଜୀବନକୁ ନବୀନ ଆଶାର କନକକିରଣୋଦ୍ଭାସରେ ଅଳଙ୍କୃତ କରିବ, ମୋର ତପ୍ତ ପ୍ରାଣରେ ଶୀତଳ ଶାନ୍ତିସଲିଳ ସିଞ୍ଚନ କରିବ। ଏକା ସେହି ସ୍ମୃତିଟିକୁ ସମ୍ବଳ କରି ଦାରୁଣ ଜୀବନପଥରେ ଅଗ୍ରସର ହେବି। 'ସୁଖର ଆଶାରେ ସୁଖ ଅଧିକ'; କିନ୍ତୁ ମୋ ଭାଗ୍ୟରେ ସୁଖର ଆଶା ମଧ୍ୟ ନାହିଁ। ମୁଁ ଅତୀତ ସୁଖର ସ୍ମୃତିରେହିଁ ସୁଖ ଅଧିକ ମଣୁଛି। ଅତୀତ ସୁଖର ସ୍ମରଣରେ ହୃଦୟ ମଧ୍ୟରେ ଯେଉଁ ଯନ୍ତ୍ରଣା ଅନୁଭୂତ ହୁଏ, ସେ ଯନ୍ତ୍ରଣା ବଡ଼ ମଧୁର, ସ୍ନିଗ୍ଧ। ସେ ଯନ୍ତ୍ରଣାଟିକିକ ନ ଥିଲେ ବୋଧହୁଏ ମନୁଷ୍ୟ ତିଷ୍ଠି ପାରୁ ନ ଥାନ୍ତା। ଆଜି ମୋର ସେହି ସ୍ମୃତି ହୃଦୟର ନିଭୃତ ପ୍ରଦେଶରେ ଉଦୟ ହୋଇ ପ୍ରତି ଶିରା, ଧମନୀ ଅଧିକାର କରି ବସିଛି। ସେହି ଅପ୍ରକାଶ୍ୟ ଭାବାବେଶ ହୃଦୟର ସମସ୍ତ ବୃତ୍ତିକୁ ଦମନ କରି ଏକାଧିପତ୍ୟ ବିସ୍ତାର କରିଛି। ବେଳା ଲଙ୍ଘନ କରିବାକୁ ନ ଦେଇ ଆବଦ୍ଧ କରି ରଖିଲେ ହୃଦୟ ଫାଟିଯିବ।

ଅର୍ଦ୍ଧୋନ୍ମୋଚିତ ମହା ବିସ୍ମୃତିର ଅନ୍ଧାକାରକୁ ଯେତେବେଳେ ମୁଁ ପ୍ରଥମେ ବାହାରି ଆସିଲି, ଯେତେବେଳେ ସର୍ବପ୍ରଥମେ ମୋର ମାୟା ବିଜଡ଼ିତ ନୟନ ଫଳକରେ ଆଲୋକ ରଶ୍ମି ପ୍ରତିଫଳିତ ହେଲା, ଯେତେବେଳେ ଦୃଶ୍ୟମାନ ବିଶ୍ୱଜଗତ ସହିତରେ ମୋର ପ୍ରଥମେ ଆଳାପ ପରିଚୟର ସୂତ୍ରପାତ ହେଲା, ମୁଁ ସେତେବେଳେ ମାମୁଁ ଘରେ ଥିଲି। ପ୍ରକୃତିରେ ଯାହାକିଛି ସୁନ୍ଦର, ଯାହାକିଛି ମଧୁର, ଯାହା କିଛି କୋମଳ, ସେ ସମସ୍ତ ମୋର ପ୍ରକୃତ ସହିତରେ ପ୍ରଥମ ଅଭିଭାଷଣ ପାଇଁ ପରମ ପିତା ଏକାଧାରରେ ସଜାଇ ରଖିଥିଲେ। ଏଥିରେ ବିଶ୍ୱପିତାଙ୍କର କି ନିଗୂଢ଼ ଅଭିପ୍ରାୟ ଥିଲା ମୁଁ ଜାଣେ ନାଁ। ତେବେ ମୋର ବିଶ୍ୱାସ ଯେ ମୋର ସରଳ କୋମଳ ଶିଶୁ ହୃଦୟକୁ ଏକାବେଳେକେ କୃତ୍ରିମ କଠୋରତାର ସମ୍ମୁଖୀନ କରାଇବେ ନାହିଁ ବୋଲି ଇଚ୍ଛାମୟଙ୍କର ଇଚ୍ଛା ଥିଲା। ତାହା

ନୋହିଲେ କଟକ ସହରର ଅନନ୍ତକୋଳାହଳପୂର୍ଣ୍ଣ ଅନ୍ତଃସ୍ଥଳୀରେ ଜନ୍ମଲାଭ କରିଥିବା ଲୋକ ମୁଁ—ମୋତେ କପାଇଁ ସେ ପ୍ରାକୃତିକ ବୈଚିତ୍ର୍ୟମୟ ହରିତଶ୍ୟାମଳ ବୈତରଣୀକୂଳକୁ ନେଇ ଆସି ମୋର ନୟନ ଉନ୍ମୀଳନ କରାନ୍ତେ ? ମୁଁ ପରବର୍ତ୍ତୀ ଜୀବନରେ ଯେତେ ଥର ସ୍ୱଭାବର ବିରୁଦ୍ଧରେ ଗତି କରିବାକୁ ମନ ବଳାଇଛି, ସେତିକି ଥର ଅଭେଦ୍ୟ ଅନ୍ତରାୟର ସମ୍ମୁଖୀନ ହୋଇ ବିଫଳ-ମନୋରଥ ହୋଇଛି । ଆଜି ମଧ୍ୟ ଦେଖିଛି ଯେ, ସେ ପନ୍ଥା ମୋର ସ୍ୱାଭାବିକ ବୃତ୍ତିର ଅନୁମୋଦିତ ନୁହେଁ । "ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ" । ସେହି ଉପାଦାନୀଭୂତ ଗୁଣର ଅନୁଗାମୀ ହୋଇ ମୋତେ ଚଳିବାକୁ ହେବ ।

ଯେଉଁ ଶୋଭା ଦେଖିଥିଲି, ଯେଉଁ ମାନସବିମୋହିନୀ ଲାବଣ୍ୟଚ୍ଛଟା ମୋର ହୃଦୟ ଅଧିକାର କରିଥିଲା, ଆଜି କାହିଁକି ମୋ ଆଖିରେ ତାହା ଦିଶୁନାହିଁ । ଯେଉଁ ସୌନ୍ଦର୍ଯ୍ୟର, ଯେଉଁ ମାଧୁର୍ଯ୍ୟର ସ୍ମୃତି କେବଳ ଆଜି ମୋର ପ୍ରାଣକୁ ଆଲୋଡ଼ିତ କରୁଅଛି, ଥରେ ହେଲେ ଏବେ ମୋର ନୟନଗୋଚର ହୁଅନ୍ତା ! କିନ୍ତୁ ସବୁ ଦୁରାଶା । ମୋ ଆଖିରେ ଏବେ କଠିନ ପରଳ ପଡ଼ିଯାଇ-ଅଛି । ସରଳ ତରଳ ହୃଦୟୋପରି ଗୋଟିଏ କଠିନ ସ୍ତର ଜମି ଯାଇଅଛି । ଅମୃତରେ ଗରଳ ମିଶି ଯାଇଅଛି – ଏବେ ଆଉ ଭାବିଲେ କାହୁଁ ଆସିବ ? ଯାହା ଯାଇଛି, ଆଉ ତାହା ଫେରି ପାଇବି ନାହିଁ । ତେବେ ସେହି ପୁଣ୍ୟମୟୀ ସ୍ମୃତିକୁ ଫେର୍ ଜାଗରିତ କରାଇବି । ତାହାରି ଅମିୟ କଣାରେ ମୋର କଷ୍ଟ, ପିପାସା ନିବାରିତ ହେବ ।

ସଂସାରର ଅଭିଜ୍ଞତାରୂପ ମୋହ ଆସି ମୋର କୋମଳତା, କମନୀୟତା ବିନଷ୍ଟ କରି ଦେଲାଣି । କଠୋର ପରୀକ୍ଷାରେ ବଡ଼ବଡ଼ୁ ହୃଦୟ ପାଷାଣ ହୋଇଗଲାଣି । କିନ୍ତୁ ବୈତରଣୀ, ତୋତେ ମୁଁ ଭୁଲି ନାହିଁ । ସେ କଠିନତା ମଧ୍ୟରେ ତୋ'ର ପୁଣ୍ୟ ପ୍ରବାହ ଆଜଯାଏ ବହୁଅଛି । ଏ ଦାରୁଣ ଜୀବନମାର୍ଗରେ ବୁଲୁଁ ବୁଲୁଁ ଯେତେବେଳେ ତୁ ମନେ ପଡ଼ିଯାଉ, ସେତେବେଳେ ତୋର ମନ୍ଦମନ୍ଥର ମଧୁର ଗତି ମନ ମଧ୍ୟରେ ଚିତ୍ରିତ ହୋଇଥାଏ । ହୃଦୟ-ବିହାରିଣୀ ତୋ'ର ତନ୍ୱୀମୂର୍ତ୍ତି ଫୁଟି ପଡ଼ି ଉଚ୍ଛୁଳି ଉଠେ—ହୃଦୟ-କ୍ଷେତ୍ର ପ୍ଳାବିତ କରିଦିଏ । ସେହି ପ୍ରବାହରେ ସମସ୍ତ ଆବିଳତା ଧୋଇ ଯାଇ ନିର୍ମଳ ହୃଦୟ ନୈସର୍ଗିକ ଦ୍ୟୁତିମାନ ଆଭାରେ ଭାସ୍ୱର ହୋଇ ଉଠେ ।

ବୈତରଣୀବକ୍ଷରେ ସେହି ଋତୁର ବର୍ଣ୍ଣୋଜ୍ଜ୍ୱଳମୟ ପ୍ରଭାତ-ଐଶ୍ୱର୍ଯ୍ୟ ଥରେ ଯେ ଦେଖିଥିବ, ସେ କିରୂପେ ତାହା ବିସ୍ମୃତ ହୋଇ ପାରିବ ? କାଉ 'କା କା' ହେଲାକ୍ଷଣି ମୁଁ ବିଛଣାରୁ ଉଠି ମାମା ସଙ୍ଗରେ ନଈକୁ ଯାଏଁ । ଠିକ୍ ନଈକୂଳରେ ମାମୁଁଘର ; ସେତେବେଳକୁ ପୂର୍ବ ଗଗନରେ ସିନ୍ଦୂର ଫାଟି ସାରିଥାଏ । ତେବେ ପୂର୍ବ ଦିଗ କିଏ କମିଁ କାହିଁକି ସେ ଦିଗରୁ ସିନ୍ଦୂର ଫାଟେ ଇତ୍ୟାଦି ବିଷୟ କିଛି ଜାଣି ନ ଥିଲି କିନ୍ତୁ ଅନୁଭବରେ ଏତିକି ଜାଣିଥିଲି ଯେ ତାହା ଅତି ସୁନ୍ଦର । ହାୟ, ସେ ଅଜ୍ଞତା କାହିଁକି ଚିରକାଳ ନ ରହିଲା ! ମୁଁ ଜ୍ଞାନାଲୋକ ପାଇବାକୁ ଯାଇ କି ରମଣୀୟତା ହରାଇ ବସିଛି ! ମାମା ମୋତେ ପାଣି ପାଖରେ ଛିଡ଼ା କରାଇ ନିଜେ ନିତ୍ୟ-କର୍ମ ସାରିବାକୁ ଚାଲିଯାଆନ୍ତି । ମୁଁ ସେଠି ଛିଡ଼ା ହୋଇ ଚାରିଆଡ଼କୁ ଚାହିଁ ଦେଖେଁ । ଦେଖେଁ, ପ୍ରାଚୀ ଲଲାଟର ସ୍ୱର୍ଣ୍ଣ ମେଘ ଭେଦ କରି ସୂର୍ଯ୍ୟଦେବ ବର ବେଶରେ ସଜ୍ଜିତ ହୋଇ ପ୍ରକୃତି ସହିତରେ ସମ୍ଭାଷଣ ଆରମ୍ଭ କରନ୍ତି । ଦେଖୁଁ ଦେଖୁଁ ବୈତରଣୀର ସ୍ଥିର ସ୍ୱଚ୍ଛ ଗର୍ଭ ଦର୍ପଣରେ ଆଉ ଗୋଟିଏ ଅଭିନବ ରଙ୍ଗଥାଳ ସୃଷ୍ଟି କରେ । ଏହି ନୂତନ ସୂର୍ଯ୍ୟଟି ଆହୁରି ସୁନ୍ଦର । ଏ ବଡ଼ ନୃତ୍ୟ-ପ୍ରିୟ । ବୈତରଣୀସଲିଳର ଈଷତ୍ ଲହରୀ ହିଲ୍ଲୋଳରେ କମ୍ପିତ ହୋଇ ନୃତ୍ୟ କରୁଁ କରୁଁ ଉପରକୁ ଡେଇଁ ପଡ଼ୁଥାଏ । ଦେଖୁଁ ଦେଖୁଁ ସେ ଛବି କୁଆଡ଼େ ଉଭେଇ ଯାଏ । ତାହାର ପରିବର୍ତ୍ତରେ କୋଟି କୋଟି କ୍ଷୁଦ୍ର ତରଙ୍ଗରେ କୋଟି କୋଟି ସୂର୍ଯ୍ୟ ପ୍ରତିବିମ୍ବିତ ହୋଇ ବୈତରଣୀବକ୍ଷକୁ ଝଲମଲ କରିଦିଅନ୍ତି । ସେହି ଅଭିନବ ନୃତ୍ୟ ଦେଖି ମୋର ବାଳହୃଦୟ ନୃତ୍ୟ କରି ଉଠେ । ଏ ଆଡ଼େ ଗାଁ'ର ନୂଆ ଭୂଆସୁଣୀମାନେ ସେତେବେଳକୁ ଫେରି ଯାଉଥାନ୍ତି । କେବଳ ବର୍ଷିୟସୀମାନେ ଘାଟରେ ବସି ଗାଇଁଯାକ ଖବରର ହାଟ ବସାଇ ଦିଅନ୍ତି । ମୁଁ ସେଗୁଡ଼ାକ କିଛି ସୁଦ୍ଧା ଶୁଣୁ ନ ଥାଏଁ । ମୋ କାନରେ ସେତେବେଳେ କଣିଆବୁଦାମୂଳରୁ ଡାହୁକର କଣ୍ଠରବ ପ୍ରତିଧ୍ୱନିତ ହେଉଥାଏ । ଦୂରସ୍ଥିତ ଶିମିଳିଗଛ ଉପରୁ କପୋତ "ଉଠ୍‌ରେ ପୁତା" ଶବ୍ଦ ଗମ୍ଭୀର କାତର କଣ୍ଠରେ ଉଚ୍ଚାରଣ କରୁଥାଏ । ମହାଦେବ ପିଣ୍ଡି ପାଖ ବଉଳ ଗଛରୁ ହଳଦୀବସନ୍ତ ମଧୁର ଗାୟନ କରୁଥାଏ ; ଆରପାରି ବାଉଁଶବନରୁ କୁମ୍ଭାଟୁଆ ତା'ର ଖଣ୍ଡସ୍ୱର ପବନରେ ମିଶାଇ ଦେଉଥାଏ । କିନ୍ତୁ ଯେତେବେଳେ ହରନବାବୁ ତୋଟାର ଆମ୍ରଶାଖାରୁ କୋକିଳ ତା'ର ଲଳିତ ପଞ୍ଚମ ତାନର ଝଙ୍କାର ଛାଡ଼ି ଦେଇ ଦିଗ୍‌ମଣ୍ଡଳରେ ମଧୁର କମ୍ପନ ବରଷାଇ ଦିଏ, ମୁଁ ଆଉ ସମ୍ଭାଳି ନ ପାରି ସେହି ଦିଗକୁ କୁ-ଉ-ଉ ଶବ୍ଦ କରୁ କରୁ ଦୌଡ଼ିବାକୁ ଲାଗେ । ଠିକ୍ ସେହି ସମୟରେ ନଈ ସେ ପାଖରୁ ପାଳଜଗୁଆଳି କିଏ ଫିଟାଇ ସ୍ୱର ଛାଡ଼ିଦିଏ । ମୁଁ ଥମକି ଛିଡ଼ା ହୋଇ ତାହାର ଗୀତରେ କର୍ଣ୍ଣ ଅର୍ପଣ କରେଁ । ଧଳା ଧଳା ମାଛରଙ୍କା ଧାଡ଼କ ଧାଡ଼ ପାଣି ପାଖରେ

ବସି ଥାଆନ୍ତି । ସ୍ୱଚ୍ଛ ନୀଳ ସଲିଳଧାରାର ଦୁଇ ପ୍ରାନ୍ତରେ ଧାଡ଼ି ଧାଡ଼ି ଶ୍ୱେତ କମଳ ଫୁଟିଥିଲା ପରି ଦେଖାଯାଏ । ନୀଳ ବର୍ଣ୍ଣର ସାନ ସାନ ମାଛରଙ୍କାଗୁଡ଼ିକ କ୍ଷଣେ କ୍ଷଣେ ନଦୀବକ୍ଷରେ ଉଡ଼ି ବୁଲୁଥାଆନ୍ତି । କେହି କେହି ବା ଧକା ମେଣ୍ଟିବା ପାଇଁ ନଈ ତଡ଼ା ପାଖରେ ଥିବା ଚେଣ୍ଟା ଖୁଣ୍ଟ ଉପରେ ଥରେ ଥରେ ବସି ପଡ଼ନ୍ତି । ସେମାନଙ୍କର ଆଉ କିଛି ଚିନ୍ତା ନାହିଁ । ଏପରି ଏକାଗ୍ରତା ଯଦି ଥାଆନ୍ତା ମୋର ତେବେ ମୁଁ ଆପଣାକୁ ଧନ୍ୟ ମଣନ୍ତି । କିନ୍ତୁ ସମୟେ ମୋର ତାହା ଥିଲା । ସେ ସମୟ ଗଲାଣି । ଯେବେ ଏକାଗ୍ରତା ଥିଲା, ଯେବେ ସରଳତା ଥିଲା, ଯେବେ ନିର୍ମଳତା ଥିଲା ତେବେ ମୁଁ ବଡ଼ିସକାଳୁ ଉଠୁଥିଲି । ହୃଦୟ ହାଲୁକା ଥିଲେ ଶୀଘ୍ର ନିଦ ଭାଙ୍ଗେ । ମୋର ହୃଦୟ ଯେବେ ପକ୍ଷୀପରି ପରି ପବନରେ ଉଡ଼ୁଥିଲା, ତେବେ ମୁଁ ପ୍ରାତରୁତ୍ଥାୟୀ ଥିଲି । ଏବେ ନାନା ଜଟିଳତା, କୁଟିଳତା ଅନ୍ତରରେ ପ୍ରବେଶ କରି ହୃଦୟ ଭାରାକ୍ରାନ୍ତ କରି ଦେଲାଣି । ସୁତରାଂ ମୁଁ ଏବେ ଅନେକ ଡେରିରେ ଆଖି ମଳି ମଳି ଶଯ୍ୟାତ୍ୟାଗ କରେଁ । ଭାଇ, ମାଛରଙ୍କା ତୋର ହୃଦୟ କ'ଣ ଏଡ଼େ ସରଳ, ଏଡ଼େ ନିର୍ମଳ ! ମୁଁ ଯେତେ ସକାଳୁ ଉଠି ମାଛରଙ୍କାକୁ ଜିତିବି ବୋଲି ଯାଇଛି, କେବେହେଁ ଜିତି ପାରି ନାହିଁ । ସେ ନିଶ୍ଚୟ ମୋ ଆଗରୁ ଉଠି ଯାଇଥାଏ । ଭାଇ ମାଛରଙ୍କା, ତୋ ସଙ୍ଗେ ମୋର କେଡ଼େ ପ୍ରତିଯୋଗିତା କେତେ ଜିଦାଜିଦି ଥିଲା; ହାୟ, ଏବେ ତୋ ବାଟ ତୁ ଦେଖ୍, ମୋ ସାଙ୍ଗ ଛାଡ଼ି ଦେ ଭାଇ ।

ଭିଦଭିଦଲିଆର ପର ସାଉଁଣିବା ପାଇଁ କେତେ ଆଡ଼େ ଧାଇଁ ଧାଇଁ ବୁଲୁଥିଲି । ଆହା, ତାର ପର କେଡ଼େ ସୁନ୍ଦର ! ସେ ସମୟରେ ତାହା ମୋ ନିକଟରେ କେଡ଼େ ବହୁମୂଲ୍ୟ ଥିଲା । ସେତେବେଳେ ଟଙ୍କା ପଇସା, ସୁନା ରୁପା ମୋ ନିକଟରେ ଅତି ନଗଣ୍ୟ ଥିଲା । ଯାହା ଦେହରେ ଟିକିଏ ହେଲେ ଶୋଭା ଥିଲା, ତାହା ମୋ ପକ୍ଷରେ ସ୍ୱର୍ଗସମ୍ପଦ ତୁଲ୍ୟ । କିନ୍ତୁ ଏବେ ବୁଝିଲିଣି, ଏବେ ଶିଖିଲିଣି, ଆଉ ଏଣିକି ସୌନ୍ଦର୍ଯ୍ୟରେ ଭୁଲିବି ନାହିଁ । ପଇସାଟିଏ ବା ଅଧଲାଟିଏ ପାଇବା ଲାଗି ଏ ହାତ କେତେ ନିର୍ମମ, ନିଷ୍ଠୁର, ଭିଦଭିଦଲିଆର ପ୍ରାଣ ସଂହାର କରିପାରେ, ଦରକାର ପଡ଼ିଲେ କେତେ କେତେ କୋମଳ କୁସୁମକଳିକା ପଦଦଳିତ କରିପାରେ ।

ସକାଳୁ ଉଠି ଶଙ୍ଖଚିଲ ମୁହଁ ଦେଖିଲେ ସେ ଦିନ ଭଲ ଖାଇବାକୁ ମିଳେ ବୋଲି ମୋର ପ୍ରଗାଢ଼ ବିଶ୍ୱାସ ଥିଲା । ସେହି ବିଶ୍ୱାସର ଅନୁବର୍ତ୍ତୀ ହୋଇ ମୁଁ ଏଆଡ଼େ ସେଆଡ଼େ ଅନାଇ ଏ ଗଛମୂଳ ସେ ଗଛମୂଳକୁ ଯାଇ ଶଙ୍ଖଚିଲ ଖୋଜି ଖୋଜି ବୁଲୁଥିଲି । ମୋ କପାଳକୁ ପ୍ରାୟ ଶଙ୍ଖଚିଲ ରୋଜ ମୋତେ ଥରେ ଦେଖା ଦେଇଥାଏ । ବାସ୍ତବିକ୍ ଯେଉଁ ଦିନ ଦୁର୍ଭାଗ୍ୟବିପାକରୁ ଶଙ୍ଖଚିଲ ମୁହଁ ନ ଦେଖୁଥିଲି, ସେଦିନ ମୋତେ ଦିନୁଟାଯାକ ସୁଖ ଲାଗୁ ନ ଥିଲା । ସେଦିନ ଯେପରି ସତକୁ ସତ ସବୁ ବିପଦ ମତେ ଆକ୍ରମଣ କରେ । ସେଦିନ ଯେପରି ଖିଆ ପିଆ ରାଇଜ ନାକରା ହୁଏ । ସଂସାରର ସବୁ ଭଲମନ୍ଦ ଯେ କେବଳ ନିଜ ମନର ଭଲ ମନ୍ଦ ଅବସ୍ଥା ଉପରେ ନିର୍ଭର କରେ, ଏ କଥା ଏବେ ବୁଝିଲିଣି । କିନ୍ତୁ ପିଲାକାଳର ଅଭ୍ୟାସ ଏରୂପ ଦୃଢ଼ୀଭୂତ, ଏରୂପ ଅସ୍ଥିମଜ୍ଜାଗତ ହୋଇ ଯାଇଅଛି, ଏରୂପ ଜୀବନର ରକ୍ତ ସହିତରେ ସଂମିଶ୍ରିତ ହୋଇ ଯାଇଅଛି ଯେ, ସେ ବିଶ୍ୱାସକୁ ଏକାବେଳେକେ ଦୂରୀଭୂତ କରି ହେଉ ନାହିଁ । ଲୋକେ ଏହାକୁ କୁସଂସ୍କାର କହନ୍ତୁ କି ଅନ୍ଧବିଶ୍ୱାସ ବୋଲି ନିନ୍ଦା କରନ୍ତୁ, ଏହି ଅନ୍ଧବିଶ୍ୱାସ ମୋର ଅନେକ ସହଜ ସୁଖର ଆକର ଥିଲା । ଏବେ କାର୍ଯ୍ୟକାରଣ-ତତ୍ତ୍ୱାନ୍ୱେଷୀ ହୋଇ ସେ ସୁଖରୁ ବଞ୍ଚିତ ହୋଇଅଛି । କୌଣସି ଗୋଟିଏ ଦିଗରେ ମନ ଦୃଢ଼ ହେଉ ନାହିଁ । ଦୁଇ ନାହାରେ ଗୋଡ଼ ଦେଇ ଛଟପଟ ହେଉଅଛି ।

କଣ୍ଟାକୁସୁମର ହଳଦିଆ ଫୁଲ ଉପରେ ଇନ୍ଦ୍ରଧନୁବର୍ଣ୍ଣର ସୂକ୍ଷ୍ମ ପକ୍ଷ କମ୍ପିତ କରି ନାନାରଙ୍ଗରେ ପ୍ରଜାପତିଗୁଡ଼ିକ ଉଡ଼ି ବୁଲୁଥାଆନ୍ତି । ତାଙ୍କର ପଛେ ପଛେ ଗୋଡ଼ାଇ ଗୋଡ଼ାଇ କ୍ଳାନ୍ତ ହୋଇ ପଡ଼ିଲାରୁ ମାମା ସଙ୍ଗରେ ଘରକୁ ଫେରେଁ । ଫେରିଯିବା ବେଳକୁ ବାଡ଼ିଦୁଆର ପାଖରେ ଥିବା ସପ୍ତଫେଣା ଗଛରୁ ଫୁଲ ଭାଙ୍ଗି ନେଇ ଘରକୁ ଯାଏଁ । ଘରେ କୁଣ୍ଢାଇ, ଖଟୁଲି ଇତ୍ୟାଦି ସାଙ୍ଗରେ ଖେଳ ଆରମ୍ଭ ହୁଏ । ଦୁଇଜଣ ଜଣେ ସାଙ୍ଗ ଆସି ମିଳନ୍ତି । ସପ୍ତଫେଣା ଫୁଲର ପାଖୁଡ଼ାରେ ସେ ଠାକୁରମାନଙ୍କର ପୂଜା କରୁଁ କରୁଁ ଦିନ ହୋଇଯାଏ । ମାମା ତାଙ୍କର ଅଗାଧୁଆ ଗୃହକାର୍ଯ୍ୟ ସାରି ଗାଧୋଇ ଯିବା ପାଇଁ ମୋତେ ଡାକନ୍ତି । ପୁଣି ବୈତରଣୀ ସାଙ୍ଗରେ ଭେଟା ଭେଟି କରିବା ପାଇଁ ନୂତନ ଉଦ୍ୟମରେ ଦାଣ୍ଡାକୁ ପଡ଼େଁ । ତୋଠରେ ଅନେକ ପିଲା ଓ ସ୍ତ୍ରୀଲୋକ ଗାଧୋଇବା ପାଇଁ ରୁଣ୍ଡ ହୁଅନ୍ତି । ଗଳାକ୍ଷଣି ମହା ଆନନ୍ଦରେ ସାଙ୍ଗ ସାଥୀମାନଙ୍କ ସହିତରେ ବାଲି ଫିଙ୍ଗା ଫିଙ୍ଗି, ପାଣି ଛଟାଛଟି ଆରମ୍ଭ ହୁଏ । ହେଉଁ ହେଉଁ ବୁଡ଼ା ବୁଡ଼ି, ପେଲା ପେଲି, ମରାମରି । କିନ୍ତୁ ସେ କଳିଆ କ୍ଷଣକ ପାଇଁ, କଳିଆର କିଛି ଅର୍ଥ ନାହିଁ । ତାହା ନିର୍ମଳ, ପବିତ୍ର କୌତୁକ ମାତ୍ର । ଏବେ କାହାରି ସାଙ୍ଗରେ ଟିକିଏ ମନାନ୍ତର ହେଲେ ମନ ମଧ୍ୟରେ ତାକୁ ଘଷି ଘଷି, ମାଜି ମାଜି, ଚଗଡ଼ି ଚଗଡ଼ି, କଥାଟାକୁ କେତେ କରି ପକାଉଁ; ସେଥିରୁ କେତେ ଅର୍ଥ, ଉଦ୍ଦେଶ୍ୟ ବାହାର କରୁଁ

ଶେଷରେ ପ୍ଲୀହା ଗରମ କରି ନିଜେ ତପ୍ତ ହୋଇ ଓ ନିଜର ପୈଶାଚିକ ବ୍ୟବହାର ଦ୍ୱାରା ସଂସାରକୁ ତାପିତ କରଉଁ । କିନ୍ତୁ ସେଥିରେ ଆଜିକାଲିକାର ହଳାହଳ ଲେଶ ମାତ୍ର ନ ଥିଲା । ସେ କଳିଆ ମଧ୍ୟ ପ୍ରେମର ରୂପାନ୍ତର ମାତ୍ର । ତହିଁ ଉତ୍ତାରୁ ମାମାଙ୍କର ଆଖିକଡ଼ା ଦେଖି ଉପରକୁ ଉଠିଆସେଁ । କିନ୍ତୁ ହସ୍ତ ପଦ ଧୌତ କରିବାର ନୁହେଁ । ଗାଧୋଉଥିବା ସ୍ତ୍ରୀମାନଙ୍କର ଲୁଗାଗୁଡ଼ାକ ନେଇ ବାଲିଗାତ ଖୋଳି ପୋତି ଦିଏଁ । ସେଥିରେ କିଏ ଆସି "ବାପରେ, ଧନରେ" କହି କହିଲାଏ, କିଏ ବା "ହିଂସ୍ର, ଅଜବ" ବୋଲି ପଦେ ଅଧେ ଶୋଧନ ଦିଏ, କିଏ ବା ଗାଳି ଶପିଦିଏ, କିଏ ବା ଟିକିଏ କାଖେଇ ପକାଏ । ଏ ସମସ୍ତ କେଡ଼େ ଦୁଃଖକର ଥିଲା, କି ମଧୁର ଥିଲା । କିନ୍ତୁ ଏବେ ସେ ସମୟ ଗଲାଣି । ଆଉ ଏଣିକି ଏପରି କରିବାକୁ ସଙ୍କୋଚ ଆସିଲାଣି ଏବଂ ଏପରି କଲେ ମଧ୍ୟ ଲୋକେ ସେପରି ଭାବରେ ଏଣିକି ସହିବେ ନାହିଁ । ସେଥିରୁ ବିରତ ହୋଇ ବାଲିଖେଳ ଆରମ୍ଭ ହୁଏ । ବାଲିରେ ମନ୍ଦିରନିର୍ମାଣ, ଗମ୍ବୁଜ, ଶିଳ୍ପ ଯେତେ ପ୍ରକାର କାରୁକାର୍ଯ୍ୟ ସ୍ଥପତିକାର୍ଯ୍ୟ ସମ୍ଭବ, ସବୁ କରାହୁଏ । ରଥ, ବିମାନ, ମନ୍ଦିର ଇତ୍ୟାଦି ନାନା ପ୍ରକାର ଧାଡ଼ିକି ଧାଡ଼ି କାରିଗରି ଦେଖାଇ ଶେଷରେ ବାଲୁକା ଠାକୁର ତିଆରି ହୁଏ । ତାହା ଉପରେ କଣ୍ଟାକୁସୁମ ଫୁଲ ଓ ଅଙ୍କରାନ୍ତି ଫଳ ଆଣି ଖଞ୍ଜି ଦିଏ । ଏହିପରି ଅନନ୍ତ କାରିଗରି, ଭଙ୍ଗା ଭଙ୍ଗି, ଗଢ଼ା ଗଢ଼ି ହେଉଁ ହେଉଁ ମାମା ବାହାରନ୍ତି, ମୋତେ ମଧ୍ୟ ଯିବାକୁ ପଡ଼େ । ଘରେ ଯାଇ ମାମା ତାଙ୍କ କୋଥଳି ପାଖରେ ସେବା କରିବାକୁ ବସନ୍ତି । ମୁଁ ମଧ୍ୟ ବସେ, ଠାକୁରଙ୍କୁ ଜୁହାର ହୁଏଁ । ମାମା କହନ୍ତି, "ଠାକୁରଙ୍କୁ କହି ତୋତେ ବୁଢ଼ାଟିଏ କରନ୍ତୁ ।" ମୁଁ ସେହି କଥା କହି ଠାକୁରଙ୍କୁ ଜୁହାର ହୁଏଁ । ମୋର ପୂର୍ଣ୍ଣ ବିଶ୍ୱାସ ଥାଏ । ସେହି ପିତ୍ତଳନିର୍ମିତ ଠାକୁର ଯାହା ଇଚ୍ଛା ତାହା କରି ପାରନ୍ତି । ତାଙ୍କର ଅସୀମ କ୍ଷମତା । କିନ୍ତୁ ସେ ଆମର । ମାମା ଯାହା କହିବେ, ସେ ନିଶ୍ଚୟ ଶୁଣିବେ । ମୁଁ ଯାହା କହିବି, ସେ କରିବେ । ସେ ପରା ଆମର ଠାକୁର । କିନ୍ତୁ ଏବେ ସେ ବିଶ୍ୱାସ ଗଲାଣି । ସେତେବେଳେ ଠାକୁରଙ୍କୁ ମୁଁ ଆପଣାର ବୋଲି ଜାଣିଥିଲି । ସ୍ୱର୍ଗ ମୋର ହାତ ପାଖରେ ଥିଲା । ଠାକୁର ମୋର ସନ୍ନିକଟରେ ଥିଲେ । ଯେଉଁ ଭାବ ହୃଦୟରେ ଜାଗରୂକ କରିବା ପାଇଁ ଏତେ ସାଧନା, ଏତେ ତପସ୍ୟା, ଯାହା ପାଇଁ ଯୋଗୀ, ଋଷି ଏତେ ତପ, ଜପ, ଯୋଗ ଯାଗ କରନ୍ତି ସେଉଟା ମୋର ସ୍ୱାଭାବିକ ଥିଲା । କିନ୍ତୁ ଏବେ ନାନା କୂଟତର୍କ, ମୀମାଂସା, ନ୍ୟାୟ, ସାକାର, ନିରାକାର, ପାପ, ପୁଣ୍ୟ ଇତ୍ୟାଦି ବିଷୟ ଜାଣି ମୁଁ ଦୂରକୁ ଚାଲିଗଲିଣି । ଯେତେ ନିଚ୍ଛୁ ଦାର୍ଶନିକ ତତ୍ତ୍ୱ ଦିନକୁ ଦିନ ହୃଦୟଗମ୍ୟ ହେଉଛି, ତାହା ସଙ୍ଗେ ସଙ୍ଗେ ମୁଁ ସ୍ୱର୍ଗରାଜ୍ୟର ତେତିକି ଦୂରକୁ ଦୂରେଇ ଯାଉଛି । ହାୟ, ମୋର ସେ ପିଲାକାଳ, ସେ ସରଳ ଅମାୟିକ ବିଶ୍ୱାସ, ସେ ଜ୍ଞାନ ପୁନର୍ବାର ଫେରି ଆସନ୍ତା ! ଯାହା ହଜି ଯାଇଛି ଆଉ କି ଫେରି ପାଇବି ?

ମାମା ମୋ ମୁଣ୍ଡରେ ଗୋରଚନା ଚୋପି ଦିଅନ୍ତି । ଦେହରେ ତିଳକ ଛାପା ମାରି ଦିଅନ୍ତି । ଏପରି ତିଳକ ଚିତା ହୋଇ ଖାଇବାକୁ ଯାଏଁ । ଖାଇ ପିଇ ସାରି ମାମାଙ୍କ ପାଖରେ ଶୋଇବାକୁ ଯାଏଁ । ଖରାରେ ନ ବୁଲିବି ବୋଲି ମାମା କେତେ ଯାକୁଲେଇ ବହଲେଇ ଶୁଆଇ ଦିଅନ୍ତି । ମୁଁ ଆଖି ବୁଜି ପଡ଼ିଥାଏଁ । ମନ ଥାଏ ତୋଟାରେ । ମାମାଙ୍କର ଯେପରି ଆଖି ଲାଗିଯାଏ ମୁଁ ଚୂପ୍ ଚାପ୍ ଉଠି ବାହାରି ଆସେଁ । ଏକା ନିଶ୍ୱାସକେ ଯାଇ ତୋଟାରେ ଦାଖଲ । ତୋଟାରେ ମୋ ସାଙ୍ଗ ଖେଳାଳୀ ମାନେ ଆଗରୁ ହାଜର ଥାଆନ୍ତି । କେଉଁ ଦିନ କି ଖେଳ ଖେଳିବାକୁ ହେବ ତାହାର କିଛି ସ୍ଥିରତା ଥାଏ ନାହିଁ । ଯେଉଁଥିରେ ଲାଗିଯାଉଁ ସେଇଥିରେ ଖରାବେଳ କଟିଯାଏ । କେଉଁ ଦିନ ଲୁଚକାଳି ଖେଳ ଆରମ୍ଭ ହୁଏ । ଗଛ ପଛଆଡ଼େ ବା କିଆ ବୁଦା ଭିତରେ ଆମର ଲୁଚିବାର ପ୍ରଧାନ ସ୍ଥାନ । ଦିନେ ଦିନେ ବାଗୁଡ଼ି ଖେଳୁ । ଦିନେ ଦିନେ ରାଜା ମନ୍ତ୍ରୀ ଖେଳ । ଏହିପରି କେତେ ଖେଳ ତା'ର ନାମ ଭୁଲି ଗଲିଣି । କେଉଁ ଦିନ ଶିଆଳ ଗୋଡ଼ାଉଁ । କେଉଁ ଦିନ ଚଢ଼ାଇବସା ଖୋଜି ବୁଲୁଁ । କେଉଁ ଦିନ ମହୁବସାକୁ ଢେଲା ମାରୁଁ । ପ୍ରଚଣ୍ଡ ଖରାରେ ଏହିପରି କଠିନ ବ୍ୟାୟାମ କରି ସୁଦ୍ଧା ଦିନେ କ୍ଳାନ୍ତି ବୋଧ କରି ନାହିଁ । ଆଜିକାଲି ଖରାରେ ଗାଧୋଇ ଆସି ହୁଏ ନାହିଁ । ଖାଲି ଯେ ଡର ମାଡ଼େ ତାହା ନୁହେଁ; ପ୍ରକୃତ ଅନିଷ୍ଟ ହେବାର ମଧ୍ୟ ମୁଁ ଲକ୍ଷ୍ୟ ରଖିଛି । କେବେ କେବେ ଖରାଦିନେ ଢେଲା ମାରି କଞ୍ଚା ଆମ୍ବ ବିଛାଇ ଦାନ୍ତରେ କାମୁଡ଼ି ତାର ସଦ୍‌ବ୍ୟବହାର କରୁଁ । ଶୀତଦିନେ ଗାଁ ଭିତରେ ଲୋକଙ୍କ ବାଡ଼ରେ ପଶି ବରକୋଳି ଖାଇ ନଣ୍ଟରେ ପେଟେ ଲେଖାଏଁ ପାଣି ପିଉଁ । ଏହାଛଡ଼ା କାକୁଡ଼ି, ପିଜୁଳି ଇତ୍ୟାଦି ସାମୟିକ ଫଳ ଯେ ଆମ୍ଭମାନଙ୍କ ଲୁଟ୍ ତରାଜ ସାମିଲ ନ ହୁଏ ତାହା ନୁହେଁ; କିନ୍ତୁ ବଡ଼ ଆଶ୍ଚର୍ଯ୍ୟର ବିଷୟ ସେତେବେଳେ ଏ ସମସ୍ତ ଗୁରୁପାକ ଦ୍ରବ୍ୟ ଅବଲୀଳାକ୍ରମେ ଉଦରସାତ୍ କରୁଥିଲୁଁ, ଦିନକ ଲାଗି ସୁଦ୍ଧା ବଦ୍‌ହଜମି ଧରି ନାହିଁ । ହାଣ୍ଡିକି ହାଣ୍ଡି ତେନ୍ତୁଳି ଚକଟା, ଖଣ୍ଡ ଆମ୍ବୁଲ ବା କଞ୍ଚା କଇଁଆ ଏକା ଏକା ଦ'ପହରେ ନିଃଶେଷିତ କରିଛୁଁ, କିନ୍ତୁ ଏବେ ସେସବୁ ପଦାର୍ଥରୁ ରତିଏ ପେଟରେ ପଡ଼ିଲେ ତତ୍‌କ୍ଷଣାତ୍ ଖଇ ହାଙ୍କୁଟି ଦିଏ । ଦିନ ଚାଲି ଯାଉଛି । ମନେ ମନେ ଆମେ ବଢ଼ୁଛୁଁ, କିନ୍ତୁ ପଳେ ପଳେ କେତେ ଲେଖାଏଁ ଛାଡ଼ୁଛୁଁ;

ସେ କଥାରେ ମୋଟେ ଲକ୍ଷ୍ୟ ରହୁ ନାହିଁ । ଦେଖି ମଧ୍ୟ ଦେଖି ନାହୁଁ । ଆଖି ଥାଇ ଅନ୍ଧ ମଧ୍ୟ ରହୁଁ ।

ଦିନେ ଦିନେ ଦଦସ୍ୱାପତ୍ର ଆଣି ଚକଟି ଛେନା ପ୍ରସ୍ତୁତ କରୁଁ ଓ ସେଥିରେ ନବାତ ଗୋଳେଇ ଆନନ୍ଦରେ ଖାଉଁ । କେବେ କେବେ ନାଗଫେଣୀ ଫୁଲ ଛିଣ୍ଡାଇ ସେଥିରେ ଥିବା ରଙ୍ଗରେ ଲାଲ ଲାଲ ବେଶ ହେଉଁ । ବେଳ ବୁଡ଼ ଆସିବାର ଦେଖିଲେ ଦଳ ଭାଙ୍ଗି ଯେ ଯାହା ଘରକୁ ଫେରିଯାଉଁ । ସାଙ୍ଗମାନଙ୍କ ଭିତରୁ କେହି କେହି ନିଶ୍ଚୟ ପ୍ରତିଦିନ ସେମାନଙ୍କ ବାପମା'ଙ୍କଠାରୁ ଗାଳି ମାଡ଼ ଖା'ନ୍ତି । ଜଣକର ଏହି ଅବସ୍ଥା ହେଲେ ଆଉ ସମସ୍ତେ ରଣରେ ଭଙ୍ଗ ଦେଇ ଦୁର୍ଗ ଆଶ୍ରୟ କରନ୍ତି । ମୁଁ ମଧ୍ୟ ଘରକୁ ଫେରି ଆସେଁ ।

ବେଳ ବୁଡ଼ିଗଲେ ସମସ୍ତେ ନଈକୂଳକୁ ଫେରିଯାଉଁ । ସେତେବେଳେ ଆଉ ପ୍ରଖର ସୂର୍ଯ୍ୟକିରଣ ଜର୍ଜରିତ ଉତ୍ତପ୍ତ ବାଲୁକାରାଶି କୋମଳ ଶିଶୁଚରଣର ଅନ୍ତରାୟ ହୁଏ ନାହିଁ । ସେତେବେଳେ ଆଉ ଦି'ପହରିଆ ଝାଞ୍ଜି ପବନ ଆମ୍ଭମାନଙ୍କୁ ଦୋଣ୍ଟା ଆଶ୍ରୟ କରିବାକୁ ପ୍ରେରଣ କରେ ନାହିଁ । ଅସ୍ତଗଗନୋନ୍ମୁଖ ରବିର ସ୍ନିଗ୍ଧ କିରଣ-ଉଦ୍ଭାସିତ ସିକତା ପ୍ରାନ୍ତର, ବୈତରଣୀତରଙ୍ଗ, ସଙ୍ଗଶୀତଳ ମଧୁର ଦକ୍ଷିଣାପବନ ଆମ୍ଭମାନଙ୍କୁ ସ୍ୱାଗତ ଆମନ୍ତ୍ରଣ କରନ୍ତି । ସେ କୋମଳ ଆମନ୍ତ୍ରଣ ସାଦରେ ଗ୍ରହଣ କରି ତାର ସୌନ୍ଦର୍ଯ୍ୟରେ ପ୍ରାଣ ଢାଳି ଦେଉଁ । ସେତେବେଳେ କ୍ଷୁଧା ତୃଷା ସବୁ ବିସ୍ମୃତ ହୋଇ ଯାଉଁ । ବୈତରଣୀ, ତୋର ଗୋଧୂଳି-ଶୋଭା-ସମ୍ପଦ ଥରେ ଯେ ନିରୀକ୍ଷଣ କରିଛି, ସେ କେବେହେଁ ତୋତେ ବିସୋରିବ ନାହିଁ । ତୋହର ଡାହାଣିଆ ଖରା, ସିରି ସିରି ପବନ ମୋର ପ୍ରାଣ ଚିରଦିନ ଅଧିକାର କରି ରହିଅଛି । ସେତେବେଳକାର ତୋର ଭୈରବ-ସୁନ୍ଦର, ବିକଟ-ମଧୁର ମୂର୍ତ୍ତି କି ମନୋହର, କି ତୃପ୍ତିକର ! ବାସ୍ତବିକ ସେତେବେଳେ ତୋର ମହାଭାବରେ ସବୁ ବୁଡ଼ିଯାଏ । ଦିନଯାକ ବୁଲି ବୁଲି ସୂର୍ଯ୍ୟଦେବଙ୍କର ମୁହଁ ଲାଲ ପଡ଼ିଯାଏ । ତା ଦେଖି ତ୍ରିସନ୍ଧ୍ୟାଚାରୀ-ବଧୂ କେତେ ଆଦରରେ, କେତେ ଶରଧାରେ ତାଙ୍କର କନକଜରିର ପଣତ ଦେଇ ପରିଶ୍ରାନ୍ତ ରବିର ମୁହଁ ପୋଛି ପକାନ୍ତି । ସୂର୍ଯ୍ୟ ଆଉ ସମ୍ଭାଳି ନ ପାରି ସେହି ପଣତ ତଳେ ମୁହଁ ଲୁଚାଇ ଦିଅନ୍ତି । ମେଘ ଝଣ୍ଟିକରେ ଗଣ୍ଠି ପକାଇ ତାଙ୍କ ମା' ତାଙ୍କ ଗଣ୍ଠିଧନକୁ ଘରକୁ ନେଇ ଯାଆନ୍ତି । ଏକ ପଲକରେ ସବୁ ବୁଜିଯାଏ । ବୈତରଣୀ, ତୋର ସେଥିପାଇଁ ଏତେ ଦୁଃଖ କାହିଁକି ମା ? ତୁ ତ ଏହିକ୍ଷଣି ହସୁଥିଲୁ । ଏହିକ୍ଷଣି କେତେ ଆନନ୍ଦରେ ଜକଜକ ହୋଇ ନାଚୁଥିଲୁ । କୁଆଡ଼େ ଗଲା ? ଏଡ଼େ ଗୃଣ୍ଡେ ସବୁ କୁଆଡ଼େ ଉଡ଼େଇ ଗଲା ? ଦଣ୍ଡକ ପୂର୍ବେ ତୋର ତୀରର ତାଳଗଛସବୁ ସୁନା ମୁକୁଟ ପିନ୍ଧି ଦକ୍ଷିଣା ପବନରେ ଦୋହଲୁଥିଲେ । ନଡ଼ିଆଗଛ, ବାଉଁଶଗଛ ମୁଣ୍ଡରେ କିଏ ହିରଣ୍ମୟ ରଙ୍ଗ ବୋଳି ଦେଇଥିଲା । ତୋର ବିସ୍ତୀର୍ଣ୍ଣ ଶୁଭ୍ର ବାଲୁକାଶଯ୍ୟାରେ କାହୁଁ ହରିତପଟଳ ସୁବର୍ଣ୍ଣପରାଗ ବିଞ୍ଛୁଡ଼ି ପଡ଼ିଥିଲା । ତୁ ନିଜେ ଅଙ୍ଗପୁଲକରେ କିଟିକି ହସି ଉଦ୍ବେଳନ କରି ହେମପ୍ରଭା ମଣ୍ଡିତ ହୋଇ ଝଲମଲ କରୁଥିଲୁ । ଏତେ ବିଷାଦ କାହିଁକି ମା ? ସୂର୍ଯ୍ୟଙ୍କୁ ତ ବିଦାୟ ଦେଲାବେଳେ ବେଶ୍ ହସ ହସ ହେଉଥିଲୁ ; ସେ ଉହାଡ଼ ହେଲା ମାତ୍ରକେ କାହିଁକି ମଉଳି ଗଲୁ ? କାଲି ସକାଳେ ତ ପୁଣି ସେ ଆସିବେ ; ପୁଣି ସେ ହସିବେ । ତୁ ହସିବୁ, ତୁ ନାଚିବୁ । ସେ ପ୍ରଥମେ ଆସି ତୋର ବିରହ-ବିଧୁର ଅଙ୍ଗ-ଯଷ୍ଟି ଅରୁଣାଧରରେ ଚୁମ୍ବନ କରିବେ । ତୁ ଏବେ ଶୋଇ ପଡ଼ ମା, ରାତିଟା ସୁଖେ ଦୁଃଖେ କଟାଇ ଦେ । ତୋତେ କ'ଣ ଜହ୍ନ ମାମୁଁ ଭଲ ଲାଗନ୍ତି ନାହିଁ ? ତୋର ଦୁଃଖ ଜାଣି ଜହ୍ନ ମାମୁଁ ଧାଇଁ ଆସୁଛନ୍ତି । ଭାଇ ଭଉଣୀ ଗପ କର, ସୁଖ ଦୁଃଖ କୁହାକୁହି ହୁଅ ।

ବାଲି ଉପରେ ନାଲି, ଧଳା କେତେ ଶାମୁକା ଜକଜକ ଦିଶୁଥାଆନ୍ତି । ଆମେ ସେହି ଶାମୁକା ସାଉଣ୍ଟିବାରେ ଲାଗିଯାଉଁ । କିଏ କେତେ ବେଶୀ ସାଉଣ୍ଟିବ ? କାହାର କେତେ ହେବ ? ସାଙ୍ଗମାନଙ୍କ ଭିତରେ ଏହିପରି ଜିଦ୍ ବସେ । ପ୍ରାଣପଣେ ଶାମୁକା ସାଉଣ୍ଟୁ । ମନେ ମନେ କେଡ଼େ ବଡ଼ ଲୋକ ହୋଇ ଯାଉଁ । ଯେତେବେଳ ଯାଏ ଶାମୁକାର କଥା ମନରେ ଅଛି, ସେତେବେଳ ଯାଏ ତାର ମୂଲ୍ୟ ; ସେତିକି ତା କଥା ଭୁଲିଗଲେ ତ ଆଉ କିଛି ନାହିଁ ! ତେବେ କାହିଁକି ଏତେ ଯତ୍ନ ? ବୃଥା ନିରର୍ଥକ ପଦାର୍ଥରେ ଏତେ ତୃଷ୍ଣା ! କ୍ଷଣକାଳ ପାଇଁ— ଘଡ଼ିକ ଲାଗି ! ହାୟ ମୁଗ୍ଧ ମୋହାନ୍ଧ ମାନବ ! ଏହିପରି ପିଲା ଭଣ୍ଡାଣିଆ ମୋହରେ ମାତି ରହିଛ । ସଂସାରରେ ଜୀବନଯାକ କେବଳ ଶାମୁକା ସାଉଣ୍ଟୁଛ ! ତେବେ ବୁଝୁ ନାହଁ, ବୁଝୁ ନାହଁ ଯେ ମନହିଁ ମୂଳ । ମନରେ କଲେ ଯେ ସ୍ୱର୍ଗ ସମ୍ପଦ, ମନରେ ନ କଲେ ପୁଣି ସେହି ପଦାର୍ଥହିଁ ନଗଣ୍ୟ, ନିରର୍ଥକ । ଜଗତଯାକ ସମସ୍ତେ ତେବେ ମୋହରି ପରି ପିଲା ! ବୁଦ୍ଧିରେ ପିଲା କିନ୍ତୁ ସରଳତାରେ ପିଲା ନୁହେଁ । ଜ୍ଞାନରେ ପିଲା, କିନ୍ତୁ ବିଶ୍ୱାସରେ ନୁହେଁ । ମୂର୍ଖତାରେ ପିଲା, କିନ୍ତୁ ଦୃଢ଼ତାରେ ନୁହେ ।

କଆବୁଦାରେ ଶିଆଳ ଭୁକିଲା ଗୋଟିଏ, ଯୋଡ଼ିଏ, ତିନୋଟା, କ୍ରମେ କ୍ରମେ ଶତ ଶତ । ସମସ୍ତେ ହାତ ତାଳି ମାରି ଦୌଡ଼ିଲୁ ; ସମସ୍ୱରରେ ଖଡେଇ ଛାଡ଼ିଲୁ—

"ହୁକେ ହୁକେ ଦହି ନାହାକେ
ନଅାଁ ରଢ଼ ଖଣ୍ଡି କାଖରେ ଯାକେ ।"

ଆମଠଉଁ ବଡ଼ ପିଲାମାନେ ସେତେବେଳେ ବାଲିରେ ଗାତ ଖୋଳି ପାଣି କାଢ଼ୁଥାଆନ୍ତି । ଥୋକାଏ ବାଲିରେ ଗୋଡ଼ ପୋତି ଶିଆଳ ଗାତ, କୁକୁର ଗଞ୍ଜା ତିଆରି କରୁଥାଆନ୍ତି । ତାଙ୍କଠଉଁ ଯେ ବଡ଼ ସେ ବାଲିରେ ଦାଣ୍ଡିଆ ବାଗୁଡ଼ି ଖେଳୁ ଥାଆନ୍ତି । ମୁରବିମାନେ ବଉଳଗଛ ମୂଳରେ ଚୌହାରି ଉପରେ ବସି ହାଓ୍ୱା ଖାଉଥାଆନ୍ତି । 'ମୁଁ କେବେ ତାଙ୍କରି ପରି ବଡ଼ ହେବି ?' ଏହି କଥା ସେତେବେଳେ ମନରେ ହେଉଥିଲା । ହାୟ, ଯଦି ମୁଁ ଜାଣି-ଥା'ନ୍ତି ବଡ଼ ହେଲେ ଏତେ ଚିନ୍ତା, ଏତେ ଭାବନା, ଏତେ ଦୁଃଖ, ଏତେ ଯନ୍ତ୍ରଣା, ତେବେ ମୁଁ କେବେ ସେ କଥାକୁ ମନରେ ବଳାଇ ଥାଆନ୍ତି ନାହିଁ । ବଡ଼ ହେଲେ ଯେ କେବଳ ଶୁଖିଲା "ହାଓ୍ୱା" ଖାଇବାକୁ ହୁଏ, ଏ କଥା ମୁଁ ଏବେ ମର୍ମେ ମର୍ମେ ବୁଝିଲିଣି । ମୋତେ ଭଲ ଥରେ କିଏ ସେ ପିଲାକାଳକୁ ଫେରାଇ ନିଅନ୍ତା ! ଝିକ୍ ମାଇଲି, ଆଉ ବଡ଼ ହେବାକୁ ମନ କରନ୍ତି ନାହିଁ ।

କ୍ରମେ କ୍ରମେ ସଞ୍ଜ ହୋଇ ଆସେ । ପ୍ରକୃତିର ଉଜ୍ଜ୍ୱଳ ଅଙ୍ଗକାନ୍ତି କ୍ରମେ ମଳିନ ହୋଇଯାଏ । ତାକୁ ମଳିନତର କରି ଦଳ ଦଳ କାଉ ରଡ଼ିଆଉଡ଼ି କରି ଆସି ମହାଦେବପୀଠ ଅଶ୍ୱତ୍ଥ ଗଛରେ ଜମାଟ ବାନ୍ଧି କା-କା-କରୁଥାଆନ୍ତି । ବାଦୁଡ଼ି ଦଳକୁ ଦଳ ବୈତରଣୀ ବକ୍ଷକୁ ଥରକୁ ଥର ସ୍ପର୍ଶ କରୁଥାଆନ୍ତି । ନଈର ଉପରେ ଛିଡ଼ା ହୋଇଥିବା ଲଙ୍ଗଳା ବାଉଁଶଗୁଡ଼ାକ ନଈଦେହରେ ପ୍ରତିବିମ୍ବିତ ହୋଇ ତାଙ୍କର ଛାଇ ଦୋହଲଉଥାଆନ୍ତି । ଲମ୍ବା ଲମ୍ବା ତାଳଗଛର ଛାଇ ନଈରେ ପଡ଼ି କଳା କଳା ଅଜଗର ପରି ଦିଶୁଥାଏ । ନଈପାଣି ଯେତେବେଳେ ହଲି ଉଠେ ଧାଡ଼ିକ ଧାଡ଼ି ଅଜଗର ଫଣା ଟେକି ଖେଳଉଠନ୍ତି । ଅମେ ମା'ଲୋ ବୋଲି କହି ପଳାଇ ଆସୁଁ । ବନ୍ଧ ଉପରେ ଛିଡ଼ା ହୋଇ ନଈକୁ କ୍ଷଣକାଳ ଅନାଇ ରହୁଁ, ଆଜି ସାରା ରାତି ଲାଗି ପ୍ରାଣର ବୈତରଣୀଠାରୁ ବିଦାୟ ନେବାକୁ ହେବ । ଏହି ସମୟରେ ନଈ ସେ ପାଖରୁ ଝାଞ୍ଜ, କରତାଳ, ଶଙ୍ଖ, ଘଣ୍ଟା ବାଜି ଉଠେ । ମୁଁ ସେତେବେଳେ ସଙ୍ଗୀତ ବୁଝୁ ନ ଥିଲି । କିନ୍ତୁ ସେ ସାନ୍ଧ୍ୟ ଆରତିର ମଧୁର ଘଣ୍ଟା-ମୃଦଙ୍ଗ-ଧ୍ୱନି ଆଜି ସୁଦ୍ଧା କାନରେ ପ୍ରତିଧ୍ୱନିତ ହେଉଛି । ସେ ମଧୁର ଶିଶୁ-ଜୀବନଟା ହିଁ ସଙ୍ଗୀତମୟ ଥିଲା । ଏବେ କଠିନ ପ୍ରାଣରେ ସେ କୋମଳ ସଙ୍ଗୀତର ଐକ୍ୟତାନ ମନରେ ପଡ଼ିଲାକ୍ଷଣି କ୍ଷଣକ ପାଇଁ ମୋର ଚିର-ହୃତ ସଙ୍ଗୀତମୟ ଜୀବନ ଫେରିଆସେ । ମୁଁ ଏବେ ଚିର ହା-ହା ମୟ ଏ ଛାର ଜୀବନକୁ ଠେଲି ଦେଇ ସେହି ଐକ୍ୟତାନକୁ କାନ ଡେରି ରହେଁ । ଏବେ ସୁଦ୍ଧା ବିମୁଗ୍ଧ ପ୍ରାଣରେ ଦୂରାଗତ ବଂଶୀଧ୍ୱନିପ୍ରାୟ ସେହି ଧ୍ୱନି ଶ୍ରବଣ କରେଁ । କିନ୍ତୁ ହାୟ, ସେଥିରେ ବର୍ତ୍ତମାନ ମାଧୁର୍ଯ୍ୟର ପ୍ରତ୍ୟକ୍ଷ ସମ୍ମୋହନ ତ ନାହିଁ ! ସେହି ସୁଦୂର ଅତୀତର ସୁଧା ପ୍ରାଣରେ ଢାଳିଦିଏ ମାତ୍ର । ଯାହା ହେଉ ସେହି ମୋହର ସୁଖ, ସେହି ମୋହର ଆନନ୍ଦ, ସେଇଥିରେହିଁ ମୋର ତୃପ୍ତି ।

ନୂଆବହୂଗୁଡ଼ିକ ମୁହଁରେ ଓଢ଼ଣା ଟାଣି ମୁହଁ ସଞ୍ଜି ଆବେଳେ ଗୋଡ଼ ହାତ ଧୋଇବାକୁ ଆସନ୍ତି । ତାଙ୍କର ଝୁମୁରୁ ଝୁମୁରୁ ମଞ୍ଜୁର ଶୁଣି ସେହି ବିଶ୍ୱ ସଙ୍ଗୀତର ମଧୁର ଝଙ୍କାର ସଙ୍ଗରେ ଧୀରେ ଧୀରେ ତାଳ ଦେଇ ଥାଆନ୍ତି । ମୁଁ ସେହି ଝୁମୁ ଝୁମୁ ଅନୁସରଣ କରି ଘରକୁ ଫେରିଆସେଁ । ଘରର ଅଗଣାରେ ଜହ୍ନ ପଡ଼ିଥାଏ । ଠାକୁର ବାଡ଼ରେ ଘଣ୍ଟ ଘଣ୍ଟ ବାଜେ । ତୁଳସୀଚଉରା ପାଖରେ ସଞ୍ଜବତି ବସେ । ଶଙ୍ଖ ବାଜେ, ଚଉରା ଚାରିପିଠି ଆମେ ସବୁ ମୁହଁରେ ଶଙ୍ଖ ବଜାଇ ଦୌଡ଼ି ବୁଲୁଁ । ଶେଷରେ ଚେକା ଚେକା ଭଉଁରି ଖେଳୁ । ବୁଲି ବୁଲି ଘୁରି ଘୁରି କଚୁଡ଼ି ପଡ଼ୁ; ଫେରେ ଉଠି ତଳି ତଳି ହାତ ମେଲାଇ ପାଟି କରି କହୁଁ—

ଚକା ଚକା ଭଉଁରି
ମାମୁଁ ଘର ଚଉଁରି

ଆଉ ସ୍ୱରୁଁ ।

କେବେ କେବେ ପାଇଜା ବୁଲିବାକୁ ଯାଉ । ସମସ୍ତଙ୍କ ବାହାରେ ଗୋଟିଏ ଗୋଟିଏ ଜହ୍ନ ଏକାହେଲେ କ'ଣ ହେବ ଆମ ଜହ୍ନ ପରି ନୁହେଁ । ଆମ ଜହ୍ନ କେତେ ବଡ଼, କେତେ, ନହଟ । ଖାଲି ରାଣୀ ପୁଷ୍ୟ ପରି ହସୁଥାଏ । ଏକାବୟସୀ ଝିଅ ପୁଅ ମିଶି ବୁଢ଼ୀମାଙ୍କୁଣୀ ଖେଳୁଁ । ଜଣେ ବଡ଼ ମଣିଷ ବୁଢ଼ୀ ମାଙ୍କୁଣୀ ହୁଏ । ପହିଲୁ ଚୋର ଠିକ୍ କରିବା ପାଇଁ ସେହି ଜଣକ ଡାଗ କୁହେ । ସେ ଡାଗରୁ ପଦେ ଲେଖାଏଁ ମନେ ଅଛି—

"ଇଞ୍ଚିଡ଼ି ମିଞ୍ଚିଡ଼ି ଧାଇଁ ଚଢ଼ ଚଢ଼
କାଇଁଶ କାକୁଡ଼ି ପିତା ନଳିତା" ଇତ୍ୟାଦି

ଆହୁରି ମଧ୍ୟ ଅଛି—

"ଅକଲ ମକଲ ଟକଲ ଟିଆଁ
ଗଣରି ନାଗର ବାଜଇ ହିଆ" ଇତ୍ୟାଦି

ଏହାର ଅର୍ଥ କ'ଣ ଏବେ ମଧ୍ୟ କିଛି ବୁଝୁ ନାହିଁ । ଆଉ କେବେ ଯେ ବୁଝିବି ବା ଆଉ କେହି ବୁଝିବ ତାହା ଅସମ୍ଭବ । କିନ୍ତୁ ଏଥିରେ ବି ଗୋଟିଏ ମୋହନ ଗୁଣ ଅଛି । ଯେତେବେଳେ

ଗୀତ ଯେତେବେଳେ ଶୁଣିଲେ ମୋତେ ବଡ଼ ଭଲ ଲାଗେ । ଜଏ ଯେପରି କି ଅନିର୍ବଚନୀୟ ମାଦକତାରେ ମନ ପ୍ରାଣ ମତାଇ ଦିଏ । କି ସୁନ୍ଦର ମଧୁର ଆବେଶରେ ଅନ୍ତରାତ୍ମା ବିମୁଗ୍ଧ ହୋଇଯାଏ ।

ଆମଠଉଁ ଅଳ୍ପ ବଡ଼ ଝିଅ ସବୁ ବୁଢ଼ୀଙ୍କଠଉଁ ବାହାଘର କାନ୍ଦଣା ଶିଖିଥାନ୍ତି । କାହାକୁ ଧରି କ'ଣ ବୋଲି କାନ୍ଦିବାକୁ ହୁଏ, କେଉଁବେଳେ କେଉଁ ଦାପିକା ଦେବାକୁ ହୁଏ, କେଉଁ କେଉଁ ଦିନ ସୁଦ୍ଧଏଁ ଗୀତ ଗାଆନ୍ତି—

"ଆସ କୋଇଲି ବଣକୁ ଯିବା,
ପଣସ ପତର ପାରି ଶୋଇବା,
ପଣସ ପତର କୁଞ୍ଜ କୁଞ୍ଜିକା,
ତହିଁରେ ଅଛି ତିନି ମଞ୍ଜିକା
ତିନି ତିନି ପଣ ଅଠର ପଣ
ଭାଇଙ୍କି ଡକାଇ କଉଡ଼ି ଗଣ ।" ଇତ୍ୟାଦି ।

ଆଉ ଗାଆନ୍ତି—

"ମେଘ ବରଷିଲ ଟପର ଟପର
କେଶରେ ମାଇଲି ଗଜା
କେଉଁ ଗାଇଜରେ ରହିଲେ ମୋ ରଜା
ତେଲଙ୍ଗି ବାଇଦ ବଜା ।

ଏ ସବୁଥିରେ କ'ଣ ଅଛି କେଜାଣି । କିନ୍ତୁ ଏହାଠାରୁ ବଳି ମଧୁର କବିତା ମୋତେ ଜଣା ନାହିଁ ପରି ଲାଗୁଛି ।

ରାତି ହୋଇଗଲେ ଭାତ ଖାଇସାରି ମାମା ପାଖରେ ଶୁଏ; ମାମା ମୋତେ ଶୁଆଇବା ପାଇଁ କେତେ ଦୁହା, କେତେ ଢଗ, କେତେ ଛିଟା, କେତେ କଥା କହନ୍ତି । ପିଠିରେ ହାତ ମାରି ମାରି କହନ୍ତି—

"ବାଇ ଚଢ଼େଇରେ ବାଇ ଚଢ଼େଇ
ବାଇଆ ଯାଇଛି ଗାଈ ଚରେଇ ।"

ତାଙ୍କ କଥାରେ ମୁଁ କେବଳ "ହୁଁ" ମାରୁଥାଏ, ଆଉ କେତେବେଳେ ଗୋଟିଏ ଗୋଟିଏ ଅପ୍ରାସଙ୍ଗିକ ପ୍ରଶ୍ନ ପଚାରିଦିଏ । ସେ ମଧ୍ୟ ଅସମ୍ଭବ ଚଟାପଟ୍ ଉତ୍ତରଟାଏ ଦିଅନ୍ତି । ସେଥିର ସତ୍ୟାସତ୍ୟ ବିଚାର ମୁଁ କରେ ନାହିଁ; କେବଳ ବିଶ୍ୱାସ କରିଯାଏଁ । ସେତେବେଳେ ଲୋକଙ୍କ କଥାରେ ଯେପରି ସରଳବିଶ୍ୱାସ, ନିଃସନ୍ଦେହ ସରଳହୃଦ, ଚରିଷ୍ଣେତଃ ପାଳୟିତ୍ରୀ କଥାରେ ଯେପରି ପ୍ରଗାଢ଼ ଅନୁରକ୍ତି ଥିଲା, ସେ ସମୟରେ ଯଦି ସନୈତିକ ଆଚରଣ, ବ୍ୟବହାର, ଈଶ୍ୱରଭକ୍ତି ପ୍ରଭୃତି ନାନା ପ୍ରକାରେ ସଦୁପଦେଶ ଦେଇ ଥାଆନ୍ତେ ତେବେ ଭବିଷ୍ୟତ ଜୀବନରେ ତାହା କେଡ଼େ କାର୍ଯ୍ୟକାରୀ ହେଉନଥାନ୍ତା । କିନ୍ତୁ ନାରୀସମାଜରେ ଉପଯୁକ୍ତ ଶିକ୍ଷାର ଅଭାବରୁ ତାହା ହୋଇ ପାରୁନାହିଁ । ବରଂ ସେ ବହୁମୂଲ୍ୟ ସମୟରେ ଶିଶୁ ଭୂତ, ବାଘ, ଚୋର କଥା ଶିଖି ହୃଦୟକୁ ଭୀତ ଏବଂ ଦୁର୍ବଳ କରିପକାଏ । ମୁଁ ଯେତେ କଥା ଶିଖିଥିଲି "ଟୁଆଁ ଟୁଇଁ" କଥାଟି ମୋ ମନରେ ଅଛି । ସେ କଥା ଏବେ ମନରେ ପଡ଼ିଲେ ଅତୀତର କଥା ଧାଡ଼ିକି ଧାଡ଼ି ମନ ମଧ୍ୟରେ ଉଦିତ ହୋଇ ଯୁଗପତ୍ ହର୍ଷ-ବିଷାଦର ଛାୟା ଉତ୍ପାଦିତ କରାଏ । କଥା ଶୁଣୁ ଶୁଣୁ ଆଖି ଲାଗିଯାଏ । ମୁଁ ମାମାଙ୍କ କୋଳରେ ଶୋଇପଡ଼େ । ଶୋଇ ଶୋଇ ଦିନଯାକର କଥା ଓ ମାମାଙ୍କଠଉଁ ଶୁଣିଥିବା କଥା ସବୁ ସ୍ୱପ୍ନରେ ଦେଖେଁ । କାହା ସଙ୍ଗରେ କଏ ମିଶେ ତା'ର ଠିକଣା ନାହିଁ । ଏହିରୂପେ କଳ୍ପିତ କମାକାର ରାଜ୍ୟରେ ବିଚରଣ କରୁଁ କରୁଁ ରାତି ପାହିଯାଏ । ରାତି ପାହିଲେ ପୁଣି ସେହି କଥା । ପୁଣି ସେହି ସୂର୍ଯ୍ୟ ଉଠେ, ଫୁଲ ଫୁଟେ, କୋଇଲି ଡାକେ, ବୈତରଣୀ ଆନନ୍ଦ ବିଭୋର ହୋଇ ନୂଆ ବେଶ ପିନ୍ଧେ । ପୁଣି ସେହି ଖେଳ, ପୁଣି ସାଙ୍ଗଙ୍କ ମେଳ । ଏହିରୂପେ ଦିନ ପରେ ଦିନ ସ୍ୱର୍ଗୀୟ ମାଧୁରୀ ମାଖି କାଳର ସରଳ ତରଳ ତରଙ୍ଗରେ ଗଡ଼ଗଡ଼ ଚାଲି ଯାଉଥାଏ । ମୋତେ ତାହାର ସାଙ୍ଗରେ ଖଣ୍ଡିଏ ସୂକ୍ଷ୍ମ ରେଶମ ସୂତାରେ ବାନ୍ଧି ଦେଉଥାଏ । ଦିନାକେତେ ଆମ ବୁଢ଼ା ଅବଧାନ ପାଖରେ ମଣ ଦେବା ପାଇଁ ଚଉପାଢ଼ୀରେ ବସିଥିଲି । ଖାଲି ଯାଇ ହାତ ଯୋଡ଼ି ଖଡ଼ି ମଣ୍ଡଳା ଭିତରେ ମୂକଟି ପରି ବସିଥାଏଁ । ଆଉ ସବୁ ଚାହାଲୀ ପିଲାଏ ପାଠ ପଢ଼ୁଥାଆନ୍ତି । ମୋତେ ବଡ଼ ବିରକ୍ତ ଲାଗେ । ମୋ ମନ ଥାଏ ନଈବାଲିରେ ବା ତୋଟାରେ । କିନ୍ତୁ ଯେଉଁଦିନଠଉଁ ଶ୍ରୀପଞ୍ଚମୀ ଗୀତ ଆରମ୍ଭ ହେଲା, ମୋତେ ଚାହାଲୀ ଭଲ ଲାଗିଲା । ସେସବୁ ଗୀତ ମୁଁ ବୋଲେ ନାହିଁ କିମ୍ବା ସେଥିରୁ କିଛି ବୁଝେ ନାହିଁ । କିନ୍ତୁ ସେ ସ୍ୱର ଦେହରେ କେଜାଣି କ'ଣ ଥାଏ, ମୋତେ ବଡ଼ ଆନନ୍ଦ ଲାଗେ । ମୁଁ ବରାବର ଏକାଗ୍ର ଚିତ୍ତରେ ସେଥିକି କାନ ଡେରି ଦେଇଥାଏ । ଶ୍ରୀପଞ୍ଚମୀ ପୂଜା କଥା ଟିକିଏ ଟିକିଏ ମନରେ ପଡ଼ୁଛି । ନଡ଼ିଆ ପିଠା, ପୁଷ୍ପାଞ୍ଜଳି, ଚିନି ନଡ଼ିଆ, ପାଣି ଭିତରେ ଗୁଆ-ବେତ-ନଡ଼ିଆ ଦରାଣ୍ଡିବା ଇତ୍ୟାଦି ମୋର ସ୍ମରଣ ହେଉଅଛି । ଆଉ ସ୍ମରଣ ହେଉଛି କପରି ସମସ୍ତେ ଭଲ ଲୁଗାପଟା ପିନ୍ଧି ଅବଧାନଙ୍କ ସାଙ୍ଗରେ ଘରକୁ ଘର "ବନ୍ଦଇ ହରି ଦେବ ମୁରାରି" "କଳାକଳେବର କହ୍ନାଇ" ପ୍ରଭୃତି ଗୀତ ଗାଇ ମାଗଣ କରିବାକୁ ଯାଇଥିଲୁଁ । ସଞ୍ଜବେଳେ ଅବଧାନଙ୍କ ପାଖରେ ଧାଡ଼ିଏ ଲେଖାଏଁ

ବସୁଁ । ଅବଧାନେ ପଦେ ଲେଖାଏଁ ଗୀତ କହନ୍ତି । ସମସ୍ତେ ପଛରେ ସମସ୍ୱରରେ କହୁଁ ।

"ନଦୀ କନାରେ ବଗଲ ବୈଠେ ଚୂନ୍ ଚୂନ୍ ମଛଲି ଖାୟ,
ଶିଙ୍ଗି ମଛଲି କଣ୍ଟା ମାରେ ତଡ଼ାକ୍ ତଡ଼ାକ୍ ଜାନ ଯାୟ" ।

ଆଉ—

"ପଢ଼ିଲେ ଶୁଣିଲେ ଦୁଧ ଭାତ
ନ ପଢ଼ିଲେ ଠେଙ୍ଗା ନାଥ" ଇତ୍ୟାଦି

ଏହା କହି "ଜ୍ଞାନ ଦାସ"କୁ ଭୁଲିରେ କରୁଥିନ୍ତି ।

ମାମୁଁଘର ଗାଁରେ ଭାରି ଦୋଳ ହୁଏ । ସାତ ଗାଁରୁ ସାତ ଠାକୁର ଆସନ୍ତି । ଧାଡ଼ିକି ଧାଡ଼ି ବିମାନ ବସେ । ଆମ ଠାକୁରଙ୍କ ସହିତ ଭେଟାଭେଟି କରି ଭୋଗରାଗ ଖାଇ ତାଙ୍କ ଘରକୁ ଫେରି-ଯାଆନ୍ତି । ଲୋକେ ସବୁ ଫଗୁ ରଙ୍ଗ ପାଣିରେ ଲାଲେଲାଲ ହୋଇଥାଆନ୍ତି । ସମସ୍ତେ ସମସ୍ତଙ୍କ ମୁହଁକୁ ଅବିର ଫିଙ୍ଗନ୍ତି, ପିଚକାରି ମାରନ୍ତି— ଆମେ ପିଲା; ଆମକୁ କେହି ପଚାରନ୍ତି ନାହିଁ । ଆମର ଏକା ଭାରି ମନ ହୁଏ । ଆମେ କ'ଣ କରୁ ନା ଭୁଇଁରେ ପଡ଼ିଥିବା ଅବିର ଥୋଡ଼ା ଚୂପ୍ କରି ଟୋଳି ନେଇ ନିଜ ମୁହଁରେ ବୋଳିଦେଉଁ, କମ୍ବା ସାଙ୍ଗଙ୍କ ଭିତରେ ବିଗୁରି କରି ଯେ ଯାହା ମୁହଁରେ ପରସ୍ପରର ବୋଳି ହେଉଁ ।

ସବୁଠୁଁ ରଜଟା ବେଶୀ ମଜା । ରଜ ପନ୍ଦର ଦିନ ଥାଉଁ ଝିଅଙ୍କୁ ନିଦ ହେଉ ନ ଥିବ । ଟୋକାଏ ତାସ, ପଶା, ବାଗୁଡ଼ି, ଦାଣ୍ଡିଆର ଆଖଡ଼ା ଆରମ୍ଭ କରିବେ । ଆଗଦିନ 'ସଜବାଜ' । ସେ ଦିନ ସବୁ ଯୋଗାଡ଼ିହେବ, ପିଠା ପଣା, କାମ ଦାମ, ସରିଥିବ । ଝିଏ କଦଳୀ ପଟୁଆ ଗୋଡ଼ରେ ବାନ୍ଧି ବସିବେ । ବହୁଏ ହଳଦି ଲଗେଇ ନୂଆ ଲୁଗା ପିନ୍ଧି ଗହଣା ନାଇ ବସିବେ । ଝିଅଙ୍କର "କଉଡ଼ି କସି", ତାସ, ପଶାର ଧୂମ ଲାଗିବ । ପୁଏ ସକାଳୁ ଗାଧୋଇପଡ଼ି ପେଟେ ପେଟେ ପିଠା ଆମ୍ବିଲ ଖାଇ ଆଡ୍ଡା ଜମକାଇ ଦେବେ । ଘଡ଼ିକି ଘଡ଼ି ଥାଳିଏ ଲେଖାଁଏ ପାନ ଗୁଲି-ଆସୁଥିବ । ବେଳ ବୁଡ଼ିଲେ ଲାଗିବ ବାଗୁଡ଼ି ଖେଳ । ଝିଅମାନେ ଦୋଳି ଲଗାଇ ଝୁଲୁଥିବେ, ଆଉ ଗାଉଥିବେ—

"ମୋ ଭାଇ ମୁଣ୍ଡରେ ସୁନା ମୁକୁଟ
ଦିଶୁଥାଇ ଝଟଝଟ"

ଆଦ୍ରର ଗାଆନ୍ତି—

"ଗବ ଗଛ ଗୁରି କେନା
ଶାରଧା ବାଳକ ଅନାଇ ଦେଲି କି ନାମା ଦେଲି
ତିନି ରଥେ ତିନି ବାନା,
ଯା ବୂଲି ଯାରେ --

ଆମେ ତ କାହାରି ସାଙ୍ଗରେ ମିଶିପାରୁ ନାହିଁ, ଝିଅଙ୍କ ପାଖରେ ଥାଉଁ । ଆଉ ଏ ଘର ତା ଘର ବୁଲି ବୁଲି ପିଠା ଖାଉଁ । ଦି'ପହର ବେଳେ ସାନ ସାନ ଆମ୍ବଗଛ ଖତ ଗାତରୁ ଉପାଡ଼ି ନେଇ ତା ଟାକୁଆ ଛଡ଼େଇ କାନ୍ଥରେ ଘୋରି ପେଙ୍କାଳି ତିଆରି କରୁଁ । ଟାକୁଆ ଘୋରିଲା ବେଳେ ମନ୍ତ୍ର ପଢ଼ା ହେଉଥାଏ—

"ହାଙ୍ଗି ନେ ଘୋଡ଼ା ନେ
ମୋ ପେଙ୍କାଳି ବଜେଇ ଦେ"

ରଜବେଳେ ପ୍ରାୟ କାଉଁଳିଆ କରେ । ଆମକୁ କାଉଁଳିଆ ଭଲ ଲାଗେ ନାହିଁ । ଆମେ ପାଟିକରି ଯାଇ କହୁଁ—

"ଖରା ମା ଖରେଇ ଦେ
ଚନ୍ଦନ ପେଡ଼ି ଘୂରେଇ ଦେ"

ରଜ ତିନି ଦିନ ଯାକ ଜମେଇ । ମୂଲିଆ, ଘାଆନ୍ତି, ଦୁଃଖୀ, ରଙ୍ଗୀ, ଧୋବା, ଭଣ୍ଡାରୀ ସମସ୍ତେ ଆପଣା ଆପଣା ପାଇଁ ଗୁଡ଼ି ମଉଜରେ ଲାଗନ୍ତି । ରଜ ତିନି ଦିନ ବାଦ ଗଲା ପାହିଲେ ସମସ୍ତେ ଗୋଟିଏ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ପୁଣି ଆପଣା ଆପଣା କାମରେ ଲାଗନ୍ତି । ଆମର କିନ୍ତୁ ସବୁଦିନେ ରଜ ଜମେଇ । କିଛି ଚିନ୍ତାଦିକ ଥାଏ ନାହିଁ; ସବୁଦିନେ ଆନନ୍ଦ । ହାୟ, ସେ ନିଶ୍ଚିନ୍ତତା କୁଆଡ଼େ ଗଲା । ନାନା ଜ୍ୱାଳା ଯନ୍ତ୍ରଣାରେ ଶରୀର ଜର୍ଜରିତ ହେଲାଣି, ମନ ପୋଡ଼ି ଗଲାଣି, କ୍ଲିଷ୍ଟ କ୍ଷୀଣ ହୋଇ କେବଳ ପରମାତ୍ମା ଡାକ ଡାକି ତଣ୍ଟି ଫାଟି ଗଲାଣି । କେହି ଶୁଣିବାକୁ ନାହିଁ । ହାୟ, ଜଗଦ୍-ବନ୍ଧୁ ! ଏ ଆରତର ଡାକ କି ଶୁଣିବ ନାହିଁ । କରୁଣାସିନ୍ଧୁ, ଏ ପାତକୀ ପ୍ରତି କି ଦୟା ହେବ ନାହିଁ ? ବରଷା ଦିନେ ନଈ ବଢ଼େ । ବୈତରଣୀର ସ୍ୱଚ୍ଛ ନୀର ଆବିଳ ହୋଇଯାଏ । ରଙ୍ଗୁଆ ପାହାଡ଼ ପାଣିରେ ଆଉ ତୀରବନ ପ୍ରତିବିମ୍ବିତ ହୁଏ ନାହିଁ । ସ୍ୱଚ୍ଛତୋୟା କ୍ଷୀଣାଙ୍ଗୀ ବୈତରଣୀ ଭୀଷଣତାରେ ଆବୃତ ହୋଇ ଦୁଇ କୂଳ ଖାଉଥାଏ । ମାହାର ଭଙ୍ଗି—ଘୁ-ଘୁ-ପାଣି ଗୁଲେ । ସାପ, ବିଛା, ବେଙ୍ଗ ପ୍ରାଣ ବିକଳରେ ଖଣ୍ଡିଏ କାଠ ଉପରେ ଆଶ୍ରୟ ନେଇ ଭାସି ଆସନ୍ତି । କେଉଟ ମଞ୍ଜା ବାନ୍ଧି ଇଲଶୀ ଧରୁଥାନ୍ତି ।

ଗାଁର ବଡ଼ ଟୋକାଏ ଗାଧୁଆବେଳେ ଦଳ ବାନ୍ଧି ପହଁରନ୍ତି । ବେଳଉଳି ଡଙ୍ଗା ଚଢ଼ନ୍ତି । ଆମେ ସବୁ କୂଳରେ ଥାଇ ଅନେଇ-ଥାଉଁ । ବେଳେବେଳେ ମେଘ ବରଷୁଁ ବରଷୁଁ ପାଣି ଝରି ଦେଖାଇ ହୁଏ । ସେତେବେଳେ ସମସ୍ତେ ତାଳି ମାରି ନାଚି ନାଚି ଗୀତ ଗାଉ—

"ଖରା ହେଉଛି ମେଘ ହେଉଛି
ଶିଆଳ ପୁଅ ବାହା ହଉଛି ।"

ବଡ଼ ବଡ଼ି ମାଡ଼ ଆସିଲେ ଆମ ଗାଁ ଭିତରକୁ ପାଣି ପଶେ । କେହି କାହା ଘରକୁ ଯାଇ ପାରନ୍ତି ନାହିଁ । ଦାଣ୍ଡରେ ପାଣି ବାଡ଼ରେ ପାଣି । ଯୁଆଡ଼େ ଚାହିଁଲେ ଖାଲି ଜଳମୟ ।

ଶରତ୍ ଆଗମରେ ପାଣି ଶୁଖିଯାଏ । ବୈତରଣୀ ପୁଣି ନିଜର କମନୀୟ କାନ୍ତି ଧରେ । ତାଣ୍ଡବ ଗର୍ଜନ ଛାଡ଼ି ପୁଣି ମଧୁର ନୃତ୍ୟ କରେ, ପୁଣି ମଧୁର ହସ ହସେ । ପୁଣି ବୈତରଣୀର ମଧୁର ସଙ୍ଗୀତ ସ୍ବର ତୀର ତୋଟା ମୁଖରିତ କରେ । ସବୁଠାରୁ ଏକା କୁଆଁର ପୁନେଇଟି ମୋତେ ଭଲ ଲାଗେ । ଝିଅ ସବୁ ଦଳକୁ ଦଳ ବାନ୍ଧି ରାତି ଉଜାଗର ହୁଅନ୍ତି । କେତେ ନାଚ, କେତେ ଗୀତ, ଚନ୍ଦ୍ରାଉପର ଗୀତ ଗାଆନ୍ତି—"କୁଆଁର ପୁନେଇ ଜହ୍ନ ଗୋ ବୋଲେ ହୁଁ ଗୋ" । ଆଉ "ଫୁଲ ବଉଳ ବେଣୀ" ଗୀତ, ଚଉତିଶା, ଛାନ୍ଦ ଯେ ବାଦ ପଡ଼େ ତାହା ନୁହେଁ । କି ସୁନ୍ଦର କଳି ମଧୁର ଫୁଲରେ ଘର କରନ୍ତି । ଚନ୍ଦ୍ରପୂଜା କରନ୍ତି, ଚନ୍ଦ୍ର ପରି ବର ପାଇବେ ବୋଲି । ଗୃହେ ଗୃହେ ଭୋଗ ଦିଅନ୍ତି କାଳେ ଜହ୍ନ ବୁଢ଼ା ହୋଇ ଯିବ । ପୁନେଇ ଆଗ ଦିନ "ବଡ଼ଘର" ଭୋଗରାଗ ବନ୍ଦାକୁଣ୍ଠା ହୁଏ । ପୁନେଇ ଦିନ "ଚାନ୍ଦ" ହୁଏ, ଖଇ, ନଡ଼ିଆ, ତାଳଗଜା ଚକଟି ଦିଅନ୍ତି । ଆମେ ସବୁ ନୂଆ ଲୁଗା ପିନ୍ଧୁଁ । ଝିଅ ସବୁ ହଳଦିଆ ଲୁଗା ପିନ୍ଧି, ଗହଣା ନାଇ, ଚନ୍ଦନପାଟି ଦେଇ ଆମକୁ ଅର୍ଘ୍ୟ ଥାଳିରେ ବନ୍ଦାନ୍ତି । ଏବେ କୁମାର ପୂର୍ଣ୍ଣିମାର ଉତ୍ସବରେ ମୋର ଆଉ କିଛି ନାହିଁ । ଏବେ ଆଉ ଝିଅ ଚଉଁରୁ ନାହାନ୍ତି ।

ମାମୁଁଘର, ତୋ ଠାରୁ ସୁନ୍ଦର, ମନୋରମ ସ୍ଥାନ କ'ଣ ଆଉ କେଉଁଠି ନାହିଁ ? କାହିଁକି ? ତୋ ଦେହରେ କ'ଣ ଅଛି ? କି ଆକର୍ଷଣ ତୁ ଲୁଚାଇ ରଖିଛୁ ? ତୋ ପରି ସ୍ନେହ ଶରଧା କ'ଣ ଆଉ କେହି ଦେଖାଇ ପାରିବେ ନାହିଁ ? ଏ ସମସ୍ତ ଆକର୍ଷଣର କେନ୍ଦ୍ର ଏକା ଜଣେ ; ସେ—ମାଇଁ । କିନ୍ତୁ ହାୟ, ହୃଦ ଫାଟି ଯାଉଛି—"ସେ ସୁଖର ମୁହିଁ ନୁହଇ ଭାଜନ" । ମୁଁ ହତଭାଗ୍ୟ, ମୋ ପାଇଁ କାହିଁକି ସେ ରହିବାକୁ ଯିବେ ? ମୁଁ କେତେ ଆଶା କରିଥିଲି ସଂସାର କୋଳାହଳରୁ ପଳାଇ ଆସି ତୁମ୍ଭର ଶାନ୍ତିମୟ କୋଳରେ ଆଶ୍ରୟ ନେବି ।

"ମାନି ପରିଣାମେ ଛାୟା ବାଜିବତ
ଆଶାରେ ସେ ଆଶା ହେଲା ପରିଣତ"

ମୁଁ ଆସି ତୁମ୍ଭର ଶୂନ୍ୟ ଗୃହ ଦେଖିଲି । ଦେଖିଲି ତୁମ୍ଭର ପ୍ରିୟ ହାଣ୍ଡିଶାଳ ଖାଲି ଦିଶୁଛି । ତୁମ୍ଭର ଗମ୍ଭିରୀ ଖାଇ ଗୋଡ଼ାଉଛି । ମୁଁ ସ୍ନେହକପାଳିଆ, ମୋ ପାଇଁ ତୁମ୍ଭେ ନ ରହିଲେ ତ ନାହିଁ ପଛକେ, ଜଗନ୍ନାଥ ପାଇଁ ଟିକିଏ ମନ ଗୁଡ଼ାଇ ହେଲ ନାହିଁ ? ହଁ ହଁ, ବୁଝିଲି ; ମା'ର ସାନ ପୁଅକୁ ବେଶୀ ମୁଆଁସ । ତମେ ପରା ମଥୁରକୁ ସାଙ୍ଗରେ ନେଇ ଗଲ, ଥରେ ଚାହିଁଲ ନାହିଁ ! ଥରେ ପିଲା ଗୁଡ଼ିକର ମୁହଁକୁ ଅନାଇଲ ନାହିଁ ! ! ଥରେ ମାମୁଁଙ୍କର ହୃଦୟ ଅଭ୍ୟନ୍ତରକୁ ଦୃଷ୍ଟି ନିକ୍ଷେପ କଲ ନାହିଁ !!! ତାଙ୍କର ହୃଦୟ କ୍ଷତ ବିକ୍ଷତ କରି ଚାଲିଗଲ ! ପଞ୍ଜୁରୀ କଣା କରି ଉଡ଼ିଗଲ ।



# କୈଶୋର ସ୍ୱପ୍ନ

ସେ ମୋ ଜୀବନର ଏକ ସନ୍ଧିସ୍ଥଳ, ଯେଉଁଦିନ ଶୈଶବର ଚନ୍ଦ୍ରାସ୍ନାନ, ଦିବସ୍ନାନ, ଧୂଳି ଖେଳ ଛାଡ଼ି ପାଠ ପଢ଼ିବା ପାଇଁ ସହରକୁ ଗଲି । ବେଶ୍ ମନେ ଅଛି କେତେ ଗ୍ରାମ, ନଦୀ, ବିଲ, ଖାଲ ପାରି ହୋଇ; ଧାନକ୍ଷେତ, ତାଳଖୁଣ୍ଟ, ଶଙ୍ଖଚିଲ, କାଣ୍ଠିବଗ ପକ୍ଷୀ ଆଦି କେତେ ପ୍ରକାର ନୂଆ ଦୃଶ୍ୟ ଦେଖୁଁ ଦେଖୁଁ ପିତାଙ୍କ ସହିତ ଶିବିକା ଆରୋହଣରେ ଯାଇ ବାଲେଶ୍ୱରଠାରେ ଉପସ୍ଥିତ ହେଲି । ସେତେବେଳେ କ'ଣ ଭାବୁଥିଲି କେଜାଣି, କିନ୍ତୁ ଏତିକି ମନେ ଅଛି ଯେ ହୃଦୟ କି ଅଜ୍ଞାତ ଆନନ୍ଦରେ ଅଧୀର ହେଉଥିଲା । ସେ କାଳର ସ୍ମୃତି ଆଜି ସୁଦ୍ଧା ଚିତ୍ତ ଅଥୟ କରିଦେଉଛି ।

ବାଲେଶ୍ୱରରେ ବାପାଙ୍କ ମାମୁଁଘର । ଆଈ ମା'ଙ୍କ ପାଖରେ ରହିଲି । ସେ ଘରେ ମୋର ଅଂଶୀଦାର ହେବାକୁ ବା ମୋ ପ୍ରାପ୍ୟ ସ୍ନେହ ଆଦରରେ ଭାଗ ଦାବି କରିବାକୁ ଅନ୍ୟ କେହି ପିଲା ନ ଥିଲେ । ସେଠାକାର ବଡ଼ ବଡ଼ ପକ୍କା କୋଠା, ଗାଡ଼ି ଘୋଡ଼ା ଦେଖି ମୋର ମନ ଭୁଲିଗଲା । କେବଳ ଯେଉଁ ଦିନ ପଶ୍ଚିମାକାଶରେ ଆରକ୍ତିମ ପ୍ରଦୋଷଶୋଭା ଦେଖି ପକାଉଥିଲି ସେହିଦିନ ମଧ୍ୟ ମାମୁଁଘରର କ୍ଷୀଣ ସ୍ମୃତି ପ୍ରାଣକୁ ଆଲୋଡ଼ିତ କରି ଦେଉଥିଲା । ଆଈମାଙ୍କ ସ୍ନେହରେ କିଛି ଅଭାବ ମାଲୁମ ହେଲା ନାହିଁ, ଦେଖୁଁ ଦେଖୁଁ ସେହି ଘରକୁ 'ଆମଘର' ବୋଲି ମଣିଗଲି । ସେ ସରଳତା ଆଜି ମୋର ଗଲା କୁଆଡ଼େ ? କି ସୁଖର ସମୟ ଥିଲା ସେ ! କି ଆନନ୍ଦର ଦିନ ଥିଲା ସେ !

ତାଙ୍କର ବଡ଼ ଘରର ଉପଯୋଗୀ ବାର ପୂଜା ତେର ପାର୍ବଣ ବର୍ଷଯାକ ଲାଗି ରହିଥାଏ । ସେଥିରେ ଦୋଳ ଓ ଚନ୍ଦନ ଯାତ୍ରା ପ୍ରଧାନ । ଯାତ୍ରା ଲୀଳା ଦେଖିବାରେ ମୋର ଭାରି ମନ । ରାତିଯାକ ଉଜାଗର ହୋଇ ଯାତ୍ରା ଦେଖେ । ଦୁଆରୀ ସାଙ୍ଗରେ ହସି ହସି ଗଡ଼ିଯାଏଁ । ଧ୍ରୁବ ପ୍ରହ୍ଲାଦଙ୍କ ସହିତରେ ଅଶ୍ରୁ ବର୍ଷଣ କରେଁ । ନଳ, ହରିଶ୍ଚନ୍ଦ୍ରଙ୍କ ଲାଗି ସହାନୁଭୂତିରେ ହୃଦୟ ଫାଟିଯାଏ । ସେତେବେଳେ ଭାବୁଥାଏଁ କି ଏମାନେ ପ୍ରକୃତରେ ସେହି ସବୁ ବ୍ୟକ୍ତି । ଯାତ୍ରାବାଲାଙ୍କୁ ମୁଁ ଭାବେ ଯେ ଏମାନେ କେଡ଼େ ଭାଗ୍ୟବାନ, କେଡ଼େ ସୁଖୀ । ମୁଁ ଏହିମାନଙ୍କ ସାଙ୍ଗରେ ଜଣେ ହୋଇ ଥାଆନ୍ତି କି ! ବଙ୍ଗଳା ଯାତ୍ରା ହେଲାଦିନ ଝାଡ଼, ଲଣ୍ଠନ, ଗ୍ୟାସ ଆଦି ପ୍ରଚୁର ପରିମାଣରେ ସଜା ହୁଏ । ପାନ ଅତର ଗୋଲାପ ବଣ୍ଟାଯାଏ । ତହିଁ ମଧ୍ୟରେ ଭୀମ, ଅର୍ଜୁନ ପ୍ରଭୃତିଙ୍କର ତର୍ଜନ ଗର୍ଜନ; କର୍ଣ୍ଣ, ବୃଷକେତୁ ପ୍ରଭୃତିଙ୍କର କରୁଣ ରସର ଅଭିନୟ ଦେଖୁଁ ଦେଖୁଁ ମନ ମଧ୍ୟରେ କେତେ ପ୍ରକାର ଭାବର ତରଙ୍ଗ ଉଠୁଥାଏ, ପଡ଼ୁଥାଏ । ଆଜି ତାହା ସ୍ୱପ୍ନ ପରି ଲାଗୁଛି । ବଡ଼ ବଡ଼ ବାବୁଭାୟାମାନେ ଅବିର ଖେଳନ୍ତି । ରଙ୍ଗପାଣିରେ ପିଚକାରୀ ମରାମରି ହୁଅନ୍ତି । ମନ ହେଉଥାଏ ଆମକୁ ଟିକିଏ ପକାନ୍ତେ ଭଲ ! ନୋହିଲା ବେଳକୁ ଲୁଚି ଲୁଚି ବିଛଣା ଉପରୁ ମେଞ୍ଚାଏ ଅବିର ଗୋଟେଇ ମୁଣ୍ଡରେ ଲେପିଦେଉଁ । ରଙ୍ଗ-ପାଣିରୁ ଚଳାଏ ଧରି ଜାମାରେ ଲଗାଇ ଦେଉଁ । ଏ କଥାଯାକ ହେଉଥାଏ ଅତି ସନ୍ତର୍ପଣରେ, ସମସ୍ତଙ୍କର ଅଲକ୍ଷିତରେ । କାଳେ କିଏ ଦେଖି ପକାଇବ ! ସେ ଦିନ କୁଆଡ଼େ ଗଲାଣି !!

ଚନ୍ଦନ ଯାତ୍ରା ହେବାର ୧୫ ଦିନ ପୂର୍ବରୁ ସାଜସଜ୍ଜା ଆରମ୍ଭ ହୁଏ । ସେହି ଦିନଠାରୁ ଅତି ପ୍ରିୟ ଉତ୍ସବର ଦିନ ଆସୁଛି ବୋଲି ମନ ଅସ୍ଥିର ହେଉଥାଏ । ଏକ ପ୍ରକାର ଆହାର ନିଦ୍ରା ବନ୍ଦ ହୋଇଯାଏ । ଯେଉଁ ଦିନ ଠାକୁର ବାହାରନ୍ତି, ସେ ବାଜା ଶବ୍ଦ କାନରେ ପଶିଲାକ୍ଷଣି ଛାତି ଫୁଲି ଉଠେ, ଲୋମ ଟାଙ୍କୁରି ଉଠେ । ଓଃ, ସେ କି ଉଲ୍ଲାସ, କି ଆବେଗ ! ନାବରେ ଚଢ଼ିଲାବେଳେ ମନେ ହୁଏ ଏହାହିଁ ସ୍ୱର୍ଗ । ସମସ୍ତଙ୍କଠାରୁ ଯାତ୍ରା ଖରଚ ଆଣି ମନେ ମନେ ସେ ଦିନ କେଡ଼େ ବଡ଼ ଲୋକ ହୋଇଯାଉଁ । ଗୋଟିଏ ଦୋକାନରୁ ଚନାଚୁର, ଅନ୍ୟଠାରୁ ଛେନାବଡ଼ା, ଆଉ କୋଉଠୁ ପିପରମେଣ୍ଟ ଲାଲ ମିଠାଇ, କେଉଁଠାରୁ ଘୋଡ଼ା ବାଳରେ ତିଆରି ହୋଇଥିବା ବେଙ୍ଗ, କେଉଁଠାରୁ ରସ ପିଆଁ କାଳି, କାହିଁ ବା ମାଟି ଖଞ୍ଜଣି ( ଡାବା ) କିଣୁଁ କିଣୁଁ ଏ ପାଖରୁ ସେ ପାଖ ବୁଲୁଥାଉଁ । ଏବେ ସେହି ଉତ୍ସବ ଅଛି । କିନ୍ତୁ ପ୍ରାଣରେ ସେ ଉତ୍ଫୁଲ୍ଲତା ନାହିଁ । ଆଉ ଷଣ୍ଢ ଲଢ଼ାଇ, ଅସୁର ନାଟ, ବାବାଜୀ ସୁଆଙ୍ଗ ସେପରି ଆନନ୍ଦ ଦେଇ ପାରିବ ନାହିଁ । ବୟସ ସାଙ୍ଗେ ସାଙ୍ଗେ ପ୍ରାଣ ଭିତରୁ ସେ ଉତ୍ସବର ଆନନ୍ଦ ଉଭେଇ ଚାଲି ଯାଇଛି । ସେ ଉଲ୍ଲାସର ଚନ୍ଦ୍ର-ଉଦିଆ ଲିଭି ଯାଇଛି—ଚିରଦିନ ପାଇଁ ।

କିଛି କାଳ ମାଷ୍ଟରଙ୍କ ପାଖରେ ପାଠ ପଢ଼ିଥିଲି । ସକାଳେ ସିଲଟ ଲେଖା ଓ ବେଳଓଳି ବହି ପଢ଼ା । ଐ-କାର ପାଠରେ ଯେତେବେଳେ ସ୍ୱର ଧରି ପାଟି କରି ପଢ଼େଁ— ବୈ-ତ-ର-ଣୀ- ମୋ ଛାତି ଭିତରେ କ'ଣ ହୋଇଯାଏ । ସକାଳେ ଲିଭି ଲିଭି

ଆସୁଥିବା ରାତିର ସ୍ୱପ୍ନ ଭଳି ମାମୁଁଘରର ମଧୁର ସ୍ମୃତି ଜାଗି ଉଠି ମୋର କୋମଳ ପ୍ରାଣକୁ ଆତୁର କରି ପକାଏ ।

କେତେ ଦିନ ପରେ ବଡ଼ ଇସ୍କୁଲରେ ପଢ଼ିବାକୁ ଗଲି । ସ୍କୁଲ ଅନେକ ବାଟ । ଯିବାବେଳେ ସେ ଯାହାର ସୁବିଧାରେ ଚାଲି ଯାଆନ୍ତି; କିନ୍ତୁ ଛୁଟି ହେଲେ ସେ ଅଞ୍ଚଳର ପିଲାଏ ଏକ ସାଙ୍ଗରେ ମେଳ ବାନ୍ଧି ଆସନ୍ତି । ଠିକ୍ ଧାଡ଼ିକ ଧାଡ଼ି ହୋଇ ସଡ଼କର ଏ ପାଖରୁ ସେ ପାଖଯାଏ ଲାଗିଥାନ୍ତି । ଆଗେ ଉଚ୍ଚ ଶ୍ରେଣୀର ବଡ଼ ବଡ଼ ଟୋକା, ତା' ପଛକୁ ସାନ ପିଲେ । ଷ୍ଟିମାର ପଛରେ ଡଙ୍ଗି ବନ୍ଧା ହେଲା ପରି ଆମେ ସବୁ ତାଙ୍କ ପଛେ ପଛେ ଗୋଡ଼ାଉଥାଉଁ । ଉଚ୍ଚ କ୍ଲାସର ପିଲା ବୋଲି ତାଙ୍କ ସଙ୍ଗରେ ଗେହ୍ଲାବସର ହେବା କି ତାଙ୍କ ମୁନାବିଲରେ ହସିବା ଆମକୁ ବାରଣ । ନୋହିଲେ କାନ ମୋଡ଼ ଠୋ ଠୋ ଦୁଇ ବିଧୁଡ଼ା କେହି ହେଲେ ଲଗାଇ ଦେବେ । ଏ ସ୍ୱାଧୀନତା ଓ ସମଭାବର ଯୁଗରେ ଆଜିକାଲି ଏ କଥା କହିଲେ ପିଲେ ହସିବେ ।

ଖରା ଦିନେ ସକାଳିଆ ସ୍କୁଲ ହୁଏ । ଅନ୍ଧାର ଥାଉଁ ଥାଉଁ ଉଠି ସ୍କୁଲକୁ ଦୌଡ଼ୁଁ । ବାଟରେ କରଞ୍ଜଫୁଲ ସବୁ ଗଛତଳେ ବିଛଣା ହେଲା ପରି ପଡ଼ିଥାଏ । ଆଜି ସୁଦ୍ଧା ସେ କଥା ଭାବିଲାକ୍ଷଣି ସେ କାଳର ଚିତ୍ର ଆଖି ଆଗରେ ଦିଶି ଯାଉଛି—ସେ ସୁଗନ୍ଧ ନାକରେ ବାଜି ଯାଉଛି । ଯଦି କେହି ସାଙ୍ଗ ହୁଅନ୍ତି ତେବେ ଛତା ବେଣ୍ଟରେ ବାଟ ଗଛରୁ ଆମ୍ବ କସି ଭାଙ୍ଗି ଖାଇ ଖାଇକା ଚାଲୁଥାଉଁ । କୃଷ୍ଣଚୂଡ଼ା ଫୁଲ ସେହି ସମୟରେ ଫୁଟି ଗଛଯାକ ନାଲି ଗୁଲାଲ ହୋଇଯାଏ । ଗଛରେ ଚଢ଼ି ଫୁଲ ପାରିବାକୁ ଭାରି ମନ ହୁଏ । ଅବ୍‌ଶୋଷ ଲାଗେ ଆମେ ବଡ଼ ମଣିଷ ନ ହେଲୁଁ କାହିଁକି ? ଏହିପରି କେତେ କେତେ କଥାରେ ବଡ଼ିଯିବା ପାଇଁ ମନ ବଳେ, ପିଲା ବୋଲି ଲାଜ ମାଡ଼େ । ବୟସ୍କ ବ୍ୟକ୍ତି ଦେଖି କେତେ ହିଂସା ହୁଏ । ଏବେ କି କେହି 'ବୟସ କେତେ' ବୋଲି ପଚାରିଲେ ଇଚ୍ଛା ହେଉଥାଏ କି ବେଶୀ ବୟସ ବୋଲି କହି ଦିଅନ୍ତି ପରା ! ଜନ୍ମ-ନକ୍ଷତ୍ର ଦିନ ମନ କେତେ ଖୁସି ହେଉଥିଲା ଯେ ଆଜିଠାରୁ ଅଧିକ ବରଷେ କହି ପାରିବି । ସେତେବେଳକାର ଧାରଣା ଥିଲା କି ଯେତେ ବୟସ ବେଶି ହେବ, ଖାତିର ସେତେ ବଢ଼ିବ । କିନ୍ତୁ ଏବେ କାହିଁ ତାହା ତ ହେଉ ନାହିଁ ? ବରଂ ବରଷେ ପାରି ହେଲା ବେଳକୁ ମନେ ହେଉଛି, ଶେଷର ଦିନ ନିକଟେଇ ଆସିଲା, ସଂସାରରେ ରହିବାର ମିଆଦ ସମୟରୁ ବରଷେ କଟିଗଲା । ସେ କାଳରେ ଯେତିକି ବର୍ଷ ଆଗେଇ ଯିବା ପାଇଁ ମନ ହେଉଥିଲା, ଏବେ ମନ ଡାକୁଛି ସେତିକି ପଛେଇ ଯାଆନ୍ତା କି ! ହାୟ ହାୟ, ତେତେ-ବେଳେ କିଏ ଜାଣିଥିଲା ବଡ଼ ହେଲେ ଏତେ ବିପଦ, ଏତେ ହଇରାଣ, ଏତେ ଦାୟିତ୍ୱ, ଏତେ ହଟହଟା ।

ବର୍ଷାଦିନେ ପ୍ରତିଦିନ ମନେ ହୁଏ ଠିକ୍ ସ୍କୁଲ ଯିବାବେଳକୁ ବର୍ଷା ହୁଅନ୍ତା କି । ତେବେ ଗଲେ ସ୍କୁଲ ଛୁଟି ହୋଇଯିବ । କି ଆଶ୍ଚର୍ଯ୍ୟ ! ମେଘ ହଟ କଲା ପରି ଆଗରୁ ହେଉଥିବ ତ ଦଶଟା ବେଳକୁ ଗୁଡ଼ଜିବ । ନୋହିଲେ ବା ସ୍କୁଲରେ ପହଞ୍ଚିଲା ବାଦେ ଢାଳିବ ! ସେଥିରେ ଆମର ଆସେ ଯାଏ କିସ ? ଠିକ୍ ବେଳ କାଳ ଜାଣି ମେଘ ଢାଳିବା ବର୍ଷ ଭିତରେ ୨୪ ଥର ହୁଏ । ସେ ଦିନ ତ ଯେତେ ଉତ୍ସବର ଉତ୍ସା ହୁଏ; ନୋହିଲା ବେଳକୁ ଛତା ବୁଜି ଦେଉଁ । ସେଥିରେ ସୁଦ୍ଧା ଯଦି ନ ହେଲା ତେବେ ସଡ଼କ କଡ଼ ନାଳରୁ ପାଣି ଆଣି ଲୁଗାପଟା ସରସର କରି ସ୍କୁଲରେ ହାଜର ! ଯଦି ସାଙ୍ଗ ପିଲାଙ୍କ ଭିତରେ କେହି କେହି ଶୁଖିଲା ଥାଆନ୍ତି, ତେବେ ମାଷ୍ଟର ଆମର ଦୋଷ ଧରିବେ ବୋଲି ସେମାନଙ୍କୁ ଘୁଡ଼ ଉପରୁ ପାଣି ପଡ଼ୁଥିବା ନାଳୁଆ ତଳକୁ ପେଲିଦେଉଁ । ଏହିପରି ବାରପଣ ଯାକେ ପିଲାଙ୍କ ଲୁଗାପଟା ଓଦା ଦେଖିଲେ ସେ ଦିନ ବାସ୍ ଛୁଟି ।

ଇସ୍କୁଲର ଡେସ୍କ ଉପରେ କଲମତରାସ ଛୁରୀରେ ନିଜର ନାମ ଖୋଳିବା ମୋର ଗୋଟିଏ ସଉକ ଥିଲା । କେତେ ବେଞ୍ଚ୍ ଡେସ୍କରେ ମୋ ହାତର କେତେ ରକମ କାରିଗରୀ ଆଜି ସୁଦ୍ଧା ଖୋଜିଲେ ମିଳିବ । ଆଉ ଗୋଟାଏ କାମ ଥିଲା କାଗଜର ଦୁଆତ, ବାକ୍ସ, ଡଙ୍ଗା, ଟୋପି ଇତ୍ୟାଦି ତିଆର କରିବା । ଏହି ସବୁ କାମ ପ୍ରତି ଯେତେ ଆଗ୍ରହ ଥାଏ ଓ ଯେତେ ମନ ଗଳାଇ କରିବାକୁ ହୁଏ ତାର ଶହେ ଭାଗରୁ ଏକ ଭାଗ ହେଲେ ପାଠରେ ମନ ଥାଆନ୍ତା । ପାଠଟା ପଢ଼ିବାକୁ ହୁଏ, ମୋ ଜାଣିବାରେ ବାପାଙ୍କ ଡରରେ ଓ ମାଷ୍ଟରଙ୍କ ବେତ ମାଡ଼ରୁ ବଞ୍ଚିବା ଲାଗି କେବଳ । ଶନି-ବାର ଦିନ ସ୍କୁଲ ହାଫ୍ ଛୁଟି ହେବ ବୋଲି ସେ ଦିନ କେଡ଼େ ଉଲ୍ଲାସ, କି ଉତ୍ସାହ, କି ଆନନ୍ଦ ! ତହିଁ ଆରଦିନ ରବିବାର ବନ୍ଦ । ମନଟା ଏକାବେଳେ ନିଦିକ, ଖୋଲସା । ଶନିବାର ଛୁଟି ପରେ ଯେଉଁ ବାଗୁଡ଼ି ଖେଳ, ମାରବଲ୍ ଗୋଲି ଖେଳ ଇତ୍ୟାଦି ହୁଏ ଏବଂ ସେ ଦିନ ରାତିରେ ଯେଉଁ ପ୍ରକାର ଆରାମରେ ନିଦ ଲାଗେ, ତାହା ଏବେ ଦିନେ ହେଲେ ଭୋଗ କରି ପାରିଲି ନାହିଁ । ବଡ଼ ହେବା ପରେ ମଧ୍ୟ କେତେ ଛୁଟି ପାଇଛି, ଏବକୁ ତ ସବୁ ଦିନେ ଛୁଟି; କିନ୍ତୁ କାହିଁ ସେ ସ୍ଫୂର୍ତ୍ତି, ସେ ଅମିରୀ ମିଜାଜ କାହିଁ ? ସେ ଦିନ କି ଆଉ ଫେରି ଆସିବ ନାହିଁ ? ଯଦି ଥରେ ଆସନ୍ତା ତେବେ ମୁଁ ତାକୁ କେଡ଼େ ଆଦରରେ ଶଙ୍ଖୁଳି ନିଅନ୍ତି ! ଯାହା ହଜାଇ ଦେଇଛି ଥରେ

# କୈଶୋର ସ୍ୱପ୍ନ

ଏବେ ଖୋଜିଲେ ଫେରି ପାଇବି କାହୁଁ ? ସେ କାଳର ଅପବ୍ୟବହାର ଅତ୍ୟାଚାରର ଫଳ ଆଜି ହାଡ଼େ ହାଡ଼େ ଭୋଗିଲିଣି । ଭାବିଲେ ଆଉ କ'ଣ ହେବ ? ଯେଉଁ କରଣୀ କରି ଯାଇଛି ତାର ପରିଣାମ ବ୍ୟର୍ଥ ହେବାର ନୁହେଁ । ଆଜି ତାର ବିଷମୟ ଫଳ ଭୋଗରେ ଅନ୍ତରାତ୍ମା ଜର୍ଜରିତ, ଚିତ୍ତ ଅବସନ୍ନ । ନିବାରିବାର ଉପାୟ ନାହିଁ, ଲେଉଟିବାର ପନ୍ଥା ନାହିଁ । କେବଳ ସେହି ସ୍ନିଗ୍ଧ ଅତୀତର ମଧୁର ସ୍ମୃତିହିଁ ବର୍ତ୍ତମାନ ଅବସାଦର ବିନୋଦନ, ହତାଶାର ଆଶ୍ୱାସନା, ପ୍ରାଣର ସାନ୍ତ୍ୱନା ।

ଶହ ଶହ ସଂଖ୍ୟାରେ ପଶ୍ଚିମା ଜଗନ୍ନାଥଯାତ୍ରୀ ସଦାବ୍ରତକୁ ଆସନ୍ତି ବିଚିତ୍ର ବରଡ଼ା ଛତା ଧରି । ଧାଡ଼ ଧାଡ଼ ହୋଇ ସେମାନେ ଗାଉ ଥାଆନ୍ତି । 'ଜଗର୍ନାଥିଆ ଭୈୟା' । ଗୀତ ମଝିରେ ମଝିରେ "ଜଗନ୍ନାଥ ସ୍ୱାମୀକି ଜୟ" । ସେ ଗୀତ ଏବେ ଆଉ ଶୁଣିବାକୁ ମିଳୁନାହିଁ ; କିନ୍ତୁ ସେ ସ୍ୱର କାନ ଭିତରେ ଗୁଣୁ ଗୁଣୁ କରି ଉଠେ ବାରିବାର ।

ସେ କାଳରେ ସମସ୍ତିଙ୍କଠାରୁ ମାଡ଼ ଖାଇବାଟା ଥିଲା ସାନ ସାନ ପଢ଼ୁଆ ପିଲାଙ୍କ ଅମଳ । ମୁଁ ବୋଧହୁଏ ଟିକିଏ ଅଧିକା ଚପଳ ବା ଚଗଲା ଥିଲି । ସେଥିପାଇଁ ମୋର ଏପରି ଦିନ ଯାଏ ନାହିଁ ଯେଉଁ ଦିନ କିଛି ହେଲେ ମାଡ଼ ନ ଥାଏ । ଘର ମାଷ୍ଟରେ ତ ଯେତେ ମାରିବାର ମାରନ୍ତି । ତାହା ଛଡ଼ା ଇସ୍କୁଲରେ ପ୍ରତ୍ୟେକ ମାଷ୍ଟର ଛଡ଼ି ଧରି କ୍ଲାସକୁ ଆସନ୍ତି । ଛଡ଼ି ବା ବେତ ବୃଥା କେବେ ଫେରେ ନାହିଁ । ଏଉଟା ଥିଲା ଯେପରି ନିୟମଗତ । ଛଡ଼ି ଭାଙ୍ଗିଗଲେ ଜଣେ ଜଣେ ବଡ଼ବୁଦ୍ଧିଆ ଭଲ ପିଲା ଥାଆନ୍ତି ଯେ ସେମାନେ ପକେଟରେ କଲମତରାସ ଧରି ସ୍କୁଲକୁ ଆସନ୍ତି । ନୂଆ ଛଡ଼ି କାଟିବା ଥିଲା ତାଙ୍କର କାମ । ଏହା ଛଡ଼ା କାନମୋଡ଼ା, ଗାଲ ଚିପୁଡ଼ା, ବାଳଟଣା, ମୁଣ୍ଡଠୁଙ୍କା, ବେଞ୍ଚ ଛିଡ଼ା, ଚେୟାର ହେବା, ହେଟା ଗୁଡ଼ ପଡ଼ିବା ଇତ୍ୟାଦି ସାଧାରଣ କଥା ମୋ ଭାଗରେ ଏ ସବୁଥିରୁ କିଛି ଅଧିକା ପଡ଼ୁଥିଲା । ମଝିରେ ମଝିରେ ବାପା ଓ ଦାଦାଙ୍କର ବଡ଼ ମାଡ଼ ବି ହୁଏ । ସେଥିରେ ବିଧା, ଗୋଇଠା, ବେତ, ଯୋତା କେତେବେଳେ କଉଁଟା ବର୍ଷିଯାଏ, ତା'ର ଠିକଣା ନ ଥାଏ । ଦିନଟା ଯେପରି ନିତ୍ୟାନ୍ନ ଖାଦ୍ୟ ଗୁଡ଼ ଗୋଟାଏ ଭୋଜିର ଦିନ । ସେହିପରି ଅଳ୍ପ ବହୁତ ସମ୍ପର୍କ ଥିବା ବା ଅଧିକ ଚିହ୍ନାପରିଚିତ ଥିବା ଆଖପାଖିଆ ସବୁ ଲୋକଙ୍କର ଗୋଟାଏ ଅଦ୍ଭୁତ ଅଭ୍ୟାସ ବା ସଉକ ଥିଲା ପିଲାଙ୍କୁ ଚଡ଼୍ ଚିପୁଡ଼ି ବସାଇ ଦେବା ବାଟରେ ଘାଟରେ ଅନାଧିକିଆ କରି । ସେକାଳିଆ ଶିକ୍ଷିତ ଲୋକଙ୍କ ଧାରଣା ଥିଲା ଯେ ବରାବର ମାଡ଼ ନ ଖାଇଲେ ପିଲେ ଖରାପ ହୋଇ ଯାଆନ୍ତି । ଆଉ ମାଡ଼ଟା ଚାଲିଥିଲେ ଠିକ୍ ବାଟରେ ରହନ୍ତି, ଆଉ ଭଲ ପଢ଼ନ୍ତି । ମନେ ହେଉଛି ମୋର ପିଲା ବୟସରେ ମୋ ଚାରିପିଠି ଗୋଟାଏ ଆତଙ୍କର ଆବରଣ ସବୁଦା ଘେରି ରହିଥିଲା । ଏହି ତ୍ରାସ ଓ ଶ୍ରାନ୍ତିର କାରାକକ୍ଷ ମଧ୍ୟରେ ନିଷ୍ପେଷିତ ଥାଇ ବୋଧହୁଏ ହୃଦୟଟା କେତେ ସଙ୍କୁଚିତ ହୋଇ ଯାଇଥିବ । ପଥର ଚାପା ପଡ଼ି ମନଟା ସହଜ ଭାବରେ ଗଢ଼ି ଉଠିବାକୁ କେତେ ବାଧା କେତେ ପ୍ରତି-ବନ୍ଧକର ସମ୍ମୁଖୀନ ହୋଇ ନ ଥିବ ।

ଆଦର ବା ପ୍ରଶଂସା ପାଇଲେ ପିଲା ମନମୋଟିଆ ହୋଇ ବିଗିଡ଼ି ଯିବେ ବୋଲି ଜାଣି ଶୁଣି ସବୁବେଳେ ଗାଳିଗୁଲଜ କରିବା, ଝିଙ୍କି ତାଙ୍କିଲି କରିବା ନିରୁତ୍ସାହିତ କରିବା ଥିଲା ମୁରବିଙ୍କର ଲକ୍ଷଣ—ମୁରବି ପଣିଆର ଚିହ୍ନ ।

କଅଁଳ କଞ୍ଚା ବୟସରେ ଅତି ଯତ୍ନ ଉଦ୍ଦେଶ୍ୟରେ ଏହିରୂପ ଅସ୍ୱାଭାବିକ ଓ ଅଯଥା ତାଡ଼ନା ମୋର ଚିତ୍ତବୃତ୍ତିର ମୁକ୍ତସଂସ୍ଫୁର ଓ ସ୍ୱାଭାବିକ ବିକାଶକୁ ଯେପରି ଦବାଇ ଦେଇଥିଲା । ତହିଁ ବଳି ସୃଷ୍ଟି କରିଥିଲା ଅନ୍ତରର ନିଭୃତ ଗମ୍ଭୀର କୋଣରେ ଗୋଟାଏ ଅମାନିଆ ବିଦ୍ରୋହର ଅସହଣୀୟତା, ଯାହା ସବୁବେଳେ ଭିତରେ ଭିତରେ କୁହୁଳି ମୋର ସୁକୁମାର ପ୍ରାଣକୁ ଦହି ପକାଉଥିଲା । ବୋଧହୁଏ ତାହାରି ଫଳରେ ମୁଁ ଖୋଜି ବୁଲୁଥିଲି ସବୁବେଳେ ଗୋଟାଏ ଫାଙ୍କ ବାତାୟନ ପଥ ମୋର ଅବରୁଦ୍ଧ ପ୍ରବୃତ୍ତିକୁ ନିର୍ବାଧ, ନିର୍ମୁକ୍ତ ପବନରେ ଥରେ ପହଞ୍ଚାଇ ଦେବା ପାଇଁ । ଏହି ଚେଷ୍ଟା, ଏହି ସଂଗ୍ରାମ ମୋର ଜୀବନକୁ କେତେ ବାଟରେ ପ୍ରଭାବିତ କରିଥିବ, ତାହା କିଏ କହି ପାରେ ।

କିଛି ଦିନ ପରେ ଜଣେ କେବଳ ମୋର ସୁଖ ଦୁଃଖର ସାଥୀ ମିଳିଥିଲା । ସେ କୃଷ୍ଣ ଭାଇ । କୃଷ୍ଣ ଭାଇ ମୋର ପାନାହାରର ସଙ୍ଗୀ, ଶୟନର ଦୋସର, ଖେଳର ସହଚର । ଆମେ ଦୁହେଁ ସବୁ କଥାରେ ଏକ ଆତ୍ମା ପରି ରହିଥିଲୁଁ । ଆଜି କିନ୍ତୁ ନିୟତି ଦୁହିଁଙ୍କର ଜୀବନକୁ କେତେ ଅନ୍ତର କରି ଦେଲାଣି । ଯେତେବେଳେ ଦୁହିଁଙ୍କୁ ଦୁହେଁ ଏକ ବୃନ୍ତର ଦୁଇଟି ଫୁଲ ପରି, ଏକ ଆକାଶର ଦୁଇଟି ତାରା ପରି, ଏକ ହୃଦୟର ଦୁଇଟି ନିଶ୍ୱାସ ପରି ମଣୁଥିଲୁଁ । ଦୁହିଁଙ୍କର ଜୀବନର ତାର ଏକ ସ୍ୱରରେ ବନ୍ଧା ହୋଇଥିଲା । ହାୟରେ ପରିବର୍ତ୍ତନ ! ଦୁର୍ଦ୍ଦୈବ ଦୁଇଜଣଙ୍କୁ କି କି ବିଭିନ୍ନ ମାର୍ଗରେ ଓଟାରି ନେଇ ଗଲାଣି । ଦୁହେଁ ସାଙ୍ଗ ହୋଇ ପୋଖରୀରେ କେତେ ପହଁରିଛୁ, ସଡ଼କ ନୟନଯୋଡ଼ରେ କେତେ ମାଛ ଧରିଛୁଁ, ଶୀତ ଦିନେ କେତେ ଗୁଡ଼ି ଉଡ଼ାଇଛୁଁ । ସେ ଦିନ ଜୀବନରେ ଆଉ

ଫେରିବ ନାହିଁ । ଯଦି ଆମେ ଦୁହେଁ ପରସ୍ପର ବେକ ଧରାଧରି ହୋଇ ସନ୍ତରଣ କରୁଁ କରୁଁ ପୁଷ୍କରିଣୀର ଅତଳ ଗର୍ଭରେ ଅନନ୍ତ ବିଶ୍ରାମ ଲଭି ଥାଆନ୍ତୁ, ତାହା କେଡ଼େ ଆନନ୍ଦର—କେଡ଼େ ଆରାମର ଶୟନ ହୋଇଥାଆନ୍ତା ! ଦୁନିଆର ଏତେ ଗଞ୍ଜଣା ସହିବାକୁ ପଡ଼ନ୍ତା କାହିଁକି ?

ମନେ ଅଛି ଅଜାଙ୍କର ବନାରସୀ ଜରି ଲୁଗାପିନ୍ଧା ଜ୍ୟୋତି-ର୍ମୟ ମୂର୍ତ୍ତି । ସେ ସ୍ନେହ, ସେ ଆଦର, ସେ ରହସ୍ୟ କୌତୁକ ଆଉ କିଏ କରିବ ? କୋଳରେ ବସାଇ; ନାନା ପ୍ରକାର ପାଚିଲା ଫଳ ଆଉ ଆଣି କିଏ ଖୁଆଇବ ? ବାଳ ସୁଲଭ ଅସମ୍ଭବ ଅଳି ଅର୍ଦ୍ଦଳି ଆଉ କିଏ ଶୁଣିବ ? କେଡ଼େ ଆଶାରେ ଥରେ ଦେଖା କରିବାକୁ ଯାଇଥିଲି । ତାହା ହିଁ ମୋର ଶେଷ ଦେଖା ହେଲା । ଆଖି ଆଗରେ ସେହି ସୁନ୍ଦର ସ୍ନେହମୟ ଶରୀରକୁ ଶ୍ମଶାନର ଚିତାଗ୍ନିରେ ବିସର୍ଜନ ଦେଇ ଆସିଲି । ଅଜା, ତୁମେ ସିନା ଐଶ୍ୱର୍ଯ୍ୟ ଭୋଗ ମଧ୍ୟରେ ଥାଇ ମାୟାର ବନ୍ଧନ ଛେଦନ କରି ପାରିଥିଲ, ସ୍ନେହ ଅନୁରାଗରେ ଜଗତକୁ ବଶୀଭୂତ କରିଥିଲ । ସଂସାରୀ ହୋଇ ଦେବତ୍ୱ ଓ ଋଷିତ୍ୱର ଆଦର୍ଶ ଦେଖାଇଥିଲ । ତୁମର ଦିନ ଦିନକର ଗୋଟିଏ ଗୋଟିଏ କଥା ଆଜି ସୁଦ୍ଧା ମୋ ସ୍ମୃତିରେ ଉଦୟ ହୋଇ ଚିତ୍ତ ଅଧୀର କରି ଦେଉଛି, ହୃଦୟର ଜୀର୍ଣ୍ଣ ତନ୍ତ୍ରୀରେ ପୁରୁଣା ପାଶୋରା ରାଗିଣୀ ପରି ଝଙ୍କାର ଉଠୁଛି । ତୁମର ଉପଦେଶ, ତୁମର କାର୍ଯ୍ୟ-କଳାପ, ତୁମର ଆଦର୍ଶ ସେ ବୟସରେ ମୁଁ ଯେଉଁପରି ଭାବରେ ଦେଖିଥିଲି ବା ବୁଝିଥିଲି ତାହାର ପ୍ରଭାବରେ ତଦନୁସାରେ ମୋର ପ୍ରାଣର ବୃତ୍ତିସବୁ ନିୟନ୍ତ୍ରିତ ହୋଇ ଯାଇଛି, ଜୀବନର ଗତି ପଥ ନିର୍ଦ୍ଦିଷ୍ଟ ହୋଇ ଯାଇଛି ପରା !

ଚିର ଦୁଃଖିନୀ ଆଈ ମା ମୋର ! ତୁମେ ନାରୀ ହୃଦୟର ସମସ୍ତ ସଞ୍ଚିତ ସ୍ନେହ ମୋହରି ମସ୍ତକରେ ଅଜାଡ଼ି ଦେଇଥିଲ । ମୋର କେତେ କେତେ ଅଳି ଅର୍ଦ୍ଦଳି ଅମ୍ଳାନ ବଦନରେ ସହିଛ, କେତେ ଅନ୍ୟାୟ ଫରମାଏସ ପୂରଣ କରିବା ପାଇଁ ସାଧ୍ୟ ଅନୁଯାୟୀ ଯତ୍ନ କରିଛ । ମୋର ସୁବିଧା ପାଇଁ, ସୁଖ ପାଇଁ ନିଜେ କେତେ ଅସୁବିଧା, କଷ୍ଟ ଭୋଗ ନ କରିଛ ! ମାଷ୍ଟର ନିକଟକୁ ନ ଯିବି ବୋଲି ତୁମଠାରେ କେତେ ଫେଖଣା, କେତେ ବାହାନା କାଢ଼ିଛି । ତୁମ ଉପରେ କେତେ ଜଞ୍ଜାଳ, କେତେ ଅତ୍ୟାଚାର କରିଛି । କେବେ ଭାବି ନ ଥିଲି ତୁମର ସେହି ସ୍ନେହଶ୍ରଦ୍ଧାବୋଳା ମୁଖ ଦର୍ଶନରୁ ବଞ୍ଚିତ ହେବି ବୋଲି । ଆଜି କର୍ମବିପାକରେ ଯାହା ସ୍ୱପ୍ନର ଅଗୋଚର ଥିଲା, ତାହା ସତ୍ୟ ହୋଇଛି । ଆଉ କିଛି ଦୁଃଖ ନାହିଁ । ତୁମର ଦୁଃଖମୟ ଜୀବନରେ ମୋର ଅଭିଶପ୍ତ ଜୀବନ କାହାଣୀ ସେହି ଦୁଃଖର ଗୁରୁତ୍ୱ ବଢ଼ାଇ ଥିବ ଏହି ଭାବନା ମୋତେ ଅଧିକତର ସନ୍ତାପ ଦେଉଅଛି । ଯାଅ ସତୀ, ସଂସାରର ଯେଉଁ ସୁଖ ଦିନେ ହେଲେ ତୁମ ଭାଗ୍ୟରେ ଘଟି ନାହିଁ, ଏବେ ସେହି ସ୍ୱର୍ଗ ରାଜ୍ୟରେ ତାହା ଶତ ଗୁଣରେ ଭୋଗ କରିବ । ତୁମପାଇଁ ସେଠାରେ ଗୋଟିଏ ଅନୁତପ୍ତ ଦେବପ୍ରାଣ ବରମାଲ୍ୟ ଧରି ଅପେକ୍ଷା କରିଛି । କିନ୍ତୁ ବଡ଼ ଆଶା ରହିଗଲା—ଥରେ ମାତ୍ର ଶେଷ ଦେଖା ଦେଖି ପାରିଲି ନାହିଁ ।

ଦାଦା, ତୁମର ସୁଦୀର୍ଘ ଶରୀର ଓ ରାଜୋଚିତ ବେଶଭୂଷା ଦେଖି ମୋର ବାଳକ ହୃଦୟ ପ୍ରଶଂସା ଓ ବିସ୍ମୟରେ ପୂର୍ଣ୍ଣ ହୋଇ ଯାଉଥିଲା । ତୁମର ଗମ୍ଭୀର ଉତ୍ସାହପୂର୍ଣ୍ଣ ବାକ୍ୟ ମୋର ନୈରାଶ୍ୟ ଦୁର୍ବଳହୃଦୟରେ ନବୋଦ୍ୟମ, ନୂତନ ଶକ୍ତିର ସଞ୍ଚାର କରୁଥିଲା । ତୁମେ ଅକାଳରେ ମରଧାମ ତ୍ୟାଗ କରି ଚିନ୍ମୟ ରାଜ୍ୟର ଅଧିକାରୀ ହେଲ । ସଂସାରର କୂଟ କପଟ, ଆବର୍ଜ୍ଜନା, ନୀଚ ବ୍ୟବହାରର ବହୁ ଦୂରରେ ରହିଲ । ତୁମ ସହିତରେ କେତେ କଳ୍ପନା ଜଳ୍ପନା ଅକାଳରେ ବିଲୁପ୍ତ ହୋଇଗଲା । ସୁନହଟ ହେମ୍ନାଦନୁଁ ଅନ୍ଧକାର ହୋଇ ଯାଇଛି । ମୋ ପକ୍ଷରେ ସେହି ନନ୍ଦନକାନନ ପ୍ରେତ-ପୁରୀରେ ପରିଣତ ହୋଇଛି । ମୋତେ ଆଜି ସେହି ମଧୁମୟ କୈଶୋରର ବିଳାସବାଟିକା ଜନମାନବବିହୀନ ଶୂନ୍ୟ ଶ୍ମଶାନ ତୁଲ୍ୟ ପ୍ରତୀୟମାନ ହେଉଛି । ଆଉ ଏ ଜୀବନରେ ସେ ପୁଣ୍ୟକ୍ଷେତ୍ର ଦର୍ଶନ କରିବି ନାହିଁ । କ୍ରୂର କାଳ ସମସ୍ତ ଆକର୍ଷଣ ଛିଡ଼ାଇ ଦେଲାଣି । ଏବେ ଖାଲି ସେହି ସୁଦୂର ଅତୀତର ସୁଧାମୟ ସ୍ୱପ୍ନକୁ ଜୀବନର ସମ୍ବଳ କରି ପ୍ରତ୍ୟେକ ତପ୍ତ ନିଶ୍ୱାସ ସଙ୍ଗରେ ଟୋପାଏ ଲେଖାଏଁ ଅଶ୍ରୁ ବିସର୍ଜନ କରୁଥିବି, ଏତିକି ହିଁ ମୋର ସମ୍ବଳ ।



# ଯୌବନ ପଥେ

## ( ଯୌବନର ଅଭିଯାନ )

ସମ୍ମୁଖେ ଅନନ୍ତ ପୃଥିବୀ ! ଅପାର କଳ୍ପନା, ଅସୀମ ଆକାଙ୍କ୍ଷା, ଅଶ୍ରାନ୍ତ ଆବେଗ ଘେନି ଆଜି ମୋର ଏ ଅନିର୍ଦ୍ଦିଷ୍ଟ ଅଭିଯାନ । ଅନ୍ତରରେ ଉଦ୍ଦାମ ଉତ୍ସାହ, ନୟନରେ ଅନଳର ଦୀପ୍ତି, ଚରଣରେ ଅକ୍ଳାନ୍ତ ଶକ୍ତି ମୋତେ ଆକର୍ଷଣ କରି ନେଉଛି କେଉଁ ଅଜଣାର ପରପାରକୁ ପାଉ ନାହିଁ ତା'ର ଥଳକୂଳ ମୁଁ । କିନ୍ତୁ ମୁଁ ଚାଲିଛି—ଚାଲିଛି—ଚାଲିଛି—ସେ ଚାଲିର ଅନ୍ତ ନାହିଁ—ବିରାମ ନାହିଁ—ଅବକାଶ ନାହିଁ ।

ମୋ ଆଖି ଆଗରେ ପଡ଼ି ରହିଛି ଏହି ଯେଉଁ ବିରାଟ ବିଶ୍ୱ—ମୋହରି ଇଙ୍ଗିତରେ ତ ଏହା ପରିଚାଳିତ । ଏ ଯେଉଁ ବିଶାଳ ଜନତା ମୋହରି ନିର୍ଦ୍ଦେଶକୁ ଚକାଇ ରହିଛି, ମୁହିଁ ତା'ର ଅବିସମ୍ବାଦୀ ନେତା ।

ଏକ ଦିଗନ୍ତପ୍ରସାରୀ ଅକୂଳ ପାରାବାର ବକ୍ଷରେ ମୁଁ ଭସାଇ ଦେଇଛି ମୋର କ୍ଷିପ୍ର ତରଣୀ । ତରୀ ମୋର ଶ୍ୟେନ ଗତିରେ ଉତ୍ତୁଙ୍ଗ ତରଙ୍ଗରାଶି ବିଦୀର୍ଣ୍ଣ କରି ଆଗେଇ ଚାଲିଛି ଦୁର୍ଦ୍ଦମନୀୟ ବେଗରେ--ଲକ୍ଷ୍ୟହୀନ । ପଲକେ ପଲକେ ସେ ଯେଉଁ ଲହରୀମାଳା ଅତିକ୍ରମ କରୁଛି, ସେହି ବିଜୟୋଲ୍ଲାସରେ ସେ ହୋଇ ଉଠୁଛି ଦୃପ୍ତ, କ୍ଷିପ୍ର, ଅଧୀର । ସମୁଦ୍ର ତାକୁ କ୍ଷୁଦ୍ର ଗୋଷ୍ପଦ ତୁଲ୍ୟ ପ୍ରତୀୟମାନ ହେଉଛି । ସେ କି ଆବେଗ, କି ସ୍ପର୍ଦ୍ଧା, କି ଦର୍ପ । ଆଶା ଓ ଉଦ୍‌ବେଗରେ ପ୍ରାଣ ନାଚି ନାଚି ଉଠୁଛି । ପ୍ରତି ସ୍ନାୟୁତନ୍ତ୍ରୀ କି ଏକ ନବୋତ୍ସାହରେ ଆନ୍ଦୋଳନ କରୁଛି । ଧମନୀରେ ତପ୍ତ ରକ୍ତର ତଡ଼ିତ୍‌ପ୍ରବାହ ଅନ୍ତରକୁ ସ୍ପନ୍ଦିତ, ଆଲୋଡ଼ିତ, ଉତ୍‌କ୍ଷିପ୍ତ କରି ପକାଉଛି । କେଉଁ ଅଜ୍ଞେୟ ପ୍ରେରଣାରେ ଚିତ୍ତ ଅଧୀର, ଅଥୟ, ଅଶାନ୍ତ ହୋଇ ଉଠୁଛି ।

ସେହି କ୍ଷୁଦ୍ର ପକ୍ଷୀଟି ଅନନ୍ତ ଗଗନପଥରେ ଡେଣା ମେଲାଇ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ କ୍ଷେପି ଚାଲିଛି । ତା'ର କ'ଣ କିଛି ଲକ୍ଷ୍ୟ ଅଛି ? କିଛି ଉଦ୍ଦେଶ୍ୟ ରହିଛି ? ତା'ର ଅଦମ୍ୟ ପ୍ରାଣପ୍ରବାହ ତାକୁ ନେଉଛି କେଉଁ କଳ୍ପଲୋକର ଦୂରାନ୍ତର ଆଡ଼କୁ ? ପ୍ରତି ମୁହୂର୍ତ୍ତରେ ସେ ହୋଇଯାଉଛି କ୍ଷୁଦ୍ରରୁ କ୍ଷୁଦ୍ରତର । ଏହାର ଶେଷ କେଉଁଠି ? ସେହି ଅନନ୍ତ ନୀହାରିକା ସମୁଦ୍ରରେ ବିଲୀନ ହୋଇ ଯେବେ ନିଶ୍ଚିହ୍ନ ହୋଇଯିବ ସେହି କି ତା'ର ସାଧନାର ଚରମ ସିଦ୍ଧି—ସେହି କି ତା'ର ଜୀବନର ପୂର୍ଣ୍ଣତା ?

ବାହୁରେ ଅଦମ୍ୟ ଶକ୍ତି, ଅନ୍ତରରେ ଅକ୍ଷୁଣ୍ଣ ତେଜ, ବକ୍ଷରେ ଅତୃପ୍ତ ପିପାସା ଧରି ଆଜି ମୋର ନିରଙ୍କୁଶ ଅଭିଯାନ । ସମସ୍ତ ବାଧା, ବିଘ୍ନ, ପ୍ରତିରୋଧ ଦଳିତ, ବିଧ୍ୱସ୍ତ, ବିପର୍ଯ୍ୟସ୍ତ କରି ନିରୁଦ୍‌-ବେଗରେ ଚାଲିଛି ମୁଁ ଦିଗ୍‌ବିଦିଗଜ୍ଞାନଶୂନ୍ୟ ହୋଇ । ଆଜି ମୁଁ ଦିଗନ୍ତପ୍ରସାରୀ ମହାଶୂନ୍ୟ ପଥରେ ସନ୍ତରଣଶୀଳ ମୁକ୍ତ ବିହଙ୍ଗ । ଏହି ଅନନ୍ତ ଆକାଶ ଉତ୍‌କ୍ରମଣ କରିଯିବାକୁ ପକ୍ଷଯୁଗ ବିସ୍ତାରି ଦେଇଛି !

କିନ୍ତୁ ସେ ଜାଣି ନାହିଁ ମୋର ଲକ୍ଷ୍ୟ କିଏ । ମୋର ଉଦ୍ଦେଶ୍ୟ କ'ଣ ! ଏହି ଯେ ବିପୁଳ ବ୍ୟଗ୍ରତା ମୋର ପ୍ରତି ଲୋମକୂପରୁ ଉତ୍ସାରିତ ହୋଇ ମୋତେ ଚଞ୍ଚଳ, ଉନ୍ମତ୍ତ କରି ଦେଉଛି, ଏହା କେଉଁଥିଲାଗି ? ଏ ଯାତ୍ରାର ବିରାମ କେଉଁଠି—ଏ ଧାବନର ସମାପ୍ତି କେଉଁଠି—ଏ ଉନ୍ମାଦନାର ନିବୃତ୍ତି କେଉଁଠି ?

ବିଜୟୀର ଯଶଃ ଲାଭ କରିବାର ଯେଉଁ ସହଜ ପ୍ରବୃତ୍ତି ମାନବ ପ୍ରାଣରେ ନିହିତ ଥାଏ, ଯୌବନରେ ତାହା ବିକଶିତ ହେବା ସ୍ୱାଭାବିକ । ଏହି ପ୍ରବୃତ୍ତି ପ୍ରଣୋଦିତ ହୋଇ ମନୁଷ୍ୟ ହିମାଳୟ ଶିଖର ଜୟ କରିବାକୁ ଅଗ୍ରସର ହେଉଛି, ଚନ୍ଦ୍ରଲୋକକୁ ଅଭିଯାନ ଚଳାଉଛି, ଅତଳ ସମୁଦ୍ରଗର୍ଭକୁ ଧାଇଁ ଦେଉଛି । ମୋର ବା ଅପରାଧ କେଉଁଠି ହେଲା ? ସେ ପାଇଁ ଏତେ ଅପବାଦ, ଏତେ ଧିକ୍‌କାର, ଏତେ ଲାଞ୍ଛନା କାହିଁକି ? ହେ ନନ୍ଦନ, ହେ ତରୁଣ, ହେ ସବୁଜ, ଆପଣାକୁ ଚାହିଁ ଦେଖ ; ତୁମେ ବି ଏଥିରୁ ଭିନ୍ନ ହୋଇ ନ ଥିବ । କିନ୍ତୁ ତୁମେ ତୁମର ଈପ୍‌ସିତ ବସ୍ତୁ ଲାଭ କରିଛ, ଜୀବନରେ ସଫଳତା ପାଇ ସାରିଛ, ଲକ୍ଷ୍ୟ ଭେଦ କରି ଜୀବନକୁ ସାର୍ଥକ କରି ପାରିଛ ।

ମୁଁ ଆଜି ଜୀବନସଂଗ୍ରାମରେ ଆହତ ହୋଇଛି ବୋଲି, ଦୀର୍ଣ୍ଣ ବକ୍ଷ, ଶୀର୍ଣ୍ଣ ବାହୁ, ଜୀର୍ଣ୍ଣ ଜାନୁ ହୋଇ ଛିନ୍ନପକ୍ଷ ବିହଙ୍ଗମ ପରି ଭୂପତିତ ହୋଇଛି ବୋଲି—ତୁମେ ମୋତେ ପରିହାସ କରୁଛ ?

ମୋର ଅବମୃଷ୍ୟକାରିତା ପାଇଁ ଅବଜ୍ଞା କରୁଛ, ଅବହେଳା କରୁଛ, ଘୃଣା କରୁଛ ? ଗୋଟାଏ ଭୁଲ ପାଇଁ ଏତେ ଶାସ୍ତି !

ବିଶ୍ୱାସ କର,—ମୁଁ କାହାରି ବୁକୁ ଉପରେ ପଥର ଲଦିବାକୁ ଚାହେଁ ନାହିଁ । କାହାରିକୁ ପଦଦଳିତ, ନିର୍ଯ୍ୟାତିତ କରି ତା'ର କାତର ପିଣ୍ଡ ଉପରେ ନୃତ୍ୟ କରିବାକୁ ମନ କରିନାହିଁ । ମୁଁ କେବଳ ଯୌବନସୁଲଭ ଉନ୍ମାଦନାରେ ବିମୁଗ୍ଧ, ଉଦ୍‌ଭ୍ରାନ୍ତ ହୋଇ ଅପେ ଲୋଡ଼ିଥିଲି ଗଗନର ତାରା ସହ ପ୍ରତିଯୋଗିତା କରିବା ପାଇଁ—ଚନ୍ଦ୍ରଲୋକରେ ବିଜୟକେତନ ଉଡ଼ାଇ ଦେବା ପାଇଁ । ମୁଁ ଚାହିଁଥିଲି ନନ୍ଦନ କାନନରୁ ପାରିଜାତ ଲୁଣ୍ଠନ କରି ଆହରଣ କରିବା ପାଇଁ । ମୋହର ପ୍ରତିଭା ଓ ପରାକ୍ରମର ଉଜ୍ଜ୍ୱଳ ମହିମାରେ ଜଗତ ହୋଇଯିବ ସ୍ତମ୍ଭିତ । ମୋର ଉଚ୍ଚାସନରେ ଥାଇ ଜଗତକୁ କରିବି କରୁଣା । ଦୀନ, ଦୁଃସ୍ଥ, ପତିତ, ନିର୍ଯ୍ୟାତିତ ନିରାଶ୍ରୟଙ୍କୁ କରିବି ଅନୁଗ୍ରହ । ଏହି ଉଦାରତା ପ୍ରକାଶରେ ମୋର ଆନନ୍ଦ, ଏହି ଅନୁକମ୍ପା ପ୍ରଦର୍ଶନରେ ତୃପ୍ତି, ଏହି ପ୍ରଭୁତ୍ୱ ପ୍ରକଟନରେ ମୋର ସାର୍ଥକତା ।

ମୁଁ ଚାହେଁ ଜୀବନ,—ମୁଁ ଚାହେଁ ଜୀବନର ରସ—ଜୀବନର ସ୍ପନ୍ଦନ, ଜୀବନର ବେଗ—ଆପଣାକୁ ନିଃଶେଷ, ନିଶ୍ଚିହ୍ନ କରି ଦେଇ ।

ମୁଁ ଗୋଟାଏ ପ୍ରେମର କାଙ୍ଗାଳ—ମୁଁ ବକଟେ ଦୟାର ଭିକାରୀ—ମୁଁ ଟିକିଏ ସ୍ନେହର ପିଆସୀ । ···ନାହିଁ, ନାହିଁ ମୋତେ ଠେଲି ଦିଅ ନାହିଁ—ଗୋଇଠା ମାରି ଦୂର କର ନାହିଁ । ତୁମର ଦ୍ୱାରରେ ମୁଁ ଭିକ୍ଷାଥାଳୀ ଧରି ଠିଆ ହୋଇଛି । ଦିଅ, ଦିଅ—ବକଟେ ଦୟା କରି—ସମବେଦନାର ଟୋପାଏ ଲୁହ । ଏତିକରେ କାହାରି କିଛି ସରିଯିବ ନାହିଁ । ଏଥିପାଇଁ ଏତେ କୃପଣତା କାହିଁକି ?

ଦେଖ, ଦେଖ—ମୋର ବୁକୁ ଚିରି ଦେଖ । ତୁମର ସକାଶେ କେତେ ସ୍ନେହ, କେତେ ପ୍ରୀତି, କେତେ ମମତା ସଞ୍ଚିତ କରି ରଖିଛି ମୋ ଭିତରେ । ପ୍ରତିଦାନ ମାଗୁ ନାହିଁ—ମାଗୁଛି ଟିକିଏ କରୁଣା । ସେତିକରେ ମୁଁ ନିହାଲ ହୋଇଯିବି ।

ମୋହର ଭୁଲ ହୋଇଛି । ସତ, ମୋହର ହୋଇଛି ଭୁଲ । ବିଷମ ଭୁଲ—ଯେଉଁ ଭୁଲର ନାହିଁ ସଂଶୋଧନ, ନାହିଁ ପ୍ରତିକାର, ନାହିଁ ସମାଧାନ ।

ଆଉ ଭଲ ହୋଇ ଫଳ ନାହିଁ, ଅନୁତାପ କରି ଲାଭ ନାହିଁ । ଯେଉଁ ଯାତ୍ରା ଆରମ୍ଭ କରିଛି ତାକୁହିଁ ଅନୁସରି ଯିବି—ଯେଉଁ ରାହା ଧରିଛି ସେହିଥିରେ ଅଗ୍ରସର ହେବି । ଦେଖିବି ତା'ର ଶେଷ କେଉଁଠି, ତା'ର ସମାପ୍ତି କେତେ ଦୂର, ତା'ର ପରିଣତି କି ଭଳି । ଉଠିଲିଣି ଯେତେବେଳେ, ଦେଖିଆସେଁ ସ୍ୱର୍ଗ କେତେ ଊର୍ଦ୍ଧ୍ୱରେ—ବୁଡ଼ିଲିଣି ଯେତେବେଳେ, ଜାଣିଆସେ ପାତାଳ କେତେ ଗଭୀର ।

ବାରଣ କରୁଛ ?—ନାହିଁ ନାହିଁ, ନିବର୍ତ୍ତାଅ ନାହିଁ—ଏ ସଙ୍କଳ୍ପ ମୋର ଭାଙ୍ଗି ଦିଅ ନାହିଁ । ଆଗେଇଲିଣି ଯେତେବେଳେ, ଆଉ ଲେଉଟିବାର ଉପାୟ ନାହିଁ । ଚାଲିବି, ଚାଲିବି । ଅବିରାମ, ଅପ୍ରତିହତ ଗତିରେ କେବଳ ଅଗ୍ରସର ହୋଇ ଯିବି ! ଅଙ୍ଗ ଶିଥିଳ ହେଉ, ହୃଦୟ ବିକଳ ହେଉ, ଚରଣ ଅବଶ ହେଉ, ଗତି ମୋର ସ୍ଥଗିତ ହେବ ନାହିଁ । ଲାଭର ଦୁଶ୍ଚିନ୍ତା ଛାଡ଼ିଛି—ସାଫଲ୍ୟ ବୈଫଲ୍ୟର ଉତ୍କଣ୍ଠା ତ୍ୟାଗ କରିଛି—ଜୟ ପରାଜୟର ବ୍ୟାକୁଳତା ବିସର୍ଜନ ଦେଇଛି । ମୁଁ କ୍ଷିପ୍ର, ମୁଁ ଉଦ୍ଧତ, ମୁଁ ଉଦ୍‌ଭ୍ରାନ୍ତ—ମୁଁ ଚାହେଁ ନା ଆଳସ୍ୟର ଜଡ଼ତା—ମୁଁ ଚାହେଁ ନା ତୃପ୍ତିର ଆରାମ—ମୁଁ ଚାହେଁ ନା ଶ୍ମଶାନର ଶାନ୍ତି । ଏହି କ୍ଲାନ୍ତିହୀନ ପ୍ରୟାସହିଁ ମୋର ପରମ କାମ୍ୟ—ଏହି ନିରବଚ୍ଛିନ୍ନ ସଂଗ୍ରାମହିଁ ମୋର ଚରମ ସାର୍ଥକତା ।



# ନବ ବସନ୍ତର ସମ୍ଭାଷଣ

ରେ ନୂଆ ଅତିଥି ! ତୁ ଆସିଲୁଣି ପରା ? ଆଜିଯାଏ କେଉଁ ଅଜଣା ରାଇଜରେ କାହା ପାଖରେ ରହିଥିଲୁ ? କଅଁଳ କଅଁଳ ଆମ୍ରକଶିଳୟ ସାଉଣି କିଏ ସେ ତୋର ଶେଯ ପାରି ଦେଉଥିଲା ? ମନ୍ଦ ମନ୍ଦ ଦକ୍ଷିଣା ପବନରେ ମାଧବୀପରିମଳ ଗୁଣି ଆଣି କିଏ ତୋତିକ ଫୁଲ ବଞ୍ଚଣାରେ ବଞ୍ଚି ଦେଉଥିଲା ? କାହା ପ୍ରୀତିରେ ଏତେ ଦିନ ଯାଏ ଭୁଲି ରହିଥିଲୁ ? ରେ ଶଠଶିରୋମଣି, ରେ ଚତୁର ପ୍ରବଞ୍ଚକ, ତୋତେ ଆଉ କ'ଣ କହିବି । ତୋର ଏହି କମନୀୟ କାନ୍ତିରେ ଏତେ ନିର୍ମମତା ଅଛି, ଏହି ସ୍ନିଗ୍ଧ କୋମଳତାରେ ଏତେ କାଠିଣ୍ୟ ଅଛି; ଏହି ସରସ ମାଧୁର୍ଯ୍ୟରେ ଏତେ ଗରଳ ଲୁଚାଇ ରଖିଛୁ ! ତୋର ମଧୁମୟ ହାସ୍ୟରେ ଅଛି—ଛଳନା, ତୋର ସରଳ ସୌହାର୍ଦ୍ଦ୍ୟରେ ଅଛି କପଟତାର ଛୁରୀ ।

ମୁଁ ପରା ସେହି ଦିନୁ ତୋର ଆସିବା ପଥ ଚାହିଁ ଜାଗ୍ରତ ନୟନରେ ବସି ରହିଛି ! ଏତେ ସାଧନାର ଏହି ଫଳ ! ଦୁଇ ଦିନ ପାଇଁ ମୋ ମନ ମଜାଇ ଥରକ ପାଇଁ ତୋର ଅମୃତ କଥା ଚଖାଇ, ତୁ ଯେଉଁ ଦିନ ହଠାତ୍ ମୋ ଆଖିର ଉହାଡ଼କୁ ଚାଲିଗଲୁ, ସେହିଦିନୁ ମୋର ମ୍ଳାନ ଆଖି ପତାରେ କେତେ ଦିନ କେତେ ରାତି ନୀରବରେ ବିତି ଗଲାଣି—କେତେ ରବି କେତେ ଶଶୀ ପୁରୁଣା ହୋଇ ଗଲେଣି । ଏତେ ଦିନଯାଏ କାହିଁ ମୁହଁ ଲୁଚାଇ ରହିଥିଲୁ ସଖା ? ପ୍ରଥମ ବୈଶାଖରେ ଯେଉଁଦିନ ତୁ ମୋର ଚିତ୍ତ ଚୋରି କରି ରେଶମପରି ଲୁଚକାଳି ଖେଳୁ ଖେଳୁ ଆମ୍ରତୋଟାରେ ଉଭେଇ-ଗଲୁ, ମୁଁ ପାଗଳ ପ୍ରାୟ କେତେ ଖୋଜିଲି । ମୋତେ ଏକୁଟିଆ ଦେଖି ଆମ୍ବଗଛସବୁ କଞ୍ଚା ଆମ୍ବ ଖସାଇ ଠେକା ମାରିଲେ । ନ ଗଲରୁ ସେଠାରେ ସାଇଁ ସାଇଁ ଝାଞ୍ଜି ପିଟି ଦେଲେ । ଦାଣ୍ଡରେ ଧୂଳି ଉଠି ମୋର ଦୁଇ ଚକ୍ଷୁରେ ପରଳ ପଡ଼ିଗଲା । ନିଦାଘ ମାର୍ତ୍ତଣ୍ଡର ପ୍ରଚଣ୍ଡ ଉତ୍ତାପରେ ମୁଣ୍ଡ ପୋଡ଼ିଗଲା, ଜିଭ ଶୁଖିଗଲା, ପିପାସାରେ କଣ୍ଠରୋଧ ହେବାକୁ ବସିଲା । ଟିକିଏ ସମବେଦନାର ପ୍ରଣୟାମୃତସୁଧା ସିଞ୍ଚିବା ତେଣିକି ଥାଉ, ସମସ୍ତେ ମୋ ଦୁଃଖରେ ଅଟ୍ଟହାସ କରିବାକୁ ଲାଗିଲେ, ମୋର କାତରତାରେ ବିଦ୍ରୂପ କରି ରୁଦ୍ରମୂର୍ତ୍ତି ଦେଖାଇବାକୁ ଲାଗିଲେ । ଯେଉଁଠାରେ ଦୁହେଁଯାକ ନିକାଞ୍ଚନରେ ବସି ଧୀରେ ଧୀରେ କେତେ ଗୋପନୀୟ କଥା କୁହାକୁହି ହେଉଥିଲେ, ଉନ୍ମୁକ୍ତ ଆକାଶ ତଳେ ଚନ୍ଦ୍ର-କିରଣରେ ବସି ମଧୁର ପ୍ରେମାଳାପରେ ରାତି ରାତି ପାହି ଯାଉଥିଲା, ସେହି ଉପବନସ୍ଥ ପୁଷ୍କରିଣୀତୀରକୁ ଯାଇ ଦେଖିଲି, ସେଥିରେ ବୁନ୍ଦାଏ ମାତ୍ର ଜଳ ନ ଥିଲା । ବନ୍ଧୁ ହେ, ଏଇଠି ଜଳ-କେଳି କରୁଁ କରୁଁ କେତେଥର ତୁ ପଦ୍ମପତ୍ର ତଳେ ଲୁଚି ଯାଇଥିଲୁ ? ମୁଁ ଖୋଜି ଖୋଜି ଧରି ପକାନ୍ତେ ତୁ ପରା ହସିଦେଇ ଗୋଟିକି ଗୋଟି ସିତକମଳ ଫୁଟାଇ ଦେଇଥିଲୁ ? ଦେଖିଲି, ଆମର ସେହି ଅତି ପ୍ରିୟ ଲତାଗୁଳ୍ମଗୁଡ଼ିକ ମୋହର ପରି ଝାଉଁଳି ପଡ଼ିଛନ୍ତି ।

ମନେ ପଡ଼େ କି ସଖା, ଆମ୍ଭେ ଦୁହେଁଯାକ ମଲ୍ଲୀଫୁଲର କଢ଼ଗୁଡ଼ିକ ଗୋଟି ଗୋଟି କରି ଫୁଟାଇ ଦେଉଥିଲେ । ଗୋଲାପ ଓ ଚମ୍ପାର ପାଖୁଡ଼ାରେ ତୂଳି ଧରି ରଙ୍ଗ କରି ଦେଉଥିଲେ । ଯୁଇ, ଜାଇ, କୁନ୍ଦ, ମରୁଆକୁ ଫୁର୍କି ଫୁର୍କି ହସାଇ ଦେଉଥିଲେ । ରସିକ ମଧୁକର ଯେତେବେଳେ କାମିନୀର ଅଧରସୁଧା ଚୁମ୍ବିବା ମାନସରେ ଚୌପିଠି ବୁଲି ବୁଲି ରସନା ବଢ଼ାଇ ଦେଉଥିଲା, କିଏ ସେତେବେଳେ କାମିନୀକୁ ନବବଧୂର ବ୍ରୀଡ଼ା ବ୍ୟଞ୍ଜିତ ଚଞ୍ଚଳ ଇତସ୍ତତା ଶିଖାଇ ଦେଉଥିଲା ? ବକୁଳ ସହିତରେ ନବମଲ୍ଲିକାର ହାତଗଣ୍ଠି ପକାଇ ଆନନ୍ଦରେ କେତକୀର ପରାଗ ଉଡ଼ାଇ ଫଗୁ ଖେଳୁଥିଲା କିଏ ? ମାଧବୀକୁଞ୍ଜରେ ମଧୁପାନ କରି ଉନ୍ମାଦନା-ବଶରେ ଯେତେବେଳେ ଦୁହେଁଯାକ କୋକିଳର କୁହୁତାନରେ ସ୍ୱର ମିଶାଇ ଦେଉଥିଲୁଁ, କାହିଁ, ସେତେବେଳେ ତୁ ତ ଦିନେ ହେଲେ କହି ନାହୁଁ ଯେ ତୁ "ଦୁଇ ଦିନର ବାଟୋଇ" ? ସେହି ନିତ୍ୟ ନବୀନ, ନିତ୍ୟ ସୁନ୍ଦର, ନିତ୍ୟ ଉତ୍ସବମୟ, ନିତ୍ୟ ସଙ୍ଗୀତପୂର୍ଣ୍ଣ ଜୀବନରେ ମୋର ଏକାନ୍ତ ବିଶ୍ୱାସ ଜନ୍ମାଇ ଦେଇଥିଲୁ ତ ! କିଏ ଜାଣିଥିଲା ମୋର ଏଇ ନିରବଚ୍ଛିନ୍ନ ମଧୁମୟ ଜୀବନର ସ୍ରୋତରେ ତୁ ଏତେ ଶୀଘ୍ର ବନ୍ଧ ପକାଇବୁ ବୋଲି ! ତୋ ମନରେ ଏତେ କୁଟ କପଟ ଥିଲା ବୋଲି ମୋତେ ଜଣା ନ ଥିଲା । ତୋର ପ୍ରଣୟବାଣୀର ମଦିର ମୋହରେ ମୁଁ ଆତ୍ମବିସ୍ମୃତ ହୋଇଥିଲି । ସେହି ସରଳ ବିଶ୍ୱାସର, ସେହି ଆତ୍ମଦାନର ପ୍ରତିଦାନ ସ୍ୱରୂପ ଏବେ ଏହି ନିଦାରୁଣ ବିରହ ଅନଳ ସହ୍ୟ କରିବାକୁ ହେଲା ସିନା ! ସେହି ତାପରେ ଜର୍ଜ୍ଜରିତ ହୋଇ ଦେହ ଅଗ୍ନିମୟ ହୋଇଗଲା । ବ୍ରହ୍ମାଣ୍ଡସାରା ଦାଉ ଦାଉ ଜଳି ଉଠିଲା । ସନ୍ଧ୍ୟା ଆସନ୍ତେ ସନ୍ତାପ ଊଣା ହୋଇ ଅଙ୍ଗରୁ ବିନ୍ଦୁ ବିନ୍ଦୁ ସ୍ୱେଦ ନିର୍ଗତ ହେବାକୁ ଲାଗିଲା । ଅଗୁରୁ ଚନ୍ଦନର ଶୀତଳ ପ୍ରଲେପ ମଧ୍ୟ ତାହା ନିବାରଣ କରି ପାରିଲା ନାହିଁ । ସେତେବେଳେ ବକୁଳମୂଳ

ବେଦୀ ଉପରେ ଶୂନ୍ୟ ମନରେ ଉତ୍ତାନ ହୋଇ ପଡ଼ି ରହିଲି । ଅନିମେଷ ନୟନରେ ତାରକାଗୁମ୍ଫିତ ସୁନୀଳ ଆକାଶକୁ ଚାହିଁବାକୁ ଲାଗିଲି । ଦକ୍ଷିଣା ପବନର ପ୍ରତ୍ୟେକ ଉଚ୍ଛ୍ୱାସ ହୃଦୟରେ କେତେ ଆଶା ସଞ୍ଚାର କରି ଦେଉଥାଏ । କେଜାଣି ବା ତୋଠାରୁ କି ବାରତା ନେଇ ଆସୁଥିବ ! ବକୁଳ ପତ୍ରର ମର୍ମର ଶବ୍ଦକୁ ତୋର ପଦଧ୍ୱନି ବୋଲି କେତେ ଥର ଚମକି ପଡ଼ୁଛି । କିନ୍ତୁ ସବୁ ବୃଥା ହେଲା । ଏହିପରି ଅହରହ ପ୍ରତୀକ୍ଷାରେ ଦୁଇମାସ ବିତିଗଲା ।

ଆଷାଢ଼ର ପ୍ରଥମରେ ଠିକ୍ ଜାଣି ପାରିଲି ଯେ ଆଉ ତୁ ଆସିବୁ ନାହିଁ । ଏତେକାଳ ବ୍ୟାପି ବିଫଳ ସାଧନାରେ ହତାଶ ହୋଇ ବୃକ୍ଷଆଡ଼ୁ ଅନ୍ଧାର ମାଡ଼ି ଆସିଲା । କଳା ବଉଦବର୍ଣ୍ଣି ଆକାଶମଣ୍ଡଳକୁ ଘୋଟି ଦେଲା । କି ବିଡ଼ମ୍ବନା ! ମଝି ମଝିରେ ବ୍ୟର୍ଥ ଆଶାର କନକ-କାନ୍ତି ବିଜୁଳି ଝଲକରେ ଚମକି ଯାଉଥାଏ । ଆଖି ମେଲି ଚାହିଁ ଦେଲା ବେଳକୁ କାହାର ବିକଟ ରଡ଼ିରେ କର୍ଣ୍ଣ ବଧୀର ହୋଇଯାଏ, ଭୟରେ ଆପେ ଆପେ ଆଖି ବୁଜି ପଡ଼ିଲା, ଶ୍ୱାସ ପ୍ରଶ୍ୱାସ ଶୀତଳ ହୋଇଗଲା । ଭୟରେ, ନିରାଶାରେ କାତର ହୋଇ ଅଙ୍ଗ ଥରିବାକୁ ଲାଗିଲା । ନେତ୍ର-ପ୍ରାନ୍ତରୁ ଅଜସ୍ର ଧାରରେ ଅଶ୍ରୁର ପ୍ରବଳ ପ୍ରସ୍ରବଣ ମୁକୁଳି ଯାଇ ବକ୍ଷ ଭସାଇ ଦେଲା । ଭୂମଣ୍ଡଳ ପ୍ଲାବିତ ହୋଇଗଲା । ଭେକକୁଳ ମୋର ଦୁର୍ଦ୍ଦଶା ଦେଖି ଟାହିଲି କରି ରଡ଼ି ଛାଡ଼ିଲେ । କାନ୍ଦି କାନ୍ଦି ମୋର ଆଖି ଦୁଇଟି ରକ୍ତ ବର୍ଣ୍ଣ ହୋଇଗଲା । ସେତେବେଳେ ଏକା ମାଳତୀର ବ୍ୟାକୁଳ ସୌରଭ କଦମ୍ବତରୁର ବୃକ୍ଷଆଡ଼େ ଧାଇଁ ବୁଲୁଥିଲା ।

କେତେ କାନ୍ଦିଲେ ପରେ ଶୋକର ତୀବ୍ରତା କମି ଯାଏ । ଅବାରିତ ଅଶ୍ରୁ ପ୍ରବାହରେ ଅନ୍ତରର ତାପ, ଆବିଳତା ଧୋଇ ଯାଇ ନବ ଆଶାର ସ୍ନିଗ୍ଧ ଅରୁଣିମା ହୃଦ ଆକାଶରେ ପୁଲକି ଉଠେ ।

ଭାଦ୍ରବର ପ୍ରାରମ୍ଭରେ ଗଗନ ନିର୍ମଳ ହୋଇଗଲା । ସୂର୍ଯ୍ୟ କିରଣ ହସି ଉଠିଲା । ସ୍ୱଚ୍ଛ ସରୋବରରେ କହ୍ଲାର, କମଳ ଫୁଟିଲେ । ବସୁନ୍ଧରାସୁନ୍ଦରୀ ଶ୍ୟାମଳ ଶସ୍ୟଶାଢ଼ୀ ପିନ୍ଧି ଶିରି ଶିରି ପବନରେ ହରିତ ଅଞ୍ଚଳ ଉଡ଼ାଇ ଦେଲେ । ନାନା ଜାତିର ବିହଙ୍ଗମମାନଙ୍କ କଳଧ୍ୱନି ପ୍ରକୃତିଦେବୀଙ୍କର ଉତ୍ସବ ଘୋଷଣା କଲା । ଭାବିଲି ତୁ ଫେରି ଆସୁଛୁ । ତଟିନୀତଟରେ କାଶକୁସୁମର ହାସ୍ୟ ଦେଖି ଜାଣି ପାରିଲି ଯେ ତାହା ବିଦ୍ରୂପର ହାସ୍ୟ । ନଳିନୀ ଅଧର-ଚୁମ୍ବନ-ଲୋଲୁପ ମଧୁକରର ମଧୁର ଗୁଞ୍ଜନ ଶୁଣି ଜାଣି ପାରିଲି ଯେ ତାହା ଛଳନାର ସଙ୍ଗୀତ । ସୁବିମଳ କୁଆଁରୀ ଜହ୍ନକୁ ଚାହିଁ ଚାହିଁ ଆଖିରୁ ପାଣି ମରିଗଲା । ପ୍ରବଞ୍ଚନା—ଘୋର ପ୍ରବଞ୍ଚନା ।

ରାତି ନ ପାହୁଣୁ ମୋର ଆଶା କୁସୁମ ଶେଫାଳିକା ସଙ୍ଗରେ ଝଡ଼ି ପଡ଼ିଲା । ମନ-ଫୁଲଶାର ନବ ଉତ୍ତାପ ଅନ୍ତରରୁ କମିଗଲା । ଦେହଯାକ ହିମ ଅନୁଭବ କଲି । ଦେଖୁ ଦେଖୁ ନିରାଶାରେ ଅଙ୍ଗ ପ୍ରତ୍ୟଙ୍ଗ ଅବଶ ହେବାକୁ ଲାଗିଲା । ନୟନର ନୀର ନୟନରେ ଶୁଖି ଗଲା । ଅଧର କମ୍ପିତ ହେଲା, ଗୁଡ଼ିତ ଥରି ଉଠିଲା । ଚାରିଆଡ଼େ ନିର୍ଜୀବତା, ନୀରବତା ମଧ୍ୟରେ ସର୍ବ ଶରୀର ଶିଥିଳ ହୋଇଗଲା । ମୋ କପାଳକୁ ପୁଣି ପୌଷମାସ ରାତିଗୁଡ଼ାକ ଅସରନ୍ତି ହୋଇଗଲେ । ଦାରୁଣ ଜଡ଼ତା ମୋତେ ଘାରି ଦେଲା ; ଆଉ ଚେତନା ରହିଲା ନାହିଁ । ଇନ୍ଦ୍ରିୟଗଣ ନିଷ୍କ୍ରିୟ ହେଲେ । ଦେହ, ମନ, ପ୍ରାଣ ଏକାଧାରରେ ନିର୍ଜୀବ, ନିସ୍ପନ୍ଦ, ଜଡ଼, ତୁଷାରବତ୍ ହୋଇ ଗଲେ । ଏହି ଅବସ୍ଥା ମୋତେ ଆଶୀର୍ବାଦ ତୁଲ୍ୟ ହେଲା । ସ୍ମୃତି, ଚିନ୍ତା ଓ ଭାବନାର ଅଜ୍ଞାତ ଜଡ଼-ବସ୍ତୁତିର ମଧୂମୟ ଅନ୍ଧକାରରେ ବୁଡ଼ି ରହିଲା । କିଛିକାଳ ପାଇଁ ତୋହ ବିଚ୍ଛେଦର ଅସହ୍ୟ ନିର୍ଯ୍ୟାତନାରୁ ରକ୍ଷା ପାଇଲି ।

ଏହିରୂପେ ଦେଖୁ ଦେଖୁ ତୋ ଗଲା ଦିନଠାରୁ ଦଶମାସ ବିତି ଗଲାଣି । ଏହି କାଳ ମୋତେ ସୁଦୀର୍ଘ ଦଶ ବର୍ଷ ପରି ଲାଗୁଛି । ବସନ୍ତ, ଦିନେ ଏହି ଆଦ୍ୟ ଫଗୁଣରେ କୃଷ୍ଣଚୂଡ଼ା ଫୁଲର ମୁକୁଟ ପିନ୍ଧି କେତେ ଅନୁରାଗରେ ବର ବେଶରେ ଆସିଥିଲୁ । ଏତେଦିନେ ପୁଣି ମୋ ପ୍ରାଙ୍ଗଣରେ ତୋ'ର ପାଦ ପଡ଼ିଲା । ଯଦିବା ଆସିଲୁ ସର୍ବପ୍ରଥମେ କାହିଁ ତ ମୋତେ ସମ୍ଭାଷଣ କଲୁ ନାହିଁ ? ତୁ ତ ମୋ କୁଟୀରର ଚାରି ପାଖରେ ବୁଲି ଗଲୁଣି, ମୋ ଦ୍ୱାରରେ ଆସି କେତେଥର ଉଣ୍ଡିଦେଇ ଗଲୁଣି ; କିନ୍ତୁ ଏଯାକେ ମୋତେ ଥରେ ହେଲେ ଦେଖା ଦେଇ ନାହୁଁ । ଏହି ବିରହ-ଶୟନରୁ ଉଠାଇବା ପାଇଁ ଥରେ ମୋ ପାଖକୁ ଉପଯାଚକ ହୋଇ ନ ଆସିଲୁ କାହିଁକି ? ସେଥିରେ କି ତୋର ମାନ ଊଣା ହୋଇଯାନ୍ତା ? ବସନ୍ତରେ, ପ୍ରେମର ମର୍ଯ୍ୟାଦା ତୋତେ କ'ଣ ଜଣା ନାହିଁ ? ତୋ ମନରେ କ'ଣ ଅଛି କେଜାଣି, ମୁଁ କିନ୍ତୁ ତୋ'ର ଆଗମନ-ବାର୍ତ୍ତା ଜାଣି ପାରିଲିଣି । ଯେଉଁଦିନ ତୋ'ର ବାହନ ମଳୟ ଧୀରେ ଧୀରେ ମୋର ରୁଦ୍ଧ ବାତାୟନର ଫାଙ୍କବାଟେ ପ୍ରବେଶ କରି ମୋର ନିମୀଳିତ ନୟନରେ ହାତ ବୁଲାଇ ଦେଇ ବଡ଼ ସୁଷୁପ୍ତିରୁ ଅର୍ଦ୍ଧଚେତନମୟ ରାଜ୍ୟକୁ ଫେରାଇ ଆଣିଲା, ସେହିଦିନ ତ ମୁଁ ଟିକିଏ ଟିକିଏ ଜାଣିପାରିଥିଲି । କେତେବେଳଯାଏ ଅର୍ଦ୍ଧସୁପ୍ତ ଅର୍ଦ୍ଧଜାଗ୍ରତ ଅବସ୍ଥାରେ କେତେ ସୁଖ ଦୁଃଖର ସ୍ୱପ୍ନ ଦେଖୁଥିଲି । ହଠାତ୍ ତୋ'ର ଉଗ୍ର କୋକିଳର ଚିତ୍କାରରେ ଚମକି ପଡ଼ି ଚାହିଁଦେଲା ବେଳକୁ ଗବାକ୍ଷ ଫାଙ୍କ ଦେଇ ତୋ'ର ନାଲି ନିଶାଣ ପଳାଶ ବନରେ ଦେଖାଗଲା । ଦୁଆର ଖୋଲି ଦେଖିଲା ବେଳକୁ

# ନବ ବସନ୍ତର ସମ୍ଭାଷଣ

ଅଗଣାରେ ପାଦ ଚିହ୍ନ ପଡ଼ିଛି । ତୁ ଯେଉଁ ବାଟ ଦେଇ ପାଦ ପକାଇ ଚାଲି ଯାଇଛୁ, ସେଥିରେ ନବୀନ ଦୂର୍ବାଦଳ ଅଙ୍କୁରିତ ହୋଇଅଛି । ତୋ'ର ଉତ୍ତରୀୟର ପବନ ବାଜି ଚଉପାଶରେ ଯିବା ଯୂଇ, ଜାଇ, ନଆଳୀ, ମଲ୍ଲିକାର ଅଙ୍କୁରୋଦ୍‌ଗମ ହୋଇଛି । ଝୁରିଅନା ଓ ମଧୂମାଳତୀର ପଲ୍ଲବଗହଳରେ କେତେ ମୁଁ ଖୋଜିଲି । ତୋ'ର ଅତି ପ୍ରିୟ ମାଧବୀ କୁଞ୍ଜରେ ଯାଇ ଦେଖିଲି ଭ୍ରମରଗଣ ଉଲ୍ଲାସରେ ଗୁଣୁ ଗୁଣୁ କରି ଗୀତ ଗାଉଛନ୍ତି । ନବୋଦ୍‌ଗତ ଆମ୍ରବଉଳର ମଧୂଗନ୍ଧରେ ଉନ୍ମତ୍ତ ହୋଇ ଭ୍ରମରଗୁଡ଼ାକ ମୋହରି ପରି ତୋତେ ଖୋଜି ବୁଲୁଥିଲେ । ନାଗେଶ୍ୱର ଓ ମୁଚୁକୁନ୍ଦର ସୌରଭ ଏତିକବେଳେ ଦକ୍ଷିଣାବାୟୁ ବହି ଆଣି ମୋ ଚାରିଆଡ଼େ ବିଞ୍ଚୁଡ଼ି ଦେଲା । ଚମ୍ପେଇଲି ବେଳକୁ କୁରୁବକ କର୍ଣ୍ଣିକାର ସବୁ ଫୁଟି ସାରିଲେଣି । ଆଉ କ'ଣ ? ତୁ ନିଶ୍ଚୟ ଆସିଛୁ । କିନ୍ତୁ ମୋତେ ଏଯାଏ ଦେଖା ଦେଇନାହୁଁ କାହିଁକି ? ହେଇଟି, ବାଡ଼ ପୋଖରୀ ନୀଳ, ରକ୍ତ, ଶ୍ୱେତ ପଦ୍ମରେ ପୂରି ଗଲାଣି । ବେଶ୍, ବେଶ୍, ଇତିମଧ୍ୟରେ ସ୍ନାନ କରି ସାରିଲୁଣି ? ମୋତେ ଥରେ ସାଙ୍ଗରେ ଡାକିବାକୁ ମନ କଲୁନି ନାହିଁ ? ଧୀର ସମୀରଣରେ ଚଞ୍ଚଳ କମଳକଳିକାଗୁଡ଼ାକ ଫୁଟାଇ ତୁ ଯେତେବେଳେ ତୂଳି ଧରି ପାଖୁଡ଼ାକୁ ପାଖୁଡ଼ା ରଙ୍ଗ କରି ଦେଲୁ, ସେତେବେଳେ କିଏ ମୃଣାଳ ଧରି ତାହା ସ୍ଥିର କରିଦେଲା ? ଏକୁଟିଆ ହୋଇ ଏତେ କଥା କରି ସାରିଲୁଣି ତେବେ । କିପରି ମୋତେ ମୂର୍ଚ୍ଛି ଦେଇ ଏଡ଼େ ପ୍ରୀତି ପାଶୋରି ପକାଇଲୁ ? ଏ କି ରୀତି ତୋ'ର ବସନ୍ତ ? ଛି—ଛି !

ଏହି ସମୟରେ ବଉଳଗଛରେ ବସି କୋଇଲିବସନ୍ତ ଡାକିଦେଲା—"କୁ—କୁ ।" ନା, ନା ବନ୍ଧୁ, ମୋ ସାଙ୍ଗରେ ଆଉ ଥଟ୍ଟା କର ନା । ପାଦ ଧରି ବିନତି କରୁଛି, ଏବେ ଲୁଚକାଳି ଖେଳ ଛାଡ଼ିଦେ । ମୋ ମନ ବୁଝିବାକୁ ଡେରି କଲୁଣି । ଆଉ ମୁଁ ସହ୍ୟ କରି ପାରିବି ନାହିଁ । ଦେଖ ଦେଖ, ମୁଁ ତୋତେ ଶଙ୍ଖୁଳିବା ପାଇଁ ଅର୍ଘ୍ୟ ଥାଳୀ ସଜାଡ଼ି ଥୋଇଛି—ବନ୍ଦାପନାର ପ୍ରଦୀପ ଜାଳି ରଖିଛି । ଏଥର ତୋତେ ପାଇଲେ ଆଉ ତ ଛାଡ଼ିଦେବି ନାହିଁ । ତୁ ଯେତେଣ ଯିବୁ ତୋ ସହିତରେ ଛାୟା ପରି ଏଣିକି ରହିଥିବି—ତୋ ଅଙ୍ଗରେ ଅଙ୍ଗ ମିଳାଇ ଦେବି—ତୋ ପ୍ରାଣରେ ପ୍ରାଣ ମିଳାଇ ଦେବି—ତୋ ନିଶ୍ୱାସରେ ନିଶ୍ୱାସ ମିଶାଇ ତୋ ସହିତରେ ଏକୀଭୂତ ହୋଇଯିବି । ଆ ବସନ୍ତ ଆ, ତୋର ପ୍ରଭାତ ପବନରେ ପ୍ରାଣ ଉତ୍ସର୍ଗ କରିଦିଏ—ତୋର ସାନ୍ଧ୍ୟ ସମୀରଣରେ ସବୁ ବୁଡ଼ିଯାଉ—ଅହମିକାଜ୍ଞାନ ବିଲୁପ୍ତ ହୋଇଯାଉ । ସଂସାରର ବିଷଜ୍ୱାଳାରେ ଜର୍ଜରିତ ହେବାକୁ ଆଉ ବାସନା ନାହିଁ । ଜନସମାଜର କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଆଉ ସାମର୍ଥ୍ୟ ନାହିଁ । ତୋର ଉନ୍ମତ୍ତ ହାଓୟା, ପ୍ରାଣରେ ପୂରି ଗଲାଣି—ତୋର ନନ୍ଦନ ଗନ୍ଧରେ ଚିତ୍ତ ଅଧୀର ହେଲାଣି—ତୋ'ର କନକ କିରଣ ନୟନରେ ଉଦ୍ଭାସିତ ହେଲାଣି—ତୋ'ର ବୈଦ୍ୟୁତିକ ସ୍ପର୍ଶ ଶରୀରରେ ଅନୁଭୂତ ହେଲାଣି—ତୋ'ର ନିସର୍ଗ ସଙ୍ଗୀତର ପ୍ରତିଧ୍ୱନି ହୃଦୟବୀଣାର ପ୍ରତି ତାରରେ ବାଜି ଉଠିଲାଣି !



# ମଙ୍ଗଳ ମଞ୍ଜରୀ

ଜନ୍ମ, ମୃତ୍ୟୁ ଓ ବିବାହ—ଏହି ତିନୋଟି ମାନବଜୀବନର ସର୍ବପ୍ରଧାନ ସନ୍ଧିସ୍ଥଳ ବୋଲି ଲୋକେ କହିଥାଆନ୍ତି । ମାତ୍ର ଜନ୍ମର ଅନୁଭୂତି ବିସ୍ମୃତିର ଅନନ୍ତ ଗର୍ଭରେ—ମୃତ୍ୟୁର ଅନାସ୍ୱାଦିତ ରୂପରେଖ କଳ୍ପନାର ଅଗୋଚର, କେବଳ ବିବାହଟା ଜନ୍ମ ଓ ମରଣରୂପୀ ଉଭୟ ସୀମାରେଖାର ମଧ୍ୟସ୍ଥଳରେ ଥାଇ ଜୀବନର ଦୁଇଟା ସ୍ତରକୁ ଗୋଟିଏ ଜଟିଳ ଗ୍ରନ୍ଥି ପକାଇ ରଖିଛି ଓ ଏକ ଅକ୍ଷୟ, ଅନିବାର୍ଯ୍ୟ, ଅଲେଖମୟ ସଂଯୋଜକ ରୂପେ ଆପଣା ମହିମାରେ ଆପେ ମହୀୟାନ୍ ମୂର୍ତ୍ତିମନ୍ତ ହୋଇ ଛିଡ଼ା ହୋଇଛି ।

ବିବାହର କେନ୍ଦ୍ରବିନ୍ଦୁ—ନାରୀ, ପୁରୁଷର ଜୀବନପ୍ରବାହକୁ ନିୟନ୍ତ୍ରଣ କରିବାରେ ନାରୀର ଯେ କି ଅଦ୍‌ଭୁତ ଶକ୍ତି ତାହା ସମସ୍ତେ ଅନୁଭବ କରି ନ ପାରିଲେ ମଧ୍ୟ ଅଲକ୍ଷ୍ୟରେ ତାହା ପୁରୁଷର ମନ ଓ ହୃଦୟକୁ ଏକ ନୂଆ ଛାଞ୍ଚରେ ଢାଳି ଯେପରି ରୂପାୟିତ କରେ, ତାହା ପ୍ରାୟ ଗୋଟାଏ ନୂଆ ଜନ୍ମ ସହିତ ତୁଳନା କରାଯାଇ ପାରେ । କେବଳ କଠୋର ସ୍ୱାର୍ଥପର, ଆତ୍ମକେନ୍ଦ୍ରିକ ବ୍ୟକ୍ତିଙ୍କ କଥା ସ୍ୱତନ୍ତ୍ର ହୋଇପାରେ । ମାତ୍ର ସାଧାରଣ ନରନାରୀ ଉପରେ ବିବାହର ପ୍ରଭାବ ଯେ କେଡ଼େ ବିରାଟ ଓ ବିପ୍ଳବମୟ, ତାହା କିଏ ଅସ୍ୱୀକାର କରିବ !

ନାରୀ ପୁରୁଷର ଶାରୀରିକ ମିଳନ ଓ ବଂଶରକ୍ଷା ହେତୁ ସହଜାତ ପ୍ରବୃତ୍ତିର ତାଡ଼ନା ଛଡ଼ା ସମାଜର ଶୃଙ୍ଖଳା ତଥା ଗାର୍ହସ୍ଥ୍ୟ ଜୀବନର ସୁଖଶାନ୍ତି ଓ ପୂର୍ଣ୍ଣତା ପ୍ରାପ୍ତି ନିମନ୍ତେ ବିବାହର ଗୁରୁତ୍ୱ ବିପୁଳ ।

ପୁତ୍ର ବା କନ୍ୟାର ଉପଯୁକ୍ତ ବୟସ ହେବାର ଦେଖିଲେ ପିତାମାତା ତାଙ୍କ ବିବାହ ପାଇଁ ବିଶେଷ ଉଦ୍‌ବିଗ୍ନ ହୋଇ ପଡ଼ିବାର ଦେଖାଯାଏ । ପୁଣି ଝିଅଟି ଦେଇ ଜୁଆଇଁ କରିବା ବା ପୁଅ ପାଇଁ ବୋହୂଟିଏ ଆଣିବା ପ୍ରତ୍ୟେକ ପିତାମାତାର କେବଳ ସଉକ ନୁହେ, ଗୋଟିଏ ଅବଶ୍ୟକର୍ତ୍ତବ୍ୟ ବୋଲି ଆମ ସମାଜର ନୀତି । ଅବଚେତନ ମନ ଭିତରେ ଏହି ପ୍ରବଳ ଆଗ୍ରହର ଉତ୍ପତ୍ତି କେଉଁଠାରେ ତାହା ମନୋବୈଜ୍ଞାନିକମାନଙ୍କର ସମୀକ୍ଷାର ସାମଗ୍ରୀ ।

ମୁଁ ସେତେବେଳେ ସାତ ବର୍ଷର ଶିଶୁ । ପିତାଙ୍କର ବାଲ୍ୟବନ୍ଧୁ ଓ ପ୍ରତିବେଶୀଙ୍କର କନ୍ୟାଟିଏ ଜନ୍ମ ହେଲା । ଗେହ୍ଲା ଗେହ୍ଲାରେ ପିତା ସେହି ନବଜାତ କନ୍ୟାଟିକୁ ନିଜର ପୁତ୍ରବଧୂ କରିବା ପାଇଁ ପ୍ରସ୍ତାବ କଲେ । ବନ୍ଧୁ ଦେଲେ ସମ୍ମତି । ସେତେବେଳେ କଥାଟାକୁ କେହି ଗୁରୁତ୍ୱ ଦେଇ ନ ଥିଲେହେଁ କାନକୁ କାନ ବାଜି କଥାଟା ଜଣାଶୁଣା ମହଲରେ ପ୍ରଚରିତ ହୋଇଗଲା । ସେହିଦିନୁ ମୋ ସାଙ୍ଗସାଥୀଙ୍କଠାରୁ ଆରମ୍ଭ କରି ବାଟଚଲା ଲୋକଯାକେ ମୋତେ ଅମୁକଙ୍କ ଜୁଆଇଁ ବୋଲି ଥଟ୍ଟା ଟାପରା କରିବାକୁ ଲାଗିଲେ । ସ୍ତ୍ରୀମହଲରେ ଅଧିକ ଉତ୍ସାହ । ଅଜା, ଆଈ, ଲେଖାଯୋଖା ବ୍ୟକ୍ତିଙ୍କୁ ଲାଗିଗଲା ଗୋଟିଏ ଅଧିକା କୌତୁକ । ଭାବୀ ଶ୍ୱଶୁରଙ୍କ ଘରଆଡ଼େ ଖେଳି ବୁଲି ଗଲେ, କନିଆକୁ ଦେଖି ଯାଇଥିଲୁ କି ବୋଲି ତାମସା କରନ୍ତି । କ୍ରମେ ମୋର ସେଆଡ଼େ ପାଦ ବଢ଼ାଇବା ବନ୍ଦ ହୋଇଗଲା । କି ଗୋଟାଏ ଅବୁଝା ସରମ ମୋର ଶିଶୁମନକୁ ଅଭିଭୂତ କରି ପକାଇଲା କେଜାଣି । ବାହା ହେବା ଯେ ଗୋଟାଏ ଲାଜ କଥା—ଲୋକଙ୍କ ଇଙ୍ଗିତରୁ ମୁଁ ତାର ସୂଚକ ପାଇ ମନେ ମନେ ସଢ଼ି ପଡ଼ିଲି ।

ମୁଁ ଥିଲି ଅଜାଙ୍କ ଘରେ । ଶ୍ୱଶୁରଙ୍କ ଘର ତାଙ୍କର ପଡ଼ୋଶା । ଦିନ ରାତି ଏକା କଥା ଶୁଣି ଶୁଣି ମୋର କଅଁଳ ଚିତ୍ତରେ ଗୋଟାଏ ଦୃଢ଼ ବିଶ୍ୱାସ ଆସିଗଲା ଯେ, ମୁହିଁ ସେହି କନ୍ୟାର ବର । କନ୍ୟାର ପିତାଙ୍କୁ ବି ଶ୍ୱଶୁର ବୋଲି ଭାବିବାକୁ ଲାଗିଲି । ଜାଣି ପାରିଲି, ସତେ ମେ ଯେପରି ମୋତେ କୁନି ଜୁଆଇଁଟି ବୋଲି ଅଧିକ ଶରଧା କରନ୍ତି ।

ମୋର ଓ ମୋ ଭାବୀ ପତ୍ନୀର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏହି ଲୋକବାଦ ବଢ଼ିବାକୁ ଲାଗିଲା ଏବଂ ମୋ ମନରେ ସେହି ଧାରଣା ହେବାକୁ ଲାଗିଲା ଦୃଢ଼ରୁ ଦୃଢ଼ତର । ସେହି କଞ୍ଚା ବୟସରେ ମୁଁ ସତେକି ହୋଇ ପଡ଼ିଲି ଗୋଟାଏ ଖାଣ୍ଟିମତ ପକ୍କା ଜୁଆଇଁ । ମୁଁ ପରି ଥିଲି ଭାରି କଉତୁକିଆ ପିଲାଟି । ମୋ ସଙ୍ଗରେ ଗେହ୍ଲାବସର ହେବାକୁ ଲୋକେ ସୁଖ ପାଉଥିଲେ, ତେଣୁ ବହୁତ ଲୋକଙ୍କ ସହିତ ଥିଲା ମୋର ଟାହିଟାପରା ସମ୍ପର୍କ । ଏପରି ଦିନ ମୋର ଯାଏ ନାହିଁ, ଯେଉଁ ଦିନ ଏହି ବାହାଘର ଓ କନିଆ ଦେଇ ଦି'ପଦ ପଦେ ମୁଁ ଶୁଣିବାକୁ ନ ପାଏଁ । ଅନେକେ ରହସ୍ୟ କରି ମୋ କନିଆର ନାମ କହିବାପାଇଁ ଲଗାନ୍ତି । ମୁଁ ଲାଜରେ ତୁନି ହୋଇ ରହିଲେ ବି ନିସ୍ତାର ନାହିଁ । ସ୍ଲେଟ ପେନ୍‌ସିଲ ଆଣି ଲେଖି

ଦେବାକୁ କହନ୍ତି । ମୋହବନ୍ତ ରଖିବାକୁ ଯାଇଁ ମୁଁ ଲେଖିଦିଏଁ । ଆଗରୁ ମୋତେ 'ଲବଙ୍ଗଲତା' ବୋଲି ଲୋକେ ଶିଖାଇ ଦେଇ ଥାଆନ୍ତି । ସେହି ନାଆଁଟା ଆଣି ଦେଇଥାଏ ମୋ ଭିତରେ ଗୋଟାଏ ଅବୁଝା ମୋହ—ଗୁନ୍ତରେ ପକାଇ ଦେଇଥାଏ ଗୋଟାଏ ଅଲଭା ଗାର ।

ଦିନକର କଥା, ମୋର ଖୁବ୍ ମନେ ଅଛି । କାଲିକାର କଥା ପରି ଜଳଜଳ ହୋଇ ଆଖି ଆଗରେ ଝଲସି ଯାଉଛି । ମୋ ପିତାଙ୍କର ମାମୁଁ, ମୋ ଅଜା, ମଜା ଦେଖିବା ପାଇଁ କନ୍ୟାପିତାଙ୍କୁ କହି ତାଙ୍କ କନ୍ୟାକୁ ଅଣାଇଲେ । ଏଣେ ମୋତେ ଡକାଇ ପଠାଇଲେ । ମୁଁ ଆସିଲାରୁ ଦୁହିଙ୍କୁ କୋଳରେ ବସାଇ ଲୁଗା କାନିରେ ହାତଗଣ୍ଠି ପକାଇ ଦେଇ ଖୁବ୍ ଆନନ୍ଦ ଉପଭୋଗ କଲେ । ମୁଁ ଲାଜରେ ଏକେ ବିକଟ ହୋଇଗଲି । ଅଜାଙ୍କର ମଉଜ କହିଲେ ନ ସରେ । ଶ୍ୱଶୁର ବି ହସୁ ଥାଆନ୍ତି । ଏହି ସାମାନ୍ୟ ଘଟଣାଟି ମୋ ସ୍ମୃତିପଟରେ ଏପରି ଉଜ୍ଜ୍ୱଳ, ଏପରି ନବୀନ ହୋଇ ରହିଛି ଯେ, ଏ ପରିଣତ ବୟସରେ ମନେ ପଡ଼ିଗଲାକ୍ଷଣି ମନ ଏକ ଅଜଣା ଆନନ୍ଦ-ବିଷାଦରେ ଭରି ଉଠୁଛି ।

ମୁଁ ସେତେବେଳେ ଦ୍ୱାଦଶ ବର୍ଷର କିଶୋର । କନ୍ୟା ବୋଧହୁଏ ପାଞ୍ଚ ବର୍ଷର ଅଜ୍ଞାନ ଶିଶୁ । କିନ୍ତୁ ଅଜାଙ୍କର ଏହି ଅଲୀକ ରଙ୍ଗରସର ପ୍ରଭାବ ମୋ କୋମଳ ପ୍ରାଣରେ କି ନିବିଡ଼ ରେଖାପାତ କରିଥିବ, ତାହା ସେତେବେଳେ ସେ ବୁଝିପାରିଥିଲେ କି ନାହିଁ କିଏ ଜାଣେ ? ମାତ୍ର ତାଙ୍କର ମଙ୍ଗଳ ଆଶିଷ ସଫଳ ହେଲା ବେଳକୁ ସେ ନ ଥିଲେ ।

ଅନେକଙ୍କର, ବିଶେଷତଃ ଗାଁମାଇପିଙ୍କର ଗୋଟାଏ ରବାଜ୍ ହୋଇ ପଡ଼ିଲା ମୋ ଆଗରେ କନ୍ୟା ସମ୍ବନ୍ଧରେ ଦି'ପଦ ବଖାଣିବା । କନ୍ୟାର ରୂପ କିମିତି, ଗୁଣ କିମିତି, ସେ କ'ଣ କରୁଥିଲା, ମୋ ବିଷୟ କହି ଠାପରା କଲାରୁ ସେ କିମିତି ଲାଜରେ ଜୁଡ଼ୁବୁଡ଼ୁ ହୋଇଗଲା—ଇତ୍ୟାଦି ଇତ୍ୟାଦି । ଏସବୁ କଥା କହିବାକୁ କେତେ ମାଇପେ ମିଣିପେ ଯେପରି ଚତୁର୍ମୁଖ ପାଲଟି ଯାଆନ୍ତି । ବସି ଶୁଣୁଥିବା ଲୋକେ ହେଉଥାଆନ୍ତି ଆନନ୍ଦରେ ଗଦଗଦ । ଆଉ ଏଣେ ମୋ ଅନ୍ତରଦରିଆରେ କି କଲକଲ୍ଲୋଳ ଉଠେ, ତାହା ଆଉ କେହି ବୁଝି ନ ଥିଲେ ବି ମୁଁ ଏପରି ଗମ୍ଭୀରଭାବରେ ଅନୁଭବ କରୁଥିଲି ଯେ, ତାର ଜଳକା ସ୍ମୃତି ଆଜି ବି ମୋତେ ଅଧୀର କରି ଦେଉଛି ।

ଶିଶୁପ୍ରାଣରେ ଯେଉଁ ଅବୋଧ କୌତୂହଳ ଜାଗି ଉଠିଥିଲା, କୈଶୋରରେ ତାହା ଏ ମୋହନ ଆକର୍ଷଣରେ ପରିଣତ ହେଲା— ଏବଂ ସେହି ଆକର୍ଷଣ ମୋର ସାରା ଶରୀରକୁ ଗୋଟାଏ କୁହେଳିକାରେ ଆଚ୍ଛନ୍ନ କରି ରଖିଲା ।

ଏହା ପରେ ମୁଁ ସେ ସ୍ଥାନ, ସେ ଆବେଷ୍ଟନୀ ପରିତ୍ୟାଗ କରି ଚାଲିଆସିଲି—ସାଙ୍ଗରେ ଘେନି ସେହି ମୋହଟିକିକ । ସେ ବୟସରେ ପ୍ରେମ କ'ଣ ବୁଝି ନ ଥିଲି, ଦୈହିକ ଲାଲସା କ'ଣ ଜାଣି ନ ଥିଲି । ତଥାପି ଅନୁଭବ କରୁଥିଲି ହୃଦୟ ଭିତରେ ଗୋଟାଏ ଆବେଗ, ଗୋଟାଏ ସ୍ପନ୍ଦନ, ଗୋଟାଏ ଆକୁଳତା ଲୁଚି ରହିଥିଲା ପରି ।

ପ୍ରାୟ ପାଞ୍ଚବର୍ଷ ପରେ ମୋତେ ପୁଣି ପୂର୍ବ ସ୍ଥାନକୁ ଫେରି ଆସିବାକୁ ପଡ଼ିଲା । ପ୍ରଥମ ଯୌବନର ମଦିରା ଆବେଗରେ ହୃଦୟର କୁସୁମକଳିକାଗୁଡ଼ିକ ନୂଆ ରଙ୍ଗ ଧରି ଆସୁଥାଏ ସେତେବେଳେ । ଚୈତ୍ର ବାସନ୍ତର ପହିଲି ପରଶ ପ୍ରାଣରେ ଆଣି ଦେଉଥାଏ ମନ୍ଦ ମନ୍ଦ ଶିହରଣ ।

ଭାବୀ ପତ୍ନୀକୁ ଦେଖିବାର ଆକାଂକ୍ଷା ପ୍ରବଳ ହୋଇ ଉଠିଲାଣି ସେତେବେଳକୁ । ଶ୍ୱଶୁରଙ୍କ ଘର ପିଲାଙ୍କ ଭିତରେ ମୋର ସାଙ୍ଗସାଥି ଥାଆନ୍ତି । ସେହି ବାହାନାରେ ଲାଜ ସରମ ସବୁ ଠେଲି ଦେଇ ଛାତିକୁ ପଥରରେ ବାନ୍ଧି ଚାଲିଗଲି ତାଙ୍କ ଘରକୁ । ଅନ୍ଦର ଭିତରେ ପଶିଯିବାକୁ ବିହିତ ପାଇଲି ନାହିଁ । ଏବେ ବି ଲୋକେ ସେହି ପୂର୍ବର ସମ୍ବନ୍ଧ କଥା ପାସୋରି ନ ଥିଲେ ଏବଂ ବରକନ୍ୟାଙ୍କ ବୃଦ୍ଧି ସଙ୍ଗେ ସଙ୍ଗେ ସେ କୌତୁକଟା ଦେହରେ କ୍ରମେ ବାସ୍ତବତାର ପ୍ରଲେପ ସ୍ତରକୁ ସ୍ତର ଲେପି ହୋଇ ଯାଉଥିଲା ଯେପରି ।

ମନେ ମନେ ଯୁକ୍ତି ବାଢ଼ିଲି—ଏ ତ ଗୋଟାଏ ଗେଲ୍ପ-ଗେଜ୍‌କା କଥା ମାତ୍ର; ଏଥି ଭିତରେ ସତ୍ୟ କେଉଁଠି ? ଲୋକଙ୍କ କହିବାରେ ଯାଏ ଆସେ କ'ଣ । ବୈଧାନିକ ଭାବରେ ପ୍ରସ୍ତାବ ତ ପଡ଼ି ନାହିଁ କେଣୁ । ଭୁଲ୍ଟାରେ ଆପଣାକୁ ଜୁଆଇଁ ବୋଲି ମନେ କରି ସଙ୍କୋଚ କରିବାଟା ଯେପରି ଅସଙ୍ଗତ, ତତୋଽଧିକ ହାସ୍ୟାସ୍ପଦ ନୁହେଁ କି ? ଆତ୍ମୀୟ, ସ୍ୱଜନ, ସାଇପଡ଼ିଶାଙ୍କ ଘରକୁ ଯିବାରେ ଗୋଟାଏ ବାଧା କଅଣ ? ଆଉ ଯଦି ବା କଥାଟାରେ କିଛି ସତ ଥାଏ, ତେବେ ମୋର ସାଙ୍ଗସାଥିମେଳରେ ସେଠିକି ଯିବାଟା କିଛି ଅନ୍ୟାୟ ବା ଆପତ୍ତିଜନକ ହୋଇ ନ ପାରେ । କାରଣ, ଆଜି ବାଦେ କାଲି ତ ମୁଁ ପୁଣି ପ୍ରକାଶ୍ୟରେ ଜୁଆଇଁ ହୋଇ ଯିବି । ଏ ସବୁ ଭୁଲ୍ଟା ଦୁର୍ବଳତା ।

ଦରକାର ପଡ଼ିଲେ ଆପଣାର ରୁଚି ବା ଇଚ୍ଛା ଅନୁସାରେ ଯୁକ୍ତି ଆବିଷ୍କାର କରି ସୁବିଧା ମୁତାବକ ତାକୁ ଗଢ଼ି ନେବା ସହଜ

ଚ ସ୍ୱାଭାବିକ । ଏହି ଯୁକ୍ତିବଳରେ ମୁଁ ଲାଜ, ସରମ, ସଙ୍କୋଚ, ଦୁର୍ବଳତା, ଯାହାହେଉ ସମସ୍ତ ଜଳାଞ୍ଜଳି ଦେଇ ସେଠାକୁ ଯିବା ଆସିବା କରୁଥାଏଁ । ପ୍ରଥମେ ପ୍ରଥମେ ଯେଉଁ ଅଡ଼ୁଆ ଅଡ଼ୁଆ ଲାଗୁଥିଲା, କ୍ରମେ ତାହା ଉଭେଇ ଗଲା । ଦେଖିଲି କଥାଟାକୁ ମୁଁ ଯେତେ ଗୁରୁତ୍ୱ ଦେଉଛି, ଆଉ କାହାରି ମନରେ ତା'ର ସେପରି କିଛି ଗୁରୁତ୍ୱ ନାହିଁ । ପର କଥାରେ କାହାର ବା କେତେ ଗରଜ ?

କିନ୍ତୁ ଗୋଟାଏ ସତ୍ୟ ଫଳ ଫଳିଲା ଏଥିରେ । ସମାଜରେ ବିଶେଷତଃ । ଅଭିଜାତ ସମାଜରେ ଆଧୁନିକତାର ହାଉଆ ବାଜି ନ ଥିଲା ସେତେବେଳେ । ଦଶ ବାର ବରଷର ପିଲା ଝିଅଟାକୁ ଦାଣ୍ଡ ଏରୁଣ୍ଡି ପାରି ହେବାର ବନ୍ଦ ହୋଇଗଲା । ମୁଁ ମଧ୍ୟ ବୁଝି ପାରିଲି । ମାତ୍ର ଦବି ଗଲି ନାହିଁ । ମୋର ନୈତିକ ସାହସ ବଢ଼ିଯାଇଥିଲା ଗଦାଏ ।

ମୋଟ ଉପରେ ମୁଁ ମୋର ବାଗ୍‌ଦତ୍ତା କଲ୍ୟାଣୀ ପତ୍ନୀର ରୂପରେଖ ଦେଖିବା ତେଣିକି ଥାଉ, ତାର ଛାଇବି ଦେଖି ପାରି ନାହିଁ ଦି' ଆଖିରେ । ଅନ୍ୟାନ୍ୟ ସାଙ୍ଗ ପିଲା ଯେପରି ସହଜ ଭାବରେ ଥିଆନ୍ତି ମୁଁ ସେହିପରି କରୁଛି ବୋଲି ଆପଣାକୁ ବୋଧ ଦେଉଥିଲେ ସୁଦ୍ଧା, ମନେ ମନେ ବୁଝି ପାରେଁ ଯେ, ମୁଁ ଆତ୍ମପ୍ରତାରଣା କରୁଛି । କାରଣ, ମୋ ଅନ୍ତର ଭିତରେ ଗୋଟିଏ ସତର୍କତାର ଭାବ ସର୍ବଦା ଜାଗରୂକ ଥାଇ ମୋତେ ଚେତାଇ ଦେଉଥାଏ । ମନର ଭାବକୁ ମନ ଭିତରେ ଲୁଚାଇ ବାହାରେ ଯେତେଦୂର ସ୍ୱାଭାବିକତାର ଅଭିନୟ କରିବା ସେ ବୟସରେ ସମ୍ଭବ, ମୁଁ ସାଧ୍ୟାନୁସାରେ ତହିଁରୁ ବୋଧହୁଏ ତିଳେ ଊଣା କରି ନ ଥିବି ।

ଏହିପରି ପରିସ୍ଥିତିରେ କାଳ କଟିଯିବା ପରେ ମୁଁ ପୁଣି ସେ ସ୍ଥାନ ଛାଡ଼ିଲି । ସତ କହୁଛି, ଦୂର ବିଦେଶରେ ଓ ନୂଆ ପରିବେଶ ମଧ୍ୟରେ ଥାଇ ମଧ୍ୟ ଦିନେ ହେଲେ ଏ ସ୍ମୃତିଟି ମୋର ମଳିନ ହୋଇନାହିଁ । ମୋର ସମସ୍ତ ଚିନ୍ତା, ସମସ୍ତ କଳ୍ପନା, ସବୁ କର୍ମ, ସବୁ ଉଦ୍ୟମ ମଧ୍ୟରେ ଗୋଟାଏ କି ମଧୁର ଆବେଗ, ଗୋଟାଏ କି ରସାଳ ଆକର୍ଷଣ ମୋତେ ମୁଗ୍‌ଧ, ବିଭୋର କରି ରଖିଥିଲା କେଜାଣି । କେବେ କେଉଁଠି ସ୍ୱପ୍ନର ଛାୟା ଭଳିଆ ତା'ର ରୂପ ମୁଁ ଦେଖିଲେ ଦେଖିଥିବି । ସେତିକିରୁ ମୋର ମନୋରାଜ୍ୟରେ ଗୋଟିଏ ମାନସୀ ମୂର୍ତ୍ତି ଗଢ଼ି ଉଠିଥିଲା ତିଳ ତିଳ କରି—ଯାହା ହୋଇ ପଡ଼ିଥିଲା ମୋ ଧ୍ୟାନର ଦେବୀ ପ୍ରତିମା । ଅନ୍ତରର ନିଭୃତ କୋଣରେ ତାକୁ ବସାଇ ପ୍ରାଣର ସମସ୍ତ ଆବେଗ ଅଜାଡ଼ି ଦେଇଥିଲି ଅର୍ଘ୍ୟରୂପେ ତାହାଙ୍କ ଚରଣରେ ।

ସେ ଥିଲା କେଡ଼େ ପବିତ୍ର, କେଡ଼େ ବିଶୁଦ୍ଧ, କେଡ଼େ ନିଷ୍ପାପ ନ ଥିଲା କାମନାର ଗନ୍ଧ, ନ ଥିଲା ଲାଳସାର ମୋହ, ନ ଥିଲା ଇନ୍ଦ୍ରିୟର ତାଡ଼ନା । ଅମରାବତୀର ସେହି ସୁରବାଳିକାକୁ କେବେ ଶଯ୍ୟା-ସଙ୍ଗିନୀ କରିବି ବୋଲି ମୋର ଧାରଣା ବି ହୋଇନାହିଁ । ରକ୍ତମାଂସର ଆକର୍ଷଣ କେବେ ହେଲେ ମୋ ପ୍ରାଣକୁ କରିନାହିଁ ଚଞ୍ଚଳ । ତଥାପି ମନେ ହେଉଥିଲା ଯେପରି ମୋର ସମସ୍ତ ସତ୍ତା ସେହି ଦେବକୁମାରୀ ଦେହରେ ବିଲୀନ ହୋଇ ଯାଇଛି ନିଃଶେଷରେ – ଆଉ ଦୁଇଟି ଆତ୍ମହାରା ତରୁଣ ପ୍ରାଣ ଏକୀଭୂତ ହୋଇ କେଉଁ ଅନନ୍ତ ଆକାଶର ନୀଳ ନୀହାରିକା ସମୁଦ୍ରରେ ଭାସି ଭାସି ମିଶି ଯାଉଛି ଶୂନ୍ୟେ ଶୂନ୍ୟେ ।

ଦିନେ ମୋର ଜଣେ ସହାଧ୍ୟାୟୀଠାରୁ ଶୁଣିଲି ଯେ, ମୋର ବାଗ୍‌ଦତ୍ତା ସହିତ ତାର ବିବାହ ପ୍ରସ୍ତାବ ଆସିଛି । ସେ ବନ୍ଧୁଟି ସରଳ ଭାବରେ ହସି ହସି ଏହା କହିଲା । ମୋ କଥାଟା ତାକୁ ଜଣାଥିଲା ଆଗରୁ ସାଧାରଣ ଭାବରେ । ସେଥିପାଇଁ ତାର ସ୍ୱରରେ ଟିକିଏ ଶ୍ଳେଷର ଗନ୍ଧ ଥିଲା ପରି ମୋତେ ଲାଗିଲା ।

ମୋ କଲିଜାରେ ଯେପରି ଗୋଟାଏ ତତଲା ଛୁରୀ ବିନ୍ଧି ହୋଇଗଲା ଅକସ୍ମାତ୍ । ମର୍ମନ୍ତୁଦ ଯନ୍ତ୍ରଣା ହେବାକୁ ଲାଗିଲା— ଗୋଟାଏ ବିକଟ ଅପମାନର ଯନ୍ତ୍ରଣା । ସେଠୁ ଚାଲିଆସି କଥାଟାକୁ ହାଲୁକା ଭାବରେ ଉଡ଼ାଇ ଦେବାକୁ ଚେଷ୍ଟା କଲି; କିନ୍ତୁ ଯେତିକି ଉଡ଼ାଇ ବସିଲି, ସେତିକି ଜୋରରେ ସେ ଜ୍ୱାଳାଟା ମାଡ଼ି ମାଡ଼ି ବସିଲା ଓ ବଢ଼ିଯିବାକୁ ଲାଗିଲା । ରାତିରେ ନିଦ ହେଲା ନାହିଁ । କେବଳ ଛାତି ଜଳି ଯାଉଥାଏ । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଅବଶ ହୋଇ ଆସୁଥାଏ । ମନେ ହେଉଥାଏ, ସତେ କିବା ମୋର ହୃଦୟର ଗତି-ରୋଧ ହୋଇଯିବ । ସତ କହୁଛି—ଏପରି ଦାରୁଣ, ଏପରି ଭୀଷଣ, ଏପରି ଉତ୍କଟ ବେଦନା ଜୀବନରେ କେବେଁ ଅନୁଭବ କରି ନ ଥିଲି । ଦୁଃଖ ନୁହେ, ହତାଶା ନୁହେ, ବିଫଳତାର କଷାଘାତ ନୁହେ—ଏ ଯେପରି ଗୋଟାଏ ଅନିର୍ବଚନୀୟ, ଅକଥନୀୟ, ଅସହନୀୟ ହୁତାଶନର ତୀବ୍ର ଦାହ ଶିରା ପ୍ରଶିରା ଭେଦି ପ୍ରତି ରକ୍ତକଣାରେ ଚରି ଚରି ଯାଇଛି—ସମଗ୍ର ବାୟୁମଣ୍ଡଳକୁ ଅବଶ, ଶିଥିଳ, ପଙ୍ଗୁ କରି ।

କିନ୍ତୁ ଭଗବାନଙ୍କର କି ଅସୀମ ଦୟା,—ପ୍ରକୃତିର କି ଆଶ୍ଚର୍ଯ୍ୟ ପ୍ରତିକ୍ରିୟା—ଏହି ଦହନର ବେଗ ବୃଦ୍ଧି ସଙ୍ଗେ ସଙ୍ଗେ

ମୋର ଧୈର୍ଯ୍ୟ ବା ସହନଶକ୍ତି ଅଦ୍ଭୁତ ରୂପେ ମୂର୍ତ୍ତିମାନ ହୋଇ ସଂଗ୍ରାମ ନିମନ୍ତେ ପ୍ରସ୍ତୁତ ହୋଇ ଉଠିଲା । ଏଇଟା ଜୀବଧର୍ମ ପରା ! ଆତ୍ମରକ୍ଷା ପାଇଁ ଜୀବପ୍ରକୃତିର ବିଚିତ୍ର କୌଶଳ ! ଏ ସଂଗ୍ରାମରେ ମୁଁ ଜୟୀ ହେଲି କି ନାହିଁ କିଏ କହିବ ! ଯେତେବେଳେ ଏଇଥର ଭାଙ୍ଗି ପଡ଼ିଲି ପଡ଼ିଲି ବୋଲି ମନେ ହୁଏ, ଗୋଟାଏ କେଉଁ ଅଦୃଶ୍ୟ ଶକ୍ତି ମୋତେ ଟେକି ଧରେ ସେତିକିବେଳେ ।

ଏହା ପରେ ଜାଣି ପାରିଲି, ମୋ ବନ୍ଧୁର ସମ୍ବାଦଟା ନିହାତି ଭିତ୍ତିହୀନ ନୁହେ । ଅନ୍ୟ ଜଣେ ବନ୍ଧୁଙ୍କଠାରୁ ମଧ୍ୟ ଆଉ ଗୋଟିଏ ସମ୍ବାଦ ପୂର୍ବ ସମ୍ବାଦର ସମର୍ଥନ କଲା । ଏହା ଛଡ଼ା ନାନାଆଡ଼ୁ ନାନା କଥା ଶୁଣି ଶୁଣି ମୋର ଦୃଢ଼ ପ୍ରତୀତି ଜନ୍ମିଲା ଯେ, ଭାବୀ ଶ୍ୱଶୁର ମୋର ନିରାଶ ହୋଇ କନ୍ୟାଦାୟରୁ ମୁକ୍ତି ଲଭିବା ସକାଶେ ବ୍ୟସ୍ତ ହୋଇ ପଡ଼ିଲେଣି ।

ତେବେ—ତେବେ ମୋତେ କ'ଣ ସମସ୍ତେ ଏତେକାଳ ପ୍ରତାରଣା କରୁଥିଲେ ? ଏତେ ବଡ଼ ବିରାଟ ବିଦ୍ରୂପର ଶିକାର ହେବାକୁ ଏକା କ'ଣ ମୁହିଁ ଥିଲି ଏ ଜଗତରେ ? ହୃଦୟ ବିଦ୍ରୋହ କରି ଉଠିଲା । ଯୌବନର ଉନ୍ମାଦନାରେ ପ୍ରତିଶୋଧ ପାଇଁ ପ୍ରାଣ ହୁଙ୍କାର ଛାଡ଼ିଲା । ସେହି ସମୟରେ କେତେ ବିନିଦ୍ର ରଜନୀ ବିତି ଯାଇଛି — କେତେ ଦିବାସ୍ୱପ୍ନରେ ମୁଁ ଆତ୍ମବିସ୍ମୃତ ହୋଇ ଆକାଶ ପାତାଳ କେତେ କ'ଣ ଭାବି ଯାଇଛି, ତାହା କିଏ କହିବ ? ଆତ୍ମମର୍ଯ୍ୟାଦା ପ୍ରତି ଏହି ନିଦାରୁଣ ଆଘାତ, ମନୁଷ୍ୟତ୍ୱ ପ୍ରତି ଏହି ଭୀଷଣ ଅବମାନନା ମୋର ଅନ୍ତରାତ୍ମାକୁ ଶତଧା ବିଦୀର୍ଣ୍ଣ, ବିକ୍ଷୁବ୍ଧ କରିବାକୁ ଲାଗିଲା ।

ବେଳେବେଳେ ମନକୁ ବୁଝାଇବାରେ ଲାଗେ—ଯାହା ହେବାର ହେଉ ନା—ମୋର ତହିଁରେ କ'ଣ ? ଗୋଟାଏ ପିଲାଳିଆ ଧୂଳିଘର ଖେଳ ଭଳି ଏ କଥାଟାର ମୂଲ୍ୟ ବା କ'ଣ ? ହାଲୁକା ଭାବରେ ବନ୍ଧୁ ବନ୍ଧୁ ମଧ୍ୟରେ ହୋଇଥିବା ଗୋଟାଏ ଖୁସି ଖିଆଲିଆ ପ୍ରସ୍ତାବରେ ବାସ୍ତବତା କେତେ ? ସେଥିପାଇଁ ମୁଁ ବା ଏତେ ତ୍ରସ୍ତ, ବ୍ୟସ୍ତ, କାତର ହେଉଛି କାହିଁକି ? ଆମ ଦୁହିଁଙ୍କ ଭିତରୁ କେହି ଜଣେ ଯେବେ ମରି ଯାଇ ଥାଆନ୍ତା—ତେବେ ? —ଭୁଲ, ଭୁଲ—ମୋର ବୁଝିବାର ଭୁଲ୍ । ଏତେ ବାଜେ କଥାଟାକୁ ପାହାଡ଼ ବନାଇ ସେଥିପାଇଁ ଆପେ ଘାରି ହେବା ମସ୍ତବଡ଼ ବୋକାମି, ବାତୁଳତା ! ଛି—ଏ ଦୁର୍ବଳତାଟାକୁ ଗୋଇଠା ମାରି ଫିଙ୍ଗି ଦେବି ଆଜିଠାରୁ ।···ଗୋଟାଏ ବିବାହର ପ୍ରସ୍ତାବ !··· ପ୍ରତିଦିନ ଲକ୍ଷ ଲକ୍ଷ ହେଉଛି, ଭାଙ୍ଗୁଛି । କେତେ ମହାପ୍ରସାଦ ବନ୍ଧନ ହୋଇ, ଗୁଆ ଚଟାଉ ସରି ଢଡ଼କେ ଭାଙ୍ଗି ଯାଉଛି । କେତେ ବର ବେଦୀ ଉପରୁ ଲେଉଟି ଯାଉଛନ୍ତି । ଏଇଟା ବା କେଉଁ କଥାଟାଏ !

କିନ୍ତୁ ପ୍ରାଣ ତ ବୁଝେ ନାହିଁ । କିପରି ଗୋଟାଏ ନିରାଶିଆ କୋହ ଗୁମରି ଗୁମରି ଉଠେ—ବୁକୁ ଭିତରେ । କିଏ ଯେତେ ଯେମିତି ମିଠାଖଡ଼ିକାଠା ପକେଇ ଟେକି ଦେଲା ପରି ସେଠି ! ମନେ ହୁଏ ଏଇଥର ଶିରା, ସ୍ନାୟୁଗ୍ରନ୍ଥି ଭାଙ୍ଗି ହୋଇ ଛିଣ୍ଡି ଗଲାକି ଆଜି !

କ୍ରୋଧ ଆସେ ସେହି ଲୋକଙ୍କ ଉପରେ, ଯେଉଁମାନେ କୌତୁକ ଉପଭୋଗ କରିବାକୁ ଯାଇ ଆଜି ମୋତେ ଏ ଦୁରବସ୍ଥାରେ ପକାଇଛନ୍ତି । ଅଜ୍ଞାନ ଶିଶୁପ୍ରାଣରେ ଏ ଦୁରନ୍ତ ଆଶା, ଆକାଙ୍କ୍ଷା, ଆକର୍ଷଣର ମୂଳଦୁଆ ରଚନା କରିଛନ୍ତି । ଏହାର ଭବିଷ୍ୟତ ପରିଣାମଟା ଥରେ ଚିନ୍ତା କରି ପାରିଲେ ନାହିଁ ସେତେବେଳେ । ଆଉ, ମୋର ପିତା, ମୋର ଶ୍ୱଶୁର, ସେମାନେ ବି ଏତେ ନିର୍ମମ, ଏତେ ନିର୍ଦ୍ଦୟ, ଏତେ କଠୋର ! ତାଙ୍କ ସନ୍ତାନସନ୍ତତିଙ୍କ ହୃଦୟ ବୁଝିଲେ ନାହିଁ ?

ଆରେ ! —ସାମାନ୍ୟ ଝିଅଟା !···ଏପରି କିଛି ରମ୍ଭା, ଉର୍ବଶୀ ନୁହେଁ—ଏପରି କିଛି ଗୁଣବତୀ, ବୁଦ୍ଧିମତୀ, ବିଦୁଷୀ ନୁହେଁ । ତାହା ପାଇଁ ଏତେ ଚିନ୍ତା ହା-ହୁତାଶ କାହିଁକି ? ମୋ ଭଳି ସ୍ପୃହଣୀୟ ବର ପାଇଁ କେତେ କନ୍ୟାପିତା ପ୍ରତିଯୋଗିତା କରୁଥିବେ । ମୁଁ ଇଚ୍ଛା କଲେ ବହୁ ଗୁଣରେ ଶ୍ରେଷ୍ଠ ଘରର ଜାମାତା ହୋଇ ବହୁ କନ୍ୟାଙ୍କୁ ଧନ୍ୟା କରିପାରେ ।

ଆଉ ପ୍ରେମ ! ଯାଃ—ସେପରି କିଛି ଗୋଟାଏ ଅଛି କି ? ରୋମିଓ ଜୁଲିଏଟ, ଲଇଲା ମଜନୁନ୍‌ର କାହାଣୀ ନୁହେଁ ତ ? ସେ କନ୍ୟା ସହିତ ମୋର ସମ୍ବନ୍ଧ ବା କ'ଣ ? ଆମ ଭିତରେ ପ୍ରଣୟ ହେବା ଦୂରେ ଥାଉ, ପ୍ରତ୍ୟକ୍ଷ ବି ହୋଇ ନାହିଁ ଥରେ—ତେବେ ?

ପୁଣି ଜାଣି ଉଠେ ଗୋଟାଏ ନିଆଁହୁଳା—ବକ୍ଷ ଦେଶରେ କେଉଁ ଅତଳ କକ୍ଷର ଅନ୍ତରାଳରେ । ପୁଣି ସେହି ଆତ୍ମାଭିମାନ ରୂପ ପରିଗ୍ରହ କରି ପ୍ରକଟ ହୋଇ ଉଠେ ଆଖି ଆଗରେ । ଲୋକଚକ୍ଷୁରେ ହେୟ, ଲାଞ୍ଛିତ, ଅବଜ୍ଞାତ ହୋଇ ଆଜୀବନ ପରିହାସର ପାତ୍ର ହୋଇ ରହିବ ? ମୁଁ ଜୀଇଁ ଥାଉଁ ଥାଉଁ ମୋର ବାଗ୍‌ଦତ୍ତା କନ୍ୟା ଅନ୍ୟ ଜଣଙ୍କର ଅଙ୍କଲକ୍ଷ୍ମୀ ହେବ—ତା'ର ପତିତ୍ୱର ଅଧିକାର ପାଇବ, ଏହା ଅସହ୍ୟ । ଏହାଠାରୁ ମୃତ୍ୟୁ ସହସ୍ର ଗୁଣରେ ଶ୍ରେୟ ।

# କାନ୍ତ ସାହିତ୍ୟମାଳା

ମନେ ପଡ଼ିଯାଏ ରୁକ୍ମିଣୀ ସ୍ୱୟମ୍ୱରର କଥା—ଶିଶୁପାଳର ଅବସ୍ଥା—ମନେ ପଡ଼େ ନାଟକ ଉପନ୍ୟାସର ଅସୁମାରି କାହାଣୀ। ସେସବୁ ଚଳିତ ଛାୟାଚିତ୍ର ଭଳି ମୋ ଆଖି ଆଗରେ ଚହଲି ଉଠନ୍ତି ଜୀବନ୍ତ ହୋଇ। କିଏ ସମବେଦନା ପ୍ରକାଶ କରେ, କିଏ ବା ପରିହାସ କରେ। ଦେହପାକ ଚରିଯାଏ ଆଶୀର୍ବାଦର ଦାବଦାହ ପ୍ରାନ୍ତି ଭୂକ୍‌କୋଟ ଭେଦ କରି। ହୃଦୟ ବିଦ୍ରୋହ କରି ଉଠେ ଏହି ଅନ୍ୟାୟ, ଏହି ଅବମାନନାର ବିରୁଦ୍ଧରେ।

ସ୍ୱପ୍ନାବିଷ୍ଟ ହୋଇ ମୁଁ ଲେଖିଯାଏଁ କବିତା। ରୁଦ୍ଧ ଭାବରାଶି ରୂପାୟିତ ହୋଇ ଉଠେ ଲେଖନୀର ମୁନରେ। କଳ୍ପନାର ଉଚ୍ଛୋଳ ଜୁଆର ବେଳା ଲଙ୍ଘନ କରି ଛନ୍ଦହୀନ, ମୁକ୍ତ ସ୍ରୋତରେ ହୁଏ ପ୍ରବାହିତ ଦିଗ୍‌ବିଦିଗ ନ ମାନି।

ଅନିସୃତ ଅଶ୍ରୁଧାର ମୋର କେଉଁ ଅଜଣା ଚରଣରେ ଅର୍ଘ୍ୟରୂପେ ପତିତ ହେଲା କେଜାଣି! କେଉଁ ଅଜଣା ଦେବତାର ଆସନ ଟଳିଗଲା କେଜାଣି ସେହି ଆବେଗଭରା ଆକୁଳ ଆବେଦନରେ! ଗୋଟିଏ କ୍ଷୁଦ୍ର ପ୍ରାଣର ବ୍ୟଥା ଶତଧା ହୋଇ ବିଶ୍ୱପ୍ରାଣରେ ଧ୍ୱନିତ ହୋଇ ଉଠିଲା ପରି କରୁଣାର ମୃଦୁକମ୍ପନ ସଞ୍ଚାରି କରି!

ସ୍ନେହମୟୀ ଅଜାଙ୍କର ଆଶୀର୍ବାଦ ଆଷାଢ଼ର ବର୍ଷାଧାରା ରୂପେ ନିପତିତ ହେଲା ଆମ ଦୁହିଁଙ୍କ ମସ୍ତକରେ। ମଧୁର ମହ୍ଲାର ରାଗରେ ମଙ୍ଗଳ-ମହୁରୀ ବାଜି ଉଠିଲା ମୋର ଅନ୍ତର-ଗଗନ ନନ୍ଦିତ କରି। ବଂଶବାଳୀର ଶୁଭଶଙ୍ଖଧ୍ୱନି ବଜାଇଲା ତା'ର ସମତାନ। ନବ ଅରୁଣର ତରୁଣ ଲାଲିମା ମେଘମାଳାର ମୁକ୍ତ କବରୀରେ ପ୍ରତିଭାତ ହୋଇ ବିଦ୍ୟୁତ କନକଦ୍ୟୁତିରେ ଗଗନମଣ୍ଡଳ ରଞ୍ଜିତ କରି ଦେଲା।

ଦୂର ଅତୀତର ସେହି ଅର୍ଦ୍ଧପାଶୋରା ସ୍ମୃତି ଆଜି ସୁଦ୍ଧା କେଉଁ ସ୍ୱପ୍ନପୁରୀର କୁହେଳୀ ସମୁଦ୍ରର ତରଙ୍ଗେ ତରଙ୍ଗେ ଝଟକି ଉଠୁଛି।

ସେ ଯେ କି ଆନନ୍ଦ, କି ତୃପ୍ତି ତାହା ପ୍ରକାଶ କରିବାର ମୋର ଭାଷା ନାହିଁ। ଦଇବ ଛଡ଼ା କିଏ ବୁଝିବ, ଏହି ସାମାନ୍ୟ ଘଟଣାଟି ଗୋଟାଏ ଜୀବନର ଧାରାକୁ କିପରି ପାଲଟାଇ ଦେଲା କେଉଁ କାଉଁରୀ ରାଇଜର ସୁନାକାଠି ଛୁଆଇଁ ଦେଇ!

ଅନାବିଳ ସୁଖ ସୌଭାଗ୍ୟ କାହାରିକୁ ସହେ ନାହିଁ ପରା! ବିଧାତାର ଏହା ଏକ ଅପୂର୍ବ ଲୀଳା।

ଦିନେ ପ୍ରକାଶ ପାଇଲା ଏହାର ପ୍ରତିକ୍ରିୟା ବିକଟାଳ ରୂପ ଧରି। ଜୀବନ ଓ ମରଣର ଅନିଶ୍ଚିତତା ମଝିରେ ଦୋଦୁଲ୍ୟମାନ ହୁଲା ଦଣ୍ଡୀ ନିୟାମକ କଣ୍ଟା ଭଳି ଥୁଡ଼ା ହୋଇ କରିବାକୁ ଲାଗିଲା ନିଷ୍ଠୁର ସହ ପ୍ରାଣମୂର୍ଚ୍ଛା ସମର। ଉଲ୍ଲାସଭରା ଉତ୍ତୁଙ୍ଗ ହିମାଚଳ ଶିଖରରୁ ଏକାବେଳକେ ପଡ଼ିଲି ଉତ୍ତପ୍ତ ସମୁଦ୍ରର ଅତଳ ଗର୍ଭରେ। ତାହାରି ଘୂର୍ଣ୍ଣି ଆବର୍ତ୍ତ ମଧ୍ୟରେ ରୁଦ୍ଧଶ୍ୱାସ ହୋଇ ଯେତେବେଳେ ମୁଁ ଜୀବନ ସଂଗ୍ରାମରେ ଏକାକୀ ଲିପ୍ତ, ସେହି ନାରୀ ଧାତ୍ରୀ ରୂପରେ ମୋର ଜୀର୍ଣ୍ଣ ପ୍ରାଣରେ ସୁଧା ସଞ୍ଚାର କରି ଆସନ୍ନ ମରଣକୁ ହଟାଇ ରଖିଛି। ହେ ଭଗବାନ, ପ୍ରାଣର କାତର ଗୁହାରି ବାଜୁଛି ଯାଇ ତୁମର କର୍ଣ୍ଣରେ। ତାହାରି କ୍ଷୀଣ ବାହୁଦ୍ୱୟ ଅମୃତ କବଚ ରୂପେ ରକ୍ଷା କରୁଛି ମୋର ମୁମୂର୍ଷୁ ପ୍ରାଣକୁ ସମସ୍ତ ବିଘ୍ନ ବିପଦର କରାଳ କବଳରୁ। ତାହାରି ପ୍ରାର୍ଥନା ବଳରେ ତୁମେ ମୋର ସୁଖ ଦୁଃଖ, ଶାନ୍ତି ଅଶାନ୍ତି, ଜ୍ୱାଳା ଯନ୍ତ୍ରଣା ମଧ୍ୟରେ ମୂର୍ତ୍ତି ହୋଇ ବିରାଜମାନ। ମୁଁ ଦେଖି ଦେଖୁ ନାହିଁ—ବୁଝି ବୁଝୁ ନାହିଁ। ଶୁଣି ଶୁଣୁ ନାହିଁ। ତୁମର ଅମୃତ ପରଶ ମୁଁ କରିପାରୁ ନାହିଁ ଅନୁଭବ। ତୁମର ଅଭୟ ବଂଶୀଧ୍ୱନି ମୋ ପ୍ରାଣରେ ଆଣୁ ନାହିଁ ସ୍ପନ୍ଦନ। ମୁଁ ଅନ୍ଧ, ମୁଁ ବଧିର, ମୁଁ ନିର୍ବୋଧ, ମୁଁ ଜଡ଼। ହେ ପ୍ରଭୁ, ତୁମର ଚରଣରେ ମୋର କୋଟି ନମସ୍କାର।



# ନିଭୃତ ନିଶୀଥେ

ଚିତ୍ତବିକ୍ଷେପହାରିଣୀ, ସୁଧାସଞ୍ଚାରିଣୀ ନିଦ୍ରା ଗୋ, ଆସ ଆସ । ଆସ ନିଦ୍ରେ, ମୋର ଶାନ୍ତିବିଧାୟିନୀ, ଆରାମଦାୟିନୀ—ତୋର ଅମିୟ ଅଞ୍ଜନପ୍ରଲେପ ମୋ ନୟନକୋଣରେ ଲଗାଇ ଦେ ଥରେ । ତୋର ମେଘାମ୍ବରୀ ପଣତରେ ଏ ତାପିତ ଅଙ୍ଗ ଘୋଡ଼ାଇ ଦେଇ, ସେହି ମନଭୁଲାଣି ଗୁଣୁଗୁଣୁ ରାଗିଣୀ ମୋ ସଂସାର-ଜଞ୍ଜାଳ-ହାସିତ କାନ ପାଖରେ ଫୁଙ୍କି ଦେଇ ଯା । ଆସ ମା, ଏହି ଶ୍ରାନ୍ତ, କ୍ଳାନ୍ତ, ଅବସନ୍ନ ସନ୍ତାନକୁ ତୋ'ର ଅଭୟ କୋଳରେ ଆଶ୍ରୟ ଦେଇ ଏ ପାପତାପଦଗ୍ଧ ହୃଦୟକୁ ନବ ଆଶା, ନବ ଉଦ୍ୟମ, ନବୀନ ଶକ୍ତିରେ ଅନୁପ୍ରାଣିତ କରି ଦେ । ମୋ ଶରୀରରେ ତୋର ସେହି ଅନନ୍ତ ସାନ୍ତ୍ୱନା, ଅସୀମ ଆଶ୍ୱାସନାର ଆକର ଅମୃତ କର ବୁଲାଇ ଦେଇ, ବିଷମୟ ଅତୀତ ବେଦନା ଭୁଲାଇ ଦେଇ ଘଡ଼ିକ ପାଇଁ ତ୍ରିତାପତାପିତ ଅନ୍ତରରୁ ସମସ୍ତ ଜ୍ୱାଳା ଯନ୍ତ୍ରଣା ଦୂର କରି ଦେଇ ଯା ।

* * *

ରାତ୍ରି ତୃତୀୟ ପ୍ରହର ଅତୀତ ହେବାକୁ ବସିଲା — ତେବେ ସୁଦ୍ଧା ମୋର ଅଭିଶପ୍ତ ପ୍ରାଣରେ ଦୟାମୟୀ ନିଦ୍ରା ଦେବୀଙ୍କ କୋମଳ ପରଶର କୌଣସି ସୂଚକ ପାଇଲି ନାହିଁ । ଜଗତଯାକ ସମସ୍ତେ ସୁଷୁପ୍ତ—ଜନମାନବ, ପଶୁପକ୍ଷୀ, କୀଟପତଙ୍ଗ, କାହାରି ଚେତନା ନାହିଁ; ବାୟୁ ସ୍ଥଗିତ, ବୃକ୍ଷପତ୍ର ମର୍ମରହୀନ, ଦିଗ୍‌ମଣ୍ଡଳ ଶବ୍ଦଶୂନ୍ୟ; ପୃଥିବୀ ଧୀର, ସ୍ଥିର, ସ୍ତବ୍ଧ; ବିଶ୍ୱଜଗତ ପ୍ରଶାନ୍ତ । ଏକା ମୋହରି ଉଦାସ ଆଖିଦିଓଟି ଅନିମେଷ ବିସ୍ଫାରିତ, ଜାଗ୍ରତ । ସେହି ନିବିଡ଼ ନିସ୍ତବ୍ଧତା ମଧ୍ୟ ଦେଇ ଗୋଟିଏ ଅବିରାମ ଅସରନ୍ତି ସଙ୍ଗୀତପ୍ରବାହ ଅନ୍ତଃସଲିଳା ଫଲ୍‌ଗୁ ପରି ତରତର ବହି ଯାଉଛି । ଏହି ବିଶ୍ୱ-ସଙ୍ଗୀତର ଅମର ନିର୍ଝର ଝରି ଆସୁଛି, ପ୍ରତି ଗ୍ରହ ନକ୍ଷତ୍ରରୁ, ପ୍ରତି ତୃଣ ପତ୍ରରୁ—ଏହି ମହାସଙ୍ଗୀତର ନୀରବ ଝଙ୍କାର ବାଜି ଉଠୁଛି, ଦିଗନ୍ତବିସ୍ତୃତ ନଭୋନୀଳିମାରେ, ପବନର ପ୍ରତି ଅଳସ ହିଲ୍ଲୋଳରେ । ଚରାଚର ସ୍ଥାବର ଜଙ୍ଗମ ସମସ୍ତ ବିଶ୍ୱଜଗତ ଯେପରି ଏହି ସଙ୍ଗୀତର ମଧୁର ତାନରେ ଭରପୂର, ମୁଗ୍ଧ । ଦେଖିଲି ହୃତ୍‌ଯନ୍ତ୍ରର ପ୍ରତ୍ୟେକ ସ୍ପନ୍ଦନ ଏଥିରେ ଯୋଗ ଦେଇଛି । ଧମନୀର ପ୍ରତି ଶୋଣିତଚଳନ ସମତାନରେ ବାଜୁଛି, ଅନ୍ତରର ପ୍ରତି ତନ୍ତ୍ରୀ ଏହି ବିଶ୍ୱଭବ ମହାତାନରେ ଝଙ୍କୃତ ହେଉଛି । ମୋର ସତ୍ତା ବିଲୁପ୍ତ – ମୁଁ ଏହି ମହାସଙ୍ଗୀତର ଗୋଟିଏ କ୍ଷୁଦ୍ରାଦପି କ୍ଷୁଦ୍ର ଅଂଶ ମାତ୍ର । କାହାରି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ—ଗ୍ରହ, ତାରା, ମେଘ, ପବନ, ଧୂଳିକଣା ପର୍ଯ୍ୟନ୍ତ ସମସ୍ତେ ଏହି ଗୁପ୍ତ, ଅମର ସଙ୍ଗୀତର ଇଙ୍ଗିତରେ ଚାଳିତ – ସାରା ବିଶ୍ୱ କେବଳ ସଙ୍ଗୀତମୟ ।

* * * *

ଏ ମୁହୂର୍ତ୍ତ ତ ରହିବ ନାହିଁ ! ହାୟ, ଏହି ମୁହୂର୍ତ୍ତ କାହିଁକି ଅମର ନ ହେଲା, କାହିଁକି ଚିରସ୍ଥାୟୀ ନ ହେଲା ! ଏହିଠାରେ ତ ମାନବଜୀବନର ଚରମ ସାର୍ଥକତା, ଏହି ତ ମାନବାତ୍ମାର ପୂର୍ଣ୍ଣ ବିକାଶ । ସେହି ଅନନ୍ତ କୋଳାହଳଦଗ୍ଧ ସଂସାରଜୀବନ ପୁଣି କ'ଣ ଫେରି ଆସିବ ? ପୁଣି କ'ଣ ସେହି ହାହାମୟ ମରୁଭୂମିରେ ଚିର ତୃଷାତୁର ଶୁଷ୍କ କଣ୍ଠ ହୋଇ ମାୟା ମରୀଚିକାର ପଛେ ପଛେ ସାରା ଜୀବନ ଧାଇଁ ବୁଲିବାକୁ ହେବ—ଯେଉଁ ଧାବନର ସୀମା ନାହିଁ, ଅନ୍ତ ନାହିଁ, ବିରାମ ନାହିଁ ।

ଆଉ ତ ପାରିବି ନାହିଁ ; ବଡ଼ କ୍ଳାନ୍ତ ହେଲିଣି । ଉଦ୍ୟମ, ଉତ୍ସାହ ଭାଙ୍ଗି ପଡ଼ିଲାଣି, ଆଶା କୁସୁମ ଅକାଳରେ ମଉଳି ଗଲାଣି । ଶାନ୍ତି, ଶାନ୍ତି—ଆଉ ନା—ଅନେକ ହେଲାଣି ପ୍ରଭୁ—ଏବେ କ୍ଷାନ୍ତ ହୁଅ । ମୋ ଜୀବନରେ ତୁମର ଉଦ୍ଦେଶ୍ୟ କ'ଣ ଏତେ ଦିନ ସାଧିତ ହୋଇ ନାହିଁ ? ହେ ଶିଳ୍ପକର, ବ୍ୟର୍ଥତାର ଜ୍ୱଳନ୍ତ ଆଲେଖ୍ୟ ଜଗତ ସମକ୍ଷରେ ଦେଖାଇବାପାଇଁ ତ ମୋତେ ଗଢ଼ିଥିଲ । ଏବେ ତ ତାହା ସିଦ୍ଧ ହୋଇଛି । ଆଉ କଣ ? ଯଦି ମୋର ଅଭିଯାନ ପୂର୍ଣ୍ଣ ହେଲାଣି, ଯଦି ମୋର କର୍ମର ଅବସାନ ହେଲାଣି, ଏବେ ବିଦାୟ ଦିଅ ପ୍ରଭୁ ! ଏହି ମହା ସଙ୍ଗୀତର ଅନନ୍ତ ମୂର୍ଚ୍ଛନାରେ ମୋର କ୍ଷୁଦ୍ର ସତ୍ତା ଏକାବେଳେକେ ବିଲୀନ ହୋଇଯାଉ—ନ ରହୁ ତାର ଗନ୍ଧ, ନ ରହୁ ତାର ସ୍ମୃତି ।

ହେ ନିୟନ୍ତା, ମୋତେ କେବଳ ବିଚାର କରିବାର ଶକ୍ତି ଦେଇଛ; କିନ୍ତୁ କର୍ମ କରିବାର କ୍ଷମତା ରଖିଛ ଆପଣା ହାତରେ ଯାହା ଯେତେବେଳେ କରୁଛି ତୁମେ ହାତ ଧରି କରାଇ ଦେଉଛ । ତୁମେ ଯେଉଁ ଭାବରେ ଯୋଖି ଦେଇ ଛାଡ଼ି ଦେଉଛ ମୁଁ ଯନ୍ତ୍ରପରି ଚାଲୁଛି । ଜାଣିଶୁଣି ତଥାପି କେତେ ଆପାତମଧୁର ସଫଳତାରେ ଉତ୍ଫୁଲ୍ଲ ହୋଇ, ସ୍ୱତନ୍ତ୍ରତାର ଦାବି ଦେଇ କେତେ ଅହମିକା, କେତେ

ଧାର୍ମିକତା, କେତେ ଆତ୍ମମ୍ଭରିତା ଦେଖାଇଛି । କିନ୍ତୁ ଅଳଙ୍କୃତ ପାରି ନାହିଁ କେବେ । ଜୀବନବ୍ୟାପୀ ବ୍ୟର୍ଥତାରେ ବ୍ୟଥିତ ହୋଇ, ତୁମର ପ୍ରେରଣାକୁ କେତେ ଗଞ୍ଜିଛି; ଆପଣାର କର୍ତ୍ତୃତ୍ୱ ଅସ୍ୱୀକାର କରି ତୁମର ଅସୀମ କରୁଣାରେ ଦୋଷାରୋପ କରିଛି; ତୁମର ଏକଦେଶଦର୍ଶିତାର, ତୁମର ଅବିବେଚକତାର ନିନ୍ଦା କରି ନ୍ୟାୟ-ପରତାରେ ଅବିଶ୍ୱାସ କରିଛି । ହେ ମଙ୍ଗଳମୟ, ତୁମର ପରିଣାମ-ରୁଚିର ତିକ୍ତ ଶାସନ କ୍ଷୁଣ୍ଣ ହୃଦୟରେ ହାତ ପାତି ନେଇଛି ସତ୍ୟ,—କିନ୍ତୁ କେବେ ତ ତୁମ ଆଦେଶର ଅବମାନନା କରି ନାହିଁ— ତୁମ ଅନୁଜ୍ଞା ଠେଲି ପକାଇ ଦେଇ ନାହିଁ । ବରଂ, ନିତାନ୍ତ ନିରୁପାୟ ପ୍ରାଣୀ ଯେପରି ସଙ୍କଟାପନ୍ନ ହୋଇ ଉଦ୍ୟତହସ୍ତ ଆତତାୟୀକୁ ହିଁ ପ୍ରାଣବିକଳରେ କୁଣ୍ଢାଇ ଧରେ, ତୁମେ ଯେତେବେଳେ ମୋତେ କଠୋର ଶାସନ ଦଣ୍ଡରେ ଦଣ୍ଡିତ କରିଛ, ଯେତେବେଳେ ପୃଷ୍ଠ ଦେଶରେ ନିର୍ଦ୍ଦୟ କଶାଘାତ କରିଛ, ମୁଁ ସେତେବେଳେ ଅନ୍ୟ ଭରସା ନ ପାଇ ଅସହାୟ ଅବସ୍ଥାରେ ତୁମରି ଚରଣ ତଳେ ଲୋଟି ପଡ଼ିଛି । ତୁମରି ସମୀପରେ ମୋର ସବୁ ସମର୍ପି ଦେଇଛି ।

ଶୁଣିଛି ମୁଁ, ତୁମେ ଯାହାକୁ କୃପା କର, ପ୍ରଥମେ ତାହାର 'ସର୍ବନାଶ' କରିଥାଅ । ମୋର ତ ସର୍ବନାଶ କରି ସାରିଲଣି । ତେବେ ମୁଁ କ'ଣ ତୁମର ପ୍ରକୃତ କରୁଣାର ପାତ୍ର ପ୍ରଭୁ ! କାହିଁ କିପରି ବିଶ୍ୱାସ କରିବି, ମୋର ସର୍ବନାଶ ପୂର୍ଣ୍ଣ ନ ହେଲେ କିପରି ଜାଣିବି ମୁହିଁ ତୁମର କୃପାରହିତ ବୋଲି ? ମୋର ତ କାହିଁ 'ସବୁ' ନାଶ କରି ନାହିଁ ! ଗୀତ ଦିନା ସରି ଗଲଣି, ସେ ଲୟ ତ ଯାଇ ନାହିଁ ; ବାୟୁର ସ୍ତରେ ସ୍ତରେ ସେ ମୂର୍ଚ୍ଛନା ପୂରି ଯାଇଛି । ଫୁଲ ଦିନା ଝରି ଗଲଣି—-ଅନ୍ତରେ ଅନ୍ତରେ ସେ ଗନ୍ଧ ଭରି ରହିଛି । ଦୀପ ଲିଭି ଗଲଣି ; ଧୂଆଁ ମରି ନାହିଁ, ଆଶା ଭାଙ୍ଗି ଗଲଣି ; ମୋହ ସରି ନାହିଁ । ଯେଉଁ ଦିନ ସବୁ ସରିପିବ, ସେହି ଦିନ ଯାଇ ଜାଣିବି ତୁମର କୃପା ପୂର୍ଣ୍ଣ ହେଲା ବୋଲି ।

* * * *

କ୍ଷଣେ କ୍ଷଣେ ତୁମର ମୃଦୁ ମଧୁର ପଦଧ୍ୱନି ଶୁଭିଯାଉଛି, ବେଳେ ବେଳେ ତୁମର ଗମ୍ଭୀର ଗର୍ଜ୍ଜନ ଚିତ୍ତ ସ୍ତମ୍ଭିତ କରି ଦେଉଛି, ତୁମର ଅନନ୍ତଭେଦୀ ଦୃଷ୍ଟି ଅନ୍ତରର ନିଭୃତତମ ପ୍ରଦେଶ ସ୍ପର୍ଶ କରି-ଯାଉଛି । କିନ୍ତୁ ନିଜେ ତୁମେ ଆଡ଼ଆଳୁଅ ଦେଇ କେଉଁଠି ଛପି ରହିଛ । ଉହାଡରେ ଥାଇ ତୁମର ବୈଦ୍ୟୁତିକ ଶକ୍ତି ପ୍ରେଷଣ କରୁଛ—ଆଉ ବିଶ୍ୱ ଜଗତ ଚକ୍ରପରି ଘରି ଘରି ହୋଇ ଘୂରୁଛି । ମୁଁ ନୀରବରେ ସବୁ ଦେଖୁଛି, ସବୁ ଶୁଣୁଛି, କିନ୍ତୁ ତଥାପି ଜାଣି ପାରୁ ନାହିଁ । ଏ କି ଅଲୌକିକ ମାୟା ! ଏ କି ଐନ୍ଦ୍ରଜାଲିକ କୁହୁକ !

ସୁଖ ବେଳରେ, ସମ୍ପଦ ବେଳରେ ତୁମେ ଟିକିଏ ପଛଘୁଞ୍ଚା ମାରି ଦୂରରୁ ଥାଇ ମୁରୁକି ମୁରୁକି ହସୁଛ ! କିନ୍ତୁ ଦୁଃଖରେ, ବିପଦରେ କେବେ ତ ତୁମେ ଛାଡ଼ି ଯାଇ ନାହଁ । ବିଷାଦରେ ଅଶ୍ରୁରୂପେ ପ୍ରାଣରେ କେତେ ସାନ୍ତ୍ୱନା ଆଣି ଦେଉଛ, ଅବସାଦରେ ଆଶାରୂପେ ହୃଦୟକୁ କେତେ ଆଶ୍ୱସ୍ତ କରୁଛ । ତୁମେ ପ୍ରକୃତ ଦୀନବନ୍ଧୁ ।

ସର୍ବଦା ତୁମେ ଆସିବାକୁ ବ୍ୟଗ୍ର; ଉଦ୍‌ଗ୍ରୀବ ହୋଇ ରହିଛ । ମୁହିଁ କେବଳ ମୋର ଅନ୍ତର ଦ୍ୱାର ରୁଦ୍ଧ କରି ତୁମକୁ ବାଟ ଛାଡ଼ି ଦେଉ ନାହିଁ । ମୁହିଁ କେବଳ ତୁମରି ଅଭେଦ୍ୟ ମାୟାରେ ଇନ୍ଦ୍ରିୟ-ପରତନ୍ତ୍ର ହୋଇ ତୁମର ଅସୀମ ପ୍ରୀତି ବୁଝି ପାରୁ ନାହିଁ । ଛାଡ଼ ଛାଡ଼, ଏବେ ସେ ମାୟାଜାଲ ସମ୍ବରଣ କର ଥରେ । ଦେଖ, ମୁଁ ମୋର ପ୍ରାଣର ସମସ୍ତ କକ୍ଷ କବାଟ ଉଦ୍‌ଘାଟିତ କରି ଦେଲି ! ଆସ ଏବେ—ଦୁଃଖରୂପେ, ବିପଦରୂପେ, ନିରାଶାରୂପେ, ବିଫଳତା-ରୂପେ —ଯାହା ଇଚ୍ଛା ତାହା ରୂପେ—ରାଶିରାଶି ସମୁଦ୍ର ତରଙ୍ଗ ହୋଇ ବନ୍ୟା ଆସ ।

ସେହି ମୋର ଶାନ୍ତି ! ସେହି ମୋର ଶାନ୍ତି !! ସେହି ମୋର ଶାନ୍ତି !!!



# ରୋଗଶଯ୍ୟା

ଦିନେ ମୁଁ କାମନାର କାଗଜବୋଇତ ନିର୍ମାଣ କରି ଅପାର ପାରାବାରବକ୍ଷରେ ଆହ୍ଲାଦ ବାହି ଚାଲୁଥିଲି—ଆକାଶ-କୁସୁମର ସୁରମ୍ୟକୁଞ୍ଜ ରଚନା କରି—ମହାଶୂନ୍ୟରେ ମନ-ଅଟ୍ଟାଳିକା ଗଢ଼ି ଆଶା ଓ ଆକାଙ୍‌କ୍ଷାର ଡେଣା ମେଲାଇ ଅନନ୍ତ ଆକାଶରେ ସ୍ଫୂର୍ତ୍ତି ଫୁଲାଇ ଉଡ଼ି ବୁଲୁଥିଲି । ସେତେବେଳେ ଜାଣି ନ ଥିଲି ଏହାର ଦିନେ ଶେଷ ଅଛି ବୋଲି, ବିରାମ ଅଛି ବୋଲି, ବିକାଶ ଅଛି ବୋଲି । ହଠାତ୍ ପଡ଼ିଲି, ଅଜାଣିତ, ଅତର୍କିତ, ଅପ୍ରତ୍ୟାଶିତ-ଭାବରେ—ପଡ଼ିଲି କଚାଡ଼ି । ଓଃ, ସେ କି ଭୀଷଣ ପତନ ! ସେ ପତନର ସୀମା ନାହିଁ, ଅନ୍ତ ନାହିଁ, ଶ୍ରାନ୍ତି ନାହିଁ । ଏତେ ଦିନର ଏତେ କଳ୍ପନା ଏକାଥରକେ ଭସ୍ମସାତ୍ ହୋଇଗଲା, ଏତେ ଦିନର ଏତେ ଆଶା ମୁହୂର୍ତ୍ତ ମଧ୍ୟରେ ଚୂର୍ଣ୍ଣୀଭୂତ ହୋଇଗଲା । ଜୀର୍ଣ୍ଣ ଦେହ, ଭଗ୍ନ ପ୍ରାଣରେ ବିକଳାଙ୍ଗ ହୋଇ କେତେ କାଳ ମୂର୍ଚ୍ଛିତଭାବରେ ପଡ଼ି ରହିଲି କେଜାଣି ! ଇତି-ମଧ୍ୟରେ ଗୋଟିଏ ବିପୁଳ ବିପ୍ଳବର ପ୍ରବଳ ଝଞ୍ଜା ମୋ ମୁଣ୍ଡ ଉପରେ ହୁ-ହୁଙ୍କାର କରି ବହିଗଲା ।

ଯେଉଁ ଦିନ ମୋର ଜଡ଼ିତ ନୟନରେ ଚେତନାର କ୍ଷୀଣ ଆଲୋକରଶ୍ମି ଫେରି ଆସିଲା, ସେଦିନ ଚାହିଁ ଦେଖିଲି, ମୋର ସବୁ ସରିଯାଇଛି । ସେହି ଶୈଶବର କ୍ରୀଡ଼ାଭୂମି, କୈଶୋରର ଲୀଳାସ୍ଥଳୀ, ଯୌବନର ବିଳାସକ୍ଷେତ୍ର, କେତେ ଦିବସସ୍ୱପ୍ନର କୁସୁମ-ଶଯ୍ୟା, କେତେ ମଧୁରକଳ୍ପନାର ଶିଳ୍ପଶାଳା, ମୋର ସେହି ପ୍ରିୟ ରାଜ୍ୟ, ସମସ୍ତ ଭବିଷ୍ୟତର ଅନ୍ତଃହୀନ ସମାଧିସ୍ତୂପରେ ପରିଣତ ହୋଇଛି ।

କି ଘୋର ପରିବର୍ତ୍ତନ ! ଏହି ଅପରିଚିତ ନୂତନ ଜଗତରେ ମୁଁ ଗୋଟିଏ ବିଜାତୀୟ ପ୍ରାଣୀ । ଆଜି ମୁଁ ଆପଣା ଆଗାରରେ ଅନାହୂତ, ଅନାଦୃତ, ଅବଜ୍ଞାତ ଅତିଥିରୂପେ ଶତ୍ରୁ ହସ୍ତରେ ଉଭା ହେଲି । ଆପଣାର ବୋଲି ବଡ଼ ସରାଗରେ ଧାଇଁ ଯାଇଥିଲି ମୁଁ,—ଟିକିଏ ସହାନୁଭୂତିର "ଆହା"—ବିକଟେ ମାୟାମମତାର ଆଲିଙ୍ଗନ ପାଇଁ, ବୁନ୍ଦାଏ ସମବେଦନାର ଅଶ୍ରୁ ପାଇଁ । ହାୟ, ତାହା ବଦଳରେ ପାଇଲି କ'ଣ ? —ଉପେକ୍ଷା, ଘୃଣା, ନିର୍ଦ୍ଦୟ ନାସିକା-କୁଞ୍ଚନ ! ଲାଞ୍ଛନାରେ, ଅପମାନରେ, ନିର୍ଯ୍ୟାତନରେ କାତର, ଜର୍ଜ୍ଜର ହୋଇ ଫେରିଲି । ବହୁ ଦିନର ମାୟାଜାଲ ଦଣ୍ଡକେ ଆଖି ଆଗରୁ ଉଭେଇଗଲା । କ୍ଷଣମାତ୍ରକେ ସେ ଭ୍ରମ ବୁଝିପାରିଲି । ସେହି ସ୍ୱପ୍ନମୟ, ଛାୟାମୟ ଅଳୀକ କୁହୁକରାଜ୍ୟ ଛାଡ଼ି ଛିଡ଼ା ହେଲି । ଆଜି ମୁଁ—କଠୋର ବାସ୍ତବ ଜଗତ ମଝିରେ । ଅର୍ଥହୀନ, ଲକ୍ଷ୍ୟହୀନ, ଉଦ୍ଦେଶ୍ୟହୀନ ଏହି ନିଷ୍ପ୍ରୟୋଜନ ଜୀବନ ନେଇ ଛିଡ଼ା ହେଲି ଆସି ସେଇଠି—ଯହିଁ ସ୍ନେହ ନାହିଁ, ମାୟା ନାହିଁ, ମମତା ନାହିଁ । ଯହିଁ ଅଛି କେବଳ ଆଦାନପ୍ରଦାନର ବଣିଜ, ବେପାର । ଅଛି କେବଳ ସ୍ୱାର୍ଥସିଦ୍ଧିର କୁଟିଳ ବେଭାର, ଜୀବନ-ସଂଗ୍ରାମର ତୁମୁଳ ହୁଙ୍କାର । ସେ ଜଗତରେ ନାହିଁ—ବନ୍ଧୁ ବନ୍ଧୁର ପ୍ରେମ, ଭାଇ ଭାଇର ସ୍ନେହ । ସେ ଜଗତର ଇଷ୍ଟମନ୍ତ୍ର ସ୍ୱାର୍ଥ, ସେ ଜଗତର ମୂଳନୀତି ଦୁର୍ବଳର ପୀଡ଼ନ, ସେ ଜଗତର ମୁଖ୍ୟ ଧର୍ମ ହିଂସା, ଦ୍ୱେଷ, ପରଶ୍ରୀକାତରତା ।

ପଛକୁ ଚାହିଁ ଦେଖିଲି, ଜୀବନଟା ଗୋଟାଏ ରାଶୀକୃତ ଭ୍ରାନ୍ତି, ଗୋଟାଏ ଜଡ଼ୀଭୂତ କୁହେଳିକା, ଗୋଟାଏ ସ୍ତୂପାକାର ବ୍ୟର୍ଥତା ! ପକ୍ୱ ଫଳର ସ୍ୱାଦ ଯାଇଛି, ସେ ଆଉ ରହିଛି କାହିଁକି ? ବାସି ଫୁଲର ସୌରଭ ଯାଇଛି, ସେ ଆଉ ରହିଛି କାହିଁକି ? ପ୍ରଭାତୀ ତାରାର ଜ୍ୟୋତି ଯାଇଛି, ସେ ଆଉ ରହିଛି କାହିଁକି ?

ଭଗ୍ନ ହୃଦୟ, କ୍ଷତବିକ୍ଷତ ଶରୀର ନେଇ ମର୍ମାହତ, ଅର୍ଦ୍ଧମୃତ ଅବସ୍ଥାରେ ନିର୍ଦ୍ଦୟ ଲୋକଚକ୍ଷୁର ଅନ୍ତରାଳରେ ଉସୂରଶିର ଅନନ୍ତ ଶଯ୍ୟା ପାରିଦେଲି । ଭାବିଥିଲି, ମଧୁର ଭ୍ରାନ୍ତିର ପ୍ରାଣାରାମ ଆଶ୍ୱାସନାରେ ଦେହମନର ତାପ ଲିଭାଇବି ବୋଲି; କିନ୍ତୁ ତାହା ତ ହେଲା ନାହିଁ । ଦଗ୍ଧ ଅତୀତର ଅକ୍ଷୟ ବୀଜସବୁ ଶଯ୍ୟା ଭେଦ କରି ବିଷାକ୍ତ କଣ୍ଟକାକାରରେ ଅଙ୍କୁରିତ ହୋଇ ଉଠିଲା । ଓଃ, ଏ ଆତ୍ମାର ବିଶ୍ରାମ ନାହିଁ ।—ଏ ହୃଦୟର ଶାନ୍ତି ନାହିଁ—ଏ ପ୍ରାଣର ଆରାମ ନାହିଁ ।

ଚାହୁଁ ଚାହୁଁ ଦିନ ପରେ ଦିନ, ରାତି ପରେ ରାତି, ମାସ ମାସ, ବର୍ଷ ବର୍ଷ ନିର୍ଦ୍ୱନ୍ଦରେ, ନିଶବ୍ଦରେ, ନିର୍ବାଧରେ ଖସି ଚାଲିଗଲେ । କେତେ ନୂଆ ପୁରୁଣା ହୋଇଗଲା, କେତେ ପୁରୁଣା [illegible]

ଆବରଣ ପିନ୍ଧି ଦେହ ଢାଙ୍କିଲା, କେତେ ଶିଶୁର ତରୁଣଜୀବନରେ ଯୌବନର ଜୁଆର ମାଡ଼ିଆସିଲା, କେତେ ଯୁବକର ଜୀବନ-ନଦୀରେ ଭଟ୍ଟା ପଡ଼ିଗଲା । କେତେ ଯୁଗ ଅଜ୍ଞାତର ଅନ୍ଧକାରରେ ବୁଡ଼ିଗଲା, କେତେ ଯୁଗର ବିଶ୍ୱାସରାଗିଣୀ ବାଜି ଉଠିଲା—ତାହା କିଏ କହିବ ? କେତେ ସୂର୍ଯ୍ୟ ଘୁରି ଘୁରି ଥକି ପଡ଼ିଲେ, କେତେ ଚନ୍ଦ୍ର ବୁଲି ବୁଲି କ୍ଷୟ ହୋଇଗଲେ, କେତେ ନବୀନପ୍ରାଣରେ ଜଡ଼ତା ମାଡ଼ି ଆସିଲା, କେତେ ଉତ୍ସାହ ଅବସାଦ-ଭ୍ରମରେ କାତର ହୋଇ ପଡ଼ିଲା । କରାଳ କାଳଚକ୍ରର ଘୂର୍ମ ଆବର୍ତ୍ତନରେ କେତେ ହୃଦୟ ନିଷ୍ପେଷିତ ହୋଇ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । କାଳାଗ୍ନିର ପ୍ରଚଣ୍ଡ ଦହନରେ କେତେ ସଂସାର ପୋଡ଼ି ଛାରଖାର ହୋଇଗଲା । କିନ୍ତୁ ମୋର ବିନିଦ୍ର ଆଖିପତା ଛୁଇଁ ଏକ ଅଖଣ୍ଡ, ଅବିରାମ, ନିରଳସ ସମୟସ୍ରୋତ ନିୟମିତ ଭାବରେ ନିରୋଳ ବହିଯାଇଛି—ସେଥିରେ ଭାଷା ନାହିଁ, ସ୍ପନ୍ଦନ ନାହିଁ, ଉଦ୍‌ବେଗ ନାହିଁ, ପ୍ରାଣ ନାହିଁ । ଜୀବନହୀନ ଚକ୍ଷୁତାରା ମୋର ଚାହିଁ ଦେଖୁଛି, ଶିଶିରର କୁଣ୍ଡଳ ଝୁଲାଇ, ପଳାଶର ରଙ୍ଗଚୂଡ଼ା ହଲାଇ, କୋକିଳକଣ୍ଠରେ ବଇଁଶୀ ବଜାଇ, ଫୁଲବାଡ଼ିରେ ଅଙ୍ଗ ସଜାଇ, ମଧୁର ମଳୟରେ ନାଚି ନାଚି ବୁଲି ଗଲେଣି କେତେ ବସନ୍ତ । କିନ୍ତୁ କେହି ମୋର ଜୀର୍ଣ୍ଣ ହୃଦୟ, ଛିନ୍ନ ତନ୍ତ୍ରୀ ସ୍ପର୍ଶ କରି ନାହାନ୍ତି । କେତେ ପ୍ରାବୃଟ ନୀଳ ଜଳଦରେ ଆକାଶ ଛାଇ, ଘନଘନ ବିଜୁଳି ଚମକାଇ, ଗୁରୁ ଗର୍ଜ୍ଜନରେ ଦିଗନ୍ତ କମ୍ପାଇ ବୁଲିଗଲେଣି । କିନ୍ତୁ କଦମ୍ବର ମଧୁର ଗନ୍ଧ ମୋର ନିର୍ଜୀବ, ନୀରସ ଚିତ୍ତ ଆଲୋଡ଼ିତ କରି ପାରି ନାହିଁ । ମୋ ପ୍ରାଣର ନିବିଡ଼ ଅନ୍ଧାର ଶରତ ସୂର୍ଯ୍ୟର କନକ-କିରଣରେ ଆଲୋକିତ ହୋଇ ନାହିଁ—ମୋ ମାନସର ଅନନ୍ତ ବିଷାଦ ଶରତ ଚନ୍ଦ୍ରମାର ରଜତହାସ୍ୟରେ ପୁଲକିତ ହୋଇନାହିଁ ।

ମୁଁ ରହିଛି । ଜନ ସମାଜର ଆବର୍ଜ୍ଜନାରୂପରେ, ଆତ୍ମୀୟ ସ୍ୱଜନଙ୍କ ଗଳଗ୍ରହରୂପରେ, ଧରଣୀର ପାପଭାରରୂପରେ,—ତଥାପି ଜୀଇ ରହିଛି । ତୈଳ ଶେଷ ହୋଇଗଲାଣି, ନିର୍ବାଣୋନ୍ମୁଖ ପ୍ରଦୀପଟିଏ ତଥାପି ମିଞ୍ଜି ମିଞ୍ଜି ହୋଇ ଜଳୁଛି—ଆଲୋକ ନାହିଁ, ତେଜ ନାହିଁ, ଉତ୍ତାପ ନାହିଁ । ଆଜି ମୋର ଅଛି କ'ଣ ? ଚିନ୍ତାରେ ନାହିଁ ମୌଳିକତାର ଚିହ୍ନ, କର୍ମରେ ନାହିଁ ସୁପ୍ତ ପ୍ରେରଣାର ଆଭା, ଉଦ୍ୟମରେ ନାହିଁ ଗୁପ୍ତ ଶକ୍ତିର ବିକାଶ । ରହିଛି—ଅବସାଦ, ରହିଛି—ଜଡ଼ତା, ରହିଛି—ବନ୍ଧନ, ରହିଛି—ମୃତ୍ୟୁ । ସେହି ଦିନର, ସେହି ଶେଷ ଦିନର ଅପେକ୍ଷାରେ ବସି ବସି ଦିନ ଗଣୁଛି । ଦିନ ତ ସରୁନାହିଁ । ଚିରପୁରାତନ ସେହି ସୁଦୀର୍ଘ କାଳ ଦୀର୍ଘରୁ ଦୀର୍ଘତର ହୋଇଯାଉଛି । କେବେ ଆସିବ ସେହି ମୁହୂର୍ତ୍ତ, ସେହି ପୁଣ୍ୟ ମୁହୂର୍ତ୍ତ, ସେହି ଶୁଭ ମୁହୂର୍ତ୍ତ, ଚିରଈପ୍‌ସିତ ସେହି ମଙ୍ଗଳ ମୁହୂର୍ତ୍ତ—ଯେଉଁଦିନ ନରକର ଏହି ଲୌହନିଗଡ଼ ଛିନ୍ନ କରି ଥରେ ସ୍ୱାଧୀନତାର ଉନ୍ମୁକ୍ତ ବାୟୁ ସେବନ କରିବାର ଅବକାଶ ପାଇବି ? ମରଣ ଶାନ୍ତିମୟ, କିନ୍ତୁ ଜୀବନ୍ମୃତ ଅବସ୍ଥା, ଓଃ, କି ଭୟଙ୍କର !

ସ୍ମୃତି ମଳିନ ହେଲାଣି, ଅବୟବ ଅବଶ ହେଲାଣି । ଜୀବନୀ ଶକ୍ତି ଶିଥିଳ ହେଲାଣି, ଇନ୍ଦ୍ରିୟଗଣ ନିଷ୍କ୍ରିୟ ହେଲେଣି । ଆଉ କଣ ? ଶୀତୋଷ୍ଣ ସୁଖ ଦୁଃଖର ଅଜ୍ଞାତରେ,—ରୂପରସାଦି ଅନୁଭୂତିର ବହୁ ଦୂରରେ କର୍ମମୟ ଜୀବନର ପର ପାରରେ ବସିଛି ମୁଁ । ଜଗତରେ ଥାଇ ମୁଁ ଜଗତର କେହି ନୁହେଁ—ସମ୍ପର୍କହୀନ, ସହାୟହୀନ, ଗନ୍ଧହୀନ, ନିର୍ଜ୍ଜୀବ ପଦାର୍ଥ । ବୀରର ହୃଦୟ ବାନ୍ଧି ସବୁ ସହିଛି, ସବୁ ସହୁଛି, ସବୁ ସହିବ । ଶୋକରେ ଚିତ୍ତ ବିକ୍ଷୁବ୍ଧ ହେବ ନାହିଁ, ବିପଦରେ ଅବସନ୍ନ ହେବ ନାହିଁ, ଯନ୍ତ୍ରଣାରେ କାତର ହେବ ନାହିଁ । ଦୁଃଖ ମୋର ନିତ୍ୟ ସହଚର, ସନ୍ତାପ ମୋର ସନ୍ତାନ ସନ୍ତତି, ଅଶ୍ରୁ ମୋର ପ୍ରାଣାରାମ ପୀୟୂଷଧାର । ପ୍ରଭୁ ହେ ! ତୁମ୍ଭେ ମଙ୍ଗଳମୟ, ମୋର ଚରମ ମଙ୍ଗଳ ଜାଣି, ତୁମ୍ଭେ ଯେତେବେଳେ ଯାହା ଦେଉଛ, ମୁଁ ତାହା ଅକ୍ଷୁଣ୍ଣ ମନରେ ଶିର ଉପରେ ଟେକି ଧରିଛି । ମୋର ଭଲ ମନ୍ଦର ଭାର ତୁମ୍ଭେ ତ ଗ୍ରହଣ କରିଛ । ତୁମ୍ଭରି ପ୍ରେରଣାରେ, ତୁମ୍ଭରି ନିର୍ଦ୍ଦେଶରେ ଯନ୍ତ୍ରଚାଳିତ ପୁତ୍ତଳିକା ପରି ମୁଁ କର୍ମ କରି ଯାଉଛି । ମୋର କିଛି ଆୟତ୍ତ ନାହିଁ, ମୋର କିଛି ଅଧିକାର ନାହିଁ, ମୋର କିଛି କର୍ତ୍ତୃତ୍ୱ ନାହିଁ । ତୁମ୍ଭର ଅନନ୍ତ ଚକ୍ଷୁର ଅସୀମ ଦୃଷ୍ଟି ସବୁ ଦେଖୁଛି, ତୁମ୍ଭର ଅକ୍ଷୟ କର ଅଯାଚିତ ସବୁ ଦାନ କରୁଛି । ତୁମ୍ଭର ଅସରନ୍ତି ପ୍ରେମ-ସ୍ରୋତରେ ବିଶ୍ୱ-ବ୍ରହ୍ମାଣ୍ଡ ଭାସି ଯାଉଛି । ତୁମ୍ଭର ରାଜ୍ୟ ତୁଳାଦଣ୍ଡ ନୀତିରେ ନିୟମିତ-ରୂପେ ଚାଲୁଛି । ତୁମ୍ଭେ ପିତା ପରି ଶାସନ କରୁଛ, ମାତା ପରି ପାଳନ କରୁଛ । ତୁମ୍ଭର ଅଜସ୍ର କରୁଣା ପାପୀ, ତାପୀ, ଦୀନ, ଆତୁରର ମସ୍ତକରେ ଅବିରତ କଲ୍ୟାଣମନ୍ଦାକିନୀ ବାରି ବର୍ଷଣ କରି ଯାଉଛି । ହେ ପୂର୍ଣ୍ଣ ! ତୁମ୍ଭ ରାଜ୍ୟରେ ଅଭାବ ନାହିଁ । ହେ କାରଣସ୍ୱରୂପ ! ତୁମ୍ଭ ସଂସାରରେ କିଛି ଅକାରଣ ଯାଉ ନାହିଁ । ହେ ସିଦ୍ଧିଦାତା ! ତୁମ୍ଭ ରାଜ୍ୟରେ କିଛି ବ୍ୟର୍ଥ ହେଉନାହିଁ । ହେ ନିୟାମକ ! ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ତାରା, ଅଗ୍ନି, ବାୟୁ, କାଷ୍ଠ, ତୃଣ, କୀଟ, ପତଙ୍ଗ, ଅଣୁ, ପରମାଣୁ ପର୍ଯ୍ୟନ୍ତ ଯେ ଯାହାର ନିର୍ଦ୍ଦିଷ୍ଟ ସ୍ଥାନରେ ରହି, ଯେ ଯାହାର ନିର୍ଦ୍ଦିଷ୍ଟ ପ୍ରୟୋଜନ ସାଧନ କରୁଅଛନ୍ତି । କିନ୍ତୁ ମୋର ଜୀବନର ଉଦ୍ଦେଶ୍ୟ କ'ଣ, ମୋର କର୍ତ୍ତବ୍ୟ କ'ଣ, ମୋର ସ୍ଥାନ କେଉଁଠାରେ ? ମୋ ଜୀବନ କି କେବଳ ଗୋଟାଏ ହାହାମୟ ଦୀର୍ଘଶ୍ୱାସ । ମୋତେ କି ଗୋଟାଏ ଜୀବନ୍ତ ଅଭିଶାପ ରୂପେ,

# ରୋଗଶଯ୍ୟା

ଗୋଟାଏ ପିପାସିତ ପ୍ରେତାତ୍ମା ରୂପେ, ଗୋଟାଏ ମୂର୍ତ୍ତି ଅମଙ୍ଗଳ ରୂପେ, ନରକର ବିକାର ରୂପେ ସଂସାରକୁ ଆଣିଲ ପ୍ରଭୋ ! ତେବେ ହେ ସୂତ୍ରଧର ! ତୁମ୍ଭେ ଯେଉଁ ଛନ୍ଦରେ ନଚାଉଛ ମୁଁ ସେ ଛନ୍ଦରେ ନାଚିବି । ହେ ଯନ୍ତ୍ରି ! ତୁମ୍ଭେ ଯେଉଁ ତାଳରେ ବଜାଉଛ ମୁଁ ସେ ତାଳରେ ବାଜିବି । ତୁମ୍ଭେ ଯେଉଁ ଲୟରେ ଝଙ୍କାରିବ ମୁଁ ସେହି ସ୍ୱରରେ ଗାଇବି । ମୁଁ ଚାହେଁ ନାହିଁ ସ୍ୱତନ୍ତ୍ରତା—ମୁଁ ଚାହେଁ ନାହିଁ ଜୀବନ—ମୁଁ ଚାହେଁ ନାହିଁ ମୁକ୍ତି । ହତାଶାରେ ମୋର ସଫଳତା—ବ୍ୟର୍ଥତାରେ ମୋର ସାର୍ଥକତା—ନିର୍ବାଣରେହିଁ ମୋର ପୂର୍ଣ୍ଣତା । ଇଚ୍ଛାମୟ, ତୁମ୍ଭର ଇଚ୍ଛା ପୂର୍ଣ୍ଣ ହେଉ ।



# ଜୀବନ୍ତ ମରଣ

ସଂସାର—ସଂସାର, ସବୁବେଳେ ସଚଳ ହୋଇ ଗୁଞ୍ଜି ଯାଉଛି ।

ଯଦି ଏ ଦୁନିଆଟା ଅଚଳ, ସ୍ଥାଣୁ ହୋଇ ରହି ଥାଆନ୍ତା, ତେବେ ଏହି ବିଚିତ୍ରତା ଆସନ୍ତା କାହୁଁ ? ଏହି ଘଡ଼ିକି ଘଡ଼ି ପରି-ବର୍ତ୍ତନ, କ୍ଷଣକୁ କ୍ଷଣ ଅପସରଣ, ଦଣ୍ଡକୁ ଦଣ୍ଡ ସଞ୍ଚରଣ ମଧ୍ୟରେ ନିତ୍ୟ-ନୂତନତାର ପରିସ୍ଫୁରଣ ହତଭାଗ୍ୟ ମାନବର ଦୁର୍ବିସହ ଜୀବନକୁ ସ୍ନିଗ୍ଧ, ଶାନ୍ତ, ସହନୀୟ କରିବାପାଇଁ ଏକ ସୁନ୍ଦର କୌଶଳ ! ପ୍ରତି ପଦକ୍ଷେପରେ ମାନବ କଚାଡ଼ି ପଡ଼ୁଛି—ତା'ର ଆଶାର ସୌଧ ଭାଙ୍ଗି ଚୂରମାର ହୋଇ ଯାଉଛି—ସେ ପୁଣି ଉଠୁଛି, ପୁଣି ଧାଉଁଛି, ପୁଣି ଲଢ଼ୁଛି ଏକ କଳ୍ପନାର ନନ୍ଦନ-କାନନ ରଚନା କରି ମନେ ମନେ । ସୁଦିନର ପରମୁହୂର୍ତ୍ତରେ ସେ ଆଖି ମେଲାଇ ଦେଖୁଛି, ଯେଉଁ ପରିସ୍ଥିତିରେ ତା'ର ପତନ ଘଟି ଯାଇଥିଲା, ତାହା ଆଉ ନାହିଁ—ଆଖିପିଛୁଳାକେ ଏକ ନୂତନ ପରିବେଶ, ଅଭିନବ ରୂପ, ରସ, ଗନ୍ଧ ଧାରଣ କରି ତା'ର ପ୍ରାଣତନ୍ତ୍ରୀକୁ ଛୁଇଁ ଦେଲାଣି । ଏହି ନୂତନତାର କାଉଁରୀକାଠି ପରଶରେ ସେ ପୁଣି ଏକ ନବୀନ ଆଶା ଆକାଙ୍‌କ୍ଷାରେ ଉଜ୍ଜୀବିତ, ଉନ୍ମତ୍ତ, ଅନୁପ୍ରାଣିତ ହୋଇ ଉଠୁଛି । ଏହି କୁହୁକ ତାକୁ କରିଦେଇଛି—ଉଦବେଳ, ଉଲ୍ଲୋଳ, ଉଚ୍ଛଳ ! ତା'ର ମଉଳା ମନ ଭିତରେ ଫୁଟି ଉଠୁଛି ଏକ ଅନାସ୍ୱାଦିତ ଅମୃତର ଆସ୍ୱାଦ । ତା'ର ହତାଶ ଚିତ୍ତ-ରାଜ୍ୟରେ ଜାଗି ଉଠୁଛି ଏକ ନୂତନ ଚେତନାର କୁହୁକଧ୍ୱନି — ତା'ର ମଳିନ ମନୋବିତାନରେ ମହକି ଉଠୁଛି ଏକ ପାରିଜାତର ମଦିର ସୌରଭ । ତା'ର ସମଗ୍ର ଜୀବନକୁ ସ୍ନିଗ୍ଧ, ମୁଗ୍ଧ, ଉଲ୍ଲସିତ କରୁଛି ଏକ ଅମଳ ଚନ୍ଦ୍ରମାର କାନ୍ତିମୟୀ ଜ୍ୟୋତ୍ସ୍ନା ।

ମନୁଷ୍ୟ ତା'ର ସେହି ଚିର ପୁରାତନକୁ ଗଣ୍ଠିଧନ କରି, ଜୀବନସଙ୍ଗୀଣୀ କରି ମୁଠାଇ ଧରିବାକୁ ଚେଷ୍ଟା କରୁଛି । କିନ୍ତୁ ମଣି କ୍ଷଣ ଛଟକେ ଆନ ହୋଇ ଯାଉଛି । ପୁରାତନତା କେବଳ ସ୍ମୃତି-ସାର ହୋଇ ରହିଯାଉଛି, ବାରମ୍ବାର ଆଘାତଦ୍ୱାରା ବିଶୀର୍ଣ୍ଣ ପ୍ରାଣକୁ ତା'ର ସ୍ନିଗ୍ଧ,ସରସ, କୋମଳ କରିବା ନିମନ୍ତେ । ନୂତନ ସହିତ ପୁରାତନର ତୁଳନାମୂଳକ ରସ ସୃଷ୍ଟି କରି ଓ ତାହାର ମାଧୂର୍ଯ୍ୟ ଆହରଣ କରି ମାନବ ଜୀଇ ରହିଛି । ସଂସାରର ଗହନ ମାର୍ଗରେ ସେତିକି ତାର ପାଥେୟ, ସେତିକି ତା'ର ଭରସା, ସେତିକି ତା'ର ଅବଲମ୍ବନ । ବର୍ତ୍ତମାନ ମଞ୍ଚିରେ ଥାଇ ଅତୀତ ଓ ଭବିଷ୍ୟତରେ ଯେଉଁ ବନ୍ଧନ ସେ ନିଜେ ସୃଷ୍ଟି କରୁଛି, ସେହି ଶୃଙ୍ଖଳକୁ ଆଶ୍ରୟ କରି ସେ ଖଣ୍ଡାଧାରରେ ଚାଲିବାର ପ୍ରୟାସ କରୁଛି । ମାଛ ଧରୁ ଧରୁ ସେ ଶୃଙ୍ଖଳରେ ଛନ୍ଦି ହୋଇପଡ଼ି ନିଜ ପାଇଁ ନିଜେ ସୃଜନ କରୁଛି ଏକ ଗୋଲକଧନ୍ଦାର ଅଭେଦ୍ୟ ଜାଲ ।

ତଥାପି ସେ ହୋଇ ନାହିଁ ଶ୍ରାନ୍ତ, କ୍ଲାନ୍ତ । ହୋଇ ନାହିଁ ସେ ଦୁର୍ବଳ, ହତାଶ । ଅନ୍ଧକାରମୟ ସୁଦୂର ଭବିଷ୍ୟତର କ୍ଷୀଣ ଆଲୋକ-ରେଖା ତାର ମାନସନୟନରେ ଜଳି ଉଠୁଛି ଧପ୍ ଧପ୍—କେଉଁ ଅଜଣା, ଅଦେଖା କଳ୍ପଲୋକର ପ୍ରବେଶ ପଥ ସମୁଜ୍ଜ୍ୱଳ କରି । ଏତିକି ସଞ୍ଜୀବନୀ ସୁଧା ସ୍ୱରୂପ ତାକୁ ରଖିଛି ଜୀଆଇ ।

ମୁଁ ସତେ କ'ଣ ଜୀଇଛି ? ମୋର କ'ଣ ଜୀବନ ଅଛି ? ଜୀବନଟା କ'ଣ ? ସୁଖ, ଦୁଃଖ, ଆଶା, ଆକାଙ୍‌କ୍ଷା, ସାଫଲ୍ୟ, ବ୍ୟର୍ଥତା, ଉଦ୍‌ବେଗ, ସଂଗ୍ରାମ—ଏହି ସବୁର ସମଷ୍ଟି ତ ? ମୋଠାରେ ଏଗୁଡ଼ିକ ଅଛି କି ? ସୁଖରେ, ଦୁଃଖରେ, ଆଶାରେ, ଉଦ୍‌ବେଗରେ ମୋର ପ୍ରାଣତନ୍ତ୍ରୀ ସ୍ପନ୍ଦିତ ହେଉଛି କି ? କିଏ କହିବ ? ପଲକେ ପଲକେ ଚତୁର୍ଦ୍ଦିଗରେ ଯେଉଁ ଅଣୁ ପରମାଣୁର ତାଣ୍ଡବ ନୃତ୍ୟ ଚାଲିଛି—ବାତାବରଣର ଯେଉଁ ନିତ୍ୟ ଆବର୍ତ୍ତନ, ବିବର୍ତ୍ତନର ଉଦ୍ଦାମ ଲୀଳା ଲାଗିଛି, ତାର ପ୍ରତିଧ୍ୱନି ମୁଁ ଅନୁଭବ କରୁଛି କି ? ପ୍ରଭାତୀ ସବିତାର ଦିଗନ୍ତପ୍ରସାରୀ କନକକିରଣ ବିଶ୍ୱ-ଭୂମଣ୍ଡଳ ଉଦ୍‌ଭାସିତ କରି ଯେତେବେଳେ ନବୋତ୍ସାହରେ ମତାଇ ଦେଉଛି, ମୋର ସ୍ତିମିତ ନୟନରେ ତାର ପ୍ରତିବିମ୍ବ ଫୁଟି ଉଠୁଛି କି ? ପୂର୍ଣ୍ଣିମାର ଚନ୍ଦ୍ରମାର ଉଚ୍ଛଳ ରଜତଧାରା ଯେତେବେଳେ ଦିଗ୍‌ଦିଗନ୍ତ ପ୍ଲାବିତ କରି ଦେଉଛି—ତାର ସ୍ନେହପରଶ ମୋର ସୁପ୍ତ, ନୀରସ ପ୍ରାଣକୁ ଉନ୍ମେଷିତ କରି ପାରୁଛି କି ? ପ୍ରେମବିହ୍ୱଳା ବିରହିଣୀ କୋକିଳର କରୁଣ ଗୀତିକା ମୋର ହୃଦୟତନ୍ତ୍ରୀରେ ପ୍ରତିଧ୍ୱନିତ ହେଉଛି କି ? ବନ ମଲ୍ଲିକାର ଆତୁର ସୁରଭି କାହିଁ ଚିତ୍ତକୁ ମୋର ଆଲୋଡ଼ିତ କରୁ ନାହିଁ ତ ! ଭରା ଶ୍ରାବଣର ଅଜସ୍ର ବାରିଧାରା ଅନ୍ତରକୁ ମୋର ବିକମ୍ପିତ କରୁ ନାହିଁ ତ !

କାହିଁ ତେବେ ଜୀବନ ? କାହିଁ ସେ ପ୍ରାଣର ସ୍ପନ୍ଦନ ? ମୁଁ କ'ଣ ତେବେ ପ୍ରାଣହୀନ, ନିର୍ଜୀବ, ମୃତ ? ମୃତ ଯେବେ, ତେବେ

# ଜୀବନ୍ତ ମରଣ

ଏ ଅଳୀକ ଚେତନାଟା ରହିଛି କାହିଁକି—ଅନୁଭୂତିର ବିକଳତାଟା ରହିଛି କାହିଁକି—ଅବବୋଧର ପରିହାସଟା ରହିଛି କାହିଁକି ଆଉ ?

ମରଣଠୁଁ ବଳି ବନ୍ଧୁ କିଏ ଅଛି ! ଅନ୍ତରର ଦାବଦାହ ପ୍ରଶମିତ, ଶାନ୍ତ କରିବାକୁ ଏକା ମରଣ ହିଁ ସମର୍ଥ । ଶ୍ମଶାନଚିତା କେବଳ ଭୂତଶରୀରକୁ ଭସ୍ମ କରେ ନାହିଁ—ଜୀବନର ସମସ୍ତ ଜ୍ୱଳନ, ସକଳ ଯନ୍ତ୍ରଣା, ସମସ୍ତ ସନ୍ତାପର ପରିସମାପ୍ତି ସେଇଠି, ଅବସାନ ସେଇଠି, ନିର୍ବାଣ ସେଇଠି ।

ହେ ପ୍ରିୟ, ତୁମେ ତ ଥରେ ଏଇ ମଧୁର ମରଣର ସ୍ୱାଦ ଚଖାଇଛ । ସେଇ ଦିନ ମୁଁ ଜାଣିଛି ମରଣ କେଡ଼େ ଆରାମଦାୟୀ । ମନେ ହୁଏ, ସେଇ ଦିନ ମୁଁ ଏକ ଅପୂର୍ବ ମୁକ୍ତିର ସ୍ୱାଦ ଅନୁଭବ କରିଥିଲି । ଅବ୍ୟକ୍ତ ଆନନ୍ଦରେ ବନ୍ଧନମୁକ୍ତ ହାଲୁକା ପ୍ରାଣ ମୋର ସତେ କି ବାୟୁହିଲ୍ଲୋଳରେ ସନ୍ତରି ବୁଲୁଥିଲା । ସେ ଆନନ୍ଦ, ସେ ଉଲ୍ଲାସ, ସେ ତୃପ୍ତି ଅନିର୍ବଚନୀୟ ।

ସେ ସୁଖରୁ କାହିଁକି ପୁଣି ବଞ୍ଚିତ କଲ ପ୍ରିୟ ! ଜୀବନଟାପାଇଁ ତିଳ ତିଳ କରି ତୁଷାନଳରେ ଦାହି ଦାହି କେବେ ତୁମର ଆଶ ମେଣ୍ଟିଲା ନାହିଁ ! ପୁଣି ଜାଣିବାକୁ ମନ ବଳାଇଛ ! ସେଇ ଦିନ ଯେବେ ମରଣ ମୋତେ ତା'ର ଶରଣାଗତମୟ କୋଳକୁ ଟାଣି ନେଇ ଯାଇଥାଆନ୍ତା—ମୋର ସର୍ବସ୍ୱ ନିଃଶେଷ କରି—ତେବେ ବିଶ୍ୱସମୁଦ୍ରର ଗୋଟିଏ କଳୁଷିତ ବିନ୍ଦୁର ଅଭାବରେ କାହାର କିସ ବା ସରିଯାଆନ୍ତା ! ତୁମର ଅନନ୍ତ ଲୀଳାପାରାବାରର କିମ ବା ଊଣା ପଡ଼ିଥାଆନ୍ତା । ହେ ଲୀଳାମୟ, ଏକା ମୁହିଁ କି ତୁମର ଏକମାତ୍ର କ୍ରୀଡ଼ନକ ? ଏ ନିଷ୍ଠୁରତାର, ଏ ନିର୍ମମତାର, ଏ ନିର୍ଦ୍ଦୟତାର ଅନ୍ତ କେଉଁଠି ?

ନିହନ୍ତ୍ର, ସଂସାର-ଚକ୍ର ଘୂରୁଛି । ଦଳିତ, ମଥିତ, ନିଷ୍ପେଷିତ କରି ଆପଣା ଗତିପଥରେ ନିରପେକ୍ଷ ହୋଇ ମାଡ଼ି ଚାଲିଛି । କେତେ ନୂଆ, ପୁରୁଣାର ଅଭେଦ୍ୟ ଅନ୍ଧକାର ଗର୍ଭରେ ଲୀନ ହୋଇ ଯାଉଛି—କେତେ ଅଜ୍ଞାତ, ଅଜ୍ଞେୟ, ଅଶ୍ରୁତ, ଅକଳ୍ପିତ, ଅନାଗତ ନୂତନର ତାରୁଣ୍ୟ ବହନ କରି ବିକଶିତ ହୋଇ ଉଠୁଛି—ମାନବ ପ୍ରାଣକୁ ରାଗରଞ୍ଜିତ କରି । କିନ୍ତୁ ମୋର ଜଡ଼ ନେତ୍ରଫଳକରେ ଏ ସବୁର ପ୍ରତିବିମ୍ବ ଉକୁଟି ଉଠୁ ନାହିଁ । ଜାଣିଛି, କେତେ ସୂର୍ଯ୍ୟ ତାଙ୍କର ସ୍ୱର୍ଣ୍ଣ ରଶ୍ମି ବିକିରଣ କରି କରି ପ୍ରତୀଚୀର ଦିଗ୍‌ବଳୟରେ ବିଲୀନ ହେଲେଣି—କେତେ ଚନ୍ଦ୍ର, ତାରା ସର୍ବ ନିଶି ଉଜାଗର ହୋଇ ଆଖି ବୁଜିଲେଣି—କେତେ ଫୁଲ ସୌରଭ ବିତରି ମଉଳି ଗଲେଣି—କେତେ ପକ୍ଷୀ ଗୀତ ଗାଇ ଥକି ପଡ଼ିଲେଣି । କିନ୍ତୁ କାହିଁ, କାହାର ମୃଦୁ ସ୍ପନ୍ଦନ ମୋ ଅନ୍ତରକୁ ତ ସ୍ପର୍ଶ କରି ପାରି ନାହିଁ । ମୋର ବଧିର, ନିଷ୍ପନ୍ଦ, ନିର୍ଜୀବ ନୟନରେ ସେଇ ଅଖଣ୍ଡ, ଅମିଶ୍ର, ଅନ୍ତହୀନ ସ୍ରୋତ ଅବିରାମ ଗତିରେ ବହି ଚାଲିଛି—ନାହିଁ ତା'ର ବ୍ୟତିକ୍ରମ—ନାହିଁ ତା'ର ବିପର୍ଯ୍ୟୟ—ନାହିଁ ତା'ର ପରିବର୍ତ୍ତନ ।

ଏହା ଯେବେ ଜୀବନ, ତେବେ ମରଣ ଆଉ କ'ଣ ? ଏହା ଯେବେ ମରଣ, ତେବେ ଜୀବନ ଆଉ କିଏ ? ଜୀବନର ସ୍ଫୂର୍ତ୍ତି ନାହିଁ, ଉନ୍ମେଷ ନାହିଁ, ସ୍ପନ୍ଦନ ନାହିଁ । ଅଥଚ ମରଣର ଶାନ୍ତି ନାହିଁ, ବିଶ୍ରାମ ନାହିଁ, ନିର୍ବିଘ୍ନତା କାହିଁ ।

ଜୀବନ ଓ ମରଣର ଅସହାୟମୟ ସନ୍ଧିସ୍ଥଳରେ ରହି ମୁଁ କେବଳ ଗଣିଯାଉଛି ସେଇ ଏକସୁରା ଜୋଧୁନ—ନା ଅଛି ଆନନ୍ଦ, ନା ଅଛି ଅନୁତାପ—ନା ଅଛି ପ୍ରବୃତ୍ତି, ନା ଅଛି ନିବୃତ୍ତି—ନା ଅଛି ଅତୀତ, ନା ଅଛି ଭବିଷ୍ୟତ ! ଅଛି ଯାହାର ଜୀବନ, ନାହିଁ ମୃତ୍ୟୁ—ଅଛି ଯାହାର ମୃତ୍ୟୁ, ନାହିଁ ଜୀବନ । ଏହାହିଁ କି ତେବେ ଜୀବନ ମରଣ !



# ନବ ଜାଗରଣ

ଧୀରେ ଧୀରେ ଧୀରେ······ନିବିଡ଼ ତମସାଚ୍ଛନ୍ନ ବାୟୁମଣ୍ଡଳ ଭେଦ କରି ନବୀନ ଆଲୋକର କ୍ଷୀଣ ରେଖା ବିକଶିତ ହୋଇ ଆସିଲା ଧୀରେ, ଧୀରେ, ଧୀରେ । ମେଘାବୃତ ଗଗନର ଦୂର ଦିଗ୍‌ବଳୟ କୋଣରୁ ଉଦୟମାନ ଚନ୍ଦ୍ରମାର ସ୍ନିଗ୍ଧ କିରଣ ଝଲସି ଉଠିଲା ଧୀରେ, ଧୀରେ, ଧୀରେ । ମୋର ଅନ୍ତରକୁଞ୍ଜବନ ମୁଖରିତ କରି ପାପିୟାର ସରସ ସଙ୍ଗୀତଧାରା ଦିଗ୍‌ଦିଗନ୍ତ ଉଚ୍ଛୁଳାଇ ଦେଲା ଧୀରେ, ଧୀରେ, ଧୀରେ ।

ତ୍ରସ୍ତ, ବ୍ୟସ୍ତ, ବିଧ୍ୱସ୍ତ ହୋଇ ପଡ଼ିରହିଥିଲି ମୁଁ କେଉଁ ବିପୁଳ ବିସ୍ମୃତିର ଅନନ୍ତ ଗର୍ଭରେ—ଆଜି କିଏ ମୋତେ କୁହୁକକାଠି ଛୁଆଁଇ ବୋଧନ ଡାକ ଦେଲା କି ସତେ କି ଏକ ଛବିଳ ଜଗତର ଚିହ୍ନ ଉକୁଟାଇ ! କିଏ ମୋର ମୂର୍ଚ୍ଛିତ ଅନ୍ତରର ନିଭୃତ କକ୍ଷରେ ଥାଇ ନିଭି ନିଭି ଆସୁଥିବା ଦୀପ-ସଳିତାଟି ତେଜାଇ ଦେଲା କି ଆଜି—ତାର ଅମର ବାଣୀ ଶୁଣାଇ—"ରେ ପଙ୍ଗୁ, ରେ ନିର୍ଜୀବ, ରେ ଅବସନ୍ନ; ଉଠ,—ଉଠ, ଉଠ ଏବେ । ମୃତ ଅତୀତ ଯେ ମରି—ଭସ୍ମସାର ହୋଇଗଲାଣି—ସେହି ମୁରଦାର ଆଡ଼କୁ ଚାହିଁ ଆପଣାକୁ ପଳେ ପଳେ ବିନାଶ କରୁଛୁ କିଆଁ ରେ ଆତ୍ମଘାତୀ ? ପ୍ରେତପୁରୀର ଭୂତ ସେ; ତାର ଅସ୍ତିତ୍ୱ କାହିଁ ? ତୁହି କେବଳ କଳ୍ପନାର ଜୀବନ୍ୟାସ ମନ୍ତ୍ର ପଢ଼ି ତୋହରି ଭିତରେ ଜୀଆଇ ରଖିବାର ପ୍ରୟାସ କରୁଛୁ ତାକୁ ! ନାହିଁ, ତାକୁ ତୁ ତୁଚ୍ଛାଟାରେ ଅଛି ବୋଲି କୁଣ୍ଢାଇ ଧରୁଛୁ କେଉଁ ମୋହରେ !

ନିଆଁ ଟା ଲିଭି ଗଲାଣି, ତୁ ତାର ଅଙ୍ଗାରକୁ ଫୁଙ୍କି ଦେଉଛୁ ତହିଁରୁ ଉତ୍ତାପ ପାଇବୁ ବୋଲି । ଯେଉଁ ତାତି ତୋତେ ଦିନେ ଜାଳି ପୋଡ଼ି ମାରିଥିଲା, ତାହା ପାଇଁ ଏତେ ମାୟା କାହିଁକି ? ଯାହା ସାହିବାର ସାରି ଦେଇ କ୍ଷତଟାତ ଶୁଖିଗଲାଣି; ତାର ଦାଗଟା ପାଇଁ ଏତେ ମମତା କାହିଁକି ଆଉ ?

ଯାହା ଯାଉଛି ତାକୁ ଯିବାକୁ ଦିଅ । ପାଉଁଶର ସ୍ଥାନ ଯେ ଖତ ଗଦାରେ ।

କିନ୍ତୁ, ସତେ ତ ! ମୁଁ ଯେ ତାକୁ ପାଶୋରି ପାରୁ ନାହିଁ । ଯେଉଁ ପଙ୍କ ଭିତରେ ପଡ଼ି ମୁଁ ସଢ଼ି ଯାଉଥିଲି, ସେ ପଙ୍କ ଶୁଖିଯାଇ-ଥିଲେ ମଧ୍ୟ ତାର ମୋହ ମୋତେ ଯେପରି ଭିଡ଼ି ଧରୁଛି ଏଠାକାଠି ପରି ।

ଜାଣିଛି, ସୁଖରେ ଭାସି ଯିବା ବା ଦୁଃଖରେ କାତର ହେବା ଶାନ୍ତିଦାୟକ ନୁହେ । ସୁଖ ଭିତରେ ଛାୟା ଦେଖି, ଦୁଃଖର ଗନ୍ଧ ଅନୁଭବ କରି ଯେ ରହିପାରେ, ସେହି ଏକା ଦୁନିଆକୁ ଜିଣେ । ଦୁଃଖ ମଧ୍ୟରେ ଯେହିପରି ସୁଖର ସ୍ୱପ୍ନ ଯେ ଦେଖିପାରେ, ସେ ଭାଗ୍ୟବାନ୍ । ଏହାଦ୍ୱାରା ସୁଖଦୁଃଖର ଅତୀତ ଅବସ୍ଥା ଅନୁଭୂତିରେ ଆସେ । ଏହାର ନାମ ସମତ୍ୱ । ଯେ ଧୀର, ଯେ ନିର୍ମମ, ନିସ୍ପୃହ, ନିରାସକ୍ତ ସେହି ଅମୃତର ଅଧିକାରୀ, ସେହି ପାଇ ଥାଏ ପରା ଶାନ୍ତି !

କିନ୍ତୁ, ସେ ଯେ ଶ୍ମଶାନର ଶାନ୍ତି । ମୁଁ ସେ ଭଳି ଶାନ୍ତିର ପିୟାସୀ ନୁହେ । ସେ ଶାନ୍ତି ପାଷାଣର ଅଛି ସେ ଶାନ୍ତି ଶବଠାରେ ଅଛି । ମୁଁ ଯେ ଜୀବନ୍ତ, ସେ ଶାନ୍ତିରେ ମୋର ଲୋଡ଼ା ନାହିଁ । ମୁଁ ଚାହେଁ, ସୁଖ ଆସୁ, ଦୁଃଖ ଆସୁ, ତାକୁ ନିବିଡ଼ ଭାବରେ, ଘନିଷ୍ଠ ଭାବରେ, ଗଭୀର ଭାବରେ ଅନୁଭବ କରିବି, ଉପଭୋଗ କରିବି ।

ତାକୁ ପରିପୂର୍ଣ୍ଣ କରି; ବନ୍ଧୁରୂପେ, ଆତ୍ମୀୟରୂପେ, ପ୍ରିୟରୂପେ ଅଙ୍ଗରେ ଅଙ୍ଗ ମିଶାଇ, ଚିତ୍ତରେ ଚିତ୍ତ ମିଶାଇ ଆପଣାର କରି ଅଙ୍ଗୀକରି ନେବି ତାକୁ । ସେଇଥିରେ ହିଁ ମୋର ବ୍ୟକ୍ତିତ୍ୱର ବିକାଶ; ସେଇଥିରେ ମୋର ଜୀବନର ପରିପୁଷ୍ଟି, ମୋର ମନୁଷ୍ୟତ୍ୱର ପରିଣତି ସେଇଠାରେ ।

କେହି କହିବେ, ଯେଉଁ ଅତୀତ ଗୌରବମୟ, ଯେଉଁ ଅତୀତ ସୁଖପୂର୍ଣ୍ଣ, ଯେଉଁ ଅତୀତ ଉଜ୍ଜ୍ୱଳ ତାହାର ସ୍ମୃତି ଭବିଷ୍ୟତର ଗତିପଥରେ ପ୍ରେରଣା ଦିଏ, ଉତ୍ସାହ ଦିଏ, ଉଦ୍‌ବୋଧିତ କରେ । ଆଉ ଯେଉଁ ଅତୀତର ସ୍ମୃତି, ଦୁଃଖ, ଦାହବେଦନା ଅବସାଦରେ ଭରା, ତାକୁ ପୋଛି ପକାଇବା ଶ୍ରେୟସ୍କର । ତାକୁ ବିନାଶ କରି, ନିର୍ମୂଳ କରି, ଭସ୍ମ କରି ନୂତନ ଜୀବନ ପଥରେ ଅଗ୍ରସର ହୁଅ । ସେ ସ୍ମୃତି ଉନ୍ନତିର ପରିପନ୍ଥୀ, ଅଗ୍ରଗତିର ପ୍ରତିରୋଧକ । ମାତ୍ର ମୋତେ ଲାଗେ, ସ୍ମୃତି ମାତ୍ରେ ହିଁ ପ୍ରାଣ ରସରେ ଭରା; ଯେତିକି ମଧୁର ସେତିକି ଉଜ୍ଜ୍ୱଳ, ସେତିକି ଶକ୍ତିଶାଳୀ—ତାହା ଯେତେ ନିଦାରୁଣ, ହୃଦୟବିଦାରକ ହେଉ ପଛକେ । ସେହି ବିପର୍ଯ୍ୟୟ, ସେହି ବିଶୃଙ୍ଖଳା, ସେହି କାତରତା ମଧ୍ୟରେ; ସେହି ହା-ହାମୟ ଧୂସର ମରୁଭୂମି ମଧ୍ୟରେ ଯେଉଁ ମଧୁରତର ଅନ୍ତର୍ନିହିତ ଅମୃତଧାରା ପ୍ରବାହିତ ହେଉଥାଏ, ତାହା ଯେ କେତେ ଆତୁର ପ୍ରାଣରେ ସଞ୍ଜୀବନୀ

ଶକ୍ତି ସଞ୍ଚାର କରେ, ତାହା କିଏ କହିବ ! କିଏ କହିପାରେ କେଉଁ ପର୍ଯ୍ୟୁଷିତ ପଙ୍କରୁ କେତେ ସୁଗନ୍ଧ ପଦ୍ମର ବିକାଶ ହୁଏ । କେଉଁ ଶ୍ମଶାନବକ୍ଷରେ କେତେ କୃଷ୍ଣତୁଳସୀର ସମ୍ଭୂଦ୍‌ଗମ ଘଟେ । କେଉଁ ମରୁପ୍ରାନ୍ତରେ କେତେ ପ୍ରଫୁଲ୍ଲ ବାହୁଵତୀ ଫୁଟେ ।

ଏହି ଜର୍ଜର ପ୍ରାଣ ଧେନ ରହିଁ ରହିଛି ମୁଁ ସେହି କୁଦ୍ଧୃଡ଼-ଘେରା ଦୂର ଅତୀତକୁ—ଯହିଁରୁହିଁ ମୁଁ ପାଉଛି ମୋର ସମସ୍ତ ପ୍ରେରଣା, ସବୁ ସାମର୍ଥ୍ୟ, ସମସ୍ତ ଶକ୍ତି । ସେହି ସ୍ମୃତି ଆଣିଦେଇଛି ମୋତେ କୁହେଳିକାବୋଳା ଭବିଷ୍ୟତଗର୍ଭରେ ନବାରୁଣର କନକ ନର୍ତ୍ତନ, ଘନାନ୍ଧକାରାବୃତ ଅନାଗତ କାଳ ବ୍ୟୋମପଟରେ ଦୀପ୍ତ ବିଜୁଳିର ପ୍ରାଣମୟୀ ସ୍ପନ୍ଦନ ।

ସେହି ସ୍ମୃତିକୁ ସମ୍ବଳ କରି ସେହି ବେଦନାକୁ ଆଶ୍ରୟ କରି ଆଜ ମୁଁ ସାରା ଜୀବନର ଦୈନ୍ୟ, ଅବସାଦ, କାତରତା—ଯେତେ ଘୃଣା, ଯେତେ ଲାଞ୍ଛନା, ଯେତେ ଅବହେଳା ସବୁ ଝାଡ଼ି-ପକାଇ, ସବୁ ଠେଲି ଦେଇ ଅନୁପ୍ରାଣିତ, ଜାଗ୍ରତ ହୋଇ ଉଠିଛି କି ଏକ ଅପୂର୍ବ ଆବେଗଭରା ଉନ୍ମାଦନାରେ ! ସୁଖ, ଦୁଃଖ, ଆଶା, ନିରାଶା, ଜୟ, ପରାଜୟ ଭିତରେ କେଉଁ ଅଜ୍ଞାନ ଶକ୍ତି ଟାଣି ନେଇ ଚାଲିଛି ମୋତେ ଅନନ୍ତ ବିଜୟର ଅସୀମ ପଥ ଦେଇ ।

ଆପଣାକୁ ଆପେ ମୁଁ ଆଜ ପାରିଛି ଚିହ୍ନି । ମୁଁ ହୀନ ନୁହେଁ, ଦରିଦ୍ର ନୁହେଁ । ମୁଁ ଯେ ବିଶ୍ୱଭଣ୍ଡାରର ଅଧିକାରୀ । କେତେ ଅମୂଲ୍ୟ ରତ୍ନସମ୍ଭାର ମୋହରି ହାତମୁଠାରେ । ଅବସର ପାଇଛି ଆଜ ମୋର ହୃଦୟର ଦୁର୍ବଳତା, ଉଭାଇ ଯାଉଛି କ୍ଲୀବତାର କ୍ଷୁଦ୍ରଭାବ, ଯାହା ମୋତେ ପେଷି ଦେଇଥିଲା ଆଜଯାକେ । ଫେରିପାଇଛି ଆଜ ମୁଁ ମୋର ସେହି ପରଶମଣି, ଯାହାକୁ ଆପେ ଆମେ ହଜାଇ ଦେଇ ଧନ୍ଦି ହେଉଥିଲି ।

ନଦୀତଟର ତୃଣଶିଖା ଆପେ ଆପେ ମରିଯାଏ, କାନନର ଫୁଟା ଫୁଲ ଆପେ ଆପେ ଝଡ଼ିପଡ଼େ । ତା'ର କ୍ଷଣସ୍ଥାୟୀ ଜୀବନର ସାର୍ଥକତା କେଉଁଠି ଜାଣେ ସେ ନିଜେ, ଆଉ ଜାଣେ ସ୍ରଷ୍ଟା । ଅସରନ୍ତି ବ୍ୟର୍ଥତା ମଧ୍ୟ ଦେଇ ମୋର ଏ ଜୀବନ ସାର୍ଥକ, ସଫଳ, ରଙ୍ଗିନ ହୋଇ ଉଠିଛି ଆଜ ମୋହରି ଅନୁଭୂତିର କୁହୁକତୂଳିକା ପରଶରେ । ଜାଣିପାରୁଛି ଆଜ ମୁଁ, ମୋର ଜୀବନଟା ଅକାରଣ ହୋଇନାହିଁ । ଯେବେ ମୋର ଆୟୁ ଆଉ ଦିନେ ବା ଘଡ଼ିଏ ହେଲେ ବାକି ଥାଏ, ତେବେ ତାହାରି ଭିତରେ ବାକିତକ ପୂର୍ଣ୍ଣ ହୋଇଯିବ । ଏହି ବିଶ୍ୱାସ ଚଖାଇଦେଇଛି ମୋତେ ନବ-ଜୀବନର ଆସ୍ୱାଦ । ଏହି ଧାରଣା ପୁଞ୍ଛାଇ ଦେଇଛି ମୋର ସମସ୍ତ ଗ୍ଳାନି, ସମସ୍ତ ଅବସାଦ । ଆଜ ମୁଁ ଜୀବନ୍ତ, ଜାଗ୍ରତ, ମୁକ୍ତ ।



# ନିଦାଘେ ଶାଳନ୍ଦୀ

ମା, ମା, ଆଜ ପୁଣି ଏ କି ବିଶ୍ୱେଷିକାମୟୀ ମୂର୍ତ୍ତି ମା ? ଏ ଦଶା ତୋ'ର କିଏ କରିଗଲା ? ତୋ'ର ସେହି ସ୍ୱଚ୍ଛ ଶରଦର ଶୁଭ୍ରହାସମୟୀ ସ୍ନିଗ୍ଧଶ୍ୟାମଳଛବି କାହିଁ ମା ? ସେହି ନବ ବରଷାର ଜୀମୂତଗର୍ଜନ ତରଙ୍ଗାକୁଳ ଉଦ୍ଦାମ ତାଣ୍ଡବ କାହିଁ ମା ? ତୁହି କି ସେହି ଶାଳନ୍ଦୀ, ଦିନେ ଯାହାର କୋମଳ କୋଳରେ କ୍ଲାନ୍ତ ଅଙ୍ଗ ଥୋଇ, ଅସଂଖ୍ୟ ତାରକାଖଚିତ ନୀଳଗଗନକୁ ମୁଗ୍ଧ ନୟନରେ ଚାହିଁ, ତୁଷାରଶୁଭ୍ର ଶରଦଭ୍ର ଅନ୍ତରାଳରେ କମନୀୟ କୁମାରଚନ୍ଦ୍ରମାର ଲୁଚକାଳିଖେଳ ଦେଖୁଥିଲି ! ଯାହାର ବିମଳ ତଟରେ ବସି ଶୀକରଶୀତଳ ସ୍ନିଗ୍ଧ ସମୀରଣ ସେବନ କରୁଁ କରୁଁ ସେହି ସ୍ୱଚ୍ଛ ଅଙ୍ଗଦର୍ପଣରେ ନର୍ତ୍ତନଶୀଳ କାଶକୁସୁମର ହାସ୍ୟବିକାଶ ଦେଖି ଆପଣାକୁ ଭୁଲି ଯାଉଥିଲି, ତୁହି କି ସେହି ଶାଳନ୍ଦୀ ? ଆଜି ତୋ'ର କଙ୍କାଳସାର ମଳିନହୀନ ବେଶ ଦେଖି କିଏ ବିଶ୍ୱାସ କରିବ ଯେ ତୁହି ଦିନେ ଉନ୍ମତ୍ତଯୌବନା ବିରହାଗିଣୀ ପରି ଦୁଇକୂଳ ଉଚ୍ଛୁଳାଇ, କଳକଳ ସଙ୍ଗୀତରେ ତୀରବନ ପ୍ରତିଧ୍ୱନିତ କରି ତରଙ୍ଗର ବେଗରେ ଇତସ୍ତତଃ ପ୍ରବାହିତ ହେଉଥିଲୁ ? କିଏ ବିଶ୍ୱାସ କରିବ, ଅନନ୍ତ ଲହରୀହିଲ୍ଲୋଳମୟ ତୋହରି ସ୍ଫୀତ ବକ୍ଷରେ ନାଉରିଆମାନେ ତରଣୀ ବାହି ବିଚରଣ କରୁଥିଲେ ? ସେ କମନୀୟ କାନ୍ତି କେଉଁଠି ଲୁଚାଇ ରଖିଲୁ ମା ? ସେ ଦୁଗ୍ଧ ଧବଳଶିରୀ କେଉଁଠି ଛାଡ଼ି ଆସିଲୁ ମା ? ସେ ମୋହନମାଧୁରୀ ଯେ ଥରେ ଉପଭୋଗ କରିଛି, ସେ ସୌଭାଗ୍ୟସମ୍ପଦ ଯେ ଥରେ ନୟନରେ ଦେଖିଛି, ଆଜି ତୋର ଏହି ଜୀର୍ଣ୍ଣ, ଶୀର୍ଣ୍ଣ, ଉଲଗ୍ନ ମୂର୍ତ୍ତି ଦେଖି କିପରି ହୃଦୟ ଧରି ରହିବ ?

ରେ ଦୁରନ୍ତ କାଳ, ଧନ୍ୟ ତୋର ବିଚିତ୍ର ଗତି ! ତୁହି ଏକା ସୁନ୍ଦରକୁ କୁତ୍ସିତ କରିଇ ପାରୁ, ଯୌବନରେ ଜରା ଆଣି ଦେଇ ପାରୁ । ତୋହି କବଳରୁ କେହି ରକ୍ଷା ପାଇ ନାହିଁ । ତୋତେ ଶତ ଶତ ନମସ୍କାର !

ମୁଁ ସେହି କରାଳ କାଳର କଠୋର ପେଷଣରେ ନିଷ୍ପୀଡ଼ିତ ହୋଇ, ନିର୍ମମ ସଂସାରର କଠିନ ପ୍ରହାରରେ ଜର୍ଜରିତ ହୋଇ ତୋହରି ଶୀତଳ ବକ୍ଷରେ ସକଳ ଜ୍ୱାଳା ନିବାରଣ କରିବା ପାଇଁ ଧାଇଁ ଆସିଥିଲି—ମୋର ଏବେ କ'ଣ ହେବ ମା ? ସ୍ନେହ-ମମତା-ଶୂନ୍ୟ ସ୍ୱାର୍ଥପର ମାନବସମାଜରୁ ଚିରକାଳ ଲାଗି ବିତାଡ଼ିତ ହୋଇ କାହା ଆଶ୍ରୟରେ ଏହି ବ୍ୟର୍ଥ ଜୀବନର ବାକି ଦିନ କେତୋଟି କଟାଇ ଦେବି ମା ? ମାତୃକୋଳ ଛଡ଼ା ସନ୍ତାନର ଅନ୍ୟ ଗତି କଅଣ ଅଛି ମା ? ତୋର ବିଶାଳ ବକ୍ଷରେ ଏ ପାପୀ ପାଇଁ କ'ଣ ଟିକିଏ ସ୍ଥାନ ହେବ ନାହିଁ ?

ସେହି ଯେ ତୋର ଶୀତଳ ଶୁଭ୍ର ବାଲିଶଯ୍ୟା—ସେଥି ସଙ୍ଗେ ମୋର ସୁଦୂର ଅତୀତର କେତେ ସୁଖସ୍ମୃତି ବିଜଡ଼ିତ । ଆଜି ପ୍ରଚଣ୍ଡ ମାର୍ତ୍ତଣ୍ଡର ପ୍ରଖର କିରଣରେ ଉତ୍ତପ୍ତ ହୋଇ ଉହୁଉହୁ ଫୁଟି ଉଠୁଛି । ସେହି ଯେ ତୋର ଶାନ୍ତ, ସ୍ନିଗ୍ଧ, ସୁନ୍ଦର ସଲିଳସ୍ରୋତ—ଯହିଁରେ ଅବଗାହନ କରି ଅପାର ଆରାମ ଅନୁଭବ କରୁଥିଲି, ଆଜି ସେହି ସ୍ଥାନରେ ମରୀଚିକାର ମାୟାମୟ ନୃତ୍ୟ ଚକ୍ଷୁ ଝଲସାଇ ଦେଉଛି । ଉଗ୍ର ସୂର୍ଯ୍ୟ ରାଶି ରାଶି ଅନଳକଣା ବର୍ଷଣ କରୁଅଛନ୍ତି । ଦକ୍ଷିଣ ଦିଗରୁ ମଧ୍ୟେ ମଧ୍ୟେ ହୁ-ହୁ ଝାଞ୍ଜି ପିଟି ଦେଇ, ତପ୍ତ ସୂଚ୍ୟଗ୍ର ସଦୃଶ ଲୋମକୂପ ଭେଦ କରି ଚର୍ମରକ୍ତ ଶୋଷଣ କରୁଛି । ଝାଉଁଳି ପଡ଼ିଥିବା ତଣ୍ଡ୍ରିବୁଦାର ଛାୟା ତଳରେ ମାଛରଙ୍କାଟି ଅଭ୍ୟାସବଶତଃ ବସି ବସି ବ୍ୟର୍ଥମନୋରଥର ଉଦାସ ଦୃଷ୍ଟିରେ ଶୁଷ୍କ ନଦୀଶଯ୍ୟାକୁ ଚାହିଁ ରହିଅଛି । ମୋହରି ପରି ଭ୍ରାନ୍ତ ତୃଷାତୁର ଧେନୁଟିଏ ଚଟିମା-ଗର୍ତ୍ତକୁ ଚାହିଁ ବିଫଳପ୍ରୟାସର କାତର ଗତିରେ ପାଦପଚ୍ଛାୟା ଆଶ୍ରୟ କରିବାକୁ ଧୀରେ ଧୀରେ ଫେରୁଅଛି । ଶ୍ରାନ୍ତ କାଉଗୁଡ଼ିଏ ଖରା ତାତି ସହି ନ ପାରି ଛାୟାସ୍ଥ ବରଗଛ ଶାଖାରେ ବସି ନୀରବରେ ଆଖି ବୁଜି ଢୁଳାଉଛନ୍ତି । ଦୂର ଆମ୍ରତୋଟାରୁ କ୍ୱଚିତ୍ କୋଇଲିର ତୀବ୍ର ଚିତ୍କାର ପଛେ ପଛେ କପୋତର ଘୁତ୍କାର ଶବ୍ଦ ବହି ଆସି ରବିତାପରେ ମୂର୍ଚ୍ଛ୍ୟମାନ ଧରଣୀର ନୀରବତା ଭଙ୍ଗ କରି ଦେଉଛି ।

କ୍ରମେ କ୍ରମେ ଖରା ଗଡ଼ି ଆସିଲା । ଦମକା ବତାସର ଉନ୍ମତ୍ତତା ଊଣା ପଡ଼ିଗଲା । ଛାୟାମୟ ଆଶ୍ରୟ ଛାଡ଼ି ଗୋଟି ଗୋଟି ପକ୍ଷୀଗୁଡ଼ିକ ଆକାଶରେ ଏଣେ ତେଣେ ଉଡ଼ିବାକୁ ଲାଗିଲେ । ରୋମନ୍ଥନଶୀଳ ଧେନୁଗଣ ବୃକ୍ଷତଳରୁ ବାହାରି ଜଳ ଅନ୍ୱେଷଣରେ ଦଗ୍ଧ ଶାଳନ୍ଦୀର ଉଷ୍ଣତୋୟା ଚୂଆ ଆଡ଼କୁ ଧାବମାନ ହେଲେ । ଦେଖୁ ଦେଖୁ ବେଳ ବୁଡ଼ିଲା । ମୃତପ୍ରାୟ ଜଗତ ବକ୍ଷରେ ପୁନର୍ବାର ପ୍ରାଣ ସ୍ପନ୍ଦିତ ହୋଇ ଉଠିଲା । ରଖୁଆଳମାନେ ଗୋଧନପଲ ରୁଣ୍ଡ କରି ଗୃହାଭିମୁଖରେ ଫେରାଇବାକୁ ଆରମ୍ଭ କଲେ । ଦଳକୁ ଦଳ ଉଲଗ୍ନ

ବାଳକ ନଦୀବାଲିରେ କୁଦା ମାରି ଖେଳିବାକୁ ଲାଗିଲେ । କେହି କେହି ବାଲି ଉପରକୁ ଅନାଇ ବନ୍ଧ ଉପରେ ଧୀର ପଦବିକ୍ଷେପରେ ବାୟୁ ସେବନ କଲେ । ବୁଡ଼ୁଁ ବୁଡ଼ୁଁ ସୂର୍ଯ୍ୟଦେବ ନଦୀବାଲି ଉପରେ ଇନ୍ଦ୍ରଧନୁର ବିଛଣା ବିଛାଇ ଦେଇ ପଶ୍ଚିମ ମେଘର କୋଠା ପଛଆଡ଼େ ମୁହଁ ଲୁଚାଇବାକୁ ବସିଲେ । ସମସ୍ତ ସବୁଜ ଜଗତ ଲୋହିତ ରଙ୍ଗରେ ଝଲମଲ ହୋଇ ଉଠିଲା । ଝାଉଁ କାନନ ନେଇଁଶୀ କୂଳର କଳଗୀତରେ ପୂର୍ଣ୍ଣ ହୋଇଗଲା । ପଲ୍ଲୀବାସିନୀ ଯୁବତୀମାନେ କାଖରେ କଳସୀ ଧରି ରୁଣୁଝୁଣୁ ଝୁଣ୍ଟିଆ ଶବଦରେ ତୀରଭୂମି ମୁଖରିତ କରାଇ, ମୃଦୁମଧୁର ମନ୍ଥର ଗମନରେ ନଦୀରୁ ଜଳ ଆଣିବାପାଇଁ ଆସିଲେ । ସେମାନଙ୍କର ଗୁରୁ ନିତମ୍ବଭାରରୁ ସମତଳ ବାଲୁଶଯ୍ୟାରେ ଅନନ୍ତରସ୍ଥାର, ଅବିଶୃଙ୍ଖଳ ପାଦଚିହ୍ନ ଅଙ୍କିତ ହୋଇଗଲା । ରସିକ ପଙ୍କଜବନ୍ଧୁ ପଲ୍ଲୀବଧୂମାନଙ୍କର ବିକଚ-କମଳ-ସଦୃଶ କୋମଳ ଗଣ୍ଡସ୍ଥଳରେ ଶେଷ ବିଦାୟର ଲୋହିତ ଚୁମ୍ବ ଥୋଇଦେଇ ଗଲେ ।

ସନ୍ଧ୍ୟା ହେଲା । ଶୀତଳ ପବନ ବହିଲା । ବଣମଲ୍ଲୀର ଆକୁଳ ସୌରଭରେ ତୀରଭୂମି ପୂର୍ଣ୍ଣ ହୋଇଗଲା । ସେପାରି ନଆବୁଦାରେ ବାଲୁଆମାନେ ସନ୍ଧ୍ୟା ଆରତିକର କର୍କଶ ଭେରି ବଜାଇଲେ । ନିର୍ମଳ ଆକାଶରେ ତାରାଗଣ ଗୋଟିକ ଗୋଟି ଝିଲିମିଲି ହୋଇ ଜଳିଉଠିଲେ । ମା'ଲୋ, ଏହିପରି ମୋର ହୃଦୟ ଆକାଶରେ କେତେ ତାରା ଫୁଟି ବୃନ୍ତ ନ ପାଉଁଣୁ ଲିଭିଗଲେଣି, କେତେ ଫୁଲ ବିକଶିତ ନ ହେଉଁଣୁ ଝଡ଼ି ପଡ଼ିଲେଣି, କେତେ ଆଶା ପୂର୍ଣ୍ଣ ନ ହେଉଁଣୁ ଅକାଳରେ ବିଲୁପ୍ତ ହେଲଣି ।

ଅନ୍ଧକାର କ୍ରମେ ଘନୀଭୂତ ହୋଇ ମାଡ଼ିଆସିଲା । ଦିବସ ଓ ରଜନୀର ସନ୍ଧିସ୍ଥଳ—ସନ୍ଧ୍ୟାର ମିଳନ-କୋଳାହଳ ପ୍ରଶମିତ ହେବାରୁ ପ୍ରକୃତି କ୍ରମେ ପ୍ରଶାନ୍ତଭାବ ଧାରଣ କଲା । କେବଳ ଦୂର ଗ୍ରାମପ୍ରାନ୍ତରୁ ଅସ୍ପଷ୍ଟ ଶ୍ୱାନରବ ବେଳେବେଳେ ସେହି ନୀରବତାର ବ୍ୟତିକ୍ରମ ଘଟାଉଥିଲା । ବାଲି ଉପରେ ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ଡାହାଣୀ ଆଲୁଅ ଦପଦପ ହୋଇ ଜଳିଉଠି ପୁଣି ଲିଭି-ଯିବାକୁ ଲାଗିଲେ । ଅନତିଦୂରବର୍ତ୍ତୀ ବାଲିକୁଦ ଉପରେ ଗୋଟିଏ ଅଗ୍ନିଶିଖା ଦେଖାଗଲା । ଶିଖାଟି କ୍ରମଶଃ ସ୍ଥୂଳତର ହୋଇ ଦାଉ ଦାଉ ଜଳିବାକୁ ଲାଗିଲା । ଏ ଯେ ଚିତାଗ୍ନି ! ଶାଳଗ୍ରାମୀ, କେଉଁ ଭାଗ୍ୟବାନ ଆଜ ତା'ର ସଂସାରନରକର ଜ୍ୱାଳାଯନ୍ତ୍ରଣା ପଛରେ ରଖି ତୋ'ର ଶାନ୍ତିମୟ କୋଳରେ ଆଶ୍ରୟ ନେବାକୁ ଆସିଲା ମା ? କେଉଁ ସନ୍ତାନର ମାୟାମୋହପାଶ ଛିଣ୍ଡାଇ, କୁଟୀଳ ଜନସମାଜରୁ ଛଡ଼ାଇଆଣି, ତାହାକୁ ତୋର ସ୍ନେହସୁଧାନିସ୍ୟନ୍ଦୀ ମାତୃବକ୍ଷରେ ସ୍ଥାନ ଦେଲୁ ମା ? ପଥଶ୍ରାନ୍ତ ବ୍ୟର୍ଥ ଜୀବନର ଏହି ତ ଚରମ ବିଶ୍ରାମ, ଏହି ତ ଚରମ ଶାନ୍ତି ! ମା, ମା, ତୋ'ର ପୂତ ପଣତକାନି ଥରେ ବିଛାଇ ଦେ ; ମୁଁ ମୋର ସମସ୍ତ ସନ୍ତାପ ପାଶୋରିଦେଇ ଘଡ଼ିକ-ଲାଗି ଶୋଇପଡ଼େଁ । ସନ୍ତାନବତ୍ସଳେ ଗୋ, ମୋର ଏହି ଅର୍ଦ୍ଧ-ଦଗ୍ଧ କ୍ଷୀଣ ତନୁଟି ପାଇଁ ତୋ'ର ବିଶାଳ ବକ୍ଷରେ କ'ଣ ଟିକିଏ ସ୍ଥାନ ହେବ ନାହିଁ ମା ? ମାନବର ସ୍ନେହମମତାରୁ ବଞ୍ଚିତ ହୋଇ ଜୀବନରେ ମୋର କେଉଁଠି ସ୍ଥାନ ହୋଇ ନାହିଁ—ମରଣରେ ଭି କି ନିରାଶ କରିବୁ ମା ?



# ଶ୍ରାବଣେ ଶାଳନ୍ଦୀ

ଚାଲ ମା ! ଦୁଇ କୂଳରେ ମୁଣ୍ଡ କୋଡ଼ି କୋଡ଼ି ପଡ଼ି-ବିଚ୍ଛେଦ-ବିଧୁରା ଉନ୍ମାଦିନୀ ପ୍ରେମମତ୍ତା ପରି ପ୍ରିୟତମର ଦର୍ଶନଲାଳସାରେ ଧାଇଁ ଯା ମା ! କିନ୍ତୁ ଟିକିଏ ରହ, କ୍ଷଣକ ପାଇଁ ଶୁଣି ଯା । ମୋର ଗୋଟିଏ କଥା ଶୁଣି ଯା ଭଉଣୀ ! ନା, ତୁ ତ ଶୁଣିଲୁ ନାହିଁ ! କାହିଁକି ଆଜି ଏତେ ବିଭୋର, କେଉଁଥିଲାଗି ଏତେ ତନ୍ମୟ ? ଏତେ ଡାକିଲେ ମଧ୍ୟ ଥରେ ଭ୍ରୂକ୍ଷେପ କରୁନାହୁଁ ! ତୋର ନିଜ ଭାବରେ ନିଜେ ବିଭୋର ହୋଇ ଉନ୍ମତ୍ତଭାବରେ ଧାଉଁଛୁ ! କ'ଣ କାହା ପାଖରେ କିଛି ଖବର ଦେବାର ଅଛି ? କେହି କି ତୋ ପାଇଁ ଆକୁଳ ଅପେକ୍ଷାରେ ରହିଛି ବୋଲି ଏତେ ଚଞ୍ଚଳ ଦେଖା କରିବାକୁ ଧାଇଁଛୁ ? କିଏ ସେ ? ସେ କି ତୋତେ ଭଲ ପାଏ ନା ? ତୋ ପାଇଁକି ଟିକିଏ ଅପେକ୍ଷା କରିବ ନାହିଁ ? ତୁ ଯାହା ପାଇଁ ଏତେ କାତର, ଯାହା ପାଇଁ ହିତାହିତଜ୍ଞାନଶୂନ୍ୟା ହୋଇ ଦଉଡ଼ୁଛୁ, ସେ କ'ଣ ତୋର ଆସିବାଯାଏ ଟିକିଏ ରହିଯିବ ନାହିଁ ? ସେଥିପାଇଁ ଏତେ ଚଞ୍ଚଳ ? ନା ନା, ଟିକିଏ ରହ, ଅରେ ଶୁଣ୍ । ମୋର ପ୍ରାଣର କଥା ତୋତେ କହିବି । ସଂସାରଯାକ ଖୋଜି ଆସିଲି, କିନ୍ତୁ ମୋର ଅନ୍ତରର କବାଟ କାହା ପାଖରେ ଖୋଲିବି ଜାଣି ପାରିଲି ନାହିଁ । ଏତେ ଦିନେ ତୋତେ ପାଇଛି । ତୋହରି ଆଗରେ ସବୁ କହିବି । ତୁହି ଏକା ମୋ କଥା ବୁଝିବୁ । ମୋର ମରମ କଥା କେହି ବୁଝିଲେ ନାହିଁ; ସେଥିପାଇଁ ତୋହରିଠାକୁ ବଡ଼ ଆଶାରେ ଆସିଛି । ତୁ ନ ଶୁଣିଲେ ଆଉ ଶୁଣିବ କିଏ ? ତୁ ନ ବୁଝିଲେ ଆଉ ବା ବୁଝିବ କିଏ ? ସତେ କ'ଣ ତୁ ବୁଝିବୁ ? ସତେ କ'ଣ ତୁ ମୋର ପ୍ରାଣ ସହିତରେ ପ୍ରାଣ ମିଶାଇ ହୃଦୟ ସହିତରେ ହୃଦୟ ବାନ୍ଧି ମୋର ହୃଦୟର କରୁଣ ଗୀତି ଅନୁଭବ କରିବୁ ? ତୋର ଛାତି ଫାଟିଯିବ ନାହିଁ ? ମୋର ଦୁଃଖକାହାଣୀ ଶୁଣି ତୋର ବକ୍ଷ ବିଦୀର୍ଣ୍ଣ ହୋଇଯିବ ନାହିଁ ? ତେବେ ଶୁଣ୍ । ଘଡ଼ିକ ଲାଗି ତୋର ଉଚ୍ଛ୍ୱଳ ତରଙ୍ଗମାଳା ବନ୍ଦ କରିଦେ, କ୍ଷଣକପାଇଁ ତୋର କ୍ଷିପ୍ର ଗତି ରୋଧ କରିଦେ । ଏହି ବରଗଛମୂଳରେ ମୁଁ ବସିଛି । ମୋହରି ପାଖରେ ଟିକିଏ ଛିଡ଼ା ହୋ । ମୁଁ ତୋର କାନରେ ମୋର ଜୀବନକାହାଣୀ ଢାଳିଦେବି । ତୁ ସବୁ ସହୁଛୁ, ସମସ୍ତ ଜଞ୍ଜାଳ ହୃଦୟରେ ଧାରଣ କରୁଛୁ, ତେବେ ବି ତୋର ସ୍ନେହ ତୁଟୁ ନାହିଁ । ମା, ମୋର ଏଇ ବୋଝଟା ମଧ୍ୟ ନେଇ ଯା । ନେଇ ନ ଗଲେ ମୁଁ ଏହି ବୋଝ ବହନ କରି ତୋହରି ସାଙ୍ଗରେ ଦଉଡ଼ିବି । ମୋର ଭୟ କ'ଣ ? ମା ସାଙ୍ଗରେ ଆଉ ଡର କିସ ? ମୁଁ ଯିବି, ନିଶ୍ଚୟ ଯିବି; ତୁ ଯେଉଁଆଡ଼େ ଯିବୁ, ତୋହରି ସାଙ୍ଗେ ସାଙ୍ଗେ ଧାଇଁବି । ଧାଇଁ ଧାଇଁ କଣ୍ଠ ଶୁଖି-ଗଲେ, ଛାତି ଫାଟିଗଲେ ତୋତେ ଲଗା; ମୋର ସେଥିପାଇଁ ଲୋଡ଼ା କିସ ? 'ହା ହୁତାଶ' ଡାକି ଡାକି କଣ୍ଠ ତ ଶୁଖିଗଲାଣି, ଦାରୁଣ ଯନ୍ତ୍ରଣାରେ ଜର୍ଜରିତ ହୋଇ ଛାତି ତ ଫାଟ ଫାଟ ହେଲାଣି, ଆଉ ମୁଁ ସହି ପାରିବି ନାହିଁ । ଛାତି ଫାଟିଯାଉ । ତେବେ ମୋର ରକ୍ଷା, ତେବେ ଯାଇ ମୋର ନିସ୍ତାର, ତେବେ ମୋର ଶାନ୍ତି, ଶାନ୍ତି । ଶାନ୍ତି କାହିଁ ? ମୋ ଜୀବନରେ କି କେବେ ଶାନ୍ତି ଦେଖିଛି ? ଏ ଜୀବନରେ କ'ଣ ଶାନ୍ତି ମୁଁ ଜାଣେ ନାହିଁ, କେବେ ପାଇବି ବୋଲି ଆଶା ମଧ୍ୟ ନାହିଁ । ଖୋଜି ଖୋଜି ହତାଶ ହେଲିଣି । କେବଳ ମଧୁର ପିଲାକାଳର ଶାନ୍ତି-ସୁଖ ସ୍ମୃତି-ସାର ହୋଇ ରହିଛି । ମୁଁ ଖୋଜି ଖୋଜି ବୁଲି ବୁଲି ତୋହରିଠାକୁ ଶାନ୍ତି ପାଇବି ବୋଲି ଆସିଛି । ତୋ'ଠାରେ ମୋର ବଡ଼ ଆଶା । ତୁ ଏପରି ହେଲେ ଚଳିବ କିପରି ? ଏ ଭୀଷଣ ଉନ୍ମାଦିନୀ ମୂର୍ତ୍ତି ଛାଡ଼ି ଟିକିକ ପାଇଁ ତୋର ଚିର-ଶାନ୍ତିମୟୀ ସୌମ୍ୟ ମୂର୍ତ୍ତି ଧାରଣ କର । ଏ ପ୍ରଖର ପ୍ରକୃତି ଛାଡ଼ି ଟିକିଏ ସଧୀର ମନ୍ଥର ଗମନରେ ଚାଲ୍ । ଟିକିଏ ଅବଧାନ କରି ମୋ କଥା ଶୁଣ । ନା, ତେବେ ବି ଶୁଣିଲୁ ନାହିଁ । ତେବେ ବି ମୋ କାକୁତିରେ କର୍ଣ୍ଣପାତ କଲୁ ନାହିଁ ? ସେହି ଭୈରବୀ ଚେହେରା ଲୁଚାଇଲୁ ନାହିଁ ? ମୁଁ ତେବେ କ'ଣ କରିବି ? କାହାଠାକୁ ଯିବି ? ତୋତେ ବଡ଼ ଭରସା କରି ବହୁ ଦୂରରୁ ଆସିଛି । ମୋ ଦୁଃଖ ଭଲ ଟିକିଏ ଶୁଣ । ନା, ତୁ ଏତେ ବଡ଼ ନିଷ୍ଠୁର ହେଲୁଣି ! କାହାର ସୁଖଦୁଃଖକୁ ଏବେ ତୋର ପରା ଖାତିର ନାହିଁ? ତୋ ନିଜ ବାଟରେ ନିଜେ ଚାଲୁଛୁ । ସେଥିରେ ଯେ ପଡ଼ୁଛି, ତାକୁ ଭସାଇ ନେଉଛୁ । ତୋର ପାଳୟିତ୍ରୀ ସ୍ୱଭାବ ଛାଡ଼ି ଏବେ ବିଶ୍ୱସଂହାରିଣୀ ମୂର୍ତ୍ତି ଧାରଣ କରିଛୁ । ତୋର ଭୀଷଣ ସ୍ରୋତବେଗ ଆଗରେ କାହାର ମାନ ରଖୁ-ନାହୁଁ । ବଡ଼ ବଡ଼ ଗଛଗୁଡ଼ାକ ଦମ୍ଭ କରି ଛିଡ଼ା ହୋଇଛନ୍ତି, ତାଙ୍କୁ ଗୋଟିକ ପରେ ଗୋଟିଏ ଉପାଡ଼ି ନେଇ ଚାଲିଛୁ । କିନ୍ତୁ ତଣ୍ଡିବୁଦା ତୋ ଆଗରେ ନଇଁ ପଡ଼ିବାରୁ ତା ମୁଣ୍ଡ ଉପରେ ବହି ଯାଉଛୁ, ତା'ର କିଛି ଅନିଷ୍ଟ କରିବାକୁ ନାହୁଁ ।

ମୁଁ ତ ସେହିପରି ବଡ଼ ଦମ୍ଭ କରି ଛିଡ଼ା ହୋଇଥିଲି କିନ୍ତୁ ତରଙ୍ଗ ପରେ ତରଙ୍ଗ ଆସି ମୋର ବେକଣ୍ଡ ଭାଙ୍ଗିଦେଲାଣି । ବିପଦ ପରେ ବିପଦର ତୋଫାନ ମୋହରି ମୁଣ୍ଡ ଉପରେ ବହି ଯାଉଅଛି । ଆଉ ମୁଁ ସମ୍ଭାଳି ପାରିବି ନାହିଁ,

# ଶ୍ରାବଣେ ଶାଳନ୍ଦୀ

ମୋତେ ମଧ୍ୟ ଉପାଡ଼ି ନେଇ ଗଲୁ । ମୁଁ ତୋ'ର ଅନନ୍ତ ଲୀଳାମୟୀ ସ୍ୱାମୀସଙ୍ଗମ ଦେଖିବି । ଦେଖି ଦେଖି ସେଥିରେ ଅଙ୍ଗ ଢାଳିଦେବି । "ଉତ୍କଳ-କାଳିନ୍ଦୀରୂପିଣୀ ମା' ଶାଳନ୍ଦୀ", ତୋ'ର ସେ ଚଣ୍ଡିବନ-ଧୌତକାରିଣୀ, ପାଣିବେତକୁଞ୍ଜସଞ୍ଚାରିଣୀ, ଶ୍ୱେତମାନରଙ୍କା-ମାଳିମା, ରୌପ୍ୟ-ଶଫରନୃତ୍ୟ-ଶାଳିମା ନୀଳ ସଲିଳ କାହିଁ ? ତୋ'ର କାଚଧାର ପରି, ସ୍ୱଚ୍ଛ ଜଳ କୁଆଡ଼େ ଗଲା ? ତୋ'ର ଧୀର ମଧୁରିମା କାହିଁ ହରାଇଲୁ ମା ? ତୋ'ର ଶିରଶିର ସ୍ରୋତରେ ବାଲିର ଖେଳ କେତେ ଥର ଦେଖିଛି । ଧୀରେ ଧୀରେ ପାଣିରେ କଣ୍ଠିଆ, କଉଣ୍ଡି, ମହୁରାଳିର ଆନନ୍ଦବିହାର କେତେଥର ଦେଖିଛି । ଆଜି ସେସବୁ କୁଆଡ଼େ ଗଲା ? ଆଜି ସବୁ ଲାଲ ! କେଉଁ ରାଜାର ପାହାଡ଼ ପାଣି ଧୋଇ, କେଉଁ ଗ୍ରାମର ରକ୍ତ ଶୋଷଣ କରି ଏ ରକ୍ତବର୍ଣ୍ଣ ଧାରଣ କରିଛୁ ? ଉନ୍ମତ୍ତ ଅହିରାଜ ପରି ଫଣା ବିସ୍ତାରି କରି ଫଁ ଫଁ ହୋଇ କୁଆଡ଼େ ଧାଉଁଛୁ ? ପ୍ରତି ନିଶ୍ୱାସରେ ଫେନିଳ ଗରଳ ଉଦ୍‌ଗୀରଣ କରି କରି କୁଆଡ଼େ ଦୌଡ଼ୁଛୁ ? ତୋ'ର ଭୀଷଣ ରୂପ ଦେଖି ଆଖି ଝଲସି ପଡ଼ୁଛି, ହୃଦୟ ସ୍ପନ୍ଦିତ ହୋଇଯାଉଛି । ତୋ'ର ଗର୍ଜନ ଶୁଣି ଶୁଣି କର୍ଣ୍ଣ ବଧିର ହୋଇଗଲାଣି । ଆଉ ନା ! ଏଥର ରହ, ଢେର୍ ହେଲାଣି । ଆଉ ଡର୍ ନା । ମୁଁ ଆଉ ସହିପାରିବ ନାହିଁ ।

ମଲାକୁ ମଲା ଜନ୍ଦା, ପିମ୍ପୁଡ଼ି ଭସାଇ ନେଇଯାଉଛୁ । ତାଙ୍କୁ କୁଆଡ଼େ ନବୁ ମା ? ଆଶ୍ରୟହୀନ ହୋଇ ସେମାନେ ତ ତୋ'ର କୋଳ ଆଶ୍ରା କରିଛନ୍ତି । ତାଙ୍କୁ ଯେଉଁଠିକି ନେଉଛୁ ମୋତେ ମଧ୍ୟ ସେଇଠିକି ନେଇଯା । ସେମାନେ ସପରିବାର ମେଳ ବାନ୍ଧି ଅଛନ୍ତି, କିନ୍ତୁ ମୁଁ ଏକା ; ମୋର ଆଉ କେହି ନାହିଁ । ଚିନ୍ତା ମୋର ସଙ୍ଗିନୀ ।

ଅବାଟଠାରେ କୁଆଡ଼େ ଯାଉଛୁ ମା ? ବନ୍ଧ ଭାଙ୍ଗିଦେଇ ଏଣେତେଣେ କାହିଁକି ଧାଉଁଛୁ ? ତୁ କ'ଣ ବନ୍ଧ ଭାଙ୍ଗିପାରୁ ? ତେବେ ମୋର ଅନ୍ତରର ମୋହବନ୍ଧ ଭାଙ୍ଗିଦେ । ଅନନ୍ତଆଡ଼କୁ ମୋର ହୃଦୟର ଉଚ୍ଛ୍ୱାସ ବହିଯାଉ ।

ଆଜି ତୋ'ର ମଧୁର କଳଗୀତି କାହିଁ ? ତୋ'ର ଶୁଭ୍ର ବାଲୁକାଶଯ୍ୟାରେ ବସି ଶୀତଳ ସାନ୍ଧ୍ୟ ସମୀରଣ ସେବନ କରୁଁ କରୁଁ କୋମଳ ଲଳିତ ଝଙ୍କାର ଶ୍ରବଣ କରି ଦଗ୍ଧ ଆତ୍ମାକୁ କେତେ ଥର ଶୀତଳ କରିଛି । ଆଜି ତୋ'ର ଏ ରୁଦ୍ର ଭୈରବ ନାଦ ଶୁଣି ଓ ତୋ'ର ଏ ବିକଟ କରାଳ ମୂର୍ତ୍ତି ଦେଖି ତ ବଡ଼ ଡର ମାଡ଼ୁଛି ମା ! ପୁଣ୍ୟମୟି, ତୁ କେତେ ତୀର୍ଥ ସଲିଳ ବହନ କରୁଛୁ, ମୋ ମୁଣ୍ଡରେ ବୁନ୍ଦାଏ ଛିଞ୍ଚିଦେଇ ଯା ମା ।

ତୁ କେତେ ଲୋକଙ୍କ ସର୍ବସ୍ୱ ଧୋଇ ଆଣିଲୁଣି । ମୋର ସର୍ବସ୍ୱ ମୁଁ ତୋ'ଠାରେ ସମର୍ପି ଦେବାକୁ ବସିଛି, ତାକୁ କି ଧୋଇ ନେବୁନାହିଁ ? ତୋ'ର ଏ ଅଧମ ସନ୍ତାନର ତାପ, ଜଞ୍ଜାଳ ଧୋଇନେ ମା । ସର୍ବଂସହା ମା ମୋର, ଆଉ ମୋତେ କେତେ ଦିନ କଷ୍ଟ ଦେବୁ ? କେତେ ପୋକଜୋକ, କେତେ ଛେଳିଗୋରୁଙ୍କୁ ଦସାଇ ନେଉଛୁ, ମୋର ଏ ପ୍ରାଣହୀନ ଶରୀରଟାକୁ କି ନେବୁ ନାହିଁ ? ତୁ ନ ନେଲେ ଏ ଜର୍ଜରିତ, କ୍ଲିଷ୍ଟପାପ ଶରୀରଟାକୁ ଆଉ କିଏ ସ୍ଥାନ ଦେବ ? ମା, ମା, ବଡ଼ କଷ୍ଟ ପାଇଲିଣି, ବଡ଼ ଭୋଗିଲିଣି । ଆଜି ଏଥର ଥରେ କୋଳକୁ ନେ, ତୋ'ର ଶାନ୍ତିମୟ ମାତୃ-ଅଙ୍କରେ ଆଶ୍ରୟ ଦେ ମା । ନୋହିଲେ ମୋର ଆଉ ଅନ୍ୟ ଗତି ନାହିଁ । ତୋହରି କୋଳକୁ ଆଶା କରି ତୋ'ର କୂଳରେ ଆଶ୍ରୟ ନେଇଛି । ମୋତେ ଭୁଲିବୁ ନାହିଁ ମା ! ଅଧମ ସନ୍ତାନ ବୋଲି ତୋ'ର ବିଶ୍ୱମୟ ମାତୃସ୍ନେହରୁ ବଞ୍ଚିତ କରିବୁ ନାହିଁ ମା ! ସନ୍ତାନ କାନ୍ଦିଲେ ମା' ତ ସହିପାରେ ନାହିଁ; ତୁ ତେବେ ଶୁଣୁନାହୁଁ କାହିଁକି ? ମୋତେ କ'ଣ ପର କରିଦେଲୁଣି ? ତେବେ ତୁ ଯା । ଯେଉଁ ପ୍ରେମରେ ଉନ୍ମତ୍ତ ହୋଇ ପାଗଳିନୀ ପ୍ରାୟ ଧାଇଁଛୁ ସେ ପ୍ରେମର କଣିକା ମାତ୍ର ମୋତେ ଦେଇଯା— ମୁଁ ପାଗଳ ହୋଇଯାଏଁ । କିନ୍ତୁ ସେହି ଦିନ, ସେହି ଶେଷଦିନକୁ ମନେ ରଖିଥିବୁ । ସେ ଦିନ ଯେପରି ତୋ'ର ଚିରଶାନ୍ତିମୟ ସ୍ନେହାଲିଙ୍ଗନ ଯାଚି ଦେବାକୁ ଭୁଲିଯିବୁ ନାହିଁ ।



# ଶରଦେ ଶାରଦୀ

ମାଆ ଲୋ ଶାରଦା, ତୋର ଏ ଲାବଣ୍ୟମୟୀ ରୂପ ଛବି ଏତେଦିନଯାଏ କୁଆଡ଼େ ଲୁଚାଇ ରଖିଥିଲୁ ମା ? ମୁଁ ଯେ ତୋ'ର ଭୟଙ୍କରୀ ମୂର୍ତ୍ତି ଦେଖି ଦେଖି ଡରରେ ସଡ଼ି ଗଲିଣି । ମା ! ତୁ ମା ହୋଇ ସନ୍ତାନ ସାଙ୍ଗରେ ଏତେ ଦିନ ଚୋରୀଚୋରୀ ଖେଳୁଥିଲୁ କାହିଁକି ? ମା'ର ଟିକିଏ କୁଟିଳ ଭ୍ରୂକୁଟି ଦେଖିଲେ ପୁଅର କି କଷ୍ଟ ହୁଏ, ତାହା କି ତୁ ବୁଝି ପାରୁ ନା ? ମା'ର ସ୍ନେହ ଶରଧା ପାଇଁ ସନ୍ତାନ କେତେ ଆଶା କରି ଚାହିଁ ରହିଥାଏ, ସେ କଥା କି ଜାଣି ପାରୁ ନା ? ମୁଁ ଯେ ଋତୁମାସ ହେଲା ତୋର ଉନ୍ମାଦିନୀ ଭାବ ଦେଖି ଦେଖି କେତେ କାତର ହେଲିଣି । କେବେ ତୋ ମୁହଁରେ ହସଟିଏ ଫୁଟିବ ବୋଲି ଦୁଇ ଓଳି ଆସି ଦେଖି ଯାଉଛି । ଏତେ ଦିନେ ତୋର ମନେ ପଡ଼ିଲା ପରା ? ଏତେ ଦିନେ କି ତୋର ନୈସର୍ଗିକ କମନୀୟ କାନ୍ତିରେ ବିରାଜ କରିବାକୁ ଚିତ୍ତ ବଳିଲା ମା ? ସେଥିପାଇଁ ଆଜି କୁଆଁରୀ ଛଟାରେ ସଜ୍ଜିତ ହୋଇ ସୌନ୍ଦର୍ଯ୍ୟ-ସମ୍ପଦରେ ଫାଟି ପଡ଼ୁଛୁ ? ଅଳ୍ପ କିଶୋରୀ ଭାବରେ ଲାବଣ୍ୟର ପସରା ଯେମିତି ଶାରଦ ଚନ୍ଦ୍ରିକା ସାଙ୍ଗରେ ଖେଳୁଁ ଖେଳୁଁ ନୀଳ ଲହରରେ ଝଲମଲ କରୁଛୁ ? ଦୁଇ କୂଳରେ ଧୋବ ଫରଫର କାଶକୁସୁମର ପତାକା ଉଡ଼ାଇ ସୁମଧୁର ହାସ୍ୟଚ୍ଛଟାରେ ଦିଗ୍‌ଦିଗନ୍ତ ପୁଲକିତ କରୁଛୁ ? ଫୁର୍ ଫୁର୍ ପବନରେ ତୋ'ର ନିଜର ମଧୁର-ପେଲବ ଅଙ୍ଗଯଷ୍ଟି ପୁଲକି ଉଠୁଛି । ଝୁରୁ ଝୁରୁ ସଙ୍ଗୀତରେଣୁ ତୋର ଅଙ୍ଗରୁ ଝରି ପଡ଼ୁଛି ।

ଇଏ କ'ଣ ମା ! ତୁ ଯେ ଚାଲୁଛୁ— ! ତୁ ପୁଣି ସେ ସଙ୍ଗୀତର ତାଳେ ତାଳେ ଧୀର ପଦନିକ୍ଷେପ କରି ଅଗ୍ରସର ହେଉଛୁ ! ଏ ଅସରା ସୌନ୍ଦର୍ଯ୍ୟ-ପସରା ଯେମିତି ତୁ କୁଆଡ଼େ ଯିବୁ ମା ? ଏତେ ମନ୍ଥର ଗମନରେ ଚାଲୁଛୁ କାହିଁକି ? ସେ ଦିନ ତ ଉନ୍ମତ୍ତ ଦିଗ୍‌ବିଦିଗ୍-ଜ୍ଞାନ-ଶୂନ୍ୟା ହୋଇ ଦୌଡ଼ୁଥିଲୁ, ଆଜି କାହିଁକି ଏତେ ଶାନ୍ତ ? କୂଳପ୍ଲାବିନୀ, ପ୍ରଖର ଚପଳେ, ତୋ'ର ଏ ଧୈର୍ଯ୍ୟ କାହୁଁ ଶିଖିଲୁ ? ମୋତେ ଭଲ ଟିକିଏ ଶିଖେଇ ଦେଇ ଯା ? ମୁଁ ଯେ କୋଉଁଠି ସ୍ଥିର ହୋଇ ଛିଡ଼ା ହୋଇ ପାରୁ ନାହିଁ, ଧୀର ହୋଇ କାହାରିକୁ ଧରି ପାରୁ ନାହିଁ । ସତେ ଅସଂଯତ ଚିତ୍ତ ହୋଇ ଯାହା ଯେତେବେଳେ ପାଉଛି, ତାହାକୁ ଭିଡ଼ି ଧରୁଛି—ଅଧୀର, ଉଦ୍‌ବିଗ୍ନ ଉଦ୍‌ଭ୍ରାନ୍ତ । ବେଳେ ବେଳେ ଦୁମ୍ କରି କଚାଡ଼ି ପଡ଼ୁଛି । ପୁଣି ଧରୁଛି, ପୁଣି ଛାଡ଼ୁଛି, ପୁଣି ପଡ଼ୁଛି । ସେ ଦିନ ମୋର କେବେ ବା ହେବ ମା—ସେ ସ୍ଥିରତା ମୋର କେବେ ଆସିବ ମା, ଯେଉଁଦିନ ମୁଁ କାହାରିକୁ ପ୍ରାଣ ଭରି ଭଲ ପାଇବି, ଜୀବନସର୍ବସ୍ୱ ବୋଲି କୁଣ୍ଢେଇ ପକାଇବି ? ସେ ଦିନ ମୋର ପରା ହେବ ନାହିଁ ! ମୁଁ ଯାହାକୁ ଧରୁଛି ତା'କୁ ଛାଡ଼ୁଛି । ହସ୍ତମୁଷ୍ଟିରେ ଦୃଢ଼ତା ଆସୁନାହିଁ, ମନରେ ଶକ୍ତି ଆସୁନାହିଁ ।

ତେବେ ତୁ ଚାଲ୍ । ସେହିପରି ସଧୀର ମନ୍ଥର ତାଳ ପକାଇ ପକାଇ ଚାଲ୍ । ମୁଁ ବସି ଦେଖୁଥାଏଁ । ନା, ନା—ମୁଁ ତୋତେ ଛାଡ଼ିବି ନାହିଁ । ମୁଁ ଏତେ ଦିନେ ମୋର ସ୍ନେହମୟୀ ଜନନୀର ସୁଖମୟ କୋଳ ପାଇଛି, ମୁଁ ତ ସହଜରେ ଛାଡ଼ିଦେବି ନାହିଁ । ତୋ'ର ପଣତ କାନି ଧରି ବସି ରହିଲି । କମିତି ଯାଉଛୁ ଯା ଭଲା, ଦେଖିବି······କାହିଁକି, କାହିଁ— ରହିଲୁ ତ ନାହିଁ । ମୋ କଥା ଶୁଣିଲୁ ତ ନାହିଁ ! ମୋ ଅଳରେ ତ କର୍ଣ୍ଣପାତ କଲୁନାହିଁ ! ତୋ'ର ନିଜ ଗତିରେ ନିଜେ ଚାଲିଲୁ ! ମୁଁ ତୋତେ ଆଉ ଲୋଡ଼ିବି କାହିଁକି ? ତୋତେ ମୁଁ ଭଲ କରି ଚିହ୍ନିଛି । ତୁ ପରା ସେଇ ଶାରଦୀ ! ସେ ଦିନ ମୁଁ କେତେ ଡାକିଲି, କେତେ କାନ୍ଦିଲି, କେତେ ନେହୁରା କଲି—ସବୁ ପେଲି ଦେଇ ହୋ—ହୋ ହୋଇ ଚାଲିଗଲୁ । ତୋତେ ଆଉ ବିଶ୍ୱାସ କ'ଣ ? ଯା ତେବେ, ଯେଉଁଆଡ଼େ ଯାଉଛୁ ଯା । ହଁ, ଯାଉଛୁ ? ମା' ଲୋ ମନେ ଗଲୁ ? ମୋତେ ନେବୁ ନାହିଁ ? ପଥହରା ଦରିଦ୍ର ସନ୍ତାନକୁ ଏକା କରି ଛାଡ଼ି ଦେଇ ଯିବୁ ? ମୋର ଆଉ କିଏ ଅଛି ମା ? ସମସ୍ତେ ପର କଲେଣି, ସମସ୍ତେ ଦୂର ଦୂର ହେଲେଣି । ତୁ ମା ହୋଇ ଯଦି ଏତେ ନିଷ୍ଠୁର ହେବୁ ତେବେ ମୁଁ କାହାର ହେବି ମା ? ଶେଷରେ ତୋ'ର ବି ଏ ଦାଉ ସାଧିବାକୁ ଥିଲା !

ଓହୋ ! ମୋର ପ୍ରାଣଟାକୁ କି ମୋହନ ସୂତ୍ରରେ ଆକର୍ଷଣ କରି କୁଆଡ଼େ ନେଇ ଯାଉଛୁ ? ଭଗ୍ନ ପ୍ରାଣଟା କାହିଁକି ତୋ ପଛରେ ଧାଉଁଛି ! ଯଦି ନିତାନ୍ତ ଯିବାର ହେଲା, ତେବେ ତୁ ଚୁପ୍ ଚୁପ୍ ଚାଲି ଯା । ଏ ବିଶ୍ୱମୁଗ୍ଧକାରିଣୀ ସୁଷମାରାଶି ଲୁଚାଇ ଦେ ।

ମୋର ଏ ଦୁଃଖଜଞ୍ଜାଳରେ ତୋ'ର କମନୀୟ ଅଙ୍ଗ ଆବୃତ କରି ଲୁଚି ଲୁଚି ଚାଲି ଯା । ଏ ଜଗତଭୁଲା ରୂପ ଘୋଡ଼ାଇ ରଖ । ନୋହିଲେ ମୋର ଏ ସମ୍ମୋହିନୀ ପିପାସା ତୋ'ଠାରୁ ଛାଡ଼ିବ ନାହିଁ । ଯେଉଁ ମଧୁରିମା ବିକାଶ କରି ତୁ କେତେ କବିର ଚିତ୍ତ ଉଚ୍ଚାଟନ କରିଛୁ, ଯେଉଁ ସୌନ୍ଦର୍ଯ୍ୟ ପ୍ରକାଶ କରି କେତେ ଭାବୁକର ମନ

ବିମୋହନ କରିଛୁ, ଯେଉଁ ସ୍ୱଚ୍ଛବିଳାସିନୀ ଭୁବନମୋହିନୀ ଛବି ଦେଖି ଦିନେ ସବୁକରମଣ ଗୌରସୁନ୍ଦର ସ୍ୱଭାବବିହ୍ୱଳ ଚିତ୍ତରେ ତୋର ଶୁଭ୍ର ବାଲୁକାମଞ୍ଚୋପରି ଉନ୍ମତ୍ତ ପ୍ରାୟ ନୃତ୍ୟ କରିଥିଲେ, ସେହି ଶାନ୍ତ ଶିରୀ, ସେହି କାନ୍ତିଛଟା ଆଉ ଦେଖା ନାହିଁ। ତେବେ ମୁଁ ରହିବି।

ତଥାପି ରହିଲୁ ନାହିଁ! ହଉ, ନ ରହ, କିନ୍ତୁ ମୋ କଥା ପଦେ ଶୁଣି ଦେଇ ଯୁଆଡ଼େ ଯିବାର ଚାଲି ଯା, ମୁଁ ଆଉ ତୋତେ ଡାକିବି ନାହିଁ। ଆ, ଆ, ଶୁଣିଯା। ହେଇଟି, ସେଆଡ଼େ ସୁନା ଥାଳି ଧରି ତୋତେ ବନ୍ଦେଇବାକୁ ଚନ୍ଦ୍ର ଉଇଁ ଆଇଲାଣି। ହେଇ, ହେଇ ସେ ବନ୍ଦାପନା ଦେଖିବା ପାଇଁ ତାରାଗୁଡ଼ିକ ଗୋଟି ଗୋଟି ହୋଇ ଫୁଟି ଉଠିଲେଣି। ଛି ଛି, ତୁ ଯା ନା, ମୋ ମା'ଟା ପରା, ରହିଯା। ଏତେ ଲୋକଙ୍କୁ ହତାଶ କରି କମିତି ଯିବୁ ମା? ସତେ ତୁ କାହିଁକି ସତରି ଚନ୍ଦ୍ର, ସତରି ତାରାକୁ ଅପେକ୍ଷା କରି ରହିବୁ? ତୋ ଦେହରେ ତ ଶତ ଶତ ଚନ୍ଦ୍ର ନାଚି ଉଠୁଛନ୍ତି, ତୋର ପ୍ରତି ଲୋମ-କୂପରେ କୋଟି କୋଟି ତାରା ଝଲମଲ କରୁଛନ୍ତି। ଐଶ୍ୱର୍ଯ୍ୟମୟୀ ମା ମୋର, ଏ ଦରିଦ୍ର ପୁଅକୁ ସେଥିପାଇଁ ପଚାରୁନାହୁଁ ପରା! ତୁ ମା' ହୋଇ ଅଧମ ସନ୍ତାନ ଉପରୁ ଶରଧା ତୁଟାଇବୁ କିପରି? ଦେଖିବି, ତୁ ମୋତେ ଛାଡ଼ି ଚାଲିଲେ, ମୁଁ ତୋତେ ଛାଡ଼ିବି ନାହିଁ— ମୋ ଅଳି ତ ତୋ'ଠୁଁ ଛାଡ଼ିବ ନାହିଁ। ଏ କଥାଟି ମୋର ରଖ, ମୁଁ ଯେଉଁ କଥାଟି ତୋ କାନରେ ଚୁପ୍ ଚୁପ୍ କହିଦେବି ସେ କଥା ବହି ନେଇ ଯା। ପାଟି କରି କହିବି ନାହିଁ—କାଳେ କିଏ ଶୁଣିବ। ଯଦି କେହି ଶୁଣେ, ସେ ସମ୍ଭାଳି ପାରିବ ନାହିଁ; ତା'ର ବୁକୁ ଫାଟି-ଯିବ। ସେ କାହାଣୀ ଏ ସଂସାରରେ ରଖିବାକୁ ସ୍ଥାନ ନାହିଁ। ଯେଉଁଠି ରଖିବି ସେ ସ୍ଥାନ ତରଳିଯିବ। ମୁହିଁ ବୋଲି ତାକୁ ସହି ରହିଛି। ମୁଁ ବୋଲି ସେ ଦୁଃଖ ହୃଦୟ ଭିତରେ ବହୁ ଦିନରୁ ଲୁଚାଇ ରଖିଛି। ଆଉ କିଏ ନେବ? ସର୍ବଂସହା ଜନନୀ ହୋଇ ତୁ ନ ନେଲେ, ଆଉ କିଏ ନେବ? ତେବେ ତୁ ନେଇ ଯା! ଯେତେବେଳେ ମହାସିନ୍ଧୁ ବକ୍ଷକୁ ପଥଶ୍ରାନ୍ତା ହୋଇ ଶାନ୍ତିସୁଖା-ଶାରେ ଡେଇଁ ପଡ଼ିବୁ ସେତେବେଳେ ମୋ କଥାଟି ମଧ୍ୟ ତା'ର ଅନ୍ଧ-କାସ୍ଥାରେ ପକାଇଦେବୁ। ସେହି ତାର ଉପଯୁକ୍ତ ସ୍ଥାନ।

ସେହି ଏକା ତାକୁ ସମ୍ଭାଳି ରଖିପାରିବ। ସେ ତ ଲହରି ପଛକେ ମହାତରଙ୍ଗ ରୂପରେ ସାଗରବକ୍ଷ ଉଦ୍‌ବେଳିତ କରିବ ଅଥବା ବାଡ଼ବାଗ୍ନି ହୋଇ ତା'ର ହୃଦୟର ରକ୍ତ ଶୋଷଣ କରିବ; କିନ୍ତୁ ଏ କ୍ଷୁଦ୍ର ସଂସାରରେ ରହିଲେ ଏକା ଦିନକେ ପ୍ରଳୟର ସମ୍ଭାବନା। ଅତଏବ ନେଇ ଯା। ମୋର ହୃଦୟର ଗୁପ୍ତ କଥା; ମୋର ଅନ୍ତରର ନିଭୃତ କାହାଣୀ ତୁ ନେଇ ଯା, ତୁ ଆଗେ ଆଗେ ଚାଲ୍, ମୁଁ ବି ଯାଉଛି। ମୋର ଦିନ ସରି ଆସିଲାଣି। ସେହି ଦିନର ଅପେକ୍ଷାରେ ତୋତେ ବଡ଼ ଆଶା କରି ଚାହିଁ ରହିଛି। ସେ ଦିନ ତୋ'ର ପ୍ରଶାନ୍ତ ବାଲୁକାକ୍ଷେତ୍ରରେ ମୃଷ୍ଟିଖଣ୍ଡେ ସ୍ଥାନ ଦେବୁ ମା। ମୋର ବଡ଼ ଆଶା, ସେ ଦିନ ତୋର ସ୍ନେହ-ଶାନ୍ତିମୟ କ୍ରୋଡ଼ରେ ମଥା ରଖି, ତୋ'ର ସ୍ୱଚ୍ଛ ବକ୍ଷରେ ବିଚରଣଶୀଳ ଶାରଦେନ୍ଦୁ ସହିତ ଚପଳ ଚନ୍ଦ୍ରମାର ଲୁଚୁକାଳି ଖେଳ ଦେଖୁଁ ଦେଖୁଁ ତୋ'ର ସଲିଳ-ସଙ୍ଗମ-ଶୀତଳ ମଳୟ ଅନିଳ ସେବନ କରୁଁ କରୁଁ ମୋର କ୍ଷୀଣ ଶ୍ୱାସ ତୋର ତୀରକୁସୁମର ସୁରଭି ନିଶ୍ୱାସରେ ମିଶିଯିବ। ସେଦିନ ଫୁଲ-ସଞ୍ଜବେଳେ ପଲ୍ଲୀସୀମନ୍ତିନୀମାନେ କାଖରେ ପୂର୍ଣ୍ଣ କଳସୀ ନେଇ ରୁଣୁ ଝୁଣୁ ହୋଇ ଫେରି ଯାଉଥିବେ। ତୋ'ର ପ୍ରିୟ ବିହଙ୍ଗମ-ଗୁଡ଼ିକ ତୋ'ର ସ୍ୱଭାବମଧୁର କଳଧ୍ୱନି ସଙ୍ଗରେ ନିଜର ସ୍ୱର ମିଶାଉଥିବେ। ଏହି ସମସ୍ତ ସ୍ୱର ସମ୍ମିଶ୍ରିତ ହୋଇ ଯେଉଁ ମହା ସଙ୍ଗୀତର ସୃଷ୍ଟି କରିବ, ସେହି ଲୟ ମୁଁ ନିତି ନିତି ଅନୁଭବ କରୁଥିବି। ପୁଣି ଯେତେବେଳେ ତୁ ତୋ'ର ଉନ୍ମାଦିନୀ, ବିଶ୍ୱ-ଶୋଧିନୀ ରୂପରେ ଆବିର୍ଭୂତା ହେବୁ ସେତେବେଳେ ତୁ ଯେଉଁ ଆଡ଼କୁ ଯାଉଛୁ ମୋତେ ସେହିଠାକୁ ନେଇଯିବୁ। ମୋର ଅଳି ଏତିକି।



# ହାସ୍ୟରସ

ଅନୂଢ଼ା କିଶୋରୀଟିଏ, ବରଘର ତା'ର ଲାଗିଛି ସେଇ ଗାଆଁରେ । ବରଟି ତା'ର ଭାବୀ ପତ୍ନୀକୁ ଦେଖିବାପାଇଁ ବ୍ୟାକୁଳ । ମନ ହେଉଛି, ଥରେ ଭେଟ ମିଳିଯାଆନ୍ତା କି, ଦି'ପଦ ମିଠା କଥା କହିହୁଅନ୍ତା । ଇମିତି ନୋହିଲେ ଆଖି ଠାରି ମୃଦୁକି ହସ ଟେନାଏ ଆଦାନ କରନ୍ତା । ଏହି ଅନୁମାରେ ଟୋକାଟା ଲୁକି ଲୁକି ଚାରିଆଡ଼େ ମାରି ବୁଲୁଛି ।

ହଠାତ୍ ବାଳିକାଟି ଗାଆଁ କୂଅରେ କଳସୀ ପକାଇ ପାଣି କାଢ଼ୁଛି—ଏଣେ ମନ ଫୁଲଣାରେ ଗୁଣୁଗୁଣୁ କରି ଗାଇ ଯାଉଛି ଗୀତ ପଦେ । 'ହଠାତ୍ ମୋ ନେତ୍ରପଥରେ, ପଡ଼ିଗଲେ ବାଙ୍କଚୂଳିଆ ଥରେ ଗୋ'…ଇତ୍ୟାଦି । ସୂର୍ଯ୍ୟ ବୁଡ଼ି ଯାଉଛନ୍ତି । କିଶୋରୀର ମୁହଁରେ ପଡ଼ୁଛି ନାଲି ନାଲି ମଧୁର ଖରା । ସେ ଚାହିଁରହିଛି ଆପଣାର ଛାଇଟିକୁ—କୂଅ ପାଣିରେ ଛାଇଟା ତା'ର ନାଚି ନାଚି ଉଠୁଛି ସିନେମାର ଛବିପରି ।

ଏଣେ ତାହାର ଭାବୀ ସ୍ୱାମୀ ଦୁଷ୍ଟ ଟୋକାଟା କେତେବେଳୁ ଆସି ବାଡ଼ମୂଳରେ ଠିଆ ହୋଇ ଚାହିଁ ରହିଛି ଏକ ଦୃଷ୍ଟିରେ ତାହାର ଆଡ଼କୁ ଡାହାଣୀଙ୍କ ପରି । ସତେ ଯେପରି ପିଇଯାଉଛି କିଶୋରୀର ରୂପଲାବଣ୍ୟକୁ ଚଳ ଚଳ କରି ।

ଏତିକିବେଳେ କିଶୋରୀର ଦୃଷ୍ଟି ପଡ଼ିଗଲା ଟୋକା ଉପରେ । ପାଣିମାଠିଆ ଉଠି ଆସିଛି ଅଧାଅଧି ସରିକି, ଦୁଇ ହାତ ବନ୍ଦ । ତତ୍‌କ୍ଷଣାତ୍ ବାଳିକା ଲାଜ ସମ୍ଭାଳିବା ପାଇଁ ଓଢ଼ଣା ଟାଣି ଆଣିବା ସଙ୍ଗେ ସଙ୍ଗେ ହାତରୁ ହାଉଡ଼ି ଗଲା ଖସି । ପାଣିଭର୍ତ୍ତି ମାଠିଆ ପଡ଼ିଲା ଦୁମ୍ କରି ପାଣିରେ—ଦଉଡ଼ିରେ ଗୁଡ଼େଇ ହୋଇ ବାଳିକାର ଲୁଗାକାନି ଖସି ଚାଲିଗଲା କୂଅ ଭିତରକୁ—ତାର ଊର୍ଦ୍ଧ୍ୱାଂଶ ମୁକୁଳା କରି । ବର୍ଣ୍ଣନାଟି ଚାଲିଛି ଆଦିରସର । ରସଟା ଯେତେବେଳେ ଜମି ଜମି ଆସି ଦାନା ବାନ୍ଧିବା ଉପରେ, ସେତିକିବେଳେ ଅକସ୍ମାତ୍ ଗୋଟିଏ ଅବାଗିଆ, ଅଲଗିଲା ଗର୍ତ୍ତରେ ବୁଲିପଡ଼ି ଛତ୍ରଭଙ୍ଗ ହୋଇଗଲା । ରସଟା ଚଢ଼ିଲା ଉଚ୍ଚକୁ । ଏହି ଉତ୍ତରର ନାମ ହିଁ ହାସ୍ୟରସ । ନଅଟା କାବ୍ୟରସ ଭିତରେ ହାସ୍ୟରସ ଗୋଟାଏ ବୋଲି ଧରିଲେ ମଧ୍ୟ ମୋ ମନେହୁଏ ହାସ୍ୟରସଟା ଆଦି, କରୁଣାଦି ଅନ୍ୟ ରସର ଏହି ଉତ୍ପତ୍ତି ଅବସ୍ଥା—ଯାହାର ଆବିର୍ଭାବ ହୋଇଥାଏ ଗୋଟାଏ ଅକଳ୍ପିତ, ଅନନୁମିତ, ବିପରୀତ ସଂଘର୍ଷରୁ ପରିଣତି ପରେ । ସବୁ ରସର ଅନୁଭୂତି ମଣିଷକୁ ଆନନ୍ଦ ଓ ପ୍ରସାଦ ପରିବେଷଣ କରେ—ଉତ୍ତେଜନା କିମ୍ବା କରୁଣାର ସଞ୍ଚାର କରେ ; କିନ୍ତୁ ହାସ୍ୟରସ ଆନନ୍ଦ ସଙ୍ଗେ ସଙ୍ଗେ ବୁକୁ ଉପରୁ ଚିନ୍ତା, ଉଦ୍‌ବେଗ, ଅବସାଦର ଭାର ଅପସାରଣ କରି ହୃଦୟକୁ କରିପାରେ ହାଲୁକା । ଏଥିପାଇଁ ହାସ୍ୟରସ ସ୍ୱାସ୍ଥ୍ୟପ୍ରଦ ବୋଲି ଲୋକେ କହନ୍ତି । ଯେ ଯେତେ ହସେ, ସେ ସେତେ ସୁସ୍ଥ—ଶାରୀରିକ ଓ ମାନସିକ, ଉଭୟରେ ।

ଦୈନନ୍ଦିନ ଜୀବନରେ ଆମେ ଯେତେ କଥା ଶୁଣୁଁ ବା ଦେଖୁଁ, ଯେତେ ରସର ସାହିତ୍ୟ ପଢ଼ୁଁ ତାହା ଭିତରେ ହାସ୍ୟରସର ପ୍ରଚୁର ଉପାଦାନ ଭରିରହିଛି । ମନୋବୃତ୍ତିକୁ ସଜାଡ଼ି ନେଇପାରିଲେ ସାମାନ୍ୟ ଘଟଣାରୁ ବି ଆମେ ଅନେକ ହସିବାର ସରଞ୍ଜାମ ଆହରଣ କରିପାରିବା ।

ପିଚ୍‌ଢାଲା ରାସ୍ତା ଉପରେ ଜଣେ ଅତି ମୋଟା ଝୋଥଲ-ପେଟ ଲୋକ ଯଦି କଦଳୀ ଚୋପା ମାଡ଼ି ଖସଡ଼ି ପଡ଼େ, ତେବେ ଚାରିଆଡ଼ର ଲୋକେ ହସିଉଠନ୍ତି । ଏ ହସ କେବଳ ଅସ୍ୱାଭାବିକତା ହେତୁ । ଏକେ ତ ଚାଲୁ ଚାଲୁ କଚଡ଼ି ପଡ଼ିବାଟା ଅସ୍ୱାଭାବିକ—ତଦୁପରି ଗୋଟାଏ ଅସ୍ୱାଭାବିକ ମୋଟା ଲୋକର ସମ୍ବନ୍ଧ । ଘୋଡ଼ା ଉପରେ ଯେ ଚଢ଼େ ସେ ଘୋଡ଼ା ମୁଣ୍ଡ ଆଡ଼କୁ ମୁହଁ କରିଥାଏ । ଘୋଡ଼ା ଲାଞ୍ଜଆଡ଼କୁ ମୁହଁ କରି ମୁଣ୍ଡ ଆଡ଼କୁ ପିଠି କରିବା ଅସଙ୍ଗତ, ଅତଏବ ହାସ୍ୟକର । ଗୋଟିଏ ଭାବ ସହିତ ତାହାର ବିପରୀତ ଭାବ ହଠାତ୍ ହାବୁଡ଼ି ଖାଇଗଲେ ହାସ୍ୟରସର ଆବିର୍ଭାବ ହେବାର କଥା ।

ସବୁ କଥା ଭିତରେ ହସିବାର ଉପାଦାନ ବାହାର କରି-ପାରିବା ପାଇଁ ଗୋଟାଏ ବିଶେଷ ଶକ୍ତି ବା ମନୋବୃତ୍ତିର ପ୍ରୟୋଜନ । ସମସ୍ତେ ଏହା କରିପାରନ୍ତି ନାହିଁ । ଯେ ଏହା କରିପାରେ ସେ ଭାଗ୍ୟବାନ । କାରଣ ଏହା କରିପାରିଲେ ଦୁନିଆର ଅନେକ ଦୁଃଖ, ଦୁଶ୍ଚିନ୍ତା, ଉଦ୍‌ବେଗ, ଆକୁଳତା, ବ୍ୟଥା, ବେଦନା ଉଡ଼ାଇ ଦେଇ ଦୁର୍ଭାଗ୍ୟ, ଦୁର୍ବିପାକକୁ ଏଡ଼ାଇ ଦେଇ ଜୀବନକୁ ଆରାମଦାୟକ ଉପଭୋଗକ୍ଷମ କରି ହୁଏ । ଏଭଳି ଲୋକଙ୍କୁ ସମସ୍ତେ ପସନ୍ଦ କରନ୍ତି । ତା'ର ଦିଲ୍‌ଦାରିଆ ଖୁସ୍‌ମିଜାଜ୍ ଗୋଟାଏ

ସଂକ୍ରାମକ ବ୍ୟାଧି ପରି ଆଖପାଖିଆ ଲୋକଙ୍କୁ, ଏପରି କି ସେଠାକାର ବାୟୁମଣ୍ଡଳକୁ ପୁଲକିତ କରେ । ଏହା ମଧ୍ୟ ସୀମା ଅତିକ୍ରମ କଲେ ସବୁ ରସ ପାଣି ଫାଟିଯିବାର ସମ୍ଭାବନା ଅଛି । ଯେ ମାତ୍ରା ଟପିଯାଏ, ସେ ଲୋକରେ ନିନ୍ଦନୀୟ । ତାକୁ ଲୋକେ କହନ୍ତି ହେରଷା, ନେଫଡା, ହେଁହେଁମ୍ବା ।

ମାତ୍ର ଯେ ନିଜେ ଭିତରେ ଭିତରେ ହସି ଉପରକୁ ଗାମ୍ଭୀର୍ଯ୍ୟ ରଖି ଅନ୍ୟକୁ ହସାଇପାରେ, ସେହି ପ୍ରକୃତ ରସସ୍ରଷ୍ଟା, ରସିକ । ସେପରି ହାସ୍ୟକୁଶଳୀ ବଡ଼ ବିରଳ—ହଜାରକରେ ଜଣେ ଅଧେ ମିଳିବା ବଡ଼ କଠିନ । ଏଇଥିପାଇଁ ବୋଧହୁଏ ସାହିତ୍ୟିକମାନଙ୍କ ମଧ୍ୟରେ ଆଦି, ବୀର, କରୁଣାଦି ରସର ପରିବେଷକ ଯେତେ, ହାସ୍ୟରସିକ ତା'ର ଶତାଂଶରୁ ଏକାଂଶ ମିଳନ୍ତି ନାହିଁ । ଏହା କେବଳ ଗୁଣ ନୁହେ, ଗୋଟାଏ ପ୍ରତିଭା, ଯାହା ଦାନ କରିବାକୁ ଭଗବାନ ବଡ଼ କୃପଣ ।

ନିଜେ ନିର୍ବାକ, ନିସ୍ତବ୍ଧ ରହି ପରର ଅନ୍ତରକୁ ତରଙ୍ଗାୟିତ କରିବା ଗୋଟାଏ ସୂକ୍ଷ୍ମ କଳା (Fine art) । ପ୍ରକାଶଭଙ୍ଗୀର ଚତୁରତା ସହିତ ଉପସ୍ଥିତ ବୁଦ୍ଧି, ନିପୁଣ ଦୃଷ୍ଟି, ଚତୁର ମନ ନ ଥିଲେ ରଙ୍ଗ କଳାକର ହୋଇ ହୁଏ ନାହିଁ । ଉଲଗ୍ନ ଲଙ୍ଗଳା ହୋଇ ବଜାର ଭିତରେ ଦୌଡ଼ିଲେ ଲୋକେ ହସିବେ ନିଶ୍ଚୟ । ଏମିତି ଯେ କରେ, ତାକୁ କେବେ ସୁଦକ୍ଷ ହାସ୍ୟରସିକ କୁହାଯାଏ ନାହିଁ । ବରଂ ତାକୁ ବେହିଆ, ଅଲାଜୁକ, ଅସଭ୍ୟ ବା ପାଗଳା ବୋଲି ଲୋକେ ଉପହାସ କରନ୍ତି ।

ନିପୁଣ ହାସ୍ୟରସିକ ମୂଳରୁ ହସର ତେଜ ଉଠାଇବାକୁ ପସନ୍ଦ କରେ ନାହିଁ । ହଠାତ୍ ହାସ୍ୟରସ ଜମି ଉଠିବା ସହଜ ନୁହେ । ଲୋକମନରେ ଅନ୍ୟ ରସର ସଞ୍ଚାର କରିସାରି, ଲୋକଙ୍କୁ ତହିଁରେ ମଜାଇ ତାହା ପରେ କାଉଁରିକାଠି ଭଳି ହସର ରୂପାକାଠି ଛୁଆଁଇ ଦେବା ଉଚିତ । ଗୋଟାଏ ଅସ୍ତର ଦେଇସାରି ତାହା ଉପରେ ନାଲି ଲଗାଇଲେ ରଙ୍ଗଟା ଯେପରି ଅଧିକ ଜକଜକ ହୋଇ ଝଟକି ଉଠେ, ଅନ୍ୟ ରସ ସଙ୍ଗରେ ହାସ୍ୟରସର ବିକାଶ ସେହିପରି ହୋଇଥାଏ ଅଧିକ ଉଜ୍ଜ୍ୱଳ ଓ ମନୋରମ ।



# ସାହିତ୍ୟସୃଷ୍ଟିରେ ହାସ୍ୟରସ

ଧରନ୍ତୁ, ଦୁଇ ଜଣ ବୀର ପୁରୁଷ ନାନା ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ରଣକ୍ଷେତ୍ରରେ ଦଣ୍ଡାୟମାନ । ଯୁଦ୍ଧ ଲାଗିଲା । କେହି କାହାରିକୁ ହଟାଇ ପାରୁନାହାନ୍ତି । ଏହିପରି ସମୟରେ ଜଣକୁ ଝାଡ଼ା ମାଡ଼ିଲା । ପ୍ରାଥମରେ ଚପି ଚପି ଶେଷକୁ ଆଉ ସମ୍ଭାଳି ନ ପାରି ତା'ର ଜଙ୍ଘିଆ ନଷ୍ଟ ହୋଇଗଲା । ସେ ରଣଭୂଇଁ ଛାଡ଼ି ଧାଇଁଲା ପୋଖରୀ ଆଡ଼େ । ଅନ୍ୟ ଜଣକ ଜିତାପଟ ନେଲା ।

ଯୁଦ୍ଧରେ ପରାସ୍ତ ହୋଇଥିଲେ ହାରିଯିବା ବୀରଟି ନିଶ୍ଚୟ ଅନେକଙ୍କର ସହାନୁଭୂତି ଆକର୍ଷଣ କରିଥାଆନ୍ତା; ମାତ୍ର ଏହି ଅସମ୍ଭାବିତ ଅସ୍ୱାଭାବିକ ପ୍ରକୃତିର ତଲବ (Call of nature) ତା'କୁ ଲୋକଚକ୍ଷୁରେ ହାସ୍ୟାସ୍ପଦ କରାଇ ବୀରରସରେ ବିଭାବିତ ଦର୍ଶକମଣ୍ଡଳୀ ଭିତରେ ହାସ୍ୟର ତରଙ୍ଗ ଛୁଟାଇଦେବ ।

ସାହିତ୍ୟସୃଷ୍ଟିରେ ହାସ୍ୟରସର ପ୍ରୟୋଜନ ଏତେ ବେଶି ଯେ, ତିଅଣରେ ଲୁଣର ପ୍ରୟୋଜନ ଭଳି କାବ୍ୟ, ନାଟକ, ଉପନ୍ୟାସାଦିରେ ଛୁଙ୍କ ନ ରହିଲେ ତା'ର ସୁଆଦ ପୂର୍ଣ୍ଣ ପ୍ରାପ୍ତ ହୁଏ ନାହିଁ । ମଝିରେ ମଝିରେ ହାସ୍ୟରସର ଚଟଣି ନ ରହିଲେ ଅନ୍ୟ ରସ ପୂର୍ଣ୍ଣ ଉପଭୋଗ କରିବାରେ ବାଧା ପଡ଼ିବା ସମ୍ଭବ; ଏପରି କି ଅନେକ ସମୟରେ ବିରକ୍ତିକର (Boring) ହେବା ବି ଅସମ୍ଭବ ନୁହେଁ । ଲୁଣ ପଡ଼ି ନ ଥିଲେ ଯେ କୌଣସି ଖାଦ୍ୟ ଯେପରି ଅଲଣା ଲାଗେ, ହାସ୍ୟରସ ବିନା କାବ୍ୟର ଦଶା ପାଲଟେ ସେହିପରି । ପୁଣି ଅତିଲୁଣ ଯେପରି ଆଉ ପାଞ୍ଚଟା ରସକୁ ବୁଡ଼ାଇ ଦେଇପାରେ, ହାସ୍ୟରସର ମଧ୍ୟ ସେ କ୍ଷମତା ରହିଛି—ଅଧିକ ହୋଇଗଲେ ସବୁ ସୁଆଦକୁ ଚାପି ଦେଇ ନିଜର ବଡ଼ପଣ ଜାହିର କରିପାରେ । ଏପରି କି ହାସ୍ୟର ବିପରୀତ ଯେ କରୁଣ ରସ, ବେଳ ପଡ଼ିଲେ ତାକୁ ବି ଦଳିଦେଇ ହାସ୍ୟରସ ଆପଣା ଠେକ ବଢ଼ାଇ ଦେଇପାରେ ।

ଧରନ୍ତୁ, ଗୋଟିଏ ଅଳ୍ପବୟସ୍କା ଯୁବତୀର ଏକମାତ୍ର (!) ଜେଉସ୍ତ ଅକସ୍ମାତ୍ ମରିଗଲେ । ସ୍ୱାମୀକୁ କୋଳରେ ଧରି ସ୍ତ୍ରୀଟି କାନ୍ଦୁଛି ବାହୁନି ବାହୁନି । ଛାତିଫଟା ସେ ବାହୁନା । ଯେ ଶୁଣୁଛି ତା ଆଖିରୁ ଲୁହ ଗଡ଼ିପଡ଼ୁଛି । ଗାଁଯାକର ମାଇପେ ଦେଖିଯାଇ ସଦ୍ୟ ବିଧବାଟିକୁ ନାନାରୂପେ ସାନ୍ତ୍ୱନା ଦେଉଛନ୍ତି; କିନ୍ତୁ ସେ କିଛି ଶୁଣୁନାହିଁ । ବାରମ୍ବାର ଆତ୍ମହତ୍ୟା କରିବା ପାଇଁ ମୁଣ୍ଡ ପିଟିଦେଉଛି ! ଏ ଅବସ୍ଥାରେ କିଏ ବା ଦେହ ଧରି ରହିବ ?

ହଠାତ୍ ସ୍ତ୍ରୀ ଲୋକଟି ମୂର୍ଚ୍ଛିତା ହୋଇପଡ଼ିଲା । ପାଟି ପଡ଼ିଗଲା । ତଣ୍ଟି ଶୁଖିଗଲା । ମାଇପେ ଧାଇଁଯାଇ ପାଣିଛାଟ ମାରିଲେ ଓ ତୁଣ୍ଡରେ ପାଣି ଟୋପାଏ ଟୋପାଏ ଦେଇ ସାଷ୍ଟମ କଲେ । ସ୍ତ୍ରୀଟି ଉଠି ବସି କହିଲା—'ପାନ ଖଣ୍ଡେ କିଏ ଦେଲ, ତୁଣ୍ଡ ଅଠା ହୋଇ ଯାଉଛି' । କିଏ କହିଲା—'ଏ ବେଳରେ ପାନ ଖାଇବୁ ? କି ଅଲଗିଲା କଥା ମ'! ତହୁଁ ସ୍ତ୍ରୀଟି ବାହୁନି ବାହୁନି କହିଲା—"ଆଗରୁ କେବେ ରାଣ୍ଡି ହୋଇଥିଲେ ସିନା ଜାଣନ୍ତି ଏତେ କଥା; ହଉ, ହଅଲେ ହଉ ଗୁଣ୍ଡି ଟିପେ କାହା କାନରେ ଅଛି । ଇମିତି ନୋହିଲେ ଚୂନ ଦୋକତା ବକଟେ !'

ଯେତେ କରୁଣ ପରିବେଶ ହେଉ ପଛକେ, ଏ କଥାରେ କିଏ ନ ହସି ରହି ପାରିବ !

ଏହିପରି କହି ବସିଲେ ହାସ୍ୟରସ ସୃଷ୍ଟି କରିବାର ମୌକା ସବୁଠି ମିଳିପାରେ । ଲୋଡ଼ା କେବଳ ମନ୍ଥନ କରି ରସସୃଷ୍ଟି ଓ ରସପୁଷ୍ଟି କରିବାର କଳକୌଶଳ ।

ଯେ କୌଣସି ଗୋଟିଏ କଥାକୁ ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରେ (Seriously) ଦେଖେ ଓ ତହିଁରେ ମଜ୍ଜିଯାଏ, ସେ ସେଥିରୁ ବ୍ୟଙ୍ଗ ବା ହାସ୍ୟରସର ସୁଆଦ ଉଠାଇ ପାରେ ନାହିଁ । ଗମ୍ଭୀର ଦୃଷ୍ଟିଭଙ୍ଗୀରେ ନିରୀକ୍ଷଣ କଲେ ବିଷୟ ଭିତରେ ମଗ୍ନ ହୋଇଯିବା ଅର୍ଥାତ୍ ବିଷୟ ସହିତ ଏକାଙ୍ଗ ଓ ଆସକ୍ତ ହୋଇ ପଡ଼ିବା ସ୍ୱାଭାବିକ । ମାତ୍ର ହାସ୍ୟରସିକ ରଙ୍ଗକାର ତାହା କଲେ ଚଳେ ନାହିଁ । ଯେତେ ଗୁରୁତ୍ୱମୟ କଥା ହେଉ ପଛକେ ରଙ୍ଗବ୍ୟଙ୍ଗକାର ସବୁବେଳେ ନିଜକୁ ଧୀର, ସ୍ଥିର, ପ୍ରଶାନ୍ତ, ନିର୍ମମ, ଅନାସକ୍ତ ଦର୍ଶକ ବୋଲି ମଣି, ନିରପେକ୍ଷତାର ପ୍ରଚକ୍ଷୁ ଲଗାଇ ସବୁ କଥା ଦେଖି ଯାଉଥିବ । ଏହିପରି ଦୃଷ୍ଟିଶକ୍ତି ଯେ ହାସଲ କରିପାରେ, ସେହି ଏକା ଦେଇପାରେ ସବୁ କଥାକୁ ହସରେ ଉଡ଼ାଇ—ସେହି ଏକା ସବୁ କଥା ଭିତରୁ ବାହାର କରିପାରେ ହସର ମଞ୍ଜି ।

ହାସ୍ୟରସର ଉଦ୍ଦେଶ୍ୟ ଯେ କେବଳ ଲୋକଙ୍କୁ ଆମୋଦ ଦେଇ ମନକୁ ହାଲୁକା କରିବା, ତାହା ନୁହେଁ । ବ୍ୟଙ୍ଗ, ବିଦ୍ରୂପ, ଶ୍ଳେଷ ଦ୍ୱାରା ଅନେକ ବ୍ୟକ୍ତିଗତ ଓ ସାମୂହିକ ଦୋଷ, ତ୍ରୁଟି, ଅନାଚାରକୁ ବିତାଡ଼ିତ କରାଯାଇ ପାରେ । ମଣିଷକୁ ନିନ୍ଦା ନ କରି କେବଳ

ପ୍ରଶଂସା ଦ୍ୱାରା ମଧ୍ୟ ଲୋକଚକ୍ଷୁରେ ହାସ୍ୟାସ୍ପଦ କରିଦେଇ ହୁଏ । ଇଂରାଜୀ ଲେଖକ ଆଡିସନ୍ ଓ ଷ୍ଟିଲ୍ 'ସ୍ପେକ୍ଟେଟର' ନାମକ ଖବର କାଗଜରେ ଏହି କୌଶଳ ପ୍ରୟୋଗ କରି ତତ୍କାଳୀନ ଇଂରେଜ ସମାଜରୁ ବହୁତ ଅନାଚାର, ଦୁରାଚାର, ବ୍ୟଭିଚାର ଦୂର କରି ପାରିଥିଲେ । ପଦେ ଅଧେ ବିଦ୍ରୂପାତ୍ମକ ଲେଖାଦ୍ୱାରା ଯେତେ କାମ ହାସଲ ହୋଇପାରେ, ଗଦା ଗଦା ସିଧା ସଳଖ ନିନ୍ଦାବାଦ ତାର କାଣିଚାଏ କରି ପାରେ ନାହିଁ ।

ସାମାଜିକ, ଦଳଗତ ବା ବ୍ୟକ୍ତିଗତ ଦୁର୍ନୀତି ନିରାକରଣ ପାଇଁ ବ୍ୟଙ୍ଗୋକ୍ତି ବା ବକ୍ରୋକ୍ତି ଛଡ଼ା ଅନାବିଳ ଆନନ୍ଦ ଦାନ ନିମନ୍ତେ ମଧ୍ୟ ହାସ୍ୟରସର ପ୍ରୟୋଜନ ହୋଇଥାଏ । ଇଂରେଜ କବି କାଉପର (Cowper) ଙ୍କ ଜନ୍ ଗିଲ୍ପିନ୍ (John Gilpin) କବିତା ଏହାର ସୁନ୍ଦର ଦୃଷ୍ଟାନ୍ତ । ଔପନ୍ୟାସିକ ଚରିତ୍ରରେ ହାସ୍ୟରସର ସୃଷ୍ଟି ଉପନ୍ୟାସ, ନାଟକ, କାବ୍ୟର ଉପାଦେୟତା ବୃଦ୍ଧି କରେ । ଡିକେନ୍ସଙ୍କ ପିକ୍ଉଇକ୍ ପେପାର୍ସ ପ୍ରଭୃତି ପଢ଼ିଲେ ତା'ର ପ୍ରମାଣ ମିଳେ । ସେକ୍ସପିଅର ମଧ୍ୟ ତାଙ୍କର ଅନେକ ନାଟକରେ ହାସ୍ୟରସର ଅବତାରଣା କରିଛନ୍ତି । ସେକ୍ସପିଅରଙ୍କ ନାଟ୍ୟାବଳୀର ଲୋକପ୍ରିୟତା ନିମନ୍ତେ ଏସବୁ ଅଳ୍ପ ଦାୟୀ ନୁହେ । ଇଂରାଜୀରେ ରିପ୍ ଭାନ୍ ଉଇନ୍କଲ, ଗଲିଭର୍ସ୍ ଟ୍ରାଭେଲସ୍ ପ୍ରଭୃତି ହାସ୍ୟକୌତୁକାତ୍ମକ ବିଖ୍ୟାତ ଗ୍ରନ୍ଥ ସେ ଭାଷାର ମହତ୍ତ୍ୱ ବୃଦ୍ଧି କରିଛି । ଏ ଯୁଗର ଇଂରାଜୀ ଲେଖକମାନଙ୍କ ମଧ୍ୟରେ ମାର୍କଟ୍ୱାଇନ ପ୍ରଧାନ ହାସ୍ୟରସ ସ୍ରଷ୍ଟା ବୋଲି ଖ୍ୟାତ । ଆଧୁନିକ ଲେଖକ ଉଡ୍ହାଉସ ହାସ୍ୟରସ ସୃଷ୍ଟିରେ କୃତିତ୍ୱ ଲାଭ କରିଅଛନ୍ତି । ଏହା ଛଡ଼ା କେବଳ ହାସ୍ୟ ଓ ବ୍ୟଙ୍ଗରସ ପରିବେଷଣ ନିମନ୍ତେ ଇଂରାଜୀ ଭାଷାରେ ବହୁତ ସାମୟିକ ପତ୍ର ବିଦ୍ୟମାନ ଏବଂ ସମାଜ ଓ ରାଜନୀତି ଉପରେ ସେମାନଙ୍କର ପ୍ରଭାବ ଅଳ୍ପ ନୁହେ । ଦିଲ୍ଲୀରୁ ପ୍ରକାଶିତ ବ୍ୟଙ୍ଗପତ୍ର ଶଙ୍କର୍ସ ଉଇକ୍ଲି (Shankar's Weekly) ଅଳ୍ପକାଳ ମଧ୍ୟରେ ତା'ର ମୌଳିକତା, ନିର୍ଭୀକତା ଓ ନିରପେକ୍ଷତା ସକାଶେ ଜନପ୍ରିୟ ହୋଇଉଠିଛି ।

ଭିନ୍ନ ଭିନ୍ନ ଆକାର, ପ୍ରକାର, ଭଙ୍ଗୀରେ ହାସ୍ୟରସ ପ୍ରକାଶ କରାଯାଇଥାଏ । ତଦନୁସାରେ ସେ ସବୁର ସ୍ୱତନ୍ତ୍ର ନାମକରଣ ହୋଇଛି, ଯଥା :—ପ୍ରହସନ, ତାମସା, ରଙ୍ଗ, ବ୍ୟଙ୍ଗ, ବିଦ୍ରୂପ, ଖେସା, ଶ୍ଳେଷ, ତମାଲ, ପହଳ, ଛଟା, ଟାହୁଲ, ଥଟା, ଟାପରା ଇତ୍ୟାଦି । ଇଂରାଜୀରେ ସେହିପରି ହାସ୍ୟରସର ବିଭିନ୍ନ ଶ୍ରେଣୀ ରହିଛି, ଯଥା—Comedy, Burlesque, Humour, Joke, Jest, Parody, Lampoon, Farce, Fun, Wit, Pun ଇତ୍ୟାଦି ।

ଆମ ପ୍ରତିବାସୀ ବଙ୍ଗଳା ସାହିତ୍ୟ ହାସ୍ୟରସ ବିଷୟରେ ଯେତେ ଉନ୍ନତ, ଦୁଃଖର କଥା, ଓଡ଼ିଆ ସାହିତ୍ୟ ତାହା ହୋଇ ପାରି ନାହିଁ । ବିଶ୍ୱକବି ରବୀନ୍ଦ୍ରନାଥଙ୍କର ବହୁତ ହାସ୍ୟବ୍ୟଙ୍ଗାତ୍ମକ କବିତା ରହିଛି । ଅମୃତଲାଲ, ପରଶୁରାମ, ଲଳିତକୁମାର ପ୍ରଭୃତି ଲେଖକମାନଙ୍କର ବହୁତ ହାସ୍ୟବହୁଳ ନାଟ୍ୟ ଓ ଚିତ୍ର ବ୍ୟଙ୍ଗସାହିତ୍ୟର ଶ୍ରୀବୃଦ୍ଧି କରିଛି । ଆଧୁନିକ ଲେଖକ ପ୍ରବୋଧଚନ୍ଦ୍ର, ଯାଯାବର ପ୍ରଭୃତିଙ୍କ ରଚିତ କଥାସାହିତ୍ୟରେ ହାସ୍ୟରସ-ଉତ୍ପାଦକ ଚରିତ୍ରମାନ ଅତି ସୁନ୍ଦର ଭାବରେ ଫୁଟି ଉଠିଛି ।

ଅନେକେ କହନ୍ତି, ହାସ୍ୟରସ ଉପଭୋଗ କରିବା ନିମନ୍ତେ ଗ୍ରାହକତା ଲୋଡ଼ା । ଯେଉଁ ବ୍ୟକ୍ତି ବା ଜାତି ଯେତେ ଅଧିକ ତାହା କରିପାରେ ସେ ବ୍ୟକ୍ତି ବା ଜାତି ସେତିକି ପ୍ରାଣବନ୍ତ । ହାସ୍ୟ ଓ ବ୍ୟଙ୍ଗ ଭିତରେ ଅନେକ ସମୟରେ ଯେଉଁ ଗଭୀର ସତ୍ୟ ପ୍ରଚ୍ଛନ୍ନ ହୋଇ ଥାଏ ତାହାକୁ ସମ୍ୟକ୍ ଉପଲବ୍ଧି କରିବା ପାଇଁ ଲୋକର ଯେଉଁ ଶକ୍ତି ଦରକାର ତାହା ସମସ୍ତଙ୍କଠାରେ ସମାନ ଭାବରେ ଥାଏ ନାହିଁ । ଅନୁଶୀଳନ, ଚର୍ଚ୍ଚା ଓ ବାତାବରଣ ସେ ଶକ୍ତିକୁ ଉଜ୍ଜୀବିତ କରିପାରେ । ବିଲାତ ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରେ ଯେତେ ବ୍ୟଙ୍ଗ ବିଦ୍ରୂପର ପ୍ରଚାର, ଆମ ଦେଶରେ ତାହା ନାହିଁ । ଅବଶ୍ୟ ପରନିନ୍ଦା ବା ପରକୁତ୍ସା କରିବାରେ ଆମେ ପଶ୍ଚାତ୍ପଦ ନୋହୁଁ । ସେ ସବୁ ଦେଶରେ ବ୍ୟକ୍ତିଗତ ବ୍ୟଙ୍ଗ ବିଦ୍ରୂପକୁ ଲୋକେ ଅତି ସହଜ ଓ ଲଘୁଭାବରେ ଗ୍ରହଣ କରି ଉଡ଼ାଇ ଦିଅନ୍ତି । ଲୋକେ ସେଥିରୁ ଆତ୍ମଶୋଧନର ଉପାଦାନ ଓ ସୂଚନା ଗ୍ରହଣ କରି ଚରିତ୍ର ଗଠନର ସୁବିଧା ପାଆନ୍ତି । ମାତ୍ର ଦୁଃଖର କଥା, ଆମ ଦେଶ ଓ ସମାଜରେ ଏହାର ଓଲଟା ସ୍ରୋତ । ଖବର କାଗଜରେ ବା ବ୍ୟଙ୍ଗପ୍ରଧାନ ପୁସ୍ତକ, ପତ୍ରିକାରେ କାହାର ପ୍ରତି କଟାକ୍ଷପାତ କରାଗଲେ ଲୋକେ ଆହୁରି ରାଗ ହୋଇ ଲେଖକ ବା ସମ୍ପାଦକଙ୍କର ଅନିଷ୍ଟ କରିବାର ଦେଖାଯାଏ । ଏହା ଏକ ବ୍ୟାଧିଗ୍ରସ୍ତ ମନୋବୃତ୍ତିର ଲକ୍ଷଣ ।

ପୂର୍ବକାଳରେ ରାଜାମାନଙ୍କ ଗହଣରେ ବିଦୂଷକ ବା ବୟସ୍ୟ ରହୁଥିଲେ । ଉପଯୁକ୍ତ ଓ ସୁଦକ୍ଷ ରସିକ ବ୍ୟକ୍ତିଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କରାଯାଉଥିଲା । କେବଳ ଆମ ଦେଶରେ ନୁହେ—ୟୁରୋପୀୟ ରାଜସଭାମାନଙ୍କରେ ମଧ୍ୟ ରାଜ-ବିଦୂଷକ (Court-jester) ରଖିବାର ବ୍ୟବସ୍ଥା ଥିଲା । ଏମାନେ କେବଳ ରାଜା ଓ ରାଜସଭ୍ୟମାନଙ୍କ ଚିତ୍ତବିନୋଦନର କାମ କରୁ ନ ଥିଲେ । ବଡ଼ ବଡ଼ ରାଜନୈତିକ ବିଷୟରେ ପରାମର୍ଶ ମଧ୍ୟ ଦେଉଥିଲେ । ଏହାଙ୍କ ଦ୍ୱାରା

ଅନେକ ଅନୁକୂଳ ମିଳୁ ନଥିବା ସମସ୍ୟାର ସହଜରେ ସମାଧାନ ହୋଇ ଯାଉଥିଲା ।

ନିଜ ଜୀବନ ବିଶ୍ଲେଷଣ କଲେ ଦେଖାଯାଏ, କୌଣସି ସଙ୍କଟମୟ ଅବସ୍ଥା ଉପସ୍ଥିତ ହୋଇଗଲେ ଯେଉଁ ବ୍ୟକ୍ତି ତାକୁ ହସି ଉଡ଼ାଇ ଦେଇପାରେ (Sportingly) ସେ ତହିଁରେ ପେଷି ନ ହୋଇ ଆତ୍ମରକ୍ଷା କରେ ଓ ସହଜରେ ସଙ୍କଟରୁ ଉଦ୍ଧରି ଯାଏ ।

ଆକବର ବାଦସାଙ୍କ ଦରବାରରେ ବୀରବଳ ଓ ମୋଲା-ଦୋପିଆଜାଙ୍କ ରଙ୍ଗବ୍ୟଙ୍ଗ ଇତିହାସପ୍ରସିଦ୍ଧ । ସେମାନଙ୍କ ହାତରୁ ସ୍ୱୟଂ ବାଦ୍‌ସା ମଧ୍ୟ ରକ୍ଷା ପାଉ ନଥିଲେ । ବଙ୍ଗଦେଶ କୃଷ୍ଣନଗରର ରାଜା କୃଷ୍ଣଚନ୍ଦ୍ରଙ୍କ ସଭାରେ ଥିବା ଗୋପାଳଭଣ୍ଡ ନାମକ ବିଦୂଷକଙ୍କ ହାସ୍ୟରସମୟ ଓ ଶିକ୍ଷାପ୍ରଦ କୀର୍ତ୍ତିକାହାଣୀ ସମସ୍ତଙ୍କୁ ଉଣା ଅଧିକେ ଜଣା ଥିବ । ସେ କାଳର ନରପତିଗଣ କବି, ଚିତ୍ରକାର, ସଙ୍ଗୀତକଳାବିତ୍, ରଙ୍ଗରାଜ, ପଣ୍ଡିତ, ଜ୍ୟୋତିଷ ପ୍ରଭୃତିଙ୍କୁ ଅତି ଆଦରରେ ରଖାଉଥିଲେ । ବିକ୍ରମାଦିତ୍ୟଙ୍କ ନବରତ୍ନ କଥା ସର୍ବଜନବିଦିତ । ଏହା କରିବାଦ୍ୱାରା ଜାତୀୟ ସାହିତ୍ୟ, ସଂସ୍କୃତି ଓ କଳା କେବଳ ଯେ ଜୀଇଁ ରହୁଥିଲା ତାହା ନୁହେଁ, ପରନ୍ତୁ ରାଜ-ସହାୟତା ଲଭି କରି ଉତ୍ତରୋତ୍ତର ଉନ୍ନତି ଲାଭ କରୁଥିଲା ଓ କବି, କଳାବିତ୍ ପ୍ରଭୃତି ବିଚକ୍ଷଣ ବ୍ୟକ୍ତିମାନେ ସମାଜରେ ଆଦୃତ ଓ ସମ୍ମାନିତ ହେଉଥିଲେ ।

ଓଡ଼ିଶାର ସାମନ୍ତରାଜଗଣ ନିଜ ଶକ୍ତି ଅନୁସାରେ ଗୁଣୀ ବ୍ୟକ୍ତିମାନଙ୍କର ଗୁଣର ଆଦର କରୁଥିଲେ । ଯୁଗଧର୍ମ-ବଳରେ ତାହା ଲୋପ ପାଇ ଆଜି ନିର୍ବାଣ ଲଭିଲାଣି । ଏବେ କଳା ଓ ସାହିତ୍ୟର ପରିପୋଷକ ଜନସାଧାରଣ । ଏଣୁ ଜନତା ଶିକ୍ଷିତ ଓ ଗୁଣଗ୍ରାହୀ ନହେବା ଯାକେ ଗୁଣୀ ଜନ ଯଥୋଚିତ ଉତ୍ସାହ ପାଇବା ଏକପ୍ରକାର ଅସମ୍ଭବ । କେବଳ ଭରସା ଏତିକି ଯେ ଦେଶ ସ୍ୱାଧୀନ ହୋଇଛି ଓ ସୁଦକ୍ଷ ଗୁଣୀ ଲୋକଙ୍କ ହାତରେ ରାଜକ୍ଷମତା ରହିଛି ।

ଓଡ଼ିଆ ଜନତା ଯେ ରସଗ୍ରାହୀ ନୁହନ୍ତି, ଏହା କହିବା ଅନୁଚିତ । ରସ ଆସ୍ୱାଦନ କରିବା ମାନବର ସହଜାତ ବୃତ୍ତି । ଆମ ଦେଶରେ ପ୍ରଚଳିତ ଯାତ୍ରା, ଲୀଳା, ସୁଆଙ୍ଗ ଆଦିରେ 'ଦୁଆରୀ' ରଖିବାର ରୀତି ଥିଲା । ଯାହା ଭିତରେ ଦୁଆରୀ, ଶଙ୍କରା ବା ଶଠାଳି ଜେନା, ହରଦମ ଜେନାର ଅଭିନୟ ସର୍ବପ୍ରଧାନ ବୋଲି ଗଣ୍ୟ ହେଉଥିଲା । ଯେଉଁ ଦଳର ଦୁଆରୀ ଯେତେ ସରସ ସେ ଦଳର ଖ୍ୟାତି ଥିଲା ତେତେ ଅଧିକ । ପୌରାଣିକ ବିଷୟରେ ଅଭିନୟ ଛଡ଼ା ବହୁ ପ୍ରକାର ସ୍ୱତନ୍ତ୍ର ପ୍ରହସନ ବା ସୁଆଙ୍ଗ ମଧ୍ୟ ଅଭିନୀତ ହେଉଥିଲା, ଯଥା :—କେଳା ସୁଆଙ୍ଗ, ବଇଦ ତାମସା, ମାଳି ତାମସା, ସାହେବ ତାମସା ଇତ୍ୟାଦି । ଏଥିଭିତରେ ହାସ୍ୟଚ୍ଛଳରେ ଅନେକ ସାମାଜିକ ଦୁର୍ନୀତି, ଦୁର୍ବଳତା ପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷଣ କରାହେଉଥିଲା ।



# କବି ଓ କବିତ୍ୱ

ଅନେକଙ୍କର ଧାରଣା, 'କବି' ବୋଇଲେ ଗୋଟାଏ ସଂସାର-ଛଡ଼ା ଅଦ୍ଭୁତ ଜନ୍ତୁ—ସାଧାରଣ ମନୁଷ୍ୟଠାରୁ ସ୍ୱତନ୍ତ୍ର, ପ୍ରକୃତି ପ୍ରବୃତ୍ତିରେ ଯାହାର ବହୁତ ତଫାତ୍। କେହି ବା ତାକୁ ସ୍ୱପ୍ନବିଳାସୀ ପାଗଳ ବୋଲି ହସେ, କେହି ବା ଦୂରଦର୍ଶୀ, ଜ୍ଞାନୀ, କଳାକାର ବୋଲି ସମ୍ମାନ, ଶ୍ରଦ୍ଧା ଓ ସହାନୁଭୂତି ଦେଖାଏ। କହିବାକୁ ଗଲେ, କବି ଲୋକଙ୍କଠାରୁ ପ୍ରୀତି, ପ୍ରଶଂସା ପାଏ ଯେତିକ, ଆଉ ଦଳେ ବ୍ୟକ୍ତିଙ୍କ ନିନ୍ଦା, ଟାପରା ସେଠୁଁ ଅଧିକ। କିନ୍ତୁ 'କବି' ଯେ, ସେ ଏସବୁ ନିନ୍ଦା ପ୍ରଶଂସାକୁ ଖାତିର କରେନାହିଁ, ସେ ଲେଖି ଚାଲିଯାଏ ଖାଲି ଡିପ ନ ମାନି—ଆପଣାର ଖିଆଲ, ଆପଣାର ମନ ମର୍ଜିରେ। କବିର ଏଇଟା ବିଶେଷତ୍ୱ। ଯାହାର ଲେଖା ପରର ଅପେକ୍ଷା ରଖେ, ପରର ମନ ଯୋଗାଏ, ସେ କଳମବିକ୍ରୀ ହୋଇପାରେ, ମାତ୍ର ଅସଲ୍ କବି ନୁହେଁ।

କବିକୁ ଯାହା ଦିଶେ, ଯାହାକୁ ସେ ସତ୍ୟ ବୋଲି ଅନୁଭବ କରେ, ତାକୁ ଘୋଡ଼ାଇ ପାରେ ନାହିଁ ସେ। ଘୋଡ଼ାଇବାକୁ ପଡ଼ିଲେ ସେ ଗୁଣ୍ଠି ପିଣ୍ଠି ହୋଇ ମରେ; ବୁକୁ ଭିତରେ ଆଉଟ୍ ପାଉଟ୍ ହୁଏ। ସତେକି ଛାତି ଫାଟିଯିବ ତା'ର। ସେଥିପାଇଁ କବି ନିର୍ଭୀକ, କବି ସ୍ପଷ୍ଟବାଦୀ। ରାଜନୀତିକ ବେପାରୀ ବା ଓକିଲଙ୍କ ଭଳି କବିକୁ ପେଞ୍ଚ ଖେଳ ଆସେ ନାହିଁ, ଛକି ମୁଦ ଦେଇ କଥା ବାଗେଇ ଆସେ ନାହିଁ। ଅଥଚ କବି କଥାଟାକୁ ସିଧା ନ କହି ବାଗରେ ପକାଇ କୁହେ। ଏଇଟାହିଁ ତା'ର କଳା। ତା ମନକୁ ଯାହା ଯେତେବେଳେ ଆସିଯାଏ, ବ୍ରହ୍ମା ବିଜାବିଲେଇଲ ପରି ସେଇଟା ତା ପକ୍ଷରେ 'ବେଦ', ସେଇଟାହିଁ ନିରାଟ ସତ୍ୟ। ସେ ସତ୍ୟକୁ ପ୍ରକଟ ନ କରିବା ଯାଏ ସେ ଅନୁଭବ କରୁଥାଏ ଗୋଟାଏ ଅସ୍ୱସ୍ତି, ଗୋଟାଏ ଗର୍ଭବେଦନାର ଅସ୍ୱସ୍ତି। ସେଥିପାଇଁ ଯେ କୌଣସି ଦୁଃଖ, ଅତ୍ୟାଚାର, ନିର୍ଯ୍ୟାତନା ସହିବାକୁ ପଛଭର ହୁଏନାହିଁ କବି। ବରଂ ସେଥିରେ ପାଏ ସେ ଗୋଟାଏ ଆତ୍ମ-ପ୍ରସାଦ। ନିଜର ଆସ୍ଥା ବା ବିଶ୍ୱାସ ନ ଥିବା କୌଣସି ବ୍ୟକ୍ତିଗତ ବା ଦଳଗତ ମତବାଦକୁ ସେ ଛନ୍ଦୋବଦ୍ଧ କରି ପ୍ରକାଶ କରିବାକୁ କେବେ ସୁଖ ପାଏ ନାହିଁ। ଏପରିକି ତାହା କରିବାକୁ ଗଲେ ତା'ର ଲେଖନୀ ଅଡ଼ି ବସେ, ବିବେକ ବିଦ୍ରୋହ କରି ଉଠେ। ଏହି ହିସାବରେ ବିଚାର କଲେ 'କବି' ଆତ୍ମକେନ୍ଦ୍ରୀ ବା ଅହଂକାରୀ।

ତଥାପି କବି ମଣିଷ। ମଣିଷର ସୁଖ ଦୁଃଖ, ମଣିଷର ଆଶା ଅଭିଳାଷ, ମଣିଷର କାମ କ୍ରୋଧ, ଲୋଭ ମୋହ, ଈର୍ଷା ଦ୍ୱେଷ, ହର୍ଷ ବିଷାଦ ସବୁ ସେ ଅନୁଭବ କରେ। ସାଧାରଣ ମଣିଷ ଭଳି ସେ ଖାଏ, ପିଏ, ଶୁଏ, ହସେ, କାନ୍ଦେ—ଜୀବ ଧର୍ମର ଅଧୀନ ହୋଇ। ଏହି ବେଳରେ କବି ଜଣେ ଏହି ମାଟିର ମଣିଷ ମାତ୍ର। କିନ୍ତୁ କାଳସୀର ମଙ୍ଗଳା ପ୍ରସନ୍ନ ହେଲା ପରି ବା କଞ୍ଚା ଡାହାଣୀର ଭୋଜନ-ବେଳ ପରି ଏପରି ଗୋଟାଏ ଗୋଟାଏ ବିଶେଷ ଅଛି, ଯେତେବେଳେ କବି ଏହି ସ୍ଥୂଳ ଜଗତର ବିହ୍ୱଳ ପବନ ଗୁଡ଼ି ଊର୍ଦ୍ଧ୍ୱକୁ ଉଠିଯାଏ ଏକ ସୂକ୍ଷ୍ମତର ବାୟୁମଣ୍ଡଳକୁ ଏବଂ ସେଠି ବିଚରଣ କରୁଥାଏ ଅଜାଣତରେ, ଅଣାୟତ୍ତରେ। ସବୁ ତା'ର ଯାଏ ହଜି—ଏକ ଅପାର୍ଥିବ ଆବେଗର ତରଙ୍ଗଭଙ୍ଗରେ। ସେତେବେଳେ ସେ ତନ୍ମୟ, ଆବିଷ୍ଟ, ଆତ୍ମହରା, ଉନ୍ମାଦ।

ଭାବପ୍ରବଣତା କବିର ପ୍ରକୃତି; ସେଥିରେ ବିଭୋର ହୋଇ ବାସ୍ତବତାକୁ ଉପେକ୍ଷା କରେ ବୋଲି ଲୌକିକ ସାଫଲ୍ୟ ଲାଭ କରିବା କବି ପକ୍ଷେ ଦୁଷ୍କର। ସେଥିପାଇଁ ଦୁନିଆରେ ଲୋକେ କବିକୁ 'ପଦ୍ମଭୃଙ୍ଗ' ବା 'ସ୍ୱପ୍ନ-ବିଳାସୀ' ବୋଲି ଟାହୁଲି କରିବାକୁ ଛାଡ଼ନ୍ତି ନାହିଁ। କବି କିନ୍ତୁ ଏହାକୁ ବେଖାତିର କରି ଆତ୍ମବିଭୋର ଅବସ୍ଥାରେ ଆପଣାର ପନ୍ଥା ଅନୁସରଣ କରି ଚାଲେ। ସେଥିରେ ତା'ର ଆନନ୍ଦ, ତାର ତୃପ୍ତି। ଫଳରେ ଦିନୁଦିନ ବଢ଼ି ଚାଲିଥାଏ ତା'ର ଏହି ବିଫଳତା। ଅବିରାମ ଆଘାତରେ ଦଳିତ, ମଥିତ, ପିଷ୍ଟ ହୋଇ ହୋଇ ଅନ୍ତର ତା'ର ଯାଏ ଦ୍ରବ ହୋଇ। ସଂସାର-ତାପରେ ଦହି ଦହି କେବେ ପଡ଼େ ଉଛୁଳି, ଦୁଃଖ ସହି ସହି କେବେ ପଡ଼େ ଉଚ୍ଛୁଳି। ଏହି ଉଚ୍ଛୁଳା ଅବସ୍ଥାରେ ହିଁ ଫୁଟିଉଠେ କବିର କବିତ୍ୱ ଅମୃତର ସ୍ନିଗ୍ଧ ଧାରା ସିଞ୍ଚନ କରି—ଏକା କବିପ୍ରାଣରେ ନୁହେଁ, ଜଗତର କୋଟି ପିପାସିତ ଅନ୍ତର ଭିତରେ। ଏଥିରେ କେତେ ଯେ ଜୀର୍ଣ୍ଣ ଅବସନ୍ନ ଆତ୍ମା ଶାନ୍ତ ଶୀତଳ ହୋଇଯାଏ, ତାହା କିଏ କହିବ!

ଦୁଃଖ, ବେଦନା ଯେ କବିର ପ୍ରାପ୍ୟ, ଖାଲି ସେତିକି ନୁହେଁ, କାମ୍ୟ ମଧ୍ୟ।

କବିର ଅନ୍ତର-ବେଦନା ଯେତେବେଳେ ତା'ର ସହନ-ଶକ୍ତିକୁ ବଳକି ଉଠେ, ସେ କହିବାକୁ ଚାହେଁ ଆତ୍ମପ୍ରକାଶ—ବ୍ୟାକୁଳ ହୋଇ। ଏହି ବ୍ୟାକୁଳତାହିଁ କବିତ୍ୱ।

ପ୍ରଶଂସା ବା ପୁରସ୍କାର କବିକୁ ଖୁସି କରାଏ ଓ ଉତ୍ସାହ ଦିଏ; କିନ୍ତୁ କେବଳ ଏଇଥିପାଇଁ କବି ରଚନା କରେନାହିଁ । ବେଦନାତୁର ବ୍ୟକ୍ତି ଯେପରି ଲୋଡ଼ି ବୁଲେ ସମବ୍ୟଥୀ, ବ୍ୟଥିତ କବି ସେହିପରି ଦରଣି ହୁଏ ତା'ର ବେଦନାର ସାଥି—ଯେ ମମତା ଦେଇ, ଦରଦ ଦେଇ ଅନୁଭବ କରିବ ତା'ର ବେଦନାଟିକୁ । ବୁନ୍ଦାଏ ଅଶ୍ରୁ, ଟୋପାଏ କରୁଣା, ଗୋଟାଏ ତପ୍ତ ଶ୍ୱାସ—ଏହି ଟିକକ ଆଶା ।

ଭାବପ୍ରବଣତା ଅନେକଙ୍କର ଥାଏ; କିନ୍ତୁ ଆତ୍ମପ୍ରକାଶର ସ୍ତରକୁ ନ ଉଠିବା ଯାକେ କବିତ୍ୱର ସ୍ଫୁରଣ ହୁଏ ନାହିଁ । କବି ଭାଷା ଓ ଛନ୍ଦର ପରଖ ଦେଇ ଯେତେବେଳେ ତାର ଅନ୍ତସ୍ଥ ଭାବାବଳୀକୁ ରୂପାୟିତ କରେ, ସେହି ରସାତ୍ମକ ସମ୍ମିଶ୍ରଣରୁ ଉଦ୍ଭବ ହୁଏ ଏକ ଅଭିନବ ବସ୍ତୁ—ଯାହାକୁ କହନ୍ତି ରସ । ଏହି ରସରେ ଥାଏ ମାଧୁର୍ଯ୍ୟ ସଙ୍ଗରେ ମାଦକତା; ଏହାର ଆସ୍ୱାଦନରେ ରହିଥାଏ ଆନନ୍ଦ, ଆରାମ ଆଉ ତୃପ୍ତି ।

ରୂପସୃଷ୍ଟିରେ ସ୍ରଷ୍ଟାର ଅପାର ଆନନ୍ଦ । ସ୍ୱୟଂ ଭଗବାନ ତାଙ୍କ ସୃଷ୍ଟିର ବିଚିତ୍ରତା ମଧ୍ୟରେ ନିଜକୁ ପ୍ରକାଶ କରି ସୁଖ ପାଆନ୍ତି । ସେଥିପାଇଁ ସେ ରସରାଜ, ଲୀଳାମୟ, ଚିଦାନନ୍ଦ ବିଗ୍ରହ । କବି ଯେତେବେଳେ ବିଭୋର ହୋଇ ଉଠେ, ତା'ର କ୍ଷୁଦ୍ରତା, ତା'ର ବ୍ୟକ୍ତିତ୍ୱ, ତା'ର ମାନବତ୍ୱ ସବୁ ଯାଏ ଭାବ ସମୁଦ୍ରରେ ଭାସି—କ୍ଷଣକ ପାଇଁ ହେଲେ ଆସିଯାଏ ତା'ର ଦେବତ୍ୱ । ସେତିକିବେଳେ ସେ ଦ୍ରଷ୍ଟା (Seer), ସେ ସ୍ରଷ୍ଟା (Creator), ସେ କବି । ସେହି ବେଳଟା ଗଡ଼ିଗଲେ ସେ ତା'ର ସ୍ୱସ୍ଥାନକୁ ଲେଉଟି ଆସି ପୁଣି ହୋଇଯାଏ ଜଗତର ଜୀବ, ଦୁନିଆର ମଣିଷ ।

କବି ଆପଣାକୁ ବିବର୍ତ୍ତିତ କରି ନୂଆ ନୂଆ ରୂପ ପ୍ରଦାନ କରେ । ଆପଣାର ସୃଷ୍ଟ ପୁଣ୍ୟାତ୍ମାଠାରୁ ପାପିଷ୍ଠ ପର୍ଯ୍ୟନ୍ତ ସମସ୍ତ ଚରିତ୍ରରେ ସେ ଆପଣାକୁ ହିଁ ପ୍ରତିବିମ୍ବିତ କରେ ଏବଂ ସେଥିରେ ଆତ୍ମସ୍ୱରୂପ ଦର୍ଶନ କରି ମୁଗ୍ଧ ହେଉଥାଏ ।

ଭଗବାନ ନିଜେ ମହାକବି; ତାଙ୍କର ସୃଷ୍ଟିଲୀଳା ଅନନ୍ତ, ଅନିର୍ଦ୍ଦିଷ୍ଟ, ଅପରିସୀମ । କବି କ୍ଷୁଦ୍ର ଜୀବ ମାତ୍ର; ତା'ର ସୃଷ୍ଟି କ୍ଷଣିକ, ସାନ୍ତ ଓ ସୀମାବଦ୍ଧ । ଯେତେକ୍ଷଣ ସେ କବି ହୋଇ ରହେ, ସେତିକି କ୍ଷଣ ମାତ୍ର ତାହାଠାରେ ଭଗବତ୍‌ସତ୍ତାର ବିକାଶ । ତେଣିକି ସେ ମୃତ୍ୟୁ, ଜରା ବ୍ୟାଧିଜର୍ଜ୍ଜରିତ, ଅଭାବ, ଅଶାନ୍ତି ଓ ଜଞ୍ଜାଳପ୍ରପୀଡ଼ିତ ପାନସ୍ଥିକ ଘୃଣ ମନୁଷ୍ୟ ।

କବି ତା'ର ଅନ୍ତରର ସମସ୍ତ ଅନୁଭୂତିକୁ ଠୁଳ କରି, ତହିଁରେ କାରୁଣ୍ୟମୟ ଆବେଗର ପୁଟ ଚଢ଼ାଇ ଯେଉଁ ମନୋମୟ ମୂର୍ତ୍ତିଟି ଗଢ଼େ ତାକୁ କଳାବିଭୂଷିତ କରି ଦୁନିଆ ଆଗରେ ଛିଡ଼ା କରାଇ ଜଗତକୁ କରେ ଆହ୍ୱାନ, କରେ ଆମନ୍ତ୍ରଣ, ବାଢ଼େ ଆବେଦନ । ଏତିକିରେ ତା'ର ଆନନ୍ଦ, ଏହାରି ଦ୍ୱାରା କବି ଆପଣାକୁ ପ୍ରସାରିତ କରିଦିଏ ମହାବିଶ୍ୱରେ ମିଶାଇ ।

କବି ତା'ର ଜୀବନର ସମସ୍ତ ବେଦନାକୁ ଆହରଣ କରି ବିଶ୍ୱବେଦନାରେ ଦେଖେ ତା'ର ପ୍ରତିଚ୍ଛାୟା । ପୁଣି ବିଶ୍ୱର ବେଦନାକୁ ଅନୁଭବ କରେ ଆପଣାର ଅନ୍ତର ଭିତରେ । ଏହାର ତୀବ୍ର ମଧୁର ଆସ୍ୱାଦନରେ ସେ ହୋଇଯାଏ ବିଭୋର । କିନ୍ତୁ ସେହି ଅବ୍ୟକ୍ତ ବେଦନାର ହେତୁ, ସ୍ଥିତି ବା ସ୍ୱରୂପ ବୁଝି ନପାରି ତା'ର ଯେଉଁ ଅସ୍ୱସ୍ତି, ଯେଉଁ ଆଲୋଡ଼ନ ଆସେ ସେଥିରେ ସେ ବାଉଳା ହୋଇ ଖୋଜିବୁଲେ କାହିଁ, କାହିଁ, କାହିଁ ? ଏହି ଜିଜ୍ଞାସା, ଏହି ବ୍ୟସ୍ତତାରେ ବିକଶିତ ହୋଇଉଠେ କବିର ଭାବୋନ୍ମାଦ । ଅନ୍ତରର ଅବରୁଦ୍ଧ ଭାବରାଶି ଅସମ୍ଭାଳ ହୋଇ ଉଚ୍ଛ୍ୱସିତ ହୁଏ ଛନ୍ଦୋବଦ୍ଧ ବାଣୀର ବହନରେ । ଏଥିରେ ସେ ପାଏ ଶାନ୍ତି, ପାଏ ଆରାମ, ପାଏ ଆନନ୍ଦ । କିନ୍ତୁ ଏହି ଆନନ୍ଦ ସ୍ଥାୟୀ ହୋଇ ରହି ପାରେ ନାହିଁ; କ୍ଷଣ କ୍ଷଣକେ ଅପସରି ଯାଉଥାଏ । ବ୍ୟାକୁଳ କବି ସେହି ହଜିଲା ଧନକୁ ଦରଣି ବୁଲେ ଅଥାନିଆ ହୋଇ । ଏହି ଦରଣିବାର ଯେଉଁ ପ୍ରୟାସ, ଯେଉଁ ସଂଗ୍ରାମ, ଯେଉଁ ଆକୁଳତା, ତାହାହିଁ କବିକୁ କରିଦିଏ ପାଗଳ । ଏହି ଭାବ ଓ ଅଭାବର ଦ୍ୱନ୍ଦ୍ୱ ଭିତରେ ସେ ଅନୁଭବ କରୁଥାଏ ଗୋଟାଏ ଅଜଣା, ଅନୁପମେୟ ସୁଆଦ, ଯାହା ବର୍ଣ୍ଣନାର ଅତୀତ ଓ ଭାଷାର ଅଗମ୍ୟ; ଯାହା ନିଜେ କବି ଛଡ଼ା ଅନ୍ୟ କେହି ବୁଝିପାରେ ନାହିଁ ।

ଦୁଃଖ, ଦୈନ୍ୟ, ଦୁର୍ଭାଗ୍ୟ କବିଜୀବନର ଚିର ସହଚର ବୋଲି ଅନେକେ କହନ୍ତି । ଏକଥା ପ୍ରକୃତରେ ସତ୍ୟ । ଦୁଃଖ ଦୁର୍ଦ୍ଦଶାରେ ନ ପଡ଼ି, ବିଳାସ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ବୁଡ଼ି ରହି କବି ହେବା କ୍ୱଚିତ୍ ଦେଖାଯାଏ । ବାହାରକୁ କେହି ସୌଭାଗ୍ୟବାନ୍ ଜଣାଗଲେ ମଧ୍ୟ ଭିତରର କଥା ଜାଣିବା ସହଜ ନୁହେଁ । କବିର ରଚନାରେ ତାହାର ପ୍ରକଟ ହୁଏ । ମନେହୁଏ, ସରସ୍ୱତୀଙ୍କ ପୂଜାରୀ ପ୍ରତି ଲକ୍ଷ୍ମୀଙ୍କର କରୁଣା ଊଣା ହେବା ସ୍ୱାଭାବିକ । କିନ୍ତୁ ଏଥିପାଇଁ କବି ହିଁ ମୁଖ୍ୟତଃ ଦାୟୀ । ଦୁଃଖ, ଦୁର୍ଭାଗ୍ୟ, ବିଫଳତା ମଧ୍ୟରେ କବି ଯେଉଁ ମାଧୁର୍ଯ୍ୟର ସ୍ୱପ୍ନ ଦେଖେ, ତାହାରି ଲୋଭରେ ହୁଏତ ସେ ତା'ର ଅବଚେତନ ମନଭିତରେ ଦୁଃଖ ଦୁର୍ଭାଗ୍ୟକୁ ଲୋଡ଼ୁଥାଏ ।

ଅବଚେତନାରେ ଥିବା ବାସନା, ଅଭିଳାଷ ବା ଇଚ୍ଛାର ଅଦମ୍ୟ ଶକ୍ତି ଓ ଅପ୍ରତିହତ ପ୍ରଭାବ ପ୍ରମାଣସିଦ୍ଧ । ସମ୍ଭବତଃ ଏହି ହେତୁ କବି ଦୁଃଖ ଦୁର୍ଭାଗ୍ୟକୁ ଅବଚେତନରେ ଆମନ୍ତ୍ରଣ କରୁଥାଏ ଆପଣାର ଜୀବନକୁ ମଧୁମୟ କରିବା ନିମନ୍ତେ । ବାହାରେ ଦେଖି-ବାକୁ ଅଭିଶାପ ହେଲେ ମଧ୍ୟ, କବି ପ୍ରତି ଭଗବାନଙ୍କର ଏହା ଗୋଟିଏ ପ୍ରଚ୍ଛନ୍ନ ଆଶୀର୍ବାଦ ।

ଅନେକଙ୍କର ମତରେ କବିଗୁଡ଼ାକ ବୋକା, ବାସ୍ତବବୁଦ୍ଧି-ହୀନ ମନୁଷ୍ୟ । ବାସ୍ତବତାର ଦୂରରେ ରହି ସେମାନେ ପଦେପଦେ ପ୍ରତାରିତ ହୁଅନ୍ତି । କଥାଟା ନିହାତି ମିଛ ନୁହେଁ । କବି ଯେ ନିର୍ବୋଧ, ତାହା ନୁହେଁ । କବିତ୍ୱବୁଦ୍ଧି ଓ ବୈଷୟିକ ଚତୁରତା ସ୍ୱତନ୍ତ୍ର ଗୁଣ । କଳ୍ପନା, ଅନ୍ତର୍ଦୃଷ୍ଟି, ଅନୁଭୂତି ଓ ବିଚାରବୁଦ୍ଧି କବିର ପ୍ରକୃତିଗତ । ମାତ୍ର ସେ ବିଚାର ସରିଯାଏ ଚିନ୍ତା ଭିତରେ । ସେ ବୁଦ୍ଧି ହଜିଯାଏ ସ୍ୱପ୍ନ ରଚନାରେ । ପରୋପଦେଶେ ପାଣ୍ଡିତ୍ୟ ଦେଖାଇବାରେ କବି ଧୁରନ୍ଧର । ତା'ର ଭାବପ୍ରବଣତା, ତା'ର ଆଦର୍ଶ, ତା'ର ସରଳତା, ଉଦାରତା, ଉଦାସୀନତା, କବିର ବୁଦ୍ଧିକୁ ବାସ୍ତବ କ୍ଷେତ୍ରରେ ନିୟୋଜିତ କରିବାବେଳକୁ ହୋଇପାଏ ଅବସନ୍ନ ଓ ପରାସ୍ତ ।

କେହି କେହି କହନ୍ତି, କବି ମାତ୍ରକେ ବିଳାସପ୍ରିୟ; ଏପରିକି ବହୁକ୍ଷେତ୍ରରେ ଲମ୍ପଟ । କବି କେବଳ ରସସ୍ରଷ୍ଟା ନୁହେ, ରସଭୋକ୍ତା ମଧ୍ୟ । ରସିକତା ଓ ଲମ୍ପଟ୍ୟ ଏକ କଥା ନୁହେଁ । କବିର ଚିତ୍ତ ସଦା କୁତୂହଳୀ । ସବୁ କଥା ଜାଣିବାକୁ ତା'ର ଚିର ଆଗ୍ରହ । ନାନା ରସ ଆସ୍ୱାଦନ କରିବାରେ ତା'ର ଯେଉଁ ଚେଷ୍ଟା ତାହାହିଁ କବିକୁ ମଧୁକର ପରି 'ଚଖା' ପାଲଟାଇଦିଏ । ଏହି ହେତୁ ବୋଧହୁଏ ଏହି ଅଖ୍ୟାତି ତାକୁ ସହିବାକୁ ପଡ଼େ ।

କବି ଯେଉଁ ରସ ସୃଷ୍ଟି କରେ, ତାକୁ ନିଜେ ଆସ୍ୱାଦନ କରି ସୁଖୀ ହୁଏ । ଏଥିରେ ଆନନ୍ଦ ତା'ର ଦୁଇ ଗୁଣ—ସ୍ରଷ୍ଟାର ଆନନ୍ଦ ସହିତ ଭୋକ୍ତାର ଆନନ୍ଦ । ତଥାପି କବିର ପିପାସା ମେଣ୍ଟେ ନାହିଁ; ସେ ଆହୁରି ଲୋଡ଼ିଥାଏ । ଏଥିପାଇଁ ସ୍ୱସୃଷ୍ଟ ରସକୁ ବିଶ୍ୱବାସୀଙ୍କୁ ଚଖାଇ ସେ ଲାଭ କରିବାକୁ ଚାହେଁ ତିନ୍ତୁ ବଳି ଆନନ୍ଦ ଯାହା ପୂର୍ବଠାରୁ ମଧୁରତର ଓ ଉନ୍ମାଦକର । ଏଥିପାଇଁ କବିର ଆତ୍ମ-ପ୍ରକାଶ ।

କବି କଳ୍ପନା ସାହାଯ୍ୟରେ ଯେଉଁ ସମସ୍ତ ରୂପ ସୃଷ୍ଟି କରେ, ତହିଁ ମଧ୍ୟରେ ସେ ଆପଣାକୁ ପୂର୍ଣ୍ଣଭାବେ ବିଲୀନ କରିଦେଇ ରଙ୍ଗମଞ୍ଚର ଅଭିନେତାରୂପେ ଉପଭୋଗ କରେ । ଏହି ବିଚିତ୍ର ଅନୁଭୂତି ତାକୁ ସଞ୍ଜୀବନୀ ସୁଧା ପିଆଇ ତା'ର ଜୀବନ ବଞ୍ଚାଇ ରଖେ । ଏତିକ ନୋହୁଥିଲେ, ଦୁଃଖ ତାପ ନିଷ୍ପୀଡ଼ନରେ ସେ ତିଷ୍ଠି ପାରୁ ନଥାନ୍ତା ପରା ।

କବି ଯେବେ ସର୍ବଦା ଭାବାବେଶରେ ବୁଡ଼ି ରହନ୍ତା, ତେବେ ମଧ୍ୟ ସେ ଜୀଇ ପାରନ୍ତା ନାହିଁ । ସେଥିପାଇଁ ସେ ମଝିରେ ମଝିରେ କଳ୍ପଲୋକ ଛାଡ଼ି ସାଧାରଣ ସ୍ତରକୁ ଖସି ଆସିବାକୁ ବାଧ୍ୟ ହୁଏ । ଏତିକି ତା'ର ଅବସର ଓ ଆତ୍ମରକ୍ଷାର ଉପାୟ । ଏଥିପାଇଁ କବି ମାନବ ନୁହେଁ, କିମ୍ବା ଦେବତା ବି ନୁହେଁ । କବିର ଜୀବନରେ ଦେବତ୍ୱ ଓ ମାନବତ୍ୱର କଲ୍ୟାଣକର ସମାବେଶ; ଦେବତ୍ୱ ଓ ମାନବତ୍ୱର ମଧୁର ସମନ୍ୱୟରେ ହିଁ କବିତ୍ୱ ।



# ଓଡ଼ିଆ ସଙ୍ଗୀତ

ତାଳ, ମାନ, ଲୟଯୁକ୍ତ ନୃତ୍ୟ, ଗୀତ, ବାଦ୍ୟର ସମାବେଶକୁ ସଙ୍ଗୀତ ବୋଲଯାଏ । ଅବଶ୍ୟ ଘୋଷା ଓ ପଦଯୁକ୍ତ କ୍ଷୁଦ୍ର କ୍ଷୁଦ୍ର ଗାୟନୋପଯୋଗୀ ରଚନାକୁ ଯେ କେତେକ ଲୋକ ସଙ୍ଗୀତ ବୋଲି କହନ୍ତି, ତାହା ସୀମାବଦ୍ଧ ଅର୍ଥରେ, ଯଥା :— ସଙ୍ଗୀତ ସାଗର, ସଙ୍ଗୀତ କୁସୁମ, ଉପେନ୍ଦ୍ରଭଞ୍ଜ ସଙ୍ଗୀତ ଇତ୍ୟାଦି । ଯେ କୌଣସି ଶବ୍ଦର ସୁନ୍ଦର, ସୁମଧୁର, ସମଞ୍ଜସ ଓ ସୁନିର୍ଦ୍ଦିଷ୍ଟ ବିକାଶ ନ ହେଲେ ତାହା ସଙ୍ଗୀତ ଆଖ୍ୟା ଧାରଣ କରି ପାରେ ନାହିଁ । ବରଂ ତାହାକୁ ଗୋଳମାଳ ବୋଲି କହିଲେ ଚଳେ । ସଙ୍ଗୀତର ଗୋଟିଏ ଏପରି ମୋହିନୀ ଶକ୍ତି ଅଛି ଯେ ତାହା ବିହିତ ଭାବରେ ଅନୁଷ୍ଠିତ ହେଲେ ମାନବ କାହିଁକି, ଯେ କୌଣସି ଜୀବର ଅନ୍ତଃସ୍ଥଳ ଭେଦ କରି ତାହାକୁ ମୁଗ୍ଧ, ତନ୍ମୟ କରିଥାଏ । ବ୍ୟାଧ ବଂଶୀରେ ଆକୃଷ୍ଟ ମୃଗର କଥା ସମସ୍ତେ ଶୁଣିଅଛନ୍ତି ଏବଂ ଟେଲା ତୁମୁଡ଼ିକୁ ନିବିଷ୍ଟ ଚିତ୍ତରେ ଶୁଣୁଥିବା ସାପର ଖେଳ ନିତ୍ୟ ଆମ୍ଭେମାନେ ଦେଖିବାକୁ ପାଉଁ । କ୍ଷୁଦ୍ର ଶିଶୁ ଯେ ନାନାବାୟା ଗୀତରେ ଲୀନ ହୋଇ ଶେଯରେ ଶୋଇ-ପଡ଼େ ତାହା ମଧ୍ୟ ସଙ୍ଗୀତର ପ୍ରଭାବ । ଏହି ସଙ୍ଗୀତର ତୀବ୍ର ଆକର୍ଷଣ ଦିନେ ସରଳା ଗୋପବାଳାମାନଙ୍କୁ କୁଳ, ଶୀଳ, ଦେହାତ୍ମବୋଧ ଭୁଲାଇ କୃଷ୍ଣ-ଉନ୍ମାଦିନୀ କରାଇଥିଲା । ସଙ୍ଗୀତ-ପ୍ରିୟତା ମାନବ-ହୃଦୟର ଗୋଟିଏ ସ୍ୱାଭାବିକ ବୃତ୍ତି । ପୃଥିବୀରେ ଏପରି କୌଣସି ଜନସମାଜ ନାହିଁ ଯାହାର ସ୍ୱତନ୍ତ୍ର ସଙ୍ଗୀତର ଧାରା ନ ଅଛି । ଯାହାର ଯେ ସଙ୍ଗୀତ ତାହା ତା ନିକଟରେ ଅତି ପ୍ରିୟ ବସ୍ତୁ ।

ଆମୋଦପ୍ରମୋଦ ମନୁଷ୍ୟର ସ୍ୱଭାବ ଏବଂ ମନୁଷ୍ୟଜୀବନର ଗୋଟିଏ ପ୍ରଧାନ ପ୍ରୟୋଜନ । ସଙ୍ଗୀତ ହିଁ ଏକମାତ୍ର ନିର୍ଦ୍ଦୋଷ ଓ ଅନାବିଳ ଆମୋଦ । ଏହା ହୃଦୟର ସରସତା ସମ୍ପାଦନ କରେ । ସଙ୍ଗୀତର ମଙ୍ଗଳମୟ ପ୍ରଭାବ ମାନବର ଶରୀର ଉପରେ ମଧ୍ୟ କମ୍ ନୁହେଁ । ନିୟମିତ ସଙ୍ଗୀତସେବା ଓ ଅନୁଶୀଳନ ଦ୍ୱାରା ଅନେକେ ରୋଗମୁକ୍ତ ହେବାର ଶୁଣାଯାଇଅଛି ଏବଂ ନିତ୍ୟକ୍ଷୟମାନ ସ୍ନାୟୁର ପୁଷ୍ଟି ସାଧନ କରି ମନୁଷ୍ୟର ସୁଖ ଓ ଆୟୁ ବୃଦ୍ଧି କରାଇବା ସଙ୍ଗୀତର ଗୋଟିଏ ପ୍ରଧାନ ଗୁଣ ବୋଲି ବୈଜ୍ଞାନିକମାନେ କହନ୍ତି । "ଗାନାତ୍ ପରତରଂ ନହି ।"

ଯେତେ ପ୍ରକାର କଳାବିଦ୍ୟା ଅଛି ସେହିମାନଙ୍କ ମଧ୍ୟରେ ସଙ୍ଗୀତ ଆଦି କଳା । କବିତା ବା ଚିତ୍ରବିଦ୍ୟା ତାହା ନୁହେଁ । ସମସ୍ତ ଜ୍ଞାନ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବତା ବୀଣା-ପୁସ୍ତକ-ରଞ୍ଜିତ-ହସ୍ତା । ସରସ୍ୱତୀଙ୍କ ହସ୍ତରେ ଆଗେ ବୀଣା, ତାହା ଉତ୍ତାରୁ ପୁସ୍ତକ । ସେ ସ୍ୱୟଂ ବାକ୍ୟ ଦେବୀ । ଏହି ବାକ୍ୟ ଅଡ଼ୁଆ କଳଗୋଳ ନୁହେଁ; ସୁସଙ୍ଗତ, ସୁଶ୍ରାବ୍ୟ ବାକ୍ୟ, ଅର୍ଥାତ୍ ସଙ୍ଗୀତ ।

ଅନେକ ଲୋକ ଅଛନ୍ତି ଯେଉଁମାନେ କଥା କହିଲେ ଶୁଣିବା ଲୋକେ ବିରକ୍ତ ହୁଅନ୍ତି କିମ୍ବା ଅନେକ ଲୋକ ଏପରି କଥା କହନ୍ତି ଯେ ସେ କଥାର ଅଗ୍ରପଶ୍ଚାତ୍ ନ ଥାଏ । ଏପରି ଲୋକଙ୍କୁ ଲୋକେ ବଦସୁରିଆ ବା ବେତାଳିଆ କହନ୍ତି । ଅଜ୍ଞାତ ଭାବରେ ସଙ୍ଗୀତ ମାନବର ହୃଦୟ ମଧ୍ୟରେ ବିରାଜିତ ଅଛି—କେଉଁଠାରେ ଜାଗ୍ରତ କେଉଁଠାରେ ବା ସୁପ୍ତ, ଏତିକି ପ୍ରଭେଦ । ଅନେକ ଆଦିମ ଅନୁନ୍ନତ ସମାଜ, ଯେଉଁମାନେ କି ସଭ୍ୟତାର ଆଲୋକ ସ୍ପର୍ଶ କରି ନାହାନ୍ତି, ସେମାନଙ୍କ ମଧ୍ୟରେ ମଧ୍ୟ ଆଉ କିଛି ନ ଥାଉ, ସଙ୍ଗୀତର ଚର୍ଚ୍ଚା ଅଛି । ବରଂ ସେମାନେ ସଙ୍ଗୀତରେ ଯେତେ ସହଜରେ ମୁଗ୍ଧ, ମତ୍ତ ହୁଅନ୍ତି, ଆବିଷ୍ଟ ହୁଅନ୍ତି, ସଭ୍ୟସମାଜ ହୁଅନ୍ତି ନାହିଁ । ସେମାନଙ୍କର ସେହି ଗୋଟିଏ ଯୋଡ଼ିଏ ପ୍ରାଚୀନ ସରଳ ରାଗ ତାଙ୍କ ଚିତ୍ତ ହରଣ କରିବାକୁ ସମର୍ଥ ଓ ତାହା ଆବହମାନ କାଳ ନିତ୍ୟ ବ୍ୟବହୃତ ହୋଇ ମଧ୍ୟ ସେହିର ମନୋହାରିତ୍ୱର ହ୍ରାସ ଘଟି ନାହିଁ । ଏଣେ ସଭ୍ୟସମାଜ ଆପଣା ଆପଣା ସଙ୍ଗୀତର ସୂକ୍ଷ୍ମ ସୂକ୍ଷ୍ମ ଅଂଶ ପ୍ରତ୍ୟଂଶ ବିଶ୍ଳେଷଣ ସଂବିଶ୍ଳେଷଣ କରି, ଜାତି ବର୍ଣ୍ଣ ପ୍ରଭୃତିର ବୈଜ୍ଞାନିକ ବିଭାଗରେ ବ୍ୟସ୍ତ । ଯେଉଁ ଜାତି ଯେତିକି ସଭ୍ୟ, ତାହାର ସଙ୍ଗୀତ ସେତିକି ଉନ୍ନତ, ସୁତରାଂ ସେତିକି ଜଟିଳ ।

ସଭ୍ୟ ମାନବର ଉର୍ବର ମସ୍ତିଷ୍କର ନିତ୍ୟ ଗବେଷଣା ଓ ନିତ୍ୟ ନୂତନ ଆବିଷ୍କାର ସଙ୍ଗୀତକଳାର ଶୈଶବ ସୌନ୍ଦର୍ଯ୍ୟ ଓ ସ୍ୱାଭାବିକ ମାଧୁର୍ଯ୍ୟ ବିନଷ୍ଟ କରାଇ ତାକୁ ଗୋଟିଏ ବୃହତ୍ ବିଜ୍ଞାନର ଅଂଶରୂପେ ଛିଡ଼ା କରାଇ ଦେଇଅଛି । ଆମ୍ଭମାନଙ୍କର ପ୍ରଥମତଃ ଆଦି ଶାସ୍ତ୍ର ଋକ୍‌ବେଦ ଓ ସାମବେଦ କେବଳ ଗୀତ ଓ ସ୍ତୋତ୍ରସମଷ୍ଟି । ସେ ସବୁ ମୁଗ୍ଧ ହୃଦୟର ସ୍ୱାଭାବିକ ଉଚ୍ଛ୍ୱାସ ମାତ୍ର । ଆଦି କାବ୍ୟ ରାମାୟଣ ରଚନାର ଇତିହାସ ଯେଉଁମାନେ ଜାଣିଛନ୍ତି ସେମାନେ ଦେଖି ପାରିବେ, କିପରି ଗୋଟାଏ ମାନସିକ ଆବେଗ ସଙ୍ଗୀତ ରୂପରେ କବି ମୁଖରୁ ସ୍ୱତଃ ଆବିର୍ଭୂତ ହୋଇଥିଲା । ଘଟଣାକ୍ରମେ ସଭ୍ୟତାର କ୍ରମୋନ୍ନତି ସଙ୍ଗରେ ସଙ୍ଗୀତକଳାର ମଧ୍ୟ ଉନ୍ନତି ସାଧିତ ହେଲା ଏବଂ ଶେଷରେ

ସଙ୍ଗୀତ ଗୋଟିଏ ସ୍ୱତନ୍ତ୍ର ବେଦାଙ୍ଗ-ଶାସ୍ତ୍ର ରୂପରେ ପରିଗଣିତ ହେବାକୁ ଲାଗିଲା । ଆର୍ଯ୍ୟ ସଙ୍ଗୀତଶାସ୍ତ୍ର କେତେ ଉନ୍ନତ ତାହା ତାହାର ଜଟିଳତାରୁ ହୃଦୟଙ୍ଗମ ହୁଏ । ପ୍ରଥମେ ଉଦାତ୍ତ, ଅନୁଦାତ୍ତ ପ୍ରଭୃତି ସ୍ୱର ସପ୍ତକ, ତଦନନ୍ତର ସାରେଗମ ପ୍ରଭୃତି ସ୍ୱରଗ୍ରାମ ଆବିଷ୍କୃତ ହେଲା ପରେ ବିଭିନ୍ନ ଛ'ରାଗ, ପ୍ରତ୍ୟେକ ରାଗର ଅନୁଗାମିନୀ ଛତିଶ ରାଗିଣୀ, ପୁଣି ପ୍ରତ୍ୟେକ ରାଗରାଗିଣୀର ବିଭିନ୍ନ ଜାତି, ବର୍ଣ୍ଣ, ରୂପ, ରେଖା, ଭାବ, କାଳ, ଋତୁ ଇତ୍ୟାଦି ନିର୍ଣ୍ଣିତ ହେଲା । ସା ପ୍ରଭୃତି ପ୍ରତି ସ୍ୱର ପୁଣି କଡ଼ି, କୋମଳ, ଅତି କୋମଳ ପ୍ରଭୃତିରେ ବିଭକ୍ତ ହେଲା । ଏହା ବ୍ୟତୀତ ଆଦି, ଯତି ପ୍ରଭୃତି ତାଳଚୟ, ପୁଣି ତହିଁ ମଧ୍ୟରେ କାଳ, ଅଂଶ, ମାତ୍ରା ପ୍ରଭୃତି ଅତି ସୂକ୍ଷ୍ମ ବିଭାଗମାନ ଯେ କେତେ ଯୁଗ ବ୍ୟାପୀ ପ୍ରଗାଢ଼ ସାଧନାର ଫଳ ତାହା କିଏ କହିବ ?

ଏହାମଧ୍ୟରେ ଆର୍ଯ୍ୟମାନଙ୍କର ସହଜାତ କଳ୍ପନା ଅନେକ ପରିମାଣରେ ବିଦ୍ୟମାନ ଅଛି ସତ୍ୟ, ତଥାପି ସଙ୍ଗୀତଶାସ୍ତ୍ରର ଏ ରୂପ ବିଶଦ ବୈଜ୍ଞାନିକ ଚର୍ଚ୍ଚା ଅନ୍ୟ କୌଣସି ଦେଶରେ ଏପରି ଭାବରେ ଅଛି କି ନାହିଁ ସନ୍ଦେହ । ପ୍ରକୃତି ସହିତରେ ସଙ୍ଗୀତର ସମ୍ବନ୍ଧ ସେମାନେ ଏପରି ବୁଝିଥିଲେ ଏବଂ ସେମାନଙ୍କର ଶ୍ରବଣେନ୍ଦ୍ରିୟ ଶବ୍ଦ ଜ୍ଞାନ କିଷ ଏପରି ଉନ୍ନତ ଓ ମାର୍ଜ୍ଜିତ ହୋଇଥିଲା ଯେ ସେମାନେ ଆକାଶ, ସାଗର, ଜଳଦ, ବାୟୁ ପ୍ରଭୃତିର ପରିବର୍ତ୍ତନଶୀଳ ରାଗମାନ ଉପଲବ୍ଧି କରି ବିଶ୍ୱପ୍ରକୃତିର ବିଶାଳ ସଙ୍ଗୀତ ହୃଦୟଙ୍ଗମ କରୁଥିଲେ । କେବଳ ଜୀବ-ପ୍ରକୃତି ଯେ ସଙ୍ଗୀତର ଅଧୀନ, ତାହା ନୁହେ; ନାଦବ୍ରହ୍ମବାଦୀ ଆର୍ଯ୍ୟଋଷିଙ୍କ ମତରେ ବାହ୍ୟ ପ୍ରକୃତି ମଧ୍ୟ ସଙ୍ଗୀତର ଅଧୀନ । ଏହାର ପ୍ରମାଣସ୍ୱରୂପ କଥିତ ଅଛି ଯେ ବିଶିଷ୍ଟ ବିଶିଷ୍ଟ ଭାରତୀୟ ସଙ୍ଗୀତ-କଳାବିତ୍‌ମାନେ ରାଗାଳାପ ଦ୍ୱାରା ବୃଷ୍ଟି ବା ଅଗ୍ନିର ଉତ୍ପାଦନ କରି ପାରୁଥିଲେ ଏବଂ ସେମାନଙ୍କର ଭେକ, ମୟୂର, କୋକିଳ ପ୍ରଭୃତି ଜୀବର ରବ ସହିତ ସପ୍ତ ସ୍ୱରର ସାମଞ୍ଜସ୍ୟ ଆବିଷ୍କାର ଯେ କେତେ ଅଦ୍ଭୁତ ତାହା ପ୍ରତ୍ୟେକେ ଅନୁମାନ କରିଥିବେ । ଦୁଃଖର କଥା, ଏ ସବୁ ବିଦ୍ୟା ଆଜି ଭାରତର ଅନ୍ୟ ସମସ୍ତ ଗୌରବ ସହିତ ବିଲୁପ୍ତ; କାରଣ ତାହା ସବୁ ପୁସ୍ତକଗତ ନୁହେ, ଗୁରୁମୁଖୀ ଏବଂ ଯେଉଁ ସମସ୍ତ ସଂସ୍କୃତ ସଙ୍ଗୀତ ବିଷୟକ ପୁସ୍ତକମାନ ଦେଖାଯାଏ ତାହା ପ୍ରଧାନତଃ theoretical (ତାତ୍ତ୍ୱିକ) ।

ଏହା ପରେ ଭାରତୀୟ ସଙ୍ଗୀତ-ଇତିହାସର ଏକ ନୂତନ ଯୁଗ ଆସିଲା ମୁସଲମାନ ଅଧିକାର ସମୟରେ । ମୁସଲମାନ ରାଜାମାନେ ବିଧର୍ମୀ ହେଲେ ମଧ୍ୟ ବିଦେଶୀୟ ନ ଥିଲେ । ସୁତରାଂ ସେ ସମୟର ରାଜ-ସହାୟତା ଲାଭ କରି ଦେଶୀୟ ସଙ୍ଗୀତର ନାନାବିଧ ଉନ୍ନତି ହୋଇଥିଲା । ଏହି କାଳରେ ଆର୍ଯ୍ୟସଙ୍ଗୀତ ଆରବୀୟ ଓ ପାରସ୍ୟ ସଙ୍ଗୀତର ସଂସ୍ରବରେ ଆସି ପରସ୍ପର ଆଦାନ ପ୍ରଦାନ ଦ୍ୱାରା ଅନେକ ନୂତନ ତଥ୍ୟ ଲାଭ କରିଥିଲା । ସ୍ୱଦେଶୀୟ ଓ ବିଦେଶୀୟ ବିବିଧ ତାଳ ଓ ରାଗର ସମିଶ୍ରଣରେ ନୂତନ ନୂତନ ତାଳ ଓ ରାଗର ସୃଷ୍ଟି ହେଲା । ବିଶିଷ୍ଟ ସଙ୍ଗୀତବିତ୍‌ମାନେ ରାଜପ୍ରସାଦ ଓ ରାଜୋଦ୍ୟାନ ଲାଭ କରି କେବଳ ମାତ୍ର ସଙ୍ଗୀତ ଅନୁଶୀଳନରେ ଜୀବନ ଯାପନ କରୁଥିଲେ ଏବଂ ଶତ ଶତ ସାକ୍‌ରେଦ ତାଲିମ କରଉଥିଲେ ।

## ହିନ୍ଦୁସ୍ଥାନୀ ଓ ଦ୍ରାବିଡ଼ୀ ସଙ୍ଗୀତ

ଦକ୍ଷିଣଦେଶୀୟ ଦ୍ରାବିଡ଼ମାନେ ପ୍ରଧାନତଃ ହିନ୍ଦୁ ହେଲେ ମଧ୍ୟ ଦ୍ରାବିଡ଼ୀ ସଭ୍ୟତାର ଗୋଟାଏ ସ୍ୱତନ୍ତ୍ରତା ଅଛି । ଏହାପରି ବିଶିଷ୍ଟତା ଅନେକ ବିଷୟରେ ପରିଲକ୍ଷିତ ହୋଇଥାଏ । ସଙ୍ଗୀତ ବିଷୟରେ ହିନ୍ଦୁସ୍ଥାନୀ ଓ ଦ୍ରାବିଡ଼ୀ ସଙ୍ଗୀତ ମୂଳତଃ ଏକ ପ୍ରାଚୀନ ଆର୍ଯ୍ୟ ସଙ୍ଗୀତର ଅନୁରୂପ ହେଲେ ମଧ୍ୟ ଅନେକ ବିଷୟରେ ଉଭୟ ମଧ୍ୟରେ ବିଭିନ୍ନତା ଦୃଷ୍ଟ ହୁଏ । ମୂଳ ରାଗ ଓ ରାଗିଣୀଗୁଡ଼ିକ ଉଭୟ ସଙ୍ଗୀତରେ ସମାନ ଥାଇ ସୁଦ୍ଧା ନାମରେ କେତେକ ଅମେଳ ଅଛି । ସେଥିରେ ସେପରି କିଛି ଯାଏ ଆସେ ନାହିଁ; ମାତ୍ର ଗାୟନର ପ୍ରଣାଳୀରେ ଯେ ଉଭୟ ଭିତରେ ବିଶେଷ ପାର୍ଥକ୍ୟ ଅଛି ତାହା ସମସ୍ତେ ଜାଣନ୍ତି । ମନେ କରନ୍ତୁ, ଭୈରବୀ ରାଗିଣୀ ଜଣେ ହିନ୍ଦୁସ୍ଥାନୀ ଧାରାରେ ଓ ଅପର ଜଣେ ଦକ୍ଷିଣୀ ଧାରାରେ ଆଳାପ କରୁଅଛନ୍ତି; କିନ୍ତୁ ଉଭୟ ମଧ୍ୟରେ ଏପରି ଗୋଟାଏ ଗନ୍ଧ ବା ସ୍ୱାଦ ଅଛି ଯାହା ହଠାତ୍ ଚିହ୍ନାଇଦେବ କିଏ କେଉଁ ଦେଶର । ପୁଣି ନିବିଷ୍ଟ ଭାବରେ ଦେଖିଲେ ଦେଖାଯିବ ଯେ ଉଭୟ ଏକ । ମୁଁ ଗୋଟିଏ କଥା ଲକ୍ଷ୍ୟ କରିଅଛି ଯେ ହିନ୍ଦୁସ୍ଥାନୀ ଧାରାରେ ମୀଡ଼ ନାମକ ରାଗାଲଙ୍କାରର ବ୍ୟବହାର ବେଶୀ, ଯାହା କି ଦକ୍ଷିଣୀରେ ନାହିଁ । ଦକ୍ଷିଣୀରେ ଖଣ୍ଡ ଖଣ୍ଡ 'ଆଶ'ର ବ୍ୟବହାର ବେଶୀ ଯାହାକି ହିନ୍ଦୁସ୍ଥାନୀରେ ଖୁବ୍ କମ୍ । ହିନ୍ଦୁସ୍ଥାନୀ ସଙ୍ଗୀତର କେତେଗୁଡ଼ିଏ ଶ୍ରେଣୀ ଅଛି, ଯଥା:—ଧ୍ରୁପଦ, ଖେୟାଲ, ଟପ୍‌ପା, ଗଜଲ ପ୍ରଭୃତି । ପ୍ରତ୍ୟେକ ଶ୍ରେଣୀ ଯଦିଓ ସମସ୍ତ ରାଗରାଗିଣୀ ବ୍ୟବହାର କରନ୍ତି, କିନ୍ତୁ ପ୍ରକାରଭେଦରେ ସମସ୍ତଙ୍କର ସ୍ୱ ସ୍ୱ ବିଶିଷ୍ଟତା ଅଛି । ସେହିପରି ଦକ୍ଷିଣୀରେ ମଧ୍ୟ ଅଛି ।

## ଉତ୍କଳୀୟ ସଙ୍ଗୀତ

ଉତ୍ତରାଞ୍ଚଳ ଓ ଦାକ୍ଷିଣାତ୍ୟର ମଧ୍ୟସ୍ଥଳରେ ଅବସ୍ଥିତ ଉତ୍କଳ ପ୍ରାଚୀନ କାଳରେ କେଉଁ ରୀତିର ଅନୁସରଣ କରୁଥିଲା ତାହା

ବର୍ତ୍ତମାନ ଜାଣିବା ସହଜ ନୁହେଁ । ସମ୍ଭବତଃ ପ୍ରାଚୀନ ଉତ୍କଳରେ ଚର୍ଚ୍ଚା ଏପରି ଉନ୍ନତ ଧରଣର ହୋଇ ନଥିଲା ଯେ ତାହା କୌଣସି ଗୋଷ୍ଠିଏ ଧାରାର ଅନୁଯାୟୀ ହୋଇଥିବ । ସେ କାଳରେ ଦ୍ରବିନ୍ତ ଉତ୍କଳୀୟମାନେ ଦେଶଜ କେତେକ ସରଳ ସରଳ ରାଗିଣୀ ବ୍ୟବହାର କରୁଥିଲେ ଯାହାର ପରିଚୟ ବର୍ତ୍ତମାନ ଆମ ଦେଶର କୋଇଲି, ବାରମାସୀ ପ୍ରଭୃତିରୁ ମିଳେ । ପରେ ଗଙ୍ଗବଂଶୀୟ ରାଜାମାନଙ୍କ ଉତ୍କଳ ବିଜୟ ସଙ୍ଗେ ସଙ୍ଗେ ଦ୍ରାବିଡ଼ ସଭ୍ୟତାର ରେଖାଉ ଦେଶଯାକ ମାଡ଼ିଗଲା । ସାମାଜିକ ଆଚାର, ବ୍ୟବହାର, ବସନ ଭୂଷଣ ପ୍ରଭୃତିରେ ମଧ୍ୟ ଦକ୍ଷିଣୀ ସଭ୍ୟତା ନିଜର ପ୍ରଭାବ ବିସ୍ତାର କଲା । ବିଜେତା ରାଜାର ରୁଚିକୁ ଅନୁସରଣ କରିବା ବିଜିତର ସ୍ୱାଭାବିକ ଧର୍ମ । ତାହାଙ୍କ ପୁଣି ଦେଶୀୟ ସାମନ୍ତରାଜଗଣ ଯେଉଁମାନେ କି ସଙ୍ଗୀତର ପ୍ରଧାନ ପୃଷ୍ଠପୋଷକ, ସେମାନଙ୍କର ପ୍ରଭୁ ଓ ଆଦର୍ଶ ହେଲେ ଦକ୍ଷିଣଦେଶୀୟ ରାଜଚକ୍ରବର୍ତ୍ତୀ । ପ୍ରାଚୀନ ଉତ୍କଳ ସାହିତ୍ୟର ଯାହା କିଛି ଗୌରବ ସେ ସମସ୍ତ ସେହି କାଳର । କାର୍ଯ୍ୟତଃ ଉତ୍କଳ ହିନ୍ଦୁସ୍ଥାନ ସହିତ ସମସ୍ତ ସମ୍ପର୍କ ତ୍ୟାଗ କରି ଦକ୍ଷିଣ ସହିତ ଘନିଷ୍ଠତା ବଢ଼ାଇବାକୁ ଲାଗିଲା । ତାହାର ଫଳରେ ଦକ୍ଷିଣୀ ସଙ୍ଗୀତର ନୂତନ ଧାରାରେ ଉତ୍କଳ ଅଙ୍ଗ ଢାଳିଦେଲା । କେଏା ଓଡ଼ଶୀ ରୀତିର ଭକ୍ତମାନେ ପୂର୍ବର କର୍କଶ କଠିନ ଧାରା ଛାଡ଼ି ନୂତନ ଧାରାର ମୋହନ ମାଧୁରୀରେ ଭୁଲିଲେ । କିନ୍ତୁ ସୁଖର ବିଷୟ ଏତିକି ଯେ, ଦକ୍ଷିଣୀ ମାଲ ଉତ୍କଳ ମାଟିରେ ପଡ଼ି ଖାଣ୍ଟି ଓଡ଼ଶୀ ପାଲଟିଗଲା । ଏହା କେବଳ ତତ୍କାଳୀନ କବିମାନଙ୍କର ପ୍ରତିଭାର ଫଳ ଛଡ଼ା ଆଉ କିଛି ନୁହେଁ । ସେ କାଳର ଓଡ଼ିଆ କବିମାନେ ଦ୍ରାବିଡ଼ୀ ରାଗରାଗିଣୀମାନ ପାରାୟଣ କରି ଭାଷାର ଜାତି ନ ମାରି ସୁଶ୍ରୀ ରଚନାକୁ ଓଡ଼ିଆ ଛାଞ୍ଚରେ ଢାଳି ନେଇଥିଲେ । ଏହା ସମ୍ପୂର୍ଣ୍ଣ ମୌଳିକ ସୃଷ୍ଟି ନ ହେଲେ ମଧ୍ୟ ଆଧୁନିକ ରୀତିରେ ମର୍କଟ ଅନୁକରଣ ନୁହେଁ । ପ୍ରାଚୀନ ଓଡ଼ିଆ ସାହିତ୍ୟ ମାନେ କେ କବିତା, ଆଉ କବିତା ମାନେ ସଙ୍ଗୀତ । ଆଜିକାଲି ସେ ରୀତି ବଦଳିଗଲାଣି । ତାହାର କାରଣ ସାହିତ୍ୟରେ ଲୋକରୁଚିର ବ୍ୟତିକ୍ରମ ଘଟିଥାଉ ବା ସାହିତ୍ୟ-ରାଜ୍ୟରେ ସ୍ୱେଚ୍ଛାଚାର, ବ୍ୟଭିଚାର ଓ ଅରାଜକତା ପ୍ରବେଶ କରିଥାଉ । ଆଜିକାଲି କବି ବା ଗୀତ-ରଚୟିତାର ସଙ୍ଗୀତଜ୍ଞ ହେବା ପ୍ରୟୋଜନ ନାହିଁ । କାରଣ ତାଙ୍କର କାର୍ଯ୍ୟ ଶବ୍ଦ ଯୋଜନା କରି ଜାଣିବା । ପରେ ତାହା ଉପରେ ରାଗିଣୀ ବସାଇ ନେବାକୁ ହେବ । କିନ୍ତୁ ସେ କାଳର କବିମାନଙ୍କ ହୃଦୟରୁ କବିତା ବାହାରି ଆସୁଥିଲା ସରଳ ମନ୍ଦାକିନୀ ଧାରା ପରି, ସଙ୍ଗୀତର ସୁମଧୁର ତାଳରେ ନାଚି ନାଚି ତରତର ବେଗରେ । ଆଗେ ସଙ୍ଗୀତ, ତାହାପରେ ରଚନା ଥିଲା ଆଗକାଳର ଧାରା । ଏବେ ତାହାର ଓଲଟା—ଆଗେ ରଚନା, ପରେ ଭିଡ଼ା ଭିଡ଼ି କରି ରାଗରେଖ । ଏହି କାରଣରୁ ସଙ୍ଗୀତକଳା ଜାଣିଥିବା ମେଧାବୀ ଲେଖକମାନେ ନିଜର ଶକ୍ତି ବ୍ୟୟ କରି ସାହିତ୍ୟରେ କେତେକ ଅସ୍ୱାଭାବିକତା ପ୍ରବେଶ କରାଉଛନ୍ତି ।

ଆମ ଦେଶରେ ଦକ୍ଷିଣୀ ରାଗରାଗିଣୀର ସାଧାରଣରେ ବେଶୀ ଆଦର ଥିଲେ ମଧ୍ୟ କୌଣସି କୌଣସି ସ୍ଥଳରେ ଓଡ଼ଶୀ ପ୍ରତି ଅଧିକ ସମ୍ମାନ ଦିଆଯାଏ । ତାହାର କାରଣ, ଓଡ଼ଶୀ ରାଗମାନ ସମଧିକ ଆୟାସସାଧ୍ୟ । ଅନେକ ଗାୟକ ଅଛନ୍ତି ଯେଉଁମାନେ ଏକ ଗୀତକୁ ଓଡ଼ଶୀ ଓ ଦକ୍ଷିଣୀ ଉଭୟ ରୀତିରେ ଗାଇପାରନ୍ତି ।

ହିନ୍ଦୁସ୍ଥାନୀ ସଙ୍ଗୀତରେ ପ୍ରତ୍ୟେକ ରାଗର ଚାରିଗୋଟି ବିଭାଗ ଅଛି, ଯଥା:—ଅସ୍ଥାୟୀ, ଅନ୍ତରା, ଆଭୋଗ ଓ ସଞ୍ଚାରୀ; ମାତ୍ର ଦକ୍ଷିଣୀ ସଙ୍ଗୀତରେ ତିନିଗୋଟି ବିଭାଗ, ଯଥା :—ପଲ୍ଲବୀ, ଅନୁପଲ୍ଲବୀ, ଚରଣ । କିନ୍ତୁ ଓଡ଼ିଆରେ କେବଳ ମାତ୍ର ଘୋଷା ଓ ଚରଣ ବା ପଦ ।

କେବଳ କେତେକ ପଣ୍ଡିତଜାତୀୟ ସଙ୍ଗୀତରେ ସଞ୍ଚାରୀ ଥିଲାପରି ଜଣାଯାଏ । ଛାନ୍ଦ-ସଙ୍ଗୀତରେ ତାହା ମଧ୍ୟ ନାହିଁ । ଓଡ଼ିଆ ଛାନ୍ଦ ଗୋଟାଏ ପ୍ରକାର ସଙ୍ଗୀତ, ଯାହା ଓଡ଼ିଆର ନିଜସ୍ୱ । ଯଦିଓ ସେଥିରେ ରାଗରାଗିଣୀର ବିଜ୍ଞାନ—ସଙ୍ଗୀତ ପରାକାଷ୍ଠାର ଅଭାବ ଅନେକ, ତଥାପି ଛାନ୍ଦ ଓଡ଼ିଆ ଓ ଓଡ଼ିଆଭାଷାର ପ୍ରାଣସ୍ୱରୂପ ଏବଂ ତା'ର ସଙ୍ଗୀତ ଉତ୍କଳୀୟ କାନକୁ ବଡ଼ ଲଳିତ ଓ ମର୍ମସ୍ପର୍ଶୀ । ଛାନ୍ଦକୁ ଛାଡ଼ିଦେଲେ ବାକି ଚୌପଦୀ । ଏହି ଚୌପଦୀସବୁ ସାଧାରଣତଃ ନାୟକ ନାୟିକା ସମ୍ପର୍କରେ ଆଦିରସାତ୍ମକ କମ୍ବା ରାଧାକୃଷ୍ଣ-ଲୀଳା-ବିଷୟକ । ସେଥିରେ ପୁଣି ସଖ୍ୟ, ବାତ୍ସଲ୍ୟ ପ୍ରଭୃତି କମ୍, ମଧୁର ରସର ଅବତାରଣା ଅଧିକ । ସାମୟିକ ରୁଚି ଓ ବୈଷ୍ଣବ ଧର୍ମର ପ୍ରଭାବ ଏହାର କାରଣ । ଏହା ବ୍ୟତୀତ ଭଜନ, ଜଣାଣ ପ୍ରଭୃତି ଯାହା କିଛି ଅଛି ତାହା ଅତି ସାମାନ୍ୟ ।

ଏହାପରେ ମୁସଲମାନ ଆକ୍ରମଣଠାରୁ ଓଡ଼ିଆ ଜାତି ନାନା ଅଶାନ୍ତି, ବିଗ୍ରହ ଓ ବିପ୍ଲବ ମଧ୍ୟରେ ଜୀବନ ଯାପନ କରିଅଛି । ସୁତରାଂ ମନଫୁଲଣା ସଙ୍ଗୀତକଳା ଚର୍ଚ୍ଚାର ଉନ୍ନତିର କୌଣସି ସୁବିଧା ଘଟିନାହିଁ । କିନ୍ତୁ ଏତିକି ହୋଇଥିଲା ଯେ ଗୌଡ଼ୀୟ ବୈଷ୍ଣବମାନଙ୍କ ପ୍ରତିପତ୍ତି ବିସ୍ତାର ସଙ୍ଗେ ସଙ୍ଗେ ବଙ୍ଗୀୟ କୀର୍ତ୍ତନ ସଙ୍ଗୀତ ଓଡ଼ଶାରେ ଅଳ୍ପ ବହୁତ ପ୍ରବେଶ ଲାଭ କରିଅଛି; ମାତ୍ର ଜାତୀୟ ଭାଷା ବା ସଙ୍ଗୀତ ଉପରେ କୌଣସି ପ୍ରକାର ସ୍ଥାୟୀ ଉନ୍ନତିର ରେଖା ଅଙ୍କନ କରି ପାରି ନାହିଁ । ମୁସଲମାନ ଓ ମରହଟ୍ଟାମାନଙ୍କ ଆଗମନ

ସତ୍ୟତରେ ହିନ୍ଦୁସ୍ଥାନୀ ସଙ୍ଗୀତ ପ୍ରତି ଲୋକଙ୍କର ଚିତ୍ତ ଆକୃଷ୍ଟ ହୋଇଥିଲା ଏବଂ ଦେଶରେ ଉକ୍ତ ପ୍ରଣାଳୀରେ ଚର୍ଚ୍ଚାର ସୂତ୍ରପାତ ହେଲା । ତଥାପି ତାହା ଅସ୍ଥିମଜ୍ଜାଗତ ଦକ୍ଷିଣୀର ବହୁକାଳର ଅଧିକାରରେ ହସ୍ତକ୍ଷେପ କରି ପାରି ନ ଥିଲା । କେବଳ ରସିକ ଓ ଧନୀ ଲୋକେ ଏହାକୁ ଉନ୍ନତ ଶିକ୍ଷାରୂପରେ ଚର୍ଚ୍ଚା କରୁଥିଲେ । ଆଜିମଧ୍ୟ ବୋଧହୁଏ ସେ ସମସ୍ତ ରାଗରାଗିଣୀଙ୍କୁ ଓଡ଼ିଆ ଲୋକେ ଗଢ଼ିବାରେ ଏପରି କିଛି ଅସୁବିଧା ବା ସଂସ୍କାର ଥିଲା ଯେ ତାହା ମଧ୍ୟ ହୋଇ ପାରି ନାହିଁ । ସେ ସବୁ କଳ୍ପିତ ଧରଣର ସଙ୍ଗୀତ-ଶିକ୍ଷା ଆଜିକାଲି ଉତ୍କଳରୁ ପ୍ରାୟ ବିଲୁପ୍ତ । ପ୍ରଥମ କାରଣ, ଆଜିକାଲି ସଙ୍ଗୀତ ପ୍ରତି ସାଧାରଣର ଅନାଦର ଓ ଅନାସ୍ଥା, ଯାହା ଫଳରେ ଭାରତବ୍ୟାପୀ ସଙ୍ଗୀତର ଅବନତି ଘଟିଅଛି ଓ ଘଟୁଅଛି । ଦ୍ୱିତୀୟତଃ ଆଧୁନିକ ଭାରତର ଦୈନନ୍ଦିନ ଜୀବନସଂଗ୍ରାମ । ଅର୍ଥକରୀ ବା ଉଦରଂଭରୀ ବିଦ୍ୟା ଛାଡ଼ି ଏହି ସୌଖିନ୍ ବିଦ୍ୟାରେ କାଳକ୍ଷେପଣ କରିବା ସମୟର ଅପବ୍ୟୟ ବୋଲି ଲୋକେ ମନେ କରନ୍ତି । ତୃତୀୟତଃ, ବିଶେଷତଃ ପୃଷ୍ଠପୋଷକତାର ଅଭାବ । ପୂର୍ବେ ଗଡ଼ଜାତ ରାଜାମାନେ କିମ୍ବା ବଡ଼ସାନ ରାଜାମାନେ ବିଦେଶୀ ଓସ୍ତାଦ୍ ରଖାଉଥିଲେ ଓ କବିମାନଙ୍କୁ ସାହାଯ୍ୟ କରୁଥିଲେ । ଆଜିକାଲି ତାହା ପ୍ରାୟ ବିରଳ ।

## ବର୍ତ୍ତମାନ ଅବସ୍ଥା

ବର୍ତ୍ତମାନ ଲୋକଙ୍କର ସଙ୍ଗୀତ ପାଇଁ ଅର୍ଥ ବ୍ୟୟ କରିବାର କ୍ଷମତା ନାହିଁ; ସମୟ ବ୍ୟୟ କରିବାର ଅବସର ନାହିଁ । ଏପରିକି କାୟକ୍ଳେଶ କରି ଶିଖିବାର ସାମର୍ଥ୍ୟ ବା ଧୈର୍ଯ୍ୟ ନାହିଁ । ସଙ୍ଗୀତ ପ୍ରତି ଲୋକମାନଙ୍କର ଏପରି ଅନାସ୍ଥା ଓ ଅନାଦର ଜାତୀୟ ଅବନତିର ଫଳ ଅଥବା ଆହୁରି ପରିଷ୍କାର ଭାବରେ କହିବାକୁ ଗଲେ ଜାତୀୟ ମରଣର ସଙ୍କେତ । ସଙ୍ଗୀତର ଉନ୍ନତି ବା ଅବନତି ଜାତିର ସର୍ବାଙ୍ଗୀନ ଉନ୍ନତି ବା ଅବନତିର ମାପକାଠି । ଠିକ୍ ଦେଖିବେ, ଯେଉଁ ଜାତି ଯେତିକି ଉନ୍ନତ ସେ ଜାତିର ସଙ୍ଗୀତ ସେତିକି ଉନ୍ନତ । ସଙ୍ଗୀତ ପ୍ରତି ଜନସାଧାରଣର ରୁଚିରୁ ସେ ଜାତିର ମାନସିକତା ଜଣାପଡ଼େ । ଓଡ଼ିଆ ଜାତିର ମାନସିକତାର ପରିଚୟ ମିଳିବ ଯଦି ନେ ଖଣ୍ଡିଏ କଲିକତାଯାତ୍ରୀ ରେଳଗାଡ଼ିରେ ବସିଲେ ବା ବଜାରରେ ଓଡ଼ିଆ ସଙ୍ଗୀତ ପୁସ୍ତକର ନମୁନା ଦେଖିଲେ । ଆମ୍ଭମାନଙ୍କର ଏତେ ଦୂର ଜାତୀୟ ଅଧଃପତନ ଘଟିଛି ଯେ ଆମ୍ଭେମାନେ ସଙ୍ଗୀତର ଉଚ୍ଚ ଆଦର୍ଶ ସବୁ ଭୁଲିଯାଇ ସଙ୍ଗୀତକୁ କେବଳ ବିଳାସ ଓ ବ୍ୟସନର ଅଙ୍ଗ ବୋଲି ମଣୁଛୁ । ଭୁଲିଯାଉଛୁ, ଆମ୍ଭେମାନେ ଚୈତନ୍ୟଙ୍କର ଶିକ୍ଷା—"କଳୌ ସଂକୀର୍ତ୍ତନ ପ୍ରାୟୈର୍ଯଜନ୍ତି ହି ସୁମେଧସଃ", ଭୁଲି ଯାଉଛୁ, ଶ୍ରୀକୃଷ୍ଣଙ୍କର ବାକ୍ୟ—"ମଦ୍‌ଭକ୍ତାଃ ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।" ସଙ୍ଗୀତର ଶକ୍ତି ଅସୀମ, ଅପରସୀମ, ଯଦ୍ଦ୍ୱାରେ ଭଗବାନ ପର୍ଯ୍ୟନ୍ତ ବଶୀଭୂତ ହୁଅନ୍ତି ।

ହଳିଆ, ନାଉରିଆଙ୍କ ସଙ୍ଗୀତ ବା ବେହେରାଙ୍କ ଡାକ ସମସ୍ତେ ଶୁଣିଥିବେ । ତାହା ମଧ୍ୟ ସଙ୍ଗୀତ ଏବଂ ତାହାର ପ୍ରୟୋଜନ କେତେ ଦୂର, ଅନୁଭବୀମାନେ ଜାଣନ୍ତି । ବିଶ୍ୱସଂସାର ସଙ୍ଗୀତର ବଶବର୍ତ୍ତୀ ହୋଇ ଚଳୁଛି । ବେସୁର ବା ବେତାଳରେ କୌଣସି କାର୍ଯ୍ୟ ହୋଇ ନ ପାରେ । ସାଧାରଣ କଥାବାର୍ତ୍ତାଠାରୁ ବକ୍ତାର ବକ୍ତୃତା ପର୍ଯ୍ୟନ୍ତ ସବୁଥିରେ ସଙ୍ଗୀତର ଧାରା ପ୍ରବାହିତ । ବିନା ତାଳରେ ଧୋବା କାଠ କାଟେ ନାହିଁ ; କିମ୍ବା କୁଟୁଣୀ ଧାନ କୁଟେ ନାହିଁ । ସେ ସବୁ ସ୍ଥାନରେ ତାଳ ଭାଙ୍ଗିଲେ ଯେପରି ବିପଦର ସମ୍ଭାବନା, ଆମ୍ଭମାନଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟରେ ମଧ୍ୟ ତାଳ ହୁଡ଼ିଲେ ସେହିପରି ଗୋଡ଼ ଖସିବା ଅବଶ୍ୟମ୍ଭାବୀ । ସଙ୍ଗୀତର ସୂତ୍ର ଛାଡ଼ିଦେଲେ ପୃଥିବୀ ଘୂରିବ ନାହିଁ, ଗ୍ରହ ନକ୍ଷତ୍ର ନିଜ ନିଜ ମାର୍ଗରେ ଗତି କରି ପାରିବେ ନାହିଁ; ଏକ ମୁହୂର୍ତ୍ତରେ ପରସ୍ପର ହାବୁଡ଼ା ହାବୁଡ଼ି ହୋଇ ବିଶ୍ୱବ୍ରହ୍ମାଣ୍ଡ ଧୂଳିସାତ୍ ହୋଇଯିବ ।

ଆମ୍ଭେମାନେ ଆଜିକାଲି ଉଚ୍ଚ ଅଙ୍ଗର ସଙ୍ଗୀତ ଆଲୋଚନା ଛାଡ଼ିଲୁଣି ; ଛାଡ଼ି ପୁଣି ଧରିଲୁଣି ଅତି ନିମ୍ନସ୍ତରର ବଙ୍ଗଳା ସଙ୍ଗୀତ । ଆମ ଆଦର୍ଶ "ବାଜେ କାପେ ମିନସେ କେ ଆର" କିମ୍ବା "ଆସ୍ୱେଲେ ଅଲି କୁସୁମ କଲି" ପ୍ରଭୃତି । ତାହା ପୁଣି ମୂଳଠାରୁ ସହସ୍ର ଗୁଣେ ବିକୃତ । ମୁଁ ଏତଦ୍ଦ୍ୱାରା କୌଣସି ବିଶେଷ ସ୍ୱରକୁ ନିନ୍ଦା କରୁ ନାହିଁ । ମୋର ବିଶ୍ୱାସ, କୌଣସି ସ୍ୱର ନିନ୍ଦନୀୟ ନୁହେ ଯଦି ତାହା ସଙ୍ଗୀତ ବିଧିର ଅନୁମୋଦିତ ହୋଇଥାଏ । ଗୋଟିଏ ସ୍ୱର ରାଗ ଯଦି କର୍ଣ୍ଣ ରସାୟନ, ଚିତ୍ତତୃପ୍ତିକର ହୁଏ ତେବେ ତାହା ବୈଧ ବୋଲି ଜାଣିବାକୁ ହେବ । ଆମ୍ଭେମାନେ ନିଜେ ନିଜ ଦୋଷରୁ ସ୍ୱରକୁ ଦୋଷଯୁକ୍ତ କରାଇଦେଉଁ । ଯେ କୌଣସି ସ୍ୱର ବା ରାଗ ଅଙ୍ଗହୀନ ନ ହୋଇ ଏବଂ ବିଶୁଦ୍ଧ ତାଳ-ଲୟ-ଯୁକ୍ତ ହୋଇ ଗୀତ ହେଲେ ତାହା ଯେ କୌଣସି ସ୍ଥାନରେ ବା ଯେ କୌଣସି କାଳରେ ଉପାଦେୟ ।

ଏହି କଥାରେ କେହି କେହି ବ୍ୟକ୍ତି ଆପତ୍ତି କରି ପାରନ୍ତି । ପ୍ରକୃତରେ ପୁରାତନ ହିନ୍ଦୁସଙ୍ଗୀତରେ ଶାସ୍ତ୍ରକାରମାନଙ୍କ ମତରେ ପ୍ରତ୍ୟେକ ସମୟପାଇଁ ବିଶେଷ ବିଶେଷ ରାଗମାନ ନିର୍ଦ୍ଦିଷ୍ଟ ଅଛି । କିନ୍ତୁ ମୋର କ୍ଷୁଦ୍ର ବିଚାରରେ ରାଗର କାଳନିର୍ଣ୍ଣୟ ପଦ୍ଧତିଟି ପ୍ରଧାନତଃ କବିକଳ୍ପନା ଉପରେ ସନ୍ନିବିଷ୍ଟ । ପ୍ରଥମତଃ ଆମ୍ଭେମାନେ

ଦେଖିଥାଉଁ ଯେ, ଏହି ବିଷୟରେ ସଙ୍ଗୀତଶାସ୍ତ୍ରମାନ ଏକମତ ନୁହନ୍ତି । ସୁତରାଂ ସମୟ ସମୟରେ ଓସ୍ତାଦମାନେ ବିପରୀତଭାବପୂର୍ଣ୍ଣ ଶ୍ଳୋକମାନ ଆବୃତ୍ତି କରି କଳି ଲଗନ୍ତି । ଏପରି କି ମୂଳ ଛଅ ଗୋଟି ରାଗ ଯେ କିଏ କିଏ ଏବଂ କେଉଁ ରାଗିଣୀ କାହାର ସ୍ତ୍ରୀ ସେ ବିଷୟରେ ଶାସ୍ତ୍ରକାରମାନେ ପରସ୍ପରବିରୋଧୀ । ଧରନ୍ତୁ, ଗୋଟିଏ ରାଗିଣୀ ଯାହାର ଭାବ କରୁଣ ଓ କାଳ ରାତି; ଆମ୍ଭେମାନେ ତାʼକୁ ଦିନବେଳରେ ଗାଇଲୁଁ । ଯଦି ତାହା କେହି ଭୁଲ କହନ୍ତି, ତେବେ କʼଣ ସେ ଆମ୍ଭଙ୍କୁ କହିବେ ଦିନବେଳରେ କାନ୍ଦିବା ଉଚିତ ନୁହେଁ ବା ରାତିରେ ହସିଲେ ପାପ ଲାଗିବ ? ତେବେ ଏଥିରେ ଏତିକି ସତ୍ୟ ଥାଇପାରେ ଯେ, ବାହ୍ୟ ପ୍ରକୃତି ସହିତରେ ଅନ୍ତଃପ୍ରକୃତିର ଯେଉଁ କେତେକ ସମ୍ବନ୍ଧ ଅଛି ରାଗିଣୀର ଭାବ ସହିତରେ କାଳର ସେତିକି ସମ୍ବନ୍ଧ ଥାଇପାରେ । ତାହା ବୋଲି ଏପରି ବିଷୟରେ ଦୃଢ଼ ବିଧିବିଶେଷ ଧରି ଚଳିହେବ ନାହିଁ ଏବଂ ଚଳିଲେ ମଧ୍ୟ ସର୍ବଦା ପାର୍ଥକ୍ୟ ଘଟିବ । ଧରନ୍ତୁ, 'ଲଳିତ' ରାଗିଣୀର ଭାବ କରୁଣ-ଉଦାସ । ତାହାର କାଳ ଶେଷ ରାତି । ଏହି କାଳ ସହିତରେ ଏହି ରାଗିଣୀର ଏତିକି ସମ୍ପର୍କ ଥାଇପାରେ ଯେ ରାତିର ନିର୍ଜନତା ନିସ୍ତବ୍ଧତା ଲଳିତ ଭାବର ପରିପୋଷକ । କିନ୍ତୁ ତାହା ବୋଲି ଅନ୍ୟ କୌଣସି କାଳରେ ଲଳିତ ରାଗିଣୀ ଆଳାପ କଲେ ଯେ ତାହା ଭାବର ପୁଷ୍ଟି ଏକାବେଳକେ ନ ହେବ, ଏହା କେହି କହି ପାରିବେ କି ? ପାଠକମାନଙ୍କ ମଧ୍ୟରୁ ଅନେକେ ଇଂରାଜ କବି Drydenଙ୍କ Power of music ବା Alexander's feast ନାମକ କବିତା ପଢ଼ିଥିବେ । ତହିଁରୁ ମୋ ଉକ୍ତିର ଯଥାର୍ଥତା ଅନୁମାନ କରିପାରିବେ ।

ଯାହା ହେଉ ଏପରି ବିଷୟ ଆଲୋଚନାରେ ସମୟ ଅପବ୍ୟୟ କରିବା ସମୀଚୀନ ନୁହେଁ । ତେବେ ଏ କଥା କଦାପି ଅସ୍ୱୀକାର କରିହେବ ନାହିଁ ଯେ, ପ୍ରତ୍ୟେକ ରାଗ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ରୂପ ବହନ କରେ ଏବଂ ସ୍ୱତନ୍ତ୍ର ଭାବକୁ ଆଶ୍ରୟ କରିଥାଏ ଏବଂ ମନୁଷ୍ୟ ମନରେ ସ୍ୱତନ୍ତ୍ର ବୃତ୍ତିର ଉଦ୍ଦୀପନା ଆଣିଦିଏ । ଏ କଥାଟି କାହାରିକୁ ବୁଝାଇବାକୁ ହେବ ନାହିଁ, କାରଣ ସମସ୍ତେ ଏହାର ସତ୍ୟାସତ୍ୟ ଉପଲବ୍ଧି କରିଥିବେ । ଦିନେ ଜଣେ ବନ୍ଧୁ ପ୍ରତିବାଦ କରି କହିଥିଲେ ଯେ, ସେ ରାଗିଣୀର ଭାବ ଅନୁଭବ କରି ପାରନ୍ତି ନାହିଁ; କିନ୍ତୁ ଗୀତର ଶବ୍ଦାର୍ଥ ହୃଦୟରେ ବିଭିନ୍ନ ଭାବ ଜାଗ୍ରତ କରାଏ । ଏ ଉକ୍ତିର ଆଂଶିକ ଯାଥାର୍ଥ୍ୟ ମୁଁ ସ୍ୱୀକାର କରୁଛି । ପ୍ରକୃତରେ ରଚନାର ଅର୍ଥ ରାଗିଣୀକୁ ଅନେକ ସାହାଯ୍ୟ କରେ; କିନ୍ତୁ ତାହା ବୋଲି ରାଗିଣୀ ସହିତ ଭାବର ଯେ ଆଦୌ ସମ୍ବନ୍ଧ ନାହିଁ, ଏହା ମଧ୍ୟ ଠିକ୍ ନୁହେଁ । କେହି କେହି ମଧ୍ୟ ପୂର୍ବସମ୍ବନ୍ଧଜ୍ଞାନ ବା association ର ଦୋହାଇ ଦିଅନ୍ତି । ଅର୍ଥାତ୍ ପୂର୍ବେ କେହି ଗୋଟିଏ କରୁଣ ଅର୍ଥଜ୍ଞାପକ ରଚନା ଗୋଟିଏ ବିଶେଷ ରାଗରେ ଗୀତ ହେବାର ଶୁଣିଥିଲେ । ପୁଣି ସେହି ରାଗିଣୀକୁ ଶୁଣିଲାକ୍ଷଣି କରୁଣ ଭାବ ଉଦୟ ହେବା ସମ୍ଭବ । ରାଗିଣୀର ନିଜ ଭାବର ଅନୁରୂପ ଉକ୍ତ ଧରଣର ରଚନା, ରସର ପୁଷ୍ଟିସାଧନ କରେ ଏବଂ ଏହାର ବିପରୀତ ହେଲେ ସମସ୍ତ ପଣ୍ଡ କରିଦିଏ । ପରୀକ୍ଷାସ୍ୱରୂପ ଜଣେ ଶିକ୍ଷିତ ବଂଶୀବାଦକ ବା ବେହେଲା ବାଦକଠାରୁ ଥରେ ଗୋଟିଏ କରୁଣ ରାଗିଣୀର ଆଳାପ ଓ ପର ମୁହୂର୍ତ୍ତରେ ଗୋଟିଏ ଉଲ୍ଲାସ-ବ୍ୟଞ୍ଜକ ରାଗିଣୀର ଆଳାପ ଶୁଣିଲେ ସନ୍ଦେହ ତୁଟିଯିବ ।

ପୂର୍ବରୁ କହିଅଛି, ଆମ ଦେଶରେ ବର୍ତ୍ତମାନ ସଙ୍ଗୀତଚର୍ଚ୍ଚା କିପରି କମିଗଲାଣି: ଏପରିକି ଗ୍ରାମର ଭାଗବତଘରମାନଙ୍କରେ ସାଧାରଣତଃ ଲୋକେ ଯେଉଁ ଟିକିଏ ଟିକିଏ ଗୀତ ବାଦ୍ୟ କରୁଥିଲେ ତାହା ମଧ୍ୟ ଉଠିଗଲାଣି । ଏବେ ଯାହା କିଛି ଅଛି ତାହା ଲୀଳା, ଯାତ୍ରା, ନାଟକଦଳ, ପୂଜାବାଲା, ସଙ୍ଗୀତ ଆଖଡ଼ା ଏବଂ ଯୋଗୀ, କଣ୍ଡରା, ବୈଷ୍ଣବ ଓ କେଳା ବା ଶଅରଙ୍କଠାରେ । ଯୋଗୀମାନେ କେନ୍ଦରା ବଜାଇ ଓ କଣ୍ଡରା ବୈଷ୍ଣବ ଖଞ୍ଜଣୀ ଧରି ଓ ଶଅର ନାଉନ୍ତୁମ୍ବୀର ଗୀତ ଗାଇ ଭିଖ ମାଗନ୍ତି । ଏମାନଙ୍କର ଉଦ୍ଦେଶ୍ୟ ଭିକ୍ଷା ହେଲେ ମଧ୍ୟ ପୂର୍ବେ ସେମାନେ ବଂଶପରମ୍ପରାକ୍ରମେ ଗୀତ ବାଦ୍ୟ ଉତ୍ତମରୂପେ ଶିକ୍ଷା କରୁଥିଲେ ଏବଂ ଶ୍ରୋତାମାନେ ମଧ୍ୟ ଭଲ ଗାୟକଙ୍କୁ ପସନ୍ଦ କରୁଥିଲେ । ଏବେ ସେ ଶବ୍ଦ ଦୁଆର ଆଗରେ ଶୁଣିଲାକ୍ଷଣି ଗୃହସ୍ଥ ଯେତେ ଶୀଘ୍ର ପାରନ୍ତି ସେ ଆପଦକୁ ବିଦାୟ କରନ୍ତି । ଏବେ ପୁଣି ଗାୟକବୃନ୍ଦଙ୍କର ମଧ୍ୟ ଏପରି ମନ ଆଦୌ ନାହିଁ ଯେ ତାଙ୍କର ଗୀତଟି କିପରି ମଧୁର ହେବ ବା ଶ୍ରୋତାଙ୍କର ମନୋହରଣ କରିବ । ବୋଧହୁଏ ଗୋଟାଏ କର୍ଣ୍ଣକଟୁ ଗୋଳମାଳ ଦ୍ୱାରା ଶ୍ରୋତାଙ୍କୁ ବିରକ୍ତ କରାଇ ଶୀଘ୍ର ବିଦାୟ ନେବାର ଉପାୟ ବିଧାନ କରିବା ସେମାନଙ୍କର ଉଦ୍ଦେଶ୍ୟ ।

ତାହା ପରେ ପୂଜାବାଲା ଓ ଲୀଳାଦଳ ଆଗରୁ ଯେତେ ଥିଲେ ଆଜିକାଲି ତାହାର ସଂଖ୍ୟା ବହୁତ ଊଣା । ସେ ବ୍ୟବସାୟ ଏବେ ପୋଷାଉନାହିଁ । କାରଣ ପୋଷିବା ଲୋକଙ୍କର ନିଜର ଅଭାବ ଓ ମଜୁରି ଟାଣ । ଏଣେ ପୁଣି ପଇସା ଦେଇ ତାହା ପରିବର୍ତ୍ତରେ ଯାହା କାମ ମିଳୁଛି ତାହା ଅତି ମୂଲ୍ୟହୀନ । ପୂଜା ଗାଆଣମାନେ ଆଗେ ଅନେକ ପଢ଼ାଶୁଣା କରୁଥିଲେ, ଅର୍ଥ ଅର୍ଥାତ୍ ଶିଖୁଥିଲେ ଓ ରାଗରାଗିଣୀ ପରିପାଟୀରୂପେ ଅଭ୍ୟାସ କରୁଥିଲେ । ଏବକୁ ଗୋଟାକେତେ ଛାନ୍ଦ, ଦୁଇ ଚାରିଟା ଚୌପଦୀ, ଜଣାଣ ଓ ଅମରକୋଷରୁ ଦିʼଚାରି ପଦ ହେଲେ ଜଣେ ସ୍ୱତନ୍ତ୍ର ଗାୟକ ।

# ଓଡ଼ିଆ ସଙ୍ଗୀତ

ତହିଁରେ ପୁଣି ଗାୟକମାନେ ବଡ଼ ବଡ଼ ରାଗମାନ ଛାଡ଼ି ଆଶ୍ରା କଲେଣି 'ହସି ଆ ରେ ଫୁଲରସିଆ', 'ଚକ ଚକ ଶାଟି, ଝକ ଝକ ହସି' ପ୍ରଭୃତି ନୂଆ ଚୂଟକ ଗୀତ।

ଲୀଳାର ଅବସ୍ଥା ତହୁଁ ବଳି। ସେ କାଳର ଲୀଳା ଯାହା ସବୁ ଆଜିକାଲିକା ସଂସାରକୁ କୁରୁଚିପୂର୍ଣ୍ଣ ହେଲେ ମଧ୍ୟ, ସଙ୍ଗୀତର ଟେକ ରଖିଥିଲେ। ଏବେ ଏକ ନୂଆ ଧରଣର ଲୀଳା ଓଡ଼ିଶା ଯାକ ଘୁରିଗଲଣି। ତାହା କେବଳ ଡିଆଁ କେଉଁ, କୁଦା କୁଦିବିଟେ। ଗୀତର ରଚନାଭଙ୍ଗୀ ଓ ଶବ୍ଦବିନ୍ୟାସ ଦେଖିଲେ ହସିବାର କଥା କି କାନ୍ଦିବାର କଥା, କହି ହେବ ନାହିଁ। କେବଳ ମନେ ହୁଏ, "ହାୟ, କ'ଣ ଥିଲା, କ'ଣ ହେଲା"। ଆଜ ରାଗରାଗିଣୀର କଥା ବର୍ଣ୍ଣନାର ଅସାଧ୍ୟ। ଖାଲି ଚୂଟକ ତାଳରେ ଗାଇ ଗୋଟାଇଇଲ ପରି। ସେହି ସବୁ ମଧ୍ୟ ଲୋକେ ଉପଭୋଗ କରୁଅଛନ୍ତି। ସତେ କ'ଣ ଆମ ଦେଶରେ ସାଙ୍ଗୀତିକ ରୁଚିର ଏଡ଼େ ଅଧଃପତନ ଘଟିଛି! ତଥାପି ମୋର ବିଶ୍ୱାସ, ଏ ଢଙ୍ଗ ବେଶି ଦିନ ରହିବ ନାହିଁ। କାରଣ ଗୋଟାଏ କଳାକୁଶଳ ସମଗ୍ର ଜାତି ଏପରି କଳାହୀନ, ସୌନ୍ଦର୍ଯ୍ୟହୀନ, ମାଧୁର୍ଯ୍ୟହୀନ ହୁରୁଡ଼ାହୁରୁଡ଼ିରେ ଚିରଦିନ ସନ୍ତୁଷ୍ଟ ରହି ତା'ର ପିପାସା ମେଣ୍ଟାଇ ପାରିବ ନାହିଁ।

ଆଉ ନାଟକ ବା ଥିଏଟର ସମାଜ ଯାହା ଯେଉଁଠି ଅଛି ବା ହେଉଛି, ସେମାନଙ୍କର ମଧ୍ୟ ସଙ୍ଗୀତ ଉପରେ ସେତେ ନଜର ନାହିଁ, ଯେତେ ଅଛି ପୋଷାକପତ୍ର ବା କଥାକଥନ ଉପରେ। ସେମାନଙ୍କର ପ୍ରଧାନ ଲକ୍ଷ୍ୟ, କିପରି ସାଧାରଣ ରୁଚିର ପରିପୋଷକତା କରିବେ (ତାହା ଭଲ ହେଉ ବା ମନ୍ଦ ହେଉ) ଓ ଯେତେ ସହଜରେ ଓ ଅଳ୍ପରେ ପାରନ୍ତି କାମ ଚଳାଇନେବେ। ଏହି ରୁଚିର ପରିବର୍ତ୍ତନ ଆଣିବା ସକାଶେ ପ୍ରବର୍ତ୍ତକ ରୂପରେ ଛିଡ଼ା ହେବା ଭଳି ସାହସ ବା ସାମର୍ଥ୍ୟ କାହାର ଅଛି? ଏ ରୂପ ଗୁରୁତର ବିଷୟରେ ହସ୍ତକ୍ଷେପ କରି ଯେଉଁ ପରିଶ୍ରମ, ଧୈର୍ଯ୍ୟ ବା ଅଭିନିବେଶ ପ୍ରୟୋଜନ ତାହା କରିବାକୁ ଦଳପତିମାନେ ନାରାଜ। କାରଣ କେହି ତାହା କରିବାକୁ ଚେଷ୍ଟା କଲେ ଗ୍ରାହକ ଅଭାବରେ ବଜାରରେ ବିକାଉନାହିଁ। ତହିଁକି ଏ ଦରିଦ୍ର ଦେଶରେ ସେ ଶକ୍ତି, ସମୟ ଓ ଅର୍ଥ ବା କାହିଁ? ଆଉ ଗୋଟିଏ ପ୍ରୟୋଜନୀୟ ବିଷୟର ଅବତାରଣା କରି ମୋର ବକ୍ତବ୍ୟ ଶେଷ କରିବି।

କାହାରି କାହାରିକୁ ଏକଥା କହିବାର ମୁଁ ଶୁଣିଅଛି ଯେ ଆମ ଦେଶରେ ଯେଉଁ ସବୁ ରାଗରାଗିଣୀ ନାହିଁ ତାହା ବିଦେଶରୁ ଆଣି ପୂରାଇବା ଉଚିତ ନୁହେଁ, କାରଣ ତଦ୍ଦ୍ୱାରା ଆମ ଜାତୀୟ ସଙ୍ଗୀତର ଜାତି ନଷ୍ଟ ହୋଇଯାଏ। ମୋ କ୍ଷୁଦ୍ର ବୁଦ୍ଧିରେ ଏ ଉକ୍ତି ଛୁଆଁ ରକ୍ଷଣଶୀଳତା ବ୍ୟତୀତ କିଛି ନୁହେଁ। ରାଗରାଗିଣୀ କୌଣସି ଜାତିର ନିଜସ୍ୱ ନୁହେଁ। ଭାଷା ବା ରଚନା କାହାର ନିଜସ୍ୱ ହୋଇପାରେ; କିନ୍ତୁ ସ୍ୱର ପଦାର୍ଥଟା ସାର୍ବଜନୀନ। ଆଜି ଇଂରେଜ, ଇଟାଲିଆ, ଫରାସୀ ବା ରୁଷୀୟ ସଙ୍ଗୀତ ଯେ ଏତେ ଉନ୍ନତ ବୋଲି କହନ୍ତି, ତାହା କ'ଣ ସବୁ ସେହି ସେହି ଦେଶରୁ ଜନ୍ମ ହୋଇଅଛି? ସେମାନେ କେତେ ପରିଶ୍ରମ କରି ନାନା ଦେଶରୁ ନାନା ଜାତିର ସଙ୍ଗୀତକଳା ବହୁ ଅଧ୍ୟବସାୟ ସହକାରେ ଅଧ୍ୟୟନ କରି ନିଜ ଦେଶକୁ ଆଣି ତାହା ନିଜର କରି ନେଇଛନ୍ତି।

ଭାରତର ଯେଉଁ ସମୟରେ ସୁଦିନ ଥିଲା ସେ ସମୟରେ ଆଜିକାଲିକା ପରି ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କ ସହିତରେ ସମ୍ପର୍କ ନଥିଲା। ତାହା ଥିଲେ ଭାରତୀୟ ସଙ୍ଗୀତରେ ମଧ୍ୟ ଆଜି ୟୁରୋପ, ଆଫ୍ରିକା, ଚୀନ, ଜାପାନ ପ୍ରଭୃତି ଦେଶର ସଙ୍ଗୀତର ଛାୟା ବା ଚିହ୍ନମାନ ରହିଥାନ୍ତା। ଯେଉଁ ଯେଉଁ ଦେଶ ସହିତ ସମ୍ବନ୍ଧ ଥିଲା ସେମାନଙ୍କ ସହିତରେ ଏ ବିଷୟରେ ଆଦାନ ପ୍ରଦାନ ମଧ୍ୟ ଚାଲିଛି। ସଂସ୍କୃତ ରାଗରାଗିଣୀମାନଙ୍କ ମଧ୍ୟରେ ତୁର୍କଶି, ମୁଲତାନ, ଗାନ୍ଧାରୀ ପ୍ରଭୃତି ରାଗିଣୀମାନ ତାହାର ପ୍ରମାଣ। ମୁସଲମାନ ଯୁଗରେ ସୁଦ୍ଧା ଅନେକ ପାରସ୍ୟ ରାଗ ଏ ଦେଶକୁ ଆସିଛି। ଆଧୁନିକ ବଙ୍ଗଦେଶରେ ଦେଖିବାକୁ ମିଳେ ଯେ ବଙ୍ଗାଳୀମାନେ ଯାହା ଯେଉଁଠାରେ ଭଲ ପାଇଛନ୍ତି ତାହା ଆଣି ନିଜର କରି ନେଇଛନ୍ତି। ସେଥିପାଇଁ ଆଜି ବଙ୍ଗଳା ସଙ୍ଗୀତ ଏତେ ଉନ୍ନତ। ଏବେ ମଧ୍ୟ ପରଲୋକଗତ ଦ୍ୱିଜେନ୍ଦ୍ର ଲାଲ ଅନେକ ୟୁରୋପୀୟ ରାଗମାନ ଏପରି ଭାବରେ ବଙ୍ଗଳା ଛାଞ୍ଚରେ ପକାଇ ଗଢ଼ି ନେଇଅଛନ୍ତି ଯେ ତାହା ପରିଷ୍କାର ବଙ୍ଗାଳୀ ହୋଇଯାଇଛି। ଆମରି ଉତ୍କଳରେ ତ ଦିନେ ଦକ୍ଷିଣୀ ସଙ୍ଗୀତ ପ୍ରବେଶ କରି ଏତେ ପରିବର୍ତ୍ତନ ଓ ଉନ୍ନତି ଘଟାଇଥିଲା। ତେବେ ତାହା କଞ୍ଚା ହାତରେ ପଡ଼ିଲେ ହଅଁ ଗଢ଼ୁ ଗଢ଼ୁ ମାଙ୍କଡ଼ ମଧ୍ୟ ହୋଇଯିବା ସମ୍ଭବ। ସେଥିକୁ ସୁଦକ୍ଷ ବିଜ୍ଞାଣୀ ଦରକାର। ଏତିକି, ସାହିତ୍ୟରେ ମଧ୍ୟ ସେହି ଏକ କଥା। ଯାହା ଯେଉଁଠାରେ ଉପାଦେୟ ମିଳିବ ତାହା ଆଣି ଆପଣାର କରି ଘରେ ରଖି ଆପଣାର ସମ୍ପଦ କ'ଣ ବଢ଼ାଇବା ମନ୍ଦ? ଅବଶ୍ୟ ଆପଣାର ଯାହା ଅଛି ତାହାର ମୌଳିକତା ନଷ୍ଟ କରି ତାହା ଫୋପାଡ଼ି ଦେବାକୁ କେହି କହୁନାହିଁ। ବରଂ ତା'ର ଉନ୍ନତି କରିବା ପ୍ରୟୋଜନ। ସିଲେଟ କମଳା ଗଛ କଲମ କରି ଆଣି ଆମ ବଗିଚାରେ ଲଗାଇ, ଆମ ଦେଶର ନିଜସ୍ୱ ନାହିଁ ବୋଲି ତାହା ନ ଦେଇ ତା' ସହିତ ନେଲେ ଯଦି ଆମେ ଆମ ଦେଶୀ କମଳା ଫଳାଇ ପାରିଲେ ତେବେ

ତାହା କେଡ଼େ ବାହାଦୁର କଥା ! ଓଡ଼ିଆ ମାଟିରେ ଓଡ଼ିଆ ଜଳରେ ଜନ୍ମ ହୋଇଥିଲେ ତ ସେ ନିଶ୍ଚୟ ଓଡ଼ିଶୀ କମଳା ପାଲଟିଯିବ । ଯଦି ଆମେ ଆପଣା ଅଯୋଗ୍ୟପଣରୁ କରି ନ ପାରିଲୁଁ ତେବେ ତାହା ତ ଆପେ ଆପେ ମରିଯିବ କିମ୍ବା ଯାହା ନ ହେବାର କଥା ତାହା ଏ ହାଓ୍ୱା ଲାଗିଲାକ୍ଷଣି ବଳେ ମଉଳିଯିବ । ଏ ବିଷୟରେ ମୋର ନିଜର ଗୋଟିଏ ଅଭିଜ୍ଞତା କଥା କହିବି । ମୋର ବହୁକାଳର ଧାରଣା ଯେ ବଙ୍ଗଳା କୀର୍ତ୍ତନ ରାଗ ଓଡ଼ିଆ ଭାଷାରେ ଖାପ ଖାଇବ ନାହିଁ । ଦିନେ ପରୀକ୍ଷା କରୁଁ କରୁଁ କରି ପକାଇଲି । ଦେଖିଲି, ବେଶ ଚଳିଛି ଓ ସମଜଦାର ଶ୍ରୋତାମାନେ ପସନ୍ଦ କଲେ । ଏହିପରି ୟୁରୋପୀୟ ରାଗିଣୀକୁ ମଧ୍ୟ ଚେଷ୍ଟା କରି କୃତକାର୍ଯ୍ୟ ହୋଇଛି ।

ଆମ ଦେଶରେ ସ୍ୱରଲିପିମୂଳକ ସଙ୍ଗୀତ ଶିକ୍ଷାର ବଡ଼ ଅଭାବ ଏବଂ ସ୍ୱରଲିପିର ପ୍ରଚାର ମଧ୍ୟ ନାହିଁ କହିଲେ ଚଳେ । ଏ ଯୁଗରେ ମୁଦ୍ରାଯନ୍ତ୍ର ପ୍ରସାଦରୁ ଲୋକେ ଘରେ ବସି ମଧ୍ୟ ଅଳ୍ପ ଆୟାସରେ ଦେଶ ବିଦେଶର ସଙ୍ଗୀତ ଆସ୍ୱାଦନ କରିବାର ସୁବିଧା ରହିଅଛି । ଓଡ଼ିଶାରେ ସଙ୍ଗୀତକଳା ବର୍ତ୍ତମାନ ପତନୋନ୍ମୁଖ । ଯାହା ଥିଲା, ତାହା ବିକୃତ; ଯାହା ନୂଆ ଆସୁଛି, ତାହା ଅତି ନିମ୍ନମାନ, କଦାକାର । ଏହି ପ୍ରୟୋଜନୀୟ ବିଦ୍ୟାର ସଂରକ୍ଷଣ ବା ଉନ୍ନତି କରିବାକୁ ହେଲେ ବ୍ୟକ୍ତିଗତ ଅନୁଶୀଳନ ଓ ସମବେତ ଚେଷ୍ଟା ଦରକାର । ସାଧାରଣର ସହାନୁଭୂତି ଓ ଧନୀମାନଙ୍କର ଉତ୍ସାହ ନ ପାଇଲେ ତାହା ହେବା ସହଜ ନୁହେଁ । ସଭ୍ୟଦେଶମାନଙ୍କରେ ସଙ୍ଗୀତାନଭିଜ୍ଞ ବ୍ୟକ୍ତି ସମାଜରେ ଅବଜ୍ଞେୟ ଓ ବନ୍ଧୁମେଳରେ ହାସ୍ୟାସ୍ପଦ । ସେ ଦେଶମାନଙ୍କର ବିଦ୍ୟାଳୟମାନଙ୍କରେ ବିଧିମତେ ସଙ୍ଗୀତ ଶିକ୍ଷା ଦିଆଯାଏ । କିନ୍ତୁ ଆମ ଦେଶରେ ଏ ସବୁ ନାହିଁ । ବରଂ କେହି ଗୀତ ଗାଇଲେ ସେ ବିଗିଡ଼ିଗଲା ବୋଲି ଲୋକେ ଆକ୍ଷେପ କରନ୍ତି ଓ ମୁରବିମାନେ ଅବରୋଧ କରନ୍ତି । ଗୀତ ଗାଇବା ଦ୍ୱାରା ପଢ଼ାପଢ଼ିରେ ବିଘ୍ନ ହେବ ବୋଲି ବାପ ମା ପିଲାଙ୍କୁ ସେଥିରୁ ଦୂରରେ ରଖିବାର ଚେଷ୍ଟା କରନ୍ତି । ଅବଶ୍ୟ ଛାତ୍ରାବସ୍ଥାରେ ଥିଏଟର କିମ୍ବା ଆଖଡ଼ାରେ ମିଶିବା ଉଚିତ ନୁହେଁ; କିନ୍ତୁ ଅନ୍ୟ ପାଠ ସଙ୍ଗରେ ଗୋଟିଏ ପାଠ ରୂପେ ସଙ୍ଗୀତ ବିଦ୍ୟା ଶିକ୍ଷା ଦେବା ବାପ ମା'ଙ୍କର କର୍ତ୍ତବ୍ୟ । ଏତଦ୍ୱାରା ପିଲାର ରୁଚିର ମାର୍ଜନା ହୁଏ ଓ ହୃଦୟର ସରସତା ବୃଦ୍ଧି ପାଏ । କାହାରି କାହାରି ମତରେ ଲକ୍ଷ୍ମୀ ସରସ୍ୱତୀଙ୍କ ବିବାଦ ଥିବା ସ୍ଥଳେ, ଯେଉଁମାନେ ସଙ୍ଗୀତ ସେବା କରନ୍ତି ସେମାନେ ଦରିଦ୍ର ହୁଅନ୍ତି । ବାସ୍ତବିକ ସଙ୍ଗୀତରେ ଏପରି ଗୋଟିଏ ମାଦକତା ଅଛି ଯେ, ତାହା ଅନେକ ସମୟରେ ମନୁଷ୍ୟକୁ କେବଳ ସଙ୍ଗୀତ ସ୍ରୋତରେ ଭସାଇ ନେଇଯାଏ । ସୁତରାଂ ବିଷୟବୁଦ୍ଧିର ଅଭାବ ହୋଇପଡ଼େ । "ଅତି ସର୍ବତ୍ର ବାଧତେ" । ସବୁଥିରେ ଯେପରି ସଂଯମ ଦରକାର ଏଥିରେ ମଧ୍ୟ ସେହିପରି ସଂଯମ ଦରକାର । ଦେଖାଯାଏ, ଅତିଶୟ ସଙ୍ଗୀତାସକ୍ତ ବ୍ୟକ୍ତିମାନେ ପ୍ରାୟ ସରଳପ୍ରାଣ ଓ ବିଷୟବୁଦ୍ଧିହୀନ ହୁଅନ୍ତି । କିନ୍ତୁ ସଙ୍ଗୀତ ମନୁଷ୍ୟକୁ କେତେ ଦୈନନ୍ଦିନ ଶୋକ, ତାପ, ଅଶାନ୍ତିରୁ ରକ୍ଷା କରେ ତାହା ଅନୁଭବୀ ମାତ୍ରେ ଜାଣନ୍ତି । ଅନେକ ଋଷି ଓ କବିମାନେ ସଙ୍ଗୀତଜ୍ଞାନଶୂନ୍ୟ ବ୍ୟକ୍ତିଙ୍କୁ ପଶୁ, ପାପୀ ପ୍ରଭୃତି ଆଖ୍ୟା ପ୍ରଦାନ କରିଅଛନ୍ତି । ଏପରି ଜଣେ ମାତ୍ର ବ୍ୟକ୍ତିଙ୍କୁ ମୁଁ ଜାଣେ, ଯେ ଗୀତ ବାଦ୍ୟ ସହ୍ୟ କରି ପାରନ୍ତି ନାହିଁ । ପରନ୍ତୁ ଏପରି ଶତ ଶତ ବ୍ୟକ୍ତିଙ୍କୁ ଦେଖିଛି, ଯେଉଁମାନେ ସଙ୍ଗୀତର ସ ଅକ୍ଷର ଜାଣନ୍ତି ନାହିଁ, ବା କେବେ ଆଁ କରନ୍ତି ନାହିଁ; ଅଥଚ ନିର୍ଜନରେ ତାନାନାନା ବା ଗୁଣୁ ଗୁଣୁ ହୁଅନ୍ତି । ଲଜ୍ଜା ଅନେକଙ୍କୁ ଗୀତ ବାଦ୍ୟ ଶିଖିବାକୁ ଦିଏ ନାହିଁ । ଯେଉଁମାନେ ଲଜ୍ଜା ସଙ୍କୋଚ ଛାଡ଼ିପାରନ୍ତି, ସେମାନେ ଶିଖିବାର ବେଶୀ ସୁବିଧା ପାଆନ୍ତି । ଯଥାର୍ଥରେ ଅତି ଲାଜକୁଳିଆ ହେଲେ ସଙ୍ଗୀତ ଶିକ୍ଷାରେ ବ୍ୟାଘାତ ଘଟେ । କଥାରେ ଅଛି, ସଲଜ୍ଜ ବାଏ, ନିର୍ଲଜ୍ଜ ଗାଏ, ଅତି ନିର୍ଲଜ୍ଜ ନାଚିବାକୁ ଯାଏ । ଅବଶ୍ୟ କାହାରି କାହାରି ଏପରି ସଂସ୍କାର ଥାଏ ବା ଐଶ୍ୱରିକ ଶକ୍ତି ଥାଏ ଯେ ସେମାନେ ଆପେ ଆପେ ନୃତ୍ୟ ଗୀତ ବାଦ୍ୟ ପ୍ରଭୃତିରେ ପିଲାକାଳରୁ ମଧ୍ୟ ପ୍ରବୀଣ ହୋଇ ଉଠନ୍ତି । କିନ୍ତୁ ତାହା ବୋଲି "ମୋର ନାଳ୍ପାରି ବିଦ୍ୟା ହେବ ନାହିଁ", ଏପରି କହି ଛାଡ଼ିଦେବା ଉଚିତ ନୁହେଁ । ଶୀଘ୍ର ହେଉ, ବିଳମ୍ବରେ ହେଉ, ଅଳ୍ପାୟାସରେ ହେଉ ବା ବହୁ ପରିଶ୍ରମରେ ହେଉ, ସଙ୍ଗୀତକୁ ସମସ୍ତଙ୍କର ଶିଖିବା ଉଚିତ । ସଙ୍ଗୀତ ଗୋଟାଏ ସଭ୍ୟତାର (Civilization) ବା ମାର୍ଜନାର (Culture) ଅଙ୍ଗ ମଣି ପ୍ରତ୍ୟେକ ନରନାରୀଙ୍କର ସାଧ୍ୟାନୁସାରେ ଶିକ୍ଷା କରିବା ଉଚିତ । କେହି କେହି ଦିନାକେତେ ଯନ୍ତ୍ରପାତି କିଣି, ଟୁଂ ଟାଂ କରି, ଶେଷରେ କିଛି ହେଲା ନାହିଁ ବୋଲି କହି ଏକାବେଳେକେ ଛାଡ଼ି ଦେବାର ଦେଖାଯାଏ । ଯେ କୌଣସି ବିଦ୍ୟାରେ ଯେ ସମସ୍ତେ ଓସ୍ତାଦ୍ ହୋଇଯିବେ ଏପରି ହୋଇ ନ ପାରେ । କାହାରି କାହାରି ସହଜରେ ବା ସ୍ୱତଃ ହୁଏ, କାହାରି କାହାରି କଷ୍ଟରେ ହୁଏ; ଏତିକି ପ୍ରଭେଦ । ପ୍ରତ୍ୟେକ ମନୁଷ୍ୟର ହୃଦୟରେ ସଙ୍ଗୀତର ଗୁପ୍ତ ଅମୃତ ଧାରା ଅନ୍ତଃସଲିଳା ଫଲ୍‌ଗୁପରି ସର୍ବଦା ପ୍ରବାହିତ ହେଉଅଛି । କେବଳ ଜାଗ୍ରତ କରିବାକୁ ହେବ—ଉଦ୍‌ବୋଧନ କରିବାକୁ ହେବ ।

# ଗୋପବନ୍ଧୁଙ୍କ ସ୍ମୃତି

ଆଜକୁ ପ୍ରାୟ ୬୫ ବର୍ଷର କଥା— କାଲିପରି ଲାଗୁଛି । ଯେବେ ମୁଁ ପ୍ରଥମେ ମହାତ୍ମା ଗୋପବନ୍ଧୁଙ୍କ ସମ୍ପର୍କରେ ଆସିଲି, ସେତେବେଳେ ରେଭେନ୍‌ସା କଲେଜ୍ ଓ କଲେଜିଏଟ୍ ସ୍କୁଲ ଏକ ପ୍ରିନ୍‌ସିପାଲଙ୍କ ଅଧୀନରେ ଥାଇ କାଠଯୋଡ଼ି କୂଳସ୍ଥ ପୁରୁଣା ବୋଡ଼ିଂ ଘରଟା କଲେଜ, କଲେଜିଏଟ୍ ଓ ସର୍ଭେ ପିଲାଙ୍କ ଛାତ୍ରାବାସ ଥିଲା । ମୁଁ ଯାଇ ନାମ ଲେଖାଇଲି କଲେଜିଏଟ୍ ସ୍କୁଲରେ ଓ ରହିଲି ବୋଡ଼ିଂରେ । ପଣ୍ଡିତ ଗୋପବନ୍ଧୁ ସେତେବେଳେ ବି. ଏ. ପଢ଼ୁଥାନ୍ତି । ତାଙ୍କର ସହପାଠୀଙ୍କ ମଧ୍ୟରେ ଥା’ନ୍ତି ଡେପୁଟି ଗୋପୀନାଥ ଦାସ, ଡେପୁଟି ରମାଚରଣ ଦାସ, ଡେପୁଟି ହିରଣ୍ମୟ ପୃଜାରୀ, ସବ୍‌ଡେପୁଟି ହରମୋହନ ପଟ୍ଟନାୟକ, ସବ୍‌ଜଜ୍ ସୂର୍ଯ୍ୟମଣି ଦାସ ପ୍ରଭୃତି । ମୁଁ ସେତେବେଳେ ପିଲା । ମୁଁ ଦେଖିଛି, ତାଙ୍କର ବନ୍ଧୁମାନେ ସେତେବେଳେ ମଧ୍ୟ ତାଙ୍କୁ କିପରି ସ୍ନେହ ଓ ସମ୍ମାନର ଚକ୍ଷୁରେ ଦେଖୁଥିଲେ । ଗୋପବନ୍ଧୁବାବୁଙ୍କର ଅନାଡ଼ମ୍ବର ଚାଲିଚଳଣ, ସରଳ ବ୍ୟବହାର, ନାନା ବିଷୟରେ ପାରଦର୍ଶିତା ତାଙ୍କୁ ଛାତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ ଆସନ ଦେଇଥିଲା । ଗହନ କଥା ପଡ଼ିଲେ ସେ ଯେପରି ଗମ୍ଭୀର ହୋଇଯାଇ ବଡ଼ ବଡ଼ କଥା କହି ସମସ୍ତଙ୍କୁ ଚମତ୍କୃତ କରି ପାରୁଥିଲେ, ସାଙ୍ଗ ସୁଖରେ ମଧ୍ୟ ଥଟ୍ଟାତାମସା କରି କେହି ତାଙ୍କ ସମକକ୍ଷ ହୋଇପାରୁ ନଥିଲେ । ମୁଁ ଯେତେବେଳର କଥା କହୁଛି, ସେତେବେଳେ ସେ ପୂର୍ଣ୍ଣ ଯୁବକ । ଯୁବକ ହେଲେ ମଧ୍ୟ ଔଦ୍ଧତ୍ୟ ନାହିଁ, ଚପଳତା ନାହିଁ, —ପ୍ରଶାନ୍ତ, ଗମ୍ଭୀର ମୂର୍ତ୍ତି—ଶାନ୍ତ, ସ୍ନେହ, ମମତା, ଆତ୍ମୀୟତାର ଆଧାର । ଗାମ୍ଭୀର୍ଯ୍ୟ ସହିତରେ ଏପରି ରସିକତା ସହଜରେ ଏକତ୍ର ଦେଖିବାକୁ ମିଳେନା । ମାତ୍ର ଗୋପବନ୍ଧୁ ଥିଲେ ସେହିପରି । ତାଙ୍କର ଚରିତ୍ର ବଳରେ ସେ ହୋଇଥାନ୍ତି ବୋଡ଼ିଂର ମନିଟର । ଛାତ୍ରଜୀବନରେ ଏହା ଊଣା ସମ୍ମାନ ନୁହେଁ । କୁରୁତା ପିନ୍ଧିବା ବା ଜୋତା ମାଡ଼ିବା ମୁଁ ତାଙ୍କୁ ଛାତ୍ରାବସ୍ଥାରେ କେବେ ଦେଖିନାହିଁ । ସେ କାଳର ବି. ଏ. ପିଲା ଆମ ଭଳିଆ ନାବାଳକ ସ୍କୁଲ ପିଲାଙ୍କୁ ଚାହିଁବା ବା ତାଙ୍କ ସଙ୍ଗରେ କଥା କହିବାକୁ ସମ୍ମାନହାନିକର ମଣୁଥିଲେ । ଆମେ ବି ଡରରେ ସେମାନଙ୍କଠାରୁ ବହୁ ଦୂରରେ ରହୁଥିଲୁଁ । ମାତ୍ର ଗୋପବନ୍ଧୁଙ୍କ ଆଗରେ ଯେତେବେଳେ ପଡ଼ିଗଲେ ସେ ନିଶ୍ଚୟ ଟିକିଏ ହସିଦେଇ ପଦେ କହିଦେବେ ବା मୁଣ୍ଡରେ ପିଠିରେ ଟିକିଏ ହାତ ମାରିଦେବେ । ଆଉ ଏହାଛଡ଼ା ଥିଲା ତାଙ୍କର କୌତୁକିଆ କଥା ଓ ଭଙ୍ଗୀ । ସେ ଯେତେବେଳେ ଥଟ୍ଟେଲି କରି କହନ୍ତି, କେହି ନ ହସି ରହିପାରିବ ନାହିଁ । ପିଲାଙ୍କୁ ସେ ପ୍ରାଣ ଦେଇ ଭଲ ପାଉଥିଲେ ଏବଂ ତାଙ୍କ ଚରିତ୍ରର ଏ ବୈଶିଷ୍ଟ୍ୟତା ତାଙ୍କର ପରବର୍ତ୍ତୀ ଜୀବନରେ ଉଜ୍ଜ୍ୱଳ-ଭାବରେ ପରିସ୍ଫୁଟ ହୋଇଥିଲା ।

ଗୋପବନ୍ଧୁ ଥିଲେ କବି । ଯେ ତାଙ୍କ ସାଙ୍ଗରେ ଭଲ କରି ମିଶିଛନ୍ତି ସେ ଜାଣନ୍ତି, ତାଙ୍କ ଭିତରେ କବିଭାବଟା କର୍ମୀଭାବଠାରୁ କେତେ ବେଶୀ ଥିଲା । ମୋ ମନେହୁଏ ତାଙ୍କ ହୃଦୟର ଏହି ଭାବପ୍ରବଣତା, ଏହି ସରସତା, ଏହି ବିଶ୍ୱପ୍ରେମିକତା ତାଙ୍କୁ ବାଧ୍ୟ କରିଥିଲା କର୍ମୀ ହେବାକୁ । ସେଥିପାଇଁ ସେ କେବଳ ଲେଖନୀଚାଳନାରେ ସନ୍ତୁଷ୍ଟ ନ ହୋଇ କରଚରଣ ବି ଚାଳନା କରିଥିଲେ । ପର ପାଇଁ ନିଜକୁ ଭୁଲିଯାଇ ଏକକୁ ବହୁରେ ପରିଣତ କରିବାରେ ଆତ୍ମତ୍ୟାଗର ଯେଉଁ ଅନାବିଳ ଆନନ୍ଦ ତାହା ସେ ପାଇଲେ ଆତ୍ମାକୁ ନିଃଶେଷ କରିଦେଇ ବିଶ୍ୱରେ । ଗୋପବନ୍ଧୁ ଯଦି କର୍ମକ୍ଷେତ୍ରରେ ନ ପଶି ସାହିତ୍ୟ-କ୍ଷେତ୍ରରେ ଏକନିଷ୍ଠ ହୋଇ ରହିଥାଆନ୍ତେ ହୁଏ ତ ତାଙ୍କ ଆସନ ଉତ୍କଳଭାରତୀ ସଭାର ପୁରୋଭାଗରେ ରହିଥାଆନ୍ତା । ତଥାପି ଆଧୁନିକ ଓଡ଼ିଆ ଗଦ୍ୟର ସେ ଯେଉଁ ନୂଆ ରୂପ ଦେଇଗଲେ ତାହାହିଁ ଏବେ ସମସ୍ତେ ଅନୁକରଣ କରୁଛନ୍ତି ।

ଛାତ୍ରାବସ୍ଥାରେ ସେ କେତେଗୁଡ଼ିଏ କବିତା ଲେଖିଥିଲେ । ସେଗୁଡ଼ିକ ସଂଗ୍ରହ କରି ‘ଅବକାଶ ଚିନ୍ତା’ ନାମକ ପୁସ୍ତକରେ ଛପା ହୋଇଥିଲା । ସେ କବିତାଗୁଡ଼ିକ ଏତେ ମନୋହର, ମଧୁର, ଭାବ-ବ୍ୟଞ୍ଜକ ଯେ ତାହା ଯେ କୌଣସି ଦେଶର ବଡ଼ କବିଙ୍କ ପକ୍ଷରେ ଗୌରବଜନକ । ମାତ୍ର ଗୋପବନ୍ଧୁଙ୍କର ପରବର୍ତ୍ତୀ ଜୀବନର ସ୍ରୋତ ତାଙ୍କର ଅଜ୍ଞାତସାରରେ ଅନ୍ୟ ଆଡ଼େ ଭାସିଗଲା । ସେ ଉତ୍କଳରେ ଯେଉଁ ଆଦର୍ଶ ଦେଖାଇବାକୁ ଆସିଥିଲେ ତାହା ଦେଖାଇଦେଇ ଆପଣା ସ୍ଥାନକୁ ଚାଲିଗଲେ ।

ଦିନେ ସେ ମୋ ଟେବୁଲ୍ ଉପରୁ ଖଣ୍ଡିଏ ଖାତା ଆବିଷ୍କାର କରି ପକାଇଲେ । ସେଥିରେ ମୁଁ କେତେଗୁଡ଼ିଏ ବାଳସୁଲଭ କବିତା ଲେଖିଥିଲି ! ତାକୁ ସେ ଚାଇ ଦିନଟାଯାକ ସମସ୍ତଙ୍କ ଆଗରେ ପଢ଼ି କେତେ ରହସ୍ୟ କରିଛନ୍ତି ! ସେହି ଦିନଠାରୁ ମୋ ନାଁ ଦେଇଥିଲେ ‘କବି’ । ଆଉ ମୋତେ ଯେତେବେଳେ ଦେଖନ୍ତି, ମୋ କବିତାରୁ ପଦେ କହିଦେଇ ରହସ୍ୟ କରନ୍ତି । ମୋତେ ଭାରି ଲାଜ ମାଡ଼େ

ଏକା, —ଯେତେବେଳେ ସାଙ୍ଗମାନେ ଥାଆନ୍ତି । ସେହିଦିନଠାରୁ ସମୟ ସମୟରେ ସେ ମୋ ଖାତା ତଦାରଖ କରନ୍ତି ଓ ସ୍ୱହସ୍ତରେ କେତେ ଥର କେତେ ଠା ଭଲ ଶବ୍ଦଟିଏ ବା ଭଲ ପଦଟିଏ ବସାଇ ଦେଇଛନ୍ତି । ତାଙ୍କ ବ୍ୟବହାରଦ୍ୱାରା ମୁଁ କେବେ ନିଜକୁ ଉପହସିତ ବା ଅବମାନିତ ମନେ କରିନାହିଁ । ବରଂ ବହୁତ ଉତ୍ସାହିତ ହୋଇଛି । କି ସ୍ନେହମୟ ସେ କଥା, କି ଉଦାର ସେ ହସ ।

ଏହା ପରେ ମୁଁ କଟକ ଚାଲି ଆସିଲି । ଆଉ ତାଙ୍କର ମୋର ଭେଟ ହୋଇ ନାହିଁ କେତେ ବର୍ଷ । ପୁଣି ୧୯୦୭ ମସିହାରେ ଯେତେବେଳେ ମୁଁ କଲେଜ୍‌ରେ ନାମ ଲେଖାଇଲି, ସେତେବେଳକୁ ସେ କଟକରେ ଓକିଲାତି କଲେଣି । ଗୋପବନ୍ଧୁଙ୍କର ଗୃହପ୍ରୀତି ସେତେବେଳେ ଭାରି ପ୍ରଖର । ବୋର୍ଡିଂକି ପ୍ରାୟ ଆସନ୍ତି, ସମସ୍ତଙ୍କ ମାନଙ୍କରେ ବନ୍ଧୁ ପରି ମିଶନ୍ତି, କେତେ କଥା କହନ୍ତି, କେତେ ଥାପର କରନ୍ତି, କେତେ ନକ୍‌ସା ଦେଖାନ୍ତି । ମାତ୍ର ତାଙ୍କ ଭିତରେ ଗୋଟାଏ ଗୂଢ଼ ଉଦ୍ଦେଶ୍ୟ ଥାଏ । ତାହା ଆମକୁ ଫୁସୁଲାଇବା । ପିଲାଗୁଡ଼ାଙ୍କ ମନକୁ ଆୟତ୍ତ କରି ନେଇ ସେ ଧୀରେ ଧୀରେ ଆମକୁ ଟାଣି ନେଇ ଯାଉ ଥାଆନ୍ତି ଗୋଟାଏ କେଉଁ ଅଜଣା ରାଇଜ ଆଡ଼କୁ ପରା । କେତେ ନୂଆ ବାଟ ସେ ଦେଖାଇଲେ, କେତେ ନୂଆ ନୂଆ ଭାବର କଥା ଶିଖାଇଲେ, ତାହା କହି ହେବ ନାହିଁ । 'ଦାଶେ ଆପଣେ' ବୋଲି କହିଲେ ଆମେ ପାଗଳ । କେଜାଣି କହି ପୋଖରୀକୁ ଡେଇଁପଡ଼ନ୍ତୁ— କେଜାଣି କିଆଁ ଗିଳିପିବୁଁ —କିଏ କହିବ ! ଆମ କଅଁଳ ତରୁଣ ମନ ଉପରେ ଏପରି କୁହୁକ ବିସ୍ତାର କରି ଦେଲେ ସେ । ବୋର୍ଡିଂରେ ସୁବିଧା ନ ହେବାରୁ ସମୟ ସମୟରେ ଆମେ ଯାଉଁ ଶ୍ରୀଯୁକ୍ତ ବ୍ରଜସୁନ୍ଦର ବାବୁଙ୍କ ଘରଠାକୁ । ସେ ତାଙ୍କର ଘନିଷ୍ଠ ବନ୍ଧୁ ଓ ସମଧର୍ମୀ । ବ୍ରଜସୁନ୍ଦର ବାବୁଙ୍କ ଘର ହେଲା ଆମର ଆଡ୍ଡା । ସେଠିକି ଦାଶେ ଆପଣେ ଯାଆନ୍ତି, ସ୍ୱର୍ଗୀୟ ଅଭିରାମ ଭଞ୍ଜ, ସ୍ୱର୍ଗୀୟ ବାଣୀଭୂଷଣ ପ୍ରଭୃତି ଆସନ୍ତି । ସାହିତ୍ୟ କଥା, ଦେଶ କଥା, ଚରିତ୍ର କଥା, ନାନା କଥା ପଡ଼େ । ଦଳେ ଯୁବକ ଉଦ୍‌ଗ୍ରୀବ ହୋଇ ଶୁଣନ୍ତି । ଏ ବିଷୟରେ ବେଶି କହି ହେବ ନାହିଁ; ତେବେ ଏତିକି ମାତ୍ର କହୁଛୁଁ ଯେ ଦାଶେ ଆପଣେ ସେତିକବେଳୁଁ ମନରେ ଗୋଟାଏ ଭବିଷ୍ୟତର ବଡ଼ ପାଞ୍ଚ ପାଞ୍ଚିଲେଣି—ଆଉ ଗୁଡ଼ିଏ ସହକର୍ମୀ ତିଆରି କରିବାରେ ଲାଗିଲେଣି, ଯେଉଁମାନେ କି ଦେଶ କାମରେ ଜୀବନ ଉତ୍ସର୍ଗ କରିବେ ।

ଦାଶେ ଆପଣେ ବୁଝିଥିଲେ ଯେ ଦେଶର କିଛି କାମ କରିବାକୁ ହେଲେ ଦଳେ ଉତ୍ସାହୀ ତ୍ୟାଗୀ କର୍ମୀ ଆବଶ୍ୟକ । ଆଉ ତାହା ପାଇଁ କଞ୍ଚାମାଲ (raw material) ମିଳିବ କେବଳ ଯୁବସମାଜରୁ । ସେ ନାମମାତ୍ର ଓକିଲାତି କରୁଥାଆନ୍ତି; ଏଣେ ଲାଗିଥାଆନ୍ତି ମଣିଷ ବାଛିବାରେ ଓ କର୍ମୀ ଗଢ଼ିବାରେ । ସେ ସକାଶେ କେତେ ଉପଦେଶ, ସାଧନ ପ୍ରଣାଳୀ ପ୍ରଭୃତି ହୋଇଛି ତା'ର ଠିକଣା ନାହିଁ । ଏହି ଉଦ୍ୟମର ଫଳରେ ଗଢ଼ା ହେଲା Central Young Utkal Association. ସମଗ୍ର ଉତ୍କଳର ଯୁବସଙ୍ଘକୁ ଏକୀଭୂତ କରି ଏକ ମହାଶକ୍ତି ଉଦ୍ଭାବନ କରିବାହିଁ ଏହାର ଉଦ୍ଦେଶ୍ୟ । ପରେ ସରକାର ତରଫରୁ ଏଥିଉପରେ ନଜର ପଡ଼ିଲା ଓ ତାହା ବଡ଼ କୌଶଳରେ ଧୀରେ ଧୀରେ ଉଭେଇଗଲା ପରି ଗଲା । ଏଣେ ତା'ର କେନ୍ଦ୍ରଶକ୍ତି ଦାଶେ ଆପଣେ ଚାଲିଗଲେ ବାରିପଦା, ସେଠାକାର ସରକାରୀ ଓକିଲ ହୋଇ, ମାତ୍ର ସେହି ସମୟ ମଧ୍ୟରେ ଦାଶେ ଆପଣେ ଯେତିକି ମାଲ ମସଲା ତିଆରି କରିଦେଇ ଯାଇଥିଲେ ତାହା ତାଙ୍କର କାମରେ ଲାଗିଲା । ମୟୂରଭଞ୍ଜରୁ ଫେରି ସେ ଦେଶସେବାକୁ ଜୀବନର ବ୍ରତରୂପେ ଗ୍ରହଣ କରି ସତ୍ୟବାଦୀର ବକୁଳ ବନରେ ଏକ ମହାପୀଠ ସ୍ଥାପନ କଲେ । ତାଙ୍କର ପ୍ରେରଣା, ତାଙ୍କର ଶିକ୍ଷା ସେହି କେତେଦିନ ଭିତରେ ଯେତିକି ପ୍ରଭାବ ବିସ୍ତାର କରି ଗଲା ତାର ଫଳ ଫଳିଲା ନାନା ଭାବରେ, ନାନା ଦିଗରେ, ସମଗ୍ର ଜାତିର ମଧ୍ୟ ଦେଇ । ସେ ସ୍ୱର୍ଗତ ହୋଇଥିଲେହେଁ ତାଙ୍କର ତେଜ ପ୍ରତି ଓଡ଼ିଆ ପ୍ରାଣରେ କାର୍ଯ୍ୟ କରୁଥିବ, ଜାତିକୁ ମୁକ୍ତି ପଥରେ ଅଗ୍ରସର କରାଇ କରାଇ । ଗର୍ବ, ଅହଙ୍କାର ବୋଲି ତାଙ୍କୁ ଛୁଇଁ ନ ଥିଲା ।

ସେ ଆମ୍ଭମାନଙ୍କୁ ଏତେ ସ୍ୱାଧୀନତା ଦେଉଥିଲେ ଯେ ଆମେ ତାଙ୍କ ଭଳି ବ୍ୟକ୍ତି ସହିତରେ ନିର୍ବାଧରେ ଯୁକ୍ତିତର୍କ କରିବାକୁ ସଙ୍କୁଚିତ ହେଉ ନଥିଲୁଁ । ଦିନେ କୌଣସି କଥାରେ ମୁଁ ତାଙ୍କୁ ବ୍ୟକ୍ତିଗତ ଭାବରେ ଆକ୍ରମଣ କରି ଅଭିମାନରେ ଦୁଇ ଚାରି ପଦ କଡ଼ା କଡ଼ା ହାଙ୍କିଦେଲି । ମନ କରିଥିଲେ ସେ ମୋର କ'ଣ ନ କରି ପାରି ଥାଆନ୍ତେ ! ମାତ୍ର ସେ ତିଳେ ମାତ୍ର ବିଚଳିତ ହେଲେ ନାହିଁ; ପ୍ରଶାନ୍ତ ଭାବରେ ଈଷତ୍ ହସି ମୋତେ ପାଖକୁ ଟାଣିନେଲେ ଏବଂ ମୁଣ୍ଡ ପିଠି ଆଉଁସି ପକାଇଲେ । ସେତେବେଳେ ଇଚ୍ଛା ଥିଲା, ତାଙ୍କଠାରୁ ପଦେ କିଛି ଶୁଣିଥିଲେ ଆହୁରି କଡ଼ା କରି ଚାରି ପଦ ଝାଡ଼ି ମନ ଓରଟାକୁ ମାରିଥାନ୍ତି । ମାତ୍ର ତାଙ୍କର ଏପରି ବ୍ୟବହାରରେ ମୋର ମନକଥା ମନରେ ରହିଲା; ମୁଁ ଲଜ୍ଜିତ, ଅନୁତପ୍ତ, ନିରୁପାୟ ହୋଇ ମୁହାଁଟି ପରି ଖସି ପଳାଇ ଆସିଲି । ଏହିଭଳି ସହନଶୀଳତା, ଉଦାରତା, ସ୍ୱଜନବାତ୍ସଲ୍ୟ କେବଳ ତାଙ୍କରି ପରି ମହାପ୍ରାଣରେହିଁ ସମ୍ଭବ ।

# ଗୋପବନ୍ଧୁଙ୍କ ସ୍ମୃତି

ଏହାର ଅନେକ ଦିନ ପରେ, ବୋଧହୁଏ ୧୯୨୧ ମସିହାରେ ଭଦ୍ରକରେ ଜିଲ୍ଲାସମ୍ମିଳନୀ ହେଲା । ମୁଁ ସେଠାରେ ଉପସ୍ଥିତ ଥିଲି । ଦାଶେ ଆପଣେ ମଣ୍ଡପ ଉପରେ ବସିଥାଆନ୍ତି । "ଉଡ଼ାଇ ନିଶାଣ ବଜାଇ ଭେରୀ ଜଗାଇ ବିପୁଳ ପୁଲକ କମ୍ପ" ଶୀର୍ଷକ ମୋର ଗୋଟିଏ ଜାତୀୟ ସଙ୍ଗୀତ ପିଲାଏ କୋରସ୍ କରି ଗାଇଲେ । ସେ ଆଖି ବୁଜି ଶୁଣୁଥାଆନ୍ତି । ଗୀତାନ୍ତେ ଉଠିଆସି ସେ ମୋ ନାଁ ଧରି ଡାକଲେ । ମୁଁ ଟିକିଏ ଆଗେଇଗଲି । ସେ ମୋତେ କୁଣ୍ଢାଇ ପକାଇ ଗଦ୍‌ଗଦ ସ୍ୱରରେ କହିଲେ, "କି ଗୀତ ଲେଖିଛୁ ଲକ୍ଷ୍ମୀକାନ୍ତ" ! ମୁଁ ଚାହିଁଦେଲାବେଳକୁ ତାଙ୍କ ଦୁଇ ଆଖିରୁ ଧାର ଧାର ଲୁହ ଗଡ଼ିଯାଉଛି । ଉଃ, କି ଉଜ୍ଜ୍ୱଳ, ତେଜସ୍ୱୀନ୍ ଆଖି ଦୁଇଟା ସେ ! କି ମର୍ମଭେଦୀ ଚାହାଣି ତାଙ୍କର । ସେଥିରେ ଯେପରି କି କୁହୁକ, କି ମାଦକତା ଅଛି ! ସେ ଆଖି ଯାହା ଉପରେ ପଡ଼ୁଛି ସେ hypnotised ହୋଇଯାଉଛି । ଆକାଶ ପରି ନିର୍ମଳ, କୁଆଁପଥର ପରି ସ୍ୱଚ୍ଛ ଦୁଇଟା ଗମ୍ଭୀର ଚକ୍ଷୁ । କେତେବେଳେ ମନ୍ଦାକିନୀ ଧାରା ଗଳୁଛି, କେତେବେଳେ ଅଗ୍ନି ସ୍ଫୁଲିଙ୍ଗ ନିର୍ଗତ ହେଉଛି ।

ତାଙ୍କ ସଙ୍ଗରେ କର୍ମ କରିବା ମୋ ଭାଗ୍ୟରେ ଘଟିଲା ନାହିଁ । ତାଙ୍କୁ ଦେଖିବା ସୌଭାଗ୍ୟରୁ ବଞ୍ଚିତ ହୋଇ ମୁଁ ଆଜୀବନ ଶଯ୍ୟାଗତ ହୋଇ ଘରେ ରହିଲି । ଭାଗ୍ୟ ପ୍ରାୟ କାହାରି ଅନୁକୂଳ ହୁଏ ନା । ଯାହାର ହେଉଥିବ ସେ ଧନ୍ୟ ।

ଥରେ ଦାଶେ ଆପଣେ କନିକା ଯାଉଥିବା ବେଳେ ଆମ ଗାଁ ବାଟେ ଗଲେ । ମୁଁ ଅଛି ଶୁଣି ଆମ ଘରକୁ ଆସିଲେ । ଦେଖା ହେଲା । କଥାବାର୍ତ୍ତା ବିଶେଷ କିଛି ହେବାର ନ ଥିଲା । ମୋତେ ଦେଖି ସେ ଆଖି ଛଳ ଛଳ କରି ବିଦାୟ ନେଲେ । ଏହାହିଁ ତାଙ୍କର ମୋର ଶେଷ ଦେଖା । ସେ ଆଗରୁ ଚାଲିଗଲେ; ମୋ ଲାଗି ସ୍ଥାନ ପ୍ରସ୍ତୁତ କରି ରଖିଥିବେ ବୋଲି ଆଶା ଅଛି । କାରଣ ହତଭାଗ୍ୟଙ୍କୁ ସେ ବଡ଼ କରୁଣା ଓ ସ୍ନେହର ଚକ୍ଷୁରେ ଦେଖୁଥିଲେ ।



# ସ୍ମୃତି ପୂଜା

ସେ ଆଜକୁ ୩୭ ବର୍ଷର କଥା, ବୋଧହୁଏ ୧୯୦୦ କିମ୍ବା ୧୯୦୧ ମସିହା । ସେତେବେଳେ କଲେଜ ଓ କଲେଜିଏଟ୍ ସ୍କୁଲର ଛାତ୍ରମାନେ ପୁରୁଣା କଲେଜ୍ ବୋର୍ଡ଼ିଂରେ ଏକାଠି ରହୁଥିଲେ । ଗୋଟାଏ ଘରରେ ସେହିପରି ସର୍ଭେ ସ୍କୁଲ ପିଲା ବି ରହନ୍ତି । ଆଉ ସୁପରିନ୍‌ଟେନ୍‌ଡେଣ୍ଟ୍ ଥାଆନ୍ତି ଜଣେ କଲେଜିଏଟ୍ ମାଷ୍ଟର । ଗୋପବନ୍ଧୁ ବାବୁଙ୍କର ସେଇଟା ଥାର୍ଡ଼ଇୟର ହେବ । ତାଙ୍କର ସହପାଠୀ ଥାଆନ୍ତି ଉମାଚରଣ ବାବୁ (ରାୟବାହାଦୁର—ଡେପୋଟି), ହିରଣ୍ମୟ ବାବୁ (ଡେପୋଟି), ସୂର୍ଯ୍ୟମଣି ବାବୁ (ସବ୍‌ଜଜ୍) ପ୍ରଭୃତି । ମୁଁ କଲେଜିଏଟ୍‌ର ୪ର୍ଥ ଶ୍ରେଣୀ ଛାତ୍ର । ମୁଁ ଥାଏ ମୋର ମାଷ୍ଟର ଅଭିଭାବକ ଉମାବାବୁ ଓ ତାଙ୍କ ସହପାଠୀ ହିରଣ୍ମୟ ବାବୁଙ୍କ ସହିତ ଏକା ରୁମ୍‌ରେ ।

ସେତେବେଳେ ଢଙ୍ଗ କ'ଣ ଥିଲା ଜାଣନ୍ତି ? ତଳ କ୍ଲାସର ଓ କମ୍ ବୟସର ପିଲା ଉପର କ୍ଲାସବାଲାଙ୍କୁ ଯମପରି ଡରୁଥିଲେ । ତାଙ୍କ ଆଗରେ ହସିବେ ନାହିଁ, ବଡ଼ କରି କଥା କହିବେ ନାହିଁ, ତରତର କରି ଚାଲିଯିବେ ନାହିଁ, ସେ ପାଖକୁ ଆସିଗଲେ ଉଠି ଛିଡ଼ା ହେବେ, ତାଙ୍କ ଆଗରେ ମୁହଁ ତଳକୁ ପୋତି ମୁଣ୍ଡ କୁଣ୍ଡାଇ ହୋଇ ଧୀରେ ଧୀରେ କଥା କହିବେ ଇତ୍ୟାଦି । ଏଣୁ କରି ମୋ ଭଳିଆ ପିଲାର ହୋଷ୍ଟେଲଟାଯାକ ମରଣ । କଲେଜ୍ ପିଲାଙ୍କ କଥା ଛାଡ଼, ଏପରିକି ଗୋଟାଏ ଯୋଡ଼ାଏ ଉପର କ୍ଲାସରେ ପଢ଼ୁଥିବା ସ୍କୁଲପିଲାଙ୍କୁ ମଧ୍ୟ ଡର । ଫାଷ୍ଟଇୟର ପିଲା ସେକେଣ୍ଡଇୟର ବା ସେକେଣ୍ଡଇୟର-ବାଲା ଥାର୍ଡ଼ଇୟର ବାଲାଙ୍କୁ ମଧ୍ୟ ଏହିପରି ମାନୁଥିଲେ । ଫୋର୍ଥଇୟର ଛାତ୍ରଙ୍କ କଥା ତ କହିବାକୁ ନାହିଁ । ସେମାନେ ତ ବିଲକୁଲ ଗୁରୁ-ଗୋଷ୍ଠୀ ଦଳବାଲାଙ୍କର । ବି. ଏ. ପିଲାଏ ଏଫ୍. ଏ. ପିଲାଙ୍କୁ ଦେଖି ଉଠିଏ ଆଡ଼ଇଗଲା ପରି ମୁହଁ କରି କଥା କହନ୍ତି । ସ୍କୁଲପିଲାଙ୍କୁ ତଳ୍ଟରେ କିଏ । ଆଜିକାଲି ଛାତ୍ରସମାଜରୁ ଏ ଭାବ ଏକାବେଳେକେ ଚାଲିଗଲାଣି । Equality ର ଯୁଗ ପରା ! ଆଉ ଏବେ smart, up to date, forward ପିଲା ବୋଲି ଯାହାକୁ କୁହାଯାଇ ପ୍ରଶଂସା କରାଯାଏ ସେଭଳି ପିଲା ସେ କାଳରେ ଥିଲେ ଫାଜିଲ୍, ବଦମାସ ! ଟିକିଏ ଏପାଖ ସେପାଖ ହେଲେ ଗାଳି, ମାଡ଼, କାନମୋଡ଼ା, ଚାଳଚୁପୁଡ଼ା । ଆଉ ଆଜିକାଲି ଯେ ଗୀତ ଗାଏ ବା କବିତା ଲେଖେ ସେ ଜଣେ । ଏଭଳି ଗୁଣଟା ଗୋଟାଏ ସ୍ପୃହଣୀୟ qualification. କିନ୍ତୁ ସେ କାଳରେ ଏହା କରିବାର ଜୋ ନଥିଲା । ବଗୁଲିଆ ବୋଲି ମାଡ଼ ବସୁଥିଲା । ଏହି ସମୟରେ ଗୋପବନ୍ଧୁବାବୁଙ୍କର ଛପା ହେଲା କବିତା ବହି 'ଅବକାଶ ଚିନ୍ତା' । ସେତେବେଳକୁ ସେ ନିଜେ ନିଜର ମୁରବି ପାଲଟିଗଲେଣି ଓ ତାଙ୍କର ନିଶ ଦାଢ଼ି ଉଠିଲାଣି । ତାଙ୍କୁ କହୁଚି କିଏ ? ସେ ବହିଟା ମୁଁ ଲୁଚି ଲୁଚି ପଢ଼ିଲି । କାରଣ ପାଠ୍ୟ ବହି ନ ପଢ଼ି, ବାଜେ ବହି ପଢ଼ିବାଟା ଥିଲା ଦୋଷ; ଆଉ ମୋର ମାଷ୍ଟର ଥିଲେ କଡ଼େ କଡ଼େ । ସେ ବହିରେ ଦୁଇଟା 'କାଠଯୋଡ଼ି' ବିଷୟରେ କବିତା ଥିଲା । ତାକୁ ଦେଖି ମୋର ବି ମନ ସକେଇଲା କବିତା ଲେଖିବା ପାଇଁ । ଖାତା ପତ୍ରରେ ଲୁଚେଇ ଗୋଟାଏ କବିତା ଲେଖିଲି 'ଶାଳନ୍ଦୀ' ବୋଲି । ଦିନେ କବିତାଟା ଧରା ପଡ଼ିଗଲା । ଆଉ ଯାଏଁ କୁଆଡେ । ମାଷ୍ଟର ମହାଶୟ ରାଗିମାଗି ଗର୍ଜନ ଛାଡ଼ିଲେ । ପାଟି ଶୁଣି ପାଖ ରୁମ୍‌ର ପିଲାଏ ଧାଇଁ ଆସିଲେ । କଥାଟା ଜାଣି ସମସ୍ତେ କହିଲେ, ଟୋକାଟା ଏଇ ବୟସରେ ବିଗିଡ଼ିଗଲାଣି—ଏତିକି ବେଳୁଁ ଜବଦ କରି ନ ଦେଲେ ଘୋଡ଼ାମୁହାଁ ଧରିପିବ ଇତ୍ୟାଦି । ଆଉ ରକ୍ଷା ନାହିଁ । ମାଡ଼ ହବା ଉପରେ, ଏତିକି ବେଳେ ଗୋପବନ୍ଧୁବାବୁ ପହଞ୍ଚିଗଲେ । ସେ କଥାଟା ଶୁଣି ଠୋ ଠୋ କରି ହସି ଉଠିଲେ । କହିଲେ, "ଆଚ୍ଛା ମାଷ୍ଟର ତ ? ଏଥିପାଇଁ ପିଲାଟାକୁ ମାରୁଛ ? ଭଲ କଥାରେ ପିଲାଙ୍କର ମଣ୍ଡି ମାରିଦେଲେ ବା ବାଧା ଦେଲେ ତାଙ୍କର energy ଟା ନଷ୍ଟପ୍ରାୟ ହୁଏ, ଖରାପ ଆଡ଼େ ।" ସହପାଠୀ ହେଲେ ମଧ୍ୟ ତାଙ୍କୁ ସମସ୍ତେ ଖାତିର କରୁଥିଲେ । ମୁଁ ମାଡ଼ରୁ ପାର ପାଇଗଲି । ଗୋପବନ୍ଧୁଙ୍କ ପ୍ରତି ମୋର ଶ୍ରଦ୍ଧା ବହୁତ ବଢ଼ିଗଲା । ସେହିଠାରୁ ସେ ମୋ କବିତାଟି ନେଇ ପଢ଼ିଲେ । ପଢ଼ିସାରି କହିଲେ, "ବାଃ, ବେଶ୍ ହୋଇଚି" । ମୋ ମନ କୁଣ୍ଢେ ହେଲା । ତା'ପରେ ମୋତେ କହିଲେ, "ବେଶୀ ପାଠ ପଢ଼ିଲେ ଭଲ କବିତା ଲେଖିପାରିବ । ଆଗ ମନ ଦେଇ ପାଠ ପଢ଼" ।

ସେହିଦିନଠୁ ମୋତେ ଯେତେବେଳେ ଦେଖନ୍ତି ସେ ମୋ କବିତାର ପ୍ରଥମ ଧାଡ଼ିଟା ଗେହ୍ଲାଇ ଗେହ୍ଲାଇ ଦେହ ମୁଣ୍ଡ ହଲାଇ କହନ୍ତି ଓ ମୋତେ 'ଶାଳନ୍ଦୀ କବି' ବୋଲି ଡାକନ୍ତି । ତାଙ୍କର ସ୍ୱରର ବିଦ୍ରୂପ ନଥାଏ ବୋଲି ଏ ଥଟ୍ଟାରେ ମୁଁ ଚିଡ଼େନା; ବରଂ ଟିକିଏ ସଙ୍କୁଚିତ, ଆନନ୍ଦିତ ଓ ଉତ୍ସାହିତ ହୁଏଁ । ଏ ଘଟଣାଟି କହିଲି, ଗୋପବନ୍ଧୁବାବୁ କିପରି ନିଜନିଆ ସ୍ୱଭାବର ଲୋକ ଥିଲେ ତାହା ଦେଖାଇବା ପାଇଁ । ତାଙ୍କର ନିରାଡ଼ମ୍ବର, ନିରହଙ୍କାର,

ଶିଶୁସୁଲଭ ସରଳତାଦ୍ୱାରା ସେ ଆପଣାକୁ ସମସ୍ତଙ୍କର ଓ ସମସ୍ତଙ୍କୁ ଆପଣାର କରିପାରିଥିଲେ ।

ପରବର୍ତ୍ତୀ ଆଉ ଗୋଟିଏ ଘଟନା କହେଁ । ଦାସେ ଆପଣେ ସେତେବେଳକୁ କଟକରେ ଓକିଲାତି କରୁଥାଆନ୍ତି । ମୁଁ କଲେଜ୍‌ରେ ପଢ଼ିଲାଣି । ୧୯୦୭ ମସିହାର ବନ୍ୟାବେଳେ ସେ କେତେଗୁଡ଼ିଏ କଲେଜ ପିଲାଙ୍କୁ ଧରି ୟଙ୍ଗ୍ ଉତ୍କଳ ଆସୋସିଏସନ୍ ଆରମ୍ଭ କଲେ । ସେ ତହିଁର ସଭାପତି ଥାଆନ୍ତି । ଦିନେ ସେ ଆସି ପୁରୁଣା ହଷ୍ଟେଲର ଗୋଟିଏ ରୁମ୍‌ର ଖଟ ଉପରେ ବସିଲେ । ଅନେକେ ଘେରି ବସି ଥାଆନ୍ତି ଓ କେତେଜଣ ଛିଡ଼ା ହୋଇ ଥାଆନ୍ତି । କଥା ପଡ଼ୁଁ ପଡ଼ୁଁ ଗୋଟାଏ କଥାରେ ମୁଁ ଏଭଳି ରାଗ ହୋଇଗଲି ଯେ ଯାହା ମୁହଁରେ ଆସିଲା ଗୁଡ଼ାଏ ତାଙ୍କୁ ବକିଲି । ସେ ତୁନି ହୋଇ ଶୁଣିଗଲେ । ତା'ପରେ ମୋତେ ଟାଣି ନେଇ ପାଖରେ ବସାଇଦେଲେ ଓ ଆଉଁସି ପକାଇ କହିଲେ, "ପିଲାଲୋକ, ଟିକିଏ ରାଗିଯାଇଛ ।" ମୋ ମିଜାଜର thermometer ଟା ଧପ୍ କରି zero degree ରେ ପଡ଼ିଗଲା । ଲଜ୍ଜିତ ବି ହୋଇପଡ଼ିଲି । ସେ ଜଣେ ମାନ୍ୟଗଣ୍ୟ, ବିଦ୍ୱାନ୍, ବୟୋଧିକ ନେତା, ଆଉ ମୁଁ ଗୋଟାଏ ଚପଳ ଟୋକା ଟାକରା । ମନ କରିଥିଲେ ସେ ମୋତେ ଅବମାନିତ କରି ପାରି ଥାଆନ୍ତେ । ରାଗ ହୋଇ ଦି'ପଦ ଝାଡ଼ି ଦେଇ ସେଠୁ ବାହାର କରି ଦେଇ ପାରି ଥାଆନ୍ତେ—ଅନ୍ତତଃ ପକ୍ଷେ ମୋ କଥାର ପ୍ରତିବାଦ କରି ବା ତର୍କ କରି ମୋତେ ଚୁପ୍ କରିଦେଇ ପାରିଥାଆନ୍ତେ, ଅଥବା ତାଚ୍ଛଲ୍ୟରେ ହସି ଅପଦସ୍ତ କରି ପାରି ଥାଆନ୍ତେ । ମାତ୍ର ସେ ଧୀର ସ୍ଥିର ଭାବରେ ଯେଉଁ ମହତ୍ତ୍ୱ ଓ ଉଦାରତା ଦେଖାଇଲେ, ସେହି ଗୁଣ ଥିବାରୁ ସେ ଏତେ ବଡ଼ ନେତା ହୋଇ ପାରିଥିଲେ ଏବଂ ଏତେ ଗୁଡ଼ାଏ young blood ଙ୍କୁ ହାତମୁଠାରେ ରଖି ଚଳାଉଥିଲେ । ତାଙ୍କର ସ୍ୱଭାବ ଏତେ ପ୍ରଶାନ୍ତ ଥିଲା ଯେ ମୁଁ କେବେ ତାଙ୍କୁ କୌଣସି ବେଳେ ଉତ୍ତ୍ୟକ୍ତ, ଉଦ୍‌ବିଗ୍ନ, ବିବ୍ରତ ବା ବିଚଳିତ ହେବାର ଦେଖିନାହିଁ । ଦାସେ ଆପଣେଙ୍କ ଭଳି ଅନୁଗତ-ବାତ୍ସଲ୍ୟ ଓ ସ୍ୱଜନ-ପ୍ରୀତି ସଚରାଚର ଅନ୍ୟଠାରେ ଦେଖାଯାଏ ନାହିଁ । ଏଥିନିମନ୍ତେ ତାଙ୍କୁ ଅନେକ ଦୁଃଖ ଭୋଗିବାକୁ ପଡ଼ୁଛି, ମନକଷ୍ଟ ସହିବାକୁ ପଡ଼ୁଛି, ବ୍ୟସ୍ତ ଓ କ୍ଷତିଗ୍ରସ୍ତ ହେବାକୁ ପଡ଼ୁଛି ।

ଦାସେ ଆପଣେଙ୍କ ହୃଦୟଟା ଯେମିତି କୋମଳ ଓ ସରସ ଥିଲା, ତାଙ୍କର ପ୍ରାଣରେ ସେହିପରି ତେଜ ଓ ଦୃଢ଼ତା ମଧ୍ୟ ଥିଲା । ସେ ପ୍ରକୃତରେ ଥିଲେ ଭାବପ୍ରବଣ । ପ୍ରକୃତଟା ତାଙ୍କର ଥିଲା କବି ପ୍ରକୃତି । ଅଳ୍ପରେ କାନ୍ଦି ପକାଇବା, ଅବଶ୍ୟ ପର ପାଇଁ, ତାଙ୍କର ଥିଲା ସହଜାତ ଧର୍ମ । କଡ଼ା କଥା କହି ସେ ଜାଣୁ ନ ଥିଲେ, ରାଗି ସେ ପାରୁ ନଥିଲେ—କଥା କଥାକେ ହସିବା, କୌତୁକ କରିବା ସେଗୁଡ଼ିକ ବରଂ ହେବା ତାଙ୍କର ଥିଲା ଧାତୁଗତ । ସେବା ଥିଲା ତାଙ୍କ ଜୀବନର ବ୍ରତ । ସେହି ଉଦ୍ଦେଶ୍ୟରେ ସେ ତାଙ୍କର ସବୁ ଯତ୍ନ, ସବୁ ଚେଷ୍ଟା, ସବୁ ସାମର୍ଥ୍ୟ ଦେଇ ଗଢ଼ିଥିଲେ ଏବଂ ଗଢ଼ିବାରେ ଲାଗିଥିଲେ ମୂଳରୁ ଗୋଟିଏ ସ୍ୱାର୍ଥତ୍ୟାଗୀ କର୍ମୀ ଓ ସେବା ଦଳ । ଦେଶର ଯୁବକ ଶକ୍ତି ଉପରେ ତାଙ୍କର ପୂର୍ଣ୍ଣ ନିର୍ଭର ଓ ବିଶ୍ୱାସ ଥିଲା ଏବଂ ସେ ହାତ ଧରି ଯେଉଁ ଯୁବକମାନଙ୍କୁ ତିଆରି କରିଥିଲେ ସେହିମାନେ ହିଁ ଦେଶର ଓ ଜାତିର ଦୁଃଖ ମୋଚନ କରିବେ ବୋଲି ସେ ବିପୁଳ ଆଶା ପୋଷଣ କରିଥିଲେ । ସତ୍ୟବାଦୀ ସ୍କୁଲ୍ ସ୍ଥାପନର ବାହାର ଉଦ୍ଦେଶ୍ୟ ଥିଲା ଜାତୀୟ ଶିକ୍ଷାଦାନ, ମାତ୍ର ମୁଖ୍ୟ ଉଦ୍ଦେଶ୍ୟଟି ଥିଲା ତ୍ୟାଗୀ କର୍ମୀଦଳ ଗଠନ । ତାଙ୍କର ସେ ଚେଷ୍ଟା ବିଫଳ ହୋଇନାହିଁ—ହରିହରଭାଇନା, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ଲିଙ୍ଗରାଜ, ନନ୍ଦକିଶୋର ପ୍ରଭୃତି ତାହାରି ଫଳ । ମହାତ୍ମା ଗାନ୍ଧୀଙ୍କର ଗୁଜରାଟ ବିଦ୍ୟାପୀଠ ବା ସାବରମତୀ ଏହି ନୀତି ଉପରେ ପ୍ରତିଷ୍ଠିତ । କିନ୍ତୁ ଗାନ୍ଧିଜୀଙ୍କର ଅନେକ ପୂର୍ବରୁ ଗୋପବନ୍ଧୁଙ୍କୁ ଏହି ଭାବ ସ୍ପର୍ଶ କରିଥିଲା ଏବଂ ସେ ତାହା କାର୍ଯ୍ୟରେ ପରିଣତ କରିଥିଲେ । ଗୋପବନ୍ଧୁ ଏକାଧାରରେ ଜନସେବକ, ଦେଶପ୍ରେମିକ, ଭାବୁକ, ନେତା ଓ କବି ।

ନିଃସ୍ୱାର୍ଥ କର୍ମମୟ ଜୀବନର ଗୌରବଦୀପ୍ତ ମଧ୍ୟରେ ତିରୋଭାବର ସୌଭାଗ୍ୟ ଖୁବ୍ ଅଳ୍ପ ମହାଜନଙ୍କ ଭାଗ୍ୟରେ ଘଟିଥାଏ । କ୍ଷଣଜନ୍ମା ଗୋପବନ୍ଧୁଙ୍କ ଭାଗ୍ୟରେ ଏହାହିଁ ଘଟିଥିଲା । ସେ ବିରାଟ ସମ୍ମାନର ସ୍ୱର୍ଣ୍ଣମୁକୁଟ ପିନ୍ଧି ମହାପ୍ରୟାଣ କଲେ । ତାଙ୍କ ଗଲାଦିନଠାରୁ ଉତ୍କଳ ଜଣେ ସର୍ବଜନସମ୍ମତ, ଅବିସମ୍ବାଦୀ ନେତା ଆଜଯାଏ ପାଇନାହିଁ । ଉତ୍କଳର ରାଜନୈତିକ ପରିଚାଳନା କ୍ଷେତ୍ରରେ ସେଥିପାଇଁ ନାନା ବିଭ୍ରାଟ ଘଟିଆସୁଛି । ଏହି ଅଭାବ କେବେ ପୂରଣ ହେବ ତାହା ଭଗବାନ ଜାଣନ୍ତି । ଗୋପବନ୍ଧୁଙ୍କର ଦେବ-ଶରୀର ସ୍ୱର୍ଗରେ ଅଛି, ଆଉ ମୁଁ ପଡ଼ିଛି ଏହି ନରକରେ; ତଥାପି ଅଯୋଗ୍ୟ ହେଲେ ମଧ୍ୟ, ଆଜି ମୋର ଶ୍ରଦ୍ଧା ଓ ଭକ୍ତିର ଅର୍ଘ୍ୟ ତାଙ୍କର ଉଦ୍ଦେଶ୍ୟରେ ଅର୍ପଣ କରିବାର ସୁଯୋଗ ପାଇ ଆପଣାକୁ ଧନ୍ୟ ମଣୁଛି ।



# ଖଣ୍ଡିଏ ଚିଠି

ଶ୍ରଦ୍ଧେୟ ପଣ୍ଡିତେ,

ଆପଣଙ୍କ ଚିଠି ଖଣ୍ଡି ପାଇଲି । ଯାହେଁ ଆପଣେଙ୍କ ଆସନ୍ତା ଶ୍ରାଦ୍ଧ ଦିବସରେ 'ସମାଜ' ର ଯେଉଁ ବିଶିଷ୍ଟ ଗୋପବନ୍ଧୁ ସଂଖ୍ୟା ବାହାର କରୁଛନ୍ତି, ତହିଁକି ଗୋଟିଏ 'ଲେଖା' ପଠାଇବା ସକାଶେ ମୋତେ ସମ୍ପାଦକୀୟ ଆଦେଶ ହୋଇଛି । ମନେପଡ଼ୁଛି, ବହୁକାଳ ପୂର୍ବେ ଏହିପରି 'ଗୋପବନ୍ଧୁ ସଂଖ୍ୟା' ପାଇଁ ଦୁଇଥର ଥରେ କ'ଣ ଲେଖିଥିଲି । ଗଦ୍ୟ କି ପଦ୍ୟ ତାହା ବି ମନେ ନାହିଁ । କେବଳ ଭଲକରି ମନେ ପଡ଼ୁଛି, ଗତ ବର୍ଷର ଲେଖାଟି କଥା । ଗତବର୍ଷ 'ସମାଜର' ଶ୍ରାଦ୍ଧ ସଂଖ୍ୟାରେ ମୋର ଯେଉଁ ଲେଖାଟି ବାହାରିଥିଲି ତହିଁରେ ଅତି ପୁରୁଣା ସ୍ମୃତି-ଭଣ୍ଡାରୁ ଦଉଡ଼ି ଦଉଡ଼ି ଖଣ୍ଡ କେତେ ଅଝୁଆ ସୂତା-ଖିଅ ଓଟାରି ଆଣି ଥୋଇ ଦେଇଥିଲି । ସ୍ମୃତି ଯେତିକି ପୁରୁଣା ହେଉଥାଏ, ସେତିକି ବେଦନାଯୁକ୍ତ କୋମଳତା ଆସେ—ଯାହା ଭାରି ମଧୁର । ଆଜି ଆପଣଙ୍କ ଚିଠି ପାଇ ଚିନ୍ତା ହଠାତ୍ ଗୋଟାଏ ଅନିର୍ବଚନୀୟ ସ୍ୱପ୍ନ ରାଇଜକୁ ଚାଲିଗଲା—ସିନେମାର ଛବି ଲେଉଟିଗଲା ଭଳି । ଆପଣଙ୍କ ଚିଠି କଥା, 'ସମାଜ' କୁ ଲେଖା ପଠାଇବା କଥା, ଗଦ୍ୟ ଦେବି କି ପଦ୍ୟ ଦେବି, ମୂଳରୁ ଲେଖା ଦେବି କି ନାହିଁ—ସେ କଥା, ସବୁ ଗଲା ପୋଛି ହୋଇ । ଆଖି ଆଗରେ ଜଳ ଜଳ ହୋଇ ନାଚି ଉଠିଲା ଯାହେଁ ଆପଣେଙ୍କ ପ୍ରେମଗଦ୍‌ଗଦ ସେହି କୋମଳ ମଧୁର ମୂର୍ତ୍ତି । ଦିଶିଗଲା ତାଙ୍କର ସେହି ଗୌରକାନ୍ତି-ବିଶିଷ୍ଟ ପେଲବ ଶରୀର, ସେହି ବିସ୍ତୃତ ଶ୍ମଶ୍ରୁରାଜି, ସେହି ଉନ୍ନତ କପୋଳ, ସେହି ବିଚିତ୍ର କେଶରାଶି ଆଉ ସବୋପରି ସେହି ଉଜ୍ଜ୍ୱଳ କରୁଣା-ବିହ୍ୱଳ ଛଳ ଛଳ ଅଥଚ ତୀବ୍ର, ଅନ୍ତର୍ଭେଦୀ ଚକ୍ଷୁର ଦୁଇଟି ତାରକା । ମୁଁ ମୁଗ୍ଧ ନେତ୍ରରେ ଚାହିଁ ଦେଖିବାକୁ ଲାଗିଲି ସେ ରୂପ; ଶୁଭିଗଲା କାନକୁ ତାଙ୍କର ଦୁଇସ୍ୱର ମିଶ୍ରିତ ଖନ ଖନ ସ୍ନେହମୟ ବାଣୀ । ଅନୁଭବ କଲି, ସତେ କି ଯାହେଁ ଆପଣେ ତାଙ୍କର ସ୍ୱଭାବସୁଲଭ ମଧୁର ସମ୍ଭାଷଣ ସହ କୁଣ୍ଢାଇ ପକାଉଛନ୍ତି । ତାଙ୍କର ଆବକ୍ଷଲମ୍ବିତ ଦାଢ଼ି ଯେପରି ମୁଣ୍ଡରେ ଦେହରେ ଘଷି ହୋଇ ଯାଉଛି ।

କେତେକ୍ଷଣ ଉତ୍ତାରୁ ମନେ ପଡ଼ିଗଲା—କ'ଣ ଲେଖିବି ପରା ! ହଁ—ଅଚ୍ଛା, ଆରଥର ଗଦ୍ୟ ଲେଖିଥିଲି, ଏଥର ପଦ୍ୟଟିଏ ଲେଖେଁ । ପଦ୍ୟର ପ୍ରଥମ ଧାଡ଼ିଟା ଭାବିବାକୁ ଲାଗିଲି । ପ୍ରଥମ ଧାଡ଼ିଟା ଲାଗିଗଲେ ତେଣିକି ପଦ୍ୟର ବାକି ପଦ ଗଡ଼ି ଗଡ଼ି ଚାଲିଯାଏ । କିନ୍ତୁ ହାୟ ଦୁର୍ଭାଗ୍ୟ ! ଛନ୍ଦଟା ବି ଧରି ପାରିଲି ନାହିଁ, ବାକି କଥା କିଏ ପଚାରେ ? କେତେ ବାକ୍ୟ ଆସିଲା, କେତେ ଉଭେଇ ଚାଲିଗଲା; ଖାଲି ଆଖି ଆଗରେ ନାଚିଲା ସେହି ମୂର୍ତ୍ତିଟା । ଇଏ କ'ଣ ? ଯାହେଁ ଆପଣେ ମୋତେ ଲାଗିଲେ (Possess) ନା କ'ଣ—ଯେପରି ଦେବତା ଲାଗେ, ଭୂତ ଲାଗେ, ବାଉତି ଲାଗେ ।

କେତେ ମନେ ମନେ କହିଲି, "ତମେ ଟିକିଏ ଅପସରି ଯାଅ ଭଲା, ମୁଁ ଗୋଟାଏ କବିତା ଲେଖି ପକାଏଁ । ତୁମରି କବିତା ତ । ଆଉ ଯଦି ପାରିବ ତ ପହିଲି ଧାଡ଼ିଟା ବତେଇ ଦିଅ ହେଲେ" ! କିନ୍ତୁ କାହିଁ ?—ଖାଲି ସେଇ ହସ, ସେଇ ଦାଢ଼ିହଲା, ସେଇ ଅଙ୍ଗ-ଭଙ୍ଗୀ । ବଡ଼ ଅଝୁଆରେ ପଡ଼ିଲି । ଜାଣିଲି, କବିତା ଲେଖି ହେବନାହିଁ । ମନର ଅବସ୍ଥା ବୋଧହୁଏ କବିତାର ଅନୁକୂଳ ନୁହେଁ ।

ଆଚ୍ଛା, ତେବେ ଗଦ୍ୟଇ ହେଉ । ପ୍ରବନ୍ଧ ନା ସ୍ମୃତି ? ଗୋପବନ୍ଧୁ କ'ଣ ଥିଲେ, କ'ଣ କରିଗଲେ, ଆଉ ଜୀଇଥିଲେ କ'ଣ ହୋଇପାରିଥାଆନ୍ତେ, କ'ଣ କରି ପାରିଥାଆନ୍ତେ, ଇତ୍ୟାଦି ଇତ୍ୟାଦି । ଆରେ ! ଏଇ କଥାତ ସମସ୍ତେ ବର୍ଷକୁ ବର୍ଷ ଲେଖି ଆସୁଛନ୍ତି—ପୁଣି ବି ଲେଖିବେ । ସେଇ ଏକା କଥା ତ, ଯେଉଁଥିରେ କେହି ପଦେ ହେଲେ ପ୍ରତିବାଦ ବି କରିବ ନାହିଁ । ସେ କଥା ଲେଖି ଫଳ କ'ଣ ? କିଏ ନଜାଣେ, କିଏ ନମାନେ ! ଖାଲି କ'ଣ 'ସମାଜ' କାଗଜର ପୃଷ୍ଠା ପୂରାଇବା କଥା !···ଯାଃ—ପ୍ରବନ୍ଧ ଲେଖିବି ନାହିଁ ।

ଆଉ ତେବେ କ'ଣ ?······ସ୍ମୃତି ? ହଁ, ସ୍ମୃତିରୁ ପୁଣି ପଦେ ଅଧେ ଲେଖିଦେବି ଯେ, କାମକୁ କାମ ବି ହେବ, ନୀଳଗିରିଜ ବାବୁଙ୍କ କଥା ବି ରହିବ ।······ଚାହିଁଲି ବେଳକୁ ପୁଣି ସେହି 'ଗୋପବନ୍ଧୁ ଭୂତ' । ଯାଃ, ଏହି ଭୂତ ମୋତେ କିଛି କରେଇ ଦେବ ନାହିଁ ଆଜି । ଆହେ ! ତୁମେ ଇମିତିକା ଟା ଓଗାଳି ବସିଲେ ମୁଁ ଲେଖିବି କେମିତି ? ବିଶେଷତଃ ମୁଁ ଯେ ଲେଖିବାକୁ ବସିଛି ତୁମରି 'ସ୍ମୃତି' । ତୁମେ ନିଜେ ଆଗୁଟାରେ ସାକ୍ଷାତ୍ ସଜୀଆ ଠିଆ ହୋଇ ରହିଲେ 'ସ୍ମୃତି' ପୁଣି ଆସିବ କେଉଁଠୁ ? ତୁମେ ଗଲେ,

ତୁମେ ଅଜ୍ଞାତ ହେଲେ, ଅଦୃଶ୍ୟ ହେଲେ, ଅନ୍ତର୍ହିତ ହେଲେ ଯାଇନିନା ତୁମର ସ୍ମୃତି । ଇଏ ତ ବଡ଼ ଅସନଟା କଥା । ଏହିପରି ମନେ ମନେ ବହୁତ ଭଡ଼ା ଭଡ଼ି କରି କରି ଥକିତ ହୋଇ ହାଲ ଛାଡ଼ି ଦେଇ ବସିଲି । ଭାବିଲି, ଏ ଜୀବନ ବେଳଟା କଟିଯାଉ— ଆଉ ବେଳେ ଦେଖିବ; ରହିଲି ।

କିନ୍ତୁ ସତ କହୁଛି ପଣ୍ଡିତଜୀ, ( 'ଜୀ' ଲଗାଟା ଆଜିକାଲିକାର ଫେସନ । ଆଗରୁ ପଣ୍ଡିତଙ୍କୁ ସ୍ୱାମୀ, ପଣ୍ଡିତ ଆପଣେ, ପଣ୍ଡିତ ମହାପ୍ରଭୁ ପ୍ରଭୃତି ଡକା ହେଉଥିଲା ଓଡ଼ିଶା ବୋଲିରେ । ଏବେ ହିନ୍ଦୁସ୍ଥାନୀ ଲବଜର 'ଜୀ' ସେ ସ୍ଥାନଟା ମାଡ଼ିବସିଛି ) ଆପଣ ବିଶ୍ୱାସ କରନ୍ତୁ ବା ନ କରନ୍ତୁ —ଯେତେଥର ଲେଖିବାକୁ ମନ କଲି, ସେ ମୂର୍ତ୍ତିଟା ମୋତେ ଛାଡ଼ିଲା ନାହିଁ । ଶେଷରେ ଠିକ୍ କଲି ଯେ ଚୁପ୍‌ଚାପ୍ ରହିଯିବି ; ମୋ ଲେଖାଟା ନ ହେଲେ କାମ କିଛି ଅଟକି ଯାଉଛି ଯେ । ଲିଙ୍ଗରାଜ ବାବୁ ତ କେତେ ଲୋକଙ୍କୁ ଲେଖିଥିବେ, ବହୁତ ଲେଖା ଆସିବ, କେତେ ବି ସ୍ଥାନାଭାବରୁ ବଳକ ରହିଯିବ, ଅତଏବ ସବ୍‌ସେ ଚୁପ୍ ଭଲ ।

ପୁଣି ମନକୁ ଆସିଲା ଗୋଟାଏ କଥା । ପଣ୍ଡିତେ ତ ଯାଇଥିଲେ ମାମୁଁଘର ଡାଲିଭାତ ଖାଇ । ସେଠୁ ଆସି ବଡ଼ ଉତ୍ସାହରେ ଶ୍ରାଦ୍ଧ କରୁଛନ୍ତି । ଏଥିରେ ବନ୍ଧୁବାନ୍ଧବଙ୍କର ଯଥାଶକ୍ତି ବେଭାର ଦେବାଟା ସମାଜବିଧି । ନିମନ୍ତ୍ରଣ ପାଇ କିଛି ନ ଦେଲେ ବନ୍ଧୁ କଟିଯାଉ ନ ଯାଉ, ମନଦୁଃଖ ତ କରିବେ । ତେଣୁ ଉଗଡ଼ କରି ଧରିଲି କଲମ, ଟାଣିଆଣିଲି ଖଣ୍ଡେ କାଗଜ ; କିଛି ନ ଭାବି ନ ଚିନ୍ତି ବସିଗଲି ଲେଖି । କଲମ ଯୁଆଡ଼େ ଗଲା ଗୁଡ଼ାଇଦେଲି ତାକୁ—'ପୂର୍ଣ୍ଣ ସ୍ୱାଧୀନତା' । ଏଣିକି ଆଶା କରେଁ, ଆପଣ ମୋତେ କ୍ଷମା କରିବେ ଓ ହାଜର ହୋଇଛି ବୋଲି ଗୁଆଚିଟାଉରୁ କଟାଇ ଦେବେ ନାହିଁ । ଆଉ ଗୋଟାଏ କଥା ଚେତାଇ ଦେଉଥାଏଁ ଏତିକିବେଳେ । ଏଇ ଯେ ଦାଶେ ଆପଣେ ମୋତେ ଗ୍ରାସିବା କଥା କହିଲି, ତାହାର ଆରମ୍ଭ ଆପଣଙ୍କ ଚିଠି ମୋ ହାତରେ ପଡ଼ିଲା ବେଳଠୁଁ । ତାଙ୍କର ଆତ୍ମା (Spirit) ସେ ଚିଠି ସାଙ୍ଗରେ ଆସିଥିଲା ବୋଲି ମୋର ବିଶ୍ୱାସ । କାରଣ, ସେ ଆଉ ଯେଉଁଠିକି ଯାଆନ୍ତୁ ପଛେ 'ସମାଜ' ଅଫିସରେ ସ୍ଥାୟୀ ବସା ବାନ୍ଧି ରହିଥିବେ ଏବଂ ଦରକାର ବେଳେରେ ଆପଣମାନଙ୍କୁ ପରାମର୍ଶ ଓ ପ୍ରେରଣା ଦେଉଥିବେ । ଏ ଚିଠି ସଙ୍ଗରେ ବୁଲିଆସିଥିବା କଥା କିଛି ବିଚିତ୍ର ବା ଅସମ୍ଭବ ନୁହେଁ । ସେମାନେ ତ ସୂକ୍ଷ୍ମ ଶରୀରଧାରୀ । ମୋର ଆଶା, ଏ ଲେଖାଟା ତାଙ୍କର ଦେବାମାତ୍ରେ ସେ ପୁଣି ସେଥିସଙ୍ଗରେ ସ୍ୱସ୍ଥାନକୁ ବାହୁଡ଼ିଯିବେ ! ଆଉ ଯଦି ନ ଯାଆନ୍ତି, ବା ମୋର କିଛି ଭଲମନ୍ଦ ହୁଏ, ତେବେ ଆପଣ ହିଁ ଏକମାତ୍ର ଦାୟୀ, ଏ କଥା ମନେ ରଖିଥିବେ ।

ମୁଁ ପୁଣି ଭାବୁଛି, ଦାଶେ ଆପଣେ ଏତେ ଲୋକ ଥାଉଁ ଥାଉଁ ମୋ ଭଳିଆ ଅକ୍ଷମ ଲୋକ ଉପରେ ସୱାର ହେଲେ କାହିଁକି ? ପ୍ରେତ ଜଗତର ନିୟମ, ଯେ ତାଙ୍କର କିଛି ପ୍ରିୟ ପଦାର୍ଥର ଅଧିକାରୀ ହୋଇଥାଏ, ସେଇଠାରେ ସେମାନେ ଚଡ଼ାଉ କରନ୍ତି ବା ସେଇଠାରେ ଲାଗି ହୋଇ ରହନ୍ତି । ମୋ ଜାଣିଲାରେ ମୁଁ ତ ତାଙ୍କର କିଛି ଚିଜ ବା ଗୁଣ କିଛି ହାସଲ କରିନାହିଁ । ମୁଁ ଅବଶ୍ୟ ଯେଉଁ ସମୟରେ ତାଙ୍କ ସଂସ୍ରବରେ ଆସିଥିଲି—ଅତି ଅଳ୍ପକାଳ ହେଲେ ବି ସେ ବେଳରେ ତାଙ୍କର ନାମଜାଦା ବଡ଼ବଡ଼ିଆ ଚେଲାମାନେ ତାଙ୍କ ପାଖ ପଶି ନଥିଲେ । ସେ ହେଉଛି ସନ ୧୯୦୦ ମସିହାର କଥା । ସେ ସେତେବେଳେ କଲେଜର ଛାତ୍ର ଓ ମୁଁ ପଢ଼ୁଥାଏଁ କଲେଜିଏଟ୍ ସ୍କୁଲରେ । ଥାଉଁ ଏକା ବୋର୍ଡ଼ିଂରେ । ସେତିକିବେଳେ ତାଙ୍କର 'ଅବକାଶ ଚିନ୍ତା' ନାମକ କବିତା ପୁସ୍ତକ ନୂଆ ଛପା ହୋଇଥାଏ । ମୁଁ ସେତେଦିନଯାଏ ଓଡ଼ିଆ ବହି କିଛି ପଢ଼ିନଥିଲି । ବାଲେଶ୍ୱର ଜିଲ୍ଲା ସ୍କୁଲରେ ମୋର ବିଦ୍ୟାରମ୍ଭ । ସେଠି ଆମକୁ ସବୁ ବଙ୍ଗଳାରେ ପଢ଼ିବାକୁ ହେଉଥିଲା । ମୁଁ ଯାହା କିଛି ଛପା ବହି ପଢ଼ିଥିଲି, ତାହା ବଙ୍ଗଳା ଉପନ୍ୟାସ, ବଙ୍ଗଳା ରାମାୟଣ, ମହାଭାରତ । ବର୍ଣ୍ଣବିଜ୍ଞାନ ନାମକ ଓଡ଼ିଆ ବହିରୁ ଅବଶ୍ୟ ଅକ୍ଷର ଚିହ୍ନିଥିଲି ଓ ସ୍କୁଲରେ ପାଠମାଳା, ଆଖ୍ୟାନ ମଞ୍ଜରୀ ନାମକ ବଙ୍ଗଳାରୁ ଅନୁବାଦ ହୋଇଥିବା ଓଡ଼ିଆ ବହିତକ ମୋର ବିଦ୍ୟା । ଓଡ଼ିଆରେ ଆଉ ବହି ଅଛି ବୋଲି ସୁଦ୍ଧା ମୋର ଧାରଣା ନଥିଲା ଏବଂ ବାଲେଶ୍ୱର ସହରର କୁଳୀନ ପରିବାର ମଧ୍ୟରେ ପିଲାକାଳ କଟାଇଥିବାରୁ ଓଡ଼ିଆ ଜାତି ଓ ଭାଷାକୁ ବେପସନ୍ଦ କରିବାଟା ଶିକ୍ଷା କରିଥିଲି ।

କଟକ ଆସି ପ୍ରଥମେ ମୋ ଆଖିରେ ପଡ଼ିଲା 'ଅବକାଶ ଚିନ୍ତା' । ତାକୁ ପଢ଼ିଲି—ଥରେ ନୁହେଁ, ଦୁଇ ଥର ନୁହେଁ, ବାରମ୍ବାର । ଏହା ଏତେ ପଢ଼ିବାର କାରଣ, ଗୋପବନ୍ଧୁଙ୍କ ପ୍ରତି ଅନ୍ୟାନ୍ୟ କଲେଜ ଛାତ୍ରଙ୍କ ଖାତିର, ଗୋପବନ୍ଧୁଙ୍କ ସାକ୍ଷାତ ବ୍ୟକ୍ତିତ୍ୱ ଆଉ 'ଅବକାଶ ଚିନ୍ତା'ର ମଧୁର ଓ ଭାବମୟ ପଦାବଳୀ । କ୍ଷୁଦ୍ର ପୁସ୍ତିକାଟିର ପ୍ରତ୍ୟେକ କବିତା ମୋର କିଶୋର ପ୍ରାଣରେ ଏପରି ଗୋଟାଏ ଦ୍ୟୋତନା ଜଗାଇଦେଲା ଯେ, ମୁଁ ଆଉ ଥୟ ଧରି ରହି ପାରିଲି ନାହିଁ । ଲେଖିଲି ବସି ଲୁଚି ଲୁଚି କବିତା । ଗତବର୍ଷର ଗୋପବନ୍ଧୁ ସଂଖ୍ୟାରେ ପ୍ରକାଶ ପାଇଥିବା ମୋର ପ୍ରବନ୍ଧରେ ସେ କଥାର ବିସ୍ତୃତ ବର୍ଣ୍ଣନା ଅଛି । ବର୍ତ୍ତମାନ କେବଳ ଏତିକି କହୁଛି

ଯେ, ଗୋପବନ୍ଧୁ ଅନ୍ୟ ବିଭାଗରେ ତାଙ୍କର ପ୍ରତିଭା ବିକାଶ କରି-ଥିଲେ ସୁଦ୍ଧା ଏବଂ ଅନ୍ୟଙ୍କ ଆଖିରେ ସେ ଜଣେ ଚରିତ୍ରବାନ୍, ତ୍ୟାଗୀ, ଦେଶ ସେବକ, ମହାପୁରୁଷ ବୋଲି ଗଣ୍ୟ ହେଉଥିଲେ ସୁଦ୍ଧା, ମୋ ଆଖିରେ ସେ ମୂଳରୁ କବି ଓ ସେହି କବି ଭାବରେ ଓ ମୋର କବିତା ଲେଖାର ଆଦ୍ୟଗୁରୁ ଭାବରେ ସେ ମୋର ପୂଜ୍ୟ । ତାଙ୍କର କବିତା ମୋ ପ୍ରାଣରେ କବିତ୍ୱର ଉନ୍ମେଷ କରିଛି, ତାଙ୍କର ପ୍ରେରଣା ମୋ ଚିତ୍ତରେ କବିତାର ସ୍ଫୂର୍ତ୍ତି ଆଣି ଦେଇଛି । ଏ କଥା ସ୍ୱୀକାର କଲାବେଳକୁ ମୋର ଛାତି ଫୁଲି ଫୁଲି ଉଠୁଛି ଗର୍ବରେ, ଶିର ନତ ହୋଇ ଯାଉଛି ତାଙ୍କର ପବିତ୍ର ଚରଣରେ ।

ଏଇଟା କିନ୍ତୁ ଶ୍ରେୟ ନୁହେଁ । ଚନ୍ଦ୍ରର କିରଣ ଯେପରି ବିକଶିତ କରେ କୁମୁଦିନୀକୁ, ଏହା ସେହିପରି ଦାନ ।

ଅବଶ୍ୟ ମୁଁ ଯେ ଶ୍ରେୟ କରିବାକୁ ଚେଷ୍ଟା କରି ନଥିଲି, ତାହା ନୁହେ । ତାଙ୍କର ସାହସ, ତାଙ୍କର ତେଜ, ତାଙ୍କର ତ୍ୟାଗ, ତାଙ୍କର ପ୍ରୀତି. ତାଙ୍କର ଚରିତ୍ର ଏ ସବୁ ଏତେ ବଡ଼ ଥିଲା ଯେ, ତାହା ପାଖକୁ ହାତ ବଢ଼ାଇବା ବାମନର ଚନ୍ଦ୍ର ଧରିବାକୁ ଯିବା ଭଳି ବିଡ଼ମ୍ବନା ଜାଣି ବୁଦ୍ଧିମାନ୍ ଭଳି ମୁଁ ତ୍ୟାଗ କରିଛି । ସେ ଥରେ ସତ୍ୟ, ଦୟା, ଶୌଚ, ତ୍ୟାଗ, ବ୍ରହ୍ମଚର୍ଯ୍ୟ, ସେବା, ଭକ୍ତି ପ୍ରଭୃତି କେତେ ଗୁଡ଼ିଏ ସଦ୍‌ଗୁଣ ଲେଖିଦେଇ ସେଥି ମଧ୍ୟରୁ ଗୋଟିଏ ବା ଯୋଡ଼ିଏ ଲେଖାଏଁ ବାଛି ନେଇ ଆମ୍ଭମାନଙ୍କୁ ତାହା ଅଭ୍ୟାସ (practice) କରିବା ପାଇଁ କହିଲେ । ଏହା ବୋଧହୁଏ ୧୯୦୭ ମସିହାର କଥା । ସେତେବେଳକୁ ମୁଁ କଲେଜରେ । ଅନେକ ଅନେକ ବ୍ରତ ବାଛି ନେଲେ । ମୁଁ କିନ୍ତୁ ବାଛି ବାଛି ନେଲି 'ସେବା' ଓ 'ଭକ୍ତି' । ମନର କଥା ଏହି ଯେ, ଆଉ ଯାହା ନେବି ତାହା କଷ୍ଟସାଧ୍ୟ ଓ ତହିଁରେ ଧରା ପଡ଼ିବାର ଆଶଙ୍କା ଅଛି । ମାତ୍ର ଏହି ଦୁଇଟାର ବ୍ୟତିକ୍ରମ କଲେ କାହାରି ଧରିବାର ସାଧ୍ୟ ନାହିଁ । ଏବେ ଭାବୁଛି— ମୁଁ ବୃଦ୍ଧକାଳରେ ସେତେବେଳେ ଦାଣ୍ଡେ ଆପଣେଙ୍କୁ ଠକାଇ ଦେଇ ମନେ ମନେ ଯେଉଁ ଆତ୍ମପ୍ରସାଦ ଲାଭ କରିଥିଲି, ତାହାରି କରାଳ ପ୍ରତିଶୋଧ ମୋ ଜୀବନ ଉପରେ ଆଜି ଅଭିଶାପ ହୋଇ ଛିଡ଼ା ହେଲା ପରି । ଚରିତ୍ରଗଠନ ଓ ଜୀବନଗଠନର କି ସୁଯୋଗ ହରାଇ ବସିଲି । ବୋଧହୁଏ ଯେଉଁମାନେ ସାଧୁ ଭାବରେ ତାହା ପାଳନ କରି ପାରିଥିଲେ, ସେମାନଙ୍କର ଜୀବନ ମହତ୍ ଓ ଅମୃତମୟ ହୋଇଗଲା । ଏ କଥା ମନେ ପଡ଼ିଲେ ହରି ଭାଇନା (ଆଚାର୍ଯ୍ୟ ହରିହର), ନୀଳକଣ୍ଠଙ୍କ କଥା ମନେ ପଡ଼େ । ଗୋପବନ୍ଧୁଙ୍କ ପରି ଆଦର୍ଶ ଆଗରେ ପାଇ ମଧ୍ୟ ଯୌବନସୁଲଭ ଅବିବେକତାରେ କି ଅମୂଲ୍ୟ ରତ୍ନ ଛାଡ଼ିଦେଲି ।

ଗୋପବନ୍ଧୁଙ୍କର ସଦ୍‌ଗୁଣର ଅନୁକରଣ ବା ଅନୁସରଣ କରିବା ହେଲା ନାହିଁ; ମାତ୍ର ମନେ ପଡ଼େ, ମୁଁ କିଛି ଦିନ ତାଙ୍କର ଥଙ୍ଗି ଥଙ୍ଗି ହୋଇ ବକ୍ତୃତା ଦେବାର ଢଙ୍ଗ ଅନୁକରଣ କରିଥିଲି । ତାଙ୍କ ପରି ଭାବମୟ ଓ ଭାଷାମୟ ବକ୍ତୃତା ତ ହୋଇ ପାରିଲା ନାହିଁ—ହାସଲ ହୋଇଗଲା ଥୋଡ଼ା ଥୋଡ଼ା ତାଙ୍କର ଗଳ କଥା । ଏ ବିଷୟରେ ଦିନେ କୌଣସି ବନ୍ଧୁ ମୋତେ ଖୁଣିଦେବାରୁ ପୁଣି ଅଭ୍ୟାସ କରି ଛାଡ଼ିବାକୁ ହେଲା ।

କିନ୍ତୁ ମନେ ହୁଏ, ଗୋଟାଏ ଗୁଣ ରହିଗଲା ତାଙ୍କର ମୋ' ଠାରେ । ଦାଣ୍ଡେ ଆପଣେ ବଡ଼ ଥଟ୍ଟେଇ ବା ନକଲିଆ ବ୍ୟକ୍ତି ଥିଲେ । ଆମ୍ଭମାନଙ୍କ ସହିତ ସେ ମଧ୍ୟ ନାନା ପ୍ରକାର କୌତୁକ କଥା ଓ ପରିହାସ କରନ୍ତି । ତାଙ୍କର ଭଳି ଥଟ୍ଟା ତାମସା ବା ପରିହାସ କରିବାକୁ ମୁଁ ଟିକିଏ ସୁଖ ପାଏଁ ଏକାଳରେ ମଧ୍ୟ । ମୋର ବିଶ୍ୱାସ, ଏହା ତାଙ୍କର ପ୍ରଭାବ । କାରଣ ମୁଁ ତ ଆଉ କୌଣସି ଉଚ୍ଚପଦସ୍ଥ ଓ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମ୍ପର୍କରେ ଆସିନାହିଁ, ଯାହାଙ୍କର ସ୍ୱଭାବ ଏପରି ହାସ୍ୟ-ପରିହାସପ୍ରବଣ ଥିଲା ।

ଏବେ ପଚ୍ଚୁରେଁ ପଣ୍ଡିତଜୀ, ଆପଣମାନଙ୍କ ତୁଳନାରେ ମୁଁ ତାଙ୍କର କ'ଣ ନେଇଛି ଯେ, ସେ ମୋ ଉପରେ ସର୍ତ୍ତ୍ୱାର ହୋଇ ରହିବେ ? ଯେଉଁମାନେ ତାଙ୍କର ସଚ୍ଚା ଭକ୍ତ, ଯେଉଁମାନେ ତାଙ୍କର ସହକର୍ମୀ, ଯେଉଁମାନେ ତାଙ୍କର ପ୍ରେରଣା ଓ ଆଦର୍ଶରେ ଜୀବନ ଗଢ଼ିଛନ୍ତି, ତାଙ୍କୁ ଅନେକ ଅଂଶରେ ଅନୁକରଣ କରିଛନ୍ତି—ତାଙ୍କ ପାଖକୁ ଯିବାପାଇଁ ତାଙ୍କୁ କିଏ ମନା କଲା ? ଆପଣ ଜାଣନ୍ତି, ହରି ଭାଇନା ତାଙ୍କ ଦାଢ଼ି ଅପହରଣ କଲେ, ନୀଳକଣ୍ଠ ତାଙ୍କ ବକ୍ତୃତା-ଟାଣି ନେଇ କଲେ, ଗୋଦାବରୀଶ ତାଙ୍କ ତ୍ୟାଗ ଛଡ଼ାଇନେଲେ । ଆଉ ଆପଣ ନିଜେ ବି ତ କମ୍ ନୁହନ୍ତି । ପଛରେ ଆସି ମଧ୍ୟ ତାଙ୍କର ସବୁଠାରୁ ପ୍ରିୟ 'ସମାଜ' କୁ ମାଡ଼ି ବସିଲେ । ଏମାନଙ୍କ କାନ୍ଧରେ ସେ ଚଢ଼ିନ୍ତୁ ଭଲ; ମୋ ଭଳିଆ ଅକର୍ମା ଲୋକକୁ ହନ୍ତସନ୍ତ କରିବାରେ ଫଳ କ'ଣ ?

ଆପଣଙ୍କ ସେଠାକାର ଧଳାଦାଢ଼ିଆ ଅକ୍ଷୟ ଦା ( ଶ୍ରୀ ଅକ୍ଷୟ ଚକ୍ରବର୍ତ୍ତୀ ) ଜଣେ spiritualist ପରା । ଏ ବିଷୟରେ ତାଙ୍କ ସହିତ ପରାମର୍ଶ କରିବେ କି ? ଇତି ।



# ଚିନ୍ତାମଣି ସ୍ମୃତି

ଅନେକ ଦିନର କଥା—ପ୍ରାୟ ୩୫ ବର୍ଷ ହେବ—ତେବେ ବି ହେଲେ କାଲି ପରି ଲାଗୁଛି—କବିବର ଚିନ୍ତାମଣିଙ୍କ ସାଙ୍ଗରେ ମୋର ସେଉଁଦିନ ପ୍ରଥମ ସାକ୍ଷାତ ।

ମୁଁ ସେତେବେଳେ କଟକ କଲେଜରେ ପଢୁଥାଏଁ । ମୁକୁର ଓ ଉତ୍କଳ ସାହିତ୍ୟରେ ଲେଖାଲେଖି କରୁଥାଏଁ । କେଉଁ ଛୁଟିରେ ଭଦ୍ରକ ଆସି ଶୁଣିଲି, ଚିନ୍ତାମଣିବାବୁ ଘରକୁ ଆସିଛନ୍ତି । ଜଣେ ବଡ଼ କବି, ପୁଣି ଆମ ଗାଁର ଲୋକ—ମନରେ ସ୍ୱତଃ ଉତ୍କଣ୍ଠା ଜନ୍ମିଲା ତାଙ୍କୁ ଦେଖିବା ପାଇଁ । ତାଙ୍କ ଘର ଆମ ବସାଠାରୁ ଅଳ୍ପ ଦୂରରେ । ଏକା ଧାଇ କହିଲେ ଚଳେ । ଦିନେ ଗଲି । ମନରେ ଦ୍ୱିଧା ଲାଗୁଥାଏ; ଏତେ ବଡ଼ ଲୋକଙ୍କ ଆଗରେ କ'ଣ କହିବି । ମୁଁ ଜଣେ ଲେଖକ ବୋଲି ସେ ହୁଏତ ଜାଣିଥିବେ । କଥାବାର୍ତ୍ତାରେ କାଳେ ମୋର ବିଦ୍ୟା ବୁଦ୍ଧି ଧରା ପଡ଼ିଯିବ ।

ଯାହାହେଉ ମୁଁ ଗଲି । ନାମଜାଦା କବି ଜଣେ—ସେ କିପରି ହୋଇଥିବେ ବୋଲି ମୁଁ ଯେଉଁ ସବୁ କଳ୍ପନା କରି ଯାଇଥିଲି, ଯାଇ ଦେଖିଲାବେଳକୁ ବିବାକ୍ ଓଲଟା । ଜୀର୍ଣ୍ଣ ଶୀର୍ଣ୍ଣ ଲୋକଟିଏ, ଅତି ଦୀନ ବେଶରେ ପିନ୍ଧା କାନିଟି ଘୋଡ଼େଇ ହୋଇ ମସିଣା ଖଣ୍ଡେ ବିଛାଇ ମାଟି ପିଣ୍ଡାଟି ଉପରେ ବସିଛନ୍ତି । ଏଇନା ଏତେ ବଡ଼ କବି ! ଛୋଟିଆ ବୟସ, ତହିଁକି କଲେଜ ପଢୁଆ—ମନଟା ଟିକିଏ ଆମ୍ବିଳା ଧରିଗଲା ।

ହଉ । ନମସ୍କାରଟିଏ ହୋଇ ବସିଲି ପିଣ୍ଡା ଉପରେ । ପରିଚୟ ଦେଲି । ଦେଖିଲି, ମୋତେ ସେ ଆଗରୁ ଚିହ୍ନନ୍ତି । ମୋତେ ଦେଖି ସେ ଏତେ ଖୁସି ହୋଇ ପଡ଼ିଲେ ଯେ ତାଙ୍କ ଗଦ୍‌ଗଦ ଭାବ ଦେଖି ମୋତେ କମିତିକା ଲାଜ ମାଡ଼ିଲା ।

ବଡ଼ ଧୀର, ବଡ଼ ଗମ୍ଭୀର କଥା । ମଝିରେ ମଝିରେ କିଛିତ୍ କୌତୁକିଆ ଟିପ୍‌ପଣୀର ଛିଙ୍କ । କଥା କହୁଁ କହୁଁ ଦୁହେଁ ବିଭୋର ହୋଇ ପଡ଼ିଲୁଁ ।

ଏହା ପରେ ମୁଁ ଯେତେବେଳେ ସୁବିଧା ପାଏଁ, ତାଙ୍କ ଦର୍ଶନକୁ ଯାଏଁ । ରୋଗ ଓ ଅକ୍ଷମତା ହେତୁ ସେ କୁଆଡ଼େ ଯାଆନ୍ତି ନାହିଁ । ମୁଁ ଯେତେବେଳେ ଯାଇଛି, ଦେଖିଛି, ଯେପରି ସେ ମୋ ଆସିବାକୁ ଅପେକ୍ଷା କରି ବସିଛନ୍ତି । ଗଞ୍ଜାମ କଥା, ଗଞ୍ଜାମୀ ରଜାଙ୍କ କଥା ପ୍ରଭୃତି ସେ ବେଶୀ କହନ୍ତି । ଅଜଣା ରାଇଜ କଥା ଶୁଣିବାକୁ ମୋତେ ବି ବଡ଼ ଭଲ ଲାଗେ । ମୋ' ଠାରୁ ସେ କଟକ କଥା ଶୁଣନ୍ତି । ଆଉ ବାହାରର ଖବର ନିଅନ୍ତି । ବଡ଼ ଖୁସି ହୁଅନ୍ତି । ଦୁହିଁଙ୍କ ଜୀବନର ସୁଖ ଦୁଃଖ ବି କଥାଭାଷା ହେଉ । ଛି ସରଳତା, କି ଉଦାର ଅମାୟିକ ଭାବ । ତାଙ୍କ ଆଗରେ ମୁଁ ନିହାତି ପିଲା । କିନ୍ତୁ କି ନିଷ୍କପଟ, କି ସହଜ ବ୍ୟବହାର ତାଙ୍କର । ମୁଁ ଏକାବେଳେ ମୁଗ୍ଧ ହୋଇଯାଏଁ । ମୋ ଛୁଟି ବଖତରେ ସେ ପ୍ରାୟ ଘରକୁ ଆସନ୍ତି । ବରାବର ଦେଖା ହୁଏ । କଥା ଯେପରି ସରେ ନାହିଁ । ଘଣ୍ଟା ଘଣ୍ଟା ଧରି ଚାଲେ ଗପ । ମାତ୍ର ଏତେ ଗପସପ ଭିତରେ ମୁଁ ଦିନେ ଶୁଣିନାହିଁ ତାଙ୍କର କାହାରି ଉପରେ ଆକ୍ଷେପ ବା ଅଭିଯୋଗ । ସଂସାରରେ ଘର କରି ବିଦ୍ୱେଷ, ଶତ୍ରୁତା ପ୍ରଭୃତି ନିଶ୍ଚୟ ଥିବ । କିନ୍ତୁ କେବେହେଲେ କାହାରି ସମ୍ବନ୍ଧରେ ସେ କିଛି କହନ୍ତି ନାହିଁ । ଜଗତଯାକ ଯେପରି ତାଙ୍କର ପରମ ମିତ୍ର । ପ୍ରତ୍ୟେକେ ଯେପରି ଭଲ ଓ ଗୁଣୀ । କବି ହେଲେ ବ୍ୟକ୍ତିଗତ ବିରାଗ ଯେ ପ୍ରାଣରୁ ଉଭେଇଯାଏ, କବି କାହାରିକୁ ସାନ କରି ଦେଖି ପାରେ ନାହିଁ, କାହାରିକୁ ହେୟ ଜ୍ଞାନ କରେ ନାହିଁ—ଏକଥା ଚିନ୍ତାମଣିଙ୍କଠାରେ ମୁଁ ଦେଖିଛି । ସେତେବେଳେ ଥରେ ଥରେ ଭାବିଛି ଯେ ଲୋକଟା ନିତାନ୍ତ ବୋକା ବା ଯାହାକୁ କହନ୍ତି—ଗୋବେଚାରି, ଅଖିଳିଆ । ପରେ କିନ୍ତୁ ବୁଝିପାରିଲି, ତାଙ୍କର ଏଉଟା କେଡ଼େ ମହତପଣିଆ ।

ଦୁଃଖ ଜଞ୍ଜାଳ ଯେ ତାଙ୍କର ନଥିଲା ତାହା ନୁହେ, ବରଂ ସାଧାରଣଠାରୁ ଏସବୁ ଚିନ୍ତାମଣିଙ୍କ ଭାଗରେ ବହୁତ ବେଶୀ ପଡ଼ିଥିଲା ।

ଦୁରାରୋଗ୍ୟ ବ୍ୟାଧିରେ ଜର୍ଜରିତ, ଦାରିଦ୍ର୍ୟର ଯନ୍ତ୍ରଣାରେ ପ୍ରପୀଡ଼ିତ, ସାଂସାରିକ ଅଶାନ୍ତି ଦୁଶ୍ଚିନ୍ତାରେ ବିପନ୍ନ,—ଏତେ ହୋଇ ସୁଦ୍ଧା ସେ ବରାବର ଧୀରସ୍ଥିର । ଆପଣାର ଅବସ୍ଥାରେ ଆପେ ସନ୍ତୁଷ୍ଟ । ଓଜର, ଆପତ୍ତି, ଉଦ୍‌ବେଗ କିଛି ତାଙ୍କୁ ଯେପରି ଛୁଇଁ ନଥିଲା । ମନର ଦୁଃଖ ମନରେ ମାରି, ହୃଦୟର ତାପ ହୃଦୟରେ ନିଭାଇ ସେ ରହୁଥିଲେ ନିଷ୍କାମ, ପ୍ରଶାନ୍ତ । ପୂର୍ଣ୍ଣ ଭଗବତ୍ ବିଶ୍ୱାସ ଓ ଭଗବାନଙ୍କଠାରେ ଏକାନ୍ତ ନିର୍ଭର ଥିଲା ତାଙ୍କ ଅସଲ ବଳ । ଏତେ ଦୁଃଖ କଷ୍ଟ ଭିତରେ ସେ ଗାଉଥିଲେ ଗୀତ, କରୁଥିଲେ ବାଣୀ ଆରାଧନା । ସେପରି ଅଦମ୍ୟ, ଅଶ୍ରାନ୍ତ ସାଧନା କେହି କେବେ

ଦେଖି ନଥିବ କି ଶୁଣି ନଥିବ । ଦିନ ନାହିଁ, ରାତି ନାହିଁ, କ୍ଳାନ୍ତି ନାହିଁ, ବିଶ୍ରାମ ନାହିଁ, ଲେଖି ଚାଲିଛନ୍ତି । ହାତରେ ଲେଖିବାର ଶକ୍ତି କମିଗଲା । ସେ ହାଲ ଛାଡ଼ି ନାହାନ୍ତି । ଦୃଷ୍ଟିଶକ୍ତି ଊଣା ହେଲା, ତଥାପି ତାଙ୍କର ଲେଖା ବନ୍ଦ ହୋଇ ନାହିଁ । ଜରା, ବ୍ୟାଧି କେହି ତାଙ୍କୁ ହଟାଇ ପାରି ନାହିଁ । ସେ ଆଜୀବନ ଲଢ଼େଇ କରି ଜୟୀ ହୋଇଛନ୍ତି, ଗୀତ ଗାଇଛନ୍ତି, ବୀଣା ବାଇଛନ୍ତି ।

ପରେ ଯେତେବେଳେ ତାଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ହେଲା, ସେତେବେଳେ ସେ ପୂର୍ବପରି ନିରଭିମାନ, ନିରାଡ଼ମ୍ବର-ଭାବରେ ରହୁଥିଲେ । କବିତା ଲେଖିବାର ନିଷ୍ଠାପର ସାଧନା ଦିନକ ପାଇଁ ସେ ଛାଡ଼ି ନାହାନ୍ତି ।

ବଡ଼ ଦୁର୍ଭାଗ୍ୟ ମୋର । ଏତେ ନିକଟରେ ଥାଇ ସୁଦ୍ଧା ମୁଁ ବିଗତ କେତେ ବର୍ଷ ତାଙ୍କଠାକୁ ଆଗପରି ଯାଇପାରି ନାହିଁ । ବ୍ୟାଧି ହେତୁ ଶଯ୍ୟା ତ୍ୟାଗ କରିବାକୁ ମୁଁ ଅକ୍ଷମ ହୋଇ ପଡ଼ିଲି । ତେଣେ ସେ ବି ଅକ୍ଷମ । ଦେଖା ହେବାର ଉପାୟ ନାହିଁ । ତେବେ ମୁଁ ସୁବିଧା ପାଇଲେ କେବେ କମିତି ସାକ୍ଷାତ କରି ଆସେଁ । ମୋତେ ଦେଖିବାକୁ ସେ କେତେ ବ୍ୟାକୁଳ ତାହା ମୁଁ ଜାଣେ । ତଥାପି ଗତ ଦୁଇ ବର୍ଷ ଭିତରେ ଥରେ ମଧ୍ୟ ଯିବି ଯିବି ବୋଲି ଯାଇ ପାରି ନାହିଁ । କିଏ ଜାଣିଥିଲା ଏତେ ଅକସ୍ମାତ୍ ସେ ଚାଲିଯିବେ ବୋଲି । ବଡ଼ ଦୁଃଖ ରହିଗଲା, ଥରେ ଶେଷ ଦେଖା ଦେଖି ପାରିଲି ନାହିଁ । କିନ୍ତୁ ମୁଁ ଜାଣେ, ମୋ ପ୍ରାଣର ବ୍ୟଥା ସେ ବୁଝିଛନ୍ତି । ମୋ ଉପରେ ତାଙ୍କର ଯେଉଁ ସ୍ନେହ, ଯେଉଁ ପ୍ରୀତି,— ସେ କେବେ ମନ ଊଣା କରି ନ ଥିବେ ଓ ମୋତେ ଅକ୍ଷମ, ହତଭାଗ୍ୟ ବନ୍ଧୁ ବୋଲି କ୍ଷମା ଦେବେ ।

ଚିନ୍ତାମଣି ଗଲେ । ଓଡ଼ିଶାର ଦୀପ ନିଭିଗଲା । ଆମର ଗର୍ବ କରିବାର ଦେଖାଇହବାର ଯାହା କିଛି, ସରିଗଲା । ଜୀବନବ୍ୟାପୀ ସାଧନାର ସିଦ୍ଧି ହୋଇଗଲା ତୁମର । ଯେଉଁଠିକି ଗଲ ସେଠି ଆଜି ଗୀତ ଗାଇବାରେ ବାଧା ନାହିଁ, ବିପତ୍ତି ନାହିଁ, ପ୍ରତିବନ୍ଧକ ନାହିଁ । ନିଶ୍ଚିନ୍ତ ହୋଇ ବାଣୀପୂଜା କରୁଥାଅ । ଆଜି ଆଶୀର୍ବାଦ କରୁଥାଅ କବିବର, ଯେ ରହିଲେ ଓ ଯେ ଏଣିକି ଜନ୍ମ ହେବେ ସେମାନେ ଯେପରି ତୁମରି ଆଦର୍ଶରେ ନିଜର ଜୀବନ ଗଢ଼ି, ତୁମର ଟେକ ରଖି ପାରିବେ ।



# ଶରୀରମାଦ୍ୟମ୍

## ନିବେଦନ

ମୁଁ ଜଣେ ଚିର ରୋଗୀ । ଯେ ନିଜେ ସର୍ବଦା ଅସୁସ୍ଥ, ତା ପକ୍ଷରେ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଉପଦେଶ ଦେବା ମୂର୍ଖର ଶାସ୍ତ୍ର-ବ୍ୟାଖ୍ୟା ବା ବନ୍ଧ୍ୟାର ପ୍ରସୂତି-ଚିକିତ୍ସା ପରି ଅସଙ୍ଗତ ହୋଇପାରେ । ମାତ୍ର କବିଙ୍କର—

"ସବୁଠାରୁ ଯେଣୁ ହଲୁଛି ଅଧିକ
ସବୁଠାରୁ ତେଣୁ କଳୁଛି ଅଧିକ"

ନ୍ୟାୟରେ ଯେ ସ୍ୱାସ୍ଥ୍ୟକୁ ହଜାଇ ବସିଛି ସେ ଯେତେ ସ୍ୱାସ୍ଥ୍ୟର ମୂଲ୍ୟ ଜାଣିଛି, ସ୍ୱାସ୍ଥ୍ୟର ଗୌରବ ବୁଝିଛି, ସ୍ୱାସ୍ଥ୍ୟ କି ପଦାର୍ଥ ବୋଲି ଚିହ୍ନିଛି, ଯେ ସ୍ୱଭାବତଃ ସ୍ୱାସ୍ଥ୍ୟ ସମ୍ପଦରେ ଅଧିକାରୀ ସେ ତାହା କାହୁଁ ଜାଣିବ !

ମୁଁ ନିଜେ ଅଳ୍ପ ବୟସରେ ପ୍ରକୃତିର ବିଧିବିଧାନକୁ ଖାତିର ନ କରି ଅସଂଯମ ଓ ବ୍ୟଭିଚାରର ଫଳରେ ବହୁମୂଲ୍ୟ ସ୍ୱାସ୍ଥ୍ୟ ହରାଇ ସାରା ଜୀବନ ତାହାକୁ ବହୁତ ଖୋଜିଛି । ଏଥି ସକାଶେ ବହୁ ପୁସ୍ତକ ଅନୁସନ୍ଧାନ (ଅନୁଶୀଳନ) କରିଛି, ସୁସ୍ଥ ଓ ଅସୁସ୍ଥ ବ୍ୟକ୍ତିମାନଙ୍କ ସଙ୍ଗେ ଚର୍ଚ୍ଚା କରିଛି, ବିଜ୍ଞ ଚିକିତ୍ସକମାନଙ୍କର ଉପଦେଶ ଗ୍ରହଣ କରିଛି ଏବଂ ଏହି ଅର୍ଦ୍ଧମୃତ ଶରୀର ଉପରେ ପରୀକ୍ଷା କରି ଜୀଇଁ ରହିଛି । ସେହି ସମସ୍ତ ବହୁ ଆୟାସଲବ୍ଧ ଅଭିଜ୍ଞତାରୁ କିଛି କିଛି ଲିପିବଦ୍ଧ କରି ମୁଁ ଆଜି ପାଠକ ଓ ଜନସାଧାରଣଙ୍କ ହସ୍ତରେ ଅର୍ପଣ କରିବାକୁ ବସିଛି । ମୋର ବିଶ୍ୱାସ, ଆଧୁନିକ କୃତ୍ରିମ ସଭ୍ୟତାଲାଳିତ ଅନେକ ଭାଇ ଭଉଣୀଙ୍କର ଏଥିରେ କିଛି ହେଲେ ଉପକାର ହେବ । ଅନ୍ତତଃ ଯଦି ଜଣେ ସୁସ୍ଥ ବ୍ୟକ୍ତି ତାର ଭଗ୍ନ ସ୍ୱାସ୍ଥ୍ୟର କିଞ୍ଚିତ୍ ପୁନରୁଦ୍ଧାର କରିପାରେ, ତେବେ ମୋର ଏତକ ଶ୍ରମ ସଫଳ ହେବ ।



# ଭୂମିକା

"ଶରୀରମାଦ୍ୟଂ ଖଳୁ ଧର୍ମସାଧନଂ"

ଶରୀର ସୁସ୍ଥ ନ ଥିଲେ ସଂସାରରେ ଜୀଇଁ ରହିବା ବୃଥା । ସେ ଜୀବନ ଜୀବନ ନୁହେଁ, ବରଂ ମରଣଠାରୁ ସହସ୍ର ଗୁଣେ ହେୟ । କାରଣ ମରଣ ତ ଥରେ ମାତ୍ର ଆସେ; ମାତ୍ର ଅସୁସ୍ଥ ବ୍ୟକ୍ତି ପ୍ରତି ମୁହୂର୍ତ୍ତରେ ତିଳ ତିଳ କରି ମରୁଥାଏ । ଅସୁସ୍ଥ ଲୋକ ଜୀବନକୁ ଉପଭୋଗ କରିପାରେ ନା, ସରସତା ପାଏ ନା । ସବୁ ତାହାଠାରେ ବିଷମୟ, ସଂସାର ତାହା ପକ୍ଷରେ ନରକତୁଲ୍ୟ ।

ଜନ୍ମ ଯେତେବେଳେ ହୋଇଛି, ମୃତ୍ୟୁ ନିଶ୍ଚୟ ହେବ । ଯାହାର ଉତ୍ପତ୍ତି ଅଛି, ତା'ର ବିନାଶ ଅବଶ୍ୟମ୍ଭାବୀ । ପଞ୍ଚଭୂତରେ ଗଢ଼ା ଶରୀର ଦିନେ ପଞ୍ଚଭୂତରେ ମିଶିବ । କାଳ ପୂରିଲେ ନିଶ୍ଚୟ ଦିନେ ମରଣ ଆସିବ । "ଜାତସ୍ୟ ହି ଧ୍ରୁବୋମୃତ୍ୟୁଃ" । ତେବେ ସେଦିନ ଯେତେଦିନ ଯାଏ ନ ଆସିଛି, ସେତେ ଦିନ ଯାଏ ଆମେ ନିଜେ ସୁସ୍ଥ ନ ରହିବା କାହିଁକି ? କେହି କହି ପାରନ୍ତି ଯେ ସେ ସବୁ ଭାଗ୍ୟର କଥା, ଅଦୃଷ୍ଟର କଥା ବା ଭଗବାନଙ୍କ ହାତର କଥା—ମନୁଷ୍ୟ ସେଥିରେ କ'ଣ କରିବ ? ନା, ତାହା କେବେହେଁ ନୁହେ । ମନୁଷ୍ୟ ଇଚ୍ଛା କଲେ, ଚେଷ୍ଟା କଲେ, ଅଳ୍ପ ଟିକିଏ ଯତ୍ନ ନେଲେ ନିଜର ଶରୀରକୁ, ନିଜର ସ୍ୱାସ୍ଥ୍ୟକୁ ଅକ୍ଷୁଣ୍ଣ ରଖିପାରେ । ଆମ୍ଭେମାନେ ସମସ୍ତେ ମହାପ୍ରକୃତିର ଅଧୀନ । ସେହି ପଞ୍ଚଭୂତାତ୍ମମୟୀ ପ୍ରକୃତିର କେତେଗୁଡ଼ିଏ ନିୟମ ରହିଛି । ସେହି ନିୟମଗୁଡ଼ିକ ମାନି ଚଳିଲେ ଆମ୍ଭମାନଙ୍କର ସ୍ୱାସ୍ଥ୍ୟ କାହିଁକି ଯେ ନଷ୍ଟ ହେବ ତା'ର କୌଣସି କାରଣ ନାହିଁ । ଯେତେବେଳେ ଆମ୍ଭର ଶରୀର କିଛି ଖରାପ ହୁଏ, ତାହା ଏହି ପ୍ରାକୃତିକ ନୀତି ନିୟମର ବିରୁଦ୍ଧାଚରଣ କରିବା ହେତୁ । କେହି ଅଜ୍ଞାନତାବଶତଃ କରେ, କେହି ବା ଜାଣି-ଶୁଣି ବାହାଦୁରି କରି କରେ । ଯେତେ କମ୍ ହେଉ ପଛକେ, ଏହି ନିୟମର ଅଣୁମାତ୍ର ବ୍ୟତିକ୍ରମ କଲେ ତା'ର ଫଳ ଭୋଗିବାକୁ ପଡ଼ିବ । ଅଧିକାଂଶ ସମୟରେ ସାଙ୍ଗେ ସାଙ୍ଗେ ତା'ର କୁଫଳ ମାଲୁମ ପଡ଼େ ନାହିଁ ଏବଂ ଅନେକ ସମୟରେ କ୍ଷେମଙ୍କରୀ ପ୍ରକୃତି-ଜନନୀ ସବୁ ପିଠେଇ ନେଇଯାଏ । ସେଥିରେ ମନୁଷ୍ୟ ସାହସ ପାଇ ପୁଣି ଅତ୍ୟାଚାର କରି ବସେ । ଏହିପରି କରୁଁ କରୁଁ ଅନିୟମ ପରେ ଅନିୟମ ଅତ୍ୟାଚାର ପରେ ଅତ୍ୟାଚାର ଜମା ହୋଇ ଭିତରେ ଭିତରେ ଅଲକ୍ଷ୍ୟରେ ତିଳ ତିଳ କରି କ୍ଷୟ କରି କରି ଦିନେ ହଠାତ୍ ଆତ୍ମପ୍ରକାଶ କରେ । ସେତେବେଳେ ମନୁଷ୍ୟ କହେ, "କ'ଣ ହେଲା ! —ହା ହତୋଽସ୍ମି !!"

ଜୀବମାତ୍ରର ସ୍ୱଭାବ ସୁଖ ଅନ୍ୱେଷଣ କରିବା । ଈଶ୍ୱରସୃଷ୍ଟ ଜୀବମାନଙ୍କ ମଧ୍ୟରେ ମନୁଷ୍ୟ ଏକା ବୁଦ୍ଧିମାନ୍ । ସେ ସେଥିପାଇଁ ଦିନକୁ ଦିନ ଅଧିକତର ସୁଖପ୍ରାପ୍ତି ଆଶାରେ ଆତ୍ମବୁଦ୍ଧି ପ୍ରୟୋଗ କରି ପ୍ରକୃତିକୁ ଜିଣିବାର ଚେଷ୍ଟା କରୁଛି । ଏହାରି ନାମ ସଭ୍ୟତା । ସଭ୍ୟତା ଯେତିକି ବଢ଼ୁଛି ମାନବ ସେତିକି ପ୍ରକୃତିକୁ ଛାଡ଼ି କୃତ୍ରିମତା ଆଡ଼କୁ ଅଗ୍ରସର ହେଉଛି । ଅନୈସର୍ଗିକ ଉପାୟରେ ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟର ବୃଦ୍ଧି କରୁଛି । ମାତ୍ର ମନୁଷ୍ୟର ଜ୍ଞାନ ବା ବୁଦ୍ଧି ସସୀମ, ଅପୂର୍ଣ୍ଣ । ସେଥିପାଇଁ ସେ ଯେତିକି ଉନ୍ନତ ହେଲି ବୋଲି ମନେ କରୁଛି ସେତିକି ଭ୍ରାନ୍ତିରେ ପଡ଼ୁଛି, ସେତିକି ପ୍ରକୃତିଛଡ଼ା ହୋଇ ଅଧୋଗମନ କରୁଛି । ଏହି ଜ୍ଞାନର ଯେତେବେଳେ ପରିପକ୍ୱତା ଆସିବ, ପୂର୍ଣ୍ଣତା ଆସିବ, ମନୁଷ୍ୟ ସେତେବେଳେ ପୁଣି ପ୍ରକୃତିକୁ ଫେରିଆସିବ ।

ଇତର ପ୍ରାଣୀମାନଙ୍କର ବୁଦ୍ଧି ନାହିଁ । ସେମାନେ କେବଳ ସଂସ୍କାର (instinct) ବଳରେ କାର୍ଯ୍ୟ କରନ୍ତି । ସୁତରାଂ ସେମାନେ ନୈସର୍ଗିକ ନିୟମର ବହିର୍ଭୂତ ହୋଇ ପାରନ୍ତି ନାହିଁ । ଫଳରେ ରୋଗ, ବ୍ୟାଧି, ଅସୁସ୍ଥତା, ଅକାଳ ମୃତ୍ୟୁ ସେମାନଙ୍କ ମଧ୍ୟରେ ପ୍ରାୟ ନାହିଁ । ଗୃହପାଳିତ ପଶୁପକ୍ଷୀଙ୍କ ଭିତରେ ବରଂ ରୋଗବ୍ୟାଧି ଆଦି ବେଶୀ ଦେଖିବାକୁ ମିଳେ । ତା'ର କାରଣ, ସେମାନେ ମାନବର ନିର୍ଦ୍ଦେଶାନୁଯାୟୀ ଚଳିବାକୁ ବାଧ୍ୟ ହୁଅନ୍ତି; ଅନେକାଂଶରେ କୃତ୍ରିମ ଉପାୟରେ ଜୀବନଯାତ୍ରା ନିର୍ବାହ କରନ୍ତି । ଗୃହପାଳିତ ପଶୁପକ୍ଷୀଙ୍କ ସହିତ ବନ୍ୟ ଓ ସ୍ୱଚ୍ଛନ୍ଦବିହାରୀ ପଶୁପକ୍ଷୀଙ୍କୁ ତୁଳନା କଲେ ଏହାର ସତ୍ୟାସତ୍ୟ ଜଣାପଡ଼େ । ମନୁଷ୍ୟମାନଙ୍କ ମଧ୍ୟରେ ସଭ୍ୟ ସମାଜର ଲୋକଙ୍କ ସହିତ ଅସଭ୍ୟ, ବର୍ବର ଓ ବନ୍ୟ ଲୋକଙ୍କୁ ତୁଳନା କଲେ ଦେଖାଯାଏ, ସେମାନେ କେଡ଼େ ସୁସ୍ଥ । ଏପରିକି ଧନୀ ଓ ମଧ୍ୟବିତ୍ତ ଶ୍ରେଣୀର ବ୍ୟକ୍ତିଙ୍କ ସହିତ ମୂଲିଆ ଶ୍ରେଣୀର ଲୋକଙ୍କର ଏ ବିଷୟରେ କେତେ ତଫାତ୍ ।

ଆଜିକାଲି ପାଠୁଆ, ଆଧୁନିକ ଆଲୋକପ୍ରାପ୍ତ ସମାଜରେ ଏପରି କେତେକ ବ୍ୟକ୍ତି ଦେଖାଯାଉଛନ୍ତି ଯେଉଁମାନେ ନିଜକୁ

କହନ୍ତି ସ୍ୱତନ୍ତ୍ରବାଦୀ । ଏମାନଙ୍କ ମତରେ ମନୁଷ୍ୟ ପକ୍ଷରେ କୌଣସି ନିୟମର ଗଣ୍ଡି ମଧ୍ୟରେ ରହିବା ଠିକ୍ ନୁହେ । ମନୁଷ୍ୟ ସର୍ବଦା ମନେକରିବ ଯେ ସେ ମୁକ୍ତ, ସ୍ୱାଧୀନ । ତାହାର ଯେତେବେଳେ ଯେଉଁ ଇଚ୍ଛାର ଉଦ୍‌ଗମ ହେବ, ଯେଉଁ ଅଭିଳାଷ ବା ଆକାଙ୍‌କ୍ଷାର ଆବେଗ ଆସିବ ସେ ତାକୁ ସେହି ମୁହୂର୍ତ୍ତରେ ଚରିତାର୍ଥ କରିବ, ପୂର୍ଣ୍ଣ କରିବ । ସେଥିରେ ମାନବର ପ୍ରକୃତ ସୁଖ ଓ ପ୍ରବୃତ୍ତି ମାନର ପରିତୃପ୍ତି ହିଁ ଜୀବନର ସାର୍ଥକତା । ସେମାନେ କହନ୍ତି, ଏହା ପ୍ରକୃତିର ଆଦେଶ ବା ପ୍ରେରଣା । ଏହିଭଳି ଲୋକେ ଶୟନ, ଭୋଜନ ପ୍ରଭୃତି ନିତ୍ୟନୈମିତ୍ତିକ କାର୍ଯ୍ୟରେ ଅବାରିତ ଯଥେଚ୍ଛାଚାର କରିପକାନ୍ତି ଓ ଧାରାବାହିକ ଜୀବନଗତିରେ ନାନା ବିଶୃଙ୍ଖଳା ଘଟାନ୍ତି । ପ୍ରାଣୀର ପରମ ଶତ୍ରୁ ଇନ୍ଦ୍ରିୟନିଚୟର ସଂଯମ ନ କରି, ଶତ୍ରୁମାନଙ୍କୁ ସ୍ୱବଶରେ ନ ଆଣି ଅବାଧରେ ସେମାନଙ୍କ ଲଗାମ ଛାଡ଼ି ଦେଇ ଶେଷରେ ଏମାନେ ସ୍ୱାଧୀନ ହେବା ପରିବର୍ତ୍ତରେ ଇନ୍ଦ୍ରିୟର ଆଜ୍ଞାବହ ଦାସ ହୋଇ ପଡ଼ନ୍ତି ଓ ଅକାଳରେ ଅମୂଲ୍ୟ ଧନ ସ୍ୱାସ୍ଥ୍ୟକୁ ନଷ୍ଟ କରି-ପକାନ୍ତି । ପରେ ଠିକ ଶିଖିବା ବେଳକୁ ଆଉ ସମୟ ନ ଥାଏ କି ମନର ଜୋର ନ ଥାଏ । ଉଦ୍ଦାମତାମୟ ପ୍ରଥମ ଯୌବନରେ ଏ ବିଷୟରେ ସାବଧାନ ହେବା ବିଧେୟ ।

ଭାରତର ଯୋଗୀଋଷିମାନେ ନିୟମରେ ଚଳି ଶତଶତ ବର୍ଷ ସୁସ୍ଥ ଶରୀରରେ ଜୀବିତ ରହୁଥିଲେ । ଏପରିକି ଏବେ ସୁଦ୍ଧା ଏପରି ଯୋଗୀ ସ୍ଥାନେ ସ୍ଥାନେ ଦେଖାଯାନ୍ତି । ଆମର ପୂର୍ବ ପୁରୁଷ-ମାନେ ମଧ୍ୟ ଦୀର୍ଘଜୀବୀ ଓ ବୃଦ୍ଧକାଳ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ଥିଲେ । ଆଜିକାଲି ଆମ ଦେଶର ଲୋକଙ୍କର ପରମାୟୁ ତ କମିଗଲାଣି, ଯେତିକିଦିନ ବଞ୍ଚି ରହୁଛନ୍ତି ସେ କେବଳ ଜୀବନ୍ମୃତ ଅବସ୍ଥାରେ । କିଏ ପେଟ ଧରି ବସିଛି, କିଏ ମୁଣ୍ଡ ଧରି ବସିଛି—ଯୌବନରେ ଉଲ୍ଲାସ ନାହିଁ, ଉତ୍ସାହ ନାହିଁ. ବାଟ ଚାଲିବାକୁ ସାମର୍ଥ୍ୟ ନାହିଁ, ଆଖି ପଶିଯାଇଛି, ପେଟ ବାହାରିପଡ଼ିଛି, ଦାନ୍ତ ହଲୁଛି, ପଞ୍ଜରା ହାଡ଼ ଗଣିହେଉଛି, ଜୀବନ ବିଷମୟ ହୋଇଛି । ଏ ସବୁ ନିଜର ଅଜ୍ଞାନତା, ଅସାବଧାନତା, ଅବ୍ରହ୍ମଚର୍ଯ୍ୟକାରିତା ଦୋଷରୁ ଘଟୁଛି ।

ଏହି ପ୍ରକାର ପିତାମାତାର ସନ୍ତାନ ମଧ୍ୟ ତଥୈବଚ । ଏହିପରି ସମଗ୍ର ଜାତିଟା ଦିନକୁ ଦିନ ନିମ୍ନରୁ ନିମ୍ନତର ସ୍ତରକୁ ଚାଲିଛି—ହୁଏତ ଦିନେ ଏକାବେଳେକେ ଲୋପ ପାଇଯିବ ।

ସ୍ୱାସ୍ଥ୍ୟହିଁ ଜୀବନର ସବୁଠାରୁ ମୂଲ୍ୟବାନ୍ ଓ ବାଞ୍ଛିତ ବସ୍ତୁ । ଅତଏବ ଶରୀରକୁ ଅକ୍ଷୁଣ୍ଣ, ସୁସ୍ଥ ଓ ନିରାମୟ ରଖିବା ନିମନ୍ତେ ଯେତେ ପରିଶ୍ରମ ହେଉ, ଯାହା ହେଉ, ସେ କିଛି ନୁହେ । ମୋଟ କଥାରେ ଶରୀର ସୁସ୍ଥ ରହିଲେ ସବୁ ଦିଗରେ ମଙ୍ଗଳ । ସ୍ୱାସ୍ଥ୍ୟ ଥିଲେ ସବୁ ଅଛି, ସ୍ୱାସ୍ଥ୍ୟ ଗଲେ କିଛି ନାହିଁ । ଏଥିପାଇଁ ଶାସ୍ତ୍ର କହିଅଛନ୍ତି—

"ଆତ୍ମାନଂ ସତତଂ ରକ୍ଷେତ୍ ଦାରୈରପି ଧନୈରପି"

ଭଗ୍ନସ୍ୱାସ୍ଥ୍ୟ ଓ ଦୁର୍ବଳ ହେବାରୁ ଉତ୍କଟ ରୋଗମାନଙ୍କର ବୀଜାଣୁ ନିବାରଣ କରିବାର ଯେଉଁ ସ୍ୱାଭାବିକ ଶକ୍ତି ତାହା ନଷ୍ଟ ହୋଇଯାଏ ଓ ଆମ୍ଭେମାନେ ସହଜରେ କୌଣସି ଦୁରାରୋଗ୍ୟ ବ୍ୟାଧିର କବଳରେ ପଡ଼ି ଅକାଳରେ ପ୍ରାଣ ହରାଉଁ ।



# ଶରୀରମାଦ୍ୟମ୍

## ଶଯ୍ୟାତ୍ୟାଗ

ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରିବା ବିଧେୟ । ଯେତେବେଳେ ପୂର୍ବଦିଗର ଆକାଶରେ ପ୍ରଥମେ ସିନ୍ଦୂର ଫାଟେ ଓ କାଉ 'କା' କରେ, ସେହି ସମୟ ପବିତ୍ର ଉଷାକାଳ । ସେତେବେଳେ ବାହ୍ୟ ପ୍ରକୃତିରେ ନବ ପ୍ରାଣର ସ୍ପନ୍ଦନ ହେଉଥାଏ, ବିଶ୍ୱଜଗତ ନୂତନ ସ୍ଫୂର୍ତ୍ତିରେ ବିକଶିତ ହେଉଥାଏ, ସାରା ସୃଷ୍ଟି ନବୀନ ପୁଲକରେ ହସି ଉଠୁଥାଏ । ଏ କାଳରେ ଯେ ଏହି ମାଧୁରୀ—ଏହି ଆନନ୍ଦ ଉପଭୋଗ ନ କରି ବିଛଣାରେ ମୁହଁ ମାଡ଼ି ପଡ଼ି ରହେ, ସେ ହତଭାଗ୍ୟ । ଏ କାଳର ବାୟୁ ନିର୍ମଳ, ପ୍ରାଣଦାୟକ, ତେଜୋମୟ । ଏତେବେଳେ ଆଳସ୍ୟ ନ କରି ଶଯ୍ୟାତ୍ୟାଗ କଲେ ସାରା ଦିନଟା ଚିତ୍ତ ପ୍ରଫୁଲ୍ଲ ରହେ ଓ ହୃଦୟରେ ଉତ୍ସାହ ଭରିଉଠେ । କେହି କେହି ଏହି ସମୟଟାରେ ଶୋଇବାକୁ ଆରାମ ବୋଧ କରନ୍ତି । ନିଦ ଭାଙ୍ଗିଲେ ମଧ୍ୟ ପୁଣି ମୋଡ଼ି ମାଡ଼ି ଘୋଡ଼ି ଘାଡ଼ି ଶୋଇ ପଡ଼ନ୍ତି । ଏ କୁ-ଅଭ୍ୟାସ ଦ୍ୱାରା ସ୍ୱାସ୍ଥ୍ୟପକ୍ଷେ ବିଷମ ଅନିଷ୍ଟ ଘଟେ । ଦେହ ମାଟି ପରି ଲାଗେ ଓ ଶରୀର ଅବସନ୍ନତା ଆସେ ।

ନିଦ ଭାଙ୍ଗିଲାକ୍ଷଣି ପ୍ରଥମେ ଇଷ୍ଟମନ୍ତ୍ର ସ୍ମରଣ କରିବ ଓ ଇଷ୍ଟଦେବତାଙ୍କୁ ଧ୍ୟାନ କରିବ । ତାହା ଉତ୍ତାରୁ ଚିତ୍ ହୋଇ ଶୋଇ ଦୁଇ ଗୋଡ଼ ଉଠାଇ ଦୁଇ ଆଣ୍ଠୁକୁ ପେଟରେ ଲଗାଇବ ଓ ସେହି ସମୟରେ ଦୁଇ କହୁଣି ଦ୍ୱାରା ପଞ୍ଜରା ତଳ ଦୁଇ ପାଖରେ ଥିବା ପ୍ଲୀହା ଓ ଯକୃତକୁ ଧରିବ । ଏହିପରି ତିନି ଚାରି ଥର କରି, ତତ୍ପରେ ଏକଡ଼ ସେକଡ଼ ହୋଇ ଦୁଇ ଚାରି ଥର ବିଛଣାରେ ପଡ଼ିବ । ଶେଷରେ ପେଟେଇ ହୋଇ ଦୁଇ ମିନିଟ୍ ଶୋଇବ । ତତ୍ପରେ ଉଠି ବସି ବିଛଣାରୁ ଓହ୍ଲାଇବ । ଏହା କରିବାଦ୍ୱାରା ଆଳସ୍ୟ ଦୂର ହୋଇଥାଏ, କୋଷ୍ଠ ପରିଷ୍କାର ହୁଏ ଓ ବିଶେଷତଃ ଯେଉଁମାନଙ୍କର ପ୍ଲୀହା ବା ଯକୃତର ଦୋଷ ଥାଏ ତାହା ନଷ୍ଟ ହୁଏ ।

ତହୁଁ ଶୀତଳ ଜଳରେ ମୁଖ ଧୋଇବ । ଧୋଇବାବେଳେ ଭଲ-କରି ମୁଖମଣ୍ଡଳ ଓ ଦୁଇ ଆଖିରେ ଜଳ ଦେବ । କେହି କେହି କହନ୍ତି, ଏତିକିବେଳେ 'ଉଷାପାନ' କରିବା ଉଚିତ । ଶୀତଳ ବାସି ଜଳ ଆକଣ୍ଠ ପାନ କରିବାକୁ ଉଷାପାନ କୁହାଯାଏ । ଉଷାପାନ ନାସିକା ଦ୍ୱାରା କଲେ ଆହୁରି ଉପକାର ହୁଏ । ଏହାର ଫଳ କୋଷ୍ଠ ପରିଷ୍କାର, ପିତ୍ତ ନାଶ ପ୍ରଭୃତି ।

ଯାହାଙ୍କର ଇଚ୍ଛା ହୁଏ, ସେ ଅଭ୍ୟାସାନୁଯାୟୀ ବସି ଉଚ୍ଚ ସ୍ୱରରେ ସ୍ତବ ପାଠ କରିବେ ଓ ଜପ ଧ୍ୟାନ କରିବେ । ତହିଁ ଉତ୍ତାରୁ ରୁଚି ଓ ଅବସ୍ଥା ଅନୁସାରେ କିଞ୍ଚିତ୍ ବ୍ୟାୟାମ କରିବା ଉଚିତ । ଏତେବେଳେ ଗୃହଆଡ଼ ବେଶ ପରିଷ୍କାର ହୋଇ ଯାଇଥିବ । ଧୀରେ ଧୀରେ ଘରୁ ବାହାରି ବାହାରେ କିଛି ସମୟ ବୁଲିବ । ଇଚ୍ଛାନୁସାରେ କେହି ଏକ ମାଇଲ ଅଧ ମାଇଲ ଦୂର ଆସି ପାରନ୍ତି ବା କେହି ଦାଣ୍ଡରେ ବା ବାଡ଼ ବଗିଚାରେ ଟହଲ ହୋଇ ପାରନ୍ତି ।

## ଦନ୍ତ ଧାପନ

ଆମ ଦେଶର ଲୋକେ ପ୍ରାୟ ସମସ୍ତେ ଦାନ୍ତ ଘଷନ୍ତି । କୌଣସି କୌଣସି ଦେଶରେ ଦାନ୍ତ ଘଷିବାଟା ନିତ୍ୟକର୍ମ ମଧ୍ୟରେ ନୁହେ । ମାତ୍ର ଦାନ୍ତକୁ ପରିଷ୍କାର ରଖିବା ସ୍ୱାସ୍ଥ୍ୟ ପକ୍ଷରେ ମହା ଉପକାରୀ । ଆଜିକାଲି ଅନେକ ବାବୁଭୟା ଲୋକ ଓ ବିଶେଷତଃ ସ୍କୁଲ କଲେଜ ଛାତ୍ର ବୁରୁସ୍, ଫୁଲଖଡ଼ି ବା ଟୁଥ୍ ପାଉଡରରେ ଦାନ୍ତ ଘଷିବା ସୌଖୀନ ଓ ସୁବିଧା ମନେ କରନ୍ତି । ଫୁଲଖଡ଼ି ଯେତେ ଅନିଷ୍ଟକର ହେଉ ବା ନ ହେଉ, ଟୁଥ୍‌ବ୍ରସ୍ ଯେ ଦାନ୍ତର ଶତ୍ରୁ ଏହା କହିବା ବାହୁଲ୍ୟ ମାତ୍ର । ବ୍ରସ୍ ନାନାପ୍ରକାର ବାଳ ବା ଫାଇବାର୍‌ରେ ନିର୍ମିତ; ପୁଣି କେତେ କାଳରୁ ତିଆରି ହୋଇ କେତେ ହାତ ହୋଇ ଆସିଥାଏ । ସେଥିରେ ନାନାପ୍ରକାର ବିଷାକ୍ତ ପଦାର୍ଥ ଥିବା ସମ୍ଭବ । ଏହା ଉପରେ ଥରେ ତହିଁରେ ଦାନ୍ତ ଘଷିଲେ ତାହା ନଷ୍ଟପ୍ରାୟ ଦୂଷିତ ହୁଏ ଓ ପୁଣି ସେହି ବ୍ରସ୍‌ରେ ଘଷିଲେ ବ୍ରସ୍‌ର ଦୁଷ୍ଟ ବୀଜାଣୁ ଦାନ୍ତର ଅନିଷ୍ଟ କରେ । ସହଜପ୍ରାପ୍ୟ ଓ ପ୍ରକୃତିଦତ୍ତ ଟଟକା ଦାନ୍ତକାଠି ଛାଡ଼ି ବ୍ରସ୍ ବ୍ୟବହାର କରିବା ନିର୍ବୁଦ୍ଧିତା ମାତ୍ର ।

ଦାନ୍ତକାଠି ମଧ୍ୟରେ ଜଡ଼ା ବା ଜାହାଜ୍ଞ, ନିମ, କରଞ୍ଜ, ଅପାମାରଙ୍ଗ, ଅର୍ଜୁନ, ବାମ ଦାନ୍ତକାଠି ସବୁଠାରୁ ଭଲ । ଅଭାବରେ ଅନ୍ୟ କଞ୍ଚା କାଠି ବ୍ୟବହାର କରାଯାଇପାରେ । ମାତ୍ର ବାଉଁଶ ବଡ଼ ଅନିଷ୍ଟକର । ଏହାର ରୁଆ ବଡ଼ ଟାଣୁଆ ଥିବାରୁ ଦାନ୍ତ ସନ୍ଧି ଓ ଚିଡ଼ା ଭିତରକୁ ପ୍ରବେଶ କରି ଦାନ୍ତମୂଳ ଢିଲା କରିଦିଏ ଓ ତହିଁରୁ ରକ୍ତପାତ କରାଏ । ଦାନ୍ତ ଘଷିବାବେଳେ ଉପର, ତଳ, ଭିତର, କଡ଼ ଭଲ କରି ଘଷିବ । ଦାନ୍ତରେ ଲାଗିଥିବା ମଇଳା ଓ ସନ୍ଧିରେ ଥିବା ପଚା ଖାଦ୍ୟାଂଶ ଯେପରି ସବୁ ବାହାରିଯାଏ । ଦାନ୍ତକାଠି ଚଳାଇବାର ନିୟମ ଏ କଳରୁ ସେ କଳ; ଉପରୁ ତଳ ଓ ତଳୁ ଉପର କରି ଚଳାଇଲେ ଦାନ୍ତ ଉପରେ ଥିବା ଚମ ଘୃଷ୍ଟଯାଇ ଦାନ୍ତମୂଳ ଢିଲା କରିଦିଏ ।

ଆଉ ଗୋଟିଏ କୁ-ଅଭ୍ୟାସ ଆମ ଦେଶରେ ଦିନକୁଦିନ ବଢ଼ୁଛି । ତାହା ଗୁଡ଼ାଖୁ ଘଷିବା । ମଫସଲର ଅନେକ ଲୋକଙ୍କର ନାଶ ବଦଳରେ ଏବେ କଣ୍ଟା ଦାନ୍ତଘଷା ଗୁଡ଼ାଖୁ ନୋହିଲେ ଚଳନ୍ତି ନାହିଁ । ନାଶ ବା ଗୁଡ଼ାଖୁର ଅବଶ୍ୟ ବୀଜାଣୁ ନାଶ କରିବାର କ୍ଷମତା ଅଛି; ମାତ୍ର ତା'ର ଅପକାର ଢେର ବେଶୀ । ବିଶେଷତଃ ଗୁଡ଼ାଖୁରେ ଯେଉଁ ସବୁ ପଚା ସଡ଼ା ନାସନା ପଦାର୍ଥ ପଡ଼େ ଓ ତାହା ଯେଉଁ ଉପାୟରେ ତିଆରି ହୁଏ, ତାହା ଦେଖିଲେ କେହି କେବେ ତାକୁ ପାଟିରେ ଦେବାକୁ ମନ କରିବ ନାହିଁ । ନାସ, ଗୁଡ଼ାଖୁ ଦାନ୍ତ-ମୂଳର ଓ ଜିଭର ସୂକ୍ଷ୍ମ ତନ୍ତୁ (nerve) ମାନଙ୍କର ଜୀବନୀଶକ୍ତି ନଷ୍ଟ କରିଦିଏ ଓ କ୍ଷୁଧା କମାଇଦିଏ । ଏହାକୁ ଯେଉଁମାନେ ବ୍ୟବହାର କରନ୍ତି ସେମାନେ ଉପକାର ଉଦ୍ଦେଶ୍ୟରେ ତ କରନ୍ତି ନାହିଁ; କେବଳ ଗୋଟାଏ ଅମଳ ବା ସଉକ ମେଣ୍ଟାଇବା ପାଇଁ କରନ୍ତି । ଦେଖି ଶିଖି ଅଧିକାଂଶ ଏ ଅନିଷ୍ଟକର ଅମଳରେ ପଡ଼ନ୍ତି; ଏପରି କି ବଡ଼ ବଡ଼ଙ୍କଠାରୁ ଦେଖି ପିଲାଏ ବେଶୀ ଶିଖନ୍ତି । ବ୍ୟବହାର କରିବାକୁ ହେଲେ କୌଣସି ଭଲ ଦାନ୍ତଘଷା ଚୂର୍ଣ୍ଣ ବା କୋଇଲାଗୁଣ୍ଡ କିମ୍ବା ମାଟି ବ୍ୟବହାର କରିବା ଉଚିତ । ମାଟି (ଚିକ୍କଣ ପଟୁମାଟି ବା ବାଲିମାଟି) ଅତି ସହଜରେ ମିଳେ, ପଇସା ଖର୍ଚ୍ଚ ନାହିଁ; ଅଥଚ ଦାନ୍ତ ପକ୍ଷରେ ବିଶେଷ ଉପକାରୀ । ଜିଭର ଛତିଆ ସଫା କରିବା ଉଚିତ । ସେଗୁଡ଼ାକ ପେଟ ଭିତରକୁ ଯାଇ ଅନିଷ୍ଟ କରେ । ଦାନ୍ତ ଘଷିସାରି ଜିଭ ଛେଲି ପକାଇବ । ଟାଣୁଆ ଦାନ୍ତକାଠି ହୋଇଥିଲେ ତାକୁ ଚିରି ଏକ ଫାଳରେ ଜିଭ ଛେଲିହୁଏ । ମାତ୍ର ଜିଭ ଛେଲିବା ପାଇଁ ଧାତୁନିର୍ମିତ ଜିଭଛେଲା ବ୍ୟବହାର କରିବା ଭଲ ।

## ମଳତ୍ୟାଗ

ଦାନ୍ତଘଷା ଉତ୍ତାରୁ ମଳତ୍ୟାଗ କରିବାକୁ ଯିବ । ଖୋଲସା ଦସ୍ତ ହେବା ସ୍ୱାସ୍ଥ୍ୟ ପକ୍ଷରେ ବଡ଼ ପ୍ରୟୋଜନୀୟ । ଖାଦ୍ୟର ସାରାଂଶ ଦେହକୁ ଯାଇ ଅସାର ଅଂଶ ମଳରେ ପରିଣତ ହୁଏ ଓ ତାହା ପେଟଭିତରୁ ନିୟମିତରୂପେ ଓ ପରିଷ୍କାର ଭାବରେ ବାହାରିଯିବା

ଦରକାର । ମଳ କଠିନ ବା ତରଳ ହେବା ଅସୁସ୍ଥତାର ଲକ୍ଷଣ । ସରଳ ଅଥଚ ଅଳ୍ପ ନରମ ଲଣ୍ଡ ଆକାରର ମଳ ସ୍ୱାସ୍ଥ୍ୟର ପରିଚାୟକ । ମଳତ୍ୟାଗର କାଳ ନିୟମିତ କରିବା ଉଚିତ । ଅଭ୍ୟାସ କଲେ ଏହା ଆପେ ଆପେ ହୋଇଯାଏ ଓ ଠିକ୍ ସମୟରେ ବେଗ ଆସେ । ବେଗ ନ ଆସିଲେ ମଧ୍ୟ ଥରେ ବସି ଆସିବା ଉଚିତ । ସୁସ୍ଥ ବ୍ୟକ୍ତି ପକ୍ଷରେ ପ୍ରତ୍ୟହରେ ଥରେ ମଳତ୍ୟାଗ ଯଥେଷ୍ଟ । କେହି କେହି ଅଭ୍ୟାସବଶତଃ ଦୁଇ ଥର ଯାଇପାରନ୍ତି । ତହିଁରୁ ଅଧିକ ହେଲେ ଜାଣିବ, ଦେହର କଳ ବିଗିଡ଼ିଛି ।

ଏ ସମ୍ବନ୍ଧରେ ଗୋଟିଏ କଥା ଅଛି :—

ଏକ ବାର ଯୋଗୀ,
ଦୁଇ ବାର ଭୋଗୀ,
ତିନି ବାର ରୋଗୀ ।

ମଳର ଭଲମନ୍ଦ ଖାଦ୍ୟର ଭଲମନ୍ଦ ଉପରେ ଓ ପରିପାକ ଶକ୍ତିର ଭଲମନ୍ଦ ଉପରେ ନିର୍ଭର କରେ । ଯେଉଁମାନଙ୍କର ସ୍ୱଭାବତଃ କୋଷ୍ଠକାଠିନ୍ୟ ଅଛି, ସେମାନେ ଏହି ପୁସ୍ତକରେ ପୂର୍ବରୁ ଲେଖାଥିବା ପ୍ରକ୍ରିୟା କଲେ ଉପକାର ପାଇବେ, ବା ସୁବିଜ୍ଞ ଚିକିତ୍ସକଙ୍କ ପରାମର୍ଶ ନେଇ ଖାଦ୍ୟର ପରିବର୍ତ୍ତନ କରିବେ । ଘଟକା ଶାକସବ୍‌ଜି, ଫଳ, ଘିଅ, ଦୁଧ କୋଷ୍ଠକାଠିନ୍ୟ ନିବାରଣ କରେ । ଅତି ବେଶି ଆମିଷ, ଗୁରୁପାକ ଦ୍ରବ୍ୟ ବା ମସଲା କାଠିନ୍ୟ ଆଣେ । ବିରେଚକ ଔଷଧ ଖାଇ ଘନ ଘନ ଜୋଲାପ ନେଇ ବା ଡୁସ୍ ବ୍ୟବହାର କରି ପାକସ୍ଥଳୀ ଓ ଅନ୍ତ୍ରକୁ ଉତ୍ତେଜିତ ଓ ଦୁର୍ବଳ କରିବା ଅନୁଚିତ ।

ମଳତ୍ୟାଗ କାଳରେ ଦେଖିବ, ଯେପରି ଡାହାଣ ପାଖ ନାକ ପୁଡ଼ାରେ ନିଶ୍ୱାସ ଚାଲୁଥିବ । ତଦ୍ୱାରା ଦସ୍ତ ସଫା ହୁଏ ଓ ବେଗ ହୁଏ ନାହିଁ । ବାମ ନାକରେ ନିଶ୍ୱାସ ଥିଲେ ଅନ୍ତତଃ ବାମ ପୁଡ଼ାକୁ ଚାପି ଧରି ଡାହାଣରେ ଚଳାଇବ । ବସିବାବେଳେ ଦୁଇ କହୁଣୀରେ ଦୁଇ ପାଖର ପିଲ୍ହା ଓ ଯକୃତ୍‌କୁ ଚାପି ଧରିବ ଏବଂ ବାମ ପାଦରେ ଜୋର ଦେଇ ବସିବ । ସୂର୍ଯ୍ୟଙ୍କ ଆଡ଼କୁ ମୁହଁ କରି ବସିବ ନାହିଁ କିମ୍ବା ଯେଉଁ ଦିଗରୁ ପବନ ବହୁଥିବ ସେ ଦିଗକୁ ଆଗ କରିବ ନାହିଁ । ଏହା କଲେ ଅନିଷ୍ଟ ହୁଏ ।

ଆଉ ଗୋଟିଏ କଥା ଏଠାରେ କହିବା ଦରକାର । ମଳତ୍ୟାଗ ପରେ ଗୁହ୍ୟ ଭିତରେ ଥିବା ପଦ୍ମର ସନ୍ଧିରେ କିଛି କିଛି ମଳର ଅଂଶ ରହିଯାଏ । ଏଗୁଡ଼ିକ ଶୌଚଦ୍ୱାରା ପରିଷ୍କାର ହୋଇ ପାରେ ନାହିଁ । ଏହା ଏଠାରେ ରହି ଅପାନ ବାୟୁକୁ ଦୂଷିତ କରେ ଓ ତଦ୍ୱାରା ଅର୍ଶ ପ୍ରଭୃତି ନାନା ରୋଗର ଉତ୍ପତ୍ତି ହୋଇପାରେ । ଏହାକୁ ଶୋଧନ କରିବାର ଏକ ଯୌଗିକ ନିୟମ ଅଛି । ଶୌଚ କଲାବେଳେ ବାମ ହସ୍ତର ମଧ୍ୟମାଙ୍ଗୁଳି ଗୁହ୍ୟ ମଧ୍ୟରେ ତିନି ଚାରି ଥର ପ୍ରବେଶ କରାଇ ଜଳଦ୍ୱାରା ଭିତରର ମଇଳା ସଫା କରିଦେବ । ପ୍ରଥମେ ପ୍ରଥମେ ଟିକିଏ କଷ୍ଟ ବା ଅଡ଼ୁଆ ଲାଗିବା ଅସମ୍ଭବ ନୁହେଁ । ସେଥିପାଇଁ ଟିକିଏ ଜଡ଼ାତେଲ ବା ଗ୍ଲିସେରିନ୍ ବା ଘୋରିଷ ମାଲପା ବ୍ୟବହାର କରାଯାଇପାରେ । ଅଭ୍ୟାସ ହେଲେ ସବୁ ଠିକ୍ ହୋଇଯିବ । ଏହାକୁ ହଠଯୋଗରେ ମୂଳଶୋଧନ କହନ୍ତି ଓ ଏହା ବିଶେଷ ପରୀକ୍ଷିତ । ଶୁଣାଯାଏ, କେହି କେହି ଅତି ସାହେବାନା ଫେସନର ଦେଶୀ ଲୋକ କାଗଜରେ ପୋଛି ଦେଇ ଶୌଚ ସାରନ୍ତି । ଶୀତପ୍ରଧାନ ଦେଶର ପୋଷାକ ପିନ୍ଧିବା ଓ ଟେବୁଲ ଉପରେ କଣ୍ଟା ଚାମଚରେ ଶୀତଦେଶର ଖାନା ଖାଇବାରେ ଯାହା ହେଉ ପଛକେ କାଗଜରେ ପୋଛି ଶୌଚ ହେବା ବଡ଼ ଘୃଣାକର ।

ଆମ ଦେଶରେ ଜନସାଧାରଣ ନଈ, ପୋଖରୀ କୂଳରେ ବା ପଦାରେ ମଳତ୍ୟାଗ କରନ୍ତି ଓ ସହରିଆ ଲୋକେ ପାଇଖାନାକୁ ଯାଆନ୍ତି । ପାଇଖାନାଗୁଡ଼ିକ ବ୍ୟାଧି ବୀଜାଣୁଙ୍କର ଘର । ଏକ ସ୍ଥାନରେ ବହୁଲୋକ ମଳତ୍ୟାଗ କରିବା ହେତୁ କାହା ଦେହରେ ଥିବା କି ଦୁଷ୍ଟ ବୀଜାଣୁ ସେଠାରେ ରହି ବଂଶ ବୃଦ୍ଧି କରନ୍ତି ଓ ଅଲକ୍ଷ୍ୟରେ ଅନ୍ୟ ଲୋକ ଦେହରେ ପ୍ରବେଶ କରନ୍ତି । ମାତ୍ର ପାଇଖାନାର ଉପର ଓ ତଳ ନିତ୍ୟ ଭଲରୂପେ ପରିଷ୍କାର ହୁଏ ତେବେ ରକ୍ଷା । ଯେଉଁ ସହରରେ ପାଣିକଳ ଓ ଡ୍ରେନ୍ ପାଇଖାନା ଅଛି ସେଠାରେ ବିପଦ କମ୍ । ପାଇଖାନା ଖୁବ୍ ଉଚ୍ଚ ହେବା ଉଚିତ; ତହିଁ ମଧ୍ୟରେ ଯେପରି ପବନ ଫେରୁଥିବ ଓ ସୂର୍ଯ୍ୟକିରଣ ପଡ଼ୁଥିବ । ଆଉ ମେହେନ୍ତର ଉପରେ ନିର୍ଭର ନ ରଖି ନିଜେ ଏକ ବାଲ୍‌ଟି ପାଣି ନେଇ ଉପରେ ଢାଳିଦେଲ ସାମାନ୍ୟ କିଛି ଗୋବର ପାଣି ବା ଫିନାଇଲ ପକାଇଦେଲେ କଥା ସରିଲା । ଏତିକ ଇଚ୍ଛା କଲେ ସମସ୍ତେ କରିପାରନ୍ତି; ମାତ୍ର ତାହା ନ କରି ଆମେ ଯେ କେତେ ବ୍ୟାଧି ଓ ବିପଦକୁ ନିମନ୍ତ୍ରଣ କରି ଆଣୁଁ ତା'ର ସୀମା ନାହିଁ ।

ଯେଉଁମାନଙ୍କର ପାଇଖାନା ନାହିଁ, ସେମାନେ ଅଦାପଦା, ନଈ ପୋଖରୀ କୂଳ, ରାସ୍ତାପାଖ ବା ଘର ଓଳି ମଇଳା କରନ୍ତି । ସେମାନେ ଭାବନ୍ତି ନାହିଁ ଯେ ଏହାଦ୍ୱାରା ସେମାନେ ନିଜର କୁଟୁମ୍ବ, ସାଇପଡ଼ିଶାଙ୍କର କି ଅନିଷ୍ଟ କରୁଛନ୍ତି ଏବଂ ନିଜର ମଧ୍ୟ କି ଅମଙ୍ଗଳକୁ ସଙ୍ଗୋଳ ଆଣୁଛନ୍ତି । ନଈ ପୋଖରୀ କୂଳରେ ମଳତ୍ୟାଗ କରିବାର

ସୁବିଧା ଯେ, ଶୌଚ ନିମନ୍ତେ ଲୋଟାର ଦରକାର ହୁଏ ନାହିଁ ବା ବେଶୀ ବାଟ ଯିବାକୁ ପଡ଼େ ନାହିଁ । ପାଣିଭିତରେ ଶୌଚକ୍ରିୟା କରିବା ଦ୍ୱାରା ସେ ପାଣି ଦୂଷିତ ହୁଏ ଓ ତାକୁହିଁ ବ୍ୟବହାର କରି ଲୋକେ ରୋଗଗ୍ରସ୍ତ ହୁଅନ୍ତି । ଅ.ଡ଼ରେ ଯେ ସବୁ ବିଷ୍ଠା ଥାଏ ତାହା ଶୁଖି ପବନରେ ଉଡ଼ି କିମ୍ବା ବୃଷ୍ଟିରେ ଧୋଇ ହୋଇ ପାଣିରେ ପଡ଼େ । ସେହି ପାଣି ପୁଣି ସ୍ନାନପାନାଦିରେ ମନୁଷ୍ୟର ବ୍ୟବହାରରେ ଲାଗେ । ଏହା ଯେପରି ଅନିଷ୍ଟକାରକ ସେହିପରି ପାପଜନକ ।

ଗ୍ରାମ ବା ବସ୍ତିର ଖୁବ୍ ଦୂରକୁ ଯାଇ ବିଲଆଡ଼େ ବା ଜଙ୍ଗଲିଆ ସ୍ଥାନରେ ମଳତ୍ୟାଗ କରିବା ଉଚିତ । ତାହା ପ୍ରାୟ କେହି କରନ୍ତି ନାହିଁ । ଅଧିକାଂଶ ସ୍ଥାନରେ ଲୋକବସ୍ତିର ଅତି ନିକଟରେ ବା ମେଲା ବାଡ଼ ଭିତରେ ବହୁଲୋକ ମଳତ୍ୟାଗ କରନ୍ତି । ଏ ସ୍ଥାନର ନାମ ହୋଇଯାଏ, 'ଘୁଅବାଡ଼' । ଏପରି ଘୁଅବାଡ଼ ଲେଖକ ଦେଖିଛି ଯେଉଁଠାରେ ପାଦ ପକାଇବାର ସ୍ଥାନ ନାହିଁ । ଯେଉଁଠି ପାଦ ପକାଅ, ନିଶ୍ଚୟ ବିଷ୍ଠା ଉପରେ ପଡ଼ିବ । ଏ ସ୍ଥାନର ବାୟୁ ଦୂଷିତ ହୋଇ ଗ୍ରାମବାସୀଙ୍କର ପ୍ରଭୂତ ଅନିଷ୍ଟ ସାଧନ କରେ ଓ ଯେଉଁମାନେ ଏ ସ୍ଥାନରେ ନିତି କୁଣିଆ, ସେମାନେ ଫେରିଲାବେଳେ ଅସଂଖ୍ୟ ରୋଗକୀଟାଣୁ ସଙ୍ଗରେ ନେଇ ଫେରନ୍ତି । ବିଶେଷତଃ ବକ୍ରକୀଟ (hookworm) ନାମକ କୀଟାଣୁ ପ୍ରାୟ ଏମାନଙ୍କ ମଧ୍ୟରେ ତଳିପା ଦେଇ ପ୍ରବେଶ କରେ ଓ ସ୍ୱାସ୍ଥ୍ୟକୁ ଏକାବେଳକେ ନଷ୍ଟ କରି ପକାଏ । ଯେଉଁମାନେ ଦୂରକୁ ଯାଇ ନ ପାରିବେ ସେମାନେ କିମ୍ବା ସ୍ତ୍ରୀଲୋକମାନେ ଆପଣା ବାଡ଼ରେ ପାଇଖାନା କରି ମଳତ୍ୟାଗ କଲେ ଭଲ । ଯେଉଁମାନେ ତହିଁକି ସୁଦ୍ଧା ଅକ୍ଷମ, ସେମାନଙ୍କ ପକ୍ଷେ ବାଡ଼ ଭିତରେ ଗଭୀର ଓ ସରୁ ଗାତ ଖୋଳି ତହିଁରେ ମଳତ୍ୟାଗ କରିବା ଉଚିତ । ଆସିବାବେଳେ କିଛିତ୍ ଝୁରା ମାଟି ଗାତରେ ପକାଇଦେଲେ ହେଲା । ଏପରି ଗୋଟିଏ ଗାତ ପୂର୍ଣ୍ଣ ହେବାକୁ ୧୦।୧୫ ଦିନ ଲାଗିବ । ପୂର୍ଣ୍ଣ ହୋଇଗଲେ ମାଟି ଢାଙ୍କିଦେଇ ପୁଣି ଅନ୍ୟ ଗାତ ଖୋଳିନେବେ । ମାଟିଭିତରେ ଥିବା ମଇଳା କାହାର କିଛି ଅନିଷ୍ଟ କରି ପାରିବ ନାହିଁ ଓ କେତେ ମାସ ମଧ୍ୟରେ ତାହା ମାଟି ପାଲଟିଯିବ । ଉପରନ୍ତୁ ସେ ସ୍ଥାନଟିକୁ ଉର୍ବର କରିଦେବ ।

## ହାତମାଟି

ଶୌଚକ୍ରିୟା ପରେ ହାତମାଟି କରିବା ପ୍ରଥା ଆମ ଦେଶରେ ଅଛି । ମାତ୍ର କେହି କେହି ସହରିଆ ଲୋକ ଏବେ ମାଟି ପରିବର୍ତ୍ତରେ ସାବୁନ ବ୍ୟବହାର କଲେଣି । ଆହୁରି ଜଣେ ଜଣେ ମଧ୍ୟ ଦେଖାଯାନ୍ତି ଯେଉଁମାନେ କେବଳ ହାତଟାକୁ ପାଣିରେ ଧୋଇଦେଇ କାମ ସାରି ଦିଅନ୍ତି ଅଥବା ବାମ ହାତର ତିନୋଟି ଅଙ୍ଗୁଳି ଲଗାଇ ଟିକିଏ ଧୂଳି ଉଠାଇ ଆଣି, ଥରେ ଦୁଇଥର ମଳମାଳ ଦେଇ ସେହି ଲୋଟାରେ ବଳିଥିବା ପାଣିରେ ହାତଟା ଧୋଇପକାନ୍ତି । ଏପରି କରିବା ଅନୁଚିତ । ମାଟି ଏ ପକ୍ଷରେ ସବୁଠାରୁ ଉପଯୋଗୀ । ମାଟିରେ ବିଷ-ଶୋଧନର ଗୁଣ ଅଛି ( disinfectant ) । ସେ ମାଟି କିନ୍ତୁ ଭଲ ମାଟି ହେବା ବାଞ୍ଛନୀୟ । ପାଇଖାନା ପାଖର ମାଟି ବା ଯେଉଁ ସ୍ଥାନରେ ସମସ୍ତେ ପ୍ରସାବ କରନ୍ତି—ଛେପ ଖଙ୍କାର ପକାନ୍ତି, ସେ ସ୍ଥାନରୁ ମାଟି ନେବ ନାହିଁ । ଏଥିପାଇଁ ବିଲରୁ ବା ନଦୀରୁ ଭଲ ମାଟି ଆଣି ଗୋଟାଏ ସ୍ଥାନରେ ରଖି ଦେଇଥିଲେ ବହୁକାଳ ଚଳିଯିବ । ତିନି ଥର ମାଟିହାତ କରିବାର ବିଧି ଅଛି । ଏଥିପାଇଁ କେହି କେହି ବିଧିରକ୍ଷା କରିବା ଉଦ୍ଦେଶ୍ୟରେ ଦୁଇ ଥର ଅଙ୍ଗୁଳିରେ ମାଟିକୁ ସ୍ପର୍ଶ କରି ତୃତୀୟ ଥରରେ ହାତମାଟି କରନ୍ତି । ପ୍ରକୃତପକ୍ଷେ ତିନିଥରଯାକ ଦୁଇ ହାତରେ ମାଟି ଲେପି ପ୍ରତି ଥର ଧୋଇବା ଉଚିତ ।

ଯେଉଁ ଲୁଗା ପିନ୍ଧି ମଳତ୍ୟାଗ କରାଯାଏ ସେ ଲୁଗା ମାରା ହେବାର ପ୍ରଥା ପୂର୍ବରୁ ଅଛି । ଏଥିପାଇଁ ଆମ ଦେଶରେ ଅଧିକାଂଶ ଲୋକ ଗାମୁଛା ପିନ୍ଧି ଯାଆନ୍ତି । ଗାମୁଛାଟା ପରା ଛୁଆନ୍ତା ହୁଏ ନାହିଁ ! ପୁଣି ଏବେ ବହୁତ ଲୋକ ବିଶେଷତଃ ସହରିଆ ଓ ଅଧା ସହରିଆ-ମାନେ ସାହେବାନା ଲୁଗାରେ ସକାଳ ଉତ୍କଣ୍ଠା କଟାଇ ଦେଉଅଛନ୍ତି । ଯାହାର ମଳତ୍ୟାଗ ପରେ ପରେ ସ୍ନାନ କରିବାର ଅସୁବିଧା ଅଛି ସେ ଯେପରି ଲୁଗାକୁ ପାଲଟି ପକାନ୍ତି ଓ ଗାମୁଛା ଧୁଅନ୍ତି ତାହା ଦେଖିବାକୁ ହେବ । ଏ ଲୁଗା କେବଳ ମାଇପି କଥାରେ ମାରା ହୋଇଥାଏ ତାହା ନୁହେଁ, ଏହା ବୈଜ୍ଞାନିକ ମତରେ ମଧ୍ୟ ଅବ୍ୟବହାର୍ଯ୍ୟ । କାରଣ ଏଥିରେ ଦୂଷିତ ହାଉଆ ଓ ବିଷାକ୍ତ କୀଟାଣୁ ଥିବା ସମ୍ଭବ । ଏ ଲୁଗା ଦେହରେ ବହୁତକ୍ଷଣ ରହିବା ଅପକାରୀ ।

## ମୂତ୍ରତ୍ୟାଗ

ମନୁଷ୍ୟର ଦେହ ଭଲ ଅଛି କି ନାହିଁ ତାହା ମୂତ୍ରରୁ ଅନେକଟା ଧରା ପଡ଼େ । ମୂତ୍ର ସ୍ୱାସ୍ଥ୍ୟ ପରିଜ୍ଞାପକ (indicator) । ସୁସ୍ଥ ବ୍ୟକ୍ତିର ମୂତ୍ର ଅଳ୍ପ କସରା ଓ ସରଳ ହେବ । ଏହାର ବ୍ୟତି-କ୍ରମ ହେଲେ ଜାଣିବ, ଭିତରେ କିଛି ଅରୋଗ ହୋଇଛି । ବେଶୀ ପ୍ରସ୍ରାବ ବା କମ ପ୍ରସ୍ରାବ ମଧ୍ୟ ଅସ୍ୱସ୍ଥତାର ଲକ୍ଷଣ । ସ୍ୱର ଶାସ୍ତ୍ର ମତରେ ବାମ ନାକ ପୁଡ଼ାରେ ଶ୍ୱାସ ଥିବାବେଳେ ପ୍ରସ୍ରାବ କରିବ ।

ଦକ୍ଷିଣ ଶ୍ୱାସରେ ପ୍ରସ୍ରାବ କଲେ ଅଲକ୍ଷ୍ୟରେ ପ୍ରସ୍ରାବ ସହିତ ରକ୍ତ-ବିନ୍ଦୁ କ୍ଷରିତ ହୁଏ । ମଳତ୍ୟାଗ କାଳରେ ସ୍ୱଭାବତଃ ପ୍ରସ୍ରାବ ହୁଏ; ସେତେବେଳେ କିନ୍ତୁ ଦକ୍ଷିଣ ନାସାରେ ଶ୍ୱାସ ଥିବା ଉପକାରୀ । ପ୍ରସ୍ରାବ ସାରିଲା ପରେ କିଛିକ୍ଷଣ ଅପେକ୍ଷା କରିବ, ଯେପରି ପ୍ରତ୍ୟେକ ବିନ୍ଦୁ ବହିର୍ଗତ ହୋଇଯାଏ । ତରବର ହୋଇ ଉଠି ଆସିଲେ ନିଶ୍ଚୟ କିଛି ମୂତ୍ର ଲୁଗାରେ ଲାଗିବ ଓ ତାହା ଲୁଗାକୁ ଦୂଷିତ କରି ଅନିଷ୍ଟ ଘଟାଇବ । ପ୍ରସ୍ରାବଦ୍ୱାରକୁ ଜଳଦ୍ୱାରା ଧୋଇ ଦେବା ଭଲ, ଯାହାକୁ ପାଣି ଦେବା କହନ୍ତି । ମୁସଲମାନମାନେ ଅନେକେ ଇଟା ବା ମାଟି ଖଣ୍ଡେ ବ୍ୟବହାର କରନ୍ତି । ଅଭ୍ୟାସ ପକ୍ଷେ ସେତିକ ମଧ୍ୟ କରିବା ଉଚିତ ।

ହଠଯୋଗରେ ଅଛି ଯେ ମଳ ବା ମୂତ୍ର ତ୍ୟାଗ କଲାବେଳେ ଦୁଇପାଟି ଦାନ୍ତକୁ ଚିପି ଧରିଲେ ଦାନ୍ତ ଶକ୍ତ ହୁଏ ଓ ଦନ୍ତରୋଗ ନିବାରଣ କରେ । ଆହୁରି ମଧ୍ୟ ମୂତ୍ର ତ୍ୟାଗ କରିବା ସମୟରେ ବାମ ହସ୍ତରେ ଅଣ୍ଡକୋଷକୁ ଚିପି ଧରିଲେ କୋଷବୃଦ୍ଧିର ଭୟ ରହେନାହିଁ, ଏପରିକି ଏତଦ୍ଦ୍ୱାରା ଏକଶିରା ଆରୋଗ୍ୟ ହୁଏ । ମଳ ବା ମୂତ୍ରର ବେଗ ରୋଧ କରିବା ଶରୀରପକ୍ଷେ ଭୟାନକ ଅନିଷ୍ଟକର । ତଦ୍ଦ୍ୱାରା ବହୁ ରୋଗ ଜାତ ହେବାର କଥା ଚିକିତ୍ସାଶାସ୍ତ୍ରମାନଙ୍କରେ ଲେଖା ଅଛି । ମଳର ବେଗରୋଧ ଖୁବ୍ ଅଳ୍ପ ଲୋକେ କରନ୍ତି, ମାତ୍ର ସାଧାରଣତଃ ଅଧିକାଂଶ ଲୋକଙ୍କୁ ପ୍ରସ୍ରାବର ବେଗରୋଧ କରିବାର ଦେଖାଯାଏ । ଏ ବିଷୟରେ ଖୁବ୍ ସାବଧାନ ହେବା ବିଧେୟ ।

ପ୍ରସ୍ରାବ ତ୍ୟାଗର ସ୍ଥାନ ସମ୍ବନ୍ଧରେ ସାଧାରଣତଃ ସମସ୍ତେ ଉଦାସୀନ । ଯେ ଯେଉଁଠି ପାରିଲା ମୂତ୍ର ତ୍ୟାଗ କଲା । କେହି କିଛି ଧରିହାରଣା କରନ୍ତି ନାହିଁ । ପ୍ରସ୍ରାବରୁ ଯେଉଁ ବିଷାକ୍ତ ବାଷ୍ପ (Gas) ବାହାରେ ତାହା ସ୍ୱାସ୍ଥ୍ୟ ପକ୍ଷରେ ଅନିଷ୍ଟକର ଓ ପ୍ରସ୍ରାବରେ ପ୍ରସ୍ରାବକାରୀ ଦେହର ରୋଗ ବୀଜାଣୁ ମଧ୍ୟ ଆସନ୍ତି । ସେଥି ସକାଶେ ବାସଗୃହରୁ ଖଣ୍ଡେ ଦୂର ପ୍ରସ୍ରାବ କରିବ । ରାତିକାଳରେ ନାଳୁଆରେ ମୂତିବା ଅନୁଚିତ । କୁଣ୍ଡ ପ୍ରଭୃତି କୌଣସି ପାତ୍ରରେ ମୂତ୍ରତ୍ୟାଗ କରି ଦିନବେଳେ ତାହା ଦୂରରେ ନିକ୍ଷେପ କଲେ ଚଳେ; ମଧ୍ୟ ତାହା ଦୁର୍ବିଧାଜନକ । ଯଦି ଅଗଣା ବା ନାଳୁଆରେ ପ୍ରସ୍ରାବ କରାଯାଏ ତେବେ ଗୋବରପାଣି ଦେଇ ଧୋଇଦେବା ବା ଲିପିଦେବା ଦରକାର ।

ମଳତ୍ୟାଗ ପରି ମୂତ୍ରତ୍ୟାଗରେ ମଧ୍ୟ ସୂର୍ଯ୍ୟଙ୍କ ଆଡ଼କୁ ଆଗ କରିବା ନିଷେଧ ।

ଜଳ ଖାଇବାର ଅବ୍ୟବହିତ ପରେ କିମ୍ବା ଅନ୍ନ ଭୋଜନର ଅବ୍ୟବହିତ ପୂର୍ବେ କଦାଚ ପ୍ରସ୍ରାବ କରିବ ନାହିଁ ।

ପ୍ରସ୍ରାବର ସାମାନ୍ୟ ବେଗ ଥିବା ସମୟରେ ସ୍ତ୍ରୀ ମୂତ୍ର ତ୍ୟାଗ ନ କରି ମୈଥୁନ କଲେ ପୁରୁଷତ୍ୱର ହାନି ଘଟେ ।

ଛିଡ଼ା ହେବା ଅବସ୍ଥାରେ କେବେହେଁ ପ୍ରସ୍ରାବ କରିବ ନାହିଁ । କୌଣସି ସ୍ଥାନରେ ପୂର୍ବରୁ ଅନ୍ୟ କେହି ପ୍ରସ୍ରାବ କରିଥିଲେ ତାହାର ଉପରେ ପୁଣି ପ୍ରସ୍ରାବ କରିବ ନାହିଁ ।

## ସ୍ନାନ

ସ୍ନାନ ପ୍ରାଣୀର ଅତ୍ୟାବଶ୍ୟକୀୟ ନିତ୍ୟକର୍ମ । ଏତଦ୍ଦ୍ୱାରା ଦେହର ବାହ୍ୟାବରଣର ମଳ ଧୌତ ହୁଏ; ପୁଣି ଜୀବନରୂପୀ ଜଳ ଲୋମକୂପ ମଧ୍ୟରେ ପ୍ରବେଶ କରି ଶରୀରର ବହୁ ମଙ୍ଗଳ ସାଧନ କରେ ଓ ଦେହ ମନରେ ଆରାମ ଓ ଶାନ୍ତ ଆନୟନ କରେ । ପଶୁପକ୍ଷୀ ପ୍ରଭୃତି ଇତର ପ୍ରାଣୀମାନେ ଆପେ ସ୍ୱଭାବ ଅନୁଯାୟୀ ସ୍ନାନ କରନ୍ତି । ଉଦ୍ଭିଦଙ୍କ କଥା ଛାଡ଼ । ଶୀତଳ ଜଳରେ ସ୍ନାନ ତ ତାଙ୍କର ଜୀବନ । ବୃଷ୍ଟି ଓ ଶିଶିର ଦ୍ୱାରା ସେମାନେ ନିତ୍ୟସ୍ନାତ । ସ୍ଥଳଚର ପ୍ରାଣୀଙ୍କ ମଧ୍ୟରେ ସାଧାରଣତଃ ଦେଖାଯାଏ, ମନୁଷ୍ୟ, ହାତୀ, ଘୁଷୁରି ଓ ମହିଷ—ଏହିମାନଙ୍କ ଚର୍ମ ଅନାବୃତ । ବାକୀ ସମସ୍ତଙ୍କର ଲୋମ ବା ପର ଅଛି । ଲୋମ ବା ପରରେ ଢଙ୍କା ଥିବାରୁ କୁକୁର, ବିରାଡ଼ି, ବାଘ, ଭାଲୁ, ଗାଈ, କାଉ ପ୍ରଭୃତିଙ୍କ ଚମରେ ବାହାର ମଳ ଜମି ପାରେ ନା ଓ ଯାହା ଜମେ, ଝାଡ଼ି ଦେଲେ ସହଜରେ ବାହାରିଯାଏ । ମାତ୍ର ଖୋଲା ଚର୍ମବିଶିଷ୍ଟ ପ୍ରାଣୀଙ୍କର ସେ ସୁବିଧା ନ ଥିବାରୁ ଚର୍ମ ଉପରୁ ଓ ଲୋମମୂଳରୁ ମଳ ଛଡ଼ାଇବା ବେଶୀ ଦରକାର । ବୋଧହୁଏ ବାହାର ତାପ ଏମାନଙ୍କ ଶରୀର ମଧ୍ୟରେ ଶୀଘ୍ର ପ୍ରବେଶ କରି ସ୍ନାୟୁମଣ୍ଡଳକୁ ଅବସନ୍ନ କରିପକାଏ । ସେଥିସକାଶେ ମଧ୍ୟ ଏହି ପ୍ରାଣୀମାନଙ୍କ ପକ୍ଷେ ସ୍ନାନ ଆହୁରି ପ୍ରୟୋଜନୀୟ । ସମସ୍ତେ ଦେଖିଥିବେ, ଏହି ଚାରିପ୍ରକାର ପ୍ରାଣୀଙ୍କ ମଧ୍ୟରୁ ଘୁଷୁରି, ମହିଷ ଓ ହାତୀ କେତେ ବେଶୀ ସ୍ନାନପ୍ରିୟ । ଏଥିରୁ ଜଣାଯାଏ, ମାନବଶରୀର ମଧ୍ୟ ସେହିପରି ସ୍ୱଭାବତଃ ବେଶୀ ସ୍ନାନ ଲୋଡ଼େ । ମାତ୍ର ମନୁଷ୍ୟ ତା'ର ବୁଦ୍ଧି ଓ ସଭ୍ୟତା ବଳରେ ସ୍ୱଭାବକୁ ବଶୀଭୂତ କରି ସ୍ନାନକୁ ସେପରି ଉଚ୍ଚ ସ୍ଥାନ ଦେଇ ନାହିଁ । ପୂର୍ବେ ଆମର ଦେଶରେ ତ୍ରିକାଳ ସନ୍ଧ୍ୟା ସ୍ନାନର ନିୟମ ଥିଲା । ଏବେ ତାହା ଯାଇ ଯାଇ ଆଧୁନିକ ସମାଜରେ ଫ୍ରେଞ୍ଚ୍ ବାଥ୍‌ରେ ରହିଲାଣି । କେହି କେହି ସ୍ନାନଟାକୁ ଗୋଟିଏ ନିତ୍ୟନୈମିତ୍ତିକ ଅପରିହାର୍ଯ୍ୟ ବିଷୟ

ବୋଲି ଧରିବାକୁ ନାହାନ୍ତି । ଦେଖାଯାଏ, ଶୀତ ଦିନରେ ଅନେକେ ଗୋଡ଼ରୁ ଜୋତା ମୋଜା ନ ଖୋଲି କେବଳ ହାତ ମୋଡ଼ାକ ଓ ମୁହଁଟା ସାବୁନରେ ଥରେ ରଗଡ଼ି ଧୋଇ ଦେଇ କାମ ସାରି ଦିଅନ୍ତି । ଭାଗ୍ୟକୁ ଆମ ଦେଶଟାରେ ଖରାଦିନେ ବେଜାୟ ଗ୍ରୀଷ୍ମ ହୁଏ । ନୋହିଲେ ଶିକ୍ଷିତ ସମାଜରୁ ସ୍ନାନ ଉଠି ଯାଆନ୍ତାଣି ।

ଶୀତଳ ନିର୍ମଳ ଜଳରେ ସ୍ନାନ ବିଧେୟ । ସ୍ରୋତସ୍ୱିନୀ ନଦୀର ଜଳ ଉପକାରୀ । କୂପ ଜଳ ହୋଇଥିଲେ ତାହା ବାହାର କରି କିଛି ସମୟ ସୂର୍ଯ୍ୟକିରଣ ଓ ମୁକ୍ତ ବତାସ ଖୁଆଇନେବ; ତେବେ ତାହା ନିର୍ଦ୍ଦୋଷ ହୋଇଯିବ । ଅବଶ୍ୟ ପଚା କୂଅ ଓ ବୁଜା ଗଡ଼ିଆର ଜଳ ଏଥିକରେ ନିର୍ଦ୍ଦୋଷ ହେବ ନାହିଁ ।

ପ୍ରାତଃସ୍ନାନ ତ୍ରିଦୋଷନାଶକ । ଯେଉଁମାନଙ୍କର ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ କରିବାର ଅଭ୍ୟାସ ଦେଖାଯାଏ ସେମାନେ ପ୍ରାୟ ସୁସ୍ଥକାୟ ଓ ଦୀର୍ଘଜୀବୀ ହୁଅନ୍ତି । ରୋଗାବସ୍ଥାରେ ଚିକିତ୍ସକର ପରାମର୍ଶ ନେଇ ସ୍ନାନ କରିବା ଉଚିତ । ସେ କାଳରେ ଈଷଦୁଷ୍ଣ ଜଳର ପ୍ରୟୋଜନ ହୋଇପାରେ । ମାତ୍ର କେହି କେହି ଯେ ଚିରକାଳ ଅଥବା ଶୀତକାଳଯାକ ଗରମ ଜଳରେ ସ୍ନାନ କରନ୍ତି ଓ କହନ୍ତି କି ଥଣ୍ଡା ଜଳରେ ସ୍ନାନ କଲେ ମୋର ଶର୍ଦ୍ଦି ହୁଏ, ଏହା ହୁଏତ ଅଭ୍ୟାସ-ଦୋଷ ଅଥବା ମନର ଦୁର୍ବଳତା । ଟାଟକା ଥଣ୍ଡା ଜଳ ପରି ସ୍ୱାସ୍ଥ୍ୟ ଓ ଶାନ୍ତିପ୍ରଦ ଗରମ ଜଳ ନୁହେ । ଦିନ ମଧ୍ୟରେ ଅନ୍ତତଃ ଥରେ ସ୍ନାନ ନ କଲେ ସ୍ୱାସ୍ଥ୍ୟ ଠିକ୍ ରହେ ନାହିଁ ।

କେହି କହି ପାରନ୍ତି କି ଗୋରା ଲୋକେ ବା କାବୁଲି ପ୍ରଭୃତି ତ ପ୍ରାୟ ସ୍ନାନ କରନ୍ତି ନାହିଁ । ଏହା ସତ୍ୟ; ସେ ସବୁ ଦେଶର ଜଳବାୟୁ ଓ ଖାଦ୍ୟ ସେ ଅଭାବ ପୂରଣ କରୁଥିବ । ମାତ୍ର ଆମ ଦେଶରେ ସ୍ନାନ ନ କଲେ ବା ଅନିୟମରେ ସ୍ନାନ କଲେ ଅପକାର ଛଡ଼ା ଉପକାର ହେବ ନାହିଁ । ଆଜି ମଧ୍ୟ ଗୋରା ଦେଶରେ ଯେଉଁମାନେ ଗରିବ ବା ନିମ୍ନଶ୍ରେଣୀର ଲୋକ ସେହିମାନେ ସ୍ନାନ ବିଷୟରେ ଅବହେଳା କରନ୍ତି । କାରଣ ସେମାନଙ୍କ ଦେଶରେ ଶୀତର ପ୍ରଭାବ ଅତି ବେଶୀ, ସେମାନଙ୍କର ଅଧିକ ଲୁଗାପଟା ନ ଥାଏ ଓ ସେ ଦେଶରେ ସ୍ନାନ କରିବା ସକାଶେ ଖରଚ ମଧ୍ୟ ପଡ଼େ । ମାତ୍ର ଆମ ଏଠି ସେ ସବୁ ଅସୁବିଧା କିଛି ନାହିଁ । ଆଉ ଯେଉଁମାନେ ସ୍ନାନ ନ କରନ୍ତି ସେମାନଙ୍କ ପାଖରେ ବସିଲେ ଜଣାଯାଏ, ତାଙ୍କ ଲୁଗାପଟା ଓ ଦେହରୁ କି ପ୍ରକାର ଦୁର୍ଗନ୍ଧ ନିର୍ଗତ ହେଉଥାଏ । ଗୋରା ଦେଶର ଅବସ୍ଥାପନ୍ନ ଓ ଭଦ୍ର ପରିବାରର ଲୋକେ ସ୍ନାନ ବିଷୟରେ ଖୁବ୍ ଯତ୍ନବାନ୍ ଓ ସାବଧାନ ।

ଜଳାଶୟ ବା ନଦୀରେ ସ୍ନାନ କରିବାକୁ ହେଲେ ଘାଟରେ ବସି ପ୍ରଥମେ ତଳପେଟ ଓ ମୁଣ୍ଡରେ ଗାମୁଛା ଦ୍ୱାରା ଜଳ ଦେବ । ତାହା ଉତ୍ତାରୁ ଜଳକୁ ଓହ୍ଲାଇବ । କୂପ ଜଳରେ ସ୍ନାନ କାଳରେ ମଧ୍ୟ ଏହା କରିବା ଉଚିତ । ତଳପେଟ ଓ ମୁଣ୍ଡ ଏହି ଦୁଇଟି ସ୍ଥାନରେ ଶୀତଳ ଜଳ ପ୍ରଚୁର ପରିମାଣରେ ଦେବା ଦ୍ୱାରା ମସ୍ତିଷ୍କ ଶୀତଳ ରହେ ଓ ଶରୀରରେ ସ୍ଫୂର୍ତ୍ତି ଅନୁଭୂତ ହୁଏ । ତଳପେଟ ଅଧିକାଂଶ ରୋଗର ଉତ୍ପତ୍ତିସ୍ଥାନ । ସେଠାରେ ମଳ, ବିଷାକ୍ତ ବାୟୁ ବା ଦୂଷିତ ପଦାର୍ଥ ଜମା ହେଲେ ରୋଗ ଜାତ ହୁଏ । ଅତଏବ ଏହି ମୂଳ ସ୍ଥାନଟିକୁ ଦୁରସ୍ତ ରଖିଥିଲେ ରୋଗ ହେବାର ସମ୍ଭାବନା କମ୍ । ଅସାବଧାନତା ଓ ଅନବଧାନତା ଯୋଗୁଁ ମନୁଷ୍ୟର ପଦ ପଦରେ ଭ୍ରମ ପ୍ରମାଦ ଘଟୁଛି । ସେଥିସକାଶେ ତଳପେଟର ଯନ୍ତ୍ରଗୁଡ଼ିକ ପ୍ରାୟ ଉତ୍କ୍ଷିପ୍ତ ଓ ବିଶୃଙ୍ଖଳ ହୋଇ ପଡ଼ୁଛନ୍ତି । ନିତ୍ୟ ନିୟମିତ ରୂପେ ଏ ସ୍ଥାନଟିକୁ ଶାନ୍ତ କରାଯିବା କେତେ ଦରକାରୀ ତାହା ପ୍ରତ୍ୟେକେ ବୁଝିପାରିବେ ।

ପ୍ରାକୃତିକ ଚିକିତ୍ସା ବା ଜଳଚିକିତ୍ସା ବୋଲି ଏବେ ଏକ ଚିକିତ୍ସାପ୍ରଣାଳୀର ବହୁଳ ପ୍ରବର୍ତ୍ତନ ହେଲାଣି । ସେ ଚିକିତ୍ସାର ପ୍ରଧାନ ପ୍ରୟୋଗ—ସ୍ନାନ । ସେ ଅନୁସାରେ ସାଧାରଣ ସ୍ନାନର ସଂକ୍ଷିପ୍ତ ନିୟମ ଏଠାରେ ଦିଆଗଲା ।

ଗୋଟିଏ ବଡ଼ ଟବ୍ ବା ମାଡ଼ିଆରେ ଭଲ ଜଳ ପୂର୍ଣ୍ଣ କରି ରଖିଥିବ । ପ୍ରଥମେ ସେହି ଟବ୍‌ରେ ଅଣ୍ଟା ବୁଡ଼ାଇ ବସିବ । ବସିବା ସମୟରେ ଦେଖିବ, ଯେପରି ନାଭି ଉପରକୁ ଜଳ ନ ଉଠେ । ପାଦ ଦୁଇଟି ଟବର ବାହାରେ ଥିବ । ଖଣ୍ଡେ ଗାମୁଛା ଦ୍ୱାରା ଡାହାଣରୁ ବାଆଁକୁ ଓ ଉପରୁ ତଳକୁ ନରମ ଭାବରେ ଧୀରେ ଧୀରେ ତଳପେଟକୁ ଘଷିବ । ଏହିପରି ୧୫।୨୦ ମିନିଟ୍ କଲାପରେ ପ୍ରଥମେ ହାତ, ତତ୍ପରେ ଯଥାକ୍ରମେ ଛାତି, ପେଟ, ପିଠି, ଗୋଡ଼ରେ ଜଳ ଦେବ । ଭଲ କରି ଘଷି ମାଜି ହୋଇ ଗାମୁଛା ବା ପୋଛିପାଛି ହୋଇ ଶୁଖିଲା ଲୁଗା ପିନ୍ଧିବ ।

ଏଠାରେ କହି ରଖିବା ଉଚିତ ଯେ, ଯେଉଁପରି ରୀତିରେ ସ୍ନାନ କରି ପଛକେ ଗାମୁଛା ବା ତଉଲିଆ ଦ୍ୱାରା ସର୍ବାଙ୍ଗ ବିଶେଷତଃ ଅଙ୍ଗର ସନ୍ଧିସ୍ଥାନମାନ ଭଲ କରି ରଗଡ଼ି ହେବ । ଘଷା ରଗଡ଼ା ବିନା ସ୍ନାନ କିଛି ନୁହେ ।

ଆଉ ଗୋଟିଏ ପ୍ରଧାନ କଥା, ଗାମୁଛାକୁ ଆମ ଦେଶରେ ବହୁତ ଲୋକ ଠିକ୍ ରଖନ୍ତି ନାହିଁ । ମନେ କରନ୍ତି, ଗାମୁଛାଟା

ଗୋଟାଏ ଏପରି ପଦାର୍ଥ ଯାହା କେବେ ମାରି ହୁଏ ନାହିଁ ଓ ଗାମୁଛା ଯେପରି କ ମଇଳା ରହିବାର ଆଧାର; ପୁଣି ସବୁ ମଇଳା ସେଠି ଜୁଣ୍ଡ ହେଲା ମାତ୍ରକେ ତାହା ବଟୁଷ ହୋଇଯାଏ । ଗାମୁଛାରେ ପାଣିକଣ, ଝାଳକଣ, ବାଲିକଣ ପ୍ରଭୃତି ଦେଲେ ତାହା ପରା ଆହୁରି ଟଳ ଟଳ ହୋଇଯାଏ । ସେହି ଗାମୁଛା ପିନ୍ଧି ବାଡ଼ିଆଡ଼େ ବସି ଆସିବ, ସବୁ କାମ କରୁଥିବ । ପୁଣି ସେହି ଗାମୁଛା କାନ୍ଧରେ ପକେଇଲେ ସେଥିରେ ଗୋଡ଼, ହାତ, ମୁହଁ ପୋଛି ହେବ । ନାକଠାରୁ ଆଣ୍ଠିଯାକେ କିଛି ବାରଣ ରହିବ ନାହିଁ । କାରଣ, ସେ ଯେ ଗାମୁଛା ! ସର୍ବଯୋଗ୍ୟ ଦ୍ରବ୍ୟାକର !

ଯେଉଁମାନେ ସଉକରେ ଗାମୁଛା ପରିନ୍ତି ତାଙ୍କ କଥା ଗୁଡ଼ । ତାହା କେବଳ ଦେଖାସୁନ୍ଦର, କାନ୍ଧରେ ପକା । ପ୍ରକୃତ ଟା-ମୁଛା କାମ ତହିଁରେ ଚଳେ ନାହିଁ । କପା ସୂତାରେ ଘଷି ପୋଛି ହେବାର କଥାର ଗାମୁଛା ବା ତଉଲିଆ କିଣିବାକୁ ହେବ । ଗାମୁଛା ଅତି ଚିକ୍କଣ ବା ଅତି ଜାଲି ଜାଲି ବୁଣା ଭଲ ନୁହେ । ପ୍ରତିଦିନ ଗାମୁଛା ବା ତଉଲିଆକୁ ସାବୁନ ବା ସୋଡ଼ା ଦ୍ୱାରା କାଚନେବା ଉଚିତ । କାହାର କାହାର ଧାରଣା ଯେ ଗାମୁଛା ଧୋବାଘରେ ପଡ଼େ ନାହିଁ ବା କଷ୍ଟ ହୁଏ ନାହିଁ । ସେ ଧାରଣା ଭୁଲ ।

## ତୈଳମର୍ଦ୍ଦନ ଓ ଅନ୍ୟାନ୍ୟ ଅଙ୍ଗପ୍ରଲେପନ ଓ ମାର୍ଜନସାମଗ୍ରୀ

ସ୍ନାନ ପୂର୍ବରୁ ତେଲ ମାଖିବା ପ୍ରଥା ଆମ ଦେଶରେ ଖୁବ୍ ପ୍ରଚଳିତ । ତେଲ ଲଗାଇ ସ୍ନାନ କଲେ ଅନେକଙ୍କର ବିଶ୍ୱାସ, ପାଣି ଧରେ ନାହିଁ ଓ ଗାତ୍ର ଚର୍ମ ଚିକ୍କଣ ରହେ । ହାତ ଚଳରେ ପକାଏ ତେଲ ନେଇ ଦେହ ମୁଣ୍ଡରେ ଆଙ୍ଗୁଳି ବୁଲାଇ ଆଣିଲେ ତେଲ ଲଗାଇବାର କୌଣସି ଉପକାର ନାହିଁ । ଆଉ ତେଲ ଦ୍ୱାରା ଚର୍ମ ଚିକ୍କଣ ହେବା କଥା ଗୋଟାଏ ଅଭ୍ୟାସଗତ ଭୁଲ ଧାରଣା । ଜୀବନରେ କେବେ ତେଲ ଲଗାନ୍ତି ନାହିଁ ଏପରି ଅନେକ ଲୋକ ଅଛନ୍ତି— ମାତ୍ର କାହିଁ ସେମାନଙ୍କ ଚମଡ଼ା ଖଉରିଆ ଦେଖାଯାଏ ନାହିଁ କିମ୍ବା ସେମାନେ ବେଶୀ ଥଣ୍ଡିରେ ପଡ଼ନ୍ତି ନାହିଁ । ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ କଲେ ବା ଜଳ ଶକଶ ଅନୁଯାୟୀ ସ୍ନାନ କଲେ ତେଲର କୌଣସି ଆବଶ୍ୟକତା ନାହିଁ । ଚର୍ମକୁ ସ୍ନେହପଦାର୍ଥ ଯୋଗାଉଛି ଭିତରୁ; ବାହାରେ ଟିକିଏ ତେଲ କୌଣସି କାମର ନୁହେଁ— ବରଂ ତେଲ ଚର୍ମର ଛିଦ୍ର ମଧ୍ୟରେ ମଇଳା ଜମାଏ ଓ ଚର୍ମାଭ୍ୟନ୍ତରକୁ ଜଳ ପ୍ରବେଶରେ ବାଧା ଘଟାଏ । ତେବେ ତେଲ

ଲଗାଇବାରେ ଯେ ଆଦୌ ଉପକାର ନାହିଁ, ଏହା କୁହା ଯାଉନାହିଁ । ଥଣ୍ଡା ତେଲ ମସ୍ତକରେ ଧୀରେ ଧୀରେ ମାଲିସ କଲେ ସଦ୍ୟ ଫଳ ଜଣାଯାଏ । ଆଉ ଯଦି ତେଲ ମାଖିବ ତ ସୁପଟୁ ବାଳକ ବା ମର୍ଦ୍ଦନକାରୀ ଦ୍ୱାରା ଗିନାଏ ଖଣ୍ଡେ ନରୋଳା ଯୋଗକ ମାଲପା ମାଲିସ କରାଇବ । ତେବେ ଯାଇ ତା'ର ଉପକାର ମିଳିବ । ଠିକ୍ ବିଧି ଅନୁସାରେ ତୈଳମର୍ଦ୍ଦନ ଦ୍ୱାରା କିଞ୍ଚିତ ତେଲ ଚର୍ମ ମଧ୍ୟରେ ପ୍ରବେଶ କରି ତାକୁ ସ୍ନିଗ୍ଧ ଓ ସବଳ କରାଏ । ପରନ୍ତୁ ମାଂସପେଶୀ ଓ ଶିରା ସ୍ନାୟୁ ପ୍ରଭୃତିରେ ରକ୍ତ ସଞ୍ଚାଳିତ ହୋଇ ସାରା ଶରୀରରେ ସ୍ୱସ୍ତି ଅନୁଭୂତ ହୁଏ । ବାଟଚଲା ବା କଠିନ ପରିଶ୍ରମ ପରେ ଏପରି ମର୍ଦ୍ଦନ ବଡ଼ ଆରାମଦାୟକ । ଚକିଆଳଗା ବାବୁ ସାଆନ୍ତମାନଙ୍କ ପକ୍ଷରେ ଏହା ଗୋଟିଏ ବିଳାସ ହେଲେ ମଧ୍ୟ ଉପକାରୀ । ରୋଗୀଙ୍କ ପକ୍ଷରେ ମୃଦୁ ସଂବାହନ ପଥ୍ୟ । ମାତ୍ର ଏହା ବ୍ୟୟ ଓ ସମୟସାପେକ୍ଷ । ଅନାଡ଼ି ବ୍ୟକ୍ତି ଦ୍ୱାରା କେବେହେଁ ମର୍ଦ୍ଦନ କରାଇବ ନାହିଁ । ତଦ୍ୱାରା ଓଲଟା ଫଳ ହେବାର ସମ୍ଭାବନା ।

## ହଳଦୀ

ଆଗେ ଆମ ଦେଶ ଲୋକେ ହଳଦୀ ଲଗାଉଥିଲେ । ସ୍ତ୍ରୀମାନେ ଓ ବିଶେଷତଃ ଝିଅ ଭୁଆସୁଣୀଙ୍କ ହଳଦୀ ଲଗା ଗୋଟିଏ ନିତ୍ୟକର୍ମ ଥିଲା । ଏବକାଳର ସମାଜରେ ତାହା ଗୋଟାଏ ଅସଭ୍ୟ ପ୍ରଥା ବୋଲି ଅବହେଳିତ ଓ ଘୃଣିତ । ଭଦ୍ରସମାଜରେ ଦେଖିଲେ ଲୋକେ ହସିବେ ଓ କଟେରି ଦରବାର ଓ ହାଟ ବଜାରକୁ ଗଲେ ଲୁଗାପଟା ନାସନା ହୋଇଯିବ ବୋଲି ହଳଦୀଲଗା ପ୍ରାୟ ଉଠିଯିବାକୁ ବସିଲାଣି । ସାହେବି ସଭ୍ୟତା ପ୍ରଥମେ ଅନୁକରଣପ୍ରିୟ ବଙ୍ଗଦେଶବାସୀଙ୍କ ମଧ୍ୟରେ ପ୍ରବେଶ କରି ଦାସମନୋବୃତ୍ତିସମ୍ପନ୍ନ ଆମ ସମାଜରେ ପ୍ରସାର ଲଭ କରିଛି । ତେବେ ମଫସଲର କୌଣସି କୌଣସି ସ୍ଥାନରୁ ଓ ଅନୁନ୍ନତ ଜାତିଙ୍କ ମଧ୍ୟରୁ ଏହା ଏକାବେଳକେ ଉଠି ଯାଇନାହିଁ । ହଳଦୀର ବିଷନାଶକ ଗୁଣ (disinfectant) ପ୍ରସିଦ୍ଧ । ନିତ୍ୟ ହେଉ ବା ସାମୟିକ ହେଉ, ନିୟମିତ ଭାବରେ ହଳଦୀ ଲଗାଇବା ଉକ୍ ଶରୀର ପକ୍ଷରେ ବହୁତ ଉପକାରୀ ।

## ସାବୁନ

ଆଧୁନିକ ସଭ୍ୟତା ଆମକୁ ଯେଉଁସବୁ ନୂଆ ବିଳାସ ସାମଗ୍ରୀ ଯୋଗାଇଛି ତହିଁ ମଧ୍ୟରେ ସାବୁନ୍ ଗୋଟିଏ ପ୍ରଧାନ । ସାଧାରଣତଃ ଦୁଇ ପ୍ରକାର ସାବୁନ ବ୍ୟବହୃତ ହୁଏ—ଲୁଗାଧୁଆ

ଓ ଦେହଲଗା । ଲୁଗାଧୁଆ ସାବୁନ୍ ଦେଶରୁ କଦଳୀ କ୍ଷାର, ରିଠାଫଳ ପ୍ରଭୃତିକୁ ଉଠାଇଦେଇ ନିଜର ଆଧିପତ୍ୟ ବିସ୍ତାର କରିଛି । ତଦ୍ଦ୍ୱାରା ଏ ଦେଶର ଗରିବ ଲୋକେ ଯେ ପଇସା ଦେଇ ଦୁର୍ବିଧା କିଣିଅଛନ୍ତି ଏହା ଅବଶ୍ୟ ମାନିବାକୁ ହେବ । ମାତ୍ର ଦେହଲଗା ସାବୁନ୍ ପାଇଁ ପଇସା ଖରଚ କରି କିଣା ହେଉଛି ଅଯୋଗ୍ୟ ଓ ଅନିଷ୍ଟ । ଦେହଲଗା ସାବୁନରେ କିଛି ପରିମାଣ ତୈଳ ବା ଗ୍ଲିସେରିନ ପ୍ରଭୃତି ଥାଏ ଏବଂ ଚନ୍ଦନ, ଗୋଲାପ ପ୍ରଭୃତିର ସୁଗନ୍ଧ ଦିଆ ହୋଇଥାଏ । ମାତ୍ର ସେ ସୁଗନ୍ଧ କ୍ଷଣସ୍ଥାୟୀ ଓ ତନ୍ମଧ୍ୟରେ କ୍ଷାର (alkaline)ର ଅଂଶ ଏତେ ବେଶୀ ଯେ ସେ ତୈଳଗ୍ରନ୍ଥିଗୁଡ଼ିକୁ କାଟିପକାଏ । ଫଳତଃ ଲଗାଇବା କାଳରେ ସୁଗନ୍ଧ ଓ ଫେଣ ଦ୍ୱାରା କିଞ୍ଚିତ୍ ଆମୋଦ ଲାଗିଲେ ସୁଦ୍ଧା ପରିଣାମରେ କୌଣସି ଉପକାର ନାହିଁ । ବରଂ ଉଗ୍ର କ୍ଷାରର ସଂଘର୍ଷଣରେ ମନୁଷ୍ୟର କୋମଳ ତ୍ୱକ୍‌ର ଅନିଷ୍ଟ ଘଟେ ।

## ମାଟି

ପଞ୍ଚଭୂତରେ ମନୁଷ୍ୟର ପିଣ୍ଡ ଗଢ଼ା । ଏହି ପଞ୍ଚଭୂତ ମଧ୍ୟରେ କ୍ଷିତି (ମାଟି) ଯେପରି ସର୍ବପ୍ରଥମ ସେହିପରି ସର୍ବପ୍ରଧାନ । ଜନନୀ ବସୁମତୀର ଶରୀର କ୍ଷିତିମୟ । ଯେ କୌଣସି ବିପଦ, ଅସ୍ୱସ୍ତି ବା ଅଭାବ ହେଲେ ମାତାର ମଧୁର ସ୍ନେହ ଓ କୋମଳ ସ୍ପର୍ଶ ଯେପରି ତାହା ଦୂରୀଭୂତ କରେ, ମୃତ୍ତିକାର ସେହିପରି ଶାନ୍ତି ସମତା ଆଣିବାର ଶକ୍ତି ଅଛି । ମାଟିର ବିଷହରଣ କ୍ଷମତା ଅସାଧାରଣ । ସମସ୍ତେ ଦେଖିଥିବେ, ପଦାରେ ଆଜି କେହି ମଳତ୍ୟାଗ କରିଛି, କାଲିକି ସବୁ ମାଟି ହୋଇଗଲାଣି; ଅର୍ଥାତ୍ ମାଟି ମଳର ଦୂଷିତ ଅଂଶ ନାଶ କରି ଉକ୍ତ ମଳକୁ ସ୍ୱଗତ କରିଦେଲାଣି । ବିଷ୍ଠାଠାରୁ ବଳି ଦୂଷିତ ପଦାର୍ଥ କିଛି ନାହିଁ; ତାକୁ ଯେ ଏତେ ଅଳ୍ପ ସମୟରେ ନିର୍ଦ୍ଦୋଷ କରିପାରେ, ତା'ର କ୍ଷମତା ବାସ୍ତବିକ ଅଦ୍ଭୁତ ନୁହେଁ କି ?

ଭୟଙ୍କର ଜ୍ୱର; ତଳ ପେଟରେ ମାଟି ଲେପିଦେଲେ ଉଣା ହୋଇଗଲା । ମୁଣ୍ଡ ଘୂରୁଛି; ମୁଣ୍ଡରେ ମାଟି ଦେଲେ ଆରାମ ହେଲା । ପେଟରେ ଘୋର ବେଦନା; ମାଟିଦ୍ୱାରା ଉପଶମ ହେଉଛି । ହାତ ଗୋଡ଼ ଆଘାତ ଲାଗି ଫୁଲିଛି ବା କଟିଯାଇଛି; ମାଟି ଦିଅ, ଛାଡ଼ିଯିବ । ଏହିପରି ଦେଖାଯାଇଛି, ମାଟି ଦ୍ୱାରା ରୋଗ ଆରାମ ହୁଏ । ମୋଟ ଉପରେ ଆମ୍ଭେମାନେ ପ୍ରକୃତିର ପ୍ରଧାନ ଅଙ୍ଗ ଜଳ, ମାଟି ଓ ବାୟୁକୁ ଯେତେ ଅନୁସରଣ କରିପାରିବୁଁ, ସେତିକି ପ୍ରାକୃତିକ ହୋଇ ଶାନ୍ତି ଓ ସୁଖକୁ ନିଜସ୍ୱ କରିପାରିବୁଁ । ବ୍ୟୟ ଦିଗରୁ ଦେଖିବାକୁ ଗଲେ ମଧ୍ୟ ଏହା କେଡ଼େ ସୁବିଧାଜନକ । ପ୍ରକୃତିର ଅବାରିତ, ଅଯାଚିତ, ଅଶ୍ରାନ୍ତ, ଅସରନ୍ତି ଭଣ୍ଡାର ସର୍ବଦା ଉନ୍ମୁକ୍ତ । ଏହା ଛାଡ଼ି ଆମେ କି କୃତ୍ରିମତାର ମୋହରେ ଭୁଲି ରହିଛୁଁ ! ଦୁର୍ଭାଗ୍ୟ, ଦୁର୍ଭାଗ୍ୟ !

ଅଙ୍ଗମାର୍ଜନା ସକାଶେ ମାଟି ବ୍ୟବହାର କରିବାଠାରୁ ସୁଖକର, ସ୍ୱାସ୍ଥ୍ୟକର ଓ ସୁବିଧାଜନକ ଆଉ କିଛି ନାହିଁ । ନଦୀର ଶୁଖିଲା ପଟୁ ବା ବିଲ ବନମାଟି ଆଣି ପାଣି ଗୋଳାଇ ଦେହରେ ଲଗାଇବ । ୧୫।୨୦ ମିନିଟ୍ ମଧ୍ୟରେ ତାହା ଶୁଖିଗଲେ ଭଲକରି ହାତଦ୍ୱାରା ଘଷି ଝାଡ଼ିଦେଇ ପୂର୍ବନିର୍ଦ୍ଦେଶମତେ ସ୍ନାନ କରିବ । ଦେଖିବ, ଏଥିରେ ଦେହର ଚର୍ମ କିପରି ଚିକ୍କଣ ଓ ଉଜ୍ଜ୍ୱଳ ରହିବ; ମୁଣ୍ଡର ବାଳ କିପରି କୋମଳ ଓ ମସୃଣ ହେବ । କାଛୁ, କୁଣ୍ଡିଆ, ଚମଦଲା, ବଇଞ୍ଚ, ଯାଦୁ ପ୍ରଭୃତି ଚର୍ମରୋଗ କେବେହେଁ ହେବ ନାହିଁ । ନିତ୍ୟ ଗଙ୍ଗାମୃତ୍ତିକା ଏହିପରି ବ୍ୟବହାର କରି ଦୁରାରୋଗ୍ୟ କୁଷ୍ଠରୋଗ ପର୍ଯ୍ୟନ୍ତ ଆରାମ ହେବାର ଶୁଣାଯାଇଛି ।

## କେଶ

ମନୁଷ୍ୟର ମସ୍ତକ ତରଳ ପଦାର୍ଥ ଓ ଶିରା ପ୍ରଶିରାରେ ଭରା । ଏହାକୁ ମସ୍ତିଷ୍କ କହନ୍ତି । ତାକୁ ନିରାପଦରେ ରଖିବା ନିମନ୍ତେ ପ୍ରକୃତିଦେବୀ ମସ୍ତିଷ୍କକୁ କଠିନ ହାଡ଼ ଦ୍ୱାରା ଆବୃତ କରିଅଛନ୍ତି ଓ ପୁଣି ଶୀତ ବା ଉତ୍ତାପରୁ ରକ୍ଷା କରିବା ନିମନ୍ତେ ତଦୁପରି କେଶଗୁଚ୍ଛ ଦେଇଅଛନ୍ତି । ସୁନ୍ଦର, ସୁସ୍ଥ ଓ ସୁରକ୍ଷିତ କେଶ ନରନାରୀର ସୌନ୍ଦର୍ଯ୍ୟ ବୃଦ୍ଧି କରେ ।

କେଶ ମୁଣ୍ଡରେ ଓ ମୁଖମଣ୍ଡଳରେ ଯଦି ଥାଏ ତେବେ ତାହା ପରିଷ୍କାର ପରିଚ୍ଛନ୍ନ ରଖିବାରେ ଯତ୍ନ କରିବ । ଏ ବିଷୟରେ ଅସାବଧାନ ହେଲେ ଉକୁଣି, ଚମ ଉକୁଣି ପ୍ରଭୃତି ହୋଇ ଅକାଳରେ ବାଳ ଖସିଯାଇ ମନୁଷ୍ୟକୁ କୁରୂପ କରିପକାଏ ।

ସ୍ନାନ କରି ସାରି କଙ୍ଗେଇ ବା ବ୍ରୁସ୍ ଦ୍ୱାରା କେଶ ପ୍ରସାଧନ କରିବ ଓ ରୁଚି ଅନୁଯାୟୀ ସୁବିନ୍ୟସ୍ତ କରିବ । ନିଜର କଙ୍ଗେଇ ଅନ୍ୟକୁ ଦେବ ନାହିଁ ବା ଅନ୍ୟର କଙ୍ଗେଇ କେବେ ବ୍ୟବହାର କରିବ ନାହିଁ । ତଦ୍ଦ୍ୱାରା ଅନ୍ୟର ଉକୁଣି ରୋଗବୀଜ ନିଜ କେଶରେ ପ୍ରବେଶ କରେ ବା ନିଜର ବିଷାକ୍ତ ବୀଜାଣୁ ଅପରର ଅନିଷ୍ଟ ସାଧନ କରିପାରେ ।

ମୁଣ୍ଡରେ ଅଭ୍ୟାସାନୁଯାୟୀ ସୋରିଷ ବା ନଡ଼ିଆ ମାଳପା ବ୍ୟବହାର ପ୍ରଶସ୍ତ । ବଜାରର ସୁବାସିତ ତୈଳ ବ୍ୟବହାର

ଅନେକଙ୍କର ଗୋଟାଏ ବାୟୁ ହୋଇଗଲାଣି । ଏଥିରେ ଗ୍ରାହକ-ମାନଙ୍କୁ ଯେ କେବଳ ୮।୧୦ ଗୁଣ ଅଧିକା ଖରଚ କରିବାକୁ ପଡ଼େ ସେତିକି ନୁହେଁ, ଅନେକ ସ୍ଥଳରେ ପଇସା ଖରଚ କରି କେଶ ଓ ମସ୍ତିଷ୍କର ରୋଗ ମଧ୍ୟ କିଣିବାକୁ ପଡ଼େ । ଅଧିକାଂଶ ବଜାର ତେଲ white oil ନାମକ ଅତି ନିକୃଷ୍ଟ ଖନିଜ ତୈଳରେ ପ୍ରସ୍ତୁତ; ପୁଣି ରଙ୍ଗ କରା ହୋଇଥାଏ ବିଦେଶୀ ଖନିଜ ମସଲା ଦ୍ୱାରା । ଶେଷରେ ଯେଉଁ ସୁଗନ୍ଧ ଦିଆ ହୋଇଥାଏ ତାହା ପ୍ରକୃତ କୁସୁମ-ଗନ୍ଧ ନୁହେଁ; ରାସାୟନିକ ପ୍ରଣାଳୀରେ ବିଦେଶ ପ୍ରସ୍ତୁତ ଅଟେ । ଏ ସମସ୍ତ ପଦାର୍ଥ କେଶ ଓ ତ୍ୱକ୍‌ର ଅନିଷ୍ଟକାରୀ, ଏପରିକି ମସ୍ତିଷ୍କର ମଧ୍ୟ ।

ଆଜି କୌଣସି କୌଣସି ସୌଖୀନ ଲୋକେ ସୁବାସିତ ତୈଳ ଓ ସାବୁନ ଛଡ଼ା ଆହୁରି କେତେକ କେଶପ୍ରସାଧନ ମାଲମସଲା ବ୍ୟବହାର କରୁଛନ୍ତି, ଯଥା--Shampoo, Wash, Coometic ପ୍ରଭୃତି । ଏଥିରେ ଅକାରଣ ପଇସା ଖର୍ଚ୍ଚ କରିବା କି ପ୍ରୟୋଜନ ତାହା ସେମାନେ ବେଶୀ ବୁଝନ୍ତି । ପାଠକସାଧାରଣଙ୍କୁ ଅନୁରୋଧ, ଏ ମୋହରେ ସେମାନେ ଯେପରି କେବେ ନ ପଡ଼ନ୍ତି ।

ଯୌଗିକ ନିୟମ ଅନୁସାରେ ପ୍ରତି ଥର ଭୋଜନ ଉତ୍ତାରୁ କଙ୍ଗେଇ ଦ୍ୱାରା ଥରେ ମୁଣ୍ଡ କୁଣ୍ଡାଇ ନେବା ଉଚିତ । ଏହା କଲେ ଖାଦ୍ୟର ଶୀଘ୍ର ପରିପାକ ହୁଏ ଓ ମନରେ ଶାନ୍ତି ଆସେ । ଏହା ସୌକ ସକାଶେ ନୁହେଁ, ସ୍ୱାସ୍ଥ୍ୟ ସକାଶେ । କାରଣ ରାତିରେ ମୁଣ୍ଡ କୁଣ୍ଡାଇ ଶୋଇଲେ ଆଉ କିଏ ଦେଖିବ କି ?

## ସେବା-ପୂଜା

ସ୍ନାନ ସାରି ଶୁଖିଲା, ପରିଷ୍କାର ଓ ପବିତ୍ର ଲୁଗା ପିନ୍ଧିବ । ତତ୍ପରେ ଯେ ଯାହାର ପ୍ରବୃତ୍ତି ଅନୁସାରେ କିଛିକାଳ ଦେବଅର୍ଚ୍ଚନା ବା ଦେବପୂଜା କରିବ । ନିଜର ଧର୍ମମତ ଓ ବିଶ୍ୱାସମତେ ଏହା ଅବଶ୍ୟ କରିବାକୁ ହେବ । ସ୍ନାନ ପରେ ନିଜର ଶରୀର ଓ ମନ ବଡ଼ ପବିତ୍ର ଲାଗେ । ସୁତରାଂ ଏହି ସମୟ ଈଶ୍ୱରାରାଧନା କରିବା ପକ୍ଷରେ ପ୍ରଶସ୍ତ । ସ୍ନାନର ଅବ୍ୟବହିତ ପରେ ଭୋଜନ ବା କୌଣସି କାର୍ଯ୍ୟ ବା ଦୁରୂହ ଚିନ୍ତା କରିବା ଅହିତକର । କେହି କହିପାରନ୍ତି ଯେ ଏହି ସ୍ୱାସ୍ଥ୍ୟବିଷୟକ ପୁସ୍ତକରେ ପୁଣି ଧର୍ମୋପଦେଶ କ'ଣ ? ସେ କଥା ସତ୍ୟ । ମନର ପବିତ୍ରତା ଓ ଚିତ୍ତଶାନ୍ତି ଉପରେ ଶରୀରର ସ୍ୱାସ୍ଥ୍ୟ ଅନେକ ନିର୍ଭର କରେ । ସେଥିସକାଶେ ଏଠାରେ ଏହା କହିବାକୁ ପଡ଼ୁଅଛି । ଏତଦ୍ୱାରା ଚିତ୍ତର ସ୍ଥିରତା ଆସେ ଓ କର୍ମ କରିବାର ପ୍ରବୃତ୍ତି ଓ ଉତ୍ସାହ ବଢ଼େ । ଯଦି କେହି ଈଶ୍ୱର ଧ୍ୟାନ ବା ଈଶ୍ୱର ଆରାଧନା କରିବାରେ ପରାଙ୍ମୁଖ ହୁଅନ୍ତି ତେବେ ସେ ସ୍ୱାସ୍ଥ୍ୟର ଅନୁରୋଧରେ କୌଣସି ଧର୍ମଗ୍ରନ୍ଥ, ଅନ୍ତତଃପକ୍ଷେ କୌଣସି ସଦ୍‌ଗ୍ରନ୍ଥ ପାଠ ବା ସତ୍ ଓ ମଙ୍ଗଳକର ଚିନ୍ତା କରିପାରନ୍ତି । ଏତିକି ମଧ୍ୟ ଯଥେଷ୍ଟ ।

ଏହା ମଧ୍ୟରେ ଆହୁରି ଗୋଟିଏ ବୈଜ୍ଞାନିକ ସତ୍ୟ ନିହିତ ଅଛି । ସ୍ନାନର ପରେ ପରେ ଖାଇବାର ଅଭିଳାଷ ଜାଗ୍ରତ ହୁଏ ଓ ମଧ୍ୟ ଅଧିକାଂଶ ଲୋକ ଏ ସମୟରେ କିଛି ହେଲେ ତୁଣ୍ଡରେ ଦିଅନ୍ତି । କାରଣ ସାଧାରଣ ଧାରଣା ଯେ ଗାଧୋଇସାରି ଦିଓଟି କିଛି ପାଟିରେ ନ ପକାଇଲେ ପିତ୍ତ ପଡ଼ିଯାଏ । ଏ କଥାଟି ଭ୍ରମ ମାତ୍ର । ବରଂ ଏହି ସମୟରେ ଶରୀରର ଉତ୍ତାପ ଊଣା ଥାଏ ଓ ଜଠରାଗ୍ନିର ତେଜ କମ୍ ଥାଏ । ଖାଦ୍ୟଦ୍ରବ୍ୟ ପଡ଼ିଲେ ତାହା ପରିପାକ ନହୋଇ ନ ପାରି ଦେହର ଅନିଷ୍ଟ ଘଟାଏ । ମାତ୍ର ଶୀତଳ ଜଳ ପାନ ଏ କାଳରେ ଉପକାରୀ । ଯଦି ଏଥିରେ ତୃପ୍ତି ନ ହୁଏ ତେବେ ଏକ ଗ୍ଲାସ ଟଟକା ସରବତ (ମିଶିରି ଓ କାଗଜିଲେମ୍ବୁ ପାଣି) ଖାଇଲେ ଚଳେ । ହିନ୍ଦୁଧର୍ମୋକ୍ତ ନିତ୍ୟାଚାର ମଧ୍ୟରେ ଏ ସମୟରେ ନିର୍ମାଲ୍ୟ ଓ ଜଳତୁଳସୀ ଓ ନାନା ଦେବଦେବୀଙ୍କର ପାଦୋଦକ ପାଇବାର ବ୍ୟବସ୍ଥା ଅଛି । ଏହା ସହିତ ସ୍ୱାସ୍ଥ୍ୟର କେତେଦୂର ସମ୍ପର୍କ ତାହା ବୁଝନ୍ତୁ । ମହାତ୍ମା ଆର୍ଯ୍ୟଋଷିମାନେ କେତେ ସୂକ୍ଷ୍ମ ତତ୍ତ୍ୱ ବୁଝି ଏପରି ସବୁ ମଙ୍ଗଳକର ଅନୁଶାସନ ଦେଇ ଯାଇଅଛନ୍ତି, ଆମେ ଯାହାକୁ ଆଜି କୁସଂସ୍କାର ବୋଲି ମଣି ଫୋପାଡ଼ି ଦେଉଛୁଁ । ଆମ ଅଧୋଗତିର ଲକ୍ଷଣ ଏହାଠାରୁ ବଳି ଆଉ କ'ଣ ହୋଇପାରେ ?

## ଆହାର

ମାନବସମାଜର ନିମ୍ନଲିଖିତ ଉପାଦାନ ପିତୃଅଂଶ-ଜାତ । ଯଥା:—କେଶ, ନଖ, ଅସ୍ଥି, ଦନ୍ତ, ଶିରା, ଧମନୀ, ସ୍ନାୟୁ ଓ ଶୁକ୍ର । ଏହିଗୁଡ଼ିକ ମାତୃଅଂଶ-ଜାତ, ଯଥା :—ରକ୍ତ, ମାଂସ, ମେଦ, ମଜ୍ଜା, ଯକୃତ୍, ପ୍ଳୀହା, ଅନ୍ତ୍ର, ନାଭି, ହୃଦ୍‌ଯନ୍ତ୍ର ଓ ଗୁହ୍ୟ । ମାତ୍ର ଏମାନଙ୍କୁ କାର୍ଯ୍ୟକ୍ଷମ ରଖିବା ନିମନ୍ତେ ଏମାନଙ୍କର ବୃଦ୍ଧି ଓ ପରିପୁଷ୍ଟି ଆବଶ୍ୟକ । ତାହା ହୁଏ ଆହାର ଦ୍ୱାରା । ଯେପରି ଇଞ୍ଜିନଟିଏ ଚଳାଇବା ପାଇଁ କୋଇଲା ଓ ପାଣି ଦରକାର ସେହିପରି ଶରୀରର କଳ ଚଳାଇବା ପାଇଁ ଆହାର ଲୋଡ଼ା । ଉପଯୁକ୍ତ ଆହାରର ଅଭାବ ହେଲେ ଶରୀର କ୍ରମେ କ୍ଷୀଣ ଓ ଶେଷରେ ନଷ୍ଟ ହୋଇଯିବ । ଆମ୍ଭେମାନେ ଯେଉଁ ଖାଦ୍ୟଦ୍ରବ୍ୟ ଭୋଜନ କରୁଁ, ତାହା ପାକସ୍ଥଳୀରେ ରହି ଅମ୍ଳପିତ୍ତାଦି ରସ ଓ ଜଠରର ଅଗ୍ନି ଦ୍ୱାରା ପରିପାକ ବା ହଜମ

ହୁଏ । ସାରାଂଶଗୁଡ଼ିକ ପ୍ରଥମେ ରକ୍ତରେ ପରିଣତ ହୋଇ ପର୍ଯ୍ୟାୟକ୍ରମେ ଅସ୍ଥି, ମଜ୍ଜା, ବୀର୍ଯ୍ୟ ଆକାର ଧାରଣ କରେ । ଆଉ ଅସାର ଅଂଶ ମଳ, ମୂତ୍ର, ସ୍ୱେଦାଦିରୂପରେ ଶରୀରରୁ ବହିର୍ଗତ ହୋଇଯାଏ ।

ମନୁଷ୍ୟର କି ପ୍ରକାର ଦ୍ରବ୍ୟ ଆହାର କରିବା ଶ୍ରେୟସ୍କର ଓ କି କି ନିୟମାନୁଯାୟୀ ତାହା କରିବା ଉଚିତ ଏ ବିଷୟ ନେଇ ବହୁ ମନୀଷୀ ପରୀକ୍ଷା, ଗବେଷଣା ଓ ମସ୍ତିଷ୍କଚାଳନା ଦ୍ୱାରା ବହୁ ମତ ବ୍ୟକ୍ତ କରିଅଛନ୍ତି ଓ ଏପର୍ଯ୍ୟନ୍ତ ସୁଦ୍ଧା ତାହା ଚାଲିଅଛି ଏବଂ ନୂଆ ନୂଆ ତଥ୍ୟ ଦିନକୁଦିନ ଆବିଷ୍କୃତ ହେଉଅଛି । ଏ ସମ୍ବନ୍ଧରେ ପ୍ରତ୍ୟେକ ବ୍ୟକ୍ତିର କିଛି ହେଲେ ଜ୍ଞାନ ଥିବା ଦରକାର । ମାତ୍ର ମୋଟାମୋଟି କହିବାକୁ ଗଲେ ଟିକିଏ ଧୀର ସ୍ଥିର ଭାବରେ ବୁଦ୍ଧି ବିବେକ ଲଗାଇ ବିଚାର କରିପାରିଲେ ପ୍ରତ୍ୟେକ ବ୍ୟକ୍ତି ନିଜର ହିତକର ଆହାର କ'ଣ ତାହା ଜାଣିପାରିବେ । କେବଳ ପଥନିର୍ଦ୍ଦେଶ ସକାଶେ ଏଠାରେ କିଛି କହିବାର ପ୍ରୟୋଜନ ।

ପ୍ରଥମ କଥା, ଯାହା ଆହାର କରିବ ତାହା ଯେପରି ରୁଚିକର ବା ଭୋଜନକାଳରେ ସୁଖଦାୟକ ହେବ । ଆପାତମଧୁର ଆହାର୍ଯ୍ୟ ବାଛି ନେବା ବଡ଼ ସହଜ । ପୁଷ୍ଟିକର ଦ୍ରବ୍ୟ ବାଛିବା କିଞ୍ଚିତ୍ କଷ୍ଟକର ସତ୍ୟ, ମାତ୍ର ତାହା ମଧ୍ୟ ଜଣା ହୋଇପାରେ । କିନ୍ତୁ କେଉଁ ଆହାର୍ଯ୍ୟ କେଉଁ ସମୟରେ ଓ କି ଅବସ୍ଥାରେ ଶରୀର ପକ୍ଷରେ ହିତକର ତାହା ଜାଣିବା ଅତି ଦୁରୂହ ।

ମନୁଷ୍ୟ ଯଦି ପ୍ରକୃତିର ଜୀବ ହୋଇଥାଆନ୍ତା, ତେବେ ଏ ବିଷୟରେ ମଥା ବଥାଇବାର ଦରକାର ହୁଅନ୍ତା ନାହିଁ । ମାତ୍ର ମନୁଷ୍ୟ ନିଜକୁ ମାତୃଦ୍ରୋହୀ, ପ୍ରକୃତିବିରୋଧୀ କରାଇ ଆପଣାର ବିପଦ ଆପେ ଅର୍ଜ୍ଜନ କରୁଛି । ସେ ଯେତେ ସଭ୍ୟ ଓ କୃତ୍ରିମତାର ଦାସ ହୋଇ ପଡ଼ୁଛି, ସମସ୍ୟା ତା'ର ସେତିକି ଜଟିଳରୁ ଜଟିଳତର ହେଉଛି । ଗୋଟିଏ ବନ୍ୟ ପକ୍ଷୀ ବା ମୃଗର କଥା ଧରନ୍ତୁ । ସେ କ'ଣ ଖାଇବ, କିପରି ଭାବରେ ଖାଇବ, କେଉଁ ସମୟରେ ଖାଇବ ଇତ୍ୟାଦି କଥା କେହି ତାକୁ ଶିଖାଏ ନାହିଁ ବା ସେଥିପାଇଁ ସେ ଚିନ୍ତା ମଧ୍ୟ କରେ ନାହିଁ । ନିଜର ଜନ୍ମଗତ ସଂସ୍କାର ଅନୁସାରେ ସେ ଖାଇ ଯାଉଛି ଓ ତଦ୍ଦ୍ୱାରା ସେ ସୁସ୍ଥ, ନିରାମୟ ଓ ଦୀର୍ଘଜୀବୀ ହୋଇ ଆନନ୍ଦରେ ରହିଛି । ସେ ଯାହା ଖାଉଛି ତାହାହିଁ ତାହା ପକ୍ଷରେ ପ୍ରକୃଷ୍ଟ ହିତକର ଖାଦ୍ୟ । ଏକା ମନୁଷ୍ୟ ତା'ର ବୁଦ୍ଧି ଜୋରରେ ସଂସ୍କାରକୁ ଭୁଲିଯାଇ କୃତ୍ରିମତାର ଗୋଲକଧନ୍ଧାରେ ପଡ଼ି ଅଡ଼ୁଆରେ ଛନ୍ଦି ହୋଇ ମରୁଛି ।

ଯେଉଁ ଜଗଦୀଶ୍ୱର ଅକ୍ଷମ ଶିଶୁର ଜନ୍ମ ହେଲା ମାତ୍ରେ ଖାଇବା ଲଗି ମାତୃସ୍ତନ୍ୟରେ ଦୁଗ୍ଧ ସୃଷ୍ଟି କରିଛନ୍ତି, ସେ କ'ଣ ତାଙ୍କ ସୃଷ୍ଟ ପ୍ରାଣୀର ଆହାର୍ଯ୍ୟରେ ଊଣା କରିଛନ୍ତି ? ଯେଉଁ ପ୍ରାଣୀର ଜୀବନଧାରଣ ସକାଶେ ଯେଉଁ ଖାଦ୍ୟର ପ୍ରୟୋଜନ ତାହା ପ୍ରଚୁର ପରିମାଣରେ ପ୍ରୟୋଜନ ଅନୁସାରେ ପ୍ରସ୍ତୁତ ହୋଇ ରହିଛି ପୃଥିବୀ-ସାରା । ବନ୍ୟ ଅଜ୍ଞ ପଶୁପକ୍ଷୀର କିଛି ଅଭାବ ନାହିଁ । ଯେତେକ ଅଭାବ, ଯେତେକ ଅଭିଯୋଗ କେବଳ ମନୁଷ୍ୟର । ଫଳ, ମୂଳ, ଶାକ ସବ୍ଜି ଅଥବା ଜାନ୍ତବ ଖାଦ୍ୟ, କ'ଣ ନାହିଁ ? ଆମେ ଇଚ୍ଛାରେ ଅନ୍ଧ ହେଉଛୁଁ, ଅଭ୍ୟାସକୁ ବଦଳାଇ, ସ୍ୱାଭାବିକତାକୁ ଛାଡ଼ି ।

ଧରନ୍ତୁ ରାନ୍ଧିବା କଥା । ସଭ୍ୟ ମାନବ ଏକା ତା'ର ଖାଦ୍ୟ ରାନ୍ଧି ଖାଏ । ସେଥିପାଇଁ ହାଣ୍ଡି, ବାସନ, ନିଆଁ, ଚୂଲ୍ଲୀ, କାଠ, ପାଣି, ବାଟଣା, ପନିକି, ହତା, ଚିମୁଟା ଏହିପରି କେତେ କ'ଣ ଲୋଡ଼ା । ଏ ଜଞ୍ଜାଳ ସବୁ ମନୁଷ୍ୟ ଆଗେ ସୃଷ୍ଟି କରିଛି ତ ! ଯଦି ସେ କଞ୍ଚା ଫଳମୂଳ ଖାଉଥାଆନ୍ତା, ତେବେ ଏତେ ହଟହଟାରେ ପଡ଼ନ୍ତା କାହିଁକି ? ଏତେ ସମୟ, ରାନ୍ଧୁଣୀ, ପାକପ୍ରଣାଳୀ ପୁସ୍ତକର କି ପ୍ରୟୋଜନ ?

ଉପଯୁକ୍ତ ଆହାର୍ଯ୍ୟରେ ଯେଉଁ ଯେଉଁ ଉପାଦାନ ଥିବା ଦରକାର ପ୍ରାକୃତିକ ଖାଦ୍ୟରେ ଠିକ୍ ହିସାବ ମୁତାବକ ସବୁ ରହିଛି—ପ୍ରୋଟିନ୍, କାର୍ବୋ-ହାଇଡ୍ରେଟ୍, ନାଇଟ୍ରୋଜେନ, ନାନା ପ୍ରକାର ଶର୍କରା, ଲବଣ ଯାହା କହ । ସବୁ ରସ ମଧ୍ୟ ସମାନ ଭାବରେ ରହିଛି । ଖାଲି ଆମେ ପ୍ରକୃତି ଉପରେ ଆହୁରି ପାହାଚେ ଉଠି ରନ୍ଧନରୂପ ଲଟା ଲଗାଇଛୁଁ ଓ ତଦ୍ଦ୍ୱାରା ରାଜ୍ୟର ଅସୁବିଧା ସଙ୍ଗେ ସଙ୍ଗେ ରାଜ୍ୟର ବେମାରି ନିମନ୍ତ୍ରଣ କରି ଆଣୁଛୁଁ ।

## ଆମିଷ ଓ ନିରାମିଷ

ପ୍ରଥମେ ସ୍ଥୂଳ ପ୍ରଶ୍ନ ଉଠେ, ଆମିଷ ଖାଇବା ଭଲ କି ନିରାମିଷ ଖାଇବା ଭଲ । ଏ କଥାର ସ୍ଥୂଳ ଉତ୍ତର ଦିଆଯାଇପାରେ, "ଯାହା-ଠେଇଁ ଯାହା ଚଳେ" । ବିସ୍ତାର କରିବାକୁ ଗଲେ ପୋଥି ବଢ଼ିବ, ମାତ୍ର କିଛି ନିଷ୍ପତ୍ତି ହୋଇ ପାରିବ ନାହିଁ । କାରଣ ଏ ସମ୍ବନ୍ଧରେ ନାନା ମୁନିର ନାନା ମତ ।

ମୋଟାମୋଟି କହିଲେ ଆମ ଗ୍ରୀଷ୍ମପ୍ରଧାନ ଦେଶ ପକ୍ଷରେ ଆମିଷାହାର ଅହିତକର । ତାହା ଶରୀର ମଧ୍ୟରେ ଅକାରଣ ଉଗ୍ରତା ଓ ଉତ୍ତାପ ଆଣେ । ପରୀକ୍ଷା ଦ୍ୱାରା ଦେଖାଯାଇଛି ଯେ

ନିରାମିଷାଶୀ ପଶୁପକ୍ଷୀ ଆମିଷାଶୀ ପଶୁପକ୍ଷୀଙ୍କଠାରୁ ଅଧିକ ଘର୍ମଜୀବୀ, ଅଧିକ ବଳଶାଳୀ ହେଉନୁ ବା ନ ହେଉନୁ ଅଧିକ କଷ୍ଟସହିଷ୍ଣୁ । ଆଉମଧ୍ୟ ଶିକାରୀ ଜୀବମାନଙ୍କର ଶିକାର କରିବା ସକାଶେ ନଖ, ଦାନ୍ତ ପ୍ରଭୃତି ପ୍ରାକୃତିକ ଶସ୍ତ୍ର ଥାଏ; ମାତ୍ର ମନୁଷ୍ୟର ନଖ ଦନ୍ତ ଶିକାରୋପଯୋଗୀ ନୁହେ । ଏଥିରୁ ଅନୁମାନ ହୁଏ, ମନୁଷ୍ୟକୁ ଆମିଷଭୋଜୀ କରିବା ଈଶ୍ୱରଙ୍କର ଅଭିପ୍ରେତ ନୁହେ । ମନୁଷ୍ୟ କେବଳ ଆପଣା ଜ୍ଞାନ ବୁଦ୍ଧି ବଳରେ ଆମିଷାଶୀ ହୋଇପଡ଼ିଛି, ଯାହାକି ତା' ପକ୍ଷରେ ଅସ୍ୱାଭାବିକ ।

କେହି କେହି କହନ୍ତି, ମନୁଷ୍ୟର ସୂକ୍ଷ୍ମାଗ୍ର ଦନ୍ତ ଅଛି, ଯାହା ଶିକାରୀ ପଶୁଙ୍କର ଥାଏ ଓ ନିରାମିଷଭୋଜୀ ପଶୁଙ୍କର ନ ଥାଏ । ସେହି ହେତୁ ମନୁଷ୍ୟର ଆମିଷଭୋଜୀ ହେବା ସ୍ୱାଭାବିକ । ଆମ ଦେଶରେ ବୈଦିକ ଯୁଗରୁ ମଧ୍ୟ ଆମିଷାହାର ଚଳୁଛି । ଋଷିମାନଙ୍କର ଯଜ୍ଞାଦିରେ ପଶୁବଧ ହେଉଥିଲା । ରାଜାମାନେ ନିୟମିତ ଭାବେ ଶିକାର କରି ମାଂସ ଭକ୍ଷଣ କରୁଥିଲେ । ଏତିକି ତଫାତ୍ ହୋଇଛି ଯେ, ସେ କାଳରେ ଯଜ୍ଞ ବା ଶିକାର ମାଂସହିଁ କେବଳ ବ୍ୟବହୃତ ହେଉଥିଲା; ଏବେ ଘରେ ଘରେ ଜୀବାଇ । ବୋଧହୁଏ ପୂର୍ବେ ଏପରି କେତେଗୁଡ଼ିଏ ନିୟମ ଓ ବାଧା ଥିବାରୁ ମାଂସ ବ୍ୟବହାର ହେଉଥିଲା ଖୁବ୍ କମ୍ । ଏବେ କଂସାଇ, ହୋଟେଲ ପ୍ରଭୃତି ପ୍ରସାଦରୁ ସେଉଟାର ବଡ଼ ସୁବିଧା ହୋଇଛି ।

ସବୁ ଧର୍ମରେ ସବୁ ଶାସ୍ତ୍ରରେ ଜୀବହତ୍ୟା ନିଷେଧ ଅଛି । ମାତ୍ର ଜୀବହତ୍ୟା ନ କରୁଛି କିଏ ? ପରମ ବୈଷ୍ଣବ ଯେ, ସେ ମଧ୍ୟ ପ୍ରତି ନିଶ୍ୱାସରେ ପ୍ରତି ପଦକ୍ଷେପରେ କୋଟି କୋଟି ଜୀବହତ୍ୟା କରୁଛି । ଢୋକେ ପାଣି ପିଇଲେ ତହିଁରେ ଲକ୍ଷ ଲକ୍ଷ କୀଟାଣୁ ନଷ୍ଟ ହେଉଛନ୍ତି । ଛେପ ପକାଇଲେ, ମଳତ୍ୟାଗ କଲେ, ଦେହ ଘଷି ହେଲେ କେତେ କ୍ଷୁଦ୍ର ଜୀବ ମରିଯାଉଛନ୍ତି । ତେବେ ଏହା ଜ୍ଞାନକୃତ ନା ଅଜ୍ଞାନକୃତ ? ବିଜ୍ଞାନ ପ୍ରମାଣ କଲାଣି, ବାୟୁମଣ୍ଡଳ ଅସଂଖ୍ୟ ଜୀବାଣୁରେ ପୂର୍ଣ୍ଣ । ବିନ୍ଦୁଏ ଜଳରେ ଅସୁମାରି ଜୀବ ବର୍ତ୍ତମାନ୍ । ଏହା ଜାଣି ଶୁଣି ଆମେ ତ ସବୁ କରୁଛୁ । ଅଜ୍ଞାନକୃତ କିପରି ହେଲା ? ପୁଣି ବିଜ୍ଞାନ ପ୍ରମାଣ କରୁଛି ଯେ ପ୍ରତି ବୃକ୍ଷ, ଲତା, ତୃଣ, ଗୁଳ୍ମରେ ଜୀବନ ରହିଛି । ପ୍ରତି ଶସ୍ୟବୀଜରେ ପ୍ରାଣ ଅଛି । ଖାଲି ଜୀବନ ନୁହେ, ଚେତନା ମଧ୍ୟ ରହିଛି । ସେମାନେ ସୁଖ ଦୁଃଖ ଜାଣି ପାରନ୍ତି, ଶୀତ ଉଷ୍ମ ଅନୁଭବ କରନ୍ତି । ତେବେ ଯେଉଁ ନିରାମିଷଭୋଜୀ ଭାତ, ଡାଲି, ଶାକ ଖାଏ ସେ କେତେ ଜୀବ ହତ୍ୟା ନ କରୁଛି ? ଛେଳି, ମେଣ୍ଢା ବା ମୁରୁଗୀ କାଟିଲେ ସେ ଯେପରି କାତର ହୋଇ ଚିତ୍କାର କରେ, ଛଟପଟ ହୁଏ, ବୃକ୍ଷଲତାଶସ୍ୟାଦି ତାହା ହୁଅନ୍ତି ନାହିଁ । ମାତ୍ର ଯନ୍ତ୍ରଣା ତ ଭୋଗ କରନ୍ତି ସମାନ । ତେବେ ସେମାନେ ବେଶୀ ସହିଷ୍ଣୁ, ନୀରବରେ ସହିପାରନ୍ତି । ଯେଉଁ ପ୍ରାଣୀ ନୀରବରେ ସହିଲା ତାକୁ ହତ୍ୟା କରିବାରେ କ'ଣ ପାପ ନାହିଁ ? ଏଇଥିପାଇଁ ପରା ମନୁଷ୍ୟ ବେଶୀ ହତ୍ୟା କରେ ଛେଳି, ମେଣ୍ଢା, ମୁରୁଗୀ, ଗୋରୁ, ଘୁଷୁରି ? କାରଣ ଏହି ଜୀବଗୁଡ଼ିକ ବଡ଼ ନିରୀହ; ହତ୍ୟାକାରୀକୁ କୌଣସି ପ୍ରକାର ବାଧା ଦିଅନ୍ତି ନାହିଁ—ହତାଶ ଭାବରେ ବେକ ପତାଇ ଦିଅନ୍ତି । ସାମାନ୍ୟ ଗୋଟାଏ ବିରାଡ଼ି ବା କୁକୁର ଏପରିକି ମୂଷା ବା ଜିଆ ପିମ୍ପୁଡ଼ିକୁ ମାରିବାକୁ ଗଲେ ସେ କାମୁଡ଼ିବାକୁ ଆମ୍ପୁଡ଼ିବାକୁ ଚେଷ୍ଟା କରେ । ମନୁଷ୍ୟ ତେବେ ଅପାରଗ ନିରୀହକୁ ହତ୍ୟା କରେ । ତାହାରି ଉପରେ ଅତ୍ୟାଚାର କରେ । ପାପ ହିସାବରେ ଧରିବାକୁ ଗଲେ ନିରୀହ, ଉଦାସୀନ ଉପରେ ଅତ୍ୟାଚାରରେ ପାପ ଅଧିକ । କାରଣ ତା'ର ବାଧା ଦେବାର ଶକ୍ତି ନାହିଁ—ସେ ଅସହାୟ, ନିରୁପାୟ । ଏ ହିସାବରେ ତ ନିରାମିଷ-ଭୋଜୀ, ଯେ କି ଗଛ, ପତ୍ର, ଫଳ, ମୂଳ, ଶାକାଦି ଛେଦନ କରି ଚର୍ବଣ କରୁଛି, ସେ ଅଧିକ ପାପୀ ଓ ନିଷ୍ଠୁର ।

ଏହା ମଧ୍ୟରେ କଥା ଏତିକି ଯେ, ଅକାରଣରେ ବା କେବଳ ମଉଜ ନିମନ୍ତେ ହତ୍ୟା କରିବା ପାପ । ଅଥବା ହିଂସାପ୍ରଣୋଦିତ ହୋଇ ଅପରକୁ ହନନ କରିବା ଅପରାଧ । ଖାଦ୍ୟାର୍ଥେ ଜୀବହତ୍ୟା ପାପ ନ ହୋଇପାରେ । ଶରୀରରକ୍ଷା ଯଦି କେବଳ ଉଦ୍ଦେଶ୍ୟ ଥାଏ ତେବେ ଜୀବହତ୍ୟାରେ ଦୋଷ ନାହିଁ । ଜୀବହତ୍ୟା ନ କରି କୌଣସି ପ୍ରାଣୀ କ୍ଷଣକଲାଗି ଜୀବନ ଧାରଣ କରି ନ ପାରେ । ଯେ ମୂଳରୁ ଜୀବହତ୍ୟାରୁ କ୍ଷାନ୍ତ ହେବାକୁ ଚାହିଁବ ତାକୁ ଅନ୍ତତଃ ଆତ୍ମହତ୍ୟାରୂପ ଗୋଟିଏ ଜୀବହତ୍ୟା କରି ବାକୀ ଜୀବହତ୍ୟାରୁ ନିଷ୍କୃତି ଲଭ କରିବାକୁ ପଡ଼ିବ । ଆମ୍ଭେମାନେ ଯେ ସଚଳ ପ୍ରାଣୀଙ୍କ ହତ୍ୟାକୁ ପାପ ବୋଲି କହି ଡେଇଁଉଠୁଁ, ଦେହ ଥରାଉଁ, ସ୍ତୁତି ଦୁଲୁକାଉଁ, ମାତ୍ର ଅଚଳ ପ୍ରାଣୀଙ୍କୁ ନିତ୍ୟ ନିର୍ବିକାରରେ ହତ୍ୟା କରୁଁ, ତା'ର କାରଣ ଏହି ଯେ ସଚଳ ପ୍ରାଣୀଙ୍କର ରକ୍ତ, ଛଟପଟ, ବିକଳ ଚିତ୍କାର ପ୍ରଭୃତି ଦେଖି ଶୁଣି ଆମ ଭିତରେ ସହାନୁଭୂତିନାମକ ବୃତ୍ତିର ଉଦୟ ହୁଏ । ଆମେ ନିଜେ ସେହି ଜାତୀୟ ପରା !

## ସାତ୍ତ୍ୱିକ, ରାଜସିକ ଓ ତାମସିକ ଆହାର

ସବୁ ପଦାର୍ଥର ତିନି ଗୁଣ—ସତ୍ତ୍ୱ, ରଜ ଓ ତମ । ମନୁଷ୍ୟ ପ୍ରକୃତି ମଧ୍ୟ ଏହି ତିନି ପ୍ରକାର । ସମସ୍ତ ଖାଦ୍ୟଦ୍ରବ୍ୟକୁ ଏହି ତିନି ଗୁଣାନୁସାରେ ବିଭକ୍ତ କରାଯାଇପାରେ । ଯେଉଁ ବ୍ୟକ୍ତି ଯେଉଁ ଦ୍ରବ୍ୟ ଆହାର କରେ ତାହା ଦେହରେ ସେହି ଦ୍ରବ୍ୟର ଗୁଣର ବୃଦ୍ଧି

ହୋଇଥାଏ । ଅତଏବ ଏହି ଦିଗରୁ ଆହାର୍ଯ୍ୟ ଦ୍ରବ୍ୟ ପ୍ରତି ନଜର ଦେବା ଉଚିତ । ଯେଉଁମାନେ ସତ୍ତ୍ୱଗୁଣପ୍ରୟାସୀ ସେମାନଙ୍କ ପକ୍ଷେ ସାତ୍ତ୍ୱିକ ଆହାର ଉପଯୋଗୀ । ତଦ୍ୱାରା ଶାନ୍ତି, ସତ୍ୟ, କ୍ଷମା, ତିତିକ୍ଷା, ଧୈର୍ଯ୍ୟ, ପରୋପକାରିତା, ଈଶ୍ୱରପ୍ରୀତି ପ୍ରଭୃତି ସତ୍ତ୍ୱଗୁଣର ବୃଦ୍ଧି ହୁଏ । ରାଜସିକ ପଦାର୍ଥ ଆହାର ଦ୍ୱାରା ରଜୋଗୁଣର ବୃଦ୍ଧି ହୁଏ, ଯଥା—କାମ, କ୍ରୋଧ, ଲୋଭ, ଉନ୍ମାଦ, ଦମ୍ଭ ପ୍ରଭୃତି । ତାମସିକ ଦ୍ରବ୍ୟ ଆହାର ଦ୍ୱାରା ତମୋଗୁଣର ବିକାଶ ହୁଏ, ଯଥା :—ହିଂସା, ଦ୍ୱେଷ, ପରଶ୍ରୀକାତରତା, ମୋହ ପ୍ରଭୃତି ।

ଆୟୁଃ ସତ୍ତ୍ୱବଲାରୋଗ୍ୟ ସୁଖପ୍ରୀତିବିବର୍ଦ୍ଧନାଃ
ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ ॥
କଟ୍ୱମ୍ଳଲବଣାତ୍ୟୁଷ୍ଣ ତୀକ୍ଷ୍ଣରୂକ୍ଷବିଦାହିନଃ
ଆହାରା ରାଜସସ୍ୟେଷ୍ଟା ଦୁଃଖଶୋକାମୟପ୍ରଦାଃ ॥
ଗତରସଂ ଯାତଯାମଞ୍ଚ ପୂତିପର୍ଯ୍ୟୁଷିତଞ୍ଚ ଯତ୍
ଉଚ୍ଛିଷ୍ଟମପିଚାମେଧ୍ୟଂ ଭୋଜନଂ ତାମସପ୍ରିୟଂ ॥

( ଗୀତା )

ଯହିଁରେ ଆୟୁ, ସତ୍ତ୍ୱ, ବଳ, ସ୍ୱାସ୍ଥ୍ୟ, ସୁଖ ଓ ପ୍ରୀତିର ବୃଦ୍ଧି ହୁଏ ଏବଂ ଯାହା ସ୍ୱାଦୁ, ସ୍ନିଗ୍ଧ, ଉପାଦେୟ ଓ ତୃପ୍ତିକର ସେହିସବୁ ଖାଦ୍ୟ ସାତ୍ତ୍ୱିକମାନଙ୍କର ପ୍ରିୟ ।

ଅତି କଟୁ, ଅତି ଅମ୍ଳ, ଅତି ଲବଣ, ଅତି ଉଷ୍ଣ, ଅତି ତୀକ୍ଷ୍ଣ, ଅତି ରୁକ୍ଷ ଏବଂ ଅତି ବିଦାହୀ ଖାଦ୍ୟସମୂହ ରାଜସିକ ବ୍ୟକ୍ତିର ପ୍ରିୟ ଏବଂ ଦୁଃଖ, ଶୋକ, ରୋଗପ୍ରଦ ।

ରସହୀନ, ଥଣ୍ଡା, ପଚା, ବାସି, ଅପବିତ୍ର ଓ ଉଚ୍ଛିଷ୍ଟ ଭୋଜନ ତାମସିକମାନଙ୍କର ପ୍ରିୟ ।

ଏଥିରୁ ଜଣାଯାଏ, ଅରୁଆ ଚାଉଳ, ମୁଗଡାଲି, ଘିଅ, ଦୁଧ, ଛେନା, ଦହି, ଲହୁଣୀ, ମଧୁ, ତଟକା ଫଳମୂଳ ଶାକାଦି ସାତ୍ତ୍ୱିକ ଓ ମାଛ, ମାଂସ, ରାଗ, ମସଲା, ପିଆଜ, ରସୁଣ, ଖଟା ପ୍ରଭୃତି ରାଜସିକ ଆହାର୍ଯ୍ୟ ।

ଆମିଷ ଯଦିଓ ରାଜସିକ, ମାତ୍ର ତାମସିକ ପର୍ଯ୍ୟାୟରେ ପଡ଼ିବାକୁ ତାକୁ ବେଶି ସମୟ ଲାଗେ ନାହିଁ । ପ୍ରାଣୀର ଦେହରୁ ଜୀବନ ଗଲାମାତ୍ରକେ ତା'ର ମାଂସ ପର୍ଯ୍ୟୁଷିତ ହେବାକୁ ଆରମ୍ଭ କରେ ଓ ତହିଁରେ ନାନାପ୍ରକାର ଦୁଷ୍ଟ କୀଟାଣୁ ଜନ୍ମ ହୁଅନ୍ତି । ଏହାଛଡ଼ା ଯେଉଁ ଶସ୍ତ୍ରରେ ମାଂସ କଟାଯାଏ ତାହା ଦୋଷରୁ ମଧ୍ୟ ମାଂସର କ୍ଷତି ବିଷାକ୍ତ ହୋଇଯାଏ । ଏକାବେଳକେ ନିର୍ଦ୍ଦୋଷ ମାଂସ ମିଳିବା ଅସମ୍ଭବ । ତେବେ ଅଗ୍ନି ଉତ୍ତାପରେ କେତେକ ଦୋଷ ନଷ୍ଟ ହୋଇଯାଏ ମାତ୍ର । ଏ ଦିଗରୁ ଦେଖିବାକୁ ଗଲେ ମଧ୍ୟ ଆମିଷ ସ୍ପୃହଣୀୟ ଖାଦ୍ୟ ନୁହେ । କେବଳ ସ୍ୱାସ୍ଥ୍ୟରକ୍ଷା ସକାଶେ ଆମିଷ ଭୋଜନ କରାଯାଇପାରେ ସତ୍ୟ, ମାତ୍ର କେତେଜଣ ସେହି ଉଦ୍ଦେଶ୍ୟ ରଖି କାଳିଆ, କୋର୍ମା ବା ଚପ୍, କଟ୍‌ଲେଟ୍ ଖାଆନ୍ତି ? ଆମ ଦେଶରେ ଯେଉଁମାନେ ଆମିଷୀ ସେମାନେ ସମସ୍ତେ ପ୍ରାୟ ଜିହ୍ୱା-ଲାଳସାରେ ଆମିଷ ଖାଆନ୍ତି । ଅନେକ ଲୋକଙ୍କର ଦେଖାଯାଏ, ଆଇଁଷ ପାଣି ଟିକିଏ ନ ହେଲେ ଭାତ ରୁଚେ ନାହିଁ । ଏହା କ'ଣ ଜିହ୍ୱାଲାଳସା ନୁହେ ତ କ'ଣ ? ଯଦି କୌଣସି ଚିକିତ୍ସକ କାହାରିକୁ ନିର୍ଦ୍ଦିଷ୍ଟ ପ୍ରକାର ଆମିଷ ବ୍ୟବହାର କରିବାକୁ ଉପଦେଶ ଦିଏ, ସେ ସ୍ୱତନ୍ତ୍ର କଥା । ଆହାରର ପ୍ରଧାନ ଶତ୍ରୁ ଜିହ୍ୱାଲାଳସା । ସ୍ୱାସ୍ଥ୍ୟକୁ ଚାହିଁ ଆହାର କରିବାକୁ ହେଲେ ଆଗେ ଏହି ଜିହ୍ୱାଲାଳସା ଛାଡ଼ିବାକୁ ହେବ । ଜିହ୍ୱାଲାଳସା ସ୍ୱାସ୍ଥ୍ୟର ଯେତେ ଅନିଷ୍ଟ ଘଟାଏ ସେପରି ଆଉ କେହି ନାହିଁ । ଲାଳସା ଆଉ ରୁଚି ଏ ଦୁଇଟା ମଧ୍ୟରେ ତଫାତ୍ ଅଛି । ଅରୁଚିକର ଖାଦ୍ୟ ଖାଇବାକୁ କେହି କହୁନାହିଁ ଓ ତାହା ପୁଷ୍ଟି ମଧ୍ୟ ଆଣିପାରେ ନାହିଁ । ତାହା ବୋଲି ଲୋଭ ବା ଲାଳସା କରି କୌଣସି ଅହିତକର ଖାଦ୍ୟ ଖାଇବା ଅନିଷ୍ଟଜନକ । ଲାଳସା କରି ଖାଇଁ ଖାଇଁ ନିଜର ଶକ୍ତିକୁ ବଳି ବେଶୀଗୁଡ଼ାଏ ଉଦରସ୍ଥ ହୋଇଯାଏ ଯଦ୍ଦ୍ୱାରା ଭୋଜନ ପରେ ଅବସାଦ, ଆଳସ୍ୟ, ବିରକ୍ତି ଆସେ; ପୁଣି ପରିପାକ କ୍ରିୟାରେ ବାଧା ପଡ଼ି ଭିତରର ଯନ୍ତ୍ର ବିକଳ କରିଦିଏ ।

ଜଣେ ଜଣେ ବାହାଦୁରି କରି ବେଶୀ ଖାଆନ୍ତି । ଅନେକ ସ୍ଥଳରେ ଦେଖାଯାଏ ବା ଶୁଣାଯାଏ, ଅମୁକ ଲୋକ ଗୁଡ଼ିଏ ଚୂଡ଼ା, ମୁଠାଏ ଗୁଡ଼, ଆଟିକାଏ ଦହି, ବାଇଶାଏ କଦଳୀ ଖାଇଗଲା— ଅମୁକ ବସୁ ବସୁ ଗୋଟାଏ ପଣସ ଖାଇଗଲା, ଅମୁକ ଗୋଟାଏ ଛେଳିର ମାଂସ ଏକାକୀ ପାରି କଲା, ବା ଅମୁକ ଭାତ ଖାଇ ଉଠି ବାଜି ମାରି ସେରେ ରସଗୋଲା ଗିଳିଦେଲା ପ୍ରଭୃତି । ମାତ୍ର ଏଭଳି ବାହାଦୁରିରେ କୌଣସି ଫଳ ତ ନାହିଁ; ବରଂ ଏପରି କରିବା ଦ୍ୱାରା ସେ ବ୍ୟକ୍ତି ଗୋଟିଏ ଭବିଷ୍ୟତ ଦୁରାରୋଗ୍ୟ ରୋଗକୁ ଆପେ ଡାକି ଆଣେ । କିଛିଦିନ ପରେ ବା ଟିକିଏ ବୟସ ଢଳିଗଲେ ଯେତେବେଳେ ସେ ପେଟ ଧରି ମୁଣ୍ଡ ଧରି ପଡ଼ି ଅନୁତାପ କରେ, ସେତେବେଳେ ଆଉ ଶୁଣେ କିଏ ? ଯେଉଁମାନେ ସାବାସି ଦେଉଥିଲେ ସେମାନେ ଥାଆନ୍ତି କୁଆଡ଼େ ? ତାର ଜୀବନ ବିଷମୟ ହୋଇଯାଏ । ସେ ଧାଡ଼ି ହୋଇ ହୋଇ ଶେଷେ ଅକାଳମୃତ୍ୟୁର ଶାନ୍ତିମୟ କୋଡ଼ରେ ଆଶ୍ରୟ ନିଏ ।

## ଭିଟାମିନ୍

ପୂର୍ବେ ସୁଖାଦ୍ୟର ଉପାଦାନ ବୋଲି ଜଣାଥିଲି ପ୍ରୋଟିନ୍, ନାଇଟ୍ରୋଜେନ, କାର୍ବୋ-ହାଇଡ୍ରେଟ୍ ପ୍ରଭୃତି । ଏବେ ପୁଣି ବୈଜ୍ଞାନିକମାନେ ଖାଦ୍ୟରେ ଆଉ ଏକ ଶ୍ରେଣୀର ନୂତନ ଉପାଦାନର ସନ୍ଧାନ ପାଇଛନ୍ତି । ତା'ର ନାମ ଦିଆହୋଇଛି—ଭିଟାମିନ୍ ବା ଖାଦ୍ୟପ୍ରାଣ । ଏ ଖାଦ୍ୟପ୍ରାଣ ପୁଣି ନାନା ରକମର । ଅଲଗା ଅଲଗା କରି ବୁଝିବା ନିମନ୍ତେ ସେ ସବୁ ବିଭକ୍ତ କରାହୋଇଛି—କ, ଖ, ଗ, ଘ ପ୍ରଭୃତି ଶ୍ରେଣୀରେ । ଏହି ସମସ୍ତ ପ୍ରକାର ଭିଟାମିନ୍‌ଯୁକ୍ତ ଖାଦ୍ୟ ପରିମାଣ ଅନୁସାରେ ଖାଇବା ମନୁଷ୍ୟର ଦରକାର । କୌଣସି ଏକ ପ୍ରକାର ଭିଟାମିନ୍ ମନୁଷ୍ୟ ଦେହରେ ଊଣା ହେଲେ ମନୁଷ୍ୟ ଦୁର୍ବଳ ହୋଇପଡ଼େ ବା ତା'ର କୌଣସି ରୋଗ ଦେଖାଦିଏ । ଜଣାଯାଏ, ଆମର ଆର୍ଯ୍ୟଋଷିମାନେ ଯେଉଁସବୁ ପଦାର୍ଥକୁ ସାତ୍ତ୍ୱିକ ଆହାର୍ଯ୍ୟ ମଧ୍ୟରେ ଧରିଛନ୍ତି, ସେଥିରେ ଭିଟାମିନ୍ ପ୍ରଚୁର ପରିମାଣରେ ବିଦ୍ୟମାନ । ଟଟକା ଫଳମୂଳ ଓ ଶସ୍ୟାଦିରେ ଯଥେଷ୍ଟ ଭିଟାମିନ୍ ରହିଅଛି । ଖାଦ୍ୟ ଯେତେ କୃତ୍ରିମ ହେବ, ଭିଟାମିନ୍ ବା ତା'ର ଜୀବନୀଶକ୍ତି ସେତିକି ଊଣା ହୋଇଯିବ । ସ୍ୱାଭାବିକ ପ୍ରକୃତିଦତ୍ତ ପଦାର୍ଥମାନ ଉପଯୁକ୍ତ ଆହାର୍ଯ୍ୟ । ଦୁଧ, ମହନ, ଘୋଳ, ମହୁ, ଗଜାମୁଗ, ଗଜାବୁଟ, କମଳା, ଚାତାପି, ନାରଙ୍ଗି, କାଗଜିଲେମ୍ବୁ ଇତ୍ୟାଦିରେ ସବୁ ପ୍ରକାର ଭିଟାମିନ୍ ଅଧିକ ପରିମାଣରେ ଅଛି । ନିଆଁରେ ବସିଲେ ଖାଦ୍ୟର ଭିଟାମିନ୍ ଭାଗ ନଷ୍ଟ ହୋଇଯାଏ । ସିଙ୍ଗଡ଼ା, ମୋହନଭୋଗଠାରୁ ଗଜାମୁଗ ବା ବୁଟର ଜଳଖିଆ ବେଶୀ ଉପାଦେୟ, ବଳକାରକ, ପ୍ରାଣ-ଦାୟକ ।

ଅଗ୍ନିପକ୍ୱ ପଦାର୍ଥ ଯାହା ଖାଉ ପଛକେ, ପ୍ରତିଦିନ ଶକ୍ତି ଅନୁସାରେ କିଛି ହେଲେ କିଛି କଞ୍ଚା ପାଚିଲା ଫଳମୂଳ ଖାଇବା ଦରକାର । ବାଦାମ, ପେସ୍ତା, ଆପେଲ ପ୍ରଭୃତି ମୂଲ୍ୟବାନ ବା ଦୁଷ୍ପ୍ରାପ୍ୟ ଫଳ ନିତ୍ୟ ମିଳିବା ସହଜ ନ ହେଲେ କଦଳୀ, ଲେମ୍ବୁ, ନଡ଼ିଆ ଅଥବା ମଉସୁମ ବେଳରେ ଆମ୍ବ, ପଣସ, ସପୁରି, ପିଜୁଳି, ଆତ, କାକୁଡ଼ି ପ୍ରଭୃତି ସମସ୍ତିଙ୍କୁ ଅଳ୍ପାୟାସରେ ମିଳିପାରେ । ନିତାନ୍ତ ପକ୍ଷେ ମୁଠାଏ ରବିଶସ୍ୟ ଗଜା କରି ଗୁଡ଼ ଟିକିଏ ଲଗାଇ ଖାଇବା କାହାରିକୁ ଅସହଜ ନୁହେ । ତହିଁରେ ଖରଚ ଅଳ୍ପ ଏବଂ ଲାଭ ବେଶୀ । ଏହା କରିବାରେ କେବଳ ଟିକିଏ ମନ ଦରକାର, ଆଉ କିଛି ଅସୁବିଧା ନାହିଁ । ନଜର ରଖିଲେ ନିଜର ବାଡ଼ିଘରେ ସବୁ ଉତ୍ପନ୍ନ ହୋଇପାରିବ । ତାହା ନ କରି ବଜାର ହାଟର ଗୁଡ଼ିଆ ଦୋକାନ ଜଳଖିଆ କିଣି ଆମେ ପଇସା ଦେଇ ବିଷ କିଣୁଛୁଁ ମାତ୍ର । ବ୍ୟବସାୟ ହିସାବରେ ଦୋକାନ କରି ଗୁଡ଼ିଆ ବା ବରାଫୁଲରିବାଲା ଅତି ଶସ୍ତା ବିଷାକ୍ତ ଘିଅ ତେଲ ବ୍ୟବହାର କରନ୍ତି—ପରିଷ୍କାର ପରିଚ୍ଛନ୍ନତା ପ୍ରତି ଖାତିର ନ ଥାଏ । ଜନ୍ଦା, ମିମ୍ବୁଡ଼ି, ପୋକଜୋକ, ମାଛି, ଘର ଧୂଳି, ଦେହ ମଳି ପ୍ରଭୃତି ତହିଁରେ ନ ଥାଏ କ'ଣ ? କେବଳ ପାଟିସୁଆଦ ଓ ଆଖି ଦରଶରେ ରସି ଅଳସୁଆପଣିଆରେ ଆମେ ଏହିଥିରେ ବେଶୀ ମଜ୍ଜି ଯାଉଛୁଁ ; ବିଶେଷତଃ ସ୍କୁଲ କଲେଜର ପିଲା, କଚେରି-ଚଳିଆ ଓ ବଜାର-ପାଖିଆମାନେ । ଏହି ବାଇଗଣୀ, ପିଆଜି, ସିଙ୍ଗଡ଼ା, କଚୁରି, ରସଗୋଲା, ପାନତୁଆଠାରୁ ଚୂଡ଼ା, ମୁଢ଼ି, ଖଇ ଅନେକ ଗୁଣରେ ଶ୍ରେୟସ୍କର ଓ ବଳପ୍ରଦ ।

ଖାଇବାର ପ୍ରବୃତ୍ତି ନ ଥିଲେ ଖାଇ ବସିବା କଦାପି ଉଚିତ ନୁହେ । ଯେତେବେଳଯାଏ କ୍ଷୁଧାର ଉଦ୍ରେକ ହୋଇ ନ ଥିବ ସେଯାକେ ଅପେକ୍ଷା କରିବା ଉଚିତ । "ଭୋକ ଲାଗୁନାହିଁ"—ଏହାର ଅର୍ଥ, ପାକାଶୟ ଆହାର ଗ୍ରହୁଁନାହିଁ । ଏ ଅବସ୍ଥାରେ ଜବରଦସ୍ତି କରି ତାହା ଉପରେ ଚାପ ଦେବା କେଡ଼େ ଗର୍ହିତ, ବିଚାର କରନ୍ତୁ । ପେଟମଧ୍ୟରେ ଜୀର୍ଣ୍ଣ ହୋଇ ନ ଥିବା ପଦାର୍ଥ ରହିଥିବାକାଳରେ ପୁଣି ନୂଆ ପଦାର୍ଥ ପଡ଼ିଲେ ( ବୋଝ ଉପରେ ନଳିତା ବିଡ଼ା ଭଳି) ପାକାଶୟ କ୍ଲାନ୍ତ—କ୍ରମେ ଦୁର୍ବଳ ହୋଇଯାଏ । ଆମ୍ଭମାନଙ୍କର ଅଧିକାଂଶ ରୋଗ ଏହି ଅଜୀର୍ଣ୍ଣରୁ ଉତ୍ପନ୍ନ ହୁଏ । ଭୋକବେଳରେ ବିଷ ବି ଅମୃତ ହୋଇଯାଏ । ଭୋକକୁ ଠକାଇବା ନିମନ୍ତେ ମାନବମସ୍ତିଷ୍କ ନାନାପ୍ରକାର ମସଲାଦିଆ ରନ୍ଧନପ୍ରଣାଳୀ, ଆଚାର, ଚଟଣୀ, ପିଠା ପାକୁଆନ ଉଦ୍ଭାବନ କରିଛି । ମାତ୍ର ଭୋକ ନ ଥିବା ବେଳେ କୃତ୍ରିମ ଉପାୟରେ ଖାଇବାର ଲାଳସା ବଢ଼ାଇ ସ୍ୱଭାବ ଉପରେ ଚାଲବାଜି ମାରି ଆମେ କେବଳ ନିଜକୁ ଠକାଉଛୁଁ । କ୍ଷଣିକ ଆନନ୍ଦ ଉପଭୋଗ ଆଶାରେ ଅର୍ଜ୍ଜନ କରୁଛୁଁ ଜୀବନବ୍ୟାପୀ ଅସୁସ୍ଥତା, ଅବସାଦ, ରୋଗ, ଦୁଃଖ ଓ ପରିଣାମରେ ମୃତ୍ୟୁ । ଏତଦ୍ୱାରା କେବଳ ରସନେନ୍ଦ୍ରିୟର କ୍ଷଣିକ ସୁଖ ହୁଏ ସତ୍ୟ, ମାତ୍ର ସାରା ଶରୀରର (System) ତୃପ୍ତି ଓ ସ୍ୱାଚ୍ଛନ୍ଦ୍ୟ ଆସେନାହିଁ । ଏହି କ୍ଷଣିକ ଲୋଭ ହେତୁ ଜୀବନଟାକୁ ଚିର ହାହାମୟ କରିଦେବା ବିବେଚନାସଙ୍ଗତ କାର୍ଯ୍ୟ ନୁହେ ।

ଭୁକ୍ତ ଦ୍ରବ୍ୟ ଜୀର୍ଣ୍ଣ ହୁଏ ପାକସ୍ଥଳୀରେ । ମାତ୍ର ଅଧେ ହଜମ-କ୍ରିୟା ହୋଇଯିବାର କଥା ପାଟି ଭିତରେ ଥାଉଁ ଥାଉଁ । ସବୁ ଖାଦ୍ୟକୁ ପାଟି ମଧ୍ୟରେ ରଖି ଦାନ୍ତ ହାରା ଭଲ କରି ଚୋବାଇ ଚୋବାଇ, ଲାଳ ପରି କରି, ତାହା ପରେ ଢୋକିବା ଉଚିତ ।

ଅଧିକାଂଶ ଲୋକ ତରବର ହୋଇ ଖାଦ୍ୟକୁ ଯଥେଷ୍ଟ ଚର୍ବଣ କରିବା ଯେ କେତେ ଆବଶ୍ୟକ ସେଥିପ୍ରତି ଦୃଷ୍ଟି ନ ରଖି ଭୁଣ୍ଡରେ ଦେଲାମାତ୍ରେ ଗିଳିପକାନ୍ତି । ସମୟର ପରିମିତ ବ୍ୟବହାର ନ ଜାଣି ଆମେ ଅଳସେଇ, ଗଡ଼େଇ, ବୃଥାରେ କାଳକ୍ଷେପ କରି ବେଳ ହୋଇଗଲା ବୋଲି ତରବରରେ ପାଣି ଲୋଟାଏ ଢାଳି ହୋଇପଡ଼ି ତତ୍‌କ୍ଷଣାତ୍ ଭୋଜନରେ ବସିଯାଉଁ; ପୁଣି ନାକରେ କାନରେ ହାଁ ଗୁଣ୍ଡା ପୂରାଇ ଦେଇ କାମ ଶେଷ କରିଥାଉଁ । ଏହା କେତେ ଅନିଷ୍ଟକର ପୂର୍ବରୁ କୁହାଯାଇଅଛି । ଚବିଶ ଘଣ୍ଟା ମଧ୍ୟରୁ ଖାଇବା ପରି ଏଡ଼େ ପ୍ରୟୋଜନୀୟ କାମରେ ପାଞ୍ଚ ମିନିଟ୍‌ରୁ ଅଧିକ ଖରଚ କରି ପାରୁନାହିଁ । ତା'ର ଫଳ ଭୋଗିବାକୁ ପଡ଼େ ଆମକୁହିଁ । ଭଗବାନ ଦାନ୍ତ ଦେଇଛନ୍ତି ଚୋବାଇବା ଲାଗି, ଜିଭ ଦେଇଛନ୍ତି ରସାସ୍ୱାଦନ କରିବା ନିମନ୍ତେ । ପ୍ରତି ଗ୍ରାସକୁ ପାଟିଭିତରକୁ ନେଇ ଚୋବାଇବା ଦ୍ୱାରା ଦାନ୍ତମୂଳରୁ ଓ ଜିଭରୁ ଲାଳ ବାହାରି ତାହା ସହିତ ମିଶେ । ଏପରି ପିଷ୍ଟ ଓ ତରଳ ଦ୍ରବ୍ୟ ପେଟ ଭିତରକୁ ଗଲେ ସହଜରେ ହଜମ ହୁଏ । ତରଳ ଖାଦ୍ୟକୁ ଚୋବାଇ ନ ହେବ ତ, ଢକ ଢକ କରି ନ ପିଇ ଚୁକୁ ଚୁକୁ କରି ଖାଇବା ଉଚିତ । କଠିନ, ଅଚର୍ବିତ ଦ୍ରବ୍ୟ ପାକସ୍ଥଳୀରେ ପଡ଼ିଲେ ତାକୁ ଆୟତ୍ତ କରି ହଜମ କରିବାକୁ ଅଧିକ ରସ (Gastic juice) ଓ ଅଧିକ ସମୟ ଲାଗେ । ପୁଣି ପାକଯନ୍ତ୍ରର ଅଧିକ ଶକ୍ତି ବ୍ୟୟ କରିବାକୁ ହୁଏ । ଏଥିରେ ଯନ୍ତ୍ରର ବଳ କମିଯାଏ ଓ ଭୁକ୍ତ ଦ୍ରବ୍ୟ ଉତ୍ତମରୂପେ ଜୀର୍ଣ୍ଣ ହୁଏ ନାହିଁ । ଫଳରେ ଅଜୀର୍ଣ୍ଣ, ଅମ୍ଳ, ବାୟୁ ଓ ଶୂଳରୋଗ ଆରମ୍ଭ ହୁଏ । ଢୋକିବା ପୂର୍ବରୁ ପ୍ରତି ଗ୍ରାସକୁ ଅନ୍ତତଃ ତିରିଶ ଥର ଏକାଳ ସେକାଳ କରି ଚୋବାଇବା ଉଚିତ ।

ଆହାର ସମ୍ବନ୍ଧରେ କେତେଗୁଡ଼ିଏ ସାଧାରଣ ନିୟମ ସଂକ୍ଷେପରେ ପ୍ରଦତ୍ତ ହେଲା ।

୧ । ଖାଇବା ପୂର୍ବରୁ ଆଚମନ କରିବ । ( ଉତ୍ତମରୂପେ ହାତ, ମୁହଁ ଧୋଇ ଟିକିଏ ହେଲେ ଜଳପାନ କରିବା ଉପକାରୀ । )

୨ । ସ୍ନାନର ଅବ୍ୟବହିତ ପରେ ଭୋଜନ କରିବ ନାହିଁ ।

୩ । ସନ୍ଧ୍ୟାକାଳରେ ଆହାର କରିବ ନାହିଁ । ଦିନ ଯାଉଥିବ ରାତି ହେଉଥିବ ବା ରାତି ଯାଉଥିବ ଦିନ ହେଉଥିବ, ଏହି ସମୟକୁ ସନ୍ଧ୍ୟାକାଳ କହନ୍ତି ।

୪ । ଭୋଜନ ସ୍ଥାନ ପରିଷ୍କାର କରି ବସିବ ।

୫ । ଆସନ ଉପରେ ବସିବ; ମାଟିରେ ବସିବ ନାହିଁ ।

୬ । ସିଧା ହୋଇ ବସି ଆହାର କରିବ, ଅର୍ଥାତ୍ ଶୋଇବା, ଛିଡ଼ା ହେବା, ନଇଁବା ପ୍ରଭୃତି ଅବସ୍ଥାରେ ଆହାର କରିବ ନାହିଁ ।

୭ । ଭୋଜନକାଳରେ ବେଶୀ ଗପିବ ନାହିଁ ।

୮ । ଭୋଜନ କରୁଥିବାବେଳେ ଭୂଇଁରେ ହାତ ଭରା ଦେବ ନାହିଁ ।

୯ । ଦକ୍ଷିଣ ନାସାରେ ଶ୍ୱାସ ଥିବାବେଳେ ଭୋଜନ କରିବ । ସେ କାଳରେ ବାମ ଆଣ୍ଠୁ ଟେକି ବାମ କାଖରେ ଚାପ ଦେଲେ ଦକ୍ଷିଣ ନାସାରେ ଶ୍ୱାସବେଗ ପ୍ରବଳ ହେବ । ( ଏପରି ଭାବରେ ଆହାର କଲେ ଅତିରିକ୍ତ ଖାଇ ହେବ ନାହିଁ, ଖାଦ୍ୟରେ ଲାଳ ବେଶୀ ହେବ ଓ ଭୁକ୍ତ ଦ୍ରବ୍ୟ ଶୀଘ୍ର ଜୀର୍ଣ୍ଣ ହେବ ଓ ପାକାଶୟରେ ରୋଗ ହେବ ନାହିଁ ।

୧୦ । କେବେହେଁ ପେଟ ପୂରାଇ ଖାଇବ ନାହିଁ । )

୧୧ । କ୍ଷୁଧା ନ ହେଲେ ଖାଇବ ନାହିଁ ।

## ନିଷିଦ୍ଧ ଆହାର

୧ । ରାତ୍ରିକାଳରେ ଦହି ଓ ଶାଗ ଖାଇବା ନିଷିଦ୍ଧ । (ଶ୍ଳେଷ୍ମା ବୃଦ୍ଧି ହୁଏ ) ।

୨ । ଚୈତ୍ରମାସରେ ଗୁଡ଼ ଖାଇବା ନିଷିଦ୍ଧ । (କୃମି ବୃଦ୍ଧି ହୁଏ)

୩ । ଚୈତ୍ର, ବୈଶାଖ, କାର୍ତ୍ତିକ, ମାଘ ମାସରେ ମାଛ ଖାଇବ ନାହିଁ ।

୪ । କାର୍ତ୍ତିକ ମାସରେ ଅଳ୍ପାହାର ଓ ପୌଷରେ ଭୂରିଭୋଜନ କରିବ ।

୫ । ରବିବାର ଓ ଗୁରୁବାରରେ ଆମିଷ ଓ ମସୁରଡାଲି ଖାଇବା ନିଷିଦ୍ଧ । (ବହୁମୂତ୍ର ହୁଏ ଏବଂ ଶରୀର ଓ ମସ୍ତିଷ୍କ ଗରମ ହୁଏ)

୬ । ଅମାବାସ୍ୟା, ପୂର୍ଣ୍ଣିମା, ଏକାଦଶୀ, ସଂକ୍ରାନ୍ତି ଓ ବଡ଼ ବଡ଼ ପର୍ବ ଦିନମାନଙ୍କରେ ଅନ୍ନଭକ୍ଷଣ ନିଷିଦ୍ଧ । ତହିଁରେ ରସବୃଦ୍ଧି ଓ ନାନା ରୋଗ ଜାତ ହୁଏ ଏବଂ ଆୟୁ କ୍ଷୀଣ ହୋଇଯାଏ ।

ଏତଦ୍‌ବ୍ୟତୀତ ତିଥି ଓ ବାର ଭେଦରେ କୌଣସି କୌଣସି ପଦାର୍ଥ ଖାଇବା ନିଷିଦ୍ଧ । ଏହା ତ୍ରିକାଳଜ୍ଞ ଋଷିମାନଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଓ ଅଭିଜ୍ଞତାର ଫଳ । ଏହାକୁ କୁସଂସ୍କାର ବୋଲି ଉଡ଼ାଇଦେବା ଉଚିତ ନୁହେଁ । ସ୍ୱାସ୍ଥ୍ୟସାଧନ ପକ୍ଷେ ଏସବୁ

ବିଶେଷ ଲକ୍ଷ୍ୟ କରିବାର କଥା । ଆଧୁନିକ ବିଜ୍ଞାନ ମଧ୍ୟ ଏସବୁ ନିୟମର କେତେକାଂଶ ସତ୍ୟ ବୋଲି ସ୍ୱୀକାର କରୁଛି । ମାତ୍ର ବିଜ୍ଞାନ ତ ପୂର୍ଣ୍ଣତା ପ୍ରାପ୍ତ ହୋଇ ନାହିଁ । ସମୟରେ ପୁଣି ସ୍ୱୀକାର କରିବ । ଏ ସ୍ଥଳରେ ନିଷିଦ୍ଧ ପଦାର୍ଥମାନଙ୍କର ତାଲିକା ଦେବାର ପ୍ରୟୋଜନ ନାହିଁ; କାରଣ ପାଞ୍ଜିରେ ସେସବୁ ଉଲ୍ଲିଖିତ ଥାଏ । ଏହାର ସତ୍ୟାସତ୍ୟ ପରୀକ୍ଷା କରିବାକୁ ଅନୁରୋଧ କରୁଁ ।

## ବିରୁଦ୍ଧାହାର

୧ । ଦୁଧ ସହିତ ଆମିଷ, ମଦ, ଲବଣ, ପିଆଜ, ଲଉ, କଖାରୁ, ଦହି ଓ ତେଲ ପିଠା ଖାଇବା ନିଷିଦ୍ଧ ।

୨ । ତାଳ ଓ କଦଳୀ ଏକା ସାଙ୍ଗରେ ଖାଇବା ଉଚିତ ନୁହେଁ ।

୩ । କଦଳୀ ସହିତ ଗୁଡ଼ ବା ଚିନି ଖାଇବ ନାହିଁ ।

୪ । ନୂଆ ବୃଷ୍ଟିଜଳର ଭାତ ସହିତ ମାଂସ ଅହିତକର ।

୫ । ଗୁଡ଼, ଚିନି ବା ମଧୁ ସହିତ ମାଛମାଂସ ଅଖାଦ୍ୟ ।

୬ । ଖାଲି ପେଟରେ ତାଳ ଖାଇବ ନାହିଁ ।

୭ । ଖାଇସାରି ବେଲ ଖାଇବ ନାହିଁ ।

୮ । କୁକ୍କୁଟମାଂସ ସହିତ ଦହି ଅନିଷ୍ଟକର ।

୯ । ଖେଚୁଡ଼ି ସହ ଦୁଧ ଖାଇଲେ ରୋଗ ବୃଦ୍ଧି ହୁଏ ।

୧୦ । ମୂଳା ସଙ୍ଗରେ ଦୁଧ ଓ ମଧୁ ଖାଇବ ନାହିଁ ।

୧୧ । ମଧୁ ସହିତ ଜଳ ସମାନ ଭାଗରେ ମିଶାଇ ଖାଇବ ନାହିଁ ।

୧୨ । ମଧୁ ସହିତ ଘୃତ ସମାନ ଭାଗରେ ମିଶାଇ ଖାଇଲେ ବିଷବତ୍ ହୁଏ ।

୧୩ । ଲବଣ, ଚୂନ ବା ସୋଡ଼ା ସହିତ ମିଠା ଦ୍ରବ୍ୟ ଖାଇବ ନାହିଁ ।

୧୪ । ଗରମ ପଦାର୍ଥ ସହ ମିଠା ଖାଇବ ନାହିଁ ।

୧୫ । ନିମପିତା ବା ଅନ୍ୟ ତିକ୍ତ ସହିତ ଖଟା ଖାଇବ ନାହିଁ ।

୧୬ । ହରିଡ଼ା ପ୍ରଭୃତି କଷା ଦ୍ରବ୍ୟ ସହ ଖଟା ଖାଇବ ନାହିଁ ।

୧୭ । ପିତା ବା କଷା ସହ ଲବଣ ବ୍ୟବହାର କରିବ ନାହିଁ ।

## ଆଚମନ

ଶୀତପ୍ରଧାନ ଦେଶର ଲୋକେ ଖାଇସାରି ହାତ, ମୁଖ ଧୁଅନ୍ତି ନାହିଁ । ରୁମାଲ ଖଣ୍ଡିକରେ ପୋଛି ଦିଅନ୍ତି ମାତ୍ର । ଆମ ଦେଶରେ ଅବଶ୍ୟ ଖାଇ ନ ଆଁଚାଏ, ଏପରି କେହି ଦେଖାଯାଏ ନାହିଁ । ମାତ୍ର ଅନେକ ଅଛନ୍ତି, ଯେଉଁମାନେ ଠିକ୍ ଭାବରେ ଆଚମନ କରନ୍ତି ନାହିଁ । ଥରେ କି ଦୁଇଥର ମୁହଁ ଧୋଇ ପକାଇ କାମ ସାରି ଦିଅନ୍ତି । ସେଥିରେ ମୁଖଗହ୍ୱରରେ ଓ ଦାନ୍ତମୂଳରେ କେତେକ ଖାଦ୍ୟାବଶେଷ ରହିଯାଏ । ନିତାନ୍ତପକ୍ଷେ ୫।୭ ଥର ଭଲ କରି କୁଳି କରିବା ଉଚିତ । ତାହା ପରେ ସଫା ଗାମୁଛାରେ ମୁହଁ ପୋଛିଦେବ ।

## ଦାନ୍ତଖୁଣ୍ଟା

ଦେଖାଯାଏ, ବହୁତ ଲୋକ ଖାଇସାରି ଖଡ଼କାଟିଏ ଲୋଡ଼ନ୍ତି । ଯେଉଁମାନଙ୍କର ଦାନ୍ତ ଖୁଣ୍ଟିବା ଅଭ୍ୟାସ, ସେମାନେ ସେବେଳରେ ଖଡ଼କା ଖଣ୍ଡିଏ ନ ପାଇଲେ ବଣା ହୋଇଯିବେ । ବାସ୍ତବିକ ଯେଉଁମାନଙ୍କର ଦାନ୍ତ ସନ୍ଧି ଫାଙ୍କ ହୋଇ ଯାଇଥାଏ, ସେମାନଙ୍କ ଦାନ୍ତରେ ଚର୍ବିତ ଖାଦ୍ୟାଂଶସବୁ ବିଶେଷତଃ ନଡ଼ିଆ, ମାଂସ, ନାଡ଼ ପ୍ରଭୃତି ଅଠାଳିଆ ଓ ଚେମଡ଼ିଆ ଦ୍ରବ୍ୟ ଏପରି ଶକ୍ତଭାବରେ ଲାଗି ରହେ ଯେ, ତାକୁ ବାହାର କରି ନ ଦେବାଯାଏଁ ବାଟ ଦିଶେ ନାହିଁ । ସମୟ ସମୟରେ ଯନ୍ତ୍ରଣା ଉଠେ ମଧ୍ୟ ।

ଅଧିକ ପାନ ଖାଇବା ଅଥବା ଦନ୍ତରୋଗ ହେତୁ କିମ୍ବା ବୟସ ହୋଇଗଲେ କାହାରି କାହାରି ଦାନ୍ତରେ ଫାଙ୍କ ଆରମ୍ଭ ହୁଏ । ସେ ଫାଙ୍କରେ ମଇଳା ଜମିବାରୁ ଦାନ୍ତଖୁଣ୍ଟା ବ୍ୟବହାର କରିବାକୁ ପଡ଼େ । ଗୋଟିଏ ଫାଙ୍କ ପାଇଁ ଦାନ୍ତଖୁଣ୍ଟା ବ୍ୟବହାର କରୁଁ କରୁଁ ଲୋକ ଗୋଟିଏ ହେଲା ଭଳି ଅନ୍ୟ ଦାନ୍ତସନ୍ଧିରେ ଅଳ୍ପାଧିକ ଖୁଣ୍ଟିଦିଏ । ଏହିପରି ହେଉଁ ହେଉଁ କ୍ରମେ ସବୁ ଦାନ୍ତ-ସନ୍ଧି ଫାଙ୍କ ହୋଇଯାଏ, ଯେତେବେଳେ ଖଡ଼କାଟିଏ ନ ହେଲେ ନ ଚଳେ । ଏପରି ଅନେକ ଦେଖାଯାନ୍ତି, ଯେଉଁମାନେ ଗୁହ୍ନ ଗଂରେ ରୂପା ବା ପିତ୍ତଳର ଖୁଣ୍ଟାଟିଏ ଲଗାଇଥାଆନ୍ତି । କେହି କେହି ମଧ୍ୟ କାନରେ ଖଡ଼କା ଖଣ୍ଡେ ସବୁବେଳେ ଖୋସନ୍ତି । ଏମାନଙ୍କର ଏପରି ଅଭ୍ୟାସ ହୋଇଯାଏ ଯେ ଦଣ୍ଡକେ ଘଡ଼ିକେ ଟିକିଏ ଖୁଣ୍ଟି ନ ହେଲେ ନ ଚଳେ ।

ଯେଉଁ ଦାନ୍ତଖୁଣ୍ଟା ଥରେ ବ୍ୟବହୃତ ହେଲା, ତା'କୁ ପୁନରାୟ ଦାନ୍ତରେ ଦେବ ନାହିଁ । ଯେତେବେଳେ ଦାନ୍ତ ଖୁଣ୍ଟିବ ଖଡ଼କାକୁ ଧୋଇଦେବ । ଏହାର ବ୍ୟତିକ୍ରମ କଲେ ଦାନ୍ତରେ ରୋଗ ଜାତ ହୁଏ ।

ମୋଟରେ ଦାନ୍ତ ଖୁଣ୍ଟିବା ଅଭ୍ୟାସ କରିବ ନାହିଁ । ତହିଁରେ ଦାନ୍ତମୂଳ ହୁଗୁଳା ହୋଇ ଅକାଳରେ ଦାନ୍ତ ପଡ଼ିଯାଏ । ନଡ଼ିଆକଞ୍ଚି

ପ୍ରଭୃତି ଝାଞ୍ଜୁଆ ଖୁଣ୍ଟା ବ୍ୟବହାର କରିବ ନାହିଁ । ନିମଖଡ଼ିକା ବରଂ ଅପେକ୍ଷାକୃତ ଭଲ ।

## ମୁଖଶୋଧନ

ଭୋଜନ ପରେ ଭୁକ୍ତ ଦ୍ରବ୍ୟର ସ୍ୱାଦ ପାଟିରେ ରହିଯାଏ । ସେଥିପାଇଁ କୌଣସି ପ୍ରକାର ମୁଖବାସର ପ୍ରୟୋଜନ ହୁଏ । ଭୋଜନ ଶେଷରେ ବକଟେ ଲୁଣ ଦାନ୍ତରେ ଘଷିଦେଲେ ଏ ବିସ୍ୱାଦ କଟିଯାଏ ଓ ଦାନ୍ତ ଶୋଧିତ ହୋଇଯାଏ । ଦାନ୍ତ ପକ୍ଷରେ ମଧ୍ୟ ଲୁଣ ଘଷିବା ଉପକାରୀ । ଯଦି ପାନ ଖାଇବାକୁ ହୁଏ ତ ଏତିକି-ବେଳେ ଖଣ୍ଡିଏ ସାଦା ପାନ ଖାଇଲେ ଚଳିବ । ଅଥବା କିଛି ମସଲା ବ୍ୟବହାର କରାଯାଇ ପାରେ । ଏ ପକ୍ଷେ ହରିଡ଼ା ସବୁଠାରୁ ଉପଯୋଗୀ । ହରିତକୀର କୌଣସି ଦୁର୍ଗୁଣ ତ ନାହିଁ, ପରନ୍ତୁ ସୁଗୁଣ ଅନେକ ଅଛି । ପାନ ବା ମସଲା ପରିବର୍ତ୍ତେ ହରିତକୀ ବ୍ୟବହାର ଯେପରି ଉପକାରକ ସେହିପରି ଅଳ୍ପ ବ୍ୟୟସାଧ୍ୟ ।

## ଜଳପାନ

ଜଳର ଅପର ନାମ ଜୀବନ । ଏଥିରୁ ଶରୀର ରକ୍ଷା ବିଷୟରେ ଜଳର ଉପାଦେୟତା ଓ ଆବଶ୍ୟକତା କେତେ ତାହା ଜଣାଯାଏ । ବାସ୍ତବରେ ଜଳ ପ୍ରାଣୀର ଜୀବନସ୍ୱରୂପ । ଜୀବନ ରକ୍ଷା କରିବା ସକାଶେ ଖାଦ୍ୟଠାରୁ ଜଳର ପ୍ରୟୋଜନୀୟତା ଅଧିକ । ଖାଦ୍ୟ ନ ପାଇ ପ୍ରାଣୀ ଅନେକ ଦିନ ରହିପାରେ; ମାତ୍ର ଜଳ ନ ପିଇ ବଞ୍ଚି ପାରିବ ନାହିଁ ।

ବ୍ରହ୍ମାଣ୍ଡରେ ଯେପରି ତିନି ଭାଗ ଜଳ, ମାନବ ପିଣ୍ଡରେ ମଧ୍ୟ ସେହିପରି ତିନି ଭାଗ ଜଳ । ଏହି ଜଳ ନାନା ପ୍ରକାରରେ ଶରୀରରୁ ନିତ୍ୟ ନିୟମିତ ଭାବେ ବାହାରି ଯାଉଛି—ମଳ, ମୂତ୍ର, ଛେପ, ଲୋତକ, ସିଙ୍ଘାଣି, ଝାଳ ଆକାରରେ । ଏହାଛଡ଼ା ପୁଣି ଉତ୍ତାପ ଓ ବାୟୁ କେତେ ପରିମାଣ ଶୋଷଣ କରୁଛି । ଏହି ଊଣାକୁ ଭରଣା ନ କଲେ ଜୀବନ ରହିବ କାହିଁ ? ଜଣେ ପୂର୍ଣ୍ଣବୟସ୍କ ସୁସ୍ଥକାୟ ବ୍ୟକ୍ତିର ଏଥି ସକାଶେ ଦୈନିକ ପ୍ରାୟ ଛ’ ଗ୍ଲାସ ଜଳ ଲୋଡ଼ା । ମାତ୍ର ଆମ୍ଭେମାନେ କେବଳ ଖରାଦିନ ବ୍ୟତୀତ ଅନ୍ୟ ସମୟରେ ଏତେ ଜଳ ପିଉନାହିଁ । ଜଳାଭାବରୁ ନିଶ୍ଚୟ ଶରୀରର ଅନିଷ୍ଟ ଘଟୁଥିବ । ଅତିଶୟ ଅଭାବ ହେଲେ ତୃଷା ହୁଏ । ତୃଷା ହେଲେ ଜାଣିବ, ଶରୀର ଜଳ ଖୋଜୁଛି ।

ଜଳର ଆଉ ଗୋଟିଏ କାମ ପାକାଶୟ, ଅନ୍ତ୍ର ପ୍ରଭୃତି ଭିତରର ଯନ୍ତ୍ରସବୁ ଧୋଇ ସଫା କରିବା । ଯଥେଷ୍ଟ ପରିମାଣର ଜଳ ପେଟକୁ ନ ଗଲେ ଏହି ଧୌତ କ୍ରିୟା ସମ୍ୟକ୍ ଭାବରେ ହୋଇପାରେ ନାହିଁ । ସୁତରାଂ ଶରୀର ମଧ୍ୟରେ ମଇଳା ରୁନ୍ଧି ହୋଇ ସ୍ୱାସ୍ଥ୍ୟର ହାନି କରେ ।

ସାଧାରଣତଃ ଲୋକେ ଖାଇ ସାରିଲା କ୍ଷଣି ଗ୍ଲାସେ ଜଳ ଖାଆନ୍ତି । କେହି କେହି ଖାଇବା ବେଳେ ମଝିରେ ମଝିରେ ଜଳ ପାନ କରନ୍ତି । ଅନେକଙ୍କର ଧାରଣା, ଭୋଜନ ସାଙ୍ଗରେ ଜଳ ନ ଖାଇଲେ ଭୁକ୍ତ ଦ୍ରବ୍ୟ ଜୀର୍ଣ୍ଣ ହୁଏନାହିଁ ଓ ଭୋଜନରେ ତୃପ୍ତି ଆସେ ନାହିଁ । ତୃପ୍ତି ନଆସିବା କଥା ସତ୍ୟ । ମାତ୍ର ତାହା କେବଳ ଅଭ୍ୟାସ ହେତୁ ହୋଇଛି । ଭୋଜନବେଳେ ଜଳପାନର ଅପକାରିତା ବୁଝି, ହେଜ ସେତିକିବେଳେ ପିଇବା-ଛାଡ଼ିଦେଇ ଦେଖନ୍ତୁ ତୃପ୍ତି ହେଉଛି କି ନାହିଁ ।

ପୂର୍ବରୁ କୁହା ଯାଇଅଛି ଯେ ଭୁକ୍ତ ପଦାର୍ଥ ପାକାଶୟରେ ପଡ଼ିଲେ ସେଠାରୁ ଏକ ପ୍ରକାର ରସ ନିର୍ଗତ ହୋଇ ତାହାକୁ ଜୀର୍ଣ୍ଣ କରାଏ । ଯଦି ଗୁଡ଼ାଏ ଜଳ ତାହା ସହିତ ଯାଇ ପଡ଼େ ତେବେ ଯେଉଁ ରସ ଆସିବ ସେ ଆଗ ଜଳରେ ମିଶିବ ଓ ସେହିହେତୁ ତାର ଶକ୍ତି ଏତେ କ୍ଷୀଣ ହୋଇଯିବ ଯେ କଠିନ ଆହାରକୁ ଜୀର୍ଣ୍ଣ କରି-ପାରିବ ନାହିଁ । ସେତିକି ଜଳ ଶୁଖିଲେ ତାହାପରେ ଯାଇ ପରିପାକ କ୍ରିୟା ଆରମ୍ଭ ହେବ । ଇତିମଧ୍ୟରେ ଖାଦ୍ୟ ସେତିକିରେ ଅମ୍ଳ ଓ ଲାଳ ଉତ୍ପନ୍ନ ହୋଇ ତାର ହଜମ ପକ୍ଷରେ ବାଧା ଦେବ । ଏଣେ ତ ଗୁଡ଼ାଏ ଜୀର୍ଣ୍ଣକାରକ ରସ ଲୋକସାନ ଗଲା । ପାକାଶୟ ଉପରେ ଏହି ଅତ୍ୟାଚାର ଓ ବଳପ୍ରୟୋଗ ଯୋଗୁଁ ପାକାଶୟ ଦୁର୍ବଳ ହୋଇ ଅଜୀର୍ଣ୍ଣ, ଅମ୍ଳ, ବାୟୁ, ଶୂଳ ପ୍ରଭୃତି ରୋଗ ଜାତ ହେବାର ଆଶଙ୍କା ଅଧିକ ।

ଆହାର କରି କଦାଚ ଜଳପାନ କରିବ ନାହିଁ । ୩।୪ ଘଣ୍ଟା ଉତ୍ତାରୁ ଯେତେବେଳେ ପେଟ ଉଶ୍ୱାସ ଲାଗିବ ସେତେବେଳେ ପୂର୍ଣ୍ଣୋଦର ଜଳପାନ କରିବ । ଖାଲି ପେଟରେ ଜଳ ପିଇଲେ ସର୍ଦ୍ଦି ହୁଏ, ଏ ଧାରଣା ଭ୍ରାନ୍ତ । ବରଂ ଠିକ୍ ତାର ଓଲଟା । ଖାଲି ପେଟରେ ଜଳ ପିଇଲେ ଶରୀରର ମଳ ଉତ୍ତମରୂପେ ପରିଷ୍କୃତ ହୁଏ ।

ସୋଡ଼ା, ଲେମୋନେଡ୍, ସିରପ୍‌ଠାରୁ ଶୀତଳ ନିର୍ମଳ ଜଳ ଉପାଦେୟ ଓ ସ୍ୱାସ୍ଥ୍ୟପ୍ରଦ । ବରଂ ଜଳ ସହିତ କାଗଜିଲେମ୍ବୁ ରସ ବ୍ୟବହାର କରାଯାଇପାରେ । ତଦ୍ୱାରା ପିତ୍ତଶାନ୍ତ ହୁଏ ଓ ସବ ଶରୀର ଶୀତଳ ହୁଏ ।

## ସଂକ୍ଷିପ୍ତ ନିୟମ

୧ । ଦିନ ମଧ୍ୟରେ ୫।୬ ଗ୍ଲାସ ଜଳ ପିଇବ ।

୨ । ଭୋଜନକାଳରେ ବା ଭୋଜନର ଅବ୍ୟବହିତ ପରେ ଜଳ ପିଇବ ନାହିଁ ।

୩ । ଖାଲିପେଟରେ ଜଳପାନ ଉପକାରୀ ।

୪ । ପ୍ରକୃତିଦତ୍ତ ନିର୍ମଳ, ଶୀତଳ, ଟଟକା ଜଳ ପାନ କରିବ । (ବୃଷ୍ଟିଜଳ, କୂପ, ଝରଣା, ସ୍ରୋତସ୍ୱିନୀ ନଦୀର ଜଳ)

୫ । ଜଳ ପାନ କରି ତତ୍‌କ୍ଷଣାତ୍ ପ୍ରସ୍ରାବ କରିବ ନାହିଁ ।

୬ । ଛିଡ଼ା ହୋଇ ଜଳପାନ କରିବ ନାହିଁ ।

୭ । ବାମ ନାସିକାରେ ଶ୍ୱାସ ଥିବାବେଳେ ଜଳପାନ କରିବ ।

## ଉପବାସ ବା ଲଙ୍ଘନ

ଏକାଦଶୀ, ପୂର୍ଣ୍ଣିମା ପ୍ରଭୃତିରେ ହିନ୍ଦୁଶାସ୍ତ୍ରରେ ଯେ ଉପବାସର ବ୍ୟବସ୍ଥା ଅଛି ତାହା ଶରୀର ପକ୍ଷରେ ମହୋପକାରୀ । ଶରୀର ମଧ୍ୟରେ ମଳ, ରସ ବା କୌଣସି ଧାତୁର ଆଧିକ୍ୟ ବା ଉଗ୍ରତା ହେଲେ କେବଳ ଉପବାସ ତା'ର ସମତା ବିଧାନ କରେ । ନିୟମିତ ଭାବରେ ଉପବାସ କରନ୍ତି ଯେଉଁମାନେ, ଦେଖାଯାଏ ସେମାନେ ଅପେକ୍ଷାକୃତ ସୁସ୍ଥ ଓ ଦୀର୍ଘଜୀବୀ । ବିଶେଷତଃ କେତେଗୁଡ଼ିଏ ଉଦରଗତ ଓ ଧାତୁଗତ ରୋଗର ଉପବାସ ପଥ୍ୟ । ଗୋଟାଏ ଇଞ୍ଜିନ ଯଦି ଅବିରାମ ଭାବରେ କାମ କରେ, ତେବେ ତାହା କେତେ ଦିନ ଚଳପାରେ ? ତା'ର ଅଂଶମାନ ଅଳ୍ପ ଦିନରେ ଖଣ୍ଡ ବିଖଣ୍ଡ ହୋଇଯିବ ନାହିଁ କି ? ସେହିପରି ଆମର ଉଦରର ଯନ୍ତ୍ରମାନଙ୍କୁ ମଝିରେ ମଝିରେ ଥକା ଦେବା ଆବଶ୍ୟକ । ସେ ସମୟରେ ଯନ୍ତ୍ରଗୁଡ଼ିକ ବଳ ସଞ୍ଚୟ କରି ପୁଣି ନୂଆ ତେଜରେ କାମ କରିବେ । ସମସ୍ତ ଦେଶର ଚିକିତ୍ସାଶାସ୍ତ୍ର ଉପବାସ ବା ଲଙ୍ଘନକୁ ବହୁଳ ପ୍ରଶଂସା କରିଅଛନ୍ତି । ଶୁଣାଯାଏ, ବର୍ତ୍ତମାନ ଆମେରିକାରେ ଏକ ନୂତନ ପ୍ରଣାଳୀର ଚିକିତ୍ସା ବାହାରିଛି—ତାହାର ନାମ ଉପବାସ ଚିକିତ୍ସା । ଏଥିରେ ସବୁ ପ୍ରକାର ବ୍ୟାଧି ଆରୋଗ୍ୟ ହେଉଛି । ପେଟ ସାମାନ୍ୟ 'ମାନ୍ଦା' ଜଣାଗଲେ, ଅର୍ଥାତ୍ 'ଖାଇବି କି ନ ଖାଇବି' ଏପ୍ରକାର ସନ୍ଦେହ ମନରେ ଉଦିତ ହେଲା ମାତ୍ରେ ନିଶ୍ଚୟ ସ୍ଥିର କରିବ ଯେ 'ଖାଇବି ନାହିଁ ।' 'ରାତିରେ ନ ଖାଇଲେ ପୁରୁଷକୁ ହାନି' ଏ ସ୍ତ୍ରୀ-ପ୍ରବାଦର ମୋହରେ, ସୁଖାଦ୍ୟର ଲୋଭରେ ଅଥବା ନିଜହାନିର ଭୟରେ କେବେହେଁ ବିଚଳିଇ ଖାଇବ ନାହିଁ ।

## ବିଶ୍ରାମ ଓ ନିଦ୍ରା

ମନୁଷ୍ୟର ଅଳସ ନ ହୋଇ ଯେପରି ପରିଶ୍ରମ କରିବା ଦରକାର, ସେହିପରି ବିଶ୍ରାମ ନେବା ମଧ୍ୟ ଦରକାର । ଶାରୀରିକ ପରିଶ୍ରମରେ ଅଙ୍ଗପ୍ରତ୍ୟଙ୍ଗର ଯେଉଁସବୁ କ୍ଷୟ ସାଧିତ ହୋଇଥାଏ ବିଶ୍ରାମ ଦ୍ୱାରା ସେଗୁଡ଼ିକ ମଧ୍ୟରେ ନୂତନ ଶକ୍ତିର ସଞ୍ଚାର ହୋଇ ପୁଣି ତାହା କାର୍ଯ୍ୟକ୍ଷମ ହୁଏ । ମାନସିକ ପରିଶ୍ରମ ଯେଉଁମାନେ କରନ୍ତି ତାଙ୍କର ମଧ୍ୟ ବିଶ୍ରାମର ପ୍ରୟୋଜନ ହୁଏ ଓ ବିଶ୍ରାମ ଅନ୍ତେ ସେମାନେ ନବୋତ୍ସାହ ଓ ନବ ତେଜରେ ସ୍ୱକର୍ମରେ ଲାଗି ପାରନ୍ତି । ନିଦ୍ରା ବା ସୁନିଦ୍ରା ସବୁଠାରୁ ଶ୍ରେଷ୍ଠ ବିଶ୍ରାମ ।

ଯେ ଯେତେ ଅଳସୁଆ ବା ପୋଲଫାଙ୍କିଆ ହେଉ ପଛକେ ତାର ମସ୍ତିଷ୍କ ଓ ଅବୟବର କିଛି ହେଲେ କିଛି ଚାଳନା ହେଉଥାଏ । ସୁତରାଂ ସେହି ଅନୁସାରେ ନିଦ୍ରାର ପ୍ରୟୋଜନ ହୁଏ । ଯେ ପରିଶ୍ରମୀ ତା'ର ନିଦ୍ରା ଖୋଜିବାକୁ ହୁଏ ନାହିଁ । ଶାରୀରିକ ପ୍ରୟୋଜନରୂପେ ତାହା ଆପେ ଆପେ ଆସେ ଓ ପୂର୍ଣ୍ଣ ହୋଇଗଲେ ଆପେ ଛାଡ଼ିଯାଏ । ତଥାପି ସଂସାରରେ ସୁଖସ୍ୱାଚ୍ଛନ୍ଦ୍ୟ ଓ ସ୍ୱାସ୍ଥ୍ୟ ଠିକ୍ ରଖିବାକୁ ହେଲେ ଆହାର ପ୍ରଭୃତିରେ ଯେପରି ନିୟମ ରକ୍ଷା ଓ ସାବଧାନତା ଦରକାର, ନିଦ୍ରା ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ବ୍ୟତିକ୍ରମ ବା ବ୍ୟତିକ୍ରମ କଲେ ତା'ର ଫଳଭୋଗ କରିବାକୁ ପଡ଼ିବ ।

ନିଦ୍ରା ତୁ ସେବିତା କାଲେ ଧାତୁ ସାମ୍ୟ ମତନ୍ଦ୍ରିତାମ୍
ପୁଷ୍ଟି ବର୍ଣ୍ଣ ବଲୋତ୍ସାହଂ ବହ୍ନି ଦୀପ୍ତଂ କରୋତି ଚ ।

ଯଥାକାଳରେ ଉପଯୁକ୍ତ ପରିମାଣରେ ନିଦ୍ରା ସମ୍ଭୋଗ କଲେ ଶରୀରସ୍ଥ ରସ ରକ୍ତାଦି ସପ୍ତ ଧାତୁର ସମତା ବିଧାନ ହୁଏ, ତନ୍ଦ୍ରାଭାବ ଦୂରୀଭୂତ ହୁଏ, ଦେହର ପୁଷ୍ଟି ଓ କାନ୍ତି ବୃଦ୍ଧି ହୁଏ, ଉତ୍ସାହର ସଞ୍ଚାର ହୁଏ ଏବଂ ଅଗ୍ନି ପ୍ରଦୀପ୍ତ ହୁଏ । ଶିଶୁମାନଙ୍କ ପାଇଁ କିଛି ବେଶୀ ନିଦ୍ରା ଆବଶ୍ୟକ ହୁଏ । ମାତ୍ର ପୂର୍ଣ୍ଣବୟସ୍କ ପକ୍ଷରେ ୭।୮ ଘଣ୍ଟା ନିଦ୍ରା ଯଥେଷ୍ଟ । ବୟସ ଯେତେ ବଢୁଥିବ ନିଦ୍ରାର କାଳ ତେତେ କମୁଥିବ । ଯେଉଁମାନେ ଅଳସ, ବିଳାସୀ, ବ୍ୟସନପରାୟଣ ଓ ଅସଂଯମୀ ସେମାନଙ୍କର ସୁନିଦ୍ରା ହୁଏ ନାହିଁ । ଫଳରେ ସେମାନେ ଶାନ୍ତି ପାଇବା ଆଶାରେ ଅଧିକତର ଆଳସ୍ୟ-ବ୍ୟସନର ଆଶ୍ରୟ ନେଉନ୍ତି ଓ ଅଧିକତର ଅସ୍ୱସ୍ତିରେ କାଳଯାପନ କରନ୍ତି । ବିଶ୍ରାମ ଓ ନିଦ୍ରା ଭୋଗର ପ୍ରକୃଷ୍ଟ କାଳ ରାତି । ସେ ସମୟରେ ସାରା ସୃଷ୍ଟି ନୀରବ ପ୍ରଶାନ୍ତ ଥାଇ ଜୀବର ବିଶ୍ରାମରେ ସାହାଯ୍ୟ କରେ । ମନୁଷ୍ୟେତର ପ୍ରାୟ ସମସ୍ତ ପ୍ରାଣୀ ରାତିରେ ବିଶ୍ରାମ

କରନ୍ତି । ପ୍ରକୃତି-ଜନନୀର କୋମଳ, ଶୀତଳ, ଶାନ୍ତିମୟ କୋଳ ପ୍ରାଣୀର ସବୁ ଶ୍ରାନ୍ତି ଅପନୋଦନ କରିଦିଏ ।

ରାତି ୯ ଘଣ୍ଟାଠାରୁ ୧୦ ଘଣ୍ଟା ମଧ୍ୟରେ ଶଯ୍ୟା ଗ୍ରହଣ କରିବା ଉଚିତ । ତାହାହେଲେ ଉଷାକାଳରେ ନିଦ ଭାଙ୍ଗିବ । ଅକାରଣରେ ଅଳ୍ପ କାରଣରେ ବା ଇନ୍ଦ୍ରିୟ ଚରିତାର୍ଥ କରିବା ସକାଶେ ରାତି ଜାଗରଣ କରିବ ନାହିଁ । ଏଦ୍ୱାରା ଶରୀରର ବହୁତ ବେଶୀ ଅନିଷ୍ଟ ସଂଘଟିତ ହୁଏ । ଯଦି କେବେ ଗୃହଦାହ, ରୋଗୀସେବା, ଇତ୍ୟାଦି ଅନିବାର୍ଯ୍ୟ କାରଣରେ ବାଧ୍ୟ ହୋଇ ଅନିଦ୍ରା ହେବାକୁ ପଡ଼େ ତେବେ ଯେତେ ଶୀଘ୍ର ସମ୍ଭବ ତହିଁ ଆରଦିନ ଦିନେବେଳେ ଶୋଇନେବ ।

ଦେଖାଯାଏ, ସ୍କୁଲ କଲେଜର ଛାତ୍ରମାନଙ୍କ ମଧ୍ୟରେ ଅନେକେ ପରୀକ୍ଷା ପୂର୍ବରୁ ରାତି ଜାଗରଣ କରି ପଢ଼ନ୍ତି । କେହି ବା ଗୋଟାଏ ଦୁଇଟା ପର୍ଯ୍ୟନ୍ତ ପଢ଼ି ଶୁଅନ୍ତି; କେହି ୨ଟା ୩ଟା ବେଳେ ଉଠି ପଢ଼ନ୍ତି । ଏଥିରେ ଉପକାର ତ ନାହିଁ; ଅପକାର କହିଲେ ନସରେ । ଯଥେଷ୍ଟ ନିଦ୍ରା ଭୋଗ ନ ହେବାରୁ ମସ୍ତିଷ୍କ ଗରମ ହୋଇଯାଏ । ଏଣେ ତ ଶକ୍ତିକୁ ବଳ ପଢ଼ାର ଚାପ ପଡ଼ୁଛି । ଫଳରେ ଯାହା ପଠିତଂ, ତହିଁ ବଳ ଗୋଳାପିତଂ । ପରୀକ୍ଷା ପରେ କାଶ, ଅଗ୍ନିମାନ୍ଦ୍ୟ, ଜ୍ୱର, ପେଟରୋଗ, କୋଷ୍ଠକାଠିନ୍ୟ ତ ହେବାର କଥା । ଯଦି ଆଉ କିଛି ବଡ଼ ରୋଗ ନ ହୁଏ ତେବେ ରକ୍ଷା । ଆଗ ରାତି ଜାଗିଲେ ବାୟୁ କୁପିତ ଓ ପଛ ରାତି ଜାଗିଲେ କଫ ବୃଦ୍ଧି ହୁଏ । କାହିଁକି ବାବୁ ? ବର୍ଷଟାଯାକ ଫୁର୍ତ୍ତି, ମଉଜରେ କଟାଇ ବାହାବେଳେ ବାଇଗଣ ରୋଇବାରେ ଲାଭ କ'ଣ ? ବରଂ ଉବଲ କ୍ଷତି । ପଢ଼ାର ତ ଲାଭ ନାହିଁ, ପୁଣି ସ୍ୱାସ୍ଥ୍ୟଟି ହରାଇ ବସିବ । ସେତେବେଳେ ମନେ ହୁଏ, ଦେହ କ'ଣ ସତେ ଭାଙ୍ଗି ଯାଉଛି—କେତେ କ'ଣ ସହି ନେଉଛି ! ମାତ୍ର ତାହା ଠିକ୍ ନୁହେଁ; ତୁମର ଟିକିଏ ଟିକିଏ ବ୍ୟଭିଚାରର ହିସାବ ଓଜନ ହୋଇ, ତେଣେ ପ୍ରକୃତିର ନୋଟ ଖାତାରେ ଟିପା ହେଉଛି । ବେଳ ଆସିଲେ ସୁଧ ମୂଳ ସବୁ ଏକାଥରକେ ହିସାବ ହୋଇ ବାହାରିବ ।

ବାମ ନାସାରେ ଶ୍ୱାସ ଥିଲାବେଳେ ଶଯ୍ୟା ଗ୍ରହଣ କରିବ । କିଛିକ୍ଷଣ ଚିତ୍ ହୋଇ ତା'ପରେ ବାମ କଡ଼ ମାଡ଼ି ଶୋଇବ । ଏହା କରିବା ଦ୍ୱାରା ରାତିର ଅଧିକାଂଶ ସମୟ ଡାହାଣରେ ଶ୍ୱାସ ଚାଲିବ ଓ ଭୁକ୍ତ ଦ୍ରବ୍ୟ ସହଜରେ ଜୀର୍ଣ୍ଣ ହେବ । ବାମ କଡ଼ ମାଡ଼ି ନ ଶୋଇଲେ ଯକୃତ୍ ଉପରେ ଚାପ ପଡ଼ି ହଜମ କ୍ରିୟାରେ ବାଧା ଘଟେ ।

ପୂଜା, ଯାତ୍ରା, ମେଳା, ମଉଚ୍ଛବରେ ମାତି ଅନେକ ଲୋକ ଉଜାଗର ହୁଅନ୍ତି । ପରେ ପରେ ବେମାର ପଡ଼ନ୍ତି ମଧ୍ୟ ଅନେକ । ଏଥିକୁ ଯେତେ ପାରିବ ସାବଧାନ ହେବ ।

ଦିବାନିଦ୍ରା ବଡ଼ ଅନିଷ୍ଟକର ସ୍ୱାସ୍ଥ୍ୟ ପକ୍ଷରେ । ଦିନ ହୋଇଛି କର୍ମ କରିବା ପାଇଁ—ଶୋଇବା ପାଇଁ ନୁହେ । ତେବେ ଆମ ଗ୍ରୀଷ୍ମପ୍ରଧାନ ଦେଶରେ ବୈଶାଖ ମାସ ଦି' ପହରେ ଅଳ୍ପ ବିଶ୍ରାମ କରିବାର ପ୍ରୟୋଜନ ହୁଏ । ବର୍ଷା ବା ଶୀତ ଦିନର ଦି' ପହରେ ଯଦି ଘୋଡ଼ି ଘାଡ଼ି ହୋଇ ଶୋଇଲ ତ କଥା ସରିଲା ।

## ବ୍ରହ୍ମଚର୍ଯ୍ୟ

ବ୍ରହ୍ମ ଅର୍ଥାତ୍ ଭଗବତ୍ ସମ୍ବନ୍ଧୀୟ ଆଚରଣର ନାମ ବ୍ରହ୍ମଚର୍ଯ୍ୟ । ମାନବର ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଉନ୍ନତିର ଅନ୍ତରାୟ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟରୂପ ଛଅ ଶତ୍ରୁ । ଏହି ଶତ୍ରୁଗଣଙ୍କୁ ଦମନ କରି ଯେ ଇନ୍ଦ୍ରିୟମାନଙ୍କୁ ସ୍ୱବଶରେ ରଖିପାରେ, ସେ ପ୍ରକୃତ ବ୍ରହ୍ମଚାରୀ । ପୁଣି କାୟମନୋବାକ୍ୟରେ 'ସତ୍' ହୋଇ ଉଚ୍ଛୃଙ୍ଖଳତା ପରିହାରପୂର୍ବକ ନିୟମାନୁଯାୟୀ ସଂଯତ ଭାବରେ ଇନ୍ଦ୍ରିୟମାନଙ୍କର ପରିଚର୍ଯ୍ୟା କରିବାହିଁ ବ୍ରହ୍ମଚର୍ଯ୍ୟ ।

> କର୍ମଣା ମନସା ବାଚା ସର୍ବାବସ୍ଥାସୁ ସର୍ବଦା
> ସର୍ବତ୍ର ମୈଥୁନ ତ୍ୟାଗୋ ବ୍ରହ୍ମଚର୍ଯ୍ୟମ୍ ପ୍ରଚକ୍ଷତେ ।

ଇନ୍ଦ୍ରିୟନିଚୟର ପୂର୍ଣ୍ଣ ନିଗ୍ରହ ବା ଜାରଣ ମାରଣ କରିବା ମହାପ୍ରକୃତିର ବିରୁଦ୍ଧାଚରଣ । ଯେଉଁମାନେ ଇନ୍ଦ୍ରିୟକୁ ପେଷଣ କରି ଅଧିକ ଆଧ୍ୟାତ୍ମିକ ଶକ୍ତି ଲାଭ କରିବେ ବୋଲି ମନେ କରନ୍ତି, ସେମାନେ ଭ୍ରମରେ ପଡ଼ନ୍ତି ମାତ୍ର ।

ଧରନ୍ତୁ, ଜଣେ କାମେନ୍ଦ୍ରିୟକୁ ଜୋର କରି ଅଟକ ରଖିଲା । ମାତ୍ର ତା'ର ଚିତ୍ତ ସେହି ଦିଗକୁ ଧାଉଁଛି । ଏପରି ବ୍ୟକ୍ତିର ଆତ୍ମା ବା ଶରୀରର କୌଣସି ଉନ୍ନତି ହୋଇ ନ ପାରେ । ମହାପ୍ରକୃତିରୁ ଆମର ଜନ୍ମ—ସେହି ପ୍ରକୃତିର ଅନୁସରଣ କରିବା ଆମର ଧର୍ମ ।

ଜଗତରେ ଯାହା କିଛି ଅଛି, କେହି ଅକାରଣରେ ହୋଇନାହିଁ; ସବୁର ଆବଶ୍ୟକତା ଅଛି, ସବୁ ପ୍ରୟୋଜନୀୟ । ପୁଣି ଭଲ କିଛି ନୁହେଁ ବା ପୁଣି ମନ୍ଦ କିଛି ନୁହେଁ । ଭଲ ଓ ମନ୍ଦ କେବଳ ମାତ୍ରାଭେଦରେ ହୁଏ । ଯେ କୌଣସି ବିଷୟରେ 'ଅତି' ହୋଇଗଲେ ତାହା ମନ୍ଦ । ସବୁଥିରେ ମଧ୍ୟପନ୍ଥା ହିଁ (Golden

mean) ଶ୍ରେୟସ୍କର । ଆଲୋକର ପ୍ରୟୋଜନୀୟତା ଅଛି, ପୁଣି ଅନ୍ଧାରର ବି ପ୍ରୟୋଜନୀୟତା ଅଛି । ପରିଶ୍ରମ କରିବା ଆବଶ୍ୟକ, ପୁଣି ବିଶ୍ରାମ ବି ଆବଶ୍ୟକ । ଆହାର ଯେପରି ଦରକାର, ଉପବାସ ମଧ୍ୟ ସେହିପରି ଦରକାର । ସେହିପରି ଯୌନସଙ୍ଗମ ଯେତିକି ଲୋଡ଼ା, ତହିଁରୁ ବିରତି ମଧ୍ୟ ସେତିକି ଲୋଡ଼ା । ସବୁ ବିଷୟରେ ସମତା ରକ୍ଷି ସ୍ଥାନ, କାଳ, ପାତ୍ର ବିଚାରରେ ମାତ୍ରାନୁସାରେ ତା'ର ପ୍ରୟୋଗ ଆବଶ୍ୟକ । ବାହ୍ୟିକ କ୍ରିୟା ସମ୍ବନ୍ଧରେ ଏହା ଯେପରି ସତ୍ୟ, ମାନସିକ କ୍ରିୟା ସମ୍ବନ୍ଧେ ମଧ୍ୟ ତଦ୍ରୂପ ।

ମାନବଜୀବନକୁ ନିୟମିତ ଓ ସଂଯତ କରିବା ନିମନ୍ତେ ଆମ ଦେଶରେ ପୂର୍ବେ ବର୍ଣ୍ଣାଶ୍ରମ ଧର୍ମର ପ୍ରଚଳନ ଥିଲା । ଏବେ ତାହା ଲୋପ ପାଇଲାଣି । ଆଜି ସେ କଥା କହିବାର ପ୍ରୟୋଜନ ନାହିଁ ।

'ବ୍ରହ୍ମଚର୍ଯ୍ୟ' ଶବ୍ଦ ଆଜି ଗୋଟିଏ ସଂକୀର୍ଣ୍ଣ ଅର୍ଥରେ ବ୍ୟବହୃତ ହୁଏ—''ବୀର୍ଯ୍ୟଧାରଣମ୍ ବ୍ରହ୍ମଚର୍ଯ୍ୟମ୍'' । ଶାସ୍ତ୍ରରେ ଅଛି, ''ମରଣଂ ବିନ୍ଦୁପାତେନ ଜୀବନଂ ବିନ୍ଦୁଧାରଣାତ୍'' । ବିନ୍ଦୁ ଅର୍ଥାତ୍ ରେତଃ ଶରୀରର ସାର । ତାହାର ଅପବ୍ୟୟ ବା ଅମିତବ୍ୟୟ କଲେ ଶାରୀରିକ ଓ ମାନସିକ ଉଭୟବିଧ ମହାନିଷ୍ଟ ହୁଏ । ଯେ ମେଧାବୀ ଓ ବଳଶାଳୀ ହେବାକୁ ଇଚ୍ଛା କରିବ ସେ ସର୍ବଦା ଏଥିପ୍ରତି ଦୃଷ୍ଟି ରଖିବ । ବୀର୍ଯ୍ୟର ଅପଚୟ କଲେ ଆଗେ ଶରୀର ଓ ସ୍ୱାସ୍ଥ୍ୟ ଭଗ୍ନ ହୋଇଯାଏ । ଆୟୁର୍ବେଦ ମତରେ ଆମେ ଯାହା ଆହାର କରୁ, ପାକସ୍ଥଳୀରେ ତାହା ପଚନ ହୋଇ ସାରାଂଶ ମାତ୍ର ରକ୍ତରୂପରେ ହୃଦୟ ଭିତରକୁ ଯାଏ । ସେଠାରେ ସେହି ରକ୍ତର ସାରାଂଶ ମାଂସ ଆକାର ଧାରଣ କରେ । ପୁଣି ପଚନ ହୋଇ ତା'ର ସାର ଭାଗ ମେଦରେ ପରିଣତ ହୁଏ । ମେଦର ସାର ଭାଗ ଅସ୍ଥି ହୁଏ । ଅସ୍ଥିର ସାର ମଜ୍ଜା ହୁଏ । ଶେଷରେ ମଜ୍ଜାର ସାରାଂଶ ବୀର୍ଯ୍ୟରୂପ ଧରେ । ଏହି ପ୍ରକ୍ରିୟା ପୂର୍ଣ୍ଣ ହେବାକୁ ମାସାଧିକ ସମୟ ଲାଗେ । ଏଥିରୁ ବୁଝିହୁଏ, ଏହି ବୀର୍ଯ୍ୟ କେତେ ସାରର ସାର । ଶରୀରସ୍ଥ ଛଅ ଧାତୁ ମଧ୍ୟ ଦେଇ ପର୍ଯ୍ୟାୟକ୍ରମେ ଶୋଧିତ ହୋଇ ହୋଇ ଏହି ମହା ମୂଲ୍ୟବାନ ଶୁଭ୍ର ସୁବର୍ଣ୍ଣ ଉତ୍ପନ୍ନ ହୁଏ । ହାୟ, ଆମେ ଏ ଅମୂଲ୍ୟ ନିଧିର ରକ୍ଷା ନିମନ୍ତେ କେଡ଼େ ଅସାବଧାନ ! ଆଜିକାଲି ଶିକ୍ଷିତ ସମାଜରେ ଯେଉଁସବୁ କଙ୍କାଳସାର ବା ସାରହୀନ ରୁଗ୍ଣ, ଦୁର୍ବଳ, ମୂର୍ତ୍ତିମାନ ଦେଖିବାକୁ ମିଳେ, ସେ ସବୁ ଅଧିକାଂଶ ଏହି ବିଷୟରେ ଅସାବଧାନତା ଓ ଅପରିଣାମଦର୍ଶିତାର ଫଳ । ବିଶେଷତଃ ବାଲ୍ୟ ବା ଅପରିଣତ ଅବସ୍ଥାରେ ବୀର୍ଯ୍ୟପାତ ଦ୍ୱାରା ସ୍ୱାସ୍ଥ୍ୟର ଯେ ଅନିଷ୍ଟ ଓ ଅମଙ୍ଗଳ ଘଟେ ତାହା ସାରା ଜୀବନରେ ପୂରଣ କରି ହୁଏ ନାହିଁ । ଏଥିପାଇଁ ବର୍ଣ୍ଣାଶ୍ରମ ନିୟମାନୁସାରେ ୭ ବର୍ଷଠାରୁ ୨୧ ବର୍ଷଯାକେ ଗୁରୁଗୃହବାସ ଓ କଡ଼ା ନିୟମର ବ୍ୟବସ୍ଥା ଥିଲା । ତରୁଣ ଅବସ୍ଥାରେ ପୂର୍ଣ୍ଣଭାବରେ ବୀର୍ଯ୍ୟଧାରଣ କରିବା ଉଚିତ । କୈଶୋର କାଳଟି ବଡ଼ ବିପଦର ବେଳ । ଯେତେବେଳେ ପ୍ରଥମେ ବୀର୍ଯ୍ୟପତନ ଆରମ୍ଭ ହୁଏ ଓ ବୀର୍ଯ୍ୟ ଦୃଷ୍ଟିଗୋଚର ହୁଏ, ବାଳକ ଯେପରି ଗୋଟିଏ ନୂତନ ରାଜ୍ୟରେ ପ୍ରବେଶ କରେ । ସେ ସମୟରେ ଉତ୍ତେଜନା ଅଧିକ ହୁଏ ଓ କୌତୂହଳ ମଧ୍ୟ ବଢ଼େ । ଏହି ବେଳଟି ଜିଣି ନ ପାରିଲେ ସାରା ଜୀବନ କଷ୍ଟ ଭୋଗିବାକୁ ପଡ଼େ । ବୀର୍ଯ୍ୟ କି ବହୁମୂଲ୍ୟ ବସ୍ତୁ, ପିଲାଏ ତାହା ଜାଣନ୍ତି ନାହିଁ ଏବଂ ସେତେବେଳେ ବିଚାରର କ୍ଷମତା ମଧ୍ୟ ତାଙ୍କର ନଥାଏ । ଥରେ କୌଣସି କାରଣରୁ ବୀର୍ଯ୍ୟପାତ ହୋଇଗଲେ ବାଳକର ଯେପରି କି ନିଶା ଲାଗିଯାଏ । ନୂତନ ଅଭିଜ୍ଞତା ଓ ନୂତନ ଆନନ୍ଦର ଆସ୍ୱାଦନ ପାଇ ସେ ପାଗଳ ହୋଇ ଉଠେ । ଯେଉଁ ବୀର୍ଯ୍ୟର ଏକ ବିନ୍ଦୁ ପତନରେ ସୁଦ୍ଧା ଏତେ ଆନନ୍ଦ, ସେ ବୀର୍ଯ୍ୟ କେତେ ଆନନ୍ଦର ଆଧାର ହୋଇ ନ ଥିବ ! ଯଦି ତାହା କ୍ଷୟ ନହୋଇ ଶରୀର ମଧ୍ୟରେ ରହନ୍ତା ତେବେ ସେ କେତେ ବିପୁଳ ଓ ନିରବଚ୍ଛିନ୍ନ ଆନନ୍ଦ ଦେଇ ନ ପାରନ୍ତା !! ଆମ ଦେଶର କିଶୋର ଓ ତରୁଣମାନଙ୍କର ଏଥିପ୍ରତି ବିଶେଷ ଦୃଷ୍ଟି ଦେବା ଦରକାର ।

## ଯୌନକ୍ରିୟା

ଯୌନସଙ୍ଗମ ପ୍ରାଣୀମାତ୍ରର ସ୍ୱଭାବଧର୍ମ ଓ ଏହା ଗୋଟିଏ ପ୍ରାକୃତିକ ପ୍ରୟୋଜନୀୟତା । ଜୀବସୃଷ୍ଟିର ଏକମାତ୍ର ଉପାୟ ପ୍ରକ୍ରିୟା ଯୌନମିଳନ । ପଶୁ, ପକ୍ଷୀ, କୀଟ, ପତଙ୍ଗ, ଏପରି କି ବୃକ୍ଷଲତା, ଉଦ୍ଭିଦଗଣ ମଧ୍ୟ କେହି ଏଥିରୁ ବିରତ ନୁହନ୍ତି । ମନୁଷ୍ୟ ବ୍ୟତୀତ ଆଉ ସମସ୍ତେ ଋତୁ, କାଳ ଓ ନିୟମାନୁଯାୟୀ ଏଥିରେ ଉପଗତ ହୁଅନ୍ତି । ଏକା ମନୁଷ୍ୟ ନିଜର ବୁଦ୍ଧି କୌଶଳରେ ଏହାକୁ ଗୋଟିଏ କୃତ୍ରିମ କଳାରେ ପରିଣତ କରିପକାଇଛି । ଏହି ହେତୁ ମନୁଷ୍ୟ ସବୁବେଳେ ପ୍ରାକୃତିକ ବିଧି ଲଙ୍ଘନ କରି ବସୁଛି ଓ ତାର କୁ-ଫଳ ଭୋଗ କରୁଛି । ନିର୍ବୋଧ ଇତର ପ୍ରାଣୀଙ୍କର ସେ ଭୟ ନାହିଁ । ଯଦି ମନୁଷ୍ୟ ବିଧିନିଷେଧ ମାନି, କେବଳ ଜୈବ ପ୍ରୟୋଜନ ବୁଝି ଶରୀରଧର୍ମ ପାଳିବା ଉଦ୍ଦେଶ୍ୟରେ ଯୌନକ୍ରିୟାରେ ଆପଣାକୁ ନିୟୋଜିତ କରେ ତେବେ ସେ ତହିଁରୁ ଯେଉଁ ଆନନ୍ଦ, ତୃପ୍ତି ଓ ସାର୍ଥକତା ଲାଭ କରିବ ତାହା ଯେପରି ପ୍ରଚୁର ସେହିପରି ପ୍ରଗାଢ଼ ।

ସଂଯତ ଓ ବୈଧ ରତିକ୍ରିୟା ଶରୀର ଓ ସ୍ୱାସ୍ଥ୍ୟର ଉନ୍ନତି-ବିଧାୟକ । କ୍ଲାନ୍ତ, ଚିନ୍ତାଗ୍ରସ୍ତ ବା ଅସୁସ୍ଥ ରୁଗ୍ଣ ବ୍ୟକ୍ତି ରମଣରୁ

ବିରତ ହେବେ । କେବଳ ସ୍ୱପତ୍ନୀ ସହିତ ରମଣ କରିବା ବିଧେୟ । ଯେଉଁ ନାରୀ ରଜସ୍ୱଳା ବା ଗର୍ଭବତୀ ହୋଇଥିବ ସେ ବର୍ଜନୀୟା । ଆତ୍ମୀୟା, ପୁରୁଷଠାରୁ ଅଧିକ ବୟସ୍କା ଓ ବହୁପୁରୁଷଗାମିନୀ ଦୁଷ୍ଟଚରିତା, ଅପରିଚ୍ଛନ୍ନା ରମଣୀ ସର୍ବଦା ଅସ୍ପୃଶ୍ୟା । ଉଭୟ ପକ୍ଷ ହୃଷ୍ଟଚିତ୍ତ, ରମଣାଭିଳାଷୀ ଓ ପରସ୍ପର ପ୍ରତି ଅନୁରକ୍ତ ଥିବା କାଳରେ ସହବାସ ବିଧେୟ । ଏ ଭଳି ମିଳନ ଦ୍ୱାରା ସ୍ତ୍ରୀ-ପୁରୁଷ ଉଭୟର ଶାରୀରିକ ଲାଭ ହୁଏ । ଉଭୟର ଶରୀର-ରସ ଉଭୟେ ଶୋଷଣ କରନ୍ତି । ଜଣେ କେହି ତନ୍ମଧ୍ୟରୁ ବ୍ୟାଧିଗ୍ରସ୍ତ ବା ମାନସିକ ବିକାରଯୁକ୍ତ ଥିଲେ ଅପରର ତଦ୍ଦ୍ୱାରା ଅନିଷ୍ଟ ହେବା ସମ୍ଭବ । ଏ ନିମନ୍ତେ ଆପଣାର ବିବାହିତା, ପ୍ରେମଯୁକ୍ତା ଧର୍ମପତ୍ନୀ ବ୍ୟତୀତ ଅନ୍ୟ କାହାରି ସହିତ ଉପଗତ ହେବା ସ୍ୱାସ୍ଥ୍ୟ ପକ୍ଷରେ ଅନିଷ୍ଟକର । ଦକ୍ଷିଣ ଶ୍ୱାସ କାଳରେ ସଙ୍ଗମ କର୍ତ୍ତବ୍ୟ ।

## ବେଶ୍ୟା ଗମନ

ବହୁ ପତ୍ନୀବିରହିତ ବ୍ୟକ୍ତି ଓ ଅନେକ ଅବିବାହିତ ବ୍ୟକ୍ତିଙ୍କୁ ବେଶ୍ୟାସକ୍ତ ହେବାର ଦେଖାଯାଏ । କେହି କେହି ଯୌନକ୍ଷୁଧା ମେଣ୍ଟାଇବା ଆଶାରେ କେହି ବା ଫୁର୍ତ୍ତି କରିବା ଉଦ୍ଦେଶ୍ୟରେ ବାରବିଳାସିନୀ ଗୃହକୁ ଯାଆନ୍ତି । ତଦ୍ଦ୍ୱାରା ଯେ ନିଜ ଧର୍ମପତ୍ନୀ ପ୍ରତି ଅବିଚାର ଓ ବିଶ୍ୱାସଘାତକତା କରାହୁଏ, ଏକଥା କହିବା ବାହୁଲ୍ୟ । ଧନ, ମାନ ଓ ଚରିତ୍ରର ହାନି ଲାଗି ରହିଛି । ମାତ୍ର ସ୍ୱାସ୍ଥ୍ୟର ଯେ କି ଭୟଙ୍କର ହାନି ତାହା ପଛରେ ଲୁକ୍‌କାୟିତ ଭାବରେ ଥାଏ, ତାହା ଜାଣି ମୂର୍ଖ ଲୋକେ ଅନ୍ଧ ହୋଇ ବସନ୍ତି । ପରେ ଭାଗ୍ୟର ଦୋଷ ଦେଇ ବା ଅନୁତାପ କରି କିଛି ଫଳ ହୁଏ ନାହିଁ । ଆପଣା କୃତକର୍ମର ଫଳ ଆପଣାକୁ ଭୋଗିବାକୁ ପଡ଼େ ।

ପ୍ରଥମତଃ ବେଶ୍ୟାଳୟରେ ନୃତ୍ୟଗୀତ, କୃତ୍ରିମତା, ମନ-ଭୁଲାଣିଆ ହାବଭାବ, ସାଜସଜ୍ଜା, ଶ୍ରବାଳାପ ଏପରିକି ମାଦକ ଦ୍ରବ୍ୟାଦିର ପରିବେଷ୍ଟନୀ ମଧ୍ୟରେ ଅଯଥା କାମ ବିକାରର ବୃଦ୍ଧି ହୁଏ ଓ ତଦ୍ଦ୍ୱାରା ମାନବ ଆପଣାର ଶକ୍ତିକୁ ବଳ ରେତଃପାତ କରି ଆପଣାର ଅନିଷ୍ଟ ଆପେ ବରଣ କରେ ।

ଦ୍ୱିତୀୟତଃ ବେଶ୍ୟାମନ୍ଦିରମାନ ମାରାତ୍ମକ ରୋଗର ନିବାସ । ଅଜ୍ଞାତକୁଳଶୀଳ ବହୁ ବ୍ୟକ୍ତିର ଅବାରିତ ଦ୍ୱାର । କାହା ଶରୀରରେ କି ମାରାତ୍ମକ ବୀଜାଣୁ ଅଛି, ତା'ର ଠିକ୍ ନାହିଁ । ମାତ୍ର ତହିଁର ଅଧିଷ୍ଠାତ୍ରୀ ଦେବୀ ହତଭାଗିନୀ ନାରୀ ସେ ସମସ୍ତ ନିଜର ଶରୀରରେ ରୁଣ୍ଡାଇ ରଖିଥାଏ । ନବାଗତ ବ୍ୟକ୍ତି ତାହାର ଅଙ୍ଗ ସମ୍ପର୍କରେ ଆସି ସେଥିରୁ ଥୋକାଏ ଶୋଷଣ କରେ ।

ବିଶେଷତଃ ଗର୍ମି (Syphilis) ଓ ମେହ (Gonorrohea) ନାମକ ଦୁଇ ଉତ୍କଟ ବ୍ୟାଧିର ଜନ୍ମସ୍ଥାନ ଏହିଠି । ଏଥିରେ ସାବଧାନ ହେଲେ ସୁଦ୍ଧା ଏଥିରୁ ନିଃସନ୍ଦେହରୂପେ ରକ୍ଷା ପାଇବାର ଉପାୟ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ଏ ଦୁଇ ରୋଗ ଯମଙ୍କର ଅଗ୍ରଦୂତ—ଅନ୍ୟ ବହୁ ମହାବ୍ୟାଧିର ପିତା । ଏ ଦୁଇରୁ ଗୋଟିଏ ଯାହାକୁ ଧରିଲା, ତା'ର ଜନ୍ମ ମାଟି, ଜୀବନ ମାଟି । ପୂର୍ଣ୍ଣ ଆରୋଗ୍ୟ ତ ହୁଏ ନାହିଁ; ଯଦି ଆରୋଗ୍ୟ ହେଲା ପରି ଜଣାଯାଏ, ତେବେ ଆଉ ନାନା ଉପସର୍ଗ ଆଣି ଦେଇ ଆପେ ଲୁଚି ରହେ ମାତ୍ର ।

ଦୁଃଖର କଥା, ଏ ରୋଗମାନ ଆଜିକାଲି ପ୍ରାୟ ଘୋଟି ଗଲଣି । ଖାଲି ଗୁହ ବା ସହରିଆଙ୍କ ମଧ୍ୟରେ ନୁହେ, କଲିକତା, ରେଙ୍ଗୁନ ପ୍ରବାସୀ ମଫସଲିଆ ଭାଇମାନେ ମଧ୍ୟ ଏମାନଙ୍କୁ ବହୁତ ଆମଦାନି କରୁଅଛନ୍ତି । ଅଳ୍ପିର କଉଡ଼ି, ଦେହର ବଳ, ଉତ୍କଟ ମହତ ଖୁଆଇ ଏ ସବୁ କିଣିବାଠାରୁ ଆଉ ନିର୍ବୁଦ୍ଧିତାର କାମ ଅଛି କି ?

## ଅସ୍ୱାଭାବିକ ପ୍ରକ୍ରିୟା

ମାନବର ମେଧା ରେତଃ ସ୍ଖଳନର ନାନାବିଧ କୃତ୍ରିମ ଉପାୟମାନ ଆବିଷ୍କାର କରିଛି । ତହିଁ ମଧ୍ୟରୁ ହସ୍ତମୈଥୁନ ଓ ପୁଂମୈଥୁନ ପ୍ରଧାନ । ଏ ଦୁଇ ରୋଗ ଯୁବସମାଜରେ ଏତେ ଅଧିକ ଯେ ତହିଁରୁ ବାହାର କେତେ ଜଣ, ଏହା କଳିବା ଦୁଷ୍କର । ପ୍ରାୟ ଭଦ୍ରଘରର ପିଲାମାନେ ଏ ବିଷୟରେ ପ୍ରାଥମିକ ଜ୍ଞାନ ଲାଭ କରନ୍ତି ଚାକରବାକରଙ୍କଠାରୁ । ସ୍କୁଲକୁ ଯାଇ ବୟସ୍କ ଯୁବକଙ୍କଠାରୁ ସେ ଜ୍ଞାନର ପ୍ରସାର ହୁଏ; ଓ ସତ୍ୟ କହିବାକୁ ଗଲେ ଅନେକ ସ୍ଥଳରେ ଶିକ୍ଷକଙ୍କ ଦ୍ୱାରା ତା'ର ପରିପକ୍ୱତା ଆସେ । ସେହିମାନେ ପୁଣି ଅନ୍ୟଙ୍କ ଗୁରୁ ହୁଅନ୍ତି । ଏହିପରି ଭାବରେ ଏହା ପ୍ରଚରିତ ଓ ଦିନକୁ ଦିନ ପ୍ରସାରିତ ହୋଇ ଚାଲିଛି । ଏହାର ପରିଣାମ ଯେ କେଉଁଠି ତାହା କିଏ କହିବ ? ଆମ ଯୁବସମାଜରେ ଯେଉଁ ରୁଗ୍ଣ, ଅସ୍ଥି-ପଞ୍ଜରସାର, କୋଟରଗତଚକ୍ଷୁ, ଲାବଣ୍ୟ ଓ ତେଜହୀନ ଚେହେରାର ଉଦାହରଣମାନ ପ୍ରାୟଶଃ ଦେଖିବାକୁ ମିଳେ, ସେଥିପାଇଁ ଆଧୁନିକ ଶିକ୍ଷାପ୍ରଣାଳୀ ଯେତେ ଦାୟୀ, ତାହାଠାରୁ ଅଧିକ ଦାୟୀ ଏହି କୁ-ପ୍ରଥା ।

ଅସ୍ୱାଭାବିକ ରତିର ଆଉ ଏକ ଜନ୍ମସ୍ଥଳୀ ଯାତ୍ରା ବା ନାଟକ ଦଳ । ଏହିପରି ଭାବରେ ଦେଶର ଅନ୍ତଃସ୍ଥଳରେ ଏ ଦୁର୍ଗତି ପ୍ରବେଶ କରୁଛି ଓ କ୍ରମେ ମାଡ଼ିଯାଉଛି ।

ପୁରୁଷର ଜନନେନ୍ଦ୍ରିୟ କେତେଗୁଡ଼ିଏ ଶିରାସ୍ନାୟୁର ଗୁଚ୍ଛ ମାତ୍ର । ହସ୍ତଦ୍ୱାରା ଅସ୍ୱାଭାବିକ ଉପାୟରେ ଅପରିଣତ ଓ କୋମଳ ପୁରୁଷାଙ୍ଗ ସଞ୍ଚାଳନ ହୋଇ ହୋଇ ଉକ୍ତ ଇନ୍ଦ୍ରିୟର ସ୍ନାୟୁଗୁଡ଼ିକ କ୍ରମେ ଶିଥିଳ ଓ ଦୁର୍ବଳ ହୋଇପଡ଼ନ୍ତି । ଶୁକ୍ରାଶୟଦ୍ୱାରର ଅଭ୍ୟନ୍ତରରେ ବସ୍ତି ଥାଏ । ବସ୍ତିଠାରୁ ଦୂଷିତ ବସ୍ତୁ ଆଉ କ'ଣ ହୋଇପାରେ ? ମାତ୍ର ଅପରିଣାମଦର୍ଶୀ ବାଳକ ବା ଯୁବା ଆପାତ-ମାଧୁର୍ଯ୍ୟ ଲାଭ ଲୋଭରେ ଏହି ଘୃଣ୍ୟ ଓ ଜଘନ୍ୟ କର୍ମରେ ରତ ହୋଇ, ସେହିସବୁ ବିଷକୁ ନିଜ ଶରୀରକୁ ଟାଣି ଆଣେ । ଯେଉଁ-ମାନେ ଏଥିରେ ବେଶୀ ଆସକ୍ତ ହୁଅନ୍ତି, ସେମାନଙ୍କର ରୁଚି କ୍ରମେ ଏପରି ବଦଳିଯାଏ ଯେ, ସେମାନେ ସ୍ୱାଭାବିକ ସଙ୍ଗମକୁ ପସନ୍ଦ କରନ୍ତି ନାହିଁ; ବିଷ୍ଠା କୀଟ ପରି ଏହି ନରକ କୁଣ୍ଡରେ ବିହାର କରିବାକୁ ସୁଖ ମଣନ୍ତି । ଦେହର ସାରାଂଶ ତ ଯାହା ନଷ୍ଟ ହୁଏ, ପୁଣି କଠିନ ଘର୍ଷଣ ଦ୍ୱାରା କୋମଳ ଶିରାଗୁଚ୍ଛଟିର ସୂକ୍ଷ୍ମ ସ୍ପର୍ଶ ଶକ୍ତି ବିନଷ୍ଟ ହୋଇଯାଏ ଓ ଭବିଷ୍ୟତରେ ନାରୀସଙ୍ଗମର ବା ସନ୍ତାନ-ଜନନର କ୍ଷମତା ରହେ ନାହିଁ । ମନୁଷ୍ୟଜନ୍ମର ସୁଖ ଶାନ୍ତି ଉପଭୋଗ ସମସ୍ତ ଏହି କ୍ଳୀବତ୍ୱ ବୈକଲ୍ୟରେ ପର୍ଯ୍ୟବସିତ ହୁଏ ।

ଏ ବ୍ୟାଧି ସମଗ୍ର ଜାତିର ମୂଳୋତ୍ପାଟନ କରିବାକୁ ବସିଛି । ଏହାର ଉପାୟ ବିଧାନ ନ କଲେ ଦିନେ ଜାତିଟା ଏକାବେଳେକେ ଧ୍ୱଂସ ହୋଇଯିବ । ବାଳକମାନଙ୍କୁ ବିନତି ଏତିକି, ସେମାନେ ସାବଧାନ ହୁଅନ୍ତୁ । ଆପଣାର ଇହକାଳ ପରକାଳ ଯେପରି ନଷ୍ଟ ନହୁଏ । ପିତାମାତା ବା ଶିକ୍ଷକମାନେ ମଧ୍ୟ ଅବଧାନ କରନ୍ତୁ; ଏ ବିଷୟରେ ତାଙ୍କର ମଧ୍ୟ କର୍ତ୍ତବ୍ୟ ଅଛି । ଏହା ନିବାରଣ କରିବା କଷ୍ଟସାଧ୍ୟ ସତ; ମାତ୍ର ଅସାଧ୍ୟ ନୁହେଁ । ହେଲା ନ କରି ଟିକିଏ ଏ ଦିଗକୁ ନଜର ରଖିଲେ ସେମାନେ ଅନେକ କରିପାରିବେ ।

ଜଣେ ପଣ୍ଡିତ ହସ୍ତମୈଥୁନ ରୋଧ କରିବାର ଏକ ଉପାୟ ବତାଇଛନ୍ତି । ସେ କହନ୍ତି, ଯଦି ପିଲାର ଜନନେନ୍ଦ୍ରିୟର ଅଗ୍ରଭାଗରେ ଥିବା ଚର୍ମ ଡାକ୍ତର ଦ୍ୱାରା କଟାଇ ଦିଆ ହୁଏ, ( ଯେପରି ମୁସଲ-ମାନଙ୍କର ସୁନ୍ନତ ହୁଏ ) ତେବେ ସେ ହସ୍ତମୈଥୁନ କରିପାରିବ ନାହିଁ । ଏଥିରେ ଉପକାର ହେବା ସମ୍ଭବ । ଆହୁରି ମଧ୍ୟ ଏହା କଲେ ଲିଙ୍ଗର ଅଗ୍ରଭାଗ ଉନ୍ମୁକ୍ତ ରହି ମଇଳା ଜମା ହୋଇ ପାରିବ ନାହିଁ । ପୁଣି ସେହି ଖୋଲା ଅଂଶର ସ୍ପର୍ଶଶକ୍ତି କମିଯିବ ଏବଂ ତଦ୍ଦ୍ୱାରା ଅଳ୍ପ କାରଣରେ ବା ଅଳ୍ପ ସଂଘର୍ଷରେ ଲିଙ୍ଗ ଉତ୍ତେଜିତ ହେବ ନାହିଁ ।

ଅଭିଭାବକ ବା ଶିକ୍ଷକ ସର୍ବଦା ଦେଖିବେ ପିଲା ଯେପରି ଅସତ୍ ସଙ୍ଗରେ ନ ମିଶେ । ପିଲାକୁ ତା'ର ଇଚ୍ଛାବିରୁଦ୍ଧରେ କବାଟ କିଳି ରଖିବା ବା ଅଟକ କରିବା ଭଲ ନୁହେଁ । ବାଳକର ସ୍ୱଭାବ ସେ ବାରିତ ଦ୍ରବ୍ୟ ପ୍ରତି ଅଧିକ ଆକର୍ଷିତ ହୁଏ । ତା'ର ମନ ବିଦ୍ରୋହୀ ହୋଇଯାଏ । ପିଲାକୁ ସ୍ୱାଧୀନତା ଦେବାକୁ ହେବ; ଏଣେ ଦକ୍ଷତାର ସହିତ ତା'ର ମତି, ଗତି ଓ ରୁଚିକୁ ସୁମାର୍ଗରେ ଚାଳିତ କରିବାକୁ ହେବ ।

## ବ୍ୟାୟାମ

ଜୀବିକା ଅର୍ଜନ ପାଇଁ ଯେଉଁମାନେ ଶାରୀରିକ ପରିଶ୍ରମ କରନ୍ତି, ସେମାନଙ୍କର ବ୍ୟାୟାମ ଆବଶ୍ୟକ ହୁଏ ନାହିଁ । ତେବେ ତାଙ୍କ ମଧ୍ୟରେ ମଧ୍ୟ ଏପରି କେତେକ ଶ୍ରେଣୀର ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କର କୌଣସି ଗୋଟିଏ ଯୋଡ଼ିଏ ଅଙ୍ଗ ଅତ୍ୟଧିକ ପରିଚାଳିତ ହୁଏ, ଅଥଚ ଅନ୍ୟାନ୍ୟ ଅଙ୍ଗ ଆଦୌ ହୁଏ ନାହିଁ । ଯେପରି କମାର ବସି ଭାତି ଟାଣେ ଓ ଲୁହା ପିଟେ । ସେହିହେତୁ ତାର ବାହୁଦ୍ୱୟ ପୁଷ୍ଟ ଓ ସବଳ । ତନ୍ତୀର କେବଳ ଗୋଡ଼ ଓ ହାତ ଚଳେ । କଳମାନଙ୍କରେ କାମ କରୁଥିବା ଲୋକଙ୍କର ମଧ୍ୟ ସେହି କଥା । ବଣିଆର ପ୍ରାୟ କୌଣସି ଅଙ୍ଗ ପ୍ରୟୋଜନ ଅନୁସାରେ ପରିଚାଳିତ ହୁଏ ନାହିଁ ।

ମାତ୍ର ସର୍ବାଙ୍ଗର ଉପଯୁକ୍ତ ପରିଚାଳନା ଶରୀର ପକ୍ଷେ ହିତକର । କୌଣସି ଗୋଟିଏ ଅଙ୍ଗକୁ ବି ବାଦ୍ ଦେଲେ ଚଳିବ ନାହିଁ । ସେହି ଅଙ୍ଗଟି ଦୁର୍ବଳ ହୋଇ ଶରୀର-ତନ୍ତ୍ରର ଅନିଷ୍ଟ ଘଟାଇ ପାରେ । ଯେଉଁ ବ୍ୟାୟାମ ଦ୍ୱାରା ବାହାରର ସବୁ ଅଙ୍ଗପ୍ରତ୍ୟଙ୍ଗ ଓ ଭିତରର ସବୁ ଅନ୍ତ୍ର ଯନ୍ତ୍ର ସମ୍ୟକ୍ ଚାଳିତ ହୁଏ ତାହାହିଁ ସର୍ବୋତ୍କୃଷ୍ଟ । ତହିଁରେ ମାଂସପେଶୀମାନ ସବଳ ଓ କାର୍ଯ୍ୟକ୍ଷମ, ରକ୍ତର ଗତି ବେଗବାନ୍ ଓ ଅଭ୍ୟନ୍ତରର ମଳ ବହିଷ୍କୃତ ହୋଇ ମୋଟ ଉପରେ ସାରା ଶରୀରକୁ ଅଧିକ କ୍ଳେଶ-ସହନକ୍ଷମ କରାଏ । ଦେହର ସ୍ଫୂର୍ତ୍ତି ଓ ମନର ସ୍ଫୂର୍ତ୍ତି ଆଣିବାରେ ବ୍ୟାୟାମ ଅଦ୍ୱିତୀୟ । ପୁଣି ଶରୀର ସୁସ୍ଥ ଥିବା, ରକ୍ତପ୍ରବାହ ପ୍ରବଳ ଥିବା ହେତୁ ବାହାରର ଅପକାରୀ ବୀଜାଣୁ ଶରୀରରେ ପ୍ରବିଷ୍ଟ ହୋଇ ପାରନ୍ତି ନାହିଁ ଓ ଯଦି ହୁଅନ୍ତି, ଅଧିକ କ୍ଷଣ ରହି ପାରନ୍ତି ନାହିଁ ।

ଯେଉଁମାନେ ତକିଆକୁ ଆଉଜି ବସି ବଟା ବଟା ପାନର ଶ୍ରାଦ୍ଧ କରୁଥାଆନ୍ତି, ତାସ ପଶାରେ ଦିନ କାଟନ୍ତି, ମୂଲ୍ୟବାନ ଓ ଗୁରୁପାକ ଦ୍ରବ୍ୟ ଭୋଜନ କରନ୍ତି ଓ କେଉଁଠାକୁ ବାହାରିବାକୁ ହେଲେ ଗାଡ଼ି ମଟର ଲାଗିଥାଏ ସେମାନଙ୍କର ନିୟମିତ ବ୍ୟାୟାମ ଆବଶ୍ୟକ ।

# ଶରୀରମାଦ୍ୟମ୍

ଆଜ ଏକ ଶ୍ରେଣୀର ଲୋକ ଅଛନ୍ତି, ଯେଉଁମାନେ ଅଧିକ ମସ୍ତିଷ୍କ ଚାଳନା କମ୍ବା ବସିଲା କାମ କରନ୍ତି । ବକୃରକ, ଓକିଲ, କରାଣୀ ପ୍ରଭୃତି କଚେରିଆ ଏହି ଶ୍ରେଣୀର ଅନ୍ତର୍ଗତ । ଆଜ ଦରଜୀ ଦୋକାନୀ, ଛାପାଖାନା କମ୍ପୋଜିଟର, ଦପ୍ତରୀ, ଖବରକାଗଜ ସମ୍ପାଦକ, ଗ୍ରନ୍ଥକାର ପ୍ରଭୃତିଙ୍କର ନିୟମିତ ବ୍ୟାୟାମ ପ୍ରୟୋଜନ ।

ମନୁଷ୍ୟ ଯେ କେବଳ କାୟିକ ବା କେବଳ ମାନସିକ ପରିଶ୍ରମ କରିବ, ଏହା ପ୍ରକୃତିଦେବୀଙ୍କର ଅଭିପ୍ରେତ ନୁହେ । ପ୍ରକୃତିର ନିୟମ—ସମତା ସାଧନ । ଯଦି କେହି ଶରୀର ପ୍ରତି ଅବହେଳା କରି କେବଳ ମସ୍ତିଷ୍କ ଉପରେ ଅଧିକ ଚାପ ଦିଅନ୍ତି, ତେବେ ଶରୀର ଶୀଘ୍ର କ୍ଷୀଣ ଓ ଦୁର୍ବଳ ହୋଇଯିବ । ଯେ ଠିକ୍ ପ୍ରାକୃତ ନିୟମରେ ଚଳିବ, ତା'ର ବ୍ୟାୟାମର ପ୍ରୟୋଜନ ନାହିଁ । କାରଣ ଦୈନିକ ଜୀବନଯାତ୍ରା ମଧ୍ୟରେ ଯଥେଷ୍ଟ ବ୍ୟାୟାମ ହୋଇଯିବ । ମାତ୍ର ଆମ୍ଭମାନଙ୍କର ଦୈନିକ କର୍ମପ୍ରବାହ ଏପରି ଅସ୍ୱାଭାବିକ ହୋଇଗଲାଣି ଯେ, ମାପିଚୁପି ଦେଖିଲେ ବ୍ୟାୟାମର ଦରକାର ପଡ଼ୁଛି । ପଶୁ, ପକ୍ଷୀ, କୀଟ, ପତଙ୍ଗ, ଉଦ୍ଭିଦ—ସମସ୍ତେ ଆପଣା ଆପଣା ପ୍ରୟୋଜନ ଅନୁସାରେ ଶରୀର ଚାଳନା କରୁଅଛନ୍ତି—ନାଚ, ଡେଇଁ, ଉଡ଼, ହଲ । ମାନବଶିଶୁ, ଯେ କୃତ୍ରିମତାର ହାଓଆ ସ୍ପର୍ଶ କରି ନାହିଁ, ସେ ମଧ୍ୟ ଆପେ ଆପେ ଅଙ୍ଗଚାଳନା କରୁଛି—ଦୌଡ଼, କୁଦ, ନାଚ, ଗାଇ । ଶେଯତଳିଟି ବି ହାତ, ଗୋଡ଼ ହଲାଉଛି; ରଡ଼ି କରୁଛି । ଅସଭ୍ୟ ବଣୁଆ ତା'ର ଦୈନିକ କର୍ମ କରି କେଡ଼େ ବଳୁଆ ହୋଇଛି । ବ୍ୟାୟାମ କ'ଣ ତାହା ସେ ତ ବୁଝିନାହିଁ । କେବଳ ସଭ୍ୟ ମାନବ ନିମନ୍ତେ ବ୍ୟାୟାମ ଲୋଡ଼ା । ମାନବ ଯଦି ତାର ସ୍ୱାଭାବିକ ଅବସ୍ଥାକୁ ଫେରି ଆସନ୍ତା ତେବେ ତାହାର ମଧ୍ୟ ବ୍ୟାୟାମର ଆବଶ୍ୟକତା ରହନ୍ତା ନାହିଁ ଓ ଏ ପୁସ୍ତକ ଲେଖିବାର ଦରକାର ପଡ଼ନ୍ତା ନାହିଁ ।

ଦୁଇ ଜାତିର ବ୍ୟାୟାମ ଅଛି । ଏକ ଜାତି—ଯାହା ଖେଳ ସହିତ ହୋଇଯାଏ, ଯଥା :—ବାଗୁଡ଼, ଦାଣ୍ଡିଆ, ଫୁଟ୍‌ବଲ, କ୍ରିକେଟ୍ ପ୍ରଭୃତି । ଅନ୍ୟ ଜାତି—ଯାହା କେବଳ ବ୍ୟାୟାମ କରିବା ନିମନ୍ତେ କରିବାକୁ ହୁଏ, ଯଥା:—ଦଣ୍ଡ, ବୈଠକ, ଜିମ୍‌ନାଷ୍ଟିକ୍, ଡମ୍‌ବେଲ୍ ପ୍ରଭୃତି । ପ୍ରଥମ ପ୍ରକାରର ବ୍ୟାୟାମର ସୁବିଧା ଏତିକି ଯେ ଆମୋଦ ପ୍ରମୋଦ କରୁଁ କରୁଁ ଅଙ୍ଗଚାଳନା ହେଉଥିବାରୁ ପରିଶ୍ରମର ବାଧା ଲାଗେନାହିଁ ବା ବିରକ୍ତି ଆସେନାହିଁ । ଏହାର ଅସୁବିଧା ମଧ୍ୟ ଏତିକି ଯେ ଶରୀରର ପ୍ରୟୋଜନକୁ ବେଳେବେଳେ ବଳିଯାଏ । ଦରକାରଠୁ ବଳି ବ୍ୟାୟାମ ଅଧିକ ହେଲେ ଶରୀରର ଅନିଷ୍ଟ ଘଟାଏ ।

ଦ୍ୱିତୀୟ ଜାତିର ବ୍ୟାୟାମ କେବଳ ମାଂସପେଶୀମାନଙ୍କୁ ଦୃଢ଼ କରାଏ ଓ ଭିତରର ଯନ୍ତ୍ରପାତି ସବଳ କରାଏ । ପ୍ରଥମ ଜାତିର ବ୍ୟାୟାମ ଅପେକ୍ଷା ଦ୍ୱିତୀୟ ଜାତି ଯେ ବେଶୀ କୃତ୍ରିମ ଏହା କହିବା ବାହୁଲ୍ୟ ମାତ୍ର । କିନ୍ତୁ ସ୍ଥଳବିଶେଷରେ ଓ ଅବସ୍ଥାଭେଦରେ ଏହାର ପ୍ରୟୋଜନୀୟତା ଅଛି । ବୃଦ୍ଧମାନଙ୍କ ପକ୍ଷରେ ଅଧିକ ବ୍ୟାୟାମ ଅହିତକର । କେତେକ ବିଶେଷ ରୋଗରେ ବ୍ୟାୟାମ କରିବା ନିଷିଦ୍ଧ । ରୋଗୀମାନଙ୍କର ଡାକ୍ତରଙ୍କ ଉପଦେଶାନୁଯାୟୀ ବ୍ୟାୟାମ କରିବା ଉଚିତ । ନାରୀମାନଙ୍କର ମଧ୍ୟ ଅବସ୍ଥାବିଶେଷରେ କୌଣସି କୌଣସି ବ୍ୟାୟାମ ଅପକାରୀ ।

ନିମ୍ନରେ କେତେକ ପ୍ରଚଳିତ ବ୍ୟାୟାମପ୍ରଣାଳୀର ଉପଯୋଗିତା ଉଲ୍ଲିଖିତ କରାଗଲା ।

୧ । ପହଁରିବା—ଏଥିରେ ସର୍ବାଙ୍ଗ ଉତ୍ତମରୂପେ ସଞ୍ଚାଳିତ ହୁଏ ଓ ଏହା ଶିକ୍ଷା କରିବା ସମସ୍ତଙ୍କର ଉଚିତ । ପିଲାଙ୍କର ଚିଙ୍ଗୁଡ଼ି-ବାଳିଆ ଖେଳରେ ପହଁରିବା ଦରକାର ।

୨ । ଘୋଡ଼ାଚଢ଼ା—ଏହା ମଧ୍ୟ ଉତ୍ତମ ବ୍ୟାୟାମ ଏବଂ ଏହା ଅଭ୍ୟାସ ଥିଲେ ଦରକାର ବେଳେ କାମରେ ଲାଗେ । ଅର୍ଶ ଓ ମୂତ୍ର ରୋଗୀଙ୍କ୍ ଏହା ଅନିଷ୍ଟକର ।

୩ । ଗଛଚଢ଼ା—ଉତ୍ତମ ଓ ଉପକାରୀ । ପିଲାଏ କରିବାକୁ ଭଲ ପାଆନ୍ତି । ଗଛରେ ଚଢ଼ି ବାଳମାଙ୍କୁଡ଼ି ଖେଳ ହୁଏ ।

୪ । ପୁଚିଖେଳ—ଝିଏ ପ୍ରାୟ ଏ ଖେଳ ଖେଳନ୍ତି । ସେମାନଙ୍କ ପକ୍ଷେ ଏହା ଉପଯୁକ୍ତ ବ୍ୟାୟାମ ।

୫ । ବାଗୁଡ଼—ଦାଣ୍ଡିଆ—ଖପରକାତି—ଭଲ ବ୍ୟାୟାମ । ମାତ୍ର ଅଧିକ ହେଲେ ଅହିତକର ।

୬ । ଦୌଡ଼ିବା, କୁଦିବା ପ୍ରଭୃତି—ବ୍ୟାୟାମ ସଙ୍ଗେ ସଙ୍ଗେ ଗୋଟିଏ ଉପକାରୀ ବିଦ୍ୟା ଶିକ୍ଷା ହୁଏ ।

୭ । ବାଡ଼ି, ବନଟି, ତରବାରି ଖେଳ—ଉତ୍କୃଷ୍ଟ ବ୍ୟାୟାମ । ଆତ୍ମରକ୍ଷା ବା ପରୋପକାର ପାଇଁ ଶିଖିବା ଉଚିତ ।

୮ । ଶିକାର—ବ୍ୟାୟାମ ଖୁବ୍ ହୁଏ । ମାତ୍ର ସାଧାରଣ ଉପଯୋଗୀ ନୁହେ ।

୯ । ହକି, ଫୁଟବଲ୍—ଏହି ଖେଳ ଖେଳ ହିସାବରେ ଏପରି ଚିତ୍ତାକର୍ଷକ ଓ ମଜୁଆର ଯେ ତାହାର ପ୍ରସାର ଖୁବ୍ ବଢ଼ିଲାଣି ଓ କ୍ରମେ ବଢ଼ୁଛି । ଏ ଖେଳ କିନ୍ତୁ ଦୁର୍ବଳ ବ୍ୟକ୍ତିଙ୍କ ପକ୍ଷେ ମହା ଅନିଷ୍ଟକର । ଫୁଟବଲ ଖେଳ ବସିଲେ ପରିମାଣ ଜ୍ଞାନ

ରହେ ନାହିଁ; ବରଂ ଅତିମାତ୍ରା ହୋଇ ଶରୀରକୁ କ୍ଷୟ କରାଏ । ଶୁଣାଯାଏ, ଜଗଦ୍‌ବିଖ୍ୟାତ ବଳବାନ୍ ପୁରୁଷ ସାଣ୍ଡୋ କହିଲେ, "ଫୁଟ୍‌ବଲ ଖେଳିବା ଭଳି ବଳ ମୋର ନାହିଁ" । ଫୁଟବଲ ଲୋକକୁ କ୍ଷିପ୍ର କରାଇପାରେ; ମାତ୍ର ସାଧାରଣ ସ୍ୱାସ୍ଥ୍ୟର ଅବନତି ଘଟାଏ ।

୧୦ । କ୍ରିକେଟ, ଟେନିସ, ବ୍ୟାଡ଼ମିନ୍‌ଟନ, ହକି ପ୍ରଭୃତି—ଏଗୁଡ଼ିକ ସବୁ ବିଦେଶରୁ ଆମଦାନି ହୋଇଥିବା ବହୁ ବ୍ୟୟ-ସାପେକ୍ଷ ଖେଳ । ଆମୋଦ ଦେବାରେ ଏମାନଙ୍କର ଶକ୍ତି ଯେତେ, ସ୍ୱାସ୍ଥ୍ୟୋନ୍ନତି ବିଷୟରେ ସେତେ ନୁହେ । ମାତ୍ର ହକି ଫୁଟବଲଠାରୁ ଏମାନଙ୍କର ଅପକାରିତା କମ୍ ।

୧୧ । ନାହା ବାହିବା ( Rowing ) —ନୌକା ବା ଜାଲି ବୋଟରେ ଆହୁଲା ଟାଣିବାରେ ଖୁବ ଭଲ ବ୍ୟାୟାମ ହୁଏ । ପାଣି ଉପରେ ନାହା ଚଳାଇବାରେ ଯେପରି ଆନନ୍ଦ ମିଳେ, ଶୀତଳ, ଉନ୍ମୁକ୍ତ ବାୟୁସେବନ ଦ୍ୱାରା ତତୋଧିକ ସ୍ୱାସ୍ଥ୍ୟର ଉପକାର ହୁଏ ।

୧୨ ବାଇସାଇକେଲ — ବ୍ୟାୟାମ ହିସାବରେ ସାଇକେଲ ଚଢ଼ାରେ ଲାଭ ଯେତିକି ଲୋକସାନ ତତୋଧିକ । ବେଶୀ ଚଢ଼ିଲେ ଗ୍ରନ୍ଥି, ଗୁହ୍ୟ ଓ ମୂତ୍ରନାଳୀରେ ରୋଗ ଜନ୍ମିବା ସମ୍ଭବ ।

୧୩ । ଜିମ୍‌ନାଷ୍ଟିକ୍—ଏଥିରେ ଆମୋଦ ଅଳ୍ପ । ଏ କସରତ୍ ବକ୍ଷ ଓ ବାହୁର ଉନ୍ନତି ସାଧନ କରେ । ଅନ୍ୟାନ୍ୟ ଅଙ୍ଗର ତାହା କରେ ନାହିଁ ।

୧୪ ଦଣ୍ଡ୍‌ବୈଠକ—ଦଣ୍ଡ ଓ ବୈଠକ ଦୁଇଟି ଭିନ୍ନ ଭିନ୍ନ ବ୍ୟାୟାମ । ଦୁହିଁଙ୍କୁ ଏକ ସଙ୍ଗରେ ନିୟମିତରୂପେ ଅଭ୍ୟାସ କଲେ ସର୍ବାଙ୍ଗର ଉପକାର ହୁଏ । ଏଥିରେ ପଇସା କଉଡ଼ିର ଲୋଡ଼ା ନାହିଁ ଓ ଏହା ପୂରା ଦେଶୀ କସରତ୍ । ଆମ ଦେଶ ପକ୍ଷେ ଅତିବ ଉପଯୋଗୀ ।

୧୫ । ମୁଦ୍‌ଗର—ଏହା ମଧ୍ୟ ଦେଶୀ ବ୍ୟାୟାମ । ମାତ୍ର ଏଥିରେ କାନ୍ଧ, ବାହୁ ଓ ବକ୍ଷର ଚାଳନା ବେଶୀ ହୁଏ । ଏହାଦ୍ୱାରା ଶରୀରର ଆଂଶିକ ଉପକାର ହୁଏ ।

୧୬ । ଡମ୍‌ବେଲ୍, ଡେଭେଲ ପାର—ବିଖ୍ୟାତ ପହଲୁଆନ୍ ସାଣ୍ଡୋ ଏହି ଡମ୍ବେଲ ବ୍ୟାୟାମର ପ୍ରବର୍ତ୍ତକ ଓ ସେ ନିଜେ ଏହି ବ୍ୟାୟାମ କରି ପୃଥିବୀର ସର୍ବଶ୍ରେଷ୍ଠ ବଳଶାଳୀ ବ୍ୟକ୍ତି ହୋଇ ପାରିଥିଲେ । ଡମ୍ବେଲ ଦ୍ୱାରା ସର୍ବାଙ୍ଗର ସମସ୍ତ ପେଶୀ ସ୍ଫୀତ ଓ ଦୃଢ଼ୀଭୂତ ହୋଇ ଅବୟବକୁ ସୁଦର୍ଶନ କରାଏ । ଯେଉଁମାନେ ଅପେକ୍ଷାକୃତ କ୍ଷୀଣକାୟ ଓ ଯେଉଁମାନଙ୍କ ଅଙ୍ଗପ୍ରତ୍ୟଙ୍ଗ ସାମଞ୍ଜସ୍ୟ-ବିହୀନ ସେମାନେ ନିୟମିତ ଭାବରେ ଡମ୍ବେଲ କଲେ ନିଶ୍ଚୟ ଉପକାର ପାଇବେ । କେହି କେହି କହନ୍ତି, ଡମ୍ବେଲ ପ୍ରତିକ୍ରିୟା ଅଳ୍ପକାଳସ୍ଥାୟୀ । ଯାହାହେଉ ଏହାର ଗୁଣ ବହୁ ପରୀକ୍ଷିତ । ଏତିକି କୁହାଯାଇ ପାରେ ଯେ ଏହା ନିତାନ୍ତ ନୀରସ । ଲେଶ ମାତ୍ର ଆମୋଦ ନାହିଁ । କେବଳ ରୋଗରେ ବିସ୍ୱାଦୁ ଔଷଧ ଗିଳିଲାଭଳି ସ୍ୱାସ୍ଥ୍ୟ ପାଇଁ ଏହା କରିବାକୁ ହୁଏ ।

ଡେଭେଲ ପାର ମଧ୍ୟ ଏହି ଜାତୀୟ ଏବଂ ଡମ୍ବେଲଠାରୁ କିଞ୍ଚିତ ଉନ୍ନତ ଓ ଅଧିକ ବ୍ୟୟସାପେକ୍ଷ ।

୧୭ । ଶ୍ୱାସ ଓ ଆସନ ପ୍ରକ୍ରିୟା—ଶ୍ୱାସପ୍ରଶ୍ୱାସର ପରିଚାଳନା ଦ୍ୱାରା ଭଲ ବ୍ୟାୟାମ ହୁଏ ବୋଲି ଆଧୁନିକ ବୈଜ୍ଞାନିକ-ମାନଙ୍କର ମତ । ହଠଯୋଗ କଥା ସମସ୍ତେ ଜାଣନ୍ତି । ହଠଯୋଗର ପ୍ରଧାନ ଉଦ୍ଦେଶ୍ୟ ସ୍ୱାସ୍ଥ୍ୟୋନ୍ନତି ଓ ଦୀର୍ଘଜୀବନ ଲାଭ । ସେଥିପାଇଁ ୮୪ ପ୍ରକାର ଆସନ ଓ ପ୍ରାଣାୟାମର ବ୍ୟବସ୍ଥା । ହଠଯୋଗ ସାଧନ ଗୁରୁ ବିନା ବିପଜ୍ଜନକ । କେବଳ ସ୍ୱାସ୍ଥ୍ୟ ସମ୍ବନ୍ଧରେ ଏତିକି କରାଯାଇପାରେ :—ଉନ୍ମୁକ୍ତ ନିର୍ଜନ ସ୍ଥାନରେ ପଦ୍ମାସନ କିମ୍ବା ଚକା ମାଡ଼ି ସିଧା ହୋଇ ବସି ଧୀରେ ଧୀରେ ନାସିକାଦ୍ୱାରା ଶ୍ୱାସ ପୂରଣ କରିବ । ସେହି ପବନକୁ ବକ୍ଷ ମଧ୍ୟରେ ଯେତେକ୍ଷଣ ପାରିବ ଅର୍ଥାତ୍ କଷ୍ଟ ନ ହେବାଯାଏଁ ରୋଧ କରିବ । ତାହାପରେ ଧୀରେ ଧୀରେ ତ୍ୟାଗ କରିବ । ଏହିପରି ୧୦।୧୨ ଥର ବା ଶକ୍ତ୍ୟନୁସାରେ ଅଧିକ କରାଯାଇପାରେ । ଏହା ସର୍ବବ୍ୟାଧିନାଶକ ବୋଲି କଥିତ ।

୧୮ । ନୃତ୍ୟଗୀତ—ନୃତ୍ୟ ଗୀତ ସବୁ ଚିତ୍ତପ୍ରଫୁଲ୍ଲକର, ଶରୀର-ହିତକର ପ୍ରାକୃତିକ ବ୍ୟାୟାମ । ସମସ୍ତ ପ୍ରାଣୀ ମନରେ ଉଲ୍ଲାସ ହେଲେ ନୃତ୍ୟଗୀତରେ ରତ ହୁଅନ୍ତି । ଆଦିମ ଜାତିର ଲୋକେ ଚାଙ୍ଗୁ ବଜାଇ ନୃତ୍ୟ କରନ୍ତି । ପାଶ୍ଚାତ୍ୟ ଦେଶର ସଭ୍ୟ ସ୍ତ୍ରୀ ପୁରୁଷ ବଲ୍ ନାଚରେ ମାତନ୍ତି । କେବଳ ଆମରି ଦେଶରେ ସେଉଟା ଯେପରି ନିନ୍ଦନୀୟ କାର୍ଯ୍ୟ ହୋଇପଡ଼ିଛି । ଯେ କରେ ସେ ସମାଜର ଥଟ୍ଟା ବିଦ୍ରୂପର ଭାଗୀ ହୋଇଥାଏ । ବିଭିନ୍ନ ଭଙ୍ଗୀସମ୍ବଳିତ ତାଳବଦ୍ଧ ଲାସ୍ୟ ଦ୍ୱାରା ସର୍ବାଙ୍ଗର ଯେପରି ପରିଚାଳନା ହୁଏ ସେପରି ଆଉ

କେଉଁଥିରେ ହୁଏ ନାହିଁ । ତାହା ଉପରେ ଗୀତ ଗାଇବା ଦ୍ୱାରା ପ୍ରାଣର ଆଧାର ଶ୍ୱାସଯନ୍ତ୍ର ସବଳ ହୁଏ । ଏଣେ ତାଳ ଲୟ ସଂଯୁକ୍ତ ଥିବାରୁ ସଙ୍ଗୀତର ମାଧୁରୀରେ ମନର ଅବସାଦ ଦୂର ହୋଇଯାଏ । ହାସ୍ୟାସ୍ପଦ ହେବା ଭୟରେ ବା ଲଜ୍ଜାବଶତଃ ଯଦି କେହି ଏଥିରେ ସଙ୍କୋଚ ବୋଧ କରନ୍ତି, ତେବେ ସେମାନେ ଧର୍ମାର୍ଜନ କରିବା ଉଦ୍ଦେଶ୍ୟରେ ହେଲେ ହରିନାମ ସଂକୀର୍ତ୍ତନ କରିପାରନ୍ତି । ସେଠି ସଙ୍କୋଚ ରହିବ ନାହିଁ । ପୁଣି ଉଭୟ ଦିଗରୁ ଲାଭ । ଉଦ୍ଦଣ୍ଡ କୀର୍ତ୍ତନକୁ ବଳି ସର୍ବଗୁଣସମ୍ପନ୍ନ ସ୍ୱାଭାବିକ ବ୍ୟାୟାମ ଆଉ କେହି ନୁହେଁ ।

## ଆମୋଦ-ପ୍ରମୋଦ

ଏ ଦୁଃଖ-ଜଞ୍ଜାଳ-ପୂର୍ଣ୍ଣ କର୍ମମୟ ସଂସାରରେ ମାନବର ବଞ୍ଚି ରହିବା ନିମନ୍ତେ ଯେ କୌଣସି ପ୍ରକାର ଆମୋଦ-ପ୍ରମୋଦ ଦରକାର । କଠୋର ଜୀବନ ସଂଗ୍ରାମର କ୍ଳାନ୍ତି ଦୂର କରିବ କିଏ ? ଯେ ଏହା ନ କରି ସବୁବେଳେ ଭଡ଼ା ଗାଡ଼ିର ଘୋଡ଼ା ପରି ବା ଧୂଆଁକଳ ପରି କେବଳ କାମରେ ଜୋକ ଭଳି ଲାଗି ରହିଛି ସେ ଅଭାଗା କରୁଣାର ପାତ୍ର । ପଶୁଠାରୁ ସୁଦ୍ଧା ସେ ଅଧମ— କେବଳ ଜଳି ପୋଡ଼ି ମରିବାକୁ ଆସିଛି । ଏ ଦରିଦ୍ର ଦେଶରେ ଅନେକ ଲୋକ ଅଛନ୍ତି ଯେଉଁମାନେ ଏହିପରି ନୀରସ, କଠୋର ଓ ଯନ୍ତ୍ରଣାମୟ ଜୀବନ ଯାପନ କରିବାକୁ ବାଧ୍ୟ ହୁଅନ୍ତି । ପୁଣି ଏପରି ବି ଅନେକ ଅଛନ୍ତି ଯେଉଁମାନେ ପରର ବହୁ ଆୟାସ-ଅର୍ଜ୍ଜିତ ଝାଳବୁହା ଧନରେ ବିନାଶ୍ରମରେ କେବଳ ଆମୋଦ-ପ୍ରମୋଦ କରି ଫୁର୍ତ୍ତି ଉଡ଼ାନ୍ତି କିମ୍ବା ପୈତୃକ ସଞ୍ଚିତ ଅର୍ଥର ଶ୍ରାଦ୍ଧ କରନ୍ତି । ଏପରି ଲୋକ ଦେଶର, ସମାଜର, ଜାତିର ଗଳଗ୍ରହ । ଜାଣିମୟ ସମ୍ପଦର ଉତ୍ପତ୍ତି ଓ ବୃଦ୍ଧି ନ କରି ଯେ ତାହା ବ୍ୟୟ କରେ, ସେ ବୋଝ ଯେତେ ଶୀଘ୍ର ଖଲାସ ହୁଏ ଦେଶ ସେତେ ଉଶ୍ୱାସ ।

ଏ ଉଭୟ ଶ୍ରେଣୀର ବ୍ୟକ୍ତି କେହି ଠିକ୍ ମାର୍ଗରେ ଚାଲୁ-ନାହାନ୍ତି । ପ୍ରକୃତିର ବିଧି, ମଧ୍ୟପନ୍ଥା ଅବଲମ୍ବନ ହିଁ ସେମାନଙ୍କ ପକ୍ଷେ ଶ୍ରେୟ । କର୍ମ କରିବା ଯେତିକି ଦରକାର, ଅବସର ବା ଆମୋଦ ମଧ୍ୟ ସେତିକି ଦରକାର । ତାହା ହେଲେ ଅନ୍ୟକୁ କଷ୍ଟ ଦେଇ ନିଜେ ଆମୋଦ ଉପଭୋଗ କରିବା ବା ଆପଣାର କ୍ଷତିକର ଆମୋଦରେ ରତ ହେବା ଉଚିତ ନୁହେଁ । ଦୁଇଜଣଙ୍କ ମଧ୍ୟରେ କଳି ଲଗାଇ ଦେଇ ଆପେ ବସି ମଜା ଦେଖିବା, ନିରୀହ ପଶୁପକ୍ଷୀଙ୍କୁ ଶିକାର ନାମରେ ମାରିବା, ବିରାଡ଼ି ପାଖରେ ମୂଷାଟିଏ ଛାଡ଼ିଦେଇ ଦୁର୍ବଳ ଜୀବଟିର ଜୀବନ-ମରଣରେ କୌତୁକ ଲାଭ କରିବା କିମ୍ବା କୁକୁଡ଼ା ଲଢ଼େଇରେ ଯୋଗ ଦେବା ପ୍ରଭୃତି ଆମୋଦ ନୁହେଁ, ଆସୁରିକ ନୃଶଂସତା । * ଆମୋଦ କରିବାର ନିର୍ଦ୍ଦୋଷ, ନିଷ୍ଫଳଙ୍କ ଆମୋଦ କର । ତାସ, ଗଞ୍ଜପା, ପଶା, କଉଡ଼ି ପ୍ରଭୃତି ବହୁ ପ୍ରକାର ଆମୋଦର ଉପାୟ ଅଛି । ଏମାନ ଅପେକ୍ଷାକୃତ ଭଲ ହେଲେ ମଧ୍ୟ ଏ ସବୁରେ ବେଶୀ ମାତିବା ଅନିଷ୍ଟକର । ଜଣ ଜଣଙ୍କୁ ଏପରି ନିଶା ଲାଗିଯାଏ ଯେ ଭାତ ଲୁଗା ପରି ଖେଳ ତାଙ୍କର ନିତ୍ୟକର୍ମ ହୋଇପଡ଼େ ଓ ସେମାନେ ଦିଗ୍‌ବିଦିଗ୍-ଜ୍ଞାନଶୂନ୍ୟ ହୋଇ ଅବାରିତ ଭାବରେ ଖେଳି ସୀମାବଦ୍ଧ ଜୀବନର ବହୁ ମୂଲ୍ୟବାନ ମୁହୂର୍ତ୍ତ ନଷ୍ଟ କରି ଦିଅନ୍ତି । ଅତି ଅନୁରକ୍ତି ହେଲେ ଆମୋଦ ପରିବର୍ତ୍ତେ କ୍ଳାନ୍ତି ଓ ଅବସାଦ ମଧ୍ୟ ଆସେ । ସ୍ଥଳବିଶେଷରେ କଳି ବିବାଦର ସୃଷ୍ଟି ମଧ୍ୟ ହୁଏ । ଯଦି କରାଯାଏ ତେବେ ପରିମିତ ଭାବରେ କରିବା ବିଧେୟ ।

## ପ୍ରାକୃତିକ ଶୋଭା

ଲୀଳାମୟୀ ବିଶ୍ୱପ୍ରକୃତି ଅପାର ଅପରିସୀମ ସୁଷମା-ସମ୍ପଦରେ ପୂର୍ଣ୍ଣ । ବର୍ଣ୍ଣବିଭବମୟ କୁସୁମରାଶି, ହରିତ୍‌ଶ୍ୟାମଳ ବୃକ୍ଷଲତା, ତରଙ୍ଗାୟିତ ନୀଳ ପର୍ବତଶ୍ରେଣୀ, କଳନାଦିନୀ ନଦୀ, ପ୍ରଶାନ୍ତ ବାରିନିଧି, ସ୍ୱଚ୍ଛ ସୁନୀଳ ଆକାଶ, ସ୍ନିଗ୍ଧ ଶ୍ୟାମ ମେଘମାଳା— କେଉଁଥିରେ ଶୋଭାର ଅଭାବ ? ଅରୁଣର ଉଦୟାସ୍ତରୂପ ବିଚିତ୍ର ଖେଳା, ଶଶଧରର ଦିଗନ୍ତୋଦ୍ଭାସୀ ଧବଳ ବିମଳ ଚନ୍ଦ୍ରିକାକୁ ବଳି ଚକ୍ଷୁ-ରସାୟନ ଆଉ କ'ଣ ହୋଇପାରେ ? ପଶୁପକ୍ଷୀର ସ୍ୱଚ୍ଛନ୍ଦ କ୍ରୀଡ଼ାକୌତୁକଠାରୁ, ମାନବଶିଶୁର ପ୍ରମୋଦବିଳାସଠାରୁ ଆଉ ନେତ୍ରମନୋରମ କ'ଣ ଅଛି ? ପ୍ରାଣ, ହୃଦୟର ତୃପ୍ତି, ଚିତ୍ତର ଶାନ୍ତି, ପ୍ରାଣର ଆନନ୍ଦଦାୟକ ରସମାଧୁରୀ ପ୍ରକୃତିର ଏହି ମଧୁର ଲୀଳାରେ ପୂରି ରହିଛି । ପ୍ରକୃତିର ସେ ଶାନ୍ତିମୟୀ ଶୋଭାକୁ ସେ ପ୍ରାଣମୟୀ ଲୀଳାକୁ ଯେ ଅଭିନିବେଶପୂର୍ବକ ନିରୀକ୍ଷଣ ଓ ଅନୁଧ୍ୟାନ କରେ, ସେ ପ୍ରକୃତ ଆମୋଦର ଅଧିକାରୀ ।

---

* ଦୁଇଟି କୁକୁଡ଼ାଙ୍କ ଗୋଡ଼ରେ ଧାରୁଆ ଛୁରୀ ବାନ୍ଧିଦେଇ ଲଢ଼ାଇ ଲଗାଇଦେଲେ ସେଥିରୁ ଗୋଟିଏ ଛୁରୀ ଦ୍ୱାରା ଆହତ ହୋଇ ଜଖମ ହେବ ବା ମରିବ । ଏପରି ଲଢ଼େଇ କୌଣସି କୌଣସି ଗଡ଼ଜାତରେ ଏବେ ବି ଅଛି । ପାଶ୍ଚାତ୍ୟ ଦେଶରେ ବିଶେଷତଃ ସ୍ପେନରେ ଷଣ୍ଢ—ମନୁଷ୍ୟର ଲଢ଼େଇ ସର୍ବପ୍ରଧାନ ଆମୋଦ । ଗୋଟାଏ ଘେରିବ ମଧ୍ୟରେ ବନ୍ୟ ଷଣ୍ଢ ଓ ଜଣେ ଅସ୍ତ୍ରଧାରୀ ପାଲୁଆନ ଲଢ଼େଇ ଲଗନ୍ତି । ଷଣ୍ଢ ଶିଙ୍ଗରେ ମନୁଷ୍ୟକୁ ମାରୁଛି କି ମନୁଷ୍ୟ ବର୍ଚ୍ଛା ବା ତରବାରି ଦ୍ୱାରା ଷଣ୍ଢକୁ ମାରୁଛି ତାହାର ପରୀକ୍ଷା ହୁଏ ।

ମୁସଲମାନ-ଧର୍ମରେ ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ କାଳରେ ନମାଜ ନ କରି ପ୍ରକୃତିର ଶୋଭା ପର୍ଯ୍ୟବେକ୍ଷଣ କରିବାର ନିୟମ ଅଛି ।

## ସଙ୍ଗୀତ

ସବୁଠାରୁ ଦୋଷରହିତ ଓ ଅନାବିଳ ଆମୋଦ—ସଙ୍ଗୀତ । ସଙ୍ଗୀତର ଶାନ୍ତି ଓ ଆରାମଦାୟିନୀ ଶକ୍ତି ଅସୀମ ଓ ଅପ୍ରତିଦ୍ୱନ୍ଦ୍ୱୀ । ତେବେ ରାତି ଜାଗରଣ କରି ଥିଏଟର, ଯାତ୍ରା ଦେଖିବା, ମଦ ଖାଇ ବେଶ୍ୟାଳୟରେ ମଜଲିସ କରିବା ବା ଗଞ୍ଜେଇ ଫୁଙ୍କି ହରିହାଟରେ ମାତିବା ସଙ୍ଗୀତାମୋଦ ନୁହେ । ଏ ସବୁ ବାଦ୍ ଦେଇ ସୁସଙ୍ଗୀତ ସହିତ ବା ନିଜେ ନିଜେ କରିବା ଉଚିତ । କୁ-ପ୍ରବୃତ୍ତିର ଉଦ୍ଦୀପକ ବା ଉତ୍ତେଜକ ଗୀତବାଦ୍ୟ ଅପକାରୀ । ସ୍ୱରର ନାଦ ଓ ତାଳର ଧ୍ୱନିରେ ଜୀବ ଦେହର ସୂକ୍ଷ୍ମ ସ୍ନାୟୁମଣ୍ଡଳୀ ଉପରେ ଅପ୍ରତିହତ ପ୍ରଭାବ; ତାହା ଶିରାପ୍ରଶିରାରେ ସଞ୍ଚରିତ ହୋଇ ସର୍ବଶରୀରର ବହୁତର ଗ୍ଲାନି ଅପନୋଦନ କରିପାରେ । ବିଶିଷ୍ଟ ରୋଗୀଙ୍କୁ ଚିକିତ୍ସକମାନେ ଗୀତବାଦ୍ୟ ଶ୍ରବଣ କରିବାକୁ ପରାମର୍ଶ ଦିଅନ୍ତି । ଯେଉଁ ସ୍ୱରରେ ମୃଗ, ସର୍ପ ମୋହିତ ହୋଇଯାଆନ୍ତି, ମାନବ ଉପରେ ତା'ର କେତେ ପ୍ରଭାବ, ତାହା ଅନୁମାନ କରନ୍ତୁ ।

ପକ୍ଷୀର କଳଗାନରେ, ପତ୍ରର ମର୍ମର ଧ୍ୱନିରେ, ମଧୁପର ଗୁଞ୍ଜନରେ, ପବନର ସୀତ୍କାରରେ ଯେଉଁ ବିଶ୍ୱ-ସଙ୍ଗୀତର ଅନାହତ, ଅପ୍ରତିହତ, ନିରବଚ୍ଛିନ୍ନ ପ୍ରବାହ ଚାଲିଛି, ତାକୁ ଧୀର ସ୍ଥିର ଚିତ୍ତରେ ଅବଧାନ କରନ୍ତୁ । ଓଃ, ସେ କେଡ଼େ ମଧୁର, କେଡ଼େ ପ୍ରଶାନ୍ତ, କେଡ଼େ ବିରାଟ !

## ବଗିଚା

କୃଷି ବା ବଗିଚା କରିବାରେ ମଧ୍ୟ ଯଥେଷ୍ଟ ଆମୋଦ ଆହ୍ଲାଦ ମିଳେ । ବାସଗୃହର ପାଖରେ ଯଦି ପନିପରିବା, ଫୁଲଫଳ ବଗିଚା କରାଯାଏ ଓ ତହିଁରେ ପ୍ରକୃତ ସଉକ୍‌ରେ ଲାଗିପାରାଯାଏ ତେବେ ତହିଁରେ ଆନନ୍ଦ ଯେତିକି ଆର୍ଥିକ ଲାଭ ମଧ୍ୟ କିଛି ଊଣା ନୁହେ । ହାଟବଜାରରୁ ବାସି, ସଢ଼ା, ପଚା, ଶୁଖୁଟା ପରିବା କିଣି ଖାଇବାରେ ବେଶୀ ଖରଚ । ପୁଣି ତାହା ଅସ୍ୱାସ୍ଥ୍ୟକର । ନିଜ ହାତରେ ଫସଲ ଜନ୍ମାଇଲେ ଢେର ଅଧରେ ଟଟକା ଦରବ ମିଳିବ । ପୁଣି ତାହା ଯେପରି ସ୍ୱାସ୍ଥ୍ୟପ୍ରଦ ସେହିପରି ତୃପ୍ତିକର । କରୁଁ କରୁଁ ତହିଁରେ ଏପରି ମମତା ଲାଗିଯାଏ ଯେ ଗଛଗୁଡ଼ିକ ପ୍ରତି ନିଜର ପୁଅ ଝିଅ ପରି ସ୍ନେହ ଆସେ । ସେସବୁ ଦିନକୁ ଦିନ କପରି ବଢୁଛି, କପରି ନୂଆ ପତ୍ର ପକାଉଛି, ନୂଆ ମଞ୍ଜି ବାହାର କରୁଛି, ଫୁଲଫଳ ଧରୁଛି—ଏହା ଦେଖିଁ ଦେଖିଁ ମନୁଷ୍ୟ ଆନନ୍ଦରେ ଆତ୍ମହରା ହୁଏ । ଏହାଛଡ଼ା ଆପଣା ହାତରେ ଘାସ ବାଛିବା, ଶୁଖିଲା ପତ୍ର କାଢ଼ିବା, ମୂଳ କୋଡ଼ିବା, ପାଣି ଦେବା ପ୍ରଭୃତିରେ ଆମୋଦ ସଙ୍ଗେ ସଙ୍ଗେ ବ୍ୟାୟାମ ମଧ୍ୟ ହୁଏ । ଖୋଲା ନିର୍ମଳ ପବନ ଏବଂ ଗଛପତ୍ରର ସ୍ପର୍ଶ ସ୍ୱାସ୍ଥ୍ୟର ବଡ଼ ଉପକାରୀ । ଏଥିରେ ଆମୋଦ, ବ୍ୟାୟାମ ଓ ଆର୍ଥିକ ଲାଭ, ଏହି ତିନି କଥା ବର୍ତ୍ତମାନ ।

## ମାଛ

ବାଡ଼ି ଗଡ଼ିଆ ବା ନିକଟସ୍ଥ ପୋଖରୀରେ ମାଛ ଜାଆଁର (ରୋହି, ଭାକୁର ପ୍ରଭୃତି) ଛାଡ଼ି ତା'ର ଆବାଦ କଲେ ତହିଁରୁ ପ୍ରଚୁର ଆୟ ହୁଏ । ତାହା ସହିତ ଘରେ ତରକାରିର ଅଭାବ ରହେନାହିଁ । ପୁଣି ଦୁଇ ଓଳି ମାଛକୁ ଖୁଆଇବାରେ ବଡ଼ ଆମୋଦ ମଧ୍ୟ ମିଳେ । ମାଛସବୁ ମେଳା ମେଳା ହୋଇ ଯେତେବେଳେ ଅଧାର ଖାଉଥିବେ ତାହା ଦେଖିବାକୁ ବଡ଼ କୌତୁକ ଲାଗେ । ବିଶେଷତଃ ପାଳକର ଅଧିକ ଆନନ୍ଦ ହେବାର କଥା ।

## ଜୀବଜନ୍ତୁ ପାଳନ

ଗୃହପାଳନୋପଯୋଗୀ ଜୀବଜନ୍ତୁ ପାଳିବା ସ୍ୱାସ୍ଥ୍ୟ ପକ୍ଷରେ ହିତକର । ତହିଁ ମଧ୍ୟରେ ସର୍ବଶ୍ରେଷ୍ଠ ଗୋ-ପାଳନ । ଗୋରୁର ଉପକାରିତା ବୁଝାଇବାର ପ୍ରୟୋଜନ ନାହିଁ; ତାହା ସମସ୍ତେ ଜାଣନ୍ତି । ମାତ୍ର ଜାଣିଶୁଣି ସୁଦ୍ଧା ଗୃହପାଳିତ ଗୋ-ମାତା ପ୍ରତି ଯେ ଅବହେଳା ହେଉଛି ତାହା କହିହେବ ନାହିଁ । ଗୋ-ମାତାର ସେବା ସ୍ୱହସ୍ତରେ କରିବା ଉଚିତ । ଗୋରୁକୁ ଖୁଆଇବା, ଘଷିବା, ଗୁହାଳ କାଢ଼ିବା, ଦୁହିଁବା, ଏପରିକି ଘାସ ଛେଲିବା ସୁଦ୍ଧା ଗୃହସ୍ୱାମୀର କରିବା ବିଧେୟ । ଏଥିରେ ନିଗୂଢ଼ ବୈଜ୍ଞାନିକ ସତ୍ୟ ନିହିତ ଅଛି । ଗୋ-ସେବା କରି ଅନେକେ ଉତ୍କଟ ବ୍ୟାଧିରୁ ମୁକ୍ତ ହେବା କଥା ଶୁଣାଯାଏ । ତାହାଛଡ଼ା ଏ ଦୁଃସମୟରେ ନିଜେ ଯତ୍ନର ସହିତ ଗୋରୁ ପାଳିଲେ ଅନ୍ତତଃ ଦୂଷିତ ଜଳମିଶା ଗୋ-ଦୁଗ୍ଧ ଖାଇ ନିଜକୁ ଓ ଘରର ପିଲାଙ୍କୁ ରୋଗାକ୍ରାନ୍ତ କରିବା ବିପଦରୁ ରକ୍ଷା ପାଇ ହେବ ଓ ଟଟକା ଦୁଧ, ଦହି, ଘିଅର ଅଭାବ ରହିବ ନାହିଁ ।

## ହଂସ—କୁକୁଡ଼ା—ପାରା

ପାରା, ହଂସ ବା କୁକୁଡ଼ା ପାଳିବାରେ ଯଥେଷ୍ଟ ଆମୋଦ ଅଛି ଏବଂ ଆର୍ଥିକ ଲାଭ ମଧ୍ୟ ଯଥେଷ୍ଟ ।

## ବିଲେଇ କୁକୁର ପ୍ରଭୃତି

ବିଲେଇ, କୁକୁର, ନେଉଳ ପ୍ରଭୃତି ପାଳିଲେ ଉପକାର ଓ ଆନନ୍ଦ ଉଭୟ ମିଳିପାରେ । ଶେଷରେ ଏତିକି କହିବାର କଥା ଯେ, ନିଜର ସଉକ ମେଣ୍ଟାଇବା ନିମନ୍ତେ କୌଣସି ଜୀବକୁ କଷ୍ଟ ଦେବା ଉଚିତ ନୁହେ । ଏପରି ଜୀବ ପାଳିବ ଯାହାକୁ ପିଞ୍ଜରାବଦ୍ଧ କରିବାକୁ ନ ହେବ ଓ ସେ ପ୍ରାଣୀଟିର ସ୍ୱାଧୀନତା ହରଣ କରି, ଅଶାନ୍ତି ଦେଇ ଦେଇ ଶେଷରେ ତା'ର ଅକାଳମୃତ୍ୟୁର କାରଣ ହେବାକୁ ନ ପଡ଼ିବ । ନିଜେ ଯେତେ ଆମୋଦ ଉପଭୋଗ କରିବ କର; ତାହା ବୋଲି ପରକୁ ଦୁଃଖ ଦେଇ ଆପେ ଆମୋଦ କରିବା ମହାପାତକ ।

## ଆଳାପ

ପ୍ରିୟଜନ ସହ ବା ଆଗନ୍ତୁକ ବ୍ୟକ୍ତି ସହ ବାକ୍ୟାଳାପ ଗୋଟିଏ ସୁନ୍ଦର ଆମୋଦ । ମନୁଷ୍ୟ ସାମାଜିକ ଜୀବ । ସେ ସଙ୍ଗ ନ ପାଇଲେ ବ୍ୟସ୍ତ ହୋଇପଡ଼େ । ସେଥିପାଇଁ ସବୁବେଳେ ସେ ସଙ୍ଗ ଲୋଡ଼ୁଥାଏ । ବିଶେଷତଃ ଦୁଃଖ ଦୁଶ୍ଚିନ୍ତା ସମୟରେ ବା ମାନସିକ ପରିଶ୍ରମ ପରେ ସଙ୍ଗୀ ସହିତ ଦୁଇ ପଦ ଏଣୁତେଣୁ କଥା କହିଲେ ବା ସୁଖଦୁଃଖ କୁହାକୁହି ହେଲେ ସେ ବେଦନା ବହୁତ ଲଘୁ ହୋଇଯାଏ ।

ମାତ୍ର ସବୁବେଳେ ସଙ୍ଗ ଖୋଜିବା ବା ମନୁଷ୍ୟ ମେଳରେ ରହିବା ଭଲ ନୁହେ । ତଦ୍ଦ୍ୱାରା ଆତ୍ମଚିନ୍ତା ଦ୍ୱାରା ଆତ୍ମୋନ୍ନତି ହୋଇପାରେ ନାହିଁ ଓ ମଧ୍ୟ ସମୟର ଅନେକ ଅପବ୍ୟୟ ହୁଏ । ପର ଚର୍ଚ୍ଚା, ଅବାନ୍ତର କଥା, ଖେଳ, ଏପରିକି ଅମଙ୍ଗଳକର କାର୍ଯ୍ୟପ୍ରତି ମନ ଅଗ୍ରସର ହୁଏ ଓ ଅବକାଶ ମଧ୍ୟ ମିଳେ । ସେଥିପାଇଁ କେବଳ ସତ୍‌ସଙ୍ଗ କରିବ । ମାତ୍ର ତାହା ବି ସର୍ବଦା ନୁହେ । ଆପେ ନିର୍ଜନରେ ଏକାକୀ ଯେତେ ପାରିବ ରହିବାର ଚେଷ୍ଟା କରିବ । ଶାସ୍ତ୍ର, ସାହିତ୍ୟ, କଳା, ଶିଳ୍ପ, କୃଷି, ସମାଜ, ସ୍ୱାସ୍ଥ୍ୟ, ଶିକ୍ଷା, ଦେଶ ପ୍ରଭୃତି ବିଷୟରେ ଗଳ୍ପ କରିବ ।

ଏକା ଗୋଟିଏ କଥାକୁ ସାବଧାନ ଥିବ; କେବେ ବେଶୀ ବକର ବକର ହେବ ନାହିଁ ଓ ଠାଉ ଠାଉ କଥା କହିବ ନାହିଁ । ଯଦ୍ଦ୍ୱାରା ପର ମନରେ କଷ୍ଟ ହୁଏ ସେପରି କଥା, ଛିଦ୍ର ବା ବଦ୍ରୁମ କରିବ ନାହିଁ । ବେଶୀ ଗପିଲେ କଥାର ମୂଲ୍ୟ କମିଯାଏ । ଅନର୍ଥକ କ୍ଳାନ୍ତି ଆସେ ଓ ବାଧ୍ୟ ହୋଇ ଅନିଚ୍ଛାସତ୍ତ୍ୱେ ଅନେକ ମିଥ୍ୟାକୁ ପ୍ରଶ୍ରୟ ଦେବାକୁ ପଡ଼େ । ଏଥିରେ ଶରୀରର ବୈଦ୍ୟୁତିକ ଶକ୍ତିର ହ୍ରାସ ଓ ଲୋକହସା ସହିବାକୁ ହୁଏ । ସବୁ ମନୁଷ୍ୟର ସ୍ୱଭାବ ବା ରୁଚି ସମାନ ନୁହେଁ । ଜଣକୁ କେଉଁଟା ଖୁବ୍ ଆମୋଦଦାୟକ, ଆଉ ଜଣକୁ ହୁଏ ତ ସେଇଟା ବିରକ୍ତିକର ହୋଇପାରେ । ଏକ ସ୍ଥାନରେ ବସି ଦୁଇ ଗୃହ ଜଣ ଗାଆଣ ବଜାଣ କରୁଅଛନ୍ତି, ଆଉ ଦୁଇ ଗୃହ ଜଣ ପଶା ଗଡ଼ାଉଛନ୍ତି । ଗୀତ ଗାଆଣକାରୀ ମନେ କରୁଛନ୍ତି, "ଆହା, ଏଗୁଡ଼ାକ ଏପରି ମିଠା ଗୁଡ଼ ଏଥିରୁ କି ରସ ପାଉଛନ୍ତି ! କି ହତଭାଗ୍ୟ, ବେରସିକ, ହୃଦୟହୀନ ! ଆମ ପାଖଙ୍କୁ ଯଦି ଆସନ୍ତେ, ସଙ୍ଗୀତଟା କେଡ଼େ ଜମନ୍ତା !" ଏଣେ ପଶାଖେଳାଳୀ ଭାବୁଛନ୍ତି, "ଏଗୁଡ଼ାକ କି ଅଧମ ଜାଳୁଆର ! ଏପରି ମଉଜ ଗୁଡ଼ ଏଗୁଡ଼ାକ କାହିଁକି ନେଟ ପିଟି ହେଉଛନ୍ତି । କାନରୁ ଅତଡ଼ା ଖସାଇ ଦେଲେ ! ଯାଙ୍କ ହାତପାଚି ଥକୁ ବି ନାହିଁ । ନ ଖେଳିଲେ ତ ନାହିଁ, ଆମ ପାଖରେ ବସି ଓକାଲତି କଲେ ବା ଦେଖିଲେ ବି ଖେଳରେ କେଡ଼େ ମାତି ବା ଗମ୍ଭୀର ଉଠନ୍ତା !"

ବନ୍ଧୁ କେତେଜଣ ମିଳି ବଣକୁ ଗଲେ । କେହି ଶିକାରରେ ମାତିଲେ, ଆଉ କେହି ପ୍ରାକୃତିକ ଶୋଭା ଦେଖିବାକୁ ଲାଗିଲେ, କେହି ରନ୍ଧାବଢ଼ାରେ ଲାଗିଲେ, ଆଉ କେହି ବନଜାତ ଦ୍ରବ୍ୟ ସଂଗ୍ରହ କଲେ । ଏଥିରୁ ଜଣାଯାଏ, ଆମୋଦପ୍ରମୋଦ ବୋଲି ଗୋଟିଏ ନିର୍ଦ୍ଦିଷ୍ଟ କିଛି ନାହିଁ; ବିଭିନ୍ନ ରୁଚି ଅନୁସାରେ ତାହା ଭିନ୍ନ ଭିନ୍ନ । ଯାହାକୁ ଯାହା ଭଲ ଲାଗିଲା ସେଇ ତାହା ପକ୍ଷରେ ଆମୋଦ । ଅନେକ ସ୍ଥଳରେ ଦେଖାଯାଏ, କର୍ମର ପରିବର୍ତ୍ତନହିଁ ଆମୋଦ ବା ଆରାମ । ପାଠ ପଢ଼ିବା ପିଲା ଯଦି ଦୌଡ଼ିବାକୁ ପାଏ, ସେ ତା'ର ଆମୋଦ; ଡାକ ପିଅନ ଯଦି ପଢ଼ିବାକୁ ପାଏ, ସେ ତା'ର ଆମୋଦ । ଯାହାର ଯେଉଁଟା ନିର୍ଦ୍ଦିଷ୍ଟ କର୍ମ ତାକୁ ଗୁଡ଼ ରୁଚି ଅନୁସାରେ ଅନ୍ୟ କର୍ମ କଲେ ଆମୋଦ ଅଛି ।

## ଶ୍ୱାସ-ବାୟୁ

ନାସିକା ଦ୍ୱାରା ବାୟୁ ଗ୍ରହଣ ଓ ନିଃସାରଣର ନାମ ଶ୍ୱାସ-ପ୍ରଶ୍ୱାସ । ଏହି ଶ୍ୱାସ-ପ୍ରଶ୍ୱାସ ଜୀବର ଜୀବନର ଚିହ୍ନ । ଶ୍ୱାସ ବନ୍ଦ ହେଲେ ଜୀବର ମୃତ୍ୟୁ । ସେଥିପାଇଁ ବାୟୁର ଅପର ନାମ ପ୍ରାଣ । ହୃତ୍‌ଯନ୍ତ୍ରର କ୍ରିୟା ରହିତ ହେଲେ ମୃତ୍ୟୁ ଘଟେ । ତାହାର ଅର୍ଥ, ବାୟୁର ଯିବାଆସିବା ବନ୍ଦ ହୋଇଯାଏ । ହୃଦୟମଧ୍ୟସ୍ଥ ବାୟୁର ଆଧାରକୁ ବାୟୁ ଯା'ଆସ କରୁଥିବାଯାକେ ଜୀବ ମରିପାରେ ନାହିଁ । ଯୋଗୀମାନେ ଏହି ପ୍ରାଣବାୟୁକୁ ସଂଯତ ଓ ସ୍ୱାୟତ୍ତ କରି ଅକ୍ଷୁଣ୍ଣ ସ୍ୱାସ୍ଥ୍ୟ ଓ ଦୀର୍ଘଜୀବନ ଲାଭ କରନ୍ତି । ପ୍ରାଣୀର ଅଭ୍ୟନ୍ତରକୁ ଯେତେ

ବିଶୁଦ୍ଧ ବାୟୁ ଯାଇପାରେ ତେତେ ମଙ୍ଗଳ । ପ୍ରଶ୍ୱାସ ଦ୍ୱାରା ପ୍ରକ୍ଷିପ୍ତ ବାୟୁ ଦୂଷିତ । ପ୍ରକୃତିର ବିଧାନରେ ଏହା ଶୋଧିତ ହୋଇ ପୁନର୍ବାୟୁ ଶ୍ୱାସଗ୍ରହଣର ଉପଯୋଗୀ ହୁଏ । ଶ୍ୱାସପ୍ରଶ୍ୱାସର ଗତି ଓ ସଂଖ୍ୟା ଅନୁସାରେ ଜୀବର ଆୟୁ ନିୟନ୍ତ୍ରିତ । ଏଥିପାଇଁ ଶ୍ୱାସର ପ୍ରବାହ ଯେତେ ମନ୍ଦୀଭୂତ ଓ ସଂଖ୍ୟା ଯେତେ ଊଣା ହୁଏ, ଜୀବର ଆୟୁ ତେତେ ଦୀର୍ଘ ହେବାର କଥା । ଉଭୟ ନାସାରେ ଶ୍ୱାସ ସବୁବେଳେ ସମାନ ଭାବରେ ପ୍ରବାହିତ ହୁଏ ନାହିଁ । ଏକ ନାସାରେ ୨୨ ଦଣ୍ଡ ବା ୧ ଘଣ୍ଟା ବହି ପୁଣି ଅପର ନାସାରେ ଏକ ଘଣ୍ଟା ବହେ । ଏହିପରି ଘଣ୍ଟାକୁ ଘଣ୍ଟା ଫେର୍‌ବଦଳ ହେଉଥାଏ । କେବଳ ପରିବର୍ତ୍ତନ କାଳରେ ଉଭୟ ନାସାରେ ଅଳ୍ପକ୍ଷଣ ବହେ । ଦକ୍ଷିଣ ପୁଡ଼ାରେ ବହିଲେ ପିଙ୍ଗଳା ଅର୍ଥାତ୍ ସୂର୍ଯ୍ୟନାଡ଼ୀ, ବାମ ପୁଡ଼ାରେ ବହିଲେ ଇଡ଼ା ଅର୍ଥାତ୍ ଚନ୍ଦ୍ରନାଡ଼ୀ ଓ ଉଭୟ ପୁଡ଼ାରେ ବହିଲେ ସୁଷୁମ୍ନା ନାଡ଼ୀରେ ବହେ ବୋଲି ଯୋଗୀମାନେ କହନ୍ତି । ସୂର୍ଯ୍ୟନାଡ଼ୀ ତେଜସ୍କର ଓ ଚନ୍ଦ୍ରନାଡ଼ୀ ଶୀତଳ, ଶାନ୍ତ । ଶ୍ୱାସକୁ ବାରି ଯୋଗୀମାନେ ସବୁ କାମ କରନ୍ତି । ସ୍ୱରଶାସ୍ତ୍ରରେ ଏହାର ବିସ୍ତାରିତ ବିବରଣୀ ଅଛି । ଯେଉଁମାନେ ସ୍ୱରୋଦୟ ଯୋଗ ବୁଝନ୍ତି ସେମାନେ କେବଳ ସ୍ୱାସ୍ଥ୍ୟ ନୁହେ, ଜୀବନର ସୁଖ ଦୁଃଖ, ଲାଭ କ୍ଷତି, ଭଲ ମନ୍ଦ, ଜୟ ପରାଜୟ, ଯାତ୍ରା ପ୍ରଭୃତିରେ ସ୍ୱର ବାରି ଚଳନ୍ତି । ସେ ସବୁ କଥା ଚର୍ଚ୍ଚା କରିବା ଏଠାରେ ଅନାବଶ୍ୟକ ଓ ତାହା ସାକ୍ଷାତ୍ ଗୁରୁ ଉପଦେଶ ବ୍ୟତୀତ ହୋଇପାରେନାହିଁ । କେବଳ ଶ୍ୱାସ ସହିତ ସ୍ୱାସ୍ଥ୍ୟର ଯେତିକି ସମ୍ବନ୍ଧ ଓ ସାଧାରଣ ସାଂସାରିକ ମାନବ ପକ୍ଷରେ ଯାହା ଜାଣିବା ଦରକାର ଓ ପାରିବା ସହଜସାଧ୍ୟ ତେତିକି କହିଲେ ଯଥେଷ୍ଟ ହେବ ।

ସୂର୍ଯ୍ୟନାଡ଼ୀରେ ଶ୍ୱାସ ଥିବାବେଳେ ମଳତ୍ୟାଗ, ଭୋଜନ, ସ୍ନାନ, ରମଣ ଓ ଚନ୍ଦ୍ରନାଡ଼ୀରେ ଥିବାବେଳେ ଜଳପାନ, ମୂତ୍ରତ୍ୟାଗ, ଶଯ୍ୟାଗ୍ରହଣ କରିବା ଉଚିତ । ଏହାର ବିପରୀତ କଲେ ଶରୀର ନିଶ୍ଚୟ ଅସୁସ୍ଥ ହେବ । ସୁଷୁମ୍ନାରେ ଶ୍ୱାସ ଥିଲେ କେବଳ ଭଗବତ୍-ଚିନ୍ତା ଛଡ଼ା ଆଉ କିଛି କରିବା ନାହିଁ ।

ପୂର୍ବେ କୁହାଯାଇଛି, ଏକ ଘଣ୍ଟା ଅନ୍ତରରେ ଥରେ ଦକ୍ଷିଣ ଓ ଥରେ ବାମ ନାସାରନ୍ଧ୍ର ଦେଇ ଶ୍ୱାସ ଅନ୍ୟୋନ୍ୟ କ୍ରମରେ ଚାଲେ । ମାତ୍ର ଦେଖାଯାଏ, ଶରୀର ଅସୁସ୍ଥ ହେଲେ ଏ ନିୟମର ବ୍ୟତିକ୍ରମ ଘଟେ । ଏଥିରୁ ଦେହ ବିଗିଡ଼ିଛି ବୋଲି ଜାଣିପାରି ସାବଧାନ ହେବ । ଯୋଗୀମାନେ କହନ୍ତି ଯେ, ଦିନ ବେଳରେ ଯେତେ ଅଧିକ ବାମ ଶ୍ୱାସ ଚାଲିବ ଓ ରାତିକାଳରେ ଯେତେ ଅଧିକ ଦକ୍ଷିଣ ଶ୍ୱାସ ଚାଲିବ, ଶରୀର ତେତେ ଭଲ ରହିବ । ଧରନ୍ତୁ, କୌଣସି କାର୍ଯ୍ୟ ତରିବରିଆ କରୁଣା ଦରକାର ପଡ଼ୁଛି । ମାତ୍ର ସେ କାଳରେ ପ୍ରତିକୂଳ ଶ୍ୱାସ ଚାଲୁଛି । ତାକୁ ଅନୁକୂଳ କରିବାପାଇଁ ଏକ ସହଜ କୌଶଳ ଅଛି । ଯଦି ଦକ୍ଷିଣରେ ଚାଲୁଥିବ ତେବେ ଦକ୍ଷିଣ କାଖରେ ଆଣ୍ଠୁ ଲଗାଇ କିଛିକ୍ଷଣ ଚାପି ଧରିଲେ ବାମକୁ ଫେରିଆସିବ । ସେହିପରି ବାମରେ ଚାଲୁଥିଲେ ବାମ କାଖରେ ଆଣ୍ଠୁ ଚାପି ରଖିଲେ ଦକ୍ଷିଣକୁ ଫେରିଯିବ । ମନୁଷ୍ୟ ଯେତେବେଳେ ଅଭିଳଷିତ କର୍ମ କରିପାରିବ । କେହି କେହି ସାଧୁସନ୍ନ୍ୟାସୀ କାଠନିର୍ମିତ ଆଶାବାଡ଼ି ବ୍ୟବହାର କରନ୍ତି । ଏହାକୁ କାଖତଳେ ଦେଇ ସେମାନେ ଇଚ୍ଛାନୁସାରେ ଶ୍ୱାସ ପରିବର୍ତ୍ତନ ଓ ରକ୍ଷା କରିପାରନ୍ତି । ଆହୁରି ମଧ୍ୟ ଯେଉଁ ନାକରେ ଶ୍ୱାସ ଥିବ ସେହି କଡ଼ ମାଡ଼ି କିଛିକ୍ଷଣ ଶୋଇଲେ ଅପର ନାକକୁ ଶ୍ୱାସ ଚାଲିଯାଏ । ତାହା ସୁଦ୍ଧା ନ ପାରିଲେ ଯେଉଁ ପୁଡ଼ାରେ ଶ୍ୱାସ ଚାଲୁଥିବ ସେହି ପୁଡ଼ାରେ ସଫା ତୂଳା ମେଞ୍ଚାଏ ବା କନା ମୁଚୁଳାଟିଏ ଗୁଞ୍ଜି ଦେଲେ ଅପର ନାକରେ ଶ୍ୱାସ ଚାଲିବ । କୌଣସି ରୋଗକାଳରେ ଯନ୍ତ୍ରଣା ଅଧିକ ହେଲେ ଦେଖିବ ସେତେବେଳେ କେଉଁ ନାକରେ ପବନ ଅଛି । ପୂର୍ବୋକ୍ତ ଉପାୟଦ୍ୱାରା ତାହା ପରିବର୍ତ୍ତନ କରିଦେଲେ ଯନ୍ତ୍ରଣା ନିଶ୍ଚୟ ଊଣା ପଡ଼ିଯିବ । କଠିନ ପରିଶ୍ରମ ବା ଦୂର ବାଟ-ଚାଲିରେ ଅତି କ୍ଳାନ୍ତ ହୋଇଥିଲେ ଡାହାଣ କଡ଼ ମାଡ଼ି ଶୋଇବ; ଶ୍ୱାସ ବାମ ନାସାରେ ଚାଲିଲେ ଦେଖିବ କେତେ ଆରାମ ଲାଗୁଛି ।

ଘନଘନ ଓ ଅଳ୍ପକାଳସ୍ଥାୟୀ ଶ୍ୱାସପ୍ରକ୍ଷେପ ଦ୍ୱାରା ସ୍ୱାସ୍ଥ୍ୟର ଅବନତି ଓ ଆୟୁଷର କ୍ଷୟ ହୁଏ । ଏହା ଜାଣି ଧୀର ଓ ପୂର୍ଣ୍ଣ ଶ୍ୱାସ ଅଭ୍ୟାସ କରିବ । କେବଳ ନାସାଦ୍ୱାରା ଶ୍ୱାସଗ୍ରହଣ ଓ ତ୍ୟାଗ କରିବ । ପାଟିଦ୍ୱାରା କରିବା ଅପକାରୀ । ଯେତେ ପବନ ଗ୍ରହଣ କରାଯାଇପାରେ ଓ ତାକୁ ଯେତେ କ୍ଷଣ ବକ୍ଷ ମଧ୍ୟରେ ରଖାଯାଇପାରେ ତେତେ ମଙ୍ଗଳ । ଶ୍ୱାସବାୟୁ ଧାରଣ ଓ ରୋଧ କରିବାକୁ କୁମ୍ଭକ କହନ୍ତି । କୁମ୍ଭକଦ୍ୱାରା ହୃଦ୍‌ଯନ୍ତ୍ରର (heart) ଶକ୍ତି ବର୍ଦ୍ଧିତ ହୁଏ ଓ ରକ୍ତପ୍ରବାହ ବେଗବାନ୍ ହୁଏ । ବାୟୁ ଶରୀରସ୍ଥ ସୂକ୍ଷ୍ମ ତନ୍ତୁମାନଙ୍କରେ ପ୍ରବିଷ୍ଟ ହୋଇ ସେମାନଙ୍କୁ ଶୋଧିତ ଓ ସବଳ କରେ । ନିର୍ମଳ ଓ ଶାନ୍ତ ବାୟୁ ଗ୍ରହଣର ଯୋଗ୍ୟ । ଧୂଳି, ଧୂଆଁ ବା ଦୁର୍ଗନ୍ଧଯୁକ୍ତ ବାୟୁ ଅଥବା ପ୍ରଖର ପ୍ରବାହଶୀଳ ବାୟୁ ଗ୍ରହଣ କରିବ ନାହିଁ । ଯେଉଁ ଦିଗରୁ ବାୟୁ ଜୋରରେ ବହୁଥିବ ସେ ଦିଗକୁ ଆଗ କରିବ ନାହିଁ; ବରଂ ସେ ଦିଗକୁ ପଛ କରି ବସି ତାହା ସେବନ କରିବ । ପବନ ଆଡ଼କୁ ମୁହଁ କଲେ ଶ୍ୱାସର ସରଳ ଗତିରେ ବାଧା ପଡ଼େ ଓ ସର୍ଦ୍ଦି ହେବାର ସମ୍ଭାବନା ।

## ବାସସ୍ଥାନ

ଆମ ଦେଶରେ ଦେଖାଯାଏ, ଲୋକେ ଗ୍ରାମ ମଧ୍ୟରେ ଖିନ୍ଦଖାନ୍ଦ ହୋଇ ଘର କରନ୍ତି । ପୂର୍ବେ କେଜାଣି ଚୋରର ଡକାଏତ ଭୟରେ ଏପରି ଲଗାଲଗି ହୋଇ ରହିବା ନିରାପଦ ବୋଲି ଲୋକେ ମନେ କରୁଥିଲେ । ବର୍ତ୍ତମାନ ସେ ଭୟ ଅନେକ ତୁଟି ଗଲାଣି । ତଥାପି ଅଭ୍ୟାସ ଛାଡ଼ି ନାହିଁ । ଆଜି ତାହା ସହିତ ଅଛି ଲୋଭ ଓ ହିଂସା ଆଉ କୁସଂସ୍କାର । ଚାରିଆଡ଼େ ମେଲା ସ୍ଥାନ ପଡ଼ିଛି । ଏପରିକି ନଜର ବାଡ଼ ଭିତରେ ଅନେକ ପଡ଼ିଆ ରହିଛି । ତଥାପି ଗୁଡ଼ାଏ ପରିବାର ଅଣ୍ଡାବଚ୍ଚା ଘେନି ଅଳ୍ପ ପରିସର ମଧ୍ୟରେ ଗୁଞ୍ଜାଗୁଞ୍ଜି ହୋଇ ରହିଛନ୍ତି । ପୁରୀ ଜିଲ୍ଲାର ଶାସନବାଡ଼ମାନଙ୍କରେ ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ମିଳେ ।

ଭାଇ ଭାଗ କିଏ ଛାଡ଼ିବ ? ପୈତୃକ ଘରଡିହ ବା ଭିଟା ଛାଡ଼ିଗଲେ ମାନହାନି ବା ଅମଙ୍ଗଳ ହେବ । ମୁଁ ଛାଡ଼ିଗଲେ ଆଉ ଅଂଶୀଦାର କାହିଁକି ସୁଖରେ ପୂର୍ବଭଳି ଚଳିବ ? ସେ ଯାଉନାହିଁ ! ଏହିପରି ସବୁ ବାଧାମାନ ରହି ଆମ ଦେଶବାସୀଙ୍କର କି ଅନିଷ୍ଟ କରୁଛି ତାହା ଭାବିବାର କଥା । ଲାଭ କରିବାକୁ ଯାଇ ତୁଟିଟା କେତେ ହେଉଛି ସେ ହିସାବ କେହି କରୁନାହାନ୍ତି । ତଥାପି ସେହି କୁକୁଡ଼ା ପଞ୍ଜୁରୀରେ ଖଲଦା ଲଦି ହୋଇ ମରୁଛନ୍ତି ।

ଉଚ ଡିହ, ଯାହାର ମାଟି ଖୁବ୍ ସରସ, ସେହିପରି ସ୍ଥାନରେ ଘର କରିବ । ଘରର ପିଣ୍ଡି ଏପରି ଭାବରେ କରିବ ଯେପରି ଦକ୍ଷିଣା ପବନ ସବୁ ଘରକୁ ଲାଗିପାରେ ଓ ଖରା ବେଶୀ ପଡ଼ିପାରେ । ଏଥିପାଇଁ ଶିଳ୍ପଶାସ୍ତ୍ରରେ 'ଦକ୍ଷିଣଶୂଳ' ଘର କରିବାର ନିଷେଧ ଅଛି । ଅର୍ଥାତ୍ ଉତ୍ତର ଦକ୍ଷିଣ ଲମ୍ବ ରହିବ ନାହିଁ । ପୂର୍ବ-ପଶ୍ଚିମ ଲମ୍ବ ହେଲେ ଅଧିକ ଖରା ଓ ପବନ ମିଳେ । ପୂର୍ବ ଓ ଦକ୍ଷିଣରେ ବଡ଼ ଗଛ ରଖିବ ନାହିଁ । ଘରର ଚାରି ପିଠି ଖାଲି ଜେଗା ରଖିବ, ବିଶେଷତଃ ଆଗ ଓ ପଛରେ । ଆଗରେ ବସିବା ଘର ବା ଅମାର ଓ ଫୁଲ ବଗିଚା ହୋଇପାରେ ଏବଂ ପଛରେ ଗୁହାଳ, ପୋଖରୀ ଓ ପନପରିବା ବଗିଚା କରାଯାଇପାରେ ।

## ବାସଗୃହ

ଯେଉଁ କୋଠରିଟି ଘର ମଧ୍ୟରେ ସବୁଠାରୁ ପ୍ରଶସ୍ତ, ପବନ ଓ ଆଲୁଅଲଗା, ସେହିଠାରେ ବସାଉଠା ବା ଶୟନ କରିବ । ସେ ଘରର ନିକଟରେ ଯେପରି ଗୋବରଗଦା, ଖତଗଦା, ଜଙ୍ଗଲ, ନାଳୁଆ ବା ପଚା ପୋଖରୀ ନ ଥାଏ । ଶୋଇବା ଘର ଭିତରେ ବେଶୀ ଜିନିଷପତ୍ର ରଖିବ ନାହିଁ । ଯଦି ପାରି, କିଛି ନ ରଖିବା ଭଲ । ରଖିଲେ ତହିଁରୁ ନାନା ଦୁର୍ଗନ୍ଧ ବାହାରିପାରେ । ମଶା, ମୂଷା, ବେଙ୍ଗ, ଏପରିକି ସାପ ବି ରହିପାରନ୍ତି; ପୁଣି ପବନର ଚଳ ପ୍ରଚଳରେ ବାଧା ହେବ । ଘରର ଆଗଲ ପଛଲା ଝରକା ରଖିବାକୁ ଭୁଲିବ ନାହିଁ । ଘରର ଭିତର କାନ୍ଥ ଅବସ୍ଥା ଅନୁସାରେ ସଜାଇବା ଭଲ । ନ ପାରିଲେ ପରିଷ୍କାର ପରିଚ୍ଛନ୍ନ କରିବ । ବର୍ଷରେ ଦୁଇ ଥର କଲି ଚୂନ ଦେବ ବା ଚାରି ଥର ଲିପାଇଦେବ । ଘରର ତଳ ଯେପରି ସନ୍ତସନ୍ତିଆ ନ ହୁଏ ତାହା ଦେଖିବ; ମାତ୍ର ତାହା ବୋଲି ଧୁଆ, ଲିପା, ଓଦାଆରେ ଉଣା କରିବ ନାହିଁ ।

## ହାଣ୍ଡିଶାଳ

ହାଣ୍ଡିଶାଳକୁ ଯେତେ ସାବଧାନତାର ସହିତ ପରିଷ୍କାର ରଖିବାର କଥା, ଆମ ଦେଶରେ ପ୍ରାୟ ତାହା କରନ୍ତି ନାହିଁ । ହାଣ୍ଡିଶାଳରେ ସବୁ ଅଳିଆ ମଇଳାର କାମ ହୁଏ । ଏଥିପାଇଁ ସେହିଠି ସବୁଠାରୁ ବେଶୀ ସାବଧାନ ହେବା ଦରକାର । ଅନ୍ୟ ସ୍ଥାନରେ ମଇଳା ହେଲେ ରକ୍ଷା ଅଛି । ମାତ୍ର ହାଣ୍ଡିଶାଳରେ ମଇଳା ହେଲେ ତା'ର ଦୋଷ ଖାଦ୍ୟ ସହିତ ଅତି ଶୀଘ୍ର ଆମ ଦେହରେ ପ୍ରବେଶ କରିବ । ଅଥଚ ହାଣ୍ଡିଶାଳଟା ମଇଳା ହେବାର କଥା ବୋଲି କହି ଆମର ଗୃହଲକ୍ଷ୍ମୀ ବା ପୂଜାରୀମାନେ ସେଥିପ୍ରତି ଅମନୋଯୋଗୀ ହୋଇଥାଆନ୍ତି । ତାହା ଫଳରେ ଯେତେକ ଡାଲି ଚୋପା, ପାଉଁଶ, ତୁଷ, ପରିବା ଚୋପି, କଖାରୁ ଅନ୍ତ, ମାଛ କାଣ୍ଟ, ହାଣ୍ଡିଧୁଆ କସରା ପାଣି, ଗୋଟା ଗୋଟା ଭାତ, ଖଣ୍ଡ ଖଣ୍ଡ ପରିବା, ଅଣ ଡାଲିର ଝୁଣ୍ଟି ହାଣ୍ଡିଶାଳ ଭିତରେ, କବାଟ କଣରେ, ଚୁଲ୍ଲୀ ମୁଣ୍ଡରେ ଅଥବା ଦୁଆର ଆଗରେ ଜମା ହୋଇଥାଏ । ତାହା ସଙ୍ଗରେ ଗୃହିଣୀଙ୍କ ପାନ ପିକ ବା ପୂଜାରୀର ନାକରସର ପରଖ ମଧ୍ୟ ହୋଇଯାଏ । ଏହାଠୁଁ ବଳି କ୍ଷୋଭର କଥା ଆଉ କ'ଣ ଅଛି ? ଆଳସ୍ୟ ଛାଡ଼ି ଅଳ୍ପ କିଛି ପରିଶ୍ରମ ଓ ତହିଁ ସଙ୍ଗେ ସତର୍କତା ରଖିପାରିଲେ ଏ ସବୁ କିଛି ରହିବ ନାହିଁ ।

ହାଣ୍ଡିଶାଳ ଯେ ମଇଳା ଆମଦାନିର ସ୍ଥାନ ସେ କଥା ସତ୍ୟ । ସେଥିପାଇଁ ସେଠି ଅଧିକ ସତର୍କତା ଦରକାର । ପତ୍ର ଖଣ୍ଡ ବା ଚୋପରା ପଡ଼ିଲାକ୍ଷଣି ତତ୍କ୍ଷଣାତ୍ ଉଠାଇ ଦୂରରେ ଫିଙ୍ଗିଦେବ "କାଲି ସକାଳେ ତ ବାସି କାମ ହେବ" ଭାବି ରଖିଦେବ ନାହିଁ । ଧୂଆଧୋଇ ବା ବିଛୁଲାବିଛୁଲି କାମ ହାଣ୍ଡିଶାଳ ଭିତରେ ବା ପାଖରେ କରିବ ନାହିଁ । ଯଦି କରିବ, ସେ ଜଳ ଗୋଟାଏ ସ୍ୱତନ୍ତ୍ର ମାଠିଆରେ ରଖୁଥିବ । ଶୋଇବା ଘର ବା ଖାଇବା ସ୍ଥାନଠାରୁ

ନ୍ଦୁଆ ହାଣ୍ଡିଶାଳ ବେଶୀ ସଫା ରଖିବ । ମାଛିଙ୍କ ପାଦ ସେଠିକି ଯେପରି ନ ପଡ଼େ । ହାଣ୍ଡିଶାଳ ମଧ୍ୟରେ ବା ଅତି ନିକଟରେ ଅନେକେ ସୁବିଧା ପାଇଁ ଖାଇ ବସନ୍ତି । ଏହା କରିବା ଅତି ଅନ୍ୟାୟ । ମଇଳା ହାତରେ ପାନ ଖାଇ, ହିତଖିଆ ଲୁଗା ପିନ୍ଧି ବା ବାଳ ଫିଟାଇ ହାଣ୍ଡିଶାଳକୁ ପଶୁ ନ ଥିଲେ । ସଙ୍କୁଡ଼ି ତ ଦୂରର କଥା । ମୋଟରେ ଠାକୁରଘରକୁ ଯେପରି ପବିତ୍ର ରଖିବ, ମା ଲକ୍ଷ୍ମୀଙ୍କ ରୋଷେଇଘର ମଧ୍ୟ ସେହିପରି ପବିତ୍ର ରଖିବାକୁ ହେବ ।

## ଶଯ୍ୟା

ଶୋଇବାପାଇଁ ସମସ୍ତେ ଯେ କୌଣସି ପ୍ରକାର ଶେଯ ବ୍ୟବହାର କରନ୍ତି । ଭୂଇଁରେ ଶୋଇଲେ ମାଟିର ଆର୍ଦ୍ରତା ଶ୍ଳେଷ୍ମା ବୃଦ୍ଧି କରିପାରେ । ଭୂଇଁ ଯେତେ ଶୁଖିଲା ହୋଇଥିଲେ, ଯେଉଁମାନଙ୍କର ସଖିଆ ଦେହ ସେମାନେ ଏହାର ସତ୍ୟାସତ୍ୟ ପରୀକ୍ଷା କଲେ ଜାଣି ପାରିବେ । କେହି ଯୁକ୍ତି କରିପାରନ୍ତି, "ଧରିତ୍ରୀ ଜନନୀର କୋଳ ମନୁଷ୍ୟର କି ଅନିଷ୍ଟ କରିପାରେ ? ପଶୁମାନେ ତ ପୁଣି ମାଟିରେ ଶୁଅନ୍ତି !" ମନୁଷ୍ୟ ଯଦି ମୂଳରୁ ପ୍ରାକୃତିକ ଜୀବନଯାପନ କରୁଥାଆନ୍ତା ତେବେ ତାହା ପକ୍ଷରେ ଏହା ସତ୍ୟ ହୋଇପାରନ୍ତା । ମାତ୍ର ସହସ୍ର ସହସ୍ର ବର୍ଷ ହେଲା ମନୁଷ୍ୟ ତା'ର ଜୀବନକୁ କ୍ରମେ କ୍ରମେ କୃତ୍ରିମ ଭାବରେ ଗଢ଼ିଆଣିଲାଣି । ତେଣୁ କି ମନୁଷ୍ୟଚର୍ମ ଅତି ପତଳା ଓ ଧନ ଲୋମ ବିହୀନ । ଏପରି ଅବସ୍ଥାରେ ହଠାତ୍ ପ୍ରାକୃତିକତାକୁ ଫେରିଯିବା ତାହା ପକ୍ଷରେ ସହ୍ୟ ହେବ କିପରି ? ତେବେ ଯଦି କେହି ପିଲାଦିନରୁ ମାଟିରେ ଶୋଇବା ଅଭ୍ୟାସ କରିପାରେ ତାହା ଭିନ୍ନ । ସାଧୁସନ୍ନ୍ୟାସୀମାନେ ସ୍ୱେଚ୍ଛା ତୃଣଶଯ୍ୟା ବା ଚର୍ମଶଯ୍ୟା ବ୍ୟବହାର କରନ୍ତି । କେହି କେହି କହନ୍ତି, ଖାଲି ଭୂଇଁରେ ଶୋଇଲେ ଶରୀରର ଚୁମ୍ବକ ଶକ୍ତି ପୃଥିବୀ ଟାଣିନିଏ ଓ ତଦ୍ଦ୍ୱାରା ଶରୀର ଅସୁସ୍ଥ ହୁଏ ।

ଭୂଇଁରେ ମସିଣା, ସପ, ଚଟାଇ, ଝୋଟ, କମ୍ବଳ, ଅଥବା ବିଛଣା ବା କନ୍ଥା ବିଛାଇ ଶୋଇବାଠାରୁ ଖଟରେ ଶୋଇବା ଉପକାରୀ । ତାହା କରିବାଦ୍ୱାରା ଶେଯର ତଳ ପଟରେ ପବନ ଚଳପାରେ । ଶୋଇଥିବା କାଳରେ ଚତୁର୍ଦ୍ଦିଗରେ ପବନ ଯାତାୟାତ କରୁଥିବା ଆବଶ୍ୟକ । ଏହା ଛଡ଼ା ଭୂଇଁର ସାପ, ମାଙ୍କଡ଼ସା, ବିଛା, ବିଛୁ, ଅସରପା, ଝିଟିପିଟି, ମୂଷା ପ୍ରଭୃତିର ଭୟ ଅନେକ ନିବାରିତ ହୁଏ । ଅଚେତନ ଅବସ୍ଥାରେ କେତେବେଳେ କି ବିପଦ ଘଟିପାରେ ତାହା କିଏ କହିବ ? ଅଧିକନ୍ତୁ ମଶାରି ବ୍ୟବହାର କରିବା ଉଚିତ । ସେଥିରେ ବିଷାକ୍ତ ଜୀବଜନ୍ତୁ ଭୟ ପ୍ରାୟ ନ ଥାଏ ଓ ମଶା ଜଞ୍ଜାଳରୁ ରକ୍ଷା ମିଳେ । ମେଲେରିଆ ପ୍ରପୀଡ଼ିତ ଦେଶରେ ମଶାରି ଅତି ପ୍ରୟୋଜନୀୟ ।

ଯେଉଁମାନେ ସଙ୍ଗତିସମ୍ପନ୍ନ ସେମାନେ ବହୁମୂଲ୍ୟ ପଲଙ୍କରେ ଓ ଗଦି ବିଛଣାରେ ଶୟନ କରନ୍ତି । ସମସ୍ତେ ତାହା ପାରନ୍ତି ନାହିଁ; ମାତ୍ର ବିଛଣାକୁ ସାଧ୍ୟାନୁସାରେ ନରମ କରିବାପାଇଁ ସମସ୍ତଙ୍କର ଚେଷ୍ଟା ଥାଏ । ବିଛଣା ଅଧିକ ନରମ ହେଲେ ଅବଶ୍ୟ ଅଧିକ ଆରାମ ମିଳେ । ମାତ୍ର ନରମ ବିଛଣା କେବଳ ଯେ ବହୁ ବ୍ୟୟସାଧ୍ୟ ତେତିକି ନୁହେ, ଅଭ୍ୟାସ କରି ଅତି ନରମ ବିଛଣାରେ ଶୋଇଲେ ରକ୍ତର ଚଳାଚଳରେ ବାଧା ପଡ଼େ ଓ ତଜ୍ଜନିତ ନାନା ରୋଗ ହେବାର ସମ୍ଭାବନା । ଅଜୀର୍ଣ୍ଣ ଓ ଅର୍ଶ ରୋଗର ଆଶଙ୍କା ଅଧିକ । ଯେଉଁମାନେ ଶଯ୍ୟାଶାୟୀ ରୋଗୀ ସେମାନଙ୍କ କଥା ସ୍ୱତନ୍ତ୍ର ।

ଶଯ୍ୟା ଅତି କୋମଳ ବା ଅତି କଠିନ କରିବା ଉଚିତ ନୁହେ । ଏ ବିଷୟରେ ମଧ୍ୟପନ୍ଥା ଅବଲମ୍ବନ କରିବା ଶ୍ରେୟ । ଶେଯକୁ ନିତି ଖରା ଖୁଆଇବ ।

## ପଠନ-ଲିଖନ

ପଠନ ବା ଲିଖନ କାଳରେ ଆଖି ଓ ହାତର ପରିଶ୍ରମ ସଙ୍ଗେ ସଙ୍ଗେ ମସ୍ତିଷ୍କର ଚାଳନା ଖୁବ୍ ହୁଏ । ସେ ନିମନ୍ତେ ଲିଖନ ପଠନର ସ୍ଥାନଟି ପରିଷ୍କାର ପରିଚ୍ଛନ୍ନ କରିବ ଏବଂ ସନ୍ତସନ୍ତିଆ, ଅନ୍ଧାରୁଆ ରଖିବ ନାହିଁ । ସେ ସ୍ଥାନକୁ ଯେପରି ଯଥେଷ୍ଟ ନିର୍ମଳ ବାୟୁ ଗମନାଗମନ କରୁଥିବ । ଅନେକ ଲୋକ ଶୋଇରହି ଲେଖାପଢ଼ା କରନ୍ତି । ତାହା ଶରୀର ପକ୍ଷରେ ଅନିଷ୍ଟକାରକ । ଚିତ୍ ହୋଇ ଶୋଇ ଉପରକୁ ଚାହିଁ ପଢ଼ିଲେ ଚକ୍ଷୁର ଶକ୍ତି କମିଯାଏ । ସିଧା ହୋଇ ବସିବ, ଯେପରି ମେରୁଦଣ୍ଡ ସଳଖ ଥିବ । ଦକ୍ଷିଣ ଶ୍ୱାସ କାଳରେ ପଢ଼ିଲେ ଶୀଘ୍ର ପାଠାଭ୍ୟାସ ହୁଏ । ରାତିରେ ଯଥାସାଧ୍ୟ ଲିଖନ ପଠନ ରହିତ କରିବ । ଦିନରେ ଯଥେଷ୍ଟ ସମୟ ଥାଉଁ ଥାଉଁ ଆଳସ୍ୟ ବା ବାଜେ କାମରେ କାଳ କଟାଇ ରାତିରେ ପଢ଼ିବା ଅନୁଚିତ । ରାତି ଆରାମ ଓ ବିଶ୍ରାମର କାଳ । ଯଦି ପଢିବାର ହୁଏ ତେବେ କିରାସିନ ଆଲୁଅ ବ୍ୟବହାର ନ କରି ଦୀପ ବ୍ୟବହାର କରିବା ଭଲ । ଆଲୁଅକୁ ବାମ ପାଖକୁ ରଖିବ ।

## ଆଖି କାନ

ଇନ୍ଦ୍ରିୟମାନଙ୍କ ମଧ୍ୟରେ ଆଖି ଓ କାନ ଏହି ଦୁଇଟି ସବୁଠାରୁ କୋମଳ ଓ ଏହାର ଯନ୍ତ୍ର ସବୁଠାରୁ ସୂକ୍ଷ୍ମ । ଚକ୍ଷୁର ରକ୍ଷା

ସମ୍ବନ୍ଧରେ ଆମେ ଉଦାସୀନ ହେବା ଫଳରୁ ଏ ଦେଶରେ ଅଳ୍ପ ବୟସରେ ଚଷମାର ଏତେ ବ୍ୟବହାର ଦେଖାଯାଉଛି । ଚକ୍ଷୁକୁ ପରିଷ୍କାର ରଖିଥିବ, ଦିନବେଳରେ ଅଧିକ ସୂର୍ଯ୍ୟତାପ ଲଗାଇ ଦେବ ନାହିଁ ଓ ରାତିରେ ଅଧିକ ପଢ଼ିବ ନାହିଁ । ସୂର୍ଯ୍ୟତାପରେ ବାହାରିବାକୁ ହେଲେ ଥଣ୍ଡା ଚଷମା ବ୍ୟବହାର କରିବା ଉଚିତ । ତଦ୍ଦ୍ୱାରା ଧୂଳି ଓ ଖରାରୁ ଚକ୍ଷୁ ରକ୍ଷା ପାଏ । କଜ୍ଜଳ ଦେବା ଏବେ ପ୍ରାୟ ଉଠିଯାଉଛି । ଅଭ୍ୟାସ କରି କଜ୍ଜଳ ବା ଭଲ ସୁରମା ବ୍ୟବହାର କରିବା ଉପକାରୀ ।

କାନକୁ ସଫା ରଖିବ । ସଳଖ କାଠି କାନରେ ପୂରାଇବା ଅନିଷ୍ଟକର । ଟାଣ ଖରାରେ ବା ଥଣ୍ଡା ପବନରେ ବାହାରକୁ ଗଲେ କାନକୁ ଢାଙ୍କିବା ଉଚିତ । ତଦ୍ଦ୍ୱାରା ଖରା ଓ ବାଉଆ ବାଧେ ନାହିଁ ।

## ଜିହ୍ୱା

ଜିଭ ଉପରେ ଯେଉଁ ସବୁ ଖରଖରିଆ ଅଂଶ ଅଛି, ସେଗୁଡ଼ିକ ସ୍ନାୟୁର ଶେଷଭାଗ । ସେହି ବାଟରେ ଲାଳ ଓ ରସ ବାହାରି ଖାଦ୍ୟରେ ମିଶେ । ଏହାର ଅଭାବ ହେଲେ ପାଟି ଶୁଖିଯାଉଛି ବୋଲି କହନ୍ତି । ପୁଣି ଏହି ସ୍ନାୟୁମାନଙ୍କର ସ୍ୱାଦ ଅନୁଭବ କରିବାର ଶକ୍ତି ଅଛି । ଜିଭରେ ଅଧିକ ମଳି ବସିଲେ ଏମାନଙ୍କ କାର୍ଯ୍ୟରେ ବାଧା ପଡ଼େ । ସର୍ବଦା ଜିଭ ପରିଷ୍କାର ରଖିବ ।

ସରାପ, ଅଫିମ ପ୍ରଭୃତି ବ୍ୟବହାର କଲେ, ଅଧିକା କଡ଼ୁଆ ପାନ ଖାଇଲେ, ଅତି ଗରମ ଚା ପାନ କଲେ କିମ୍ବା ଅତି ରାଗ ଖାଇଲେ ଏହି ସ୍ନାୟୁଗୁଡ଼ିକ କାଲୁଆ ମାରିଯାଏ, ଜିଭ ମୋଟା ହୋଇଯାଏ । ସେ ହେତୁ ତହୁଁ ଅଧିକ କଟୁ ପଦାର୍ଥ ନ ହେଲେ ତୃପ୍ତି ହୁଏ ନାହିଁ । ପ୍ରତ୍ୟେକ ପଦାର୍ଥର ସ୍ୱାଭାବିକ ମଧୁରତା ବା ରସ ଆସ୍ୱାଦନ ସୁଖରୁ ବଞ୍ଚିତ ହେବାକୁ ହୁଏ । ଏହା ଛଡ଼ା କଥା କହିବାରେ ବା ଶବ୍ଦ ଉଚ୍ଚାରଣ କରିବାରେ ବାଧା ଘଟେ । ଆଖି କାନ ଭଳି ଜିଭକୁ ମଧ୍ୟ ସାବଧାନରେ ରଖିବ ।

## ମୁଣ୍ଡ

ଜୀବର ସବୁ ଅଙ୍ଗ ଭିତରେ ମସ୍ତକ ଶ୍ରେଷ୍ଠତମ । କହିବାକୁ ଗଲେ ମୁଣ୍ଡ ଦେହର ମାଲିକ ବା ରାଜା । ଦେହ ରାଜ୍ୟର ଟେଲିଗ୍ରାଫ୍ ଅଫିସ ମସ୍ତିଷ୍କ । ସେଠୁ ହୁକୁମ ଆସିଲେ ଅନ୍ୟାନ୍ୟ ଅଙ୍ଗ ତାହା ତାମିଲ କରେ । ଶରୀରସ୍ଥ ସବୁ ଯନ୍ତ୍ରଠାରୁ ମସ୍ତିଷ୍କ କୋମଳ ଓ ସୂକ୍ଷ୍ମ । ସେଥିପାଇଁ ପ୍ରକୃତି ତାହାକୁ କଠିନ ଅସ୍ଥି ଆବରଣରେ ଘୋଡ଼ାଇ ରଖିଛନ୍ତି । ତାହା ଉପରେ ପୁଣି କେଶ ଦେଇଛନ୍ତି ଶୀତ ଓ ଉତ୍ତାପରୁ ରକ୍ଷା କରିବା ନିମନ୍ତେ । ଏତେ ସ୍ୱାଭାବିକ ରକ୍ଷା କବଚ ଥାଉଁ ଥାଉଁ ସୁଦ୍ଧା ଆମେ ମୁଣ୍ଡକୁ ବାହ୍ୟ ପ୍ରକୋପରୁ ଠିକ୍ ରକ୍ଷା କରି ପାରୁ ନାହିଁ । ମସ୍ତିଷ୍କ ଉପରେ ଅଳ୍ପ କିଛି ଅତ୍ୟାଚାର ହେଲା ମାତ୍ରେ ସାରା ଶରୀର ତା'ର ଫଳ ଭୋଗ କରେ ।

ପୃଥିବୀର ସବୁ ଦେଶର ଲୋକେ କୌଣସି ପ୍ରକାର ହେଲେ ଶିରସ୍ତ୍ରାଣ ବ୍ୟବହାର କରନ୍ତି । କେବଳ ବଙ୍ଗ ଓ ଉତ୍କଳବାସୀଙ୍କ ବ୍ୟତୀତ ଭାରତର ଅନ୍ୟ ସମସ୍ତେ ଟୋପି ବା ପଗଡ଼ି ଲଗାନ୍ତି । ଆମ ଦେଶର ଲୋକେ ପୂର୍ବେ ଲମ୍ବ କେଶ ରଖୁଥିଲେ ଓ ପଗଡ଼ି ବାନ୍ଧୁଥିଲେ । ଏବେ ବି କେହି କେହି ବୁଢ଼ା ଅଛନ୍ତି ଯେଉଁମାନେ ପଗଡ଼ି ଗୁଡ଼ାଉଛନ୍ତି । ଏକା ଆମେ ପରର ମର୍କଟ ଅନୁକରଣକାରୀ, ଦାସମନୋବୃତ୍ତିଧାରୀ ଆଧୁନିକ ଓଡ଼ିଆ ଟେକ୍‌କଣ ଓ ଚଟକଦାର ଟେରିର ମାୟାରେ ସେ ସବୁ ଗୁଡ଼ି ସାରିଲୁଣି । ପୁଣି ନାନାରଙ୍ଗର ରଙ୍ଗିନ ସୁଗନ୍ଧଯୁକ୍ତ ବଜାରି ତେଲର ମୋହରେ ନେକ ପ୍ରକାର ଅନିଷ୍ଟକର ପଦାର୍ଥ ଲଗାଇ ମସ୍ତିଷ୍କର ତଥା କେଶର କ୍ଷତି ସାଧନ କରୁଛୁଁ । ପଗଡ଼ି ମସ୍ତିଷ୍କକୁ କେତେ ଖରା, ଜାକର, ବତାସରୁ ରକ୍ଷା କରେ । ମୁଣ୍ଡରେ ପଗଡ଼ି ଥିଲେ ସମୟରେ କୌଣସି ଆକସ୍ମିକ ଦୁର୍ଘଟଣାରୁ ବି ମଥା ବଞ୍ଚିଯାଇପାରେ । ମୁଣ୍ଡକୁ ସାବଧାନରେ ରକ୍ଷା କରିବା ସର୍ବଦା ପ୍ରୟୋଜନ ।

## ବାୟୁ

ଖୋଲା ସ୍ଥାନର ବା ଅଧିକ ଗଛପତ୍ର ଥିବା ସ୍ଥାନର ପବନ ମନୁଷ୍ୟ ପକ୍ଷରେ ଉପକାରୀ । ଧୂଆଁ, ଧୂଳି ପୂର୍ଣ୍ଣ ଓ ଜନବହୁଳ ସ୍ଥାନର ପବନ ଅପକାରୀ । ପୂବାଳି ପବନ ସ୍ୱାସ୍ଥ୍ୟପକ୍ଷରେ ଅହିତକର । ପାର୍ବତ୍ୟ ଓ ସମୁଦ୍ରର ବାଉଆ ସ୍ୱାସ୍ଥ୍ୟବର୍ଦ୍ଧକ । ଯେତେ ପାରିବ ଉନ୍ମୁକ୍ତ ନିର୍ମଳ ବାୟୁ ସେବନ କରିବ ।

## ସୂର୍ଯ୍ୟ କିରଣ

ଖରା ନ ପାଇଲେ ଗଛପତ୍ର ସୁଦ୍ଧା ଉଧାଇ ପାରେନାହିଁ । ସୂର୍ଯ୍ୟକିରଣ ଯେ କେବଳ ପ୍ରାଣୀର ଜୀବନଦାୟକ ସେତିକି ନୁହେଁ; ସୂର୍ଯ୍ୟକିରଣର ବିଶୋଧକ, ଜୀବାଣୁବିନାଶକ ଶକ୍ତି ଅସୀମ ଅନେକ ସାଂଘାତିକ ରୋଗ କେବଳ ସୂର୍ଯ୍ୟ କିରଣ ସେବନ ଦ୍ୱାରା

ଭଲ ହୁଏ । ଲୁଗାପଟା, ଘରବାହାର, ଜନିଷପତ୍ରର ଯାହା ହେଉ ଖରା ଖୁଆଇଲେ ତହିଁରୁ କୀଟାଣୁ ବିନଷ୍ଟ ହୋଇ ଯାଆନ୍ତି ଓ ତାହା ବିଶୋଧିତ ହୋଇଯାଏ । ଶରୀରକୁ ପ୍ରତିଦିନ କିଛି ସମୟ ଖରା ଖୁଆଇବା ହିତକର । ତେବେ, ଉଦୟ ଓ ଅସ୍ତୋନ୍ମୁଖ ସୂର୍ଯ୍ୟ-କିରଣ ଅନିଷ୍ଟକର । ଶୀତ ଦିନେ ସକାଳୁ ଖରା ପୁହିଁବା ଗୋଟିଏ କୁ-ଅଭ୍ୟାସ । ଭାଦ୍ରମାସର ଖରା ପିତ୍ତବର୍ଦ୍ଧକ । ମଧ୍ୟାହ୍ନସୂର୍ଯ୍ୟର କିରଣ ଉପକାରୀ । କେବଳ ମସ୍ତକକୁ ଢାଙ୍କି ସର୍ବାଙ୍ଗ ଖରା ଖୁଆଇବା ଉଚିତ ।

## ଅଗ୍ନି

ଶ୍ଳେଷ୍ମାଧିକ୍ୟ ବା ସନ୍ନିପାତ ନ ହେଲେ ସାଧାରଣ ମାନବ ପକ୍ଷରେ ଅଗ୍ନିସେବନ ଅପକାରୀ । ବିଶେଷତଃ ଶୀତକାଳର ପ୍ରଭାତରେ ନିଆଁ ପୁହିଁବା ବିଷତୁଲ୍ୟ ।

## ବର୍ଷା

ବୃଷ୍ଟି ଜଳରେ ତିନ୍ତିବା ଅହିତକର । ବୃଷ୍ଟିଜଳ ପାଦରେ ଲାଗିଲେ ମଧ୍ୟ ଅନିଷ୍ଟ କରେ ।

## କାକର

ସାଧାରଣତଃ କାକର ଅହିତକର । ବିଶେଷତଃ ଭାଦ୍ର, ଅଶ୍ୱିନ ମାସର କାକର ବଡ଼ ଅପକାରୀ ।

## ପରିଚ୍ଛନ୍ନତା

ନିଜର ବସିବା, ଉଠିବା, ଶୋଇବାର ଘର, ଗୃହର ଭିତର ବାହାର, ଏପରି କି ପାଇପଡ଼ିଶାଙ୍କ ଘରଦୁଆର ସୁଦ୍ଧା ଯେପରି ପରିଷ୍କାର ପରିଚ୍ଛନ୍ନ ରହେ ସେଥିପ୍ରତି ନଜର ରଖିବ । କେବଳ ନିଜର ଘର ଖଣ୍ଡିକ ସଫା ସୁତୁରା ରଖିଲେ ବିଶେଷ ଲାଭ ନାହିଁ, ଯେବେ ଗ୍ରାମର ବୃଣଆଡ଼ ଓ ପ୍ରତିବାସୀଙ୍କ ଘର ଦୁଆର ଅପରିଷ୍କାର ଥାଏ । ସେ ସବୁ ସ୍ଥାନର ଦୂଷିତ ପବନ, ମାଛି ପ୍ରଭୃତି ଆପଣାର ଅନିଷ୍ଟ କରିବାରେ ତ୍ରୁଟି କରିବେ ନାହିଁ । ଘରର ନାଳୁଆକୁ ପ୍ରତିଦିନ ପରିଷ୍କାର କରିବ, ଘର ପାଖରେ ଗୋବର ଗଦା ପଚିବାକୁ ଦେବ ନାହିଁ, କୌଣସି ପ୍ରକାର ଅଳିଆ ଜମା କରିବ ନାହିଁ ଓ ଆଖ-ପାଖରେ ମଳମୂତ୍ର ତ୍ୟାଗ କରିବ ନାହିଁ । ଏପରି କି ଛେପ, ଖଙ୍କାର, ପାନ ପିକ ପ୍ରଭୃତି ନିଜେ ଯେଉଁଠି ସେଠି ପକାଇବ ନାହିଁ ଓ ପଡ଼ିଥିବାର ଦେଖିଲେ ତାହା ସଫା କରାଇଦେବ । ଗ୍ରାମରେ ଯାହା ଘରେ ଏପରି କିଛି ଅନାଚାର ହେଉଥିବ ତାହା ନିବାରଣ କରିବାର ଯତ୍ନ କରିବ । ଗ୍ରାମରେ ବର୍ଷାଜଳ ନିର୍ଗମନର ମାର୍ଗ ସଫା କରାଇବ ଓ ପୋଖରୀ ଗଡ଼ିଆରେ ଦଳ ବା ଏଣ୍ଡି ହେଲେ ତାହା କଢ଼ାଇ-ନେବ । ଘର ପାଖରେ ବା ଗ୍ରାମରେ କେଉଁଠି ଝାଡ଼ଜଙ୍ଗଲ ଜନ୍ମିଲେ ତାହା କଟାଇ ଦେବ । କାରଣ ତହିଁ ମଧ୍ୟରେ ମଇଳା ପାଣି ଜମି ପଚିବାର ମଶା ମାଛି ଜନ୍ମିବାର ଓ ସାପ ବେଙ୍ଗ ବସା କରିବାର ସମ୍ଭାବନା ।

## ବ୍ୟକ୍ତିଗତ ଶୌଚ

ନିଜର ଦେହକୁ ଯଥାସାଧ୍ୟ ସଫା ସୁତୁରା ରଖିବ । ଶରୀର ଶୁଚି, ପରିଷ୍କାର ଓ ପବିତ୍ର ରହିଲେ ରୋଗ ସହଜରେ ଆକ୍ରମଣ କରିପାରେ ନାହିଁ । ବ୍ୟବହାର୍ଯ୍ୟ କୌଣସି ପଦାର୍ଥ ମଇଳା ରଖିବ ନାହିଁ ଓ ହେଲେ ତାହା ସଫା କରାଇବ ବା ତ୍ୟାଗ କରିବ । ଭୋଜନ, ଶୟନ, ବସ୍ତ୍ର, ଶଯ୍ୟା ପ୍ରଭୃତି ବଡ଼ ବଡ଼ କଥା ଥାଉ; ସାମାନ୍ୟ ସାମାନ୍ୟ କଥାରେ ମଧ୍ୟ ମଇଳାକୁ ପ୍ରଶ୍ରୟ ଦେବନାହିଁ, ଯେପରି ଆଖିର ମେଞ୍ଚିଆ, ନାକର ସିଙ୍ଘାଣି ବା କାନର ଭୁଆ । ଘର ଭିତରେ ଯେଉଁଠି ସେଠି ପାନ ପିକ, ଛେପ, ଖଙ୍କାର ପକାଇବ ନାହିଁ । ତାହାପାଇଁ ପିକଦାନ ବା କୁଣ୍ଡ ଅଥବା ମାଟି ପଲମ ରଖିଥିବ । ଘର ଭିତରେ ବିଆସିଲ କାଠ, ପାନସିଠା, ଖଣ୍ଡିଆ ବିଡ଼ି, ଛିଣ୍ଡା କାଗଜ ପକାଇବ ନାହିଁ । କୌଣସି ସ୍ୱତନ୍ତ୍ର ସ୍ଥାନରେ ରଖିଥିବ ଓ ସମୟାନୁସାରେ ଯଥାସ୍ଥାନରେ ନିକ୍ଷେପ କରିବ । ହାତ କୌଣସି ପ୍ରକାରେ ମଇଳା ହେଲେ ତାହା ତତ୍କ୍ଷଣାତ୍ ଧୋଇ ପକାଇବ । ସଫା ହାତ ଥିଲେ ମଧ୍ୟ ତାହା ସବୁବେଳେ ଆଖିରେ, କାନରେ, ନାକରେ, ପାଟିରେ ମାରିବ ନାହିଁ । ପେଟ, ଅଣ୍ଟା ବା କାଖ ମୂଣ୍ଡ କୁଣ୍ଡାଇ ହେବା ଜଣଜଣଙ୍କର ଅଭ୍ୟାସ ହୋଇ ହୋଇ ମୁଦ୍ରାଦୋଷରେ ପରିଣତ ହୁଏ । ପିନ୍ଧିବା ଲୁଗାପଟା ସବୁବେଳେ ସଫା ରଖିବ ଓ ନିତ୍ୟ ନିୟମିତ ଭାବରେ ପଖାଳୁଥିବ । ପାଳଟା ଲୁଗା ନ ଧୋଇ ପୁଣି ପିନ୍ଧିବା ଉଚିତ ନୁହେ । ଭୋଜନ ପୂର୍ବରୁ ଯେପରି ହସ୍ତ ମୁଖ ପ୍ରକ୍ଷାଳନ କରିବ । ଶୟନ ପୂର୍ବରୁ ମଧ୍ୟ ହସ୍ତପଦାଦି ଧୋଇବ ଓ ଧୂଆ ଲୁଗା ପିନ୍ଧି ଶୟନ କରିବ । ଶରୀର ପରମାତ୍ମାଙ୍କ ମନ୍ଦିର ଜାଣି ତାହା ସର୍ବଦା ଶୁଚି ଓ ପବିତ୍ର ରଖିବ ।

## କ୍ଷୌର କାର୍ଯ୍ୟ

ସୁ ହେଉ ବା କୁ ହେଉ, କ୍ଷୌର ହେବା ସଭ୍ୟତାର ପରିଚାୟକ । ଶରୀରରକ୍ଷା ପାଇଁ ବାଳର ପ୍ରୟୋଜନ ନ ଥିଲେ ତାହା ପ୍ରକୃତି

ଦେଇ ନଥାନ୍ତେ । ମାତ୍ର କ୍ଷୌର କାର୍ଯ୍ୟ ସବୁ ଦେଶରେ ଆବହମାନ କାଳରୁ ଚଳି ଆସୁଅଛି ଓ ତାହା ଏତେ ସାଧାରଣ କର୍ମ ହୋଇପଡ଼ିଛି ଯେ ତାକୁ ଛାଡ଼ିବା ସହଜ ନୁହେଁ । କ୍ଷୌର କାର୍ଯ୍ୟରେ ଖୁବ୍ ସାବଧାନ ହେବା ଉଚିତ । ଭଣ୍ଡାରୀ କ୍ଷୁରରେ କ୍ଷୌର ହେବା ବିପଜ୍ଜନକ । ଏଥିପାଇଁ ନିଜର କ୍ଷୁର ବା କଳକ୍ଷୁର ରଖି ନିଜେ କ୍ଷୌର ହେବା ନିରାପଦ । ଭଣ୍ଡାରୀ ହାତରେ କ୍ଷୌର ହେବାକୁ ହେଲେ ନିଜର କ୍ଷୁର ତାକୁ ଦେବ ଓ ତାହାର ହାତ ଧୂଆଇ କ୍ଷୌର ହେବ ।

ନଖ ବଢ଼ାଇବ ନାହିଁ । ପ୍ରତିଦିନ କେହି କେହି ଦାନ୍ତରେ ବା କଳରେ କାଟି ଦିଅନ୍ତି । ନଖ ବଢ଼ିଲେ ତାହା ସନ୍ଧିରେ ମଳି ଜମେ । ସେ ମଳି ବଡ଼ ବିଷାକ୍ତ । ପୁଣି ନଖ ଥିଲେ କୁଣ୍ଡାଇ ହୋଇ ଚମ ଛିଡ଼ିଗଲେ ସେହି ବାଟରେ ଶରୀରକୁ ବିଷ ପ୍ରବେଶ କରେ ।

## ନିଶାପାଣି ଅମଳ

ଅମଳ ମାତ୍ରକେ ନିଶା, ସେ ଯେତେ ସାମାନ୍ୟ ହେଉ ପଛକେ । ସରାବ, ଗୁଲି, କୋକେନ, ଗଞ୍ଜେଇ, ଭାଙ୍ଗ, ତାଡ଼ି, ଅଫିମ—ଏମାନ ଯେପରି ଅନିଷ୍ଟକର, ଉଣାଅଧିକରେ ପାନ, ଗୁଡ଼ାଖୁ, ବିଡ଼ି, ନାସ, ଚା, ମଧ୍ୟ ସେଇଆ । ଶରୀରରକ୍ଷା ନିମନ୍ତେ ସେ ସବୁର କୌଣସି ପ୍ରୟୋଜନ ନାହିଁ; ବରଂ ଶରୀର କ୍ଷୟର କାରଣ ସେଗୁଡ଼ିକ । ଲୋକେ ମଉଜ ଆଶାରେ, ଭ୍ରାନ୍ତ ଧାରଣାରେ ବା କୁ-ସଙ୍ଗ କୁ-ପରାମର୍ଶରେ ପଡ଼ି ତହିଁରେ ଆସକ୍ତ ହୁଅନ୍ତି । ଥରେ ତା'ର ଫାନ୍ଦରେ ପଡ଼ିଲେ ଉଧୁରିବା ସହଜ ହୁଏ ନାହିଁ । ଯେଉଁମାନଙ୍କ ଚିତ୍ତ ଦୁର୍ବଳ ସେହିମାନେ ସହଜରେ ଏ ପଙ୍କରେ ଲାଖିଯାଆନ୍ତି ଓ କ୍ରମେ ରସାତଳାଭିମୁଖୀ ହୋଇ ତଳକୁ ତଳକୁ ବୁଡ଼ନ୍ତି । କେହି କେହି କୌତୂହଳବଶତଃ ପରୀକ୍ଷା କରିବାକୁ ଯାଇ ଲାଖନ୍ତି । ମୂଳରୁ ଏଥିରୁ ଦୂରରେ ରହିବା ଦରକାର । ନିଶାରେ ଧନ, ମାନ, ସ୍ୱାସ୍ଥ୍ୟ ସବୁ ଯାଏ, ଏ କଥା କିଏ ନ ଜାଣେ ? ତଥାପି ଯେ ଏତେ ଲୋକ କିପରି ଏହାର ସେବକ, ଏହାହିଁ ଗୋଟିଏ ପ୍ରହେଳିକା ।

ଆମ ଦେଶରେ ନିଶା ମଧ୍ୟରେ ସର୍ବପ୍ରଧାନ ଅଫିମ ଓ ଅମଳ ମଧ୍ୟରେ ପାନ । ଏହି ଦୁଇଟି ଅର୍ଥ ଓ ସ୍ୱାସ୍ଥ୍ୟ ଉଭୟ କେତେ ଗ୍ରାସ କରୁଛି ତା'ର ସୀମା ନାହିଁ । ନିଶା ଅମଳ କେବଳ ଗୋଟାଏ ମନର ବିକାର । ମନରେ ଜୋର ଆଣିଲେ ଏକ ମୁହୂର୍ତ୍ତରେ ଛୁଃ—କରି ଦେଇ ହେବ । ଯେଉଁମାନେ ଭାବନ୍ତି ଦେହର ଅନିଷ୍ଟ ହେବ ବୋଲି, ସେମାନଙ୍କର ଏହା ଭୁଲ । ସେହି ପଇସାରେ ପୁଷ୍ଟିକର ଖାଦ୍ୟ ଖାଇଲେ କେତେ ଉପକାର ନ ହୁଅନ୍ତା ।

ଏବେ ପୁଣି ଏକ ନୂତନ ଉପସର୍ଗ ଜୁଟିଛି, ଚା । ବଡ଼ ଲୋକଙ୍କ କଥା ଛାଡ଼ । ନିହାତି ମଫସଲରେ ଓ ନିହାତି ଗରିବ ଲୋକଙ୍କ ଘରେ ମୁଦ୍ଧା କ୍ରମେ ଏ ରାକ୍ଷସୀ ଅଧିକାର ବିସ୍ତାର କରୁଛି । ଜାତିର ଅଧୋଗତି ଆଉ କେତେ ଦୂର ଯାଇପାରେ ? ଗୁଣ୍ଡି, ନାସ ବା ପାନଠାରୁ ଆରମ୍ଭ କରି କୋକେନ, ମଦଯାକେ ସବୁ ନିଶା ପଦାର୍ଥର ପ୍ରବଳ ପ୍ରଭାବ ସ୍ନାୟୁମଣ୍ଡଳୀ ଉପରେ । ନିଶାର ଉତ୍ତେଜନା ଦ୍ୱାରା ଶରୀରର ସ୍ନାୟୁଗୁଡ଼ିକ କ୍ରମେ ନିର୍ଜୀବ ହୋଇ ଜାଲିଆ ମାରିଯାଏ । ତହିଁରୁ ଅନୁଭବ ଶକ୍ତି ଲୋପ ପାଏ । ସେହି କାରଣରୁ ନିଶାର ଧାରକ ଶକ୍ତି ଓ ଯନ୍ତ୍ରଣା ନିବାରଣର ଶକ୍ତି ଅଛି ବୋଲି ଲୋକେ କହନ୍ତି । ମାତ୍ର ଏହା କ୍ଷଣିକ ଓ ଏହାର ପରିଣାମ ଭୟଙ୍କର । ନିଶାଖୋରମାନଙ୍କର ଶ୍ୱାସାଧାର, ପାକାଶୟ ବା ଅନ୍ତ୍ରରେ କ୍ଷତ କିମ୍ବା କୌଣସି ଦୁରାରୋଗ୍ୟ ସ୍ନାୟବିକ ବ୍ୟାଧି ହୋଇଥାଏ ।

## ସୁଗନ୍ଧ ଦ୍ରବ୍ୟ

ସୁଗନ୍ଧଯୁକ୍ତ ଦ୍ରବ୍ୟକୁ ଲୋଡ଼ିବା ମନୁଷ୍ୟର ସ୍ୱଭାବ । ଏଥିପାଇଁ ପ୍ରକୃତି କେତେ ସୁନ୍ଦର ସୁନ୍ଦର ଫୁଲ ସୃଷ୍ଟି କରିଛନ୍ତି । ତଥାପି ମନୁଷ୍ୟ କେତେ କୃତ୍ରିମ ସୁଗନ୍ଧର ଆଶ୍ରୟ ନେଉଛି । ସୁବାସିତ ତେଲ ବହୁତ ଲୋକେ ବ୍ୟବହାର କରନ୍ତି । ସେଥିରେ ଯେଉଁସବୁ ଉପାଦାନ ବ୍ୟବହାର କରାହୁଏ ତାହାର ଅଧିକାଂଶ ଭାଗ ବିଷାକ୍ତ । ନାନା ପ୍ରକାର ବିଦେଶୀ ଅତର ଏବେ ଆମଦାନି ହେଉଛି । ଏହା ସବୁ ରାସାୟନିକ ପ୍ରଣାଳୀରେ ନାନା ଖନିଜ ବସ୍ତୁରେ ପ୍ରସ୍ତୁତ ହୁଏ । ପଇସା ଦେଇ ଏ ସବୁ ବିଷ କିଣିବା କେତେ ସଙ୍ଗତ ତାହା ବିବେଚନା କରନ୍ତୁ । ଶିକ୍ଷିତ ଲୋକଙ୍କ ଘରେ ଯେତେ ଚକଚକିଆ ତେଲ, ସ୍ପିରିଟ୍ ମିଶା ଏସେନ୍ସ, ସାବୁନ, କେଶ ଲୋସନ, କସମେଟିକ, ପୋମେଡ଼, କ୍ରିମ ପ୍ରଭୃତି ବ୍ୟବହୃତ ହେଉଛି ତାହା ମୋଟ କଲେ କୋଟି କୋଟି ଟଙ୍କା ହେବ । ଏଥିରେ କୌଣସି ଲାଭ ତ ନାହିଁ, ବରଂ ଶରୀରର ଅପକାର । ପୁଣି ଏହିସବୁ ରାସାୟନିକ କଡ଼ା ଗନ୍ଧ ଦ୍ରବ୍ୟ ବ୍ୟବହାର କରି ଘ୍ରାଣେନ୍ଦ୍ରିୟର ସୂକ୍ଷ୍ମ ଅନୁଭବ ଶକ୍ତି ଲୋପ ପାଇ ଯାଉଛି । କେତେ ଲୋକ ପାନରେ ଖାଇବା ସକାଶେ ପେଟେଣ୍ଟ ବାସ ମସଲା ବି ବ୍ୟବହାର କରନ୍ତି । ଏମାନଙ୍କରେ କେଜାଣି କି ଦୂଷିତ ପଦାର୍ଥ ଥାଇପାରେ ତାହା କିଏ ଜାଣୁଛି ! କେବଳ ବାସ ଲୋଭରେ ଯାହା ତାହା ଗିଳିବା ଅତି ନିର୍ବୁଦ୍ଧିତାର କାର୍ଯ୍ୟ ।

## ଆଲୁଅ

ରାତି ବିଶ୍ରାମ ସକାଶେ ଓ ଦିବା କର୍ମ ସକାଶେ ; ଏହା ପ୍ରକୃତିର ନିୟମ । ମନୁଷ୍ୟେତର ସବୁ ପ୍ରାଣୀ ଏହି ନିୟମରେ ଚଳନ୍ତି । ଏକା ମନୁଷ୍ୟ ନିଜର ବୁଦ୍ଧିବଳରେ ଦିନକୁ ରାତି ଓ ରାତିକୁ ଦିନ କରିବାର ଚେଷ୍ଟା କରେ । ସେହି ଚେଷ୍ଟା ଫଳରେ ନାନା ପ୍ରକାର ଡିବା, ଦୀପ, ଲଣ୍ଠନ, ଲ୍ୟାମ୍ପ, ବତି, ଗ୍ୟାସ୍ ଓ ବିଜୁଳି ଆଲୁଅର ସୃଷ୍ଟି ।

ଯେଉଁ ବ୍ୟକ୍ତି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ୧୨ ଘଣ୍ଟା କର୍ମରେ ଲାଗି ରହିବ, ତା'ର ସନ୍ଧ୍ୟା ପରେ କିଛି ନ କରି ବିଶ୍ରାମ ନେବା ଉଚିତ । ମାତ୍ର ସଂସାରରେ ଘର କରି ଓ ସମାଜରେ ଚଳି ତାହା କରି ହୁଏ ନାହିଁ । ସେହିହେତୁ ଆଲୁଅର ପ୍ରୟୋଜନ ହୁଏ ।

ପୂର୍ବକାଳରେ ଗରିବ ଲୋକେ ନଳିତାଖାଡ଼ି, ତାଳବରଡ଼ା, ନଡ଼ିଆପତ୍ର ବା ଶାଳରଳା ଜାଳି ଅନ୍ଧାର ଦୂର କରୁଥିଲେ । ସାଧାରଣରେ ପୋଲଙ୍ଗ, ଜଡ଼ା, କରଞ୍ଜ ତେଲ ଦୀପରେ ଜଳା ହେଉଥିଲା । ଏବେ ତାହା ପରିବର୍ତ୍ତରେ ଆସିଛି କିରାସିନି ତେଲ ଓ ସେଥିପାଇଁ ଖରଚ ବଢ଼ିଛି ଢେର୍ । ଘରେ ଘରେ ହରିକେନ୍ ଲଣ୍ଠନ, ଯାତ୍ରା ପର୍ବରେ କାରବାଇଡ଼ ଗେସ ବା ପେଟ୍ରୋମାକ୍ସ । ସହରର ଉଜ୍ଜ୍ୱଳ ଗ୍ୟାସ ବା ବିଜୁଳି କଥା ଛାଡ଼ । ପୁରୁଣା ବଇଠା ଆଲୁଅ ଆଜି ଲୋକଙ୍କ ମନକୁ ରୁଚୁ ନାହିଁ ବା ଆଖିକୁ କଣ୍ଟ ନାହିଁ । ଜୋର ଆଲୁଅକୁ ରହିଁ ରହିଁ ଆଖିର ସୂକ୍ଷ୍ମ ଅନୁଭବ ଶକ୍ତି ନଷ୍ଟ ହୋଇଗଲାଣି । କେବଳ ଅଭ୍ୟାସ ଫଳରେ ଏହା ଘଟିଛି । ସେହି ଦୀପଶିଖା ତ ପୁଣି ତାଳପତ୍ର ପୋଥିର ଅକ୍ଷର ପଢ଼ିବା ଲେଖିବାରେ ଯଥେଷ୍ଟ ହେଉଥିଲା । ଦୀପ ଜାଳି ପିପ୍‌ପଳୀ ଛୁଞ୍ଚି କାମ ହୋଇ ପାରୁଥିଲା । ଏବେ ହେଲା କ'ଣ ? ଆଖିର ସେ କ୍ଷମତା ଗଲା କୁଆଡ଼େ ? ଏଥିପାଇଁ କିରାସିନି ତେଲର ଧୂଆଁ ଓ ତୀବ୍ର ଆଲୁଅ ଏକା ଦାୟୀ । କିରାସିନି ଯେ କେବଳ ଆଖିକୁ ଖରାପ କରୁଛି ତାହା ନୁହେଁ, ତା'ର ବିଷାକ୍ତ ଧୂଆଁ ଓ ବାଷ୍ପ ନାକ ବାଟରେ ପଶି ସ୍ୱାସ୍ଥ୍ୟର ପ୍ରଭୂତ କ୍ଷତି କରୁଛି । ସ୍କୁଲ କଲେଜର ଛାତ୍ରମାନଙ୍କର ଅବସ୍ଥା ଦେଖିଲେ ଏହା ସହଜରେ ଜଣାପଡ଼େ । ରାତିରେ ଯଦି ନିତାନ୍ତ ଆଲୁଅ ପାଖରେ ବସି ପଢ଼ାପଢ଼ି ବା ସେହିପରି କାମ କରିବାର ଦରକାର ପଡ଼େ ତେବେ ତାହା ଯେତେ କମ ପାରିବ କରିବ ଓ କିରାସିନି ଆଲୁଅ ବ୍ୟବହାର କରିବ ନାହିଁ । ମାଲତୀ ଦୀପ ବା ମହମବତୀ ତହିଁକି ଭଲ । ଶୋଇବା ସମୟରେ କଦାପି ଘର ଭିତରେ କିରାସିନି ଲ୍ୟାମ୍ପ ରଖିବ ନାହିଁ । କିରାସିନି ଆଲୁଅକୁ ଆଖିର ଶତ୍ରୁ ମଣି ଚଳିଲେ ଆଖିର ବାରପଣ ବିପଦ କଟିଯିବ ।

## ବସ୍ତ୍ର

ଲୁଗା ପିନ୍ଧିବା ଗୋଟାଏ ସଭ୍ୟତାର ଚିହ୍ନ । ଏବେ ବି ଏପରି ମନୁଷ୍ୟ ଅଛନ୍ତି ଯେଉଁମାନେ ଲଙ୍ଗଳା ହୋଇ ରହନ୍ତି । କେତେ ସ୍ଥାନରେ ଗଛ ବକଳ ବା ପତ୍ର ସିଇଁ ପିନ୍ଧନ୍ତି । କେହି ବା ପଶୁର ଚମଡ଼ା ଘୋଡ଼ାଇ ହୁଅନ୍ତି । ଆମ ଦେଶରେ ସୂତାରେ ବୁଣା ଲୁଗା ବ୍ୟବହାର ହୁଏ । ସୂତାର ଉପାଦାନ ନାନା ରକମ । କପା, କଦଳୀ ଗଛ ତନ୍ତୁ, ଝୋଟ, ତସର, ଏଣ୍ଡି, ପାଟ, ପଶମ ପ୍ରଭୃତି । ଏମାନଙ୍କ ମଧ୍ୟରେ କପା ପ୍ରଧାନ । ତସର, ଏଣ୍ଡି, ପାଟ କୀଟଜ । ଏ ପୋକମାନ ଆବାଦ କରିବାକୁ ପଡ଼େ । ଓଡ଼ିଶାରେ ଏମାନଙ୍କର ଆବାଦ ଅଛି । ତହିଁରୁ ଲୁଗା ମଧ୍ୟ ପ୍ରସ୍ତୁତ ହୁଏ । ପଶମ ଲୁଗା ଏଠି ତିଆରି ହୁଏ ନାହିଁ । ବାହାରୁ ଆସେ । ସିଲ୍‌କ ଓ ପଶମୀ ଲୁଗା ମାରି ହୁଏ ନାହିଁ ବୋଲି ଅନେକେ ତାହା ବ୍ୟବହାର କରନ୍ତି । ଆଉ ବ୍ୟବହାର କରନ୍ତି ସୌଖୀନ ଓ ଧନୀ ଲୋକେ । ଆମ ଜଳହାଓଆରେ ପଶମ ଲୁଗାର କୌଣସି ପ୍ରୟୋଜନ ନାହିଁ । ଯେଉଁ ଶୀତ ପଡ଼େ ତହିଁରେ କପା ଲୁଗାରେ ବେଶ୍ ଚଳିବ । ସିଲ୍‌କର ଆବଶ୍ୟକତା ମଧ୍ୟ ପ୍ରାୟ ତଦ୍ରୂପ । ତେବେ ଗୋଟାଏ ଶିଳ୍ପ ହିସାବରେ ଏହାର ଆବଶ୍ୟକତା ଅଛି । ସିଲ୍‌କ ବା ପଶମ ଲୁଗାରେ କପା ପରି ଚଞ୍ଚଳ ମଳି ଧରେ ନାହିଁ ଓ ତାହା ଅପେକ୍ଷାକୃତ ମଜବୁତ୍ । ଏତିକି ଏମାନଙ୍କର ସୁବିଧା; ମାତ୍ର ବ୍ୟୟ ତୁଳନାରେ ଏ ସୁବିଧା କିଛି ନୁହେଁ । ସିଲ୍‌କ ବା ପଶମ ଦେହରେ ଥିଲେ ଦେହର ଉତ୍ତାପ ସହଜରେ ବାହାରି ଯାଇ ପାରେ ନାହିଁ ଓ ବାହାରର ଶୈତ୍ୟ ବା ଉତ୍ତାପ ଦେହକୁ ଆସିପାରେ ନାହିଁ । କପା ଲୁଗାର ଆବରଣ ଯେ ତାହା ନ କରେ ତାହା ନୁହେଁ, ମାତ୍ର ସିଲ୍‌କ ପଶମର ଏ କ୍ଷମତା ଅଧିକ । କିନ୍ତୁ କପା ଯେପରି ଦେହର ମଳି ଓ ଝାଳ ଶୋଷଣ କରିପାରେ ପଶମ ରେଶମ ତାହା ପାରନ୍ତି ନାହିଁ । ଯେଉଁ ଲୁଗା ହେଉ, ତାହାକୁ ଧୋଇବା, କାଚିବା ଓ ଖରାରେ ଦେବା ଉଚିତ । କପା ଯେତେ ଧୂଆ, କଚା ଓ ଖରାର ମାଡ଼ ସମ୍ଭାଳିପାରେ ଏମାନେ ତାହା ପାରନ୍ତି ନାହିଁ । ସବୁଆଡ଼ୁ ବିଚାର କରି ଦେଖିଲେ କପା ଲୁଗା ବ୍ୟବହାର ହିତକର । ମଧ୍ୟ, କପା ଉଜ୍ଜ୍ୱଳ ପଦାର୍ଥ ଥିବା ହେତୁ ଅଧିକ ନିର୍ଦ୍ଦୋଷ ଓ ପବିତ୍ର ।

ପତଳା ବା ଅତି ଗପ୍ ବୁଣା ଲୁଗା କ୍ଷତିଜନକ । ମଧ୍ୟଭଲ କପା ଲୁଗା ସବୁଠାରୁ ଭଲ । ଅବଶ୍ୟ ଗ୍ରୀଷ୍ମ ଓ ଶୀତର ତଫାତ୍

ଅନୁସାରେ ମୋଟା ପତଳାର କପଡ଼ା ପରିମାଣ ତାରତମ୍ୟ ହୋଇପାରେ ।

## ଅଙ୍ଗରଖା

ଜାମା ପିନ୍ଧିବା ଆମ ଦେଶରେ ବହୁକାଳରୁ ଚଳୁଛି । ଅନୁମାନ ହୁଏ, ମୁସଲମାନମାନେ ଏ ଦେଶକୁ ଆସିବା ଉତ୍ତାରୁ ପା-ଜାମାର ପ୍ରଚଳନ ହୋଇଛି । ତେବେ ଆମର ଯେଉଁ ଜାମା ଓ ପା-ଜାମା ଚଳୁଥିଲା ଏବଂ ଏବେ ମଧ୍ୟ ଚଳୁଛି, ତାହା ଖୁବ୍ ଢିଲା । ୟୁରୋପୀୟମାନଙ୍କ ଦେଖାଦେଖି ଏବେ ଜାକ ଜାମା ଓ ପା-ଜାମା ଅନେକେ ବ୍ୟବହାର କରୁଛନ୍ତି । ଜାମା ଦେହରେ ଅତି ଜାକ୍ ରହିବା ଅନିଷ୍ଟକର । ତଦ୍ଦ୍ୱାରା ରକ୍ତ ସଞ୍ଚାଳନରେ ବାଧା ପଡ଼େ । ଆଉ ବାହାର ପବନ ଦେହରେ ଲାଗିପାରେ ନାହିଁ । ପୁଣି ଅଙ୍ଗପ୍ରତ୍ୟଙ୍ଗ ଚଳନା ବା ବସାଉଠାରେ ମଧ୍ୟ ବଡ଼ ଅସ୍ୱଚ୍ଛନ୍ଦତା ବୋଧହୁଏ । ଏ ଦେଶର ଜଳହାଓଆରେ ବିଲାତି କଟ୍ ଜାମା ବ୍ୟବହାର କରିବା ଉଚିତ ନୁହେ ।

ପୂର୍ବକାଳରେ ଆମ ଦେଶର ଭଦ୍ରଲୋକେ ଧୋତି, ଚାଦର ଓ ଗାମୁଛା ବ୍ୟବହାର କରୁଥିଲେ । କେବଳ ରାଜରାଜୁଡ଼ାମାନେ ବେଳେବେଳେ ଜାମା ଲୋଡ଼ୁଥିଲେ । ଗରିବ ଲୋକଙ୍କ କଥା ଛାଡ଼ । ଏବେ ସାଧାରଣ ସହର ବଜାରରେ ଦେଖାଯାଏ, କୋଟ, କମିଜ୍, ପଞ୍ଜାବୀ ନ ହେଲେ ଘରୁ ବାହାରି ହେଉ ନାହିଁ । ଅନେକେ ଅନ୍ତତଃ, ଏପରିକି ନିହାତି ମଫସଲରେ ମଧ୍ୟ, ଯେଉଁମାନେ ଅହୋରାତ୍ର ଦେହରେ ଗେଞ୍ଜି ବା ଜାକେଟ୍ ରଖନ୍ତି । ତାହା ଯେ ଶାରୀରିକ ପ୍ରୟୋଜନୀୟତା ହେତୁ, ଏହା କେବେ ହୋଇ ନ ପାରେ । ସ୍ତ୍ରୀ ଲୋକଙ୍କର ମଧ୍ୟ ସେମିଜ, ସାୟା, ପେଟି କୋଟ, ଅଣ୍ଡର ଉଇଅର, ବ୍ଲାଉସ, ଜାକେଟ,—ସର୍ବୋପରି ଶାଢ଼ୀ ! ଏହି ସବୁ ଗଧ ଲଦାନରେ କି ଫଳ ? ଏହା କୁଆଡ଼େ ବେଶୀ ସଭ୍ୟତା, ଶ୍ଳୀଳତା ଓ ସାମାଜିକତାର ଚିହ୍ନ ! ଫେସନର ନୁହେଁ ତ ? ଅତି ସାନ ଶେଯ ପିଲାଙ୍କୁ ସୁଦ୍ଧା ସବୁବେଳେ ଜାମା ଢାଙ୍କି ରଖା ହେଉଛି । ତାହା ନ କଲେ କୁଆଡ଼େ ଥଣ୍ଡା ଓ ଗରମ ଭେଦିଯିବ । ପ୍ରକୃତ ପକ୍ଷେ ଏହା କରିବା ଦ୍ୱାରା ସେମାନେ ମହଣ ପିଚୁଳା ହୋଇ ପଡ଼ୁଛନ୍ତି । ଶରୀରର ପ୍ରାକୃତିକ ସହନ କ୍ଷମତା ହରାଇ ବସୁଛନ୍ତି ! ସତକୁ ସତ, ଅଳ୍ପକେ ସର୍ଦ୍ଦି ଲାଗିବା, ଥକା ପଡ଼ିବା, ବେମାରି ହେବା ତାଙ୍କର ଅଧିକ ହେଉଛି ।

ଆମ ଦେଶ ପକ୍ଷେ ବାହାରକୁ ଯିବା ପାଇଁ ଚାଦର, ଗାମୁଛାହିଁ ଯଥେଷ୍ଟ । ଯଦି ଯୁଗଧର୍ମ ବା କାଳର ଗତିକୁ ଟପି ନ ହୁଏ, ତେବେ ଢିଲା, ହାଲୁକା, ଅଧା ହାତଖଣ୍ଡିଆ ଜାମାରେ ଯଥେଷ୍ଟ ହେବ । ଅଣ୍ଡର ଉଇଅର ବା ପେଣ୍ଟ ଏକାବେଳେକେ ବର୍ଜନୀୟ । ଢିଲା ହାଫ୍‌ପେଣ୍ଟ ଛୋଟ ପିଲାଙ୍କ ପକ୍ଷେ ସୁବିଧାଜନକ ହୋଇପାରେ ।

## ଜୋତା

ପାଦୁକାର ବ୍ୟବହାର ବହୁକାଳରୁ ଅଛି । ତେବେ ତାହା ଏ ଦେଶରେ କ୍ୱଚିତ୍ ବ୍ୟବହୃତ ହେଉଥିଲା । ଏବେ ଯାହାକୁ ଦେଖ ସେ ଜୋତା ପିନ୍ଧୁଛି—ତହିଁରେ ପୁଣି କିସମ କିସମର ଫେସନବାଲା । ବୁଟ ଓ ହିଲିଂ ପ୍ରକୃତରେ ଅନିଷ୍ଟକର । ଓଡ଼ିଶା ଦେଶର ଖାସ ଜୋତା ଫୁଲପକା ମରହଟ୍ଟୀ । ତାହା ଯେପରି ମଜଭୁତ ସେହିପରି ନରମ ଓ ଢିଲା । ଏବେ ତାକୁ ପିନ୍ଧିବା ଲାଜର କଥା । ଖାଲି ଗୋଡ଼ରେ ବାହାରକୁ ଯିବା ଅଭଦ୍ରତା ମଧ୍ୟରେ ଗଣ୍ୟ । ଏଣେ ଦେଖ, ଦିନକୁ ଦିନ ଦେଶ ଦରିଦ୍ର ହେଉଛି । ଉଭୟର ସାମଞ୍ଜସ୍ୟ ରଖିବା ପାଇଁ ବାହାରିଛି ସେଣ୍ଡେଲ ବା ଚପ୍ପଲ । ଏହାର ଉପରଭାଗ ଖୋଲା ଥିବାରୁ ତାହା ଆମ ପକ୍ଷରେ ଉପଯୋଗୀ ।

ଜୋତାର ଅବଶ୍ୟ ଅନେକ ଉପକାରିତା ଅଛି । ଶୀତ ନ ହେଉ, ଖରାତାତିରୁ ରକ୍ଷା କରେ, ଗୋଡ଼ପଥରରୁ ରକ୍ଷା କରେ, କଣ୍ଟାଖୁଞ୍ଚରୁ ରକ୍ଷା କରେ; ଆଉ ସବୁଠାରୁ ବେଶୀ ରକ୍ଷାକରେ, କୌଣସି ବିଷାକ୍ତ ଓ ଶରୀରର ଅନିଷ୍ଟକାରକ ପଦାର୍ଥ ମାଡ଼ିବାରୁ ।

## ବାସନକୁସନ

ରନ୍ଧନପାତ୍ର ଓ ଖାଇବା ବାସନ ଏହି ଦୁଇ ପ୍ରକାର ବାସନ ବ୍ୟବହୃତ ହୋଇଥାଏ । ମାଟିର ହାଣ୍ଡି, ପତଳି, ପଲମ ଅଧିକାଂଶ ସ୍ଥାନରେ ଚଳେ । କେଉଁଠି କେଉଁଠି ପିତଳର ତସଲା, ହଣ୍ଡା, ମାଠିଆ, କରେଇ ଓ ଲୁହାର ତାଦୁଆ, କରେଇ ବ୍ୟବହାର କରାଯାଏ । ମାଟିର ହେଉ ବା ଧାତୁନିର୍ମିତ ହେଉ, ରନ୍ଧନପାତ୍ର ପ୍ରତିଦିନ ମଜା ହେବା ଦରକାର । ମାଟିର ପାତ୍ର ସବୁଠାରୁ ନିର୍ଦ୍ଦୋଷ, ଆଉ କଲେଇକରା ଧାତୁ ପାତ୍ର ସବୁଠାରୁ ମନ୍ଦ ।

ଖାଇବା ପାଇଁ ସାଧାରଣତଃ କଂସାର ବାସନ ବ୍ୟବହୃତ ହୁଏ । କଂସା, ପିତଳ ମିଶ୍ରିତ ଧାତୁ ବା ତମ୍ବାର ବାସନ ଅହିତକର । କେବଳ ସୁନାର ବା ରୁପାର ବାସନ ବ୍ୟବହାର କଲେ ଦୋଷ ନାହିଁ । ତାହା ବା କେତେ ଜଣଙ୍କୁ ମିଳେ ? ପଥର ବାସନ ସବୁଠାରୁ ଶ୍ରେଷ୍ଠ । ଚିନାମାଟି ବାସନ

ମଧ୍ୟ ଭଲ । ଲୁହା ଉପରେ କଲେଇ କରା ବାସନ ଅନିଷ୍ଟକର । ଆଜିକାଲି ଆଲୁମିନିଅମ ନିର୍ମିତ ନାନାପ୍ରକାର ବାସନ ଖାଇବା ଓ ରାନ୍ଧିବା କାମରେ ବହୁତ ବ୍ୟବହାର ହେଉଛି । ଏଥିରେ ସୀସାର ଭାଗ ଥାଏ । ଅନେକଙ୍କ ମତ ଯେ ଆଲୁମିନିଅମ ବ୍ୟବହାରଠାରୁ ଦେଶରେ ନାନା ରୋଗ ଦିନକୁ ଦିନ ବଢ଼ିଛି । ଉଭୟ କାର୍ଯ୍ୟରେ ଆଲୁମିନିଅମର ପାଖ ପଶିବା ଉଚିତ ନୁହେ । ଶଙ୍ଖମର୍ମର ବ୍ୟୟସାପେକ୍ଷ; ମାତ୍ର ମୃଣ୍ମୟ ବାସନର ମୂଲ୍ୟ ଅଧିକ ନୁହେ । ସାବଧାନ ହୋଇ ବ୍ୟବହାର କଲେ ଅନେକ ଦିନ ଯାଇପାରେ ।

## ବିରେଚନ

ନର-ଶରୀର ଏପରି ଭାବରେ ଗଢ଼ା ହୋଇଛି ଯେ କୌଣସି ଅନିଷ୍ଟକର ପଦାର୍ଥ ତହିଁ ମଧ୍ୟରେ ବାହାରୁ ପ୍ରବେଶ କଲେ ବା ଭିତରେ ଜାତ ହେଲେ ଶରୀର ତାହା ଆପେ ଆପେ ନିକାଲି କରିଦିଏ; କୌଣସି ରସର ଆଧିକ୍ୟ ହେଲେ ବା କୌଣସି ଧାତୁ କୁପିତ ହେଲେ ପ୍ରସ୍ରାବ, ଦସ୍ତ, ବାନ୍ତି, ଛିଙ୍କ, ହାଇ, କାସ, ହାକୁଟି, ଢେକାର, ଅଧୋବାୟୁ ଆକାରରେ ତାହା ବାହାରିପଡ଼େ । ନାକରେ ଧୂଆଁ ବା ଧୂଳି ବାହାରୁ ପଶିଲେ କିମ୍ବା ମଗଜରେ ସର୍ଦ୍ଦି ହେଲେ ଛିଙ୍କ ଆସିବ । ଶ୍ୱାସନାଳୀରେ କିଛି ଲାଗିଲେ ବା ତହିଁରେ କଫ ଜମିଲେ କାସ ମାଡ଼ିବ । ଉତ୍କଟ ବା ବିଷାକ୍ତ ପଦାର୍ଥ ପେଟକୁ ଗଲେ କିମ୍ବା ହଜମ ନ ହୋଇ ବିଷ ପାଲଟିଲେ ବାନ୍ତି ବା ଦସ୍ତର ବେଗ ସ୍ୱତଃ ଲାଗିବ । ଶରୀରଯନ୍ତ୍ରର ଆତ୍ମରକ୍ଷା ନିମନ୍ତେ ସ୍ୱପ୍ରବୃତ୍ତ ପ୍ରତିକ୍ରିୟା (automatic reaction) ଏସବୁ ବେଗକୁ ରୋଧ କରିବା ଅତି ଅନିଷ୍ଟକର । ବରଂ ଏପରି କିଛି ଜଣାପଡ଼ିଲେ ତହିଁରେ ସହାୟତା କରିବା ଉଚିତ । କିନ୍ତୁ ଭିତରୁ ବେଗ ନ ଥିଲା ବେଳେ ବଳପୂର୍ବକ କିଛି କରାଇବ ନାହିଁ ; ଯେପରି ନାକରେ କଡ଼ୁଆ ନାସ ବା କାଠି ପୂରାଇ ଛିଙ୍କିବା ।

## ମାନବର ଶତ୍ରୁରୂପୀ ଜୀବ

ଅନେକ ଜୀବ ଅଛନ୍ତି ଯେଉଁମାନେ ମନୁଷ୍ୟର ଶତ୍ରୁ—ବାଘ, ଭାଲୁ, କୁମ୍ଭୀର, ସାପ, ବିଛା ପ୍ରଭୃତି । ମାତ୍ର ଏମାନେ ହୁଏତ ଖାଇବା ନିମନ୍ତେ ଅଥବା ଆତ୍ମରକ୍ଷା କରିବା କାରଣ ମନୁଷ୍ୟକୁ ଆଘାତ କରନ୍ତି । ଆଉ କେତେଗୁଡ଼ିଏ ଜୀବ ଅଛନ୍ତି ଯେଉଁମାନେ ମନୁଷ୍ୟର ଏତେବେଶି ଶତ୍ରୁ ବୋଲି ଜଣା ପଡ଼ନ୍ତି ନାହିଁ; କିନ୍ତୁ ଏତେ ଅନିଷ୍ଟ କରନ୍ତି ଯେ ବାଘ ସାପ ତାଙ୍କ ତୁଳନାରେ କିଛି ନୁହନ୍ତି । ବାଘଭାଲୁଙ୍କଠାରୁ ରକ୍ଷା ପାଇବା ପାଇଁ ମନୁଷ୍ୟ ସାବଧାନ ହୋଇପାରେ; ଏକା ଏମାନଙ୍କ କବଳରୁ ରକ୍ଷା ପାଇବା ସହଜ ନୁହେ । ଏମାନେ ସବୁବେଳେ ଆମକୁ ଘେରି ରହିଛନ୍ତି ଓ ଅକାରଣରେ ଅଲକ୍ଷିତରେ ଆମର ଘୋର ଶତ୍ରୁତା ସାଧନ କରୁଅଛନ୍ତି । ସେହିମାନଙ୍କ ଦଯ୍ୟାରୁ ଯେତେ ଲୋକ ଇହଲୀଳା ସାଙ୍ଗ କରନ୍ତି ଅନ୍ୟ କୌଣସି କାରଣମାନଙ୍କରୁ ତା'ର ଶତ-ସହସ୍ରାଂଶରୁ ଅଂଶେ ବି କରନ୍ତି ନାହିଁ । ପ୍ରାୟ ଯେତେ ବଡ଼ ବଡ଼ ବ୍ୟାଧି, ମହାମାରୀ, ମଡ଼କ—ସବୁର କର୍ତ୍ତା ଏମାନେ । ଯଦି ଯମଦୂତ ବୋଲି କେହି ଥାଏ ତ ସେ ଏହି ।

ତାଙ୍କୁ ଖୋଜିବା ପାଇଁ ବେଶୀ ବାଟ ଯିବାକୁ ପଡ଼ିବ ନାହିଁ । ଚିହ୍ନିବାକୁ କଷ୍ଟ ପାଇବାକୁ ହେବ ନାହିଁ । ସେମାନେ ଯେ ଆମର ନିତ୍ୟ ସହଚର, ଘନିଷ୍ଠ ବନ୍ଧୁ କୁଟୁମ୍ବ—ମାଛି, ମଶା, ଓଡ଼ଶ, କୃମି, ମୂଷା, ଅସରପା ପ୍ରଭୃତି ।

### ମାଛି

ପଚା ନାଳୁଆ, ଗୋବରଗଦା, ସଢ଼ା ଅଳିଆ, ଗୁହପଦାରେ ମାଛିଙ୍କ ଜନ୍ମ । ଏମାନେ ପ୍ରତି ମୁହୂର୍ତ୍ତରେ କୋଟି କୋଟି ଜନ୍ମୁଛନ୍ତି । ପ୍ରଥମେ ଅଣ୍ଡା, ତାହାପରେ ଅଂସେଇ; ଶେଷେ ଡେଣା ବାହାରିଲେ ଉଡ଼ିଯାଆନ୍ତି । ଯେତେ ପଚା ସଢ଼ା ଗୁହ, ଗୋବର, ବାନ୍ତି, ପୂଜ, ରକ୍ତ, ଛେପ, ଖଙ୍କାର, ଅସକରା ସବୁ ମାଛିଙ୍କର ଆହାର । ଏହାକୁ ଖାଇ ଆସି ଆମ ଖାଦ୍ୟ ଉପରେ, ଦେହର ଘା ଘଉଡ଼ରେ ବା ଲୁଗାପଟାରେ ବସି ଯାଆନ୍ତି । ବସିଲାକ୍ଷଣି ବାନ୍ତି କରନ୍ତି ବା ହଗି ଦିଅନ୍ତି । ତହିଁରେ ନାନା ଜାତିର ରୋଗବୀଜାଣୁ ହଜାର ହଜାର ଥାଆନ୍ତି । ପୁଣି ତାଙ୍କ ଗୋଡ଼ରେ ବି ଲକ୍ଷ ଲକ୍ଷ ବୀଜାଣୁ ଲାଗି ଥାଆନ୍ତି । ଏ ସବୁ ନାକ, ଆଖି, ଚମ, ମୁହଁ ବାଟେ ମନୁଷ୍ୟ ଦେହରେ ପଶି ନାନା ରୋଗ ଉଆନ୍ତି । ମାଛି ଯମଦୂତଙ୍କର ସରଦାର ଜାଣି ସାବଧାନ ରହିବ ଓ ମାଛି ଯେପରି ଜନ୍ମ ହୋଇ ନ ପାରନ୍ତି ତାହା ଦେଖିବ ।

### ମଶା

ମଶା ମାଛିର ସାନ ଭାଇ । ମଶା ଯେଉଁ ରୋଗ ଆଣି ଦିଅନ୍ତି, ତାକୁ ଗୁହିଁଲେ ତାଙ୍କର ଲହୁ ଖାଇବା ବା ଶୋଇବାବେଳେ ଭଣ ଭଣ ହେବାଟା କିଛି ନୁହେ । ମଶାଙ୍କର ଜନ୍ମ ପଚା, ମଇଳା, ଧୀର ପାଣିରେ ବା ଚକଚକିଆ, ସନ୍ତସନ୍ତିଆ ବଣବୁଦା ତଳେ । ମାଛି ପରି ପ୍ରଥମେ ଅଣ୍ଡା, ତାହାପରେ ପୋକ ହୋଇ ଶେଷେ ମଶାର ଡେଣା ବାହାରେ । ନାଳୁଆରେ ମଇଳା ପାଣି ଜମିଲେ

ବା ଘର ଭିତରେ ଛେଲୁଆ ବା ନଡ଼ିଆ ସଢ଼େଇରେ ମୁନ୍ଦାଏ ପାଣି ବେଶୀ ଦିନ ରହିଗଲେ ତହିଁରୁ ମଶା ଜନ୍ମିପଡ଼ନ୍ତି । ହଳଗଡ଼ିଆ-ମାନଙ୍କରେ ଏମାଙ୍କର ଜନ୍ମ ବେଶୀ । ମାତ୍ର ପରି ସବୁ ରୋଗ ମଶା ଦିଅନ୍ତି ନାହିଁ । ଭିନ୍ନ ଭିନ୍ନ ରୋଗର ଭିନ୍ନ ଭିନ୍ନ ମଶା ଅଛନ୍ତି । ମେଲେରିଆ ଜର ଓ ବାତଜରର ମାଳିକ ମଶା । କାମୁଡ଼ିଲାକ୍ଷଣି ତାଙ୍କ ସଙ୍ଗରେ ଥିବା ରୋଗ ବୀଜାଣୁ ମନୁଷ୍ୟର ରକ୍ତରେ ପଶିଯାଏ । ଏଥିରେ ଜ୍ୱର ହୁଏ । ଆଖପାଖରେ ବା ଘର ବାହାରେ ମଶା ବଂଶ ଯେପରି ନ ବଢ଼ିବ ସେଥିକୁ ହୁସିଆର ଥିବ । ଏହି ମଶାଙ୍କ ପ୍ରତାପରୁ ଆମ ଦେଶରେ ମେଲେରିଆ ଓ ବାତଜ୍ୱର ଏତେ ବଢ଼ୁଛି । ଗୋଟାଏ ଗୋଟାଏ ଋତୁରେ ଓ ଗୋଟାଏ ଗୋଟାଏ ସ୍ଥାନରେ ମଶା ବଂଶ ବଢ଼ିବାରୁ ଜର ବେଶୀ ହୁଏ । ମଶାରି ଟାଙ୍ଗି ଶୋଇଲେ ବା କରଞ୍ଜ ମାଳପା ବା ହଳଦି ଲଗାଇ ଶୋଇଲେ ମଶା ଦାଉରୁ ରକ୍ଷା ମିଳେ ।

## ଓଡ଼ଶ

ଖଟ, ବିଛଣା, ତକିଆ, ମଶାରି ସନ୍ଧିରେ ଥାଇ ଓଡ଼ଶ କି ବିରକ୍ତ ଓ ହଇରାଣ କରନ୍ତି ତାହା ପ୍ରାୟ ସମସ୍ତେ ଅଳ୍ପ ବହୁତ ବୁଝିଛନ୍ତି । ମାତ୍ର ଓଡ଼ଶର କି ମାରାତ୍ମକ ଗୁଣ ଅଛି ତାହା ଅନେକେ ଜାଣି ନଥିବେ । ଓଡ଼ଶ ଜଣଙ୍କର ଲହୁ ଖାଇଲାକ୍ଷଣି ତାହା ଦେହରେ ଥିବା ବୀଜାଣୁ ସବୁ ଓଡ଼ଶ ଶିଙ୍ଗରେ ଲାଗିଯାଆନ୍ତି; ପୁଣି ସେ ଯେତେବେଳେ ଆଉ ଜଣକୁ ଖାଏ ଏହି ବୀଜାଣୁ ତାହା ଦେହକୁ ଚାଲିଯାଆନ୍ତି । ଏମାନେ ମାତ୍ର ମଶାଙ୍କ ଭଳି 'ଅକ୍ଷୟବୀଜ' ଓ ସହଜରେ ମରନ୍ତି ନାହିଁ । ଖୁବ୍ ସଫାସୁତୁରା ରହିଲେ ଓ ସାବଧାନ ହେଲେ ଓଡ଼ଶ ହେବେ ନାହିଁ ।

## ମୂଷା

ମୂଷା ଗଣେଶ ଠାକୁରଙ୍କ ବାହନ, ଆଉ ପ୍ଲେଗ ନାମକ ମହାମାରୀ ବୀଜାଣୁର ବି ବାହନ । ଭାଗ୍ୟକୁ ଆମ ଦେଶକୁ ପ୍ଲେଗ ଠାକୁରାଣୀ ଦୟା କରି ନାହାନ୍ତି ଏଯାକେ । ବାହନ ଯେତେବେଳେ ବହୁତ, ସଓଆର କେତେବେଳେ ଯେ ଆସିଯିବେ ତା'ର ଠିକଣା ନାହିଁ । ଏଥିପାଇଁ ମୂଷାଙ୍କୁ ଯଥାସାଧ୍ୟ ତଡ଼ିବ । ଏମାନେ ଗାତ ଖୋଳି ଘରଦ୍ୱାର ନଷ୍ଟ କରନ୍ତି, ଧାନ ଚାଉଳ ଖାଇ ଓ ଲୁଗାପଟା କାଟି ବିତ୍ତ ହରଣ କରନ୍ତି । ତାହାଛଡ଼ା ମୂଷା ଗାତରେ ନାଗସାପ ରହିବାର ଦେଖାଯାଏ ।

## କୃମି

କୃମି ଅନେକ ପ୍ରକାର ଅଛନ୍ତି । ଜିଆକୃମି, ଚଣ୍ଡିପୋକ, ବକ୍ରକୃମି, ଫିତାକୃମି ପ୍ରଭୃତି । ସବୁ କୃମି ଅନ୍ତ ଭିତରେ ଥାଇ ସ୍ୱାସ୍ଥ୍ୟ ନଷ୍ଟ କରନ୍ତି । ତାଙ୍କ ମଧ୍ୟରେ ବକ୍ରକୃମି ସବୁଠାରୁ ବିପଦ୍‌ଜନକ । ଏମାନେ ଆଖିକୁ ଦେଖାଯାଆନ୍ତି ନାହିଁ; ଗୁହାଳଦାମାନଙ୍କରେ ଓ ମଇଳା ସନ୍ତସନ୍ତିଆ ସ୍ଥାନରେ ବେଶୀ ଜନ୍ମନ୍ତି । ବକ୍ରକୃମି ଏପରି ଖର ଯେ ମନୁଷ୍ୟ ଗୋଡ଼ ଦେଲାକ୍ଷଣି ପାଦତଳ ବାଟେ ଗଳି ଦେହରେ ପଶି ଯାଇ ପାରନ୍ତି । ସେଠୁଁ ରକ୍ତରେ ମିଶି ଅଂଶବଂଶ ବଢ଼ାଇ ଦେହଯାକ ଘୋଟନ୍ତି ଓ ରକ୍ତ ଶୋଷି ଖାଆନ୍ତି । ବର୍ଷାଦିନରେ କାହାରି କାହାରି ତଳପାରେ ଯେ ଚୂଲ୍‌କିଆ ଧରେ, ସେ ଏହି ବକ୍ର-କୃମିଙ୍କ ପଶିବା ବାଟ । ଯାହା ଦେହରେ ଏହି କୃମି ମାତେ ସେ କ୍ରମେ କ୍ଷୀଣ ଓ ଦୁର୍ବଳ ହୋଇଯାଏ, ଖାଇବାକୁ ରୁଚେ ନାହିଁ, ହାତ ଗୋଡ଼ ଶୁଖି ପେଟ ବାହାରି ପଡ଼େ, ଆଖିକୁ ଜାଲ ଜାଲ ଦିଶେ, ମୁଣ୍ଡ ଘୁରାଏ, କାନ ଭାଁ ଭାଁ କରେ; ଶୋଥ କାହାଲ ମାଡ଼ିଆସେ । ଏହିପରି ଭୋଗି ଭୋଗି ରୋଗୀ ଶେଷରେ ମୃତ୍ୟୁ ମୁଖରେ ପତିତ ହୁଏ ।

## ରୋଗ

ରୋଗ ବା ଅସୁସ୍ଥତା ପ୍ରଧାନତଃ ଚାରି ପ୍ରକାର :—ସହଜାତ, ସ୍ୱକର୍ମଜ, ସଂକ୍ରାମକ ଓ ଆକସ୍ମିକ ।

ସହଜାତ—କେତେଗୁଡ଼ିଏ ରୋଗ ଅଛି ଯାହା ସକାଶେ ମଣିଷର ପୂର୍ବପୁରୁଷ ଦାୟୀ । ପିତାର ବୀର୍ଯ୍ୟ ଓ ମାତାର ରକ୍ତରେ ଆମର ଶରୀର ଗଢ଼ା । ସୁତରାଂ ପିତାମାତାଙ୍କ ଦେହରେ ଥିବା ରୋଗର ବୀଜ ପୁଅଝିଅଙ୍କ ଦେହକୁ ଆସିବାର ସମ୍ଭାବନା । ଏପରି କି ଗୋସେଇଁବାପା, ଅଜା, ପଣଅଜାଙ୍କ ରୋଗ ମଧ୍ୟ ନାତି ପଣନାତିଙ୍କୁ ହେବାର ଦେଖାଯାଏ । କେତେକ ସ୍ଥଳରେ ସାବଧାନ ରହିବା ହେତୁ ବା ସ୍ୱାସ୍ଥ୍ୟର ତେଜରେ ରୋଗ ଫୁଟି ପାରେ ନାହିଁ; ଗୋପ୍ୟ ଭାବରେ ରହିଯାଏ । ମାତ୍ର ଟିକିଏ ଅପଚାର ଓ ଅତ୍ୟାଚାରର କଲାକ୍ଷଣି ବାହାରିପଡ଼େ, ଯଥା :—ଉନ୍ମାଦ ପ୍ରଭୃତି ।

ସ୍ୱକର୍ମଜ—ଆଉ କେତେକ ରୋଗ ଆମେ ଆପଣା ଗୁଣରୁ ଅର୍ଜନ କରୁଁ । ପ୍ରକୃତି ମାର୍ଗର ବିପକ୍ଷତା କରି ଆହାର, ବିହାର, ନିଦ୍ରା ପ୍ରଭୃତି ଦୈନନ୍ଦିନ କାର୍ଯ୍ୟରେ ଅନିୟମ, ବ୍ୟଭିଚାର

କଲେ ପ୍ରକୃତି ପ୍ରଥମେ କିଛି କିଛି ସହେ; ମାତ୍ର ପରେ ତା'ର ଦଣ୍ଡବିଧାନ କରେ ରୋଗ ଆକାରରେ । ଯେପରି ଅନିୟମରେ ଖାଇଲେ ଅମ୍ଳ, ଅଜୀର୍ଣ୍ଣ, ଶୂଳ, ମେହ ପ୍ରଭୃତି ।

ସଂକ୍ରାମକ—ଯେଉଁସବୁ ରୋଗ ଏକ ବ୍ୟକ୍ତି ଦେହରୁ ଅନ୍ୟ ଦେହକୁ ଡେଇଁ ବା ଉଡ଼ି ଯାଏ, ତାକୁ ସଂକ୍ରାମକ ରୋଗ କହନ୍ତି । ତନ୍ମଧ୍ୟରେ ପୁଣି ଦୁଇ ପ୍ରକାର ଅଛି । କେତେକ ଅଳ୍ପ ଡେଇଁପାରେ, ଅର୍ଥାତ୍ ନିହାତି ପଡ଼ିଶା ପଣିଆ ଲୋକକୁ ଧରେ; ଆଉ କେତେକ ହୁ ହୁ କରି ମାଡ଼ି ଗାଆଁକୁ ଗାଆଁ, ଜିଲ୍ଲାକୁ ଜିଲ୍ଲା ଉଜାଡ଼ି କରିଦିଏ । ଏହି ପ୍ରକାର ଉଆଁ ରୋଗକୁ ମହାମାରୀ କହନ୍ତି । ଯାହାହେଉ, ସବୁ ଉଡ଼ନ୍ତା ରୋଗର କାରଣ, ସେହି ଏକ—ବୀଜାଣୁ । ଭିନ୍ନ ଭିନ୍ନ ରୋଗର ଭିନ୍ନ ଭିନ୍ନ ଜାତୀୟ ବୀଜାଣୁ । କାଛୁଠାରୁ ଆରମ୍ଭ କରି ଆମାଶୟ, ବସନ୍ତ, ହଇଜା, ଯକ୍ଷ୍ମା, କୁଷ୍ଠ ଯାକେ ସବୁ ଉଆଁ ବା ଉଡ଼ା ରୋଗ ।

ଆକସ୍ମିକ—ଆତ୍ମରକ୍ଷା କରିବା ମନୁଷ୍ୟର ସ୍ୱାଭାବିକ ସଂସ୍କାର । ଅଜ୍ଞାନ ଶିଶୁର ଆଖି ଆଗରେ ଆଙ୍ଗୁଳି ଦେଖାଇଦେଲେ ସେ ଆଖି ବୁଜିପକାଏ । ସୃଷ୍ଟିଆଡ଼େ କେତେ ବିପଦ ଘେରି ରହିଛି ତା'ର ସୀମା ନାହିଁ । କିଏ କେତେବେଳେ କାହା କବଳରେ ପଡ଼ୁଯାଉଛି । ନିଆଁରେ ପୋଡ଼ିଯିବା, ପାଣିରେ ବୁଡ଼ିଯିବା, ବିଷ ଖାଇବା, ଚଢ଼କ ପଡ଼ିବା, ହାଣି ହେବା ପ୍ରଭୃତି ନାନା ଦୁର୍ଯୋଗ ମନୁଷ୍ୟକୁ ବିକଳାଙ୍ଗ କରି-ଦେଉଛି । ସଭ୍ୟତା ଯେତିକି ବଢ଼ୁଛି, ଏ ସବୁ ଦୁର୍ଘଟଣାର ସଂଖ୍ୟା ସେତିକି ବଢ଼ୁଛି । ଜାହାଜ, ରେଲ୍, ଖଣି, ମଟର, କଳକାରଖାନାମାନଙ୍କରେ ଏ ସବୁ ବେଶୀ ହୁଏ ।

ପ୍ରଥମ ଓ ଚତୁର୍ଥ ପ୍ରକାରକୁ ମଣିଷର ଆୟତ୍ତ ନାହିଁ । ତଥାପି ସେ ଯେତେ ସାବଧାନ ହୋଇ ଚଳିବ ଏଥିରୁ ସେତିକି ରକ୍ଷା ପାଇପାରେ । ଦ୍ୱିତୀୟ ପ୍ରକାରଟି ନିଜର କରଣି । ପ୍ରକୃତିର ନିୟମକୁ ମାନି ଚଳିଲେ ତାହା ନିବାରଣ ହେବ । ତୃତୀୟ ପ୍ରକାର ସବୁଠାରୁ ମାରାତ୍ମକ । ଏଥିପାଇଁ କେବଳ ପରିଷ୍କାର ପରିଚ୍ଛନ୍ନତା ଓ ସାବଧାନତା ଦରକାର । କାହାରି ସଙ୍ଗରେ ଶୋଇବା, କାହାରି ଚିରୁଣୀ ବା ଲୁଗା ପିନ୍ଧିବା, କାହାରି ଅଇଣ୍ଠା ବାସନ ବ୍ୟବହାର କରିବା ଉଚିତ ନୁହେଁ, ସେ ଯେତେ ନିଜର ଲୋକ ହୋଇଥାନ୍ତୁ । ଅନେକେ ଅନ୍ୟ ହାତରୁ ବିଡ଼ି, ସିଗାରେଟ୍ ନେଇକି ଖାଆନ୍ତି । ତାହା ଅତ୍ୟନ୍ତ ଗର୍ହିତ । ଏପରି କି ଅପରର ଶ୍ୱାସ ପ୍ରଶ୍ୱାସ ଆପଣା ଦେହରେ ଲାଗିବା ମଧ୍ୟ ଅନିଷ୍ଟକର । ଏ ସବୁ ନ ମାନିଲେ ଅନ୍ୟର ଦେହରେ ଥିବା ରୋଗବୀଜ ଆପଣା ଦେହକୁ ଆସିପାରନ୍ତି ଓ ଆପଣା ଦେହରେ ଥିବା ରୋଗବୀଜ ଅପରର ଦେହରେ ପ୍ରବେଶ କରିପାରନ୍ତି । ନିଜେ ଯେପରି ନିରାପଦ ରହିବ, ଅନ୍ୟର ମଧ୍ୟ ଯେପରି ଅନିଷ୍ଟ ନ ହୁଏ ତନ୍ନିମନ୍ତେ ସାବଧାନ ଥିବ ।

## ଔଷଧ

କଥାରେ କହନ୍ତି, ରୋଗକୁ ଔଷଧ । ସେଥିପାଇଁ ଚେରମୂଳଠାରୁ ଆରମ୍ଭ କରି ପ୍ରାଣୀଜ, ଖଣିଜ ପ୍ରଭୃତି ନାନାପ୍ରକାର ଦ୍ରବ୍ୟ ଔଷଧ-ରୂପରେ ବ୍ୟବହାର କରାଯାଏ । ଚିକିତ୍ସାର ପ୍ରଣାଳୀ ମଧ୍ୟ ବହୁ ପ୍ରକାର—ଆଲୋପାଥି, ହୋମିଓପାଥି ଇତ୍ୟାଦି । ସବୁ ପାଥି ଔଷଧ ଦେଇ ରୋଗକୁ ଦବାନ୍ତି । ରୋଗ ଭଲ ହୋଇଗଲେ କହନ୍ତି, ଔଷଧ କଲା । ମାତ୍ର ପ୍ରକୃତିଦେବୀ ଯେ ଅସଲ ବୈଦ୍ୟ ଏହା ସମସ୍ତେ ଭୁଲି-ଯାଆନ୍ତି । ଶରୀରର କୌଣସି ଧାତୁ ବା ଅଂଶ କୁପିତ ବା ନରମ ହେଲେ, କିମ୍ବା କୌଣସି ଅଂଶର ଊଣା ବା ଆଧିକ୍ୟ ଘଟିଲେ ତାହାକୁ ରୋଗ ବୋଲିଯାଏ । ପ୍ରକୃତିର ନିୟମ ଯେ ସେ ସବୁବେଳେ ଏହି ଉଗ୍ରତାକୁ ଶାନ୍ତ କରୁଛି, ନରମକୁ ଗରମ କରୁଛି, ଊଣାକୁ ଭରଣା କରୁଛି ଓ ଆଧିକ୍ୟକୁ କମାଇଦେଉଛି । ଔଷଧ ପ୍ରକୃତିର ଏହି କାର୍ଯ୍ୟରେ ସାହାଯ୍ୟ କରେ ମାତ୍ର । ପ୍ରକୃତରେ ଔଷଧ ଯଦି ଏତିକି କରନ୍ତା ତେବେ କିଛି କ୍ଷତି ହୁଅନ୍ତା ନାହିଁ । କିନ୍ତୁ ଅଧିକାଂଶ ସ୍ଥଳରେ ଔଷଧ ତାହା ନକରି ନିଜର କ୍ଷମତାରେ ରୋଗ ଉପରେ ପାହାର ଦେଇ ତାକୁ ଜବରଦସ୍ତି ବନ୍ଦ କରିଦିଏ । ସେ ଆଘାତରେ ରୋଗଟା କାବୁ ହୋଇପଡ଼େ ଓ ମରିଗଲା ପରି ଜଣାଯାଏ । ସତରେ କିନ୍ତୁ ମରେ ନାହିଁ, ଲୁଚି ରହିଯାଏ; ଆଉ ସେ ଆଘାତର ବେଗ ଶରୀରସ୍ଥ ଅନ୍ୟାନ୍ୟ ଧାତୁ ଓ ଅଂଶକୁ ସହିବାକୁ ପଡ଼େ । ତାହା ଫଳରେ ଏକ ରୋଗ ବିନାଶ କରିବାକୁ ଯାଇ ଆଉ ପାଞ୍ଚଟା ନୂଆ ରୋଗର ସୃଷ୍ଟି ହୁଏ । ଇନ୍‌ଜେକସନ ନାମକ ଯେଉଁ ନୂତନ ଚିକିତ୍ସାରୀତି ବାହାରିଛି ତା'ର ଫଳ ଓ ପରିଣାମ ଅତି ଭୟଙ୍କର । ଗୋଟିକୁ ଦାବିବାକୁ ଯାଇ ଗୁଡ଼ିଏ ଆମଦାନି କରି ବସେ । ଧରିବାକୁ ଗଲେ ହୋମିଓପାଥି ଚିକିତ୍ସାପ୍ରଣାଳୀ ସବୁଠାରୁ ଭଲ । କାରଣ ଏହାର ଔଷଧ ତୀବ୍ର ନୁହେ ଓ ଶରୀର ଉପରେ ସେପରି କ୍ଷତିକର ପ୍ରଭାବ ଏହାର ନାହିଁ ।

ରୋଗର ପ୍ରତିଷେଧ ଓ ନିରାକରଣ ନିମନ୍ତେ ପ୍ରକୃତି ଶରୀର ମଧ୍ୟରେ ନାନା କୌଶଳ କରି ରଖିଛି । ପ୍ରକୃତିର ନିୟମ ମାନି ଚଳୁଥିଲେ ଓ ଶରୀର ସୁସ୍ଥ ରଖିଥିଲେ ରୋଗ ସହଜରେ ପ୍ରବେଶ କରିପାରେ ନାହିଁ ଓ ପ୍ରବେଶ କଲାମାତ୍ରକେ ବାହାରିଯାଏ ବା ବିନଷ୍ଟ ହୋଇଯାଏ । ଯଦି ବା କୌଣସି ରୋଗଜୀବାଣୁ ଶରୀରରେ ପ୍ରବେଶ କଲେ ସୁସ୍ଥ ଓ ତାଜା ରକ୍ତରେ ଥିବା ମିତ୍ର ଜୀବାଣୁମାନ ତାଙ୍କୁ ଖାଇଯାଆନ୍ତି । କୌଣସି ବାହାରର ଅନିଷ୍ଟକର ପଦାର୍ଥ ପଶିଲେ ବା ପଶି ଦୂଷିତ ହେଲେ ଶରୀରଯନ୍ତ୍ର ତାକୁ ଦସ୍ତ, ବାନ୍ତି, ଛିଙ୍କ ପ୍ରଭୃତି ଦ୍ୱାରା ବାହାର କରିଦିଏ । ଯେତେବେଳେ ଶରୀରର ଏହି କ୍ଷମତା କମିଯାଏ ବା ମିତ୍ର ଜୀବାଣୁ ଦୁର୍ବଳ ହୋଇ ପଡ଼ନ୍ତି ସେତେବେଳେ ରୋଗ ମାଡ଼ିବସେ । ସେତିକିବେଳେ ଔଷଧର ସାହାଯ୍ୟ ଲୋଡ଼ା ପଡ଼େ । ପ୍ରକୃତିର ଏହି ସମତା ସାଧନ କାର୍ଯ୍ୟରେ ସେହିପରି ସମପ୍ରକୃତିର ପଦାର୍ଥ ବ୍ୟବହାର କରିବା ଶ୍ରେୟସ୍କର । ଜଳ, ମାଟି, ପବନ, ସୂର୍ଯ୍ୟକିରଣ ଏହିମାନଙ୍କର ସହାୟତାହିଁ ଯଥେଷ୍ଟ । ଏଥିରେ ଉଗ୍ରତା ନାହିଁ; ଉପକାର ଅଛି, ଅଥଚ ଅପକାର ନାହିଁ । ଏହା ଛାଡ଼ି କୁଇନାଇନ, ପାରଦ, ଶଙ୍ଖିଆ, ସାପବିଷ, ଏସିଡ୍ ପ୍ରଭୃତି ଉତ୍କଟ ପଦାର୍ଥ ବ୍ୟବହାର କରି ଶରୀରକୁ ବିକଳ କରିବା କାହିଁକି ?

ଜଣେ ଜଗଦ୍‌ବିଖ୍ୟାତ ବୈଜ୍ଞାନିକ କହିଅଛନ୍ତି, "ଔଷଧ ଯେତେ ଲୋକଙ୍କୁ ମାରେ । ରୋଗ ସେତେ ମାରେ ନାହିଁ", ଆଉ ଜଣେ ପ୍ରବୀଣ ଚିକିତ୍ସକଙ୍କ ମତ ଯେ, "ଯଦି ଚିକିତ୍ସା ବିଦ୍ୟା ଆବିଷ୍କୃତ ହୋଇ ନ ଥାନ୍ତା ତେବେ ଏତେ ପ୍ରକାର ରୋଗର ଜନ୍ମ ହୋଇ ଥାଆନ୍ତା ନାହିଁ ।" ଉଗ୍ରବୀର୍ଯ୍ୟ ଔଷଧ ରୋଗୀର ଯେତେ ଶତ୍ରୁ, ରୋଗ ସେତେ ନୁହେ ।

## ଜରା ଓ ମୃତ୍ୟୁ

'ସୃଷ୍ଟି' ଯେଉଁପରି ମହାପ୍ରକୃତିର ସ୍ୱଭାବ, 'ସଂହାର' ମଧ୍ୟ ସେହିପରି । ସେହି ପଞ୍ଚଭୂତାତ୍ମମୟୀ ମହାପ୍ରକୃତି 'ଆଦ୍ୟାଶକ୍ତି' ରୂପରେ ଜନ୍ମଦାତ୍ରୀ, ପୁଣି 'ମହାକାଳୀ' ରୂପରେ ବିନାଶକାରିଣୀ । ଏହି ଉଭୟବିଧ ମୂର୍ତ୍ତି ଧରି ସେ ଅହରହଃ ଲୀଳା କରୁଛି । ଆଜି ବୀଜଟିଏ ନବାଙ୍କୁର ରୂପରେ ଫୁଟି ଉଠୁଛି; କାଲି ପୁଣି ଶାଖା ପଲ୍ଲବରେ ହସି ଉଠୁଛି, ଫଳ ପୁଷ୍ପରେ ଫାଟି ପଡ଼ୁଛି । ପୁଣି ବୃକ୍ଷ ବୃଦ୍ଧ ପାଚି, ଶୁଖି, ଝଡ଼ି ପଡ଼ୁଛି । ଆଜିକାର ଶିଶୁଟି କାଲି କିଶୋର, ପର ଦିନ ଯୁବକ, ତହିଁ ଆର ଦିନ ପ୍ରୌଢ଼—କ୍ରମେ ପଳିତକେଶ, ଗଳିତଦନ୍ତ, ଲୋଳିତଚର୍ମ, ଶିଥିଳଇନ୍ଦ୍ରିୟ, ଜରାଗ୍ରସ୍ତ ବୃଦ୍ଧ । ତାହାପରେ ଶେଷ—ଯେଉଁ ପଞ୍ଚଭୂତର ସମ୍ମିଶ୍ରଣରେ ଜନ୍ମ, ସେହିଥିରେ ଲୀନ । ଏହିରୂପେ ପ୍ରକୃତିର ଲୀଳାଖେଳା ଅବିରାମ ଗତିରେ ବହି ଚାଲିଛି । ଏ ଅନାଦି ଅନନ୍ତ ସ୍ରୋତକୁ ବାଧା ଦେବାର ଶକ୍ତି କାହାର ନାହିଁ । ଏ ଅକାଟ୍ୟ ନିୟମ ଭଙ୍ଗ କରିବାର କାହାରି ସାମର୍ଥ୍ୟ ନାହିଁ ।

ବୟସ ସଙ୍ଗେ ସଙ୍ଗେ ଅବସ୍ଥାର ପରିବର୍ତ୍ତନ ପ୍ରକୃତିର ବିଧାନ । ସମୟ ଅନୁସାରେ ଜରା ନିଶ୍ଚୟ ଆସିବ; ସେତେବେଳେ ଆପେ ଆପେ ଶରୀରର ଯନ୍ତ୍ରମାନ ନିଷ୍କ୍ରିୟ ହୋଇଯିବ । ଇନ୍ଦ୍ରିୟମାନ ଅବଶ ହୋଇପଡ଼ିବେ । ତାହାପରେ କାଳ ପୂର୍ଣ୍ଣ ହେଲେ ମୃତ୍ୟୁ ।

ପ୍ରାଣଟା ଯେ କି ବସ୍ତୁ ତାହା କେହି କହି ପାରିବେ ନାହିଁ । କେବଳ ଉପମା ଦ୍ୱାରା କିଞ୍ଚିତ୍ ଧାରଣା କରାଯାଇପାରେ । କେହି କହେ ଗୋଟାଏ ଅନିର୍ବଚନୀୟ ଶକ୍ତି, କେହି କହେ ପ୍ରାଣ-ବାୟୁ, କେହି କହେ ଆତ୍ମା, ଇତ୍ୟାଦି । ସେ ଯାହା ହୋଇଥାଉ, ଗୋଟାଏ କିଛି ନିଶ୍ଚୟ—ଯାହା ଥିଲେ ମନୁଷ୍ୟ ଜୀବିତ, ଚେତନ—ଯାହା ଗଲେ ମନୁଷ୍ୟ ମୃତ, ଜଡ଼ । ଯେପରି ପିଞ୍ଜରା-ବଦ୍ଧ ପକ୍ଷୀ ସବୁଦା ମୁକ୍ତ ହେବାକୁ ଇଚ୍ଛା କରୁଥାଏ, ସେହିପରି ପ୍ରାଣ ବା ଆତ୍ମା ଶରୀର-ରୂପ ବନ୍ଧନରୁ ମୁକ୍ତ ହେବା ପାଇଁ ବ୍ୟସ୍ତ । ପିଞ୍ଜରାଟି ଜୀର୍ଣ୍ଣ ହୋଇଗଲେ ତାହା ଯେପରି ପକ୍ଷୀକୁ ଅଟକାଇ ରଖିପାରେ ନାହିଁ, ଶରୀରଟି ଜୀର୍ଣ୍ଣ, ଅକର୍ମଣ୍ୟ, ଅନୁପଯୋଗୀ ହେଲେ ପ୍ରାଣ ତାକୁ ତ୍ୟାଗ କରିଯାଏ । ତାହାପରେ ସେ ଆକାଶରେ ଉଡ଼ି ବୁଲୁ, ପ୍ରେତ ହୋଇ ରହୁ, ଯମପୁରକୁ ବା ବୈକୁଣ୍ଠପୁରକୁ ଯାଉ, ପୁନର୍ବାର ନବ ଶରୀର ଧାରଣ କରୁ, କବର ମଧ୍ୟରେ ଶୋଇ ଶେଷ ବିଚାରର ଦିନକୁ ଅପେକ୍ଷା କରୁ କିମ୍ବା ନିର୍ବାଣ ହୋଇଯାଉ—ଯାହା କରୁ, ଆମର ତାହା ବିଚାର୍ଯ୍ୟ ନୁହେ । ଏକଥା ସତ୍ୟ ଯେ ଶରୀରକୁ ଅଯୋଗ୍ୟ ବା ଅକ୍ଷମ ଜାଣିଲାକ୍ଷଣି ସେ ତାହା ତ୍ୟାଗ କରେ; ଆଉ ପ୍ରାଣଶୂନ୍ୟ ହେଲାକ୍ଷଣି ସ୍ୱତନ୍ତ୍ର ରହି ନ ପାରି ଶରୀରର ଉପାଦାନ-ମାନ ପଞ୍ଚଭୂତରେ ମିଶିଯାଆନ୍ତି ।

ପୂର୍ଣ୍ଣ କାଳରେ ମରିବାଟା ସ୍ୱାଭାବିକ ମୃତ୍ୟୁ । ଅସମୟରେ ବ୍ୟାଧିଗ୍ରସ୍ତ ହୋଇ, ବା ଆଘାତ ପ୍ରାପ୍ତ ହେବା ଦ୍ୱାରା ଶରୀର ବିକଳ ଓ ପ୍ରାଣ ରହିବାର ଅନୁପଯୋଗୀ ହୋଇଗଲେ ଯେଉଁ ମୃତ୍ୟୁ ଘଟେ ତାହା ଅକାଳମୃତ୍ୟୁ । ଅକାଳମୃତ୍ୟୁଟା ଅନେକ ସମୟରେ ଆମର ନିଜ ଦୋଷରୁ ଘଟିଥାଏ । ଶରୀରର ବିକଳତା, ଇନ୍ଦ୍ରିୟର ଅକ୍ଷମତା, ଜରା, ବ୍ୟାଧିମାନଙ୍କୁ ଆମେ ଅନେକ ସମୟରେ ବରଣ କରି ଆଣୁଁ । ଏହି ଅକାଳ କ୍ଷୟ ବା ମୃତ୍ୟୁରୁ ଶରୀରକୁ ରକ୍ଷା କରିବା ଓ

କାଳମୃତ୍ୟୁ ପର୍ଯ୍ୟନ୍ତ ଶରୀରକୁ ସୁସ୍ଥ ରଖିବାର ଉପାୟ ବା କୌଶଳ ବିଗ୍ରହ କରିବା ଏ ପୁସ୍ତକର ଉଦ୍ଦେଶ୍ୟ ।

ମୃତ୍ୟୁ ପ୍ରକୃତିର ଅତି ଅବଶ୍ୟମ୍ଭାବୀ ବିଧି । ଏଥିରୁ କେହି ରକ୍ଷା ପାଇ ନ ପାରେ । ମାତ୍ର 'ଜନ୍ତୁନାଂ ମରଣଂ ଭୟଂ' ଅଛି । "ମୃତ୍ୟୁଯନ୍ତ୍ରଣା" ବୋଲି ଗୋଟାଏ କଥା ମଧ୍ୟ ଅଛି । ମାତ୍ର ମୃତ୍ୟୁରେ ପ୍ରକୃତ ଯନ୍ତ୍ରଣା ହୁଏ କି ନାହିଁ ତାହା କେହି ଜାଣେ ନା ବା କେହି ତାହା ଭୋଗି ମଧ୍ୟ ନାହିଁ । ତେବେ ମରଣକୁ ଏତେ ଭୟ କରାଯାଏ କାହିଁକି ? ଜଣକର ମୃତ୍ୟୁରେ ଅନ୍ୟମାନଙ୍କର ଦୁଃଖ ହୋଇପାରେ । ମାତ୍ର ଆପଣାର ତ ଭୟ ହେବାର କୌଣସି କାରଣ ନାହିଁ । ଅମୁକ ମରିଗଲେ ମୋର ବା ଦେଶର ଅମୁକ କ୍ଷତି ହେବ, ଏଥିପାଇଁ ଅନ୍ୟମାନେ ଅନ୍ୟମାନଙ୍କ ମୃତ୍ୟୁକୁ ଭୟ କରିବା ସଙ୍ଗତ । କାରଣ, ଜଣେ ମରିଗଲେ ତା'ର ଯାହା କ୍ଷତି ହେବ ତାହା ବଞ୍ଚିଥିବା ଲୋକେ ଭୋଗିବେ । ମାତ୍ର ଯେ ମଲା, ସେ କ'ଣ ଭୋଗିବ ଯେ ସେଥିପାଇଁ ଭୟ କରିବ ? ମୃତ୍ୟୁ ଯେତେବେଳଯାଏ ଆସିନାହିଁ, ସେତେବେଳ-ଯାଏ ମୁଁ ମରିପାରେ ନା—ଆଉ ମୃତ୍ୟୁ ଯେତେବେଳେ ଆସିବ, ତାହାପରେ ମୁଁ ତ ନ ଥିବି ତଜ୍ଜନିତ ଦୁଃଖ ଭୋଗିବାକୁ । ତେବେ ଆଉ ଡର କ'ଣ ? ଠିକ୍ ବୁଝି ବସିଲେ ମୃତ୍ୟୁ ଆଦୌ ଭୟର ଜିନିଷ ନୁହେଁ; ବରଂ ଆନନ୍ଦର ବସ୍ତୁ ହୋଇପାରେ । କାରଣ, ତଦ୍ଦ୍ୱାରା ସଂସାରର ଜ୍ୱାଳା, ଯନ୍ତ୍ରଣା, ଜଞ୍ଜାଳରୁ ମୁକ୍ତି ଆଉ ଶରୀରବନ୍ଧନରୁ ଖଲାସ । ତଥାପି ମରଣକୁ ଆମର କେତେ ଭୟ ! ଏ କେବଳ ଆସକ୍ତି, କେବଳ ମାୟା ! କି ମୋହିନୀ ଶକ୍ତି ଏ ଦୁନିଆର—ଯେ ଯେତେ ଦୁଃଖ, କଷ୍ଟ, ଅଶାନ୍ତି ପାଉ ପଛକେ ମରିବାକୁ କେବେହେଁ ରାଜି ନୁହେ । ମୃତ୍ୟୁ ଆସି ମୁଣ୍ଡ ଉପରେ ବସିଲାଣି, ତଥାପି ସେ କହୁଛି—ଆଉ ଟିକିଏ !

ପ୍ରାକୃତିକ ବିଧିବିଧାନ ମାନି ଚଳିଲେ ବ୍ୟାଧି ଆସିବ ନାହିଁ । ଅତଏବ ରୋଗର ଯନ୍ତ୍ରଣା ନାହିଁ, ଅକାଳମୃତ୍ୟୁ ହେବ ନାହିଁ; ତେଣୁ ମାୟା ଡୋରି ଛିଡ଼ି ଆଶା ତୁଟିବାର ଡର ନାହିଁ । ଆସିବ କେବଳ ଧୀର, ପ୍ରଶାନ୍ତ, ନୀରବ ମୃତ୍ୟୁ—ଯହିଁରେ ଉଦ୍‌ବେଗ ନାହିଁ, ଅସ୍ଥିରତା ନାହିଁ, ଅଶାନ୍ତି ନାହିଁ—ଦୀପରୁ ତେଲ ସରିଲେ ଯେପରି ନିଭିଯାଏ ଧୀରେ, ଧୀରେ, ଧୀରେ । ଆଉ ପ୍ରକୃତିର ବିପକ୍ଷତା କଲେ ସେ ନେବ ତା'ର ପ୍ରତିଶୋଧ—ଆସିବ ଦମ୍‌କା ବତାସ, ଟାଣି ଘୋଷାଡ଼ି କେଞ୍ଚି କରୁଡ଼ି ନିଭାଇ ଦେବ ଧପ୍ କରି ।

## ନାରୀସ୍ୱାସ୍ଥ୍ୟ

ପୂର୍ବରୁ ଶରୀର ଓ ସ୍ୱାସ୍ଥ୍ୟ ସମ୍ବନ୍ଧରେ ଯାହା ଯାହା କୁହାଯାଇଛି ତାହା ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସମଗ୍ର ମନୁଷ୍ୟ ଜାତି ପ୍ରତି ପ୍ରଯୁଜ୍ୟ । ତେବେ ନାରୀଶରୀରର ତିନି ଗୋଟି ବିଶେଷ ଅବସ୍ଥା ଅଛି ଯାହା ବିଷୟରେ କିଛି କହିବା ପ୍ରୟୋଜନ ।

### ରଜସ୍ୱଳା

ପ୍ରତ୍ୟେକ ନାରୀର ଯଥାକାଳରେ ରଜସ୍ରାବ ହୁଏ । ଆମ ଦେଶରେ ସାଧାରଣତଃ ୧୨।୧୩ ବର୍ଷ କାଳରେ ଏହା ପ୍ରଥମେ ଆରମ୍ଭ ହୋଇଥାଏ । ଅବଶ୍ୟ କାହାର କାହାର ଅତି ଅଳ୍ପ ବୟସରେ, କାହାର ଅତି ବେଶୀ ବୟସରେ ଏହା ହୁଏ ବା କାହାର ଆଦୌ ହୁଏ ନାହିଁ । ମାତ୍ର ରଜସ୍ରାବ ନାରୀଶରୀରର ଗୋଟିଏ ସ୍ୱାଭାବିକ ପ୍ରକ୍ରିୟା ଓ ପ୍ରାୟ ସର୍ବସାଧାରଣ ନାରୀ ଏ ଅବସ୍ଥା ପ୍ରାପ୍ତ ହୁଅନ୍ତି । ପ୍ରଥମ ରଜୋଦର୍ଶନଠାରୁ ଏହି ନିୟମାନୁସାରେ ପ୍ରତି ମାସରେ (୨୮ ଦିନ ଅନ୍ତରରେ) ଥରେ ଲେଖାଏଁ ହୁଏ ଓ ପ୍ରାୟ ୩ ଦିନଠାରୁ ୪ ଦିନଯାକେ ରହେ । ଏ ନିୟମର ବ୍ୟତିକ୍ରମ ଦେଖାଗଲେ ଜାଣିବ ତାହା ଅସ୍ୱାଭାବିକ ଅଥବା ରୋଗଜନିତ ।

ରଜସ୍ରାବ କାଳରେ ନାରୀମାନଙ୍କର କି ଭାବରେ ରହିବା ଦରକାର ତାହା ଅନେକେ ଜାଣନ୍ତି ନାହିଁ ବା ଜାଣି ସୁଦ୍ଧା ହେଳା କରନ୍ତି । ରଜସ୍ରାବ ସହିତ ନାରୀସ୍ୱାସ୍ଥ୍ୟର ଅତି ଘନିଷ୍ଠ ସମ୍ବନ୍ଧ ଏବଂ ଏଥିରେ ଅବହେଳା ବା ବ୍ୟତିକ୍ରମ କଲେ ନାରୀକୁ ବହୁ ଦୁରାରୋଗ୍ୟ ବ୍ୟାଧିରେ ପଡ଼ିବାକୁ ହୁଏ । ତଦ୍ଦ୍ୱାରା ନିଜର ଜୀବନ ତ ଯନ୍ତ୍ରଣାମୟ ହେବ; ପୁଣି ସ୍ୱାମୀ ପ୍ରଭୃତି ଆତ୍ମୀୟସ୍ୱଜନ ବ୍ୟତିବ୍ୟସ୍ତ ହେବେ ଓ ଗୃହସଂସାର ବିଶୃଙ୍ଖଳ ହୋଇପଡ଼ିବ । ଶେଷେ ଏହାର ବିଷମୟ ଫଳ ଫଳିବ ସନ୍ତାନସନ୍ତତିଙ୍କଠାରେ । ସେଥିସକାଶେ ଋତୁ-କାଳରେ ଅବଶ୍ୟ ପାଳନୀୟ କେତେଗୁଡ଼ିଏ ନିୟମ ନିମ୍ନରେ ଲିପିବଦ୍ଧ ହେଲା ।

୧ । ଋତୁକାଳରେ ତୃଣଶଯ୍ୟାରେ ଏକାକୀ ଶୋଇବ ।
୨ । ସ୍ୱାମୀ ମୁଖ ଦର୍ଶନ ବା ସ୍ୱାମୀକୁ ସ୍ପର୍ଶ କରିବ ନାହିଁ ।
୩ । ବ୍ରହ୍ମଚର୍ଯ୍ୟ ପାଳନ କରିବ ଓ ମନ ପବିତ୍ର ରଖିବ ।
୪ । ଦିବାନିଦ୍ରା ପରିତ୍ୟାଗ କରିବ ।
୫ । ପର୍ଯ୍ୟାପ୍ତ ପରିମାଣ ନିଦ୍ରା ଭୋଗ କରିବ; ରାତିଜାଗରଣ କରିବ ନାହିଁ ।

୬ । ଅତ୍ୟଧିକ ପରିଶ୍ରମ କରିବ ନାହିଁ ।

୭ । ଯଥାସମ୍ଭବ ଏକାନ୍ତରେ ଅବସ୍ଥାନ କରିବ ।

୮ । ଅତି ଗୁରୁ ଶବ୍ଦ ଶୁଣିବ ନାହିଁ ବା ଆଖି ଝଲସାଇବା ତେଜସ୍କର ଆଲୋକ ଦେଖିବ ନାହିଁ ।

୯ । ଅତି ପବନରେ ବସିବ ନାହିଁ ।

୧୦ । ଦୁଶ୍ଚିନ୍ତା କରିବ ନାହିଁ ଓ ମିଥ୍ୟା, ଚୋରି, ଲୋଭ, ପରିତ୍ୟାଗ କରିବ ।

୧୧ । କାହାରି ପ୍ରତି କ୍ରୋଧ ଓ ହିଂସା କରିବ ନାହିଁ ।

୧୨ । ଅତି ଉଲ୍ଲାସରେ ଉଚ୍ଚହାସ୍ୟ କରିବ ନାହିଁ ।

୧୩ । ଦୁଃଖରେ କାନ୍ଦିବ ନାହିଁ ବା ଆଖିରୁ ଲୁହ ଗଡ଼ାଇବ ନାହିଁ ।

୧୪ । ଚନ୍ଦନ, କଜ୍ଜ୍ୱଳ, ତେଲ, ହଳଦି ପରିତ୍ୟାଗ କରିବ ।

୧୫ । ନଖ କାଟିବ ନାହିଁ ।

୧୬ । ଅତି ବକର ବକର ହେବ ନାହିଁ ବା ଏକାବେଳକେ ମୌନ ରହିବ ନାହିଁ ।

୧୭ । ଗୁରୁଜନ, ପବିତ୍ର ବସ୍ତୁ, ଦେବମନ୍ଦିର ପ୍ରଭୃତି ଛୁଇଁବ ନାହିଁ ।

୧୮ । ପିଲାଙ୍କୁ ବା ସେମାନଙ୍କ ଖାଦ୍ୟ ବା ବସ୍ତ୍ର ଛୁଇଁବ ନାହିଁ ।

୧୯ । ମୁଣ୍ଡ କୁଣ୍ଡାଇବ ନାହିଁ ବା ସୁବେଶ ହେବ ନାହିଁ ।

୨୦ । ଅତି ପତଳା ଲୁଗା ବା ଅତି ଭାରି ଲୁଗା ପିନ୍ଧିବ ନାହିଁ ।

୨୧ । ଲଘୁପାକ ଓ ସାତ୍ତ୍ୱିକ ଦ୍ରବ୍ୟ ଭୋଜନ କରିବ ।

୨୨ । ଥଣ୍ଡା ଜଳରେ ସ୍ନାନ କରିବ ନାହିଁ ବା ଥଣ୍ଡା ସ୍ଥାନରେ ଶୋଇବ ନାହିଁ ।

୨୩ । ରେଲ, ମଟର ଗାଡ଼ି ପ୍ରଭୃତି ଯାନବାହନରେ ଚଢ଼ିବ ନାହିଁ ।

୨୪ । ସତ୍ୟ, କ୍ଷମା, ଦୟା, ଧୈର୍ଯ୍ୟ, ଶାନ୍ତି ପ୍ରଭୃତି ସଦ୍‌ଗୁଣମାନଙ୍କୁ ସର୍ବଦା ହୃଦୟରେ ସ୍ଥାନ ଦେବ ।

୨୫ । ପତିଙ୍କଠାରେ ପ୍ରେମ ଓ ଈଶ୍ୱରଙ୍କଠାରେ ଭକ୍ତି ରଖିବ ।

## ଗର୍ଭବତୀ

ନାରୀଜୀବନର ସାର୍ଥକତା ମାତୃତ୍ୱରେ । ମାତାର ରକ୍ତରୁ ସନ୍ତାନର ଶରୀର ଗଠିତ ହୁଏ । ମାତାର ଲାଳନ ପାଳନ ଓ ଶୈଶବର ଶିକ୍ଷା ଉପରେ ସନ୍ତାନର ଭବିଷ୍ୟତ ନିର୍ଭର କରେ । ଯେଉଁ ନାରୀ ମାତା ହେବାର ପଥରେ ଅଗ୍ରସର ହେବେ, ତାଙ୍କୁ ସେଥିପାଇଁ ବିଶେଷ ଜଗିରହି, ସାବଧାନତାର ସହିତ ଚଳିବାକୁ ହେବ । ବିଶେଷତଃ ଗର୍ଭକାଳରେ, ଯେଉଁ କାଳରେ ଗର୍ଭସ୍ଥ ସନ୍ତାନର ଅବୟବ ଧୀରେ ଧୀରେ ଗଢ଼ି ଉଠୁଥାଏ, ଏ କାଳରେ ଭାବୀ ଜନନୀ ନିଜ ସ୍ୱାସ୍ଥ୍ୟପ୍ରତି ଅଯତ୍ନ କଲେ ତା'ର ଫଳ ଭୋଗ କରେ ସନ୍ତାନ ।

ଗର୍ଭାବସ୍ଥାରେ କି କି ନିୟମରେ ଚଳିବା ଉଚିତ ତାହା ନିମ୍ନରେ ପ୍ରଦତ୍ତ ହେଲା । ଗର୍ଭବତୀ ନାରୀମାନେ ଏଥିପ୍ରତି ମନୋଯୋଗିନୀ ହେବା ଉଚିତ ।

୧ । ଗର୍ଭବତୀର କୋଷ୍ଠ ପରିଷ୍କାର ହେଉଥିବା ଦରକାର । କଡ଼ା ଜୁଲାବ ଏ କାଳରେ ଅନିଷ୍ଟକର । ସୁତରାଂ ମୃଦୁ ବିରେଚକ ଓ ଲଘୁପାକ ଖାଦ୍ୟ ଖାଇବାକୁ ହେବ । କୋଷ୍ଠ-କାଠିନ୍ୟ ଥିଲେ ପ୍ରସବକାଳରେ ବଡ଼ ଦୁଃଖ ପାଇବାକୁ ହୁଏ ।

୨ । ପ୍ରସ୍ରାବ ମଧ୍ୟ ସଫା ରଖିବାକୁ ହେବ । ଅଳ୍ପ ଅଳ୍ପ ନିର୍ମଳ ଓ ଶୀତଳ ଜଳ ଥରକୁଥର ପାନ କଲେ ପ୍ରସ୍ରାବ ଖୋଲସା ହୁଏ । କଞ୍ଚା ଦୁଧ ସହିତ ଜଳ ମିଶାଇ ପିଇଲେ ମଧ୍ୟ ଉପକାର ହୋଇଥାଏ ।

୩ । ଗର୍ଭବତୀ ପାନ ଭୋଜନ ବିଷୟରେ ବିଶେଷ ସାବଧାନ ରହିବେ । ଗୁରୁପାକ ଦ୍ରବ୍ୟ ଭୋଜନରୁ ବିରତ ହେବେ; ରାଗ, ମସଲା, ଖଟା ପ୍ରଭୃତି ଖାଇବେ ନାହିଁ । ଖଟା ମଧ୍ୟରେ କାଗଜିଲେମ୍ବୁ ଖାଇପାରନ୍ତି । ପଚା, ବାସି ପଦାର୍ଥ ଏକାବେଳକେ ପରିହାର କରିବେ । ବଳକାରକ ଅଥଚ ଲଘୁ ଆହାର କରିବେ । କଞ୍ଚା ପାଚିଲା ଫଳ ମୂଳ ଉପକାରୀ ।

୪ । ଗର୍ଭବତୀ ଦେହ ସବୁବେଳେ ଭାରି ଭାରି ଲାଗେ । ସେଥିପାଇଁ ସେ ବେଶୀ ଶୋଇବାକୁ ଇଚ୍ଛା କରନ୍ତି । ବିଶେଷତଃ ଖାଇ ସାରିଲେ ଅଧିକ ଆଳସ୍ୟ ଲାଗେ । ସେଥିପାଇଁ ଅତି ପେଟ ପୂରାଇ ଖାଇବ ନାହିଁ ଓ ଖାଇସାରି ଶୋଇପଡ଼ିବ ନାହିଁ । ତଦ୍ଦ୍ୱାରା ହଜମରେ ବାଧା ଘଟେ । ଦିବାନିଦ୍ରା ଗର୍ଭବତୀ ପକ୍ଷରେ ଅନିଷ୍ଟକର ।

୫ । ଗର୍ଭାବସ୍ଥାରେ ଉପବାସ କରିବା ବା ଭୋକ ମାରି ରହିବା ଗର୍ହିତ ।

୬ । ଗର୍ଭିଣୀ ସର୍ବଦା ପରିଷ୍କାର ପରିଚ୍ଛନ୍ନ ରହିବେ ଓ ମଇଳା ଲୁଗା ପିନ୍ଧିବେ ନାହିଁ ।

୭ । ଗର୍ଭବତୀ ଭଲ କରି ଦାନ୍ତ ସଫା ରଖିବେ ଓ ଅଳେଇଚ ପ୍ରଭୃତି ମସଲା ଚୋବାଇ ମୁଖର ବିସ୍ୱାଦ ଓ ଦୁର୍ଗନ୍ଧ ଦୂର କରିବେ ।

୮ । ବେଶୀ ଭିଡ଼ ଲୁଗା ପିନ୍ଧିବା ଏ ଅବସ୍ଥାରେ ହାନିକର ।

୯ । ଏ କାଳରେ ସୁଗନ୍ଧ ପଦାର୍ଥ ବା ଫୁଲ ପ୍ରଭୃତି ବ୍ୟବହାର କରି ଚିତ୍ତ ପ୍ରଫୁଲ୍ଲ ରଖିବେ ।

୧୦ । ଗର୍ଭବତୀ କଦାଚ ଅଧିକ ପରିଶ୍ରମ କରିବେ ନାହିଁ । ତାହା ବୋଲି ଆଳସ୍ୟ କରିବା ମଧ୍ୟ ଅନିଷ୍ଟକର ।

୧୧ । ଗର୍ଭାବସ୍ଥାରେ ଏକାକିନୀ କାହିଁ ଯିବା ଉଚିତ ନୁହେଁ । କୌଣସି ପ୍ରକାର ଭୟାନକ, ବୀଭତ୍ସ ବା ଉଦ୍‌ବେଗକର ଦୃଶ୍ୟ ଯେପରି ସେ ନ ଦେଖନ୍ତି । ହଠାତ୍ ଭୟ ପାଇବା ବା ଚମକି ପଡ଼ିବା ଦ୍ୱାରା ଗର୍ଭପାତ ହେବାର ସମ୍ଭାବନା ।

୧୨ । ଅନ୍ୟ କେହି ପ୍ରସବ ବେଦନା ପାଉଥିବା ବେଳେ ଗର୍ଭିଣୀ ସେ ସ୍ଥାନକୁ ଯିବେ ନାହିଁ ବା ପ୍ରସୂତିଙ୍କୁ ଦେଖିବେ ନାହିଁ ।

୧୩ । କାହାରି ମୃତ୍ୟୁ ସମ୍ବାଦ ଗର୍ଭିଣୀଙ୍କୁ ଶୁଣାଇବା ଉଚିତ ନୁହେଁ । ଗର୍ଭିଣୀ ମୁର୍ଦ୍ଦାର ଛୁଇଁବେ ନାହିଁ ବା ଦେଖିବେ ନାହିଁ ।

୧୪ । ଯେଉଁ ସ୍ତ୍ରୀର ମାସିକ ଋତୁସ୍ରାବ ଯେଉଁ ସମୟରେ ହୋଇଥାଏ, ସେହି ସମୟଟାରେ ଅଧିକ ସାବଧାନତାର ସହିତ ଚଳିବାକୁ ହେବ । କାରଣ ସେହି ସମୟରେ ଗର୍ଭପାତ ହେବାର ଆଶଙ୍କା ଅଧିକ ।

୧୫ । ଅତି ଥଣ୍ଡା ବା ଅତି ଗରମ ଜଳରେ ସ୍ନାନ କରିବ ନାହିଁ । ନିୟମିତ ସ୍ନାନ କରିବ; ମାତ୍ର ଗାଧୋଇବାରେ ଡେରି କରିବ ନାହିଁ ।

୧୬ । ଯେଉଁମାନେ ବଡ଼ଲୋକ ଓ ଯାହାଙ୍କର ଗୃହକର୍ମରେ ଶାରୀରିକ ପରିଶ୍ରମ କରିବାକୁ ନ ପଡ଼େ, ସେପରି ଗର୍ଭବତୀ ଖୋଲା ପବନରେ ଚଲାବୁଲା କରିବେ ।

୧୭ । ଯାନାଦିରେ ଚଢ଼ିବା ଗର୍ଭାବସ୍ଥାରେ ଅନିଷ୍ଟକର । ଯେବେ ନିତାନ୍ତ ଚଢ଼ିବାକୁ ହୁଏ, ତେବେ ଅତି ଧୀରେ ଓ ମୃଦୁଭାବରେ ଯାତାୟାତ କରିବେ ।

୧୮ । ଗର୍ଭାବସ୍ଥାରେ ସ୍ୱାମୀ-ସହବାସ ଏକାବେଳକେ ନିଷିଦ୍ଧ ।

୧୯ । ଗର୍ଭବତୀ ହର୍ଷରେ ଉଚ୍ଚହାସ୍ୟ ବା ବିପଦରେ ରୋଦନ କରିବେ ନାହିଁ ।

୨୦ । ଗର୍ଭବତୀ ନାରୀର ନାନାପ୍ରକାର ଅଭିଳାଷ ପ୍ରବଳ ଭାବରେ ଜନ୍ମେ । ଅମୁକ ଖାଇବି, ଅମୁକ ଦେଖିବି, ଅମୁକ ପିନ୍ଧିବି ପ୍ରଭୃତି । ଏପରି ଅଭିଳାଷକୁ ସାଧ୍ୟାନୁସାରେ ପୂରଣ କରିବା ଉଚିତ । ତାହା ନ ହେଲେ ଗର୍ଭସ୍ଥ ସନ୍ତାନର କୌଣସି ହେଲେ ଅଙ୍ଗ ବା ମନୋବୃତ୍ତି ବିକଳ ହୋଇଯାଏ । ଏଥିପାଇଁ ଆମ ଦେଶରେ "ସାଧଖିଆ" ପ୍ରଥା ପ୍ରଚଳିତ ଅଛି । ଏହାକୁ କେବଳ "ସ୍ତ୍ରୀ ଆଚାର" ବା ମାଇପି କଥା ବୋଲି ହସି ଉଡ଼ାଇ ଦେବାର ନୁହେଁ ।

୨୧ । ଗର୍ଭବତୀ ସର୍ବଦା ଦେହ ଓ ମନକୁ ପବିତ୍ର ରଖିବେ । ଅସତ୍ କଥା ଶୁଣିବେ ନାହିଁ । କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତି ତ୍ୟାଗ କରିବେ । ସବୁବେଳେ ସଚ୍ଚିନ୍ତା କରିବେ । ଉଚ୍ଚ ଉଚ୍ଚ ଆଦର୍ଶ ଧ୍ୟାନ ରଖିବେ । ମହାପୁରୁଷମାନଙ୍କ ବିଷୟ ଶୁଣିବେ ଓ ମନନ କରିବେ । ସୁନ୍ଦର ଓ ମହତ୍‌ବ୍ୟକ୍ତି ବା ନିଜର ସ୍ୱାମୀଙ୍କ ଚିତ୍ରମାନ ଦେଖିବେ ଓ ଈଶ୍ୱରଙ୍କଠାରେ ମନୋନିବେଶ କରିବେ ।

ଗର୍ଭକାଳରେ ଜନନୀର ମନୋଭାବ ସନ୍ତାନଠାରେ ପ୍ରଭାବିତ ହୁଏ ।

## ପ୍ରସୂତି

ପ୍ରସବକାଳ ନାରୀ-ଶରୀରର ବିଷମ ସନ୍ଧିକାଳ । ପୁଣି ସନ୍ତାନ ପ୍ରସବ ଦ୍ୱାରା ନାରୀ ଜୀବନରେ ଏକ ଘୋର ପରିବର୍ତ୍ତନ ଘଟେ । ଏହି ସମୟ ଓ ତତ୍‌ପରବର୍ତ୍ତୀ କେତେ ଦିନ ବିଶେଷଭାବରେ ସାବଧାନ ନ ରହିଲେ ସାରା ଜୀବନ ମନସ୍ତାପ ଓ ଅସୁସ୍ଥତା ଭୋଗିବାକୁ ପଡ଼େ; ଏପରିକି ଜୀବନନାଶ ପର୍ଯ୍ୟନ୍ତ ଘଟିଥାଏ ।

ପ୍ରସବ ସମୟ ନିକଟ ହେଲେ ଓ ଗର୍ଭବତୀର ଗର୍ଭବେଦନା ପ୍ରକାଶ ପାଇଲାମାତ୍ରେ ତାକୁ ଅଲଗା ଏକ ସୂତିକା-ଗୃହକୁ ନେଇଯିବ । ସୂତିକା ଘର ଆଗରୁ ସଜ କରି ରଖିଥିବ । ମାଟିଘର ହୋଇଥିଲେ ଦେଖିବ ଯେପରି ତା'ର ତଳ ସନ୍ତସନ୍ତିଆ ନ ଥାଏ । ଖୁବ୍ ଶୁଖିଲା ଭୂଇଁରେ ଗଇଁଶା ପାଉଁଶ ବିଛାଇ ତାହା ଉପରେ ହେଁସ ବା ମସିଣା ପାରିଦେବ । ପକାଘର ହୋଇଥିଲେ ଖଟ ବିଛଣା କରି ପ୍ରସୂତିକୁ ବସାଇବ ବା ଶୁଆଇବ । ଘରଟିରେ ଯେପରି ଯଥେଷ୍ଟ ଆଲୁଅ ଓ ପବନ ଚଳାଚଳ ହୁଏ ତାହାର ବ୍ୟବସ୍ଥା କରିବ ଓ ଧୂଆଁ ବାହାରିବାର ବାଟ ରଖିବ । ଆଗରୁ ପ୍ରଚୁର ପରିମାଣରେ ସଫା କନା ରଖିଥିବ ବା ନୂଆ ଥାନ ଲୁଗା କିଣି ସିଝାଇ ରଖିଥିବ । ଅନୁଡ଼ ଜାଳିବା ପାଇଁ ବଡ଼ ଉମେଇ ଓ ଯଥେଷ୍ଟ ଶୁଖିଲା କରଞ୍ଜ କୋଳ ବା କୁଡ଼ିଆ କାଠ ସଂଗ୍ରହ

କରିଥିବ । ସୂତିକା ଘରେ ବହୁତ ଲୋକ ଜମା ହେବାକୁ ଦେବ ନାହିଁ । ପ୍ରସୂତିକୁ ଛୁଇଁଲେ ମାରା ହେବା ଭୟରେ ଅନେକେ ତାର ଅଯତ୍ନ କରନ୍ତି । ମାତ୍ର ମନେ ରଖିବା ଉଚିତ ଯେ ସେ ସମୟ ପ୍ରସୂତି ପକ୍ଷରେ କେଡ଼େ ବିପଦର ସମୟ । ଟିକିଏ ଅବହେଳା ହେଲେ ଜୀବନ ସଂଶୟ ।

ସୁଦକ୍ଷ ଓ ପୋଖତା ଧାଈ ଆଣି ଜଗାଇ ରଖିବ । ଦରକାର ହେଲେ ଭଲ ଡାକ୍ତର ଡାକିବ । ଯଦି ପ୍ରସବ ଦ୍ୱାରରେ ହାତ ଦେବାର ପ୍ରୟୋଜନ ହୁଏ, ତେବେ ଦେଖିବ ଯେପରି ଧାଈ ନଖ କାଟିଥାଏ ଓ ତାହା ହାତରେ କୌଣସି ମଇଳା ନଥାଏ । ଏଥିପାଇଁ ଗରମ ନିମପତ୍ର ପାଣି ବା ପଟାସ ପାଣିରେ ତା'ର ହାତ ଧୁଆଇ-ନେବ । ପ୍ରସବ ଉତ୍ତାରୁ ଅତି ଯତ୍ନରେ ଲୁଗାପଟା ବଦଳାଇବ ଓ ଘର ସଫା କରିଦେବ । ପିଲାକୁ ଭଲକରି ପୋଛିପାଛି ଦେବ । ଚିକିତ୍ସକର ପରାମର୍ଶ ନେଇ ଗାଧୋଇ ଦିଆଯାଇପାରେ । ନାଭି କାଟିବାରେ ଖୁବ୍ ସାବଧାନତା ଦରକାର । ସୁଚତୁର ଓ ପ୍ରବୀଣ ଧାଈ ଏ କାର୍ଯ୍ୟ କରିବେ । ଧାରୁଆ କଇଞ୍ଚି ବା ଶାମୁକା ଆଗରୁ ଶୋଧନ କରି ତହିଁରେ ନାଭି କଟାଇବ । ଫୁଲ ପଡ଼ିବାର ବିଳମ୍ବ ଦେଖିଲେ ଚିକିତ୍ସକ ଡକାଇବ । ଫୁଲ ରହିଗଲେ ବଡ଼ ବିପଦର କଥା ।

ପ୍ରସବ ପରେ ପ୍ରସୂତିର ଶରୀରର ଅବସ୍ଥା ବଡ଼ ଖରାପ ଥାଏ । ପେଟର ଯନ୍ତ୍ରସବୁ ଓ ସ୍ନାୟୁମଣ୍ଡଳୀ ଢିଲା ହୋଇଯାଇ-ଥାଏ । ସେଥିପାଇଁ ଗୁରୁପାକ ଦ୍ରବ୍ୟ ହଠାତ୍ ଖାଇବାକୁ ଦେବ ନାହିଁ । ଅଳ୍ପ ଗରମ ଦୁଧ ପିଇବା ଉପକାରୀ । ଦୁଇ ତିନି ଦିନ ସାଗୁ, ବାର୍ଲି ଖୁଆଇବ । ତାହାପରେ ପୁରୁଣା ଚାଉଳର ଭାତ, ହଳଦିପାଣିରେ ତରକାରୀ ବା କଉ ମାଗୁରର ଝୋଳ ଧୀରେ ଧୀରେ ଖାଇବେ ।

ଆମ ଦେଶରେ ସାତ ଦିନରେ ଗାଧୁଆନ୍ତି । ଯେବେ ଗାଧୁଆନ୍ତି, ସରଦ ଗରମ ଜଳରେ ଗାଧୋଇଦେବ । ଦଶରାତ୍ର ପରେ ଛୁଆଁ ଛୁଇଁ ଚଳେ ଓ ଏକୋଇଶି ଦିନରେ ଅଶୁଦ୍ଧି ଉଠିଯାଏ । ତଥାପି ପ୍ରସୂତିର ଅବସ୍ଥାନୁଯାୟୀ ଅଶୁଦ୍ଧି ଉଠିଯାଏ । ନବପ୍ରସୂତା ସ୍ୱାମୀଶଯ୍ୟାରେ ଶୟନ କରିବେ ନାହିଁ ଓ ଅନ୍ତତଃ ୪ ମାସ ସହବାସରୁ ବିରତ ହେବେ । ପ୍ରସବର ଅଳ୍ପକାଳ ପରେ ଗର୍ଭୋଦୟ ହେଲେ ପ୍ରସୂତିର ଜୀବନୀଶକ୍ତି ହ୍ରାସ ହୋଇଯାଏ ଓ ସେ ଚିରରୁଗ୍ଣା ହୋଇପଡ଼ନ୍ତି । ଗୁଡ଼ାଏ ଦୁଗ୍ଧପୋଷ୍ୟ ଶିଶୁ ହୋଇ ମଧ୍ୟ ଜନନୀ ତଥା ପରିବାରର ଉଦ୍‌ବେଗ ଓ ଅସୁବିଧାର କାରଣ ହୁଅନ୍ତି ।

ପୁଣି ଗର୍ଭ ହେଲା ମାତ୍ରକେ ବା ସଙ୍ଗମ ହେଲେ, ପ୍ରସୂତିର ସ୍ତନ କ୍ଷୀର ସନ୍ତାନକୁ ଖୁଆଇବ ନାହିଁ । ସେଥିରେ ଶିଶୁର ଉଭୟଙ୍କ ଅନିଷ୍ଟ ଘଟେ । ଏ ସବୁ କାରଣରୁ ପ୍ରସୂତି ଓ ତାଙ୍କ ସ୍ୱାମୀ ଉଭୟଙ୍କର ସାବଧାନ ରହିବା ଉଚିତ ।

ମୋଟ କଥା, ଯଦି ନାରୀ ପ୍ରାକୃତିକ ନିୟମରେ ସ୍ୱାସ୍ଥ୍ୟକୁ ଜଗି ଆଗରୁ ଚଳୁଥିବେ ଓ ତଦ୍ୱାରା ଶରୀରକୁ ବଳିଷ୍ଠ ଓ ସୁସ୍ଥ ରଖିଥିବେ, ତେବେ ପ୍ରସବରେ କୌଣସି ଯନ୍ତ୍ରଣା ବା ଅନିଷ୍ଟ ହେବାର ଆଶଙ୍କା ନାହିଁ । ଆଧୁନିକ ଶିକ୍ଷିତ ବାବୁଭୟା ବା ବ୍ରାହ୍ମଣ, କରଣ, ଖଣ୍ଡାଏତଙ୍କ ଘର ସ୍ତ୍ରୀମାନେ କାମଦାମ ନ କରି ଆଳସ୍ୟରେ ସମୟ ନଷ୍ଟ କରନ୍ତି । ବସି ବସି ବୃଥାରେ କୃତ୍ରିମ ଓ ବିଳାସମୟ ଜୀବନ ଯାପନ କରି ସ୍ୱାସ୍ଥ୍ୟକୁ ନଷ୍ଟ କରନ୍ତି । ସେଥିପାଇଁ ସେମାନଙ୍କର ସାଧାରଣତଃ ସହଜ ପ୍ରସବ ହୁଏ ନାହିଁ ଓ ହେଲେ ବିପଦ ମଧ୍ୟ ହୁଏ । ହାଡ଼ିଆ, ବନ୍ୟ ଜାତି ଓ ଅଛୁଆଁ ଲୋକଙ୍କ ଘରେ ଏ ଭଳି ଦେଖାଯିବା ଖୁବ୍ କମ୍ ।

## ଶିଶୁଚର୍ଯ୍ୟା

ପିଲାଙ୍କୁ ଯେଉଁ ଭାବରେ ଚଳାଇବ ସେମାନେ ସେପରି ଚଳିବେ । ନିଜେ ଯାହା ଆଚରଣ କରିବ ସେମାନେ ତାହା ଶିଖିବେ । ସେମାନଙ୍କର ଅନୁକରଣ-ପ୍ରବୃତ୍ତି ବଡ଼ ବେଶୀ । ଶୈଶ-ପିଲା ପକ୍ଷରେ ମାତୃ ସ୍ତନ କ୍ଷୀର ସବୁଠାରୁ ଉପଯୋଗୀ । ବାର୍ଲି, ସାଗୁ, ବିଲାତି ଦୁଧର ମୋହ ଛାଡ଼ିବା ଉଚିତ । ନ ମିଳିଲେ ଅନ୍ୟ ସୁସ୍ଥା ନାରୀର କ୍ଷୀର, ଛେଳି ଦୁଧ, ଗଧ ଦୁଧ ବା ଗାଈ ଦୁଧ ଦିଆ-ଯାଇପାରେ । ପିଲାକୁ ହଳଦି ତେଲ ଲଗାଇ ଦେବାରେ ହେଳା କରିବ ନାହିଁ । ପବନ ଓ ଖରା ସହ୍ୟ ମୁତାବକ ଖୁଆଇବ । ଆଖିରେ କଜ୍ଜ୍ୱଳ ଦେବ, କାନରେ ତେଲ ପକାଇବ, ଜିଭ ପୋଛି ଦେଉଥିବ । ଚାଲି ବୁଲି ପାରିଲେ ବିସ୍କୁଟ ପ୍ରଭୃତି ନ ଖୁଆଇ ଚୂଡ଼ାରନ୍ଧା, ପୋଡ଼ପିଠା, ବଡ଼ାଭାତ ଖାଇବାକୁ ଦେବ । ପିଲା ଦୁଧ ଯେତେ ଖାଇପାରେ ତେତେ ଭଲ । ସାହେବୀ ବା ସହରୀ ଫେସନରେ ଜନ୍ମଠାରୁ ଚଳିଯାଏ ମୋଜା, ଟୋପି, ଜାମା ପ୍ରଭୃତି ପିନ୍ଧାଇ ପିଲାକୁ କୁଣ୍ଢାଇ ସଜାଇବା ଭଲ ନୁହେ । ତଦ୍ୱାରା ପିଲାର ସହନଶୀଳତା କମିଯାଏ ଓ ସେ ମହଣପିଚୁଳୀ ହୋଇପଡ଼େ । ପିଲା ଯେତେ ଖେଳିବ, ବୁଲିବ, ଦୌଡ଼ିବ, ଧୂଳିମାଟି ହେବ, ତେତେ ସେ ଟାଣୁଆ ହେବ, ବଡ଼ହେଲେ କାଳକୁ ନୀରୋଗ, ବଳିଷ୍ଠ ଓ କର୍ମକ୍ଷମ ହୋଇ ଦୀର୍ଘଜୀବୀ ହୋଇପାରିବ । ତାହା ବୋଲି ପିଲାକୁ ଅପରିଷ୍କାର, ନାସନା ହେବାକୁ ଦେବ ନାହିଁ । ପିଲାର କନାପଟା, ଶେଯ, ଦେହ ପ୍ରଭୃତି

ଏଫା ରଖିବ । ନିୟମିତ ଭାବରେ ଗାଧୋଇଦେବ । ଅଭାବ ପକ୍ଷେ ପାଣି ବାଲଟିରେ ପେଟ ବୁଡ଼ାଇ ଦେଉଥିବ ।

ପିଲାକୁ ଦୁଧ ଖୁଆଇବା ବିଷୟରେ ସମୟ, ସଂଖ୍ୟା ଓ ପରିମାଣର ନିୟମ ରଖିବ । ଏଥିରେ ବ୍ୟତିକ୍ରମ କଲେ ନିଶ୍ଚୟ ରୋଗ ଦେଖା ଦେବ । ପ୍ରଥମେ ପ୍ରଥମେ ବାର ଥର, ତିନି ମାସରେ ଦଶ ଥର, ଛ'ମାସରେ ଆଠ ଥର, ଆଠ ମାସରେ ଛ'ଥର ଏହିପରି କ୍ରମେ ଦୁଧ ଦେବା କମାଇଦେବ । ଅନେକ ମାତା ପ୍ରାୟ ସବୁବେଳେ ପିଲା ମୁହଁରେ ଦୁଧବେଣ୍ଟ ଲଗାଇ ରଖିଥାନ୍ତି କିମ୍ବା କାନ୍ଦିଲାମାତ୍ରକେ ହାବୁଡ଼ାଇ ଦିଅନ୍ତି । ଏହା କରିବା ଅତି ଗର୍ହିତ । ପିଲା କାନ୍ଦିଲେ ତା'ର ବ୍ୟାୟାମ ହୁଏ । ରାତିରେ ମା କୋଳରେ ଶୋଇ କେହି କେହି ପିଲା ପାଟିରେ ବେଣ୍ଟି ପୂରାଇ ଶୁଅନ୍ତି ଓ ରାତିସାରା ଚୋଷୁଥାଆନ୍ତି । ଏପରି କେବେହେଁ କରିବ ନାହିଁ ।

ଦୁଧଖିଆ ଛୁଆର ମା ନିଜ ଖାଇବା ପିଇବାରେ ଖୁବ୍ ସାବଧାନ ରହିବେ । ସେ ଯଦି ପଥ୍ୟ ଖାଇଲା ଭଳି ନ ରହି ଶାଗ, ଖଟା, ମିଠା, ରାଗ, ମସଲା, ଶୁଖୁଆ ପ୍ରଭୃତି ଅନିଷ୍ଟକର ଖାଦ୍ୟ ଖାଆନ୍ତି, ତା'ର ଗୁଣ ଦୁଧରେ ଯାଇ ପିଲାର ଅପକାର କରେ । ପିଲାର ଦେହ କେବେ ଭଲ ରହେ ନାହିଁ ଓ ସବୁଦିନେ ରୋଗାଉଥାଏ ।

ପିଲା ଟିକିଏ ବଡ଼ ହେଲେ ଅନେକ ମା, ବାପ ବା ଭାଇ, ଖୁଡ଼ୁତା, ମାଉସୀ, ପିଉସୀ ଆଦରରେ କରି ସମୟ ଅସମୟରେ ଗଜାଟିଏ, ମିଠାଇଟିଏ ଦିଅନ୍ତି । ପିଲା ମଧ୍ୟ କ୍ରମେ ଅଝଟ ଧରି ବସେ ଓ ତାକୁ ବୋଧ କରିବାକୁ ଯାଇ ତା'ର ଲଡ଼ୁ ମିଠାଇ ଖାଇବାଟା କ୍ରମେ ବଢ଼ିଯାଏ । ଏପରି କରିବା ଦ୍ୱାରା ପିଲାର ସ୍ୱଭାବ ଓ ସ୍ୱାସ୍ଥ୍ୟ ଉଭୟ ନଷ୍ଟ କରାହୁଏ ମାତ୍ର । ଆଉ ଗୋଟିଏ କଥା, ପିଲାକୁ ଶରଧା କରି ସମସ୍ତେ ସାଙ୍ଗରେ ଖୁଆନ୍ତି । ଏ ଅଭ୍ୟାସଟା ମଧ୍ୟ ପିଲାର ଏପରି ବଢ଼ିଯାଏ ଯେ, ସେ ଘରର ଯେତେ ପ୍ରାଣୀ ସବୁରି ସାଙ୍ଗରେ ଥରେ ଲେଖାଏଁ ଖାଇ ନ ବସିଲେ ଚଳେ ନାହିଁ । ଏହି ଅତି ଶରଧା ଫଳରେ ପିଲାର ଦେହ ଏକାବେଳେକେ ଭାଙ୍ଗିଯାଏ ଓ ଏହି ଅଯଥା ଶରଧାହିଁ ପିଲାର କାଳସ୍ୱରୂପ ହୋଇଥାଏ ।

ଆମ ଦେଶରେ ପୁଆଣି ଘରେ "ଢୋରି ଢୋରି ପେଡ଼ି" ବା "ଅଳେଇ ପେଡ଼ି" ବୋଲି ଗୋଟିଏ ଗ୍ରେଟ ପେଡ଼ିର ଚଳନ ପ୍ରାୟ ଦେଖାଯାଏ । ତାହା ଭିତରେ ଅନ୍ଦାଜ ଶହେ ପ୍ରକାର ମୂଳମୂଳିକା ଆଦି ଥାଏ । ପ୍ରତିଦିନ ସକାଳୁ ଉଠି ଧାଈ ବା ମାତା ଗୋଟିଏ ଚନ୍ଦନ ପେଡ଼ିରେ ଚରକାଏ କ୍ଷୀର ରଖି ପେଡ଼ି ମଧ୍ୟସ୍ଥ ସବୁ ପଦାର୍ଥରୁ ଗାରେ ଲେଖାଏଁ ଚହିଁରେ ଘଷି ଦିଅନ୍ତି । ଶେଷେ ସେତକ ପିଲାକୁ ଚଟାଇ ଦିଅନ୍ତି । ବାଲେଶ୍ୱରରେ "ଅଳେଇ ବଡ଼ି" ବୋଲି ଗ୍ରେଟ ଗୋଳା ବଣିଆ ଦୋକାନରେ ବିକି ହୁଏ । ଯେଉଁ ମା'ମାନେ ଏତେ ଝଞ୍ଜଟ ସମ୍ଭାଳି ନ ପାରନ୍ତି ସେମାନେ ଏହି ବଡ଼ି କିଣି ଆଣି ନିତି ଦୁଧ ସାଙ୍ଗରେ ପିଲାକୁ ଖୁଆନ୍ତି, ପିଲା ସୁସ୍ଥ ଥାଉ ବା ଅସୁସ୍ଥ ଥାଉ । ଏଥିରେ ବାଘ ନଖ, କୁମ୍ଭୀର ଦାନ୍ତ, ବିଲେଇ ହାଡ଼ଠାରୁ ଆରମ୍ଭ କରି ପୃଥିବୀର ବଣିଆଦୋକାନରେ ଥିବା ଯାବତୀୟ ପଦାର୍ଥ ଥାଏ । ସ୍ତ୍ରୀମାନଙ୍କର ବିଶ୍ୱାସ, ସଂସାରଯାକର ଔଷଧ ଯେତେବେଳେ ଦିଆଗଲା, ଆଉ ରୋଗ ଛୁଇଁ ପାରିବ ନାହିଁ । ଏହା ଛଡ଼ା ଆହୁରି ଗୋଟିଏ ମାରାତ୍ମକ ପ୍ରଥା ବାଲେଶ୍ୱର ଅଞ୍ଚଳରେ ପ୍ରଚଳିତ ଅଛି । ତାହା ହେଉଛି ଶେଯ ପିଲାଙ୍କୁ ଅଫିମ ଖୁଆଇବା । ଅଫିମ ନିଶାରେ ପିଲା ବେଶୀ କାନ୍ଦେ ନାହିଁ ଓ କୁଚ ହେଲାପରି ରହିଥାଏ । ଏ ସବୁ କରିବା ଦ୍ୱାରା ପିଲାର ଜୀବନଟି ମାଟି କରି ଦିଆହୁଏ ଓ ତା'ର ମନୁଷ୍ୟତ୍ୱ ନଷ୍ଟ ହୋଇଯାଏ । ମାତାର ଖାଇବା ପିଇବା ଓ ପିଲାର ହେପାଦସ୍ତ ଠିକ୍ ରଖିଲେ ଔଷଧ ବା ଅଫିମର କୌଣସି ଦରକାର ନାହିଁ । ପିଲାର ଦେହ ଅସୁଖ ହେଲେ ମଧ୍ୟ ସାଧ୍ୟାନୁସାରେ ହଠାତ୍ ଔଷଧ ଖୁଆଇବା ଅନୁଚିତ । ଅତି କଅଁଳ ଶରୀର ତାର—ଏ ସବୁ କଡ଼ା, ତେଜ ବରଦାସ୍ତ କରି ପାରିବ ନାହିଁ ।

ପିଲା କାନ୍ଦିଲେ ବା ଅଝଟ ଧରିଲେ ସାଧାରଣତଃ ଆମେ ବାଘ, ଭୂତ, ମାଙ୍କଡ଼, କଳୁଆ, କାନକଟା, ପିଆଦା, ପାଇକ ପ୍ରଭୃତିର ଭୟ ଦେଖାଇ ତାକୁ ତୁନି କରିଦେଉଁ ବା ଠାକୁର, ଦେଉଳ, ହାତୀ ପ୍ରଭୃତିର ନାମ ଧରି ବହଲାଇ ଦେଇଥାଉଁ । ଏହା କରିବାଦ୍ୱାରା ଦୁଇ ପ୍ରକାର ଅନିଷ୍ଟ ଘଟେ । ପ୍ରଥମେ, ପିଲା ବୁଝିପାରେ ଯେ ଏ ସବୁ ମିଛରେ କୁହାହେଉଛି ଓ ସେ ନିଜେ ମିଛ କହିବାକୁ ଶିଖେ । ଦ୍ୱିତୀୟତଃ, ପିଲାଦିନରୁ ତା ମନରେ ରାଜ୍ୟଯାକର ଡର ଜମାଟ ବାନ୍ଧି ତା'ର କଅଁଳ ଛାତି ବା କଲିଜାକୁ ଦୁର୍ବଳ କରି ପକାଏ ଓ ସ୍ନାୟୁମଣ୍ଡଳରେ ଆଘାତ ଲାଗେ । ଏତଦ୍ଦ୍ୱାରା ତା'ର ଶରୀରର ସ୍ୱାଭାବିକ ବୃଦ୍ଧି ଓ ପରିପୁଷ୍ଟିରେ ବ୍ୟାଘାତ ଘଟେ । ପିଲାଦିନର ସେ ଭୟ ବଡ଼କାଳକୁ ମଧ୍ୟ ଛାଡ଼େ ନାହିଁ ଓ ତା'ର ମନ ତଥା ଦେହ କ୍ଷୁଦ୍ର ଓ କ୍ଷୀଣ ହୋଇପଡ଼େ ।

ଆଉ ଗୋଟିଏ କଥା କହି ଏ ବିଷୟର ଶେଷ କରାଯାଉ । ପିଲାର ଶରୀର ଓ ମନର ଗଠନ ପିତାମାତାଙ୍କ ଉପରେ ବହୁତ ନିର୍ଭର କରେ । ମନେ ରଖିବା ଉଚିତ ଯେ ପିଲାଏ ବଡ଼ ଭାବପ୍ରବଣ ଓ ଅନୁକରଣପଟୁ । ଏହା ଜାଣି ତାଙ୍କ ମନକୁ ଜୋର କରି ଭାଙ୍ଗି ଦେବ ନାହିଁ ବା ଅତି ମୁହଁ ଦେଇ ମନ ବଢ଼ାଇ ଦେବ ନାହିଁ ।

ତାଙ୍କୁ ସାକୁଲଇ ବହଲଇ, ବୁଝାଇ ସୁଝାଇ, ଭଲ ଆଡ଼କୁ ବାଟ ଦେଖାଇ ଦେଉଥିବ ଓ ଆଗୁର ବ୍ୟବହାର, ଆଦବ କାୟଦା, ଦୈନିକ ଜୀବନର ପ୍ରତି କ୍ରିୟାକଳାପରେ ତାଙ୍କ ଆଗରେ ଉଚ୍ଚ ଓ ସୁମହତ୍ ଆଦର୍ଶ ରଖିଥିବ । ଅତି 'ଲାଳନ' ବା ଅତି 'ତାଡ଼ନ' ପିଲାଙ୍କ ପକ୍ଷେ ଅନିଷ୍ଟକର । ଜବରଦସ୍ତି କଲେ ପିଲାଙ୍କର ମନ ଗ୍ଲେଷ୍ଟ ହୋଇଯାଏ ବା ବିଦ୍ରୋହୀ ହୋଇଉଠେ । ଏଥିରେ ଓଲଟା ଫଳ ଫଳେ । ସବୁବେଳେ ପିଲାଙ୍କୁ ବାହାବା, ସାବାସ, ଆଚ୍ଛା, ବେଶ୍ ପ୍ରଭୃତି କହିବ ନାହିଁ କମ୍ବା ଓଲ୍ଲୁ, ଗୁଆଁର, ପାଜି, ବଦମାସ ବୋଲି ଛାଛିଲିି କରିବ ନାହିଁ । ପିଲାର ମନକୁ ଅତି ବଢ଼ାଇ ଦେବା ବା ଦବାଇ ଦେବା କେହି ଭଲ ନୁହେଁ । ବାପାଙ୍କଠାରୁ ମା'ଙ୍କ ପ୍ରଭାବ ପିଲା ଉପରେ ଅଧିକ । ବଦ୍‌ସଂସର୍ଗରୁ ଯଥାସାଧ୍ୟ ପିଲାଙ୍କୁ ରକ୍ଷା କରିବ । ମନେ ରଖିବ, ନିଜେ ଯେତେ ଭଲ ରହିବ, ତୁମର ପିଲା ସେତିକି ଭଲ ହେବେ ।

## ମନ ସହିତ ଶରୀରର ସମ୍ବନ୍ଧ

ମନ ସହିତ ଶରୀରର ଅତି ଘନିଷ୍ଠ ସମ୍ବନ୍ଧ । ମନର ପ୍ରଭାବ ଶରୀରରେ ସ୍ପଷ୍ଟ ପ୍ରକଟିତ ହୁଏ । ଏହା ସମସ୍ତେ ଆପଣା କଥାରୁ ପରୀକ୍ଷା କରିଥିବେ । କେବଳ ମନର ଜୋରରୁ ଅନେକ ଦୁରାରୋଗ୍ୟ ବ୍ୟାଧି ମଧ୍ୟ ଆରୋଗ୍ୟ ହୋଇଯାଏ ।

ମନୁଷ୍ୟ ମାତ୍ରକେ ଦୁଃଖ, ଶୋକ, ଭୟ, ଉଦ୍‌ବେଗ ଭୋଗିବାକୁ ପଡ଼େ । ମାତ୍ର ତହିଁରେ ଅଭିଭୂତ ହେବ ନାହିଁ । ଆପଦ ବିପଦରେ ଅଧୈର୍ଯ୍ୟ, ଆତ୍ମହରା, ମ୍ରିୟମାଣ ହୋଇଯିବ ନାହିଁ । ସ୍ଥିତ ଦମ୍ଭ କରି ରହିବ । ପରୱା କରିବ ନାହିଁ । ମନେ କରିବ, ସୁଖ ଦୁଃଖ ଚକ୍ରପରି ଘୁରୁଛି—'ଏ ଭି ଗୁଜର ଯାଏଗା' । ମନ୍ଦ କ୍ଷଣ କ୍ଷଣକେ ଆନ ହୋଇ ଯାଉଛି । —'ହାୟ କି ହେଲା'ର ଦୁଶ୍ଚିନ୍ତା, ଦୁର୍ଭାବନାକୁ ପୁରୁଷସିଂହ ପରି ଗୋଇଠା ମାରି ଦୂର କରିଦେବ । ସେ ସମୟରେ ନିଜେ ଯେତିକି କାତର ହେବ, ଦୁଶ୍ଚିନ୍ତା ସେତିକି ମାଡ଼ି ବସିବ । ଫଳରେ ପ୍ରାଣର ଶାନ୍ତି, ଜୀବନର ସମ୍ଭୋଗ, ଶରୀରର ସ୍ୱାସ୍ଥ୍ୟ ସବୁ ନଷ୍ଟ ହୋଇଯିବ । "ଚିତା ଦହତି ନିର୍ଜୀବଂ, ଚିନ୍ତା ଦହତି ସଜୀବଂ" । ଦୁଶ୍ଚିନ୍ତାର ବଶବର୍ତ୍ତୀ ହେଲେ ଦେହମନ ପୋଡ଼ି ଭସ୍ମସାତ୍ ହୋଇଯିବ । କଥାରେ ଅଛି, "ଲୁଣ ଖାଏ ହାଣ୍ଡି, ଚିନ୍ତା ଖାଏ ଗଣ୍ଡି" । ଏ ଚିନ୍ତା ହେଉଛି ଦୁଶ୍ଚିନ୍ତା ବା ଅସତ୍ ଚିନ୍ତା । 'ସଂସାର ଭିତରେ ଘର କରି' ରହି 'ପଥର ପଡ଼ିଲେ' ସହିବାଟା ମହତ୍ତ୍ୱ । ତାହା ଯେ ପାରେ ସେହି ଏକା ଜୀବନର ସୁଖସ୍ୱାଦ ପାଏ । ସର୍ବଦା ଚିତ୍ତକୁ ପ୍ରସନ୍ନ, ପ୍ରଶାନ୍ତ, ଧୀର ରଖି ପାରିଲେ ଦୁନିଆଁକୁ ଜିତିଯିବ ।

କେହି କେହି କହି ପାରନ୍ତି, ଏ ସବୁ କହି ଦେବାଟା ସହଜ, ମାତ୍ର କାମରେ କରିବା ଅସମ୍ଭବ । ହଁ, ମାନୁଛି ଯେ କଥାରେ କହି-ଦେବାଠାରୁ କାର୍ଯ୍ୟରେ କରିବା ବହୁତ ଅସହଜ । କାମରେ କରିବା ଅସାଧାରଣ ହୋଇପାରେ, ମାତ୍ର ଅସମ୍ଭବ ନୁହେଁ । କରିବା ଲୋକ କ'ଣ ସଂସାରରେ ନାହାନ୍ତି ? ଅଳ୍ପ ହେଉ, ବହୁତ ହେଉ ଅନେକ ଅଛନ୍ତି । ତେବେ 'ଅସହଜ', 'ଅସାଧାରଣ' ବୋଲି ତ ଏତେ କୁହା ଯାଉଛି । କଥାଟିକୁ ମନେ ରଖି ତହିଁରେ ଧ୍ୟାନ ଦେଇଥିଲେ ଦେଖିବ କି ଭଲ ଉପକାର ହେଉଛି । ଅଭ୍ୟାସ କରୁ କରୁ, ସାଧନ କରୁ କରୁ ଦେଖିବ ଏହା କେତେ ସହଜ ଓ ସ୍ୱାଭାବିକ ହୋଇ ପଡ଼ିବ । ସମ୍ପୂର୍ଣ୍ଣ ହୋଇ ନ ପାରିଲେ କ୍ଷତି ନାହିଁ—ଯେତିକି ହେଲା ସେତିକି ମଙ୍ଗଳ ।

ଆଉ ଗୋଟିଏ କଥା । ଶତ୍ରୁମାନଙ୍କର ତାଡ଼ନାରୁ ସର୍ବଦା ଆପଣାକୁ ବଞ୍ଚାଇବାକୁ ହେବ—ସବୁବେଳେ ସତର୍କ ରହିବାକୁ ହେବ । ବାହାରର ଶତ୍ରୁଠାରୁ ଆତ୍ମରକ୍ଷା କରିବା ତ ସହଜ । ଘରର ଢେଙ୍କି କର୍ମୀର ହେଲେ ବଳ କାହାର ? କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଏହି ଛଅଟାଯାକ ଆମ ଭିତରେ ଥାଇ ପ୍ରତି ମୁହୂର୍ତ୍ତରେ ନାକରେ ଦଉଡ଼ି ଲଗାଇ ଓଟାରୁଛନ୍ତି । ଆମେ ବି ରମିପଡ଼ି ସ୍ୱେଚ୍ଛାରେ, ଆନନ୍ଦରେ ତାଙ୍କ ପଛେ ପଛେ ଧାଉଁଛୁ । ଏ ସୃତ୍ତିକ ମନୁଷ୍ୟର କାଳ । ଜୀବନର ସୁଖ ଶାନ୍ତି ତ ନଷ୍ଟ କରୁଛନ୍ତି—ଶରୀରକୁ ତିଳ ତିଳ କରି ଚୂନଭୂତ କରି ପକାଉଛନ୍ତି । ବିଶେଷତଃ କ୍ରୋଧ ଆଉ ଈର୍ଷା ଏହି ଦୁଇଟା ଶରୀରର ପ୍ରଧାନ ଶତ୍ରୁ । ଥରେ କେବେ ଅତି ରାଗ ହୋଇଥିବାବେଳେ ନିଜକୁ ସମ୍ଭାଳି ନେଇ, ଏକୁଟିଆ ବସି ନିର୍ଜନରେ ଆତ୍ମଚିନ୍ତା କରିବେ ତ ଜାଣି ପାରିବେ, ଶରୀରର ଭିତରଠାରୁ ବାହାରଯାକେ କେତେ ଦଳମର୍ଦ୍ଦନ କରିଯାଇଛି । ସେହି କାଳରେ ଦର୍ପଣରେ ନିଜ ମୁଖ ଦେଖିଲେ ବି ଅନେକଟା ଜଣାଯିବ । ଈର୍ଷା ସେହିପରି ହୃଦୟ ଓ ସ୍ନାୟୁମଣ୍ଡଳ ଉପରେ ଗୋପନରେ ବଡ଼ ଭୟାନକ ଆଘାତ କରେ । ଶତ୍ରୁମାନଙ୍କର ବଶୀଭୂତ ଯେତେ ହେବ, ଶରୀର ସେତେ କ୍ଷୟ ହେଉଥିବ, ଦୁର୍ବଳ ହେଉଥିବ । ଏତିକି ଜାଣି ତହିଁରୁ ସାବଧାନ ରହିବା ଉଚିତ । କାମକ୍ରୋଧାଦିର ଉତ୍ତେଜନା ଦ୍ୱାରା ଶରୀର ଉପରେ ଯେଉଁ ପ୍ରତିକ୍ରିୟା ହୁଏ, ତାହା ଅତି ଭୟାନକ । ଷଡ଼ରିପୁର ଦାଉରୁ କେହି ରକ୍ଷା ପାଇ ନାହାନ୍ତି । ତେବେ ଏତିକି ଯେ ନିଜେ ହୁସିଆର ରହିଲେ ଓ ସେମାନଙ୍କମଧ୍ୟରୁ କେହି ବଳେ ହେଲା ମାତ୍ରକେ

ତାହା ଜାଣିପାରି ଆତ୍ମଶକ୍ତି ଦ୍ୱାରା ଜବଦ କରି ହେଉ ଅଥବା ଭଗବତ୍‌କୃପା ଭିକ୍ଷାଦ୍ୱାରା ଆତ୍ମରକ୍ଷା କରି ହେଉ, ତାଙ୍କଠାରୁ ଅଲଗା ରହିପାରିଲେ, ସେମାନେ ତେତେ ପ୍ରତାପ କରିପାରିବେ ନାହିଁ । ଏହା ମଧ୍ୟ ଅଭ୍ୟାସ ଓ ସାଧନସାପେକ୍ଷ । ବିଷୟ ଭୋଗ କରିବାକୁ କେହି ମନା କରୁନାହିଁ । ଇନ୍ଦ୍ରିୟମାନଙ୍କୁ ପେଷି ପକାଇବାକୁ କେହି କହୁନାହିଁ । ରୂପରସଗନ୍ଧାଦି ସବୁ ଉପଭୋଗ କର, ନିଜେ ପ୍ରଭୁରୂପେ—ଇନ୍ଦ୍ରିୟର ଦାସ ରୂପେ ନୁହେ — ଇନ୍ଦ୍ରିୟଠାରେ ଆତ୍ମବିକ୍ରୟ କରି ନୁହେ ।

ଆମ ଅନ୍ତର ମଧ୍ୟରେ ଅସୁର ଓ ଦେବତାଙ୍କ ମଧ୍ୟରେ ସଂଗ୍ରାମ ନିୟତ ଲାଗିରହିଛି । ଦେବତା ଯେତିକି ଉର୍ଦ୍ଧ୍ୱକୁ ଉଠାଉଛନ୍ତି, ସଇତାନ ସେତିକି ତଳକୁ ଖସାଉଛି । ସଇତାନର ମନଭୁଲାଣି କଥାରେ ଆପାତମଧୁର ମୋହରେ ଆମେ ପଡ଼ିଯାଉଛୁଁ ଓ ତଦ୍ୱାରା ଆତ୍ମଶରୀରର ସର୍ବନାଶ କରୁଛୁଁ । ଆମ ଭିତରର ଦେବତାଙ୍କୁ ଜାଗ୍ରତ କରି ଏହି ଅସୁରବଳକୁ ହଟାଇ ପାରିଲେ ଜୀବନର ସାର୍ଥକତା ଲାଭ ହୋଇ ପାରିବ ।

ଆମର ପ୍ରତ୍ୟେକ ଚିନ୍ତାର, ପ୍ରତ୍ୟେକ କାର୍ଯ୍ୟର ପ୍ରତିଘାତ ଆମରି ଉପରେ ଲାଗୁଛି । ଆମେ ଯଦି ପର ଲାଗି ଗାତ ଖୋଳିବୁଁ, ସେ ଗାତରେ ଆଗେ ପଡ଼ିବୁଁ ଆପେ । ଯେ ବେଶୀ ପର ଚର୍ଚ୍ଚା କରେ, ପରନିନ୍ଦା କରେ, ପରର ଅନିଷ୍ଟ ବାଞ୍ଛେ, ପରର ଭୁଲରେ ପରିହାସ କରେ, ବିପଦରେ ବିଦ୍ରୂପ କରେ, ଦେଖିବ, ତାକୁ ଅତି ଅଳ୍ପ ଲୋକ ଭଲ ପାଆନ୍ତି; ଅଥଚ ଯେ ପରର ପ୍ରଶଂସା କରେ, ସାହାଯ୍ୟ କରେ, ତା'କୁ କେତେ ଲୋକ କରିବେ—ତାର 'ନିନ୍ଦା କେତେ ଆଉ ରହିବ ।

କେତେ ଲୋକ କରିବେ—ତାର 'ନିନ୍ଦା କେତେ ଆଉ ରହିବ । ପର ପ୍ରତି ପ୍ରେମ କରି ଦେଖ, ପରର ମଙ୍ଗଳ ଚିନ୍ତା କର, ସମସ୍ତେ ତୁମକୁ ଭଲ ପାଇବେ । ଏପରି କି ହିଂସ୍ର ଜନ୍ତୁ ସୁଦ୍ଧା ତୁମର ଅନିଷ୍ଟ କରିବେ ନାହିଁ ।

ଜୀବନ ଗୋଟାକଯାକ ସାଧନାମୟ । ସଂସାରଟା ଗୋଟାଏ ଅସରନ୍ତି ପରୀକ୍ଷାର କେନ୍ଦ୍ର । ସେ ସାଧନାରେ ଯେ ଯେତିକି ସିଦ୍ଧି ଲାଭ କରିବ, ସେ ବିଦ୍ୟାପୀଠରେ ଯେ ଯେତିକି ପରୀକ୍ଷାରେ ପାସ୍ କରୁଥିବ, ସେତିକି ଜୀବନକୁ ଅମୃତମୟ କରି ବିମଳ ଆନନ୍ଦ ଓ ଶାନ୍ତି ଉପଭୋଗ କରିବାରେ ସକ୍ଷମ ହେବ ।

ରାତିରେ ଶୟନ କଲାବେଳେ ନିତି ଆତ୍ମଚିନ୍ତା କରିବ । ଦିନଟାଯାକର ଆପଣାର କାର୍ଯ୍ୟକଳାପ, କଥାବାର୍ତ୍ତା, ଚିନ୍ତା-ଭାବନା ଥରେ ମନରେ ପକାଇବ । ସେଥିରୁ ପରଖି ନେବ ତୁମେ ଆଜି ଭିତରେ କେତେ ଆପଣାର ଓ ଜଗତର କଲ୍ୟାଣ ଚିନ୍ତା କରିଛ ଓ କେତେ ଅକଲ୍ୟାଣ କରିଛ, ସଇତାନର କେତେ ସାହାଯ୍ୟ କରିଛ ଆଉ ଦେବତାର କେତେ ସାହାଯ୍ୟ କରିଛ, ଆତ୍ମୋନ୍ନତିର ବାରୋମିଟର (Barometre) ରେ କେତେ ଉପରକୁ ଉଠିଛ ବା କେତେ ତଳକୁ ଖସିଛ । ଅଭ୍ୟାସ କର ଏହିପରି ଆତ୍ମଚିନ୍ତା ଓ ଆତ୍ମପରୀକ୍ଷା କରୁଥିଲେ ଦୁଷ୍ଟ ବୃତ୍ତିସବୁ କ୍ରମେ ଦବିଯିବେ ଓ ସଚ୍ଚିଦାନନ୍ଦର ପରିସ୍ଫୁରଣ ହେବ ।



# କଲ୍ଲୋଳ

୧୯୨୫

## ବୈତରଣୀ

ମାତଃ ବୈତରଣୀ, ତୋ ନାମ ସ୍ମରଣେ
କେତେ କେତେ କଥା ପଡ଼ୁଅଛି ମନେ ।
କେତେ ନୂଆ ନୂଆ ଭାବର ଲହରୀ
ଖେଳଯାଉଅଛି ହୃଦୟେ ମୋହର ।
ଶୈଶବର ସେହି ମଧୁର ବାରତା,
ଶିଶୁ-ଜୀବନର ସେ ପୁରୁଣା କଥା,
ଅତୀତ ପାସୋରା ସ୍ମୃତି ସୁମଧୁର
ଅନ୍ତର କରଇ ବେଦନା-ବିଧୁର ।
ଉଡ଼ି ବୁଲୁଥିଲି ଉଚ୍ଛ୍ୱାସେ ହୃଦୟ,
ଭେଟୁଥିଲି କେତେ ରାଜ୍ୟ ସ୍ୱପ୍ନମୟ ।
ସେ ମୋହନ ରାଜ୍ୟେ କରି ବିଚରଣ
ଦେଖୁଥିଲି କେତେ ସୁଖର ସ୍ୱପନ ।
ଶୁଣୁଥିଲି ସେହି ସ୍ଥାନେ ନିତି ନିତି
ଦୂରାଗତ ମୃଦୁ ମଧୁ ବଂଶୀ ଗୀତି ।
ସ୍ୱର୍ଗ ସରଳତା, ସ୍ୱର୍ଗର ମାଧୁରୀ
ଥିଲା ଗୃହଦ୍ୱାରେ ସେହି ରାଜ୍ୟେ ପୂରି !
ସଂସାର ଭାବନା, କୂଟ ଚିନ୍ତାଚୟ
ନ ଥିଲା ସେ କାଳେ ପରଶି ହୃଦୟ ।
ମୋ କ୍ଷୁଦ୍ର ଅନ୍ତର ପବିତ୍ର, ନିର୍ମଳ
ପ୍ରେମ, ସାରଲ୍ୟର ନିତ୍ୟ କ୍ରୀଡ଼ାସ୍ଥଳ,
ଭାସି ସ୍ୱପ୍ନମୟ କବିତା-ସାଗରେ
ଉଠୁଥିଲା ନାଚି କ୍ଷଣେ ଆନନ୍ଦରେ ।
ଶୋଭାରେ ତୋହର ଅଙ୍ଗ ଦେଇ ଢାଳି
କରିଥିଲୁ ତୋତେ ସ୍ମୃତିର ସଙ୍ଗାଳି ।
ସେ କାଳେ ତୋହର ସୁରମ୍ୟ ପୁଳିନ
ଆଶ୍ରା କରି କଟାଇଲି ବହୁଦିନ ।
ଶୋଇ ପ୍ରାଣାରାମ ବାଲି-ଆସ୍ତରଣେ
ଭୁଲି ଯାଉଥିଲି ଆପଣାକୁ କ୍ଷଣେ ।
ଜନନୀର ସ୍ନେହଠୁଁ ବଳି ସୁଖକର
ସ୍ନିଗ୍ଧ ପୟଃ ଦାନ କରିଲୁ ତୋହର ।
ତୋ କୋଳ ଶେଯରେ କରି ଶୟନ
ଫୁଟିଲା ମୋହର ପ୍ରଥମେ ନୟନ ।
ବିସ୍ମୃତି ତିମିରୁ ଟାଣି ଆଣି ମୋତେ
ଚିହ୍ନା କରାଇଲୁ ଜଗତ ସଙ୍ଗତେ ।
ଶୈଶବର କ୍ଷୀଣ ସ୍ମୃତି ମନୋହର
ଜାଗି ଆଜି କରେ ଆକୁଳ ଅନ୍ତର ।
ପ୍ରଭାତୁଁ ଉଠିଣ ମାଛରଙ୍କା ଭାଇ
ତୋ ବକ୍ଷରେ ଉଡ଼ି ବୁଲୁଥାଏ ଧାଇଁ;
ଜଳକୁ ଅନାଇ ରହି ବାରବାର
ଝାମ୍ପି ନେଇଯାଏ ପଲକେ ଶିକାର ।
ପାଣିକୁଆ ତା'ର ଆହାର ସନ୍ଧାନେ
ବୁଡ଼ି ମାରି ଉଠେ ଏକୁଁ ଅନ୍ୟ ସ୍ଥାନେ ।
ଆମ୍ବଶାଖେ ବସି କପୋତଦମ୍ପତି
ବାଡ଼ୁଥାନ୍ତି ଦୂରୁଁ କରୁଣ ଭାରତୀ ।
ସେକାଳେ ତୋହର ତୀର-ତରୁଗଣ
କରନ୍ତି ତୋ ଦେହେ ଶିଶିର ବର୍ଷଣ ।
କୁମ୍ଭାଟୁଆ ବସି ଦୂର ବଣବନେ
କମ୍ପାଏ ଦିଗନ୍ତ ପ୍ରଭାତ-ନିଃସ୍ୱନେ ।
ଧାନ କିଆରୀରେ ଚଷାପୁଅ ଭାଇ
ବୁଲୁଥାଏ ନିଜ ମନେ ଗୀତ ଗାଇ ।
ପ୍ରଭାତୁଁ ଉଠିଣ ପାଳ-ଜଗୁଆଳି
ସମୀରରେ ନିଜ ସ୍ୱର ଦିଏ ଢାଳି ।
ସେକାଳେ ମୁଁ ତୋର "ସପ୍ତଫେଣୀ" ଫୁଲ
ତୋର କୂଳେ ଖୋଜି ବୁଲେ "କଠକୁଲ";
ସୈକତେ "ବାଲୁକା ଠାକୁର" ନିର୍ମାଣି
ପୋତିଦିଏଁ ନାନା ପତ୍ରପୁଷ୍ପ ଆଣି ।

ନବୀନ ରବିର ସ୍ନିଗ୍ଧ କିରଣଟି
ତୋର ସ୍ୱଚ୍ଛ ନୀରେ ଉଠେ ଭାସି ଭାସି;
ମୃଦୁ ହିଲ୍ଲୋଳର ଅଙ୍ଗେ ପ୍ରତିଫଳି
କାଞ୍ଚନ କିରଣ ଉଠେ ଝଳି ଝଳି ।
ଖରାବେଳେ ଯେବେ ତାତିଯାଏ ବାଲି,
ଚିରା ମାଚ ମାଶ ତହିଁ ଆସି ଗୃଳି ।
ତୋ ତୀର ତୋଟାରେ ସାଙ୍ଗସାଥୀ ମେଳେ
ଲୁଇତଲେ ମାତେଁ ବାଲିଘର ଖେଳେ ।
ଖରା ପଡ଼ିଗଲେ ହସି ମାତ ତାଳି
ଚଣ୍ଡି ବୃଶପଟେ ଖେଳୁଁ ଲୁଚକାଳି ।
ସମର୍ପି ତୋ'ଠାରେ ସିନା ଧ୍ୟାନ, ମନ
କରିଥିଲି ତୋତେ ଜୀବର ଜୀବନ;
ଥିଲି ଆଶା, କରି ବାସ ତୋର ତଟେ
ପୂଜୁଥିବି ତୋତେ ମୋ ମାନସ-ପଟେ;
ଜୀବନେ ମରଣେ ହେଲେ କେଉଁ ଘଡ଼ି
ତୋର ମୋ'ର ହେବ ନାହିଁ ଛଡ଼ାଛଡ଼ି ।
(ମାତ୍ର) ସ୍ୱପନରେ ଥରେ ନପାରିଲି କଳି
ନିୟତିର ଗତି ଦାରୁଣ ଏଭଳି ।
ମାନବ-କଳ୍ପନା କାଳ-କଷାଘାତେ
ଚୂନା ହୋଇଯାଏ ଏଡ଼େ ଅକସ୍ମାତେ ।
ଦିନକର ଯେବେ ବୁଡ଼ଇ ଆକାଶେ
ଡାହାଣିଆ ଖରା ବାଲି ମାଡ଼ି ଆସେ,
ଶୁଭ୍ର କାଶପୁଷ୍ପ ରବିର କିରଣେ
ଝଲମଲ ହସେ ରକ୍ତିମ ବରଣେ,
ନାଲି ଟହ ଟହ ପ୍ରତୀଚୀ ଗଗନ,
ତା'ର ଶୋଭ କରୁ ଜନଲ ପ୍ରକଟନ;
ତୋର ସ୍ୱଚ୍ଛ ନୀରେ ଶତ ଇନ୍ଦ୍ରଧନୁ
ପ୍ରକାଶନ୍ତି ବର୍ଣ୍ଣୋଜ୍ଜ୍ୱଳମୟ ତନୁ ।
ବଗ ଧାଡ଼ି ଉଡ଼ିଯାଆନ୍ତି ଆକାଶେ,
ତାଙ୍କ ପ୍ରତିବିମ୍ବ ତୋ ଅଙ୍ଗେ ପ୍ରକାଶେ ।
କେବେ କେବେ ମିଳି ସାଙ୍ଗସାଥୀ ଯେତେ
ସାଉଣ୍ଟୁଁ ଶାମୁକା, ବାଲିଗଡ଼ି କେତେ ।
ଅଞ୍ଜିରେ ପୂରାଇ ଶାମୁକା ଯେତିକ
ମନେ ମନେ ହୋଇଯାଉଁ ବଡ଼ଲୋକ ।
ଶୈଶବର ସେହି ସ୍ୱଚ୍ଛ ଶୋଭ-ରେଖା
ଆଜି ସ୍ମୃତିପଟେ ରହିଅଛି ଲେଖା ।
ଲୋଡ଼ିବୁଲେ ଆଜି ତାପିତ ଅନ୍ତର
ଅତୀତର ସେହି ସ୍ମୃତି ମନୋହର ।
ସଂସାର-ଅନଳେ ହୋଇ ଦଗ୍ଧପ୍ରାୟେ
ସକାତରେ ସ୍ନିଗ୍ଧ ଅତୀତକୁ ଚାହେଁ ।

*      *      *      *

ଶୋଭାଧାର କେନ୍ଦୁଝର ଗିରିମାଳେ
ତୋ ଜନମ ଘୋର ବନ ଅନ୍ତରାଳେ ।
ଗୋନାସିକା କରି ଗମ୍ଭୀର ଗର୍ଜନ
ତୋର ତପ୍ତ ଧାରା କରେ ବିସର୍ଜନ ।
ନୀଚ ଅଙ୍କୁ ଡେଇଁପଡ଼ି ମହା ରୋଷେ
ବହିଯାଉଥାଉ ଗମ୍ଭୀର ନିର୍ଘୋଷେ ।
ଶୈଳସଙ୍ଗେ ଯୁଝି କାହିଁ ବାଟେ ଘାଟେ
ଫେରାଉ ତୋ ଗତି ଭୀଷଣ କୁହାଟେ ।
ଭେଦି ନାନା ବନ କାନନ କନ୍ଦର
ବହୁ ଏଣେ ତେଣେ ପ୍ରକୃତି-ମୁଖର ।
ଗୋଟି ଗୋଟି ହୋଇ ଭୂଇଁଆଁ କୁଟୀର
ମଣ୍ଡିଥାନ୍ତି ଆହା, ତୋର ରମ୍ୟ ତୀର ।
ଶାଳତରୁ ତୋର ଜଳ-ଦରପଣେ
ଦେଖନ୍ତି ନିଜର ମୁଖ ସୁଖମନେ ।
କେଳି-ସମାକୁଳ କଶାନ୍ଦ୍ର ଦମ୍ପତି
ତୋର ଉପକୂଳେ ମିଳନ୍ତି ଝଟତି ।
ଅରଣ୍ୟ ମହିଷ ଆସି ଦଳେ ଦଳେ
ପଡ଼ୁଥାନ୍ତି ତୋର ଶୀତଳ ସଲିଳେ ।
ସାଆନ୍ତାଳ ନାରୀ ଗୃହକାର୍ଯ୍ୟ ସାରି
ମିଳଇ ଆସି ତୋ ସୁଶୀତଳ ବାରି ।
ଅଙ୍ଗ ଶୌଚ ଆଦି ସାରି ସଯତନେ
ହସି ହସି ଘରେ ଫେରେ ସୁଖମନେ ।
କଳସୀ କାଖରେ ଧୀରେ ଧୀରେ ଯାଏ,
ରହି ରହି ଥରେ ପଛକୁ ଅନାଏ ।
କଳସୀ ଓହ୍ଲାଇ ରଖି ତୋର ତୀରେ
ବନ ଫୁଲଟିଏ ତୋଳିନିଏ ଧୀରେ;
ଲଜ୍ଜାଭରେ ଥରେ ଏଣେ ତେଣେ ଚାହିଁ
ଫୁଲଟିକୁ ଦିଏ ଖୋସାରେ ଗୁଞ୍ଜାଇ;
ଏହିରୂପେ ନାନା ରୁଚି ଭଙ୍ଗିଭରେ
ହଳି ହଳି ଧୀରେ ଫେରେ ନିଜ ଘରେ ।

ଭୂମିକ ବାଳକେ ଦଳ ବାନ୍ଧକରି
ବୁଲୁଥାନ୍ତି କାହିଁ ମାଛ ଧରି ଧରି ।
ଝାଙ୍କିଆ ଧରଣ କାହିଁ ସାଆନ୍ତାଳ
କାଟେ ବର୍ଷମରେ ତୋର ଝରି ଶାଳ ।
ହୋଇଆସେ ଯେବେ ବେଳ ରତରତ
ନିଜ ଘରେ ଫେରେ ହୋଇଣ ଶ୍ରାନ୍ତ ।
ଦଳେ ଦଳେ ବସି କୁଟୀର ପ୍ରାଙ୍ଗଣେ
ଧୂମପାନ କରୁଥାନ୍ତି ସୁଖମନେ ।
କହି ନିଜ ନିଜ ସୁଖ ଦୁଃଖ କଥା
ପାସୋରନ୍ତି ନିଜ ନିଜ ଶ୍ରମବ୍ୟଥା ।
ଏକାଳେ ଘରଣୀ ସୁମଧୁରେ ହସି
ଥୋଇଦିଏ ଆଗେ 'ହାଣ୍ଡିଆ' କଳସୀ ।
ତହୁଁ ସେ ସକଳେ ମହା ପ୍ରେମଭରେ
ହାଣ୍ଡିଆ ପାନରେ ଲଗିଯାନ୍ତି ଖରେ ।
କିଛୁକାଳ ପରେ କରି ସୁରାପାନ
ଭୁଲିଯାନ୍ତି ଯେତେ ମାନ ଅଭିମାନ ।
ଦୁନିଆର ଦୁଃଖ, ସଂସାରର ବ୍ୟଥା,
ଚଡ଼ି ଦିଏ ମନୁଁ ସୁରା ମାଦକତା ।
ସ୍ୱପ୍ନମୟ ଦେଶେ କରି ବିଚରଣ
ଦେଖନ୍ତି ମଧୁର ଜାଗ୍ରତ ସ୍ୱପନ ।
'ମାଦଳ' ପକାଇ କିଏସେ ବଜାଏ,
କିଏ ନାନା ରଙ୍ଗଭଙ୍ଗେ ନାଚୁଥାଏ ।
କିଏ ହାସ୍ୟରୋଳେ କମ୍ପାଏ ଗଗନ,
କିଏ ଅବା କରେ ଧରାରେ ଶୟନ ।
ଧରାଧରି ହୋଇ ନାରୀ ନାରୀ ଆସି
ନାଚିଏ ଗାଆନ୍ତି ଗୀତ 'ବାରମାସୀ' ।
ସେ ଧ୍ୱନି ଗଗନେ ଉଠଇ ଉଛୁଳି,
ଦୂର ପରବତ ଦିଏ ହୁଳହୁଳି ।
ମାତିଯାଉ ତୁହି ସେ ସଙ୍ଗୀତ ରୋଳେ;
ନାଚି ଉଠୁ ମୃଦୁ ତରଙ୍ଗ ହିଲ୍ଲୋଳେ ।
ସଭ୍ୟ ସମାଜର ଜୀବନସଂଗ୍ରାମ
ଛୁଇଁନାହିଁ କେବେ ତାଙ୍କ ଦିବ୍ୟଧାମ ।
ଛଳନା, ଗୃଢୁଗ୍ଧା, କୂଟ-ମାନ୍ତତସ୍ଥ
ପରଶିନାହିଁ ସେ ସରଳ ହୃଦୟ ।
ପ୍ରକୃତିର ଗୃହୁ ଆଦିମ ସ୍ୱଭାବ,
ସରଳତା-ଭରା ନଗ୍ନ ଶିଶୁଭାବ,

ପ୍ରକଟଇ ନିତ ସବୁରି ଆନନେ,
ସ୍ୱଭାବର ଶିଶୁ ଭୂଇଁଆଁ ଭବନେ ।
ଉତ୍କଳ ସୁଷମା ଗୌରବର ଖଣି
ଅଟୁ ତୁହି ସିନା ମାତଃ ବୈତରଣୀ ।
ଯେଣୁ ତୋର ତୀରେ ଦେବ ଉମାପତି
ଶ୍ରୀକୁଶଳେଶ୍ୱର କରିଲେ ବସତି ।
କେନ୍ଦୁଝର ବନ ଶୋଭା ଦେଖି ନେହେ,
ପ୍ରବେଶୁ ତୁ ତହୁଁ ଶ୍ରୀ ବିରଜାକ୍ଷେତ୍ରେ ।
ଯହିଁ ଆଦିମାତା ବିରଜା-ମହିମା
ଘୋଷାଇ ରଖିଛି ଯାଜପୁର ସୀମା,
ତହିଁ ତୋର ବକ୍ଷେ ବରାହ ମନ୍ଦିର
ଟେକିଅଛି ନିଜ ଅଭ୍ରଭେଦୀ ଶିର ।
ସ୍ରୋତସ୍ୱିନୀ-କୂଳେ ତୋ'ର ବଡପଣ,
ଧୋଉ ଯେଣୁ ତୁହି ବରାହ-ଚରଣ ।
ତଣ୍ଡୁଳ କଦଳୀ ଅଟେ ଯା'ର ଭକ୍ଷ୍ୟ
ଗୟାସୁର ନାଭି ଧରିଛୁ ତୋ ବକ୍ଷ ।
ଶତ ଶତ ଯହିଁ ତୀର୍ଥଯାତ୍ରୀଗଣ
କରୁଥାନ୍ତି ପିତୃ ପ୍ରେତଙ୍କ ତର୍ପଣ,
ଯଯାତିକେଶରୀ ରଖିଗଲେ ଯଶ
ସମାପନ କରି ଅଶ୍ୱମେଧ ଦଶ,
ଉତ୍କଳ ଶିଳ୍ପର ଅପୂର୍ବ ଭାରତ
ଅଶ୍ୱମେଧ ଘାଟେ ଟେକିଅଛି ଛାତି ।
ତହିଁ ସପ୍ତମାତା ବିକଟ ଦର୍ଶନେ
ଉପୁଜଇ ମହା ଭୀତି ଜନମନେ ।
ଲୋଳ-ଜିହ୍ୱା କାଳୀ ନୃମୁଣ୍ଡ-ମାଳିକା
ଦେଖନ୍ତି ଜଗତେ ପାପ ବିଧ୍ୱଂସିକା ।
ସରିତ-ଈଶ୍ୱରି, ମାତଃ ବୈତରଣୀ,
ଉତ୍କଳ-ସରିତ-କୁଳ-ମଥାମଣି ।
ତୋହ ଉପକୂଳ ଆଖଣ୍ଡଳେଶ୍ୱର
ଆଣ୍ଡିଲେ ଟାକିଣ କୈଳାସ ଶିଖର ।
ତହିଁ ଗୋ ଜନନୀ ତୋ କରୁଣା ଝର-
ପଡୁଅଛି ପାପୀ ତାପୀ ଶିରେପରି ।
ସଖୀ ଶାଳନ୍ଦୀକୁ କରି ଆଲିଙ୍ଗନ
ତିନି ଥରେ କରୁ ମଧୁର ଚୁମ୍ବନ ।
ଏକୂଳୁ ସେକୂଳ ଯାଏ ନାହିଁ ଦେଖା,
ଲଭି ଯାଇଅଛୁ ଯହିଁ ସୀମାରେଖା ।

"ମଣି" କୃପାବଳେ ତୋ ପୁଣ୍ୟ ନୀରରେ
ଧୋଇ ହୋଇଯାଏ କଳୁଷ ତାଙ୍କର ।
ସହସ୍ର ସହସ୍ର ନର ମାଳେ ମାଳେ
ଭାସୁଥାନ୍ତି ସର୍ବେ ସେ "ଘଡ଼ିଆ ମାଳେ" ।
"ରାଧାଗଡ଼" ଦୁର୍ଗ ପ୍ରାଚୀନ କୀର୍ତ୍ତିକା,
ହେଉ ପ୍ରକୃତିର ବିଶାଳ ପରିଖା;
କୂଳେ ସନ୍ତର୍ପଣେ ମୃଗ ପଲ ପଲ
ପିଉଥାନ୍ତି ତୋର ବାରି ସୁବିମଳ ।
"କାଳିଗଞ୍ଜିଉଆଁ" ହେନ୍ତାଳ ନିବାଡ଼େ
ମହାବଳ ତାର ଶ୍ୟାମ ରଙ୍ଗ ଗୁଡ଼େ ।
ମାଳ ମାଳ ହୋଇ ସିତ ହଂସପନ୍ତି
କେତେ ମନୋହର ଶୋଭା ପ୍ରକାଶନ୍ତି ।
ସରଳ ପକ୍ଷୀର ମଧୁର ନିସ୍ୱନ
ମୁଖରିତ କରେ ତୋର ତୀରବନ ।
ଜଳଚର ପକ୍ଷିଗଣ ମୀନ ଆଶେ
ଝୁରିଆଡ଼େ ଉଡ଼ି ବୁଲନ୍ତି ଆକାଶେ ।
ଶୁଖୁଆ ପଟଳା ଦଳେ ଦଳେ ଆସି
ଏଣେ ତେଣେ ବୁଲୁଥାନ୍ତି ଭାସି ଭାସି ।
ଏକ କାଳେ ଏତେ ଶୋଭାର ଦର୍ଶନ
ଥରେ ଲଭିଅଛି ଯାହାର ନୟନ,
ଯେତେଦିନ ଯାଏ ଏହି ଜୀବ ଥିବ,
ସେହି ଦୃଶ୍ୟ କାହିଁ ମନ ପାସୋରିବ ?
ଶେଷେ ଲୋ ଜନନି, ମିଳୁ ତୀର୍ଥ ଯାଇ
"ଧାମରା ମୁହାଣେ" ଦେବୀ "ଧାମରାଇ" ।
ବ୍ରାହ୍ମଣୀ ସଙ୍ଗତେ ହୋଇ କୋଳାକୋଳ
ମହୋଲ୍ଲାସେ ଫୁଲ ତୁଙ୍ଗ ତେଉ ତୋଳ
ଧାମରାଇ ଦେବୀ ଅଭୟ ଚରଣେ
କମଣ୍ଡଳୁ ମସ୍ତକ ରଖି କ୍ଷଣେ କ୍ଷଣେ ।
ହୋଇଣ ବିଦାୟ ତାଙ୍କ ଶ୍ରୀପଦୁ
ନିଜ ପତି ଅଙ୍ଗ ଆଲିଙ୍ଗନ କରୁ ।
ତରଙ୍ଗରୂପରେ ବଢ଼ାଇଣ କର
ସଙ୍କୁଳି ନିଅଇ ତୋତେ ରତ୍ନାକର ।
ସାଗର ସଲିଳେ ହୋଇଣ ଅସ୍ଥିର
ମିଶିଯାଏ ତୋର ଶୁଭ୍ର ସ୍ୱଚ୍ଛ ନୀର,
ମିଶିଯାଏ ଯଥା ଜଳଦ ଅଙ୍ଗରେ
ବିଦ୍ୟୁଲ୍ଲତା ନାନା ରୂପ ଭଙ୍ଗୀରେ ।

କଳା ସଙ୍ଗେ ଧଳା କି ଶୋଭା ପ୍ରକାଶେ,
ତେଣେ ଧଳା ମେଘ ନୀଳ ବ୍ୟୋମେ ଭାସେ ।
ପ୍ରକୃତିର ଏହି ଦୃଶ୍ୟ ମହୀୟାନ,
ଏକା ତୀର୍ଥେ ସିନା ଲଭିଅଛି ସ୍ଥାନ ।
ମାତଃ ବୈତରଣି, ତୋ ପୁଣ୍ୟ ମହିମା
ବଢ଼ାଇଛି ଆଜ ଉତ୍କଳ ଗରିମା ।
ଉତ୍କଳେ ଜନମ, ଉତ୍କଳରେ ଗତି,
ଉତ୍କଳର ତୁହି ନିଜ-ସ୍ୱସମ୍ପତ୍ତି ।
ପୁରାଣପ୍ରଖ୍ୟାତ ତୋର ତପ୍ତ ବାରି
ପୁଣ୍ୟାତ୍ମା କେବଳ ହୋଇଥାନ୍ତି ପାରି ।
ଧର୍ମପଥେ ଯେହୁ ସଦା ଥାନ୍ତି ରହି,
ସ୍ନେହମୟୀ ରୂପ ଦେଖନ୍ତି ତୋ ତହିଁ ।
ଅଧର୍ମୀ ପାପିଷ୍ଠ ଯେବା ସ୍ୱାର୍ଥଭ୍ରଷ୍ଟ,
ଦେଖାଉ ତୁ ତାଙ୍କୁ ଭୀଷଣ ମୂରତି ।
ପାପ ବିଭୀଷିକା ଦେଖି ଅବିରତ
ପାପିଏ ହୁଅନ୍ତି ପାପରୁ ବିରତ ।
ନିରାଶ ପରାଣେ ଶକତି ସଞ୍ଚାରି
ଢାଳ ଗୋ ଜନନି, ସ୍ନିଗ୍ଧ ଶାନ୍ତ ବାରି ।
"ଆଶାବୈତରଣୀ" ନାମେ କରି ଲୟ
ନବୋତ୍ସାହେ ପୂରୁ ଉତ୍କଳ ହୃଦୟ ।
ବୈତରଣୀ ! ତୋର ପୁଣ୍ୟ ନାମ ସ୍ମରି
ନବ ଆଶା ପ୍ରାଣେ ଉଠିବ ସଞ୍ଚରି ।
ସେ ଉଦ୍ୟମେ ମାତି ଉତ୍କଳ-ସନ୍ତାନ
ଆଣିବେ ଫେରାଇ ଅତୀତ ସମ୍ମାନ ।
ଭାତିବ ଉତ୍କଳେ ସେ ପୂର୍ବ ଗୌରବ,
ପ୍ରକଟିବ ରବି ଛବି ନବ ନବ ।
ଏବେ ଲୋ ଜନନି, ହେଉଛି ବିଦାୟ
କରିବାକୁ ପୁଣି ଚିର 'ହାୟ ହାୟ' ।
କଳ୍ପନାରେ ଥାପି ତୋ ପୁଣ୍ୟ ମୂରତି
କରିଥିଲି ସ୍ୱପ୍ନରାଇଜେ ବସତି ।
ଭୁଲି ସଂସାରର ଯେତେ ଦୁଃଖ ଶୋକ
ଆଶ୍ରା କରିଥିଲି କେଉଁ କଳ୍ପଲୋକ ।
ଏତିକି ମାଗୁଣି ମାତ ତୋ ଚରଣେ,
ତୋ କରୁଣା ଊଣା ନ କରିବୁ କ୍ଷଣେ ।
ତୋର ସେହି ପୂତ ଶାନ୍ତିମୟ କୋଳେ,
ଶେଷ ଆଶା, ଦିନେ ଶୋଇବି ନିରୋଳେ ।

# ଆଷାଢ଼—ପ୍ରଥମ ଦିବସେ

ଆଜ ଆଷାଢ଼ ପ୍ରଥମ ଦିବସେ,
ତରଳ ଜଳଦ-ମାଳ ନଭସ୍ଥଳେ
ଆସୁଛନ୍ତି ଭାସି ହେଲେ ଦଳେ ଦଳେ
ଗୁରୁ ଗମ୍ଭୀର ମୃଦଙ୍ଗର ତାଳେ
ଖେଳାଇ ଚପଳା ଉରସେ;
ଆଷାଢ଼ ପ୍ରଥମ ଦିବସେ ।

ଆଜ ଆଷାଢ଼ ପ୍ରଥମ ଦିବସେ,
ଶ୍ୟାମଳା ପ୍ରକୃତି ସ୍ନିଗ୍ଧ ଅଙ୍ଗରାଗେ
ହସୁଛି ମାଜିଛି ଲପନ ସ୍ୱରାଗେ,
ଫୁଲ ଉଠେ ଚମ୍ପା, କେତକୀ ପରାଗେ
ଅଙ୍ଗର ଲାବଣ୍ୟ ବିବଶେ;
ଆଷାଢ଼ ପ୍ରଥମ ଦିବସେ ।

ଆଜି ଆଷାଢ଼ ପ୍ରଥମ ଦିବସେ,
ହରିତ ପରଦା ଦମକା ପବନେ
ଉଡ଼ିଯାଇ ପ୍ରକୃତିର କ୍ଷଣେ କ୍ଷଣେ
କୁଣ୍ଢିଦିଏ ହୀରା, ମାଣିକ୍ୟ ରତନେ
ମନ୍ଦାର, ମାଳତୀ ହରଷେ;
ଆଷାଢ଼ ପ୍ରଥମ ଦିବସେ ।

ଆଜ ଆଷାଢ଼ ପ୍ରଥମ ଦିବସେ,
ଶାନ୍ତ, ମୃଦୁ, ସ୍ନିଗ୍ଧ ସୁରୁରସଭରା
ପୂର୍ଣ୍ଣ ଯଉବନ-ମତ୍ତ ବସୁନ୍ଧରା,
ଉଚ୍ଛୁଳ ପଡ଼େ କି ଆନନ୍ଦ-ପସରା
କେଉଁ ମାୟା-ସୃଷ୍ଟି ପରଶେ !
ଆଷାଢ଼ ପ୍ରଥମ ଦିବସେ ।

ଆଜ ଆଷାଢ଼ ପ୍ରଥମ ଦିବସେ,
ନିଦାଘ-ତାପିତ ପଶୁପକ୍ଷିକୁଳ
ବୃକ୍ଷଲତା ଆଦି ହରଷେ ଆକୁଳ,
ନାଚେ ସ୍ରୋତସ୍ୱିନୀ ଉଚ୍ଛୁଳାଇ କୂଳ,
ନ ରଖେ ନିଜକୁ ସ୍ୱବଶେ;
ଆଷାଢ଼ ପ୍ରଥମ ଦିବସେ ।

ଆଜ ଆଷାଢ଼ ପ୍ରଥମ ଦିବସେ,
ବାଳ, ବୃଦ୍ଧ, ଯୁବା, ନରନାରୀଚୟ
କ୍ରୀଡ଼ାକଉତୁକେ ସକଳେ ଅଥୟ,
ଚିର-ଅବସନ୍ନ ମୋ କ୍ଷୁବ୍ଧ ହୃଦୟ
ନାଚଇ ପରମ ରଭସେ;
ଆଷାଢ଼ ପ୍ରଥମ ଦିବସେ ।



# ଶ୍ମଶାନରେ ରାଧାନାଥ

( କବିବର ରାଧାନାଥଙ୍କର ସମାଧିସ୍ତୂପସଂଲଗ୍ନ ପ୍ରସ୍ତର ଫଳକର ଆବରଣ ଉନ୍ମୋଚନାର୍ଥ ହୋଇଥିବା ସଭାରେ ପଠିତ )

ହେ ଦେବ, ତୁମ୍ଭର ଏହି "କାଠଯୋଡ଼ି ତୀର",
ପାର୍ଶ୍ୱେ ବଢ଼ାନଦୀ,
ଗାଇଲ ମଧୁରେ ଯା'ର ମହିମା ରୁଚିର
ଯା'ର ତଟେ ବସି,
ଉତ୍କଳ-ଭାରତୀ-ଗାଥା ନିରତେ ଗାୟନେ
କାଟି ଦିନଚୟ
ଶେଷେ ଏହି ପୁଣ୍ୟକ୍ଷେତ୍ର କାଠଯୋଡ଼ି ତୀରେ
ଲଭିଲ ଆଶ୍ରୟ ।
* ସତୀ କଣ୍ଠ-ବିନିଃସୃତ ପୂତ ସ୍ତବ ପାଠ
ଶୁଭେ ଦିବାନିଶି,
ଦିବ୍ୟ ପ୍ରେମ, ପୁଣ୍ୟ ଜ୍ୟୋତି ସ୍ଫୁରଇ ଯେ ଠାବେ
ନିତି ଦିଶି ଦିଶି ।
ରାଜା, ପ୍ରଜା, ଧନୀ, ଦୀନ, କରନ୍ତି ଶୟନ
ଏକ ଶଯ୍ୟାପରେ,
ସାମ୍ୟବାଦ ମହାମନ୍ତ୍ର ହୁଏ ଉଦ୍‌ଘୋଷିତ
ଅକ୍ଷରେ ଅକ୍ଷରେ,
"ଦରବାର" ମହା ସତ୍ୟ-ପ୍ରମାଣ ପ୍ରକାଶେ
ସ୍ଥିର କରି ମନ
ଏ ଅନନ୍ତ ଶୟନକୁ ଚେବେ କହେ ଦେବ,
କଲ ଆଲିଙ୍ଗନ ?
ଦେଖାଇଲ ଜଗତକୁ, କାଳର ପ୍ରବାହେ
ଯିବାକୁ ଉଜାଣି
"ରାଜନ ନୁହନ୍ତି" ଯେତେ ବଳବନ୍ତ ହେଲେ
ଭବେ କେହି ପ୍ରାଣୀ ।
"ଗୁଣୀର ଅକାଳୁତକର ସମ୍ମାନ ସକାଶେ
ବ୍ୟସ୍ତ ସଦା ନର",
କିନ୍ତୁ ସେ ସମ୍ମାନ ଆସି ହେଲା ଦେବ, ତବ
ଚରଣ-କିଙ୍କର ।
ନଥିଲ ହେ ତୁମ୍ଭେ ସିନା ବାଣୀ-ବରପୁତ୍ର,
ସମ୍ମାନ-ଆଶାୟୀ,
ଯୋଗ୍ୟ ପାତ୍ର ଅନୁସରି ସମ୍ମାନ ତୁମ୍ଭଙ୍କୁ
ନେଉଛନ୍ତି ଯାଇଁ;
ହୀନ-ପ୍ରଭ ଉତ୍କଳକୁ ହେ ବୀର-ଅଗ୍ରଣୀ,
ଦେଖି ପାପମୟ
ବାଗ୍‌ଦେବୀ ବିରାଗ ଦେଖି ସ୍ୱଭାବେ ତୁମ୍ଭର
କାନ୍ଦିଲା ହୃଦୟ ।
ଶୁଭ କ୍ଷଣେ କବିଶ୍ରେଷ୍ଠ, କଲ ଉତ୍କଳର
ବାଣୀ-ଆରାଧନା,
ବୀଣାପାଣି କରୁଣାକୁ ଉଦ୍‌ବୋଧିଲ କରି
ଅଦମ୍ୟ ସାଧନା ।
ଘୁଞ୍ଚିଗଲା ଉତ୍କଳର ଦୈନ୍ୟ, ଅବସାଦ,
ଘୁଞ୍ଚିଲା ବିଷାଦ,
ଉତ୍କଳ-ଗୌରବ-ଗୀତି ଶୁଣାଇଲ କରି
ଦୁନ୍ଦୁଭି ନିନାଦ ।
'ଉତ୍କଳ ଭୁବନ ଅଟେ ଶୋଭାର ଭଣ୍ଡାର"
ନିଜେ ଅନୁଭବି
ଭାବୁକ-ମାନସୋଲ୍ଲାସୀ ରଚିଗଲ କେତେ
ସ୍ୱଭାବର ଛବି ।
"ସଂସାର ନିରୟେ ଅଙ୍ଗ ଢାଳି ଦେଇ" ନିତ୍ୟ
କରି ଘୋର ରଣ
ଚିନ୍ମୟ କବିତା-ରାଜ୍ୟେ କବି-କୁଳ-ଗୁରେ !
କଲ ବିଚରଣ
ଭାଷା ଓ ସାହିତ୍ୟ ଥିଲା ସ୍ୱତନ୍ତ୍ର ଉତ୍କଳେ—
ଥିଲା ଛଡ଼ା ଛଡ଼ା,
ଦେଖାଇଲ ଜଗତକୁ ସେହି ଦ୍ୱିଧାରାକୁ
ଏକ ସୂତ୍ରେ ଗଢ଼ା ।
ଗଢ଼ିଲ ନବୀନ ଭାଷା, ଅପୂର୍ବ ବନ୍ଧାଣି,
ନବ ଉତ୍କଳର,
ଆଶ୍ଚର୍ଯ୍ୟ କୌଶଳେ ସ୍ନିଗ୍ଧ, ସରଳ, ପ୍ରାଞ୍ଜଳ,
ସ୍ୱଭାବ-ସୁନ୍ଦର ।

* କାଠଯୋଡ଼ି ତୀରସ୍ଥ ରାଧାନାଥଙ୍କ ସମାଧି ସନ୍ନିକଟରେ କୌଣସି ସହମୃତା ସତୀଙ୍କର ସମାଧି ମନ୍ଦିର ଅଛି ।

# କଲ୍ଲୋଳ

ଆଚ୍ଛାଦିଲ ଜନନୀକୁ ପିନ୍ଧାଇ ରୁଚିର
ନବ ଆଭରଣ,
କି ନୈପୁଣ୍ୟେ ଦେଲ ତାକୁ ନବ ସ୍ଫୂର୍ତ୍ତି, ଆଭା,
ନବୀନ ଭୂଷଣ ।
ଅଦମ୍ୟ ଉଦ୍ୟମେ ତବ ବାଣୀ କୃପାବଳେ
'ଉତ୍କଳ-ମାତାର'
'ନାମେ ଖ୍ୟାତ-ଗ୍ରନ୍ଥେ' ଦେବ ତବ କୃତ-ପଣେ
'ପଡ଼ିଗଲା ଗାର' ।
ତବ ବାଣୀ-ଦତ୍ତ-ବୀଣା ଗମ୍ଭୀର ଝଙ୍କାର,
ସେ ମନ୍ଦ୍ର ନିସ୍ୱନ
ଉଚ୍ଛୁଳାଇ ବାୟୁରାଶି ଭେଦୁଥିଲା ଯାଇ
ଅମର ଭୁବନ ।
ସ୍ଫୁରୁଥିଲା ସେ ପ୍ରଗାଢ଼ ଗମ୍ଭୀର ପ୍ରକମ୍ପ
ଦିଗଦିଗନ୍ତରେ,
ପ୍ରତିଧ୍ୱନି ବାଜୁଥିଲା ଭୁବନେ ଭୁବନେ,
ଅନ୍ତରେ ଅନ୍ତରେ ।
କିନ୍ତୁ ଏବେ କ୍ଷୀଣ-କଣ୍ଠ-ବିନିଃସୃତ ଗୀତ
କ୍ଷୀଣୁଁ କ୍ଷୀଣତର,
ଭେଦିବ କି କେବେ ଦେବ, ନିଜ ପ୍ରତିବେଶୀ-
ଶ୍ରବଣ ଭିତର !
ଅଛି ଆଶା, ଅଛି ଯେଣୁ କବି ରାଧାନାଥ-
ପଦାଙ୍କ ଆଶ୍ରୟି,
ଧରିଛି ଲେଖନୀ ସ୍ମରି ତବ ପୁଣ୍ୟ ନାମ,
ଭାଷା ଭାବମୟୀ ।
କେ କହେ ହେ, ଉତ୍କଳରୁ ତୁମ୍ଭେ ତିରୋହିତ ?
ନ ହୁଏ ପରତେ,
ବିରାଜିତ ତୁମ୍ଭେ ଆଜି ଚିନ୍ମୟ ସ୍ୱରୂପେ
ଜୀବନ୍ତ ଜଗତେ ।
ଗାଉଅଛି ଉତ୍କଳର ପ୍ରତି ଘରେ ଘରେ
ସୁମଧୁର ଗୀତି,
ଶୁଣୁଅଛି ଉତ୍କଳୀୟ କର୍ଣ୍ଣ ତେଜି ସେହି
ସ୍ୱର ନିତି ନିତି ।

ଶୁଣିଥାଏ ମୁଁ କେତେ କାଳ ନିତ୍ୟ ତବ ସଦ୍
ବାକ୍ୟ ଆଳାପନେ,
ଅନୁଭବେ ମୋ ପାଶରେ ଉପସ୍ଥିତ ତୁମ୍ଭେ
ଶୟନେ ସ୍ୱପନେ,
କେତେ ଶିକ୍ଷା ଦେଇଯାଅ କେତେ କଥା କହି
ଗୋପନେ ଗୋପନେ ।
'କାଳବଳେ ଭଙ୍ଗୁର' ଏ ସମାଧି-ମନ୍ଦିର
ହୋଇଯିବ ଲୀନ,
ଉଡ଼ୁଥିବ ଏକା ତବ ଗୌରବ-କେତନ
ରହି ଚିରଦିନ
ଅନନ୍ତ ଶୟନେ ଦେବ ଶୋଇ ଦେଖୁଅଛ
ପ୍ରକୃତିର ଖେଳ,
'ଚିଲିକା ପଠାର ଶୁଭ୍ର କାଶ-ପୁଷ୍ପ ଶୋଭା'-
ତରଙ୍ଗର ମେଳ,
ଅନନ୍ତ ଉଦାର ବ୍ୟୋମ-ଚନ୍ଦ୍ରାତପ ତଳେ
ବାଲି ଆସ୍ତରଣେ
ନୀଳ ଗିରିମାଳା ଶୃଙ୍ଗେ ମେଘର କୌତୁକ
ଉଦାସ ନୟନେ ।
କାଠଯୋଡ଼ି-ବୀଚିମାଳା-ସଙ୍ଗମେ ଶୀତଳ
ମଳୟ ପବନ
ନରାଜ ଶିଖରୁ ବନ୍ଦି ସେବିବ ସନ୍ତତେ
ତୁମର ଚରଣ ।
ଗାଇବ ପବିତ୍ର ନାମ କାଠଯୋଡ଼ି ତବ
ତରଙ୍ଗର ରୋଳେ,
ଝୁରିବ ତୁମ୍ଭର ଦେବ, ଅକ୍ଷୟ କୀରତି
ପବନ-ହିଲ୍ଲୋଳେ ।
ଥାଅ ଦେବ, ତବ ନାମ ହୋଇଛି ଖୋଦିତ
ଅମର ଅକ୍ଷରେ,
ଯେତେଦିନ ଥିବ ଭାଷା, ବିରାଜିବ ତାହା
ଉତ୍କଳ ବକ୍ଷରେ ।



# ଶ୍ରୀକ୍ଷେତ୍ର

ଜଗତଜୀବନ ହେମମଣି ରବି
ପ୍ରକାଶି ଜଗତେ ଅଭିନବ ଛବି,
ମଣ୍ଡିଣ ଜଗତ ସୁବର୍ଣ୍ଣ କିରଣେ
ସଜାଇ ଧରଣୀ ନବ ଆଭରଣେ,
ମୃତ ଜଗତକୁ ନିଦ୍ରାରୁ ଉଠାଇ
ନବୀନ ଉଦ୍ୟମ ଉଲ୍ଲାସେ ମତାଇ,
ଜଗତର ଯେତେ ନାଶି ଦୁଃଖରାଶି
ପ୍ରଭାତେ ନମନ୍ତି ତୋହର ପଦେ ଆସି ।

ଯୋଗନିଦ୍ରା ଯହିଁ ଅନାଦି ପୁରୁଷ,
ନାଶ ଯାଏ ଯାହା ପରଶେ କଳୁଷ,
ଯା'ର ଗର୍ଭୁଁ ଜାତ ହେଲେ ସୁଧାକର,
ସୁଧା-ପ୍ରସୂ ସେହି ରତ୍ନର ଆକର,
ନାହିଁ ଯାର ଅନ୍ତ, ନାହିଁ ଯାର ଆଦି,
ହ୍ରାସ-ବୃଦ୍ଧି-ହୀନ ସେହି ବାରିନିଧି
ବଢ଼ାଇ ନିଜର ତରଙ୍ଗ-ଅଧର
ଦାସ ପ୍ରାୟେ ଚୁମ୍ବେ ତୋହର ପୟର ।

ଉତ୍ତାଳ ତରଙ୍ଗ ଉଠାଇ ସାଗର
ବଜ୍ରସମ କରି ଶବ୍ଦ ଭୟଙ୍କର
ଉଦ୍‌ଗାରିଣ ଫେନ ଗ୍ରାସିବାକୁ ଧରା
ମହା ଆଡ଼ମ୍ବରେ ଆସୁଥାଇ ପରା ।
ଶୁଭ୍ର ବକମାଳା ମୁକ୍ତା-ହାରସମ
ଦିଶୁଥାନ୍ତି ଆହା କେଡ଼େ ମନୋରମ ।
ଇନ୍ଦ୍ରଧନୁ-ବର୍ଣ୍ଣ ନିଜ ଅଙ୍ଗେ ବହି,
ଶୋଭୁଥାନ୍ତି ନାନା ଶଙ୍ଖପୁଞ୍ଜ ରହିଁ ।
ଆର୍ଯ୍ୟ-ଗୌରବର ବିଜୟ-କେତନ,
ଉତ୍କଳ-ଶିଳ୍ପର ନିଜ ନିକେତନ
ସମୟ-ସାଗର-ତରଙ୍ଗ-ଆଘାତେ
କାଳର କରାଳ ମହା ଝଞ୍ଜାବାତେ
ହୋଇ ବିପର୍ଯ୍ୟସ୍ତ ଅବଶିଷ୍ଟ ଯାହା
ଅଛି, ତୋର ତହିଁ ଅଛି ସିନା ତାହା ।
କେନ୍ଦ୍ରସ୍ଥଳୀ ସାମୁଦ୍ରିକ ବାଣିଜ୍ୟର,
ରାଜନୈତିକର ସୁଦୃଢ଼ ଶିଖର,

ଅର୍ଦ୍ଧଚନ୍ଦ୍ରାଙ୍କିତ ବିଜୟ-ନିଶାଣ,
ଉଡ଼ାଇ ଭାରତେ ଧରିଣ କୃପାଣ
ହିମାଚଳଠାରୁ କୁମାରିକାଯାଏ
କମ୍ପାଇଲେ ଯେବେ ପବନ ରାଜାଏ,
ସେ କାଳେ ଉତ୍କଳ-ଗୌରବ-ଭାସ୍କର
ଗଜପତି-ଗୌଡ଼େଶ୍ୱର-ବଂଶଧର
ତୋର ତହିଁ ସ୍ୱାଧୀନତା-ବୈଜୟନ୍ତୀ
ଉଡ଼ାଇ ରଖିଲେ ଅପୂର୍ବ ମୂରତି ।

ସହସ୍ର ସହସ୍ର ତୀର୍ଥ-ଯାତ୍ରୀଗଣ
'ଜୟ ଜଗନ୍ନାଥ' କରି ଉଚ୍ଚାରଣ,
ଶତ ବାଧା ବିଘ୍ନ କରି ଅବହେଳା,
ଜଗନ୍ନାଥ ସ୍ୱାମୀ ନାମେ ବାନ୍ଧି ଭେଳା,
ଭୁଲି କ୍ଷୁଧା-ଜ୍ୱାଳା ଭୁଲିଣ ପିପାସା,
ଭୁଲି ପଥଶ୍ରମ, ଧରି ଏକ ଆଶା,
'ଜୟ ଜଗନ୍ନାଥ' ଗୀତ ଗାଇ ଗାଇ
ତୋହରି ଆଡ଼କୁ ଆଉଛନ୍ତି ଧାଇଁ ।
ସାମ୍ୟବାଦତାର ଉଡ଼ୁଛି ନିଶାଣ,
ପଣ୍ଡିତ ପାଷଣ୍ଡ ସକଳେ ସମାନ ।
ବ୍ରାହ୍ମଣ ଚଣ୍ଡାଳ ବସି ଏକାସନେ
କରନ୍ତି ଆହାର ଆନନ୍ଦିତ ମନେ ।
ଜାତିଧର୍ମନିର୍ବିଶେଷେ ସର୍ବଜନ
ଏକାଧାରେ ବସି କରନ୍ତି ଭୋଜନ ।
ପତିତପାବନ ବାନା ଫରଫର
ଉଡ଼ି ପତିତଙ୍କୁ ଡାକେ ନିରନ୍ତର ।
ଶ୍ରୀହସ୍ତ ବଢ଼ାଇ ଜଗତଗୋସାଇଁ
ପାପୀଙ୍କୁ ଡାକନ୍ତି ନିସ୍ତାରିବା ପାଇଁ ।
ଧନ୍ୟରେ ଶ୍ରୀକ୍ଷେତ୍ର ତୋର ବଡ଼ପଣ,
ଉତ୍କଳମାତାର ତୁହି ସାର ଧନ ।
ତୋ'ଲାଗି ଉତ୍କଳ ବିଖ୍ୟାତ ଜଗତେ,
ନୋହିଲେ ରହନ୍ତା ଅଜ୍ଞାତ ଗୁପତେ ।
ଜାଗୁ ଏ ଉତ୍କଳ ତୋ ଧର୍ମକୁ ଚାହିଁ,
ଚାଲନ୍ତୁ ସରବେ ଏବେ ସତ ବାଟେ ।
ତୋର ସାର ଶିକ୍ଷା ଶିଖି ଉତ୍କଳରେ,
ତରନ୍ତୁ ଓଡ଼ିଆ ତୋ ଧର୍ମ-ବଳରେ ।



# ଫାଶିଦିଆ ବର

ରେ ତରୁବର, ଭୁଞ୍ଜି ଅନନ୍ତ କାନ୍ତି
ମଝନେ ଛିଡ଼ାହୋଇ କହ କ ଭ୍ରାନ୍ତି ?
ମହାନଦୀ ସୈକତେ ଥାଇ ସତତ
କ ଯୋଗଧ୍ୟାନେ କହ ରହିଛୁ ରତ ।
କେତେ ତୁଫାନ ବାଆ ବରଷା ଝଡ଼,
କେତେ ଯୁଗ ଗଲାଣି ତୋ'ମୁଣ୍ଡେ ଗଡ଼ ।
କେଉଁ ଅପୂର୍ବ ଦେଶେ ଲକ୍ଷ୍ୟ ଲଗାଇ
ରହିଛୁ କାହିଁରେ ତୋ ଭ୍ରୂକ୍ଷେପ ନାହିଁ ।
ଏ ସ୍ରୋତସ୍ୱିନୀ ଧୋଇ ତୋ ପଦତଳ
ସାଗର କୋଳେ ଯଥା ଢାଳଇ ଜଳ,
କେତେ ମାନବ ତଥା ତୋହର ଅଙ୍ଗେ
ଜୀବନସ୍ରୋତ ଢାଳ ଦେଲେ ରେ ରଙ୍ଗେ;
ତୋ ଅଙ୍ଗ ସଙ୍ଗେ ସାଙ୍ଗ କରି ଜୀବନ
ଚିର ବିଶ୍ରାମ ଲଭି ଗଲେ କେତେ ଜନ ।
ଦୁସ୍ତର ଭବେ ହୋଇ ତୁ କର୍ଣ୍ଣଧାର
ଜୀବନତରୀ କଲୁ ତାଙ୍କର ପାର ।
ପାପେ ତାପେ ଯାହାର ପୋଡ଼ୁଛି କାୟା
ତୁ ତାଙ୍କୁ କଲୁ ଦିନା ପ୍ରଦାନ ଛାୟା ।
ନରହନ୍ତା ଦୁର୍ବୃତ୍ତ ଘୋର ନାରକୀ
ପାପବଜାରେ ପ୍ରାଣ ଦେଲେଣ ବିକି
ପାରିଲେ ନାହିଁ କାହିଁ ମୁଖ ଦେଖାଇ,
ଦୂଣାରେ ବିଶ୍ୱପାଳ ଦେଲେ ଗୋଡ଼ାଇ;
ପାଇଲେ ନାହିଁ ସାରା ସଂସାରେ ସ୍ଥାନ,
ତୁ ତାଙ୍କୁ କଲୁ ଦିନା ଆଶ୍ରୟ ଦାନ ।

ସ୍ୱାଧୀନତା ଗୌରବ ରଖିବା ପାଇଁ
ସୁନା ଶିକୁଳୀ ଗଳେ ପିନ୍ଧିଲେ ନାହିଁ,
ଜୀବନ ବଳି ଦେଲେ ତୋହର ଶାଖାରେ
ସ୍ୱଦେଶ ପାଇଁ କେତେ ଓଡ଼ିଆ ସାରେ,
ତୋ ମୂଳେ ହୃଦରକ୍ତ କରି ତର୍ପଣ
ରଖିଲେ ପିତୃ-ଯଶ, ନିଜର ପଣ ।
ସେ ସବୁ ବୀରଗଣ ଗଲେଟି କାହିଁ,
ଶ୍ମଶାନ ଓଡ଼ିଆଙ୍କୁ ଅଜଣା ନାହିଁ ?
ଦେଖୁ ତ 'ଜନ୍ମି ସବୁ ରବି ଆକାଶେ,
ଲଭନ୍ତି କ ନାହାନ୍ତି ସେ ଦେଶ ସକାଶେ ?
କାନ୍ଦୁ କ ନାହିଁ ଆଜ ତାଙ୍କ ପରାଣ,
ମାତାର ଶୁଣି ଶୁଣି ବିଷାଦଗାନ ?
ଅଥବା ଲଭିବାରୁ ତନୁଏ କାୟା
ଭୁଲିଣଗଲେ ସବୁ ସଂସାରମାୟା ?
ଜନନୀ ଅଭିଶାପ ଦୁଃଖେ କାତର,
ମନ୍ଦ୍ର କ ନାହିଁ ମନେ ଥରେ ମାତର ?
ଥରେ ଓଲ୍ହାଇ ଭଲ ଆସନ୍ତେ ତଳେ,
ଭସାନ୍ତେ ବିଶ୍ୱରେ କରମ-ଜଳେ;
ସ୍ମରନ୍ତେ ଓଡ଼ିଆଏ ନିଜ ଗୌରବ,
ଲଭନ୍ତେ ନିଜ ହସ୍ତେ ପୂର୍ବ ବିଭବ ।
ତାଙ୍କ ଶୋଣିତେ ବୃଦ୍ଧି ଲଭିଛୁ ପରା !
କହ ରେ ତରୁବର କହ ରେ ତ୍ୱରା ।
ମେଣ୍ଟି କ ନାହିଁ ରକ୍ତପିପାସା ତୋର,
ତେଣୁ ହୋଇଛୁ ଛିଡ଼ା ବିଷାଦେ ଘୋର ?
ପାପ ପୁଣ୍ୟର ଛବି ତୋହର ଦର୍ଶନେ
ଯୁଗପତ ଅଙ୍କିତ ହୁଅଇ ମନେ ।



# ବସନ୍ତ ଉତ୍ସବ

ବାଜ ରେ ଭାରତୀ-ବୀଣା ଭାରତ-ଭୁବନେ,
ଗୃହଦ୍ୱାରେ ବାଜଉଠୁ ସେ ବୀଣା ଝଙ୍କାର;
ଝଙ୍କୃରିଉଠୁ ସେହି ତାନ ଗଗନେ ଗଗନେ,
କଣ୍ଠେ କଣ୍ଠେ ଅହର୍ନିଶ ଶୁଭୁ ଅନିବାର ।

କମ୍ପାଇ ଆସିଲ ମା ଗୋ ଏ ଦଗ୍ଧ ପ୍ରଦେଶେ ?
ଅଜ୍ଞାନ-ରଜନୀ ଜ୍ଞାନ ଦେଲଣି ଗୋ ଧାର ;
ଆସିଲ କି ମାତଃ ଏବେ ନିଶି ଅବଶେଷେ,
ପ୍ରଭାତ-ମଙ୍ଗଳ-ଗୀତି ଉଚ୍ଚାରି ଉଚ୍ଚାରି ?

ଯେବେ ବା ଆସିଲ ତେବେ ଶୁଣାଅ ଶ୍ରବଣେ
ଅତୀତ ଗୌରବ ଗାଥା ଭାରତରେ ଥରେ;
ଢାଳିଦିଅ ଜ୍ଞାନ-ଉତ୍ସ ସୁଧା-ପ୍ରସ୍ରବଣେ,
ଜାଳିଦିଅ ପ୍ରଦୀପ ଗୋ ଭାରତ-ବକ୍ଷରେ

ବସନ୍ତ-ଉତ୍ସବେ ମାତୁ ଭାରତ-ହୃଦୟ,
କୋକିଳ କୂଜନ ଶୁଭୁ ଦିଗଦିଗନ୍ତରେ;
ଫୁଟୁ ଫୁଲ, ବହୁ ମନ୍ଦ ବସନ୍ତ ମଳୟ,
ଜାଗିଉଠୁ ଜ୍ଞାନଜ୍ୟୋତି ଅନ୍ତରେ ଅନ୍ତରେ ।



# ଶାନ୍ତିଧାମବାସୀ

ଯା'ରେ ଯା' ତୁ ପ୍ରାଣବିହଙ୍ଗ, ଦିଗ ଦିଗନ୍ତ ପାରେ,
ଶାନ୍ତିଧାମ, ଚିନ୍ମୟ ସେହି ପୁଣ୍ୟ ପ୍ରଦେଶେ ବାରେ ।

ଚିରକାଳ ତୁହି ସୁପ୍ତ ରହିଛୁ ଯୁକ୍ତ କରିଣ ପକ୍ଷ,
ଯା'ରେ ଯା' ତୁ ପ୍ରାଣବିହଙ୍ଗ ଅସୀମେ କରି ଲକ୍ଷ୍ୟ ।

ପାପ, ତାପ, ଦୁଃଖ, ଶୋକ, ହିଂସା, ଦ୍ୱେଷ, କାମ,
ମୃତ୍ୟୁ, ରୋଗ, କଷ୍ଟଭୋଗ-ପୂର୍ଣ୍ଣ ଇହଧାମ ।

କେତେକାଳ ଆଉ ରହିଥିବୁ ପଡ଼ି ଆଶ୍ରୟ କରି କାରା ?
ଯା'ରେ ଯା' ତୁ ବର୍ଷୁଛି ଯହିଁ ଅମୃତମୟୀ ଧାରା ।

ବହୁତ ଦିନରୁ ସୁପ୍ତ ରେ ତୁହି ଗୁପ୍ତ ତୋହର ଗାନ,
ସମୀର ସଙ୍ଗେ ରଙ୍ଗେ ରଙ୍ଗେ ମୁକ୍ତ କରିଦେ ତାନ ।

ମଳୟ ସ୍ପର୍ଶେ ହର୍ଷେ ହର୍ଷେ ମୁକୁଳିତ ତରୁରାଜି,
ପ୍ରକୃତିଦେବୀ ହର୍ଷେ ବିଭୋର କୁସୁମ ସାଜେ ସାଜି ।

ପୂତ ବାହିନୀ ମନ୍ଦାକିନୀ ବହୁଛି ଧୀରେ ଧୀରେ,
ଯା'ରେ ଯା' ତୁ ପ୍ରାଣବିହଙ୍ଗ ଯା'ରେ ତାହାରି ତୀରେ ।

ଶୁଷ୍କ ମରୁରେ ଗ୍ରୀଷ୍ମ ମଧ୍ୟେ ପିଉଛୁ ଅନଳ-ରାଶି,
ରଜତ ଚହିଁ ନୀହାରବିନ୍ଦୁ,
ନୃତ୍ୟକାରୀ ଅଚଳ ଇନ୍ଦୁ,
କ୍ଷରିତ ପୀୟୂଷ ବିନ୍ଦୁ ବିନ୍ଦୁ,
ବାୟୁ ତରଙ୍ଗେ, ରଙ୍ଗେ ରଙ୍ଗେ, ଯା'ରେ ଯା' ତୁ ଭାସି ।
( ଆରେ ) ଶାନ୍ତିଧାମବାସୀ ।



# ଶ୍ମଶାନରେ ମଧୁସୂଦନ

ଦେଖିଥିଲି ଯେଉଁ ଦୃଶ୍ୟ * ମୋ ମୁଗଧ ନୟନ,
ଚାହିଁଥିଲି ଚକିତରେ ଯନେ,
ଅମଳ, ଧବଳ, ନୀଳ-ରେଖାବଳମ୍ବିତ
କାଠଯୋଡ଼ି-ସିକତା-ପୁଳିନେ । ୧ ।

ଜଗତ ହସାଇ ରବି ଅରୁଣ କିରଣ
ବିଶ୍ୱ ଭୂମଣ୍ଡଳ ହେଲା ଛୁଇଁ,
ଝକ ଝକ ବହ୍ନି ଶିଖା ରଞ୍ଜିତ ବରଣ
ତାହା ସଙ୍ଗେ ମିଶିଗଲା ଯାଇ । ୨ ।

ପରଦା ଟେକିଲେ ପଛେ ନୀଳ ଗିରିମାଳା
ପ୍ରକୃତିର ନୀଳିମା ବିଭବେ,
ଚିତା ଭେଦି ମହା ସତ୍ତ୍ୱ ନୀଳ ଧୂମ ରୂପେ
ମିଶିଗଲା ମହା ନୀଳ ନଭେ । ୩ ।

ଏହି ମହାମିଳନର ସାକ୍ଷୀ ଥିଲା ଦୂରେ
ଭଗ୍ନଚୂଳ ଦୁର୍ଗ ବାରବାଟି,
ତୀର ବିରାଜିତ କାଠଯୋଡ଼ି-ସ୍ରୋତ-ପଠା
ଆଉ ପୂତ ବିଡ଼ାନସି ମାଟି । ୪ ।

ସେହି ଦୃଶ୍ୟ ଅନ୍ୟାକାରେ ଆସିଛି ଲେଉଟି
ମୋ ଚକିତ ସ୍ତମ୍ଭିତ ପରାଣେ,
ସେହି ମହାମିଳନର ଗମ୍ଭୀର ସମ୍ଭାର
ଆଜି ପୁଣି ନେଇ ସନ୍ନିଧାନେ । ୫ ।

ବ୍ରହ୍ମାଣ୍ଡର ମୋହ ଅନ୍ଧକାର ଗଲା ଛୁଟି,
ଖର କର ବରଷିଲେ ରବି,
ଚୌଦିଗେ ଉଠିଲା ଜଳି ସହସ୍ର ଦେଉଟି,
ପ୍ରକଟିଲା ସତ୍ୟାଲୋକ ଛବି । ୬ ।

ପ୍ରଭାଜାଲେ ପୂରିଗଲା ବିଶ୍ୱ ଭୂମଣ୍ଡଳ,
ଚରାଚର ଦ୍ୟୁଲୋକ ଭୂଲୋକ,
ସେହି ମହା ପ୍ରଭାପୁଞ୍ଜେ କ୍ଷଣେ ଗଲା ମିଶି
ଜ୍ୟୋତିର୍ମୟ ଉନ୍ମୁକ୍ତ ଆଲୋକ । ୭ ।

ଯେ ଦୃଶ୍ୟ ଦର୍ଶନେ ଗଲେ ନଭୋଗର୍ଭେ ଲୁଚି
ଦ୍ୟୁତିହୀନ ଜ୍ୟୋତିଷ୍କମଣ୍ଡଳ,
ବିସ୍ମୟେ ରହିଲେ ଚାହିଁ ବନସ୍ପତିଚୟ,
ଦୂରସ୍ଥିତ ନୀଳ ନଗାବଳି । ୮ ।

ସ୍ଫୁରିଲା ଦିଗନ୍ତ ପାରୁଁ ପ୍ରଶାନ୍ତ ସଙ୍ଗୀତ,
ପ୍ରସରିଲା ବିଶ୍ୱେ ଅନିବାର,
ଶୁଭିଲା ଚୌଦିଗେ, ଅହୋ, ସମତାନ ଲୟେ
କି ଗମ୍ଭୀର ଓଁକାର ଝଙ୍କାର । ୯ ।

କେତେଦିନ ରହନ୍ତା ବା ବଦ୍ଧ ମହାପ୍ରାଣ
ସଂସାରର ଏ ଜଡ଼ ବନ୍ଧନେ ?
ପୁଣ୍ୟମୟ ନିରମଳ ସ୍ୱଚ୍ଛ ଆତ୍ମା ତବ
ଉଡ଼ିଗଲା ସ୍ୱଭାବ ଗମନେ,
ଅନନ୍ତ ସେ ଉନ୍ମୁକ୍ତ ଗଗନେ । ୧୦ ।

'ସଂସାରର ପାପପଙ୍କେ' ଲଭିଣ ଜନମ
ଉଠିଥିଲ ଭେଦି ଆବିଳତା,
ପଦ୍ମପ୍ରାୟ ଜଳେ ଥାଇ ନ ଛୁଇଁଲ ଜଳ,
ଉପରକୁ ଟେକିଥିଲ ମଥା । ୧୧ ।

ସଂସାରର ମାୟା ମୋହ, ଅବିଦ୍ୟା ଜଞ୍ଜାଳ
ନ ଥିଲା ହେ ତୁମ୍ଭଙ୍କୁ ପରଶି,
ଏ ଜଗତେ ରହି ତୁମ୍ଭେ ଆନ ଜଗତର
ବହୁ ଉଚ୍ଚେ ରହିଥିଲ ବସି । ୧୨ ।

କେଉଁ ଜଗତର କେଉଁ ସୁରଭି ସମ୍ପଦ
ବାଣ୍ଟିଦେଲ ଏ ଜଗତେ ମନ୍ଦେ,
ବିଶ୍ୱଯାକ ପୂରିଗଲା ମୁଗ୍ଧ କରି ପ୍ରାଣ
ଧୂପ, ଧୂନା, ଚନ୍ଦନର ଗନ୍ଧେ । ୧୩ ।

ବିଶ୍ୱ ବ୍ରହ୍ମାଣ୍ଡର ନିତ୍ୟ ଅଖଣ୍ଡ ସଙ୍ଗୀତ
ଶୁଣୁଥିଲ ବିମୁଗ୍ଧ-ଅନ୍ତର,
ସେ ମହା ସଙ୍ଗୀତ ସ୍ୱରେ ମିଶାଇଣ ତାର
ଉଚ୍ଚାରିଲ ଗାୟତ୍ରୀ ମନ୍ତର । ୧୪ ।

* ଶ୍ମଶାନରେ ରାଧାନାଥଙ୍କର ଚିତାନଳ । ରାଧାନାଥ ଓ ମଧୁସୂଦନ ଉଭୟଙ୍କ ସତ୍କାର କାଳରେ ଲେଖକ ସଶରୀରେ ଶ୍ମଶାନରେ ଉପସ୍ଥିତ ଥିଲେ ।

ବନ୍ଧୁଙ୍କ ନିଦେଶେ ଦେବ ଆସିଥିଲ ଭବେ
ଘେନି ସେହି ସ୍ୱର୍ଗୀୟ ଉଦନ୍ତ,
ଉପାନ୍ତ ନଗର ହୃଦ ବଜାଇଲ ତନ୍ତ୍ରୀ,
ପ୍ଲାବିଗଲା ଦିଗନ୍ତୁ ଦିଗନ୍ତ;
ଶୁଣିଲେ ବିସ୍ମୟେ ଯେତେ ବିଶ୍ୱବାସୀବୃନ୍ଦ
ସେ ନିର୍ଘୋଷ ଅନାଦି ଅନନ୍ତ । ୧୫ ।

କାହିଁ ସେ ଶାଶ୍ୱତ ସତ୍ୟ ସୂକ୍ଷ୍ମ ମହାସତ୍ତ୍ୱ,
କାହିଁ ଜଡ଼ ମାନବ ସୃଜନ,
ଦୁହିଁଙ୍କର ତୁମ୍ଭେ ଏକା ଥିଲ ସଂଯୋଜକ,
ସ୍ୱର୍ଗଦୂତ ବିଶ୍ୱ-ପ୍ରେମଧନ । ୧୬ ।

"ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କପରି",
ତୁମ୍ଭେ ଏକା ଜାଣିଥିଲ ତାକୁ;
ସେ ସ୍ରୋତର ଆଗେ ଆଗେ ଯାଉଥିଲ ଧାଇଁ
"ମୃତ୍ୟୁସିନ୍ଧୁ ସଦା ଭେଟିବାକୁ" । ୧୭ ।

ଯେବେ ଯେଉଁ ବାଧାବିଘ୍ନ ଭେଟୁଥିଲ ବାଟେ
ତହୁଁ ଥରେ ଗଗନେ ଅନାଇ
"ପ୍ରଚଣ୍ଡେ ଗରଜ" ତାଡ଼ି ଫିଙ୍ଗିଦେଲ ସବୁ
ହୃଦୟରେ ନ ଅଭୟ ପାଇ । ୧୮ ।

ଜାଣିଥିଲ, "ଧୂଳିର ଏ ନର କଳେବର"
ଭଙ୍ଗୁର ଏ ଭବ-ରଙ୍ଗସ୍ଥଳେ,
ସେ ଅନନ୍ତ ମହେଶ୍ୱର ଏକା ସତ୍ୟ ନିତ୍ୟ,
ଚାହିଁଥିଲ ତାହାକୁ ନିଷ୍ଠଳେ । ୧୯ ।

ଦିବ୍ୟ ଚକ୍ଷୁ ଫେଇ ଏହି ସଂସାର ଗହଳେ
ମଣୁଥିଲ ବନ୍ଧୁଙ୍କର ସତ୍ତ୍ୱ,
ବିଶ୍ୱ ପ୍ରେମ, ନର-ସେବା ଜୀବନର ବ୍ରତ
କଲ ଆହେ ମାନବଦେବତା । ୨୦ ।

ଶୈଶବର ଗୁରୁ ତବ ଯୌବନର ସଖା,
ରହି ସେହି ମହାପ୍ରାଣ * ପାଶେ
ଚାହିଁ ଦେଖୁଥିବ ସେହି "ଅନନ୍ତ ଅପାର
ଗମ୍ଭୀର ସେ ପ୍ରଶାନ୍ତ ଆକାଶେ" । ୨୧ ।

ଦେଖିବ ପ୍ରଭାତ ସନ୍ଧ୍ୟା ପ୍ରକୃତିର ଖେଳ,
କେତେ ଲୀଳା ଲୀଳାମୟଙ୍କର,
ସୁନ୍ଦର, ବିଚିତ୍ର, ଶାନ୍ତ, ଗମ୍ଭୀର, ଅନନ୍ତ,
ନବ ନବ, ମହା ଭୟଙ୍କର । ୨୨ ।

ଦୁଇଜଣ ଦେଖୁଥିବ ଦିବ୍ୟନେତ୍ରେ ଚାହିଁ
ଯାହା କିଛି ସୁନ୍ଦର ଉଦାର, †
ମଧୁର-ଗମ୍ଭୀର ଲୀଳା ପ୍ରକୃତିର କୋଳେ
କିଏ ସତ୍ୟ, କିଏ ବା ଅସାର । ୨୩ ।

ଯାଅ ଏବେ ସେହି ପୁଣ୍ୟ ଜ୍ୟୋତିର୍ମୟ ଧାମେ
"ଯହିଁ ଦେବେ ଭୁଞ୍ଜନ୍ତି ଅମୃତ",
ଚିର ପିପାସିତ, ନିତ୍ୟ ମଙ୍ଗଳ ଆଳୟ
"ପାପ ତାପ ଯହିଁ ପରାଭୂତ" । ୨୪ ।

ସେ ରାଜ୍ୟ ଆକାଙ୍କ୍ଷା ନାହିଁ, ଇନ୍ଦ୍ରିୟ ସଂଯମ
ନାହିଁ ତଥା ରିପୁର ତାଡ଼ନା,
ଭୀମ ପ୍ରଭଞ୍ଜନ ସଙ୍ଗେ ତୁମୁଳ ସଂଗ୍ରାମ,
ଆତ୍ମ ପର, ବିଷୟ ଭାବନା । ୨୫ ।

ନାହିଁ ରୋଗ, ନାହିଁ ଶୋକ, ନାହିଁ ଜରା-ମୃତ୍ୟୁ ,
ଜ୍ୟୋତିର୍ମୟ ବ୍ରହ୍ମ ସନାତନ,
ସବୁ **ଶିବ**, ସବୁ **ଶାନ୍ତ**, ସକଳ **ସୁନ୍ଦର**,
ପୁଣ୍ୟମୟ ପୂର୍ଣ୍ଣ ନିରଞ୍ଜନ । ୨୬ ।

---

* ରାଧାନାଥ ।

† ରାଧାନାଥ ପ୍ରକୃତିର ସୌନ୍ଦର୍ଯ୍ୟ ଓ ମଧୁସୂଦନ ପ୍ରକୃତିର ଗାମ୍ଭୀର୍ଯ୍ୟ କିପରି ଅନୁଭବ କରୁଥିଲେ ସେଥିପାଇଁ ଏହି କବିତାର ପ୍ରଥମ ଦ୍ୱିପଦ ସହିତ ପରବର୍ତ୍ତୀ ପାଞ୍ଚ ପଦ ତୁଳନା କରି ଦେଖ ।

# ଗଣେଶ ବିସର୍ଜନ

ଯାଅ, ଯାଅ, ହେ ଗଣେଶ, ମୋ ଘନ କୁଟୀରୁ,
ମୋର ଏ ଭକତି-ହୀନ କ୍ଷୁଦ୍ର ହୃଦଟିରୁ ।

କାହିଁକି ଆସିଲ ଭଲ ମୋ ଶୂନ୍ୟ ଭବନେ,
କିସ ଅଛି, କିସ ଦେଇ ପୂଜିବି ଚରଣେ ?

କେଉଁ ରତ୍ନ ନେଇ ପଦେ ଦେବି ଉପହାର ?
ଦେଖ ମୋ କୁଟୀରେ ପଡ଼ି ଖାଲି ଶୂନ୍ୟାଧାର ।

ଦୈନ୍ୟ ହାହାକାରେ ଫାଟି ଯାଉଅଛି ଛାତି,
ଉପବାସେ ନିଜ ଘରେ ପାହୁଅଛି ରାତି ।

ପୁଷ୍ଟିକର ଦିନେ ସୁଦ୍ଧା ଖାଉନାହିଁ ଗ୍ରାସେ,
କାହିଁକି ଆସିଲ ଭଲ ଦରିଦ୍ର-ଆବାସେ ?

ହେ ପ୍ରଭୁ ବସାଇ ଅବା ହୃଦୟ-ଆସନେ
ପୂଜନ୍ତି ଶ୍ରୀପଦ ତବ ଭକତି-ଚନ୍ଦନେ;

ପ୍ରେମର କୁସୁମେ ପଦେ ଦେଇ ପୁଷ୍ପାଞ୍ଜଳି
ଦିଅନ୍ତି ମସ୍ତକେ ତବ ଶ୍ରୀଚରଣ-ଧୂଳି ।

ପ୍ରେମ-ଭକ୍ତି-ହୀନ ଏହି କଠୋର ହୃଦୟ,
ଜ୍ଞାନ-ଦୀପ୍ତି-ଶୂନ୍ୟ, ଅନ୍ଧକାର ମରୁମୟ ।

ନେଲଣି ତ ଶରୀରର ରକ୍ତ ଶୁଣ୍ଢେ ଶୋଷି,
ଖ୍ୱାଇ ନେଲଣି ଧନ ମୂଷାଟିକୁ ପୋଷି ।

ତୁମ୍ଭର ସେ ସ୍ଥୂଳ ବପୁ ଧାରଣେ ଅକ୍ଷମ,
ସେ ଉଦର ପୂରଣେ ବା କାହିଁ ଆମ୍ଭ ଧନ ?

ବସାନ୍ତୁ ବା ହୃଦେ, ହୃଦ ପ୍ରସାରଣ ଅଛି;
ପ୍ରସରିବ କାହିଁ ! ସଂକୀର୍ଣ୍ଣତାରେ ବୁଡ଼ିଛି ।

ଭିଡ଼ିଛି ଦାରୁଣ ଲୌହ ନିଗଡ଼ରେ ଅତି,
ଛିଣ୍ଡାଇବା ପାଇଁ ତାକୁ ନାହିଁ ତ ଶକତି ।

ସେ ଦେଶକୁ ଯାଅ ଚାଲି, ଯେ ଦେଶ ପ୍ରଧାନ,
ଯେ ଦେଶ ଗୌରବମୟ, ଉଦାର, ମହାନ,
ଯହିଁ ଅଛି ସ୍ଫୂର୍ତ୍ତି, ତେଜ, ଶକତି, ଉଦ୍ୟମ,
ଯେ ଦେଶେ ଅସୀମ ଲକ୍ଷ୍ୟ, ଅନନ୍ତ କରମ,
ଯହିଁ କେବେ ପଡ଼ିନାହିଁ ସ୍ୱାର୍ଥର ଛାୟା,
ଯହିଁ ପୂର୍ଣ୍ଣ ପ୍ରେମ, ଦୟା, ସ୍ନେହ, ପ୍ରୀତି, ମାୟା,
ସମବେଦନାର ସୂତେ ଗ୍ରଥିତ ସରବେ,
କମ୍ପୁନାହିଁ ବସୁନ୍ଧରା "ହା ହୁତାଶ" ରବେ

କୁସଂସ୍କାର-ଅନ୍ଧକାରେ ଆବୃତ ଏ ଦେଶ,
ସହାନୁଭୂତିର ଯହିଁ ଦେଖାନାହିଁ ଲେଶ,
ସ୍ୱାର୍ଥ, ସ୍ୱାର୍ଥ, ସ୍ୱାର୍ଥ ଅଟେ ଯେ ଦେଶର ପ୍ରାଣ,
ପରଶ୍ରୀ-କାତରତା ଯେଉଁଠି ପ୍ରଧାନ,
ସଂକୀର୍ଣ୍ଣତା ରାଜେ ଯହିଁ, ଶିକ୍ଷାରେ ବିରାଗ,
କେ ବୁଝେ ଆଦର ତହିଁ ତବ, ମହାଭାଗ ?

ସକଳେ ଉନ୍ମତ୍ତ ଯହିଁ ଅହଙ୍କାର ମଦେ,
ଶୂନ୍ୟ ହାତେ ଫେରିଯାଅ, ନମୁଛି ଶ୍ରୀପଦେ ।



# * ମହାପ୍ରୟାଣ

ହେ ଭକ୍ତ, ହେ ଦେବ, ଗୁରୋ, ବାଣୀବରପୁତ୍ର,
ଉତ୍କଳର ସାହିତ୍ୟ-ନାୟକ,
ସାହିତ୍ୟର ଟଙ୍କାଘରେ ସୁଯୋଗ୍ୟ ଭଣ୍ଡାରୀ,
ବାଣୀ-ବୀଣା-ବଚନ-ବାଦକ ।
ଜଳର ବୁଦ୍‌ବୁଦ ପ୍ରାୟ ମାନବ ଜୀବନ,
ଅନ୍ଧକାର ବୁଜିଦେଲେ ଆଖି,
ସେ ଜୀବନେ ସମ୍ପାଦିଲ କୋଟି ଜୀବନର
କର୍ମ ତୁମ୍ଭେ ସାଧକ ଏକାକୀ ।
ସଂସାରର ଝଞ୍ଜାବାତ ଘୋର ଆବର୍ତ୍ତନେ
ତିଳେ ମାତ୍ର ନୋହିଲ କାତର,
ସେମନ୍ତ ନିଷ୍ଠା, ସେ ତପସ୍ୟା, ସେ ସାଧନା ଆଗେ
ସିଦ୍ଧି ଆଜ କେତେକ ମାତର !
ଜୀବନର ସୁଖ ଦୁଃଖ ଘୂର୍ଣ୍ଣିପାକେ ପଡ଼ି
ଶିକ୍ଷା କଲ ଯେ ଲୋକ-ଚରିତ୍ର,
ହେ ବିଜ୍ଞାନୀ, କାବ୍ୟରୂପେ ରଖିଗଲ ତା'ର
ଜଗତରେ କି ସୁନ୍ଦର ଚିତ୍ର !
ହୃଦୟର ରକ୍ତଦାନେ ବଢ଼ିଥିଲ ନିଜେ
ଦୁନିଆର ଯେଉଁ ଗୂଢ଼ ମିତ୍ର,
ଲୋକଶିକ୍ଷା ପାଇଁ ସର୍ବ ପ୍ରକାଶିଣ ତାହା
ଦେଖାଇଲ ମାନବର ପ୍ରୀତି ।
ପଥଭ୍ରାନ୍ତ ଆତ୍ମାଙ୍କର ଅପୂର୍ବ ମିଳନ
ଜଗତରେ କିରୂପେ ସମ୍ଭବେ,
ମାନବର କୃତକର୍ମ ନଯାଏ ନିଷ୍ଫଳେ,
ପୁରସ୍କାର "ପ୍ରାୟଶ୍ଚିତ୍ତ" ଲଭେ ।
କବିତା-କାନନେ ପଶି ତୋଳି "ପୂଜାଫୁଲ"
ବାଣୀ-ପଦେ ଦେଲ "ଉପହାର",
ହେ ପ୍ରେମିକ, ମୁଗ୍‌ଧ କବି, ଅନୁଭବୀ ବିନା
କେ ବୁଝିବ ମର୍ଯ୍ୟାଦା ତାହାର ?
ଜଗତରେ ଯାହା କିଛି ହେୟ ଅପଦାର୍ଥ,
ଦୂରୁଁ ଛିଛିକାର କରେ ନର,
ବିଶ୍ୱାସୀ ପ୍ରେମିକ ନେତ୍ରେ ମହାମୂଲ୍ୟବାନ,
ସବୁ ସତ୍ୟ, ଶିବ ଓ ସୁନ୍ଦର ।
ଏହି ତତ୍ତ୍ୱ ଭେଦିଥିଲ ଅନ୍ତରେ ଅନ୍ତରେ,
ଥିଲ ଯେଣୁ ଈଶ୍ୱରେ ବିଶ୍ୱାସୀ,
ଆହରିଣ "ଧୂଳିକଣା" ସଜାଇଲ ଅର୍ଘ୍ୟ,
ଦିବ୍ୟ ଯୋଗ, ପରମ ଉଦାସୀ ।
"ଅବସର ବାସେ" ଥାଇ ଯୋଗ-ତାପ ଭୁଲି
ଲୟ ଯୋଗେ ନିବେଶିଲ ଚିତ୍ତ,
ମାନବସମାଜେ ଆଣି ଦେଲ ଉପହାର
ତହିଁ ଲବ୍‌ଧ ଅପ୍ରମିତ ବିତ୍ତ ।
ଦେବଗୀତା ଭାରତାଦି ମହାଗ୍ରନ୍ଥମାନ
ଉତ୍କଳରେ ଭାଷାନ୍ତର କରି
ଦେଖାଇଲ ଯେଉଁ ଶକ୍ତି, କେମନ୍ତେ ହେ ତାହା
ଶୀର୍ଣ୍ଣ ଦେହେ ଥିଲ ଦେବ, ଧରି ?
ଉତ୍କଳ ଭାଷାର ଘୋର ଦୁର୍ଦ୍ଦିନ ସମୟେ
ତୁମ୍ଭେ ସିନା ହେଲ କର୍ଣ୍ଣଧାର,
ଅଦମ୍ୟ ଉଦ୍ୟମେ ମାତି ଆହେ କର୍ମବୀର,
ଅକାଳ ମରଣୁଁ କଲ ପାର ।
ନୋହିଲେ ନ ଥାନ୍ତା ଆଜି ଚିହ୍ନବର୍ଣ୍ଣ ତା'ର,
ହୋଇଥାନ୍ତା ସ୍ମୃତି ପୁରାତନୀ,
ଓଡ଼ିଆ ନାମରେ ଆଜ ପଡ଼ନ୍ତା କି ଗାର,
କିଏ କମା ଧରନ୍ତା ଲେଖନୀ ?
"ସଂସାରରେ ଚିରଦିନ ରହି ନାହିଁ କେହି,
ଜନମିଲେ ଅବଶ୍ୟ ମରଣ",
ଏ ଶିକ୍ଷା ଦେଇଛ ତୁମ୍ଭେ, ତେବେ କାହିଁ ପାଇଁ
ବିଷାଦର କିବା ପ୍ରୟୋଜନ ?
ତୁମ୍ଭର ଉତ୍ସାହ ବାକ୍ୟ ପଡ଼ିଛି ଯା' କାନେ
ତହିଁ ତାହା ପ୍ରସବିଛି ଫଳ,
ଉତ୍କଳକୁ ଦେଇଗଲ ଯେଉଁ ବୀଜମନ୍ତ୍ର,
ସାଧକକୁ ଦେବ ନବ ବଳ ।

---

* ବ୍ୟାସକବି ଫକୀରମୋହନଙ୍କ

## କଲ୍ଲୋଳ

ତବ ସ୍ନେହ ଆଶୀର୍ବାଦ, ଆଶ୍ୱାସନା ବାଣୀ
କାନେ କାନେ ଉଠୁଅଛି ବାଜି,
ରୋଗଶଯ୍ୟା ପରେ ମୋର ଅବଶ ଲେଖନୀ
କ୍ଷଣପାଇଁ ଜାଗରିତ ଆଜି ।
ଲଭିଲ ନିର୍ବାଣ ନିଜେ, କିନ୍ତୁ ଉତ୍କଳରେ
ଜାଳିଗଲ ଯେଉଁ ଜ୍ଞାନବର୍ତ୍ତି,
ଯୁଗେ ଯୁଗେ ଉତ୍କଳକୁ ଦେଖାଇବ ପଥ
ଭାରତୀର ଅକ୍ଷୟ ଆରତି ।

ଯାଅ ଦେବ, କର୍ମମୟ ଜୀବନର ଅନ୍ତେ
ଲଭ ଯାଇ ଅନନ୍ତ ବିଶ୍ରାମ,
ଜୀବନସଂଗ୍ରାମ ନାହିଁ, ଚିନ୍ତା, ଦୁଃଖ, କ୍ଲେଶ,
ଶାନ୍ତିପୂର୍ଣ୍ଣ ସେ ଅମୃତଧାମ
ସଂସାରର କୃତଘ୍ନତା, ପାପ ତାପ ଭୁଲି
ରୋଗଶୋକ ଯନ୍ତ୍ରଣା ପାସୋରି
ସେ ଶାନ୍ତି-କାନନେ ବସି ନନ୍ଦନ ଆମୋଦେ
ବାଉଥିବ ଅମର ବାଂଶରି

## ବର୍ଷା ସଙ୍ଗୀତ

ଶ୍ରାବଣ ଘନ ଘୋର ଗରଜି
ଧଇରଜ ମମ ନାଶଇ,
ପ୍ରଳୟ-ସିନ୍ଧୁ-ଲହରୀ-ସମାନ
ଗଗନ ଆବରି ଆସଇ ।

ଚମକେ ବିଜୁଳି ଘନ ଘନ ଘନ,
ଆକୁଳ ପବନ ହୁଏ ଛନଛନ,
ଝର ଝର ଝର ବାରି ବରଷଣ,
ଥର ଥର ଥର କମ୍ପିତ ହିଆ,
ଖରଖର ବାଆ ହାସଇ ।

କେତକୀ ରେଣୁ ଉଗ୍ର ସୁବାସେ
ନବ କଦମ୍ବ ପୁଲକ ହାସେ
ଆସାର-ସିକ୍ତ ଧରଣୀ-ଶ୍ୱାସେ
ଅତୀତ-ତିମିର-ସୁପ୍ତ-କାହାଣୀ
ନବ ଜାଗରଣେ ଭାସଇ ।

ଶ୍ୟାମ ଧରଣୀ ହସିତ କ୍ଷେତ୍ର
ହେରଇ ଆଜି ରେ ବ୍ୟାକୁଳ ନେତ୍ର,
ଗୃତକ, ଶିଖୀ ହରଷ ନୃତ୍ୟ,
ମରତ ବିଷାଦ ଅଭିନବ ଭାବେ
ହୃଦୟ ମୋର ଶାସଇ ।

ଘନ ଗରଜନ, ବରଷା ପତନ,
ମଣ୍ଡୂକକୁଳ ଧୈବତ ସ୍ୱନ,
ସବନି ବଲାକା ଶୁଭ୍ର ନିସ୍ୱନ,
ଲଳିତ କରୁଣ ବିଶ୍ୱ ସଙ୍ଗୀତେ
ଚିତ୍ତବୃତ୍ତି ଗ୍ରାସଇ ।

# * ନବଜାତ କୁମାରପ୍ରତି ପତାର ଆହ୍ୱାନ

ଆସରେ ଆସରେ ପରାଣସଙ୍ଖାଳି,
ଆସରେ ଜୀବନଧନ,
ଅର୍ଘ୍ୟଥାଳୀ ଧରି ବନ୍ଦାଇ ନିଅ ଗୋ,
ଯତନରେ ପୁରଜନ ।
ଆସରେ ଆସରେ ମୋ ନେତ୍ରପିତୁଳା,
ଆସରେ ନୟନତାରା,
ଆସିଲଣି ମୋର ଆନନ୍ଦପସରା,
ସଙ୍କୁଳି ନିଅ ଗୋ ତ୍ୱରା ।
ଆସରେ ମୋ ଚିର-ଆକାଙ୍କ୍ଷିତ ଧନ,
ଆସରେ ହୃଦୟନିଧି,
ମୋ କୁଳ-ପ୍ରଦୀପ ଆସ, ତୋତେ ପରା
ପଠାଇଅଛନ୍ତି ବିଧି ।
ରଖିଛି ମୁଁ ହୃଦେ ସ୍ନେହର ଅମୃତ,
ନୟନେ ଆନନ୍ଦବାରି,
ବରଷୁ ତୋ ଶିରେ ସେ କଲ୍ୟାଣଧାରା
ହୃଦୟ-ଆହ୍ଲାଦକାରୀ ।
ଜନନୀ ନୟନୁଁ, ସ୍ତନୁଁ ବହିଯାଉ
ଶରଧା ପୀୟୂଷରାଶି,
ଆସରେ ଜନନୀ-ଜୀବର ଜୀବନ
ସେ ସ୍ରୋତରେ ଭାସି ଭାସି ।
ବାଜିଉଠୁ ଏବେ ମଙ୍ଗଳ ମହୁରୀ,
ଶୁଭଶଙ୍ଖ ଉଠୁ ବାଜି,
ସେ ସୁର ସଙ୍ଗୀତ ତାଳ ଲୟ ସନେ
ନାଚି ନାଚି ଆସ ଆଜି ।
ବହିଆସୁ ଏବେ ମଳୟ ଅନିଳ
ଧୋଇ ନନ୍ଦନର ବାସ,
ତା' ମୃଦୁ ତରଙ୍ଗେ ସ୍ଫୁରୁ ଅଙ୍ଗଭଙ୍ଗେ
ଦୋହଲି ଦୋହଲି ଆସ ।
ସୁରଗର ଜୀବ, ସୁରଗ ତାରାର
କିରଣ ନୟନେ ଧରି
ଆସରେ ଓହ୍ଲାଇ, ମୋ' ପୁର ଅନ୍ଧାର
ସେ ଜ୍ୟୋତିରେ ଯାଉ ହରି ।
ଚନ୍ଦ୍ରମା-ଲାବଣ୍ୟ ବଦନରେ ବୋଳି
ଆସ ଆସ ମୋ ଭବନେ,
ଆସ ଆସ ମୋର ନୟନ-ଛବି ରେ
ଛବିଳ ଚନ୍ଦ୍ରିକା ସନେ ।
ଜନନୀ ଜଠରେ ଯେ ପ୍ରତିଜ୍ଞା କଲୁ
କରଯୋଡ଼େ ବିଭୁପଦେ,
ସେ କଥାଟି କେବେ ଭୁଲିବୁ ନାହିଁଟି
ମାତିଣ ସଂସାର-ମଦେ ।
ଜନନୀ-ଗରଭୁଁ ଭୂମିଷ୍ଠ ହୋଇଣ
କାନ୍ଦିଲୁ ତୁ ଉଚ୍ଚସ୍ୱରେ,
ଅନ୍ୟ ଜନେ ଦେଖି ତୋ ମୁଖଚନ୍ଦ୍ରମା
ହସିଲେ ଆହ୍ଲାଦଭରେ ।
ଏପରି କରଣି କରିବୁ ଧରାରେ
ଯେସନେ ତୋର ଯିବାବେଳେ
ସକଳେ କାନ୍ଦିବେ, ହସି ହସି ତୁହି
ଚାଲିଯିବୁ ଅବହେଳେ ।
ଏତିକ କଲ୍ୟାଣ, ବିଭୁଙ୍କ ଚରଣେ
ସଦା ଥାଉ ତୋର ଲୟ,
ସଂସାର-ଗହନେ ଦେଖାନ୍ତୁ ତୋ' ପଥ
ସେହି ବିଭୁ ଦୟାମୟ ।



* ୬ ରାୟ ବାହାଦୁର ସାମାନ୍ତ ରାଧାଚରଣ ଦାସଙ୍କର ପୁତ୍ରଲାଭ ଉପଲକ୍ଷରେ ।

# ମାଆ, ମାଆ, ସେଦେଶକୁ ଯିବିନାହିଁ ମୁହିଁ

ମାଆ, ମାଆ, ସେଦେଶକୁ ଯିବନାହିଁ ମୁହିଁ ଲୋ,
କିଭଳି ସେ ଦେଶ ମୁଁ ତ କିଛି ଜାଣେନାହିଁ ଲୋ,
ସେ ଦେଶେ କି ନଦୀଜଳ
ଅଟେ ଏଡ଼େ ସୁବିମଳ,
କୁଳୁ କୁଳୁ ଧ୍ୱନି କରି ଯାଉଥାଇ ବହି ଲୋ;
ନାନାରଙ୍ଗ ପକ୍ଷିଗଣ ଉଡ଼ୁଥାନ୍ତି ତହିଁ ଲୋ ?

ସେ ଦେଶେ କି ବହେ ଏଡ଼େ ସୁଶୀତଳ ପବନ,
ଯାହାର ପରଶେ ତୃପ୍ତ ହୋଇବ ମୋ ଜୀବନ ?
ଦେଖିଣ ଉଷା ଆଗତା
ଡାହୁକ ଡାହୁକୀ ତଥା
ଡାକନ୍ତି କି କହ ମାତଃ, ସୁଧାମୟ ନିସ୍ୱନ;
ରକ୍ତିମ ଦିଶେ କି ସେହି କାଳେ ପ୍ରାଚୀ-ଗଗନ ?

ସୁନୀଳ ଆକାଶ ଅଛି ସେ ଦେଶେ କି ଏଭଳି,
ଅଛି କି ଲୋ, ବିହଙ୍ଗର ପ୍ରାଣାରାମ କାକଳି ?
ହେଲକ୍ଷଣି ସନ୍ଧ୍ୟାକାଳ
ତାରା ହୋଇ ମାଳ ମାଳ
ସୁବର୍ଣ୍ଣ-ପ୍ରଦୀପ ଭଳି ଉଠୁଥାନ୍ତି ଉଜଳି,
ଖେଳଇ କି ନୂଆ ମେଘ କୋଳେ ଧରି ବିଜୁଳି ?

କହ ମା, କି ଭଳି ସେହି ଦେଶ ଭୁଗ କରି ଲୋ,
ହୋଇବ କି ସେହି ଦେଶ ଆମ ଦେଶ ପରି ଲୋ ?
ବୃକ୍ଷଲତା ସେ ଦେଶର
ଏହି ଭଳି ମନୋହର,
ସେଠାରେ କି କହ ଫୁଲ ଫୁଟେ ଏଠା ପରି ଲୋ;
ଡାକେ କି ସେଠାରେ ପିକ ଅମୃତ-ଲହରୀ ଲୋ ?

ସେ ଦେଶେ କି ଜହ୍ନମାମୁଁ ଉଦେ ହୋଇ ଆକାଶେ
ସୁଧା ଜିଣି ମନୋହର କରରାଜି ପ୍ରକାଶେ ?
ମାତୃ-ସ୍ନେହ, ଭ୍ରାତୃ-ପ୍ରେମ,
ବନ୍ଧୁପ୍ରୀତି ଅପ୍ରତିମ,
ଦୟା, ମାୟା, ମମତାଦି ଅଛି କି ଗୋ ସେ ଦେଶେ ?
ମାଆ, ମାଆ, ମୁଁ ତ କେବେ ନ ଯିବଇଁ ବିଦେଶେ ।



## ଆନନ୍ଦର ଜୟ

ଆନନ୍ଦ, ଆନନ୍ଦ, ବୋଲି ମଳ ଖୋଜି ଖୋଜି
ଏଣେ ତେଣେ ଅନ୍ଧପରି ଅଣ୍ଡାଳି ଅଣ୍ଡାଳି,
ପ୍ରକୃତ ଆନନ୍ଦାଧାର-ଚରଣ ବରଜି
ହୃଦୟେ ନିରାଶା-କୃଷ୍ଣ-ବହ୍ନି-ଶିଖା ଜ୍ୱାଳି ।

ଆନନ୍ଦର ନିକେତନ ବିଭୁଙ୍କ ସଂସାର,
ଅଛି କି ରେ, କେବେ କାହିଁ ନିରାନନ୍ଦ ବିନ୍ଦୁ ?
ଅନନ୍ତ ଆନନ୍ଦମୟ ମହା ପାରାବାର,
ଶାଶ୍ୱତ, ଚିନ୍ମୟ, ନିତ୍ୟ, ମହାନନ୍ଦ-ସିନ୍ଧୁ ।

ଆନନ୍ଦେ, ଆନନ୍ଦେ ଗଢ଼ା ମାନବର ଦେହ,
ଆନନ୍ଦର ସନ୍ଦର୍ଶଣେ ମାନବ ଜୀବନ;
ନିତ୍ୟାନନ୍ଦମୟ ଦେଖ ମାନବର ଗେହ,
ଆନନ୍ଦହିଁ ସତ୍ୟ, ଦୁଃଖ ଅଳୀକ ସ୍ୱପନ ।

ଦୁଃଖ-କୃଷ୍ଣ-ଅଭ୍ର ଅଛି ତୋହର ଅନ୍ତରେ,
ତୋ ହୃଦୟେ ଅଛି ମଧ୍ୟ ଆନନ୍ଦର ଖଣି;
ଯାହା ଇଚ୍ଛା ବାଛିନିଅ ଆପଣା ମତରେ,
ସଂସାରକୁ ନିନ୍ଦ କିପାଁ ଦୁଃଖମୟ ମଣି ?

ଆନନ୍ଦର ପରିଚଷ୍ମ ଆଖିରେ ଲଗାଇ
ଆନନ୍ଦ-ଅଞ୍ଜନେ ରଞ୍ଜି ନୟନ ତୋହର
ଦେଖ ରେ ଦେଖ ରେ ବାରେ ସଂସାରକୁ ଚାହିଁ,
ବିଶ୍ୱଭରି ମହାନନ୍ଦେ ପୂର୍ଣ୍ଣ ଚରାଚର ।

ବିଚ୍ଛେଦ-ସନ୍ତାପ ନାହିଁ, ହତାଶା, ଦୁର୍ଗତି,
ନାହିଁ ଶୋକ, ନାହିଁ ରୋଗ, ନାହିଁ ମୃତ୍ୟୁଭୟ;
ଘୋଷୁଛି ମଙ୍ଗଳମୟ ବିଭୁଙ୍କ କୀରତି,
ଦେଖ ରେ ବ୍ରହ୍ମାଣ୍ଡପାକ ଆନନ୍ଦର ଜୟ ।

## ସାନ୍ତ୍ୱନା

ସାଗରେ ତ ଦ୍ୱୀପ ଅଛି, ମରୁସ୍ଥଳେ ଜଳ,
ପ୍ରାନ୍ତରେ ପାଦପ ଅଛି, ମେରୁରେ ଅନଳ;
ତେବେ ଶାନ୍ତି ଅଛି ଏହି ଅଶାନ୍ତ ସଂସାରେ,
ଅଛି ରେ ଆଲୋକ ଏହି ଭୀଷଣ ଅନ୍ଧାରେ ।

ଅଛି ରେ ନୀହାର-ବିନ୍ଦୁ ଅନନ୍ତ ପାବକେ,
ନନ୍ଦନ-ସୌରଭ ଅଛି ଦୁରନ୍ତ ନରକେ,
ସଂସାର-ମରୁରେ ଅଛି ଶାନ୍ତିର ଝରଣା,
ଗରଳ-ସମୁଦ୍ରେ ଅଛି ଅମୃତର କଣା ।
ସତ୍ୟ, ଚିଦାନନ୍ଦ ସେହି ମଙ୍ଗଳକାରଣ,
ବିଶ୍ୱପାତା, ଜଗତ୍ରାତା, ଅଧମତାରଣ,
ଚିର, ନିତ୍ୟ, ସନାତନ ଶାନ୍ତିର ଆଳୟ,
ସୁନ୍ଦର, ମଧୁର, ଧୀର, ବିଭୁ ଦୟାମୟ;
ତାଙ୍କର ଚରଣାମ୍ବୁଜେ ସଦା ଚିତ୍ତ ଥାଉ,
ଏ ସଂସାରେ ତହିଁ ଛଡ଼ା ଶାନ୍ତି ନାହିଁ ଆଉ ।

## ଶିଶୁ

କେଉଁ ଫୁଲ୍ଲ କୁସୁମର ଲାବଣ୍ୟ ନିଗାଡ଼ି
କେ ବୋଳିଛି ଶିଶୁର ଆନନେ ?
ଆସିଛି ଦେବତା କେଉଁ ସ୍ୱର୍ଗରାଜ୍ୟ ଛାଡ଼ି
ଭ୍ରମିବାକୁ ଏ ମର ଭବନେ ?

କେଉଁ ମୁଗ୍ଧ ଚନ୍ଦ୍ରମାର କୌମୁଦୀ ଆହରି
ଲିପିଛି କେ ତା'ର ଗୁରୁ ହାସେ ?
କେଉଁ ସୁର-ବୀଣା-ତାନ କେ ଦେଇଛି ଭରି
ତା' ମଧୁର ମୃଦୁ ମୃଦୁ ଭାଷେ ?

କିଏ ସେ ରଞ୍ଜିଛି ତା'ର ସୁନ୍ଦର ନୟନ
କେଉଁ ସ୍ନିଗ୍ଧ ସୁଧାରସ ଗୁଣି ?
ତରଳ ତାରକା ସମ ସଦା ଛନ ଛନ
ସୁକୁମାର ତରଳ ଚାହାଣୀ ।
କେଉଁ ତଟିନୀ-ତରଙ୍ଗ-ଲଳିତ-ଭଙ୍ଗିମା
ଅଙ୍ଗେ ତା'ର କେ ଥୋଇଛି ଆଣି ?
ସେ ଶିଶୁ, ସେ ମାଧୁରୀର ନାହିଁ ତ ରେ ସୀମା,
ଅତୁଳ୍ୟ ତା' ପ୍ରତି ଅଙ୍ଗଠାଣି ।

## ଚନ୍ଦ୍ରଶେଖର

ଉତ୍କଳଜନନୀ-ଗୌରବ-ଶିଖର
ଉଜ୍ଜ୍ୱଳ ଜ୍ୟୋତିଷ୍କ, ହେ ଚନ୍ଦ୍ରଶେଖର !
ନିଶାକର ଯଥା ତେଜ
  ଶାରଦପଟଳେ
ବିସ୍ତାରଇ କି ଗୌରବେ
  ଆକାଶମଣ୍ଡଳେ,
ହସାଇ ଜଗତବାସୀ, ଜଗତର ଦୁଃଖ ନାଶି,
ଢାଳଇ ପୀୟୂଷଧାର ପ୍ରକୃତିର ଅଙ୍ଗରେ,
ଗାଆନ୍ତି ସକଳେ ତା'ର ଯଶ ନାନା ରଙ୍ଗରେ.
ତଥା ତୁମ୍ଭେ; ତଥା ତୁମ୍ଭ କୀରତି ଉଜ୍ଜ୍ୱଳ,
ଚମକିତ କରାଇଲା ସାରା ଭୂମଣ୍ଡଳ ।

ହେ ଅରଣ୍ୟ-କୁସୁମ !
  ତୁମେ ଫୁଟିଲ କାନନେ,
ଫୁଟି ଝଡ଼ିଥାନ୍ତି ସେଠି କାନନ-ଗରଭେ,
କିନ୍ତୁ ଅରଣ୍ୟର ଆହା ! ସୂକ୍ଷ୍ମ ଆବରଣ
ନ ପାରିଲା ଘୋଡ଼ାଇ ସେ ଅପାର ସୌରଭେ;
ସେ ସୌରଭ
  ଭେଦି ଗିରି-କାନନ-ପ୍ରାନ୍ତରେ
ଚହଟିଲା
ଦେଶେ ଦେଶେ ଦିଗ ଦିଗନ୍ତରେ;
ଦେବ !
ତବ ସିଦ୍ଧାନ୍ତ ଦର୍ପଣ
ଦେଖାଇଲା ବିଶ୍ୱେ ଉତ୍କଳର ବଡ଼ପଣ ।

ଉତ୍କଳ-ଅବନୀ ପ୍ରତିଭାର ଖଣି,
ତୁମ୍ଭେ ପୁଣି ଉତ୍କଳର ମଥାମଣି;
ଜଗତରେ ଶ୍ରେଷ୍ଠ ଉତ୍କଳରତନ,
ତୁମ୍ଭେ ପୁଣି ତା'ର ମଉଳମଣ୍ଡନ;
ତୁମ୍ଭେ ଗରବିତ ଜନମି ଉତ୍କଳେ,
ଉତ୍କଳଜନନୀ ପୁଣି ଗରବିଣୀ
ତୁମ୍ଭପରି ସୁତ ଲଭି ନିଜ କୋଳେ ।
ହେ ଉତ୍କଳମଣ୍ଡନ !
ଦୁହେଁ ଦୁହିଁଙ୍କର ହେଲ ଗର୍ବର କାରଣ ।

## ନିଦରାଣୀ

ଆସ ମୋ କୁଟୀରେ ଦ୍ୱାରେ
  ଗୋ ନିଦ-ରାଣୀ,
ସିର ସିର ମେଘୁଆ ପବନେ
ଉଡ଼ ଉଡ଼ ଧୂସର ଗଗନେ
ବିସ୍ତଦେଇ ମେଘାମ୍ବରୀ-
  ପଣତ-କାନି ।

ଅପରାଜିତା ଫୁଲ ଗନ୍ଧରୁ ଝରି
ପଡ଼ୁ ପ୍ରାଙ୍ଗଣେ ମୋର ଫିଟି କବରୀ;
ତରଳ-ଜଳଦ-କୋଳ-ଦାମିନୀ ଗୋ,
ମଳିନ ଜ୍ୟୋତ୍ସ୍ନା-ଅବଗାହିନୀ ଗୋ,
ଶ୍ରାନ୍ତ ନୟନେ ମୋର ଶାନ୍ତ-ସୁଧାସ୍ନିଗ୍ଧ
ହରିତ ଶସ୍ୟ-ଶେଯ-ଶାୟିନୀ ଗୋ ।

କୋମଳ-ଶ୍ୟାମଳ ଦୂର୍ବାଦଳୋପରି
ନବ କିଶଳୟ ସଜାଇ
ମୋତେ ଦିଅ ଗୋ ବିଛଣା ବିଛାଇ;
ନୀଳ କମଳମାଳ ବକ୍ଷରୁ କାଢ଼ି
  ଲମ୍ବାଇ ଦିଅ ମା ମୋର ଗଳେ;
ସ୍ନିଗ୍ଧ କଜ୍ଜଳ ଦିଅ ଲଗାଇ
ଅଜଣା ସୁପ୍ତି ଦିଅ ଜଗାଇ
ଅଳସ ଆଖିପତା ପଡ଼ୁ ଗୋ ମାଡ଼ି
  ତୋହର ପରଶ-କାଠି ବଳେ ।

କାନପାଖେ ଗାଇଦିଅ
  ନିଦ-ପରୀ ଗୀତ ପଦେ
ଧୀରେ ଧୀରେ ଅଧ ଅଧ-
  ଭାଷେ ପ୍ରେମଗଦଗଦେ;
ବକ୍ଷପାଶେ ନିଅ ମୋତେ ଟାଣି,
ମୃଦୁ ଚୁମ୍ବନଟିଏ କପୋଳେ ଥୋଇ
ସକଳ ସନ୍ତାପ ଦିଅ ଧୋଇ,
ଆରାମେ ଯାଏଁ ଭୁଲି ଦୁଃଖ କାହାଣୀ ଗୋ ।
ଆସ ମୋ କୁଟୀରଦ୍ୱାରେ
  ଗୋ ନିଦରାଣୀ ।

# ମୋ ସଙ୍ଗୀତ

ସଙ୍ଗୀତ ମୋ ଜୀବନସାଥୀ ;
ମୋ ଅନ୍ଧ ନୟନ ଆଗେ
ନାନା ଛନ୍ଦେ, ନାନା ରାଗେ
ତାହାର ମୂରତି ଜାଗେ
ଦିବସ ରାତି ।

ସ୍ୱପନେ ମୋ ସନେ ଏକା
ସେ କହେ କଥା,
ଗୋପନେ ଗୋପନେ ବୁଝେ
ମରମ ବ୍ୟଥା,
ସେହି ବନ୍ଧୁ ସେହି ମୋ ସଖା;
ମୋହର ତାପିତ ପ୍ରାଣେ
ଶାନ୍ତିର ଅମୃତ ଆଣେ
କେତେ କଥା କହି ପ୍ରୀତି-ପୀୟୂଷ-ମଖା ।

ଆକୁଳେ ଲୋଡ଼ଇଁ ଯେବେ
ପାଶେ ଆସେ ଧାଇଁ ;
ଅସରନ୍ତି ପ୍ରୀତିଦ୍ୱାର ଅବାରିତ, ମୁକ୍ତ ତା'ର
ସଦା ମୋହ ପାଇଁ ।
ତାଳ, ମାନ, ଲୟରୂପୀ ନିତ୍ୟ ନବ ନବ
ମାନସ-ମୋହନ ତା'ର ନୃତ୍ତ ଅବୟବ,
ନାହିଁ ତା'ର କଠୋର ଶୁଷ୍କତା,
କିନ୍ତୁ ଅଛି ସ୍ନିଗ୍ଧ ମାଦକତା ।

ସେ ସୁନ୍ଦର, ସେ ମଧୁର ଛବି
(ମୁଁ) ଅପାର ବିସ୍ମୟେ ମୁଗ୍ଧ ହୃଦେ ଅନୁଭବି;
ସେ ଝଙ୍କାରେ କେତେ ଶାନ୍ତି, କେତେ ଉନ୍ମାଦନା,
କେତେ ଉଦ୍ଦୀପନା,
କେତେ ପୁଣି ମଧୁର ବେଦନା,
ସେ ଆଲୋକେ କେତେ ଶୀତଳତା,
ସ୍ପନ୍ଦନେ ସ୍ପନ୍ଦନେ ତା'ର
ଝରି ଝରି ସୁଧାଧାର
ଝରି ଆସେ କି ପୁଲକ, କେତେ ପବିତ୍ରତା,
ସେ ପରଶେ ସରସତା କେତେ,
ହର୍ଷ କେତେ, ତୃପ୍ତି କେତେ, କୋମଳତା କେତେ,
ସେ ନିଶ୍ୱାସେ କେତେ ଫୁଲ ଫୁଟେ,
ବିକଶଇ କେତେ କିଶଳୟ,
କେତେ ବହେ ମଧୁଗନ୍ଧୀ ମଧୁର ମଳୟ !

କୁସୁମର ରେଣୁ ବହି ପ୍ରଶାନ୍ତ ଆକାଶେ
ଉଡ଼ି ଉଡ଼ି ଆସି ବସି ପାଶେ
ସଂସାରର ଆବିଳତା, କ୍ଷୁଦ୍ରତାର ପାରେ
ଦୂରେ, ବହୁଦୂରେ ନିଏ ତୋଳି ସ୍ୱର୍ଗଦ୍ୱାରେ,
ମହାଭାବେ ମଜାଇ ଅନ୍ତର
କରେ ଚିତ୍ତ ତନ୍ମୟ, ବିଭୋର,
ଭୁଲାଏ ଦଣ୍ଡକେ ମାୟା ମର ଜଗତର;
ବୁଡ଼ିଯାଏ ସତ୍ତା ଆତ୍ମାରାମେ,
ଚଳସେ ମୁକ୍ତିର ସ୍ରୋତେ ଚିଦାନନ୍ଦ ଧାମେ



# ଧୂଆଁ

କାହୁଁ ତୁ ଆସିଲୁ କହ ଧୂଆଁ,
ଦେବାକୁ ମୋ ପରାଣେ ସାନ୍ତ୍ୱନା,
ଦଗ୍‌ଧପ୍ରାଣେ ପୁଣି ବାରେ ଦହ୍ନ
ହରିବାକୁ ଏ ମର ଯନ୍ତ୍ରଣା ? ୧ ।

ଢାଳିବାକୁ ସଞ୍ଜୀବନୀ ସୁଧା
ନିଭାଇଣ ଚିତାର ଅନଳ,
ଧୋଇବାକୁ ପାପ ତାପ ଆଦି
କରିଦେଇ ହୃଦୟ ବିମଳ ? ୨ ।

ଆଣିବାକୁ ଦୁଃଖ-ଶୋକ-ହରା
ନନ୍ଦନର ପ୍ରାଣାରାମ ଶାନ୍ତି,
କାଟିବାକୁ ଚିତ୍ତ ଅବସାଦ
ଧୂମାପ୍ଳୁତ, କୁଜ୍‌ଝଟିତ ଭ୍ରାନ୍ତି ? ୩ ।

ନାଶିବାକୁ ଅବଶ ଅଙ୍ଗରୁ
ଭ୍ରାନ୍ତ ସଂସାରର କ୍ଳାନ୍ତ-ଜ୍ୱର,
କଳଙ୍କିତ ମେଧା ଶାଣିବାକୁ
ତୁହି କି ଗୋ ଶାଣୁଆ ପଥର ? ୪ ।

* * * *

କ୍ଷୁଧା-ତୃଷ୍ଣା-ଭୁଲା ଗୋ ସୁନ୍ଦରି,
ତୋର ଗାଢ଼ ମଦିର ଚୁମ୍ବନ
ଚିତ୍ତବୃତ୍ତି ମୋହିଦିଏ କ୍ଷଣେ,
ସେହି ମୃଦୁ ମଧୁର କମ୍ପନ ।୫।

ଅଙ୍ଗେ ଯେବେ ଖେଳିଯାଉ ମୋର
ଶିରା ଶିରା ଧମନୀ ଧମନୀ,
କଳ୍ପନା ଅଗ୍ରତେ ଉଠେ ନାଚି
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ଅବନୀ ।୬।

ସୁପ୍ତ ଆତ୍ମା ସ୍ଫୁରଇ ପରଶି
ତୋ'ର ସ୍ନିଗ୍‌ଧ କିରଣ ବିମଳ,
ପଙ୍କିଳ ହୃଦୟ-ସରେ ମୋର
ଫୁଟିଉଠେ କବିତା-କମଳ ।୭।

ଜାଗିଉଠେ ଅପୂର୍ବ ପୁଲକେ
ମୋ ନୟନ ତନ୍ଦ୍ରାବିଜଡ଼ିତ,
ନବ ଭାବେ, ନବୀନ ଉଦ୍ୟମେ
ଚିତ୍ତପଦ୍ମ ହୁଏ ବିକଶିତ ।୮।

ବୁଡ଼ିଯାଏ ଅସ୍ତିତ୍ୱ ତୋ ଧ୍ୟାନେ
ଅରୂପିଣି, ଅନଙ୍ଗ-ରୂପିଣି,
ସେ କି ଶାନ୍ତି ! କି ଆନନ୍ଦ ସେହି !!
ଧୂଆଁ, ତୁ ମୋ ଜୀବନ-ସଙ୍ଗିନୀ ! ୯ ।

ଏ ଜନମେ ସେବିଅଛି ତୋତେ
ସମ୍ପଦେ, ବିପଦେ, ରୋଗେ, ଶୋକେ ;
ମରଣରେ ଧୂଆଁ ମୟ ଦେହେ
ଯିବି ଭୁଲି ନିତ୍ୟ ଧୂମ-ଲୋକେ । ୧୦



## ପ୍ରଭାତେ

ରାତିଯାକ ବିନିଦ୍ର ନୟନେ
ଚାହିଁ ଚାହିଁ କଣ୍ଟକ ଶୟନେ
ଶ୍ରାନ୍ତ ଆଖିପତା କ୍ଷଣେ ଯାଇଥିଲା ଲାଗି,
ଚକିତେ ଚମକି ପୁଣି ଉଠିଲି ମୁଁ ଜାଗି
ଶୂନ୍ୟ ମନେ, ଉଦାସ ମଗନେ ;
ଚାହିଁଦେଲି ପୂରୁବ ଗଗନେ ।

ଗଛ ଉହାଡ଼ରୁ ରବି
ଉଠିଲେ ଉଇଁ
ସକାଳେ;
ପ୍ରଥମେ ହୋଇଲୁ ଦୁହେଁ
ମୁହଁ ଚୁହାଁ ଚୁହିଁ
ସେକାଳେ ।

* * * *

ତାଙ୍କ ଆଗେ ଥିଲା ସାରା ଦିନ
ପୂର୍ଣ୍ଣ—
ଗୌରବମଣ୍ଡିତ ;
ମୋ ଦିନଟା ବିମର୍ଷ-ମଳିନ,
ଶୂନ୍ୟ—
ଲୋତକ-ସ୍ତିମିତ ।

## ପ୍ରଦୋଷେ

ଶାରଦ ଆକାଶେ ଉଇଁ
ଅଇଲେ ଶଶୀ ହରଷେ,
ରଜତ କିରଣ ଛୁଇଁ
ଉଠିଲେ ହସି ସରସେ;
ତରୁଲତା, ଫୁଲ ଉପବନ,
ଗିରି, ନଦୀ, ପ୍ରାନ୍ତର, କାନନ,
ଗାଇଲେ ବିହଗରାଜି
ଲୁଚି ଗଛ ଡାଳରେ,
ମୋହନ ସାଜରେ ସାଜି
ପ୍ରକୃତି ଉଠିଲେ ନାଚି
ଉଠିଲା ସଙ୍ଗୀତ ବାଜି
ସେହି ମଧୁ ତାଳରେ ।
କିନ୍ତୁ,
ବିଶ୍ୱ-ବିମୋହନ ସେହି
କୁହକ ମନ୍ତ୍ର
ପଶିଣି ପାରିଲାନାହିଁ
ମୋ କ୍ଷୁବ୍ଧ ଅନ୍ତର;
ମରମ ଅନ୍ଧାର ଭେଦି ଗୋଟିଏ ରଜତ ରେଖା
ହସ ହସ ମୁଖେ ତହିଁ ନ ଦେଲା ଦେଖା,
ନ ଫୁଟିଲା କଇଁଫୁଲ ଗୋଟିଏ,
ନ ଉଠିଲା ବିଷାଦର କ୍ଷୀଣ ସ୍ୱରଟିଏ ।



# ପିପାସା

ଦୁଃଖ ଦିଅ, ଦୁଃଖ ଦିଅ ମୋତେ,
ପ୍ରଭୁ ମୋର, ପ୍ରିୟ ମୋର, ହେ ଜୀବନସ୍ୱାମୀ !
ଚାହେଁନା ମୁଁ ଐଶ୍ୱର୍ଯ୍ୟର, ଆନନ୍ଦର ସ୍ରୋତେ
ଭାସିବାକୁ ସଦା, ଚଢ଼ି ପୂର୍ଣ୍ଣତାର ପୋତେ
ହରାଇ ତୁମ୍ଭଙ୍କୁ ନାଥ, ହେ ଅନ୍ତରଯାମୀ !

ଜଗାଅ ଜଗାଅ ହୃଦେ ଉଚ୍ଚ ଅଭିଳାଷ,
ନବ ନବ ଆଶା ବଳବତୀ ;
(କିନ୍ତୁ) କରିଦିଅ ମୋତେ ନିତ୍ୟ ଅଭାବର ଦାସ,
ପଦେ ପଦେ ରୋଧ କରି ଗତି ।
କର ନିଃସ୍ୱ, ଦରିଦ୍ର ଭିକାରୀ,
ଅନ୍ନ ବସ୍ତ୍ର କର ମୋତେ ମନା;
କିନ୍ତୁ ଦିଅ ଅପାର ବାସନା
ଲଭିବାକୁ କୁବେରର ଅର୍ଥ;
ତାହା କରିଦେଉ ଅର୍ଦ୍ଧପଥେ ବ୍ୟର୍ଥ
ତୁମ୍ଭର ମଙ୍ଗଳ-କର ଖର ତରବାରୀ ।

ଲୋଭନୀୟ ଯାହା କିଛି ଜଗତରେ
ଥୋଇ ଦେଇ ସବୁ ମୋ ଆଖି ଆଗରେ
କାଢ଼ିନିଅ ହାତ ବଢ଼ାଇଲି କ୍ଷଣି,
ନେଇ ପାଶେ ଆଣି ହଲିଅ ହେ ପୁଣି ।

ଜଳାଅ ହୃଦୟେ ଯଶୋଲିପ୍‌ସା ଭୟଙ୍କରୀ,
ସର୍ବକ୍ଷେତ୍ରେ ପ୍ରବେଶର ଦିଅ ଅଧିକାର
କିଞ୍ଚିତ କିଞ୍ଚିତ;
(କିନ୍ତୁ) ଦୁଇ ନାବେ ପାଦ ଦେଇ ଛୁଡ଼ାଦେଲି ପରି
ବୁଡ଼ାଅ ମଝିରେ ; କରେଁ କାତର ଚିତ୍କାର,
ହୋଇ ସର୍ବସ ବଞ୍ଚିତ ।

ଯେଉଁ ନାବେ ଗୋଡ଼ ଦେବି ଯାଉ ତାହା ବୁଡ଼,
ଯେଉଁ କାମେ ହାତ ଦେବି ଯାଉ ତାହା ପୋଡ଼,
ସବୁ ନେଇଯାଅ କାଢ଼ି,
ତୁଚ୍ଛା ରହିଥାଉ ପଡ଼ି
ଜଳନ୍ତା ଅନଳେ ତରି ମରୁମୟ

ବ୍ୟର୍ଥ ହୃଦୟର ହତାଶ କ୍ରନ୍ଦନ;
ତେବେ ଯିନା ତବ ବଜ୍ରକୂଳ ସ୍ପନ୍ଦନ
ଫୁଟିବ ହୃଦୟେ ହେ ବଣ୍ଣବନ୍ଦନ୍‌।

କର ମୋତେ ରୁଗ୍‌ଣ, କ୍ଲିଷ୍ଟ, ଦୁର୍ବଳ, ଜର୍ଜର,
କର ପ୍ରାଣ ଶରୀ ହା ହା ମୟ,
ଶତ ଯତ୍ନ ପ୍ରତିକାର, ଦେବତା ନିର୍ଭର
ନ କରୁ ମୋ ଅଙ୍ଗ ନିରାମୟ

ଆସୁ ପ୍ରାଣେ ଅଶାନ୍ତି ଅପାର,
ବ୍ୟର୍ଥ ପ୍ରୟାସର ନିଶ୍ଚେଷ୍ଟତା,
ବିଫଳତା, ଦୈନ୍ୟ, ବିକଳତା,
ନିର୍ଜ୍ଜୀବତା, ଜଡ଼ତା, ଶୂନ୍ୟତା,
ମୃତ୍ୟୁ,—ସେହି ଅନନ୍ତ ବିଶ୍ରାମ,
କ୍ଲାନ୍ତିହରି ସ୍ୱପ୍ନ ପ୍ରାଣାରାମ ।

ପୁଣି ଆସୁ କ୍ଷଣେ କ୍ଷଣେ ଜୀବନ ବିକାଶ,
ମୃତ୍ୟୁସନେ ତୁମୁଳ ସଂଗ୍ରାମ,
କ୍ଷଣେ ଶାନ୍ତି, କ୍ଷଣେ ଦୀର୍ଘଶ୍ୱାସ,
ଯାତନାର ନିତ୍ୟ ହାହାକାର,
କ୍ଷଣେ ଜୟ, କ୍ଷଣେ ପରାଜୟ,
କ୍ଷଣେ ଶାନ୍ତି, କ୍ଷଣେ ଅନିଶ୍ଚୟ,
ଜୀବନ ଓ ମରଣର ସଂଗ୍ରାମ ଅପାର

ଚାହେଁନା ହେବାକୁ ପ୍ରଭୁ ନିର୍ବେଦ, ନିଷ୍କାମ,
ଚାହେଁନା ମୁଁ ଲଭିବାକୁ ଅନନ୍ତ ବିଶ୍ରାମ,
ଚାହେଁନା ମୁଁ କରିବାକୁ ବାସନା ପୂରଣ,
ଚାହେଁନା ଜୀବନ କିବା ଚାହେଁନା ମରଣ ।

ନେଇଯାଅ ଦେଇଅଛ ଯାହା,
ଦେବ ଯାହା ମନା କର ତାହା,
ନେଇଯାଅ ଐଶ୍ୱର୍ଯ୍ୟ ସମ୍ପଦ,
ନାମ ଯଶ, ଅର୍ଥ, ମାନ, ପଦ;
ପିତା, ମାତା, ଭ୍ରାତା, ଦାରା ସୁତା-ସୁତ
ନ ରହନ୍ତୁ କେହି ଭବେ;

ରହିଲେ ରହନ୍ତୁ ଆପଣାର ସୁଖେ
ଜାଳଦେଇ ନିଆଁ ଲେଣ୍ଡୁଆ ମୋ ମୁଖେ,
ଗୋଇଠା ପ୍ରହାର ଶିରେ ଅବିରତେ
ଦୂର କରି ଦେଇ ଜଗତ ଅଗ୍ରତେ,
ଆହା ବୋଲି ପଦେ ବୋଲିବାକୁ କେହି
ସାହା ନ ରହନ୍ତୁ ଲବେ ।

ଦୁନିଆ ଦୁଆରେ ପ୍ରୀତି-କାଙ୍ଗାଳ ମୁଁ
ଜଗତରେ ମୁହିଁ ସ୍ନେହ-ଭିକାରି,
ମିଠା କଥା ପଦେ ପ୍ରାଣସଙ୍ଗୀନ ମୋ
ଯାହାଲାଗି ହୁଏ ପରାଣ ଘାରି,
ସେହି ସ୍ନେହ ପ୍ରୀତି କରି ମୋତେ ମନା,
ମଣନ୍ତୁ ଆତ୍ମୀୟେ ଅଚହ୍ନା ଅଜଣା,
ଚିର ବନ୍ଧୁ କରୁ ପଦପ୍ରହାର ଗୋ,
ପ୍ରିୟ ମିତ କରୁ ଦୂରୁଁ ଜୁହାର ଗୋ,
ହସନ୍ତୁ ଫସାର ସାରି,
କାନ୍ଦି କାନ୍ଦି ବୁଲେ          ଦ୍ୱାର ଦୁଆରେ ଗୋ,
ବୁହାଇ ଲୋତକଧାରି ।

ମୋ ନାମେ ଜଗତ କରୁ ଭ୍ରୂକୁଞ୍ଚିତ,
କରୁ ମୋତେ ଉପହସିତ, ଲାଞ୍ଛିତ,
ପର ପଦେ ଲୋଟୁ ମଥା,
ଧନ ଯାଉ ମୋର          କଉଡ଼ିଣା ହୋଇ
ସହି ପର କଟୁ କଥା ।

ଅବମାନନାର ଛତା ଟେକ ଶିରେ
ଘୁରିଅ ହେ ଦେଶେ ଦେଶେ,
ତାଡ଼ନ, ଭର୍ତ୍ସନ କରି ଗଣ୍ଠି ଧନ
ବୁଲିବି ଉଦାସ ବେଶେ;
ପୀଡ଼ିତ, ଦଳିତ, ମଥିତ, ପେଷିତ,
ଭାଙ୍ଗିଯାଉ ମୋର ହୃଦୟ ଇଷିତ,
ଝରୁ ବୁକୁଁ ରକ୍ତଧାର,
ହତାଶା-ବହ୍ନିରେ ପୋଡ଼ିହୋଇ ହେଉ
ଭସ୍ମୀଭୂତ ଘରଖାର ।

ନ ରହନ୍ତୁ କେହି ଏ ମହୀମଣ୍ଡଳେ
ଚାହିଁବାକୁ ଟେକ ଦୁଇ ଆଖି,

ଏତିକ ମୋହର ପ୍ରାଣର ବାସନା,
ଅନ୍ତର୍ଯ୍ୟାମୀ ତୁମ୍ଭେ ତାର ସାକ୍ଷୀ;
ସେକ୍ଷଣେ ଯେବେ ମୁଁ ଅତି ଆରତରେ
କାହିଁ ଅଛ ବୋଲି ଡାକିବି କାତରେ,
ହେ ପିତା, ହେ ମାତା, ହେ ବନ୍ଧୁ, ହେ ଭ୍ରାତା,
ହେ ଜୀବନସ୍ୱାମୀ, ହେ ବିଶ୍ୱବିଧାତା,
ସେହି ବ୍ୟାକୁଳତା ପାରିବ କି ସହି,
ପାରିବ କି ତେବେ ଛାଡ଼ି ମୋତେ ରହି ?
ସେ ଆହ୍ୱାନ ଲଙ୍ଘି ନ ପାରିବ ଛଳି,
ଆସନ ତୁମ୍ଭର ନିଶ୍ଚେ ଯିବ ଟଳି ।

(ତେବେ) ମଧୁର ବେଶେ ଆସିବ ଧାଇଁ
ଦେବ କେତେ ସାନ୍ତ୍ୱନା,
(ତବ) ମୋହନ କରପରଶ ପାଇ
ଘୁଞ୍ଚିଯିବ ଯନ୍ତ୍ରଣା;
କହିବ ମୋତେ ମଧୁର ବାଣୀ
ଚିର ଦୁଃଖପାସୋରି,
ଢାଳିବ ମୋର ଶିରେ ଆଣି
ଶାନ୍ତି ସୁଧା-ପସରି ।

ସେ ରୂପ ରଖିବି ମୁଁ ନୟନେ ନୟନେ,
ବିଶ୍ୱେରେ ଦେଖିବି ମୁଁ ଜାଗ୍ରତେ ଶୟନେ,
ପୂର୍ଣ୍ଣ ହେବ ହୃଦୟ ମୋର
ନନ୍ଦନର ସଙ୍ଗୀତେ;
ତୃପ୍ତ ହେବ ଅତୃପ୍ତ
ଆତ୍ମା ତବ ଇଙ୍ଗିତେ ।

ଭାସିବ ମୋ ନୟନ-ସରେ
ସେ ସୁନ୍ଦର ମୂରତି,
ନାଶିବ ସେ ପ୍ରେମରସରେ
ପରାଣର ଆରତି;
ତୁଟିଯିବ ସବୁ ଭ୍ରାନ୍ତି ଗୋ
ଫୁଟି ନୟନେ ସେ କମନୀୟ କାନ୍ତି,
ମଉଳା ଫୁଲଟି ଉଠିବ ମୁକୁଳି,
ଚହଟି ଉଠିବ ବିହଙ୍ଗ କାକଳି,
ଭଙ୍ଗା ବୀଣା ପୁଣି ଉଠିବ ଝଙ୍କାରି
ଲଭିବ **ଶାନ୍ତି, ଶାନ୍ତି** ଗୋ ।

## ଅନନ୍ତ ଯାତ୍ରୀ

ପଣ୍ୟହୀନ ମୋର ଏହି ଜୀର୍ଣ୍ଣ ତରଣୀଟି
ଅକୂଳ ସାଗରେ ଏକା ଯାଉଅଛି ବାହି,
ଘୂର୍ଣ୍ଣି ବାୟୁ ଚଉପାଶୁଁ ଦେଉଅଛି ପିଟି,
ନାହିଁ ଲକ୍ଷ୍ୟ, ନାହିଁ ଶ୍ରାନ୍ତି, ସାହା ନାହିଁ କେହି ।

ଆଶା ଓ ନୈରାଶ୍ୟ ମଧ୍ୟେ ଲାଗିଛି ସଂଗ୍ରାମ,
ରଙ୍ଗଭୂମି ତହିଁ ପୁଣି ମୋର ହୃଦସ୍ଥଳ;
ହେଉଛି ଅଶେଷ ଧ୍ୱଂସ,—ସୃଷ୍ଟି ଅବିରାମ,
ଅସହ୍ୟ ଯାତନା ସହି ପରାଣ ବିକଳ ।

ଜୀବନ ଓ ମରଣର ସନ୍ଧିସ୍ଥଳେ ମୁହିଁ
ଦେଖୁଛି ଏ ସମରର ଫଳ ଅନିଶ୍ଚିତ,
କ୍ଷଣେ ଏକ ଜିଣେ, ପୁଣି କ୍ଷଣେ ଆନ ଜୟୀ,
ପ୍ରଚଣ୍ଡ ପ୍ରହାରେ ମୋର ଗାତ୍ର ଜର୍ଜ୍ଜରିତ ।

ଅପାର ଜଳଧି ବକ୍ଷେ ଭାସୁଛି ଆକୁଳେ,
ଭୀମ କାଳ ଊର୍ମ୍ମିମାଳ ଘେରିଛି ନିରତେ;
ଯାଉନାହିଁ ବୁଡ଼ି, କିବା ଲାଗୁ ନାହିଁ କୂଳେ,
ଏକାକୀ ଅନନ୍ତ ଯାତ୍ରୀ ଅନନ୍ତର ପଥେ ।

—०—

## ମାନସୀ ପ୍ରତିମା

ହୃଦୟ ଉନ୍ମତ୍ତ ହୋଇ କେଉଁଆଡ଼େ ଧାଉଁ,
କି ଉଦ୍ଦାମ ଭାବେ ସଦା ହେଉ ରେ ବିଭୋର;
କି-ଗତ ପରାଣେ ସଦା ଏକମୁଖୀ ଥାଉ,
କାହିଁ ସେ ଲାବଣ୍ୟନିଧି ତୋର ମନ-ଚୋର ?

ସେ କି ରେ ଉତ୍ତର-ମେରୁ-ଅପ୍ସ୍ମାନ୍ତ-ମଣି,
ଆରାଧ୍ୟ ଦେବତା ସେ କି ପ୍ରୀତ ହୃଦୟର;
ସେହି କି ରେ ତ୍ରିଭୁବନ ସୁଷମାର ଖଣି,
କବିର କଳ୍ପନା ସେ କି ମଧୁର-ସୁନ୍ଦର ?

ନାହିଁ କି ସ୍ୱରୂପ ତାର ? କଳ୍ପନା ଆଦର୍ଶ
ସେ କି ? ତ୍ରିଭୁବନମୟ ରହିଅଛି ଭରି;
ନାହିଁ କି ରେ ତାର ରୂପ, ରସ, ଗନ୍ଧ, ସ୍ପର୍ଶ,
ଇନ୍ଦ୍ରିୟ-ଅଗମ୍ୟ ? ତାକୁ ଧରିବୁ କିପରି ?

ଦିବ୍ୟ ଦୃଷ୍ଟି ଦେଇ କରି ଅନ୍ତରର ସୀମା
ଦେଖି ରେ ମାନସ ମଧ୍ୟେ ମାନସୀ-ପ୍ରତିମା ।

—०—



# ପ୍ରାର୍ଥନା

ହସ ଗୋ, ହସ ଗୋ ବାରେ,
ଦେଖେଁ ମୁଁ ନୟନ ଭରି,
ହସିଉଠୁ ଚରୁଲତା
ଫୁଟିଲା କୁସୁମ ଧରି ।

କାନ୍ଦ ଗୋ, କାନ୍ଦ ଗୋ ବାରେ,
ବରଷୁ ଶିଶିରରାଶି,
ଝରନ୍ତୁ ବାରିଦ-କୂଳ
ଆକାଶରେ ଭାସି ଭାସି ।

ବୁଲ ଗୋ, ବୁଲ ଗୋ ବାରେ,
ବୁଲନ୍ତୁ ଜଗତସାରା,
ବୁଲନ୍ତୁ ପ୍ରକୃତି ସନେ
ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ତାରା ।

ଗାଅ ଗୋ, ଗାଅ ଗୋ ବାରେ,
ଅମିୟ ସଙ୍ଗୀତ ଫୁଟୁ,
ଭୁବନେ ବିହଗ-ତାନେ
କଣ୍ଠେ କଣ୍ଠେ ବାଜିଉଠୁ ।

ମେଲଅ, ମେଲଅ ବାରେ,
ସୁନ୍ଦର ନୟନ ତବ,
ଫୁଟୁ ନବେ ଶୁକ ତାରା,
ଉଠୁ ରବି ଅଭିନବ ।

ପକାଅ ନିଶ୍ୱାସ ବାରେ,
ମହକୁ ଜଗତମୟ,
ସୌରଭ ନିଅନ୍ତୁ ଘ୍ରାଣି
କାନନେ କୁସୁମଚୟ ।

ଫେଡ଼ ଗୋ ଓଢ଼ଣା ବାରେ,
ମୁଖ ଟେକ ଦିଅ ଚାହିଁ,
ନିଶା ଅନ୍ତେ ଉଷା ଆସୁ,
ଏବେ ଯାଉ ରାତି ପାହି ।



# ବିବିଧ କବିତା

## ଯୁଗାବତାର

ଦୁଷ୍କୃତ ବିନାଶ, ସନ୍ଥ ଜନ ପରିତ୍ରାଣ
କାରଣେ ଧରାରେ ଅବତରି ମହାପ୍ରାଣ,
ସ୍ୱର୍ଗର ବାରତା ନେଇ ଆହେ ଦେବଦୂତ,
ପୁଣ୍ୟଭୂମି ଭାରତକୁ କରିଅଛ ପୂତ ;
ଧର୍ମ ସଂସ୍ଥାପନ ପାଇଁ ଯୁଗେ ଯୁଗେ ପୁଣି
ଅବତରି ଐଶୀ-ଶକ୍ତି ଉଚ୍ଛ୍ୱାସଇ ମଣି ।

ସବ୍ୟସାଚୀ ! କରିଅଛ ସ୍ତମ୍ଭିତ ଜଗତ,
ଲଭିଛ ତପସ୍ୟାବଳେ ଅସ୍ତ୍ର ପାଶୁପତ ;
ଅଜେୟ 'ଅହିଂସା' ବାଣ—ମହାଶକ୍ତି ଧରି
କରେ ଶତ୍ରୁ ସମ୍ମୋହନ କଲ୍ୟାଣ ବିତରି ।

ଭାରତର ଯେତେ ଦୁଃଖ, ଯେତେକ ବେଦନା,
ଯେତେକ ଆକାଙ୍‌କ୍ଷା, ଆଶା, କର୍ମ ଓ ସାଧନା,
ଯେତେ ଭୂତ, ଭବିଷ୍ୟତ, ଯେତେକ ଅତୀତ
ମୂର୍ତ୍ତ ହୋଇ ତୁମଠାରେ ହେଲା ରୂପାୟିତ ।

'ବିପଦ' ପାରିନ କରି ଚିତ୍ତକୁ ବିକଳ,
'ଶ୍ରାନ୍ତି' ହରି ନାହିଁ ତବ ହୃଦୟର ବଳ,
ଛୁଇଁନ କଳ୍ପନା ସୀମା କେବେହେଁ 'ହତାଶା' ;
ନୁହେ କି 'ବ୍ୟର୍ଥତା' ଶବ୍ଦ କାପୁରୁଷ ଭାଷା ?
ଜାଣିଛ ନିଃସଙ୍ଗ କର୍ମେ ନାହିଁ ପରାଜୟ,
ରଖିଛ ଈଶ୍ୱରେ ଯେଣୁ ଜୀବନ୍ତ ପ୍ରତ୍ୟୟ ।

ହେ ମୋହନ, କି ମୋହନ ମନ୍ତ୍ର ଦେଇ ଭୁଲି
ଭାରତର ବକ୍ଷେ ଦେଲ ଅଗ୍ନି-ଶିଖା ଜାଳି !
ଜଗାଇଲ କୋଟି ପ୍ରାଣେ ନବ ଉନ୍ମାଦନା,
ଖେଳିଗଲା ସାରା ଦେଶେ ତପ୍ତ ଉଦ୍ଦୀପନା !

ତୁମରି ସାଧନା ଫଳେ ଆହେ ଭଗୀରଥ,
ପ୍ରେମ-ମନ୍ଦାକିନୀ-ଧାରା ପ୍ଲାବିଲା ଭାରତ,
ହିମାଚଳୁଁ କୁମାରିକା ଅଖଣ୍ଡ ମଣ୍ଡଳେ
ମହାମୁକ୍ତି ମନ୍ତ୍ର ଜର୍ମି ଉଠିଲା ଉଚ୍ଛଳେ,
ବିନ୍ଧ୍ୟଗିରି-ଶୃଙ୍ଗେ ତା'ର ମନ୍ଦ୍ର ପ୍ରତିଧ୍ୱନି
ଗମ୍ଭୀରେ ଉଠିଲା ଗର୍ଜି ବିଦ୍ରୋହ ଅଶନି !

ଗହନ ମାନବ-ଧର୍ମ ଆଚରି ଆପଣେ
ଶିଖାଇଲ ମାନବର ଆଦର୍ଶ ଜୀବନେ;
ସତ୍ୟର ମହିମା ଆପେ କରିଣ ପରୀକ୍ଷା
ଜଗତ ଜନକୁ ଦେଲ ସେହି ମନ୍ତ୍ର ଦୀକ୍ଷା ।

ବିଭାସିଲା ଦିଶି ଦିଶି ସତ୍ୟର ଆଲୋକ,
ଅମୃତେ ଉଠିଲା ପୂରି ଦ୍ୟୁଲୋକ ଭୂଲୋକ;
ହିଂସା-ଦ୍ୱେଷ-ତାପ-କ୍ଳିଷ୍ଟ ମାନବ ସନ୍ତାନ
ଲଭିଲା ପରମ ଶାନ୍ତି କରି ତହିଁ ସ୍ନାନ ।

ହେ ମହର୍ଷି, ଜଗଦ୍‌ଗୁରୁ, ହେ ମହାମାନବ,
ସହସ୍ର ପ୍ରଣତି ମୋ'ର ଶ୍ରୀ ଚରଣେ ତବ ।



## ଗାନ୍ଧୀ ଜୟ

'ଗାନ୍ଧୀ' 'ଗାନ୍ଧୀ' କହୁଛ କାହାକୁ,
କାହାକୁ ଦେଉଛ ଗୋଟିଏ ରୂପ ?
ହାଡ଼ ମାଉଁସରେ ନୁହେ ତ ଗଢ଼ା ସେ,
'ଗାନ୍ଧୀ' ଯେ ଏକ ଅସର-ଧୂପ !
ସଉରଭ ଯାର ମହୁଆ ଭରୀ,
ଭାରତଟାଯାକ ମୁଗ୍‌ଧ କରିଛି—
ସ୍ନିଗ୍‌ଧ କରିଛି ସାରା ଏ ଧରା ।

ଜନ୍ମ ନାହିଁ ତା',—ମୃତ୍ୟୁ ନାହିଁ ତା',
ଅଜର ସେ ଏକ ରଶ୍ମିରେଖା,
ଉଜଳଦେଇଛି ଦୀପ୍ତି ଯାହାର
ଲକ୍ଷ ଜନର ବକ୍ଷ ଏକା !
ଅବୟବ ତା'ର କାହିଁ ରେ କାହିଁ ?
ବିଶ୍ୱ-ବିଜୁର ଆତ୍ମା ସିଏ ରେ,
ଆଦି ନାହିଁ ତା'ର ଅନ୍ତ ନାହିଁ !

'ଗାନ୍ଧୀ' ଯେ ଏକ ଭାବର ଆବହ
ମୂର୍ତ୍ତି ହୋଇଛି ଅମର ରାଗେ,
ଝଙ୍କାର ଯାର କୋଟି ମାନବର
ଅନ୍ତର-ତାରେ ଆପେ ସେ ଜାଗେ;
ମରଣକୁ କରେ ଜୀବନ ଦାନ,
ଜୀବନ ସର୍ବିରୁ ଅଞ୍ଜଳି ଭରି
କରଇ ମୁକ୍ତି-ପୀୟୂଷ ପାନ ।

ଶାନ୍ତି, ସତ୍ୟ, ପୀରତି ଏ ତିନି
ଏକ ଆଧାରରେ ହୋଇଣ ମୂଳ
ବିରଚିଦେଲା ରେ ମହା ମହୀରୁହ
ବିଜୟ-ସ୍ତମ୍ଭ ଊର୍ଦ୍ଧ୍ୱ-ଚୂଳ;
ଧର୍ମର ହେଲା ଅଭ୍ୟୁଦୟ,
ଘୋଷିଲା ବିଶ୍ୱ ଏ ମହାମନ୍ତ୍ର
'ଜୟ ଜୟ ଗାନ୍ଧୀ ଜୟରେ ଜୟ' ।

## କର୍ମୀ

କିଏ କହେ ଏ ସଂସାର ଖେଳଘର ମାୟା,
କିଏ କହେ ଜୀବନଟା ସ୍ୱପନର ଛାୟା ?
ଆଜ ବାଦେ କାଲି ଭୁଲି ଆଖି ଦେଲେ ବୁଜି
ଯାହା କରିଥିବୁ ସବୁ ଯିବ ଭାଙ୍ଗିରୁଜି ।
ସତେ କି ସଂସାର ମିଥ୍ୟା, ମିଥ୍ୟା ଏ ଜୀବନ,
ଏ ଜଗତେ ଯାହା କିଛି, ଅଳୀକ ସ୍ୱପନ ?
ସତ୍ୟ ନୁହେ ଚନ୍ଦ୍ର, ସୂର୍ଯ୍ୟ, ଆକାଶର ତାରା,
ମଳୟ ଅନିଳ, ପୁଣି ବରଷାର ଧାରା ?
ଶ୍ୟାମଳ କାନନଶ୍ରେଣୀ, ନୀଳ ଗିରିମାଳା,
ସତ୍ୟ ନୁହେ,—ଏ ପୃଥିବୀ ଭୁଲ ପାନ୍ଥଶାଳା ?
ବାସ୍ତବର ସତ୍ତା ନାହିଁ ମାନବ ଶରୀରେ,
ମାନବର ପ୍ରାଣ, ବୁଦ୍ଧି ସତ୍ୟ ନୁହେ କି ରେ ?
ଏ ଯେଉଁ ବିଶାଳ ସୃଷ୍ଟି ମହା ମହୀୟାନ,
ସବୁ କି ରେ ଲକ୍ଷ୍ୟହୀନ ମିଥ୍ୟାର ଭିଆଣ ?

କେବେଁ ନୁହେଁ, କେବେଁ ନୁହେଁ, ଭ୍ରମ, ଭ୍ରମ, ଭ୍ରମ !
ମନସ୍ୱୀ ସ୍ରଷ୍ଟା ସର୍ଜନା ନୁହେ ବୃଥା ଶ୍ରମ ।
ଅପୂର୍ବ କୌଶଳେ ଏ ଯେ ହୋଇଛି ରଚିତ,
ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଘେନ ଆଦର୍ଶ ବିହିତ ।
ଅନ୍ତହୀନ ଗତି ଧରି ଚାଲେ ଅଗ୍ରସରି
ଏ ଜୀବନ, ଆପଣାକୁ ପୂର୍ଣ୍ଣତର କରି ।
ଏ ଜୀବନ ଧାରା ସହ ସମତାଳ ରଖି
ଚାଲ ରେ ଆଗେଇ ଚାଲ, କାଳେ ଯିବୁ ଠକି ।
ଆଳସ୍ୟ, ଔଦାସ୍ୟ ହୁଡ଼ ପଛେ ଗଲେ ପଡ଼ି
ସମୂଳେ ବିନାଶ ତୋର ହେବ ସେହି ଘଡ଼ି ।
ଏ ସଂସାର ନୁହେ ମିଥ୍ୟା—ପୀଠ ସାଧନାର,
କର୍ମୀ ଯେତୁ ଏହି କ୍ଷେତ୍ରେ ସିଦ୍ଧି ଧ୍ରୁବ ତା'ର ।
ଜୀବନକୁ ମଣି ସତ୍ୟ, କଠୋର, ବାସ୍ତବ
କର କର୍ମ ନିୟୋଜଣ ସର୍ବ ଶକ୍ତି ତବ ।

# ୧୯୪୨ ମନ୍ୱନ୍ତର

ଇତିହାସ ପୁରାଣରେ ପଢ଼ିଥିଲୁଁ, ଅବା
ଶୁଣିଥିଲୁଁ କଥା କିମ୍ବଦନ୍ତୀ,
ମାତ୍ର ନିଜ ନୟନରେ ଦେଖିଲୁଁ ଏଥର
ମନ୍ୱନ୍ତର କରାଳ ମୂରତି ।

ଲାଗିଲା ଭୀଷଣ ରଣ ବ୍ୟାପି ବସୁନ୍ଧରା,
ଟଳମଳ କମ୍ପିଲା ଅବନୀ,
ସେ ବେଗ ସଂଘାତ କିବା ବାଜିଲା ଭାରତେ
ଚମକାଇ ଭାରତ-ଜନନୀ ।

ବ୍ୟାପିଲା ବିପ୍ଳବ-ବହ୍ନି ଜଳି ହାଉ ହାଉ
ଗ୍ରାମେ ଗ୍ରାମେ, ନଗରେ ନଗରେ,
ସେହି ଯଜ୍ଞ-ହୁତାଶନେ କେତେ ନରନାରୀ
ପ୍ରାଣାହୁତି ଦେଲେ ଅକାତରେ ।

ମୁକ୍ତିପ୍ରୟାସୀ ଯେତେ ବରେଣ୍ୟ ମନୀଷୀ
ଅତର୍କିତେ ବରିଲେ ବନ୍ଧନ,
କାରାକକ୍ଷେ ଦୀର୍ଘ ଦିନ ରହି ରୁଦ୍ଧଶ୍ୱାସେ
ସହିଲେ ସେ ଘୋର ନିର୍ଯାତନ ।

ଦେଶର ଦୃଢ଼ତା ତେବେ ନଗଲା ତ ଭାଙ୍ଗି
ଦିବାନିଶି ହୋଇ ବିଦଳିତ,
ମୁକ୍ତିର ଅରୁଣାଲୋକ ଉଠିଲା ଉଦ୍ଭାସି
ଭାରତର ପ୍ରାଣେ ଶୃଙ୍ଖଳିତ ।

ପ୍ରଳୟର ଝଞ୍ଜାବାତ ବହିଲା ଏକାଳେ
ପ୍ରକୃତିର ପ୍ରଚଣ୍ଡ ତାଣ୍ଡବେ,
ଉତ୍ତାଳ ତରଙ୍ଗମାଳେ କ୍ଷିପ୍ତ ମହୋଦଧି
ଉଲ୍ଲଙ୍ଘିଲା ବେଳାଭୂମି ଲବେ

ବୁଡ଼ିଗଲା ଗୃହଁ ଗୃହଁ ପ୍ରାଚୀକୂଳ ଦେଶ,
ବୃଶଅଟ୍ଟେ ଉକଟ ଟଙ୍କାର
ପ୍ରଳୟର ଧ୍ୱଂସଲୀଳା ଲାଗିଗଲା ବେଗେ
ଚରାଚର କରି ଏକାକାର

ଦୁର୍ଭିକ୍ଷ କରାଳ ଗ୍ରୁସ୍ଥା ମାଡ଼ିଆସେ ଘରେ,
ସାରା ଦେଶେ ଉଠେ ହା ହା ରବ,
ପଛେ ପଛେ ମହାମାରୀ ବ୍ୟାଦିତ-ବଦନା
ବାଟେ ଘାଟେ ଗୁଇଯାଏ ଶବ

ବିକ୍ଷୁବ୍ଧ ଭାରତ-ଆତ୍ମା ଦୃଷ୍ଟିପାତେ ପଡ଼ି
ଛୁଟେ ରଡ଼ି 'ଖାଦ୍ୟ ଖାଦ୍ୟ ଖାଦ୍ୟ',
ସେ ଡାକେ ଉଠିଲା ଥରି ବ୍ରହ୍ମାଣ୍ଡମଣ୍ଡଳ,
କ୍ଷଣେ ଗଲା ଅମାନିଶା ପାହି ।

ଦୀର୍ଘ ନିଷ୍ପୀଡ଼ନ ଶୋଷେ ଭାରତଲକ୍ଷ୍ମୀର
ଅନ୍ତ ହେଲା ଅନଳ ପରୀକ୍ଷା,
ଉଠିଲେ ଚେତନ ପାଇ ଭାରତ ସନ୍ତାନ
ନବ ଯୁଗେ ଲଭି ନବ ଦୀକ୍ଷା ।



## ସଂସାର ସ୍ୱର୍ଗ

ଈଶ୍ୱର ସୁନ୍ଦର ସୃଷ୍ଟି, ଅପୂର୍ବ ରଚନା,
ସର୍ବସ୍ୱ ରହିଛି ପୂରି ଅମୃତର କଣା ।

ଚନ୍ଦ୍ର, ସୂର୍ଯ୍ୟ ବର୍ଣ୍ଣମୟ ଆଲୋକର ଖେଳ,
ନୀଳ ନଭେ କି ସୁନ୍ଦର କୋଟି ତାରା ମେଳ !

ନିର୍ଝର ଝଙ୍କାରମୟ ନୀଳ ଗିରି-ଶୋଭା,
ସାଗର ଲହରୀ ନୃତ୍ୟ କେଡ଼େ ମନୋଲୋଭା !

ଶ୍ୟାମ-ଶିରୀ-ବିମଣ୍ଡିତ ତରୁ ଗୁଳ୍ମ ଲତା,
ଜଳେ ସ୍ଥଳେ ପ୍ରସ୍ଫୁଟିତ ପୁଷ୍ପ ମଧୁରତା
କରିଛି ଏ ଧରଣୀକୁ ସୁନ୍ଦର ସୁଠାମ;
ଆନନ୍ଦେ ରହିଛି ଭରି ଏହି ଧରାଧାମ ।

ଦୟା, କ୍ଷମା, ତ୍ୟାଗ, ପ୍ରୀତି, ସ୍ନେହ, ଅଭିମାନ
କରିଅଛି ଜୀବନକୁ ମଧୁର ମହାନ ।

ଧୀର ଚିତ୍ତେ ଆଖି ଖୋଲି ଚାହିଁ ଦେଖ ଥରେ,
ସ୍ୱର୍ଗର ସନ୍ଧାନ ଲଭ ଏହି ଜଗତରେ ।

କେହି କହେ, ଏ ସଂସାର ଦୁଃଖର ଆଗାର,
ଜୀବନେ ରହିଛି ପୂରି ଦୈନ୍ୟ ହାହାକାର,
ଅଶାନ୍ତିର ଗନ୍ତାଘର ଏ ଦୁନିଆ ଗୋଟି,
ଘେରି ରହିଛନ୍ତି ଅରି-ପୁଞ୍ଜ କୋଟି କୋଟି ।
ହିଂସା, ଦ୍ୱେଷ, ଜରା, ବ୍ୟାଧି, ମୃତ୍ୟୁ ଆଦି କରି
ଅହର୍ନିଶ ଚଉପିଠି ରହିଛନ୍ତି ଭରି ।

ମିଥ୍ୟା, ମିଥ୍ୟା, ମିଥ୍ୟା ଏହୁ—ନୁହେଁ ଏ ସଂସାର
ଦୁଃଖର ଆକର, ନୁହେଁ ନରକର ଦ୍ୱାର ।

---

## ନିଭୃତ ନିଶୀଥେ

ନିଶାକାଳେ ଏକାକୀ ମୁଁ ବସି ବିଜନେ ଏକାସନେ
ବିଜନ ଚଟିଣୀ ଛାତରେ ଚାହିଁଥିଲି ଶୂନ୍ୟମନେ ;
ମଳିନ ଦ୍ୱାଦଶୀ ଚନ୍ଦ୍ର ଦୂର ପଥ ଚାହିଁ ଚାହିଁ
ଅଳସେ ପଶ୍ଚିମ-ପ୍ରାନ୍ତେ ଢଳି ଢଳି ପଡ଼େ ଯାଇ ।
ପ୍ରକଟେ ତା ପ୍ରତିଛବି ସରିତର ସ୍ୱଚ୍ଛ ନୀରେ,
କୋମଳ ସଲିଳ-ଶେଯେ ପଡ଼ୁଛି କି ଗଡ଼ି ଧୀରେ !
ଉଜାଗରେ ଭ୍ରମି ଭ୍ରମି ଆସିଛି ସେ ଥକା ହୋଇ,
ହେଲା ଆସି ନିଶି ଶେଷ, ଏବେ ଯାଇ ପଡ଼ୁ ଶୋଇ ।
ବୁଡ଼ି ବୁଡ଼ି ଯାଏ ଚନ୍ଦ୍ର ଅସ୍ତାଚଳ ଶିରୋଦେଶେ,
ଶେଷ ଜ୍ୟୋତିରେଖା ତା'ର ହେଲା ଲୀନ ଅବଶେଷେ ।
ମାଡ଼ିଆସେ ସୀମାହୀନ ଅନ୍ଧକାର ରାଶି ରାଶି
ଘନ ଘୋର ତମିସ୍ରାରେ ବସୁନ୍ଧରା ଦେଲା ଗ୍ରାସି ।
କି ଗମ୍ଭୀର ନୀରବତା ଅଣୁ ପରମାଣୁ ଭରି
ଦିଗନ୍ତ ଗର୍ଭରେ ବ୍ୟାପି ଜୀବନ୍ତ ମୂରତି ଧରି !
ସେ ବିରାଟ ଶୂନ୍ୟତାରେ ସତ୍ତା ମୋର ଥିବା ଲୁପ୍ତ,
ନ ପାରିଲି ଜାଣି ମୁହିଁ ଜାଗ୍ରତ ଅଥବା ସୁପ୍ତ ।
ସହସା ଉଠିଲା ସ୍ଫୁରି କି ସଙ୍ଗୀତ ମହାସ୍ୱାନ !
ବ୍ୟୋମେ ବ୍ୟୋମେ ପ୍ରସରେ ତା ଅଖଣ୍ଡିତ ସମତାନ ।
ଉନମତ ନୃତ୍ୟରତ ନଭେ ଗ୍ରହ-ତାରାରାଜି,
ଭୂଧର-ଶିଖରେ ତା'ର ପ୍ରତିଧ୍ୱନି ଉଠେ ବାଜି ।
ସେହି ବିଶ୍ୱ-ସଙ୍ଗୀତର ତାନ ଲୟେ ଅବିରତ
ଉଠଇ ଝଙ୍କାରି ମୋ'ର ପ୍ରାଣତନ୍ତ୍ରୀ ଅନାହତ ।

---

# ହିଟ୍‌ଲରଙ୍କ ସ୍ୱପ୍ନ

ଘନ ବନ-ସମାକୀର୍ଣ୍ଣ ଗୁପ୍ତ ଶୈଳବାସେ
ହିଟ୍‌ଲର ବସିଲେ ଏକାକୀ
ଚିନ୍ତାମଗ୍ନ ଆଖି ବୁଜି ଆକୁଞ୍ଚିତ ଭ୍ରୂର
ବେନି ହାତ ବେନି କାଖେ ଜାକି ।

ପୃଥିବୀର ମାନଚିତ୍ର ଥୁଏ ନେତ୍ର ଆଗେ
ଜଳ, ସ୍ଥଳ, ଅମ୍ବର ସହିତ,
ନାନା ବର୍ଣ୍ଣେ ସୀମାଙ୍କିତ ନାନା ରାଷ୍ଟ୍ରଚୟ
ମାନବର କଳ୍ପନାବନ୍ଧିତ ।

ଏକ ଉପାଦାନେ ଗଢ଼ା ଏ ମାନବ ଜାତି,
ତହିଁ କାହିଁ ଥିବ ଏତେ ଭେଦ,
ଏକ ବିଧାତାର ସୃଷ୍ଟି ଅଖଣ୍ଡ ଏ ଧରା,
ଏଠି କାହିଁ ଏତେ ବ୍ୟବଚ୍ଛେଦ ?

ମାନବ ମାନବ ମଧ୍ୟେ ଲାଗିଛି ସଂଗ୍ରାମ
ଆନେ ଦଳ ବଡ଼ ହେବା ପାଇଁ,
ଈର୍ଷା, ଦ୍ୱେଷ, ହିଂସା ସଦା କରେ ରାଜପଣ,
ଏହାର କି ପ୍ରତିକାର ନାହିଁ ?

ଘୁଞ୍ଚି ଘୁଞ୍ଚି ମାଡ଼ିଆସେ ତନ୍ଦ୍ରାର କୁହୁଡ଼
ହିଟ୍‌ଲର ମସ୍ତିଷ୍କ ଆବରି,
ସୁପ୍ତି ପାରାବାର ଗର୍ଭେ ବୁଡ଼ିଗଲେ ବୀର,
କିଏ ନେଲା ବାହ୍ୟ ଜ୍ଞାନ ହରି ।

ସହସା ଖସିଲା ନଭୁଁ ଦୀପ୍ତ ତେଜପୁଞ୍ଜ
ତହଟାଇ ଘନ ଅନ୍ଧକାର,
ଅଦ୍ଭୁତ ପୁରୁଷ ଏକ ମସୀ-କୃଷ୍ଣକାୟ
ସେ ଦୀପ୍ତିରୁ ହୋଇଲେ ବାହାର ।

ଏକ କରେ କରବାଳ, ଆନେ ଅଗ୍ନିହୁଳା,
ଘୋଷିଲେ ସେ ଗମ୍ଭୀରେ ଉଚ୍ଚାରି,

ପ୍ରଳୟର ଦୂତ ମୁହିଁ ମହାକାଳରୂପୀ
ତୋହଠାକୁ ଆସିଛି ବର୍ବର ।
ସାମ୍ୟ ଘେନା ବିଶ୍ୱ ଶାନ୍ତି ଆସିବ ବା କାହିଁ ?
'ବୈଷମ୍ୟ' ଯେ ପ୍ରକୃତିର ରୀତି,
ଶିଖାଇ ବୁଝାଇ କେବେ ଆସେ କି ଶୃଙ୍ଖଳା,
କେ ଲଂଘିବ ସ୍ୱଭାବର ଗତି ?

ଧ୍ୱଂସ, ଧ୍ୱଂସ, କର ଧ୍ୱଂସ ନିର୍ମମ ପ୍ରହାରେ
ବର୍ଦ୍ଧିଷ୍ଣୁର ଶିର ଊର୍ଦ୍ଧ୍ୱ ଦେଶେ,
ସମ-ସ୍ତର ଦିଅ କରି ମାନବସମାଜ,
ବଡ଼ ସାନ କର ନାହିଁ ଲେଶେ ।

ଶକ୍ତିର ଆଶ୍ରୟ କରି ଜଣେ ହେଉ ବଡ଼,
ଦିଅନାହିଁ ବଡ଼ କରି ଆନେ,
ବିଶ୍ୱଶାନ୍ତି ସ୍ଥାପନର ଏହିଟି ଉପାୟ
ବିଧାତାର ମଙ୍ଗଳ ବିଧାନେ ।

ଚାହିଁ ଦେଖ ! ବ୍ୟାଧିଗ୍ରସ୍ତ ଜରାଜୀର୍ଣ୍ଣ ଧରା,
କର ତାର ସମୂଳେ ବିନାଶ
ନବ ସୃଷ୍ଟି ରଚନାର ମୁକ୍ତ କରି ପଥ
ହର ଜୀର୍ଣ୍ଣ ସମାଜର ତ୍ରାସ ।

ପଦ ପଡ଼େ ପ୍ରୟୋଜନ, ଦିଅ ଭସ୍ମ କରି
କୀଟଦଷ୍ଟ ମୁମୂର୍ଷୁ ସମାଜେ,
ସେହି ଭସ୍ମସ୍ତୂପ ଭେଦି ନୂତନ ଜୀବନ
ଅଙ୍କୁରିବ ପୁଣି ନବ ସାଜେ ।

ଉଠ ବୀର, ତ୍ୟଜ ମନୁ ବୃଥା ଦୁର୍ଭାବନା
ହୋଇ ଏହି ମୁହୂର୍ତ୍ତେ ପ୍ରସ୍ତୁତ,
ବିଶ୍ୱଦ୍ୱାରେ ନବ ଯୁଗ କରେ କରାଘାତ,
ତୁମ୍ଭେ ତା'ର ଦ୍ରୁତ ଅଗ୍ରଦୂତ ।



## ସମୁଦ୍ରରେ ସୂର୍ଯ୍ୟୋଦୟ

ନୀରବ ନିଶ୍ଚଳ ବିଶାଳ ଜଳଧି
ଘନ ନୀଳମୟ ଦିଗନ୍ତ ଅବଧି;
ମହାଧାନେ ମଗ୍ନ ଯଥା ଯୋଗୀବର,
ଉପରେ ଅପାର ଶାନ୍ତ ନୀଳାମ୍ବର;
ନୀଳେ ନୀଳ ମିଶେ ଦୂର ଚକ୍ରବାଳେ,
ଘୋଟିଅଛି ବିଶ୍ୱ ନୀଳ ବର୍ଣ୍ଣଜାଳେ ।

ବହିଲା ସଧୀରେ ଶୀତଳ ସମୀର,
ରୋମାଞ୍ଚିତ କରି ସାଗର ଶରୀର;
ଉଠଇ ଚହଟି ପ୍ରାଚୀ ଦିଗ୍ବଳୟ,
ଲହୁଁ ଲହୁଁ ହେଲା ସିନ୍ଦୂରମାମୟ;
ଅନ୍ତରାଳେ ଥାଇ ଊଷା କି ନୀରବେ
ମାରିଦେଲେ ରଙ୍ଗ ପିଚକାରି ନଭେ !
ବିଶ୍ୱ ଚିତ୍ରକର ଅଦୃଶ୍ୟରେ ଥାଇ
ଦେଲେ କି ହିଙ୍ଗୁଳା ତୂଳିକା ବୁଲାଇ !

ପୂର୍ବାଶାରେ ଏ କି ଦୃଶ୍ୟ ଅଭିନବ,
ଏ କି ଇନ୍ଦ୍ରଜାଲ ? ଏ କି ଅସମ୍ଭବ !
ଅର୍ଦ୍ଧ ବୃତ୍ତାକାର ଦୀପ୍ତ-ଜ୍ୟୋତିରାଶି
ପାରାବାର ଗର୍ଭୁଁ କେ ଆସେ ବାହାରି ?
ଆକାଶ-ସାଗର ସନ୍ଧିରେଖା ଫେଡ଼ି
ପଲକେ ପଲକେ ଊର୍ଦ୍ଧ୍ୱେ ପଡ଼େ ଡେଇଁ !
କନକ ମଣ୍ଡିତ କରି ସାରା ପ୍ରାଚୀ
ପ୍ରତିବିମ୍ବ ତା'ର ଉଠେ ନାଚି ନାଚି ।

ନୀଳ ଜଳଧିର ସ୍ୱଚ୍ଛ ଦରପଣେ
ଉକୁଟାଇ କୋଟି ରୂପ କ୍ଷଣେ କ୍ଷଣେ
ଶୁଭ୍ର ହଂସଦଳ ଉଡ଼ି ଆକାଶରେ
ମଣ୍ଡି ହୋଇଗଲେ ନାରଙ୍ଗୀ ବେଶରେ;
ଜଳ, ସ୍ଥଳ, ବ୍ୟୋମମଣ୍ଡଳ ଉଚ୍ଛଳ
ଫଗୁଲ ପ୍ଲାବନେ ବିଶ୍ୱ ଉଠେ ଝଳି;
ସେ ଶୋଭାସମୁଦ୍ରେ ତାଳେ ଅବଗାହି
ମୁଗ୍ଧ ନେତ୍ର ମୋର ଶୂନ୍ୟେ ରହେ ଚାହିଁ ।

## ଚନ୍ଦ୍ର ଓ ସୂର୍ଯ୍ୟ

ବ୍ୟୋମପଟେ ଦିବାକର କରି ବିଚରଣ
ଢାଳଇ ଧରଣୀବକ୍ଷେ ଅମୃତ କିରଣ ।
ପୁଣି ଶଶଧର ନଭୋମଣ୍ଡଳେ ବିହରି
ମୟୂଖେ ଭୁବନ ଦିଏ ଆଲୋକିତ କରି ।
ଚନ୍ଦ୍ର, ସୂର୍ଯ୍ୟ ଉଭୟେ ତ 'ଗ୍ରହ' ନାମେ ଖ୍ୟାତ,
ବିଶ୍ୱର ଜନକଠାରୁ ଦୁହେଁ ଉପଜାତ;
ମାତ୍ର ରବିରଶ୍ମି କିପାଁ ଦିଏ ତାପ ଖର,
ଶୀତଳ ଅଟଇ କିପାଁ ଏଡ଼େ ଚନ୍ଦ୍ରକର ?
ଏହି ଅସମତା ଅଛି ଯୁଗେ ଯୁଗେ ରହି,
ହେତୁ ତାର କିସ, ତାହା କେ ପାରିବ କହି !
ଭେଦିବାକୁ ଏ ରହସ୍ୟ ବୁଦ୍ଧି ପରା ହତ,
ସ୍ରଷ୍ଟାର ଚରଣେ ଶିର ହୋଇଯାଏ ନତ ।

## ଶିଶୁର ଭାଷ

ଶୁଣିଛି ମୁରଲୀଧ୍ୱନି,—ସୁମଧୁର ସୁରେ
ଗୋପାଳ ବାଳକ ଯେବେ ବାଉଥାଏ ଦୂରେ ;
ମୃଦୁଳ ମଳୟେ ସେହି ନାଦ ଆସି ବହି
କାହାର ଅନ୍ତର କହ ନ ଦିଅଇ ମୋହି ?
କୋକିଳର କୁହୁ ଗୀତ ନ ଶୁଣିଛି କିଏ,
ଚୂତ ଡାଳେ ବସି ଯେବେ କଣ୍ଠ ଗୁଡ଼ିଦିଏ !
ସଘନେ ଧ୍ୱନିତ କରି ଅନ୍ତରର ତାର
ଉଷତ ନ କରେ କହ ହୃଦୟ କାହାର !
ଗିରି-ନିର୍ଝରିଣୀ ଭରା ବର୍ଷା ଅବସାନେ
ବହିଯାଉଥାଏ ଯେବେ କୁଳୁ କୁଳୁ ତାନେ,
ଶୁଣି ସେହି ମନୋହର ମଧୁର ସଙ୍ଗୀତ
ପୁଲକରେ ପୂରିନାହିଁ କହ କାହା ଚିତ୍ତ !
କିଶୋରର ମଧୁସ୍ୟନ୍ଦୀ କଳଭାଷ ଶୁଣି
କାହାର ପରାଣ ମୁଗ୍ଧ ନ ହୋଇଛି ପୁଣି !
କିନ୍ତୁ ଯେ ଶିଶୁର ଭାଷ ଶୁଣି ନ ଶୁଣିଛି,
ସଙ୍ଗୀତରି ମଧୁରତା ଜାଣିନାହିଁ କିଛି ।

## ଶିଶୁର ହସ

ଦେଖିଛି ଉଷାର ହାସ୍ୟ ପରାଚୀ ଗଗନେ
ନୀଳାମ୍ବରୀ ଓଢ଼ଣା ଉତାଳେ,
କି ମଧୁର, ମନୋହର ସୁଷମା ବିକାଶେ
ଲୁଚି ଲୁଚି ଦୃଷ୍ଟି ଅନ୍ତରାଳେ !
ଦ୍ୱିତୀୟା ସୁନ୍ଦର ହାସ୍ୟ ଦେଖିଛି ନୟନେ
ସୁଶୀତଳ, ସ୍ନିଗ୍ଧ ସୁଧାଧାର,
ଜୀବନକୁ କରିଅଛି କ୍ଷଣେ ମଧୁମୟ
ଆନନ୍ଦରେ ପାନ କରି ତା'ର।
ଶେଫାଳିକା, ମଲ୍ଲୀକାର ମୃଦୁ ମଧୁ ହାସ
ଲାଳିତ୍ୟ ଓ ମାଧୁର୍ଯ୍ୟର ଖଣି,
ଲଭିଛି ଦର୍ଶନେ ତା'ର ଅପାର ଆନନ୍ଦ
ଜୀବନକୁ ଧନ୍ୟ କରି ମଣି ।
ନିର୍ମଳ ତାରକା ରାଜି ନୀଳ ନଭୋସ୍ଥଳେ
ପ୍ରାଣେ କେତେ ଦେଇଛି ଉଲ୍ଲାସ,
ପାନ କରି ଶୋଭା ତା'ର ଉନ୍ନିଦ୍ର ନୟନେ
ପ୍ରାଣଭରି ପୂରାଇଛି ଆଶ ।
ଦେଖିଅଛି କମନୀୟ ଗୂଢ଼ ହାସ୍ୟରେଖା
ଲଜ୍ଜାନତା ନବବଧୂ ମୁଖେ,
ସ୍ରଷ୍ଟାର ସୁନ୍ଦର ସୃଷ୍ଟି ବୋଲି ମୁଁ ବିସ୍ମୟେ
ମୁଗ୍ଧ ପ୍ରାଣେ ପ୍ରଶଂସିଛି ସୁଖେ ।

(ମାତ୍ର) ମାନବଶିଶୁର କ୍ଷୁଦ୍ର କୋମଳ ଅଧରେ
ହସିଉଠେ ଯେଉଁ ହସଟିକି
ଭାଷାର ଅତୀତ ତା'ର ରସାଳ ଲାବଣ୍ୟ,
ଏ ଜଗତେ ତୁଳନା ଅଛି କି !

## କ୍ଷଣିକା

ଘୂରେ ପୃଥ୍ୱୀ, ଘୂରେ ସୂର୍ଯ୍ୟ, ଘୂରେ ଚନ୍ଦ୍ର, ତାରା,
ଘୂରୁଛନ୍ତି ଗ୍ରହରାଜି, ଘୂରେ ବିଶ୍ୱସାରା ।

ଘୂରୁଛି ଅନନ୍ତାକାଶେ କ୍ଷିପ୍ର ମେଘମାଳ,
ପାରାବାର ବକ୍ଷେ ଊର୍ମି ଘୂରଇ ଉତ୍ତାଳ ।

ଆଲୋକ, ପବନ ଘୂରେ ହୋଇଣ ଅଧୀର,
ଅଣୁ ପରମାଣୁ ଭୂଲେ କେହି ନୁହେଁ ସ୍ଥିର ।

ପଶୁ, ପକ୍ଷୀ, କୀଟଯାକେ କେଜାଣି କି ବଳେ
ଅହର୍ନିଶ ହରହର ଘୂରନ୍ତି ସକଳେ ।

ଏ ବିଶ୍ୱ ଘୂରୂଣୀ ମଧ୍ୟେ ଏକା ମୁହିଁ ଜଣେ
ସ୍ଥିର ହୋଇ ରହିବାକୁ ଯୁଝେଁ ପ୍ରାଣପଣେ ।

ମାତ୍ର ମୁହୂର୍ତ୍ତକ କେଉଁ ଅଜଣା ଶକତି
ବୁଲାଏ କି ବେଗେ ! ଓହୋ, କି ଭୀଷଣ ଗତି !

କି ଭ୍ରମ ଆବର୍ତ୍ତ ସେ ଯେ ! କରେଁ ଝାହି ଝାହି,
ଯୁଆଡ଼େ ବୁହିଁଲକ୍ଷଣି କେହି ଜଣେ ନାହିଁ !

ଘୂର୍ଣ୍ଣିବାୟୁ ବଳେ ଭିନ୍ନ ଛିନ୍ନ ପତ୍ରପରି
ଅଥାଜିଆ ଧାଉଁଥାଏ ହୋଇ ଲକ୍ଷ୍ୟହରା ।

ଧୂଳିଶଯ୍ୟା ପରେ ଯେବେ ରହିଯାଏ କାହିଁ,
କ୍ଷୀଣ ଦାଗ ତେବେ ତାହା କ୍ଷଣକର ପାଇଁ !

ହେଲେ ସେହି କ୍ଷଣିକଟି ଥୋଇଯାଏ ଏକା
ମହାକାଳ ବକ୍ଷେ ଏକ ଚିରନ୍ତନ ରେଖା ।

## *ଅମର କବି

କିଏ ସେ କହୁଛି ସତେ ମରିଛନ୍ତି କବି,
ଅସମ୍ଭବ ଅସମ୍ଭବ— କବି କି ଗୋ ମରେ ?
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ଯାର ଜୀବନ ସଞ୍ଚରେ
ମୃତ୍ୟୁ ତାର କାହିଁ !
ଖାଲି ଯାଇଛି ନୀରବି ।

କ୍ଷଣିକ ବିଶ୍ରାମ ମାଗି ଅମର ବିପଞ୍ଚୀ
ସମ ଶେଷ ଲୟ ତାର ହେଉଛି ଗୁଞ୍ଜରି,
ଗଗନେ ଗଗନେ—
ଉଠେ କୋଟି ପ୍ରାଣ ଥରି
ସେ ଝଙ୍କାରେ କଳ୍ପନାର ସ୍ୱପ୍ନଲୋକ ରଚି ।

ତିଳ ତିଳ କରି କବି ଢାଳିଛି ଆହୁତି
ଜଗତକଲ୍ୟାଣ ହେତୁ ଜୀବନର ହବି,
ତିଳ ତିଳ ନିଜ ପ୍ରାଣ କ୍ଷୟ କରି କବି
ଉପଭୋଗ କରିଅଛି ବିଶ୍ୱ-ଅନୁଭୂତି ।

ଆପଣା ଅନ୍ତରେ ସୃଜି ବିଶ୍ୱର ମରମ
ହସିଛି କାନ୍ଦିଛି, ଗୀତ ଗାଇଛି ଅସରା,
ରସିଛି ଆପଣା ପ୍ରାଣେ କବି ଆତ୍ମହରା
ନିଜକୁ ନିଃଶେଷ କରି ରାଜହଂସ ସମ ।

ଏହାକୁ ବୋଲିବ ମୃତ୍ୟୁ !
ଏ ଯେବେ ମରଣ,
ଅନନ୍ତ ଜୀବନ କିଏ, କହିବ କି କେହି !
କବିର ମରଣ ନାହିଁ ।......

କବି ଯାଏ ଦେଇ
ଯିବାବେଳେ ପ୍ରଭାମୟ ସ୍ୱର୍ଗଦ୍ୱାର ଫେଇ
ତୃଷ୍ଣାତୁର ବିଶ୍ୱକଣ୍ଠେ ଅମୃତ ଜୀବନ ।



## କମଳ ଓ କୁମୁଦ

କମଳ କୁମୁଦ ଦୁହେଁ — ଏକା ଫୁଲ ଜାତି,
ସଲିଳେ ଜନମ ବୋଲି — ଦୁହିଁଙ୍କର ଖ୍ୟାତି ।
ରବିକର ସ୍ପର୍ଶେ ହୁଏ — ପଦ୍ମ ବିକଶିତ,
ରବିର ଦର୍ଶନ ମାତ୍ରେ — କୁମୁଦ ସ୍ତିମିତ ।
କୁମୁଦ ଚନ୍ଦ୍ରକୁ ଦେଖି — ମୁଦେ ଢଳ ଢଳ,
ସେହି ଚନ୍ଦ୍ରେ ମଉଳଇ — କିପାଇଁ କମଳ ?
ଯେଉଁ ଶିଶିର ସମ୍ପାତେ — ପଦ୍ମ ମରିଯାଏ
ସେହି ଶିଶିର ଯେ ପୁଣି — କୁମୁଦ ଫୁଟାଏ ।
ପ୍ରକୃତିର ଏ ବିଚିତ୍ର — ଲୀଳା ଅନୁଭବ
ଅପାର ବିସ୍ମୟେ ଯାଏ — ଚିତ୍ତବୃତ୍ତି ଦ୍ରବି ।

## ଆଜି ସେ ଯାଇଛି ଚାଲି

ଆଜି ସେ ଯାଇଛି ଚାଲି ଗୋ, ଆଜି ସେ ଯାଇଛି ଚାଲି
ମମ ମନ୍ଦିର କରି ଖାଲି ଗୋ, ମମ ମନ୍ଦିର କରି ଖାଲି ।
ଏହି ମୁଗ୍ଧ ହୃଦ-ନିକେତନ ତା'ର ନୁହେଁ କି ଯୋଗ୍ୟ ସ୍ଥାନ ଗୋ,
ସେଥିପାଇଁ କିବା ଯାଇଅଛି ଚାଲି ମୋତେ କରି ଅଭିମାନ ଗୋ !
ପ୍ରେମଚନ୍ଦନେ କରି ବନ୍ଦନ ମୁଁ ଯେ ଭୃତ୍ୟ ତା'ର ନିରନ୍ତର,
ତା'ର ହାସ୍ୟ ଦେଖିଲେ ଆସ୍ୟେ ମୁଁ ତଳେ ନୃତ୍ୟ କରେ ମୋ ଅନ୍ତର ।
ଇଙ୍ଗେ ତା ଭ୍ରୂଭଙ୍ଗ ବିକାରେ ପୁଲକେ ପୂରେ ମୋ କାୟା,
ସ୍ୱର୍ଗ-ସମ୍ପଦବର୍ଗ ମିଳଇ ପରଶେ ତାହାର ଛାୟା ।
ହୃଦପୀଠେ ମୋର ଢାଳିଦେଇ ତା'ରି ପଦେ କରେ ସଦା ପୂଜା,
ଭାଗ୍ୟ ବିପାକୁଁ ଆଜି ଗୋ ତାହାକୁ ହରାଇ ବସିଲି ମୁଁ ଯା ।
ପୂର୍ଣ୍ଣ ପିଞ୍ଜର ଶୂନ୍ୟ କରିଣ ଉଡ଼ିଯାଇଛି ସାରୀ,
(ମୋର) ପୁଣ୍ୟ ପ୍ରଭାବେ ଫେରିବ କି ମୋର ହୃଦ-ଗଗନବିହାରୀ ?
ବୀଣାଝଙ୍କାର ଆଜି ଲୁପ୍ତ ମୋ ହୃଦେ ମରିଇ ମୁଁ ମ୍ରିୟମାଣ,
କିଏ ଡାକିବ ହୃଦ-କୁଞ୍ଜକାନନେ ମୁଖରିତ କରି ପ୍ରାଣ ?
ଆଉ ନ ଆସିବ ଫେରି ଗୋ, ସେ କି ଆଉ ନ ଆସିବ ଫେରି,
ଆଉ ନ ବୁଲିବ ନୟନେ କମ୍ପି ଶୟନେ କାନ ଡେରି ?
ଆଉ ନ ଗାଇବ କଣ୍ଠ ଗୋ, ଆଉ ନ ରାଇବ ଜିହ୍ୱା,
ଲୁପ୍ତ ହେବ କି ସୁପ୍ତ ପରାଣ ତାକୁ ଆଜି ବରଜିବା ?
କ୍ଷୁବ୍ଧ ଥାଉ ମୋ ଦୃପ୍ତ ବାସନା, ତୃପ୍ତ ନୋହୁ ପିପାସା,
ଶୂନ୍ୟ ରହୁ ମୋ କ୍ଷୁଣ୍ଣ ପରାଣ, ପୂର୍ଣ୍ଣ ହେଉ ତା' ଆଶା ।

---

* କବିଶେଖର ଚିନ୍ତାମଣିଙ୍କ ଉଦ୍ଦେଶ୍ୟରେ

# ଫିଙ୍ଗ ପୁଣି ପାଶା

ଜଗତ ସମରକ୍ଷେତ୍ର, ଲାଗିଛି ସତତ
ଅବିଶ୍ରାନ୍ତ ଦୁର୍ନିବାର ଜୀବନସଂଗ୍ରାମ;
ପ୍ରାଣୀମାନେ ଅବିଚ୍ଛିନ୍ନ ଯହିଁ ରଣରତ,
ନାହିଁ ଅବକାଶ ତିଳେ, ନାହିଁଟି ବିଶ୍ରାମ ।

ଜିଏ ଜିଣେ, ଜିଏ ହାରେ, ନାହିଁ ତାର ଥୟ,
ଘଡ଼ି ଘଡ଼ି ଲେଉଟଇ, ନାହିଁ ତାର କ୍ଷୟ;
ଅନିବାର୍ଯ୍ୟ ନିୟମରେ ନିୟତିର ଖେଳ,
କାହାର ନାହିଁଟି ହାତ, ନାହିଁ କାଳବେଳ ।

ଶତ୍ରୁକୁ କରୁଛ ଭୟ ଦେଖି ପୂର୍ବ ହାର,
ଥରେ ଜିଣିଗଲା ବୋଲି ହେଉଛ କାତର ?
ଆଜି ଯେ ଜିଣିଛି କାଲି ଯିବ ପୁଣି ହାରି,
ପ୍ରକୃତିର ନୀତି ଏହା ଜାଣ ଦୃଢ଼ କରି ।

ଆଜି ଦମ୍ଭ, ଆଜି ଶକ୍ତି, ଆଜି ମିତ୍ରବଳ,
ଆଚମ୍ବିତେ ଯାଇପାରେ ହଟି ସେ ନିମେଷେ;
ଖଣ୍ଡ ଖଣ୍ଡ ହୋଇ ତା'ର ସକଳ କୌଶଳ
ଅଦୃଶ୍ୟ କି ଶସ୍ତ୍ରାଘାତେ, ଆଉ ପୁଣି ଶେଷେ
ଦଳିତ, ମଥିତ, ତ୍ରସ୍ତ, ଧ୍ୱସ୍ତ, ବିପର୍ଯ୍ୟସ୍ତ
ହୋଇ ତୁମ୍ଭ କୃପାପ୍ରାର୍ଥୀ ହେବ ଦୀନ ବେଶେ !

ଭାବିଛ ନିରୋଳେ ରହି ସମରପ୍ରାଙ୍ଗଣେ
ଭୁଲାଇ ଆଉଁସି ପିଠି, ମିଠା କଥା କହି
ବୁଲାଇ ମୁଣ୍ଡରେ ହାତ ସବୁ କଥା ସହି
ଜିଣିଯିବ ସହଜରେ ଆତତାୟୀ ଜନେ ?

ବୃଥା ଆଶା, ବୃଥା ଆଶା —ନୁହେଁ ଏ ସଂସାର
ଫୁଲର ବଗିଚା—ନୁହେଁ ବିଳାସର ବେଦୀ,
ସଂଗ୍ରାମର ଭୂମି ଏହା, ଜୟଧ୍ୱନି ସାର
ଉଠୁଅଛି ଭୂମଣ୍ଡଳୁ ଖ-ମଣ୍ଡଳ ଭେଦି ।

ବିଶ୍ୱବ୍ୟାପୀ 'ମାର ମାର' ବିକଟ ହୁଙ୍କାର,
ଛାଡ଼ ଛାଡ଼ ଦୈନ୍ୟ, ତ୍ୟଜ କ୍ଳୈବ୍ୟ, ବିକଳତା,
ଦୁର୍ବଳର ଜନ୍ମ ବୀର-ଭକ୍ଷ୍ୟ ହେବାପାଇଁ,
ସଦମ୍ଭେ ଉଠ ରେ ତେଜ ଉଚ୍ଚ କରି ମଥା ।

ଶତ୍ରୁସନେ ସନ୍ଧି ପୁଣି ବୈରୀ ସଙ୍ଗେ ମେଳ !
ଭ୍ରମ—ଭ୍ରମ, ମିଛବାଘ ଚତୁରର ଖେଳ;
ଧର୍ମଧ୍ୱଜୀ ଗୃଧ୍ରକାର ମୁଖ-ପ୍ରବଞ୍ଚନା,
ପରିଣାମ ତା'ର ଶେଷେ ଦାରୁଣ ଲାଞ୍ଛନା ।

ଜୀଇବାକୁ ଇଚ୍ଛା ଯେବେ ଜୀଅ ସିଂହ ପରି,
କୁକୁର ପରିପ୍ରାୟେ କିଆଁ ସଦା ଡରି ଡରି ?
ଫିଙ୍ଗି ଦୂରେ ଆତ୍ମ-ଗ୍ଳାନି ଛାଡ଼ ଭୀମରଡ଼ି
ସଂଗ୍ରାମରେ ଅଗ୍ରସର ହୁଅ ଅଣ୍ଟା ଭିଡ଼ି ।

ଯେବେ ତୁ ଅକ୍ଷମ, ଭୀରୁ, ଅଚଳ, ଦୁର୍ବଳ,
ଏଠି ତୋର ଜୀଇବାର ଅଧିକାର ନାହିଁ;
ଦୁର୍ବଳର ଜନ୍ମ ବୀରଭକ୍ଷ୍ୟ ହେବାପାଇଁ,
ସବଳର ପଦସେବା ତୋ ଚିର ସମ୍ବଳ ।

ମଲେ ହେବ ବୀରମୃତ୍ୟୁ—ହେବ ସ୍ୱର୍ଗବାସ,
'ହାୟ' 'ହାୟ' କରିବାକୁ ନ ଥିବଟି ଶ୍ୱାସ,
ଅନୁତାପେ କାନ୍ଦିବାକୁ ତିଳେ ଅବକାଶ ।

ସେହି ମରଣଟି ତୋର ବିଜୟ ପତାକା,
ସେହି ତୋ ଅକ୍ଷୟ ଯଶ, ସେହି ଜୟ ଟୀକା,
ସେହି ତୋର ଜୀବନର ଶ୍ରେଷ୍ଠ ସାର୍ଥକତା,
ସେହି ମୃତ୍ୟୁ ଅମୃତର ଉତ୍ସ ଅସରନ୍ତା ।

ନୁହ ତୁ ହତାଶ କ୍ଷଣେ, ଅନନ୍ତ ପିପାସା
ରହିଛି ଅନ୍ତରେ ଭରି, ଦିଅ ନାହିଁ ତୃପ୍ତି ;
ବୀରଧର୍ମ ନୁହେଁ ସଞ୍ଚରିବା ମାପି ମାପି,
କ୍ଳୀବ କାପୁରୁଷ ଭଳି ପାଦ ଗଣିଗଣି.
ଟିକିନିଖି କ୍ଷତିଲାଭ ଇଷ୍ଟ ବୋଲି ମଣି ।

ଥରେ ହାରିଅଛ ବୋଲି ଛାଡ଼ନାହିଁ ଆଶା,
ଖେଳାଳୀର ଧର୍ମ ଏହା, ଫିଙ୍ଗ ପୁଣି ପାଶା ।

# ✽ ସ୍ମୃତି

୧

ଭଉଣୀ ଲୋ ! ମନେପଡ଼େ ଶୈଶବରେ ଥରେ
ଦେଖିଥିଲି ଶିଶୁ ଶେଯେ ସେ ଗୃରୁ ଆନନ ;
ପ୍ରତିପଦ ଚନ୍ଦ୍ରମା ସେ, ନଳିମା-କଳିକା,
ଛଳ ଛଳ ଭୃଙ୍ଗ-କୃଷ୍ଣ ଯୁଗଳ ନୟନ ।

୨

ମୃଦୁ ମୃଦୁ ହାସ୍ୟେ ତୋର ଅସ୍ଫୁଟ କନ୍ଦନେ
ବିସ୍ମିତ ନୟନପାତେ ସେ କ୍ଷୁଦ୍ର ହୃଦୟେ
କେତେ ପ୍ରୀତି, କେତେ ସ୍ନେହ, କେତେ ସରଳତା
ଜାଣି ନ ପାରିଲି ଥିଲି ଲୁଚି ସେ ସମୟେ ।

୩

ଏବେ ମନେ କରେ ସେହି ସ୍ୱର୍ଗୀୟ ସୁଷମା,
ବିଗତ ସ୍ମୃତିକୁ କେତେ ଓଃଠାରେ ନିରଖେ;
କିନ୍ତୁ ସବୁ କୁହେଳିକା, ଛାୟାମୟ ଛବି,—
ସ୍ୱପ୍ନ ସମ ମନେ ମୋର ହୁଅଇ ପରଖେ ।

୪

ଜନମି ଜଠରୁ ଜନ୍ମି ନ ଜାଣିଲୁ ଯାହା,—
ନ ଚହ୍ନିଲୁ, ନ ଜାଣିଲୁ ହୃଦୟୁ ତାହାର
ଆରାମଦାୟିନୀ, ଶୁଭ୍ର, ସ୍ନେହମୟୀ ଧାର
ମାରଦରୁ ମାଉ ପ୍ରାୟେ ବହେ ଅନିବାର ।

୫

ସେ ସ୍ରୋତରେ ଧୋଇଯାଏ ସନ୍ତାନ ଶରୀରୁ
ପାପ, ତାପ, ଦୁଃଖ, ଶୋକ, ରୋଗ, ଆବିଳତା,
ଖେଳଇ ମାନବହୃଦେ ଆନନ୍ଦ ଲହରୀ,
ବାଜଇ ମମତା, ମାୟା, ସ୍ନେହ, ସରଳତା ।

୬

ଏ ଦୃଢ ରକତ-ରଜ୍ଜୁ ଛିଣ୍ଡାଇ କେମନ୍ତେ
ଆଖି ଅନ୍ତରାଳେ କାହିଁ ରହିଲୁ ତୁ ଯାଇଁ ?
ଏହିତକ ଦୁଃଖ ମୋର ରହିଗଲା ମନେ
ଭାଇ କି ଭଉଣୀ ବୋଲି ଚହ୍ନା ହେଲେଁ ନାହିଁ ।

୭

(ତହିଁ) ପାଇଲୁ ତ ପିତୃମାତୃ ସ୍ନେହ ଅକୃତ୍ରିମ,
ଭ୍ରାତାର ହୃଦୟପୂର୍ଣ୍ଣ ସ୍ନେହ ଅନୁରାଗ,
ପ୍ରଣୟ-ପସରା ଦେଲେ ସଖୀଏ ଅଜାଡ଼ି,
ଜ୍ଞାତି ଜନେ ଦେଲେ ତାଳ ଅସରା ସୁହାଗ ?

୮

ଜନମି ସମାନେ ତୋତେ ନଦୀ ବୈତରଣୀ
ବଞ୍ଚାଇଲା ନିଜ ସ୍ନିଗ୍ଧ ସଲିଳ ପ୍ରଦାନେ ;
ତହୁଁ ବଳ ମାଇଁଙ୍କର ସ୍ନେହ-ସୁଧା ଧାର
ବରଷିଲା ତୋ ମସ୍ତକେ ଅମୃତ ସମାନେ ।

୯

ଏହିପରି ସ୍ନେହେ ସ୍ନେହେ ରହିଥିବୁ ସଦା,
ପରର ମଙ୍ଗଳବ୍ରତେ ସମର୍ପିବୁ ପରାଣ;
ଆର୍ଯ୍ୟରମଣୀର ସାର ଧର୍ମ 'ପତିବ୍ରତା',
ଏତିକ ମାତର ତୋତେ କରୁଛି କଲ୍ୟାଣ ।

୧୦

ଆଉ ଲୋ ଭଉଣୀ, ତୋତେ କିଛି ମାଗୁ ନାହିଁ,
ମାଗୁଣି ଲୋ ତୋହଠାରେ ମୋର ଏଇତକ—
ଅନ୍ତମରେ ଥରଟିଏ ଡାକ "ଭାଇ, ଭାଇ"
ନୟନରୁ ଝରାଇବୁ ବୁନ୍ଦାଏ ଲୋତକ ।

---

✽ ଅତିଶୈଶବ ମାତୁଳାଳୟରେ ପାଳିତା ମୋର ଗୋଟିଏ ସହୋଦର ପ୍ରତି ।

## ଗୋପବନ୍ଧୁ ସ୍ମୃତିତର୍ପଣ

ଦେଖ ଦେଖ ଯହିଁ ଊର୍ଦ୍ଧ୍ୱେ ଆକାଶମଣ୍ଡଳେ
ଭାସ୍ୱର ମୂରତି ଏକ ଉଠଇ ବିକାଶି;
ଲଲାଟେ ଚନ୍ଦନ ଶୋଭା, ଦୀପ୍ତ ସୂର୍ଯ୍ୟସମ
ନୟନରୁ ଦିବ୍ୟଜ୍ୟୋତିଃ-ଧାରା ଆସେ ଭାସି ।

ପ୍ରସନ୍ନ ବଦନକାନ୍ତି ଦିଶଇ ଉଜ୍ଜ୍ୱଳ,
ଅଧରେ ମଧୁର ହାସ୍ୟ-ରେଖା ଅନୁପମ;
ଫୁଟି ଉଠେ ପ୍ରତି ନେତ୍ର-ପକ୍ଷ୍ମସଞ୍ଚାଳନେ
ଶିଶୁର ସାରଲ୍ୟ ସନେ ବୀରର ବିକ୍ରମ ।

କବିର ତାରୁଣ୍ୟ ପୁଣି ଋଷିର କାରୁଣ୍ୟ,
ଯୋଦ୍ଧାର ଅମିତ ତେଜ, ସାଧକର ନିଷ୍ଠା
ଏକାଧାରେ ଯହିଁ ସବୁ ହୋଇଥିଲା ଠୁଳ,
କର୍ମୀର କୌଶଳ ଆଉ ନେତାର ପ୍ରତିଷ୍ଠା ।

ଏ ଯେ ସେହି ଗୋପବନ୍ଧୁ, ଉତ୍କଳବାସୀର
ଜୀବନ-ଦେବତା, ପୁଣି ଯୁଗ—ପ୍ରବର୍ତ୍ତକ,
ଉତ୍କଳ ଜାତୀୟ ଯଜ୍ଞେ ପ୍ରଧାନ ପୁରୋଧା,
ପ୍ରଜ୍ୱଳ ମଶାଲ ହସ୍ତେ ପଥପ୍ରଦର୍ଶକ ।

ଆସ ରେ ଉତ୍କଳବାସୀ ମୁହୂର୍ତ୍ତିକ ପାଇଁ
ନୀରବେ ନତମସ୍ତକେ ଜାନୁ ପାତି ବସ କ୍ଷଣେ;
ଆଜି ପୁଣ୍ୟ ଦିନେ ଛାଡ଼ି ନିଜ କର୍ମ ଧନ୍ଦା
ଅର୍ଘ୍ୟ ପୁଷ୍ପାଞ୍ଜଳି ଅର୍ପି ଦେବତା ଚରଣେ ।

## ଭକ୍ତଅର୍ଘ୍ୟ

ଚିତା ନୁହେଁ, ଚିତା ନୁହେଁ, ନୁହେଁ ଅଗ୍ନି ଶିଖା,
ଅମର-ବିପଞ୍ଚୀ-ସୁତ ଅମର ମୂର୍ଚ୍ଛନା;
କବିର ଲଲାଟେ ରକ୍ତ ଚନ୍ଦନର ଟୀକା,
ମୃତ୍ୟୁ ନୁହେଁ—ବିଜୟର ଶୁଭ୍ର ବନ୍ଦାପନା ।

ହେ କବି, ହେ କ୍ଳାନ୍ତିହୀନ ନୈଷ୍ଠିକ ସାଧକ,
ହେ ଭାବୁକ, ଭକ୍ତବର, ବାଣୀ ପ୍ରିୟ ସୁତ,
ହେ ବୀର, ହେ ଆଜୀବନ ଭାରତୀସେବକ,
ଲଭିଲ ଚରମ ସିଦ୍ଧି ହୋଇ ଜୟଯୁକ୍ତ ।

ଅଶରୀରୀ ରୂପେ କେଉଁ କଳ୍ପଲୋକେ ବୁଲି
ପାଇଲ ହେ କବି ସେଉଁ ଅମୃତ ସନ୍ଧାନ,
ଗଲ ସଂସାରର ସବୁ ଦୁଃଖ, ତାପ ଭୁଲି,
ମର ଦେହେ ଲଭିଥିଲ ପୂର୍ଣ୍ଣ ଦେବ-ପ୍ରାଣ ।

ହେ କବି, ଯାଇଛ ଗାଇ ଯେ ଅମିୟ ଗୀତ,
ହେ ଗୁଣୀ, ଯାଇଛ ବାଇ ଯେ ମଧୁର ରାଗ,
ଅମର ଝଙ୍କାର ତା'ର ପବନେ ନନ୍ଦିତ,
ଡାକେ ଏ ଜାତିକୁ ଉଚେ ଜାଗ, ଜାଗ, ଜାଗ

କେ କହେ ମରିଛ ? କେବେ ମରଇ କି କବି ?
ଗଲ ଆମ ଆଖି ଆଗେ ଅମରତ୍ୱ ଲଭି ।



# ସ୍ମୃତ ଅଞ୍ଜଳି

ଯେ ଯାଏ ସେ ପରା ପୁଣି ନ ଆସଇ ଫେର
ମୋ କୁଟୀର କରି ଖାଲି,
କିନ୍ତୁ ତା ସ୍ମୃତିଟି ତେବେ ରହିଅଛି ଘେର—
ଜାଗରଣେ, ସ୍ୱପନେ, ଶୟନେ
ଝୁରି ଝୁରି ଆକୁଳ ନୟନେ
ତା ପଦ ଶବଦେ ମୁଁ ତ ଅଛି କାନ ଡେରି ।

ଝଡ଼ା ଫୁଲ ହାରଟି ତାହାର
ଦିନୁଁ ଦିନୁଁ ହେଉଛି ମଳିନ,
ଗୋଟି ଗୋଟି ଯେତେ ସ୍ମୃତିଚିହ୍ନ
ପ୍ରକୃତି କର୍କଶ କର-ପରଶେ ମଉନେ
ହେଉଅଛି ସଜୀବତା-ହୀନ ।

ମାତ୍ର ମୋ ମାନସରାଜ୍ୟେ ଉଠୁଛି ବିକଶି
ଧୀରେ ଧୀରେ, ସ୍ତରେ ସ୍ତରେ ସ୍ତରେ
ସୁପ୍ତ-ବୀଜ ଶସ୍ୟବତ ଜୀବନ୍ତ ଜ୍ୱଳନ୍ତ
ପତ୍ର ପୁଷ୍ପ, ବୃକ୍ଷ ଲତା, ସାଗର ପର୍ବତ,
ଶ୍ରାନ୍ତିହୀନା ତଟିନୀର ତଟେ
ଅନନ୍ତ ଆବେଗଭରା ନୂତନ ଜଗତ
ଦୀପ୍ତ ରବି କିରଣର ହାସେ
ଅପାର ଗଗନ ପଟେ ।

ଅଗଣିତ ଗ୍ରହତାରା, ଶତ ଶତ ଶଶୀ
ଖେଳନ୍ତିଲେ ହସି ହସି ହସି
ମଜାଇ ମୁଗଧ ଚିତ୍ତ କି ସଙ୍ଗୀତ ସ୍ୱରେ
କି ଉଦାସ-ଆଶାର ଝଙ୍କାରେ
ପୂର୍ଣ୍ଣତାରେ, ସ୍ନିଗ୍ଧତାରେ ପଡ଼ୁଛି ଉଛୁଳି ।

ସେ ଜଗତେ ନାହିଁ ଉନ୍ମାଦନା,
ବିକାଶର ନାହିଁ ବିଡ଼ମ୍ବନା,
ପ୍ରବଞ୍ଚନା, ଉଦ୍ଦୀପନା, ନାହିଁ ଯହିଁ ଦୁର୍ବାସନା,
କେଳିହୀନ ଦୁର୍ବାର କାମନା ।

ଲାଳସାର ଜ୍ୱାଳାମୟ ଦାହ,
ଅତୃପ୍ତିର ଜ୍ୱଳନ୍ତ କଟାହ
ଆଣେନାହିଁ ହତାଶାର ତୀବ୍ର ଅବସାଦ,
ପ୍ରବୃତ୍ତିର ନିଷ୍କ୍ରିୟ ବିଷାଦ ।

ତହିଁ ଅଛି ମୁଗ୍ଧ ମଦିରତା,
ବିହ୍ୱଳତା, ଆତ୍ମ-ବିଲୀନତା;
ଆଣେନାହିଁ ଆତୁରତା ଦୈନ୍ୟ, କାତରତା,
ବିଫଳତା, କ୍ଳାନ୍ତି, ବିକଳତା ।

ନିତ୍ୟ ନୂତନତା ମଧ୍ୟେ ନିତ୍ୟ ବିଚିତ୍ରତା,
ନିର୍ବାଣର ପରିତୃପ୍ତି, ନିର୍ବେଦ ଜଡ଼ତା,
ପରା ଶାନ୍ତି, ପରା ମୁକ୍ତି, ପରା ସାର୍ଥକତା ।



# ଅଲ୍ୟନୀ କନ୍ୟା

ମଧ୍ୟାହ୍ନ ଭୋଜନ ସାରି　　　　ଗଡ଼ପଡ଼ ଶେଯେ
ପାନଖିଲେ ମୁଖେ ଦେଇ ଭରି
ଖବରକାଗଜଟାକୁ　　　　ଉପରକୁ ଟେକି
ଘୁଣ୍ଟୁ ଘୁଣ୍ଟୁ ଚତ୍‌ମାତ୍ କରି
ମଧୁରିଆ ନିଶା ଭଳି　　　　କିସ ଗୋଟାଏ ସେ
ମିଜାଜକୁ କରିଦେଲା ଭୋଳ,
ତାହା ପଛେ ପଛେ ପୁଣି　　　　ଅକ୍ଷରଗୁଡ଼ାକ
କାଗଜରେ ହୋଇଗଲେ ଗୋଳ ।

କାଗଜ ପଢ଼ିବା ପାଇଁ　　　　ପ୍ରବଳ ଇଚ୍ଛାଟା,
ଗାନ୍ଧି-ଜିନ୍ନା ଭେଟର ଖବର
ବାହାରିଛି ଆଜ ଯେଣୁ,　　　　ପଢ଼ିବାର କଥା,
ଗର୍ଗିଆନ୍ ପୁଣି ଟି ଜବ୍‌ବର !
ନିତ୍ୟାନ ଯୁଦ୍ଧର କଥା　　　　ଜାଣିବାକୁ ହେବ,
କିଏ ଗଲା କେତେ ବାଟ ମାଡ଼ି,
ଇଞ୍ଚ ଫୁଟ ଗଜ ଧରି　　　　ହେବ ମାପିବାକୁ
ପୃଥିବୀର ମାନଚିତ୍ର କାଢ଼ି ।
ସନ୍ଧ୍ୟାବେଳେ ବନ୍ଧୁମେଳେ　　　　ଠିକ ନିଶି କରି
ଏଥିର ପଡ଼ିବ ଆଲୋଚନା,
କେତେ ବାଦ ଅନୁବାଦ,　　　　କଥା କଟାକଟି,
କେତେ ସୂକ୍ଷ୍ମ କଳ୍ପନା ଜଳ୍ପନା ।
ଆମର ଯୋଜନା ଆଉ　　　　ପରାମର୍ଶ ପରେ
ରହିଅଛି ନିର୍ଭର ଯେ କରି
ଜୟ କିମ୍ବା ପରାଜୟ　　　　ଉଭୟ ପକ୍ଷର !
ଦାୟିତ୍ୱଟା ନୁହେଁ କି ଆମରି ?
ଆଖି ଦୁଇଗୋଟାଯାକ　　　　ରଖି ମେଲା କରି
ତୀବ୍ର ଇଚ୍ଛାଶକ୍ତି ଦେଇ ଯୋଖି
ଉପରଠୁଁ ତଳଯାକେ　　　　ଗୁଳିଗଲି ପଢ଼ି
ତନ୍ଦ୍ରାର ବେଗଟା ବଳେ ରୋକି ।
ନିଦ୍ରା ସୁଧାରସ ବଳେ　　　　ତନ୍ମୟ ମଗଜେ
ନ ପଶିଲା ଅର୍ଥର ଝଙ୍କାର,
ଭାଷା, ଭାବ, ବାକ୍ୟ, ଶବ୍ଦ,　　　　ଅକ୍ଷର ସହିତେ
ସବୁ ମିଳି ହେଲେ ଏକାକାର ।

ତଥାପି ମୁଁ ବାର ବାର　　　　ଲାଗିଥାଏଁ ଲଢ଼ି
ଦୁଇ ଚକ୍ଷୁ ମେଲାଇ ବିକ୍ରମେ,

*　　　　*　　　　*　　।

ମାଡ଼ିଆସେ ତୃପ୍ତିକର　　　　ଶୀତଳ କୁହୁଡ଼
ଚେତନାକୁ କରି ସ୍ୱପ୍ନମୟ,
ଆତ୍ମମଣକାରୀ ସନେ　　　　ବିନାସର୍ତ୍ତେ ସନ୍ଧି
କରିବାକୁ ହୋଇଲି ଅଥୟ ।
ଖବରକାଗଜଟାକୁ　　　　ଥୋଇ ବକ୍ଷପରେ
ଆରାମରେ ମୁଦି ବେନି ଆଖି
"ଇଆଡ଼େ ଅଇଲୁ ଥରେ"　　　　ବୋଲି ମୋ କନ୍ୟାକୁ
ଜଡ଼ିତ ସ୍ୱରରେ ଦେଲି ଡାକି ।
ଆଦରିଣୀ ବାଳିକା ସେ　　　　"କ'ଣ ବାବା" ବୋଲି
ଶିରଧାରେ ବସିଲା ମୋ ପାଶେ,
"ହଇଟା ପାଚିଲା ବାଳ　　　　ଉପାଡ଼ିଲୁ ମାଆ"
କହିଦେଲି ଦରଫୁଟା ଭାଷେ ।
କଅଁଳ ଅଙ୍ଗୁଳି ତା'ର　　　　ସତ୍ୱରେ ସଧୀରେ
ମସ୍ତକର କେଶବନ ଭେଦି
ଆରାମର ଅନୁଭବ　　　　କ୍ଷଣମାତ୍ରେ ଦେଲା
ଚେତନାର ଶେଷ ସୂତ୍ର ଛେଦି ।
ଘନକୃଷ୍ଣ ଅନ୍ଧକାର　　　　ଗଲାଣି ପାଲଟି
କୁହୁଡ଼ିର ଧୂଆଁ ଫିକାଳିଆ,
ପାଞ୍ଚୁଟା ଇନ୍ଦ୍ରିୟଯାକ　　　　ବିସ୍ମୃତି ଗରଭେ
ପଶିଗଲେ କଇଁଚ ଭଳିଆ ।

*　　　　*　　　　*　　　　*

"କଟକଟ" ଶବଦରେ　　　　ଉଠିଲି ଚହଙ୍କି,
ରହିଁଦେଲି ହୋଇଣ ଅବାକ୍,
କନ୍ୟାରତ୍ନ ହାତେ ଧରି　　　　କଇଁଚି ଗୋଟିଏ
କାଟୁଛନ୍ତି ବାଳକୁ ଚବାକ୍ !
ଧଡ଼ ପଡ଼ କରି ଉଠି　　　　କହିଲି "ଏ କିସ !"
ଦୁଇ ଆଖି ଦେଇଣ ତରାଟି,
କି ଆଶ୍ଚର୍ଯ୍ୟ ! କନ୍ୟା କିନ୍ତୁ　　　　ଗଲା ନାହିଁ ଡରି,
ଖନ ତା'ର ନ ବାଜିଲା ପାଟି !

ଡାହାଣ ହାତରେ ତା'ର ରହିଛି କତୁରି,
ଧଳା ବାଳ ମେଞ୍ଚେ ବାଆଁ ହାତେ,
ଆହୁରି ଗୁଡ଼ାଏ ପାଖେ ଗଦା ମରି ହୋଇ
ରହିଛି, ମୁଁ ଦେଖେଁ ଅକସ୍ମାତେ !
ରାଗେ ହୋଇ ଜରଜର କି କହିବି ବୋଲି
ଭାଷା ମୋର ନ ଆସିଲା ତୁଣ୍ଡେ,
ତାହାରି ମୁହଁକୁ ଖାଲି କଟମଟେ ଚାହିଁ
ହାତଟାକୁ ବୁଲାଇଲି ମୁଣ୍ଡେ ।
ହସିଲା ଅଲ୍ଲଳୀ ଝିଅ, ନ ଗଲା ଡରଛି,
କି ସରଳ, କି ସହଜ ହସ !
ପାଣି ଫାଟିଗଲା ରାଗ ଢଙ୍ଗ ଦେଖି ତା'ର,
ରହିଗଲା ଖାଲି ଅବଶୋଷ ।
ଅର୍ଦ୍ଧୋକ୍ତ ବାହାଣି ପୁଣି ନିରୁଦ୍‌ବେଗ ଠାଣି,
ଦୁଷ୍ଟାମିର ଚିହ୍ନ ନାହିଁ ତହିଁ,
ପ୍ରହେଳିକା ପରି ମୋତେ ଲାଗିଲା ଏ ସବୁ,
ଅର୍ଥ ତା'ର କିଏ ଦେବ କହି ?
କହିଲି କନ୍ୟାକୁ, "ବାଳ କାହିଁକି କାଟିଲୁ ?
ଏ ବୁଦ୍ଧି ପାଇଲୁ କାହୁଁ, କହ,
କେଉଁଠୁ ଶିଖିଲୁ ଏମନ୍ତ ବଗୁଲିଆପଣ ?
ବହୁତ ଖାଇବୁ ମାଡ଼, ରହ ।"
ଅବଚନେ କହେ କନ୍ୟା, "ସବୁପାକ ବାଳ
ଏଇ ପାଖେ ଯାଇଥିଲା ପାଚି,
ଝବାକ ପାକଲା ବାଳ, ହେଇ ଦେଖ ବାବା,
କେତେ ତାକୁ ଉପାଡ଼ୁଛୁ ବାଛି !
ସେଥିପାଇଁ ଦେଲି କାଟି ନିରିମୂଳ କରି,
ଏବେ ଯେ ଉଠିବ କଞ୍ଚା ବାଳ",
ଏତେ କହି ଆଶ୍ୱାସିଲା ନିରପରାଧିନୀ
ଝିଅ ମୋର,—ହାୟରେ କପାଳ !
ଉପାଡ଼ ପାକଲା ବାଳ ଝୋକା ହେବେ ବୋଲି
ବାବାଙ୍କର ମନ କଥା ଜାଣି
ବଡ଼ ବୁଦ୍ଧି ଟାଏ କରି ସ୍ନେହମୟୀ କନ୍ୟା
ମୂଳପୋଛ ଦେଇଅଛୁ ହାଣି !
ଆସି ଯେ ଗଲାଣି ତେଣୁ ବାବାଙ୍କୁ ଡାକରା,
ବାଜିଲାଣି ସଘନେ ବିଷାଣ,
ସେ ଜାଣିବ କାହୁଁ ଅବା, ଅଲ୍ଲଳୀ ବାଳିକା,
ଏ ଯେ ତା'ର ଧଉଳ ନିଶାଣ !



## "ଜୀବନ୍ତ ମରଣ"

ଆସିଛି ବସନ୍ତ ଆଜ    ମତ୍ତ ଯୁବା ପରି
ଅସରା ପସରାଭରା    ଆନନ୍ଦ ବିତରି ।
ନବ ଉନ୍ମାଦନା, ନବ    ଜାଗରଣ ସଙ୍ଗେ
ନାଚୁଛି ଧରଣୀ ବକ୍ଷ    ମଦିର ତରଙ୍ଗେ,
ଏ କି ନବ ସ୍ଫୂର୍ତ୍ତି, ଏ କି    ନବ ସଚେତନତା !
କି ଆଲୋକ, କି ବିକାଶ,    ଏକି ପ୍ରଫୁଲ୍ଲତା !
ପ୍ରତି ଧୂଳିକଣା, ପ୍ରତି    ପତ୍ର ପୁଷ୍ପ ଶିରେ
ପୁଲକ ପ୍ରବାହ ତା'ର    ଖେଳିଗଲା କି ରେ ?
ମାତ୍ର ମୋତେ ପାରିନାହିଁ    ଛୁଇଁ, ମୁଁ ଏକାକୀ,
ସାଗରବକ୍ଷେ ଏକା ପରି    ରହିଗଲି ବାକି ।
ମୁଁ କି ତେବେ ଜୀବନ୍ମୁକ୍ତ,    ନିର୍ଲିପ୍ତ, ଉଦାସୀ,
ଶୀତ, ଉଷ୍ମ, ସୁଖ, ଦୁଃଖ-    ଅତୀତ ପ୍ରବାସୀ ?
ସଂସାର ଭିତରେ ଥାଇ    ପ୍ରକୃତି ବାହାରେ,
ଦୂରେ, ଦୂରେ—ବହୁଦୂରେ    ମାୟା ପରପାରେ ?
ତେବେ କିମ୍ପା ଅନ୍ତରରେ    ଉଠେ ବାରମ୍ବାର
ତୃପ୍ତିହୀନ ବାସନାର    ତୀବ୍ର ହାହାକାର ?
ଅନନ୍ତ କାମନାରାଶି,    ମେଲି ଶତ ପକ୍ଷ,
ଲକ୍ଷ୍ୟଶୂନ୍ୟ, ଫୁଟିଉଠି    ଆସେ ଭେଦି ବକ୍ଷ ?
ପଥହରା ଆକାଙ୍‌କ୍ଷାର    ଆବର୍ତ୍ତନେ ଘୂରି
ଆସକ୍ତି ଆକୁଳେ କାନ୍ଦେ    ଗୁମରି ଗୁମରି ?
ଏହି କି ରେ ମୁକ୍ତି ମୋ'ର,    ଏହି କି ଜୀବନ ?
ତେବେ ଆଜ କାହା ନାମ    ଜୀବନ୍ତ ମରଣ !

## ଷଡ଼ ରିପୁ

ଜୀବନ କି ସମସ୍ତିଙ୍କୁ    ଫାଙ୍କି ଦେଇ ମାତ୍ର
ଦୁସ୍ତର ସଂସାରାର୍ଣ୍ଣବ    ହୋଇପିବ ପାର ?

ବୃଥା ସେ ଭାବନା,    ଅତି ଗହନ ସେ ବାଟ;
ସାଧନାର କ୍ଷେତ୍ର ଏହୁ—    ବିଷମ ବିରାଟ ।

କାମ, କ୍ରୋଧ, ଲୋଭ, ମୋହ, ମଦ, ମତ୍ସରତା,
ବେଢ଼ିଛନ୍ତି ଷଡ଼ ରିପୁ    ଷଣ୍ଡ ଦୈତ୍ୟ ପଥା ।

ମହା ବଳବନ୍ତ ପୁଣି    ଚତୁର ତେମନ୍ତ,
ଜୀବନ୍ତେ ଦହନ୍ତି କରି    ସଦା ହନ୍ତସନ୍ତ ।

ଗୋପନେ ସେ ଥାନ୍ତି ଜଗି,    ବଡ଼ ଅଭ୍ୟାସୀ,
ଅତର୍କିତେ ଆକ୍ରମଣ    କରନ୍ତି ସେ ଆସି ।

ସତର୍କ ତୁ ରହିଥିବୁ    ହୋଇ ହୁସିଆର,
ଆସିବାମାତ୍ରକେ ଦୃଢ଼େ    କରିବୁ ପ୍ରହାର ।

ତେବେ ଘଉଡ଼ାଇ ଦେଇ    ଏହି ଶତ୍ରୁଗଣେ
ଅନ୍ତରେ ହୋଇବୁ ଜୟୀ    ଏହି ରଣାଙ୍ଗନେ ।

ତେଣୁ ସଦା ଚେତିରହି    ସାଧ ତୁ ସଂଯମ,
ତୋତେ ଜିଣିବାକୁ ଅରି    ନ ହୋଇବ କ୍ଷମ ।

—ଓଣିଁ—

# ପାଗଳ

ଦୁନିଆଁ ଯାକ ସଭିଏଁ ପାଗଳ,
ମୁହିଁଟି ଏକା ଭଲ,
ହୋସ୍ ରଖି ମୁଁ ଦେଖୁଛି ସବୁ,
ବୁଝିଁଛି ବଲ ବଲ ।

ନାଚୁଛି କିଏ, ଭେଜିଁଛି କିଏ,
କିଏ ସେ ଗୁଡ଼େ ଉଡ଼,
ଚକଚକେଇ ହଜିଚି କିଏ
କଦରେ ଗଡ଼ ଗଡ଼ ।

ଚନ୍ଦ୍ରସୂର୍ଯ୍ୟ ଦୁଇଟା ପାଗଳ,
ପାଗଳ ମେଘ ବୃଷ୍ଟି,
ପବନ ପାଗଳ, ଗଗନ ପାଗଳ,
ପାଗଳ ସାରା ସୃଷ୍ଟି ।

ଜ୍ଞାନୀ ପାଗଳ, ଧ୍ୟାନୀ ପାଗଳ,
ପାଗଳ ବଇରାଗୀ,
ରାଜନୈତିକ ନେତା ପାଗଳ,
ଜେଲଫେରନ୍ତା ଦାଗୀ ।

କବି ପାଗଳ, ପ୍ରେମିକ ପାଗଳ,
ପାଗଳ ନିଶାଖୋର,
ଦର୍ବଳସ୍ତ୍ରୀ ଘର ପାଗଳ,
ଚଣ୍ଡିକଟା ଚୋର ।

ସୃଷ୍ଟି କରି କିଏ ପାଗଳ,
କିଏ କରଇ ଧ୍ୱଂସ,
ନିପାତ କରି ପାଗଳ କିଏ,
କେହି ବଢ଼ାଇ ବଂଶ ।

ମନମରଜା ପାଗଳ କେହି
ଗମ୍ଭୀର ହୋଇ ରହେ,
ଭଡ଼ଭଡ଼ିଆ ପାଗଳ କେହି
ବକୁଥାଏ କହେ ।

ମସ୍ତ ଗୋଟାଏ ପାଗଳାଖାନାର
କେନ୍ଦ୍ରେ ହୋଇ ଖାଡ଼ା
ଭାବୁଥାଉଛି, ସଭିଏଁ ପାଗଳ
ଏକା ମୋହରି ଛଡ଼ା !

*　　*　　*　　*

ଖରଚ କରି ପାଗଳ କିଏ,
କିଏ ପାଗଳା ସଞ୍ଚି,
କିଏ ବା ପାଗଳ ରହିବା ପାଇଁ
ମନ୍ଦିରେ ଚିର ବଞ୍ଚି ।

ମାମଲା କରି ପାଗଳା କେହୁ
କେହୁ ବା କରି ଦାନ,
ପାଗଳା ହୋଇ ବୁଲଇ କିଏ
ବଢ଼ାଇବାକୁ ମାନ ।

ଖୋଇବା ପାଇଁ ପାଗଳ କିଏ,
ଖାଇବା ପାଇଁ କେହି,
ଗାଇ ବଜେଇ ପାଗଳ କିଏ
ନାଚି ଧେଇ ଧେଇ ।

କହୁଛ ତୁମେ ଏଇଟାହିଁ ତ
ପାଗଳାମିର ଚିହ୍ନ,
ମୁହିଁ କି ତମ ସବୁରିଠାରୁ
ହୋଇ ଟିକେ ଭିନ୍ନ ?

